The Discovery of India

By Pandit Jawaharlal Nehru

Translated by Brahmananda Panda

Published by Grantha Mandir, Cuttack-2

Ist Edition : 1968
Reprinted : 1982
Reprinted : 1989

Library edition : Rs. 100-00

Paper-back : Rs. 90-00



ପ୍ରକାଶକ : ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : ଜୟରାମ ମହାପାତ୍ର
ଗ୍ରନ୍ଥପ୍ରକାଶିନୀ, ପୃତାହାଟ, କଟକ

ପ୍ରଥମ ମୁଦ୍ରଣ : ୧୯୬୮
ପୁନର୍ମୁଦ୍ରଣ : ୧୯୮୨
ପୁନର୍ମୁଦ୍ରଣ : ୧୯୮୯

ମୂଲ୍ୟ : ପାଠାଗାର ସଂସ୍କରଣ ଟ ୧୦୦.୦୦
ପେପର ବ୍ୟାକ୍ : ଟ ୯୦.୦୦

'ମଧୁର ଶାନ୍ତ ଭାବନାର ଅବକାଶେ
ହକାରେ ମୁଁ ଯେବେ ହଜିଲା ଦିନର କଥା'

୯. ୮. ୧୯୪୨ ରୁ ୨୮. ୩. ୧୯୪୫ ପର୍ଯ୍ୟନ୍ତ
ଅହମଦ୍ ନଗର ଦୁର୍ଗ ବନ୍ଦୀ ଶିବିରରେ
ଆବଦ୍ଧ ମୋର ସହକର୍ମୀ ଓ ସହବନ୍ଦୀମାନଙ୍କୁ ।

୧୯୪୪ ମସିହା ଅପ୍ରେଲ୍‌ରୁ ସେପ୍‌ଟେମ୍ବର ପର୍ଯ୍ୟନ୍ତ ପାଞ୍ଚ ମାସ ଭିତରେ ଅହ୍ମଦ୍ ନଗର ଦୁର୍ଗ ରହଣି କାଳରେ ମୁଁ ଏ ବହି ଲେଖିଲି । କାରାଗାରରେ ମୋର କେତେଜଣ ସହକର୍ମୀ ଶ୍ରଦ୍ଧା ସହକାରେ ପାଣ୍ଡୁଲିପି ପାଠକରି ବହୁତ କିଛି ମୂଲ୍ୟବାନ୍ ପରାମର୍ଶ ଦେଇଥିଲେ । କାରାଗାର ଭିତରେ ପାଣ୍ଡୁଲିପି ପଢ଼ି ଦେଖିଲାବେଳେ ମୁଁ ସେ ସବୁ ପରାମର୍ଶର ସୁଯୋଗ ନେଇ କେତେକ ବିଷୟ ଏଥିରେ ଯୋଗକରିଛି । କହିବା ବାହୁଲ୍ୟ, ମୁଁ ଯାହା ଲେଖିଛି ସେଥିଲାଗି ଅନ୍ୟ କେହି ଦାୟୀ ନୁହନ୍ତି । ମୋ ସଙ୍ଗେ ମୋର ସଙ୍ଗୀମାନେ ଏକମତ ବୋଲି ମୁଁ କହୁନି । କିନ୍ତୁ ଅହ୍ମଦ୍ ନଗର ଦୁର୍ଗରେ, ବହୁ ଆଳାପ ଆଲୋଚନା ଫଳରେ, ଭାରତୀୟ ଇତିହାସ ଓ ସଂସ୍କୃତିର ବିବିଧ ବିଭାବ ଉପରେ ମୋର ମନରେ ସ୍ପଷ୍ଟ ଧାରଣା ସୃଷ୍ଟି କରିବାରେ ଯେଉଁମାନେ ସହାୟକ ହୋଇଛନ୍ତି, ମୋର ସେହି ସହ-ବନ୍ଦୀମାନଙ୍କ ପ୍ରତି ଗଭୀର କୃତଜ୍ଞତା ଜ୍ଞାପନ କରୁଛି । ଅଳ୍ପକାଳ ପାଇଁ ପଛେ ହେଉ, ବାସକରିବା ନିମନ୍ତେ କାରାଗାର ପ୍ରୀତିକର ସ୍ଥାନ ନୁହେଁ । ସେଠାରେ ଯଦି ବର୍ଷ ବର୍ଷ ଧରି ରହିବାକୁ ପଡ଼େ, ପ୍ରୀତିର ପ୍ରଶ୍ନ ହିଁ ଉଠେନି; କିନ୍ତୁ ମୁଁ ସେପରି କେତେଜଣ ସୁଦକ୍ଷ, ସଂସ୍କୃତିସମ୍ପନ୍ନ ତଥା ଦୃଷ୍ଟିଭଙ୍ଗୀରେ ଉଦାର ଭାବରେ ମାନବିକ ବ୍ୟକ୍ତିଙ୍କ ଘନିଷ୍ଠ ସମ୍ପର୍କରେ ରହିବାର ସୁଯୋଗ ପାଇଥିଲି, ଯାହାଙ୍କର ପ୍ରତିଭା ଓ ପୌରୁଷକୁ ତାତ୍କାଳିକ ଉତ୍କଣ୍ଠା ଓ ଉଦ୍‌ବେଗ ଆଚ୍ଛନ୍ନ କରିପାରିନଥିଲା ।

ଅହ୍ମଦ୍ ନଗର ଦୁର୍ଗରେ ମୋର ଯେଉଁ ଏଗାରଜଣ ସଙ୍ଗୀ ଥିଲେ, ସେମାନେ ରାଜନୀତି କେବଳ ନୁହେଁ, ପୁରାତନ ଓ ନୂତନ ଉଭୟ ପ୍ରକାର ଭାରତୀୟ ବିଦ୍ୟାବତ୍ତା ଏବଂ ସାମ୍ପ୍ରତିକ ଭାରତର ବିବିଧ ବିଭାବର ପ୍ରତିନିଧିତ୍ୱ କରନ୍ତି । ପ୍ରାୟ ସମସ୍ତ ସଜୀବ ତଥା ପ୍ରମୁଖ ଭାରତୀୟ ଭାଷା ଏବଂ ସେସବୁ ପ୍ରାଚୀନ ଭାଷା ଯାହା ଅତୀତରେ ଭାରତକୁ ଶକ୍ତିଶାଳୀ ଭାବରେ ପ୍ରଭାବିତ କରିଥିଲା ଏବଂ ଆଜି ବି କରୁଛି, ସେଥିର ବିଦ୍ୱାନ୍‌ମାନେ କାରାଗାରରେ ଥିଲେ ଏବଂ ଆମର ଆଲୋଚନାରେ ଉଚ୍ଚକୋଟିର ବିଦ୍ୟାବତ୍ତା ପ୍ରକଟିତ ହେଉଥିଲା । ପୁରାତନ ଭାଷାମାନଙ୍କ ଭିତରୁ ଥିଲା ସଂସ୍କୃତ ଓ ପାଲି, ଆରବୀ ଓ ପାରସିକ । ଆଧୁନିକ ଭାଷାଗୁଡ଼ିକ ହେଲା ହିନ୍ଦୀ, ଉର୍ଦ୍ଦୁ, ବଙ୍ଗାଳୀ, ଗୁଜୁରାଟୀ, ମରାଠୀ, ତେଲୁଗୁ, ସିନ୍ଧି ଓ ଓଡ଼ିଆ । ସଂଗ୍ରହ କରିବା ପାଇଁ ଏହି ବିପୁଳ ସମ୍ପଦ ମୋ ଆଗରେ ଥୁଆହୋଇଥିଲା ଏବଂ ମୋ ପକ୍ଷରେ ଯଦି କିଛି ସୀମା ବନ୍ଧନ ଥିଲା, ତାହା ହେଉଛି ସେଥିରୁ ଲାଭବାନ୍ ହେବା ଦିଗରେ ମୋର ସୀମିତ ସାମର୍ଥ୍ୟ । ମୁଁ ଯଦିଓ ମୋର ସମସ୍ତ ସହକର୍ମୀମାନଙ୍କ ପ୍ରତି କୃତଜ୍ଞ, ତଥାପି ମୁଁ କେତେଜଣଙ୍କର ନାମ ଏଠାରେ ବିଶେଷଭାବରେ ଉଲ୍ଲେଖ କରିବାକୁ ଚାହେଁ, ଯାହାଙ୍କର ଅଗାଧ ପାଣ୍ଡିତ୍ୟ ମତେ ଆନନ୍ଦ ଦେଇଛି କେବଳ ନୁହେଁ, ବରଂ ବେଳେ ବେଳେ ଅଭିଭୂତ କରିଛି ମଧ୍ୟ—ସେ ହେଉଛନ୍ତି ମୌଲାନା ଅବୁଲ୍‌କାଲାମ୍ ଆଜାଦ । ଅନ୍ୟମାନେ ହେଲେ ଗୋବିନ୍ଦବଲ୍ଲଭ ପନ୍ତ, ନରେନ୍ଦ୍ର ଦେବ ଓ ଏମ୍. ଅସଫ୍ ଅଲ୍ଲୀ ।

ପ୍ରାୟ ତେରମାସ ହେବ ମୁଁ ଏ ବହି ଲେଖା ଶେଷକଲିଣି । ଏଥିର କେତେକ ଅଂଶ ହୁଏତ କେତେକ ପରିମାଣରେ ଅଚଳନ୍ତି ହେଇସାରିଲାଣି ଏବଂ ମୁଁ ଲେଖିବା ଦିନରୁ ଏ ଭିତରେ ବହୁତ କିଛି ଘଟିଗଲାଣି । ବେଳେବେଳେ ପ୍ରଲୋଭିତ ହେଉଛି ଏଥିର କିଛି ଅଂଶ ବାଦ୍‌ଦେଇ ପୁଣି ନୂଆ କିଛି ଯୋଗ କରିବାପାଇଁ; କିନ୍ତୁ ସେ ପ୍ରଲୋଭନ ମୁଁ ପ୍ରତିରୋଧ କରିପାରିଛି । ପ୍ରକୃତପକ୍ଷେ, ମୁଁ ଅନ୍ୟ ପ୍ରକାର କରିପାରିନଥାନ୍ତି, କାରଣ କାରାଗାର ବାହାରର ଜୀବନ ଭିନ୍ନପ୍ରକାର । ସେଥିରେ ଚିନ୍ତା କରିବା ଓ ଲେଖିବା ପାଇଁ ଅବସର ନାହିଁ । ଯାହା ଲେଖିଗଲି ସଂଶୋଧନ ଉଦ୍ଦେଶ୍ୟରେ ତାହା ପୁଣି ପଢ଼ିବା ପାଇଁ ମୋର ଯଥେଷ୍ଟ ଅସୁବିଧା ହେଉଛି । ସମସ୍ତ ପାଣ୍ଡୁଲିପି ମୁଁ ନିଜ ହାତରେ ଲେଖିଛି; ତାହା ମଧ୍ୟ ସଙ୍କେତ-ଲିପିରେ ନୁହେଁ । ମୁଁ ଜେଲ୍‌ରୁ ଖଲାସ ହେବା ପରେ ସମସ୍ତ ପାଣ୍ଡୁଲିପି ଟାଇପ୍ କରାଗଲା; କିନ୍ତୁ ତାହା ପଢ଼ି ଦେଖିବାକୁ ମୁଁ ସମୟ ପାଉନଥିଲି ଏବଂ ବହିଟିର ପ୍ରକାଶନ ଯେବେ ବିଳମ୍ବିତ ହେବାକୁ ଲାଗିଲା, ମୋର କନ୍ୟା ଇନ୍ଦିରା ସେ ଭାର ନିଜେ ବହନକରି ମତେ ଏକରକମ ଉଦ୍ଧାରକଲା । କାରାଗାର ଭିତରେ ମୁଁ ଯାହା ଲେଖିଥିଲି ଏ ବହି ତାହାର ଅବିକଳ ନକଲ । ଶେଷରେ 'ପୁନଶ୍ଚ' ଅଂଶଟିକ ବାଦ୍ ଦେଲେ ଏଥିରେ କିଛି ଯୋଗକରାଯାଇନି କିମ୍ବା କେଉଁଠି କିଛି ପରିବର୍ତ୍ତନ କରାଯାଇନି ।

ନିଜ ରଚନା ସମ୍ପର୍କରେ ଅନ୍ୟ ଲେଖକମାନେ କିଭଳି ଅନୁଭବ କରନ୍ତି ମୁଁ ଜାଣେନି; କିନ୍ତୁ ପୂର୍ବେ ଲେଖିଥିବା କିଛି ମୁଁ ଯେବେ ପଢ଼ିବସେ, ମୁଁ ଏକ ବିବିଧ ସମ୍ବେଦନ ଅନୁଭବ କରେ ଏବଂ ତାହା ଗାଢ଼ ହୁଏ ସେହି ଲେଖା ଯଦି ମୁଁ କାରାଗାରର ଘନିଷ୍ଠ ତଥା ଅସ୍ୱାଭାବିକ ବାତାବରଣ ଭିତରେ ଲେଖିଥାଏ, ଆଉ ତାହା ପାଠକରେ କାରାଗାର ବାହାରେ । ମୁଁ ଜାଣିପାରେ ଯେ ମୁଁ ମୋର ଲେଖା ପଢ଼ୁଛି—କିନ୍ତୁ ପୂର୍ଣ୍ଣ ରୂପରେ ନୁହେଁ । ମୋର ପ୍ରାୟ ମନେହୋଇଥାଏ, ମୁଁ ଯେପରି ଅନ୍ୟ କାହାର ସୁଚିନ୍ତିତ ଏକ ଲେଖା ପଢ଼ୁଛି ଯିଏ ମୋର ଅତି ଆପଣାର ହେଲେ ସୁଦ୍ଧା ମୋଠାରୁ ଭିନ୍ନ; ହୁଏତ ଏହା ମୋ ଭିତରେ ଘଟିଥିବା ପରିବର୍ତ୍ତନର ପରିମାପ ।

ଏ ବହି ସମ୍ପର୍କରେ ମୋର ଭାବ ଏପରି । ଏହା ମୋର, କିନ୍ତୁ ମୋର ଆଜିର ଅବସ୍ଥା ବିଚାରକଲେ ସମ୍ପୂର୍ଣ୍ଣ ମୋର ନୁହେଁ । ଏପରି କୁହାଯାଇପାରେ ଯେ, ଏ ବହି ମୋର ଅତୀତ ସେହି କେଉଁ ଅଂଶବିଶେଷର ପ୍ରତିନିଧିତ୍ୱ କରେ ଯାହାର କ୍ଷଣିକ ଅସ୍ତିତ୍ୱ ସେପରି ପୂର୍ବବର୍ତ୍ତୀ ବହୁ ଅଂଶ ସଙ୍ଗେ ଏକ ଦୀର୍ଘ ଅନୁକ୍ରମରେ ଲୀନହେଲାଣି—ପଛରେ ରଖିଯାଇଛି କେବଳ ଏକ ସ୍ମୃତି ।

ଆନନ୍ଦଭବନ
ଆଲ୍ଲାହାବାଦ
୨୯-୧୧-୧୯୪୫

ଜବାହରଲାଲ ନେହରୁ

ଅପେକ୍ଷାକୃତ ନିରୁଦ୍‌ବିଗ୍ନ ଏକ ଅବକାଶରେ ଯେଉଁ କାର୍ଯ୍ୟ ସମ୍ପାଦନ କରିବାର ଉଦ୍ଦେଶ୍ୟ ଥିଲା, ତାହା କରିବାକୁ ହେଲା ରାଜନୈତିକ ଜୀବନର ଗୁରୁ ଅବସାଦ, ନିକଟତମ ପରିବୃତ୍ତିକା ସଙ୍ଗେ ସାଂସ୍କୃତିକ ସଙ୍ଘାତଜନିତ ଚିତ୍ତବିକ୍ଷୋଭର ଏକ ଅଶାନ୍ତ ପର୍ଯ୍ୟାୟରେ । ତେବେ, ଏକଥା ଅବଶ୍ୟ ସ୍ୱୀକାର କରିବି ଯେ, ଏ କାର୍ଯ୍ୟରେ ଲାଗିଥିବା ସମୟତକ ମୋର ଆନନ୍ଦରେ ଅତିବାହିତ ହୋଇଛି । ଉନ୍ନତ ଚିନ୍ତା ଆତ୍ମୋନ୍ନତିର ପଥ ପ୍ରଶସ୍ତ କରେ ।

ଶ୍ରୀଯୁକ୍ତ ବନମାଳୀ ପଟ୍ଟନାୟକଙ୍କ ସକ୍ରିୟ ଉଦ୍ୟମ ଯୋଗୁଁ ଏ ବହି ଅନୁବାଦ କରିବାର ଅନୁମତି ମୁଁ ଶ୍ରୀ ନେହେରୁଙ୍କ ପାଖରୁ ପାଇଲି; ବନମାଳୀବାବୁଙ୍କ ନିକଟରେ ମୁଁ କୃତଜ୍ଞ । ବଡ଼ ଆଶା ଥିଲା ଶ୍ରୀ ନେହେରୁଙ୍କ ଜୀବଦ୍ଦଶାରେ ଏ ବହି ତାଙ୍କ ହାତରେ ଅର୍ପଣ କରିବାପାଇଁ; ତାହା ସମ୍ଭବ ହେଲନାହିଁ । ତ୍ରୁଟି ଅବଶ୍ୟ ମୋର, କାରଣ ପ୍ରକାଶକ ବନ୍ଧୁମାନଙ୍କର ବାରମ୍ବାର ଅନୁରୋଧସତ୍ତ୍ୱେ ଅନୁମତି ଲଭିବାର ଗୁରିବର୍ଷ ପରେ ମଧ୍ୟ କାର୍ଯ୍ୟାରମ୍ଭ କରିବା ପାଇଁ ମୁଁ ସମୟ ପାଇନଥିଲି । ବେଳେବେଳେ ମନେହୋଇଥାଏ କୌଣସି ଆନ୍ଦୋଳନ ଜରିଆରେ ଗୋଟିଏ ବର୍ଷ ଯଦି ଜେଲ୍‌କୁ ସ୍ଥାନାନ୍ତରିତ ହୋଇପାରନ୍ତି, ତାହାହେଲେ ସାହିତ୍ୟ କର୍ମ ନିମନ୍ତେ ଯଥେଷ୍ଟ ଅବସର ମିଳନ୍ତା ।

ଏ ବହି ଚଞ୍ଚଳ କପରି ପଢ଼ିବାକୁ ମିଳିବ ସେଥିଲାଗି ବହୁ ବନ୍ଧୁ ଓ ଶୁଭେଚ୍ଛୁ ମତେ ଅନୁରୋଧରୁ ଆରମ୍ଭକରି ଭର୍ତ୍ସନା ପର୍ଯ୍ୟନ୍ତ କରିଚନ୍ତି । ସମସ୍ତଙ୍କର ଶ୍ରଦ୍ଧା ମୁଁ ନତମସ୍ତକରେ ଗ୍ରହଣ କରିଛି । ତଥାପି, କେତୋଟି ନାମ ଏଠାରେ ଉଲ୍ଲେଖ ନକରି ରହିପାରୁନି । ସେମାନେ ହେଉଚନ୍ତି—ଶ୍ରୀ ବନମାଳୀ ପଟ୍ଟନାୟକ, ଶ୍ରୀ ଶଶିଭୂଷଣ ପତି, ଡାକ୍ତର କିଶୋରଚନ୍ଦ୍ର ପାଢ଼ୀ ।

ଶ୍ରୀ ନେହେରୁଙ୍କ ଇଂରେଜୀ ମୁଗ୍ଧକର । ଓଡ଼ିଆରେ ତାର ମହତ୍ତ୍ୱ ପ୍ରକାଶ କରିବାପାଇଁ ମୁଁ ଆନ୍ତରିକ ପ୍ରୟାସ କରିଛି । ଏତେ ବଡ଼ ବହିରେ ସ୍ଥାନେ ସ୍ଥାନେ ମୁଦ୍ରଣ ତ୍ରୁଟି ରହିବା କିଛି ଅସାଧାରଣ ନୁହେଁ । ତେବେ ପ୍ରମାଦ ସୃଷ୍ଟି କଲା ଭଳି ସେପରି କିଛି ତ୍ରୁଟି ରହିଥିବ ବୋଲି ମୁଁ ଆଶଙ୍କା କରୁନି, କାରଣ ପ୍ରୁଫ୍ ସଂଶୋଧନ ଯଥେଷ୍ଟ ଧ୍ୟାନ ଦେଇ କରାଯାଇଛି । ତଥାପି ତ୍ରୁଟିର ସୂଚନା ପାଇଲେ ପରବର୍ତ୍ତୀ ମୁଦ୍ରଣରେ ତାହା ସଂଶୋଧନ କରାଯିବ ।

ଭାସ୍କର ନନ୍ଦ, ବ୍ରହ୍ମପୁର କେ. ସି. ଟାଉନ୍ ହାଇସ୍କୁଲ୍‌ର ଶିକ୍ଷକ ଓ ସରକାରୀ ନୈଶ ମହାବିଦ୍ୟାଳୟର ଛାତ୍ର । ସମଗ୍ର ବହି ସେ ଶ୍ରୁତିଲେଖନ କରିଚନ୍ତି । ହାତରେ ଲେଖି ମୁଁ ଅନୁବାଦ କରିପାରିନଥାନ୍ତି । ଭାସ୍କରଙ୍କ ଧୈର୍ଯ୍ୟକୁ ମୁଁ ପ୍ରଶଂସା ନକରି ରହିପାରୁନି, କାରଣ ଅନେକ ସମୟରେ ତାଙ୍କର ନିୟମିତ ଉପସ୍ଥିତି ମତେ ବହି ଧରିବାକୁ ବାଧ୍ୟକରିଛି ।

ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧି ବହି ପାଇଁ ଏକ ସ୍ୱତନ୍ତ୍ର ମୁଖବନ୍ଧ ଲେଖି ମତେ ବାଧିତକରିଚନ୍ତି । ମୋର ଆଉ କିଛି କହିବାର ନାହିଁ ।

ଗାନ୍ଧିନଗର, ବ୍ରହ୍ମପୁର

୨୧-୭-୬୮

ବୃନ୍ଦାବନ ପଣ୍ଡା

ଚଉଦ ବର୍ଷ ପରେ ଏହି ଗ୍ରନ୍ଥର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଲା । ଆଧୁନିକ ରାଜନୈତିକ ଗଦ୍ୟ ରଚନା କ୍ଷେତ୍ରରେ ଇଂରେଜୀ ସାହିତ୍ୟରେ ପଣ୍ଡିତ ନେହେରୁଙ୍କ ମୂଳ ଇଂରେଜୀ ରଚନା ବିଶ୍ୱର ବୁଦ୍ଧିଜୀବୀ ମହଲରେ ଏକ ବିପୁଳ ଆଲୋଡ଼ନ ସୃଷ୍ଟି କରିଥିଲା । ଭାରତୀୟ ସ୍ୱାଧୀନତା ସଂଗ୍ରାମର ଏକ ମହତ୍ତ୍ୱପୂର୍ଣ୍ଣ ପର୍ଯ୍ୟାୟର ଇତିହାସ ଭାବରେ କେବଳ ନୁହେଁ, ଜଣେ ବିଚକ୍ଷଣ ରାଷ୍ଟ୍ରନୀତିଜ୍ଞ ତଥା ବିଶ୍ୱ ନାଗରିକର ଦାର୍ଶନିକ ଦୃଷ୍ଟିଭଙ୍ଗୀ ଓ ମାନବିକତାର ବାହକ ଭାବରେ ଏହି ଗ୍ରନ୍ଥ ଅତୁଳନୀୟ; ଗୋଟାଏ କ୍ଲାସିକ୍ । ପ୍ରଗାଢ଼ ଦେଶ-ପ୍ରେମର ଏହା ଏକ ବୀରତ୍ୱପୂର୍ଣ୍ଣ କାହାଣୀ । ବିଶ୍ୱର ବହୁ ଭାଷାରେ ଏବଂ ଭାରତୀୟ ଭାଷା-ମାନଙ୍କରେ ଏହା ଅନୂଦିତ ହୋଇ ସାରିଛି । ଆଫ୍ରିକା, ଲାଟିନ୍ ଆମେରିକା ଓ ପ୍ରାଚ୍ୟ ଭୂଖଣ୍ଡର ଅଗଣିତ ସ୍ୱାଧୀନତା ସଂଗ୍ରାମୀ ଏହି ଗ୍ରନ୍ଥରୁ ପ୍ରେରଣା ଲାଭ କରିଚନ୍ତି । ଆଜିର ଯୁଗରେ ସ୍ୱାମୀ ବିବେକାନନ୍ଦ, ମହାତ୍ମା ଗାନ୍ଧି, ପଣ୍ଡିତ ନେହେରୁ ଏବଂ ଉତ୍କଳମଣି ଗୋପବନ୍ଧୁ ଏକପ୍ରକାର ଅପ୍ରାସଙ୍ଗିକ ବିବେଚିତ ହେଲେଣି । ସବୁ କ୍ଷେତ୍ରରେ ହିଂସା, ଦ୍ୱେଷ ଓ ପ୍ରତାରଣା ଗଣତାନ୍ତ୍ରିକ ଜୀବନଧାରାକୁ ବିପର୍ଯ୍ୟସ୍ତ କରିବାକୁ ବସିଲାଣି । ସଂପ୍ରତି ଦିଗରୁ ଭାରତୀୟ ମହାଜାତି ଏକ ବିଷମ ପର୍ଯ୍ୟାୟ ଭିତର ଦେଇ ଗତି କରୁଛି । ଏତିକି ବେଳେ ଗାନ୍ଧୀ ନେହେରୁଙ୍କ ତ୍ୟାଗପୂତ ଜୀବନର ଆଦର୍ଶ ଦେଶର ଯୁବ-ସମାଜକୁ ଆଲୋକ ପଥର ସନ୍ଧାନ ଦେଇ ପାରିବ । ପ୍ରତ୍ୟେକ ଦେଶପ୍ରେମୀ ପକ୍ଷରେ ଏହି ଗ୍ରନ୍ଥ ଅପରିହାର୍ଯ୍ୟ । ପରିଶେଷରେ, କହିବା ବାହୁଲ୍ୟ, ଅନୁବାଦରେ ନେହେରୁଙ୍କ ଭାଷାର ମର୍ଯ୍ୟାଦା ରକ୍ଷାକରିବା ପାଇଁ ମୁଁ ଯଥାସାଧ୍ୟ ସତର୍କତା ଅବଲମ୍ବନ କରିଛି । ଗ୍ରନ୍ଥମନ୍ଦିର ଏହି ଗ୍ରନ୍ଥର ପ୍ରକାଶନ ଭାର ଗ୍ରହଣ କରିଥିବାରୁ ମୁଁ ସେମାନଙ୍କୁ ମୋର ଧନ୍ୟବାଦ ଜ୍ଞାପନ କରୁଛି ।

ବ୍ରହ୍ମାନନ୍ଦ ପଣ୍ଡା

'ନୀଡ଼ମ୍'
ଏ-୧୨୨ ଶହୀଦ ନଗର
ଭୁବନେଶ୍ୱର
ରଜସଂକ୍ରାନ୍ତି, ୧୯୮୨

# ସୂଚୀ

## ପ୍ରଥମ ପରିଚ୍ଛେଦ : ଅହ୍ମଦ୍‌ନଗର ଦୁର୍ଗ



## ଦ୍ୱିତୀୟ ପରିଚ୍ଛେଦ : ବେଡ଼େନ୍‌ୱେଇଲର : ଲୋଜାନ୍



## ତୃତୀୟ ପରିଚ୍ଛେଦ : ଅନ୍ୱେଷଣ

## ଚତୁର୍ଥ ପରିଚ୍ଛେଦ : ଭାରତ ଅବଷ୍କାର



## ପଞ୍ଚମ ପରିଚ୍ଛେଦ : ଯଗେଯୁଗେ

## ଷଷ୍ଠ ପରିଚ୍ଛେଦ : ନବ ନବ ସମସ୍ୟା

## ସପ୍ତମ ପରିଚ୍ଛେଦ : ଅନ୍ତିମ ପର୍ବ (୧)

## ଇଂରେଜ ରାଜତ୍ୱ ସୁପ୍ରତିଷ୍ଠିତ ହେଲା : ଜାତୀୟବାଦୀ ଆନ୍ଦୋଳନର ଅଭ୍ୟୁଦୟ



## ଅଷ୍ଟମ ପରିଚ୍ଛେଦ : ଅନ୍ତିମ ପର୍ବ (୨)

## ଜାତୀୟବାଦ ବନାମ ସାମ୍ରାଜ୍ୟବାଦ

## ନବମ ପରିଚ୍ଛେଦ : ଅନ୍ତିମପର୍ବ (୩) : ଦ୍ୱିତୀୟ ବିଶ୍ୱଯୁଦ୍ଧ



## ଦଶମ ପରିଚ୍ଛେଦ : ପୁନର୍ବାର ଅହମଦ୍ ନଗର ଦୁର୍ଗ

# ପ୍ରଥମ ପରିଚ୍ଛେଦ

# ଅହ୍ମଦ୍‌ନଗର ଦୁର୍ଗ

## ୧. କୋଡ଼ିଏ ମାସ

ଅହ୍ମଦ୍‌ନଗର ଦୁର୍ଗ, ୧୩, ଏପ୍ରିଲ, ୧୯୪୪

ଆମକୁ ଏଠାକୁ ଅଣାଯିବା କୋଡ଼ିଏ ମାସରୁ ଅଧିକ ହେଲାଣି । ବନ୍ଦୀ ହୋଇ ଆସିବା ଏହା ମୋର ନବମ ବାର । ଆମେ ଏଠାରେ ପହଞ୍ଚିବାମାତ୍ରେ ଅନ୍ଧାର ଆକାଶରୁ ଦ୍ୱିତୀୟାର ଝିଲମିଲ ଚନ୍ଦ୍ର ଆମକୁ ଅଭିବାଦନ କରିଥିଲା । ଶୁକ୍ଳପକ୍ଷ ଆରମ୍ଭ ହୋଇଯାଇଛି । ସେହି ଦିନରୁ ପ୍ରତି ଅମାବାସ୍ୟା ମତେ ସ୍ମରଣ କରାଇଦିଏ ଯେ ମୋର ବନ୍ଦୀଜୀବନର ଆଉ ଗୋଟାଏ ମାସ ଅତୀତ ହୋଇଯାଇଛି । ଗତଥର ମଧ୍ୟ ଆଲୋକର ଉତ୍ସବ ଦୀପାବଳୀ ପରେ ପରେ ମୋର ବନ୍ଦୀଜୀବନ ଆରମ୍ଭ ହୋଇଥିଲା । ଜୀବନର ଅଭିବୃଦ୍ଧି ଓ ଅବନତି, ଅନ୍ଧକାର ଓ ଆଲୋକ, ମୃତ୍ୟୁ ଓ ପୁନରଭ୍ୟୁଦୟ ଗୋଟିକ ପରେ ଗୋଟିଏ କିପରି ଅବିରାମ ଭାବରେ ଆବର୍ତ୍ତିତ ହୋଇ ଚାଲିଛି, ବିଶ୍ୱର ସେହି କମନୀୟତାର ସ୍ମାରକ ଏହି ଚନ୍ଦ୍ର, ବନ୍ଦିଶାଳାରେ ମୋର ଚିରସହଚର, ନିକଟତର ସମ୍ପର୍କ ହେତୁରୁ ଅଧିକ ବନ୍ଧୁଭାବାପନ୍ନ ହୋଇଉଠିଛି ।

ସଦାପରିବର୍ତ୍ତନଶୀଳ ଅଥଚ ସେହି ଏକପ୍ରକାର ଚନ୍ଦ୍ରକୁ ମୁଁ ଲକ୍ଷ୍ୟ କରିଛି ତାର ବିବିଧ କଳାରେ ଓ ବିଭିନ୍ନ ଅବସ୍ଥାରେ । ପ୍ରଦୋଷର ଛାୟା ଯେବେ ଦୀର୍ଘ ହୋଇଆସେ, ରାତ୍ରିର ନିସ୍ତବ୍ଧତାରେ ଆଉ ଯେତେବେଳେ ଉଷାର ମୃଦୁ ଭାଷା ଓ ନିଃଶ୍ୱାସ ଆଗାମୀ ଦିନର ବିଶ୍ୱାସ ଆଣି ପହଞ୍ଚାଏ । ଦିନ ଓ ମାସର ହିସାବ ରଖିବାରେ ଚନ୍ଦ୍ର ବଡ଼ ସହାୟକ ହୋଇଥାଏ । କାରଣ ସେ ଯେବେ ଉଦିତ ହୁଏ, ତାର ଆକୃତି ମାସର ନିର୍ଦ୍ଦିଷ୍ଟ ଦିନଟିକୁ ପ୍ରାୟ ଠିକ୍ ଭାବରେ ସୂଚିତ କରିଥାଏ । ମଝିରେ ମଝିରେ ଟିକିଏ ଅଦଳ ବଦଳ କରିବାକୁ ପଡ଼ୁଥିଲେ ସୁଦ୍ଧା ଚନ୍ଦ୍ର ଗୋଟିଏ ସହଜବୋଧ କାଲେଣ୍ଡର ଏବଂ ଦିନ ଓ ଋତୁର କ୍ରମପରିବର୍ତ୍ତନ ଜାଣିବା ନିମନ୍ତେ ବିଲମାନର ଚାଷୀ ପକ୍ଷେ ବଡ଼ ଆବଶ୍ୟକ ଓ ସୁବିଧାଜନକ ।

ବାହାର ଦୁନିଆର ପଦେ ଖବର ନାହିଁ, ସମ୍ପୂର୍ଣ୍ଣ ଭାବରେ ବିଚ୍ଛିନ୍ନ, ତିନୋଟି ସପ୍ତାହ ଆମେ ଏଠାରେ କଟାଇ ସାରିଲୁଣି । ଏଥିଭିତରେ ଆମର କାହା ସଙ୍ଗେ ଯୋଗାଯୋଗ ରହିନି, ସାକ୍ଷାତ୍ ହୋଇନି; ଚିଠି ନାହିଁ, ଖବର କାଗଜ ନାହିଁ, ରେଡ଼ିଓ ନାହିଁ । ଏଠାରେ

ଆମର ଉପସ୍ଥିତି ମଧ୍ୟ ଆମ ତତ୍ତ୍ୱାବଧାନରେ ଥିବା କର୍ମଚାରୀଙ୍କ ବ୍ୟତୀତ ଅନ୍ୟମାନଙ୍କପକ୍ଷରେ ଗୋପନୀୟ ବୋଲି ଧରାଯାଉଥିଲା, କିନ୍ତୁ ଏପରି ଗୋପନୀୟତାର କିଛି ମୂଲ୍ୟ ନଥିଲା; କାରଣ ସମଗ୍ର ଭାରତ ଜାଣିଥିଲା ଆମେ କେଉଁଠି ରହିଛୁ । ପରେ ପରେ ଖବରକାଗଜ ଦିଆଗଲା ଓ କେତେ ସପ୍ତାହ ପରେ ଆତ୍ମୀୟଙ୍କ ପାଖରୁ ଚିଠିପତ୍ର ଯେ ଗ୍ରହଣ କରାଗଲା, ସେଥିରେ ଥାଏ ପାରିବାରିକ ଖବର କେବଳ; କିନ୍ତୁ ଏହି କୋଡ଼ିଏ ମାସ ଭିତରେ ବାହାରର କାହା ସଙ୍ଗେ ସାକ୍ଷାତ୍ ଘଟିନି କିମ୍ବା ଯୋଗାଯୋଗ ରହିନି ।

ଆମକୁ ମିଳୁଥିବା ଖବରକାଗଜଗୁଡ଼ିକର ଖବର ନିର୍ମମ ଭାବରେ ନିର୍ବାଚନ କରାଯାଇ-ଥାଏ । ତଥାପି ସେତେବେଳେ ପୃଥିବୀର ଅର୍ଦ୍ଧେକ ଭାଗରେ ଯୁଦ୍ଧର ଯେଉଁ ତାଣ୍ଡବ ଲୀଳା ଚାଲିଥିଲା ତାର ଏକ ମୋଟାମୋଟି ଧାରଣା ଏବଂ ଭାରତର ଜନସାଧାରଣ କିଭଳିଭାବରେ ତାହା ଗ୍ରହଣ କରୁଥିଲେ, ଆମକୁ ମିଳୁଥିଲା । ଆମ ଲୋକଙ୍କ ସମ୍ପର୍କରେ ଆମେ ଏତିକି କେବଳ ଜାଣିଥିଲୁ ଯେ ହଜାର ହଜାର ସଂଖ୍ୟାରେ ସେମାନେ ଜେଲରେ କିମ୍ବା ଅଟକ-ବନ୍ଦୀ ଶିବିରରେ ପଡ଼ିଛନ୍ତି । ହଜାର ହଜାର ସଂଖ୍ୟାରେ ଲୋକଙ୍କୁ ଗୁଳିକରି ମାରିଦିଆ-ଯାଇଛି । ହଜାର ହଜାର ଛାତ୍ର ସ୍କୁଲ୍ କଲେଜରୁ ତଡ଼ାଖାଇଛନ୍ତି । ସମଗ୍ର ଦେଶରେ ସାମରିକ ଆଇନ ଭଳି କୌଣସି ଆଇନ ଜାରି ରହିଛି, ଆଉ ଭୟ ଓ ଆତଙ୍କ ଭାରତରେ ଘୋଟିଯାଇଛି । ଯେଉଁମାନେ ହଜାର ହଜାର ସଂଖ୍ୟାରେ ଆମ ଭଳି ବନ୍ଦଶାଳାରେ କିମ୍ବା ଅଟକବନ୍ଦୀ ଭାବରେ ରହିଥିଲେ ସେମାନଙ୍କର ଅବସ୍ଥା ଆହୁରି ଶୋଚନୀୟ ଥିଲା; କାରଣ କାହା ସଙ୍ଗେ ସାକ୍ଷାତ୍ କରିବାକୁ ଯେ ଅନୁମତି ସେମାନଙ୍କୁ ମିଳୁ ନଥିଲା କେବଳ ନୁହେଁ, ଚିଠି ଅବା ସମ୍ବାଦପତ୍ର ବି ପାଇବାରୁ ସେମାନେ ବଞ୍ଚିତ ଥିଲେ । ଏପରିକି କୌଣସି ବହି ମଧ୍ୟ ସେମାନଙ୍କୁ ଦିଆଯାଉନଥିଲା । ସ୍ୱାସ୍ଥ୍ୟକର ଖାଦ୍ୟ ଅଭାବରୁ ଅନେକେ ରୁଗ୍ଣ ହୋଇ-ପଡ଼ିଲେ ଏବଂ ଉଚିତ ଯତ୍ନ ଓ ଚିକିତ୍ସା ଅଭାବରୁ ଆମର କେତେ ପ୍ରିୟଜନ ମରଣ ହାତରେ ନିଜକୁ ସମର୍ପଣ କରିଥିଲେ ।

ଭାରତରେ ହଜାର ହଜାର ସଂଖ୍ୟକ ଯୁଦ୍ଧବନ୍ଦୀଙ୍କୁ, ମୁଖ୍ୟତଃ ଇଟାଲୀୟ ଯୁଦ୍ଧବନ୍ଦୀଙ୍କୁ ରଖାଯାଇଥିଲା । ଆମେ ସେମାନଙ୍କ ଭାଗ୍ୟ ସଙ୍ଗେ ଆମ ଭାଗ୍ୟ ତୁଳନା କରି ଦେଖୁଥିଲୁ । ଆମକୁ କୁହାଯାଉଥିଲା ଯେ ସେ ଯୁଦ୍ଧବନ୍ଦୀମାନେ ଜେନେଭା କନ୍‌ଭେନ୍‌ସନ୍‌ଦ୍ୱାରା ପରିଚାଳିତ; କିନ୍ତୁ ଭାରତୀୟ ବନ୍ଦୀ କିମ୍ବା ଅଟକବନ୍ଦୀମାନଙ୍କୁ କି ଅବସ୍ଥାରେ ରଖାଯିବ ସେଥିପାଇଁ କୌଣସି ଆଇନ, ନିୟମ ଅବା ବିଧାନ ନଥିଲା । ଆମର ବ୍ରିଟିଶ ଶାସକମାନେ ମଝିରେ ମଝିରେ ନିଜର ଖୁସି ଅନୁସାରେ ଯେଉଁସବୁ ଅଧ୍ୟାଦେଶ ଜାରିକରୁଥିଲେ, ତାହା ହିଁ ଥିଲା ଆମ ପାଇଁ ବିଧାନ ।

## ୨. ଦୁର୍ଭିକ୍ଷ

ଦୁର୍ଭିକ୍ଷ ପଡ଼ିଲା : କରାଳ, ଅସହ୍ୟ, ଭାଷାତୀତ ଭାବରେ ଘୋର ଓ ଭୟାବହ । ମାଲବାର, ବିଜାପୁର, ଓଡ଼ିଶା ଓ ସର୍ବୋପରି ବଡ଼ଶାଳୀ ତଥା ଉର୍ବର ବଙ୍ଗପ୍ରଦେଶରେ ସ୍ତ୍ରୀ, ପୁରୁଷ ଓ

ଶିଶୁ ଖାଦ୍ୟ ଅଭାବରୁ ପ୍ରତିଦିନ ହଜାର ହଜାର ସଂଖ୍ୟାରେ ମରି ଶୋଇଲେ । ସେମାନେ ଢଳିପଡ଼ୁଥିଲେ କଲିକତାର ବିଭବଶାଳୀ ପ୍ରାସାଦମାଳା ସମ୍ମୁଖରେ, ବଙ୍ଗଦେଶର ଅଗଣିତ ମାଟି-ଘାଟି କୁଡ଼ିଆ ଭିତରେ । ପଥଘାଟରେ ଓ ବିଲମାଳରେ ପଡ଼ିରହୁଥିଲା ସେମାନଙ୍କର ଶବ । ପୃଥିବୀର ସର୍ବତ୍ର ମଣିଷ ମରୁଥିଲେ, ଯୁଦ୍ଧକ୍ଷେତ୍ରରେ ପରସ୍ପରକୁ ହତ୍ୟାକରୁଥିଲେ । ସାଧାରଣତଃ ସେ ମରଣ ହଠାତ୍ ମରଣ, ଅନେକ ସମୟରେ ବୀରୋଚିତ ମରଣ, ଗୋଟାଏ ଉଦ୍ଦେଶ୍ୟ ପାଇଁ ମରଣ, ଗୋଟାଏ ଲକ୍ଷ୍ୟ ପାଇଁ ମରଣ ଏବଂ ଆମର ଏହି ଉନ୍ମାଦଗ୍ରସ୍ତ ପୃଥିବୀରେ ସେହି ମରଣ ବିଭିନ୍ନ ଘଟଣାର ନ୍ୟାୟ ଭଳି ଜଣାଯାଉଥିଲା । ସେହି ଜୀବନକୁ ଗଢ଼ିବା କିମ୍ବା ନିୟନ୍ତ୍ରଣ କରିବା ସାମର୍ଥ୍ୟ ଆମର ନାହିଁ ଅକସ୍ମାତ୍ ତାର ଉପରେ ପୂର୍ଣ୍ଣଚ୍ଛେଦ ଟାଣିଦିଆଯାଉଥିଲା । ପୃଥିବୀରେ ସର୍ବତ୍ର ମୃତ୍ୟୁର କୌଣସି ଅସାଧାରଣତ୍ୱ ନଥିଲା ।

କିନ୍ତୁ ଭାରତରେ ଏ ପ୍ରକାର ମରଣ ପଛରେ କୌଣସି ଉଦ୍ଦେଶ୍ୟ ନଥିଲା, କୌଣସି ଯୁକ୍ତି ନଥିଲା; ଏଭଳି ମରଣରେ ଆବଶ୍ୟକତା ବି ନଥିଲା । ଏହା ମଣିଷର ଅପାରଗତା ଓ ଦାୟିତ୍ୱ-ହୀନତାର ଫଳ, ମଣିଷର ନିଜ ହାତର ତିଆରି, ଯାହାର କୌଣସି ପ୍ରତିକାର ନାହିଁ । ସେ ଏକ ଧୀରସଞ୍ଚାରୀ ବିଭୀଷିକା; ମୃତ୍ୟୁ ଭିତରେ ଜୀବନର ସମବିଳୟ, କଙ୍କାଳ ଦେହର କୋଟରଗତ ଚକ୍ଷୁରୁ ମୃତ୍ୟୁ ଗ୍ରହିତ ନିର୍ବାଣପ୍ରାୟ ଜୀବନକୁ । ଅତଏବ, ଏସବୁ ପ୍ରକାଶକରିବା ଅନୁଚିତ । ଏଭଳି ଅରୁଚିକର ବିଷୟ ଉପରେ ଲେଖିବା କିମ୍ବା କହିବା ବି ଠିକ୍ ନୁହେଁ । ଏଭଳି କରିବା ଗୋଟାଏ ଦୁର୍ଭାଗ୍ୟର ପରିସ୍ଥିତିକୁ ନାଟକୀୟ କରିବା ସଙ୍ଗେ ସମାନ । ଲଣ୍ଡନ ଓ ଭାରତରେ ଥିବା କର୍ତ୍ତୃପକ୍ଷ ଏ ସମ୍ପର୍କରେ ମିଥ୍ୟା ବିବରଣୀମାନ ପ୍ରକାଶକରୁଥିଲେ; କିନ୍ତୁ ଶବଗୁଡ଼ାକୁ ସହଜରେ ଉପେକ୍ଷା କରିହେଇ ପାରେନା; ଆଖିରେ ପଡ଼େ ।

ବଙ୍ଗ ଓ ଅନ୍ୟାନ୍ୟ ସ୍ଥାନର ଲୋକଙ୍କୁ ନରକର ଅଗ୍ନି ଯେତେବେଳେ ଗ୍ରାସକରୁଥିଲା, ଭାରତର ଉଚ୍ଚକର୍ତ୍ତୃପକ୍ଷ ଆମକୁ ପ୍ରଥମେ କହୁଥିଲେ ଯେ, ଯୁଦ୍ଧକାଳୀନ ସମୃଦ୍ଧି ଯୋଗୁଁ ଭାରତର ବହୁ ଅଞ୍ଚଳରେ କୃଷୀମାନେ ପ୍ରଚୁର ପରିମାଣରେ ଖାଦ୍ୟ ପାଇଁ ଲୁବ୍ଧ ହୋଇ-ପଡ଼ିଛନ୍ତି । ତା'ପରେ କୁହାଗଲା ଯେ, ଦୋଷ ରହିଛି ପ୍ରାଦେଶିକ ସ୍ୱାୟତ୍ତଶାସନରେ ଏବଂ ଭାରତର ବ୍ରିଟିଶ ସରକାର କିମ୍ବା ଲଣ୍ଡନର ଇଣ୍ଡିଆ ଅଫିସ ଏସବୁ ପ୍ରାଦେଶିକ ବ୍ୟାପାରରେ ସାମ୍ବିଧାନିକ ଜଟିଳତା ଦୃଷ୍ଟିରୁ ହସ୍ତକ୍ଷେପ କରିପାରୁନାହାନ୍ତି । ସେ ସମ୍ବିଧାନକୁ ଭାରତର ବଡ଼ଲାଟ୍ ତାଙ୍କର ନିଜର ଅସୀମ କ୍ଷମତା ବଳରେ ଶହଶହ ଆଜ୍ଞାପ୍ତି ଓ ଅଧ୍ୟାଦେଶ ବଳରେ ନିଲମ୍ବନ, ଲଙ୍ଘନ, ଅବଜ୍ଞା ଅଥବା ପରିବର୍ତ୍ତନ କରୁଥିଲେ । ସମ୍ବିଧାନର ଅର୍ଥ ହେଲା, ଭାରତର କାହା ପ୍ରତି ଯାହାର ଦାୟିତ୍ୱ ନାହିଁ, ସେହିପରି ଜଣେ ବ୍ୟକ୍ତିର ଅନିରୁଦ୍ଧ ଏକଚ୍ଛତ୍ର ଶାସନ ଏବଂ ଯାହାର କ୍ଷମତା ପୃଥିବୀରେ ଯେ କୌଣସି ସ୍ଥାନରେ ଯେ କୌଣସି ଛତ୍ରପତି ଅପେକ୍ଷା ଥିଲା ଅଧିକ । ସମ୍ବିଧାନକୁ ପ୍ରଧାନତଃ ଭାରତୀୟ ସିଭିଲ ସର୍ଭିସ୍ ଓ ପୋଲିସ କାର୍ଯ୍ୟକାରୀ କରୁଥିଲେ । ଏମାନେ ମୁଖ୍ୟତଃ ପ୍ରାଦେଶିକ ଲାଟଙ୍କ କର୍ତ୍ତୃତ୍ୱରେ ଚାଳିତ ହେଉଥିଲେ ଏବଂ ଲାଟ୍ ଥିଲେ ବଡ଼ଲାଟଙ୍କ ପ୍ରତିନିଧି ବା ଏଜେଣ୍ଟ । ଯଦି କେଉଁଠି ମନ୍ତ୍ରୀମାନେ ଥିଲେ, ଲାଟ୍ ସେମାନଙ୍କୁ ଅବଜ୍ଞା କରୁଥିଲେ । ଭଲ ହୁଅନ୍ତୁ କି ମନ୍ଦ ହୁଅନ୍ତୁ, ମନ୍ତ୍ରୀମାନେ ଏ ଅବସ୍ଥାରେ

ସୁଖୀ ନଥିଲେ ହେଁ; କିନ୍ତୁ ଉପର ଆଦେଶ ଅମାନ୍ୟ କରିବା କିମ୍ବା ଆଇ. ସି. ଏସ୍. ଓ ପୋଲିସ୍ ଯେଉଁମାନେ ମନ୍ତ୍ରୀଙ୍କ ଅଧୀନସ୍ଥ ବୋଲି ମନେକରାଯାଉଥିଲ, ସେମାନଙ୍କ ନିଷ୍ପତ୍ତିରେ ହସ୍ତକ୍ଷେପ କରିବା ପାଇଁ ସାହସ କରୁନଥିଲେ ।

ଶେଷରେ କିଛି କରାଗଲା, ଲୋକଙ୍କୁ କିଛି ରିଲିଫ୍ ଦିଆଗଲା; କିନ୍ତୁ ସେତେବେଳକୁ ଦଶ ଲକ୍ଷ କୋଡ଼ିଏ ଲକ୍ଷ କି ତିରିଶି ଲକ୍ଷ ଲୋକ ମରି ସାରିଲେଣି । ସେହି କେତୋଟି ବିଭୀଷିକାପୂର୍ଣ୍ଣ ମାସରେ ରୋଗରେ କିମ୍ବା ଅନାହାରରେ କେତେ ମରିଚନ୍ତି କିଏ ଜାଣେ ! ମୃତ୍ୟୁ ସଂଖ୍ୟାଠାରୁ ବହୁଗୁଣରେ ଅଧିକ, ଯେତେ କଙ୍କାଳସାର ବାଳକ ବାଳିକା ସୃତାଖିଅକେ ମୃତ୍ୟୁମୁଖରୁ ରକ୍ଷାପାଇଲେ, ସେମାନଙ୍କର ଦେହ ଓ ମନ ଚୂରମାରି ହୋଇଗଲା । ଏବେ ମଧ୍ୟ ବ୍ୟାପକ ଦୁର୍ଭିକ୍ଷ ଓ ରୋଗର ଭୟ ସମଗ୍ର ଦେଶ ଉପରେ ଘୋଟିରହିଚି ।

ପ୍ରେସିଡେଣ୍ଟ ରୁଜ୍‌ଭେଲ୍‌ଟଙ୍କ ଚତୁର୍ବିଧ ମୁକ୍ତି : ସେଥିରେ ଗୋଟିଏ ହେଉଚି ଅଭାବରୁ ମୁକ୍ତି । ତଥାପି ବିତ୍ତଶାଳୀ ଇଂଲଣ୍ଡ ଓ ଅଧିକତର ବିତ୍ତଶାଳୀ ଆମେରିକା ଭାରତର ଲକ୍ଷ ଲକ୍ଷ ଲୋକଙ୍କୁ ଯାହା ମୃତ୍ୟୁ କବଳକୁ ପ୍ରେରଣ କରୁଥିଲା ସେହି ଦେହର କ୍ଷୁଧା ପ୍ରତି ତିଳେମାତ୍ର ଦୃଷ୍ଟିପାତ କରୁନଥିଲେ; ଆଉ ଭାରତର ଜନସାଧାରଣଙ୍କୁ ଆତ୍ମାର ଯେଉଁ ଆଗ୍ନେୟ ପିପାସା ଅସ୍ଥିର କରୁଥିଲା, ସେଥିପ୍ରତି ମଧ୍ୟ ସେମାନଙ୍କ ଦୃଷ୍ଟି ନଥିଲା । କୁହାଯାଉଥିଲା ଯେ ଧନର ଅଭାବ ନାହିଁ, ଯୁଦ୍ଧକାଳୀନ ନାନାବିଧ ଆବଶ୍ୟକତା ଯୋଗୁଁ ଖାଦ୍ୟବାହୀ ଜାହାଜ ମିଳିବା କେବଳ କଷ୍ଟକର ହେଉଚି । ତଥାପି ସରକାରୀ ବାଧା ପ୍ରତିବନ୍ଧକ ଓ ବଙ୍ଗଦେଶର ଏହି ହୃଦୟବିଦାରକ କରୁଣ ଅବସ୍ଥାକୁ ଗୌଣକରିବା ଇଚ୍ଛା ସତ୍ତ୍ୱେ ଇଂଲଣ୍ଡ, ଆମେରିକା ଓ ଅନ୍ୟାନ୍ୟ ଦେଶର ସୁବେଦୀ ତଥା ହୃଦୟବାନ୍ ନରନାରୀ ଆମକୁ ସାହାଯ୍ୟ କରିବାପାଇଁ ଆଗେଇ ଆସିଲେ । ସର୍ବୋପରି ଚୀନ ଓ ଆୟର୍‌ଲେଣ୍ଡ୍‌ର ସରକାରମାନେ ନିଜ ନିଜ ସ୍ୱଳ୍ପ ସମ୍ବଳ ତଥା ବହୁବିଧ ଅସୁବିଧା ଭିତରେ ମଧ୍ୟ ଦୁର୍ଭିକ୍ଷ ଓ ଦୁଃସ୍ଥତାର ତିକ୍ତ ଅଭିଜ୍ଞତା ଦୃଷ୍ଟିରୁ ଏବଂ ଭାରତର ଦେହ ଓ ଆତ୍ମାର ପୀଡ଼ାର କାରଣ ଉପଲବ୍ଧି କରି, ଉଦାର ଭାବରେ ସାହାଯ୍ୟ ପଠାଇଲେ । ଭାରତର ସ୍ମୃତି ଅତି ଦୀର୍ଘ । ଅନ୍ୟ ଯାହା କିଛି ସେ ମନେରଖୁ ଅବା ଭୁଲିଯାଉ ପଛେ, ଏ ପ୍ରକାର ବନ୍ଧୁତା ଓ ଉଦାରତା ଭୁଲିପାରିବନାହିଁ ।

## ୩. ଗଣତନ୍ତ୍ର ପାଇଁ ସଂଗ୍ରାମ

ଏସିଆ, ୟୁରୋପ ଓ ଅଫ୍ରିକା ମହାଦେଶମାନଙ୍କରେ ଏବଂ ପ୍ରଶାନ୍ତ ମହାସାଗର, ଆଟଲାଣ୍ଟିକ୍ ମହାସାଗର ଓ ଭାରତ ମହାସାଗରର ବିଶାଳ ଅଞ୍ଚଳମାନଙ୍କରେ ଯୁଦ୍ଧ ତାର ଭୟାବହ ବିଭବମାନ ଘେନି ବିରାଜିତ ହୋଇଥିଲା । ଚୀନର ପ୍ରାୟ ସାତବର୍ଷ, ୟୁରୋପ ଓ ଆଫ୍ରିକାରେ ସାଢ଼େ ଚାରି ବର୍ଷରୁ ଅଧିକ ଏବଂ ସମଗ୍ର ପୃଥିବୀରେ ଦୁଇବର୍ଷ ଚାରିମାସ ଧରି ଯୁଦ୍ଧ ଲାଗିଥିଲା । ପୃଥିବୀକୁ ଅଧିକାର କରିବାପାଇଁ ଫାସିଷ୍ଟବାଦ ଓ ନାଜୀବାଦର ପ୍ରୟାସ ବିରୁଦ୍ଧରେ ଏହି ଯୁଦ୍ଧ । ଇତିମଧ୍ୟରେ ଏଠାରେ ଓ ଭାରତର ଅନ୍ୟତ୍ର ମୁଁ ପ୍ରାୟ ତିନି ବର୍ଷ

ଜେଲରେ କଟାଇ ସାରଲିଣି ।

ଆଜି ମନେପଡୁଛି ଫାଶିଷ୍ଟବାଦ ଓ ନାଜିବାଦର ପ୍ରାରମ୍ଭିକ ଅବସ୍ଥାରେ ସେଥିପ୍ରତି ମୋର ମନରେ କି ପ୍ରକାର ପ୍ରତିକ୍ରିୟା ହୋଇଥିଲା; ମୋର କେବଳ ନୁହେଁ ଭାରତର ଅନେକ ଲୋକଙ୍କର । ମନେପଡ଼େ, ଜାପାନର ଚୀନ ଆକ୍ରମଣ ଭାରତକୁ ଗଭୀର ଭାବରେ ବିଚଳିତ କରି ଉଭୟ ଦେଶର ଯୁଗଯୁଗର ବନ୍ଧୁତା କିପରି ପୁନରୁଜ୍ଜୀବିତ କରିଥିଲା; ଆବିସିନିଆ ଉପରେ ଇଟାଲୀର ଅବିମୃଷ୍ୟକାରିତା କିପରି ଆମକୁ ଅଧୀର କରିଥିଲା; ଚେକୋସ୍ଲୋଭାକିଆ ପ୍ରତି ବିଶ୍ୱାସଘାତକତା ଆମକୁ କିପରି ଚକିତ ଓ ଆହତ କରିଥିଲା; ବୀରତ୍ୱପୂର୍ଣ୍ଣ ଦୀର୍ଘ ସଂଗ୍ରାମ ପରେ ପ୍ରଜାତନ୍ତ୍ର ସ୍ପେନ୍‌ର ପତନ ଆମକୁ କିପରି ବୋଧହୋଇଥିଲା ଏକ ବ୍ୟକ୍ତିଗତ ଦୁର୍ଦ୍ଦଶା ଭଳି । ଆକ୍ରମଣରେ ବାହ୍ୟ ବିଭବ କେବଳ ନୁହେଁ, ଯେଉଁଥିରେ ଫାଶିଷ୍ଟବାଦ ଓ ନାଜିବାଦ ମଜ୍ଜି ରହିଥିଲା, ବରଂ ସେହିସବୁ ଘୋର ଅସଭ୍ୟତା ଓ ସାଙ୍ଘାତିକ ବର୍ବରତା, ସେହି ସବୁ ନୀତି ଯାହା ଉପରେ ସେମାନେ ପ୍ରତିଷ୍ଠିତ ଥିଲେ ଏବଂ ଯାହା ସେମାନେ ଉଚ୍ଚ ସ୍ୱରରେ ଓ ନିଃସଙ୍କୋଚ ଭାବରେ ଘୋଷଣା କରୁଥିଲେ, ଜୀବନର ଯେସବୁ ତତ୍ତ୍ୱ ଯେଉଁଥିରୁ ସେମାନେ ନିଜକୁ ଗଢ଼ିବାର ଉଦ୍ୟମ କରୁଥିଲେ, ସେସବୁ ଆମେ ଗ୍ରହଣ କରିପାରିନଥାଲୁ; କାରଣ ବର୍ତ୍ତମାନ ଆମେ ଜୀବନର ଯେଉଁସବୁ ମୂଲ୍ୟବୋଧ ଉପରେ ବିଶ୍ୱାସକରୁଁ ଏବଂ ଯାହା ଯୁଗଯୁଗ ଧରି ଆମେ ଆପଣାର ମଣି ଆସିଛୁ, ଫାଶିଷ୍ଟବାଦ ଓ ନାଜିବାଦ ସେ ସବୁର ବିରୋଧାଚରଣ କରୁଥିଲା । ଯଦିଓ ଆମେ ଆମର ଜାତୀୟ ଦୃଢ଼ିରୁ ବିଚ୍ଛିନ୍ନ ହୋଇପଡ଼ିଥିଲୁ, ଆଉ ଆମର କୂଳ ଏକ ରକମ ହରାଇସାରିଥିଲୁ, ଆମ ନିଜର ଅଭିଜ୍ଞତା ବିସ୍ମୃତ ହୋଇଥିଲୁ, ତଥାପି ସେସବୁ ଆମ ପାଖରେ ଯେତେ ଭିନ୍ନ ବେଶରେ ଓ ଶୋଭନୀୟତା ଦୃଷ୍ଟିରୁ କେତେକାଂଶରେ ଛଦ୍ମବେଶରେ ସୁଦ୍ଧା ଆସି ଉପନୀତ ହେଉଥିଲେ ମଧ୍ୟ ସେଥିରୁ ଆମେ ଯଥେଷ୍ଟ ହୃଦୟଙ୍ଗମ କରିପାରିଥିଲୁ ରାଷ୍ଟ୍ର ଓ ଜୀବନ ସମ୍ପର୍କରେ ଏହିସବୁ ନାଜି ନୀତି ଓ ତତ୍ତ୍ୱର ଉଦ୍ଦେଶ୍ୟ କଣ । କାରଣ ଆମର ଲୋକେ ବହୁଦିନ ଧରି ସେହିଭଳି ନୀତି ଓ ଶାସନ ପ୍ରଣାଳୀର ଶିକାର ହୋଇ ରହିଥିଲେ । ଅତଏବ, ଫାଶିଷ୍ଟବାଦ ଓ ନାଜିବାଦ ବିରୁଦ୍ଧରେ ଆମ ମନରେ ସତ୍ୱର ଓ ସଘନ ପ୍ରତିକ୍ରିୟା ଦେଖାଦେଲା ।

ମୋର ମନେପଡୁଛି, ୧୯୩୬ ମସିହା ମାର୍ଚ୍ଚମାସ ଆରମ୍ଭରେ ତାଙ୍କ ସଙ୍ଗେ ଦେଖା କରିବା ପାଇଁ ସାଇନର୍ ମୁସୋଲିନିଙ୍କର ପୁନଃପୁନଃ ଆମନ୍ତ୍ରଣ ମୁଁ କିପରି ପ୍ରତ୍ୟାଖ୍ୟାନ କରିଥିଲି । ବ୍ରିଟେନ୍‌ର ବହୁ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ଯେଉଁମାନେ ଇଟାଲୀ ଯୁଯୁତ୍ସୁ ହେବା ପରେ ତାର ଫାଶିଷ୍ଟ ବ୍ୟକ୍ତିନାୟକ ପ୍ରତି କଠୋର ଭାଷା ବ୍ୟବହାର କରିଥିଲେ, ସେହିମାନେ ହିଁ ପ୍ରଥମେ ତାଙ୍କୁ ସଶ୍ରଦ୍ଧ ଭାଷାରେ ଉଲ୍ଲେଖ କରୁଥିଲେ ଏବଂ ତାଙ୍କର ଶାସନ ପ୍ରଣାଳୀ ସମ୍ପର୍କରେ ଉଲ୍ଲାସ ପ୍ରକାଶ କରୁଥିଲେ ।

ଦୁଇବର୍ଷ ପରେ, ମ୍ୟୁନିଚ୍‌ପୂର୍ବ ଗ୍ରୀଷ୍ମ ଋତୁରେ, ଜର୍ମାନୀ ପରିଦର୍ଶନ ପାଇଁ ନାଜି ସରକାର ପକ୍ଷରୁ ମୁଁ ନିମନ୍ତ୍ରଣ ପାଇଥିଲି । ସେଥିରେ ଉଲ୍ଲେଖ ଥିଲା ଯେ ନାଜିବାଦ ପ୍ରତି ମୋର ବିରୋଧିତା ଜାଣି ସୁଦ୍ଧା ଜର୍ମାନୀ ଦେଖି ଯିବାପାଇଁ ସେମାନେ ମତେ ଲୋଡ଼ୁଛନ୍ତି ପର୍ଯ୍ୟଟକ

ଭାବରେ; ମୋର ନିଜ ନାମରେ କିମ୍ବା ଅଜ୍ଞାତ ଭାବରେ ଯେପରି ମୁଁ ଚାହିଁବି, ଯାଇପାରିବି ଏବଂ ସେ ଦେଶରେ ଯେଉଁଠିକି ଯାଇ ମୁଁ ଯାହା ଦେଖିବାକୁ ଚାହିଁବି ସେଥିରେ ମୋର ପୂର୍ଣ୍ଣ ସ୍ୱାଧୀନତା ରହିବ । ଧନ୍ୟବାଦ ଜଣାଇ ମୁଁ ପୁନର୍ବାର ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କଲି; କିନ୍ତୁ ମୁଁ ସେହି 'ଦୂରଦେଶ' ଜେକୋସ୍ଲୋଭାକିଆକୁ ଗଲି, ଯାହା ସମ୍ପର୍କରେ ଇଂଲଣ୍ଡର ସେ ସମୟର ପ୍ରଧାନମନ୍ତ୍ରୀ କିଛି ଜାଣିନଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ ।

ମ୍ୟୁନିଚ୍ ପୂର୍ବରୁ ମୁଁ ଇଂଲଣ୍ଡ ମନ୍ତ୍ରିମଣ୍ଡଳର କେତେକ ସଭ୍ୟ ଓ ଅନ୍ୟାନ୍ୟ ମୁଖ୍ୟ ରାଜନୀତିଜ୍ଞମାନଙ୍କ ସଙ୍ଗେ ସାକ୍ଷାତ କରି ସେମାନଙ୍କ ସମ୍ମୁଖରେ ଫାଶିଷ୍ଟବାଦ ଓ ନାଜୀବାଦ ବିରୁଦ୍ଧରେ ମୋର ବିଚାର ବ୍ୟକ୍ତ କରିଥିଲି । ମୁଁ ଦେଖିଲି, ମୋର ବିଚାରକୁ ସେମାନେ ସ୍ୱାଗତ କରିନାହାନ୍ତି । ମୁଁ ଯାହା ବୁଝିଲି, ସେମାନେ ମତେ କହିବାକୁ ଚାହାଁନ୍ତି ଯେ ମୋର ମତ ବ୍ୟକ୍ତକରିବା ପୂର୍ବରୁ ଅନ୍ତତଃ କେତେ ବିଷୟ ବିଚାରକି ନେବା ଉଚିତ ।

ଜେକୋସ୍ଲୋଭାକିଆର ସଙ୍କଟବେଳେ, ପ୍ରାଗ୍ ଓ ସୁଡ଼େଟେନ୍‌ଲେଣ୍ଡରେ, ଲଣ୍ଡନ ଓ ପେରିସ୍‌ରେ, ଜେନେଭାରେ ଲିଗ୍ ଅସେମ୍ବ୍ଲି ଯେଉଁଠି ସେତେବେଳେ ଚାଲିଥିଲି, ଫ୍ରାନ୍ସ ଓ ଇଂଲଣ୍ଡର ରାଷ୍ଟ୍ରନୀତି ସମ୍ପର୍କରେ ମୁଁ ଯାହା ଦେଖିଲି, ସେଥିରେ ବିସ୍ମିତ କେବଳ ନୁହେଁ, ବିବ୍ରତ ବି ହୋଇଥିଲି । ସେ ଆଚରଣକୁ 'ମନ ଧରିବା' କହିଲେ ଠିକ୍ ଅବସ୍ଥା ବୁଝି ହେବନି । ଏହି ଶବ୍ଦଟି ପଛରେ ହିଟଲର୍‌ର ପ୍ରତି ଭୟ କେବଳ ନୁହେଁ, ଯଥେଷ୍ଟ ପ୍ରଚ୍ଛନ୍ନ ପ୍ରଶଂସା ବି ରହିଥିଲା ।

ଆଉ ବର୍ତ୍ତମାନ ଭାଗ୍ୟଚକ୍ରର ବିଚିତ୍ର ଗତି ଫଳରେ ମତେ ଆଉ ମୋ ଭଳି ଲୋକଙ୍କୁ ଜେଲରେ କାଳାତିପାତ କରିବାକୁ ପଡୁଛି, ଯେତେବେଳେ ଫାଶିଷ୍ଟବାଦ ଓ ନାଜୀବାଦ ବିରୁଦ୍ଧରେ ଘୋର ଯୁଦ୍ଧ ଚାଲିଛି ଏବଂ ସେମାନଙ୍କ ଭିତରୁ ଅନେକ ଯେଉଁମାନେ ହିଟଲର ଓ ମୁସୋଲିନି ଆଗରେ ଦିନେ ସମ୍ଭ୍ରମରେ ମୁଣ୍ଡ ନୁଆଁଉଥିଲେ, ଯେଉଁମାନେ ଚୀନ ଉପରେ ଜାପାନର ଆକ୍ରମଣକୁ ସମର୍ଥନ ଜଣାଇଥିଲେ, ସେହିମାନେ ଆଜି, ସ୍ୱାଧୀନତା ଓ ଗଣତନ୍ତ୍ର ପାଇଁ, ଫାଶିଷ୍ଟବାଦ ବିରୁଦ୍ଧରେ, ପତାକା ଉଚ୍ଚରେ ତୋଳି ଧରିଚନ୍ତି ।

ଭାରତର ପରିବର୍ତ୍ତନ ବି ପ୍ରଣିଧାନଯୋଗ୍ୟ । ଏଠାରେ ମଧ୍ୟ ସବୁ ଦେଶଭଳି 'ରାଜାନୁରାଗୀମାନେ' ଅଛନ୍ତି ଯେଉଁମାନେ ସରକାରୀ ମହଲର ନିକଟ ପରିବୃତ୍ତିକାରେ ବିଚରଣ କରି ସରକାରୀ ଉକ୍ତିର ପ୍ରତିଧ୍ୱନି କରନ୍ତି; ଆଉ ମନେକରନ୍ତି, ସେମାନଙ୍କର ଏହି ଚରିତ୍ରଗତ କୃପାନ୍ୱେଷୀ ଆଚରଣ ସରକାରଙ୍କ ସନ୍ତୋଷବିଧାନ କରିବ । ଦିନଥିଲା, ତାହା ହେତେ ଦୂର ଅତୀତର ବି ନୁହେଁ, ଯେବେ ଏହି ଲୋକେ ହିଟଲର୍ ଓ ମୁସୋଲିନିକୁ ଉଚ୍ଛ୍ୱସିତ-ଭାବରେ ପ୍ରଶଂସାକରି ସେମାନଙ୍କର ଆଦର୍ଶ ଅନୁସରଣ କରିବା ନିମନ୍ତେ ଉଦ୍‌ବୋଧନ ଦେଉଥିଲେ, ଆଉ ସୋଭିଏତ୍ ୟୁନିଅନ୍ ଉପରେ ଅନର୍ଗଳ ଭାବରେ ଅଭିଶାପ ଅଜାଡ଼ୁଥିଲେ । ଏବେ ଆଉ ସେ କଥା ନାହିଁ, କାରଣ ବର୍ତ୍ତମାନ ପାଗ ବଦଳିଯାଇଛି । ସେମାନେ ଉଚ୍ଚ ସରକାରୀ କର୍ମଚାରୀ ଆଉ ଉଚ୍ଚ କଣ୍ଠରେ ସେମାନେ ଆଜି ଫାଶିଷ୍ଟବାଦ ଓ ନାଜୀବାଦ ବିରୁଦ୍ଧରେ ମତ ପ୍ରକାଶ କରୁଚନ୍ତି ଏବଂ ଧୀର ଢଙ୍ଗରେ ଯଦିଓ ଗଣତନ୍ତ୍ର ସମ୍ପର୍କରେ ବି କହୁଚନ୍ତି

ଯେ ତାହା ବାଞ୍ଛନୀୟ; କିନ୍ତୁ ନିକଟରେ ପ୍ରାପ୍ତବ୍ୟ ନୁହେଁ । ମୋର ମନରେ ବିସ୍ମୟ ଜାଗେ, ଯଦି ବିଶ୍ୱର ଘଟଣାସ୍ରୋତ ଅନ୍ୟ ରକମ ମୋଡ଼ ଧରିଥାନ୍ତା, ଏମାନେ କ'ଣ କରିଥାନ୍ତେ ? ଏଥିରେ ଅନୁମାନ କରିବାର କିଛି ନାହିଁ; କାରଣ କ୍ଷମତା ଯାହା ହାତରେ ରହନ୍ତା, ଏମାନେ ଫୁଲମାଳ ଓ ଅଭିନନ୍ଦନପତ୍ର ଧରି ସ୍ୱାଗତ ଜଣାନ୍ତେ ।

ଯୁଦ୍ଧର ବହୁବର୍ଷ ପୂର୍ବରୁ ଯୁଦ୍ଧ ସମ୍ପର୍କରେ ମୋର ମନ ପୂର୍ଣ୍ଣହୋଇ ରହିଥିଲା । ମୁଁ ସେ ସମ୍ପର୍କରେ ଚିନ୍ତାକରିଛି, କହିଛି, ଲେଖିଛି ଏବଂ ମନେମନେ ତାର ସମ୍ମୁଖୀନ ହେବା-ପାଇଁ ନିଜକୁ ପ୍ରସ୍ତୁତ ବି କରିଛି । ଏହି ବିପୁଳ ସଂଘର୍ଷରେ ଭାରତ ଆଗ୍ରହ ସହକାରେ ଓ ସକ୍ରିୟ ଭାବରେ ଅଂଶ ଗ୍ରହଣ କରିବା ମୁଁ ଚାହୁଁଥିଲି; କାରଣ ମୁଁ ଅନୁଭବ କରିଛି ଯେ, ଏଥିରେ ଜୀବନର ବହୁ ମୂଲ୍ୟବୋଧ ଉପରେ ବାଜି ବସିବ ଏବଂ ଏହି ସଂଘର୍ଷ ଭିତରୁ ଭାରତ ତଥା ସମଗ୍ର ବିଶ୍ୱପାଇଁ ବହୁ ବୈପ୍ଳବିକ ପରିବର୍ତ୍ତନ ଜନ୍ମନେବ । ସେତେବେଳେ, ଭାରତ ଉପରେ ହଠାତ୍ କୌଣସି ଆକ୍ରମଣ ଆଶଙ୍କା ମୁଁ କରିନଥିଲି; ତଥାପି ମୁଁ ଚାହୁଁଥିଲି ସଂଗ୍ରାମରେ ଭାରତ ତାର ଯୋଗ୍ୟ ଆସନ ଗ୍ରହଣକରୁ; କିନ୍ତୁ ମୋର ସଂପୂର୍ଣ୍ଣ ହୃଦ୍‌ବୋଧ ହୋଇଥିଲା ଯେ, ଭାରତ ଏ'ସଂଗ୍ରାମରେ ଯୋଗଦେଇପାରେ କେବଳ ଗୋଟିଏ ସ୍ୱାଧୀନଦେଶ ଭାବରେ ଓ ଅନ୍ୟ ଜାତିମାନଙ୍କ ସଙ୍ଗେ ସମାନ ଏକ ଜାତି ଭାବରେ । ଏହା ଥିଲା ଭାରତର ବୃହତ୍ତମ ରାଜନୈତିକ ସଙ୍ଗଠନ ଭାରତୀୟ ଜାତୀୟ କଂଗ୍ରେସର ମନୋଭାବ । ବର୍ଷ ବର୍ଷ ଧରି ଜାତୀୟ କଂଗ୍ରେସ ସାମ୍ରାଜ୍ୟବାଦର ବିରୋଧିତା କରିବା ସଙ୍ଗେ ସଙ୍ଗେ ନାଜୀବାଦ ଓ ଫାଶିଷ୍ଟ-ବାଦର ମଧ୍ୟ ବିରୋଧ କରିଆସୁଥିଲା । ପ୍ରଜାତନ୍ତ୍ର ସ୍ପେନ୍ ପାଇଁ, ଚେକୋସ୍ଲୋଭାକିଆ ପାଇଁ ଓ ସବୁ ଅବସ୍ଥାରେ ଚୀନପାଇଁ ଜାତୀୟ କଂଗ୍ରେସ ନିଜର ଦୃଢ଼ ସମର୍ଥନ ଜଣାଇଥିଲା । ଆଉ ବର୍ତ୍ତମାନ, ପ୍ରାୟ ଦୁଇବର୍ଷ ହେବ, ସେହି କଂଗ୍ରେସ ବେଆଇନ ଘୋଷିତ ହୋଇଛି । ତାର ସମସ୍ତ କାର୍ଯ୍ୟ ବନ୍ଦ କରାଯାଇଛି । କଂଗ୍ରେସ ଆଜି ଜେଲ୍‌ରେ । ତାର ବିଧାନସଭା ସଭ୍ୟ, ବାଚସ୍ପତି, ପୂର୍ବତନ ମନ୍ତ୍ରୀ, ମେୟର ଓ ମ୍ୟୁନିସିପାଲିଟି ଚେୟାରମେନ୍‌ମାନେ ଜେଲ୍‌ରେ ରହିଛନ୍ତି ।

ଇତ୍ୟବସରରେ ଯୁଦ୍ଧ ଚାଲିଛି ଗଣତନ୍ତ୍ର ପାଇଁ, ଆଟଲାଂଟିକ୍ ଚାର୍ଟର ପାଇଁ, ଆଉ ଚରୁର୍ବିଧ ମୁକ୍ତିପାଇଁ ।

## ୪. ଜେଲ୍‌ରେ ସମୟ : କର୍ମର ପ୍ରରୋଚନା

''ମନେହୁଏ, ଜେଲ୍‌ରେ ସମୟର ପ୍ରକୃତି ଯେପରି ବଦଳିଯାଏ । ବର୍ତ୍ତମାନ ଅସ୍ତିତ୍ୱ ପ୍ରାୟ ରହେନି, କାରଣ ମୃତ ଅତୀତରୁ ବର୍ତ୍ତମାନକୁ ଯାହା ବିଚ୍ଛିନ୍ନ କରନ୍ତା, ସେହି ଅନୁଭୂତି ଓ ସମ୍ବେଦନ ରହେନି । ଏପରିକି ସକ୍ରିୟ, ଜୀବନ୍ତ ଓ ମୁମୂର୍ଷୁ ବାହାର ବିଶ୍ୱର ସମ୍ବାଦରେ ଗୋଟାଏ ପ୍ରକାର ସ୍ୱପ୍ନମୟ ଅବାସ୍ତବତା ଓ ଅତୀତ ଭଳି ଅପରିବର୍ତ୍ତନୀୟଭାବ ଓ ସ୍ଥାଣୁତ୍ୱ ପରିଲକ୍ଷିତ ହୁଏ । ମଣିଷର ଚିନ୍ତା ତାକୁ ବର୍ତ୍ତମାନରୁ ଟାଣିନେଇ, ଅତୀତ ହେଉ କି

ଭବିଷ୍ୟତ ହେଉ, ସେଥିରେ ଗୋଟାଏ ପ୍ରକାର ବାସ୍ତବତାର ଅଭିଜ୍ଞତା ନ ହେବା ଯାଏଁ ବାହ୍ୟ ବିଷୟମୁଖ ସମସ୍ତ ବିଲୀନ ହୋଇଯାଇ ନିମ୍ନସ୍ତରରେ ଆନ୍ତର ଓ ଆତ୍ମସୁଖଜ୍ଞାନ କେବଳ ପଡ଼ିରହେ । ଅଗଷ୍ଟ କୋମ୍‌ତେ କହିବା ଭଳି ଅତୀତରେ ନ୍ୟସ୍ତ ମଲ ମଣିଷର ଜୀବନ ଆମେ ଯାପନ କରୁଁ । ଏହାର ସତ୍ୟତା ବିଶେଷଭାବରେ ଜେଲରେ ପ୍ରମାଣିତ ହୋଇଥାଏ, ଯେଉଁଠି ଅତୀତର ସ୍ମୃତି କିମ୍ବା ଭବିଷ୍ୟତର କଳ୍ପନାରେ ଆମେ ଆମର କ୍ଷୁଧିତ ତଥା ଅବରୁଦ୍ଧ ପ୍ରକ୍ଷୋଭ ନିମନ୍ତେ ଉପଜୀବ୍ୟ ସଂଗ୍ରହର ପ୍ରୟାସ କରିଥାଉଁ ।

ଅତୀତ ଦେହରେ ଗୋଟାଏ ପ୍ରକାର ନିଶ୍ଚଳତା ଓ ଚିରନ୍ତନତା ବିଦ୍ୟମାନ । ଏହା ପରିବର୍ତ୍ତିତ ହୁଏନି ଏବଂ ଏଥିରେ ଏକ ପ୍ରକାର ଶାଶ୍ୱତ ସ୍ପର୍ଶ ଲାଗିଥାଏ; ଯେପରି ଦେଖିବାକୁ ମିଳେ କୌଣସି ବ୍ରୋଞ୍ଜ୍ ଅଥବା ମର୍ମର ପ୍ରତିମୂର୍ତ୍ତିରେ କିମ୍ବା ଅଂକିତ କୌଣସି ଚିତ୍ରରେ । ବର୍ତ୍ତମାନର ଝଡ଼ଝଞ୍ଜା ଓ ବିକ୍ଷୋଭରେ ଅବିଚଳିତ ଅତୀତ ତାର ଗରିମା, ତାର ପ୍ରଶାନ୍ତି ବଜାୟ ରଖେ ଏବଂ ତାର ସମାଧି ଗହ୍ୱରରେ ଆଶ୍ରୟ ନେବା ପାଇଁ ଅଶାନ୍ତ-ଆତ୍ମା ଓ ଯନ୍ତ୍ରଣାବିକ୍ଷୁବ୍ଧ ମନକୁ ପ୍ରଲୋଭିତ କରିଥାଏ । ଅତୀତ ଦେହରେ ଶାନ୍ତି ଅଛି ନିରାପତ୍ତା ଅଛି ଏବଂ ଗୋଟାଏ ପ୍ରକାର ଆଧ୍ୟାତ୍ମିକ ଗୁଣ ମଧ୍ୟ କେହି କେହି ଅନୁଭବ କରିଥାନ୍ତି ।

କିନ୍ତୁ ଅତୀତ ସଙ୍ଗେ ସମସ୍ୟା ଓ ସଙ୍ଘାତବହୁଳ ବର୍ତ୍ତମାନର ପ୍ରାଣସଂସ୍ପୃକ୍ତ ସଂଯୋଗର ସନ୍ଧାନ ଆମେ ଯଦି ନ ପାଉଁ ତାହାହେଲେ ଜୀବନ ଜୀବନ-ପଦବାଚ୍ୟ ହେବନାହିଁ । ଏହା ଏକ ପ୍ରକାର କଳା ନିମନ୍ତେ କଳାର ଧ୍ୟାନ ଭଳି । ଜୀବନର ଯାହା ଆଧାର ସେ ପ୍ରାଣମୟୀ ପ୍ରେରଣା ଓ କର୍ମର ଆହ୍ୱାନ ଅତୀତରେ ନଥାଏ, ସେ ପ୍ରେରଣା ଓ ଆହ୍ୱାନ ଅଭାବରେ ଜୀବନର ଆଶା ଓ ବିଶ୍ୱାସ କ୍ରମଶଃ ଲୋପପାଏ, ଅସ୍ତିତ୍ୱର ନିମ୍ନସ୍ତରରେ ଜୀବନ ଆସେ ପହଞ୍ଚେ ଏବଂ ଧୀରେ ଧୀରେ ଅସ୍ତିତ୍ୱହୀନତାରେ ମିଳାଇ ଯାଏ । ଆମେ ଅତୀତର ବନ୍ଦୀ ହୋଇପଡ଼ୁ ଏବଂ ତାର ସ୍ଥାଣୁତ୍ୱର ଗୋଟାଏ ଅଂଶ ଆମପ୍ରାଣରେ ଲାଗିରହେ । ଜେଲ୍‌ରେ, ଯେଉଁଠି କର୍ମତତ୍ପରତା ରହେନି ଏବଂ ଆମେ ଜେଲ୍-ଜୀବନର ଧାରାବାହିକତାର ଦାସ ହୋଇପଡ଼ୁ ସେଇଠି ମନର ଏ ଗତି ସହଜ ।

ତଥାପି ଅତୀତ ସବୁବେଳେ ଆମ୍ ସଙ୍ଗେ ରହିଛି ଏବଂ ଆମେ ବର୍ତ୍ତମାନ ଯାହା ହୋଇଥାଉଁ ଓ ଯାହା ଆମେ ପାଇଛୁ, ଅତୀତରୁ ହିଁ ଆସିଛି । ଆମେ ତାର ହିଁ ସୃଷ୍ଟି ଏବଂ ତା' ଭିତରେ ବୁଡ଼ିରହି ଆମେ ଜୀବନ ଅତିବାହିତ କରୁଁ । ଅତୀତକୁ ନ ବୁଝି ଏବଂ ଆମ ଭିତରେ ତାହା ଜୀବନ୍ତ ରହିଛି ବୋଲି ଅନୁଭବ ନ କରି, ବର୍ତ୍ତମାନକୁ ବୁଝିବା ସମ୍ଭବ ନୁହେ । ବର୍ତ୍ତମାନ ସଙ୍ଗେ ତାକୁ ମିଶାଇ ଭବିଷ୍ୟତକୁ ପ୍ରସାରିତ କରିବା, ଯେଉଁଠି ଏଭଳି ମିଳନ ସମ୍ଭବ ନୁହେଁ, ସେଇଠି ତା' ଦେହରୁ ବିଚ୍ଛିନ୍ନ ହେବା, ଚିନ୍ତା ଓ କର୍ମ ନିମନ୍ତେ ଏ ସବୁକୁ ତରଙ୍ଗାୟିତ ଓ ଗତିଶୀଳ କରିବା ହେଉଛି ଜୀବନ । ଯେକୌଣସି ଗୁରୁତ୍ୱପୂର୍ଣ୍ଣ କର୍ମର ଆହ୍ୱାନ ସତ୍ତାର ଗଭୀରତମ ପ୍ରଦେଶରୁ ଉତ୍ଥିତ ହୋଇଥାଏ । ବ୍ୟକ୍ତି ବିଶେଷର ସେହି ଦୀର୍ଘ ଅତୀତ, ଏପରିକି ଜାତିର ମଧ୍ୟ, କର୍ମର ସେହି ମନସ୍ତାତ୍ତ୍ୱିକ ମୁହୂର୍ତ୍ତ ନିମନ୍ତେ ପୃଷ୍ଠଭୂମି ପ୍ରସ୍ତୁତ କରେ । ଯେତେ ସବୁ ଜାତୀୟ ସ୍ମୃତି, ବଂଶଗତ, ପରିବେଷ୍ଟନୀ ଓ ତାଲିମର ପ୍ରଭାବ, ମଗ୍ନଚେତନାର ଆବେଗ, ଶିଶୁ

ଓ ବାଲ୍ୟାବସ୍ଥା ଅବଧି ଯେତେସବୁ ଚିନ୍ତା, ସ୍ୱପ୍ନ ଓ କ୍ରିୟା, ବିଚିତ୍ର ତଥା ବିପୁଳ ଏକ ସମ୍ମିଶ୍ରଣରେ ନୂତନ କ୍ରିୟା ନିମନ୍ତେ ଅବଶ୍ୟମ୍ଭାବୀ ଭାବରେ ମନୁଷ୍ୟକୁ ଟାଣିନିଏ ଏବଂ ଏହି ସମ୍ମିଶ୍ରଣ ଭବିଷ୍ୟତକୁ ପ୍ରଭାବିତ କରିବା ନିମନ୍ତେ ଆଉ ଏକ ହେତୁରେ ପରିଣତ ହୁଏ । ଏହା ଭବିଷ୍ୟତକୁ ପ୍ରଭାବିତ କରେ ଆଂଶିକ ଭାବରେ, ହୁଏତ ବହୁ ଅଂଶରେ ନିର୍ଦ୍ଦିଷ୍ଟ କରେ । ତଥାପି, ଏହା ସମ୍ପୂର୍ଣ୍ଣ ଭାବରେ ଅଦୃଷ୍ଟବାଦ ନୁହେଁ ।

ଶ୍ରୀ ଅରବିନ୍ଦ ଘୋଷ ବର୍ତ୍ତମାନକୁ 'ପବିତ୍ର ଓ ଅକ୍ଷତ ମୁହୂର୍ତ୍ତ' ନାମରେ ଅଭିହିତ କରିଛନ୍ତି । ଅସ୍ତିତ୍ୱ ଓ ସମୟର ଏହି କ୍ଷୁରଧାର ଅତୀତକୁ ଭବିଷ୍ୟତ ଦେହରୁ ଅଲଗାକରେ । ହୁଏତ ତତ୍କ୍ଷଣାତ୍, ହୁଏତ ବି ନୁହେଁ । ଏହି ଉକ୍ତି ଆକର୍ଷକ ହେଲେ ବି ଏହାର ତାତ୍ପର୍ଯ୍ୟ ବା କଣ ? ଏହି ଅକ୍ଷତ ମୁହୂର୍ତ୍ତ ତାର ସମସ୍ତ ଅନାବୃତ ସୂକ୍ଷ୍ମତା ଯେନ ଭବିଷ୍ୟତର ଅବଗୁଣ୍ଠନ ଭିତରେ ଉଠିଆସେ ଓ ଆମ ସଂସ୍ପର୍ଶରେ ତତ୍କ୍ଷଣାତ୍ ମଳିନ ତଥା ପ୍ରଭାହୀନ ଅତୀତରେ ପରିଣତ ହୁଏ । ଆମେ କଣ ତେବେ ତାକୁ ମଳିନ ଅଶୁଦ୍ଧ କରୁଁ ? ନା ଅତୀତର ସମସ୍ତ ଗୃଢ଼ଜାବାବୃତ୍ତି ସଙ୍ଗେ ଜଡ଼ିତ ବୋଲି ସେହି ମୁହୂର୍ତ୍ତ, ଯେତେ ଭାବରେ କୁହାଯାଏ, ଅକ୍ଷତ ନୁହେଁ ।

ଦାର୍ଶନିକ ବିଚାରରେ ମାନବିକ ସ୍ୱାଧୀନତା ବୋଲି କିଛି ଅଛି ନା କେବଳ ଗୋଟାଏ ସ୍ୱୟଂକ୍ରିୟ ଅଦୃଷ୍ଟବାଦ ଅଛି, ମୁଁ ଜାଣେନି । ଯେପରି ଅନୁମିତ ହୁଏ, ଯେତେସବୁ ଘଟଣା ଯାହା ବ୍ୟକ୍ତିକୁ ଅଭିଭୂତ କରେ, ତାହା ବିଶେଷ ଭାବରେ ଅତୀତର ଜଟିଳ ମାନସିକତା ଦ୍ୱାରା ସୀମାବଦ୍ଧ ହୁଏ । ଖୁବ୍ ସମ୍ଭବ ଅନ୍ତରରେ ଯେଉଁ ଉଚ୍ଛ୍ୱାସ ସେ ଅନୁଭବ କରେ ଯେଉଁ ପ୍ରତୀୟମାନ ସ୍ୱେଚ୍ଛା ସେ ପ୍ରୟୋଗକରେ ତାହା ସୁପ୍ରତିବନ୍ଧ । ସ୍କୁପେନ ହାଏର୍ କହିଚନ୍ତି, "ମଣିଷ ଯାହା କରିବାକୁ ଚାହେଁ ତାହା କରିପାରେ; କିନ୍ତୁ ଯେପରି ଭାବରେ ସେ ଇଚ୍ଛା କରିବାକୁ ଚାହେଁ ତାହା ଇଚ୍ଛା କରିପାରେନାହିଁ । ପରମ ଅଦୃଷ୍ଟବାଦରେ ବିଶ୍ୱାସ, ମୋର ମନେ ହୁଏ, ଅବଶ୍ୟମ୍ଭାବୀ ଭାବରେ ପୂର୍ଣ୍ଣ କର୍ମହୀନତା ଭିତରକୁ, ଜୀବନକୁ ମୃତ୍ୟୁ ଭିତରକୁ ଟାଣିନିଏ । ମୋର ସମସ୍ତ ଜୀବନବୋଧ ଏହା ବିରୁଦ୍ଧରେ ବିଦ୍ରୋହ କରିଉଠେ । କିନ୍ତୁ ଏହି ବିଦ୍ରୋହଭାବନା ମଧ୍ୟ ହୁଏତ ପୂର୍ବବର୍ତ୍ତୀ ଘଟଣାମାନଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇପାରିଥାଏ ।

ସାଧାରଣତଃ ମୁଁ ମୋର ମନକୁ ଯେପରି ଦାର୍ଶନିକ କିମ୍ବା ଆଧିଭୌତିକ ପ୍ରଶ୍ନ ନେଇ ଭାରାକ୍ରାନ୍ତ କରେନି, ଯାହାର ମୀମାଂସା କିଛି ମିଳେନି । ବେଳେବେଳେ ବନ୍ଦୀନିବାସର ଦୀର୍ଘ ନୀରବତା ଭିତରେ, ପ୍ରାୟଶଃ ମୋର ଅଜ୍ଞାତରେ କିମ୍ବା ପ୍ରଗାଢ଼ କର୍ମବ୍ୟସ୍ତତା ଭିତରେ, କୌଣସି କ୍ଳେଶକର ଅଭିଜ୍ଞତାର ସମ୍ମୁଖରେ, ଗୋଟାଏ ପ୍ରକାର ଅନାସକ୍ତ ଅବା ଆଶ୍ୱାସନାର ଜ୍ଞାନ ଯେନ ସେ ପ୍ରକାର ଚିନ୍ତା ମୋର ମନକୁ ଆସେ । କିନ୍ତୁ ସାଧାରଣତଃ କର୍ମ ଓ କର୍ମର ଭାବନା ମତେ ପୂର୍ଣ୍ଣକରି ରଖେ ଏବଂ ଯେତେବେଳେ କର୍ମ କରିବା ମତେ ମନାହୁଏ, ମୁଁ ମନେକରେ, ମୁଁ ଯେପରି କର୍ମର ପ୍ରସ୍ତୁତି କରୁଚି । କର୍ମର ଆହ୍ୱାନ ବହୁଦିନ ଧରି ମୋ ଭିତରେ ରହିଚି, କିନ୍ତୁ ସେ କର୍ମ ଚିନ୍ତାରୁ ବିଚ୍ଛିନ୍ନ ନୁହେଁ; ବରଂ କହିବାକୁ ଗଲେ ଅବିଚ୍ଛିନ୍ନ ଅନୁକ୍ରମରେ ତାହା ଚିନ୍ତାରୁ ହିଁ ପ୍ରବାହିତ ହୋଇଥାଏ । ଯେତେବେଳେ, ଅବଶ୍ୟ

ବିରଳ ଭାବରେ, ଉଭୟଙ୍କ ଭିତରେ ସୁସଙ୍ଗତି ରହେ, ଚିନ୍ତା ଯେବେ କର୍ମରେ ପର୍ଯ୍ୟବସିତ ହୋଇ ପୂର୍ଣ୍ଣତା ଲାଭକରେ, ଯେବେ କର୍ମ ଚିନ୍ତା ଓ ପୂର୍ଣ୍ଣତାର ଚୂଡ଼ାମଣି ଆଡ଼କୁ ଗତିକରେ, ସେତେବେଳେ ମୁଁ ଜୀବନର ପୂର୍ଣ୍ଣତ୍ୱ ଏବଂ ସେହି ମୁହୂର୍ତ୍ତର ଅସ୍ତିତ୍ୱରେ ଗୋଟାଏ ପ୍ରାଞ୍ଜଳ ତୀବ୍ରତା ଅନୁଭବ କରିଚି । କିନ୍ତୁ ଏ ପ୍ରକାର ମୁହୂର୍ତ୍ତ ବିରଳ, ଅତି ବିରଳ । ସାଧାରଣତଃ ଗୋଟାଏ ଅପରକୁ କ୍ଷିପ୍ରଗତିରେ ଅତିକ୍ରମ କରିଯାଏ, ସଙ୍ଗତିର ଅଭାବ ଘଟେ, ଉଭୟଙ୍କୁ ପାଙ୍କ୍ତ କରିବାର ପ୍ରୟାସ ବିଫଳ ହୁଏ । ଦିନଥିଲା, ବହୁବର୍ଷ ପୂର୍ବେ, ଯେବେ ଅନେକ ସମୟ ଧରି ମୁଁ ମୋର କର୍ମର ବ୍ୟାପୃତି ଭିତରେ ଗୋଟାଏ ପ୍ରକାର ଉଚ୍ଚ ଭାବପ୍ରବଣ ଅବସ୍ଥାରେ ରହୁଥିଲି । ମୋର ଯୌବନର ସେ ସବୁ ଦିନ ଆଜି କେଉଁ ଦୂର ଅତୀତର ସ୍ମୃତି ଭଳି ମନେହୁଏ । ବର୍ଷ ପରେ ବର୍ଷ ବିତିଯାଇଚି ବୋଲି କେବଳ ନୁହେଁ, ଆଜି ଆଉ ସେତିକି ଦିନ ଭିତରେ ଯେଉଁସବୁ ବିଶାଳ ଅଭିଜ୍ଞତା ଓ କ୍ଲେଶକର ଚିନ୍ତାର ବ୍ୟବଧାନ ରହିଯାଇଚି, ସେଥିପାଇଁ ସେ କାଳର ଉଚ୍ଛ୍ୱାସର ପ୍ରବଣତା ଆଜି ଆଉ ନାହିଁ; ଯେତେସବୁ ଅଫଯତ ଆବେଗ ଆଜି ଦାର୍ଢ୍ୟ ହୋଇଚି; ମନର ଉତ୍ତେଜନା ଓ ପ୍ରବଣତା ମୁହଁରେ ବଲ୍‌ଗା ପଡ଼ିଚି, ଚିନ୍ତାର ଭାର ବହୁ ଅବସରରେ ପ୍ରତିବନ୍ଧକ ମନେହୋଇଚି ଓ ମନରେ ଦିନେ ଯେଉଁଠି ଶାନ୍ତସ୍ଥିତା ବିରାଜମାନ ଥିଲା, ସେଥିଭିତରକୁ ସଂଶୟ ପ୍ରବେଶ କରୁଚି । ହୁଏତ ଏହା ବୟସର ଗତି କିମ୍ବା ଏକାଳର ସାଧାରଣ ପ୍ରକୃତି ।

ତଥାପି, ଏବେ ସୁଦ୍ଧା କର୍ମର ଆହ୍ୱାନ ମୋ ଭିତରେ କେଉଁ ଅଜ୍ଞାତ ଗଭୀରତାରେ ଚଞ୍ଚଳ ହୋଇଉଠେ ଓ ବାରମ୍ବାର ଚିନ୍ତା ସଙ୍ଗେ ଦ୍ୱନ୍ଦ୍ୱ ସୃଷ୍ଟିକରେ । ମୁଁ ପୁନର୍ବାର ସେହି ସୁନ୍ଦର ଆନନ୍ଦର ଆବେଗ ଅନୁଭବ କରିବାକୁ ଚାହେଁ ଯାହା ନିଶ୍ଚିତ ଓ ଅନିଶ୍ଚିତ ବିପଦ ଭିତରକୁ ନିମନ୍ତ୍ରଣ କରାଏ ଆଉ ମୃତ୍ୟୁର ସମ୍ମୁଖୀନ ହୋଇ ତାକୁ ବିଦ୍ରୂପ କରେ । ମୃତ୍ୟୁ ପ୍ରତି ମୋର ମୋହ ନାହିଁ, କିନ୍ତୁ ମୃତ୍ୟୁଚିନ୍ତା ମତେ ଭୟଭୀତ କରେ ବୋଲି ମୁଁ ମନେକରେନି । ଜୀବନ ପ୍ରତି 'ନେତି' ଭାବରେ କିମ୍ବା ସେଥିରୁ ପଳାୟନ କରିବାରେ ମୋର ବିଶ୍ୱାସ ନାହିଁ । ମୁଁ ଜୀବନକୁ ଭଲପାଇଚି ଏବଂ ଜୀବନ ଏବେ ସୁଦ୍ଧା ମତେ ଆକର୍ଷଣ କରେ ଓ ମୋର ନିଜସ୍ୱ ରୀତିରେ ମୁଁ ସେ ଅଭିଜ୍ଞତା ଅର୍ଜନ କରିବାକୁ ଚାହେଁ, ଯଦିଓ ମୋର ଚତୁଃପାର୍ଶ୍ୱରେ ବହୁ ଅଦୃଶ୍ୟ ପ୍ରତିବନ୍ଧକ ଗଢ଼ିଉଠିଲାଣି । କିନ୍ତୁ ସେହି ଆକାଂକ୍ଷା ଜୀବନ ସଙ୍ଗେ ଖେଳିବା ପାଇଁ, ତାର ରସ ଲାଭ କରିବା ପାଇଁ ମତେ ପ୍ରରୋଚିତକରେ । ତେବେ, ତାର ଦାସ ହେବାପାଇଁ ନୁହେଁ, ଭଲ ଭାବରେ ପରସ୍ପରର ମୂଲ୍ୟ ନିରୂପଣ କରିବା ପାଇଁ । ହୁଏତ ମୁଁ ଜଣେ ବୈମାନିକ ହେବା ଉଚିତ ଥିଲା, କାରଣ ଜୀବନର ମନ୍ଥରତା ଓ ନିର୍ଜୀବତା ମତେ ଯେବେ ଘୋଟିବାକୁ ବସନ୍ତା ମୁଁ ମେଘମାଳାର କୋଲାହଳ ଭିତରକୁ ଉଡ଼ିଯାଇ ପାରୁଥାନ୍ତି ଆଉ ମନକୁ ମନ କହନ୍ତି :

'ଭୁଲି ମୁଁ ଦେଖିଲି ସବୁ କିଛି

ସବୁ କିଛି କଲି ବିସ୍ମର,

ଆଗର ପଛର ଯେତେ କାଳ
ଅଳୀକ କେବଳ ବେକାର;
ଏ ଜୀବନ ଆଉ ମରଣରେ
ଭାର ସମାନତା ଅଛି ତାର ।'

## ୫. ବର୍ତ୍ତମାନ ସଙ୍ଗେ ଅତୀତର ସମ୍ବନ୍ଧ

କର୍ମପାଇଁ ମୋର ଏ ବିବଶତା, କର୍ମ ଭିତରଦେଇ ଜୀବନର ଅଭିଜ୍ଞତା ଅର୍ଜନ କରିବାର ଆକାଂକ୍ଷା ମୋର ସମସ୍ତ ଚିନ୍ତା ଓ କର୍ମତତ୍ପରତାକୁ ପ୍ରଭାବିତ କରିଛି । ଏପରିକି, ନିରନ୍ତର ଚିନ୍ତା ଯାହା ଗୋଟାଏ ପ୍ରକାର କର୍ମ ମଧ୍ୟ, ମୋ ପକ୍ଷରେ ଆଗାମୀ କର୍ମର ଗୋଟାଏ ଅଂଶ ହୋଇପଡ଼େ । ଏହା ସେପରି କିଛି ସର୍ବାଙ୍ଗୀନ ଭାବରେ ବିମୂର୍ତ୍ତି, ଉପଯୋଗହୀନ ଅଥବା ଜୀବନ ଓ କର୍ମ ସଙ୍ଗେ ସମ୍ପର୍କହୀନ ନୁହେଁ । ବର୍ତ୍ତମାନ ଭିତରକୁ, କର୍ମର ମୁହୂର୍ତ୍ତି ଭିତରକୁ ଗଡ଼ିକରି ଅତୀତ ରୂପାନ୍ତରିତ ହୁଏ ଓ ସେଥିରୁ ପ୍ରବାହିତ ହୁଏ ଯାହା ଭବିଷ୍ୟତ । ଏ ତିନିହେଁ ଅବିଚ୍ଛେଦ୍ୟ ଭାବରେ ଜଡ଼ିତ ଓ ପରସ୍ପର ସଙ୍ଗେ ସମ୍ପର୍କିତ ।

ବନ୍ଦୀନିବାସରେ ମଧ୍ୟ ମୋର ଏ ଆପାତକର୍ମହୀନ ଜୀବନ ଅନୁଭୂତି ଓ ଚିନ୍ତାର କେଉଁ ଏକ ପ୍ରକ୍ରିୟାରେ, ଆଗାମୀ ଅବା କଳ୍ପିତ କର୍ମ ସଙ୍ଗେ କୌଣସିମତେ ଜଡ଼ିତ ଏବଂ ଏଥିରୁ ସେପରି କିଛି ଗୋଟାଏ ଆଧେୟ ମୁଁ ଲାଭ କରୁଛି ଯାହାର ଅଭାବରେ ଏକରକମ ଶୂନ୍ୟତା ଭିତରେ ଜୀବନର ସ୍ଥିତି ଅସହନୀୟ ହୋଇପଡ଼ନ୍ତା । ଯେତେବେଳେ ପ୍ରକୃତ କିଛି କର୍ମ କରିବା ମତେ ମନାହୋଇଯାଇଛି, ଅତୀତକୁ ଓ ଇତିହାସ ଭିତରକୁ ମୁଁ ସେପରି କିଛି ଗୋଟାଏ ପ୍ରବେଶମାର୍ଗ ସନ୍ଧାନ କରିଛି । କାରଣ ମୋର ବ୍ୟକ୍ତିଗତ ଅଭିଜ୍ଞତା ବାରମ୍ବାର ବହୁ ଐତିହାସିକ ଘଟଣାକୁ ଯେହେତୁ ସ୍ପର୍ଶ କରିଛି ଓ ବେଳେବେଳେ ମୋର ନିଜ କ୍ଷେତ୍ରରେ ସେ ପ୍ରକାର ଘଟଣାବଳୀକୁ ପ୍ରଭାବିତ କରିବାରେ ମତେ ଯେହେତୁ କିଛି କରିବାକୁ ପଡ଼ିଛି, ଯାହା ସଙ୍ଗେ ମୁଁ କେତେ ପର୍ଯ୍ୟନ୍ତ ନିଜକୁ ଅଭିନ୍ନ କରିପାରିବି,ସେଇ ଇତିହାସକୁ ଗୋଟାଏ ଜୀବନ୍ତ ପ୍ରକ୍ରିୟା ଭାବରେ ଦେଖିବାରେ ମୁଁ କିଛି ଅସୁବିଧା ଅନୁଭବ କରିନାହିଁ ।

ଇତିହାସର ଅଧ୍ୟୟନ ଓ ଅନୁଶୀଳନ ମୁଁ କରିବାକୁ ବସିଲି ବହୁତ ବିଳମ୍ବରେ । ଯେତେବେଳେ ସୁଦ୍ଧା ମୋର ଜୀବନର ଗତି ସଙ୍ଗେ ସମ୍ପର୍କହୀନ ଗୁଡ଼ାଏ ତଥ୍ୟ ଓ ତାରିଖ ଭିତରୁ ନିଷ୍ପତ୍ତି ଓ ଅନୁମାନ ଆହରଣ କରିବାର ସାଧାରଣ ତଥା ସିଧା ମାର୍ଗ ମୁଁ ଅନୁସରଣ କରିନି । ଯେ ପର୍ଯ୍ୟନ୍ତ ଇତିହାସ ଅନୁଶୀଳନର ଗତାନୁଗତିକ ମାର୍ଗରେ ମୁଁ ଚାଲିଥିଲି, ଇତିହାସ ମୋ ପାଖରେ ତାର ସମସ୍ତ ତାତ୍ପର୍ଯ୍ୟ ହରାଇବସିଥିଲା । ଆହୁରି ମଧ୍ୟ କୌଣସି ଅତିପ୍ରାକୃତ ବିଷୟର ଅବା ଭବିଷ୍ୟ ଜୀବନର ଜିଜ୍ଞାସା ପ୍ରତି ମୋର ବିଶେଷ କିଛି ଆଗ୍ରହ ନଥିଲା । ବିଜ୍ଞାନ ଏବଂ ବର୍ତ୍ତମାନର ଜୀବନ ଓ ଦୈନନ୍ଦିନ ଜୀବନର ବିବିଧ ସମସ୍ୟା ମୋ ପକ୍ଷରେ ବିଶେଷ ଭାବରେ ଆକର୍ଷକ ଥିଲା ।

ଚିନ୍ତା, ଉଚ୍ଛ୍ୱାସ ଓ ଗୋଟାଏ ପ୍ରକାର ପ୍ରେରଣାର ସମ୍ମିଶ୍ରଣ, ଯାହା ସମ୍ପର୍କରେ ଅମୀଳିତ ଭାବରେ କେବଳ ମୁଁ ସଚେତନ ଥିଲି, ମତେ କର୍ମଭିତରକୁ ଟାଣିନେଇଥିଲା ଏବଂ କର୍ମ ପୁଣି ମତେ ଚିନ୍ତା ଭିତରକୁ ପ୍ରେରଣ କରୁଥିଲା, ଆଉ ବର୍ତ୍ତମାନକୁ ବୁଝିବା ନିମନ୍ତେ ଗୋଟିଏ ଆକାଂକ୍ଷା ଜାଗ୍ରତ କରୁଥିଲା । ବର୍ତ୍ତମାନର ଚେର ରହିଥିଲା ଅତୀତରେ । ଅତଏବ, ବର୍ତ୍ତମାନକୁ ଭଲଭାବରେ ବୁଝିବାପାଇଁ, ଯଦି ସେପରି କିଛି ଥାଏ, ନିରନ୍ତର ସେପରି ଏକ ସୂତ୍ରର ସନ୍ଧାନରେ ମୁଁ ଅତୀତକୁ ଆବିଷ୍କାର କରିବା ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କଲି । ଯେତେବେଳେ ମୁଁ କେଉଁଠି ଅଛି ଅବା ମୁଁ କ'ଣ ଭୁଲିଯାଇ ଅତୀତର ବିଭିନ୍ନ ଘଟଣା ଓ ପୁରୁଷ-ପୁରୁଷମାନଙ୍କ ଚିନ୍ତାରେ ଏକରକମ ଆତ୍ମହରା ହୋଇ ରହୁଥିଲି, ସେତେବେଳେ ମଧ୍ୟ ବର୍ତ୍ତମାନର ଆଧିପତ୍ୟ ମୋର ଉପରୁ କେବେ ଛାଡ଼ିଯାଇନି । ଯଦି ବା କେବେ ମୁଁ ଅନୁଭବ କରିଛି ଯେ ମୋର ସମସ୍ତ ସମ୍ପର୍କ କେବଳ ଅତୀତ ସଙ୍ଗେ, ସେତେବେଳେ ମଧ୍ୟ ବର୍ତ୍ତମାନରେ ସମସ୍ତ ଅତୀତ ମୋର କେବଳ ବୋଲି ଅନୁଭବ କରିଛି । ଅତୀତର ଇତିହାସ ସମସାମୟିକ ଇତିହାସ ଦେହରେ ମିଶିଯାଇ ତ୍ରାସ ଓ ପ୍ରମୋଦର ସମ୍ବେଦନାରେ ଗୋଟିଏ ତିକ୍ତ ବାସ୍ତବତାରେ ପରିଣତ ହୋଇଛି ।

ଅତୀତର ଅଭିପ୍ରାୟ ଯଦି ଥିଲା ବର୍ତ୍ତମାନରେ ପରିଣତ ହେବାପାଇଁ, ବର୍ତ୍ତମାନ ବି ବେଳେବେଳେ ଦୂର ଅତୀତକୁ ଅପସରିଯାଇ ତାର ଅଚଳ ବିଗ୍ରହର ରୂପ ଧାରଣକରେ । କର୍ମର ପ୍ରଗାଢ଼ତା ଭିତରେ ହିଁ ଅକସ୍ମାତ୍ ଏପରି ଏକ ଅନୁଭୂତି ଜନ୍ମେ—ମନେହୁଏ, ଏହା ଯେପରି କୌଣସି ଏକ ଅତୀତ ଘଟଣା ଆଉ ମୁଁ ତାର ସିଂହାବଲୋକନ କରୁଛି ।

ବର୍ତ୍ତମାନ ସଙ୍ଗେ ଯେଭଳି ସମ୍ପୃକ୍ତ, ସେହି ଅତୀତକୁ ଆବିଷ୍କାର କରିବାର ପ୍ରସ୍ତାବରେ ବାର ବର୍ଷ ତଳେ ମୋର କନ୍ୟା ପାଖକୁ ଚିଠି ଆକାରରେ ମୁଁ ମୋର 'ବିଶ୍ୱ ଇତିହାସ' ଲେଖିଥିଲି । ମୋର ଅଳ୍ପବୟସ୍କା କନ୍ୟାର ବୋଧଗମ୍ୟ ହେବାଭଳି ସରଳ ଓ ଲଘୁ ଭାବରେ ମୁଁ ଲେଖୁଥିଲେହେଁ ତାର ପଛରେ ମୋର ଏହି ଆବିଷ୍କାର କରିବାର ଉଦ୍ଦେଶ୍ୟ ପ୍ରବଳ ଥିଲା । ଯେତେଦୂର ହୋଇପାରେ, ମୁଁ ଯେପରି ଏକ ଦୁଃସାହସିକ କାର୍ଯ୍ୟରେ ଲିପ୍ତ ରହିଛି -- ଏ ଜ୍ଞାନ ମତେ ପୂର୍ତ୍ତି କରିଥିଲା ଏବଂ କ୍ରମାନ୍ୱୟ ଭାବରେ ବିଭିନ୍ନ ଯୁଗ ଓ ଅବସ୍ଥା ମୁଁ ଅତିବାହିତ କରୁଥିଲି । ସେଥିରେ ମୋର ସଙ୍ଗୀ ଥିଲେ ସେସବୁ ମହିମାନ୍ୱିତ ନରନାରୀ ଯେଉଁମାନେ କେଉଁ ଦୂର ଅତୀତରେ ସେମାନଙ୍କର ଜୀବନଲୀଳା ରଚନା କରିଥିଲେ । ଜେଲରେ ମୋ ହାତରେ ଯଥେଷ୍ଟ ସମୟ ଥିଲା ଓ କୌଣସି କାର୍ଯ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ସୀମା ଭିତରେ ପୂର୍ତ୍ତି କରିବାର ତାଗିଦା ସେଭଳି ନଥିଲା । ଅତଏବ, ମୋର ମାନସିକ ଅବସ୍ଥାକୁ ସୁହାଇବା ଭଳି ମୁଁ ମୋର ମନକୁ ମୁକ୍ତ ଭାବରେ ଭ୍ରମଣ କରିବା ପାଇଁ କିମ୍ବା କେଉଁଠି କିଛି ସମୟ ଅଟକି ରହିଯିବା ପାଇଁ, ଆଉ ଅତୀତର କଙ୍କାଳ ଦେହରେ ରକ୍ତମାଂସ ଦେଇ ତାକୁ ସଜୀବ କରିବା ପାଇଁ ଛାଡ଼ିଦେଇଥିଲି । ଏହିପରି ଏକ ଅନ୍ୱେଷଣ ସାମ୍ପ୍ରତିକ ତଥା ଅଧିକତର ଘନିଷ୍ଠ ସମୟ ଓ ବ୍ୟକ୍ତିଙ୍କୁ ନେଇ, ପରିସର ଦିଗରୁ ସୀମିତ ହେଲେ ବି, ମତେ ମୋର ଆତ୍ମଚରିତ ଲେଖିବା ପାଇଁ ପ୍ରେରଣା ଯୋଗାଇଥିଲା ।

ମୋର ମନେହୁଏ, ଏହି ବାରବର୍ଷ ଭିତରେ ମୁଁ ବହୁତ କିଛି ବଦଳିଯାଇଛି । ମୁଁ ଅଧିକତର ଭାବରେ ଚିନ୍ତାଶୀଳ ହୋଇପଡ଼ିଛି । ହୁଏତ ମୋ ଭିତରେ ମନର ସ୍ୱରସାମ୍ୟ ଓ ବାସ୍ତବ-ସୌଷ୍ଠବ, ଗୋଟାଏ ରକମ ଅନାସକ୍ତଭାବ ଆଉ ଅନ୍ତର ଭିତରେ ପ୍ରସନ୍ନତା ଓ ପ୍ରଶାନ୍ତି ବୃଦ୍ଧି ପାଇଛି । ପୂର୍ବେ କୌଣସି ବିପର୍ଯ୍ୟୟ କିମ୍ବା ମୋର ବାସ୍ତବର ବିପର୍ଯ୍ୟୟ ବୋଲି ମୁଁ ଯେତେଭଳି ବିହ୍ୱଳ ହୋଇପଡ଼ୁଥିଲି, ବର୍ତ୍ତମାନ ସେ ଅବସ୍ଥା ଆଉ ନାହିଁ । ଏଭଳି ବିପର୍ଯ୍ୟୟ ବହୁଳଭାବରେ ଘଟୁଥିଲେ ମଧ୍ୟ ସେଥିରେ ବାଧା, ବିଘ୍ନ ଓ ଉପଦ୍ରବ ମତେ ଅନେକାଂଶରେ ଲଘୁ ଓ ସାମୟିକ ପ୍ରତୀତ ହେଉଛି । ଏହା ମୋର ଅବସ୍ଥା ସମ୍ମୁଖରେ ଆତ୍ମସମର୍ପଣ ଭାବର ଅଭିବୃଦ୍ଧି ନା ଦହଷ୍ଟତା ବୋଲି ମୁଁ ଅନେକ ସମୟରେ ବିସ୍ମିତ ହେଉଛି । ଏହା ବୟସର ପ୍ରଭାବ ନା ଜୀବନର ଓଜ ତଥା ଜୀବନ ପ୍ରତି ଉତ୍କଣ୍ଠା ହ୍ରାସ ପାଇବାର ସୂଚନା ? କିମ୍ବା ଦୀର୍ଘକାଳ ଜେଲବାସ ଫଳରେ ହୁଏତ ଜୀବନରେ ଭଟ୍ଟା ଧରିଛି ଓ ଯେଉଁସବୁ ଚିନ୍ତା ମନକୁ ଭାରାକ୍ରାନ୍ତ କରେ, ଯିବାବେଳେ କିଛି ସମୟ ଅଟକିଯାଇ ହୁଏତ କେତୋଟି କ୍ଷୁଦ୍ର ଲହରୀ ମାତ୍ର ଛାଡ଼ିଯାଇଛି ।

ଯନ୍ତ୍ରଣା-ବିକ୍ଷୁବ୍ଧ ମନ ପଳାୟନର ପନ୍ଥା ଖୋଜେ; ଧକ୍କା ଉପରେ ଧକ୍କା ଇନ୍ଦ୍ରିୟଜ୍ଞାନ ନିସ୍ତେଜ କରେ । ଗୋଟାଏ ବାସ୍ତବ ମନକୁ ଆସେ, ପୃଥିବୀକୁ ଏତେ ଅମଙ୍ଗଳ ଓ ଦୁର୍ଭାଗ୍ୟ ଘୋଟିରହିଛି ଯେ ସେଥିରୁ କିଛି କମ୍ ହେବା ଅବା ବଢ଼ିଯିବାରେ ବିଶେଷ କିଛି ପ୍ରଭେଦ ବାରି ହେବନି । କେବଳ ଗୋଟିଏ କଥା, ଯାହା ଆମ ପାଖରୁ କିଏ ନେଇଯାଇପାରିବନି, ତାହା ହେଉଛି ଧୈର୍ଯ୍ୟ ଓ ଆତ୍ମମର୍ଯ୍ୟାଦା ଯେଉଁ କର୍ମ କରିବା ଏବଂ ସେ ସବୁ ଆଦର୍ଶକୁ ଜାଗ୍ରତ ରହିବା, ଯାହା ଜୀବନକୁ ଅର୍ଥ ଓ ତାତ୍ପର୍ଯ୍ୟ ଦେଇଛି; କିନ୍ତୁ ଏହା ରାଜନୀତିଜ୍ଞଙ୍କର ପନ୍ଥା ନୁହେଁ । ସେ ଦିନ କିଏ ଜଣେ କହିଛନ୍ତି ଯେ ମୃତ୍ୟୁ ପ୍ରତ୍ୟେକ ଲୋକର ଜନ୍ମଗତ ଅଧିକାର । ଗୋଟାଏ ସହଜ ସାଧାରଣ କଥାକୁ ବଡ଼ କୌତୂହଳ ଉଦ୍ଦୀପକ ଭାବରେ ବ୍ୟକ୍ତ କରାଯାଇଛି । ଏହା ଗୋଟାଏ ଜନ୍ମଗତ ଅଧିକାର ଯାହାକୁ କେହି ଅସ୍ୱୀକାର କରିନାହାନ୍ତି କିମ୍ବା କରିବାର ସମ୍ଭାବନା ନାହିଁ ଏବଂ ଆମେ ସମସ୍ତେ ଯେତେ ପର୍ଯ୍ୟନ୍ତ ପାରୁଁ ତାହା ଭୁଲିବାକୁ ଚାହୁଁ ଆଉ ସେଥିରୁ ଖସିଯିବାର ଚିନ୍ତା କରୁ । ତଥାପି ଏହି ଉକ୍ତିରେ ଗୋଟାଏ କି ରକମ ଅଭିନବତ୍ୱ ଓ ଆକର୍ଷଣ ରହିଛି । ଯେଉଁମାନେ ଜୀବନ ସମ୍ପର୍କରେ ତିକ୍ତ ଅଭିଯୋଗ ବାଢ଼ନ୍ତି ସେମାନେ ଚାହିଁଲେ ସେଥିରୁ ଊର୍ଦ୍ଧ୍ୱକୁ ଉଠିଯିବାର ପନ୍ଥା ସବୁବେଳେ ରହିଛି । ତାହା ଲାଭ କରିବାର ଶକ୍ତି ଆମର ଅଛି । ଜୀବନ ଉପରେ ଆମେ ଯଦି ପ୍ରଭୁତ୍ୱ କରି ନପାରିଲୁ, ଅନ୍ତତଃ ମୃତ୍ୟୁ ଉପରେ ତ ପ୍ରଭୁତ୍ୱ କରିପାରିବୁ ! ଏହି ପ୍ରୀତିକର ଚିନ୍ତା ଅସହାୟଭାବକୁ ଲଘୁ କରିଥାଏ ।

## ୭ : ଜୀବନର ଦର୍ଶନ

ଛ' ସାତ ବର୍ଷ ପୂର୍ବେ ଜଣେ ମାର୍କିନ୍ ପ୍ରକାଶକ ତାଙ୍କର ପ୍ରସ୍ତାବିତ ଏକ ଗ୍ରନ୍ଥ ନିମନ୍ତେ ମୋର ଜୀବନ-ଦର୍ଶନ ଉପରେ ଗୋଟାଏ ପ୍ରବନ୍ଧ ଲେଖିବାପାଇଁ ମତେ ଅନୁରୋଧ ଜଣାଇ

ଥିଲେ । ମୁଁ ପ୍ରଥମେ ଲେଖିବା ପାଇଁ ଟିକିଏ ଉତ୍ସାହିତ ହୋଇଥିଲି; କିନ୍ତୁ ଦ୍ୱିଧାରେ ପଡ଼ି ସେ ବିଷୟରେ ଯେତେ ଅଧିକ ଚିନ୍ତା କରିବାକୁ ଲାଗିଲି, ଲେଖିବାପାଇଁ ସେତିକି ଅନିଚ୍ଛୁକ ହୋଇଉଠିଲି । ପରିଶେଷରେ ମୁଁ ଆଉ ସେ ପ୍ରବନ୍ଧ ଲେଖିଲି ନାହିଁ ।

ମୋର ଜୀବନର ଦର୍ଶନ କଣ ? ମୁଁ ଜାଣେନି । ତେବେ, କେତେ ବର୍ଷ ପୂର୍ବେ, ଏ ବିଷୟରେ ମୋର ଏତେ ଦ୍ୱିଧା ନଥିଲା । ସେତେବେଳେ ମୋର ଚିନ୍ତା ଓ ଲକ୍ଷ୍ୟ ସମ୍ପର୍କରେ ଯେଉଁ ନିର୍ଦ୍ଦିଷ୍ଟତା ଥିଲା ତାହା ଧୀରେ ଧୀରେ ମଉଳିଗଲାଣି । ଭାରତ, ଚୀନ, ୟୁରୋପ ଏବଂ ସମଗ୍ର ବିଶ୍ୱରେ ଗତ କେତେ ବର୍ଷର ଘଟଣା ମତେ ଦୁଃଖିତ, ଅଧୀର ଓ ଚିନ୍ତା ଦିଗରୁ ଅନିଶ୍ଚିତ କରି ଦେଇଛି । ଆଉ ଯେଉଁ ଭବିଷ୍ୟତର ସ୍ପଷ୍ଟ ରୂପ ମୋର ମନକୁ ପୂର୍ଣ୍ଣକରି ରଖିଥିଲା, ତାହା ଆଜି ଆକାରହୀନ, ଛାୟା ସ୍ୱରୂପ ମନେହେଉଛି ।

ମୌଳିକ ବିଷୟ ଉପରେ ଏହି ସନ୍ଦେହ ଓ ଅସୁବିଧା ମୋର ତାତ୍‌କାଳିକ କାର୍ଯ୍ୟରେ କେବେ ପ୍ରତିବନ୍ଧକ ସୃଷ୍ଟି କରିନି । ଏତିକି କେବଳ ଯେ ସେହି କର୍ମାନୁସରଣର ତୀବ୍ରତା କିଞ୍ଚିତ୍ ହ୍ରାସ ହୋଇଯାଇଥିଲା । ଆଜି ମୁଁ ଆଉ ସେଭଳି କ୍ରିୟାଶୀଳ ହୋଇପାରୁନି ଯେପରି ମୋର ଯୌବନାବସ୍ଥାରେ ଲକ୍ଷ୍ୟ ହାସଲ କରିବାପାଇଁ ମୁଁ ଠିକ୍ ଗୋଟାଏ ସ୍ୱୟଂକ୍ରିୟ ତୀର ଭଳି, ସବୁକିଛି ବାଧାବିଘ୍ନ ଅବଜ୍ଞା କରି, ଲକ୍ଷ୍ୟରେ ଯାଇ ଲାଗିଯାଉଥିଲି । ତଥାପି, ଭିତରେ ଯେହେତୁ କର୍ମର ଆହ୍ୱାନ ରହିଛି ଏବଂ ବାସ୍ତବ ହେଉ କି କଳ୍ପିତ ହେଉ ମୋର ଆଦର୍ଶ ସଙ୍ଗେ ସେ କର୍ମର ସମନ୍ୱୟ ଅଛି ଜାଣି ମୁଁ କର୍ମରେ ପ୍ରବୃତ୍ତ ହେଉଥିଲି; କିନ୍ତୁ, ଅବସ୍ଥା ବିଗୁଡ଼ିବାକୁ ନେଇ, ରାଜନୀତି ପ୍ରତି ମୋର ରୁଚି ଛାଡ଼ିଯାଇଥିଲା ଏବଂ ମନେହେଉଥିଲା ଜୀବନ ପ୍ରତି ମୋର ସମଗ୍ର ଧାରଣା ଯେପରି ରୂପାନ୍ତରିତ ହୋଇଯାଉଛି ।

ଗତକାଲର ଆଦର୍ଶ ଓ ଲକ୍ଷ୍ୟ ଆଜିର ବି ଆଦର୍ଶ ହୋଇ ରହିଥିଲା; କିନ୍ତୁ ତାର ଝଲକ କେତେ ପରିମାଣରେ ମଉଳିଯାଇଥିଲା । ସେ ଦିଗରେ ଅଗ୍ରସର ହେଲାବେଳେ ବୁଝୁଥିଲି, ତାର ଯେଉଁ ଉଜ୍ଜ୍ୱଳ ସୌନ୍ଦର୍ଯ୍ୟ ଦିନେ ଦେହରେ ଶକ୍ତି ସଞ୍ଚାର କରୁଥିଲା, ଆଉ ହୃଦୟରେ ଉଷ୍ମତା ଭରୁଥିଲା, ତାହା ଆଉ ନାହିଁ । ଅଶିବ ତ ବାରମ୍ବାର ବିଜୟ ହାସଲ କରୁଥିଲା; କିନ୍ତୁ ସବୁଠାରୁ କ୍ଳେଶକର ଥିଲା ଯେ ଦିନେ ଯାହା ଉଚିତ ଓ ଭଲ ବୋଲି ପ୍ରତୀତ ହେଉଥିଲା, ତାହା ରୁକ୍ଷ ଓ ବିକୃତ ହୋଇପଡ଼ିଥିଲା । ସାରତଃ, ମଣିଷ ପ୍ରକୃତି କ'ଣ ଏତେ ଖରାପ ଯେ ଆଜିର ମଣିଷ ଯିଏ ଲୋଭ, ହିଂସା ଓ ଶଠତାର ଗୋଟାଏ ପ୍ରାଣୀମାତ୍ର ହୋଇ ରହିଛି, ତାକୁ ଊର୍ଦ୍ଧ୍ୱକୁ ଉଠାଇବା ପାଇଁ ଏତେ କ୍ଳେଶ ସହିବାକୁ ହୁଏ ଏବଂ ସେ ନିଜେ ସଙ୍ଗତ ଭାବରେ ମଣିଷସମାଜରେ ଚାଲିବା ପୂର୍ବରୁ ତାକୁ ଏତେ ଦୁଃଖ ଓ ଦୁର୍ଦ୍ଦଶା ଭିତରେ ଯୁଗଯୁଗଧରି ତାଲିମ ହେବାକୁ ପଡ଼େ ? ଇତ୍ୟବସରରେ, ଆଜି ହେଉ କିମ୍ବା ନିକଟ ଭବିଷ୍ୟତରେ ହେଉ, ତାକୁ ମୌଳିକ ଭାବରେ ପରିବର୍ତ୍ତନ କରିବାର ପ୍ରତ୍ୟେକ ପ୍ରୟାସ ବିଫଳତାରେ ପର୍ଯ୍ୟବସିତ ହେବା କ'ଣ ନିଶ୍ଚିତ ?

ଲକ୍ଷ୍ୟ ଓ ଉପାୟ : ଏ ଉଭୟର ପରସ୍ପର ଉପରେ କ୍ରିୟା ଓ ପ୍ରତିକ୍ରିୟା ଭିତରେ ଏପରି ଅଚ୍ଛେଦ୍ୟ ଭାବରେ କଣ ଗୁନ୍ଥା ଯେ ଭୁଲ ଉପାୟ ଆଖି ଆଗର ଲକ୍ଷ୍ୟକୁ ବିକୃତ ଓ ବେଳେ

ବେଳେ ନଷ୍ଟ କରିଦେଇପାରେ ? କିନ୍ତୁ ଠିକ୍-ଉପାୟ ହୁଏତ ଦୁର୍ବଳ ଓ ଧୈର୍ଯ୍ୟପର ମଣିଷ ପ୍ରକୃତ ପକ୍ଷରେ ଅନୁସରଣ କରିବା ସହଜ ହୋଇନପାରେ । ତାହା ହେଲେ ଜଣେ କଣ କରିବ ? କିଛି ନ କରିବା ତ ଅସତ୍ ନିକଟରେ ଆତ୍ମସମର୍ପଣ କରିବା ଓ ସମ୍ପୂର୍ଣ୍ଣ ବିଫଳତା ଘୋଷଣା କରିବା ସଙ୍ଗେ ସମାନ । କିଛି କରିବା ମଧ୍ୟ ବହୁ ଅବସରରେ ସେହି ଧରଣର ଅସତ୍ ସଙ୍ଗେ କେବଳ ଆପୋଷ କରିବା । ସେ ପ୍ରକାର ଆପୋଷର ପରିଣତି ପ୍ରତିକୂଳ ହିଁ ହୋଇଥାଏ ।

ପ୍ରଥମାବସ୍ଥାରେ ଜୀବନର ବିବିଧ ସମସ୍ୟାକୁ କମ୍‌ବେଶି ଭାବରେ ମୁଁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଦେଖୁଥିଲି । ସେଥିରେ ଥିଲା ଊନବିଂଶ ଶତାବ୍ଦୀ ଓ ବିଂଶଶତାବ୍ଦୀ ପ୍ରାରମ୍ଭର ବିଜ୍ଞାନସୁଲଭ ସହଜ ଆଶାବାଦ । ଗୋଟାଏ ସୁରକ୍ଷିତ ଓ ସ୍ୱଚ୍ଛନ୍ଦ୍ୟପୂର୍ଣ୍ଣ ସ୍ଥିତି ଏବଂ ମୋ ଭିତରେ ଯେଉଁ ଜୀବନୀଶକ୍ତି ଓ ଆତ୍ମବିଶ୍ୱାସ ଥିଲା, ତାହା ଏହି ଆଶାବାଦକୁ ବଳଶାଳୀ କରିଥିଲା । ଗୋଟାଏ ପ୍ରକାର ଅସ୍ପଷ୍ଟ ମାନବବାଦର ଆବେଦନ ମତେ ଆଲୋଡ଼ିତ କରୁଥିଲା । ହିନ୍ଦୁ, ବୌଦ୍ଧ, ଇସଲାମ୍ ଅବା ଖ୍ରୀଷ୍ଟାନ୍—ସେ ଯେଉଁ ଧର୍ମ ହେଉ, ଆଉ ତାର ଅନୁରାଗୀଙ୍କ ଭିତରେ ଯେତେ ଚିନ୍ତାଶୀଳ ବ୍ୟକ୍ତି ଥାନ୍ତୁ ପଛେ, ତାର ଆଚରଣ ମତେ ଆକୃଷ୍ଟ କରୁନଥିଲା । ମତେ ଜଣାଯାଉଥିଲା ଯେ ଧର୍ମ ନାନାବିଧ ଅନ୍ଧବିଶ୍ୱାସ ଓ ଅଯୌକ୍ତିକ ସିଦ୍ଧାନ୍ତ ସଙ୍ଗେ ଘନିଷ୍ଠ ଭାବରେ ସଂଶ୍ଳିଷ୍ଟ ଏବଂ ଜୀବନର ବିବିଧ ସମସ୍ୟାର ସମ୍ମୁଖୀନ ହେବାପାଇଁ ସେଥିରେ ଯେଉଁ ମାର୍ଗର ସୂଚନା ଥିଲା, ତାହା ନିଶ୍ଚିତ ଭାବରେ ବିଜ୍ଞାନସମ୍ମତ ନୁହେଁ । ଧର୍ମରେ ଗୋଟାଏ ପ୍ରକାର ଯାଦୁ ଅଛି । ତାର ଅନୁଗାମୀ ଦ୍ୱିଧାହୀନ ଭାବରେ ଗୋଟିଏ କିଛି ଅପ୍ରାକୃତ ଶକ୍ତି ଉପରେ ଆସ୍ଥାବାନ୍ ରହେ ।

ତଥାପି, ଏକଥା ସ୍ପଷ୍ଟଭାବରେ କୁହାଯାଇପାରେ ଯେ, ଧର୍ମ ମଣିଷ ପ୍ରକୃତିରେ ଗଭୀର ଭାବରେ ଅନୁଭୂତ, କୌଣସି ସୂକ୍ଷ୍ମ ଅଭାବ ପୂରଣ କରିଚି ଏବଂ ସେଥିଲାଗି ପୃଥିବୀର ସର୍ବତ୍ର ଅଧିକାଂଶ ଲୋକ କିଛି ଗୋଟାଏ ଧର୍ମବିଶ୍ୱାସ ବିନା ଚଳିପାରନ୍ତି ନାହିଁ । ଧର୍ମ ଗୋଟାଏ ଦିଗରେ ଆଦର୍ଶସ୍ଥାନୀୟ ମହାନ୍ ବ୍ୟକ୍ତିଙ୍କୁ ଯେପରି ସୃଷ୍ଟିକରିଚି, ଅନ୍ୟଦିଗରେ ସେପରି ନୀଚମନା, ନିଷ୍ଠୁର ଅତ୍ୟାଚାରୀଙ୍କୁ ମଧ୍ୟ ସୃଷ୍ଟି କରିଚି । ଧର୍ମ କେତେ ମୂଲ୍ୟବୋଧ ବି ଦେଇଚି ଯାହା ଭିତରୁ କେତେକର ହୁଏତ ଆବଶ୍ୟକତା ଆଜି ନାହିଁ; ହୁଏତ ସେଗୁଡ଼ିକ କ୍ଷତିକାରକ ମଧ୍ୟ, କିନ୍ତୁ ଅବଶିଷ୍ଟ ମୂଲ୍ୟବୋଧ ଏବେ ସୁଦ୍ଧା ନୈତିକ ମୀମାଂସା ଓ ଆଚରଣଶାସ୍ତ୍ରର ଭିତ୍ତି ହୋଇ ରହିଚି ।

ଧର୍ମ ଶବ୍ଦର ବ୍ୟାପକ ଅର୍ଥ ଗ୍ରହଣକଲେ ଦେଖାଯିବ ଯେ, ଏହାର ସମ୍ବନ୍ଧ ମାନବିକ ଅନୁଭୂତିର ସେସବୁ ପ୍ରଦେଶ ସଙ୍ଗେ ଯାହାକୁ ଯଥାଯଥ କଳନା ହୋଇନାହିଁ, ଅର୍ଥାତ୍ ଯାହା ବିଜ୍ଞାନର ପ୍ରତ୍ୟକ୍ଷୀଭୂତ ଜ୍ଞାନ ଭିତରେ ଆବଦ୍ଧ ହୋଇପାରିନି । ଗୋଟାଏ ଅର୍ଥରେ ଏହା ଆମର ଜ୍ଞାନ ଓ ବ୍ୟବହୃତ ପ୍ରଦେଶର ବିସ୍ତାର ବିବେଚିତ ହୋଇପାରେ; ଯଦିଓ ବିଜ୍ଞାନ ଓ ଧର୍ମର ପ୍ରଣାଳୀ ଭିତରେ କୌଣସି ସାଦୃଶ୍ୟ ନାହିଁ ଏବଂ ଅଧିକାଂଶ କ୍ଷେତ୍ରରେ ସେମାନଙ୍କୁ ଭିନ୍ନ ଭିନ୍ନ ମାଧ୍ୟମ ଅବଲମ୍ବନ କରିବାକୁ ପଡ଼ୁଚି । ଆମେ ଜାଣୁ ଯେ, ଆମ ଚତୁଃପାର୍ଶ୍ୱରେ

ଗୋଟାଏ ବିଶାଳ ଅଜ୍ଞାତ ପ୍ରଦେଶ ରହିଥିଲା ଏବଂ ବିଜ୍ଞାନ ବହୁ ଉଜ୍ଜ୍ୱଳସିଦ୍ଧିର ଅଧିକାରୀ ହୋଇଥିଲେ ମଧ୍ୟ ସେ ସମ୍ପର୍କରେ କୌଣସି ଉଲ୍ଲେଖଯୋଗ୍ୟ ଜ୍ଞାନ ଆହରଣ କରିପାରିନଥିଲା; ଯଦ୍ୟପି ସେ ଦିଗରେ ତାର ପରୀକ୍ଷାମୂଳକ କର୍ମାନୁସରଣ ଚାଲୁରହିଥିଲା । ହୁଏତ ଏପରି ମଧ୍ୟ ହୋଇପାରେ ଯେ ଦୃଶ୍ୟମାନ ଜଗତ ଓ ଜୀବନର ପ୍ରକ୍ରିୟା ଅଧ୍ୟୟନ କରିବାରେ ବିଜ୍ଞାନର ସାଧାରଣ ପ୍ରଣାଳୀମାନ ଅଦୃଶ୍ୟ ବିଶ୍ୱର ଭୌତିକ, ଆଧ୍ୟାତ୍ମିକ, ରସାତ୍ମକ ଓ ଅନ୍ୟବିଧ ମୌଳିକ ବସ୍ତୁ ପକ୍ଷରେ ସାମଗ୍ରିକ ଭାବରେ ଉପଯୋଗୀ ନ ଥିଲା । ଦୃଶ୍ୟମାନ ଜଗତର ଦେଶ ଓ କାଳ ଭିତରେ ଅହରହ ପରିବର୍ତ୍ତିତ, ଆମର ଇନ୍ଦ୍ରିୟାନୁଭୂତିକୁ ନେଇ କେବଳ ଜୀବନ ଗଠିତ ନୁହେଁ । ଏହା ଅବିରତ ଭାବରେ ହୁଏତ ଗୋଟାଏ ଅଧିକତର ସ୍ଥାୟୀ ଅଥବା ସମାନ ଭାବରେ ପରିବର୍ତ୍ତନଶୀଳ ମୌଳିକବସ୍ତୁସମ୍ବଳିତ ଗୋଟାଏ ଅଦୃଶ୍ୟ ବିଶ୍ୱକୁ ସ୍ପର୍ଶକରି ଚାଲିଚି ଏବଂ କୌଣସି ଚିନ୍ତାଶୀଳ ବ୍ୟକ୍ତି ପକ୍ଷରେ ଏହି ଅଦୃଶ୍ୟ ଜଗତକୁ ଅବଜ୍ଞା କରିବା ସମ୍ଭବ ନୁହେଁ ।

ବିଜ୍ଞାନ ଆମକୁ ଜୀବନର ଉଦ୍ଦେଶ୍ୟ ସମ୍ପର୍କରେ ବିଶେଷ କିଛି କହେନି । ବର୍ତ୍ତମାନ ସେ ତାର ସୀମା ପ୍ରସାରିତ କରିବାରେ ଲାଗିଚି ଏବଂ ନିକଟରେ ହୁଏତ ତଥାକଥିତ ଅଦୃଶ୍ୟ ଜଗତରେ ପ୍ରବେଶକରି, ବ୍ୟାପକ ଭାବରେ ଜୀବନର ଉଦ୍ଦେଶ୍ୟ ଉପଲବ୍ଧି କରିବା ଦିଗରେ ଆମ ପାଇଁ ସହାୟକ ହେବ । କିଛି ନହେଲେ ଆମକୁ ଏତିକ ଦୃଷ୍ଟି ଅନ୍ତତଃ ଦେବ, ମଣିଷର ଅସ୍ତିତ୍ୱର ପ୍ରଶ୍ନ ଉପରେ ଯାହା ଆଲୋକପାତ କରିବ । ବିଜ୍ଞାନ ଓ ଧର୍ମର ପୁରାତନ ପ୍ରତିଦ୍ୱନ୍ଦ୍ୱିତା ସମ୍ପ୍ରତି ଗୋଟାଏ ଆକାର ନେଉଚି । ତାହା ମଣିଷର ପ୍ରକ୍ଷୋଭଗତ ଓ ଧର୍ମଗତ ଅଭିଜ୍ଞତାରେ ବୈଜ୍ଞାନିକ ପ୍ରଣାଳୀର ପ୍ରୟୋଗ ।

ଧର୍ମର ଆତ୍ମୀୟ ସମ୍ପର୍କ ରହସ୍ୟବାଦ, ଅଧିବିଦ୍ୟା ଓ ଦର୍ଶନ ସଙ୍ଗେ ପୃଥିବୀର ବହୁ ଶକ୍ତିଶାଳୀ ଅତୀନ୍ଦ୍ରିୟ ବ୍ୟକ୍ତିଙ୍କର ଆବିର୍ଭାବ ଘଟିଚି, ଯେଉଁମାନଙ୍କୁ ଆତ୍ମଭୋଳା, ନିର୍ବୋଧ କହି ଉଡ଼ାଇଦେବା ସହଜନୁହେଁ । ତଥାପି ରହସ୍ୟବାଦ; ସଙ୍କୀର୍ଣ୍ଣ ଅର୍ଥରେ, ମତେ ବିରକ୍ତ କରେ । ଏହା ମତେ ଅତିଶୟ ଅସ୍ପଷ୍ଟ, ଅନିଶ୍ଚିତ ଓ ଶିଥିଳ ବୋଧହୋଇଥାଏ । ଏହା ପଛରେ ମନର କଠୋର ଶୃଙ୍ଖଳା ନାହିଁ, କେବଳ ମାନସିକ ଶକ୍ତିର ଆତ୍ମ ସମର୍ପଣ ଓ ଭାବାନୁଭୂତି ସାଗରରେ ନିମଜ୍ଜନ । ଏହି ଅନୁଭୂତି ବେଳେବେଳେ କୌଣସି ଅନ୍ତର୍ଜ୍ଞାନର ଦ୍ୱାର ଉନ୍ମୋଚନ କରିପାରେ, କେବେ ବା ଗୋଟାଏ ପ୍ରକାର ମତିଭ୍ରମ ଅବସ୍ଥାରେ ମଧ୍ୟ ନେଇ ପହଞ୍ଚାଇ ଦେଇପାରେ ।

ଅଧିବିଦ୍ୟା ଓ ଦର୍ଶନ ଅଥବା ଗୋଟାଏ ଆଧିଭୌତିକ ଦର୍ଶନର ଆବେଦନ ମନକୁ ଖୁବ୍ ଧରେ । ସେଥିପାଇଁ ଆବଶ୍ୟକ ପ୍ରଗାଢ଼ ଚିନ୍ତା ଓ ଯୁକ୍ତିତର୍କର ପ୍ରୟୋଗ, ଯଦିଓ ଏହା ଆବଶ୍ୟକ ଭାବରେ ସେପରି କୌଣସି ପରିସରଭୁକ୍ତ ଯାହାକୁ ସ୍ୱତଃସିଦ୍ଧବୋଲି ଧରିନିଆଯାଏ । ଯାହା ହୁଏତ ସତ୍ୟ ହୋଇପାରେ, ଆଉ ଦିନେ ହୋଇ ନପାରେ ବି । ସମସ୍ତ ଚିନ୍ତାଶୀଳ ବ୍ୟକ୍ତି କମ୍ ବେଶିତରେ ଉପରଠାଉରିଆ ଭାବରେ ହେଉପଛେ ଅଧିବିଦ୍ୟା ଓ ଦର୍ଶନ ନେଇ ଚର୍ଚ୍ଚା କରିଥାନ୍ତି । କାରଣ ଏପରି ନ କରିବା ଅର୍ଥ ଆମର ଏହି ବ୍ରହ୍ମାଣ୍ଡର ଅନେକ ବିଭବ ପ୍ରତି

ଅବଜ୍ଞା ପ୍ରଦର୍ଶନ କରିବା । ଏଥିପ୍ରତି କାହା କାହାର ଆକର୍ଷଣ ଅଧିକ ହୋଇପାରେ ଏବଂ ଭିନ୍ନ ଭିନ୍ନ ବୟସରେ ଏହା ଉପରେ ଗୁରୁତ୍ୱର ଭିନ୍ନତା ରହିପାରେ । ପ୍ରାଚୀନ କାଳରେ, ଏସିଆ ଓ ୟୁରୋପରେ, ବାହ୍ୟବସ୍ତୁ ଉପରେ ଅନ୍ତର୍ମୁଖୀ ଜୀବନର ଆଧିପତ୍ୟ ନିମନ୍ତେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା ଏବଂ ତାହା ଅବଶ୍ୟମ୍ଭାବୀ ଭାବରେ ଅଧିବିଦ୍ୟା ଓ ଦର୍ଶନ ପ୍ରତି ଦୃଷ୍ଟି ନିର୍ଦ୍ଦେଶ ଦେଲା । ଆଧୁନିକ ମଣିଷ ସ୍ଥୂଳବସ୍ତୁରେ ବହୁଭାବରେ ଆଜି ଲିପ୍ତ ହେଲେ ମଧ୍ୟ ସେ ତାର ସଙ୍କଟ ଓ ମାନସିକ ଅଶାନ୍ତିର ମୁହୂର୍ତ୍ତିରେ ବହୁଧା ଦର୍ଶନ ଓ ଅଧିବିଦ୍ୟା ଧ୍ୟାନରେ ବୁଡ଼ି ରହିବାକୁ ଚାହେଁ ।

ଯଦିଓ ଆମଭିତରୁ ଅନେକେ ନିର୍ବିଚାର ଭାବରେ, ଏ ପୁରୁଷ ଓ ପରିବେଷ୍ଟନୀର ଯାହା ଚରିତ୍ର, ସେପରି ଏକ ସାଧାରଣ ଧାରଣା ଗ୍ରହଣ କଲେ ସୁଦ୍ଧା ଆମ ସମସ୍ତଙ୍କର, ଅସ୍ପଷ୍ଟ ହେଉ କି ନିର୍ଦ୍ଦିଷ୍ଟ ହେଉ, ଜୀବନର ଗୋଟାଏ ଦର୍ଶନ ଅଛି । ଯେଉଁ ବିଶ୍ୱାସ ଭିତରେ ଆମେ ବଢ଼ିଥାଉଁ ତାର ଏକ ଅଂଶ ଭାବରେ କେତେକ ଆଧିଭୌତିକ ଧାରଣାକୁ ମଧ୍ୟ ଆମ ଭିତରୁ ଅନେକେ ଗ୍ରହଣ କରିଥାଆନ୍ତି । ଅଧିବିଦ୍ୟା ପ୍ରତି ମୁଁ କେବେ ଆକୃଷ୍ଟ ହୋଇନି । ବସ୍ତୁତଃ, ଅନିର୍ଦ୍ଦିଷ୍ଟ ବିଚାର ବା ଚିନ୍ତା ପ୍ରତି ମୋର ଅନୁରାଗ କେବେହେଲେ ନାହିଁ । ତଥାପି, ପ୍ରାଚୀନ ଓ ଆଧୁନିକ କାଳର ଆଧିଭୌତିକ ଓ ଦାର୍ଶନିକ ଚିନ୍ତାର ଅନମନୀୟ ଧାରା ଅନୁସରଣ କରିବା ପ୍ରୟାସରେ ମୁଁ ବେଳେବେଳେ ସେଥିପ୍ରତି ଗୋଟାଏ ପ୍ରକାର ବୌଦ୍ଧିକ ଆକର୍ଷଣ ଅନୁଭବ କରିଚି; କିନ୍ତୁ ମୁଁ କେବେହେଲେ ସେ ଭିତରେ ସ୍ୱସ୍ତି ଅନୁଭବ କରିନି ଏବଂ ସେହି ଚିନ୍ତାର ଜଟିଳତାରୁ ଖସିଆସିଲେ ମୁକ୍ତିର ନିଃଶ୍ୱାସ ଛାଡ଼ିଚି ।

ସାରତଃ, ମୁଁ ଏ ଜଗତ ଏ ଜୀବନ ସମ୍ପର୍କରେ ଆଗ୍ରହୀତ; ଅନ୍ୟ ଜଗତ ଅବା ଭବିଷ୍ୟତର ଜୀବନ ସମ୍ପର୍କରେ ନୁହେଁ । ଆତ୍ମା ବୋଲି କିଛି ଅଛି କି ନାହିଁ ଅବା ମୃତ୍ୟୁ ପରେ ଗୋଟାଏ ଜୀବନ ଅଛି କି ନାହିଁ, ମୁଁ ଜାଣେନି । ଏସବୁ ପ୍ରଶ୍ନ କେତେ ଗୁରୁତ୍ୱପୂର୍ଣ୍ଣ ହେଲେ ମଧ୍ୟ ମତେ ତିଳେହେଲେ ବିଚଳିତ କରେନି । ମୁଁ ଯେଉଁ ପରିବେଶରେ ବଢ଼ିଚି, ସେଥିରେ ଆତ୍ମା ଓ ପରକାଳର ଜୀବନ, ହେତୁ ଓ କ୍ରିୟାର କର୍ମଫଳ ତତ୍ତ୍ୱ ଓ ପୁନର୍ଜନ୍ମବାଦକୁ ଦ୍ୱିଧାହୀନ ଭାବରେ ସ୍ୱୀକାର କରାଯାଏ । ଏଥିରେ ମୁଁ ବି ପ୍ରଭାବିତ ହୋଇଚି ଏବଂ ଗୋଟାଏ ଭାବରେ କହିଲେ ଏସବୁ ଧାରଣା ପ୍ରତି ମୋର ସେପରି କିଛି ବିରୋଧିତା ନାହିଁ । ହୁଏତ ଆତ୍ମା ବୋଲି କିଛି ଗୋଟାଏ ଥାଇପାରେ, ଦେହର ବିନାଶରେ ଯାହାର ବିନାଶ ହୁଏନି । ଜୀବନର କ୍ରିୟାକୁ ପରିଚାଳିତ କରୁଥିବା କାର୍ଯ୍ୟ-କାରଣ ତତ୍ତ୍ୱ ମଧ୍ୟ ଯୁକ୍ତିଯୁକ୍ତ ଜଣାଯାଏ । ଅବଶ୍ୟ ଅନ୍ତିମ ହେତୁ ସମ୍ପର୍କରେ ବିଚାରକରି ବସିଲେ, ଏ ତତ୍ତ୍ୱର ମୀମାଂସା ସହଜ ହୁଏନାହିଁ । ଆତ୍ମା ଅଛି ବୋଲି ଅନୁମାନ କଲେ ପୁନର୍ଜନ୍ମତତ୍ତ୍ୱ ପଛରେ କିଛି ଯୁକ୍ତି ଅଛି ବୋଲି ଜଣାଯାଏ ।

ମୁଁ କିନ୍ତୁ ଏସବୁ ତତ୍ତ୍ୱ କିମ୍ବା ଅନ୍ୟ କିଛି ତତ୍ତ୍ୱ ଅବା ଧାରଣା ଉପରେ, ଗୋଟାଏ ଧର୍ମ-ବିଶ୍ୱାସ ଭାବରେ, ଆସ୍ଥା ରଖେନି । ଗୋଟାଏ ଅଜ୍ଞାତ ପ୍ରଦେଶ, ଯାହା ସମ୍ପର୍କରେ ଆମେ ସମ୍ପୂର୍ଣ୍ଣ ଅଜ୍ଞ, ସେ ବିଷୟରେ ସେ ସବୁ ବୌଦ୍ଧିକ ଚିନ୍ତାର ବିଳାସ ମାତ୍ର । ସେ ସବୁ ମୋ ଜୀବନର ଧାରାକୁ ପ୍ରଭାବିତ କରୁନି ଓ ତାର ଭ୍ରାନ୍ତାଭ୍ରାନ୍ତି ପ୍ରମାଣ ମୋ ପକ୍ଷରେ ବିଶେଷ

କିଛି ପ୍ରଭେଦ ପ୍ରଦର୍ଶନ କରିବନି ।

ପ୍ରେତବିଦ୍ୟା ଜରିଆରେ ପ୍ରେତଙ୍କୁ ଡାକିଆଣିବା ଅବା ସେପରି ଅନ୍ୟ କିଛି ପ୍ରଦର୍ଶନ କରିବା କିମ୍ବା ମୃତ୍ୟୁପରେ ଜୀବନର ରହସ୍ୟ ଓ ମାନସିକ ଅନୁଲକ୍ଷଣ ସନ୍ଧାନ କରିବାର ମାର୍ଗ ମତେ ସର୍ବଦା ହାସ୍ୟାସ୍ପଦ ଓ ଅବାସ୍ତବ ମନେହୋଇଥାଏ । ସାଧାରଣତଃ, ଏହା ଅପେକ୍ଷା ଅଧିକ କିଛି ମନ୍ଦ ହିଁ ଘଟିଥାଏ ଏବଂ ଯେଉଁମାନେ ମାନସିକ ଜଞ୍ଜାଳରୁ ପଳାୟନ କରିବାକୁ ଚାହିଁଥାନ୍ତି, ସେପରି କେତେକ ଆତ୍ମଭୋଳା ଲୋକଙ୍କର ମସ୍ତିଷ୍କର ଭାବୋଚ୍ଛ୍ୱାସରୁ ଲାଭ ଉଠାଇବାର ଗୋଟାଏ ପନ୍ଥା ମାତ୍ର । ଏପରି କେତେକ ମାନସିକ ପ୍ରତିଭାସ ପଛରେ ସତ୍ୟର ଭିତ୍ତିଥିବାର ସମ୍ଭାବନା ମୁଁ ଅସ୍ୱୀକାର କରୁନି; କିନ୍ତୁ ଏ ଢଗଟା ମତେ କାହିଁକି ଠିକ୍ ମନେହେଉନି ଏବଂ ଏଥିରୁ ଯେଉଁଭଳି ଭାବରେ ପ୍ରମାଣ ଦିଆଯାଇ ମୀମାଂସା ବାହାର କରାଯାଏ, ମତେ ତାହା ନ୍ୟାୟସଙ୍ଗତ ମନେହୁଏନି ।

ଏ ଜଗତକୁ ମୁଁ ଯେବେ ଦେଖେ, ବହୁବାର କି ଏକ ରହସ୍ୟ ଓ କେତେ ଅଜ୍ଞାତ ଗମ୍ଭୀରତାର ଆଭାସ ମତେ ମିଳେ, ଆଉ ଯେତେଦୂର ପାରିବି, ଏହାକୁ ବୁଝିବାର ପ୍ରେରଣା ମୋ ଭିତରେ ଜାଗ୍ରତ ହୁଏ । ସେତିକି କେବଳ ନୁହେଁ, ଏଥିରେ ତନ୍ମୟ ହୋଇ ଏହାର ପୂର୍ଣ୍ଣତା ଅନୁଭବ କରିବାର ଆକାଂକ୍ଷା ପ୍ରବଳ ହୁଏ; କିନ୍ତୁ ଏହା ବୁଝିବାର ପନ୍ଥା ମୋର ବିବେଚନାରେ ବୈଜ୍ଞାନିକ ପନ୍ଥା ହିଁ ହୋଇପାରେ । ଅର୍ଥାତ୍ ଯେଉଁଥିରେ ବସ୍ତୁର ସମୀକ୍ଷା ବସ୍ତୁ ଭାବରେ କରାଯାଇଥାଏ, ମୁଁ ଅବଶ୍ୟ ଉପଲବ୍ଧି କରୁଛି ଯେ ପ୍ରକୃତ ବସ୍ତୁମୁଖୀନତା ବୋଲି ସେପରି କିଛି ରହିନପାରେ; କିନ୍ତୁ ଆତ୍ମମୁଖୀନତା ଯଦି ଅନିବାର୍ଯ୍ୟ ଓ ଅବଶ୍ୟମ୍ଭାବୀ, ଯେତେଦୂର ସମ୍ଭବ ହୋଇପାରେ; ଏହା ବୈଜ୍ଞାନିକ ପ୍ରଣାଳୀଦ୍ୱାରା ନିୟନ୍ତ୍ରିତ ହେବା ଆବଶ୍ୟକ ।

'ଦୁର୍ଜ୍ଞେୟ' କଣ ମୁଁ ଜାଣେନି । ଏହାକୁ ମୁଁ ଈଶ୍ୱର ନାମ ଦେଉନି; କାରଣ ଈଶ୍ୱର କହିଲେ ଯାହା ବୁଝାଯାଇଥାଏ, ସେଥିରୁ ବହୁତ କିଛି ଉପରେ ମୋର ବିଶ୍ୱାସ ନାହିଁ । କୌଣସି ବିଗ୍ରହ ଅବା କୌଣସି ଅଜ୍ଞାତ ସାର୍ବଭୌମ ଶକ୍ତିକୁ ମନୁଷ୍ୟ ରୂପରେ ଚିନ୍ତାକରିବା ମୋର ସାମର୍ଥ୍ୟର ବାହାରେ ଏବଂ ଅନେକେ ଯେ ସେପରି ମନେକରନ୍ତି ସେଥିରେ ମୋର ବିସ୍ମୟର ଅବଧି ନଥାଏ । କୌଣସି ପ୍ରକାର ଗୋଟାଏ ଇଷ୍ଟଦେବତାର ଧାରଣା ମତେ ବଡ଼ ଅଦ୍ଭୁତ ମନେହୋଇଥାଏ । ବୁଦ୍ଧି ଦିଗରୁ କେତେପର୍ଯ୍ୟନ୍ତ ଅଦ୍ୱୈତ ଧାରଣାକୁ ମୁଁ ବୁଝିପାରେ ଏବଂ ବେଦାନ୍ତର ଏହି ଅଦ୍ୱୈତଦର୍ଶନ ପ୍ରତି ମୁଁ ଆକୃଷ୍ଟ ହୋଇଛି । ଅବଶ୍ୟ ତାର ସମସ୍ତ ଗମ୍ଭୀରତା ଓ ଜଟିଳତା ବୁଝିପାରିଛି ବୋଲି ମୁଁ କହିପାରୁନି; କିନ୍ତୁ ମୁଁ ଉପଲବ୍ଧି କରିଛି ଯେ ଏକପ୍ରକାର ବିଷୟରେ ନିଜର ବୁଦ୍ଧି ପ୍ରୟୋଗ କରି ବୁଝିବାରେ ବିଶେଷ ଦୂର ଯାଇ-ହୁଏନି । ସଙ୍ଗେ ସଙ୍ଗେ, ବେଦାନ୍ତ ହେଉ କିମ୍ବା ଅନ୍ୟ ସେପରି କିଛି ପନ୍ଥାରେ ଅନନ୍ତ ଭିତରକୁ ସେମାନଙ୍କର ଏହି ଆକାରହୀନ ଅନିର୍ଦ୍ଦିଷ୍ଟ ଯାତ୍ରା ମତେ ଏକରକମ ଭୟଭୀତ କରିଥାଏ । ପ୍ରକୃତିର ବିବିଧତା ଓ ପୂର୍ଣ୍ଣତା ମୋ ଭିତରେ ଆଲୋଡ଼ନ ସୃଷ୍ଟିକରେ ଓ ସେଥିରୁ ମତେ ଆତ୍ମିକ ଶାନ୍ତି ବି ମିଳେ ଏବଂ ମୋର୍ ଖିଆଲ୍ ହୁଏ କି ମୁଁ ପ୍ରାଚୀନ ଭାରତୀୟ ଅବା ଯାବନିକ

ବିଗ୍ରହ ସମାରୋହ ଓ ସର୍ବେଶ୍ୱରବାଦର ବାତାବରଣ ଭିତରେ ଘରୋଇ ପରିବେଶ ପାଇ-ପାରିଛି; ଅବଶ୍ୟ ସେଥିରେ ଯୁକ୍ତଥିବା ଏକ ଅବା ତତୋଽଧିକ ଦେବତାର ଧାରଣା ବ୍ୟତୀତ ।

ଜୀବନ ପ୍ରତି ନୀତି-ମୀମାଂସାର ଆବେଦନ ମୋର ପ୍ରାଣକୁ ସ୍ପର୍ଶକରେ; ଯଦିଓ ଯୁକ୍ତିଦେଇ ତାର ଯଥାର୍ଥତା ପ୍ରତିପାଦନ କରିବା ମୋ ପକ୍ଷରେ ସହଜ ନୁହେଁ । ଠିକ୍ ଉପାୟ ଉପରେ ଗାନ୍ଧିଜୀଙ୍କ ଗୁରୁତ୍ୱ ଆରୋପ ପ୍ରତି ମୁଁ ଆକୃଷ୍ଟ ହୋଇଛି ଏବଂ ମୁଁ ମନେକରେ, ରାଜନୈତିକ ଜୀବନପ୍ରତି, ଉପାୟ ଉପରେ ତାଙ୍କର ଏହି ଗୁରୁତ୍ୱ ଅର୍ପଣ, ତାଙ୍କର ଅନ୍ୟତମ ମହାନ୍ ଅବଦାନ । ଏହି ଧାରଣା କିଛି ନୂଆ ନୁହେଁ; କିନ୍ତୁ ବ୍ୟାପକ ରାଜନୈତିକ କର୍ମପ୍ରତି ଏହି ନୀତିବାଦର ପ୍ରୟୋଗ ପ୍ରକୃତରେ ଅଭିନବ । ଏଥିରେ ଅସୁବିଧାର ଅନ୍ତ ନାହିଁ ଏବଂ ବୋଧହୁଏ ଲକ୍ଷ୍ୟ ଓ ଉପାୟ ପ୍ରକୃତରେ ପରସ୍ପରଠାରୁ ବିଚ୍ଛିନ୍ନ ନୁହନ୍ତି; ଉଭୟେ ମିଳିତ ଭାବରେ ଗୋଟିଏ ସମଷ୍ଟି-ବସ୍ତୁ ରଚନା କରନ୍ତି । ଯେଉଁ ଜଗତରେ ଉପାୟକୁ ଅବଜ୍ଞା କରି ଅନନ୍ୟ-ଭାବରେ ଲକ୍ଷ୍ୟ କଥା କେବଳ ଚିନ୍ତା କରାଯାଏ, ଉପାୟ ଉପରେ ଏହି ଗୁରୁତ୍ୱ ଅର୍ପଣ ବେଖାପ ତଥା ଅଦ୍‌ଭୁତ ମନେହୁଏ । ଭାରତରେ ଏହା କେତେଦୂର ସଫଳ ହୋଇଛି,ମୁଁ କହିପାରିବିନି; କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ବହୁ ଲୋକଙ୍କ ମନରେ ଏହା ଏକ ଗଭୀର ତଥା ପାଳନୀୟ ଧାରଣା ସୃଷ୍ଟିକରିଛି ।

ମାର୍କସ ଓ ଲେନିନଙ୍କ ଗ୍ରନ୍ଥସମୂହର ଅଧ୍ୟୟନ ମୋର ମନରେ ଶକ୍ତିଶାଳୀ ପ୍ରଭାବ ପକାଇଲା ଏବଂ ଇତିହାସ ଓ ଚଳନ୍ତି ବ୍ୟାପାରଗୁଡ଼ିକୁ ଗୋଟାଏ ନୂତନ ଆଲୋକରେ ଦେଖିବାରେ ମତେ ସାହାଯ୍ୟକଲା । ଇତିହାସର ଦୀର୍ଘଧାରାରେ ଓ ସାମାଜିକ ଉନ୍ନୟନର କିଛି ଅର୍ଥ,କିଛି ଅନୁକ୍ରମ ଥିବାଭଳି ମତେ ପ୍ରତୀତ ହେଲା ଏବଂ ଭବିଷ୍ୟତର ଦୁର୍ବୋଧତା କିଛି ଲାଘବ ହେଲା । ନାନା ଦିଗରେ ସୋଭିଏଟ୍ ୟୁନିଅନର ବାସ୍ତବ ସାଫଲ୍ୟ ମତେ ପ୍ରବଳ ଭାବରେ ଉଦ୍‌ବୁଦ୍ଧ କରିଥିଲା । ଅନେକ ସମୟରେ ସେଠାର କୌଣସି କାର୍ଯ୍ୟର ଗତି ମୁଁ ବୁଝି ନଥିଲି ଅବା ପସନ୍ଦ କରୁ-ନଥିଲି ଏବଂ ମୋର ମନେହେଉଥିଲା ଯେ ଏପ୍ରକାର ଗତି ତାତ୍‌କାଳିକ କ୍ଷମତା-ରାଜନୀତି ଓ ମୁହୂର୍ତ୍ତର ସୁବିଧାବାଦ ସଙ୍ଗେ ଜଡ଼ିତ । ଏସବୁ ସତ୍ତ୍ୱେ, ମଣିଷର କଲ୍ୟାଣ ନିମନ୍ତେ, ମୌଳିକ ପ୍ରେରଣାର କେତେ ସମ୍ଭାବ୍ୟ ବିକୃତି ସତ୍ତ୍ୱେ ମୋର ସନ୍ଦେହ ନଥିଲା ଯେ ସୋଭିଏଟ୍ ବିପ୍ଳବ ମାନବ-ସମାଜକୁ ବଡ଼ ଏକ ଲମ୍ଫଦେଇ ଆଗେଇ ନେଇଯାଇଛି; ଗୋଟିଏ ଉଜ୍ଜ୍ୱଳ ବର୍ତ୍ତିକା ଜାଳିଦେଇଛି; ଯାହା ଲିଭିବାର ନୁହେଁ ଏବଂ ସେହି ନୂତନ ସଭ୍ୟତାର ଭିତ୍ତି ସ୍ଥାପନ କରିଛି, ଯାହାକୁ ପୃଥିବୀ ଆଗେଇ ନେଇଯାଇ ପାରିବ । ମୁଁ ବ୍ୟକ୍ତିତ୍ୱବାଦୀ ଓ ବ୍ୟକ୍ତିସ୍ୱାତନ୍ତ୍ର୍ୟରେ ବିଶ୍ୱାସୀ । ଅତଏବ, ବ୍ୟକ୍ତି-ଜୀବନ ଉପରେ କଠୋର ନିୟମ ଶୃଙ୍ଖଳାର ପ୍ରୟୋଗ ମୁଁ ପସନ୍ଦ କରେନି । ତଥାପି ମତେ ସ୍ପଷ୍ଟ ଜଣାଯାଉଥିଲା ଯେ ଗୋଟାଏ ଜଟିଳ ସାମାଜିକ ଗଢ଼ଣରେ ବ୍ୟକ୍ତିସ୍ୱାତନ୍ତ୍ର୍ୟ ସୀମିତ କରିବାକୁ ହିଁ ପଡ଼ିବ ଏବଂ ହୁଏତ ବ୍ୟକ୍ତିସ୍ୱାତନ୍ତ୍ର୍ୟ ଅଧ୍ୟୟନ କରିବାର ଏକମାତ୍ର ବାଟ ହେଉଛି ସାମାଜିକ କ୍ଷେତ୍ରରେ ସେପରି କିଛି ସୀମାବନ୍ଧନର ଜରିଆରେ । ବୃହତ୍ତର ସ୍ୱତନ୍ତ୍ରତା ନିମନ୍ତେ କେତେକ କ୍ଷୁଦ୍ରତର ସ୍ୱାଧିକାର ବାରମ୍ବାର ସୀମିତ କରିବା ଆବଶ୍ୟକ ହୋଇପାରେ ।

ମାର୍କସ୍‌ବାଦୀ ଦାର୍ଶନିକ ଦୃଷ୍ଟିଭଙ୍ଗୀର ବହୁତ କିଛି ବିନା ଦ୍ୱିଧାରେ ମୁଁ ଗ୍ରହଣକରି ପାରିଥିଲି । ମନ ଓ ବସ୍ତୁରେ ଅଦ୍ୱୈତଭାବ, ବସ୍ତୁର ଗତିଶୀଳତା ଏବଂ କ୍ରିୟା ଓ ପାରସ୍ପରିକ କ୍ରିୟା, ହେତୁ ଓ ପରିଣାମ, ଅନ୍ୱୟ, ପ୍ରତ୍ୟନ୍ୱୟ ଓ ସମନ୍ୱୟ ଜରିଆରେ ବିବର୍ତ୍ତନ ତଥା ଉଲ୍ଲମ୍ଫନଦ୍ୱାରା ବିରାମହୀନ ପରିବର୍ତ୍ତନର ନ୍ୟାୟସମ୍ମତ ବ୍ୟାଖ୍ୟା ମୋ ପକ୍ଷରେ ଦୁର୍ବୋଧ ହେଉନଥିଲା; କିନ୍ତୁ ଏହା ମତେ ସମ୍ପୂର୍ଣ୍ଣ ସନ୍ତୋଷ ଦେଇପାରି ନଥିଲା କିମ୍ବା ମୋର ମନର ସବୁ କିଛି ପ୍ରଶ୍ନର ଉତ୍ତର ଯୋଗାଇ ପାରିନଥିଲା ଏବଂ ପ୍ରାୟ ମୋର ଅଜ୍ଞାତରେ ବେଦାନ୍ତର ମାର୍ଗଭଳି ଗୋଟାଏ ଅସ୍ପଷ୍ଟ ଆଦର୍ଶବାଦ ମୋର ମନ ଭିତରକୁ ପଶିଆସୁଥିଲା । ମନ ଓ ବସ୍ତୁର ପ୍ରଭେଦ ନୁହେଁ, ମନର ଅପର ପାର୍ଶ୍ୱରେ କି ଅଜ୍ଞାତ ବସ୍ତୁ ଅଛି ମୋର ଚିନ୍ତା ଥିଲା ସେ ବିଷୟରେ । ଅଧିକନ୍ତୁ, ନୀତିମୀମାଂସାର ପୃଷ୍ଠଭୂମି ବି ରହିଥିଲା । ମୁଁ ଉପଲବ୍ଧି କଲି, ନୈତିକ ଦିଗ ପରିବର୍ତ୍ତନଶୀଳ ଏବଂ ଏହା ବର୍ତ୍ତମାନ ମନ ଓ ଅଗ୍ରଗାମୀ ସଭ୍ୟତା ଉପରେ ନିର୍ଭରକରେ । ଏହା ଯୁଗର ମାନସିକ ଅବସ୍ଥାଦ୍ୱାରା ନିୟନ୍ତ୍ରିତ । ତଥାପି କେତେକ ଅଧିକତର ସ୍ଥାୟୀ ମୌଳିକ ପ୍ରେରଣା ଅପେକ୍ଷା ସେଥିରେ ବେଶି କିଛି ଥିଲା । ଅନ୍ୟ ଆଚରଣ ଭଳି କମ୍ୟୁନିଷ୍ଟ ଆଚରଣରେ କର୍ମ ଓ ଏହି ସବୁ ମୌଳିକ ପ୍ରେରଣା ଅବା ନୀତିର ବାରମ୍ବାର ବିଚ୍ଛେଦ ମୁଁ ପସନ୍ଦ କରୁନଥିଲି । ମୋ ମନରେ ଏପରି ନାନା ବିଷୟ ଭିଡ଼ ରହିଥିଲା, ଯେଉଁଥିରୁ ମୁଁ ଯୁକ୍ତିଯୁକ୍ତ ମୀମାଂସା ପାଇ ପାରୁନଥିଲି । ସେସବୁ ମୌଳିକ ପ୍ରଶ୍ନ, ଯାହାର ଉତ୍ତର ମିଳିବା ଦୁରୁହ ଜଣାଯାଉଥିଲା, ସେଥି ଉପରେ ବିଶେଷ ଧ୍ୟାନ ନଦେଇ ଜୀବନର ଯାହା ସବୁ ସମସ୍ୟା ଟିକିଏ, ସଙ୍କୁଚିତ ପରିସର ଓ ଜରୁରୀ ଭାବରେ, ସେଥିନିମନ୍ତେ କିପରି କଣ କରାଯିବ ସେଥି ଉପରେ ଅଭିନିବେଶ କରିବାର ଗୋଟାଏ ସାଧାରଣ ଆକର୍ଷଣ ମନରେ ହେଉଥିଲା । ଅନ୍ତିମ ବାସ୍ତବତା ଯାହା ହେଉନା କାହିଁକି ଏବଂ ତାକୁ ଆମେ ସମଗ୍ର ଭାବରେ ଅବା ଆଂଶିକ ଭାବରେ ଧରିପାରୁଚି କି ନାହିଁ—ସେ ପ୍ରଶ୍ନ ଯାହାହେଉ, ମାନବିକଜ୍ଞାନ ବୃଦ୍ଧି କରିବାର ବିଶାଳ ସମ୍ଭାବନା ଯେ ରହିଚି, ମତେ ନିଶ୍ଚିତ ଜଣାପଡ଼ୁଥିଲା । ଏହା ଆଂଶିକ ଭାବରେ ଅବା ବସ୍ତୁତଭାବରେ ଆତ୍ମମୁଖୀ ହେଇପାରେ; କିନ୍ତୁ ମାନବିକ ଜୀବନର ପ୍ରଗତି ଓ ଉନ୍ନତି ଏବଂ ସାମାଜିକ ସଂଗଠନ ନିମନ୍ତେ ପ୍ରୟୋଗ କରାଯାଇ ପାରିବ ।

ଅତୀତରେ ଯେପରି ଥିଲା ଆଜି ବି, ଟିକିଏ ସଙ୍କୁଚିତ ଭାବରେ, କେତେକଙ୍କ ଭିତରେ ଯାହା ଦେଖାଯାଏ, ତାହା ହେଉଚି ଏ ବ୍ରହ୍ମାଣ୍ଡର ରହସ୍ୟଭେଦ କରିବାର ମଗ୍ନତା । ଏହା ସେମାନଙ୍କୁ ଆଜିର ବ୍ୟକ୍ତିଗତ ଓ ସାମାଜିକ ସମସ୍ୟାମାନଙ୍କରୁ ଦୂରକୁ ନେଇଯାଏ ଏବଂ ଯେତେବେଳେ ଏ ରହସ୍ୟ ଭେଦ କରିବାରେ ସେମାନେ ବିଫଳ ହୁଅନ୍ତି, ହତାଶଭାବରେ ନିଷ୍କ୍ରିୟ ହେଇ ପଡ଼ନ୍ତି; କୌଣସି ତୁଚ୍ଛତା ପ୍ରତି ଆକୃଷ୍ଟ ହୁଅନ୍ତି; କିମ୍ବା କୌଣସି ମତାନ୍ଧତାରେ ସାନ୍ତ୍ୱନା ଲାଭକରନ୍ତି । ସମାଜ ପକ୍ଷରେ ଯାହାସବୁ କଲ୍ୟାଣକର ଏବଂ ଯାହାର ବହୁତ କିଛି ନିରାକରଣୀୟ, ଯେପରିକି କୌଣସି ଆଦି-ପାପ ଅବା ମଣିଷ ପ୍ରକୃତିର ଅପରିବର୍ତ୍ତନୀୟତା ଅଥବା ସାମାଜିକ ଗଢ଼ଣ, ନରୁବା ଆମ ଭାରତରେ ଯେପରି, ଗତ ବହୁ ଜନ୍ମର ଅବଶ୍ୟମ୍ଭାବୀ ଦାୟ ଉପରେ ଲଦି ଦିଆଯାଏ । ଏହି ଅନୁସାରେ ଯୁକ୍ତିଯୁକ୍ତ ତଥା

ବିଜ୍ଞାନସମ୍ମତ ଭାବରେ ଚିନ୍ତା କରିବାର ପ୍ରୟାସ ମଧ୍ୟ ତ୍ୟାଗକରି ବିବେଚନାହୀନତା, ଅନ୍ଧ-ବିଶ୍ୱାସ ଏବଂ ଅଯୌକ୍ତିକ ତଥା ନ୍ୟାୟ ବିଚ୍ୟୁତ ସାମାଜିକ ପକ୍ଷପାତ ବିଚାର ଓ ଆଚରଣରେ ସେମାନେ ଆଶ୍ରୟ ନେଉଛନ୍ତି । ଏକଥା ଅବଶ୍ୟ ସତ୍ୟ ଯେ ଯୁକ୍ତିସଙ୍ଗତ ତଥା ବିଜ୍ଞାନସମ୍ମତ ଚିନ୍ତା ମଧ୍ୟ ସବୁ ସମୟରେ, ଆମେ ଯେତେ ଦୂର ଯିବାପାଇଁ ପସନ୍ଦ କରନ୍ତେ, ସେତେଦୂର ନେଇପାରେନି । ଘଟଣାକୁ ପ୍ରଭାବିତ ଓ ତାର ଧାରା ନିର୍ଣ୍ଣୟ କରିବାରେ ପରିବର୍ତ୍ତିତ ପରିମାଣରେ ନାନା କାରଣ ଓ ସମ୍ପର୍କ କାର୍ଯ୍ୟ କରେ । ସେ ସବୁ ଧରିପାରିବା ଅସମ୍ଭବ ସତ୍ୟ; କିନ୍ତୁ ସେଥିରେ ଯେଉଁସବୁ ପ୍ରବଳପ୍ରଭାବୀ ଶକ୍ତି କାର୍ଯ୍ୟ କରୁଛି, ଆମେ ସେସବୁ ବାଛିନେଇ ପାରିବା ଏବଂ ସ୍ଥୂଳ ଭୌତିକବାସ୍ତବତା ଲକ୍ଷ୍ୟକରି, ପରୀକ୍ଷା-ନିରୀକ୍ଷା, ଚେଷ୍ଟା ଓ ତ୍ରୁଟି ଭିତର ଦେଇ ଚିରବିସ୍ତାରଶୀଳ ଜ୍ଞାନ ଓ ସତ୍ୟରେ ପହଞ୍ଚିବା ପାଇଁ ମାର୍ଗ ଧରିପାରିବା ।

ଏହି ଉଦ୍ଦେଶ୍ୟ ନିମନ୍ତେ ଏବଂ ଏହିସବୁ ସୀମାବନ୍ଧନ ଭିତରେ ସାଧାରଣତଃ ମାର୍କସବାଦୀ ଦୃଷ୍ଟିକୋଣ, ଯାହା ବର୍ତ୍ତମାନର ବୈଜ୍ଞାନିକ ବିଚାର ସଙ୍ଗେ କମ୍ ବହୁତ ମେଳଖାଏ, ମତେ ବହୁତ ପରିମାଣରେ ସହାୟକ ହେବ ବୋଲି ଜଣାଗଲି; କିନ୍ତୁ ଏହା ଗ୍ରହଣକଲେ ମଧ୍ୟ ଯେଉଁସବୁ ପରିଣାମ ଏଥିରୁ ବାହାରେ ଏବଂ ଅତୀତ ଓ ବର୍ତ୍ତମାନ ଉପରେ ଏହାର ବ୍ୟାଖ୍ୟା ମତେ ସବୁ ସମୟରେ ସ୍ପଷ୍ଟ ବୋଲି ମନେ ହେଉ ନ ଥିଲା । ସାମାଜିକ ଉନ୍ନୟନର ଯେଉଁ ଅନୁଶୀଳନ ମାର୍କସ ଦେଇଛନ୍ତି ତାହା ମତେ ଅଦ୍‌ଭୁତ ଭାବରେ ନିର୍ଭୁଲ ମନେହୁଏ । ତଥାପି ପରବର୍ତ୍ତୀ ସମୟରେ ଯେଉଁସବୁ ଅବସ୍ଥା ଦେଖାଦେଲା, ନିକଟଭବିଷ୍ୟତ ସମ୍ପର୍କରେ ତାଙ୍କର ଦୃଷ୍ଟିକୋଣ ସଙ୍ଗେ ତାହା ମେଳ ଖାଇଲାନି । ଏଥିଭିତରୁ କେତେକ ଅବସ୍ଥା ପ୍ରତି ଲେନିନ୍ ମାର୍କସବାଦୀ ନିବନ୍ଧକୁ ସଫଳତା ସହକାରେ ଉପଯୋଗୀ କରାଇପାରିଲେ ଏବଂ ପୁଣି ସେହି ଦିନାବଧି ଆହୁରି ଅଦ୍‌ଭୁତ କେତେ ପରିବର୍ତ୍ତନ ଦେଖାଦେଇଛି । ଫାସିଷ୍ଟବାଦ ଓ ନାଜୀ-ବାଦର ଅଭ୍ୟୁଦୟ ଏବଂ ସେମାନଙ୍କ ପଛରେ ଯାହା ସବୁ ଥିଲା, ସେଥିଭିତରୁ ଅନ୍ୟତମ । ପ୍ରଯୁକ୍ତିବିଦ୍ୟାର ଅପ୍ରତ୍ୟାଶିତ ଦ୍ରୁତ ଉନ୍ନୟନ ଓ ବିଜ୍ଞାନ ବୃଦ୍ଧିର ବ୍ୟାପକ ତଥା ବାସ୍ତବ ପ୍ରୟୋଗ ଅତି ବିସ୍ମୟକର କ୍ଷିପ୍ରତା ସହକାରେ ପୃଥିବୀ-ଚିତ୍ର ପରିବର୍ତ୍ତନ କରିଯାଉଛି; ନୂତନ ବହୁ ସମସ୍ୟା ମଧ୍ୟ ସୃଷ୍ଟି ହେଉଛି ।

ଅତଏବ, ସମାଜବାଦୀ ତତ୍ତ୍ୱର ମୂଳ ବିଚାରତକ ମୁଁ ଗ୍ରହଣ କଲି ସତ୍ତ୍ୱ, ତାର ଆଭ୍ୟନ୍ତରୀଣ ବହୁବିଧ ବିବାଦ ସମ୍ପର୍କରେ ମୁଁ କେବେ ମୁଣ୍ଡ ଘୂରାଇନି । ଭାରତର ବାମପନ୍ଥୀ ଗୋଷ୍ଠୀମାନେ, ପରସ୍ପର ବିତଣ୍ଡାବାଦରେ ଓ ମତବାଦର ସୂକ୍ଷ୍ମ ସୂକ୍ଷ୍ମ ସବୁ ନେଇ ପ୍ରତ୍ୟଭିଯୋଗ କରିବାରେ ଯେଉଁମାନେ ଶକ୍ତି ଅପଚୟ କରୁଥିଲେ ଏବଂ ଯେଉଁଥିରେ ମୋର ଟିକେମାତ୍ର ଆଗ୍ରହ ନଥିଲା, ସେମାନଙ୍କ ପାଖରେ ମୁଁ ଧୈର୍ଯ୍ୟ ରଖିପାରୁନଥିଲି । ଜୀବନ ଅତିଶୟ ଜଟିଳ ଏବଂ ଯେତେ ପର୍ଯ୍ୟନ୍ତ ଆମର ସାମ୍ପ୍ରତିକ ଜ୍ଞାନ ଯେନି ଆମେ ବୁଝିପାରୁଥାଇଁ, ଏତେ ଅବୋଧ ଯେ ତାକୁ ଗୋଟାଏ ନିର୍ଦ୍ଦିଷ୍ଟ ମତବାଦର ଗଣ୍ଡିଭିତରେ ଆବଦ୍ଧକରିବା ଅସମ୍ଭବ ।

ମୋ ପାଖରେ ପ୍ରକୃତ ସମସ୍ୟା ହେଉଛି ବ୍ୟକ୍ତିଗତ ଓ ସାମାଜିକ ଜୀବନର ସମସ୍ୟା ।

ସୁସଙ୍ଗତ ଭାବରେ ଜୀବିକା ନିର୍ବାହ କରିବା, ବ୍ୟକ୍ତିର ବାହାର ଓ ଭିତର ଜୀବନ ଭିତରେ ଯଥୋଚିତ ଭାରସାମ୍ୟ ରକ୍ଷାକରିବା, ବ୍ୟକ୍ତି ଓ ଗୋଷ୍ଠୀ ଭିତରେ ସମ୍ପର୍କ ନିର୍ଣ୍ଣୟ କରିବା, ଅଖଣ୍ଡ ଭାବରେ ବେଳକୁ ବେଳ କିଛି ଉନ୍ନତ ଓ ଉଚ୍ଚ ହେବା, ସାମାଜିକ ଉନ୍ନୟନ ଆଉ ମଣିଷର ବିରାମହୀନ ଅଦ୍‌ଭୁତ କର୍ମର ସମସ୍ୟା । ଏସବୁ ସମସ୍ୟାର ସମାଧାନ କରିବାକୁ ଗଲେ ବିଜ୍ଞାନର ପ୍ରଣାଳୀ ଅନୁସାରେ ପର୍ଯ୍ୟବେକ୍ଷଣ ଓ ଯଥାଯଥ ଜ୍ଞାନର ମାର୍ଗ ଓ ସୁଚିନ୍ତିତ ଯୁକ୍ତି ନିଶ୍ଚିତ ଭାବରେ ଅନୁସରଣ କରିବାକୁ ପଡ଼ିବ । ଆମର ସତ୍ୟର ସନ୍ଧାନରେ ଏହି ପ୍ରଣାଳୀ ସର୍ବଥା ପ୍ରଯୁଜ୍ୟ ନହୋଇ ପାରେ; କାରଣ କଳା ଓ କବିତା ତଥା କେତେକ ମାନସିକ ଅଭିଜ୍ଞତା ଏପରି ଏକ ଭିନ୍ନ ଧର୍ମଭୁକ୍ତ, ଯେଉଁଥିରେ ବିଜ୍ଞାନର ବିଷୟମୁଖୀ ପ୍ରଣାଳୀକୁ କୌଶଳରେ ପରିହାର କରାଯାଇଥାଏ । ଅତଏବ, ସତ୍ୟ ଓ ବାସ୍ତବତା ବୋଧକରିବା ପଥରେ ଅନ୍ତର୍ଜ୍ଞାନ ଓ ଅନ୍ୟ ଯାହାସବୁ ପ୍ରଣାଳୀ, ବାଦଦେବା ଠିକ୍ ନୁହେଁ । ବିଜ୍ଞାନପାଇଁ ମଧ୍ୟ ସେ ସବୁର ଆବଶ୍ୟକତା ଅଛି; କିନ୍ତୁ ଆମକୁ ସବୁବେଳେ ଯୁକ୍ତିଦ୍ୱାରା ପରୀକ୍ଷିତ ଯଥାଯଥ ବିଷୟମୁଖୀଜ୍ଞାନର ନିଙ୍ଗର ଧରିବାକୁ ପଡ଼ିବ, ଅଧିକତର ପରୀକ୍ଷା ଓ ସାଧନା-ଦ୍ୱାରା ସେହି ଜ୍ଞାନକୁ ବହନ କରିବାକୁ ହେବ ଏବଂ ସବୁ ସମୟରେ ସାବଧାନ ରହିବାକୁ ହେବ । ଆଜିର ଆବଶ୍ୟକତା ଓ ଜୀବନର ଅନ୍ୟାନ୍ୟ ଦୈନନ୍ଦିନ ସମସ୍ୟା ସଙ୍ଗେ ସମ୍ପର୍କହୀନ କେଉଁ ଅନିର୍ଦ୍ଦିଷ୍ଟ କଳ୍ପନାର ସାଗରରେ ଆମେ ନିଜକୁ ଯେପରି ହଜାଇ ନଦେଉଁ । ଆଜିର ବିବିଧ ସମସ୍ୟାର ସମାଧାନ ଯୋଗାଇ ପାରିବ କେବଳ ଗୋଟାଏ ଜୀବନ୍ତ ଦର୍ଶନ ।

ଏହା ମଧ୍ୟ ହୋଇପାରେ ଯେ ଆମେ ଏହି ଆଧୁନିକ ଯୁଗର ମଣିଷ ହିସାବରେ, ଆମ ଯୁଗର ବିଭିନ୍ନ ସଫଳତାରେ ଆମେ ଗର୍ବ ଅନୁଭବ କରୁଥାଉଁ; କିନ୍ତୁ ଆମ ଯୁଗ ହାତରେ ଆମେ ସେପରି ବନ୍ଦୀ ଯେପରି ପ୍ରାଚୀନ କାଳର ଓ ମଧ୍ୟଯୁଗର ନରନାରୀ ସେମାନଙ୍କର ନିଜ ନିଜ ଯୁଗରେ ବନ୍ଦୀ ଥିଲେ । ଆମ ପୂର୍ବର ଲୋକେ ଯେପରି କରିଥିଲେ, ଆମେ ଯେଉଁ ମାର୍ଗରେ ସତ୍ୟର ସନ୍ଧାନ କରୁଥାଉଁ, ତାହାହିଁ ଠିକ୍ ମାର୍ଗ ବୋଲି ନିଜକୁ ଯେପରି ଭୁଲାଇ-ପାରୁଁ; କିନ୍ତୁ ଆମେ ସେହି ବନ୍ଦିଶାଳାରୁ ପଳାୟନ କରି ନପାରୁଁ, କିମ୍ବା ତାହା ଯଦି ପ୍ରକୃତରେ ମାୟା, ସେହି ମାୟାକୁ ସମ୍ପୂର୍ଣ୍ଣ ଭାବରେ ତ୍ୟାଗ କରି ନପାରୁଁ ।

ତଥାପି ମୋର ହୃଦ୍‌ବୋଧ ହୋଇଛି ଯେ ଇତିହାସର ଦୀର୍ଘ ଯାତ୍ରାରେ, ଅନ୍ୟ ଯାହାକିଛି ଅପେକ୍ଷା ଅଧିକତର ଭାବରେ, ବିଜ୍ଞାନର ବିବିଧ ପ୍ରଣାଳୀ ଓ ମାର୍ଗ ମଣିଷ ଜୀବନରେ ବିପ୍ଳବାତ୍ମକ ପରିବର୍ତ୍ତନ ଆଣିଦେଇଛି ଏବଂ ଆହୁରି ମୌଳିକ ପରିବର୍ତ୍ତନର ଦ୍ୱାର ଉନ୍ମୁକ୍ତ କରିଛି; ଏପରିକି ବହୁଦିନ ଧରି ଯାହା ଅଜ୍ଞାତ ବିବେଚିତ ହୋଇଛି, ସେହି ପ୍ରଦେଶର ତୋରଣ ପର୍ଯ୍ୟନ୍ତ ସନ୍ଧାନର ମାର୍ଗ ଲମ୍ବିଯାଇଛି । ବିଜ୍ଞାନର ବିବିଧ ସଫଳତା ସମ୍ପର୍କରେ କହିବା ବାହୁଲ୍ୟ ମାତ୍ର । ଗୋଟାଏ ଅଭାବଗ୍ରସ୍ତ ଅର୍ଥନୀତିକୁ ପ୍ରଚୁରତାର ଅର୍ଥନୀତିରେ ରୂପାନ୍ତରିତ କରିବାରେ ତାର ସାମର୍ଥ୍ୟ ଆଉ ଯେଉଁ ସବୁ ସମସ୍ୟା ଏପର୍ଯ୍ୟନ୍ତ ଦର୍ଶନର ଏକଚାଟିଆ ଅଧିକାର ବିବେଚିତ ହେଉଥିଲା, ସେ ସବୁର ସମାଧାନ ଯୋଗାଇବାରେ ବିଜ୍ଞାନର ସଫଳତା ବେଳକୁ ବେଳ ସ୍ପଷ୍ଟତର ହେଉଛି । ଦେଶ-କାଳ ଓ ପରିମାଣ ତତ୍ତ୍ୱ ଭୌତିକ

ବଶ୍ବର ଚଣ ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତିତ କରିଦେଇଛି । ବସ୍ତୁର ସ୍ୱଭାବ, ପରମାଣୁର ଗଠନ, ମୌଳିକ ପଦାର୍ଥର ଅବସ୍ଥାନ୍ତର ପ୍ରାପ୍ତି ଏବଂ ବିଦ୍ୟୁତ୍ ଓ ଆଲୋକର ପରସ୍ପର ଭିତରେ ରୂପାନ୍ତରଣ ଦିଗରେ ଅଧୁନାତନ ବିବିଧ ଗବେଷଣା ମଣିଷର ଜ୍ଞାନକୁ ବହୁଦୂର ଆଗେଇ ନେଇଯାଇଛି । ତା'ଠାରୁ ପୃଥକ୍ ଅବା ସ୍ୱତନ୍ତ୍ର ଭାବରେ ମଣିଷ ଆଉ ପ୍ରକୃତିକୁ ଦେଖୁନି । ମଣିଷର ଭାଗ୍ୟ ପ୍ରକୃତିର ଛନ୍ଦୋବଦ୍ଧ ଶକ୍ତିର ଗୋଟାଏ ଅଂଶଭଳି ପ୍ରତୀତ ହେଉଛି ।

ବିଜ୍ଞାନର ଅଗ୍ରଗତି ଯୋଗୁଁ ଚିନ୍ତାର ଏ ସମସ୍ତ ଉଦ୍‌ବେଳନ ବୈଜ୍ଞାନିକଙ୍କୁ ଆଧିଭୌତିକ-ତାର ସୀମା ସଂଲଗ୍ନ ଗୋଟାଏ ନୂତନ ପ୍ରଦେଶରେ ନେଇ ଉପନୀତ କରାଇଛି । ବାରମ୍ବାର ସେମାନେ ପୃଥକ୍ ଓ ପରସ୍ପର ଖଣ୍ଡନଶୀଳ ନିଷ୍ପତ୍ତିମାନ ବାହାର କରୁଚନ୍ତି । କେହି କେହି ସେଥିରେ ସଂଯୋଗର ବନ୍ଧନ ଗୋଟାଏ ନୂତନ ଏକତ୍ୱ ଲକ୍ଷ୍ୟ କରୁଚନ୍ତି । ଅନ୍ୟମାନେ, ବେଟ୍ରାଣ୍ଡ ରସେଲ୍ ଭଳି କହନ୍ତି, ପର୍ମେନିଡ଼ିସ୍ ସମୟରୁ ଦର୍ଶନାଗ୍ରହୀମାନେ ବରାବର ବିଶ୍ୱାସ କରି ଆସୁଚନ୍ତି ଯେ ବିଶ୍ୱ ଗୋଟାଏ ଏକତା-ସିଦ୍ଧାନ୍ତ ଉପରେ ପ୍ରତିଷ୍ଠିତ । ମୋର ନାନା ବିଶ୍ୱାସ ଭିତରେ ଗୋଟାଏ ମୌଳିକ ବିଶ୍ୱାସ ହେଉଚି ଯେ ଏ ଉକ୍ତି ତିଳେମାତ୍ର ପ୍ରଣିଧାନଯୋଗ୍ୟ ନୁହେଁ । ପୁନଶ୍ଚ 'ମଣିଷ ଯେ ସବୁ କାରଣର ସୃଷ୍ଟି, ସାଧନ କରୁଥିବା ଲକ୍ଷ୍ୟ ବିଷୟରେ ଯାହାର ପୂର୍ବଦୃଷ୍ଟି ନଥିଲା । ମଣିଷର ଉଦ୍‌ଗମ, ତାର ଅଭିବୃଦ୍ଧି, ତାର ଆଶା ଓ ଆଶଙ୍କା, ତାର ପ୍ରେମ ଓ ବିଶ୍ୱାସ ଏକାଧିକ ପରମାଣୁର ଆକସ୍ମିକ ପ୍ରବନ୍ଧ ମାତ୍ର ।' ତଥାପି, ପଦାର୍ଥବିଦ୍ୟାର ସାମ୍ପ୍ରତିକ ଗବେଷଣା ପ୍ରକୃତିରେ ଗୋଟାଏ ମୌଳିକ ଏକତାର ପ୍ରମାଣ ଯୋଗାଇବା ଦିଗରେ ବହୁଦୂର ଅଗ୍ରଗତି କରିଚି । 'ସବୁ କିଛି ବସ୍ତୁ ଗୋଟାଏ ମୌଳିକ ବସ୍ତୁରେ ରଚିତ—ଏ ବିଶ୍ୱାସ ମଣିଷର ଚିନ୍ତାଭଳି ପୁରାତନ; କିନ୍ତୁ ଆମର ଏ ପୁରୁଷ ହିଁ, ମଣିଷର ଇତିହାସରେ ପ୍ରଥମଥର ପାଇଁ, ପ୍ରକୃତିର ଏକତାସିଦ୍ଧାନ୍ତ ଗ୍ରହଣ କରିବାକୁ ସମର୍ଥ ହେଇଚି; କୌଣସି ଭିତ୍ତିହୀନ ଧର୍ମାନ୍ଧତାରେ ନୁହେଁ କିମ୍ବା ଆଶାସ୍ଥିତ ଆକାଂକ୍ଷା ଭାବରେ ନୁହେଁ, ପରନ୍ତୁ ପ୍ରମାଣ ଉପରେ ପ୍ରତିଷ୍ଠିତ ବିଜ୍ଞାନର ଗୋଟାଏ ସିଦ୍ଧାନ୍ତ ଭାବରେ ଯାହା ଅନ୍ୟ ଯାହା କିଛି ଜ୍ଞାତ ବିଷୟ ଭଳି ସୁସ୍ପଷ୍ଟ ଓ ବିଶୁଦ୍ଧ ।'*

ଏସିଆ ଓ ୟୁରୋପରେ ଏହି ବିଶ୍ୱାସ ଯେହେତୁ ପୁରାତନ, ବେଦାନ୍ତର ଅଦ୍ୱୈତ ତତ୍ତ୍ୱର କେତେକ ମୌଳିକ ଧାରଣା ସଙ୍ଗେ ବିଜ୍ଞାନର କେତେକ ସାଂପ୍ରତିକ ସିଦ୍ଧାନ୍ତ ତୁଳନା କରି ଦେଖିବା ବଡ଼ ଚିତ୍ତାକର୍ଷକ । ଏହି ସବୁ ଧାରଣାର ସାର ହେଉଚି ଯେ ବ୍ରହ୍ମାଣ୍ଡ ଏକ ବସ୍ତୁରୁ ନିର୍ମିତ, ତାର ଆକାର ନିରନ୍ତର ପରିବର୍ତ୍ତିତ ହେଉଚି ଏବଂ ତାର ଶକ୍ତିର ସାମଗ୍ରିକ ପରିମାଣ ସବୁବେଳେ ସମାନ ରହୁଚି । ଆହୁରି ମଧ୍ୟ, 'ପ୍ରତ୍ୟେକ ବସ୍ତୁର ଅର୍ଥ ବା ତାତ୍ପର୍ଯ୍ୟ ତାର ସ୍ୱଭାବରେ ହିଁ ନିହିତ ଏବଂ ବ୍ରହ୍ମାଣ୍ଡରେ କ'ଣ ଘଟୁଚି ବୁଝାଇବା ପାଇଁ କୌଣସି ବାହ୍ୟସତ୍ତା ଅବା ଅସ୍ତିତ୍ୱର ଆବଶ୍ୟକତା ନାହିଁ ।' କୁହାଯାଏ ଯେ ସ୍ୱାଭାବିକ ପରିଣାମ ସ୍ୱରୂପ ବ୍ରହ୍ମାଣ୍ଡ ସ୍ୱୟଂପ୍ରକାଶ୍ୟ ।

---

* କାର୍ଲ୍ କେ ଡାରୋଙ୍କ 'ରେନେସାଁ ଅଫ୍ ଫିଜିକ୍‌ସ୍', ପୃ. ୪୦୧ ।

ଏ ସବୁ ଚିନ୍ତା ଯେଉଁ ଆଡ଼କୁ ଗତି କରୁନା କାହିଁକି, ବିଜ୍ଞାନର ସେଥିରେ କିଛି ଯାଏ ଆସେ ନାହିଁ; କାରଣ ଇତ୍ୟବସରରେ, ତାର ନିଜର ଯଥାଯଥ ପରୀକ୍ଷାମୂଳକ ସମୀକ୍ଷାର ମାର୍ଗରେ ଜ୍ଞାନର ସୀମାନ୍ତ ବିସ୍ତୃତ କରି ଏବଂ ସେହି ପ୍ରକ୍ରିୟାରେ ମଣିଷ ଜୀବନରେ ପରିବର୍ତ୍ତନ ସାଧନ କରି ବିଜ୍ଞାନ ନାନା ଦିଗରେ ଅଗ୍ରଗତି କରୁଚି । ବ୍ରହ୍ମାଣ୍ଡର କେତେଗୂଢ଼ ରହସ୍ୟ ଭେଦ କରିବାପାଇଁ ବିଜ୍ଞାନ ହୁଏତ ସମର୍ଥ ହେଲଣି; କିନ୍ତୁ ସେସବୁ ରହସ୍ୟ ହୁଏତ କୌଶଳରେ ତାକୁ ଏଡ଼ାଇ ଯାଉଚନ୍ତି । ତଥାପି ବିଜ୍ଞାନ ତାର ନିର୍ଦ୍ଦିଷ୍ଟ ପଥରେ ଯାତ୍ରା କରିଯିବ; କାରଣ ତାର ଯାତ୍ରାର ଶେଷ ନାହିଁ । ସାମୟିକ ଭାବରେ, ଦର୍ଶନର 'କାହିଁକି'କୁ ଅବଜ୍ଞା କରି, 'କିପରି' ପ୍ରଶ୍ନ ଧରି ଯାତ୍ରା କରିଯିବ ଓ ଏହି ପ୍ରଶ୍ନର ଉତ୍ତର ହାସଲ କରିବା ପ୍ରକ୍ରିୟାରେ ଜୀବନକୁ ବୃହତ୍ତର ଆଧେୟ ଓ ଅର୍ଥ ଯୋଗାଇବ ଏବଂ ହୁଏତ ଦର୍ଶନର 'କାହିଁକି'ର ଉତ୍ତର ପାଇଁ ଆମକୁ କିଛି ବାଟ ଆଗେଇଦେବ ।

କିମ୍ବା ହୁଏତ ଏହି 'କିପରି' ଓ 'କାହିଁକି' ମଧ୍ୟରେ ଅବରୋଧ ଆମେ ଲଙ୍ଘନ କରିପାରିବାନି ଏବଂ ଯାହା ରହସ୍ୟମୟ ଆମ ପାଇଁ ରହସ୍ୟମୟ ହୋଇ ରହିଯିବ । ଆଉ ଜୀବନ, ତାର ସମସ୍ତ ପରିବର୍ତ୍ତନ ସତ୍ତ୍ୱେ, ଭଲ ଓ ମନ୍ଦର ଗୋଟାଏ ସମଷ୍ଟି ଓ କ୍ରମାନ୍ୱୟ ସଙ୍ଘାତ ଏବଂ ଗୁଡ଼ାଏ ଅସମ ତଥା ପରସ୍ପର ବିରୋଧୀ ପ୍ରବଣତାର ଗୋଟିଏ ବିଚିତ୍ର ସମ୍ମିଶ୍ରଣ ହୋଇ ରହିଥିବ ।

କିମ୍ବା ହୁଏତ ନୈତିକ ଶୃଙ୍ଖଳା ଓ ଆଗ୍ରହ-ବିଗ୍ରହରୁ ବିଚ୍ଛିନ୍ନ ତଥା ଯମ୍ପର୍କହୀନ ଭାବରେ ବିଜ୍ଞାନର ପ୍ରଗତି ଏକାଧିପତ୍ୟକାମୀ ଖଳ ଓ ସ୍ୱାର୍ଥପର ଲୋକଙ୍କ ହାତରେ କ୍ଷମତା ଓ ତାର ସୃଷ୍ଟି ନାନାବିଧ ଘୋର ମାରଣାସ୍ତ୍ରମାନ ପୁଞ୍ଜିଭୂତ କରିବ । ପରିଣାମରେ ତାର ବହୁବିଧ ମହାନ୍ ସଫଳତାର ବିଲୟ ଘଟିବ । ବର୍ତ୍ତମାନ ସେଭଳି କିଛି ଘଟୁଥିବା ଆମେ ଦେଖିବାକୁ ପାଉଚୁ ଏବଂ ଏହି ଯୁଦ୍ଧ ପଛରେ ରହିଚି ମାନବ-ଚେତନାର ଚିରନ୍ତନ ଦ୍ୱନ୍ଦ୍ୱ ।

କି ବିସ୍ମୟକର ମଣିଷର ଏହି ଆତ୍ମିକ ଶକ୍ତି ! ତାର ଅଗଣିତ ଭ୍ରାନ୍ତି ସତ୍ତ୍ୱେ ମଣିଷ ଯୁଗେ ଯୁଗେ ତାର ଜୀବନ ଏବଂ ଯାହା କିଛି ତା' ପକ୍ଷରେ ପ୍ରିୟ ଓ ମହାର୍ଘ, ସବୁକିଛି ତ୍ୟାଗ କରିପାରିଚି ଆଦର୍ଶପାଇଁ, ସତ୍ୟ ଓ ବିଶ୍ୱାସ ପାଇଁ, ତାର ଦେଶ ଓ ଜାତୀୟସମ୍ମାନ ପାଇଁ । ସେ ଆଦର୍ଶର ପରିବର୍ତ୍ତନ ଘଟିପାରେ କିନ୍ତୁ ମଣିଷର ଆତ୍ମତ୍ୟାଗର ସେହି ସାମର୍ଥ୍ୟ ଅକ୍ଷୁଣ୍ଣ ରହିଚି ଏବଂ ସେଥିପାଇଁ କେବଳ ସେ ଯେତେ ଭୁଲ କରୁ, ତାର କ୍ଷମା ଅଛି ଓ ତା'ଉପରୁ ଆଶା ହରାଇବା ବାସ୍ତବିକ ଅସମ୍ଭବ । ବିପର୍ଯ୍ୟୟ ଭିତରେ ସେ ତାର ମର୍ଯ୍ୟାଦା କିମ୍ବା ଯେଉଁ ସବୁ ମୂଲ୍ୟବୋଧ ଉପରେ ତାର ବିଶ୍ୱାସ, ହରାଇନି । ପ୍ରକୃତିର ବିପୁଳ ଶକ୍ତି ହାତର କ୍ରୀଡ଼ନକ ଏହି ବିଶାଳ ବ୍ରହ୍ମାଣ୍ଡରେ ଧୂଳିକଣା ଅପେକ୍ଷା ଅକିଞ୍ଚନ, ମଣିଷ ଉଦ୍ଧତଭାବରେ ପ୍ରକୃତିର ମୌଳିକ ଶକ୍ତିସମୂହର ସମ୍ମୁଖୀନ ହୋଇଚି ଏବଂ ତାର ବିପ୍ଲବଗର୍ଭି ମନୋବଳରେ ପ୍ରକୃତିକୁ ଆୟତ୍ତ କରିବା ଉଦ୍ୟମ କରିଚି । ଦେବତା ବୋଲି ଯାହା ଥାଉନା କାହିଁକି, ମଣିଷ ଭିତରେ କିନ୍ତୁ ଗୋଟାଏ ପ୍ରକାର ଦେବତ୍ୱ ଅଛି; ସେଥି ସଙ୍ଗେ ଶୟତାନର କିଛି ଅଂଶ

ବି ରହିଛି ।

ଭବିଷ୍ୟତ ଅନ୍ଧକାରମୟ ଓ ଅନିଶ୍ଚିତ; କିନ୍ତୁ ସେଥିଭିତରକୁ ଯେଉଁ ପଥ ଲମ୍ବି ଯାଇଛି ତାର କିଛି ଅଂଶ ଆମେ ଦେଖିପାରିବା ଓ ତାହା ଉପରେ ଦୃଢ଼ ପଦକ୍ଷେପ କରିପାରିବା । କାରଣ ଆମେ ମନେରଖିଥିବା ଯେ ସେ ପଥରେ ଯାହା କିଛି ଘଟିବ ନା କାହିଁକି ମଣିଷର ଆତ୍ମବଳ ସେଥିରେ ପରାଜିତ ହେବନି । ଯୁଗେ ଯୁଗେ ବହୁ ବିପଦ ଭିତରୁ ମଣିଷ ଉଠି ଆସିଛି । ଆହୁରି ମଧ୍ୟ ଆମର ମନେଥିବ ଯେ ତା'ର ଭିତରେ ଯେତେ ମନ୍ଦ ଥାଉନା କାହିଁକି ମଣିଷର ଜୀବନରେ ଆନନ୍ଦ ଓ ସୌନ୍ଦର୍ଯ୍ୟ ଅଛି ଏବଂ ସୃଜିଟି ଜାଣିଥିଲେ, ଆମେ ସର୍ବଦା ପ୍ରକୃତିର ମୋହିନୀ ବନଭୂମିରେ ମୁକ୍ତପ୍ରାଣରେ ବିଚରଣ କରି ଗାଇପାରିବା :

> "ଈଶ୍ୱର ଅନୁକମ୍ପା ଅନୁପମ ମହାସ୍ଥାନ,
> କିଅବା ହେଉ ସେ ମାନବ ଉଦ୍ୟମ ଗରିସ୍ଥାନ ।
> ଭୟବନ୍ଧନ ତୁଟିଲି ସ୍ୱପ୍ନ ଲଭିଲି ଜୀବନ,
> ପ୍ରେମର ହସ୍ତ ଉଠାଇ, ଗୁହିଁଛି ତା' ଆଗମନ ।
> ସୁନ୍ଦର ଏଇ ଧରଣୀ ଚିର ସୁନ୍ଦର ଜୀବନ,
> ଏଥି ଊର୍ଦ୍ଧ୍ୱରେ ଅଛି କି ଇତର ତତ୍ତ୍ୱଜ୍ଞାନ ?"†

## ୭ . ଅତୀତର ବୋଝ

ବନ୍ଦୀ ଜୀବନରେ ମୋର ଏକୋଇଶ ମାସ ଚାଲିଛି । ଚନ୍ଦ୍ରର କ୍ଷୟବୃଦ୍ଧି ଏପରି ଲକ୍ଷ୍ୟ କରୁ କରୁ ଦୁଇଟି ବର୍ଷ ପୂରିଯିବ । ଆଉ ଗୋଟିଏ ଜନ୍ମତିଥି ଆସି ମତେ ସ୍ମରଣ କରାଇଦେବ ଯେ ମୋର ବୟସ ଖସୁଛି । ମୋର ଗତ ଚାରିଟି ଜନ୍ମତିଥି ମୁଁ ଏଇଠି ଓ ଡେହେରାଡୁନ୍ ଜେଲ୍‌ରେ ବିତାଇଛି । ଏଥିପୂର୍ବେ ବିଭିନ୍ନ ସମୟର ବନ୍ଦୀ ଅବସ୍ଥାରେ ଆଉ କେତୋଟି ଜନ୍ମଦିନ ଏଭଳି ବିତିଛି ତାର ହିସାବ ମୁଁ ଭୁଲିଗଲିଣି ।

ଏଠାକୁ ଆସିବା ପରେ ବହୁବାର ଲେଖିବା ପାଇଁ ମୁଁ ଭାବିଛି, ପ୍ରେରଣା ବି ପାଇଛି, ଆଉ ସଙ୍ଗେ ସଙ୍ଗେ ଗୋଟାଏ ପ୍ରକାର ଅନିଚ୍ଛା ବି ଜାଗିଛି । ମୋର ବନ୍ଧୁମାନେ ଏକରକମ ଧରିନେଇଥିଲେ ଯେ ପୂର୍ବବର୍ତ୍ତୀ ବନ୍ଦୀଅବସ୍ଥାମାନଙ୍କରେ ମୁଁ ଯେପରି ଲେଖିଥିଲି, ଏଥର ବି ଗୋଟାଏ ବହି ଲେଖିବି । ଜେଲ୍‌ରେ ଲେଖିବା ପ୍ରାୟ ଗୋଟାଏ ଅଭ୍ୟାସରେ ପରିଣତ ହୋଇଗଲିଣି ।

ତଥାପି ମୁଁ ଲେଖିଲିନି । କୌଣସି ନିର୍ଦ୍ଦିଷ୍ଟ ତାତ୍ପର୍ଯ୍ୟ ଯେଉଁଥିରେ ନଥିବ, ସେପରି ଗୋଟାଏ ବହି ଲେଖିଦେବା ପ୍ରତି ମୋର ଆଗ୍ରହ କିମ୍ବା ରୁଚି ନ ଥିଲା । ଲେଖିବା ଖୁବ୍ ସହଜ; କିନ୍ତୁ ସାର୍ଥକ କିଛି ଲେଖିବା—ସେ କଥା ସ୍ୱତନ୍ତ୍ର । ମୁଁ ସେଭଳି କିଛି ଲେଖିବାକୁ

† ୟୁରିପାଇଡ଼ସ୍‌ଙ୍କ 'ବାକ୍‌କା' କୋରସ୍ ( ଏକତାନ ସଙ୍ଗୀତ ) ରୁ ଗିଲ୍‌ବର୍ଟ୍ ମୁରେଙ୍କ ଅନୁବାଦ ଅବଲମ୍ବନରେ ।

ଗୁହାନ୍ତି, ଯାହା ମୁଁ ଏଠି ବନ୍ଦୀନିବାସରେ ମୋର ପାଣ୍ଡୁଲିପି ଧରି ବସିଥିବାବେଳେ ଆଉ ବାହାରେ ପୃଥିବୀ କ୍ଷିପ୍ରଗତିରେ ପରିବର୍ତ୍ତିତ ହେଉଥିବାବେଳେ ସେଥିରେ କାଳଦୋଷ ଲାଗନ୍ତାନି । ଆଜି କିମ୍ବା କାଲି ପାଇଁ ଲେଖିବାକୁ ମୁଁ ଯାଆନ୍ତିନି; ଲେଖନ୍ତି କୌଣସି ଏକ ଅଜ୍ଞାତ ଓ ସମ୍ଭବତଃ ଦୂରଭବିଷ୍ୟ ପାଇଁ । କାହା ପାଇଁ ଲେଖନ୍ତି ଓ କେଉଁ ସମୟ ପାଇଁ ? ହୁଏତ ମୁଁ ଯାହା ଲେଖିଥାନ୍ତି, କେବେ ପ୍ରକାଶିତ ହୁଅନ୍ତାନି; କାରଣ ଯେତେ ବର୍ଷ ମୁଁ ଜେଲ୍‌ରେ ବିତାଇବି, ସେଥି ଭିତରେ ପୃଥିବୀରେ ସଦ୍ୟ-ସମାପ୍ତ ଯୁଦ୍ଧର ଏଇ କେତେ ବର୍ଷରେ ଯାହା ସବୁ ଘଟିଗଲା, ତା'ଠାରୁ ବୃହତ୍ତର ଆନ୍ଦୋଳନ ଓ ସଂଘର୍ଷ ଘଟିବା ଖୁବ୍ ସମ୍ଭବପର । ଭାରତ ହୁଏତ ଯୁଦ୍ଧଭୂମିରେ ପରିଣତ ହେଇପାରେ ଅବା କୌଣସି ବେସାମରିକ ଆନ୍ଦୋଳନର କ୍ଷେତ୍ର ହେଇପାରେ ।

ଏ ସବୁ ସମ୍ଭାବ୍ୟ ଅବସ୍ଥା ଦେଖା ନଦେଲେ ମଧ୍ୟ ଭବିଷ୍ୟତର କୌଣସି ସମୟ ପାଇଁ, ଯେବେ ସାଂପ୍ରତିକ ସମସ୍ୟାମାନ କବର ଲଭିଥିବ ଓ ଆହୁରି କେତେ ସମସ୍ୟା ମୁଣ୍ଡ ଟେକି ଉଠିଥିବ, ବର୍ତ୍ତମାନ ଲେଖିବସିବା ଗୋଟାଏ ପ୍ରକାର ଦୁଃସାହସିକତା ହିଁ ହେବ । ଏହି ବିଶ୍ୱଯୁଦ୍ଧକୁ ଅନ୍ୟ କୌଣସି ଯୁଦ୍ଧ ଅପେକ୍ଷା କେବଳ ଟିକିଏ ବଡ଼ ଓ ବ୍ୟାପକ ବୋଲି ମୁଁ ଭାବିପାରୁ ନଥିଲି । ଯେଉଁଦିନ ଏ ଯୁଦ୍ଧ ଲାଗିଲା, ଆଉ ତା' ପୂର୍ବରୁ ମଧ୍ୟ, ଭଲ ପାଇଁ ହେଉ କି ମନ୍ଦ ପାଇଁ ହେଉ, ବହୁ ବୈପ୍ଳବିକ ପରିବର୍ତ୍ତନ ଭିତରଦେଇ ଗୋଟାଏ ନୂତନ ବିଶ୍ୱର ଅଭ୍ୟୁଦୟ ଘଟୁଚି ବୋଲି ନାନା ପୂର୍ବାଭାସରେ ମୁଁ ପୂର୍ଣ୍ଣ ଥିଲି । ତେବେ ଗୋଟାଏ ଅଜ୍ଞାତ ତଥା ଅନ୍ତର୍ହିତ ଯୁଗ ସମ୍ପର୍କରେ ମୋର ଲେଖାର କି ମହତ୍ତ୍ୱ ରହିବ ?

ଏ ସବୁ ଚିନ୍ତାର ଜଞ୍ଜାଳ ମତେ ପଛରୁ ଟାଣିଧରୁଥିଲା ଏବଂ ମୋର ମନ ଭିତରେ ଯେତେ ସବୁ ଗୁରୁତର ପ୍ରଶ୍ନ ରହିଥିଲା ସେ ସବୁ ପାଇଁ ମୁଁ କିଛି ସହଜ ଉତ୍ତର ପାଉନଥିଲି ।

୧୯୪୦ ଅକ୍ଟୋବର ମାସରୁ ୧୯୪୧ ଡ଼ିସେମ୍ବର ପର୍ଯ୍ୟନ୍ତ, ଯାହାର ଅଧିକାଂଶ ସମୟ ମୁଁ ଡେହେରାଡୁନ ଜେଲରେ ମୋର ସେହି ପୁରାତନ ପ୍ରକୋଷ୍ଠଟିରେ ଅତିବାହିତ କରିଥିଲି ଓ ଯେଉଁଠି ତା'ର ଛଅ ବର୍ଷ ପୂର୍ବେ ମୁଁ ମୋର ଆତ୍ମଚରିତ ଲେଖିବା ଆରମ୍ଭ କରିଥିଲି, ସେଠାରେ ଠିକ୍ ଏଇଭଳି ନାନା ଚିନ୍ତା ଓ ଅସୁବିଧା କଥା ମୋ ମନକୁ ଆସିଥିଲା । ସେଠାରେ ଦଶମାସ ପର୍ଯ୍ୟନ୍ତ ଲେଖିବା ପାଇଁ ବହୁତ ମାନସିକ ଅବସ୍ଥା ମୁଁ ପାଇପାରିନଥିଲି ଓ ସେ ସମୟତକ ପଢ଼ିବାରେ କିମ୍ବା ବଗିଚା କାମରେ ବିତାଇଦେଇଥିଲି । ପରିଶେଷରେ କିନ୍ତୁ ଲେଖିବସିଲି । ମୁଁ ଭାବିଥିଲି, ମୋର ଆତ୍ମଚରିତର ଅନୁବୃତ୍ତି ଭାବରେ ତାହା ଚାଲିବ । କେତେ ସପ୍ତାହ ପର୍ଯ୍ୟନ୍ତ ମୁଁ ଖୁବ୍ ଦ୍ରୁତ ତଥା ଅବିରାମ ଭାବରେ ଲେଖିଚାଲିଲି; କିନ୍ତୁ ମୋର ଚାରିବର୍ଷିଆ ବନ୍ଦୀଜୀବନ ପୂର୍ଣ୍ଣହେବା ବହୁପୂର୍ବରୁ ମତେ ଅକସ୍ମାତ୍ ମୁକ୍ତ କରିଦିଆଗଲା ।

ମୋର ସୌଭାଗ୍ୟ, ମୁଁ ସେ ଲେଖା ପୂର୍ଣ୍ଣ କରିନଥିଲି । ଯଦି କରିଥାନ୍ତି କୌଣସି ପ୍ରକାଶକ ପାଖକୁ ପଠାଇବାପାଇଁ କିମ୍ବା ପ୍ରରୋଚିତ ହେଇନଥାନ୍ତି । ସେ ଲେଖା ଏବେ ଦେଖିଲେ ମୁଁ ବୁଝୁଚି ତାର ମୂଲ୍ୟ କେତେ ଗୌଣ । ସେଥିର ବହୁତ ବିଷୟରେ ଆଗ୍ରହକୁ ଧରି ରଖିବା ଭଲ କିଛିନାହିଁ । ଯେଉଁସବୁ ପ୍ରସଙ୍ଗ ଉପରେ ଲେଖା ହେଉଚି ସେ ସବୁର କୌଣସି ମହତ୍ତ୍ୱ

ଆଉ ନାହିଁ ଏବଂ ଗୋଟାଏ ଅଜ୍ଞାତ ଅତୀତର ଭଗ୍ନସ୍ତୂପରେ ତାହା ପରିଣତ ହୋଇଚି ଏବଂ ସେଥି ଉପରେ ପରବର୍ତ୍ତୀ ବହୁ ଜ୍ୱାଳାମୁଖୀର ଉଦ୍‌ଗାର ଜମାଟ ହୋଇଯାଇଚି । ମୋର ସେଥିରୁ ଆଗ୍ରହ ତୁଟିଯାଇଚି । କିନ୍ତୁ ସେ ସନ୍ଧାନରେ ମୋର ସ୍ମୃତିରୁ କେତେକ ବ୍ୟକ୍ତିଗତ ଅଭିଜ୍ଞତାର ଚିହ୍ନ ପୋଛିଦେବା ସହଜ ନୁହେଁ । କେତେ ଘଟଣା ଓ କେତେ ବ୍ୟକ୍ତିଙ୍କ ସଙ୍ଗେ ମୋର ସଂସର୍ଗ, କେତେ ବିପୁଳ ଜନସମାବେଶ ଯାହା ଭିତରୁ ଭାରତୀୟ ଜୀବନର ନାନା ବିବିଧତା ଓ ବିସ୍ମୟକର ଏକତା ଫୁଟି ଉଠେ, ମନର କେତେ ଦୁଃସାହସିକ ଭାବନା, କେତେ ଅଶାନ୍ତିର ତରଙ୍ଗ ଓ ତାକୁ ଲଙ୍ଘିଯିବାର ଯେଉଁ ଆନନ୍ଦ, କର୍ମ ସମୟର ଉତ୍‌ଫୁଲ୍ଲତା—ଏ ସବୁର ସ୍ମୃତି ଭୁଲିବା ସହଜ ନୁହେଁ ଏବଂ ଏଥିର ବହୁତ କିଛି ଉପରେ ଲେଖାଯାଇପାରେ । ମଣିଷର ବ୍ୟକ୍ତିଗତ ଜୀବନ, ତାର ଅନୁଭୂତି, ତାର ବିଶ୍ୱର ଭିତରେ ଗୋଟାଏ ପ୍ରକାର ଅନ୍ତରଙ୍ଗ ଭାବ ରହିଥାଏ ଯାହା, ଅନ୍ୟକୁ ଜଣାଇବା ସମ୍ଭବ ହୁଏନି । ତଥାପି, ବ୍ୟକ୍ତିଗତ ଓ ଅବୈୟକ୍ତିକ ସେ ସବୁ ସଂସର୍ଗର ବହୁତ କିଛି ଅର୍ଥ ଅଛି ଏବଂ ବ୍ୟକ୍ତି ଉପରେ ତାର ପ୍ରଭାବ ଜୀବନ ପ୍ରତି, ନିଜ ଦେଶ ପ୍ରତି ଓ ଅନ୍ୟାନ୍ୟ ଜାତି ପ୍ରତି ତାର ପ୍ରତିକ୍ରିୟାରେ ପରିବର୍ତ୍ତନ ଆଣିଦିଏ ।

ଅନ୍ୟ ବନ୍ଦୀନିବାସରେ ଯେପରି, ଏଠାରେ ଏହି ଅହମ୍ମଦନଗର ଦୁର୍ଗରେ ମୁଁ ବଗିଚା କାମରେ ବହୁତ ସମୟ ବିତାଇଚି । ମୁଣ୍ଡ ଉପରେ ସୂର୍ଯ୍ୟର କିରଣ ସୁଖପ୍ରଦ ନହେଲାବେଳେ ମଧ୍ୟ ବିବିଧ ଫୁଲଗଛ ପାଇଁ ମାଟି ସାଗ କରିବାରେ ମୁଁ ଆନନ୍ଦ ଲାଭକରିଚି । ଏହି ମାଟିର ଅବସ୍ଥା ଭଲ ନୁହେଁ । ତଳେ ଶିଳାଖଣ୍ଡ, ପୂର୍ବବର୍ତ୍ତୀ କେତେ ନିର୍ମାଣକର୍ମର ଆବର୍ଜନା, ଏପରିକି କେତେ ସ୍ମୃତିମନ୍ଦିରର ଭଗ୍ନାବଶେଷ ମଧ୍ୟ ଏହି ମାଟିତଳେ ପୋତିହୋଇ ରହିଚି । ଏଥିରେ ବିସ୍ମୟର କାରଣ ନାହିଁ, ଯେହେତୁ କେତେ ଯୁଦ୍ଧ, ରାଜପ୍ରାସାଦର କେତେ ଷଡ଼ଯନ୍ତ୍ର ଏଠାରେ ସଂଗଠିତ ହୋଇଚି ଏବଂ ଏହା ଇତିହାସର ଭୂମି । ଭାରତର ଇତିହାସ ଦେଖିଲେ, ଏଠାର ଇତିହାସ ବିଶେଷ ପ୍ରାଚୀନ ନୁହେଁ ଏବଂ ବ୍ୟାପକ ଭାବରେ ବିଚାରକଲେ ସେତେ ଗୁରୁତ୍ୱପୂର୍ଣ୍ଣ ବି ନୁହେଁ; କିନ୍ତୁ ଏଠାର ଗୋଟିଏ ଘଟଣା ଯାହା ବିସ୍ମୃତିଗର୍ଭରେ ଲୁପ୍ତହୋଇ ପାରିନି, ତାହା ହେଉଚି ଜଣେ ସୁନ୍ଦରୀ ଓ ଶକ୍ତିଶାଳିନୀ ରମଣୀ ଚାନ୍ଦବିବିର ସାହସିକତା । ଚାନ୍ଦବିବି ଏ ଦୁର୍ଗର ପ୍ରତିରକ୍ଷା କରିଥିଲେ ଏବଂ ସ୍ୱୟଂ ଖଡ଼୍‌ଗହସ୍ତରେ ସୈନ୍ୟବାହିନୀର ଅଗ୍ର-ଭାଗରେ ରହି ଆକବରଙ୍କ ଶାହୀ ଫୌଜ ବିରୁଦ୍ଧରେ ଲଢ଼ିଥିଲେ । ତାଙ୍କର ସମର୍ଥକଙ୍କ ଭିତରୁ ଜଣେ ତାଙ୍କୁ ହତ୍ୟା କରିଥିଲା ।

ଏହି ହତଭାଗ୍ୟ ମାଟି ଖୋଳିଲାବେଳେ ବହୁ ପୁରାତନ ପ୍ରାଚୀର, ଗୁମ୍ବଜଶୀର୍ଷ ଓ ପ୍ରାସାଦର ଅଂଶ ଆମ ଆଖିରେ ପଡ଼ିଚି, ଯାହା ଧରିତ୍ରୀର ବହୁ ଗଭୀରରେ ସମାଧି ନେଇଚି । ସେ ସବୁ ଖୋଳି ଦେଖିବା ପାଇଁ ଆମ ପାଖରେ ଆବଶ୍ୟକୀୟ ଉପକରଣ ସହଜେ ନଥିଲା, ଅଧିକନ୍ତୁ ସେ ପ୍ରକାର ପ୍ରତ୍ନତାତ୍ତ୍ୱିକ କର୍ମ ନିମନ୍ତେ ଜେଲ୍ କର୍ତ୍ତୃପକ୍ଷଙ୍କ ଅନୁମୋଦନ ବି ନଥିଲା । ଥରେ ଗୋଟିଏ ପ୍ରାଚୀର ପାର୍ଶ୍ୱରେ, ପ୍ରସ୍ତର ଦେହରେ ଖୋଦିତ ଗୋଟିଏ କମନୀୟ ପଦ୍ମ ଆମ ଦୃଷ୍ଟିରେ ପଡ଼ିଥିଲା । ହୁଏତ, ତାହା କୌଣସି ଦ୍ୱାରବନ୍ଧ ଉପରିଭାଗର ବିଭୂଷଣ ।

ଡେରାଡୁନ ଜେଲରେ ଏଭଳି ଏକ ଖନନର କଥା ମୋର ମନେପଡ଼େ; କିନ୍ତୁ ଆମେ ଯାହା ଆବିଷ୍କାର କଲୁ ତାହା ଆମକୁ ଆନନ୍ଦ ଦେଇ ନଥିଲା । ଘଟଣାଟି ହେଉଚି, ଚାରି ବର୍ଷ ପୂର୍ବେ ସେଠାରେ ବଗିଚାରେ ଖୋଳୁ ଖୋଳୁ ଅତୀତ ଦିନର ଗୋଟିଏ ଚିହ୍ନପ୍ରତି ମୋର କୌତୁହଳ ଜନ୍ମିଲା । ତଳକୁ ତଳକୁ ଖୋଳି ଆମେ ଦୁଇଟି ପୁରାତନ ଖୁଣ୍ଟ ବାହାର କଲୁ । ଆମେ ଆଗ୍ରହରେ ଓ କିଛି ଉତ୍ତେଜନାଭରେ ସେ ଦୁଇଟିକୁ ଦେଖିଥିଲୁ । ପ୍ରାୟ ତିରିଶି ଚାଳିଶି ବର୍ଷ ପୂର୍ବେ ସେ ଖୁଣ୍ଟ ଦୁଇଟି ଗୋଟିଏ ଫାଶୀ ମଞ୍ଚର ଅଂଶ ଥିଲା । ସେ ଜେଲ୍‌ରେ ବହୁ ଦିନରୁ ଫାଶୀ ଦେବା ବନ୍ଦ ହୋଇ ଯାଇଥିଲା ଓ ସେ ମଞ୍ଚର ସବୁ କିଛି ଚିହ୍ନ ନଷ୍ଟ କରି ଦିଆଯାଇଥିଲା । ଯାହା କିଛି ଚିହ୍ନ ଲୁକ୍‌କାୟିତ ଭାବରେ ଥିଲା, ମୁଁ ଓ ମୋର ସହବନ୍ଦୀମାନେ ସମ୍ମିଳିତ ଭାବରେ ତାର ମୂଳୋତ୍ପାଟନ କଲୁ ଏବଂ ସେଭଳି ଏକ ଅଶୁଭ ଶକୁନ ଦୂର ହେବାରେ ଆମର ଆନନ୍ଦର ସୀମା ନଥିଲା ।

ବର୍ତ୍ତମାନ କୋଡ଼ି ଥୋଇ ଦେଇ ମୁଁ କଲମ ଧରିଚି । ହୁଏତ ମୁଁ ବର୍ତ୍ତମାନ ଯାହା ଲେଖୁଚି ତାର ଭାଗ୍ୟ ତାହା ହିଁ ହେବ, ଯାହା ଡେରାଡୁନ ଜେଲ୍‌ରେ ମୋର ଲିଖିତ ଅସମାପ୍ତ ପାଣ୍ଡୁଲିପିର ହୋଇଚି । ଯେ ପର୍ଯ୍ୟନ୍ତ କର୍ମ ଭିତର ଦେଇ ଅଭିଜ୍ଞତା ଅର୍ଜନର ସ୍ୱାତନ୍ତ୍ର୍ୟ ମୁଁ ପାଉନି, ସେପର୍ଯ୍ୟନ୍ତ ମୁଁ ବର୍ତ୍ତମାନ ସମ୍ପର୍କରେ କିଛି ଲେଖିପାରିବିନି । ବର୍ତ୍ତମାନରେ କର୍ମ କରିବା ଆବଶ୍ୟକତା ଭିତର ଦେଇ କେବଳ ମୁଁ ବର୍ତ୍ତମାନର ଗୋଟିଏ ସ୍ପଷ୍ଟ ଚିତ୍ର ଦେଖିବାକୁ ପାଉଚି ଏବଂ କର୍ମରେ ଜଡ଼ିତ ହେଲେ କେବଳ ମୁଁ ବର୍ତ୍ତମାନ ସମ୍ପର୍କରେ କିଛି ସହଜରେ ଓ ସୌକର୍ଯ୍ୟ ସହକାରେ ଲେଖିପାରିବି । ଜେଲ୍‌ରେ ବର୍ତ୍ତମାନ ଅସ୍ପଷ୍ଟତାରେ ଆଚ୍ଛନ୍ନ ରହେ ଏବଂ ମୁଁ ତାକୁ ଧରିପାରେନି କିମ୍ବା ମୁହୂର୍ତ୍ତର ସମ୍ବେଦନା ଭାବରେ ତାକୁ ଅନୁଭବ କରି ପାରେନି । ବର୍ତ୍ତମାନ କହିଲେ ଯାହା ବୁଝାଏ, ମତେ ସେ ବୋଧ ମିଳେନି । ତଥାପି, ଏହା ଯେ ଅତୀତ ନୁହେଁ ମୁଁ ବୁଝିପାରେ; କାରଣ ଅତୀତର ସେ ସ୍ଥିରତା ଓ ବିରହସୁଲଭ ନିଶ୍ଚଳତାର ଅନୁଭୂତି ମୁଁ ପାଉନି ।

କୌଣସି ଈଶ୍ୱରଦୂତ ଭଳି ମୁଁ ଭବିଷ୍ୟତ ସମ୍ପର୍କରେ ଲେଖିବାକୁ ଯାଉନି । ଭବିଷ୍ୟତର ଓଢ଼ଣା ଖୋଲି ତାକୁ ମୋର ରୁଚି ଅନୁଯାୟୀ ଭୂଷିତ କରିବା ପାଇଁ ମୁଁ ବହୁବାର ଭାବିଥାଏ । ମୋର ଏପରି କେତେ ବିଫଳ କଳ୍ପନା ସତ୍ତ୍ୱେ ଭବିଷ୍ୟତ ମୋ ଆଗରେ ଅନିଶ୍ଚିତ ଓ ଅଜ୍ଞାତ ରହିଚି । ସେଭଳି କିଛି ଭରସା ବି ନାହିଁ ଯେ ଆମର ଆଶା ପ୍ରତି ଭବିଷ୍ୟତ ପୁଣି ବିଶ୍ୱାସଘାତକତା କରି ମାନବତାର ସ୍ୱପ୍ନକୁ ମିଥ୍ୟା ପ୍ରମାଣିତ ନ କରିବ ।

ଅତୀତ ରହିଚି । କିନ୍ତୁ କୌଣସି ଐତିହାସିକ ଅବା ପଣ୍ଡିତଙ୍କ ଭଳି ଅତୀତ ଘଟଣାମାନଙ୍କ ସମ୍ପର୍କରେ ପାଠ୍ୟକ୍ରମରେ ଲେଖିବା ମୋ ପକ୍ଷରେ ସମ୍ଭବ ନୁହେଁ । ସେ ଜ୍ଞାନ, ସେ ତାଲିମ ଅବା ସେ ସମ୍ପର୍କୀୟ ଉପକରଣ ମୋର ନାହିଁ । ସେ ପ୍ରକାର କାର୍ଯ୍ୟ ପାଇଁ ମୋର ମାନସିକ ଅବସ୍ଥା ନାହିଁ । ଜୀବନ୍ତ ବର୍ତ୍ତମାନର ଗୋଟାଏ ଅଭିବ ଭାବରେ ଅତୀତ ଯେବେ ବର୍ତ୍ତମାନକୁ ସ୍ପର୍ଶକରେ, ମୁଁ ତାର ଶୀତଳ ସ୍ପର୍ଶରେ କେବେ ପୀଡ଼ିତ ହୁଏ, କେବେ ବା ତାର ଆନ୍ତରିକତାରେ ମୁଗ୍ଧ ହୁଏ । ଅନ୍ୟଥା ମୋ ପାଖରେ ଅତୀତ ରହିଯାଏ ହିମଶୀତଳ

ଅନୁପ୍ରାଣକ ନିର୍ଜୀବ ତଥା ଅନାକର୍ଷକ । ଇତପୂର୍ବେ ଯେଉଁଭଳି ଲେଖିଥିଲି, ବର୍ତ୍ତମାନ ଯୁଗର ଚିନ୍ତା ଓ କର୍ମାନୁସରଣ ସଙ୍ଗେ ତାକୁ କୌଣସିମତେ ସମ୍ପର୍କିତ କରିପାରିଲେ କେବଳ ମୁଁ ଅତୀତ ବିଷୟରେ ଲେଖି ପାରିବି ଏବଂ 'ଗେଟେ' ଥରେ କହିବା ଭଳି ଏପରି ଇତିହାସ ରଚନା ଅତୀତର ଓଜନ ଓ ବୋଝ କେତେକାଂଶରେ ଲାଘବ କରେ । ଏହା ମୁଁ ମନେ-କରେ, ମନଃସମୀକ୍ଷା ସଦୃଶ ଗୋଟାଏ ପ୍ରକ୍ରିୟା; କିନ୍ତୁ ଏ କ୍ଷେତ୍ରରେ ବ୍ୟକ୍ତି ବଦଳରେ ଜାତି ଅବା ମାନବଜାତି ପ୍ରତି ପ୍ରୟୋଗ କରାଯାଇଥାଏ ।

ଅତୀତର ବୋଝ, ଭଲ ଓ ମନ୍ଦର ସମ୍ମିଶ୍ରଣ, ମଣିଷକୁ ଅଭିଭୂତ କରେ; ବେଳେବେଳେ ଶ୍ୱାସରୁଦ୍ଧ ବି କରେ । ବିଶେଷକରି ସେମାନଙ୍କୁ ଯେଉଁମାନେ ଭାରତ ଓ ଚୀନର ଲୋକଙ୍କ ଭଳି ଅତି ପ୍ରାଚୀନ ସଭ୍ୟତାରେ ପାଳିତ । ଦାର୍ଶନିକ ନୀତ୍ସ୍ କହିଛନ୍ତି, "ଯୁଗ-ଯୁଗର ପ୍ରଜ୍ଞା କେବଳ ନୁହେଁ, ତାର ପାଗଳାମି ମଧ୍ୟ ମଣିଷ ଭିତରେ ଅବତରଣ କରିଥାଏ । ଉତ୍ତରାଧିକାରୀ ହେବା ବଡ଼ ବିପଜ୍ଜନକ ।"

ମୋର ଉତ୍ତରାଧିକାର ତେବେ କ'ଣ ? ମୁଁ କାହାର ଉତ୍ତରାଧିକାରୀ ? ହଜାର ହଜାର ବର୍ଷ ଧରି ମାନବଜାତି ଯାହାସବୁ ସଫଳତା ହାସଲ କରିଛି, ଯାହା ଚିନ୍ତା କରିଛି ଓ ଅନୁଭବ କରିଛି, ଯେତେ ଦୁଃଖ ଭୋଗିଛି ଓ ଆନନ୍ଦ ପାଇଛି, ତାର ଜୟୋଲ୍ଲାସ ଓ ପରାଜୟ ତିକ୍ତବେଦନା, ତାର ହେନ୍ଥ ବିସ୍ମୟକର ଦୁଃସାହସିକତା ଯାହା କେଉଁ ଅନାଦି କାଳରେ ଆରମ୍ଭ ହୋଇଥିଲେ ମଧ୍ୟ ଆଜି ବି ଆମକୁ ହାତଠାରି ଡାକୁଛି—ମଣିଷଜାତି ସଙ୍ଗେ ମୁଁ ଏ ସବୁଥିର ଉତ୍ତରାଧିକାରୀ । କିନ୍ତୁ ଭାରତରେ ଜନସାଧାରଣଙ୍କର ଗୋଟାଏ ବିଶେଷ ଐତିହ୍ୟ ଅଛି । ତାହା ଅନନ୍ୟ ଅବଶ୍ୟ ନୁହେଁ; କାରଣ ସବୁ ଐତିହ୍ୟ ଗୋଟାଏ ନିର୍ଦ୍ଦିଷ୍ଟ ଜାତିର ନ ହୋଇ ସମଗ୍ର ମାନବଜାତିର ଉତ୍ତରାଧିକାର ହୋଇଥାଏ । ତଥାପି ଏହା ବିଶେଷ ଭାବରେ ଆମ ପ୍ରତି ପ୍ରଯୁଜ୍ୟ; କାରଣ ଏହା ଆମର ରକ୍ତ, ମାଂସ ଓ ମଜ୍ଜାଗତ ଏବଂ ଆମେ ଆଜି ଯାହା ହୋଇଥାଇଁ ଓ ଯାହା ହେବାର ସମ୍ଭାବନା ସବୁ ତା'ର ଅବଦାନ ।

ଏହି ବିଶେଷ ଐତିହ୍ୟର ଭାବନା ଓ ବର୍ତ୍ତମାନରେ ତାର ପ୍ରୟୋଗ ପରିକଳ୍ପନା ବହୁ ଦିନରୁ ମୋର ମନରେ ପୂର୍ଣ୍ଣ ହୋଇ ରହିଛି ଏବଂ ଏହି ବିଷୟରେ ମୁଁ ଲେଖିବାକୁ ଚାହେଁ ଯଦିଓ, ଏହି ବିଷୟର ଅସୁବିଧା ଓ ଜଟିଳତା ମତେ ଭୟଗ୍ରସ୍ତ କରୁଛି ଏବଂ ମୁଁ ସେଥିରେ ବୁଡ଼ିବାର ସାହସ କରୁନି । ମୁଁ ତାକୁ ହୁଏତ ଯଥାଯଥ ଭାବରେ ଉପସ୍ଥାପିତ କରି ନପାରେ; କିନ୍ତୁ ଏ ପ୍ରୟାସରେ ମୋର ମନକୁ ନିର୍ମଳ କରି ଏବଂ ଚିନ୍ତା ଓ କର୍ମର ପରବର୍ତ୍ତୀ ଅବସ୍ଥାମାନଙ୍କ ପାଇଁ ପ୍ରସ୍ତୁତ କରି ନିଜକୁ କେତେକାଂଶରେ ଆଲୋକିତ କରିପାରିବି ।

ଏହି ଭାବ ମୋର ମନରେ କିଭଳି ଦାନା ବାନ୍ଧିଲା, କି କି ଆକାର ଧାରଣ କଲା, ମତେ ଓ ମୋର କର୍ମକୁ କିପରି ଭାବରେ ପ୍ରଭାବିତ କଲା—ଏହି ଦିଗରୁ ଲେଖିବାର ଉଦ୍ୟମ କଲେ ଏହା ଅବଶ୍ୟମ୍ଭାବୀ ଭାବରେ ମୋର ବ୍ୟକ୍ତିଗତ ଜୀବନକୁ ହିଁ କେନ୍ଦ୍ର କରିବ । ସେଥିରେ ସେଭଳି କେତେ ଅପୂର୍ଣ୍ଣ ବ୍ୟକ୍ତିଗତ ଅଭିଜ୍ଞତାର କଥା ରହିବ, ଯାହା ବିଷୟବସ୍ତୁର ବ୍ୟାପକ

ବିଭାବ ପକ୍ଷରେ ପ୍ରାସଙ୍ଗିକ ନ ହେଲେ ସୁଦ୍ଧା ସେ ସବୁ ମୋର ମନକୁ ବର୍ଣ୍ଣବିଭବ ଦେଇଚି ଏବଂ ଏହି ସମଗ୍ର ସମସ୍ୟାକୁ ମାର୍ଗ ଧରିବାରେ ମତେ ପ୍ରଭାବିତ କରିଚି । ଦେଶ ଓ ଜାତି-ମାନଙ୍କ ସମ୍ପର୍କରେ ଆମର ବିବେଚନା ନାନା କାରଣ ଉପରେ ନିର୍ଭର କରେ । ସେଥି-ଭିତରେ ପ୍ରତ୍ୟକ୍ଷ ଅବା ବ୍ୟକ୍ତିଗତ ସମ୍ପର୍କ ଯଦି କିଛି ଥାଏ, ତାର ପ୍ରଭାବ ବିଶେଷ ଭାବରେ କାର୍ଯ୍ୟ କରେ । ଗୋଟାଏ ଦେଶର ଲୋକଙ୍କୁ ଆମେ ଯଦି ବ୍ୟକ୍ତିଗତ ଭାବରେ ନ ଜାଣୁ, ଆମେ ସେମାନଙ୍କୁ ନେଇ ବିବେଚନା କଲାବେଳେ ଭୁଲ୍ କରିବାର ସମ୍ଭାବନା ସମଧିକ ଏବଂ ଆମେ ସେମାନଙ୍କୁ ସଂପୂର୍ଣ୍ଣ ପୃଥକ୍ ଓ ଅନାତ୍ମୀୟ ମନେକରି ବସୁ ।

ଆମ ଦେଶ କଥା କହିଲେ, ଆମର ବ୍ୟକ୍ତିଗତ ଯୋଗାଯୋଗର ହିସାବ ନାହିଁ ଓ ଏଭଳି ଯୋଗାଯୋଗ ଜରିଆରେ ଆମ ଦେଶବାସୀଙ୍କ ସମ୍ପର୍କରେ ଆମ ମନରେ ନାନା ଚିତ୍ର ଏବଂ ଗୋଟାଏ ପ୍ରକାର ସଂଗ୍ରଥିତ ଚିତ୍ର ତିଆରି ହେଇଚି । ଅତଏବ, ଏ ସବୁ ଚିତ୍ରରେ ମୁଁ ମୋର ମନର ଭଣ୍ଡାର ପୂର୍ଣ୍ଣ କରିଚି । ସେଥିରେ ସେପରି କେତେ ଚିତ୍ର ଅଛି, ଯାହାର ରୂପ-ରେଖା ଅତି ସ୍ପଷ୍ଟ ଓ ଜୀବନ୍ତ । ମତେ ଚାହିଁ ସେମାନେ ଜୀବନର କେତେକ ମହାନ୍ ସମ୍ପର୍କରେ ମତେ ସ୍ମରଣ କରାନ୍ତି; ତଥାପି ମୋର ମନେହୁଏ, ସେ ସବୁ ସେପରି କେଉଁ ଅତୀତର ଚିତ୍ର ଏବଂ ଯାହା କେବେ କେଉଁ କାହାଣୀ ପୁସ୍ତକରେ ମୁଁ ହୁଏତ ପଢ଼ିଚି । ସେଥିରେ ଆହୁରି କେତେ ଚିତ୍ର ବି ଅଛି, ଯାହା କେତେ ପୁରାତନ ବନ୍ଧୁତା ଓ ଆତ୍ମୀୟତାର ସ୍ମୃତିରେ ଆବୃତ; ଯେଉଁ ସ୍ମୃତି ଜୀବନରେ ମଧୁରତା ଭରେ । ଆଉ ଯାହା ସବୁ ଚିତ୍ର ଭାରତୀୟ ଜନସାଧାରଣଙ୍କର—ସ୍ତ୍ରୀ, ପୁରୁଷ, ଶିଶୁ ଲକ୍ଷ ଲକ୍ଷ ସଂଖ୍ୟାରେ ଭିନ୍ନ ଭିନ୍ନ ପ୍ରାନ୍ତରେ ମତେ ଚାହିଁଚନ୍ତି ଏବଂ ସେହି ଲକ୍ଷ ଲକ୍ଷ ଆଖିପଛର ଭାଷା ଜାଣିବା ପାଇଁ ମୁଁ ଉତ୍କଣ୍ଠିତ ହେଇଚି ।

ମୁଁ ଏ କାହାଣୀ ଆରମ୍ଭ କରିବି ସଂପୂର୍ଣ୍ଣ ବ୍ୟକ୍ତିଗତ ଏକ ଅଧ୍ୟାୟରୁ; କାରଣ ତାହାହେଲେ ମୋର ଆତ୍ମଚରିତ ରଚନା ଶେଷସରିକି ଯେଉଁ ସମୟ ସମ୍ପର୍କରେ ମୁଁ ଲେଖିଥିଲି, ତାର ଠିକ୍ ପରବର୍ତ୍ତୀ ମାସରେ ମୋର ଯେଉଁ ମାନସିକ ଅବସ୍ଥା ଥିଲା, ତାର ସୂତ୍ର ସେଥିରୁ ମିଳିବ । ତଥାପି ଏହି କାହାଣୀ ଆଉ ଗୋଟାଏ ଆତ୍ମଚରିତ ହେବାକୁ ଯାଉନି ଯଦିଓ, ମୋର ଆଶଙ୍କା ହୁଏ ବହୁ ସ୍ଥାନରେ ବ୍ୟକ୍ତିଗତ ସ୍ପର୍ଶ ଅବଶ୍ୟ ରହିବ ।

ବିଶ୍ୱଯୁଦ୍ଧ ଚାଲିଚି । ଏଠାରେ ଅହମଦନଗର ଦୁର୍ଗରେ ମୁଁ ବନ୍ଦୀ ଭାବରେ ନିଷ୍କ୍ରିୟ ପଡ଼ି-ରହିଚି, ଯେତେବେଳେ କେତେ ହିଂସ୍ର ତଥା ଦାରୁଣ କ୍ରିୟାକଳାପ ପୃଥିବୀକୁ ଗ୍ରାସ କରି ଯାଉଚି । ବେଳେବେଳେ ମୁଁ ଉତ୍ତେଜିତ ହେଇପଡ଼େ, ଆଉ ଏହି କେତେ ବର୍ଷ ଧରି ଯେଉଁ ସବୁ ବଡ଼ ବଡ଼ ଘଟଣା ଓ ବୀରତ୍ୱପୂର୍ଣ୍ଣ ସାହସିକତାର କାହାଣୀ ମୋ ମନରେ ଭରିରହିଚି ସେ ବିଷୟରେ ଭାବିବସେ । ଯୁଦ୍ଧକୁ ମୁଁ ଦେଖିବାକୁ ଚେଷ୍ଟା କରେ ଅବୈୟକ୍ତିକ ଭାବରେ—ଲୋକେ ଯେପରି କୌଣସି ବନ୍ୟା, ଭୂକମ୍ପ ଓ ପ୍ରାକୃତିକ ବିପର୍ଯ୍ୟୟ ତଥା ମୌଳିକ ପ୍ରତିଭାସ ଲକ୍ଷ୍ୟ କରିଥାନ୍ତି । ଏଥିରେ ମୁଁ ଅବଶ୍ୟ ସାନ୍ତ୍ୱନା ପାଇପାରିନି; କିନ୍ତୁ ମୁଁ ଯଦି ନିଜକୁ ଅଧିକ ଆଘାତ, ଘୃଣା ଓ ଉତ୍ତେଜନାରୁ ରକ୍ଷାକରିବାକୁ ଚାହିଁବି ଆଉ ଅନ୍ୟ ପନ୍ଥା ଥିବା ଭଳି

ଜଣାଯାଉଛି ଏବଂ ହିଂସ୍ର ତଥା ବିନାଶକାମୀ ପ୍ରବୃତ୍ତିର ଏହି ବିପୁଳ ପ୍ରଦର୍ଶନୀରେ ମୋର ଯାହା କିଛି ବ୍ୟକ୍ତିଗତ ଜଞ୍ଜାଳ, ତୁଚ୍ଛ ମନେହୁଏ ।

୧୯୪୨ ମସିହା ଅଗଷ୍ଟ ୮ ତାରିଖର ସେହି ନିଷ୍ପତ୍ତିସୂଚକ ଅପରାହ୍ଣରେ ଗାନ୍ଧିଜୀ ଯାହା କହିଥିଲେ, ମୋର ମନେପଡ଼ୁଛି : "ପୃଥିବୀର ଦୃଷ୍ଟି ଆଜି ରକ୍ତକଷାୟିତ ହୋଇଥିଲେ ମଧ୍ୟ ଶାନ୍ତ ଓ ନିର୍ମଳ ଆଖିରେ ଆମକୁ ତାର ମୁହଁକୁ ଚାହିଁବାକୁ ପଡ଼ିବ ।"

□□□

# ଦ୍ୱିତୀୟ ପରିଚ୍ଛେଦ

# ବେଡ଼େନୱେଇଲର୍ : ଲୋଜାନ୍

## ୧. କମଲା

୧୯୩୫, ସେପ୍ଟେମ୍ବର ଚାରି ତାରିଖରେ ମତେ ଅଚାନକ ଆଲମୋଡ଼ା ପାର୍ବତ୍ୟ ବନ୍ଦୀବାସରୁ ମୁକ୍ତକରିଦିଆଗଲା; କାରଣ ଖବର ପହଞ୍ଚିଥିଲା, ମୋର ସ୍ତ୍ରୀର ସ୍ୱାସ୍ଥ୍ୟ ବଡ଼ ସଙ୍କଟାପନ୍ନ । ସେ ଥିଲା ବହୁ ଦୂରରେ; ଜର୍ମାନୀର ବ୍ଲାକ୍ ଫରେଷ୍ଟ ଅଞ୍ଚଳରେ, ବେଡ଼େନ-ୱେଇଲର୍ ନିକଟବର୍ତ୍ତୀ ଗୋଟିଏ ସ୍ୱାସ୍ଥ୍ୟନିବାସରେ । କେବେ ମୋଟର ଗାଡ଼ିରେ କେବେ ବା ରେଲରେ ଚଢ଼ି ମୁଁ ପରଦିନ ପୂର୍ବାହ୍ଣରେ ଆଲହାବାଦରେ ପହଞ୍ଚିଲି ଏବଂ ସେଦିନ ଅପରାହ୍ଣରେ ଉଡ଼ାଜାହାଜ ଯୋଗେ ୟୁରୋପ ଅଭିମୁଖେ ଯାତ୍ରାକଲି । କରାଚୀ ଓ ବାଗଦାଦ୍ ଦେଇ ଉଡ଼ାଜାହାଜ ମତେ କାଏରୋରେ ପହଞ୍ଚାଇଲା ଏବଂ ଆଲେକ୍‌ଜାଣ୍ଡ୍ରିଆରୁ ଜଳବକ୍ଷରେ ଓହ୍ଲାଇ ପାରିବାଭଳି ନିର୍ମିତ ଅନ୍ୟ ଏକ ଉଡ଼ାଜାହାଜ ମତେ ବ୍ରିଣ୍ଡିସି ପର୍ଯ୍ୟନ୍ତ ନେଇଗଲା । ବ୍ରିଣ୍ଡିସିରୁ ରେଳ ଯୋଗେ ମୁଁ ସ୍ୱିଜରଲଣ୍ଡ ଅନ୍ତର୍ଗତ ବାସ୍‌ରେ ଗଲି । ସେପ୍ଟେମ୍ବର, ନ' ତାରିଖ ସନ୍ଧ୍ୟାରେ ମୁଁ ଆଲମୋଡ଼ା ଜେଲରୁ ମୁକ୍ତ ହେବାର ପଞ୍ଚମ ଦିବସରେ ଓ ଆଲହାବାଦ ଛାଡ଼ିବାର ଚତୁର୍ଥ ଦିବସରେ, ବେଡ଼େନୱେଇଲର୍‌ରେ ପହଞ୍ଚିଲି ।

ମୁଁ କମଲାକୁ ଦେଖିଲି, ମୁହଁରେ ତାର ସେହି ପୁରାତନ ସାହସର ମନ୍ଦହାସ; କିନ୍ତୁ ସେ ଏତେ ଦୁର୍ବଳ ହୋଇପଡ଼ିଥିଲା ଆଉ ଏତେ ଭାବରେ ଯନ୍ତ୍ରଣା ପାଉଥିଲା ଯେ ମତେ ବେଶି କିଛି କହିପାରିଲାନି । ମୁଁ ତା' ନିକଟରେ ପହଞ୍ଚିବା ହୁଏତ ହିତକର ହେଲା; କାରଣ ତା' ପରଦିନ ଓ ତେଣିକି ଆଉ କେତେ ଦିନ ପର୍ଯ୍ୟନ୍ତ ତାର ଅବସ୍ଥା ଟିକିଏ ଭଲଆଡ଼କୁ ଗତିକଲା । କିନ୍ତୁ ସଙ୍କଟ ପୂର୍ବଭଳି ସେପରି ରହିଲା ଓ ଧୀରେ ଧୀରେ ତାର ଦେହରୁ ଜୀବନ ଶୋଷିନେଲା । ସେ ଚାଲିଯିବ ବୋଲି ମୁଁ ଭାବିପାରୁନଥିଲି, ଅତଏବ ମୋର ଖିଆଲ ହୋଇଥିଲା ଯେ ଦିନକୁ ଦିନ ତାର ଉନ୍ନତି ହେଉଛି ଓ ସେଇ ସଙ୍କଟରୁ ଥରେ ବର୍ତ୍ତିଗଲେ ସେ ହୁଏତ ସମ୍ପୂର୍ଣ୍ଣ ସୁସ୍ଥ ହୋଇଯିବ । ଡାକ୍ତରମାନେ, ଯେପରି ସବୁବେଳେ କହିଥାନ୍ତି, ମତେ ଆଶା ଦେଉଥିଲେ । ତାତ୍କାଳିକ ସଙ୍କଟ କଟିଯିବା ଭଳି ବୋଧ ହେଲା ଓ ମୃତ୍ୟୁକୁ ସେ ଏଡ଼ାଇଦେଇପାରିଲା । ଦୀର୍ଘ ସମୟ ଧରି ଆଳାପ କରିବା ପାଇଁ ତାର ଅବସ୍ଥା କେବେ ଭଲ ନଥିଲା । ଆମେ ଖୁବ୍ କମ୍ କଥା ହେଉଥିଲୁ ଓ ତାର କ୍ଳାନ୍ତି ଲକ୍ଷ୍ୟକରିବା ମାତ୍ରେ ମୁଁ ନୀରବ ହୋଇଯାଉଥିଲି । ବେଳେବେଳେ ମୁଁ ତାକୁ ବହି ପଢ଼ି ଶୁଣାଉଥିଲି । ସେ ସବୁ ବହିରୁ

ଗୋଟିଏ ବହି ମାର୍କିନ୍ ଲେଖିକା ପର୍ଲବାକ୍ ଲିଖିତ 'ଦ ଗୁଡ୍ ଆର୍ଥ' ଏପରି ପଢ଼ି ଶୁଣାଇବା ମୋର ମନେ ଅଛି । ମୁଁ ପଢ଼ି ଶୁଣାଇବାକୁ ସେ ସୁଖପାଉଥିଲା; କିନ୍ତୁ ଆମର ଗତି ବଡ଼ ମନ୍ଥର ଥିଲା ।

ସକାଳ ଓ ଉପରବେଳା ସେହି କ୍ଷୁଦ୍ର ସହରରେ ମୋର 'ପାନ୍‌ସିଅନ୍' (ମହାଦେଶୀୟ ହୋଟେଲ)ରୁ ସ୍ୱାସ୍ଥ୍ୟନିବାସକୁ ମୁଁ ଚାଲି ଚାଲି ଯାଏ ଓ କେତେ ଘଣ୍ଟା ତାର ପାର୍ଶ୍ୱରେ କଟାଏ । ମୋର ବହୁତ କିଛି ତାକୁ କହିବାର ଥିଲା; କିନ୍ତୁ ମତେ ନିଜକୁ ସଂଯତ କରିବାକୁ ପଡ଼ୁଥିଲା । ବେଳେବେଳେ ଆମେ ବିତି ଯାଇଥିବା ଦିନ ବିଷୟରେ—କେତେ ବନ୍ଧୁ, କେତେ ପୁରାତନ ସ୍ମୃତି ସମ୍ପର୍କରେ କଥା ହେଉଥିଲୁ ଏବଂ ଭବିଷ୍ୟତରେ ଆମେ କଣ କରିବୁ ଟିକିଏ ଉତ୍‌କଣ୍ଠିତ ଭାବରେ ଆଲୋଚନା କରୁଥିଲୁ । ତାର ଏଭଳି ସଙ୍କଟଜନକ ଅବସ୍ଥା ସତ୍ତ୍ୱେ ଭବିଷ୍ୟତ କଥାରେ ସେ ବଡ଼ ଆଗ୍ରହ ରଖୁଥିଲା । ମୁହଁରେ ତାର ପ୍ରଫୁଲ୍ଲତା ଥିଲା, ଆଖି ଦୁଇଟି ଜ୍ୟୋତି ଓ ପ୍ରାଣରେ ଛଳଛଳ ହେଉଥିଲା । କେତେବେଳେ କପରି, ବନ୍ଧୁ କେହି କେହି ତାକୁ ଦେଖିବାକୁ ଆସିଲେ ତାର ଆଶାତୀତ ଉନ୍ନତି ଲକ୍ଷ୍ୟ କରି ବିସ୍ମିତ ହେଉଥିଲେ । ତାର ଉଜ୍ଜ୍ୱଳ ଆଖି ଦୁଇଟି ଓ ସଦା ହସହସ ସେ ମୁହଁଟି ସେମାନଙ୍କ ଦୃଷ୍ଟିରେ ପ୍ରକୃତ ଅବସ୍ଥାକୁ ଘୋଡ଼ାଇ ରଖୁଥିଲା ।

ଶରତର ଦୀର୍ଘ ସନ୍ଧ୍ୟାଗୁଡ଼ିକରେ ପାନ୍‌ସିଅନ୍‌ର ମୋର ପ୍ରକୋଷ୍ଠଟିରେ ମୁଁ ଏକାକୀ ବସିରହେ କିମ୍ବା ବେଳେବେଳେ ଶୈଳମାଳ ଓ ବନପଥରେ ବିଚରଣ କରେ । ମୋର ଆଖି ଆଗରେ ଭାସିଉଠୁଥିଲା ତାର ସୁସ୍ପଷ୍ଟ ବ୍ୟକ୍ତିତ୍ୱର ନାନା ବିଭାବ ଯେମିତି ଗୋଟାକ ପରେ ଗୋଟାଏ, କମଳାର କେତେ ଚିତ୍ର । ପ୍ରାୟ କୋଡ଼ିଏ ବର୍ଷ ହେଲା ଆମେ ବିବାହିତ; ତଥାପି ତାର ମନର ଅବା ଆଧ୍ୟାତ୍ମ୍ୟଚେତନାର ନବ ନବ ପ୍ରତିଫଳନରେ ସେ ମତେ ବାରମ୍ବାର ବିସ୍ମିତ କରେ । ମୁଁ ତାକୁ ଜାଣିଥିଲି ନାନାଭାବରେ ଏବଂ ବର୍ଷ ପରେ ବର୍ଷ ଅତୀତ ହେଲାବେଳେ ତାକୁ ବୁଝିବାପାଇଁ ମୁଁ ବରାବର ଚେଷ୍ଟାକରିଛି । ସେ ପ୍ରକାର ବୁଝିବା ସତ୍ତ୍ୱେ, ତାକୁ ପ୍ରକୃତରେ ଜାଣିପାରିଛି କି ବୁଝିପାରିଛି ବୋଲି ମୋ ମନରେ ବିସ୍ମୟ ଜାଗ୍ରତ ହେଉଥିଲା । ମୋର ମନେହେଉଥିଲା ତାର ସତ୍ତାରେ, ବାସ୍ତବ ଅଥଚ ନିର୍ଦ୍ଦିଷ୍ଟ ରୂପହୀନ, ପରୀସଦୃଶ ଯେପରି କିଛି ଥିଲା, ଯାହା ସବୁବେଳେ ଧରାଛୁଆଁର ବାହାରେ ରହିବାକୁ ଚାହୁଁଥିଲା । ବେଳେବେଳେ ତାର ଆଖି ଭିତରକୁ ଚାହିଁ ମୋର ମନେ ହେଇଛି, ସେଥିରୁ କୌଣସି ଅପରିଚିତ ବ୍ୟକ୍ତି ଯେପରି ମତେ ଚାହିଁରହିଛି ।

ବାଲ୍ୟବୟସରେ ସେ କେତେଦିନ ସ୍କୁଲରେ ପଢ଼ିଥିଲା ଯାହା । ତା'ଛଡ଼ା ତାର ଯେପରି କିଛି ଉଚ୍ଚ ଶିକ୍ଷା ନଥିଲା । ଯେଉଁ ପ୍ରଣାଳୀରେ ଶିକ୍ଷାର ଗତି ପରିଚାଳିତ ହେଇଥାଏ, ତା'ର ମନ ସେଥି ସଙ୍ଗେ ଯାଇ ନଥିଲା । ଆମ ଘରକୁ ସେ ଆସିଥିଲା ଜଣେ ସରଳ ନିରାଡ଼ମ୍ବର ବାଳିକା ଭାବରେ ଏବଂ ଯେଉଁ ସବୁ ମନର ଜଟିଳତା ଆଜିର ବାଳିକାମାନଙ୍କଠାରେ ଖୁବ୍ ସାଧାରଣ ବୋଲି କୁହାଯାଉଛି, ତା'ର ଲେଶ କମଳା ପାଖରେ ନଥିଲା । ତାର ସେହି ବାଳିକାସୁଲଭ ଚେହେରା ସମ୍ପୂର୍ଣ୍ଣ ଭାବରେ କେବେ ମଉଳି ଯାଇ ନଥିଲା; କିନ୍ତୁ ବୟସ ବୃଦ୍ଧି

ସଙ୍ଗେ ତାର ଆଖି ଦୁଇଟିରେ ଏପରି ଗମ୍ଭୀରତା ଓ ଜ୍ୟୋତି ଆସିଯାଇଥିଲା, ଯାହା ଧାରଣା ଦେଉଥିଲା, ଦୁଇଟି ଶାନ୍ତ ଜଳାଶୟ ପଛରେ ତୋଫାନ ଯେପରି ଉଗ୍ର ହେଉଛି । ଆଧୁନିକ ବାଳିକା କହିଲେ ଯାହା ବୁଝାଏ, ସେ ସହରର ଆଚରଣ ଓ ସୌଷ୍ଠବର ଅଭାବ ତା'ପାଖରେ ନଥିଲା; ତଥାପି ଆଧୁନିକ ଶୃଙ୍ଖଳଚାଳନ ସଙ୍ଗେ ସହଜରେ ସେ ନିଜକୁ ମେଳ ଖୁଆଇ ପାରିଥିଲା । କିନ୍ତୁ ସାରତଃ ସେ ଥିଲା ଜଣେ ଭାରତୀୟ କନ୍ୟା ଓ ଅଧିକନ୍ତୁ ନିର୍ଦ୍ଦିଷ୍ଟ କରି କହିଲେ ଜଣେ କାଶ୍ମୀରୀ କନ୍ୟା —ସୁବେଦୀ ଓ ଗର୍ବିତା, ବାଳିକାସୁଲଭ ଅଥଚ ପ୍ରାପ୍ତବୟସ୍କା, ନିର୍ବୋଧ ଓ ବୁଦ୍ଧିମତୀ । ଯେଉଁମାନଙ୍କୁ ସେ ଚହ୍ନିନଥିଲା ଅବା ସୁଖ ପାଉନଥିଲା, ସେମାନଙ୍କ ପାଖରେ ସେ ଖୁବ୍ ଗମ୍ଭୀର ହୋଇ ରହୁଥିଲା; କିନ୍ତୁ ଯେଉଁମାନଙ୍କୁ ସେ ଚହ୍ନିଥିଲା ଓ ସୁଖପାଉଥିଲା, ସେମାନଙ୍କ ସଙ୍ଗେ ମୁକ୍ତ ତଥା ପ୍ରଫୁଲ୍ଲ ଭାବରେ ସେ ଆଳାପରେ ମଜ୍ଜି ରହୁଥିଲା । ସାଧାରଣତଃ, ଯେ କାହା ବିଷୟରେ ସେ ଚଞ୍ଚଳ ବିବେଚନା କରିନେଉଥିଲା ଓ ସେ ପ୍ରକାର ବିବେଚନା ସବୁ ସମୟରେ ନିର୍ଭୁଲ ଓ ଉଚିତ ପଦକ୍ଷେପ ହେଉ ନଥିଲା, ତଥାପି ସେ ତା'ର ସ୍ୱାଭାବିକ ପସନ୍ଦ କରିବା ଅବା ଅପସନ୍ଦ କରିବା ଉପରେ ଅଟଳ ରହୁଥିଲା । ଛଳନା ବୋଲି ତା' ପାଖରେ କିଛି ନଥିଲା । ସେ ଯଦି କାହାକୁ ପସନ୍ଦ କରିନି, ତାହା ସ୍ପଷ୍ଟ ପ୍ରକାଶ ପାଇ-ଯାଉଥିଲା ଏବଂ ତାହା ଘୋଡ଼ାଇବା ପାଇଁ ସେ ପ୍ରୟାସ କରୁନଥିଲା । ଯଦି ସେଭଳି ପ୍ରୟାସ ସେ କେବେ କରିଥାନ୍ତା, ହୁଏତ ସେଥିରେ ସେ ସଫଳ ହୋଇପାରି ନଥାନ୍ତା । ମୁଁ ସେପରି ଖୁବ୍ କମ୍ ଲୋକଙ୍କ ସମ୍ପର୍କରେ ଆସିଛି, ଯେଉଁମାନେ କମଳା ଭଳି ଏପରି ନିର୍ମଳ ଆନ୍ତରିକତାର ଚିହ୍ନ ମୋର ମନରେ ଲେଖି ପାରିଚନ୍ତି ।

## ୨. ଆମର ବିବାହ ଓ ତା'ପରେ

ଆମ ବିବାହର ପ୍ରଥମ କେତେ ବର୍ଷ କଥା ନେଇ ମୁଁ ଭାବୁଥିଲି । କମଳାକୁ ମୁଁ ଖୁବ୍ ଭଲପାଉଥିଲି । ତଥାପି ଯେଉଁ ଆତ୍ମୀୟ ବନ୍ଧୁତା ମୋ ପାଖରୁ ତାର ପ୍ରାପ୍ୟ ଥିଲା, ମୁଁ ସେଥିରୁ ତାକୁ ନାନା ଭାବରେ ପ୍ରାୟ ବଞ୍ଚିତ କରିଥିଲି; ଏପରିକି ବେଳେବେଳେ ତାକୁ ଭୁଲି ବି ଯାଉଥିଲି । କାରଣ ସେତେବେଳେ ମୁଁ ପ୍ରାୟ ମୋ ଆୟତ୍ତରେ ରହୁନଥିଲି ଏବଂ ଯେଉଁ ଉଦ୍ଦେଶ୍ୟ ମୁଁ ଅନୁସରଣ କରୁଥିଲି, ସେଥିପାଇଁ ମୁଁ ନିଜକୁ ସମ୍ପୂର୍ଣ୍ଣ ଭାବରେ ସମର୍ପିତ କରି ଦେଇଥିଲି । ମୁଁ ମୋର ନିଜର ଗୋଟାଏ ସ୍ୱପ୍ନର ଦୁନିଆରେ ରହୁଥିଲି ଏବଂ ଯେଉଁ ସବୁ ଲୋକେ ମତେ ଘେରି ରହୁଥିଲେ ସେମାନେ ମତେ ଆକାରହୀନ ଛାୟା ଭଳି ପ୍ରତୀତ ହେଉଥିଲେ । ଯେଉଁ ବିଷୟରେ ମୋର ମନ ପୂର୍ଣ୍ଣ ଭାବରେ ଜଡ଼ି ରହିଥିଲା, ସେଥିପାଇଁ ମୁଁ ମୋର ସମସ୍ତ ଶକ୍ତି ନିୟୋଜିତ କରି ପରିଶ୍ରମ କରୁଥିଲି । ଅନ୍ୟ କାହାକୁ ସମୟ ଦେବା-ପାଇଁ ମୋ ପାଖରେ ମନ ଅବା ଅବସର ଖୁବ୍ କମ୍ ରହୁଥିଲା ।

ତଥାପି, ମୁଁ ତାକୁ ଭୁଲିଯାଇ ନଥିଲି ଓ ଥରକୁ ଥର ଆଶ୍ରୟ ନିମନ୍ତେ ତାର ପାଖକୁ ଆସୁଥିଲି । କିଛି ଦିନ ଯଦି ମୁଁ ବାହାରେ ରହିଯାଉଛି, ତାର ଭାବନା ମୋର ମନର

ଉତ୍ତେଜନା ଶାନ୍ତ କରୁଥିଲି ଏବଂ ଘରକୁ ଓ ତା' ପାଖକୁ ଫେରିବା ଦିନ ପାଇଁ ମୁଁ ଆତୁର ହେଉଥିଲି । ଆଜି ଭାବିପାରୁନି, ମୁଁ କ'ଣ କରନ୍ତି ଯେ ଯଦି ନଥାନ୍ତା ! ମତେ ସାନ୍ତ୍ୱନା ଦେଇ, ବଳ ଦେଇ, ମୋର ଦେହ ଓ ମନକୁ ନୂଆ ନୂଆ ସଂଗ୍ରାମ ନିମନ୍ତେ କିଏ ପ୍ରସ୍ତୁତ କରନ୍ତା ।

ସେ ମତେ ଯାହା ଦେଉଥିଲା ମୁଁ ନେଉଥିଲି; କିନ୍ତୁ ବିବାହର ସେହି ପ୍ରଥମ କେତେ ବର୍ଷରେ, ବିନମୟରେ ମୁଁ ତାକୁ କ'ଣ ଦେଇଛି ? ମୁଁ ଯେ ସେ ଦିଗରେ କୃପଣତା କରିଛି, ଖୁବ୍ ସମ୍ଭବ, ସେଥିର ଛାପ ତାର ମନରୁ ଲିଭିଯାଇନି ।

ତାର ଅମିତ ଅହଙ୍କାର ଓ ସମ୍ବେଦନଶୀଳତା ଯୋଗୁଁ ସାହାଯ୍ୟପ୍ରାର୍ଥୀ ଭାବରେ ସେ ମୋ ପାଖକୁ ଆସିବାକୁ ଚାହିଁନି; ଯଦିଓ ସେ ପ୍ରକାର ସାହାଯ୍ୟ ମୁଁ ତାକୁ ଯେତେ ପରିମାଣରେ ଦିଅନ୍ତି ଅନ୍ୟ କେହି ପାଇନଥାନ୍ତା । ଜାତୀୟ ସଂଗ୍ରାମରେ ତାର ନିଜର ଭୂମିକା ଗ୍ରହଣ କରିବା ପାଇଁ ସେ ଚାହୁଁଥିଲା; ସ୍ୱାମୀର ଛାୟା-କେବଳ ଭାବରେ କିମ୍ବା ଗଳଗ୍ରହ ଭାବରେ ରହିବା ସେ ପସନ୍ଦ କରି ନଥାନ୍ତା । ନିଜକୁ ଓ ଦୁନିଆକୁ ଜଣାଇବାକୁ ସେ ଚାହୁଁଥିଲା ଯେ ତାର ଜୀବନର ମଧ୍ୟ ତାତ୍ପର୍ଯ୍ୟ ଅଛି । ଏକଥା ଜାଣି ପାରିଥିଲେ ମୁଁ ଯେ କି ଆନନ୍ଦ ଅନୁଭବ କରିଥାନ୍ତି, କିପରି କହିବି ? କିନ୍ତୁ ମୁଁ ଏତେ ବ୍ୟସ୍ତ ରହୁଥିଲି ଯେ ତାର ମନରେ ପ୍ରବେଶ କରିବା ପାଇଁ ମୋର ଅବସର ନଥିଲା ଏବଂ ତାର ଏ ପ୍ରକାର ଆକାଂକ୍ଷାର ସୂଚନା ମୋ ଆଖିରେ ପଡ଼ି ପାରୁନଥିଲା । ଅଧିକନ୍ତୁ, ମତେ ବାରମ୍ବାର ଜେଲ୍ ଯିବାକୁ ପଡ଼ୁଥିବାରୁ ମୁଁ ତାର ପାଖରୁ ଦୂରରେ ରହୁଥିଲି କିମ୍ବା ଅନ୍ୟ ସମୟରେ ସେ ହୁଏତ ଅସୁସ୍ଥ ରହୁଥିଲା । ରବୀନ୍ଦ୍ରନାଥଙ୍କ ନାଟକର 'ଚିତ୍ରାଙ୍ଗଦା' ଭଳି ସେ ଯେପରି ମତେ କହୁଥିଲା :

"ମୁଁ ଚିତ୍ରା । ଦେବୀ ନୁହେଁ ଯେ ମତେ ପୂଜା ଅର୍ପଣ କରିବ; କିମ୍ବା ମୁଁ ସେପରି ଦୟାର ପାତ୍ରୀ ହେଇଯାଇନି ଯେ ତୁଚ୍ଛ ପତଙ୍ଗ ଭଳି ମତେ ଉପେକ୍ଷାରେ ଝାଡ଼ିଦେବ । ବିପଦ ଓ ସାହସିକତାର ପଥରେ ମତେ ଯଦି ପାର୍ଶ୍ୱରେ ରଖିବା ଉପଯୁକ୍ତ ମନେକର, ତମ ଜୀବନର ବ୍ରତ—ମହାନ୍ ଯେତେ କର୍ତ୍ତବ୍ୟରେ ସହାୟ ହେବାପାଇଁ ଯଦି ସମ୍ମତି ଦିଅ, ତେବେଯାଇ ମତେ ଚହ୍ନିପାରିବ ।' କିନ୍ତୁ ଏତେ କଥା ମୁହଁ ଖୋଲି ମତେ ସେ କେବେହେଲେ କହିନି । କ୍ରମେ କ୍ରମେ କେବଳ ତାର ନୟନର ସେ ସନ୍ଦେଶ ମୁଁ ପଢ଼ିପାରିଥିଲି ।

୧୯୩୦ ପ୍ରଥମ ଭାଗରେ ତାର ଆକାଂକ୍ଷା ମୁଁ ବୁଝିପାରିଲି ଏବଂ ଆମେ ଏକାଠି କାର୍ଯ୍ୟ କଲୁ । ଏହି ମିଳିତ କର୍ମର ଅଭିଜ୍ଞତା ମତେ ଗୋଟିଏ ନୂଆ ଆନନ୍ଦ ଦେଇଥିଲା । ଏପରି ଭାବରେ, ଜୀବନର ପ୍ରାନ୍ତରେ ଆମେ କିଛି ସମୟ ରହିଥିଲୁ; କାରଣ ସେତେବେଳକୁ ଜାତୀୟ ଆକାଶ ମେଘରେ ଭାରାକ୍ରାନ୍ତ ହେଇଆସୁଥିଲା ଓ ଗୋଟାଏ ଜାତୀୟ ବିକ୍ଷୋଭ ଆସନ୍ନ ଥିଲା । ସେହି କେତୋଟି ପ୍ରୀତିପୂର୍ଣ୍ଣ ମାସ ଯେବେ ଆମେ ଉଭୟେ ହାତରେ ହାତ ମିଳାଇ କାମ କରିଥିଲୁ, ଖୁବ୍ ଚଞ୍ଚଳ ଶେଷ ହୋଇଗଲା ଓ ଏପ୍ରିଲ୍ ଆରମ୍ଭରେ ସମଗ୍ର ଦେଶରେ ଅସହଯୋଗ ଆନ୍ଦୋଳନ ବ୍ୟାପିଯାଇଥିଲା । ସଙ୍ଗେ ସଙ୍ଗେ ସରକାରୀ ଦମନଲୀଳା ମଧ୍ୟ ଏବଂ ମୁଁ ପୁଣି ଜେଲ୍‌ରେ ଭର୍ତ୍ତିହେଲି ।

ପୁରୁଷ ଲୋକଙ୍କ ଭିତରୁ ଅଧିକାଂଶ ଜେଲ୍‌ରେ ଥିଲେ । ସେତିକିବେଳେ ଏକ ଅଦ୍ଭୁତ କଥା ଘଟିଲା । ଆମର ନାରୀମାନେ ଆଗଭର ହୋଇ ସଂଗ୍ରାମର ନେତୃତ୍ୱ ନେଲେ । ଆଗରୁ ବରୁବେଳେ ଆନ୍ଦୋଳନ ଭିତରେ ନାରୀମାନେ ଥିଲେ; ବର୍ତ୍ତମାନ ସେମାନେ ଏତେ ସଂଖ୍ୟାରେ ଆସି ସଂଗ୍ରାମରେ ଯୋଗଦେଲେ ଯେ ବ୍ରିଟିଶ୍ ସରକାର କେବଳ ନୁହେଁ; ସେମାନଙ୍କ ଅଭିଭାବକମାନେ ବି ଆଚମ୍ବିତ ହୋଇପଡ଼ିଲେ । ସରକାରୀ ଆଦେଶ କମ୍ବା ପୋଲିସ୍‌ର ଲାଠିକୁ ତୁଚ୍ଛ କରି, ଉଚ୍ଚ ଓ ମଧ୍ୟବର୍ଗର ସ୍ତ୍ରୀ, ଶ୍ରମିକ ଓ ସମ୍ଭ୍ରାନ୍ତ ମହିଳାମାନେ ନିଜ ନିଜ ଘରର ସୁଖ-ସ୍ୱଚ୍ଛନ୍ଦ୍ୟ ଓ ଆସକ୍ତି ଭୁଲି ହଜାର ହଜାର ସଂଖ୍ୟାରେ ଜାତୀୟ ସଂଗ୍ରାମରେ ଆସି ଝାସଦେଲେ । ସେମାନଙ୍କର ଏ ସାହସିକତା ଓ ନିର୍ଭୀକତା କେବଳ ନୁହେଁ, ପରନ୍ତୁ ସେମାନଙ୍କର ସାଙ୍ଗଠନିକ ପାରଗତା ସମସ୍ତଙ୍କୁ ବିସ୍ମିତ କରିଥିଲା ।

ଭାରତୀୟ ନାରୀମାନଙ୍କର ଏହି ଅପୂର୍ବ ବୀରତ୍ୱ ଓ ଦେଶପ୍ରୀତିର ସମ୍ବାଦ ନୈନି ଜେଲ୍‌ରେ ଯେବେ ଆମ ପାଖରେ ପହଞ୍ଚିଲା, ସେତେବେଳେ ଯେଉଁ ପୁଲକପୂର୍ଣ୍ଣ ହର୍ଷ ଆମ ପ୍ରତ୍ୟେକଙ୍କ ଦେହରେ ସଞ୍ଚରିଯାଇଥିଲା, ସେ ଅନୁଭୂତି ମୋର ମନରୁ କେବେ ପାସୋର ଯିବନି । ଆମ ଭିତରେ ଯେ ସମ୍ପର୍କରେ କାହା ମୁହଁରୁ କଥା ଫୁଟି ନଥିଲା, କାରଣ ଆମର ହୃଦୟ ଭରିଯାଇଥିଲା ଆନନ୍ଦାଶ୍ରୁରେ ଓ ଦୃଷ୍ଟି ନିଷ୍ପ୍ରଭ ହୋଇପଡ଼ିଥିଲା ।

କିଛିଦିନ ପରେ ମୋର ପିତା ନୈନି ଜେଲରେ ଆମ ସଙ୍ଗେ ଆସି ଯୋଗଦେଲେ ଓ ସେ ଆମକୁ ବହୁତ କିଛି ବାହାର ଖବର ଶୁଣାଇଲେ, ଯାହା ଆମେ ଶୁଣି ନଥିଲୁ । ବାହାରେ ଅସହଯୋଗ ଆନ୍ଦୋଳନର ନେତା ଭାବରେ ସେ କାର୍ଯ୍ୟକାରୀ ହେଉଥିଲେ ଓ କୌଣସିମତେ ହେଲେ ସମଗ୍ର ଦେଶର ନାରୀମାନଙ୍କର ଏ ପ୍ରକାର ଆକ୍ରମଣମୂଳକ କର୍ମାନୁସରଣକୁ ଉତ୍ସାହିତ କରି ନଥିଲେ । କି ଯୁବତୀ କି ବୃଦ୍ଧା ସମସ୍ତେ ସାହି ସାହି ବୁଲି ସେ ପ୍ରଚଣ୍ଡ ଖରାରେ ପୁଲିସ ସଙ୍ଗେ ବିବାଦ ଲଗେଇବା ତାଙ୍କର ପିତୃପ୍ରାଣକୁ ଓ କେତେକାଂଶରେ ରକ୍ଷଣଶୀଳ ମନକୁ ପସନ୍ଦ ହୋଇ ନଥିଲା; କିନ୍ତୁ ଲୋକଙ୍କ ମିଜାଜ ସେ ବୁଝୁଥିଲେ ଓ କାହାର ହେଲେ, ଏପରିକି ନିଜର ସ୍ତ୍ରୀ, ବୋହୂ ଓ ଝିଅମାନଙ୍କର ଉତ୍ସାହରେ ବି ବାଧା ଦେଇ ନଥିଲେ । ଦେଶସାରା ନାରୀମାନଙ୍କର ଏହି ସାହସ, ଉତ୍ସାହ ଓ ଦକ୍ଷତା ପ୍ରଦର୍ଶନରେ ସେ ବିସ୍ମିତ ହୋଇଥିଲେ ଓ ଗୋଟାଏ ପ୍ରକାର ଆନନ୍ଦ ବି ଲଭ କରିଥିଲେ । ନିଜ ଘରର ଝିଅ-ବୋହୂଙ୍କ କଥା କହିଲା-ବେଳେ ସେଥିରେ ତାଙ୍କର ସ୍ନେହପୂର୍ଣ୍ଣ ଅହଙ୍କାର ଫୁଟିଉଠୁଥିଲା ।

ମୋର ପିତାଙ୍କ ନିର୍ଦ୍ଦେଶ ଅନୁସାରେ ୧୯୩୧, ଜାନୁୟାରୀ, ୨୬ରେ ଭାରତର ସ୍ୱାଧୀନତାଦିବସର ପ୍ରଥମ ବାର୍ଷିକ ଉତ୍ସବ ପାଳିତହେବା ଅବସରରେ ସମଗ୍ର ଦେଶରେ ହଜାର ହଜାର ସାଧାରଣ ସଭାରେ 'ସ୍ମୃତି ପ୍ରସ୍ତାବ' ଗ୍ରହଣ କରାଗଲା । ଏ ପ୍ରକାର ସଭା ଉପରେ ପୁଲିସ ନିଷେଧ ଜାରି କରିଥିଲେ ଓ ଏପରି ଅନେକ ସଭା ସେମାନେ ବଳପୂର୍ବକ ଭାଙ୍ଗିଦେଇଥିଲେ । ମୋର ପିତା ରୋଗଶଯ୍ୟାରୁ ସଭା ନିମନ୍ତେ ନିର୍ଦ୍ଦେଶ ଦେଇଥିଲେ ଏବଂ ଏହା ଆମ ସଙ୍ଗଠନର ବିଜୟ ଘୋଷଣା କରିଥିଲା; କାରଣ ସମ୍ବାଦପତ୍ର, ଚିଠି, ତାର, ଟେଲିଫୋନ୍ ଅବା କୌଣସି ପ୍ରତିଷ୍ଠିତ ମୁଦ୍ରଣାଳୟର ସୁବିଧା ଆମକୁ ମିଳିନଥିଲା । ଅଥଚ

ଗୋଟାଏ ନିର୍ଦ୍ଦିଷ୍ଟ ଦିନର ଗୋଟାଏ ନିର୍ଦ୍ଦିଷ୍ଟ ସମୟରେ, ସମଗ୍ର ଦେଶରେ ଏପରିକି ଦୂରଦୂରାନ୍ତ ଗ୍ରାମମାନଙ୍କରେ ମଧ୍ୟ ସାଧାରଣ ସଭାରେ ସ୍ଥାନୀୟ ଭାଷାରେ ପ୍ରସ୍ତାବ ପଢ଼ି ଗ୍ରହଣ କରାଗଲା । ଏହି ପ୍ରସ୍ତାବ ଗୃହୀତ ହେବାର ଦଶ ଦିନ ପରେ ମୋର ପିତାଙ୍କର ମୃତ୍ୟୁ ଘଟିଲା । ପ୍ରସ୍ତାବଟି ବଡ଼ ଦୀର୍ଘ । ସେଥିର ଗୋଟାଏ ଅଂଶ ଭାରତୀୟ ନାରୀଙ୍କ ସମ୍ପର୍କରେ ଥିଲା :

"ଆମେ ଭାରତୀୟ ନାରୀଜାତି ପ୍ରତି—ଯେଉଁମାନେ ମାତୃଭୂମିର ବିପଦ ସମୟରେ ଘରର ଆଶ୍ରୟ ତ୍ୟାଗ କରି ଅସୀମ ଧୈର୍ଯ୍ୟ ଓ ସହିଷ୍ଣୁତା ସହକାରେ ପୁରୁଷମାନଙ୍କ ସଙ୍ଗେ କାନ୍ଧରେ କାନ୍ଧ ମିଳାଇ, ଭାରତର ଜାତୀୟବାହିନୀର ଅଗ୍ରଭାଗରେ ରହିଯାଇ ସଂଗ୍ରାମରୁ ତ୍ୟାଗ ଓ ବିଜୟର ଅଂଶ ନେବା ପାଇଁ ଆଗଭର ହୋଇ ଆସିଲେ, ଆମେ ସେମାନଙ୍କ ପ୍ରତି ଆମର ଗଭୀର ଶ୍ରଦ୍ଧା ଲିପିବଦ୍ଧ କରୁଛୁ ।"

ଏହି ଆନ୍ଦୋଳନରେ କମଳା ଏକ ଗୌରବପୂର୍ଣ୍ଣ ତଥା ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲା । ଯେତେବେଳେ ପ୍ରତ୍ୟେକ ଜଣାଶୁଣା କର୍ମୀ ଜେଲ୍‌ରେ ଥିଲେ, ସେତେବେଳେ ଆଲ୍ଲାହାବାଦ ନଗରୀରେ ଆମ କାର୍ଯ୍ୟ ସଂଗଠନ କରିବାର ଦାୟିତ୍ୱ ପଡ଼ିଥିଲା ତାର ଅନଭିଜ୍ଞ ସ୍କନ୍ଧରେ । ତାର ଅନ୍ତରର ଦେଶପ୍ରେମବହ୍ନି ଓ କର୍ମର ଆହ୍ୱାନ ତାର ଅନଭିଜ୍ଞତା ଦୂର କରିଥିଲା ଏବଂ ମାତ୍ର କେତୋଟି ମାସରେ ସେ ଆଲ୍ଲାହାବାଦର ଗର୍ବର ଧନ ହୋଇ ଉଠିଲା ।

ମୋର ପିତାଙ୍କର ଅନ୍ତିମ ଅସୁସ୍ଥତା ଓ ଆସନ୍ନ ମୃତ୍ୟୁର ଶୁଶ୍ରୂଷାତଳେ ମୁଁ ଓ କମଳା ପୁଣି ମିଳିତ ହେଲୁ । ଏଇ ମିଳନ ପଛରେ ଥିଲା ଗୋଟାଏ ନୂଆ ବୁଝାମଣା ଓ ନୂଆ ବନ୍ଧୁଭାବ । ତାର କେତେ ମାସ ପରେ, ଆମ ଦୁହିଁଙ୍କ ପାଇଁ ପ୍ରଥମ କେତୋଟି ଛୁଟିଦିନ ବିତାଇବା ପାଇଁ ଆମେ ଝିଅକୁ ସାଙ୍ଗରେ ନେଇ ସିଂହଳ ଗଲୁ । ଆମେ ପରସ୍ପରକୁ ନୂତନ ଭାବରେ ଆବିଷ୍କାର କରିବୁ ବୋଲି ମୋର ମନେ ହେଉଥିଲା । ଗତ କେତୋଟି ବିବାହିତ ବର୍ଷ ଯାହା ଆମେ ଏକାଠି ବିତାଇଥିଲୁ, ଏହି ନୂତନ ଓ ଅଧିକତର ଘନିଷ୍ଠ ସମ୍ପର୍କ ନିମନ୍ତେ ପ୍ରସ୍ତୁତି ସମୟ କେବଳ ଥିଲା । ଆମକୁ ଶୀଘ୍ର ଫେରିବାକୁ ପଡ଼ିଲା ଓ ମୁଁ କର୍ମରେ ବ୍ୟସ୍ତ ରହିଲି ଏବଂ କିଛି ଦିନ ପରେ ଜେଲ୍ ଗଲି । ଏଥର ଆଉ ଏକାଠି ଛୁଟିଦିନ କଟାଇବା, ମିଳିମିଶି କାମ କରିବା, ଏପରିକି କିଛି ସମୟ କେବଳ ଏକାଠି ହେବାର ଅବକାଶ ମଧ୍ୟ ନଥିଲା । ଅଳ୍ପ ସମୟ ମାତ୍ର ମିଳିଥିଲା ମୋର ଦୁଇବର୍ଷିକିଆ ଦୁଇଟି ଜେଲ୍ ପର୍ଯ୍ୟାୟ ଭିତରେ । ଏଥିରୁ ଦ୍ୱିତୀୟଟି ସରିବା ପୂର୍ବରୁ କମଳା ମୃତ୍ୟୁଶଯ୍ୟା ଆଶ୍ରୟ କରିସାରିଥିଲା ।

କଲିକତାର ଗୋଟାଏ ପୁଲିସ ପରୱାନାରେ ମୁଁ ୧୯୩୪, ଫେବୃୟାରୀ ମାସରେ ଯେବେ ଗିରଫ ହେଲି, ମୋର ପ୍ରକୋଷ୍ଠରୁ କମଳା ମୋ ପାଇଁ କିଛି ପୋଷାକ ସଜାଡ଼ି ଦେଉଥିଲା । ବିଦାୟ ସମ୍ଭାଷଣ ଜଣାଇବା ପାଇଁ ମୁଁ ତାର ପଛେ ପଛେ ଗଲି । ସହସା ମୋ ଉପରେ ସେ ଢଳିପଡ଼ିଲା ଓ ସଙ୍ଗେ ସଙ୍ଗେ ମୂର୍ଚ୍ଛିତା ହେଲା । ଜେଲ୍ ଗଲାବେଳେ ସେ ଏପରି ଭାଙ୍ଗିପଡ଼ିବା ମୁଁ କେବେ ଦେଖିନଥିଲି; କାରଣ ଜେଲ୍ ଯିବାର ବିଚ୍ଛେଦକୁ ଖୁବ୍ ଲଘୁଭାବରେ ଓ ଆନନ୍ଦ-ମନରେ ନେବା ପାଇଁ ଏବଂ ଯେତେଦୂର ସମ୍ଭବ କୌଣସି ଦୃଶ୍ୟ ନ କରିବା ପାଇଁ ଆମେ ପରସ୍ପରକୁ ତାଲିମ୍ କରିସାରିଥିଲୁ । ଏପରି ଏକାଠି ହେବା ଆମର ଏହା ଶେଷଥର ବୋଲି

ସେ କ'ଣ କିଛି ପୂର୍ବାଭାସ ପାଇଥିଲା ?

ଯେତେବେଳେ ପରସ୍ପର ପାଇଁ ଆମର ଆବଶ୍ୟକତା ଖୁବ୍ ବେଶି ଥିଲା, ଠିକ୍ ସେତିକିବେଳେ ଆମେ ପରସ୍ପର ଖୁବ୍ ନିକଟତର ହୋଇ ଆସିଥିଲୁ, ସେତିକିବେଳେ ଦୁଇବର୍ଷିକିଆ ଦୁଇଟି ଦୀର୍ଘ ଜେଲ୍ ପର୍ଯ୍ୟାୟ ଆମ ମଝିରେ ଆସି ଠିଆହେଲା । ଦୀର୍ଘଦିନ ଧରି ଜେଲ୍‌ରେ ରହିଲାବେଳେ ମୁଁ ଏ ବିଷୟରେ ଭାବୁଥିଲି ଓ ଆଶା ବି କରୁଥିଲି ଯେ ସମୟ ନିଶ୍ଚୟ ଆସିବ ଯେବେ ଆମେ ପୁଣି ମିଳିତ ହେବୁ । ଏଇ ଗତ କେତୋଟି ବର୍ଷ ତାର କିଭଳି ବିତିଚି ମୁଁ କିଛି ହୁଏତ ଅନ୍ଦାଜ କରିପାରୁଚି; କିନ୍ତୁ ନିଶ୍ଚିତ ଭାବରେ ଜାଣିବା ମୋ ପକ୍ଷରେ ସମ୍ଭବ ନୁହେଁ, କାରଣ ସେ ଆସି ମୋତେ ଜେଲ୍‌ରେ ଦେଖାକଲାବେଳେ କିମ୍ବା କିଛି ଦିନ ପାଇଁ ମୁଁ ଜେଲ୍ ବାହାରକୁ ଆସିଥିଲାବେଳେ ଆମ ମନର ସ୍ୱାଭାବିକ ଅବସ୍ଥା ରହୁନଥିଲା । ବିଚ୍ଛେଦବେଳେ ଅବା ଆସନ୍ନ-ବିଚ୍ଛେଦ ଭାବନାରେ ଦୁଃଖ ପ୍ରଦର୍ଶନ କରି ପରସ୍ପରକୁ ବ୍ୟଥା ପହଞ୍ଚାଇବା ଆଶଙ୍କାରେ ଆମେ ସେପରି ସମୟରେ ଆମର ଆଚରଣରେ ବିଶେଷ ସତର୍କତା ଅବଲମ୍ବନ କରୁଥିଲୁ । କିନ୍ତୁ ସ୍ପଷ୍ଟ ଜଣାଯାଉଥିଲା ଯେ ନାନା ବିଷୟରେ ତାର ମନ ବିକ୍ଷୋଭିତ ହୋଇଚି ଓ ତାର ମନରେ ସୁଖଶାନ୍ତି ନାହିଁ । ସେପରି ଅବସ୍ଥାରେ ତାର ମନର ଭାର ଲାଘବ କରିବା ପାଇଁ ମୁଁ ଅବଶ୍ୟ ସହାୟକ ହୋଇ ପାରିଥାନ୍ତି; କିନ୍ତୁ ସେ ପ୍ରକାର ସାହାଯ୍ୟ ଜେଲ୍ ଭିତରୁ ଯୋଗାନ୍ତି କିପରି ?

## ୩. ମାନବୀୟ ସମ୍ପର୍କର ସମସ୍ୟା

ଏସବୁ ବିଷୟ ଓ ଆହୁରି କେତେ ଭାବନା ବେଡେନ୍‌ୱେଇଲର୍‌ରେ ମୋର ସୁଦୀର୍ଘ ନିର୍ଜନ ଅବକାଶରେ ମୋ ମନକୁ ଆସିଥାଏ । ଜେଲ୍‌ର ବାତାବରଣ ମୁଁ ସହଜରେ ଛଡ଼ାଇ ପାରୁନଥିଲି । ସେଥିରେ ମୁଁ ବହୁ ଦିନରୁ ଅଭ୍ୟସ୍ତ ହୋଇ ପଡ଼ିଥିଲି ଓ ନୂଆ ପରିବେଶ ସେଥିରେ ବିଶେଷ ପରିବର୍ତ୍ତନ ଆଣି ପାରୁ ନଥିଲା । ମୁଁ ରହୁଥିଲି ନାଜୀ ରାଜ୍ୟରେ, ଯେଉଁଠି କେତେ ବିଚିତ୍ର ଘଟଣା ଘଟିଯାଉଥିଲା । ସେ ସବୁ ଘଟଣା ପ୍ରତି ମୋର ପ୍ରୀତି ନଥିଲା; କିନ୍ତୁ ନାଜୀବାଦ ମୋ କାର୍ଯ୍ୟରେ ହସ୍ତକ୍ଷେପ କରୁନଥିଲା । ବ୍ଲାକ୍ ଫରେଷ୍ଟର ଗୋଟାଏ କୋଣରେ ସେହି କୋଳାହଳହୀନ ଗାଁ'ଟିରେ ତାର ବିଶେଷ ପ୍ରମାଣ ନଥିଲା ।

କିମ୍ବା ମୋର ମନ ହୁଏତ ଅନ୍ୟାନ୍ୟ ବିଷୟରେ ବ୍ୟାପୃତ ରହୁଥିଲା । ମୋର ଅତୀତ ଜୀବନ ଆଖି ଆଗରେ ଭାସିଉଠୁଥିଲା ଆଉ ସେଥିରେ ମୁଁ ଦେଖୁଥିଲି, କମଳା ସର୍ବଦା ମୋ ପାର୍ଶ୍ୱରେ ରହିଚି । ସେ ଥିଲା ଭାରତୀୟ ନାରୀ ଅଥବା ନାରୀତ୍ୱର ହିଁ ପ୍ରତୀକ । ବେଳେବେଳେ, କେତେ ଦୋଷ, କେତେ ଦୁର୍ବଳତା, କେତେ ରହସ୍ୟ, କେତେ ଅବା ଛଳନାପ୍ରବଣତାର ସେ ଦେଶ—ଆମର ପ୍ରିୟତମ ଭାରତ ସମ୍ପର୍କରେ ମୋର ବିଭିନ୍ନ ଧାରଣାରେ ବିଚିତ୍ର ଭାବରେ ମିଶି ସେ ବଢ଼ିଉଠୁଥିଲା । କମଳା କ'ଣ, ସେ କି ମୋର ପରିଚିତ, ମୁଁ କି ତାକୁ ପ୍ରକୃତରେ ବୁଝିପାରିଚି, ସେ କି ମତେ ଜାଣିପାରିଚି, ବୁଝିପାରିଚି—ନାନା ପ୍ରଶ୍ନ ମୋର

ମନରେ ଉଠୁଥିଲା; କାରଣ ମୁଁ ମଧ୍ୟ ସାଂସାରିକତାସୁଲଭ ମଣିଷ ନଥିଲି ଓ ମୋ ଭିତରେ ଥିବା ରହସ୍ୟର ଗଭୀରତା ମୁଁ ନିଜେ କଳ୍ପନା କରିପାରି ନଥିଲି । ଏହି ହେତୁରୁ ସେ ବେଳେବେଳେ ଟିକିଏ କିପରି ଆତଙ୍କିତ ହେଉଛି ବୋଲି ମୋର ମନେ ହେଉଥାଏ । ସବୁଦିନେ ମୁଁ ଜାଣିଥିଲି, ମୋ ଭଳି ଲୋକକୁ ବିବାହ କରିବା କାହା ପକ୍ଷରେ ହେଲେ ସନ୍ତୋଷଜନକ ହେବନି । କମଳା ଓ ମୁଁ କେତେ ଦିଗରେ ବି ସଦୃଶ ଥିଲୁ ତ ଆଉ କେତେ ଦିଗରେ ଆମ ଭିତରେ ବିଶେଷ ସାଦୃଶ୍ୟ ବି ଥିଲା । ତଥାପି ଆମେ ପରସ୍ପର ପ୍ରତି ପରିପୂରକ ହୋଇ ପାରିଲୁନି । ଯାହା ଆମର ଶକ୍ତି, ଆମର ପାରସ୍ପରିକ ସମ୍ପର୍କରେ ତାହା ଦୁର୍ବଳତା ଭାବରେ ଦେଖାଦେଲା । ହୁଏତ ଆମ ଭିତରେ କେବେ ସମ୍ପୂର୍ଣ୍ଣ ବୁଝାମଣା ହେଉଛି, ମନ ଖୁବ୍ ମିଶି ରହୁଛି; କେବେ ଅବା ନାନା ପ୍ରକାର ବୁଝାମଣାର ପଥରୋଧ କରିଛି । ପାରିବାରିକ ଜୀବନର ଦୈନନ୍ଦିନ ବ୍ୟାପାରରେ ଯାହାକୁ ତାହା ବୋଲି ମାନି ନେବାର ଜୀବନ ଆମେ କରିପାରି ନଥିଲୁ ।

ଭାରତର ବଜାର ହାଟରେ ନାନା ଧରଣର ଯେଉଁ ସବୁ ଛବି ପ୍ରଦର୍ଶନ କରାଯାଇଥାଏ, ସେଥିରୁ ଗୋଟାକରେ କମଳାର ଓ ମୋର ଦୁଇଟି ଅଲଗା ଚିତ୍ର ପାଖାପାଖି ରଖି ଉପରେ 'ଆଦର୍ଶ ଯୋଡ଼ି' ଲେଖାଯାଇଥିଲା । ବହୁ ଲୋକଙ୍କର ଖିଆଲରେ ଆମେ ହୁଏତ ତାହା ହିଁ ଥିଲୁ; କିନ୍ତୁ ସେ ଆଦର୍ଶକୁ ଧରିବା ଅବା ଧରିରଖିବା ବଡ଼ କଷ୍ଟକର । ତଥାପି ସିଂହଳରେ ସେହି କେତୋଟି ଦିନର ଅବସ୍ଥାନ କାଳରେ, ବିବାହ କିପରି ଗୋଟାଏ ଅମେଳ ବ୍ୟାପାର ଓ ହଜାର ହଜାର ବର୍ଷର ଅଭିଜ୍ଞତା ଫଳରେ ମଧ୍ୟ ସେଥିରେ କିପରି ପରିବର୍ତ୍ତନ ଆସିନି ଏବଂ ନାନା ଅସୁବିଧା ଓ ପାର୍ଥକ୍ୟ ସତ୍ତ୍ୱେ, ଜୀବନ ଆମକୁ ନାନା ଭାବରେ ପ୍ରତାରଣା କରିଥିବା ସତ୍ତ୍ୱେ ଆମେ ନିଜ ନିଜକୁ ସୌଭାଗ୍ୟଶାଳୀ ମଣିବାରେ ଯଥାର୍ଥତା ଅଛି ବୋଲି କମଳାକୁ କହିଥିବା ମୋର ବେଶ୍ ମନେ ଅଛି । କେତେ ବିବାହିତ ଜୀବନର ଧ୍ୱଂସାବଶେଷ ଅବା ତାହାଠାରୁ ଆହୁରି କରୁଣ—ଯାହା ଶୁଦ୍ଧ ସୁବର୍ଣ୍ଣ ଭଳି ମୂଲ୍ୟବାନ୍ ଓ ଉଜ୍ଜ୍ୱଳ, ଧାତୁ ମଳରେ ତାର ରୂପାନ୍ତରଣ ଆମ ଚାରିପାଖରେ ଆମେ ଦେଖିବାକୁ ପାଉଥିଲୁ । ଏ ଦିଗରୁ ଦୃଷ୍ଟିରୁ, ଆମେ ଯେ କେତେ ଭାଗ୍ୟବାନ୍ ମୁଁ ତାକୁ ବୁଝାଇଥିଲି ଓ ସେ ଗ୍ରହଣ କରିଥିଲା; କାରଣ ଆମେ ବେଳେବେଳେ କଳି କରୁଥିଲେହେଁ ଓ ପରସ୍ପର ପ୍ରତି ଟିକିଏ ବିମୁଖ ହେଉଥିଲେହେଁ ଆମ ଭିତରେ ଦାମ୍ପତ୍ୟ ଜୀବନର ସ୍ଫୁଲିଙ୍ଗ ଲିଭିଯାଇ ନଥିଲା ଏବଂ ଆମ ଉଭୟ ପାଇଁ ଜୀବନ ସବୁବେଳେ ନୂଆ ନୂଆ ଦିଗ ଉନ୍ମୋଚିତ କରୁଥିଲା ଓ ପରସ୍ପରକୁ ବୁଝିବା ପାଇଁ ନୂଆ ଅନ୍ତର୍ଦୃଷ୍ଟି ଯୋଗାଉଥିଲା ।

ମାନବୀୟ ସମ୍ପର୍କର ସମସ୍ୟା : ଏହା କେତେ ମୌଳିକ ଏବଂ ଆମର ରାଜନୀତି ଓ ଅର୍ଥନୀତି ନେଇ ଆମର ଉଦ୍ଧ୍ୟକ୍ତ ବିତର୍କରେ କେତେ ବିସ୍ମୟକର ଭାବରେ ଆମେ ତାହା ଅବଜ୍ଞା କରି ନଥାଉ । ଭାରତ ଓ ଚୀନର ପ୍ରଜ୍ଞାବନ୍ତ ସଭ୍ୟତାମାନଙ୍କରେ ଯେଉଁଠି ସାମାଜିକ ଆଚରଣର ଆଦର୍ଶ ବିକାଶ ଲାଭ କରିଥିଲା, ସେଥିରେ ଯେତେ ତ୍ରୁଟି ଥାଉ ପଛେ, ବ୍ୟକ୍ତି-ଜୀବନକୁ କିନ୍ତୁ ସୌଷ୍ଠବ ଦାନ କରିଥିଲା । ମାନବ-ସମ୍ପର୍କ ଏତେ ଭଲ ଅବହେଳିତ

ହୋଇନଥିଲା । ସେ ସୌଷ୍ଠବ ଆଜି ଭାରତରେ ଦେଖିବାକୁ ମିଳେନି; କିନ୍ତୁ ଯେଉଁ ସବୁ ପାଶ୍ଚାତ୍ୟ ଦେଶମାନେ ନାନା ଦିଗରେ ପ୍ରଗତି କରିଛନ୍ତି, ସେଠାରେ ମଧ୍ୟ ଏହା କାହିଁ ? ସୌଷ୍ଠବ କି ସାରତଃ ପ୍ରଗତିଶୀଳ ପରିବର୍ତ୍ତନର ବିରୋଧୀ ? ପ୍ରଗତି ପାଇଁ ଜୀବନର ସୌଷ୍ଠବ କି ବଳି ଦେବାକୁ ପଡ଼ିବ ? ସୌଷ୍ଠବ, ଭିତର କଥା ବାହାର ପ୍ରଗତି, ପୁରାତନର ପ୍ରଜ୍ଞା ଓ ନୂତନର ବିଜ୍ଞାନ ଆଉ ତେଜ ସମନ୍ୱିତ କରାଯାଇ ପାରିବ । ଆମେ ବିଶ୍ୱ ଇତିହାସର ଏପରି ଏକ ଅବସ୍ଥାରେ ଆସି ପହଞ୍ଚିଥାଇଁ, ଯେବେ ଏଭଳି ସମନ୍ୱୟ ବିନା ବିନାଶ ଓ ଉଭୟର ଅନ୍ତ ହିଁ ବିକଳ୍ପ ପନ୍ଥା ଭଳି ବୋଧହେଉଛି ।

## ୪. ବାଡ଼େନ୍, ୧୯୩୫

କମଳାର ଅବସ୍ଥା ଭଲ ଆଡ଼କୁ ଗତିକଲା । ଏହା ଯେତେ ଲକ୍ଷଣୀୟ ନ ହେଲେହେଁ ଗତ କେତେ ସପ୍ତାହର ଉଦ୍‌ବେଗ ପରେ ଆମକୁ ଟିକିଏ ଆଶ୍ୱାସନା ମିଳିଲା । ସେ ସେ ସଙ୍କଟ ପାରହୋଇଯାଇଥିଲା ଓ ପୂର୍ବର ସାଧାରଣ ଅବସ୍ଥାକୁ ଆସିପାରିଲା, କିଛି କମ୍ କଥା ନୁହେଁ । ସେ ଅବସ୍ଥା ଆଉ ଗୋଟାଏ ମାସ ପାଇଁ ଅପରିବର୍ତ୍ତିତ ରହିଲା ଓ ତାର ସୁଯୋଗ ନେଇ ମୁଁ ମୋର ଝିଅ ଇନ୍ଦିରାକୁ ସଙ୍ଗେ ନେଇ କିଛି ଦିନ ପାଇଁ ଇଂଲଣ୍ଡ ଯାତ୍ରାକଲି । ଗତ ଆଠ ବର୍ଷ ଧରି ମୁଁ ସେଠାକୁ ଯାଇ ନଥିଲି ଓ ବହୁତ ବନ୍ଧୁ ଯିବା ପାଇଁ ମୋ ସଙ୍ଗେ ଲାଗିଥାନ୍ତି ।

ବେଡ଼େନ୍‌ୱେଇଲରକୁ ଫେରିଆସି ମୁଁ ସେହି ପୁରାତନ କାର୍ଯ୍ୟନିର୍ଘଣ୍ଟ ପୁନର୍ବାର ଅନୁସରଣ କଲି । ଶୀତ ଋତୁ ଆସିସାରିଥିଲା ଓ ପ୍ରକୃତି ବରଫରେ ଆଚ୍ଛାଦିତ ହୋଇଥିଲା । ବାଡ଼େନ୍ ସରିକି କମଳାର ଅବସ୍ଥା ଲକ୍ଷଣୀୟ ଭାବରେ ଖରାପ ଆଡ଼କୁ ଗତି କରୁଥିଲା । ପୁଣି ଗୋଟାଏ ସଙ୍କଟ ଆସିଥିଲା ଓ ମନେ ହେଉଥିଲା ତାର ଜୀବନ ଯେପରି ସୂତାଖିଅକରେ ଝୁଲି ରହିଛି । ୧୯୩୫ର ସେହି ଶେଷ କେତୋଟି ଦିନରେ, ବରଫ ଓ କାଦୁଅରେ ପଶି ତାର ପାଖକୁ ଗଲବେଳେ, କେତେ ଦିନ ଅବା କେତେ ଘଣ୍ଟା ସେ ଆଉ ବଞ୍ଚିବ, ମୁଁ ଜାଣିପାରି ନଥିଲି । ଶୀତଳ-ଶାନ୍ତ ପ୍ରକୃତି ଓ ତାର ଶୁଭ୍ର ହିମପରିଚ୍ଛଦ ମତେ ହିମଶୀତଳ ମୃତ୍ୟୁର ଶାନ୍ତ ଭଳି ପ୍ରତୀତ ହେଉଥିଲା ଏବଂ ମୋର ସମସ୍ତ ଆଶାବାଦୀ ଶୁଭବିଶ୍ୱାସ ମନରୁ ଅପସରି ଯାଇଥିଲା ।

କମଳା କିନ୍ତୁ ଏ ସଙ୍କଟ ସଙ୍ଗେ ଲଢ଼ି ଅଦ୍ଭୁତ ଭାବରେ ବିଜୟ ଲାଭକଲା । ଦିନକୁ ଦିନ ସେ ଅଧିକତର ପ୍ରଫୁଲ୍ଲ ଦେଖାଗଲା ଓ ସେଠାରୁ ତାକୁ ନେଇଯିବା ପାଇଁ ଜିଗର କଲା । ସ୍ଥାନଟା ପ୍ରତି ତାର ମନରେ ଏକପ୍ରକାର ବିରକ୍ତିକର କ୍ଲାନ୍ତି ଆସିଯାଇଥିଲା ଓ ଆଉ ଗୋଟାଏ କାରଣ ହୁଏତ ହୋଇପାରେ ସେହି ସ୍ୱାସ୍ଥ୍ୟନିବାସର ଅନ୍ୟ ଜଣେ ରୋଗୀର ମୃତ୍ୟୁ, ଯିଏ ତା' ପାଖକୁ ବେଳେବେଳେ ଫୁଲ ପଠାଉଥିଲା ଓ ଥରେଅଧେ ତା' ପାଖକୁ ଆସିଥିଲା ମଧ୍ୟ । ସେହି ଆଇରିସ୍ ବାଳକଟି କମଳା ଅପେକ୍ଷା ଖୁବ୍ ଭଲ ଭାବରେ ଉନ୍ନତି କରୁଥିଲା ଓ

ବାହାରେ ଟିକିଏ ବୁଲାବୁଲି କରିବା ପାଇଁ ମଧ୍ୟ ତାକୁ ଛଡ଼ାଯାଉଥିଲା । ତାର ଏହି ଆକସ୍ମିକ ମୃତ୍ୟୁଖବର ଆମେ କମଳା ପାଖରେ ଲୁଚାଇବାକୁ ଚେଷ୍ଟା କରିଥିଲୁ; କିନ୍ତୁ ବିଫଳ ହେଲୁ । ଯେଉଁମାନେ ରୁଗ୍‌ଣ ଓ ବିଶେଷ କରି ଯେଉଁମାନଙ୍କର ଯକ୍ଷ୍ମାନିବାସରେ ରହିବାର ଦୁର୍ଭାଗ୍ୟ ଘଟେ, ସେମାନଙ୍କର ଗୋଟାଏ ପ୍ରକାର ଷଷ୍ଠ ଇନ୍ଦ୍ରିୟ କାର୍ଯ୍ୟକାରୀ ହେବାଭଳି ଜଣାପଡ଼େ । ସେଥିଦ୍ୱାରା ସେମାନେ ସେସବୁ ବିଷୟ ଜାଣିପାରନ୍ତି, ଯାହା ସେମାନଙ୍କ ପାଖରୁ ଲୁଚାଇବାର ଚେଷ୍ଟା କରାଯାଇଥାଏ ।

୧୯୩୬, ଜାନୁୟାରୀ, ପହିଲାରେ ମୁଁ କିଛି ଦିନ ପାଇଁ ପ୍ୟାରିସ ଗଲି ଓ ସେଠାରୁ ଦିନେ-ଓଳିଏ ପାଇଁ ଲଣ୍ଡନ ବି ଯାଇଥିଲି । କର୍ମ ନିମନ୍ତେ ମୁଁ ବ୍ୟାକୁଳ ହୋଇ ଉଠିଥିଲି ଓ ଲଣ୍ଡନରେ ମୋ ପାଖରେ ଖବର ପହଞ୍ଚିଥିଲା ଯେ ଦ୍ୱିତୀୟଥର ପାଇଁ ମୁଁ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ନିର୍ବାଚିତ ହୋଇଛି, ଆଉ କଂଗ୍ରେସର ଅଧିବେଶନ ବସୁଛି ଏପ୍ରିଲ୍ ମାସରେ । ସଭାପତି ହେବାକୁ ଯାଉଛି ବୋଲି ମୁଁ ଏକରକମ ଆଗରୁ ଜାଣିପାରିଥିଲି, କାରଣ ବନ୍ଧୁମାନେ ମତେ ସୂଚିତ କରିଥିଲେ ଓ ଏ ସମ୍ପର୍କରେ ମୁଁ କମଳା ସଙ୍ଗେ ଆଲୋଚନା ବି କରିସାରିଥିଲି । ମୁଁ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଲି : କମଳାକୁ ସେପରି ଅବସ୍ଥାରେ ଛାଡ଼ିଯିବି ନା କଂଗ୍ରେସର ସଭାପତି ପଦରୁ ଇସ୍ତଫା ଦେବି । ଇସ୍ତଫା ଦେବା କଥାରେ ସେ ଜମା ରାଜି ହେଲାନି । ତାର ଅବସ୍ଥାରେ ଆଉ ସାମାନ୍ୟ କିଛି ଉନ୍ନତି ହୋଇଥିଲା ଓ ଆମେ ଭାବିଲୁ, କିଛି ଦିନ ପରେ ମୁଁ ତା' ପାଖକୁ ପୁଣି ଆସିପାରିବି ।

୧୯୩୬, ଜାନୁୟାରୀ, ଶେଷରେ କମଳାକୁ ବେଡ଼େନୱେଲରରୁ ସୁଇଜେରଲାଣ୍ଡ୍‌ର ଲୋକାନ୍ ନିକଟବର୍ତ୍ତୀ ଅନ୍ୟ ଏକ ସ୍ୱାସ୍ଥ୍ୟନିବାସକୁ ସ୍ଥାନାନ୍ତରିତ କରାଗଲା ।

## ୫. ମୃତ୍ୟୁ

ସୁଇଜେରଲାଣ୍ଡକୁ ସ୍ଥାନାନ୍ତରିତ ହେବା କମଳା ଓ ମୁଁ ଉଭୟେ ପସନ୍ଦ କରିଥିଲୁ । ତାର ପ୍ରଫୁଲ୍ଲତା ବଢ଼ୁଥିଲା ଓ ସୁଇଜେରଲାଣ୍ଡ୍‌ର ସେହି ଅଞ୍ଚଳଟି ସଙ୍ଗେ ପୂର୍ବରୁ ଯେହେତୁ ମୋର ପରିଚୟ ଥିଲା, ମତେ ଆପଣାର ବୋଧ ହେଉଥିଲା । ତାର ସ୍ୱାସ୍ଥ୍ୟରେ ହଠାତ୍ ଆଶଙ୍କିତ ହେବାର ସେପରି କିଛି କାରଣ ଲକ୍ଷ୍ୟ କରି ହେଉନଥିଲା ଓ ଜଣାଯାଉଥିଲା ଆଗକୁ ଅଉ ସଙ୍କଟ ସେପରି ନାହିଁ ଏବଂ ଅନେକ ଦିନ ପର୍ଯ୍ୟନ୍ତ ହୁଏତ ଧୀରେ ଧୀରେ ଉନ୍ନତି କରି ତାକୁ ସେଠାରେ ରହିବାକୁ ପଡ଼ିବ ।

ଇତିମଧ୍ୟରେ ଭାରତର ଆହ୍ୱାନ ବାରମ୍ବାର ଆସୁଥିଲା ଓ ସେଠାରେ ବନ୍ଧୁମାନେ ଫେରିବା ପାଇଁ ମୋର ଉପରେ ଅଧିକରୁ ଅଧିକ ଚାପ ପକାଉଥିଲେ । ମୁଁ ବଡ଼ ଅଧୀର ହୋଇପଡ଼ିଥିଲି ଓ ମୋ ଦେଶର ବିଭିନ୍ନ ସମସ୍ୟା ମତେ ବେଳକୁବେଳ ଅଧିକ ବ୍ୟାକୁଳ କରୁଥିଲା । ଜେଲରେ ରହିବା ହେତୁରୁ ଅବା ଅନ୍ୟାନ୍ୟ କାରଣରୁ ସର୍ବସାଧାରଣ ବ୍ୟାପାରରେ ସକ୍ରିୟ ଅଂଶ ଗ୍ରହଣ କରିବା ସୁଯୋଗରୁ କେତେବର୍ଷ ଧରି ମୁଁ ବିଚ୍ଛିନ୍ନ ହୋଇପଡ଼ିଥିଲି ଏବଂ

ବ୍ୟକ୍ତିଗତ ସମସ୍ତ ବନ୍ଧନ ଛିନ୍ନକରିବା ପାଇଁ ମୁଁ ଏକରକମ ଉତ୍-ଓଟାର ହେଉଥିଲି । ଲଣ୍ଡନ ଓ ପ୍ରେଗ୍ ବୁଲିଆସିବା ଫଳରେ ଓ ଭାରତର ସମ୍ବାଦରେ ମୁଁ ମୋର ଖୋଳପା ଭିତରୁ ବାହାରିପଡ଼ିଥିଲି । ସେ ଭିତରକୁ ଫେରିବାପାଇଁ ମୋର ଆଉ ମନ ବଳୁନଥିଲା । ଏ ବିଷୟରେ ମୁଁ କମଳା ସଙ୍ଗେ ଆଲୋଚନା କଲି ଓ ଡାକ୍ତରଙ୍କ ସଙ୍ଗେ ପରାମର୍ଶ କଲି । ମୁଁ ଭାରତକୁ ଫେରିଯିବା ପାଇଁ ସେମାନେ ରାଜିହେଲେ । କେ. ଏଲ୍. ଏମ୍. ଉଡ଼ାଜାହାଜରେ ଯିବା ପାଇଁ ଆଗରୁ ଟିକଟ କିଣି ମୋର ସ୍ଥାନ ସଂରକ୍ଷିତ କଲି । ମୁଁ ଫେବୃଆରୀ ୨୮ରେ ଲୋଜାନ ଛାଡ଼ିବା କଥା । ଏ ସମସ୍ତ ବ୍ୟବସ୍ଥା ହେବା ପରେ ଦେଖିଲି, ମୁଁ ତାକୁ ଛାଡ଼ିକରି ଚାଲିଯିବା ସେ ଜମା ଚାହୁଁ ନି; ଅଥଚ ଏ ବ୍ୟବସ୍ଥା ପରିବର୍ତ୍ତନ କରିବା ପାଇଁ ମଧ୍ୟ କହୁନି । ମୁଁ ତାକୁ କହିଲି ଯେ ଭାରତରେ ମୁଁ ବେଶିଦିନ ରହିବିନି, ଦୁଇ ତିନି ମାସ ଭିତରେ ତା' ପାଖକୁ ଫେରିଆସିବି । ସେ ଯଦି ଚାହିଁବ ଅଧୁରା ସହଳ ବି ଚାଲିଆସିବି । ଗୋଟାଏ ତାର କରିଦେଲେ ସପ୍ତାହକ ଭିତରେ ଉଡ଼ାଜାହାଜ ମତେ ଆଣି ତା' ପାଖରେ ପହଞ୍ଚାଇ ଦେବ ।

ମୋର ଯିବା ପାଇଁ ମାତ୍ର ଚାରି ପାଞ୍ଚ ଦିନ ଅଛି ଆଉ । ସେଠାରୁ ଅଦୂରରେ, ବେକ୍ସର ଗୋଟାଏ ସ୍କୁଲରେ ଇନ୍ଦିରା ସେତେବେଳେ ପଢ଼ୁଥିଲା ଓ ସେହି କେତୋଟି ଦିନ ଆମ ପାଖରେ କଟାଇବା ପାଇଁ ସେ ଆସୁଥିଲା । ଡାକ୍ତର ଆସି ମତେ କହିଲେ ଯେ ମୋର ଫେରିବା ଆଉ ସପ୍ତାହେ ଅବା ଦିଶ ଦିନ ଗଡ଼ାଇଦେବା ଭଲ । ସେ ଆଉ କିଛି କହିଲେନି । ମୁଁ ସଙ୍ଗେ ସଙ୍ଗେ ପରବର୍ତ୍ତୀ ଉଡ଼ାଜାହାଜରେ ଯିବି ବୋଲି କେ. ଏଲ୍. ଏମ୍. ଲୋକଙ୍କୁ ଜଣାଇଦେଲି ।

ଏଇ ଶେଷ କେତୋଟି ଦିନରେ କମଳାର ସ୍ୱାସ୍ଥ୍ୟରେ ଅପୂର୍ବ ପରିବର୍ତ୍ତନ ପରିଲକ୍ଷିତ ହେଲା । ତାର ଶାରୀରିକ ଅବସ୍ଥା, ଆମେ ଯେତେଦୂର ବୁଝିପାରୁଥିଲୁ, ପ୍ରାୟ ଯଥାତଥା ରହିଥିଲା; କିନ୍ତୁ ତାର ପରିବେଶ ପ୍ରତି ପୂର୍ବଭଳି ଦୃଷ୍ଟି ଆଉ ରହିନଥିଲା । ତାକୁ କିଏ ଡାକୁଚି ବୋଲି ସେ ମତେ କହେ କିମ୍ବା କିଏ, କିପରି ଗୋଟାଏ ଆକୃତି ଅବା, ଘର ଭିତରକୁ ଆସିଲା ବୋଲି ଦେଖିବା ପାଇଁ ଇଙ୍ଗିତ କରେ; କିନ୍ତୁ ମୁଁ କିଛି ଦେଖିପାରେନି । ଫେବୃଆରୀ ୨୮ ପ୍ରଭାତରେ ସେ ତାର ଶେଷନିଃଶ୍ୱାସ ତ୍ୟାଗକଲା । ପାଖରେ ଥିଲା ଇନ୍ଦିରା, ଆଉ ଥିଲେ ସେହି କେତେମାସରେ ଆମର ନିତ୍ୟସଙ୍ଗୀ ଓ ବିଶ୍ୱସ୍ତ ବନ୍ଧୁ ଡାକ୍ତର ଏମ୍. ଅଟଲ ।

ସୁଇଜରଲାଣ୍ଡ ଆଉ କେତେକ ବନ୍ଧୁ ଆଖପାଖ ସହରରୁ ଆସି ଜମାହେଲେ ଓ ସମସ୍ତେ ମିଶି ଆମେ ତାକୁ ଲୋଜାନ୍‌ର ଶ୍ମଶାନକୁ ନେଇଗଲୁ । ତାର ସେହି ସୁନ୍ଦର ତନୁ, ସେହି କମନୀୟ ମୁଖ, ଯେଉଁ ମୁଖ କେତେ ମଧୁର ଭାବରେ ଓ କେତେ ସହଜରେ ମନ୍ଦହାସ ପ୍ରକାଶ କରୁଥିଲା, ମାତ୍ର କେତୋଟି ମୁହୂର୍ତ୍ତରେ ଭସ୍ମରେ ପରିଣତହେଲା । ଦିନେ ଯିଏ କେତେ ମହାନ୍, କେତେ ଉଜ୍ଜ୍ୱଳ ପ୍ରାଣରେ କେତେ ପୂର୍ଣ୍ଣ ଥିଲା, ତାର ମରଣାବଶେଷ ରହିଗଲା କ୍ଷୁଦ୍ର ଏକ ପାତ୍ରରେ ।

# ୭. ମୁସୋଲିନି : ବାଡୁଡ଼ା

ଲୋଜାନ୍‌ରେ ଓ ୟୁରୋପରେ ମତେ ଯେଉଁ ଆବେଦନ ଧରିରଖିଥିଲା, ତାହା ତୁଟିଗଲା ଓ ମୋର ସେଠାରେ ରହିବାର ଆବଶ୍ୟକତା ବି ଶେଷ ହେଲା । ହେତୁକି କେବଳ ନୁହେଁ, ମୋ ଭିତରେ ଅନ୍ୟ କିଛି ଗୋଟାଏ ମଧ୍ୟ ସେଥି ସଙ୍ଗେ ତୁଟିଯାଇଥିଲା, ଯାହା ଧୀରେ ଧୀରେ କେବଳ ମୁଁ ଉପଲବ୍ଧି କରିପାରିଲି; କାରଣ ପ୍ରଥମ ବିଚ୍ଛେଦର ସେହି କେତୋଟି ତମସାବୃତ ଦିନରେ ମୋର ମନ ସ୍ୱାଭାବିକ ଭାବରେ କାର୍ଯ୍ୟ କରୁନଥିଲା । ଇଉରୋ ଆଉ ମୁଁ କେତୋଟି ଦିନ ନଭେଲାରେ ବିତାଇବା ପାଇଁ ମଁନ୍ଟେ ଗଲି ।

ସେଠାରେ ମୋର ଅବସ୍ଥାନକାଳରେ, ଲୋଜାନ୍‌ରେ ଅବସ୍ଥିତ ଇଟାଲୀୟ ରାଷ୍ଟ୍ରପ୍ରତିନିଧି ମତେ ବିଶେଷ ଭାବରେ ଦେଖାକରିବାକୁ ଆସି ମୋର ଏ ଦୁଃଖରେ ସାଇନର୍ ମୁସୋଲିନିଙ୍କ ପକ୍ଷରୁ ଗଭୀର ସମବେଦନା ଜଣାଇଥିଲେ । ମୁଁ ଟିକିଏ ବିସ୍ମିତ ହୋଇଥିଲି; କାରଣ ମୁସୋଲିନିଙ୍କୁ ମୁଁ କେବେ ଦେଖି ନଥିଲି କିମ୍ବା ତାଙ୍କ ସଙ୍ଗେ ମୋର ଅନ୍ୟ କୌଣସି ଯୋଗାଯୋଗ ନଥିଲା । ତାଙ୍କୁ ମୋର କୃତଜ୍ଞତା ଜ୍ଞାପନ କରିବାପାଇଁ ରାଷ୍ଟ୍ରପ୍ରତିନିଧିଙ୍କୁ କହିଲି ।

ଏହାର କେତେ ସପ୍ତାହ ପୂର୍ବେ ରୋମରୁ ଜଣେ ବନ୍ଧୁ ମତେ ଲେଖି ଜଣାଇଥିଲେ ଯେ ମୁସୋଲିନି ମୋ ସଙ୍ଗେ ଦେଖାକରିପାରିଲେ ଆନନ୍ଦିତ ହେବେ । ସେତେବେଳେ ରୋମ୍ ଯିବାର ପ୍ରଶ୍ନ ମୋର ନଥିଲା ଓ ସେ କଥା ମୁଁ ତାଙ୍କୁ ଜଣାଇଦେଇଥିଲି । ପରେ ମୁଁ ଯେବେ ଉଡ଼ାଜାହାଜ ଯୋଗେ ଭାରତକୁ ଫେରିଯିବା ଚିନ୍ତାରେ ଥିଲି, ସେତେବେଳେ ପୁଣି ମୋ ପାଖକୁ ସେହି ବାର୍ତ୍ତା ଆସିଲା ଓ ସେଥିରେ ଟିକିଏ ଆତୁରତା ଓ ନିର୍ବନ୍ଧର ସ୍ପର୍ଶ ଲାଗିଥିଲା । ଏହି ଦେଖାସାକ୍ଷାତ୍ ଏଡ଼ାଇବା ମୁଁ ଚାହୁଁଥିଲି; କିନ୍ତୁ ଶିଷ୍ଟାଚାର ହରାଇବା ଅଭିଳାଷ ମୋର ନଥିଲା । ସାଧାରଣ ପରିସ୍ଥିତିରେ ତାଙ୍କ ସଙ୍ଗେ ଦେଖାକରିବା ପାଇଁ ମୋର ଏ ଅନାଗ୍ରହ ଓ ବିରାଗ ହୁଏତ କଟିଯାଇଥାନ୍ତା; କାରଣ ଇଟାଲୀର ସେହି ଛିଡ଼ପତି କି ପ୍ରକାର ଲୋକ ଜାଣିବା ପାଇଁ ମୋର ବି କୌତୂହଳ ଜନ୍ମିଥିଲା; କିନ୍ତୁ ସେତେବେଳେ ଆବିସିନିଆ ଉପରେ ଇଟାଲୀର ଆକ୍ରମଣ ଚାଲିଥିଲା ଓ ତାଙ୍କ ସଙ୍ଗେ ମୋର ସାକ୍ଷାତକୁ ନେଇ ଅବଶ୍ୟମ୍ଭାବୀ ଭାବରେ ନାନାରୂପରେ ଅର୍ଥ କରାଯାଇଥାନ୍ତା ଓ ତାହା ବ୍ୟବହୃତ ହୁଅନ୍ତା ଫାସିଷ୍ଟ୍ ପ୍ରଚାରରେ । ମୋର ସେ ସବୁ ଅସ୍ୱୀକାର କରିବାରେ ବିଶେଷ କିଛି ଫଳ ବି ହୋଇନଥାନ୍ତା; କାରଣ ସେ ସମସ୍ତର ସେପରି ବହୁତ ଦୃଷ୍ଟାନ୍ତ ମୁଁ ଜାଣିଥିଲି । ଭାରତୀୟ ଛାତ୍ର ଓ ଅନ୍ୟ ପର୍ଯ୍ୟଟକମାନେ ଇଟାଲୀ ଯାଇଥିବାବେଳେ ସେମାନଙ୍କର ଇଚ୍ଛା ବିରୁଦ୍ଧରେ ଓ ବେଳେ-ବେଳେ ସେମାନଙ୍କର ଅଜ୍ଞାତରେ ମଧ୍ୟ ଫାସିଷ୍ଟ ପ୍ରଚାର ନିମନ୍ତେ ସେମାନଙ୍କୁ ବ୍ୟବହାର କରାଯାଇଥିଲା । ଆଉ ୧୯୩୧ରେ 'ଜାର୍ଣ୍ଣେଲ୍ ଡ଼ି ଇଟାଲୀୟା'ରେ ପ୍ରକାଶିତ 'ଗାନ୍ଧିଜୀଙ୍କ ସଙ୍ଗେ ସାକ୍ଷାତ୍' ଶୀର୍ଷକ ନିର୍ଘାତ ମିଥ୍ୟା ସମ୍ବାଦ ବିଷୟରେ ମୁଁ ଆଗରୁ ଜାଣିଥିଲି ।

ଅତଏବ, ମୁଁ ଦେଖା କରିପାରୁନି ବୋଲି ସେହି ବନ୍ଧୁଙ୍କୁ ଜଣାଇ ଦେଇଥିଲି ଓ ସେ

ଯେପରି ଭୁଲ ବୁଝିବାର ଅବକାଶ ନରହେ ସେଥିଲାଗି ପରେ ତାଙ୍କ ପାଖକୁ ଚିଠି ଲେଖିଥିଲି ଓ ଟେଲିଫୋନ୍ ବି କରିଥିଲି । ଏ ସବୁ କମଲା ମୃତ୍ୟୁ ପୂର୍ବର କଥା । ତାର ମୃତ୍ୟୁ ପରେ ମୁଁ ପୁଣି ଖବର ପଠାଇଥିଲି ଯେ, ଅନ୍ୟ ଯେକୌଣସି କାରଣ ଥାଉ ବା ନଥାଉ ସେ ପରିସ୍ଥିତିରେ କାହା ସଙ୍ଗେ ଦେଖାକରିବାପାଇଁ ମୋର ମନର ଅବସ୍ଥା ନଥିଲା ।

ମୋ ଦିଗରୁ ଏ ସବୁ ନିର୍ଦ୍ଦିଷ୍ଟ ଭାବରେ ଜଣାଇବାର ଆବଶ୍ୟକ ଥିଲା; କାରଣ କେ. ଏଲ୍. ଏମ୍. ଉଡ଼ାଜାହାଜରେ ମତେ ରୋମ୍ ଦେଇ ଯିବାକୁ ହେଉଥିଲା ଓ ଗୋଟାଏ ରାତି କମ୍ବା ଗୋଟାଏ ସନ୍ଧ୍ୟା ସେଠାରେ କଟାଇବା ପାଇଁ ହୁଏତ ପଡ଼ୁଥିଲା । ରୋମ୍ ଦେଇ ଯିବା ଓ ସେଠାରେ କିଛି ସମୟ ଅଟକିବା ଏଡ଼ାଇଯିବାର ଉପାୟ ମୋର ନଥିଲା ।

ମଁନ୍ତ୍ରେରୁ କିଛି ଦିନ ପରେ ମୁଁ ଜେନେଭା ଗଲି ଓ ସେଠାରୁ ମର୍ସାଇ ଯାଇ କେ. ଏଲ୍. ଏମ୍. ଉଡ଼ାଜାହାଜରେ ପ୍ରାଚ୍ୟ ଅଭିମୁଖେ ଯାତ୍ରାକଲି । ବେଳ ଢଳିଲାବେଳକୁ ଉଡ଼ାଜାହାଜ ରୋମରେ ଓହ୍ଲାଇଲା ଓ ଇଟାଲୀର ଜଣେ ଉଚ୍ଚ ସରକାରୀ କର୍ମଚାରୀ ସାଇନର୍ ମୁସୋଲିନଙ୍କ ପ୍ରଧାନମନ୍ତ୍ରୀଙ୍କର ଗୋଟିଏ ଚିଠି ମତେ ଆଣିଦେଲେ । ସେଥିରେ ଲେଖାଥିଲା ଯେ ଇଟାଲୀର ଛିଡ଼ପତି ସେହିଦିନ ସନ୍ଧ୍ୟା ଛ'ଟାରେ ମୋ ସଙ୍ଗେ ଦେଖାକରିବାକୁ ବିଶେଷ ଖୁସି ହେବେ । ମୁଁ ବିସ୍ମିତ ହେଲି ଓ ତା' ପୂର୍ବରୁ ମୁଁ ପଠାଇଥିବା ବାର୍ତ୍ତାଗୁଡ଼ିକ ସମ୍ପର୍କରେ ତାଙ୍କୁ ସ୍ମରଣ କରାଇଲି; କିନ୍ତୁ ସେ ଏକରକମ ଧରିବସିଲେ ଯେ ଦେଖାସାକ୍ଷାତ ପାଇଁ ସବୁ ବ୍ୟବସ୍ଥା ଯେହେତୁ ହୋଇସାରିଛି ତାହା ଆଉ ପରିବର୍ତ୍ତନ କରାଯାଇ ପାରିବନି । ଏହା ଅନ୍ୟଥା ହେଲେ ଚାକିରିରୁ ସେ ବରଖାସ୍ତ ହେବା ପ୍ରାୟ ଏକରକମ ନିଶ୍ଚିତ । ମତେ ସେ ପ୍ରତିଶ୍ରୁତି ଦେଲେ, ଏ ଦେଖାସାକ୍ଷାତ ବିଷୟ ଖବରକାଗଜକୁ ଜମା ଯିବନି ଓ ମୁସୋଲିନଙ୍କ ସଙ୍ଗେ ମାତ୍ର କେତୋଟି ମିନିଟ କେବଳ ମୁଁ ଯାହା ମିଳିତହେବା କଥା । ସେ ଆହୁରି ମଧ୍ୟ କହିଲେ ଯେ ଛିଡ଼ପତି ମୋର କରମର୍ଦ୍ଦନ କରି ମୋର ଦୁଃଖରେ ବ୍ୟକ୍ତିଗତ ଭାବରେ ସମବେଦନା କେବଳ ଜଣାଇବାକୁ ଚାହାଁନ୍ତି । ଆମ ଭିତରେ ଉଭୟ ପକ୍ଷରୁ ଯଥୋଚିତ ସୌଜନ୍ୟ ସହକାରେ ଘଣ୍ଟାଏ ପର୍ଯ୍ୟନ୍ତ ତର୍କ-ବିତର୍କ ହେଲା ଓ ଏଭଳି ଏକ ଅବାଞ୍ଛିତ ପରିସ୍ଥିତିରେ ମୁଁ ଯେତିକି କ୍ଳାନ୍ତ ହେଉଥିଲି, ଅପର ପକ୍ଷରୁ ମଧ୍ୟ ସେଭଳି କ୍ଳାନ୍ତ ପ୍ରକାଶ ପାଇଥିଲା । ପରିଶେଷରେ ଦେଖାସାକ୍ଷାତର ନିର୍ଦ୍ଦିଷ୍ଟ ସମୟ ଆସି ପହଞ୍ଚିଲା ଏବଂ ମୋର କହିବା ହିଁ କାଏମ ରହିଲା । ମୁସୋଲିନଙ୍କ ପ୍ରାସାଦକୁ ମୁଁ ଯାଇପାରୁନି ବୋଲି ଟେଲିଫୋନ୍ ଯୋଗେ ବାର୍ତ୍ତା ପଠାଇଦିଆଗଲା ।

ସେଇ ସନ୍ଧ୍ୟାରେ ସାଇନର ମୁସୋଲିନଙ୍କ ପାଖକୁ ପତ୍ର ଲେଖି ଜଣାଇଦେଲି ଯେ, ତାଙ୍କ ସଙ୍ଗେ ଦେଖାକରିବା ପାଇଁ ତାଙ୍କର ସଦୟ ନିମନ୍ତ୍ରଣର ସୁଯୋଗ ନେଇନପାରି ମୁଁ ଦୁଃଖିତ ଓ ତାଙ୍କର ପ୍ରକାଶିତ ସମବେଦନା ନିମନ୍ତେ ମୁଁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ମୁଁ ମୋର ଯାତ୍ରାପଥରେ ଚାଲିଲି । କାଏରୋରେ କେତେ ପୁରାତନ ବନ୍ଧୁ ମତେ ଦେଖିବାକୁ ଆସିଥିଲେ । ତା'ପରେ ପୂର୍ବ ଦିଗକୁ ଲକ୍ଷ୍ୟ ରଖି ପଶ୍ଚିମ ଏସିଆର ମରୁଭୂମି ଉପରଦେଇ ଜାହାଜ ଉଡ଼ି ଚାଲିଲା । କାଏରୋ ପର୍ଯ୍ୟନ୍ତ ନାନା ଘଟଣା ଓ

ଯାବାଜନକ ବିବିଧ ବ୍ୟବସ୍ଥାର ଆବଶ୍ୟକତା ନେଇ ମୋର ମନ ବ୍ୟାପୃତ ରହିଥିଲା । କିନ୍ତୁ କାଏରୋ ପରେ, ଘଣ୍ଟା ଘଣ୍ଟା ଧରି, ସେହି ଉଷର ମରୁ ଉପରେ ଜାହାଜ ଯେବେ ଉଡ଼ି ଚାଲିଲା, ଘୋର ଏକ ନିଃସଙ୍ଗତା ମତେ କବଳିତ କଲା ଓ ମୁଁ ନିଜକୁ ନିତାନ୍ତ ଶୂନ୍ୟ ଓ ଉଦ୍ଦେଶ୍ୟହୀନ ମନେକଲି । ଘରକୁ ମୁଁ ଏକାକୀ ଫେରିଯାଉଥିଲି; ବୁଝୁଥିଲି ସେ ଘର ମୋ ପାଇଁ ଆଉ ଘର ନୁହେଁ । ମୋର ପାର୍ଶ୍ୱରେ ଗୋଟିଏ ଗ୍ରେଟ ଝୁଡ଼ିରେ ରହିଥିଲା କ୍ଷୁଦ୍ର ପାତ୍ରଟିଏ । ଦିନେ କମଳା ବୋଲି ଯାହା ଥିଲା, ତାର ଅବଶେଷ ସ୍ୱରୂପ ସେଥିରେ ରହିଥିଲା ମୁଠାଏ ଭସ୍ମ ଓ ସେଥି ସଙ୍ଗେ ଭସ୍ମରେ ପରିଣତ ହୋଇଯାଇଥିଲା ଆମର ଯେତେସବୁ ଉଜ୍ଜ୍ୱଳ ସ୍ୱପ୍ନ । ସେ ଆଉ ନାହିଁ, କମଳା ଆଉ ନାହିଁ—ମନ ମୋର ଘୋଷି ହେଉଥାଏ ।

ମୋର ଆତ୍ମଚରିତ ବିଷୟ ମନେ ପଡ଼ୁଥିଲା । ସେ ବିଷୟରେ ଭଓ୍ୱାଲି ସ୍ୱାସ୍ଥ୍ୟନିବାସରେ ସେ ରହିଥିଲାବେଳେ, କମଳା ସଙ୍ଗେ ମୁଁ ଆଲୋଚନା କରିଥିଲି । ସେ ବହିଟି ହେତେବେଳେ ମୁଁ ଲେଖୁଥାଏ ଓ କେବେ ସେଥିରୁ ଗୋଟାଏ ଦୁଇଟା ଅଧ୍ୟାୟ ତାକୁ ପଢ଼ି ଶୁଣାଉ ଥାଏ । ସେ ବହିର କିୟଦଂଶ କେବଳ ସେ ଦେଖିଚି ଅବା ଶୁଣିଚି; ଅବଶିଷ୍ଟ ସେ ଆଉ ଦେଖିପାରିବନି କିମ୍ବା ସେ ଜୀବନଚରିତରେ ମିଳିତ ଭାବରେ ଆମେ ଆଉ ଗୋଟିଏ ଅଧ୍ୟାୟ ଲେଖିବାର ଅବକାଶ ନାହିଁ ।

ବାଗଦାଦ୍‌ରେ ପହଞ୍ଚି ଲଣ୍ଡନରେ ମୋର ପ୍ରକାଶକଙ୍କ ନିକଟକୁ, ଯେଉଁମାନେ ମୋର ଆତ୍ମଚରିତ ପ୍ରକାଶ କରୁଥିଲେ, ଗ୍ରନ୍ଥର ଉତ୍ସର୍ଗ ତାର ଯୋଗେ ପଠାଇଲି; "କମଳାକୁ, ଯିଏ ଆଉ ନାହିଁ ।"

କରାଚୀ ଆସିଲା—କେତେ ଜଣା-ଜଣା ମୁହଁର ଲୋକଗହଳି; ତା'ପରେ ଆଲ୍ଲାହାବାଦ । ଆମେ ସେହି ପାତ୍ରଟିକୁ ପବିତ୍ର ଭାବରେ ବହନକରି ସେଥିରୁ ଭସ୍ମତକ ଖରସ୍ରୋତା ଗଙ୍ଗାର ଉଦାରଗର୍ଭରେ ବିସର୍ଜନ ଦେଲୁ । ଆମର କେତେ ଅଗଣିତ ପୂର୍ବପୁରୁଷଙ୍କୁ ଗଙ୍ଗା ଏଭଳି ଭାବରେ ସମୁଦ୍ରଗର୍ଭକୁ ବହନ କରି ନେଇଚି ଓ ଆମ ପରେ ବି କେତେ ପୁରୁଷକୁ ଶେଷ ଯାହାରେ ସେ ଏପରି ଆଲିଙ୍ଗନରେ ଧରିନେବ, କିଏ ଜାଣେ !

□□□

# ତୃତୀୟ ପରିଚ୍ଛେଦ

# ଅନ୍ୱେଷଣ

## ୧. ପରିଦୃଶ୍ୟମାନ ଭାରତର ଅତୀତ

ସେହି କେତେବର୍ଷର ଚିନ୍ତା ଓ କର୍ମାନୁସରଣରେ ମୋର ମନ ଭାରତକୁନେଇ ପୂର୍ଣ୍ଣ ଥିଲା । ମୁଁ ଭାରତକୁ ବୁଝିବାକୁ ଚେଷ୍ଟା କରୁଥିଲି ଓ ତା' ପ୍ରତି ମୋର ମନରେ ଯେଉଁ ପ୍ରତିକ୍ରିୟା ହେଉଥିଲା ତାହା ଅନୁଶୀଳନ କରୁଥିଲି ।

ମୋର ବାଲ୍ୟକାଳକୁ ଫେରିଯାଇ, ସେତେବେଳେ ଏ ବିଷୟରେ ମୁଁ କିପରି ଅନୁଭବ କରୁଥିଲି, ଆଉ ଏହି ଧାରଣା ମୋର ବର୍ଦ୍ଧନଶୀଳ ମନରେ କିପରି ଅସ୍ପଷ୍ଟ ରୂପ ଘେନିଥିଲା ଓ ସଦ୍ୟ ଅଭିଜ୍ଞତା ତାକୁ ପୁଣି କିପରି ନୂତନ ରୂପ ଦେଉଥିଲା, ସ୍ମରଣ କରିବାକୁ ଚେଷ୍ଟାକଲି । ବେଳେବେଳେ ତାହା ପୃଷ୍ଠଭୂମିକୁ ଅପସରି ଯାଉଥିଲା; କିନ୍ତୁ ପୁରାତନ କାହାଣୀ, କିମ୍ବଦନ୍ତୀ ଓ ଆଧୁନିକ ତଥ୍ୟରୁ ଗୃହୀତ ଗୋଟାଏ ବିଚିତ୍ର ସମ୍ମିଶ୍ରଣ ଭାବରେ ଧୀରେ ଧୀରେ ପରିବର୍ଦ୍ଧିତ ହୋଇ ସବୁ ସମୟରେ ପ୍ରଚ୍ଛନ୍ନ ରହିଥିଲା । ମୋ ଭିତରେ ତାହା ଗର୍ବ ଓ କେବେ କେବେ ଲଜ୍ଜାର କାରଣ ବି ଥିଲା । ମୋର ପରିପାର୍ଶ୍ୱରେ ନାନା ଅନ୍ଧବିଶ୍ୱାସ, ନାନା ଅନୁପଯୋଗୀ ବିଚାର ଓ ସର୍ବୋପରି ଆମର ଦାସତ୍ୱ ଓ ଦାରିଦ୍ର୍ୟ ଲକ୍ଷ୍ୟ କରି ମୁଁ ଲଜ୍ଜିତ ହେଉଥିଲି ।

ମୋର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ମୁଁ ଯେବେ ସେ ସବୁ କ୍ରିୟାକଳାପରେ, ଯାହା ଭାରତ ସ୍ୱାଧୀନତା ଆଣିଦେବା ଦିଗରେ ମନରେ ବିଶ୍ୱାସ ଭରୁଥିଲା, ଅଧିକରୁ ଅଧିକତର ଭାବରେ ଲିପ୍ତ ହେଲି, ଭାରତର ଚିନ୍ତା ମତେ ଅଭିଭୂତ କରି ରଖିଥାଏ । ଏହା କେଉଁ ଭାରତ ଯାହା ମତେ ଅବିରାମ ଭାବରେ ଆହ୍ୱାନକରୁଛି ଓ ମତେ ସମ୍ପୂର୍ଣ୍ଣ ଭାବରେ ଆୟତ୍ତ କରିଛି ? ସେଇ କର୍ମ ନିମନ୍ତେ ପ୍ରେରଣା ଦେଉଛି, ଯେଉଁ କର୍ମଦ୍ୱାରା ଆମେ ଆମ ହୃଦୟର ଗଭୀରରେ ଅନୁଭୂତ ଅଥଚ ଅନିର୍ଦ୍ଦିଷ୍ଟ କେଉଁ ଅଭିଳାଷ ପୂର୍ଣ୍ଣ କରିପାରିବୁ । ଏଇ ପ୍ରେରଣା ପ୍ରଥମତଃ ମୋ ଭିତରେ ଦେଖାଦେଲା । ମୋର ମନେହୁଏ ବ୍ୟକ୍ତିଗତ ଓ ଜାତୀୟ ଅଭିମାନରୁ ଏବଂ ମଣିଷ ଭାବରେ ଅନ୍ୟର ଆଧିପତ୍ୟ ପ୍ରତିରୋଧ କରି ମୁକ୍ତଭାବରେ ନିଜର ରୁଚିମତ ଜୀବନ କରିବାର ଅଭିଳାଷ ପ୍ରାଣରେ ପ୍ରବଳ ହେଲା । ଭାରତ ଭଳି ଗୋଟାଏ ବିଶାଳ ଦେଶ, ଯାହାର ଅତୀତ ଅତି ସମୃଦ୍ଧ ଓ ଅବିସ୍ମରଣୀୟ; ସୁଦୂର କେଉଁ ଏକ କ୍ଷୁଦ୍ର ଦ୍ୱୀପ ଉପରେ ନିର୍ଭରକରିବା ଓ ତାର ଇଚ୍ଛାର ଦାସ ହେବା ମତେ କଦର୍ଯ୍ୟ ବୋଧ

ହେଉଥିଲା । ଆନ୍ତର କଦର୍ଯ୍ୟ ବୋଧହେଉଥିଲା ଏହି ବଳପୂର୍ବକ ମିଳନ, ଯାହା ଭାରତର ଅପରମେୟ ଦାରିଦ୍ର୍ୟ ଓ ଅଧୋଗତିର କାରଣ ହେଲା । କର୍ମରେ ଝାସଦେବା ନିମନ୍ତେ ମୋ ପକ୍ଷରେ ଓ ଅନ୍ୟମାନଙ୍କ ପକ୍ଷରେ ଏହି କାରଣ ଯଥେଷ୍ଟ ଥିଲା ।

କିନ୍ତୁ ମୋର ଅନ୍ତର ଭିତରେ ଯେଉଁ ଜିଜ୍ଞାସା ଦେଖାଦେଇଥିଲା, ତା'ର ସନ୍ତୋଷ-ବିଧାନ ପାଇଁ ଏହା ଯଥେଷ୍ଟ ନଥିଲା । ତାର ଭୌଗୋଳିକ ଓ ପ୍ରାକୃତିକ ସ୍ୱଭାବ ବ୍ୟତୀତ ଏ ଭାରତ ଆଉ କଅଣ ? ଅତୀତରେ ଏହା କାହାର ପ୍ରତିନିଧିତ୍ୱ କରିଛି ? ସେତେବେଳେ କିଏ ତାକୁ ଶକ୍ତି ଯୋଗାଉଥିଲା ? ସେହି ପୁରାତନ ଶକ୍ତି ସେ ହରାଇଲା କିପରି ? ସେ କି ସମ୍ପୂର୍ଣ୍ଣ ଭାବରେ ତାହା ହରାଇବସିଛି ? କୋଟି କୋଟି ଲୋକଙ୍କ ବାସଭୂମି ହେବା ଅତିରିକ୍ତ ତାର ଅନ୍ୟ କିଛି ମହାନତା ବର୍ତ୍ତମାନ କି ଆଉ ଅଛି ? ଆଧୁନିକ ବିଶ୍ୱରେ ତାର ସ୍ଥାନ କେଉଁଠି ?

ବିଚ୍ଛିନ୍ନତା ଅଶୋଭନୀୟ ଓ ଅସମ୍ଭବ ବୋଲି ଯେତେ ଅଧିକରୁ ଅଧିକତର ଭାବରେ ମୁଁ ହୃଦୟଙ୍ଗମ କରୁଥିଲି; ଏହି ପ୍ରଶ୍ନର ବ୍ୟାପକ ଆନ୍ତର୍ଜାତିକ ସ୍ୱଭାବ ମୋତେ ଚିନ୍ତିତ କରୁଥିଲା । ଭାରତ ଓ ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କୁ ନେଇ ମୋର ମନରେ ଭବିଷ୍ୟତର ଯେଉଁ ଚିତ୍ର ଗଢ଼ି ହେଉଥିଲା, ତାହା ଥିଲା ଅସ୍ପଷ୍ଟ, ଅର୍ଥନୀତି ଓ ରାଜନୀତି ଦିଗରୁ ଘନିଷ୍ଠ ସହଯୋଗର ଗୋଟାଏ ଯାବଳୀଳ ଚିତ୍ର । କିନ୍ତୁ ଭବିଷ୍ୟତ ଆସିବା ପୂର୍ବରୁ ମୋ ପାଖରେ ଥିଲା ବର୍ତ୍ତମାନ ଓ ତା'ର ପଛରେ ପଡ଼ିରହିଥିଲା ଏବଂ ସୁଦୀର୍ଘ ବିଜଡ଼ିତ ଅତୀତ, ଯାହାର ଗର୍ଭରୁ ସେହି ବର୍ତ୍ତମାନ ଜନ୍ମ ନେଇଥିଲା । ଅତଏବ, ଭାରତକୁ ବୁଝିବା ପାଇଁ ମୁଁ ତା'ର ଅତୀତ ଭିତରେ ପ୍ରବେଶ କଲି ।

ଭାରିତ ଥିଲା ମୋର ରକ୍ତରେ । ଭାରତ ଭିତରେ ସେପରି ବହୁତ କିଛି ଥିଲା, ଯାହା ମତେ ସ୍ୱତଃ ଉଦ୍‌ବୁଦ୍ଧ କରୁଥିଲା । ତଥାପି ତାର ବର୍ତ୍ତମାନ ଓ ଅତୀତର କେତେକ ଚିହ୍ନ ପ୍ରତି ବିତୃଷ୍ଣଭାବ ପୋଷଣକରି, ଜଣେ ପରଦେଶୀ ସମାଲୋଚକ ଭାବରେ ମୁଁ ତା'ର ଭିତରେ ପ୍ରବେଶ କରୁଥିଲି । ପାଶ୍ଚାତ୍ୟଦେଶୀୟ ଜନୈକ ବନ୍ଧୁ ଭାବରେ, କେତେକ ମାତ୍ରାରେ ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀ ଧରି, ମୁଁ ତାର ଦିଗରେ ଅଗ୍ରସର ହେଉଥିଲି । ତାର ଦୃଷ୍ଟିକୋଣ ଓ ଶୈଳୀ ପରିବର୍ତ୍ତନ କରି ତାକୁ ଆଧୁନିକତାରେ ସଜ୍ଜିତ କରିବା ପାଇଁ ମୁଁ ଆତୁର ଓ ଉତ୍କଣ୍ଠିତ ଥିଲି । ତଥାପି ମୋର ମନରେ ନାନାପ୍ରକାର ସନ୍ଦେହ ଜାତ ହେଉଥିଲା । ଯାହାର ଅତୀତ ଉତ୍ତରାଧିକାରର ବହୁତ କିଛି ପରିହାର କରିବା ପାଇଁ ମୁଁ ଭାବୁଛି, ସେହି ଭାରତକୁ ମୁଁ କଅଣ ସତରେ ଚିହ୍ନିପାରିଛି ? ପରିହାର କରିବା ପାଇଁ ତା' ଭିତରେ ବହୁତ କିଛି ଥିଲା ଓ ସେ ସବୁ ପରିହାର କରିବାକୁ ହିଁ ପଡ଼ିବ । ତଥାପି ତାର ଦେହରେ ସେପରି କିଛି ସ୍ଥାୟୀ ପ୍ରାଣସତ୍ତା ଯଦି ନଥାନ୍ତା, ହଜାର ହଜାର ବର୍ଷ ଧରି ସେ ଏଭଳି ଏକ ସମୁନ୍ନତ ସାଂସ୍କୃତିକ ଜୀବନ ଅବିଚ୍ଛିନ୍ନ ଭାବରେ ଅତିବାହିତ କରି ଆସି ପାରି ନ ଥାନ୍ତା । ତାହା ତେବେ କଅଣ ?

ଉତ୍ତର-ପଶ୍ଚିମ ଭାରତର ସିନ୍ଧୁନଦୀ ଉପତ୍ୟକାରେ ମହେଞ୍ଜୋଦାରୋର ଏକ ସ୍ତୂପ ଉପରେ ମୁଁ ଦଣ୍ଡାୟମାନ ହେଲି । ମୋର ଚତୁପାଶରେ ପ୍ରାଚୀନ ଏହି ନଗରର ସାହି ଘର

ସବୁ ଘେରି ରହିଥିଲା । ଏତେ ଦୂର ଅତୀତରେ ହେଲେ ମଧ୍ୟ ଏହି ସଭ୍ୟତା ବେଶ୍ ଉନ୍ନତ-ଧରଣର ଥିଲା । ଅଧ୍ୟାପକ ଗ୍ରଇଲଡ଼ ଲେଖିଚନ୍ତି : "ବର୍ଷ ବର୍ଷର ଅକୁଣ୍ଠ ତଥା ଅଦମ୍ୟ ଉଦ୍ୟମ ଫଳରେ ପ୍ରସ୍ତୁତ, ଏକ ନିର୍ଦ୍ଦିଷ୍ଟ ପରିବେଷ୍ଟନୀ ସଙ୍ଗେ ମଣିଷ ଜୀବନକୁ କିପରି ସଂଯୋଜିତ କରାଯାଇପାରେ, ସିନ୍ଧୁନଦୀ ସଭ୍ୟତା ତାର ଏକ ନିଖୁଣ ନିଦର୍ଶନ । ଦୀର୍ଘକାଳ ଧରି ଏହା ତିଷ୍ଠିପାରିଲା । ବିଶେଷ ରୂପେ ଏହା ଭାରତୀୟ ଏବଂ ଏହା ହିଁ ଆଧୁନିକ ଭାରତୀୟ ସଂସ୍କୃତିର ମୂଳଭିତ୍ତି ।" କୌଣସି ସଭ୍ୟତା ଅବା ସଂସ୍କୃତି ପାଞ୍ଚ ଛଅ ହଜାର ବର୍ଷ ଧରି ଏପରି ଅଖଣ୍ଡ ରହିପାରିବା କଥା ଭାବିଲେ ବାସ୍ତବିକ ଆଚମ୍ବିତ ଲାଗେ । ଆହୁରି ମଧ୍ୟ ଏହା ସ୍ଥାଣୁ ହୋଇଯାଇ ନ ଥିଲା; କାରଣ ଏହି କାଳ ମଧ୍ୟରେ ଭାରତରେ ବହୁତ କିଛି ପରିବର୍ତ୍ତନ ଘଟିଚି ଓ ଭାରତ ସବୁ ସମୟରେ ପ୍ରଗତି କରିଚି । ପାରସିକ, ମିଶରୀୟ, ଯବନ, ଚୀନା, ଆରବୀୟ, ମଧ୍ୟ-ଏସିଆୀୟ ଓ ଭୂମଧ୍ୟସାଗର ଉପକୂଳବର୍ତ୍ତୀ ନାନା ଜାତିଙ୍କ ସଙ୍ଗେ ଭାରତ ଘନିଷ୍ଠ ସମ୍ପର୍କରେ ଆସୁଥିଲା । ଭାରତ ସେମାନଙ୍କୁ ପ୍ରଭାବିତ କରିଚି ଓ ସେମାନଙ୍କଦ୍ୱାରା ନିଜେ ମଧ୍ୟ ପ୍ରଭାବିତ ହୋଇଚି; କିନ୍ତୁ ତାର ସାଂସ୍କୃତିକ ଭିତ୍ତି କେବେ ହେଲେ ଦୋହଲି-ଯାଇନି । କେଉଁ ଶକ୍ତିବଳରେ ସେ ଏପରି ଅପରାଜେୟ ରହିପାରିଲା ? ସେ ଶକ୍ତି ଆସିଲା କେଉଁଠାରୁ ?

ଭାରତର ଇତିହାସ ଓ ତାର ଅପ୍ରମିତ ପ୍ରାଚୀନ ସାହିତ୍ୟର କିୟଦଂଶ ମୁଁ ମନୋନିବେଶ ସହକାରେ ପାଠକଲି । ଏ ସବୁ ଗ୍ରନ୍ଥରେ ଯେଉଁ ବଳିଷ୍ଠ ଚିନ୍ତା, ପ୍ରାଞ୍ଜଳ ଅଭିବ୍ୟକ୍ତି ଓ କଳ୍ପନାର ଐଶ୍ୱର୍ଯ୍ୟ ରହିଚି, ତାହା ମୋର ମନରେ ଗଭୀର ରେଖାପାତ କରୁଥିଲା । ସୁଦୂର ଅତୀତରେ ଚୀନ, ପଶ୍ଚିମ ତଥା ମଧ୍ୟ-ଏସିଆର ଯେଉଁ ମହାନ୍ ପରିବ୍ରାଜକମାନେ ବିଭିନ୍ନ ସ୍ଥାନ ପର୍ଯ୍ୟଟନ କରି ସେମାନଙ୍କର ଯାତ୍ରା-ବୃତ୍ତାନ୍ତମାନ ଲେଖି ରଖିଯାଇଚନ୍ତି, ସେମାନଙ୍କ ଗହଣରେ ମୁଁ ଭାରତର ନାନାସ୍ଥାନ ବୁଲି ଦେଖୁଥିଲି । ପ୍ରାଚ୍ୟ ଏସିଆ, ଆଙ୍କୋର ଓ ବୋରୋବୁଦୁର ଆଦି ସ୍ଥାନମାନଙ୍କରେ ଭାରତ ଯେଉଁସବୁ କୀର୍ତ୍ତି ସ୍ଥାପନ କରିଚି, ସେ ସବୁ ବିଷୟରେ ମଧ୍ୟ ମୁଁ ଭାବୁଥିଲି । ଭାରତର ପୁରାଣ ଓ କିଂବଦନ୍ତୀ ସଙ୍ଗେ ଯାହା ଘନିଷ୍ଠ ଭାବରେ ଜଡ଼ିତ ଏବଂ ଯାହା ଆମର ଚିନ୍ତା ଓ ସାହିତ୍ୟକୁ ନାନାଭାବରେ ପ୍ରଭାବିତ କରିଚି, ସେହି ହିମାଳୟ ପର୍ବତମାଳାରେ ମୁଁ ବିଚରଣ କରୁଥିଲି । କାନନ-ପ୍ରକୃତି ପ୍ରତି ମୋର ପ୍ରୀତି ଓ କାଶ୍ମୀର ସଙ୍ଗେ ମୋର ଆତ୍ମୀୟତା ବିଶେଷ ଭାବରେ ମତେ ହିମାଳୟ ପ୍ରତି ଆକୃଷ୍ଟ କରିଥିଲା । ସେଠାରେ କେବଳ ବର୍ତ୍ତମାନ କାଳର ଜୀବନ, ଶକ୍ତି ଓ ସୌନ୍ଦର୍ଯ୍ୟ ମୁଁ ଦେଖୁ ନଥିଲି; ସେଥି ସଙ୍ଗେ ଦେଖୁଥିଲି କେତେ ଅତୀତ ଯୁଗର ପ୍ରାଣ ଓ ପ୍ରେମପୂର୍ଣ୍ଣ ସ୍ମୃତି-ବିଜଡ଼ିତ ଲାଳିତ୍ୟ । ଏହି ସୁବିଶାଳ ପର୍ବତମାଳାରୁ ବାହାରି ଯେଉଁ ନଦୀଗୁଡ଼ିକ ଭାରତର ସମତଳ ପ୍ରଦେଶକୁ ବହିଯାଉଚନ୍ତି, ସେଗୁଡ଼ିକ ମଧ୍ୟ ମତେ ଆକୃଷ୍ଟ କରିଥିଲି ଏବଂ ମୋର ମନରେ ଆମ ଇତିହାସର ବହୁ ପର୍ଯ୍ୟାୟ ଉନ୍ମୋଚିତ ହେଉଥିଲା । ସିନ୍ଧୁ ଶବ୍ଦରୁ ଆମ ଦେଶର ହିନ୍ଦୁସ୍ଥାନ ନାମର ଉତ୍ପତ୍ତି । ସିନ୍ଧୁନଦୀ ପାର ହୋଇ କେତେ ଜାତି-ଉପଜାତି, କେତେ ସୌଦାଗର, କେତେ ସୈନ୍ୟବାହିନୀ ହଜାର ହଜାର ବର୍ଷ ଧରି ଭାରତରେ ପ୍ରବେଶ

ନ କରିଛନ୍ତି ! ଇତିହାସର ମୁଖ୍ୟ ପ୍ରବାହରୁ ବିଚ୍ଛିନ୍ନ, ପୁରାଣ ପରିପାଳିତ ବ୍ରହ୍ମପୁତ୍ର ଉତ୍ତର-ପୂର୍ବ ପର୍ବତମାଳାର ବିରି ବିଦୀର୍ଣ୍ଣ କରି ବଳପୂର୍ବକ ଭାରତରେ ପ୍ରବେଶକରିଚି ଏବଂ ନିବିଡ଼ ଅରଣ୍ୟ ତଥା ଗୁଳ୍ମାକୀର୍ଣ୍ଣ ପ୍ରାନ୍ତର ଭିତର ଦେଇ ଲୀଳାୟିତ, ମନ୍ଥର ଗତିରେ ଭାରତରେ ବହିଯାଉଚି । ଯାହାକୁ କେନ୍ଦ୍ରକରି କେତେ ନୃତ୍ୟ, କେତେ ଆନନ୍ଦ, କେତେ କ୍ରୀଡ଼ା-କୌତୁକର କିମ୍ବଦନ୍ତୀ ଗଢ଼ିଉଠିଚି । ସେହି ପ୍ରେମର ଯମୁନା ଆଉ ସର୍ବୋପରି ଯାହା ଭାରତର ହୃଦୟକୁ ପୂର୍ଣ୍ଣକରି ରଖିଚି ଏବଂ ଇତିହାସର ଅରୁଣ ପ୍ରଭାତରୁ ଯାହା କୋଟି କୋଟି ନରନାରୀଙ୍କୁ ଆକୃଷ୍ଟ କରିପାରିଚି, ସେହି ମହାସ୍ରୋତସ୍ୱିନୀ ଗଙ୍ଗା ହିମାଳୟ ଦେହରୁ ବହିଆସିଚନ୍ତି । ତାର ଜନ୍ମ-କନ୍ଦରରୁ ସିନ୍ଧୁ ସଙ୍ଗମ ପର୍ଯ୍ୟନ୍ତ, କେଉଁ ପୁରାକାଳରୁ ଆଜି-ପର୍ଯ୍ୟନ୍ତ, ଗଙ୍ଗାର ଚରିତ ହେଉଚି ଭାରତର ସଭ୍ୟତା ଓ ସଂସ୍କୃତିର ଚରିତ; କେତେ ସାମ୍ରାଜ୍ୟର ଉତ୍‌ଥାନ ଓ ପତନର ଚରିତ; କେତେ ବିଶାଳ ତଥା ବିଭବଶାଳୀ ନଗରୀର ଚରିତ, ମଣିଷର ଦୁଃସାହସିକତା ଓ ମନର ସନ୍ଧାନ ଯାହା ଯୁଗେ ଯୁଗେ ଭାରତର ଭାବୁକ-ମାନଙ୍କୁ ଜୀବନର ପୂର୍ଣ୍ଣତା ଆହରଣ, କୃଚ୍ଛ୍ର ସାଧନ କିମ୍ବା ସଂସାରତ୍ୟାଗ ଚିନ୍ତାରେ ବ୍ୟାପୃତ କରିଚି, ଏହା ତାର ଚରିତ; କେତେ ଆରୋହଣ-ଅବରୋହଣ, କେତେ କ୍ଷୟ-ବୃଦ୍ଧି ଆଉ ଜୀବନ ଓ ମରଣର ଚରିତ ।

ମୁଁ ନାନା ସ୍ଥାନ ବୁଲି ଦେଖିଲି; ଅଜନ୍ତା, ଏଲୋରା ଓ ଏଲିଫେଣ୍ଟା ଗୁହାର ଭିତ୍ତିଚିତ୍ର, କେତେ ପ୍ରାଚୀନ ଭାସ୍କର୍ଯ୍ୟ, ଅତୀତର କେତେ ସ୍ମୃତିସୌଧ ଓ ଭଗ୍ନସ୍ତୂପ । ଆହୁରି ଦେଖିଲି ଆଗ୍ରା ଓ ଦିଲ୍ଲୀରେ ପରବର୍ତ୍ତୀ ଏକ ଯୁଗର କେତେ କମନୀୟ ଅଟ୍ଟାଳିକା, ଯାହାର ପ୍ରତ୍ୟେକ ଶିଳାଖଣ୍ଡ ଭାରତର ଅତୀତର କାହାଣୀ ବଖାଣ କରେ ।

ମୋର ଜନ୍ମସ୍ଥାନ ଆଲହାବାଦ କିମ୍ବା ହରିଦ୍ୱାରରେ ମୁଁ ବଡ଼ ବଡ଼ ସ୍ନାନ-ଉତ୍ସବ ଓ କୁମ୍ଭମେଳା ଦେଖିବାକୁ ଯାଇଥାଏ । ଭାରତର ବିଭିନ୍ନ ପ୍ରାନ୍ତରୁ ହଜାର ହଜାର ନରନାରୀ ସେମାନଙ୍କର ହଜାର ହଜାର ବର୍ଷର ପୂର୍ବପୁରୁଷଙ୍କ ପରି ଗଙ୍ଗାରେ ସ୍ନାନ କରିବାକୁ ଆସନ୍ତି । ତେରଶହ ବର୍ଷତଳେ ଚୀନ ଓ ଅନ୍ୟାନ୍ୟ ଦେଶର ତୀର୍ଥଯାତ୍ରୀମାନେ ଏ ସବୁ ଉତ୍ସବର ବର୍ଣ୍ଣନା ଲେଖିଯାଇଥିବାର କଥା ମୋର ମନେପଡ଼େ । କେଉଁ ଅଜ୍ଞାତ ଅତୀତରେ କେବେ ଏହି ମେଳାଗୁଡ଼ିକ ଆରମ୍ଭ ହୋଇଚି କିଏ ଜାଣେ ! ତାହା କି ପ୍ରକାର ବିପୁଳ ବିଶ୍ୱାସ, ମୁଁ ବିସ୍ମିତ ହୁଏ, ଯାହା କେତେ ଅଗଣିତ ପୁରୁଷ ଧରି ଲୋକଙ୍କୁ ଏହି ପ୍ରସିଦ୍ଧ ନଦୀତୀରକୁ ଟାଣି-ଆଣିଚି । ନାନା ଗ୍ରନ୍ଥ ପଢ଼ି ଏବଂ ଭାରତରେ ବ୍ୟାପକ ଭାବରେ ପର୍ଯ୍ୟଟନ କରି ଭାରତର ଅତୀତ ଭିତରେ ପ୍ରବେଶ କରିବା ପାଇଁ ମୋର ଦୃଷ୍ଟି ଲଭିହେଲା । ବୁଦ୍ଧି ବଳରେ ଯେତିକି ବୁଝିପାରିବାର ସାମର୍ଥ୍ୟ ମୋର ଥିଲା ସେଥି ସଙ୍ଗେ ଭାବପ୍ରବଣତା ମିଳିତ ହେଲା, ଏବଂ ମୋର ମାନସପଟରେ ଭାରତ ସମ୍ପର୍କରେ ଏକପ୍ରକାର ବାସ୍ତବଜ୍ଞାନ ଉଦିତ ହେଲା । ଭାରତ—ମୋର କେତେ ପୂର୍ବପୁରୁଷଙ୍କର ଏ ଭୂମି, ମୋର ଆଖି ଆଗରେ କେତେ ହସକାନ୍ଦ, କେତେ ହର୍ଷ-ବିଷାଦର ଲୋକଙ୍କୁ ନେଇ ଜୀବନ୍ତ ହୋଇଉଠିଲା । ଏମାନଙ୍କ ଭିତରେ ସେମାନେ ମଧ୍ୟ ଥିଲେ, ଯେଉଁମାନେ ଜୀବନକୁ ସମସ୍ତ ଦିଗରୁ ଉପଲବ୍ଧି

କରିପାରିଥିଲେ ଏବଂ ସ୍ୱୀୟ ଜ୍ଞାନବଳରେ ଏପରି ଏକ ବ୍ୟବସ୍ଥା ଗଢ଼ି ଦେଇଗଲେ ଯାହା ଭାରତକୁ ଏକ ସାଂସ୍କୃତିକ ସ୍ଥାୟିତ୍ୱ ଅର୍ପଣ କଲା । ହଜାର ହଜାର ବର୍ଷ ଧରି ତାହା ଅଖଣ୍ଡ ରହିଛି । ଭାରତର ଅତୀତ ସମ୍ବନ୍ଧେ ଶତ ଶତ ଉଜ୍ଜ୍ୱଳ ଚିତ୍ର ମୋର ମନରେ ପୂର୍ଣ୍ଣ-ହୋଇ ରହିଥିଲା ଓ ସେଥି ସଙ୍ଗେ ସମ୍ପର୍କିତ କୌଣସି ସ୍ଥାନ ପରିଦର୍ଶନ କଲାବେଳେ ତାହା ମୋର ଆଖି ଆଗରେ ଆହୁରି ଜୀବନ୍ତ ହୋଇଉଠୁଥିଲା । ବାରାଣସି ନିକଟସ୍ଥ ସାରନାଥରେ ପହୁଞ୍ଚିଲେ ମୋର ମନେହୁଏ, ମୁଁ ଯେପରି ସ୍ୱୟଂ ବୁଦ୍ଧଦେବଙ୍କୁ ଦେଖିପାରୁଛି । ପ୍ରଥମ-ଭକ୍ତମାନଙ୍କୁ ସେ ତାଙ୍କର ଉପଦେଶାବଳୀ ଶୁଣାଉଛନ୍ତି । ଆହୁରି ମଧ୍ୟ ମତେ ଲାଗେ, ଦୁଇହଜାର ପାଞ୍ଚଶହ ବର୍ଷର ଅତୀତ ଅତିକ୍ରମ କରି, ଦୂର ପ୍ରତିଧ୍ୱନି ଭଳି, ବୌଦ୍ଧ-ଗ୍ରନ୍ଥମାନଙ୍କରେ ଲିଖିତ ତାଙ୍କର କେତେକ ବାଣୀ ମୋର କାନରେ ଆସି ଯେପରି ଧ୍ୱନିତ ହେଉଛି । ଶିଳାଲିପି ସମ୍ବଳିତ ଅଶୋକସ୍ତମ୍ଭଗୁଡ଼ିକ ଅପୂର୍ବ ଭାଷାରେ ମତେ ବହୁ କାହାଣୀ ଶୁଣାନ୍ତି, ଆଉ କହନ୍ତି ଜଣକ ବିଷୟରେ ଯିଏ ସମ୍ରାଟ ଥାଇ ମଧ୍ୟ ସାମ୍ରାଜ୍ୟ ଓ ରାଜମୁକୁଟର ବହୁ ଊର୍ଦ୍ଧ୍ୱକୁ ଉଠିଯାଇଥିଲେ । ଫତେପୁର-ସିକ୍ରିରେ ବିଭିନ୍ନ ଧର୍ମର ପଣ୍ଡିତ-ପରିବେଷ୍ଟିତ ଆକବର ଶାସ୍ତ୍ର ଆଲୋଚନାରେ ରତ ହୋଇଛନ୍ତି । ନୂତନ କିଛି ଶିକ୍ଷାକରିବା ପାଇଁ, ମଣିଷର ଚିରନ୍ତନ ପ୍ରଶ୍ନର ଉତ୍ତର ଜାଣିବାପାଇଁ ସେ ବଡ଼ ଆତୁର ହୋଇଉଠିଛନ୍ତି । ଏତେ ବଡ଼ ମୋଗଲ ସାମ୍ରାଜ୍ୟର ଅଧୀଶ୍ୱର ଆତ୍ମବିସ୍ମୃତ ହୋଇପଡ଼ିଛନ୍ତି ।

ଏପରି ନାନାଭାବରେ, ଉତ୍ଥାନ-ପତନ, ଜୟ-ପରାଜୟ ସମ୍ବଳିତ ଭାରତ ଇତିହାସର ଏକ ଭାସ୍ୱର ପରିଦୃଶ୍ୟ ମୋର ଦୃଷ୍ଟି ସମ୍ମୁଖରେ ଉଦ୍ଭାସିତ ହେଉଥିଲା । ପାଞ୍ଚହଜାର ବର୍ଷର ଆକ୍ରମଣ ତଥା ଜାଗରଣର ଏକ ଦୀର୍ଘ ଇତିହାସ ଭିତରେ ଭାରତର ଏକ ସାଂସ୍କୃତିକ ଐତିହ୍ୟ ଯାହା ଜନସାଧାରଣଙ୍କୁ ପ୍ରଗାଢ଼ଭାବରେ ପ୍ରଭାବିତ କରିପାରିଛି, ଏପରି ଅଖଣ୍ଡ ଭାବରେ ଚାଲୁହୋଇ ଆସିବା ମତେ ଅପୂର୍ବ ବୋଧ ହେଉଥିଲା । ଐତିହ୍ୟ ଓ ସାଂସ୍କୃତିକ ଜୀବନର ଏ ପ୍ରକାର ଅଖଣ୍ଡତା ଚୀନର କେବଳ ଥିଲା । ଅତୀତର ଏହି ପରିଦୃଶ୍ୟ ଅପ୍ରସନ୍ନ ବର୍ତ୍ତମାନରେ କ୍ରମଶଃ ମିଶିଗଲା । ଭାରତ, ତାର କେତେକ ଅତୀତ ମହତ୍ତ୍ୱ ଓ ସ୍ଥାୟିତ୍ୱ ସତ୍ତ୍ୱେ ମତେ ଦେଖାଗଲା ଇଂଲଣ୍ଡର ଗୋଟାଏ ଦାସ-ଦେଶ ଭାବରେ; ଆହୁରି ମଧ୍ୟ ଦେଖାଗଲା ପୃଥିବୀର ଦିବେଜ ମଣିଷକୁ ପଶୁରେ ପରିଣତକରି ଗୋଟାଏ ଭୟାବହ ତଥା ପ୍ରଳୟଙ୍କରୀ ଯୁଦ୍ଧ ଚାଲିଛି; କିନ୍ତୁ ପାଞ୍ଚହଜାର ବର୍ଷର ଏହି ମାନସ-ଦୃଷ୍ଟି ମତେ ଗୋଟାଏ ନୂତନ ପରିପ୍ରେକ୍ଷୀ ଦେଲା ଓ ବର୍ତ୍ତମାନର ବୋଝ କେତେକାଂଶରେ ଲଘୁ କଲା । ଶହେ ଅଶୀ ବର୍ଷର ଇଂରେଜ ରାଜତ୍ୱ ଭାରତର ଦୀର୍ଘ କାହାଣୀରେ ଗୋଟାଏ ଅପ୍ରସନ୍ନ ବିଷ୍ମୟକ ମାତ୍ର । ସେ ପୁନର୍ବାର ନିଜକୁ ଖୋଜି ପାଇବ । ସେ ଅଧ୍ୟାୟର ଶେଷ ପୃଷ୍ଠା ଲେଖିବା ଆରମ୍ଭ ହୋଇ ସାରିଲାଣି । ପୃଥିବୀ ମଧ୍ୟ ଆଜିର ଏ ଭୟାବହତାରୁ ଉଦ୍ଧାର ପାଇବ ଓ ସଦ୍ୟ କେତେ ଭିତ୍ତି ଉପରେ ନିଜକୁ ନୂତନ କରି ନିର୍ମାଣ କରିବ ।

# ୨. ଜାତୀୟବାଦ ଓ ଆନ୍ତର୍ଜାତୀୟତା

ଭାରତ ପ୍ରତି ମୋର ପ୍ରତିକ୍ରିୟା ବହୁଧା ଏପରି ପ୍ରକ୍ଷୋଭଗତ ଥିଲି ଓ ନାନାଭାବରେ ତାହା ସୀମିତ ଓ ନିୟନ୍ତ୍ରିତ ଥିଲି । ଏହା ଜାତୀୟବାଦ ରୂପ ଧାରଣ କଲା । ଅନେକଙ୍କଠାରେ ଏହି ନିୟନ୍ତ୍ରଣ ଓ ସୀମା ବନ୍ଧନର ଅଭାବ ପରିଲକ୍ଷିତ ହୋଇଥାଏ; କିନ୍ତୁ ମୋ ସମୟର ଭାରତରେ ଯେଉଁ ଜାତୀୟବାଦ ଥିଲା, ଆଜି ମଧ୍ୟ ତାହା ଅବଶ୍ୟମ୍ଭାବୀ । ଏହା ଗୋଟାଏ ସ୍ୱାଭାବିକ ଓ ସୁସ୍ଥ ପ୍ରତିକ୍ରିୟା । ଯେ କେଉଁ ପରାଧୀନ ଦେଶ ପକ୍ଷରେ ଜାତୀୟ ସ୍ୱାଧୀନତା ପ୍ରଥମ ଓ ପ୍ରଧାନ ପ୍ରେରଣା ହେବା ନିଶ୍ଚିତ । ତାର ବ୍ୟକ୍ତିତ୍ୱ ଓ ଅତୀତ ପରମ୍ପରା ଦୃଷ୍ଟିରୁ ଭାରତରେ ଏହି ଭାବର ନିବିଷ୍ଟତା ଦ୍ୱିଗୁଣିତ ହୋଇଦେଲା ।

ପୃଥିବୀର ସର୍ବତ୍ର ସାମ୍ପ୍ରତିକ ଘଟଣାମାନ ପ୍ରମାଣିତ କରିଚି ଯେ, ଆନ୍ତର୍ଜାତୀୟତା ଓ ସର୍ବହରା ଆନ୍ଦୋଳନ ସମ୍ମୁଖରେ ଜାତୀୟବାଦ ଉଭେଇଯିବା ଧାରଣାରେ କୌଣସି ସତ୍ୟତା ନାହିଁ । ଏବେ ସୁଦ୍ଧା ଯେକୌଣସି ଜାତିକୁ ପ୍ରେରଣା ଯୋଗାଇବାରେ ଏହା ଅନ୍ୟତମ ଶକ୍ତିଶାଳୀ କାରଣ ହୋଇ ରହିଚି ଏବଂ ଏହାକୁ କେନ୍ଦ୍ରକରି ରହିଚି କେତେ ଐତିହ୍ୟ, କେତେ ରସବୋଧ ଏବଂ ସର୍ବସାଧାରଣ ଉଦ୍ଦେଶ୍ୟ ଓ ଜୀବନ ବ୍ୟବସ୍ଥାର ବିଚାର । ମଧ୍ୟବିତ୍ତ-ଶ୍ରେଣୀର ବୁଦ୍ଧିଜୀବୀମାନେ ଜାତୀୟବାଦରୁ, ସେମାନଙ୍କ ବିଚାରରେ ଦୂରେଇ ଯାଉଥିଲା-ବେଳେ, ଶ୍ରମିକ ଓ ସର୍ବହରା ଆନ୍ଦୋଳନମାନ ଆନ୍ତର୍ଜାତୀୟତା ଉପରେ ନିର୍ଦ୍ଦିଷ୍ଟ ଭାବରେ ଭିତ୍ତି କରିଥିଲେ ସୁଦ୍ଧା ଜାତୀୟବାଦ ଆଡ଼କୁ ମୁହଁ ଫେରାଉଥିଲେ । ଯୁଦ୍ଧ ଲାଗିବାର ସୂଚନା ସର୍ବତ୍ର ସମସ୍ତଙ୍କୁ ଜାତୀୟବାଦରେ ଉଦ୍‌ବୁଦ୍ଧ କରିଥିଲା । ଜାତୀୟବାଦର ଏହି ଅଦ୍‌ଭୁତ ଜାଗରଣ ଅଥବା ତାର ଏ ପୁନରାବିଷ୍କାର ଏବଂ ତାର ତେଜୀୟାନ ତାତ୍ପର୍ଯ୍ୟର ଉପଲବ୍ଧି କେତେ ନୂତନ ସମସ୍ୟା ସୃଷ୍ଟି କରିଚି ଓ କେତେ ପୁରାତନ ସମସ୍ୟାର ଆକାର ଓ ପ୍ରକାର ପରିବର୍ତ୍ତିତ କରିଚି । ପୁରାତନ ପ୍ରତିଷ୍ଠିତ ଐତିହ୍ୟମାନ ସହଜରେ ପରିହାର କରାଯାଇ ପାରେନା; ସଙ୍କଟ ସମୟରେ ସେ ସବୁ ଜାଗ୍ରତ ହୋଇ ମଣିଷର ମନ ଉପରେ ଆଧିପତ୍ୟ ବିସ୍ତାର କରନ୍ତି ଏବଂ ବହୁଧା ଆମେ ଯେପରି ଲକ୍ଷ୍ୟକଲେ, କୌଣସି ଜାତିକୁ ଉଦ୍ୟୋଗ ଓ ତ୍ୟାଗ ନିମନ୍ତେ ଉଦ୍‌ବୁଦ୍ଧ କରିବାକୁ ହେଲେ, ସେସବୁ ଐତିହ୍ୟ ପ୍ରୟୋଗ କରିବାର ସୁଚିନ୍ତିତ ପ୍ରୟାସ କରାଯାଇଥାଏ । ଐତିହ୍ୟରୁ ବହୁତ କିଛି ଗ୍ରହଣକରିବାକୁ ପଡ଼ିବ ଏବଂ ନୂତନ ଅବସ୍ଥା ଓ ଚିନ୍ତାଧାରା ସଙ୍ଗେ ତାହାର ମେଳ ନିମନ୍ତେ ତାକୁ ରୂପାନ୍ତରିତ କରିବାକୁ ପଡ଼ିବ । ସେଥି ସଙ୍ଗେ ନୂତନ ପରମ୍ପରା ମଧ୍ୟ ନିର୍ମାଣ କରିବାକୁ ପଡ଼ିବ । ଜାତୀୟବାଦର ଆଦର୍ଶ ସୁଦୂରପ୍ରସାରୀ ଓ ଶକ୍ତିଶାଳୀ । ଏହା ଅତୀତର ସେପରି କିଛି ନୁହେଁ, ଭବିଷ୍ୟତ ନିମନ୍ତେ ଯାହାର କୌଣସି ତାତ୍ପର୍ଯ୍ୟ ନାହିଁ । ଅଙ୍କର କେତେକ ଅପରିହାର୍ଯ୍ୟ ତଥ୍ୟ ଉପରେ ଭିତ୍ତି-କରି ଆନ୍ତର୍ଜାତିକ ଆଦର୍ଶ ଓ ସର୍ବହରା ଆଦର୍ଶ ଭଳି କେତେ ନୂତନ ଆଦର୍ଶ ମୁଣ୍ଡଟେକି ଉଠିଚି ଏବଂ ଆମେ ଯଦି ପୃଥିବୀର ଭାରସାମ୍ୟ ରକ୍ଷାକରିବା ପାଇଁ ଓ ସଙ୍ଘର୍ଷ ହ୍ରାସ କରିବା ପାଇଁ ଚାହୁଁ, ତାହାହେଲେ ଏ ସମସ୍ତ ଆଦର୍ଶର କୌଣସିପ୍ରକାର ସମନ୍ୱୟ ନିତାନ୍ତ ଆବଶ୍ୟକ । ମଣିଷର ଅଧ୍ୟାତ୍ମ ଜୀବନ ନିମନ୍ତେ ଜାତୀୟବାଦର ପାଳନୀୟ ଆବେଦନକୁ ସ୍ୱୀକାର

କରିବାକୁ ପଡ଼ିବ ଓ ଯେଥି ନିମନ୍ତେ ବ୍ୟବସ୍ଥା କରିବାକୁ ପଡ଼ିବ, କିନ୍ତୁ ଏହାର ପ୍ରଭାବ ଗୋଟିଏ ସଙ୍କୀର୍ଣ୍ଣ କ୍ଷେତ୍ରରେ ସୀମିତ ରହିବା ଆବଶ୍ୟକ ।

ନୂତନ ଭାବଧାରା ଓ ଆନ୍ତର୍ଜାତିକ କାରଣମାନଙ୍କରୁ ଯେଉଁସବୁ ଦେଶ ଶକ୍ତିଶାଳୀ ଭାବରେ ପ୍ରଭାବିତ ହୋଇଛି, ସେ ଦେଶମାନଙ୍କରେ ଏବେ ସୁଦ୍ଧା ଜାତୀୟତାବାଦର ପ୍ରଭାବ ଯଦି ସାର୍ବଜନୀନ ହୋଇ ରହିଛି, ତେବେ ଭାରତର ମନକୁ ଏହା କିଭଳି ଭାବରେ ଅଧିକାର କରିଥିବ, ଅନୁମାନ କରିବା ଅତି ସହଜ । ବେଳେବେଳେ କୁହାଯାଏ ଯେ, ଆମର ଜାତୀୟତାବାଦ ଆମର ଅନଗ୍ରସର ଅବସ୍ଥାର ଚିହ୍ନ ଏବଂ ଏପରିକି ଆମର ସ୍ୱାଧୀନତା ଦାବୀ ମଧ୍ୟ କୁଆଡ଼େ ଆମର ସଙ୍କୀର୍ଣ୍ଣ ମନର ପରିଚାୟକ । ଏ କଥା ଆମକୁ ଯେଉଁମାନେ କହନ୍ତି, ସେମାନେ ହୁଏତ ମନେ କରୁଚନ୍ତି ଯେ, ଆମେ ବ୍ରିଟିଶ ସାମ୍ରାଜ୍ୟ ଅବା ମିଳିତ ରାଜ୍ୟ-ଗୋଷ୍ଠୀରେ ଜଣେ କନିଷ୍ଠ ଅଂଶୀଦାର ଭାବରେ ରହିଲେ ପ୍ରକୃତ ଆନ୍ତର୍ଜାତୀୟତାର ବିଜୟଲାଭ ହେବ । ସେମାନେ ବୋଧହୁଏ ଉପଲବ୍ଧି କରିପାରୁନାହାନ୍ତି ଯେ ଏହି ଧରଣର ତଥାକଥିତ ଆନ୍ତର୍ଜାତୀୟତା ସଙ୍କୀର୍ଣ୍ଣ ବ୍ରିଟିଶ ଜାତୀୟତାବାଦର ସମ୍ପ୍ରସାରଣ ମାତ୍ର । ସେମାନେ ବୁଝିବା ଉଚିତ ଯେ ଆଂଲୋ-ଭାରତୀୟ ଇତିହାସର ଯୁକ୍ତିଯୁକ୍ତ ପରିଣାମ ଆମ ମନରୁ ତାର ସମ୍ଭାବନା ସମ୍ପୂର୍ଣ୍ଣ ଭାବରେ ଉତ୍ପାଟିତ କରି ନଥିଲେ ସୁଦ୍ଧା ବ୍ରିଟିଶ ଜାତୀୟତାବାଦର ଏବଂବିଧ ସମ୍ପ୍ରସାରଣ ଆମ ପ୍ରାଣକୁ ସ୍ପର୍ଶ କରିନଥାନ୍ତା । ତଥାପି ଭାରତ ତାର ଯେତେ ପ୍ରବଳ ଜାତୀୟତାବାଦୀ ଉତ୍ସୁକତା ସତ୍ତ୍ୱେ ଅନ୍ୟ ବହୁଦେଶ ଅପେକ୍ଷା ପ୍ରକୃତ ଅନ୍ତର୍ଜାତୀୟତା ଓ ତଜ୍ଜନିତ ସମନ୍ୱୟ ଗ୍ରହଣ କରିବାରେ ଏପରିକି କେତେ ପର୍ଯ୍ୟନ୍ତ ବିଶ୍ୱ ସଙ୍ଗଠନ ନିମନ୍ତେ ସ୍ୱତନ୍ତ୍ର ଜାତୀୟତାବାଦୀ ରାଷ୍ଟ୍ରର ଅଧୀନତା ସ୍ୱୀକାର କରିବା ଦିଗରେ ଅଧିକ ପ୍ରଗତିଶୀଳ ହୋଇଛି ।

## ୩. ଭାରତର ସବଳତା ଓ ଦୁର୍ବଳତା

ଭାରତର ସବଳତା ଏବଂ ତାର ଅବନତି ଓ ଦୁର୍ବଳତାର ଉତ୍ପତ୍ତି ସନ୍ଧାନ କରିବାର ପନ୍ଥା ବଡ଼ ଦୀର୍ଘ ଓ ଜଟିଳ । ତଥାପି ସେହି ଅବନତିର ଅଧୁନାତନ ସମସ୍ତ କାରଣ ବଡ଼ ସ୍ପଷ୍ଟ । ଯେଉଁ ଭୂଖଣ୍ଡ ନାନା ଭାବରେ ବହୁକାଳ ଧରି ଅନଗ୍ରସର ଥିଲା, ସେହି ୟୁରୋପ ଶୈଳ୍ପିକ ପ୍ରଗତିରେ ନେତୃତ୍ୱ ନେଲାବେଳେ ଭାରତ ପଛରେ ପଡ଼ିରହିଲା । ଏହି ଶୈଳ୍ପିକ ପ୍ରଗତି ପଛରେ ଥିଲା ବିଜ୍ଞାନର ତେଜ ଏବଂ ଗୋଟାଏ ଉଚ୍ଛଳ ଜୀବନ ଓ ଉତ୍ସାହର ତୀବ୍ରତା, ଯାହା ନାନା କର୍ମାନୁସରଣ ଓ ଆବିଷ୍କରଣର ବହୁ ଦୁଃସାହସିକ ଯାତ୍ରାରେ ଆତ୍ମପ୍ରକାଶ କରୁଥିଲା । ନବନବ ଶିଳ୍ପକୌଶଳ ପଶ୍ଚିମ ୟୁରୋପର ଦେଶମାନଙ୍କୁ ସାମରିକ ଶକ୍ତି ଯୋଗାଇଲା ଓ ସେହି ବଳରେ ପ୍ରାଚ୍ୟ ଭୂଖଣ୍ଡ ଉପରେ ଆଧିପତ୍ୟ ବିସ୍ତାରକରିବା ସେମାନଙ୍କ ପକ୍ଷରେ ସହଜ ହେଲା । ଭାରତ କେବଳ ନୁହେଁ, ପ୍ରାୟ ସମଗ୍ର ଏସିଆ ମହାଦେଶର ଏହା ହିଁ ଆଧୁନିକ କାହାଣୀ । ଏପରି କାହିଁକି ହେଲା ତାର ରହସ୍ୟ ଭେଦକରିବା କଷ୍ଟକର; କାରଣ ପ୍ରାଥମିକ

କାଳରୁ ଭାରତର ମାନସିକ ସଜାଗତା ଓ ଶୈଳ୍ପିକ ଦକ୍ଷତାର ଅଭାବ ନଥିଲା । ଗତ କେତେ ଶତାବ୍ଦୀ ଭିତରେ ଭାରତର କ୍ରମବର୍ଦ୍ଧନଶୀଳ ଅବନତି ଲକ୍ଷ୍ୟ କରିହୁଏ । ଜୀବନ ଓ ଉଦ୍ୟୋଗ ନିମନ୍ତେ ପ୍ରେରଣା ହ୍ରାସ ପାଇଲା । ସୃଜନଶୀଳତା କାଳକ୍ରମେ ମ୍ଳାନ ହେଲା ଓ ତାର ସ୍ଥାନ ଅଧିକାର କଲା ଅନୁକରଣପ୍ରବଣତା । ଯେଉଁଠି ବିଦ୍ରୋହୀ ଓ ବିଜୟୀଚିନ୍ତା ପ୍ରକୃତି ଓ ବ୍ରହ୍ମାଣ୍ଡର ବିବିଧ ରହସ୍ୟ ଭେଦକରିବା ପ୍ରୟାସ କରିଥିଲା, ସେଇଠି ଦେଖାଦେଲା ଦୀର୍ଘ ବ୍ୟାଖ୍ୟା ଓ ଭାଷ୍ୟ ଧରି କେତେ ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟାକାର । ମହତ୍ତ୍ୱ ଅନୁକଳ୍ପନା ଅବା ଧାରଣା ବଦଳରେ କଳା ଓ ଭାସ୍କର୍ଯ୍ୟ ମହତ୍ତ୍ୱହୀନ ଜଟିଳତାର ଟିକିନିକି ଅଭିବ୍ୟକ୍ତି ଘେନି ଆତ୍ମପ୍ରକାଶ କଲା । କଳା ଓ ଭାସ୍କର୍ଯ୍ୟର ଶ୍ରୀ ଓ ଐଶ୍ୱର୍ଯ୍ୟ ବିଦୂରିତ ହେଲା । ଶକ୍ତିମନ୍ତ ଅଥଚ ସରଳ, ଭାଷାର ତେଜ ଓ ଐଶ୍ୱର୍ଯ୍ୟର ସ୍ଥାନ ଅଧିକାର କଲା ଅଳଙ୍କାର-ବହୁଳ ଓ ଆଡ଼ମ୍ବର-ଜଟିଳ କେତେ ସାହିତ୍ୟିକ ଶୈଳୀ । ଦୁଃସାହସିକତାର ପ୍ରେରଣା ଓ ଜୀବନର ଉଚ୍ଛଳତା ଯାହା ଦୂର ଦେଶମାନଙ୍କରେ ଉପନିବେଶ ସ୍ଥାପନକରି ସେଠାରେ ଭାରତୀୟ ସଂସ୍କୃତି ଆରୋପଣର କେତେକ ବିଶାଳ ପରିକଳ୍ପନା କରିପାରୁଥିଲା, ତାହା ମ୍ଳାନ ହୋଇପଡ଼ିଲା ଓ ତାର ସ୍ଥାନରେ ସଙ୍କୀର୍ଣ୍ଣ ଏକ ରକ୍ଷଣଶୀଳତା, ସମୁଦ୍ରଯାତ୍ରା ଉପରେ ଧର୍ମଗତ ନିଷେଧ ଜାରିକଲା । ଜିଜ୍ଞାସାର ଯୁକ୍ତିପୂର୍ଣ୍ଣ ଉତ୍କଣ୍ଠା ଯାହା ପ୍ରାଥମିକ କାଳରେ ପରିଲକ୍ଷିତ ହୋଇଥିଲା ଏବଂ ଯାହା ଭଲଭାବରେ ବିଜ୍ଞାନର ଅଭିବୃଦ୍ଧି କରିଥାନ୍ତା, ତା' ସ୍ଥାନରେ ଅଯୌକ୍ତିକତା ଓ ଅତୀତର ଅନ୍ଧ ମୌଳିକତା ବିରାଜିତ ହେଲା । ଅତୀତରେ ଜୀବିତ, କେତେ ମୃତ ଶତାବ୍ଦୀର ଅନାବଶ୍ୟକ ବାଧା ପ୍ରତିବନ୍ଧକ ଭିତରଦେଇ ପ୍ରବାହିତ, ଭାରତୀୟ ଜୀବନ ଗୋଟାଏ ମନ୍ଦଗତିସ୍ରୋତରେ ପରିଣତ ହେଲା । ଅତୀତର ଗୁରୁଭାରରେ ତାର ଶରୀର ଭାଙ୍ଗିପଡ଼ିଲା ଓ ଗୋଟାଏ ପ୍ରକାର ସଂଜ୍ଞାହୀନତା ତାକୁ କବଳିତ କଲା । ମାନସିକ ବ୍ୟାମୋହ ଓ ଶାରୀରିକ ଅବସନ୍ନତାର ଏ ଅବସ୍ଥାରେ, ଭାରତର ଅବନତି ଘଟି ତାକୁ ଗତିରହିତ ଓ ଅନମନୀୟ କରିବା କିଛି ବିସ୍ମୟକର ନୁହେଁ । ଠିକ୍ ସେତିକବେଳେ ପୃଥିବୀର ଅନ୍ୟ କେତେ ଦେଶ ଅପୂର୍ବ ଭାବରେ ପ୍ରଗତି କରି ପାରିଥିଲେ ।

ତଥାପି ଏହା ସମ୍ପୂର୍ଣ୍ଣ ଅବା ସାମଗ୍ରିକ ଭାବରେ ଅବସ୍ଥାର ପରିମାପ ହୋଇ ନପାରେ । ଯଦି ଅନମନୀୟତା ତଥା ଗତିହୀନତାର ଗୋଟାଏ ଦୀର୍ଘ ଓ ଅବରୁଦ୍ଧ ପର୍ଯ୍ୟାୟ କେବଳ ରହିଥାନ୍ତା ତାହା ପରିଣାମରେ ଅତୀତରୁ ସମ୍ପୂର୍ଣ୍ଣ ରୂପେ ବିଚ୍ଛିନ୍ନ ଗୋଟାଏ କଳ୍ପର ମୃତ୍ୟୁ ଘୋଷଣା କରିଥାନ୍ତା ଏବଂ ତାର ଭଗ୍ନାବଶେଷ ଉପରେ ନୂତନ କିଛି ମୁଣ୍ଡଟେକି ଉଠିଥାନ୍ତା । ଏପରି କିଛି ବିଚ୍ଛିନ୍ନତା ଦେଖାଯାଏନି; ଦେଖାଯାଏ ଗୋଟାଏ ନିର୍ଦ୍ଦିଷ୍ଟ ଅଖଣ୍ଡତା । ମଝିରେ ମଝିରେ ନବଜାଗରଣର କେତେ ପର୍ଯ୍ୟାୟ ମଧ୍ୟ ଦୃଷ୍ଟିରେ ପଡ଼େ । ସେଥିରୁ କେତେ ଦୀର୍ଘକାଳ ସ୍ଥାୟୀ ଓ ଦୀପ୍ତିମାନ୍ ଥିଲା । ନୂତନକୁ ବୁଝି ସୁଝି ଅତୀତ ସଙ୍ଗେ ଅବା ସଂରକ୍ଷଣଯୋଗ୍ୟ ଅତୀତର ସେଭଳି କେତେ ଅଂଶ ସଙ୍ଗେ ସୁସଙ୍ଗତ କରିବାର ପ୍ରୟାସ ପ୍ରାୟଶଃ ପରିଲକ୍ଷିତ ହୁଏ । ଏକପ୍ରକାର ପ୍ରତୀକ ଭାବରେ ସେହି ପୁରାତନ ଗୋଟାଏ ବହିରଙ୍ଗ ଆଧାର କେବଳ ଧାରଣ କରି ରହେ ଓ ତାର ଅନ୍ତରଙ୍ଗ ଆଧେୟ ରୂପାନ୍ତରିତ ହୋଇଯାଏ; କିନ୍ତୁ କିଛି

ତେଜାସ୍ବାନ ଓ ଜୀବନ୍ତ ଶକ୍ତି ଅବ୍ୟାହତ ରହେ; ସାମଗ୍ରିକ ଭାବରେ, ଅନୁପଲବ୍ଧ କୌଣସି ଧାଗ ପ୍ରତି ଜନସାଧାରଣଙ୍କୁ ପ୍ରେରିତ କରେ ଏବଂ ନୂତନ ଓ ପୁରାତନର ସଂଶ୍ଳେଷଣ ନିମନ୍ତେ ଆକାଂକ୍ଷା ପୋଷଣ କରେ । ଏହି ପ୍ରେରଣା ଓ ଆକାଂକ୍ଷା ସେମାନଙ୍କୁ ଚଳଶୀଳ ରଖିଲା ଏବଂ ଅତୀତର ବହୁତ କିଛି ସଂରକ୍ଷଣ କରିବା ସଙ୍ଗେ ସଙ୍ଗେ ନୂତନ ଧାରଣାମାନଙ୍କୁ ଗ୍ରହଣ କରିବା ନିମନ୍ତେ ସାମର୍ଥ୍ୟ ଦେଲା । ଉଜ୍ଜ୍ୱଳ ଓ ପ୍ରାଣବନ୍ତ ଅଥବା ଅଶାନ୍ତ ନିଦ୍ରାର ପ୍ରଳାପରେ କେବେ ପର୍ଯ୍ୟବସିତ, ଯୁଗେ ଯୁଗେ ଭାରତୀୟ ସ୍ୱପ୍ନ ବୋଲି କିଛି ଥିଲା କି ନାହିଁ ମୁଁ ଜାଣେନା । ଜାତୀୟ ଭାଗ୍ୟର ଏପରି କିଛି ବିଶ୍ୱାସ ଅବା କଳ୍ପିତ କଥା ପ୍ରତ୍ୟେକ ଜାତି ଓ ଦେଶର ଥାଏ ଏବଂ ଏହା ହୁଏତ ପ୍ରତ୍ୟେକ କ୍ଷେତ୍ରରେ କେତେକାଂଶରେ ସତ୍ୟ ମଧ୍ୟ । ଜଣେ ଭାରତୀୟ ଭାବରେ ଭାରତ ସମ୍ପର୍କରେ ଏହି ବାସ୍ତବତା ଅବା କଳ୍ପିତ କଥାଦ୍ୱାରା ମୁଁ ମଧ୍ୟ ପ୍ରଭାବିତ ଏବଂ ମୁଁ ଅନୁଭବ କରେ ଯେ, ସେ ଯାହାହେଉ କି ନା, ଅଖଣ୍ଡ ଭାବରେ ଶହ ଶହ ପୁରୁଷକୁ ଗଢ଼ିବାର ଶକ୍ତି ଯାହାର ଥିଲା, ତାର ସେହି ଓଜ ନିଶ୍ଚିତ ଭାବରେ କୌଣସି ଅକ୍ଷୟ ଉତ୍ସରୁ ପ୍ରବାହିତ ହେଉଥିଲା ଓ ଯୁଗେ ଯୁଗେ ସେହି ଓଜକୁ ଦୀପ୍ତ କରିବାର ସାମର୍ଥ୍ୟ ବି ତାର ଥିଲା ।

ଏପ୍ରକାର ଶକ୍ତିର ଭଣ୍ଡାର କି ଥିଲା ? ଯଦି ଥିଲା ତାହା କି ଶୁଷ୍କ ହେଲା, ନା ତଳେ କୌଣସି ଲୁକ୍‌କାୟିତ ନିର୍ଝର ଥିଲା ସେହି ଭଣ୍ଡାର ପୂର୍ଣ୍ଣକରିବା ପାଇଁ ? ଆଜି କ'ଣ ହେଉଛି ? ସେପରି କୌଣସି ନିର୍ଝର ଏବେ ବି କି ଅଛି, ଯେଉଁଥିରୁ ଶକ୍ତି ସଂଗ୍ରହକରି ଆମେ କ୍ଳାନ୍ତିଶୂନ୍ୟ ହୋଇପାରିବା ? ଆମେ ଏକ ପୁରାତନ ଜାତି କିମ୍ବା ଏପରି ବି କୁହାଯାଇ ପାରେ, ବହୁ ଜାତି ସମ୍ମିଶ୍ରଣରେ ଆମେ ଗୋଟାଏ ମହାଜାତି ଏବଂ ଆମର ଜାତୀୟ ସଂସ୍କୃତି ଇତିହାସର ଅରୁଣପ୍ରଭାତ ପର୍ଯ୍ୟନ୍ତ ବିଳମ୍ବିତ । ଆମର କ'ଣ ବିକାଶର ଦିନ ଶେଷ ହୋଇ-ଯାଇଛି ଓ ଆମେ ଆମ ଅସ୍ତିତ୍ୱର ଶେଷ ଅପରାହ୍ଣ ଅବା ସନ୍ଧ୍ୟାରେ, ଜରାଗ୍ରସ୍ତ ଜୀବନ ଭଳି ନିଷ୍କ୍ରିୟ, ଓଜହୀନ, ସୃଜନଶକ୍ତିହୀନ ହୋଇପଡ଼ିଚୁ ଏବଂ ସର୍ବୋପରି ଶାନ୍ତି ଓ ସୁପ୍ତି ଆକାଂକ୍ଷା କରି ରହିଚୁ ?

କୌଣସି ଜାତି ଅପରିବର୍ତ୍ତିତ ରହିପାରେନା । ଅବିଚ୍ଛିନ୍ନ ଭାବରେ ଅନ୍ୟମାନଙ୍କ ସଂସ୍ପର୍ଶରେ ଆସି ସେମାନେ ଧୀରେ ଧୀରେ ପରିବର୍ତ୍ତିତ ହୁଅନ୍ତି । ମୃତପ୍ରାୟ ମନେହେଲେ ସୁଦ୍ଧା ସେମାନେ ପୁନର୍ବାର ଗୋଟାଏ ନୂତନ ଜାତି ଭାବରେ କିମ୍ବା ପୁରାତନର ଗୋଟାଏ ରୂପାନ୍ତର ଭାବରେ ଉତ୍ଥିତ ହୁଅନ୍ତି । ନୂତନ ଓ ପୁରାତନ ଭିତରେ ସମ୍ପୂର୍ଣ୍ଣ ବିଚ୍ଛିନ୍ନତା ଆସିଯାଇପାରେ କିମ୍ବା ଚିନ୍ତା ଓ ଆଦର୍ଶରେ କେତେ ଅତ୍ୟାଜ୍ୟ ସମ୍ପର୍କ ସେମାନଙ୍କୁ ଯୁକ୍ତ କରିପାରେ ।

ପୁରାତନ ତଥା ପ୍ରତିଷ୍ଠିତ ସଭ୍ୟତାମାନ ମ୍ଳାନ ହୋଇପଡ଼ିବା କିମ୍ବା ଅକସ୍ମାତ୍ ବିଳୟ ଭଜିବା ଓ ସେମାନଙ୍କ ସ୍ଥାନରେ ଶକ୍ତିଶାଳୀ ସଂସ୍କୃତିମାନ ଗଢ଼ି ଉଠିବାର ଅସୁମାର ଦୃଷ୍ଟାନ୍ତ ଇତିହାସରେ ରହିଚି । ତାହା କ'ଣ କୌଣସି ଓଜସ୍ୱିନୀ ଶକ୍ତି, କୌଣସି ଶକ୍ତିର ଆଭ୍ୟନ୍ତରୀଣ ଉତ୍ସ, ଯାହା କୌଣସି ଜାତି ଅବା ସଭ୍ୟତାକୁ ପ୍ରାଣବନ୍ତ କରେ ଏବଂ ଯାହାର ଅଭାବରେ କୌଣସି ବୃଦ୍ଧବ୍ୟକ୍ତିର ଯୁବକସୁଲଭ ବ୍ୟବହାର କରିବାର ବିଫଳ ପ୍ରଚେଷ୍ଟା ସଦୃଶ ସମସ୍ତ

କିଛି ପ୍ରୟାସ ନିଷ୍ଫଳତାରେ ପର୍ଯ୍ୟବସିତ ହୁଏ ?

ଆଜିର ପୃଥିବୀରେ ବିଭିନ୍ନ ଜାତି ଭିତରେ, ମୁଖ୍ୟତଃ ତିନୋଟି ଜାତି ଭିତରେ, ମୁଁ ଏହି ଓଜସ୍ୱିତା ଅନୁଭବ କରିପାରିଚି । ସେମାନେ ହେଉଚନ୍ତି ମାର୍କିନ୍, ଋଷିୟାନ ଓ ଚୀନା— ଗୋଟିଏ ବିଚିତ୍ର ସମ୍ମିଶ୍ରଣ ! ପୁରାତନ ବିଶ୍ୱରେ ସେମାନଙ୍କର ମୂଳ ଥିଲେ ସୁଦ୍ଧା ମାର୍କିନ୍‌ମାନେ ପୁରାତନ ଜାତିର ବୋଝ ଓ ଗୃହେଷାହୀନ, ବାଧାହୀନ ଗୋଟାଏ ନୂତନ ଜାତି । ସେହିପରି ମଧ୍ୟ କାନାଡ଼ା, ଅଷ୍ଟ୍ରେଲିଆ ଓ ନିଉଜିଲଣ୍ଡର ଲୋକମାନେ । ସମସ୍ତେ ପୁରାତନ ବିଶ୍ୱରୁ ବିଚ୍ଛିନ୍ନ ଭାବରେ ଜୀବନର ସମସ୍ତ କିଛି ନୂତନତ୍ୱର ସମ୍ମୁଖୀନ ହେଉଚନ୍ତି ।

ଋଷିଆ ଦେଶବାସୀ ନୂତନ ଜାତି ନୁହନ୍ତି । ତଥାପି, ମୃତ୍ୟୁ ଭଳି ପୁରାତନରୁ ସେମାନେ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ଯେଉଁଭଳି ଭାବରେ ପୁନର୍ଜନ୍ମ ଲାଭ କରିଚନ୍ତି, ଇତିହାସରେ ତାହାର ପଟାନ୍ତର ନାହିଁ । ଅତୀବ ବିସ୍ମୟକର ଭାବରେ ସେମାନେ ନୂତନ ତେଜ ଓ ଓଜ ବଳରେ ଯୌବନ ଲାଭ କରିଚନ୍ତି । ସେମାନେ ପୁନର୍ବାର ସେମାନଙ୍କର କେତେକ ପୁରାତନ ମୂଳ ସନ୍ଧାନ କରୁଚନ୍ତି; କିନ୍ତୁ ବାସ୍ତବରେ ସେମାନେ ଗୋଟାଏ ନୂଆ ଜାତି ଓ ଗୋଟାଏ ନୂଆ ସଭ୍ୟତା ।

ଋଷିଆର ଦୃଷ୍ଟାନ୍ତ ପ୍ରମାଣ କରିଚି, ଗୋଟାଏ ଜାତି କିପରି ବୀର୍ଯ୍ୟବାନ୍ ହୋଇପାରେ ଓ ଯୌବନସୁଲଭ ଉଦ୍ଦାମତା ଲାଭ କରିପାରେ, ଯଦି ସେଥିପାଇଁ ତାର ମୂଲ୍ୟ ଦେବାକୁ ସେ ପ୍ରସ୍ତୁତ ଥାଏ ଓ ଜନସାଧାରଣଙ୍କ ଭିତରେ ଦମିତ କେତେ ଶକ୍ତି ଓ ତେଜର ଉତ୍ସ ଉନ୍ମୁକ୍ତ କରିପାରେ । ହୁଏତ ଏହି ଯୁଦ୍ଧ ତାର ସମସ୍ତ ଘୋରତା ଓ ଭୟାବହତା ସତ୍ତ୍ୱେ, ଯେଉଁମାନେ ତାର ପ୍ରଚଣ୍ଡ ଅଗ୍ନି ଉତ୍ସବ ଭିତରୁ ଉଦ୍ଧାର ପାଇପାରିବେ ସେମାନଙ୍କୁ ନୂତନ ଭାବରେ ସଞ୍ଜୀବିତ କରିପାରେ ।

ଏ ସମସ୍ତଙ୍କଠାରୁ ଚୀନାମାନେ ଭିନ୍ନ । ସେମାନେ ଗୋଟିଏ ନୂତନ ଜାତି ନୁହନ୍ତି କିମ୍ବା ରୁଷିଆରେ ଘଟିଥିବା ଭଳି ଉପରୁ ତଳ ପର୍ଯ୍ୟନ୍ତ ସେମାନେ ସେହି ଧକ୍‌କା ଓ ପରିବର୍ତ୍ତନ ଭିତରେ ଗତି କରି ନାହାନ୍ତି । ଏ କଥା ନିଃସନ୍ଦେହ ଯେ ସାତ ବର୍ଷର ନିଦାରୁଣ ଯୁଦ୍ଧ, ଯେପରି କରିବାର କଥା, ସେମାନଙ୍କ ଜୀବନରେ ପରିବର୍ତ୍ତନ ଆଣିଦେଇଚି । ଏହି ପରିବର୍ତ୍ତନ ଯୁଦ୍ଧ ଯୋଗୁ ଆସିଚି ଅବା ଅନ୍ୟ କୌଣସି ଅଲଙ୍ଘନୀୟ କାରଣମାନଙ୍କରୁ ଆସିଚି କିମ୍ବା ତାହା ଏ ଉଭୟର ମିଶ୍ରଣର ଫଳ ମୁଁ ଜାଣେନି, ଯଦିଓ ଚୀନାମାନଙ୍କ ଓଜସ୍ୱିତା ମତେ ବିସ୍ମିତ କରେ । ଏଭଳି ପ୍ରଚ୍ଛନ୍ନ ମୌଳିକ ନୀତିସଞ୍ଜାତ ଶକ୍ତିରେ ଗୋଟାଏ ଜାତି ବଳୀୟାନ ହେବା ମୁଁ କଳ୍ପନା କରିପାରୁନି ।

ଚୀନରେ ଯେଉଁ ଓଜସ୍ୱିତାର କିଛି ପ୍ରକାଶ ମୁଁ ଦେଖିବାକୁ ପାଇଲି କେବେ କେବେ ଭାରତୀୟ ଜନସାଧାରଣଙ୍କ ଭିତରେ ମଧ୍ୟ ମୁଁ ତାହା ଅନୁଭବ କରିଥାଏ । ସବୁବେଳେ ଅବଶ୍ୟ ନୁହେ ଏବଂ ସେ ଯାହା ହେଉ, ସେ ସମ୍ପର୍କରେ ଗୋଟାଏ ବାସ୍ତବ ଦୃଷ୍ଟିଭଙ୍ଗୀ ଗ୍ରହଣ କରିବା ମୋ ପକ୍ଷରେ କଷ୍ଟକର । ହୁଏତ ମୋର ବିବିଧ ଆକାଂକ୍ଷା ମୋର ଚିନ୍ତାକୁ ବିଭ୍ରାନ୍ତ କରେ । କିନ୍ତୁ ଭାରତୀୟ ଜନସାଧାରଣଙ୍କ ଭିତରେ ପ୍ରବେଶ କଲାବେଳେ ମୁଁ ସର୍ବଦା ତାର ସନ୍ଧାନରେ

ଥାଏ । ଯଦି ସେମାନଙ୍କର ଏ ଓଜସ୍ୱିତା ଥାଏ, ତାହା ହେଲେ ସେଥିର ସୁଫଳ ସେମାନେ ଲଭ କରିବେ । ଯଦି ଏହି ଓଜ ସେମାନଙ୍କର ଜମା ନାହିଁ, ତାହାହେଲେ ଆମର ଯେତେ ସବୁ ରାଜନୈତିକ ଉଦ୍ୟମ ଓ ଚିତ୍କାର କେବଳ ଛଳନା ମାତ୍ର ଏବଂ ତାହା ଆମକୁ ବେଶୀ ଦୂର ପର୍ଯ୍ୟନ୍ତ ନେଇ ଯାଇ ପାରିବନି । ମୁଁ ସେପରି କିଛି ରାଜନୈତିକ ବ୍ୟବସ୍ଥା କରିବାରେ ଆଗ୍ରହୀ ନଥିଲି, ଯାହା ଆମ ଲୋକଙ୍କ ଜୀବନରେ କୌଣସି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଆଣିବନି । ମୁଁ ଅନୁଭବ କରିଥିଲି, ସେମାନଙ୍କ ଭିତରେ ପ୍ରଚୁର ଦମିତ ତେଜ ଓ ସାମର୍ଥ୍ୟର ଭଣ୍ଡାର ରହିଛି ଏବଂ ତାହା ଅବାଧରେ ପ୍ରବାହିତ ହେବାକୁ ଦେଇ ମୁଁ ସେମାନଙ୍କୁ ପୁନର୍ବାର ଯୌବନବନ୍ତ ଓ ତେଜସ୍ୱାନ୍ କରିବାକୁ ଚାହୁଁଥିଲି । ଭାରତ ଯେଉଁଲି ଭାବରେ ଗଠିତ, ବିଶ୍ୱବ୍ୟାପାରରେ କୌଣସି ଗୌଣ ଭୂମିକା ସେ ଗ୍ରହଣ କରିପାରେନା । ହୁଏତ ସେ ବିଶ୍ୱର ଦୃଷ୍ଟି ସମ୍ମୁଖରେ ଉଦ୍ଭାସିତ ରହିବ କିମ୍ବା ସମ୍ପୂର୍ଣ୍ଣ ଭାବରେ ଲୁଚିଯିବ । କୌଣସି ମଧ୍ୟପନ୍ଥାର ଚିନ୍ତା ମତେ ଆକୃଷ୍ଟ କରୁ ନଥିଲା । କୌଣସି ମଧ୍ୟପନ୍ଥା ସାଧ୍ୟ ବୋଲି ମଧ୍ୟ ମୁଁ ଭାବି ପାରୁ ନଥିଲି ।

ଭାରତର ସ୍ୱାଧୀନତା ନିମନ୍ତେ ଆମର ଗତ ପଚିଶ ବର୍ଷର ସଂଗ୍ରାମ ଓ ବ୍ରିଟିଶ ପ୍ରଭୁତ୍ୱ ସଙ୍ଗେ ଆମର ସମସ୍ତ ସଂଘାତର ସ୍ତରିତ ପଛରେ ମୋର ଓ ଅନ୍ୟମାନଙ୍କର ଚିନ୍ତାରେ ରହିଥିଲା ଭାରତକୁ ପୁନର୍ବାର ଓଜସ୍ୱୀ କରିବାର ପ୍ରବଳ ଆକାଂକ୍ଷା । ଆମେ ଅନୁଭବ କରୁଥିଲୁ ଯେ କର୍ମଦ୍ୱାରା, ସ୍ୱେଚ୍ଛାକୃତ ଦୁଃଖଭୋଗ ଓ ତ୍ୟାଗ ଦ୍ୱାରା, ସ୍ୱେଚ୍ଛାପ୍ରଣୋଦିତ ଭାବରେ ବିପଦ ଓ ସଙ୍କଟର ସମ୍ମୁଖୀନ ହେବା ଦ୍ୱାରା, ଆମ ବିବେଚନାରେ ଯାହା ଅନୁଚିତ ଓ ଅକଲ୍ୟାଣକର ତା' ନିକଟରେ ନତମସ୍ତକ ହେବା ପାଇଁ ଅସ୍ୱୀକାର କରିବା ଦ୍ୱାରା ଆମେ ଭାରତର ପ୍ରାଣରେ ଜାଗରଣ ସଂଚାର କରି ତାର ଦୀର୍ଘ ନିଦ୍ରାର ଅବସାନ ଘଟାଇପାରିବୁ । ଭାରତର ବ୍ରିଟିଶ ଶାସକ ସଙ୍ଗେ ଆମେ ବରାବର ସଙ୍ଘାତରେ ଲିପ୍ତ ରହୁଥିଲେ ସୁଦ୍ଧା ଆମର ଦୃଷ୍ଟି ଆମ ଜନସାଧାରଣଙ୍କ ଉପରେ ରହୁଥିଲା । ଆମର ମୌଳିକ ଉଦ୍ଦେଶ୍ୟ ପାଇଁ ଯେତେଦୂର ସହାୟତା କରି ପାରିବ ସେ ପର୍ଯ୍ୟନ୍ତ କେବଳ ରାଜନୈତିକ ସୁବିଧାର ମୂଲ୍ୟ ଥିଲା । ଏହି ଉଦ୍ଦେଶ୍ୟ ଦ୍ୱାରା ପରିଚାଳିତ ହେଇ, ବାରମ୍ବାର ଆମେ ରାଜନୀତିର ସଙ୍କୀର୍ଣ୍ଣ କ୍ଷେତ୍ରରେ ବିଚରଣ କରି, ସେପରି କାର୍ଯ୍ୟ ସବୁ କରୁଥିଲୁ ଯାହା କୌଣସି ରାଜନୈତିକ ବ୍ୟକ୍ତି କରି ନଥାନ୍ତା ଏବଂ ଆମର ସେ ପ୍ରକାର ଅନମନୀୟ ପନ୍ଥା ଓ ଭ୍ରାନ୍ତ ଦେଖି ଘରେ ଓ ବାହାରେ ବହୁ ସମାଲୋଚକ ବିସ୍ମୟ ପ୍ରକାଶ କରୁଥିଲେ । ଆମେ ନିର୍ବୋଧତା ପ୍ରକାଶ କରୁଥିଲୁ କି ନା, ଭବିଷ୍ୟତର ଐତିହାସିକମାନେ ବିଚାର କରିବେ । ବହୁତ ଉଚ୍ଚରେ ଆମର ଲକ୍ଷ୍ୟକୁ ରଖି ଆମେ ବହୁ ଦୂରକୁ ଦେଖୁଥିଲୁ । ସୁବିଧାବାଦୀ ରାଜନୀତି ଦୃଷ୍ଟିରୁ ଆମେ ହୁଏତ ବାରମ୍ବାର ନିର୍ବୋଧତା କରିଛୁ । କିନ୍ତୁ କେତେବେଳେ ହେଲେ ଆମେ ଭୁଲିଯାଇ ନଥିଲୁ ଯେ, ଆମର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ମନସ୍ତାତ୍ତ୍ୱିକ ଓ ଆଧ୍ୟାତ୍ମିକ, ରାଜନୈତିକ ଓ ଅର୍ଥନୈତିକ ଦିଗରୁ ଭାରତୀୟ ଜନସାଧାରଣଙ୍କର ସମଗ୍ର ସ୍ତର ଉନ୍ନତ କରିବା । ଜନସାଧାରଣଙ୍କ ସେହି ପ୍ରକୃତ ଆଭ୍ୟନ୍ତରୀଣ ଶକ୍ତି ଗଢ଼ିବା ନିମନ୍ତେ ଆମେ ବରାବର ଚେଷ୍ଟିତ ଥିଲୁ । କାରଣ ଆମେ

ବୁଝୁଥିଲୁ ଯେ ଏହା ଫଳରେ ପରବର୍ତ୍ତୀ ସବୁ କିଛି ଅବଶ୍ୟମ୍ଭାବୀ ଭାବରେ ଘଟି ଘଟି ଯିବ । ଗୋଟାଏ ଉନ୍ନତ ବିଦେଶୀ ପ୍ରଭୁତ୍ୱ ନିକଟରେ ନିରୀହ ଭାବରେ ନତମସ୍ତକ ହେବା ଏବଂ ଲଜ୍ଜାକର ଦାସତ୍ୱର ସେଇ କେତେଟା ପୁରୁଷର ପ୍ରଭାବ ଆମେ ସମ୍ପୂର୍ଣ୍ଣ ରୂପେ ପୋଛିଦେବାକୁ ଚାହୁଁଥିଲୁ ।

## ୪. ଭାରତ ପାଇଁ ଅନୁସନ୍ଧାନ

କେତେ ପୁରାତନ ସ୍ମୃତିସୌଧ, ଅତୀତର କେତେ ସାଂସ୍କୃତିକ କୃତି ଓ ନାନା ଗ୍ରନ୍ଥର ଅଧ୍ୟୟନ ଭାରତକୁ କେତେକାଂଶରେ ବୁଝିବାରେ ମୋ ପକ୍ଷରେ ସହାୟକ ହେଲା; କିନ୍ତୁ ସେଥିରେ ମୋର ସନ୍ତୋଷ ଲାଭ ହେଲାନି କିମ୍ବା ମୋର ମନରେ ଯେଉଁ ପ୍ରଶ୍ନ ଉଠିଥିଲା ତାର ଉତ୍ତର ପାଇହେଲାନି । ସେ ସବୁ ଅଧ୍ୟୟନର ମାଧ୍ୟମରୁ ମୁଁ ମୀମାଂସା ପାଇ ନଥାନ୍ତି; କାରଣ ଅତୀତର ଗୋଟାଏ ଯୁଗ ସଙ୍ଗେ ସେ ସବୁ ସମ୍ପର୍କିତ ଏବଂ ଜାଣିବାକୁ ଚାହୁଁଥିଲି, ସେହି ଅତୀତ ଓ ବର୍ତ୍ତମାନ ଭିତରେ ପ୍ରକୃତ କିଛି ସମ୍ବନ୍ଧ ଅଛି କି ନାହିଁ । ବର୍ତ୍ତମାନ କହିଲେ, ମତେ ଯେପରି ମୋ ଭଳି ଅନେକଙ୍କୁ ମଧ୍ୟ, ଦେଖାଯାଉଥିଲା ମଧ୍ୟଯୁଗୀୟ ରୀତି, ଘୋର ଦାରିଦ୍ର୍ୟ ଓ ଦୁଃଖ ଏବଂ ମଧ୍ୟବିତ୍ତ ଶ୍ରେଣୀମାନଙ୍କର ଗୋଟାଏ ପ୍ରକାର ଉପରଠାଉରିଆ ଆଧୁନିକତା । ମୋ ଶ୍ରେଣୀର କିମ୍ବା ମୋ ଅବସ୍ଥାର ଲୋକଙ୍କ ପ୍ରଶଂସକ ମୁଁ ନଥିଲି, ତଥାପି ଭାରତର ମୁକ୍ତି-ସଂଗ୍ରାମରେ ନେତୃତ୍ୱ ନିମନ୍ତେ ମୁଁ ସେମାନଙ୍କ ମୁହଁକୁ ଚାହୁଁଥିଲି । ସେହି ମଧ୍ୟବିତ୍ତଶ୍ରେଣୀ ନିଜକୁ ନାନା ଦିଗରୁ ଆବଦ୍ଧ ଓ ସୀମିତ ମନେ କରୁଥିଲା ଏବଂ ବିକାଶ ନିମନ୍ତେ ଉତ୍କଣ୍ଠିତ ଥିଲା । ବ୍ରିଟିଶ୍ ରାଜତ୍ୱର ଚଉକାଠ ଭିତରେ ତାହା ସମ୍ଭବ ନ ହେବାରୁ ସେମାନଙ୍କ ମନରେ ବ୍ରିଟିଶ୍ ରାଜତ୍ୱ ପ୍ରତି ବିଦ୍ରୋହଭାବ ଜାଗ୍ରତ ହେଲା । ତଥାପି ଯେଉଁ ରୀତିର ଗଢ଼ଣ ଆମକୁ ଭାଙ୍ଗି ଚୂରମାର କରିଥିଲା ତାର ବିରୁଦ୍ଧରେ ସେ ବିଦ୍ରୋହ ପରିଚାଳନା କରାଯାଇ ନଥିଲା । ବ୍ରିଟିଶ ରାଜତ୍ୱକୁ ହଟାଇ ସେହି ଗଢ଼ଣକୁ ନିଜ ଆୟତ୍ତରେ ରଖିବା ପାଇଁ ସେମାନେ ଚାହୁଁଥିଲେ । ଏହି ମଧ୍ୟବିତ୍ତଶ୍ରେଣୀମାନେ ସେହି ସାମାଜିକ ଗଢ଼ଣର ସୃଷ୍ଟି ଯେହେତୁ ଥିଲେ, ତାକୁ ରଣଡାକ ଦେବା କିମ୍ବା ନିର୍ମୂଳ କରିବାର ଉଦ୍ୟମ କରିବା ସେମାନଙ୍କ ପକ୍ଷରେ ସମ୍ଭବ ନଥିଲା ।

କିନ୍ତୁ କେତେକ ନୂତନ ଶକ୍ତିର ଜାଗରଣ ଆମକୁ ଗାଁଗହଳିକୁ ଓ ଜନସାଧାରଣଙ୍କ ଭିତରକୁ ବିତାଡ଼ିତ କଲା ଏବଂ ପ୍ରଥମ ଥର ପାଇଁ ଅଳ୍ପବୟସ୍କ ବୁଦ୍ଧିଜୀବୀଙ୍କ ସମ୍ମୁଖରେ ଗୋଟାଏ ନୂତନ ତଥା ଭିନ୍ନ ଭାରତ ମୁଣ୍ଡଟେକି ଠିଆହେଲା । ସେମାନେ ଏହି ଭାରତର ଅସ୍ତିତ୍ୱକୁ ପ୍ରାୟ ଭୁଲି ଯାଇଥିଲେ କିମ୍ବା ତାର ଉପରେ ବିଶେଷ ଗୁରୁତ୍ୱ ଆରୋପ କରୁ ନଥିଲେ । ସେ ଦୃଶ୍ୟ ବଡ଼ ଆଲୋଡ଼ନକର । କାରଣ ଭାରତୀୟ ଜନସାଧାରଣଙ୍କର ଦୁଃଖ ଓ ଦୈନ୍ୟ କେବଳ ନୁହେ, ସେମାନଙ୍କର ବିଭିନ୍ନ ସମସ୍ୟାର ବ୍ୟାପକତା ଆମର କେତେକ ମୂଲ୍ୟବୋଧ ଓ ନିର୍ଦ୍ଧାରଣ ଭୁଲ ପ୍ରମାଣିତ କରୁଥିଲା । ଅତଏବ ଭାରତକୁ, ଯଥାତଥା ଭାବରେ

ଆବିଷ୍କାର କରିବାର ଯାହା ଆମର ଆରମ୍ଭ ହେଲା ଏବଂ ତାହା ଆମ ଭିତରେ ବୁଝାମଣା ଓ ଦ୍ୱନ୍ଦ୍ୱ ସୃଷ୍ଟି କରୁଥିଲା । ପୂର୍ବର ପରିବେଷ୍ଟନୀ ଓ ଅଭିଜ୍ଞତା ଉପରେ ନିର୍ଭର କରୁଥିବା ହେତୁରୁ ଆମର ପ୍ରତିକ୍ରିୟାରେ ପାର୍ଥକ୍ୟ ପ୍ରକାଶ ପାଉଥିଲା । ଆମ ଭିତରୁ କେତେକେ ଗ୍ରାମବାସୀଙ୍କ ସଙ୍ଗେ ବିଶେଷ ଭାବରେ ପରିଚିତ ଥିଲେ । ଅତଏବ ନୂତନ ପ୍ରାକ୍‌ଖ୍ୟାରେ ସେମାନେ କୌଣସି ନୂତନ ସମ୍ବେଦନ ଅନୁଭବ କରିପାରୁନଥିଲେ । ସେମାନେ ସେ ଅବସ୍ଥାକୁ ଏକପ୍ରକାର ସ୍ୱାଭାବିକ ଧରି ନେଇଥିଲେ; କିନ୍ତୁ ମୋ ପକ୍ଷରେ ତାହା ଗୋଟାଏ ପ୍ରକୃତ ଆବିଷ୍କାର-ଯାହା ଥିଲା ଏବଂ ମୁଁ ସର୍ବଦା ଆମ ଲୋକଙ୍କ ବିବିଧ ଭ୍ରାନ୍ତି ଓ ଦୁର୍ବଳତା ସମ୍ପର୍କରେ କ୍ଲେଶକର ଭାବରେ ସଚେତନ ଥିଲେ ସୁଦ୍ଧା ମୁଁ ଭାରତୀୟ ଜନସାଧାରଣଙ୍କ ଭିତରୁ ସେପରି କିଛି ପାଉଥିଲି, ଯାହାର ସଂଜ୍ଞା ନିରୂପଣ କରିବା ମୋ ପକ୍ଷରେ କଷ୍ଟକର ଥିଲା ଯଦିଓ, ତାହା ମତେ ବିପୁଳ ଭାବରେ ଆକର୍ଷିତ କରୁଥିଲା । ତାହା ଆମର ମଧ୍ୟବିତ୍ତ-ଶ୍ରେଣୀମାନଙ୍କରେ ମୁଁ ଦେଖିବାକୁ ପାଇନଥିଲି ।

ଏହି ଜନସାଧାରଣଙ୍କୁ କୌଣସି ଆଦର୍ଶର ପ୍ରତିନିଧି ଭାବରେ ମୁଁ ଗ୍ରହଣ କରିନି । ଯେତେଦୂର ସମ୍ଭବ, ତତ୍ତ୍ୱ ଦିଗରୁ ଗୋଟାଏ ପୃଥକ୍ ସତ୍ତା ଭାବରେ ସେ ବିଷୟରେ ଚିନ୍ତା କରିବା ମୁଁ ପ୍ରାୟ ପରିହାର କରିଥାଏ । ସେମାନଙ୍କର ବହୁ ବିବିଧତା ଓ ସଂଖ୍ୟାର ବିଶାଳତା ସତ୍ତ୍ୱେ ଭାରତର ଜନସାଧାରଣ ମୋ ପକ୍ଷରେ ଗୋଟାଏ ନିବିଡ଼ ବାସ୍ତବତା ଏବଂ ସେମାନଙ୍କୁ ମୁଁ କୌଣସି ଅନିର୍ଦ୍ଦିଷ୍ଟ ଗୋଷ୍ଠୀ ଭାବରେ ନୁହେଁ ବରଂ ଏକକ ବ୍ୟକ୍ତି ଭାବରେ ସେମାନଙ୍କ ବିଷୟରେ ଚିନ୍ତା କରିବାର ପ୍ରୟାସ କରିଥାଏ । ହୁଏତ ମୁଁ ସେମାନଙ୍କ ପାଖରୁ ବହୁତ କିଛି ପ୍ରତ୍ୟାଶା କରୁ ନଥିଲି ବୋଲି ମୁଁ ହତାଶ ହେଉନଥିଲି । ମୁଁ ଯେତିକି ଆଶା କରିଥିଲି, ତା'ଠାରୁ ଅଧିକ ପାଉଥିଲି । ମୋର ମନେହେଲା ଯେ ଏଥିପାଇଁ ଏବଂ ସେମାନଙ୍କର ପ୍ରଚ୍ଛନ୍ନ ଶକ୍ତି ଓ ଗୋଟାଏ ରକମର ସ୍ଥାୟିତ୍ୱ ପାଇଁ, ଯାହାର କାରଣ ହୁଏତ ହୋଇପାରେ ପ୍ରାଚୀନ ଭାରତର ସାଂସ୍କୃତିକ ଐତିହ୍ୟ, ତାହାର କିୟଦଂଶ ଏବେ ସୁଦ୍ଧା ସେମାନଙ୍କ ଭିତରେ ସଞ୍ଚିତ ରହିଛି । ଗତ ଦୁଇଶହ ବର୍ଷର ନିର୍ଯାତନା ଫଳରେ ତାର ଅଧିକାଂଶ ନଷ୍ଟ ହୋଇଯାଇ-ଥିଲେ ସୁଦ୍ଧା ଯାହା ଅବଶିଷ୍ଟ ଥିଲା, ତାହା ମୂଲ୍ୟବାନ୍ ଓ ସେଥି ସଙ୍ଗେ ମିଶିରହିଥିଲା କେତେକ ଅନାବଶ୍ୟକ ଓ ଅଶୁଭକର ଅଭ୍ୟାସ ।

ଚଳିତ ଶତାବ୍ଦୀର ତୃତୀୟ ଦଶକରେ ମୋର କର୍ମପରିସର ମୋର ନିଜ ପ୍ରଦେଶ ଭିତରେ ସୀମିତ ଥିଲା ଏବଂ ସେହି ଆଗ୍ରା-ଆଉଧ ଯୁକ୍ତପ୍ରଦେଶର (ଆଜିର ଉତ୍ତରପ୍ରଦେଶ) ଅନ୍ତର୍ଭୁକ୍ତ ଅଠଚାଳିଶଟି ଜିଲ୍ଲାର ସହର ଓ ଗ୍ରାମମାନଙ୍କରେ ବ୍ୟାପକ ତଥା ନିବିଡ଼ ଭାବରେ ମୁଁ ପର୍ଯ୍ୟଟନ କରୁଥିଲି । ଯୁକ୍ତପ୍ରଦେଶକୁ ବହୁକାଳରୁ ହିନ୍ଦୁସ୍ଥାନର ହୃଦୟ ଭାବରେ ବିବେଚନା କରାଯାଇଛି । ଏହା ପ୍ରାଚୀନ ଓ ମଧ୍ୟଯୁଗୀୟ ସଭ୍ୟତାର ପୀଠ ଓ କେନ୍ଦ୍ର; କେତେ ଜାତି ଓ କେତେ ସଂସ୍କୃତିର ସଙ୍ଗମ ସ୍ଥଳ ଏବଂ ସେହି ଅଞ୍ଚଳ ଯେଉଁଠି ୧୮୫୭ ମସିହାରେ ବିଦ୍ରୋହ-ବହ୍ନି ପ୍ରଜ୍ୱଳିତ ହୋଇଥିଲା ଓ ପରେ ଯାହାକୁ ନିର୍ମମ ଭାବରେ ନିର୍ବାପିତ କରାଯାଇଥିଲା । ଉତ୍ତର ଓ ପଶ୍ଚିମ ଜିଲ୍ଲାମାନଙ୍କରେ ମୁଁ କ୍ରମଶଃ ଜାଠ କୃଷକଙ୍କ ସଙ୍ଗେ ପରିଚିତ ହେଉଥିଲି ।

ମାଟିର ସନ୍ତାନ ଏ ଜାତି ଅପେକ୍ଷାକୃତ ସ୍ୱଚ୍ଛଳ ଓ ତାର ଚେହେରାରେ ଦାମ୍ଭିକତା ଓ ସ୍ୱାଧୀନତା ଫୁଟି ଦିଶୁଥାଏ । ରାଜପୁତ ଶ୍ରେଣୀ ଓ କ୍ଷୁଦ୍ର ଭୂମ୍ୟଧିକାରୀ ତାର ଧର୍ମଗତ ପରିବର୍ତ୍ତନ କରି ଇସ୍‌ଲାମ ଧର୍ମ ଗ୍ରହଣ କରିଥିଲେ ସୁଦ୍ଧା ତାର ଜାତି ଓ ପୂର୍ବପୁରୁଷଙ୍କ ସମ୍ପର୍କରେ ଏବେ ବି ସେ ଗର୍ବ ଅନୁଭବ କରେ । ହିନ୍ଦୁ ଓ ମୁସଲମାନ ଉଭୟ ଧର୍ମର କୁଟୀରଶିଳ୍ପୀର ଦକ୍ଷତା ମତେ ବିସ୍ମିତ କରିଛି । ଆଉଧ ଓ ପୂର୍ବାଞ୍ଚଳ ଜିଲ୍ଲାମାନଙ୍କରେ ଯେଉଁ ଦରିଦ୍ର ଶ୍ରେଣୀ ଓ ଭାଗଚାଷୀ ବିପୁଳ ସଂଖ୍ୟାରେ ବାସକରୁଥିଲେ ଓ ଯେଉଁମାନେ ଯୁଗ-ଯୁଗର ଅତ୍ୟାଚାର ଓ ଦାରିଦ୍ର୍ୟର ପୀଡ଼ନରେ ନିଷ୍ପେଷିତ ହୋଇ ଭାଗ୍ୟରେ ଆଉ ପରିବର୍ତ୍ତନ ଘଟିବ ବୋଲି ଆଶା ବି ରଖିନଥିଲେ, ସେମାନଙ୍କ ଭିତରେ ଆଶା ଓ ବିଶ୍ୱାସର ସୂଚନା ଦେଖି ମୁଁ ଉଲ୍ଲସିତ ହେଉଥିଲି ।

ତୃତୀୟ ଦଶକରେ, ଜେଲ ବାହାରେ ରହୁଥିବା ସମୟ ଭିତରେ ଓ ବିଶେଷ କରି ୧୯୩୬-୩୭ ନିର୍ବାଚନ ଗସ୍ତରେ ମୁଁ ଗ୍ରାମ, ସହର, ନଗର ବ୍ୟାପକ ଭାବରେ ଭାରତ ସାରା ପର୍ଯ୍ୟଟନ କଲି । କେବଳ ବଙ୍ଗ ପ୍ରଦେଶର ପଲ୍ଲୀ ଅଞ୍ଚଳକୁ ମୁଁ ଖୁବ୍ ବିରଳ ଭାବରେ ଯାଇଛି; କିନ୍ତୁ ଅନ୍ୟ ପ୍ରଦେଶମାନଙ୍କରେ ଦୂର ଗ୍ରାମାଞ୍ଚଳ ମଧ୍ୟ ମୁଁ ଗସ୍ତ କରିଛି । ମୁଁ ସେମାନଙ୍କୁ ରାଜନୀତି ଓ ଅର୍ଥନୀତିର ବିଭିନ୍ନ ସମସ୍ୟା ନେଇ କହୁଥିଲି ଏବଂ ମୋର ଭାଷଣରୁ ମୁଁ ବୁଝିପାରୁଥିଲି ଯେ ରାଜନୀତି ଓ ନିର୍ବାଚନ ମୋର ମନକୁ ପୂର୍ଣ୍ଣ କରି ରଖିଛି । ତଥାପି ଏ ସବୁ ଭିତରେ ମଧ୍ୟ ମୋର ମନର କୌଣସି ଏକ କୋଣରେ ଆହୁରି ଗମ୍ଭୀରତର ଓ ସ୍ପଷ୍ଟତର କିଛି ରହିଥିଲା, ଯାହା ପାଖରେ ନିର୍ବାଚନ ଅବା ଅନ୍ୟ ସବୁ ସାମୟିକ ଉତ୍ତେଜନାର ବିଶେଷ ମୂଲ୍ୟ ନଥିଲା । ମୁଁ ଅନ୍ୟ ଏକ ବଳିଷ୍ଠ ଉତ୍ତେଜନାର ବଶବର୍ତ୍ତୀ ହୋଇ ପଡ଼ିଲି ଓ ପୁନର୍ବାର ଭାରତ ଆବିଷ୍କାର କରି ବାହାରିଲି ଏବଂ ମୋର ସମ୍ମୁଖରେ ବିସ୍ତୃତ ରହିଥିଲା ଭାରତବର୍ଷ ଓ ତାର ଜନସାଧାରଣ । ତାର ବିବିଧତା ଓ ଅକଳନୀୟ ଆକର୍ଷଣ ଯେମିତି ଭାରତ ମତେ ଆବୃତ୍ତ କରୁଥିଲା ଓ ଯେତିକି ତାର ଭିତରେ ମୁଁ ପ୍ରବେଶ କରୁଥିଲି, ବୁଝି-ପାରୁଥିଲି, ମୋ ପକ୍ଷରେ ହେଉ କିମ୍ବା ଅନ୍ୟ କାହା ପକ୍ଷରେ ହେଉ, ଯେଉଁ ସବୁ ଭାବ ତାର ଭିତରେ ସନ୍ନିବେଶିତ ହୋଇଛି, ହୃଦୟଙ୍ଗମ କରିବା କେତେ କଷ୍ଟସାଧ୍ୟ; ତାର ଭୂଖଣ୍ଡର ବ୍ୟାପ୍ତି ଅବା ତାର ବିବିଧତା ମୁଁ ବୁଝିପାରୁ ନ ଥିଲି ବୋଲି ନୁହେଁ, ପରନ୍ତୁ ତାର ଆତ୍ମାର ସେପରି କିଛି ଗଭୀରତା ଯାହାର ତଳ ମୁଁ କିଛି କଳନା କରିପାରୁନଥିଲି, କଦାଚିତ୍ ଓ ଧରାଛୁଆଁର ଅତୀତ, ତାର ଗୋଟାଏ ଝଲକ ମତେ ଦିଶିଯାଉଥିଲା । ସେପରି ଏକ ପ୍ରାଚୀନ ପାଣ୍ଡୁଲିପି ଭଳି ଭାରତ ମତେ ବୋଧ ହେଉଥିଲା, ଯାହା ଉପରୁ ପୁରାତନ ଲିପି ପୋଛିଦେଇ ଯୁଗ ପରେ ଯୁଗ କେତେ ନୂଆ ଚିନ୍ତା ଓ ସ୍ୱପ୍ନ ଲେଖାଯାଉଥିଲେ ସୁଦ୍ଧା କୌଣସି ନୂତନ ଲେଖା ତାର ପୂର୍ବବର୍ତ୍ତୀ ଲେଖାଗୁଡ଼ିକୁ ସମ୍ପୂର୍ଣ୍ଣ ଭାବରେ ଲୁଚାଇ କିମ୍ବା ଲିଭାଇ ପାରିନଥିଲା । ଆମେ ଜାଣିପାରୁ ନଥିଲେ ମଧ୍ୟ ଏସବୁ ଆମର ସ୍ଥୂଳଚେତନ ଓ ମଗ୍ନଚେତନରେ ରହିଥିଲା ଏବଂ ସେ ସବୁ ଉପାଦାନରେ ନିର୍ମିତ ହୋଇଛି ଜଟିଳ ଓ ରହସ୍ୟମୟ ଭାରତର ବ୍ୟକ୍ତିତ୍ୱ । ସେହି ଦୁର୍ବୋଧ ମୁହଁ, ତାର ଭୁଲାଣିଆ ମନ୍ଦହାସ,

କେବେ କେବେ ଉପହାସପ୍ରବଣ, ବେଳେବେଳେ ଯାହା ବଡ଼ମୂର୍ଖ ବୋଲି ବୋଧ ହେଉଥାଏ କୁମାରୀ ଓ ହିମାଚଳ ଦୃଷ୍ଟିରେ ପଡ଼େ । ଆମ ଲୋକଙ୍କର ବାହ୍ୟ ବିବିଧତା ସତ୍ତ୍ୱେ ସର୍ବତ୍ର ମୁଁ ବିପୁଳ ଏକତାର ଚିହ୍ନ ଲକ୍ଷ୍ୟ କରିଛି, ଯାହା କେତେ ରାଜନୈତିକ ଓ ଅନ୍ୟାନ୍ୟ ଦିଗର ବିପର୍ଯ୍ୟୟ ସତ୍ତ୍ୱେ ଯୁଗ ଯୁଗ ଧରି ଆମକୁ ସମ୍ମିଳିତ କରି ରଖିଛି । ଭାରତର ଏକତା ମୋ ପାଖରେ ଗୋଟାଏ ବୌଦ୍ଧିକ ଧାରଣା ହୋଇ ଆଉ ନଥିଲା । ଏହା ଗୋଟାଏ ପ୍ରତ୍ୟକ୍ଷୋଭଗତ ଅନୁଭୂତି ଭାବରେ ମତେ ଅଭିଭୂତ କରୁଥିଲା । ସାରତଃ, ସେହି ଏକତା ଏତେ ଶକ୍ତିଶାଳୀ ଥିଲା ଯେ କୌଣସି ରାଜନୈତିକ ବିଭାଜନ, ଆକସ୍ମିକ ଦୁର୍ଭାଗ୍ୟ ଅବା ଦୁର୍ଯୋଗ ତାକୁ ପରାଜିତ କରିପାରି ନଥିଲା ।

ଭାରତ ବା ଅନ୍ୟ ଯେ କେଉଁ ଦେଶ ହେଉ, ତାକୁ ମାନବଦେହୀ କୌଣସି ଅମାନୁଷିକ ସତ୍ତା ଭାବରେ ବିଚାର କରିବା ହାସ୍ୟାସ୍ପଦ । ମୁଁ ସେପରି କେବେ କରିନି । ଭାରତୀୟ ଜୀବନର ଶ୍ରେଣୀ, ବର୍ଣ୍ଣ, ଧର୍ମ ଓ ବିଭିନ୍ନ ଜାତି ଯେଉଁ ତାର ବିଭିନ୍ନତା ଓ ସ୍ତର ତଥା ଅବସ୍ଥାଭେଦରେ ତାର ସାଂସ୍କୃତିକ ବିକାଶ ସମ୍ପର୍କରେ ମୁଁ ଜ୍ଞାତ ଥିଲି । ତଥାପି ମୁଁ ମନେକରେ ଯେ ଦୀର୍ଘ ସାଂସ୍କୃତିକ ପୃଷ୍ଠଭୂମିସମ୍ପନ୍ନ ଓ ଜୀବନ ପ୍ରତି ଗୋଟାଏ ସାର୍ବଜନୀନ ଦୃଷ୍ଟିଭଙ୍ଗୀ ଧରି ଗୋଟାଏ ଦେଶ ତାର ନିଜସ୍ୱ ଏକ ମାନସିକ ବୃତ୍ତି ବିକାଶ କରିପାରେ ଯାହାର ଛାପ, ପରସ୍ପର ଭିତରେ କେତେ ବିଭିନ୍ନ ହେଲେ ମଧ୍ୟ, ତାର ସନ୍ତାନଙ୍କଠାରେ ପ୍ରକାଶ ପାଏ । ଚୀନରେ ବି ଯେ କେଉଁ ଚୀନା ମୁହଁରେ, ସେ ରକ୍ଷଣଶୀଳ ରାଜକର୍ମଚାରୀ ହୋଇ କିମ୍ବା ଅତୀତରୁ ବିଚ୍ଛିନ୍ନ କମ୍ୟୁନିଷ୍ଟ ହେଉ, ଏହା ଦୃଷ୍ଟିରେ ପଡ଼େ । ଭାରତର ଏହି ମାନସିକବୃତ୍ତି ପଛରେ ମୁଁ ଲାଗିଥିଲି । ଯଦିଓ ମୋର ଯଥେଷ୍ଟ କୌତୂହଳ ଥିଲା, ତଥାପି କୌଣସି ଅକାରଣ କୌତୂହଳ ପାଇଁ ନୁହେଁ, ପରନ୍ତୁ ମୁଁ ଅନୁଭବ କରୁଥିଲି ଯେ ମୋ ଦେଶ ଓ ମୋର ଜନସାଧାରଣଙ୍କୁ ବୁଝିବା ପାଇଁ ସେଥିରୁ ମତେ ବାଟ ମିଳିବ ଏବଂ ଚିନ୍ତା ଓ କର୍ମ ନିମନ୍ତେ ଦିଗର ସନ୍ଧାନ ମିଳିବ । ରାଜନୀତି ଓ ନିର୍ବାଚନ ଥିଲା ଦୈନନ୍ଦିନ ବ୍ୟାପାର, ଯେବେ କୌଣସି ତୁଚ୍ଛ ପ୍ରତିବନ୍ଧକ ଉପରେ ଆମେ ଉତ୍ତେଜିତ ହୋଇପଡ଼ୁଥିଲୁ; କିନ୍ତୁ ଆମେ ଯଦି ଭାରତର ଭବିଷ୍ୟତର ପ୍ରାସାଦ ଦୃଢ଼, ସୁନ୍ଦର ଓ ନିରାପଦ ଭାବରେ ଗଢ଼ିବା ପାଇଁ ଯାଉଥାଇଁ ତାହାହେଲେ ଆମକୁ ବହୁତ ଗଭୀର ପର୍ଯ୍ୟନ୍ତ ଖୋଳି ଭିତ୍ତି ସ୍ଥାପନ କରିବାକୁ ପଡ଼ିବ ।

## ୪. ଭାରତମାତା

ସଭା ପରେ ସଭା କରି ମୁଁ ଯେବେ ବୁଲୁଥିଲି ବାରମ୍ବାର ମୋର ଶ୍ରୋତାଙ୍କୁ ଆମର ଏହି ହିନ୍ଦୁସ୍ଥାନ ତଥା ଭାରତବର୍ଷ ( ପୁରାଣର ରାଜା ଭରତଙ୍କଠାରୁ ଯେଉଁ ଶବ୍ଦର ଉତ୍ପତ୍ତି ) ବିଷୟରେ କହୁଥିଲି । ସହରମାନଙ୍କରେ ମୁଁ ସେ ବିଷୟ କହେନି; କାରଣ ସେଠାର ଶ୍ରୋତା ଗ୍ରାମବାସୀଙ୍କ ଭଳି ସେତେ ସରଳ ନୁହଁନ୍ତି ଓ ସେମାନେ ମୋ ପାଖରୁ ଅନ୍ୟାନ୍ୟ

ସମସ୍ୟାପୂର୍ଣ୍ଣ ବିଷୟ ଶୁଣିବାକୁ ଚାହିଁଥାନ୍ତି; କିନ୍ତୁ ଚାଷୀକୁ, ଯାହାର ଦୃଷ୍ଟିକୋଣ ସୀମିତ, ମୁଁ ଆମର ଏହି ମହାନ୍ ଦେଶ ଓ ତାର ମୁକ୍ତି ନିମନ୍ତେ ଆମେ କିଭଳି ସଂଗ୍ରାମ କରୁଚୁ ଆଉ ପ୍ରଦେଶ ପ୍ରଦେଶ ଭିତରେ ନାନା ବିଭିନ୍ନତା ସତ୍ତ୍ୱେ ଭାରତ କିପରି ଏକ ଓ ଅଖଣ୍ଡ, ଦେଶରେ ସର୍ବତ୍ର—ପୂର୍ବରୁ ପଶ୍ଚିମ ଓ ଉତ୍ତରରୁ ଦକ୍ଷିଣ ପର୍ଯ୍ୟନ୍ତ ଚାଷୀର ସମସ୍ୟା କିପରି ସମାନ ଏବଂ ସ୍ୱରାଜ୍ୟ କିପରି ସମସ୍ତଙ୍କ ପାଇଁ, ଦେଶରେ କୌଣସି ଗୋଟାଏ ଅଂଶ ଅବା କେତେ ଲୋକଙ୍କ ପାଇଁ ନୁହେଁ, ଏପରି ନାନା ବିଷୟରେ ମୁଁ ସେମାନଙ୍କୁ କହୁଥିଲି । ଦେଶର ଉତ୍ତର-ପଶ୍ଚିମରେ ଖାଇବର ଗିରିସଙ୍କଟଠାରୁ ଆରମ୍ଭକରି ଦୂର ଦକ୍ଷିଣରେ କନ୍ୟାକୁମାରୀ ପର୍ଯ୍ୟନ୍ତ ଯାତ୍ରା କରି ସର୍ବତ୍ର ଚାଷୀମାନଙ୍କର ସାଧାରଣ ସମସ୍ୟା—ଦାରିଦ୍ର୍ୟ, ଋଣ, ନ୍ୟସ୍ତସ୍ୱାର୍ଥ, ଜମିଦାର, ସାହୁକାର, କରଭାର, ପୁଲିସ ଅତ୍ୟାଚାର କିପରି ରହିଚି ଓ ଏ ସବୁ ଗୋଟାଏ ଶାସନ ବ୍ୟବସ୍ଥାରେ ଏକତ୍ରିତ କରି ଗୋଟାଏ ବିଦେଶୀ ସରକାର କିପରି ଆମ ଉପରେ ଲଦିଦେଇଚି ଓ ଆମ ସମସ୍ତଙ୍କୁ କିପରି ସେ ପଥର ତଳୁ ଉଦ୍ଧାର ପାଇବାକୁ ହେବ, ସେମାନଙ୍କୁ ବୁଝାଉଥିଲି । ଭାରତକୁ ଏକ ଓ ଅଖଣ୍ଡ ଭାବରେ ବିଚାର କରିବା ପାଇଁ ଓ କେତେ ପର୍ଯ୍ୟନ୍ତ, ଭାରତକୁ ସମଗ୍ର ବିଶ୍ୱର ଗୋଟିଏ ଅଂଶ ଭାବରେ ଗ୍ରହଣ କରିବା ପାଇଁ ମୁଁ ସେମାନଙ୍କୁ ବୁଝାଇବାକୁ ଚେଷ୍ଟା କରୁଥିଲି । ଚୀନ ଓ ସ୍ପେନ୍, ଆବିସିନିଆ, ମଧ୍ୟ-ୟୁରୋପ, ମିଶର ଓ ପଶ୍ଚିମ-ଏସିଆ ଦେଶମାନଙ୍କରେ ଚାଲିଥିବା ସଂଗ୍ରାମ ବିଷୟରେ ବି କହୁଥିଲି । ମୁଁ କହୁଥିଲି ସୋଭିଏଟ୍ ୟୁନିଅନରେ କିଭଳି ବିସ୍ମୟକର ପରିବର୍ତ୍ତନ ଅଣାଯାଇଚି ଓ ଆମେରିକା କିପରି ଅଦ୍‌ଭୁତ ପ୍ରଗତି କରିଚି । ଏସବୁ ସେମାନଙ୍କୁ ବୁଝାଇବା ସହଜ ନୁହେଁ; କିନ୍ତୁ ମୁଁ ଯେତେ ଭଲି ଭାବୁଥିଲି ଏହା ସେତେ କଷ୍ଟକର ନଥିଲା; କାରଣ ଆମର ପୁରାଣ ଓ କିଂବଦନ୍ତୀମାନଙ୍କରେ, ଯାହା ସେମାନେ ଭଲଭାବରେ ଜାଣିଥିଲେ, ଭାରତର ଏକତା ଓ ଅଖଣ୍ଡତାର ଧାରଣା ସଙ୍ଗେ ସେମାନେ ପରିଚିତ ଥିଲେ ଏବଂ ସେମାନଙ୍କ ଭିତରୁ କେତେ ତୀର୍ଥଯାତ୍ରା କରି ଭାରତର ଅଖଣ୍ଡତା ହୃଦୟଙ୍ଗମ କରି ପାରିଥିଲେ । ସେମାନଙ୍କ ଭିତରେ କେତେ ଅବସରପ୍ରାପ୍ତ ସୈନିକ ବି ଥିଲେ, ଯେଉଁମାନେ ପ୍ରଥମ ବିଶ୍ୱଯୁଦ୍ଧ ଅବା ଅନ୍ୟାନ୍ୟ ଯୁଦ୍ଧ ଅଭିଯାନରେ ଭାରତ ବାହାରେ ନାନା ସ୍ଥାନ ଦେଖିଥିଲେ । ତୃତୀୟ ଦଶକରେ ବ୍ୟବସାୟ-ବାଣିଜ୍ୟରେ ସମଗ୍ର ପୃଥିବୀରେ ଯେଉଁ ମାନ୍ଦ୍ୟ ଉପୁଜିଥିଲା ଓ ତାର ପରିଣାମ ଯେହେତୁ ସେମାନଙ୍କୁ ମଧ୍ୟ ସ୍ପର୍ଶ କରିଥିଲା, ବିଦେଶ ସମ୍ପର୍କରେ ମୁଁ ଉଲ୍ଲେଖ କଲାବେଳେ ସେମାନେ ବୁଝି ପାରୁଥିଲେ ।

କେବେ କେବେ କୌଣସି ଜନସମାବେଶରେ ପ୍ରବେଶ କଲାବେଳେ ସମ୍ମିଳିତ ଉଚ୍ଚ କଣ୍ଠରେ "ଭାରତ ମାତାର ଜୟ" କହି ମତେ ସ୍ୱାଗତ କରାଯାଇଥାଏ । ଅପ୍ରତ୍ୟାଶିତ ଭାବରେ ମୁଁ ସେମାନଙ୍କୁ ପଚାରିଥାଏ ଯେ ଏ ଚିତ୍କାରର ଅର୍ଥ କ'ଣ, କିଏ ଏହି ଭାରତମାତା, ଯାହାର ବିଜୟ ସେମାନେ ଚାହୁଁ ଚନ୍ତି । ମୋ ପ୍ରଶ୍ନ ସେମାନଙ୍କୁ ଆମୋଦିତ କରେ ଓ ବିସ୍ମିତ ବି କରେ ଏବଂ କ'ଣ ବୋଲି ଉତ୍ତର ଦେବେ ଠିକ୍ ଜାଣିନପାରି ସେମାନେ ପରସ୍ପର ମୁହଁକୁ ଚାହିଁ ରହନ୍ତି । ମୁଁ କିନ୍ତୁ ଉତ୍ତର ଅପେକ୍ଷାରେ ରହିଥାଏ । ପରିଶେଷରେ, କେତେ ଅଗଣିତ

ପୁରୁଷଧରି ମାଟି ହିଁ ଯା'ର ସର୍ବସ୍ୱ, ଜଣେ କର୍ମପ୍ରାଣ ଜାଠ ଚାଷୀ ଆଗେଇ ଆସି କହେ ଯେ ଏହି ଧରିତ୍ର, ଭାରତର ଏହି ଶୁଭ ମାଟିକୁ ସେମାନେ ଭାରତମାତା ବୋଲି ବୁଝିଚନ୍ତି । କେଉଁ ମାଟି ? ସେମାନଙ୍କର ଏଇ ଗାଁ ମାଟି, ସେ ଜିଲ୍ଲା, ସେ ପ୍ରଦେଶର ମାଟି ନା ସମଗ୍ର ଭାରତର ? ଏ ପ୍ରକାର ପ୍ରଶ୍ନୋତ୍ତର ସେ ପର୍ଯ୍ୟନ୍ତ ଚାଲେ ଯେବେ ସେମାନେ ଅଧୀର ହୋଇ ସେ ସବୁ ବିଷୟ କହିବା ପାଇଁ ମତେ ଧରି ବସନ୍ତି । ମୁଁ ସେମାନଙ୍କୁ ବୁଝାଇବାକୁ ଚେଷ୍ଟା କରେ ଯେ ସେମାନେ ଯାହା ବୁଝିଚନ୍ତି ଭାରତ ସେଇଆ ସତ; କିନ୍ତୁ ତଦପେକ୍ଷା ସେ ଆହୁରି ମଧ୍ୟ ବଡ଼ । ଭାରତର ପର୍ବତ ଶ୍ରେଣୀ ଓ ନଦୀ, ତାର ଅରଣ୍ୟ ଓ ବିଲମାଳ ଯାହା ଆମକୁ ଆହାର ଯୋଗାଏ, ସବୁ ଆମର ପ୍ରିୟ କିନ୍ତୁ ଶେଷ ପର୍ଯ୍ୟନ୍ତ ବୁଝି ବୁଝି ଗଲେ ଆମେ ଉପଲବ୍ଧି କରିବା, ଏହି ବିଶାଳ ଭୂଖଣ୍ଡରେ ବ୍ୟାପ୍ତ ହୋଇ ରହିଥିବା ମୋ ଭଳି ଆଉ ସେମାନଙ୍କ ଭଳି ଭାରତକୁ ଆପଣାର ମଣି ରହିଥିବା ଜନସାଧାରଣହିଁ ପ୍ରଧାନ । ଭାରତମାତା ହେଉଛି ସାରତଃ ଭାରତର କୋଟିକୋଟି ଜନସାଧାରଣ ଏବଂ ଭାରତମାତାର ଜୟ ହେଉଚି ଜନସାଧାରଣଙ୍କ ବିଜୟ । ମୁଁ ସେମାନଙ୍କୁ କହୁଥିଲି ଯେ ସେମାନେ ଭାରତମାତାର ଅଂଶ ଏବଂ ସେମାନେ ପ୍ରତ୍ୟେକେ ଏକରକମ ଭାରତମାତା । ଏଇ ଭାବ ଧୀରେ ଧୀରେ ସେମାନଙ୍କ ମନକୁ ଯେବେ ଆପ୍ଳୁତ କରେ, କୌଣସି ଗୋଟାଏ ମହାନ ଆବିଷ୍କାର ସେମାନେ ଯେପରି କରିଛନ୍ତି, ସେ ଆନନ୍ଦ ସେମାନଙ୍କ ଆଖିରେ ଦୀପ୍ତ ହୋଇଉଠେ ।

## ୬. ଭାରତର ଅଭିନ୍ନତା ଓ ଏକତା

ଭାରତର ବିଭିନ୍ନତା ଅତ୍ୟଧିକ ଓ ଏହା ସ୍ପଷ୍ଟ ପ୍ରତୀୟମାନ । ଆଖି ବୁଲାଇନେଲେ ଯେ କେଉଁ ଲୋକ ଏହା ଲକ୍ଷ୍ୟ କରିପାରିବ । ଶାରୀରିକ ଓ କେତେକ ମାନସିକ ଅଭ୍ୟାସ ଓ ଆଚରଣରେ ଏହା ବିଦ୍ୟମାନ । ବାହାରୁ ଦେଖିଲେ ଭାରତର ଉତ୍ତର-ପଶ୍ଚିମାଞ୍ଚଳ ଅଧିବାସୀ ପଠାଣ ଓ ଦୂର ଦକ୍ଷିଣର ତାମିଲ ମଧ୍ୟରେ କୌଣସି ସାଦୃଶ୍ୟ ନାହିଁ । ଜାତି, ଚେହେରା, ଖାଦ୍ୟ ଓ ପୋଷାକ ଏବଂ ଭାଷାରେ ସେମାନେ ବିଭିନ୍ନ । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ ମଧ୍ୟ-ଏସିଆର ପ୍ରଭାବ ଦେଖିବାକୁ ମିଳେ ଓ କାଶ୍ମୀର ଭଳି ସେଠାରେ ଅନେକ ପ୍ରଥା ହିମାଳୟ ଅପର ପାର୍ଶ୍ୱର କେତେ ଦେଶର କଥା ସ୍ମରଣ କରାଏ । ପଠାଣ ଲୋକନୃତ୍ୟ ଠିକ୍ ରୁଷିଆ ଦେଶର କୋସାକ ନୃତ୍ୟଭଳି । ତଥାପି, ସବୁ ପାର୍ଥକ୍ୟ ସତ୍ତ୍ୱେ ତାମିଲଠାରେ ଯେପରି ସୁବ୍ୟକ୍ତ, ପଠାଣ ଦେହରେ ମଧ୍ୟ ଭାରତର ସ୍ପଷ୍ଟ ଚିହ୍ନ ଦୃଷ୍ଟିଗୋଚର ହୁଏ । ଏଥିରେ ବିସ୍ମିତ ହେବାର କିଛି ନାହିଁ । କାରଣ ଏସମସ୍ତ ସୀମାନ୍ତ ଅଞ୍ଚଳ ଓ ଆଫଗାନସ୍ଥାନ ମଧ୍ୟ ହଜାର ହଜାର ବର୍ଷ ଧରି ଭାରତର ଅନ୍ତର୍ଭୁକ୍ତ ଥିଲା । ପ୍ରାଚୀନ କାଳରେ ତୁର୍କୀ ଓ ଅନ୍ୟାନ୍ୟ ଜାତିମାନେ ଯେଉଁମାନେ ଇସଲାମର ଅଭ୍ୟୁଦୟ ପୂର୍ବରୁ ଆଫଗାନସ୍ତାନ ଓ ମଧ୍ୟ-ଏସିଆର କେତେକ ଅଞ୍ଚଳରେ ବାସ କରୁଥିଲେ, ମୁଖ୍ୟତଃ ବୌଦ୍ଧଧର୍ମାବଲମ୍ବୀ ଥିଲେ । ତା'ପୂର୍ବରୁ ପୁରାଣ ଯୁଗରେ ହିନ୍ଦୁ ଥିଲେ । ଏହି ସୀମାନ୍ତ ଅଞ୍ଚଳ ପ୍ରାଚୀନ ଭାରତୀୟ ସଂସ୍କୃତିର

ଅନ୍ୟତମ ମୁଖ୍ୟ କେନ୍ଦ୍ର ଥିଲା ଏବଂ ଆଜି ବି ସେଠାରେ ବହୁ ସ୍ତୂପ, ମନ୍ଦିର ଓ ବୌଦ୍ଧ ବିହାରମାନଙ୍କର ଧ୍ୱଂସାବଶେଷ ଦେଖିବାକୁ ମିଳେ । ସେଥିଭିତରେ ବିଶେଷ ଉଲ୍ଲେଖଯୋଗ୍ୟ ହେଉଛି ମହାନ୍ ତକ୍ଷଶିଳା ବିଶ୍ୱବିଦ୍ୟାଳୟ ଯାହା ଦୁଇ ହଜାର ବର୍ଷ ପୂର୍ବେ ବିଖ୍ୟାତ ଥିଲା ଏବଂ ଭାରତ ତଥା ଏସିଆର ବହୁ ଅଞ୍ଚଳରୁ ବିଦ୍ୟାର୍ଥୀମାନଙ୍କୁ ଆକର୍ଷଣ କରିଥିଲା । ଧର୍ମର ପରିବର୍ତ୍ତନ ପାର୍ଥକ୍ୟ ଅବଶ୍ୟ ସୃଷ୍ଟି କଲା; କିନ୍ତୁ ସେ ସବୁ ଅଞ୍ଚଳର ଲୋକେ ଯୁଗ ଯୁଗ ଧରି ଯେଉଁ ମାନସିକ ପୃଷ୍ଠଭୂମି ରଚନା କରିଥିଲେ, ତାକୁ ସମ୍ପୂର୍ଣ୍ଣ ରୂପରେ ପରିବର୍ତ୍ତନ କରି ପାରିଲା ନାହିଁ ।

ପଠାଣ ଓ ତାମିଲ ଦୁଇଟି ଉପାନ୍ତ ଦୃଷ୍ଟାନ୍ତ । ଅନ୍ୟମାନେ ଏଥିଭିତରେ କିଏ କେଉଁଠି ଅବସ୍ଥିତ । ଏ ସମସ୍ତଙ୍କର ବାହ୍ୟ ସ୍ୱକୀୟତା ସ୍ପଷ୍ଟ ଭାବରେ ସ୍ୱତନ୍ତ୍ର ହେଲେହେଁ ସମସ୍ତଙ୍କ-ଠାରେ ଅପେକ୍ଷାକୃତ ଅଧିକତର ଭାବରେ ଭାରତର ବିଶିଷ୍ଟ ଲକ୍ଷଣ ବିଦ୍ୟମାନ । ବଙ୍ଗାଳୀ, ମରାଠୀ, ଗୁଜୁରାଟୀ, ତାମିଲ, ଆନ୍ଧ୍ର, ଓଡ଼ିଆ, ଆସାମୀ, କାନାଡ଼ି, ମାଲୟାଳୀ, ସିନ୍ଧି, ପଞ୍ଜାବୀ, ପଠାଣ, କାଶ୍ମୀରୀ, ରାଜପୁତ ଓ ହିନ୍ଦୀ ଭାଷାଭାଷୀ ଭାରତର ବିଶାଳ ଭୂଖଣ୍ଡର ଅଧିବାସୀ ଶହ ଶହ ବର୍ଷ ଧରି ସେମାନଙ୍କର ବିଶେଷ ବିଶେଷ ସ୍ୱକୀୟତା ଉପରି ଧାରଣ କରିପାରିଛନ୍ତି, ପ୍ରାଚୀନ ପରମ୍ପରା ଓ ଅନ୍ୟାନ୍ୟ ନଥିପତ୍ରରୁ ସେମାନଙ୍କର ଗୁଣ ଓ ଅବଗୁଣ ସମ୍ପର୍କରେ ଯାହା ଦେଖିବାକୁ ମିଳେ, ତାହା ଆଜି ସୁଦ୍ଧା କମ୍-ବହୁତରେ ସେମାନେ ଉପରି ରକ୍ଷା କରିଛନ୍ତି ଏବଂ ଯୁଗ ଯୁଗ ଧରି ତଥାପି ଉପରି ସମାନ ଜାତୀୟ ଐତିହ୍ୟ ଓ ସମାନ ନୈତିକ ତଥା ମାନସିକ ଗୁଣରେ ବିଶେଷ ରୂପରେ ଭାରତୀୟ ଭାବରେ ରହିଆସିଛନ୍ତି, ବାସ୍ତବିକ ବଡ଼ ବିସ୍ମୟକର । ଏହି ଐତିହ୍ୟରେ ସେପରି ଜୀବନ୍ତ ଓ ଗତିଶୀଳ କିଛି ଥିଲା, ଯାହା ଏମାନଙ୍କ ଜୀବନଧାରଣର ବିଭିନ୍ନ ପ୍ରଣାଳୀରେ ଏବଂ ଜୀବନ ଓ ତାର ବିବିଧ ସମସ୍ୟା ପ୍ରତି ଗୋଟାଏ ଦାର୍ଶନିକ ମନୋବୃତ୍ତିରେ ପ୍ରକାଶ ପାଇଥିଲା । ପ୍ରାଚୀନ ଚୀନ ଭଳି ପ୍ରାଚୀନ ଭାରତ ନିଜ ଭିତରେ ସୀମିତ ଗୋଟାଏ ସ୍ୱତନ୍ତ୍ର ବିଶ୍ୱ, ଗୋଟାଏ ସଂସ୍କୃତି ଓ ସଭ୍ୟତା ଯାହା ସବୁ କିଛିକୁ ଉଦ୍ଦେଶ୍ୟ ଅର୍ପଣ କରିଥିଲା । ବହିରାଗତ ପ୍ରଭାବମାନ ସେହି ସଂସ୍କୃତିକୁ ପ୍ରଭାବିତ କରିଛନ୍ତି ଓ କାଳକ୍ରମେ ସେଥିରେ ହଜିଯାଇଛନ୍ତି । ବିଚ୍ଛିନ୍ନକାରୀ କୌଣସି ସୂଚନା ଦୃଷ୍ଟିଗୋଚର ହେବା ମାତ୍ରେ ସମନ୍ୱୟ ନିମନ୍ତେ ଉଦ୍ୟମ କରାଯାଇଛି । ସଭ୍ୟତାର ଅରୁଣ ପ୍ରଭାତରୁ ଏକତାର ଏକ-ପ୍ରକାର ସ୍ୱପ୍ନ ଭାରତର ମନକୁ ଆଚ୍ଛନ୍ନ କରି ଆସିଛି । ବାହାରର କୌଣସି ଲଦନ ଭାବରେ, ବାହ୍ୟ ବସ୍ତୁର ଅବା ବିଶ୍ୱାସର ମଧ୍ୟ ପ୍ରମାଣୀକରଣ ଭାବରେ ସେହି ଏକତାର ଧାରଣା କରାଯାଇ ନଥିଲା । ତାହା ଏ ସବୁଠାରୁ ଗଭୀରତର ଥିଲା ଓ ତାର ଭିତରେ ଧର୍ମବିଶ୍ୱାସ ଓ ପ୍ରଥା ବିସ୍ତୃତ ଭାବରେ ସହନ କରାଯାଇଥିଲା ଏବଂ ପ୍ରତ୍ୟେକ ପ୍ରକାର ପାର୍ଥକ୍ୟକୁ ସ୍ୱୀକାର କରି ତାର ବିକାଶ ଉତ୍ସାହିତ କରାଯାଉଥିଲା ।

ବଡ଼ ହେଉ କି ଛୋଟ ହେଉ, କେତେ ଘନିଷ୍ଠ ଭାବରେ ସମ୍ମିଳିତ ପଛେ ହେଉ ଗୋଟାଏ ଜାତୀୟ ଗୋଷ୍ଠୀଭିତ୍ତିକ ବିଭିନ୍ନତା ଦେଖାଯିବା କିଛି ଅସାଧାରଣ ନୁହେଁ । ସାରତଃ, ସେହି ଗୋଷ୍ଠୀର ଏକତା ପ୍ରତୀୟମାନ ହୁଏ ଯେବେ ଅନ୍ୟ କେଉଁ ଜାତୀୟ ଗୋଷ୍ଠୀ ସଙ୍ଗେ ତାର୍

ତୁଳନା କରାଯାଇଥାଏ; ଯଦିଓ ସୀମାନ୍ତ ଅଞ୍ଚଳରେ ଏଭଳି ଦୁଇଟି ସଂଲଗ୍ନଗୋଷ୍ଠୀ ପରସ୍ପର ଭିତରେ ମିଳିମିଶି ପ୍ରାୟ ଏକାକାର ହୋଇଯାଇଥାନ୍ତି । ଆହୁରି ମଧ୍ୟ, ଆଧୁନିକ ବିଭିନ୍ନ ବିକାଶର ଧାରା ସର୍ବତ୍ର ଗୋଟାଏ ପ୍ରକାର ସମାନତା ପ୍ରତିଷ୍ଠା କରିବାର ବଳିଷ୍ଠ ସୂଚନା ପ୍ରକାଶ କରୁଛି ।

ପ୍ରାଚୀନ କାଳରେ ଓ ମଧ୍ୟଯୁଗରେ ଆଧୁନିକ ଜାତି-ମିଶ୍ରଣ ଅବା ମହାଜାତିର ଧାରଣା ନଥିଲି । ସାମନ୍ତବାଦ, ଧର୍ମ, ଜାତି ଅବା ସାଂସ୍କୃତିକ ସମ୍ବନ୍ଧର ଗୁରୁତ୍ୱ ବେଶି ଥିଲି । ତଥାପି ମୋର ମନେହୁଏ, ଲିଖିତ ଇତିହାସର ଯେ କେଉଁ ସମୟରେ ଭାରତର ଯେ କେଉଁ ଅଂଶରେ ଜଣେ ଭାରତୀୟ କମ୍ ବିହୁତରେ ଘରୋଇ ପରିବେଶ ଲାଭ କରିଥିବ ଏବଂ ଅନ୍ୟ ଯେ କେଉଁ ଦେଶରେ ତାଙ୍କୁ ଅପରିଚିତ ଓ ପରଦେଶୀ ମଣିଥିବ । ଯେଉଁ ସବୁ ଦେଶରେ ଆଂଶିକ ଭାବରେ ତାର ଧର୍ମ ଅବା ସଂସ୍କୃତି ଗୃହୀତ ହୋଇଛି, ନିଶ୍ଚିତ ଭାବରେ ତାର ସେ ପ୍ରକାର ଅପରିଚିତ ଭାବ ଲାଘବ ହୋଇଥିବ । ଭାରତରୁ ଉଦ୍ଭୂତ ହୋଇ ନଥିବା ଧର୍ମର ଅନୁଗାମୀ ଯଥା ଖ୍ରୀଷ୍ଟାନ, ଇହୁଦୀ, ପାରସିକ ଓ ମୁସଲମାନମାନେ ଭାରତକୁ ଆସି ଏଠାରେ ଅଧିଥାନ ହୋଇ କେତେ ପୁରୁଷ ଭିତରେ ସ୍ପଷ୍ଟଭାବରେ ଭାରତୀୟରେ ପରିଣତ ହେଲେ । ଭାରତୀୟମାନେ ଧର୍ମାନ୍ତର ଗ୍ରହଣ କଲେ ମଧ୍ୟ ସେ ପ୍ରକାର ପରିବର୍ତ୍ତନରେ କେବେ-ହେଲେ ସେମାନଙ୍କର ଭାରତୀୟତା ହରାଇ ନାହାନ୍ତି । ଅନ୍ୟାନ୍ୟ ଦେଶରେ, ସେମାନଙ୍କର ଧର୍ମ ସମ୍ବନ୍ଧ ଥିଲେ ମଧ୍ୟ ସେମାନେ ସର୍ବଦା ଭାରତୀୟ ଓ ପରଦେଶୀ ବୋଲି କେବଳ ବିବେଚିତ ହୋଇଚନ୍ତି ।

ଆଜି ଜାତୀୟବାଦ ଧାରଣାର ଯେବେ ସବିଶେଷ ବିକାଶ ଘଟିଚି, ବିଦେଶରେ ଭାରତୀୟ-ମାନେ ସେମାନଙ୍କର ଆଭ୍ୟନ୍ତରୀଣ ବହୁ ପାର୍ଥକ୍ୟ ସତ୍ତ୍ୱେ ନାନା ଉଦ୍ଦେଶ୍ୟରୁ ଗୋଟାଏ ଜାତୀୟ ଗୋଷ୍ଠୀ ଭାବରେ ପରିଚିତ ହେଉଚନ୍ତି । ସେ ଯେଉଁଠାକୁ ଯାଉ, ଜଣେ ଭାରତୀୟ ଖ୍ରୀଷ୍ଟାନକୁ ଭାରତୀୟ ଭାବରେ ହିଁ ଗ୍ରହଣ କରାଯାଏ । ତୁରସ୍କ, ଆରବ, ପାରସ୍ୟ ଅବା ଅନ୍ୟ ଯେ କେଉଁ ଦେଶ ଯେଉଁଠି ଇସଲାମର ଆଧିପତ୍ୟ ଅଛି, ସେ ସବୁ ଦେଶରେ ଜଣେ ଭାରତୀୟ ମୁସଲମାନକୁ ଭାରତୀୟ ଭାବରେ ହିଁ ନିଆଯାଏ ।

ଆମେ ସମସ୍ତେ, ମତେ ବୋଧହୁଏ, ଆମ ଜନ୍ମଭୂମି ସମ୍ପର୍କରେ ଭିନ୍ନ ଭିନ୍ନ ଚିତ୍ର ମନରେ ଧରିଥାଉଁ ଏବଂ ଏ ବିଷୟରେ କୌଣସି ଦୁଇଜଣ ସମାନ ଭାବରେ ପ୍ରାୟ ଦେଖି ନଥାନ୍ତି । ମୁଁ ଯେବେ ଭାରତ କଥା ଭାବେ, ନାନା ଚିତ୍ର ମୋର ମାନସପଟରେ ବିରାଜିତ ହୁଏ : ଦିଗନ୍ତବିସ୍ତୃତ ବିଲମାଳ, ମଝିରେ ମଝିରେ କେତେ ଅଗଣିତ କ୍ଷୁଦ୍ର ଗ୍ରାମ; ମୋର ପରିଦର୍ଶିତ କେତେ ସହର ଓ ନଗରୀ; ବର୍ଷା ଋତୁର ଜାଦୁ—ଶୁଷ୍କ ଭୂମିରେ ଜୀବନ ସଞ୍ଚାର କରି ଯାହା ଅବଲମ୍ବେ ଚତୁର୍ଦ୍ଦିଗରେ ସୌନ୍ଦର୍ଯ୍ୟ ଓ ସବୁଜିମା ରଚନା କରେ, ଆଉ କେତେ ବିଶାଳ ନଦୀବକ୍ଷ ଉଚ୍ଛଳ ତରଙ୍ଗମାଳାରେ ବିଭୂଷିତ କରେ; ଖାଇବର ଗିରିସଙ୍କଟର ଅପ୍ରସନ୍ନ ପରିବେଶ ଓ ମହାସାଗର-ବିଧୌତ କୁମାରିକା ଅନ୍ତରୀପ; ଅଗଣିତ ଜନସାଧାରଣ ଆଉ ସେଥି-ଭିତରୁ ସ୍ପଷ୍ଟ ବାରିହୋଉଥିବା କେହି କେହି ପ୍ରତିଭାବାନ୍ ବ୍ୟକ୍ତି ଏବଂ ସର୍ବୋପରି ହିମାଳୟ

ପର୍ବତଶ୍ରେଣୀ—ହିମ-କିରୀଟମଣ୍ଡିତ ଅବା ବସନ୍ତର ନବପୁଷ୍ପ-ସମ୍ଭାରରେ ବର୍ଣ୍ଣାଢ୍ୟ ଓ ନିର୍ଝରଣୀର ନିରବଚ୍ଛିନ୍ନ ସଙ୍ଗୀତରେ କଳମୁଖର ଭୂସ୍ୱର୍ଗ କାଶ୍ମୀରର କେଉଁ ବାସନ୍ତୀ ଉପତ୍ୟକା । ଆମ ନିଜ ରୁଚି ଅନୁସାରେ ଏପରି ଚିତ୍ର ରଚନା କରି ଆମେ ମନରେ ସାଇତି ରଖୁଁ । ଅତଏବ, ଗୋଟାଏ ସାଧାରଣ ତପ୍ତ ଗ୍ରୀଷ୍ମ-ଉପମଣ୍ଡଳୀୟ ଦେଶର ଚିତ୍ର ପରିବର୍ତ୍ତେ ମୁଁ ଏହି ଶୀତଳ ପାର୍ବତ୍ୟ ପୃଷ୍ଠଭୂମି ଗ୍ରହଣ କଲି । ଏହି ଉଭୟ ଚିତ୍ର ନିର୍ଭୁଲ ହୋଇପାରେ; କାରଣ ଭାରତ ଗ୍ରୀଷ୍ମମଣ୍ଡଳରୁ ସମଶୀତୋଷ୍ଣ ଅଞ୍ଚଳ ପର୍ଯ୍ୟନ୍ତ, ବିଷୁବରେଖା ନିକଟରୁ ଏସିଆର ହିମଶୀତଳ ହୃତ୍‌ଦେଶ ପର୍ଯ୍ୟନ୍ତ ବିସ୍ତୃତ ।

## ୭. ଭାରତରେ ପର୍ଯ୍ୟଟନ

୧୯୩୬ ଶେଷ ଆଡ଼କୁ ଓ ୧୯୩୭ର ପ୍ରଥମ କେତେ ମାସରେ ମୋର ପର୍ଯ୍ୟଟନର ଗତିବେଗ କ୍ରମଶଃ ବୃଦ୍ଧି ପାଇ ଗୋଟାଏ ସମୟରେ କ୍ଷିପ୍ର ହୋଇଉଠିଲା । ବିଶ୍ରାମ ନାହିଁ, କେଉଁଠି ଭଲଭାବରେ କିଛି ସମୟ ଅଟକିଯିବା ନାହିଁ, ପଶ୍ଚିମ ଭାରତୀୟ ସ୍ରୋତ ଭଳି ଏହି ବିଶାଳ ଦେଶର ଗୋଟାଏ ପ୍ରାନ୍ତରୁ ଆଉ ଏକ ପ୍ରାନ୍ତଯାଏଁ ମୁଁ ଅହୋରାତ୍ର ଯାତ୍ରା କରୁଥାଏ । ଭାରତର ସବୁ ଅଞ୍ଚଳରୁ ଜରୁରୀ ଡାକରା ଆସି ପହଞ୍ଚୁଥାଏ, ହାତରେ ବିଶେଷ ସମୟ ବି ନଥାଏ କାରଣ ସାଧାରଣ ନିର୍ବାଚନ ପ୍ରାୟ ଦୁଆରମୁହଁରେ ହୋଇସାରିଥିଲା ଏବଂ ଅନ୍ୟମାନଙ୍କୁ ନିର୍ବାଚନରେ ଜୟଯୁକ୍ତ କରାଇବା ମୋର ଦାୟିତ୍ୱ ବୋଲି ଏକରକମ ମନେ କରାଯାଉଥିଲା । କେବେ ରେଲରେ, କେବେ ଉଡ଼ାଜାହାଜରେ କିନ୍ତୁ ଅଧିକାଂଶ ସମୟ ମୁଁ ମୋଟର ଗାଡ଼ିରେ ଯାତ୍ରା କରୁଥିଲି । କଦାଚିତ୍ କେଉଁଠି ସ୍ୱଳ୍ପ ଦୂରତା ଅତିକ୍ରମ କରିବା ପାଇଁ ମତେ ହାତୀ, ଓଟ ଅବା ଘୋଡ଼ା ବ୍ୟବହାର କରିବାକୁ ପଡ଼ୁଥିଲା । କେବେ ବା ଷ୍ଟିମର୍‌ରେ, ବଡ଼ ଅବା ଶ୍ରେଣ୍ଟ ଡଙ୍ଗାରେ କିମ୍ବା ସାଇକେଲରେ ଓ କେଉଁଠି ବା ଚାଲି ଚାଲି ମୋତେ ରାସ୍ତା ସାରିବାକୁ ପଡ଼ୁଥିଲା । ଏ ସବୁ ବିଭିନ୍ନ ପରିବହନ ବ୍ୟବସ୍ଥା ବେଳେବେଳେ ଆବଶ୍ୟକ ହୋଇପଡ଼ୁଥିଲା; କାରଣ ମତେ ପିଚୁରାସ୍ତା ଛାଡ଼ି ଦୂର ଦୂର ପଲ୍ଲୀ ଅଞ୍ଚଳ ଭିତରକୁ ଯିବାକୁ ହେଉଥିଲା । ମୋ ସାଙ୍ଗରେ ଦୁଇ ଦୁଇଟା ଡାକବାଜି ଯନ୍ତ୍ର ରହିଥାଏ; କାରଣ ଅନ୍ୟ ଉପାୟରେ ସେ ସବୁ ବିଶାଳ ଜନସମାବେଶକୁ ମୋର କଥା ଶୁଣାଇବା ସମ୍ଭବ ନଥିଲା । ବିନା ଡାକବାଜିରେ ମୋର ସ୍ୱର ମଧ୍ୟ ଠିକ୍ ରହି ନଥାନ୍ତା । ସେ ଡାକବାଜି ଯନ୍ତ୍ର ଦୁଇଟି ଉତ୍ତର ସୀମାନ୍ତରୁ ବେଲୁଚିସ୍ଥାନ ଶେଷ ପର୍ଯ୍ୟନ୍ତ ନାନା ବିଚିତ୍ର ସ୍ଥାନକୁ ଯାଉଥିଲା ଯେଉଁଠି ଲୋକେ ସେ ବିଷୟରେ ଜାଣି ନ ଥିଲେ କି ଶୁଣି ବି ନଥିଲେ ।

ପ୍ରଭାତକାଳରୁ ଗଭୀର ରାତ୍ରି ପର୍ଯ୍ୟନ୍ତ ମୁଁ ସ୍ଥାନରୁ ସ୍ଥାନାନ୍ତର ଯାତ୍ରା କରୁଥିଲି । ସବୁ ସ୍ଥାନରେ ବଡ଼ ବଡ଼ ସଭାରେ ଲୋକେ ରୁଣ୍ଡ ହୋଇଥାନ୍ତି ଏବଂ ରାସ୍ତାରେ ଗଲାବେଳେ ଗ୍ରାମବାସୀମାନେ ଦୀର୍ଘ ସମୟ ଧରି ରାସ୍ତାର ଦୁଇକଡ଼ରେ ଧାଡ଼ିବାନ୍ଧି ଠିଆହୋଇଥାନ୍ତି ମତେ ଥରକୁ ଥର ଅଟକାଇ ଅଭିବାଦନ ଜଣାଇବା ପାଇଁ । ଏ ସବୁ ଅଚିନ୍ତ୍ୟପୂର୍ବ ବ୍ୟାପାରରେ

ମୋର ଗୁରୁ ନିର୍ଘଣ୍ଟ ଓଲଟପାଲଟ ହୋଇଯାଏ ଓ ପରବର୍ତ୍ତୀ ସମସ୍ତ ନିଯୋଗର ସମସ୍ତ ଗଡ଼ିଯାଏ । ତଥାପି ସେ ଦରୁ ଲୋକଙ୍କୁ ନ ଦେଖି, ପଦେ କଥା ନକହି ବେଖାତିର କରି ଚାଲିଯିବା ସମ୍ଭବ ବା କିପରି ହୁଅନ୍ତା ? ବିଳମ୍ବ ଉପରେ ବିଳମ୍ବ ଲଦି ହୋଉଥିଲା ଏବଂ ବଡ଼ ବଡ଼ ସଭା ସ୍ଥାନରେ ଲୋକଙ୍କ ଭିତର ଦେଇ ସଭାମଞ୍ଚକୁ ଯିବା ଓ ପୁଣି ମୋର ଗାଡ଼ିକୁ ଫେରିବାରେ ବହୁତ କେତେ ମିନିଟ୍ ଲାଗିଯାଉଥିଲା । ସେ ସମୟରେ ପ୍ରତ୍ୟେକ ମିନିଟ ଯେତେ ମୂଲ୍ୟବାନ ଥିଲା ସେତେବେଳେ ମିନିଟ୍ ପରେ ମିନିଟ୍ ଏପରି ଭାବରେ ବଢ଼ି ଘଣ୍ଟାରେ ପରିଣତ ହୁଏ ଏବଂ ସନ୍ଧ୍ୟା ଆଡ଼କୁ କୌଣସି ସଭାକୁ ଗଲାବେଳେ ମୁଁ ବହୁ ଘଣ୍ଟା ବିଳମ୍ବରେ ପହଞ୍ଚିଥାଏ । ଲୋକେ କିନ୍ତୁ ଧୈର୍ଯ୍ୟ ସହକାରେ ପ୍ରତୀକ୍ଷା କରି ରହିଥାନ୍ତି । ସେ ଦାରୁଣ ଶୀତରେ ଅକୁଳାନ ପୋଷାକରେ ମୁକ୍ତ ଆକାଶ ତଳେ ବସି ସେମାନେ ଥରି ହାଉଥାନ୍ତି । ମୋର ଦିନର ନିର୍ଘଣ୍ଟ ଏଭଳି ବଢ଼ି ବଢ଼ି କ୍ରମଶଃ ମୋ ପାଖରୁ ଅଠର ଘଣ୍ଟାର ପରିଶ୍ରମ ଦାବୀ କରେ ଓ ମୁଁ ବିଶ୍ରାମ ନେବା ବେଳକୁ ମଧ୍ୟରାତ୍ରି ଅତୀତ ହୋଇଯାଇଥାଏ । ଥରେ କର୍ଣ୍ଣାଟକରେ, ଫେବୃୟାରୀ ମଧ୍ୟଭାଗରେ, ଆମେ ପୂର୍ବବର୍ତ୍ତୀ ସମସ୍ତ ନିର୍ଘଣ୍ଟ କାଳ ଲଙ୍ଘନ କରିଥିଲୁ । ସେ ଦିନର ନିର୍ଘଣ୍ଟ ସ୍ଥିର ହୋଇ ରହିଥାଏ ଓ ଆମକୁ ଗୋଟାଏ ସୁନ୍ଦର ପାର୍ବତ୍ୟ ପଥରେ, ଅପ୍ରଶସ୍ତ ତଥା ଅବହେଳିତ ଘାଟିବାଟରେ, ମନ୍ଥର ଗତିରେ ଯିବାକୁ ପଡ଼ୁଥାଏ । ବହୁ ଶ୍ରେଷ୍ଠ ଶ୍ରେଷ୍ଠ ସଭା ସଙ୍ଗେ ଛଅଗୋଟି ଅତିକାୟ ସଭାରେ ମୋର ଭାଷଣ ଦେବାର ଥାଏ । ସକାଳ ଆଠଟାରେ ଆମେ ଗୋଟାଏ ଉତ୍ସବରୁ ଆମର କାର୍ଯ୍ୟକ୍ରମ ଆରମ୍ଭ କଲୁ ଓ ଆମର ଅନ୍ତିମ ନିଯୋଗ ଶେଷ ହେଲା ସାତଘଣ୍ଟା ବିଳମ୍ବରେ—ରାତି ଚାରିଟାରେ ଏବଂ ସେ ରାତିର ବିଶ୍ରାମ ନିମନ୍ତେ ଆମକୁ ସେଠାରୁ ଆହୁରି ସତୁରି ମାଇଲ ଯିବାକୁ ପଡ଼ିଥିଲା । ପରଦିନ ସକାଳ ସାତଟାରେ ବିଶ୍ରାମ ସ୍ଥାନରେ ପହଞ୍ଚିଲାବେଳକୁ ବହୁ ସଭାରେ ଭାଷଣ ଦେଇ ମୁଁ ଚାରିଶହ ପନ୍ଦର ମାଇଲ ରାସ୍ତା ଅତିକ୍ରମ କରିଥିଲି । ଦୀର୍ଘ ଚବିଶ ଘଣ୍ଟାର ନିଯୋଗ ପରେ ବିନା ବିଶ୍ରାମରେ ଘଣ୍ଟାକ ଭିତରେ ମତେ ପରବର୍ତ୍ତୀ ସଭାକୁ ଯିବାପାଇଁ ପ୍ରସ୍ତୁତ ହେବାକୁ ପଡ଼ିଥିଲା ।

କେହି ଜଣେ ଆନୁମାନିକ ଭାବରେ ହିସାବ କରି କହୁଥିଲେ ଯେ ଏହି କେତେ ମାସରେ ମୋର ସଭାମାନଙ୍କରେ ପ୍ରାୟ ଏକକୋଟି ଲୋକ ଯୋଗ ଦେଇଥିଲେ ଓ ମୁଁ ସହରରୁ ସହର ଓ ଗ୍ରାମାଞ୍ଚଳକୁ ସଡ଼କରେ ଯାତ୍ରା କଲାବେଳେ ଆଉ କେତେ ଲକ୍ଷ ଲୋକଙ୍କ ସଂସ୍ପର୍ଶରେ ଆସିଥିବି । ବଡ଼ ବଡ଼ ସଭାମାନଙ୍କରେ ପ୍ରାୟ ଏକଲକ୍ଷ ଲୋକଙ୍କର ସମାବେଶ ଘଟିଥାଏ । ଆଉ କୋଡ଼ିଏ ହଜାର ସଂଖ୍ୟାର ସଭା ପ୍ରାୟ ସାଧାରଣ ଥିଲା କହିଲେ ଚଳେ । ବେଳେ-ବେଳେ କୌଣସି ଏକ କ୍ଷୁଦ୍ର ସହର ଭିତର ଦେଇ ଗଲାବେଳେ ସେଠାର ଦୋକାନବଜାର ବନ୍ଦରହି ଜନଶୂନ୍ୟ ହୋଇଥିବା ବିସ୍ମିତ ଭାବରେ ଲକ୍ଷ୍ୟ କରିଥାଏ । ପରେ ବୁଝିବାରେ ଜଣାପଡ଼େ ଯେ ସହରର ଆବାଲବୃଦ୍ଧବନିତା ସହର ବାହାରେ ସଭା ସ୍ଥାନରେ ରୁଣ୍ଡ ହୋଇ ଆତୁର ଭାବରେ ମୋର ଆଗମନ ପ୍ରତୀକ୍ଷା କରିଛନ୍ତି ।

ମୋର ସ୍ୱାସ୍ଥ୍ୟ ଅତୁଟ ରଖି ମୁଁ କିପରି ଅଖଣ୍ଡ ଭାବରେ ବୁଲିପାରିଲି ମୁଁ ବର୍ତ୍ତମାନ ନିଜେ

ତୁଟିପାରୁନି; କାରଣ ଏ ପ୍ରକାର ଅସମ୍ଭବ ଧରଣର କାର୍ଯ୍ୟ ପ୍ରବଳ ଶାରୀରିକ ସହିଷ୍ଣୁତା ଉପରେ ନିର୍ଭର କରେ । କ୍ରମଶଃ, ମତେ ବୋଧହୁଏ ମୋର ଦେହ ଓ ମନ ଏ ପ୍ରକାର ଭ୍ରାମ୍ୟମାଣ ଜୀବନକୁ ଅଙ୍ଗୀକାର କରିଗଲା । ଦୁଇଟି ସଭା ମଧ୍ୟବର୍ତ୍ତୀ ସମୟରେ ମୋଟର-ଗାଡ଼ିରେ ଯିବାବେଳେ ମୁଁ ଗଭୀର ନିଦ୍ରାରେ ଅଭିଭୂତ ହୁଏ ଓ ଅକସ୍ମାତ ଉଠିବା ପାଇଁ ବଡ଼ କଷ୍ଟ ଅନୁଭବ କରେ । ତଥାପି ମତେ ଉଠିବାକୁ ପଡ଼େ ଓ ଜୟୋଲ୍ଲାସରେ ଅଧୀର ଜନସମାବେଶର ଦୃଶ୍ୟ ମୋର ଶରୀରରୁ ନିଦ୍ରାଳୁତାର ସମସ୍ତ ଚିହ୍ନ ପୋଛିନିଏ । ମୁଁ ମୋର ଆହାର ନିମ୍ନତମ ପରିମାଣକୁ ନେଇ ଆସିଥିଲି ଓ ବେଳେବେଳେ ଗୋଟାଏ ବେଳା ଉପବାସ କରୁଥିଲି । ବିଶେଷକରି ରାତିର ଆହାର ମୁଁ ବାରମ୍ବାର ତ୍ୟାଗକରି ଶରୀରର ଲଘୁତା ଉପଭୋଗ କରୁଥିଲି; କିନ୍ତୁ ଯେଉଁଠିକି ମୁଁ ଯାଇଛି ସେଠାର ଜନସାଧାରଣଙ୍କ ଶ୍ରଦ୍ଧା ଓ ଉତ୍ସାହ ମୋ ଭିତରେ ଶକ୍ତି ଭରି ମୋର ଦେହ ଓ ମନକୁ ଅତୁଟ ରଖି ପାରିଛି । ଏହା ପ୍ରାୟ ମୋର ଦେହସହା ହୋଇ ଯାଇଥିଲା । ତଥାପି ମୁଁ ସେପରି କହିପାରୁନି କାରଣ ପ୍ରତିଦିନ ମୋ ପାଇଁ କିଛି ନା କିଛି ବିସ୍ମୟ ଆଣିଦେଉଥିଲା ।

## ୮. ସାଧାରଣ ନିର୍ବାଚନ

ମୋର ଏହି ପର୍ଯ୍ୟଟନ ଭାରତର ଆସନ୍ନ ସାଧାରଣ ନିର୍ବାଚନ ସଙ୍ଗେ ବିଶେଷ ଭାବରେ ସମ୍ବନ୍ଧିତ ଥିଲା । ଯେଉଁ ସବୁ ସାଧାରଣ ଉପାୟ ଓ ପ୍ରଣାଳୀରେ ନିର୍ବାଚନ ଲଢ଼ାଯାଏ, ମୁଁ ସେଥିପ୍ରତି ବିଶେଷ ସୁମୁଖ ନଥିଲି । ଗଣତାନ୍ତ୍ରିକ ପ୍ରକ୍ରିୟାର ଅଂଶ ଭାବରେ ନିର୍ବାଚନ ଅତ୍ୟାବଶ୍ୟକ ଓ ଅପରିହାର୍ଯ୍ୟ; ତଥାପି ଅନେକ ସମୟରେ ନିର୍ବାଚନ ମଣିଷର ଖରାପ ପାର୍ଶ୍ୱଟି କେବଳ ପ୍ରକାଶିତ କରିଥାଏ ଏବଂ ସ୍ପଷ୍ଟ ଜଣାଯାଏ ଯେ ଯେଉଁ ଲୋକ ଜୟଲାଭ କରିବା ଭଲ ହୁଅନ୍ତା ସବୁ ସମୟରେ ତାର ଜୟଲାଭ ହୁଏନି । ଯେକୌଣସି ପ୍ରଣାଳୀ ଅନୁସରଣ କରି ନିର୍ବାଚନ ଜିଣିବା ପାଇଁ ଯେଉଁମାନେ ପ୍ରସ୍ତୁତ ନୁହନ୍ତି ସେଭଳି ସୁବେଦୀ ବ୍ୟକ୍ତିମାନେ ବଡ଼ ଅସୁବିଧାରେ ପଡ଼ନ୍ତି ଓ ପ୍ରାୟଶଃ ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତାରେ ଯୋଗ-ଦେବା ଚାହାନ୍ତିନି । ତାହାହେଲେ କ'ଣ ଯେଉଁମାନଙ୍କର ଚମଡ଼ା ଖୁବ ବହଳା, ସ୍ୱର ଉଚ୍ଚ ଓ ଯେଉଁମାନେ ବିବେକକୁ ଅବସ୍ଥାନୁସାରେ ଖାପ ଖୁଆଇ ପାରନ୍ତି, ଗଣତନ୍ତ୍ର ସେଭଳି ଲୋକଙ୍କର ପରିରକ୍ଷିତ କ୍ଷେତ୍ର ହୋଇ ରହିବ ?

ନିର୍ବାଚନମଣ୍ଡଳୀ ଯେଉଁଠି କ୍ଷୁଦ୍ର, ନିର୍ବାଚନର ଏ ସବୁ ଖରାପ ଦିଗ ବିଶେଷ ଭାବରେ ପ୍ରବଳ ହୁଏ । ବଡ଼ ବଡ଼ ନିର୍ବାଚନମଣ୍ଡଳୀରେ ସେ ସବୁ ଏକେ ଉଭାଇଯାଏ ଅବା ସେତେ ସ୍ପଷ୍ଟ ଭାବରେ ଦେଖାଯାଏନି । କୌଣସି ଏକ ମିଥ୍ୟା ପ୍ରସଙ୍ଗ ଉପରେ ଅବା ଧର୍ମ ନାମରେ (ପରେ ଯେପରି ଆମେ ଦେଖିଲୁ) ବୃହତ୍ତର ନିର୍ବାଚନମଣ୍ଡଳୀର ମତକୁ ପରିବର୍ତ୍ତନ କରି ଦିଆଯିବା ସମ୍ଭବ; କିନ୍ତୁ ସାଧାରଣତଃ ସେପରି କେତେ ସମତୁଳନ କାରଣ ରହିଥାଏ ଯା'ର ସାହାଯ୍ୟରେ ନିର୍ବାଚନର କୁତ୍ସିତ କେତେ ପନ୍ଥା ନିରୋଧ କରିବା ସମ୍ଭବ ହୁଏ । ମୋର ଏ

ଦଗରେ ଅଭିଜ୍ଞତା ସାବାଳକ ଭୋଟ-ପ୍ରଥା ଉପରେ ମୋର ବିଶ୍ୱାସ ଦୃଢ଼ତର କଲା । ସମ୍ପତ୍ତି-ଯୋଗ୍ୟତା ଅବା ଗୋଟାଏ ଶିକ୍ଷାର ପରୀକ୍ଷା ନିବନ୍ଧନଯୁକ୍ତ କୌଣସି ନିର୍ବାଚନମଣ୍ଡଳୀ ଅପେକ୍ଷା ମୁକ୍ତ ଓ ବିସ୍ତୃତ ନିର୍ବାଚନମଣ୍ଡଳୀ ଉପରେ ମୋର ବିଶ୍ୱାସ ସ୍ଥାପନ ଲାଗି ମୁଁ ପ୍ରସ୍ତୁତ ଥିଲି । ସମ୍ପତ୍ତି-ଯୋଗ୍ୟତାର ବ୍ୟବସ୍ଥା ନିଶ୍ଚିତ ଭାବରେ ଖରାପ; କିନ୍ତୁ ଶିକ୍ଷା କଥା ଯାହା ବାଞ୍ଛନୀୟ ଓ ଆବଶ୍ୟକ ମଧ୍ୟ । କିନ୍ତୁ କୌଣସି ସାକ୍ଷର ଅବା ଅଳ୍ପଶିକ୍ଷିତ ଲୋକ ଭିତରେ ମୁଁ ସେପରି କିଛି ବିଶେଷ ଗୁଣ ଆବିଷ୍କାର କରିନି ଯାହାର ମତକୁ ଜଣେ ନିରକ୍ଷର ଅଥଚ ସୀମିତ ଜ୍ଞାନରେ ଭରପୂର ଜଣେ ବଳିଷ୍ଠ କୃଷୀର ମତ ଅପେକ୍ଷା ଅଧିକ ସମ୍ମାନ ଦିଆଯିବ । ପ୍ରଧାନ ସମସ୍ୟା ଯେଉଁଠି କୃଷୀର, ସେ କେଉଁ ଘଟଣାରେ ତାର ମତ ବହୁ ଗୁଣରେ ଗୁରୁତ୍ୱପୂର୍ଣ୍ଣ । ସ୍ତ୍ରୀ, ପୁରୁଷ ସମସ୍ତଙ୍କୁ ସାବାଳକ ଭୋଟ ଅଧିକାର ଦେବାରେ ମୁଁ ବିଶ୍ୱାସୀ । ସେ ବାଟର ନାନା ଅସୁବିଧା ମୁଁ ବୁଝୁଛି; କିନ୍ତୁ ମୁଁ ନିଶ୍ଚିତ ଭାବରେ ଜାଣେ ଯେ ଭାରତରେ ତାହା ଗ୍ରହଣ କରାନଯାଉ ବୋଲି ଯେଉଁ ସବୁ ଆପତ୍ତି ଉଠୁଛି, ତାର ପଛରେ ସେପରି କିଛି ବଳିଷ୍ଠ ଯୁକ୍ତି ନାହିଁ ଓ ତାର ଭିତ୍ତି ହେଉଛି କେତେକ ସ୍ୱାଧିକାର-ଭୋଗୀ ଶ୍ରେଣୀ ଓ ଅନୁଷ୍ଠାନର ଭୟ ।

ପ୍ରାଦେଶିକ ବ୍ୟବସ୍ଥାପକ ସଭାମାନଙ୍କ ନିମନ୍ତେ ୧୯୩୭ର ନିର୍ବାଚନରେ ନିବନ୍ଧଯୁକ୍ତ ଭୋଟାଧିକାର ଯୋଗୁଁ ଜନସଂଖ୍ୟାର ଶତକରା ପ୍ରାୟ ବାର ଭାଗ କେବଳ ଅଂଶ ଗ୍ରହଣ କରିବା ଅଧିକାର ପାଇଥିଲେ । କିନ୍ତୁ ପୂର୍ବବର୍ତ୍ତୀ ଭୋଟାଧିକାର ବ୍ୟବସ୍ଥା ଅପେକ୍ଷା ଏତିକ ସୁଦ୍ଧା ଗୋଟାଏ ବଡ଼ ଉନ୍ନତ ବୋଲି ଧରାଯାଇଥିଲା, କାରଣ ଏଥିରେ ଗଡ଼ଜାତ ଅଞ୍ଚଳ ବ୍ୟତୀତ ପ୍ରାୟ ତିନି କୋଟି ଲୋକ ଭୋଟାଧିକାର ପାଇଥିଲେ । ଏହି ନିର୍ବାଚନର ପରିସର ଅତି ବିଶାଳ ଓ ଗଡ଼ଜାତ ଅଂଶ ବ୍ୟତୀତ ସମଗ୍ର ଭାରତ ଏହାର ଅନ୍ତର୍ଭୁକ୍ତ ଥିଲା । ପ୍ରତ୍ୟେକ ପ୍ରଦେଶକୁ ନିଜର ବ୍ୟବସ୍ଥାପକ ସଭା ନିର୍ବାଚିତ କରିବାକୁ ପଡ଼ିଥିଲା । ଅଧିକାଂଶ ପ୍ରଦେଶରେ ଦୁଇଟି 'ସଭା' ରହିଥିଲା । ଅତଏବ ଦୁଇ ଦୁଇ ଜଣ ପ୍ରାର୍ଥୀଙ୍କୁ ନିର୍ବାଚିତ କରିବାକୁ ହେଉ-ଥିଲା । ପ୍ରାର୍ଥୀ ସଂଖ୍ୟା ହଜାର ସୀମା ଲଙ୍ଘନ କରିଥିଲା ।

ଏହି ନିର୍ବାଚନ ପ୍ରତି ମୋର ଓ କେତେକାଂଶରେ କଂଗ୍ରେସ ଲୋକଙ୍କର ଦୃଷ୍ଟିଭଙ୍ଗୀ ଟିକିଏ ଭିନ୍ନ ଧରଣର ଥିଲା । କୌଣସି ବ୍ୟକ୍ତିଗତ ପ୍ରାର୍ଥୀ ନିମନ୍ତେ ମୁଁ ବ୍ୟସ୍ତ ନଥିଲି । କିନ୍ତୁ କଂଗ୍ରେସ ଯେପରି ପ୍ରତିନିଧିତ୍ୱ କରିଛି, ଆମର ଜାତୀୟ ସ୍ୱାଧୀନତା ଆନ୍ଦୋଳନ ନିମନ୍ତେ ଓ ଆମ ନିର୍ବାଚନ ଇସ୍ତାହାରରେ ଘୋଷିତ କାର୍ଯ୍ୟକ୍ରମ ନିମନ୍ତେ ମୁଁ ସମଗ୍ର ଦେଶରେ ଗୋଟାଏ ଅନୁକୂଳ ବାତାବରଣ ସୃଷ୍ଟି କରିବାକୁ ଚାହୁଁଥିଲି । ଆମେ ଯଦି ଏଥିରେ ସଫଳ ହେଉଁ ତାହାହେଲେ ନିର୍ବାଚନ ଲଢ଼ିବା ସାର୍ଥକ ହେବ ବୋଲି ମୁଁ ଅନୁଭବ କରୁଥିଲି । ଅନ୍ୟଥା କେଉଁଠି ଗୋଟାଏ ପ୍ରାର୍ଥୀ ହାରିଲା କି ଜିଣିଲା, ସେଥିରେ ବିଶେଷ କିଛି ନଥିଲା ।

ମୋର ନିବେଦନ ଥିଲା ମତାଦର୍ଶର ଓ ମୁଁ ଯେବେ କୌଣସି ପ୍ରାର୍ଥୀ ବିଷୟ ଉଲ୍ଲେଖ କରେ, କରିଥାଏ ସେ ମତାଦର୍ଶର ଧ୍ୱଜାଧାରୀ ଭାବରେ । ସେମାନଙ୍କ ଭିତରୁ ମୁଁ ଅନେକଙ୍କୁ ଜାଣିଥିଲି ଓ ବହୁତ ବି ଥିଲେ ଯେଉଁମାନଙ୍କୁ ମୁଁ ମୋଟେ ଜାଣି ନଥିଲି ଏବଂ ଶହ ଶହ

ନାମରେ ମୋର ମନ ଭାରାକ୍ରାନ୍ତ କରିବାର କୌଣସି କାରଣ ମୁଁ ଦେଖୁ ନଥିଲି । ମୁଁ ଭୋଟ ମାଗୁଥିଲି କଂଗ୍ରେସ ପାଇଁ, ଭାରତର ସ୍ୱାଧୀନତା ପାଇଁ ଓ ଆମର ସ୍ୱାଧୀନତା ସଂଗ୍ରାମ ପାଇଁ । ମୁଁ ଯଦି ସେମାନଙ୍କୁ କେବେ କିଛି ପ୍ରତିଶ୍ରୁତି ଦେଇଥାଏ ତାହା ହେଉଛି ଯେ ସ୍ୱାଧୀନତା ହାସଲ ହେବା ପର୍ଯ୍ୟନ୍ତ ଆମେ ବିରାମହୀନ ଭାବରେ ସଂଗ୍ରାମ କରିବୁ । ସେମାନେ ଯଦି ଆମର ଲକ୍ଷ୍ୟ ଓ ନିର୍ଘଣ୍ଟ ବୁଝିଁଚନ୍ତି ଓ ଗ୍ରହଣ କରୁଚନ୍ତି ଏବଂ ତାହା ପାଳନ କରିବାପାଇଁ ପ୍ରସ୍ତୁତ ଅଛନ୍ତି, ତେବେ କେବଳ ଆମକୁ ଭୋଟ ଦିଅନ୍ତୁ; ଅନ୍ୟଥା ନୁହେଁ । ମୁଁ ସ୍ପଷ୍ଟ ଭାବରେ ସେମାନଙ୍କୁ କହୁଥିଲି ଯେ ଏହି ଲକ୍ଷ୍ୟ ଓ ନିର୍ଘଣ୍ଟ ସଙ୍ଗେ ସେମାନେ ଯଦି ଏକମତ ନୁହନ୍ତି କଂଗ୍ରେସକୁ ଭୋଟଦେବା ଅନାବଶ୍ୟକ । ଆମେ ମିଥ୍ୟା ଭୋଟ ଗ୍ରହଣ କରୁନୁ କିମ୍ବା କୌଣସି ବ୍ୟକ୍ତିଗତ ପ୍ରାର୍ଥୀ 'ଯାହାକୁ ସେମାନେ ପସନ୍ଦ କରିଚନ୍ତି ତାର ପାଇଁ ବୋଲି କେବଳ ଆମେ ଭୋଟ ମାଗି ଆସି ନାହୁଁ । ଭୋଟ ଓ ନିର୍ବାଚନ ଆମକୁ ବେଶି ଦୂର ନେଇପାରିବନି । ଗୋଟାଏ ଦୀର୍ଘ ଯାତ୍ରାରେ ସେ ସବୁ ଗୋଟିଏ ଗୋଟିଏ କ୍ଷୁଦ୍ର ପଦକ୍ଷେପ କେବଳ । ମୁଁ କହୁଥିଲି, ଭୋଟର ତାତ୍ପର୍ଯ୍ୟ ନବୁଝି କିମ୍ବା ପରବର୍ତ୍ତୀ କର୍ମ ନିମନ୍ତେପ୍ରସ୍ତୁତ ନରହି ଭୋଟ ଦେଇ ଆମକୁ ବାଆଁରେଇବା ଆମ ଦେଶ ପ୍ରତି ଓ ଆମ ପ୍ରତି ବିଶ୍ୱାସଘାତକତା କରିବା ସଙ୍ଗେ ସମାନ ହେବ । ସ୍ୱାଧୀନତା କଣ ଓ ଆମର କୋଟି କୋଟି ଜନସାଧାରଣଙ୍କ ପାଇଁ ତାର ମୂଲ୍ୟ କଣ ମୁଁ ଅନୁଶୀଳନ କରି ବୁଝାଉଥିଲି । ଗୋରାଙ୍କ ସ୍ଥାନରେ କଳା ଲୋକ ପ୍ରତିରୂପଣ କରିବା ଆମେ ଗ୍ରହଣ କରୁନୁ; ଆମେ ଗ୍ରହଣ କରୁନୁ ଆମର ଦୈନ୍ୟ ଓ ଦୁଃଖର ଅବସାନ ଉଦ୍ଦେଶ୍ୟରେ ଲୋକଙ୍କ ପାଇଁ ଓ ଲୋକଙ୍କ ଦ୍ୱାରା ପରିଚାଳିତ ପ୍ରକୃତ ଲୋକଶାସନ ।

ଏ ସବୁ ଥିଲି ମୋର ଭାଷଣର ଗତି ଅଥବା ଘୋଷା ଏବଂ ଏପରି ଅବ୍ୟକ୍ତିକ ଭାବରେ କେବଳ ମୁଁ ନିର୍ବାଚନ ଅଭିଯାନ ସଙ୍ଗେ ନିଜକୁ ଖାପ ଖୁଆଇ ପାରିଥିଲି । କୌଣସି ଜଣେ ନିର୍ଦ୍ଦିଷ୍ଟ ପ୍ରାର୍ଥୀ ପାଇଁ ମୋର ସେପରି କିଛି ଆତୁରତା ନଥିଲା । ମୋର ଉତ୍କଣ୍ଠା ଥିଲା ଗୋଟାଏ ବୃହତ୍ତର ଉଦ୍ଦେଶ୍ୟ ପାଇଁ । ସଂକୀର୍ଣ୍ଣ ଦୃଷ୍ଟିରେ, କୌଣସି ନିର୍ଦ୍ଦିଷ୍ଟ ପ୍ରାର୍ଥୀର ବିଜୟ ନିମନ୍ତେ ମଧ୍ୟ ନିର୍ବାଚନ ପ୍ରତି ଏହି ଦୃଷ୍ଟିଭଙ୍ଗୀ ବସ୍ତୁତଃ ନିର୍ଭୁଲ ଥିଲା । କାରଣ ସେଥିଦ୍ୱାରା ସେ ଓ ତାର ନିର୍ବାଚନ ଗୋଟାଏ ବିରାଟ ଜାତିର ମୁକ୍ତି-ସଂଗ୍ରାମ ଓ ଦରିଦ୍ରତାର କେଉଁ ସୁପ୍ରାଚୀନ ଅଭିଶାପ ମୋଚନ କରିବା ଉଦ୍ଦେଶ୍ୟରେ କୋଟି କୋଟି ଦୈନ୍ୟପୀଡ଼ିତ ଜନସାଧାରଣଙ୍କ ଅଦମ୍ୟ ପ୍ରୟାସର ଉଚ୍ଚତର ତଥା ମୌଳିକତର ସ୍ତରକୁ ଉନ୍ନୋଳିତ ହେଉଥିଲା । ନେତୃସ୍ଥାନୀୟ କଂଗ୍ରେସ ଲୋକଙ୍କ ଦ୍ୱାରା ଅଭିବ୍ୟକ୍ତ ଏହି ସବୁ ଧାରଣା ସମୁଦ୍ର-ବକ୍ଷରୁ ଝଡ଼ ମାଡ଼ିଆସିଲା ଭଳି ଆସି ସମଗ୍ର ଦେଶରୁ ନିର୍ବାଚନରେ ପ୍ରକାଶ ପାଉଥିବା କ୍ଷୁଦ୍ର ଓ ନୀଚ ସମସ୍ତ ଭାବନାକୁ ବହିଷ୍କୃତ କରିଥିଲା । ମୁଁ ମୋର ଲୋକଙ୍କୁ ଜାଣିଲି ଓ ଭଲ ପାଇଲି ଏବଂ ସେମାନଙ୍କର କୋଟି କୋଟି ଅଖି ଜନତାର ମନସ୍ତତ୍ତ୍ୱ ସମ୍ପର୍କରେ ମତେ ବହୁତ କିଛି ଶିକ୍ଷା ଦେଇଥିଲା ।

ଦିନ ପରେ ଦିନ ମୁଁ ନିର୍ବାଚନ ସମ୍ପର୍କରେ କହୁଥିଲି, କିନ୍ତୁ ନିର୍ବାଚନ ମୋର ମନକୁ ଅଧିକାର କରିପାରି ନଥିଲା, ଉପରେ ଭାସମାନ ରହୁଥିଲା କେବଳ । ଅନ୍ୟ ଦିଗରେ

ଭୋଟଦାତାଙ୍କ ସମ୍ପର୍କରେ ବି ମୁଁ ସେତେ କିଛି ନିର୍ଦ୍ଦିଷ୍ଟ ଭାବରେ ଆଉର ନ ଥିଲି । ଏ ସବୁ-ଠାରୁ ବୃହତ୍ତର ଆଉ କିଛି ସମ୍ପର୍କରେ ମୁଁ ଆସୁଥିଲି । ସେ ଭୋଟର ହୁଅନ୍ତୁ କି ନ ହୁଅନ୍ତୁ, ଆବାଳବୃଦ୍ଧବନିତା ଭାରତର କୋଟି କୋଟି ଜନସାଧାରଣଙ୍କ ନିମନ୍ତେ ମୋର ବାର୍ତ୍ତା ଉଦ୍ଦିଷ୍ଟ ଥିଲା । କୋଟି କୋଟି ଲୋକଙ୍କ ସଙ୍ଗେ ଶାରୀରିକ ଓ ପ୍ରକ୍ଷୋଭଗତ ଏ ସଂସର୍ଗର ଉତ୍ତେଜନା ମୋର ପ୍ରାଣରେ କୌଣସି ଦୁଃସାହସିକତାର ବିପୁଳ ଆନନ୍ଦ ଭରୁଥିଲା । ଲୋକ-ଗହଳି ଭିତରେ କୋଟିଏ ଭିତରେ ଗୋଟିଏ ଅବା ଗହଳିର ଆବେଗରେ ଆନ୍ଦୋଳିତ ହେବାର ଅନୁଭୂତି ମୋର କେବେ ନଥିଲା । ସେମାନଙ୍କର ହଜାର ହଜାର ଆଖିରେ ମୋର ଆଖି ଲାଖିରହୁଥିଲା । ଆମେ ପରସ୍ପରକୁ ପ୍ରଥମ ଦେଖାର ଅପରିଚିତ ଲୋକ ଭାବରେ ଦେଖି ନଥିଲୁ । ଆମ ଦୃଷ୍ଟିରେ ପରସ୍ପର ପ୍ରତି ସ୍ୱୀକୃତି ଥିଲା । କିନ୍ତୁ ଏହା କାହାର ସ୍ୱୀକୃତି କେହି କହି ପାରି ନଥାନ୍ତେ । ମୁଁ ଯେବେ ହାତ ଯୋଡ଼ି ସେମାନଙ୍କୁ ନମସ୍କାର କରେ ପ୍ରତିନମସ୍କାରରେ ଲକ୍ଷ ଲକ୍ଷ ଯୋଡ଼ହସ୍ତ ଊର୍ଦ୍ଧ୍ୱକୁ ଉଠେ ଓ ଗୋଟାଏ ବନ୍ଧୁଭାବାପନ୍ନ ଆତ୍ମୀୟ ମନ୍ଦହାସ ସେମାନଙ୍କର ମୁଖମଣ୍ଡଳ ଉଦ୍‌ଭାସିତ କରେ ଏବଂ ସେହି ଜନ-ସାଗର ଭିତରୁ ଅଭିବାଦନର ଗୋଟାଏ ମର୍ମର ଧ୍ୱନି ଉଠି ମତେ ସପ୍ରେମରେ କୋଳାଗତ କରେ । ସେମାନଙ୍କୁ ମୁଁ ଆଣିଥିବା ବାର୍ତ୍ତା ଯେବେ ଶୁଣାଏ, ମୋର ଭାଷା ଅବା ତା' ପଛର ଭାବ ସେମାନେ କେତେଦୂର ବୁଝୁଥିଲେ ମୁଁ କହି ପାରିବିନି । କିନ୍ତୁ ସେମାନଙ୍କ ଆଖିରେ ଗଭୀରତର ବୁଝାମଣାର ଯେଉଁ ପ୍ରକାଶ ମୁଁ ଦେଖୁଥିଲି, ମୋର ମନେହେଉଥିଲା ତାହା କଥିତ ଭାଷାର ଅପେକ୍ଷା ରଖି ନ ଥିଲା ।

## ୯. ଲୋକସଂସ୍କୃତି

ଏପରି ଭାବରେ ବର୍ତ୍ତମାନରେ ଭାରତୀୟ ଜନ ସାଧାରଣଙ୍କର ଆନ୍ଦୋଳନକାରୀ ଏହି ମହାନାଟକ ମୁଁ ସନ୍ଦର୍ଶନ କରୁଥିଲି ଏବଂ ଭବିଷ୍ୟତ ପ୍ରତି ସେମାନଙ୍କର ଦୃଷ୍ଟି ଫେରିଲାବେଳେ ମଧ୍ୟ ମୁଁ ସେହି ସୂତ୍ରର ସନ୍ଧାନ ପାଉଥିଲି ଯାହା ସେମାନଙ୍କର ଜୀବନକୁ ଅତୀତ ସଙ୍ଗେ ଗୁନ୍ଥି ରଖିଚି । ମୁଁ ଏବେ ସେହି ସାଂସ୍କୃତିକ ପୃଷ୍ଠଭୂମି ଦେଖିବାକୁ ପାଉଥିଲି ଯାହା ସେମାନଙ୍କ ଜୀବନକୁ ପ୍ରବଳ ଭାବରେ ପ୍ରଭାବିତ କରିଚି । ଏହି ପୃଷ୍ଠଭୂମି ପ୍ରଚଳିତ ଦର୍ଶନ ଐତିହ୍ୟ, ଇତିହାସ, ଅତିକଥା ଓ ଜନଶ୍ରୁତିର ଗୋଟାଏ ସମ୍ମିଶ୍ରଣ ଥିଲା ଏବଂ ଏଥିଭିତରୁ କେଉଁ ଦୁଇଟି ମଧ୍ୟରେ ବି ସୀମାରେଖା ଟାଣିବା ସମ୍ଭବ ନ ଥିଲା । ସମ୍ପୂର୍ଣ୍ଣ ନିରକ୍ଷର ଲୋକ ମଧ୍ୟ ଏହି ପୃଷ୍ଠଭୂମିର ଅଂଶ ଗ୍ରହଣ କରିଥିଲା । ରାମାୟଣ ଓ ମହାଭାରତ ଭଳି ମହାକାବ୍ୟ ଅନ୍ୟାନ୍ୟ ଶାସ୍ତ୍ରର ସରଳ ଅନୁବାଦ ଓ ଟୀକା ଜନସାଧାରଣଙ୍କ ଭିତରେ ବିସ୍ତୃତ ଭାବରେ ଜ୍ଞାତ ଥିଲା ଏବଂ ସେଥିର ପ୍ରତ୍ୟେକ ଘଟଣା, ଉପାଖ୍ୟାନ ଓ ନୀତିବାଣୀ ଜନ ମାନସରେ ଖୋଦିତ ହୋଇ ସେମାନଙ୍କ ଜୀବନକୁ ସମ୍ବଳ ଓ ଆଧେୟ ଦେଇ ଥିଲା । ସେ ସବୁ ପୁରାଣର ନାନା ଅଂଶ ନିରକ୍ଷର ଗ୍ରାମବାସୀଙ୍କର କଣ୍ଠସ୍ଥ ଥିଲା ଏବଂ ସେମାନଙ୍କର ଆଳାପରେ ସେପରି କୌଣସି

ପୁରାଣ ଅବା ଶାସ୍ତ୍ରଗ୍ରନ୍ଥର କୌଣସି ଉପାଖ୍ୟାନ ଅବା ଐତିହାସିକର ବହୁଳ ଉଲ୍ଲେଖ ରହୁଥିଲା । ଚଳନ୍ତି ବ୍ୟାପାର ଉପରେ, ସାଧାରଣ କଥାବାର୍ତ୍ତାରେ, ଗ୍ରାମବାସୀମାନେ ଶାସ୍ତ୍ର ପୁରାଣରୁ ଦୃଷ୍ଟାନ୍ତ ଦେଇ ମତେ ପ୍ରାୟଶଃ ବିସ୍ମିତ କରିଥାନ୍ତି । କିଛିବର୍ଷ ଇତିହାସ ଓ କମ୍ ବହୁତରେ ଜଣାଶୁଣା ତଥ୍ୟରୁ ପ୍ରସ୍ତୁତ ଚିତ୍ରରେ ମୋର ମନ ଯେତେ ପୂର୍ଣ୍ଣ ହୋଇ ରହିଥିଲା ମୁଁ ଉପଲବ୍ଧି କଲି, ନିରକ୍ଷର ଗ୍ରାମୀଣ ମଧ୍ୟ ସେପରି ଏକ ଚିତ୍ର-ସମାବେଶ ମନରେ ଅଛି ଯାହା ସେ ଅତୀତକଥା, ଐତିହ୍ୟ, ପୁରାଣରେ ବୀର ଓ ବୀରାଙ୍ଗନା ଓ ଅତି ସାମାନ୍ୟ କିଛି ଇତିହାସରୁ ସଂଗ୍ରହ କରିଛି । ସେ ଯାହାହେଉ, ସେ ଚିତ୍ରରୁ ଅର୍ଥ ସ୍ପଷ୍ଟ ହେଉଥିଲା ।

ମୁଁ ସେମାନଙ୍କର ମୁହଁ ଓ ଚେହେରା ଦେଖୁଥିଲି ଏବଂ ସେମାନଙ୍କର ଚାଲିଚଳଣି ଲକ୍ଷ୍ୟ କରୁଥିଲି । ସୁଗଠିତ ବଳିଷ୍ଠ ଦେହ ଓ ସୁବେଶୀ ମୂର୍ତ୍ତି ବହୁତ ମୋର ଦୃଷ୍ଟିରେ ପଡ଼ିଛି । ସ୍ତ୍ରୀମାନଙ୍କର ଅଙ୍ଗରେ ସୌଷ୍ଠବ, କୋମଳତା, ଲାବଣ୍ୟ ଓ ସର୍ବୋପରି ମର୍ଯ୍ୟାଦାର ଲକ୍ଷଣ ଥିଲା; କିନ୍ତୁ ଅନେକ ସମୟରେ ଲକ୍ଷ୍ୟ କରିଛି, ଅନେକଙ୍କ ଆଖିରେ ବିଷାଦ ଫୁଟିଉଠୁଥିଲା । ସାଧାରଣତଃ ଉଚ୍ଚ ଜାତିମାନଙ୍କରେ, ଯେଉଁମାନେ ଆର୍ଥିକ ଦୃଷ୍ଟିରୁ ସାଧାରଣ କୃଷୀଠାରୁ ସାମାନ୍ୟ ସ୍ୱଚ୍ଛଳ ଥିଲେ, ସେମାନଙ୍କ ଭିତରେ କମନୀୟ ଅଙ୍ଗ-ସୌଷ୍ଠବ ଦେଖିବାକୁ ମିଳୁଥିଲା । ବେଳେବେଳେ କୌଣସି ପଲ୍ଲୀ ସଡ଼କରେ ଅବା କେଉଁ ଗାଁ ଭିତର ଦେଇ ଗଲାବେଳେ କେଉଁଠି ଜଣେ ସୁଦର୍ଶନ ପୁରୁଷ ବା ସୁନ୍ଦରୀ ରମଣୀ ଦେଖି ମୁଁ ବିସ୍ମୟରେ ଚମକି ଉଠିଥାଏ । କାରଣ ସେ ରୂପ ମତେ ପ୍ରାଚୀନ କାଳର କେଉଁ ଭିତ୍ତିଚିତ୍ର ସ୍ମରଣ କରାଇଦିଏ । ମୁଁ ବିସ୍ମିତ ହୁଏ, ଯୁଗେ ଯୁଗେ ଭାରତ କେତେ ଦୁଃଖ ଓ ବିପର୍ଯ୍ୟୟ ଭିତରେ ଗତି କରିଥିବା ସତ୍ତ୍ୱେ ଏ ପ୍ରକାର ନମୁନା କିପରି ରହି ଆସିପାରିଛି ! ଭଲ ଅବସ୍ଥା ଓ ଅଧିକତର ସୁଯୋଗ ଏ ଲୋକଙ୍କ ଆଗରେ ଖୋଲି ଧରିଲେ ସେମାନଙ୍କୁ ନେଇ ଆମେ କଣ କରି ନପାରିବା ! ଲୋକଙ୍କ ଭିତରେ ଦାରିଦ୍ର୍ୟ ଥିଲା ଓ ଦରିଦ୍ରତାସମ୍ଭୂତ ବହୁ କଦର୍ଯ୍ୟତା ସର୍ବତ୍ର ପୂରିରହିଥିଲା । ସେହି ପଶୁର ଚିହ୍ନ ପ୍ରତ୍ୟେକ କପାଳରେ ପଡ଼ି ହୋଇଥିଲା । ଜୀବନକୁ ଭାଙ୍ଗି ଚୂରି, ମହତ୍ତ୍ୱହୀନ କରି ଗୋଟାଏ ଅମଙ୍ଗଳବସ୍ତୁରେ ପରିଣତ କରି ଦିଆଯାଇଥିଲା । ସେଥିରୁ ଓ ଅବିଚ୍ଛିନ୍ନ ତଥା ନିତ୍ୟବିଦ୍ୟମାନ ବିବିଧ ଅନିଶ୍ଚୟତା ଯୋଗୁଁ ନାନା ଅକଲ୍ୟାଣ ଓ ଅନୀତି ସମାଜରେ ସଞ୍ଚରି ଥିଲା । ଏ ଦୃଶ୍ୟ ପ୍ରୀତିକର ନୁହେଁ, ତଥାପି ତାହା ହିଁ ଥିଲା ଭାରତର ମୌଳିକ ବାସ୍ତବତା । ଅବସ୍ଥାକୁ ଭାଗ୍ୟ କରି ମାନିନେବାର ଭାବ ବହୁଳ ଭାବରେ ରହିଥିଲା । ତଥାପି ହଜାର ହଜାର ବର୍ଷର ସାଂସ୍କୃତିକ ପରମ୍ପରାଯୋଗୁଁ ସେମାନଙ୍କ ଭିତରେ ଗୋଟାଏ କୋମଳ ପରିପକ୍ୱତା ଓ ସୁଶୀଳତା ଥିଲା ଯାହାକୁ ଭାଗ୍ୟର କେତେ ବିପର୍ଯ୍ୟୟ ପୋଛି ନେଇ ପାରିନି ।

## ୧୦. ଦୁଇଟି ଜୀବନ

ଏପରି ଭାବରେ ଓ ଅନ୍ୟ ଭାବରେ, ମୁଁ ଅତୀତ ଓ ବର୍ତ୍ତମାନର ଭାରତକୁ ଆବିଷ୍କାର କରିବା ଉଦ୍ୟମ କରୁଥିଲି । ଜୀବିତ ଓ କେଉଁ ଦୂର ଅତୀତରେ ନିର୍ବାଣପ୍ରାପ୍ତ ଲୋକଙ୍କଠାରୁ

ଯେଉଁ ଚିନ୍ତା ଓ ଅନୁଭୂତିର ତରଙ୍ଗ ଆସି ମୋ ପ୍ରାଣରେ ଭାଙ୍ଗୁଥିଲା ଓ କେତେକାଂଶରେ ତାର ଚିହ୍ନ ରଖିଯାଉଥିଲା, ସେଥି ନିମନ୍ତେ ମୁଁ ଗ୍ରହଣଶୀଳ ମନୋବୃତ୍ତି ଧରିଥିଲି । କିଛି ସମୟ ପାଇଁ ଏହି ଅନ୍ତହୀନ ପଟ୍ଟାନ୍ତରରେ ନିଜକୁ ସମ୍ମିଳିତ କରି ଦେଖିଲି ଯେ ତାର ପୃଷ୍ଠଭାଗରେ ରହି ମୁଁ ବି ସମସ୍ତଙ୍କ ସଙ୍ଗେ ପାଦ ମିଳାଇ ଚାଲିଛି । ପର ମୁହୂର୍ତ୍ତରେ ପୁଣି ନିଜକୁ ଅଲଗା କରି ଦେଖେ, କୌଣସି ପର୍ବତଶୀର୍ଷରୁ ନିମ୍ନର ଉପତ୍ୟକାକୁ ଚାହିଁଲା ଭଳି ସେ ପଟ୍ଟାନ୍ତରକୁ ମୁଁ ଚାହିଁଛି ।

ଏ ସବୁ ଦୀର୍ଘ ଯାତ୍ରାର ଉଦ୍ଦେଶ୍ୟ କ'ଣ ? କେଉଁ ଲକ୍ଷ୍ୟରେ ଉପନୀତ ହେବା ପାଇଁ ଏ ଅନ୍ତହୀନ ଶୋଭାଯାତ୍ରା ? ବେଳେବେଳେ ଗୋଟାଏ ପ୍ରକାର କ୍ଲାନ୍ତି ଓ ଭ୍ରାନ୍ତିର ଅନୁଭୂତି ମୋର ସତ୍ତାକୁ ଆକ୍ରମିତ କରେ ଏବଂ ସେତେବେଳେ ଗୋଟାଏ ପ୍ରକାର ଅନାସକ୍ତ ଭାବ ନେଇ ମୁଁ ସେଥିରୁ ପଳାଇଯିବାର ଉପାୟ ଖୋଜେ । ଧୀରେ ଧୀରେ ଏଥିପାଇଁ ମୋର ମନ ପ୍ରସ୍ତୁତ ହୋଇ ଯାଉଥିଲା ଏବଂ ମୋ ଉପରେ ଓ ମତେ କିଛି ଘଟିବା ଉପରେ ବିଶେଷ ମୂଲ୍ୟ ଦେବା ମୁଁ ଛାଡ଼ିଯାଉଥିଲି । ହୁଏତ ମୁଁ ସେପରି ଭାବୁଥିଲି ଓ ବିଶେଷ ନହେଲେ ବି, ମୋର ଆଶଂକା ହୁଏ, କେତେ ପର୍ଯ୍ୟନ୍ତ ମୁଁ ସଫଳ ହୋଇଥିଲି କାରଣ ମୋ ଭିତରେ ଏପରି ଏକ ବହ୍ନି-ଆବର୍ତ୍ତ ରହିଛି ଯେ ପ୍ରକୃତରେ ଅନାସକ୍ତ ହେବା ମୋ ପକ୍ଷରେ ସହଜ ନୁହେଁ । ଅପ୍ରତ୍ୟାଶିତ ଭାବରେ ମୋର ପ୍ରତିରକ୍ଷା ବ୍ୟବସ୍ଥା ପ୍ରବଳ ବେଗରେ ହୁଏତ ଭାଙ୍ଗି ହୋଇଗଲା । ଆଉ ସେଥି ସଙ୍ଗେ ଦୂର ହୋଇଗଲା ମୋର ସମସ୍ତ ଅନାସକ୍ତି ।

ତଥାପି ଯେଉଁ ଆଂଶିକ ସଫଳତା ମୁଁ ଲାଭ କରିଥିଲି, ମୋ ପକ୍ଷରେ ବଡ଼ ଉପକାରକ ହୋଇଥିଲା । କର୍ମଜଞ୍ଜାଳ ଭିତରେ ମୁଁ ସେଥିରୁ ଅଲଗା ହୋଇ ମୋ' ଠାରୁ ଭିନ୍ନ, ବିଚ୍ଛିନ୍ନ ଭାବରେ ତାହା ଦେଖି ପାରୁଥିଲି । ବେଳେବେଳେ ଘଣ୍ଟାଏ ଅବା ଦୁଇ ଘଣ୍ଟା ପାଇଁ ଅଲଗା ହୋଇ ମୋର ସମସ୍ତ କିଛି ବ୍ୟସ୍ତତା ଭୁଲି ମୁଁ ମୋର ମନର ସେଇ ନିର୍ଜନ ପ୍ରକୋଷ୍ଠ ଭିତରେ ପ୍ରବେଶ କରି କିଛି ସମୟ ପାଇଁ ଅନ୍ୟ ଏକ ଜୀବନ ଯାପନ କରୁଥିଲି । ଏପରି ଭାବରେ ଦୁଇଟି ଜୀବନ, ପରସ୍ପର ସଙ୍ଗେ ଅବିଚ୍ଛେଦ୍ୟ ଭାବରେ ଜଡ଼ିତ ଅଥଚ ସ୍ୱତନ୍ତ୍ର ମଧ୍ୟ, ମିଳିତ ଭାବରେ ଯାତ୍ରା କରିଗଲେ । □□□

# ଚତୁର୍ଥ ପରିଚ୍ଛେଦ

# ଭାରତ ଆବିଷ୍କାର

## ୧. ସିନ୍ଧୁନଦ ସଭ୍ୟତା

ସିନ୍ଧୁ ପ୍ରଦେଶର ମହେଞ୍ଜୋଦାରୋରେ ଓ ପଶ୍ଚିମ ପଞ୍ଜାବର ହରପ୍ପାରେ ସିନ୍ଧୁନଦ ସଭ୍ୟତାର ଚିତ୍ତାକର୍ଷକ ଭଗ୍ନାବଶେଷ ଯାହା ଆବିଷ୍କୃତ ହୋଇଛି ସେଥିରୁ ଭାରତର ଅତୀତର ପ୍ରଥମକାଳୀନ ଚିତ୍ର ଦେଖିବାକୁ ମିଳୁଛି । ଏହି ଖନନକାର୍ଯ୍ୟ ପ୍ରାଚୀନ ଇତିହାସର ଧାରଣାରେ ବୈପ୍ଳବିକ ପରିବର୍ତ୍ତନ ଆଣିଦେଇଛି । ଦୁର୍ଭାଗ୍ୟବଶତଃ ଏହି ଖନନକାର୍ଯ୍ୟ ଆରମ୍ଭ ହେବାର କେତେ ବର୍ଷ ପରେ ବନ୍ଦକରି ଦିଆଗଲା ଓ ଗତ ତେର ବର୍ଷ ଭିତରେ ତାତ୍ପର୍ଯ୍ୟପୂର୍ଣ୍ଣ ସେପରି କିଛି ଆଉ କରାଯାଇନି । ଖନନକାର୍ଯ୍ୟ ବନ୍ଦ ହେବାର ପ୍ରଥମ ତଥା ମୁଖ୍ୟ କାରଣ ହେଉଛି ତୃତୀୟ ଦଶକ ପ୍ରାରମ୍ଭର ବିଶ୍ୱବ୍ୟାପୀ ଅର୍ଥନୈତିକ ମାନ୍ଦ୍ୟ । ଏଥିପାଇଁ ଧନ ନାହିଁ ବୋଲି ଯୁକ୍ତି କରାଗଲା କିନ୍ତୁ ରାଜକୀୟ ଘଟାଟୋପ ପାଇଁ କେବେହେଲେ ଅର୍ଥାଭାବ ଘଟିନି । ଆଗାମୀ ବିଶ୍ୱଯୁଦ୍ଧ ସମସ୍ତ କାର୍ଯ୍ୟାନୁସରଣ ଉପରେ ପୂର୍ଣ୍ଣଚ୍ଛେଦ ଟାଣିଦେଲା ଓ ଯାହା କିଛି କାର୍ଯ୍ୟ ହୋଇଥିଲା ତା'ର ସଂରକ୍ଷଣ ମଧ୍ୟ ଅବହେଳିତ ହେଲା । ଥରେ ୧୯୩୧ରେ ଓ ଆଉ ଥରେ ୧୯୩୬ରେ ମୁଁ ମହେଞ୍ଜୋଦାରୋ ପରିଦର୍ଶନ କରିଛି । ମୋର ଦ୍ୱିତୀୟ ପରିଦର୍ଶନ ସମୟରେ ଦେଖିଲି ଯେ ବର୍ଷା ଓ ଧୂଳିଝଡ଼ ଖୋଲା ବାହାର କରାଯାଇଥିବା ଅନେକ ଗୃହକୁ କ୍ଷତିଗ୍ରସ୍ତ କରିଛି । ବାଲି ଓ ମାଟିତଳେ ପାଞ୍ଚହଜାର ବର୍ଷ ସଂରକ୍ଷିତ ହେବା ପରେ ବାହାରର ପାଣିପବନ ବାଜି ସେ ସବୁ ଝଡ଼ି-ଭୁସୁଡ଼ି ପଡ଼ୁଥିଲା ଓ ପ୍ରାଚୀନକାଳର ସେ ସମସ୍ତ ଅମୂଲ୍ୟ ଚିହ୍ନ ସଂରକ୍ଷଣ କରିବା ଦିଗରେ ବିଶେଷ କିଛି କରାଯାଉ ନଥିଲା । ମହେଞ୍ଜୋଦାରୋ ଦାୟିତ୍ୱରେ ଥିବା ପ୍ରତ୍ନତତ୍ତ୍ୱ ବିଭାଗର କର୍ମଚାରୀ ଅଭିଯୋଗ କରିଥିଲେ ଯେ ଖୋଲାଯାଇଥିବା ଗୃହଗୁଡ଼ିକୁ ଯଥାଯଥ ଭାବରେ ସଂରକ୍ଷିତ କରିବା ପାଇଁ ତାଙ୍କୁ ବସ୍ତୁତଃ କୌଣସି ଅର୍ଥ, ଆବଶ୍ୟକୀୟ ସରଞ୍ଜାମ ଅବା ଅନ୍ୟ କୌଣସି ରକମର ସାହାଯ୍ୟ ମିଳୁନି । ଗତ ଆଠ ବର୍ଷ ଭିତରେ କ'ଣ ଘଟିଛି ମୁଁ ଜାଣେନି, ତଥାପି ମୋର ମନେ ହେଉଛି ଯେ ସେ ସବୁ ସେହିପରିଭାବରେ କ୍ଷୟ ହୋଇଯାଉଛି ଓ ଆଉ କେତେଟା ବର୍ଷରେ ମହେଞ୍ଜୋଦାରୋର ବହୁତ କିଛି ଭୂରିଜିକ ଚିହ୍ନ ଲୋପ ପାଇଯିବ ।

ଏହି ଚରମ ଅବହେଳା ନିମନ୍ତେ କ୍ଷମା ନାହିଁ । ଯାହାର ତୁଲ୍ୟବସ୍ତୁ କେବେହେଲେ

ସ୍ଥାପନ କରିବା ସମ୍ଭବ ନୁହେଁ ତାହା ଲୋପ ପାଇଥିବ ଓ ତାହା କ'ଣ ଥିଲା ଆମକୁ ସ୍ମରଣ କରାଇବା ପାଇଁ ରହିଥିବ କେତୋଟି ଫଟୋ ଓ କିଛି ଲିଖିତ ବର୍ଣ୍ଣନା ମାତ୍ର ।

ମହେଞ୍ଜୋଦାରୋ ଓ ହରପ୍ପା ଭିତରେ ଦୂରତାର ବ୍ୟବଧାନ ଖୁବ୍ ବେଶି । କେବଳ ସଂଯୋଗବଶତଃ ଏହି ଦୁଇଟି ସ୍ଥାନରେ ଏହି ଭଗ୍ନାବଶେଷ ଆବିଷ୍କୃତ ହେଲା । ଏହି ଦୁଇଟି ଅଞ୍ଚଳ ଭିତରେ ଏପରି ବହୁତ କେତେ ନଗର ଓ ପ୍ରାଚୀନ ମଣିଷର ହସ୍ତଶିଳ୍ପର ଧ୍ୱଂସାବଶେଷ ଯେ ପୋତି ହୋଇ ରହିଛି ସେଥିରେ ସନ୍ଦେହ ନାହିଁ । ବସ୍ତୁତଃ, ଏହି ସଭ୍ୟତା ଉତ୍ତର ଭାରତର ବହୁ ଅଞ୍ଚଳରେ ଯେ ବିସ୍ତୃତ ଥିଲା ସେଥିରେ ମଧ୍ୟ ସନ୍ଦେହ ନାହିଁ । ସମସ୍ତ ହୁଏତ ପୁଣି ଆସିବ ଯେବେ ଭାରତର ବିସ୍ମୃତ ପ୍ରାୟ ଅତୀତକୁ ଉନ୍ମୋଚନ କରିବା କାର୍ଯ୍ୟ ପୁଣି ହାତକୁ ନିଆଯିବ ଓ ବହୁ ସୁଦୂରପ୍ରସାରୀ ଆବିଷ୍କାର କରାଯିବ । ଏବେ ବି ପଶ୍ଚିମରେ କାଥିଆୱାଡ଼ ଓ ପଞ୍ଜାବର ଅମ୍ବାଲା ଜିଲ୍ଲା ଭଳି ଦୁଇଟି ଦୂରବର୍ତ୍ତୀ ସ୍ଥାନରେ ଏହି ସଭ୍ୟତାର ଧ୍ୱଂସାବଶେଷ ଖୋଳି ବାହାର କରାଗଲାଣି । ଆହୁରି ମଧ୍ୟ ବିଶ୍ୱାସ କରିବାର ଅବକାଶ ଅଛି ଯେ ଏହି ସଭ୍ୟତା ଗାଙ୍ଗେୟଉପତ୍ୟକା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏପରି ଭାବରେ, ଏହା ସିନ୍ଧୁନଦ ସଭ୍ୟତା ଅପେକ୍ଷା ବହୁତ କିଛି ଅଧିକ ଥିଲା । ମହେଞ୍ଜୋଦାରୋରୁ ମିଳିଥିବା ଶିଳାଲେଖଗୁଡ଼ିକ ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଭାବରେ ଅର୍ଥ କରାଯାଇପାରିନି ।

କିନ୍ତୁ ଏ ଯାବତ୍ ଆମେ ଯେତିକି ଜାଣିଛୁ ତାହା ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ । ସିନ୍ଧୁନଦ ସଭ୍ୟତା, ଆଜି ଯେଉଁଭଳି ଭାବରେ ଆମ ଆଖିରେ ପଡ଼ୁଛି, ଅତି ଉନ୍ନତ ଧରଣର ଥିଲା ଓ ସେ ଅବସ୍ଥାରେ ପହଞ୍ଚିବା ପାଇଁ ହୁଏତ ହଜାର ହଜାର ବର୍ଷ ଲାଗିଥିବ । ବଡ଼ ଆଶ୍ଚର୍ଯ୍ୟର କଥା ଯେ ଏହି ସଭ୍ୟତା ପ୍ରଧାନତଃ ଧର୍ମ ନିରପେକ୍ଷ ଥିଲା ଏବଂ ଯଦିଓ ଧର୍ମଭାବ ଥିଲା ତା'ର ଆଧିପତ୍ୟ ନଥିଲା । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ପରବର୍ତ୍ତୀ କାଳର ଭାରତରେ ବିଭିନ୍ନ ସାଂସ୍କୃତିକ ପର୍ଯ୍ୟାୟର ଏହା ଅଗ୍ରଦୂତ ଥିଲା ।

ସାର୍ ଜନ୍ ମାର୍ଶଲ କହନ୍ତି, "ମହେଞ୍ଜୋଦାରୋ ଓ ହରପ୍ପାଠାରେ ଗୋଟାଏ ବିଷୟ ନିର୍ଭୁଲ ତଥା ପ୍ରାଞ୍ଜଳ ଭାବରେ ଜଣାଯାଏ ଯେ ଏହି ଉଭୟ ସ୍ଥାନରେ ଆବିଷ୍କୃତ ଏହି ସଭ୍ୟତା ଗୋଟାଏ ଉପକ୍ରାନ୍ତ ସଭ୍ୟତା ନୁହେଁ । ବରଂ ଏହା ବହୁ କାଳରୁ ଭାରତୀୟ ମାଟିରେ ଗତାନୁଗତିକ ଭାବରେ ବିକାଶଲାଭ କରିଥିଲା । ଏହା ପଛରେ ଥିଲା ବହୁ ସହସ୍ର ବର୍ଷର ମାନବ-ପ୍ରଚେଷ୍ଟା । ମଣିଷକୁ ସଭ୍ୟ କରିବାର ପ୍ରକ୍ରିୟା ଯେଉଁଠି ଆରମ୍ଭ ହୋଇଥିଲା ଓ ବିକାଶଲାଭ କରିଥିଲା ତାର ଏକ ଅତୀବ ମହତ୍ତ୍ୱପୂର୍ଣ୍ଣ ଅଞ୍ଚଳ ଭାବରେ ଭାରତକୁ ମଧ୍ୟ ପାରସ୍ୟ, ମେସୋପୋଟାମିଆ ଓ ମିଶର ସଙ୍ଗେ ଏଣିକି ଅବଶ୍ୟ ସ୍ୱୀକାର କରିବାକୁ ହେବ ।" ଅନ୍ୟତ୍ର ସେ ପୁଣି କହନ୍ତି, "ସମସାମୟିକ ମେସୋପୋଟାମିଆ ଓ ମିଶର ସଙ୍ଗେ ଘନିଷ୍ଠ ଭାବରେ ସମ୍ବନ୍ଧିତ ଓ ତଦପେକ୍ଷା କେତେ ଭାବରେ ଉନ୍ନତ, ଭାରତର ଅନ୍ୟ କେଉଁ ଅଞ୍ଚଳ ବିଷୟ କହି ନହେଲେ ମଧ୍ୟ, ପଞ୍ଜାବ ଓ ସିନ୍ଧୁ ଗୋଟାଏ ଅଗ୍ରଗାମୀ ତଥା ଅଦ୍ୱିତୀୟ ଭାବରେ ଅଭିନ୍ନ ସଭ୍ୟତାର ବିଭୂତିମାନ ଉପଭୋଗ କରୁଥିଲେ ।"

ସିନ୍ଧୁ ଉପତ୍ୟକାର ଏହି ଜାତି ତତ୍କାଳୀନ ସୁମେରୀୟ ସଭ୍ୟତା ସଙ୍ଗେ ଯେ ସଂଯୋଗ

ସ୍ଥାପନ କରିଥିଲେ ତାର ପ୍ରମାଣ ଅଳକଡ଼ରେ ଅବସ୍ଥିତ ଭାରତୀୟ ଉପନିବେଶରେ (ସମ୍ଭବତଃ ବ୍ୟବସାୟୀଙ୍କର) ରହିଛି । "ସୈନ୍ଧବ ନଗରୀମାନଙ୍କରୁ କାରିଗରମାନେ ଟାଇଗ୍ରିସ ଓ ୟୁଫ୍ରେଟିସ୍‌ର ହାଟ ବଜାର ପର୍ଯ୍ୟନ୍ତ ମଧ୍ୟ ଯାଉଥିଲେ । ଅପର ପକ୍ଷରେ କଳା ସମ୍ବନ୍ଧୀୟ କେତେକ ସୁମେରୀୟ କୌଶଳ, ମେସୋପୋଟାମିଆର ପ୍ରସାଧନ ସାମଗ୍ରୀ ଓ ଗୋଟାଏ ରମ୍ଭ-ମୋହର ସିନ୍ଧୁରେ ନକଲ କରାଯାଇଥିଲା । କଞ୍ଚାମାଲ ଓ ବ୍ୟସନ ଉପକରଣରେ କେବଳ ବାଣିଜ୍ୟ ସୀମିତ ନଥିଲା । ଆରବ ସାଗର ଉପକୂଳମାନଙ୍କରୁ ନିୟମିତ ଭାବରେ ଆମଦାନି କରାଯାଇଥିବା ମାଛ ମହେଞ୍ଜୋଦାରୋ ଖାଦ୍ୟ ସାମଗ୍ରୀର ଅନ୍ତର୍ଭୁକ୍ତ ଥିଲା । ୧ ।

ସେ ସମୟର ଭାରତରେ ଲୁଗା ମଧ୍ୟ ବୁଣାଯାଉଥିଲା । ସମସାମୟିକ ମିଶର ଓ ମେସୋ-ପୋଟାମିଆ ସଭ୍ୟତା ସଙ୍ଗେ ସିନ୍ଧୁନଦ ସଭ୍ୟତାକୁ ତୁଳନାକରି ଓ ବୈଷମ୍ୟ ଦେଖାଇ ମାର୍ଶଲ୍ କହିଛନ୍ତି, "ଏପରିଭାବରେ, କେତୋଟି ମୁଖ୍ୟ ବିଶେଷତ୍ୱ ଦେଖିବାକୁ ଗଲେ, ଏହି ସମୟରେ ଲୁଗା ବୁଣିବା ନିମନ୍ତେ ତୂଳାର ବ୍ୟବହାର ଭାରତ ପାଇଁ କେବଳ ପରିମିତ ଥିଲା ଓ ତତ୍ପରବର୍ତ୍ତୀ ଦୁଇ ହଜାର କି ତିନି ହଜାର ବର୍ଷ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଜଗତକୁ ବିସ୍ତୃତ ହୋଇ ନଥିଲା । ମହେଞ୍ଜୋଦାରୋ ନାଗରିକଙ୍କ ପାଇଁ ନିର୍ମିତ ପ୍ରଶସ୍ତ ବାସଗୃହ ଓ ସ୍ନାନାଗାର ସଙ୍ଗେ ତୁଳନା କରି ଦେଖିବାପାଇଁ ପ୍ରାଗ୍‌ଐତିହାସିକ ମିଶର, ମେସୋପୋଟାମିଆ ଅବା ପଶ୍ଚିମ ଏସିଆର ଅନ୍ୟତ୍ର କେଉଁଠି ସେପରି କିଛି ଆମ ଦୃଷ୍ଟିଗୋଚର ହୋଇନାହିଁ । ଏହିସବୁ ଦେଶରେ ଧନ ଓ ମନ ଦେବଦେବୀ ନିମନ୍ତେ ବଡ଼ ବଡ଼ ମନ୍ଦିର ଏବଂ ରାଜାମାନଙ୍କ ପ୍ରାସାଦ ସମାଧି-ମନ୍ଦିର ନିର୍ମାଣ କରିବାରେ ବ୍ୟବହୃତ ହେଉଥିଲା । ସାଧାରଣ ଲୋକଙ୍କୁ ଅକିଞ୍ଚିତ୍କର ମାଟି ଘରେ ସନ୍ତୁଷ୍ଟ ରହିବାକୁ ହେଉଥିଲା । ସିନ୍ଧୁଉପତ୍ୟକାର ଚିତ୍ର କିନ୍ତୁ ଥିଲା ଠିକ୍ ଓଲଟା ଏବଂ ସେଠାରେ ଯାହାକିଛି ସୁନ୍ଦର ଓ ସୁଠାମ ନିର୍ମିତ ହେଉଥିଲା ତାହା ନାଗରିକଙ୍କ ସୁବିଧା ପାଇଁ ।" ମହେଞ୍ଜୋଦାରୋରେ ଦୃଷ୍ଟ ସର୍ବସାଧାରଣ ଓ ବ୍ୟକ୍ତିଗତ ସ୍ନାନାଗାର, ଉତ୍କୃଷ୍ଟ ଧରଣର ଜଳ ନିଷ୍କାସନ ପ୍ରଣାଳୀ ଭଳି ବ୍ୟବସ୍ଥା ଏ ଯାବତ୍ କୁତ୍ରାପି ଆବିଷ୍କୃତ ହୋଇନି । ଆହୁରି ମଧ୍ୟ, ସେଠାରେ ସ୍ନାନାଗାର ଓ ଭୃତ୍ୟବାସ ସହିତ ପୋଡ଼ା ଇଟାରେ ନିର୍ମିତ ବ୍ୟକ୍ତିଗତ ଦ୍ୱିତଳ ଗୃହର ବହୁଳତା ଦୃଷ୍ଟିରେ ପଡ଼େ । ଏଥି ସଙ୍ଗେ ଭଡ଼ାରେ ଦେବା ପାଇଁ ଧାଡ଼ି ଧାଡ଼ି ଘର ବି ନିର୍ମିତ ହୋଇଥିଲା ।

ସିନ୍ଧୁନଦ ସଭ୍ୟତାର ସ୍ୱୀକୃତ ବିଶେଷଜ୍ଞ ମାର୍ଶଲ, ଯାହାଙ୍କ ଦାୟିତ୍ୱ ଓ ତତ୍ତ୍ୱାବଧାନରେ ମହେଞ୍ଜୋଦାରୋ ଓ ହରପ୍ପାରେ ଖନନକାର୍ଯ୍ୟ କରାଗଲା, ଅନ୍ୟତ୍ର କହନ୍ତି, "ସିନ୍ଧୁ ଉପତ୍ୟକାର ଆଉ ଏକ ବିଚିତ୍ରତା ଓ ଯେଉଁଥିରେ ତାର ବ୍ୟକ୍ତିଗତ ଚରିତ୍ରର ସ୍ୱାକ୍ଷର ଦେଖିବାକୁ ମିଳେ ତାହା ହେଉଚି ତାର କଳା ଓ ଧର୍ମ । ଶୈଳୀ ଦିଗରୁ ମେଷ, କୁକୁର ଓ ଅନ୍ୟାନ୍ୟ ପଶୁର ପ୍ରତିରୂପ ଅବା ଉତ୍କୀର୍ଣ୍ଣ ମୋହର ଚିତ୍ରିତ ଚୀନା ମାଟି ସଙ୍ଗେ ସମାନ ହେବା ଭଳି ସେ କାଳର ଅନ୍ୟ କୌଣସି ଦେଶରେ ଦୃଷ୍ଟିଗୋଚର ହୋଇନାହିଁ ।

---

୧. ଗାର୍ଡ଼ନ ଚାଇଲଡ଼, ହ୍ୱାଟ ହେପେଣ୍ଡ୍ ଇନ ହିଷ୍ଟ୍ରି (ପେଲିକେନ୍ ବୁକ୍‌ସ-ପୃ.୧୧୬)

ତକ୍ଷଣଶିଳ୍ପ ଭିତରେ ବଳିଷ୍ଠ ଚୂଳ ଓ କ୍ଷୁଦ୍ର ଶୃଙ୍ଗବିଶିଷ୍ଟ ଷଣ୍ଢ ପ୍ରଧାନ । ରଚନା କୌଶଳର ପୃଷ୍ଠ ଦୃଷ୍ଟିରୁ ଓ ପ୍ଲାଷ୍ଟିକ ଆଧାର ତଥା ରେଖାରେ ରୂପର ଅନୁଭୂତ ଦୃଷ୍ଟିରୁ ଏ ପ୍ରକାର ଶିଳ୍ପର ସ୍ୱାତନ୍ତ୍ର୍ୟ ଅନନ୍ୟ ବିରଳ ।

ହରପ୍ପାରୁ ପ୍ରାପ୍ତ ଦୁଇଟି କ୍ଷୁଦ୍ର ଉତ୍କୃଷ୍ଟ ଭାବରେ ନମନୀୟ ନାରୀ ମୂର୍ତ୍ତିର ରଚନା ସୌଷ୍ଠବରୁ ବୁଝାଯାଏ ଯେ ଗ୍ରୀକ୍‌ର ଶାସ୍ତ୍ରୀୟ ଯୁଗ ପର୍ଯ୍ୟନ୍ତ ତାକୁ ବଳପଡ଼ିବା ଭଳି ସେ ଧରଣର ଶିଳ୍ପକର୍ମ ସମ୍ଭବ ହୋଇ ନଥିଲା··· ସିନ୍ଧୁ ଲୋକଙ୍କ ଧର୍ମରେ ବହୁତ କିଛି ଅଛି ଯାହାର ସାଦୃଶ୍ୟ ଅନ୍ୟାନ୍ୟ ଦେଶରେ ଦେଖିବାକୁ ମିଳିପାରେ । ପ୍ରତ୍ୟେକ ପ୍ରାଗ୍‌ଐତିହାସିକ ଧର୍ମ ଓ ଅଧିକାଂଶ ଐତିହାସିକ ଧର୍ମ ପ୍ରତି ଏହା ପ୍ରଯୁଜ୍ୟ । କିନ୍ତୁ ସାମଗ୍ରିକ ଭାବରେ ଗ୍ରହଣ କଲେ ସେମାନଙ୍କର ଧର୍ମରେ ଭାରତୀୟ ଚରିତ୍ର ଏତେ ଭାବରେ ରହିଛି ଯେ ଆଜିର ହିନ୍ଦୁଧର୍ମ ଓ ତାର ଭିତରେ ପ୍ରଭେଦ ବାରିବା କଷ୍ଟକର ।”

ଏପରି ଭାବରେ ଆମେ ଦେଖିବାକୁ ପାଉ, ସିନ୍ଧୁନଦ ସଭ୍ୟତାର ବାଣିଜ୍ୟ ତଥା ଅନ୍ୟ ବହୁବିଧ ସମ୍ପର୍କ ପାରସ୍ୟ, ମେସୋପୋଟାମିଆ ଓ ମିଶର ସଭ୍ୟତା ସଙ୍ଗେ ଥିଲା ଏବଂ ଅନେକ ଦିଗରେ ତାହା ସେମାନଙ୍କ ଠାରୁ ଉଚ୍ଚକୋଟୀର ବି ଥିଲା । ଏହା ଥିଲା ଗୋଟାଏ ପୌର-ସଭ୍ୟତା ଯେଉଁଠି ବ୍ୟବସାୟୀ ଶ୍ରେଣୀ ଖୁବ୍ ଧନବାନ ଥିଲେ ଓ ସ୍ପଷ୍ଟତଃ ଗୋଟାଏ ଗୁରୁତ୍ୱ-ପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ସାହିମାନଙ୍କର ଧାଡ଼ିଧାଡ଼ି ପ୍ରକୋଷ୍ଠ, ସମ୍ଭବତଃ ଛୋଟ ଛୋଟ ଦୋକାନଘର ଆହୁରି କୌଣସି ଭାରତୀୟ ବଜାରର ଧାରଣା ସୃଷ୍ଟି କରେ । ଅଧ୍ୟାପକ ଚାଇଲଡ଼୍ କହନ୍ତି, “ସିନ୍ଧୁ ଉପତ୍ୟକା ନଗରମାନଙ୍କର କାରିଗରମାନେ ଅଧିକତର ଭାବରେ ‘ବଜାର ପାଇଁ’ ଉତ୍ପାଦନ କରୁଥିଲେ । ତେବେ ଦ୍ରବ୍ୟ ବିନିମୟ ନିମନ୍ତେ କି ପ୍ରକାର ମୁଦ୍ରା ଓ ମୂଲ୍ୟ ନିର୍ଦ୍ଧାରଣର ମାନ ସମାଜ ଦ୍ୱାରା ଗୃହୀତ ହୋଇଥିଲା, ନିଶ୍ଚିତ ଭାବରେ କହିବା କଠିନ । କେତେକ ପ୍ରାସାଦ ସଙ୍ଗେ ଅସ୍ତ୍ରାଗାର ସଂଲଗ୍ନ ଥିଲା । ଏଥିରୁ ଜଣାଯାଏ ଯେ ସେ ସବୁ ଘରର ମାଲିକ ଥିଲେ ବ୍ୟବସାୟୀ ଶ୍ରେଣୀର ଲୋକ । ଘରଗୁଡ଼ିକର ଆକାର ଓ ସଂଖ୍ୟା ଗୋଟାଏ ସମୃଦ୍ଧିଶାଳୀ ତଥା ଶକ୍ତିଶାଳୀ ସୌଦାଗର ସଂପ୍ରଦାୟର ପ୍ରାଧାନ୍ୟ ସୂଚିତ କରେ ।” “ଆବିଷ୍କୃତ ଭଗ୍ନାବଶେଷରୁ ମୂଲ୍ୟବାନ ରତ୍ନଖଚିତ ସୁନା, ରୁପାର ବିବିଧ ଅଳଙ୍କାର, ତମ୍ବା ପାତ୍ର, ଧାତୁନିର୍ମିତ ଉପକରଣ ଓ ଅସ୍ତ୍ରଶସ୍ତ୍ର ସଂଗୃହୀତ ହୋଇଛି ।’ ଚାଇଲଡ୍ ଆହୁରି କହନ୍ତି ଯେ “ଯୋଜନାକୃତ ଭାବରେ ନିର୍ମିତ ବିଭିନ୍ନ ସାହି ଓ ନିୟମିତ ଭାବରେ ପରିଚ୍ଛନ୍ନ କରାଯାଉଥିବା ସୁବ୍ୟବସ୍ଥିତ ଜଳନିଷ୍କାସନ ପ୍ରଣାଳୀ ଗୋଟାଏ ସୁସମ୍ବଦ୍ଧ ପୌର-ଶାସନର ସତତ ସଜାଗତା ପ୍ରମାଣିତ କରେ । ସହର ନିର୍ମାଣ ଯୋଜନାର ବିବିଧ ଉପବିଧାନ ପାଳନ କରିବା ଓ ସମର୍ଥିତ ଭାବରେ ସାହି ଓ ଗଳିଗୁଡ଼ିକ ନିର୍ମାଣ କରିବାରେ ଏହି ପୌରଶାସନ ବ୍ୟବସ୍ଥା ଯଥେଷ୍ଟ ଭାବରେ ଶକ୍ତିଶାଳୀ ଥିଲା । ବାରମ୍ବାର ବନ୍ୟାରେ ବିଧ୍ୱସ୍ତ ହେଉଥିବା ହେତୁରୁ ସାହିଗୁଡ଼ିକୁ ବାରମ୍ବାର ସ୍ଥାପନ କରିବା ଆବଶ୍ୟକ ହେଉଥିଲା ।”[୧]

---

୧. ଗର୍ଡନ ଚାଇଲ୍ଡ଼, ହ୍ୱାଟ୍ ହେପେଣ୍ଡ ଇନ୍ ହିଷ୍ଟ୍ରି (ପୃ.—୧୧୩-୧୧୪)

ଆଜିର ଭାରତ ଓ ସେ କାଳର ସିନ୍ଧୁନଦ ସଭ୍ୟତା ମଧ୍ୟରେ ବହୁତ କିଛି ବ୍ୟବଧାନ ଓ ପର୍ଯ୍ୟାୟ ରହିଛି ଯାହା ସମ୍ପର୍କରେ ଆମେ ପ୍ରାୟ ଅଜ୍ଞାତ । ଗୋଟାଏ ପର୍ଯ୍ୟାୟ ସଙ୍ଗେ ଆଉ ଏକ ପର୍ଯ୍ୟାୟର ଯୋଗସୂତ୍ର ସର୍ବଦା ବିଦ୍ୟମାନ ଥିବା ଜଣାଯାଏନି । ଇତି ମଧ୍ୟରେ ବହୁତ କିଛି ଘଟି ଯାଇଛି ଏବଂ ନାନା ଭାବରେ ପରିବର୍ତ୍ତନ ଦେଖା ଦେଇଛି । ତଥାପି ଏ ସବୁ ଅବିଚ୍ଛିନ୍ନତାର ଗୋଟାଏ ପ୍ରଚ୍ଛନ୍ନ ଭାବ ଏବଂ ଛଅ ସାତ ହଜାର ବର୍ଷର ସୁଦୂର ଅତୀତରେ ଖୁବ୍ ସମ୍ଭବ ଯେଉଁ ସିନ୍ଧୁନଦ ସଭ୍ୟତାର ସୂତ୍ରପାତ ହୋଇଥିଲା ସେଥି ସଙ୍ଗେ ଆଧୁନିକ ଭାରତକୁ ସଂଯୁକ୍ତ କରି ରଖିଥିବା ଗୋଟାଏ ଅଖଣ୍ଡ ସୂତ୍ର ପରିଲକ୍ଷିତ ହୁଏ । ମହେଞ୍ଜୋଦାରୋ ଓ ହରପ୍ପା ଅତି ବିସ୍ମୟକର ଭାବରେ ନାନା ଚଳନ୍ତି ଐତିହ୍ୟ ଓ ଅଭ୍ୟାସ—ସାର୍ବଜନୀନ ପର୍ବ, କାରିଗରୀ ଓ ପୋଷାକ ପରିଚ୍ଛଦର ଢଙ୍ଗ ସ୍ମରଣ କରାଏ । ଏଥିରେ ବହୁତ କିଛି ପଶ୍ଚିମ ଏସିଆକୁ ପ୍ରଭାବିତ କରିଥିଲା ।

ଏଠାରେ ଲକ୍ଷ୍ୟ କରିବା ବଡ଼ ଚମତ୍କାର୍ଯ୍ୟକ ଯେ ଭାରତର ଚରିତର ଏହି ଅରୁଣ ପ୍ରଭାତରେ ଭାରତ ଗୋଟିଏ ନୂଆ ଶିଶୁ ଭଳି ପ୍ରତୀତ ହୁଏନି; ବରଂ ନାନା ଭାବରେ ତାର ଅଭିବୃଦ୍ଧି ସାଧିତ ହୋଇଥିଲା । ଅନୁପଲବ୍ଧ ତଥା ଅସ୍ପଷ୍ଟ ଗୋଟାଏ ଅଲୌକିକ ବିଶ୍ୱର ନାନାବିଧ ସ୍ୱପ୍ନରେ ନିଜକୁ ହଜାଇ ଦେଇ ସେ ଜୀବନର ବିବିଧ ମାର୍ଗ ସମ୍ପର୍କରେ ଉଦାସୀନ ନଥିଲା, ବରଂ କଳା କ୍ଷେତ୍ରରେ ଓ ଜୀବନକୁ ସୁଖ ସମ୍ଭୋଗ ଯୋଗାଇବା ଦିଗରେ ପ୍ରଭୂତ ପରିମାଣରେ ଶିଳ୍ପଗତ ପ୍ରଗତି କରିଥିଲା । ନାନାବିଧ ରୂପ ରଚନାରେ ସନ୍ତୁଷ୍ଟ ନରହି, ଆଧୁନିକ ସଭ୍ୟତା ପକ୍ଷରେ ଅପରିହାର୍ଯ୍ୟ, ଉତ୍ତମ ସ୍ନାନାଗାର ଓ ଜଳନିଷ୍କାସନ ପ୍ରଣାଳୀ ଭଳି ବ୍ୟବସ୍ଥାମାନ ମଧ୍ୟ କରିପାରି ଥିଲା ।

## ୨. ଆର୍ଯ୍ୟମାନଙ୍କ ଆଗମନ

ସିନ୍ଧୁନଦ ସଭ୍ୟତାର ଏ ଲୋକେ କିଏ ଓ କେଉଁଠାରୁ ଆସିଥିଲେ, ଏ ପର୍ଯ୍ୟନ୍ତ ସେ ବିଷୟରେ ଆମେ ଅଜ୍ଞାତ । ଖୁବ୍ ସମ୍ଭବ ସେମାନଙ୍କ ସଂସ୍କୃତି ଦେଶଜ ଭାବରେ ସେ ଅଞ୍ଚଳରେ ହିଁ ବିକାଶ ଲାଭ କରିଥିଲା ଏବଂ ତାର ମୂଳ ଓ ଶାଖା ଦକ୍ଷିଣ ଭାରତରେ ମଧ୍ୟ ଦେଖିବାକୁ ମିଳିପାରେ । କେତେକ ପଣ୍ଡିତ ସିନ୍ଧୁ ଉପତ୍ୟକାବାସୀ ଦ୍ରାବିଡ଼ ଜାତିମାନଙ୍କ ଭିତରେ ଓ ଦକ୍ଷିଣ ଭାରତ ସଂସ୍କୃତି ସିନ୍ଧୁନଦ ସଭ୍ୟତା ଭିତରେ ମୌଳିକ ସାଦୃଶ୍ୟ ଲକ୍ଷ୍ୟ କରନ୍ତି । ଯଦି ବାହାରୁ କୌଣସି ଜାତି ଭାରତକୁ କେବେ ଆସିଛନ୍ତି, ତେବେ ତାର କାଳ ମହେଞ୍ଜୋଦାରୋ ସମ୍ପର୍କରେ ଧରାଯାଉଥିବା କାଳର କେତେ ହଜାର ବର୍ଷ ପୂର୍ବେ ହୋଇଥିବ । ତେବେ ଆଜି ବିଚାର କରିବାକୁ ଗଲାବେଳେ ଆମେ ସେମାନଙ୍କୁ ଭାରତର ଦେଶଜ ଅଧିବାସୀ ଭାବରେ ହିଁ ଗ୍ରହଣ କରିବା ଉଚିତ ହେବ ।

ସିନ୍ଧୁନଦ ସଭ୍ୟତା କି ବିପର୍ଯ୍ୟୟରସମ୍ମୁଖୀନ ହେଲା ଓ ତାର ଅବସାନ କିପରି ଘଟିଲା ? କେତେକ କହନ୍ତି (ସେମାନଙ୍କ ଭିତରୁ ଗର୍ଡ଼ନ୍ ଚାଇଲ୍ଡ୍ ଜଣେ) ଯେ ଯାହା ବ୍ୟାଖ୍ୟା କରିବା

କଷ୍ଟକର, ସେପରି କୌଣସି ଗୁରୁତର ବିପତ୍ତି ଯୋଗୁଁ ଏହି ସଭ୍ୟତାର ଅକସ୍ମାତ୍ ଅବସାନ ଘଟିଲା । ସିନ୍ଧୁନଦୀର ପ୍ରବଳ ବନ୍ୟା ସର୍ବଜନବିଦିତ । ତାର ତୀରବର୍ତ୍ତୀ ବହୁ ଗ୍ରାମ ଓ ସହର ଏହି ନଦୀ ପ୍ଲାବିତ କରିଥାଏ । ଅଥବା ଗୋଟାଏ ପରିବର୍ତ୍ତନଶୀଳ ଜଳବାୟୁ ଭୂମିର ଜଳାଂଶ କ୍ରମଶଃ ଶୋଷଣ କରି ହୁଏତ ଚାଷୋପଯୋଗୀ ଜମିକୁ ମରୁଭୂମିରେ ପରିଣତ କରିଥିବ । ମହେଞ୍ଜୋଦାରୋରେ ବାଲିସ୍ତର ଉପରେ ବାଲିସ୍ତର ଜମି ନଗରୀର ଭୂମିତଳ ଉତ୍ଥିତ କରିଥିବା ହେତୁରୁ ପୁରାତନ ଭିତ୍ତି ଉପରେ ଉଚ୍ଚତା ବଢ଼ାଇ ଘର ନିର୍ମାଣ କରିବା ପାଇଁ ସେଠାର ଅଧିବାସୀ ବାଧ୍ୟ ହୋଇଥିବା ପ୍ରମାଣ ମହେଞ୍ଜୋଦାରୋର ଭଗ୍ନାବଶେଷରୁ ମିଳେ । ଖନନଦ୍ୱାରା ଆବିଷ୍କୃତ କେତେକ ଗୃହ ଦ୍ୱିତଳ ଅବା ତ୍ରି ତଳବିଶିଷ୍ଟ ଥିବା ଜଣାଯାଏ । ତଥାପି କ୍ରମାଗତ ଭାବେ ଭୂମିତଳ ସଙ୍ଗେ ସମାନତା ରକ୍ଷା କରି କାନ୍ଥଗୁଡ଼ିକର ଉଚ୍ଚତା ବୃଦ୍ଧି କରିଥିବା ସୂଚନା ମିଳେ । ଆମେ ଜାଣୁଁ, ପ୍ରାଚୀନ କାଳରେ ସିନ୍ଧୁ ପ୍ରଦେଶ ଉର୍ବର ଓ ବିତ୍ତଶାଳୀ ଥିଲା । କିନ୍ତୁ ମଧ୍ୟଯୁଗରୁ ଏହାର ଅଧିକାଂଶ ଭାଗ କେବଳ ମରୁଭୂମି କହିଲେ ଚଳେ ।

ଅତଏବ, ଏ ସବୁ ଜଳବାୟୁ ପରିବର୍ତ୍ତନ ସେ ଅଞ୍ଚଳର ଲୋକଙ୍କ ଉପରେ ଓ ସେମାନଙ୍କ ଜୀବନଯାପନ ପ୍ରଣାଳୀ ଉପରେ ଲକ୍ଷଣୀୟ ପ୍ରଭାବ ପକାଇଥିବ । ତେବେ, ଯେତେହେଲେ ମଧ୍ୟ, ଜଳବାୟୁ ପରିବର୍ତ୍ତନ ଏହି ବିସ୍ତୃତ ପୌରସଭ୍ୟତାର ଅପେକ୍ଷାକୃତ ସ୍ୱଳ୍ପ ଅଂଶକୁ ହିଁ ଉଜାଡ଼ି ଥିବ; କାରଣ ବର୍ତ୍ତମାନ ଆମେ ବିଶ୍ୱାସ କରିବା ପାଇଁ ଯଥେଷ୍ଟ ପ୍ରମାଣ ମିଳୁଚି ଯେ ଏହି ସଭ୍ୟତା ଗାଙ୍ଗେୟ ଉପତ୍ୟକା ପର୍ଯ୍ୟନ୍ତ ଓ ଖୁବ୍ ସମ୍ଭବ ଆହୁରି ଦୂର ପର୍ଯ୍ୟନ୍ତ ମଧ୍ୟ ବିସ୍ତୃତ ଥିଲା । ଏହାର ବିସ୍ତୃତ ନିମନ୍ତେ ଆମ ପାଖରେ ଅବଶ୍ୟ ଯଥେଷ୍ଟ ପରିମାଣରେ ଉପାତ୍ତ ନାହିଁ । ଏହି କେତେ ପ୍ରାଚୀନ ନଗରୀକୁ ସମ୍ଭବତଃ, ବାଲୁକାରାଶି ପରାଭୂତ କରି ଯେପରି ଆବୃତ କଲା, ସେପରି ସେଗୁଡ଼ିକର ସଂରକ୍ଷଣ ମଧ୍ୟ କଲା । ଅନ୍ୟ କେତେକ ନଗରୀ ଓ ପ୍ରାଚୀନ ସଭ୍ୟତାର ବହୁତ କିଛି ପ୍ରମାଣ କ୍ରମଶଃ କ୍ଷୟ ହୋଇ କାଳର ଆଘାତରେ ଭାଙ୍ଗିରୁଜି ଲୁପ୍ତ ହୋଇଚି । ହୁଏତ ଭବିଷ୍ୟତର ପ୍ରତ୍ନତାତ୍ତ୍ୱିକ ଆବିଷ୍କାର ପରବର୍ତ୍ତୀ ଯୁଗମାନଙ୍କ ସଙ୍ଗେ ସିନ୍ଧୁନଦ ସଭ୍ୟତାର ଅଧିକତର ଯୋଗସୂତ୍ର ଉନ୍ମୋଚିତ କରିବ ।

ସିନ୍ଧୁନଦ ସଭ୍ୟତା ଓ ପରବର୍ତ୍ତୀ ଯୁଗମାନଙ୍କ ଭିତରେ ଅବିଚ୍ଛିନ୍ନତାର ଗୋଟିଏ ନିଶ୍ଚିତ ବୋଧ ରହିଥିଲେ ମଧ୍ୟ ତାର ପରେ ଯେଉଁପ୍ରକାର ସଭ୍ୟତା ଆସିଲା ସେଥିରେ ସମସ୍ତଦୃଷ୍ଟିରୁ ଦେଖିଲେ ଗୋଟାଏ ପ୍ରକାର ବିଚ୍ଛେଦ ଅଥବା ଫାଙ୍କ ପରିଲକ୍ଷିତ ହୁଏ । ଏହି ପରବର୍ତ୍ତୀ ସଭ୍ୟତାରେ ସହର ଓ କୌଣସି ଏକ ପ୍ରକାର ପୌରଜୀବନ ଥିଲେ ମଧ୍ୟ ଆଦ୍ୟରୁ ଏହା ଗୋଟାଏ କୃଷି-ସଭ୍ୟତା ହୁଏତ ଥିଲା । କୃଷି ବିଭାଗ ଉପରେ ଏ ଗୁରୁତ୍ୱ ହୁଏତ ଉତ୍ତର-ପଶ୍ଚିମରୁ କ୍ରମାଗତ ଭାବେ ଆସୁଥିବା ନବାଗତ ଆର୍ଯ୍ୟଜାତି ଅର୍ପଣ କରିଥିବେ ।

ସିନ୍ଧୁନଦ ସଭ୍ୟତା କାଳର ପ୍ରାୟ ଏକ ହଜାର ବର୍ଷ ପରେ ଭାରତରେ ଆର୍ଯ୍ୟ ପ୍ରବ୍ରଜନ ଆରମ୍ଭ ହୋଇଥିବା ଅନୁମାନ କରାଯାଏ । ତଥାପି ଏହା ମଧ୍ୟ ସମ୍ଭବ ଯେ ସେଥି ଭିତରେ ସେପରି ଅତ୍ୟଧିକ ଅବକାଶ ରହି ନ ଥିଲା ଓ ବିଭିନ୍ନ ଜାତି-ଉପଜାତି, ପରବର୍ତ୍ତୀ କାଳ-

ମାନଙ୍କରେ ଯେପରି ସେତେବେଳେ ମଧ୍ୟ, ଉତ୍ତର-ପଶ୍ଚିମ ଦିଗରୁ ଭାରତରେ ପ୍ରବେଶ କରି କାଳକ୍ରମେ ଭାରତରେ ଲୀନ ହୋଇଲେ । ଆମେ କହିପାରୁଁ ଯେ ପ୍ରଥମ ମହାନ୍ ସାଂସ୍କୃତିକ ସମନ୍ୱୟ ଓ ମିଳନ ଘଟିଲା ତରଙ୍ଗ ପରେ ତରଙ୍ଗରେ ଆସୁଥିବା ଆର୍ଯ୍ୟଜାତି ଓ ସିନ୍ଧୁନଦ ସଭ୍ୟତାର ଅନୁମିତ ପ୍ରତିନିଧି ଦ୍ରାବିଡ଼ ଜାତିମାନଙ୍କ ସଙ୍ଗେ । ଏହି ସମନ୍ୱୟରୁ ବିଭିନ୍ନ ଭାରତୀୟ ଜାତି ଜନ୍ମ ନେଲେ ଏବଂ ଆର୍ଯ୍ୟ ଓ ଦ୍ରାବିଡ଼ ଉଭୟର ବୈଶିଷ୍ଟ୍ୟ ଘେନି ମୌଳିକ ଭାରତୀୟ ସଂସ୍କୃତି ଗଢ଼ିଉଠିଲା । ପରବର୍ତ୍ତୀ କାଳମାନଙ୍କରେ ଆହୁରି ବହୁ ଜାତି ଯଥା ପାରସିକ, ଯବନ, ପାର୍ଥୀଏନ୍, ବେକ୍‌ଟ୍ରୀଏନ, ଶିର୍ଥୀଏନ୍, ହୂଣ, ତୁରସ୍କ (ଇସଲାମର ଅଭ୍ୟୁଦୟ ପୂର୍ବରୁ), ପହିଲି ଖ୍ରୀଷ୍ଟାନ୍, ଇହୁଦୀ ଓ ଜୋରାଷ୍ଟ୍ରିୟମାନେ ଆସି କିଛିକାଳ ନିଜ ନିଜ ସ୍ୱାତନ୍ତ୍ର୍ୟ ବଜାୟ ରଖି ପରେ ଭାରତରେ ଲୀନ ହୋଇଲେ । ଡଡ୍‌ୱେଲ୍‌ଙ୍କ ମତରେ "ଭାରତରେ ଗ୍ରାସ କରିବା ଶକ୍ତି ସମୁଦ୍ର ଭଳି ଅସୀମ ।" ତାର ବର୍ଣ୍ଣ-ବ୍ୟବସ୍ଥା ଓ ଅନ୍ୟଠାରୁ ସମ୍ପୂର୍ଣ୍ଣ ଅଲଗା ରହିବା ମନୋଭାବ ଘେନି ବିଦେଶାଗତ ବିଭିନ୍ନ ଜାତି ଓ ସଂସ୍କୃତିକୁ ଗ୍ରାସ କରିବାର ଏ ସାମର୍ଥ୍ୟ ବାସ୍ତବିକ ବିସ୍ମୟକର । ସେ ତାର ଜୀବନୀ-ଶକ୍ତି ରକ୍ଷା କରିପାରି ଥିଲା ଓ ଥରକୁ ଥର କାୟା-କଳ୍ପ କରି ପାରୁଥିଲା ବୋଲି ହୁଏତ ଏହା ସମ୍ଭବ ହୋଇ ପାରିଲା । ମୁସଲମାନମାନେ ମଧ୍ୟ ଆସିବା ପରେ ଭାରତ ଦ୍ୱାରା ପ୍ରବଳ ଭାବରେ ପ୍ରଭାବିତ ହୋଇଥିଲେ । ଭିନ୍‌ସେଣ୍ଟ୍ ସ୍ମିଥ୍ କହନ୍ତି, "ଏହି ବୈଦେଶିକମାନେ (ଇସ୍‌ଲାମ ଧର୍ମାବଲମ୍ବୀ ତୁର୍କୀ) ସେମାନଙ୍କର ପୂର୍ବବର୍ତ୍ତୀ ଶକ ଓ ୟୁ-ଚି ଜାତିମାନଙ୍କ ଭଳି ହିନ୍ଦୁଧର୍ମର ବିସ୍ମୟକର ଆତ୍ମୀକରଣ ଶକ୍ତି ନିକଟରେ ଆତ୍ମ-ସମର୍ପଣ କଲେ ଓ କ୍ଷିପ୍ର ଭାବରେ ନିଜକୁ ହିନ୍ଦୁକରଣ ପ୍ରକ୍ରିୟାରେ ସଂଶ୍ଳିଷ୍ଟ କଲେ ।"

## ୩. ହିନ୍ଦୁ ଧର୍ମ

ଉପରୋକ୍ତ ଉକ୍ତିରେ ଭିନ୍‌ସେଣ୍ଟ୍ ସ୍ମିଥ୍ 'ହିନ୍ଦୁଧର୍ମ' ଓ 'ହିନ୍ଦୁକରଣ' ଶବ୍ଦ ଦୁଇଟି ବ୍ୟବହାର କରିଛନ୍ତି । ଭାରତୀୟ ସଂସ୍କୃତିର ବ୍ୟାପକ ବୋଧରେ ବ୍ୟବହୃତ ନହୋଇଲେ ଏପରି ଭାବରେ ଏ ଶବ୍ଦ ଦୁଇଟି ବ୍ୟବହାର କରିବା ନିର୍ଭୁଲ୍ ନୁହେଁ ବୋଲି ମୁଁ ମନେକରେ । ଆ( କୌଣସି ସଙ୍କୁଚିତ ଧାରଣା ସଙ୍ଗେ ଓ ନିର୍ଦ୍ଦିଷ୍ଟ ଭାବରେ ଧର୍ମ ସମ୍ବନ୍ଧୀୟ ଧାରଣା ସଙ୍ଗେ ସଂପୃକ୍ତ ହୋଇଲେ ଏ ଦୁଇଟି ଶବ୍ଦ ଭାରତୀୟଙ୍କୁ ଭ୍ରାନ୍ତ କରିବାର ଅବକାଶ ରହିଛି । ଆମର ପ୍ରାଚୀନ ସାହିତ୍ୟରେ 'ହିନ୍ଦୁ' ଶବ୍ଦର ବ୍ୟବହାର ନାହିଁ । ଏହାର ପ୍ରଥମ ଉଲ୍ଲେଖମତେ କହନ୍ତି, ଦେଖିବାକୁ ମିଳେ ଅଷ୍ଟମ ଶତାବ୍ଦୀର ଗୋଟାଏ ତନ୍ତ୍ର ଶାସ୍ତ୍ରରେ ଯେଉଁଥିରେ 'ହିନ୍ଦୁ' ଜାତି ବିଶେଷ ଭାବରେ କଥିତ ହୋଇଛି; ଗୋଟାଏ ନିର୍ଦ୍ଦିଷ୍ଟ ଧର୍ମର ଅନୁଗାମୀ ଭାବରେ ନୁହେଁ । ତେବେ ପ୍ରାଚୀନ ପାରସ୍ୟ ଭାଷାରେ ଓ ଅବେସ୍ତା ଗ୍ରନ୍ଥରେ ଏହାର ଉଲ୍ଲେଖ ଥିବାରୁ ଏହି ଶବ୍ଦ ଅତୀବ ପ୍ରାଚୀନ ବୋଲି ସ୍ପଷ୍ଟ ଭାବରେ ବୁଝାଯାଏ । ଭୌଗୋଳିକ ଅର୍ଥରେ ଏବା ସିନ୍ଧୁନଦୀ ଅପର ପାର୍ଶ୍ୱରେ ବାସ କରୁଥିବା ଲୋକଙ୍କ ଅର୍ଥରେ ହଜାରେ କମ୍ବା ତତୋଧିକ ବର୍ଷ

ପର୍ଯ୍ୟନ୍ତ ପଶ୍ଚିମ ତଥା ମଧ୍ୟ-ଏସିଆର ଜାତିମାନଙ୍କ ଦ୍ୱାରା ଏହା ବ୍ୟବହୃତ ହେଉଥିଲା । ସିନ୍ଧୁ-ନଦୀର ପ୍ରାଚୀନ ତଥା ଆଧୁନିକ ଭାରତୀୟ ନାମ ଇଣ୍ଡାସ୍ ଅର୍ଥାତ୍ 'ସିନ୍ଧୁ' ଶବ୍ଦରୁ ଏହାର ଉତ୍ପତ୍ତି । ଏହି ସିନ୍ଧୁ ଶବ୍ଦରୁ ଉତ୍ପନ୍ନ ହେଲ ହିନ୍ଦୁ ଓ ହିନ୍ଦୁସ୍ଥାନ, ଇଣ୍ଡାସ୍ ଓ ଇଣ୍ଡିଆ । ଖ୍ରୀଷ୍ଟପୂର୍ବ ସପ୍ତମ ଶତକରେ ଭାରତକୁ ଆସିଥିବା ବିଖ୍ୟାତ ଚୀନା ପରିବ୍ରାଜକ ଇ-ସିଙ୍ଗ୍ ତାଙ୍କର ଯାତ୍ରା ବିବରଣୀରେ ଲେଖିଛନ୍ତି ଯେ "ଉତ୍ତରଖଣ୍ଡର ଉପଜାତିମାନେ ଅର୍ଥାତ୍ ମଧ୍ୟ-ଏସୀୟ ଜାତିମାନେ ଭାରତକୁ 'ହିନ୍ଦୁ' (ହିନ୍-ତୁ) ଆଖ୍ୟା ଦେଇଥିଲେ ।" ସେ ଆହୁରି କହନ୍ତି, "ଏହା ମୋଟେ ସର୍ବସାଧାରଣ ନାମ ନୁହେଁ ଓ ତାହାର ଉପଯୁକ୍ତ ନାମ ହେଉଚି ଆର୍ଯ୍ୟ ଦେଶ ।" ବହୁ ବର୍ଷ ପରେ କେବଳ ଗୋଟାଏ ନିର୍ଦ୍ଦିଷ୍ଟ ଧର୍ମ ସମ୍ପର୍କରେ ହିନ୍ଦୁ ଶବ୍ଦକୁ ବ୍ୟବହାର କରିବା ଦେଖିବାକୁ ମିଳେ ।

ଭାରତରେ ଧର୍ମ ନିମନ୍ତେ ପୁରାତନ ବ୍ୟାପକ ଶବ୍ଦ ଥିଲା ଆର୍ଯ୍ୟଧର୍ମ । ଇଂରେଜୀରେ 'ରେଲିଜେନ୍' ଶବ୍ଦ ଅପେକ୍ଷା ଭାରତୀୟ 'ଧର୍ମ' ଶବ୍ଦ ଅଧିକ ମହତ୍ତ୍ୱର । 'ଧୃ' ଧାତୁରୁ ଧର୍ମ ଶବ୍ଦର ଉତ୍ପତ୍ତି ଓ ତାର ଅର୍ଥ ହେଉଚି ଧରି ରଖିବା । ଏହା ବସ୍ତୁର ଅନ୍ତରତମ ଗଠନ ଓ ତାର ଅନ୍ତର୍ ସତ୍ତା ପରିଚାଳିତ ହେବାର ନିୟମ । ଏହା ଗୋଟାଏ ସଦାଚାରର ଧାରଣା ଓ ନୀତି ମୀମାଂସା, ନ୍ୟାୟପରାୟଣତା ଓ ମଣିଷର ସମସ୍ତ କିଛି କର୍ତ୍ତବ୍ୟ ଓ ଦାୟିତ୍ୱ ଏହାର ଅନ୍ତର୍ଭୁକ୍ତ । ବୈଦିକ ଓ ପ୍ରାଗ୍‌ବୈଦିକ ଯେତେ ଧର୍ମ ବିଶ୍ୱାସ ଭାରତରେ ସୃଷ୍ଟି ହୋଇଥିଲା ଆର୍ଯ୍ୟ ଧର୍ମ ସେ ସବୁ ଉପରେ ବିସ୍ତୃତ । ବୌଦ୍ଧ, ଜୈନ ଓ ବୈଦିକ—ସମସ୍ତେ ତାହା ସ୍ୱୀକାର କରିଥିଲେ । ବୁଦ୍ଧଦେବ ମୁକ୍ତିପଥର ନାମ ରଖିଥିଲେ 'ଆର୍ଯ୍ୟପଥ' ।

ପ୍ରାଚୀନ କାଳରେ ମଧ୍ୟ, ସେ ସମସ୍ତ ଦର୍ଶନ, ନୀତିବାକ୍ୟ, କର୍ମକାଣ୍ଡ ଓ ଅନ୍ୟାନ୍ୟ ଧର୍ମାଚରଣ ଯାହା ବେଦସମ୍ମତ ଥିଲା ସେ ସମସ୍ତକୁ ଅଧିକତର ନିର୍ଦ୍ଦିଷ୍ଟ ତଥା ଅନନ୍ୟ ଭାବରେ ତାତ୍ପର୍ଯ୍ୟ ଦେଇ ଚିହ୍ନିତ କରିବା ପାଇଁ ବୈଦିକ ଧର୍ମ ଶବ୍ଦ ବ୍ୟବହାର କରାଯାଉଥିଲା । ଅତଏବ ଯେଉଁମାନେ ବେଦର ପ୍ରାଧିକାର ସ୍ୱୀକାର କରୁଥିଲେ, ସେମାନେ ବୈଦିକ ଧର୍ମର ଅନ୍ତର୍ଭୁକ୍ତ ବୋଲି କଥିତ ହେଲେ ।

'ସନାତନ ଧର୍ମ' ଅର୍ଥାତ୍ ପ୍ରାଚୀନ ଧର୍ମ ବୌଦ୍ଧଧର୍ମ ଓ ଜୈନଧର୍ମ ସମେତ ଯେକୌଣସି ପ୍ରାଚୀନ ଧର୍ମ ପ୍ରତି ପ୍ରୟୋଗ କରାଯାଇ ପାରେ । କିନ୍ତୁ ଆଜି ପ୍ରାଚୀନ ଏହି ଧର୍ମର ଅନୁଗାମୀ ବୋଲି ଦାବୀ କରି ହିନ୍ଦୁଙ୍କ ଭିତରେ କେତେକ ରକ୍ଷଣଶୀଳ ଗୋଷ୍ଠୀ ଏହାର ପ୍ରୟୋଗ ଏକଚାଟିଆ କରି ବସିଛନ୍ତି ।

ବୌଦ୍ଧଧର୍ମ ଓ ଜୈନଧର୍ମ ନିଶ୍ଚିତ ଭାବରେ ହିନ୍ଦୁଧର୍ମ ଅବା ବୈଦିକଧର୍ମ ନୁହେଁ । ତଥାପି ଏହି ଦୁଇ ଧର୍ମର ଜନ୍ମ ଭାରତରେ ଓ ଭାରତୀୟ ଜୀବନ, ସଂସ୍କୃତି ଓ ଦର୍ଶନର ଏହା ସାମଗ୍ରିକ ଅଂଶ । ଭାରତରେ ଜଣେ ବୌଦ୍ଧ ଅବା ଜୈନ ସମ୍ପୂର୍ଣ୍ଣ ଭାବରେ ଭାରତୀୟ ଚିନ୍ତା ଓ ସଂସ୍କୃତିର ସୃଷ୍ଟି । ତଥାପି ଧର୍ମ ବିଶ୍ୱାସ ଦିଗରୁ ସେ କେବେହେଲେ ହିନ୍ଦୁ ନୁହେଁ । ଅତଏବ, ଭାରତୀୟ ସଂସ୍କୃତି ବୋଲି ଉଲ୍ଲେଖ କରିବା ସଂପୂର୍ଣ୍ଣ ଭ୍ରମାତ୍ମକ । ପରବର୍ତ୍ତୀ-କାଳମାନଙ୍କରେ ଇସ୍‌ଲାମ ଧର୍ମର ସଙ୍ଘାତ ଯୋଗୁଁ ଏହି ସଂସ୍କୃତି ପ୍ରବଳ ଭାବରେ ପ୍ରଭାବିତ

ହୋଇଥିଲେ ମଧ୍ୟ ମୂଳତଃ ଓ ସ୍ପଷ୍ଟତଃ ଏହା ଭାରତୀୟ ରହିପାରିଲା । ଆଜି ପଶ୍ଚିମାଗତ ଶିଳ୍ପ ସଭ୍ୟତାର ପ୍ରବଳ ପ୍ରଭାବ ଏହା ଉପରେ ନାନା ଭାବରେ ପଡ଼ୁଛି ଓ ଏହାର ପରିଣାମ କ'ଣ ହେବ ନିଶ୍ଚିତ ଭାବରେ କହିବା କଠିନ ।

ଗୋଟାଏ ଧର୍ମ ରୂପରେ ହିନ୍ଦୁଧର୍ମ ଅସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଓ ଆକାରହୀନ । ଏହାର ନାନା ପାର୍ଶ୍ୱ ରହିଛି ଏବଂ ଯିଏ ଯେପରି ଚାହିଁବ ସେପରି ଭାବ ସେଥିରୁ ପାଇ ପାରିବ । ଏହାର ସଂଜ୍ଞା ନିରୂପଣ କରିବା ଏକ ରକମ ଅସମ୍ଭବ ଏବଂ ଧର୍ମ କହିଲେ ଯାହା ବୁଝାଏ, ସେହି ଦୃଷ୍ଟିରୁ ବିଚାରକଲେ ଏହା ଗୋଟାଏ ଧର୍ମ କି ନୁହେଁ ନିଶ୍ଚିତ ଭାବରେ କହିବା ମଧ୍ୟ କଠିନ । ଆଜି ଏହା ଯେପରି ରହିଛି ଓ ଅତୀତରେ ଯେପରି ଥିଲା, ତାକୁ ଉପର ପର୍ଯ୍ୟନ୍ତ, କେତେ ପରସ୍ପରବିରୋଧୀ ଅବା ପରସ୍ପର ଖଣ୍ଡନଶୀଳ ବିଶ୍ୱାସ ଓ ଆଚରଣ ଏହାର ଅନ୍ତର୍ଭୁକ୍ତ । ଯେପରିକି ଜଣାଯାଏ, ସାରତଃ ଏହାର ତାତ୍ପର୍ଯ୍ୟ ହେଉଛି, ନିଜେ ରହିବା ଓ ଅନ୍ୟକୁ ରହିବାକୁ ଦେବା । ମହାତ୍ମା ଗାନ୍ଧି ଏହାର ସଂଜ୍ଞା ନିରୂପଣ କରିବାକୁ ଯାଇ କହିଛନ୍ତି, "ମତେ ଯଦି ହିନ୍ଦୁଧର୍ମର ସଂଜ୍ଞା ନିରୂପଣ କରିବାକୁ କୁହାଯାଏ, ମୁଁ ଏତିକି କେବଳ କହିବି —ଅହିଂସା ଉପାୟରେ ସତ୍ୟର ସନ୍ଧାନ । ଈଶ୍ୱର ବିଶ୍ୱାସ ନକରି ମଧ୍ୟ ଜଣେ ନିଜକୁ ହିନ୍ଦୁ ବୋଲିଇ ପାରେ । ବିରାମହୀନ ଭାବରେ ସତ୍ୟାନୁଧାବନର ନାମ ହିନ୍ଦୁଧର୍ମ···ହିନ୍ଦୁଧର୍ମ ସତ୍ୟର ଧର୍ମ । ସତ୍ୟ ହେଉଛି ଈଶ୍ୱର । ଈଶ୍ୱରଙ୍କୁ ଅସ୍ୱୀକାର କରିବା ଆମର ଅଜ୍ଞାତ ନୁହେଁ; କିନ୍ତୁ ସତ୍ୟକୁ ଅସ୍ୱୀକାର କରିବା ଏ ପର୍ଯ୍ୟନ୍ତ ଶୁଣାଯାଇନି ।" ହିନ୍ଦୁଧର୍ମ କହିଲେ ଗାନ୍ଧିଜୀ ବୁଝୁଥିଲେ ସତ୍ୟ ଓ ଅହିଂସା; କିନ୍ତୁ ବହୁ ବିଖ୍ୟାତ ଓ ଅସନ୍ଦିଗ୍ଧ ହିନ୍ଦୁମାନେ କହନ୍ତି ଯେ ଗାନ୍ଧିଜୀ ଯେପରି ଭାବରେ ବୁଝୁଛନ୍ତି ସେପରି ଭାବରେ ଅହିଂସା ହିନ୍ଦୁଧର୍ମର କୌଣସି ଅପରିହାର୍ଯ୍ୟ ଅଂଶ ନୁହେଁ । ଅତଏବ ଆମ ଆଗରେ ସତ୍ୟ କେବଳ ଅବଶିଷ୍ଟ ରହୁଛି ହିନ୍ଦୁଧର୍ମର ବିଶିଷ୍ଟ ଲକ୍ଷଣ ଭାବରେ; କିନ୍ତୁ ଏହା କୌଣସି ସଂଜ୍ଞା ଅବା ଗୁଣ ନିରୂପଣ ହୋଇ ନପାରେ ।

ଅତଏବ, ଭାରତୀୟ ସଂସ୍କୃତି ସ୍ଥାନରେ, ତାର ଦୂର ଅତୀତ ଉଲ୍ଲେଖ କଲାବେଳେ ମଧ୍ୟ, 'ହିନ୍ଦୁ' ଅବା 'ହିନ୍ଦୁଧର୍ମ' ବ୍ୟବହାର କରିବା ଅତୀବ ଅବାଞ୍ଛନୀୟ ଓ ପ୍ରମାଦପୂର୍ଣ୍ଣ; ଯଦ୍ୟପି ପ୍ରାଚୀନ ଗ୍ରନ୍ଥମାନଙ୍କରେ ଲିଖିତ ଥିବା ଭଳି, ଚିନ୍ତାର ବିବିଧ ବିଭବ ସେହି ସଂସ୍କୃତିର ପ୍ରବଳପ୍ରଭାବୀ ଅଭିବ୍ୟକ୍ତି ଥିଲା । ଆଉ ଆଜି ପୂର୍ବୋକ୍ତ ପ୍ରକାରେ ସେ ଦୁଇ ଶବ୍ଦ ପ୍ରୟୋଗ କରିବା ଅତିଶୟ ମାରାତ୍ମକ । ଯେ ପର୍ଯ୍ୟନ୍ତ ଏହି ପ୍ରାଚୀନ ଧର୍ମ ଓ ଦର୍ଶନ ମୁଖ୍ୟତଃ ଜୀବନର ଗୋଟାଏ ମାର୍ଗ ଓ ବିଶ୍ୱ ପ୍ରତି ଗୋଟାଏ ଦୃଷ୍ଟିଭଙ୍ଗୀ ଭାବରେ ରହିଥିଲା, ତାହା ବ୍ୟାପକ ଭାବରେ ଭାରତୀୟ ସଂସ୍କୃତିର ତୁଲ୍ୟାର୍ଥବୋଧକ ଥିଲା; କିନ୍ତୁ ଯେତେବେଳେ ନାନାବିଧ କର୍ମକାଣ୍ଡ ଓ ବିଧିବିଧାନ ସହକାରେ ଗୋଟାଏ କଠୋର ଶୃଙ୍ଖଳାର ଧର୍ମ ବଢ଼ିଉଠିଲା, ଏହା ସେହି ମିଶ୍ର ସଂସ୍କୃତି ଅପେକ୍ଷା କିଛି ଅଧିକତର ଓ ସଙ୍ଗେ ସଙ୍ଗେ କିଛି ନ୍ୟୂନତର ବି ହୋଇ ପଡ଼ିଲା । ଜଣେ ଖ୍ରୀଷ୍ଟାନ ଅବା ମୁସଲମାନ ନିଜକୁ ଭାରତୀୟ ଜୀବନର ଧାରା ଓ ସଂସ୍କୃତି ଅନୁସାରେ ଗଢ଼ି ତୋଳି ପାରେ ଓ ପ୍ରାୟଶଃ ଗଢ଼ିଥାଏ ମଧ୍ୟ, ତଥାପି ଧର୍ମବିଶ୍ୱାସ ଦିଗରୁ

ଜଣେ ରକ୍ଷଣଶୀଳ ଖ୍ରୀଷ୍ଟାନ୍ ଅବା ମୁସଲମାନ ହୋଇ ରହିବାରେ କିଛି ଅସୁବିଧା ନାହିଁ । ସେ ନିଜକୁ ସାଂସ୍କୃତିକ ଭାବରେ ଭାରତୀୟରେ ରୂପାନ୍ତରିତ କରିଚି ଅଥଚ ତାର ଧର୍ମମତ ପରିବର୍ତ୍ତନ କରିବା ଆବଶ୍ୟକ ହୋଇନି ।

ଦେଶ ହେଉ କି ସଂସ୍କୃତି ହେଉ କିମ୍ବା ଆମର ବିଭିନ୍ନ ପରମ୍ପରର ଐତିହାସିକ ଅଖଣ୍ଡତା ପାଇଁ ହେଉ 'ହିନ୍ଦୁସ୍ତାନୀ' ନିମନ୍ତେ ଠିକ୍ ଶବ୍ଦ ହେବ 'ହିନ୍ଦୁ' । ଏହା ହିନ୍ଦୁସ୍ତାନର ସଂକ୍ଷିପ୍ତ ରୂପ 'ହିନ୍ଦ୍'ରୁ ଉତ୍ପନ୍ନ । ଏବେ ବି ସାଧାରଣତଃ ଭାରତ ଅର୍ଥରେ ହିନ୍ଦ୍ ଶବ୍ଦ ବ୍ୟବହାର କରାଯାଇଥାଏ । ପଶ୍ଚିମ-ଏସିଆର ପାରସ୍ୟ, ତୁରସ୍କ, ଇରାକ, ଆଫଗାନିସ୍ଥାନ, ମିଶର ଓ ଅନ୍ୟତ୍ର ଭାରତକୁ ହିନ୍ଦ୍ ନାମରେ ଉଲ୍ଲେଖ ଓ ଅଭିହିତ କରାଯାଏ ଏବଂ ଯାହା କିଛି ଭାରତୀୟ ତାକୁ 'ହିନ୍ଦୀ' କୁହାଯାଏ । ଧର୍ମ ସଙ୍ଗେ 'ହିନ୍ଦୀ'ର କୌଣସି ସମ୍ପର୍କ ନାହିଁ ଏବଂ ଜଣେ ଭାରତୀୟ ମୁସଲମାନ ଅବା ଖ୍ରୀଷ୍ଟାନ ଧର୍ମ ଭାବରେ ହିନ୍ଦୁଧର୍ମର ଅନୁଗାମୀ ଯେ କେହି ବ୍ୟକ୍ତି ସଙ୍ଗେ ସମାନ । ମାର୍କିନ୍‌ମାନେ ଭାରତୀୟ ମାତ୍ରେ ଯେ କେଉଁ ବ୍ୟକ୍ତିକୁ ହିନ୍ଦୁ କହିବାରେ ବିଶେଷ ଭୁଲ କରି ନଥାନ୍ତି । ହିନ୍ଦୁ ପରିବର୍ତ୍ତେ 'ହିନ୍ଦୀ' ବ୍ୟବହାର କଲେ ତାହା ସମ୍ପୂର୍ଣ୍ଣ ନିର୍ଭୁଲ ହୁଅନ୍ତା । ଦୁର୍ଭାଗ୍ୟବଶତଃ, ଭାରତରେ 'ହିନ୍ଦୀ' ଶବ୍ଦଟିକୁ ଗୋଟାଏ ନିର୍ଦ୍ଦିଷ୍ଟ ଲିପି—ସଂସ୍କୃତର ଦେବନାଗରୀ ଲିପି ସଙ୍ଗେ ସଂଯୁକ୍ତ କରି ଦିଆଯାଇଚି । ଅତଏବ, ଏହାକୁ ତାର ବ୍ୟାପକ ତଥା ଅଧିକତର ସ୍ୱାଭାବିକ ତାତ୍ପର୍ଯ୍ୟ ସହ ବ୍ୟବହାର କରିବା କଷ୍ଟକର ହୋଇ ପଡ଼ିଚି । ହୁଏତ ଆଜିର ବିବିଧ ବିବାଦ ଯେବେ ପ୍ରଶମିତ ହେବ, ଆମେ ତାର ମୌଳିକ ତଥା ଅଧିକତର ସନ୍ତୋଷଜନକ ପ୍ରୟୋଗ ପୁଣି କରି ପାରିବା । ଆଜି ଭାରତୀୟ ଅର୍ଥରେ 'ହିନ୍ଦୁସ୍ତାନୀ' ଶବ୍ଦ ବ୍ୟବହାର କରାଯାଇଛି । ଏହାର ଉତ୍ପତ୍ତି ହିନ୍ଦୁସ୍ତାନ ଶବ୍ଦରୁ କିନ୍ତୁ ଏହା ଉଚ୍ଚାରଣରେ ଗୁରୁ ଓ 'ହିନ୍ଦୀ' ଭଳି ଏହାର ସେପରି କିଛି ଐତିହାସିକ ତଥା ସାଂସ୍କୃତିକ ଗୁଣ-ସହିତ ନାହିଁ । ଅତଏବ, ଭାରତୀୟ ସଂସ୍କୃତିର ପ୍ରାଚୀନ ପର୍ଯ୍ୟାୟଗୁଡ଼ିକୁ 'ହିନ୍ଦୁସ୍ତାନୀ' କହି ଉଲ୍ଲେଖ କରିବା ବାସ୍ତବିକ୍ ବିଚିତ୍ର ଶୁଣାଯିବ ।

ଆମର ସାଂସ୍କୃତିକ ଐତିହ୍ୟ ଅର୍ଥରେ ଭାରତୀୟ, ହିନ୍ଦୀ କିମ୍ବା ହିନ୍ଦୁସ୍ତାନୀ—ଯେ କେଉଁ ଶବ୍ଦ ଆମେ ବ୍ୟବହାର କରୁନା କାହିଁକି ଭାରତୀୟ ଦାର୍ଶନିକ ଦୃଷ୍ଟିଭଙ୍ଗୀରୁ ସାରତଃ ଉତ୍ପନ୍ନ, ସମନ୍ୱୟ ଦିଗରେ ଯେଉଁ ଆଭ୍ୟନ୍ତରୀଣ ପ୍ରେରଣା ଆମେ ଅତୀତରେ ଦେଖିବାକୁ ପାଉଁ, ତାହା ଭାରତର ସାଂସ୍କୃତିକ ଓ ଜାତିବିକାଶର ପ୍ରଧାନ ବୈଶିଷ୍ଟ୍ୟ ଥିଲା । ପ୍ରତ୍ୟେକ ବହିରାକ୍ରମଣ ଏହି ସଂସ୍କୃତି ପ୍ରତି ଆହ୍ୱାନ ସ୍ୱରୂପ ଥିଲା କିନ୍ତୁ ଗୋଟାଏ ନୂତନ ସମନ୍ୱୟ ଓ ଅନ୍ତର୍ଭୁକ୍ତିର ପ୍ରକ୍ରିୟାରେ ତାକୁ ସଫଳ ଭାବରେ ସମ୍ମୁଖୀନ କରାଯାଇଥିଲା । ନବଶକ୍ତି ସଞ୍ଚାର ନିମନ୍ତେ ମଧ୍ୟ ଏହା ଥିଲା ଗୋଟାଏ ପ୍ରତିକ୍ରିୟା ଓ ସେଥିରୁ ପ୍ରକାଶ ପାଇଲା ନୂତନ କେତେ ସାଂସ୍କୃତିକ ମୁକୁଳ । କିନ୍ତୁ ତାର ପୃଷ୍ଠଭୂମି ଓ ଭିତ୍ତି ଅପରିବର୍ତ୍ତିତ ରହିଥିଲା ।

## ୪. ପ୍ରାଚୀନତମ ଅଭିଲେଖ : ଧର୍ମଗ୍ରନ୍ଥ ଓ ପୁରାଣ

ସିନ୍ଧୁନଦ ସଭ୍ୟତା ଆବିଷ୍କୃତ ହେବା ପୂର୍ବରୁ ବେଦ ଗ୍ରନ୍ଥଗୁଡ଼ିକୁ ଭାରତୀୟ ସଂସ୍କୃତିର ପ୍ରାଚୀନତମ ଅଭିଲେଖ ବୋଲି ମନେ କରାଯାଉଥିଲା । ବୈଦିକଯୁଗର କାଳକ୍ରମ ସମ୍ପର୍କରେ ବହୁତ ବିବାଦ ରହିଥିଲା ଏବଂ ୟୁରୋପୀୟ ପଣ୍ଡିତମାନେ ତାର ଯେଉଁ କାଳ ନିରୂପଣ କରୁଥିଲେ ଭାରତୀୟ ପଣ୍ଡିତମାନେ ସେଥିରେ ସମ୍ମତ ନଥିଲେ ଓ ତାର ବହୁ ପୂର୍ବରେ ନେଇ ରଖୁଥିଲେ । ଆମର ପ୍ରାଚୀନ ସଂସ୍କୃତିର ମହତ୍ତ୍ୱ ବୃଦ୍ଧିକରିବା ଉଦ୍ଦେଶ୍ୟରେ, ଯେତେ ଦୂର ସମ୍ଭବ, ଦୂର ଅତୀତକୁ ପ୍ରସରିଯିବାର ଅଭିଳାଷ ଭାରତୀୟଙ୍କ ପକ୍ଷରେ ବଡ଼ ବିଚିତ୍ର ବୋଧ ହୁଏ । ଅଧ୍ୟାପକ ଓ୍ୱିଣ୍ଟରନୀଜ୍ ମନେ କରନ୍ତି ଯେ ଖ୍ରୀଷ୍ଟ ଜନ୍ମର ୨୦୦୦ କିମ୍ବା ୨୫୦୦ ବର୍ଷ ପୂର୍ବେ ବୈଦିକ ସାହିତ୍ୟ ଆରମ୍ଭ ହୋଇଥିଲା । ଏହି ସମୟ ମହେଞ୍ଜୋଦାରୋ ଯୁଗର ଅତ୍ୟନ୍ତ ନିକଟବର୍ତ୍ତୀ ।

ଋଗ୍‌ବେଦର ଋକ୍ (ପଦ୍ୟମୟ ବେଦମନ୍ତ୍ର) ଗୁଡ଼ିକ ଖ୍ରୀଷ୍ଟ ଜନ୍ମର ୧୫୦୦ ବର୍ଷ ପୂର୍ବେ ରଚିତ ହୋଇଥିଲା ବୋଲି ଆଜିର ଅଧିକାଂଶ ପଣ୍ଡିତ ନାନା ଉପାତ୍ତ ଉପରେ ଭିତ୍ତି କରି କହନ୍ତି; କିନ୍ତୁ ମହେଞ୍ଜୋଦାରୋ ଖନନ ସମୟରୁ, ପ୍ରାଚୀନତମ ଏହି ଭାରତୀୟ ଧର୍ମଗ୍ରନ୍ଥ-ଗୁଡ଼ିକୁ ଆହୁରି ଦୂର ଅତୀତକୁ ଟାଣିନେବାର ଗୋଟାଏ ପ୍ରବୃତ୍ତି ପ୍ରକାଶ ପାଉଛି । ଏହି କାଳ ନିରୂପଣ ବିଷୟ ଯାହା ହେଉନା କାହିଁକି ଏତିକି ଅନ୍ତତଃ ସମ୍ଭବ ଯେ ଏହି ସାହିତ୍ୟ ଗ୍ରୀସ୍ ଅବା ଇସ୍ରାଏଲ ଧର୍ମଗ୍ରନ୍ଥ ଅପେକ୍ଷା ଅଧିକତର ପ୍ରାଚୀନ ଏବଂ ବସ୍ତୁତଃ ଆମ ପାଖରେ ମଣିଷ ମନର ସ୍ଫୁରଣର ଯେଉଁ ସବୁ କୃତି ରହିଛି, ସେଥି ଭିତରେ ଏହା ପ୍ରାଚୀନତମ । ମେକ୍‌ସ ମୁଲ୍ଲାର୍ କହିଛନ୍ତି : "ଆର୍ଯ୍ୟ-ମାନବଦ୍ୱାରା କଥିତ ଏହା ପ୍ରଥମ ଶବ୍ଦ ।"

ତରଙ୍ଗ ପରେ ତରଙ୍ଗରେ ଆର୍ଯ୍ୟମାନେ ଶସ୍ୟଶ୍ୟାମଳ ଭୂମିରେ ପଦାର୍ପଣ କରୁଛନ୍ତି । ସେମାନଙ୍କର ସେ ସମୟର ଭାବୋଦ୍‌ଗାର ହେଉଛି ବେଦ । ସେମାନେ ସେମାନଙ୍କର ସେ ସବୁ କୁଳ-ବିଗ୍ରହ ଭାରତକୁ ଧରି ଆସିଥିଲେ ଯେଉଁଥିରୁ ପାରସ୍ୟରେ ଆଭେସ୍ତା ରଚିତ ହୋଇଥିଲା ଏବଂ ଭାରତରେ ସେହିସବୁ ବିଗ୍ରହକୁ ସେମାନେ ବିସ୍ତାରିତ କଲେ । ଆଭେସ୍ତାର ଭାଷା ସଙ୍ଗେ ବେଦ ଭାଷାର ଅଦ୍‌ଭୁତ ସାମଞ୍ଜସ୍ୟ ରହିଛି ଏବଂ ଅନେକେ ମନ୍ତବ୍ୟ କରନ୍ତି ଯେ ସଂସ୍କୃତ ଅପେକ୍ଷା ଆଭେସ୍ତା ବେଦର ନିକଟତର ।

ବିଭିନ୍ନ ଧର୍ମର ଗ୍ରନ୍ଥଗୁଡ଼ିକୁ ବିଚାର କରିବାରେ ଅସୁବିଧା ଉପୁଜି ଥାଏ; କାରଣ ଏଥିରେ ଅଧିକାଂଶ ଭାଗ ଦୈବୀପ୍ରେରଣାସଂଜାତ ଅଥବା ମନୁଷ୍ୟକୃତ ନୁହେଁ ବୋଲି ତାର ଉପାସକ-ମାନେ ବିଶ୍ୱାସ କରିଥାନ୍ତି । ତାହା ଅନୁଶୀଳନ କରି, ସମାଲୋଚନା କରି ଓ ତାହାକୁ ମନୁଷ୍ୟକୃତ ଭାବରେ ଦେଖିବାରେ ତାର ଉପାସକମାନେ ରୁଷ୍ଟ ହୋଇଥାନ୍ତି । ତଥାପି, ତାହା ବିବେଚନା କରିବାର ଅନ୍ୟ ପନ୍ଥା ଆଉ ନାହିଁ ।

ଧର୍ମଗ୍ରନ୍ଥ ପଢ଼ିବା ପାଇଁ ମୁଁ ସର୍ବଦା ଦ୍ୱିଧାଗ୍ରସ୍ତ ହୋଇଥାଏ । ସେଥିର ବିଚାର ଊର୍ଦ୍ଧ୍ୱରେ ଯେ ଆଉ କିଛି ରହି ନପାରେ, ତାହା ମୋ ପ୍ରାଣକୁ ସ୍ପର୍ଶ କରେ ନାହିଁ । ଧର୍ମାଚରଣର ଯେଉଁ ସବୁ ବାହ୍ୟକର୍ମ ମୋ ଦୃଷ୍ଟିରେ ପଡ଼େ, ସେଥିରୁ ଖୋଜି ଖୋଜି ତାର ମୂଳରେ ପହଞ୍ଚିବାପାଇଁ ମୁଁ ଉତ୍ସାହିତ ହୋଇନାହିଁ । ତଥାପି ସେ ସବୁ ଗ୍ରନ୍ଥ ମତେ ପଢ଼ିବାକୁ ପଡ଼ିଲା; କାରଣ ସେ

ସବୁ ବିଷୟରେ ଅଜ୍ଞତା ଗୋଟାଏ ସଦ୍‌ଗୁଣ ବୋଲି ତ ଧରାଯାଉ ନଥିଲି, ଅଧିକନ୍ତୁ ଅନେକ ସମୟରେ ଗୋଟାଏ ବଡ଼ ଅସୁବିଧା ରୂପରେ ଦେଖାଦେଉଥିଲା । ମୁଁ ଜାଣିଥିଲି ଯେ ସେଥିରୁ କେତେକ ଗ୍ରନ୍ଥ ମାନବଜାତି ଉପରେ ଶକ୍ତିଶାଳୀ ପ୍ରଭାବ ପକାଇଛି ଏବଂ ସେପରି ପ୍ରଭାବ ପକାଇବା ଯାହା ପକ୍ଷରେ ସମ୍ଭବ ହୋଇଛି ନିଶ୍ଚିତ ଭାବରେ ତାର କିଛି ଅନ୍ତର୍ନିହିତ ଶକ୍ତି ଓ ସଦ୍‌ଗୁଣ ରହିଛି; ତେଣୁ ଆହରଣର କୌଣସି ଅପରିହାର୍ଯ୍ୟ ଉତ୍ସ ଅବଶ୍ୟ ଅଛି । ସେଥିର ଅଧିକାଂଶ ଭାଗ ପଢ଼ିବା ମୋ ପକ୍ଷରେ ଅତୀବ କଷ୍ଟକର ହୋଇଛି; କାରଣ ଯେତେ ଚେଷ୍ଟାକଲେ ସୁଦ୍ଧା ସେଥିପ୍ରତି ଯେତିକି ହେଲେ ଚଳନ୍ତା, ସେତିକି ଅନ୍ତତଃ ଆଗ୍ରହ ମୁଁ ଜାଗ୍ରତ କରିପାରି ନଥିଲି; କିନ୍ତୁ ସେଥିର କେତେକ ଅଂଶର ନିପଟ ସୌନ୍ଦର୍ଯ୍ୟ ମତେ ମୋହିତ କରିଥିଲା । ମଝିରେ ମଝିରେ କେଉଁଠି ଗୋଟାଏ ବାକ୍ୟାଂଶ ଅବା ବାକ୍ୟ ମୋଭିତରେ ବିଦ୍ୟୁତ୍ ଭଳି ଚମକିଯାଏ ଏବଂ ସେହି ମହାପୁରୁଷମାନଙ୍କ ଉପସ୍ଥିତି ମୁଁ ଅନୁଭବ କରିଥାଏ । ବୁଦ୍ଧ ଅବା ଖ୍ରୀଷ୍ଟଙ୍କ କେତେକ ପଦାବଳୀର ନିହିତାର୍ଥ ମତେ ଚମତ୍କୃତ କରେ ଏବଂ ମତେ ପ୍ରଗାଢ଼ ହୁଏ, ଦୁଇହଜାର କିମ୍ବା ତତୋଽଧିକ ବର୍ଷ ପୂର୍ବେ ଉଚ୍ଚାରିତ ସେ ସବୁ ବାଣୀ ଆଜିର ବିଶ୍ୱପାଇଁ ମଧ୍ୟ ସେପରି ପ୍ରଯୁଜ୍ୟ । ସେଥିରେ ଥିଲା ଗୋଟାଏ ବାଧ୍ୟକର ବାସ୍ତବତା ଓ ସେପରି ଏକ ସ୍ଥିତି-ସ୍ଥାପକତା, ଯାହାକୁ ଦେଶ ଓ କାଳ ସ୍ପର୍ଶ କରିପାରିନଥିଲା । ସେକ୍ରେଟିସ୍ ଅବା ଚୀନା ଦାର୍ଶନିକ-ମାନଙ୍କ ରଚନା ପଢ଼ିଲାବେଳେ ମୁଁ କେବେ କେବେ ସେଭଳି ଅନୁଭବ କରିଥାଏ ଏବଂ ମୋର ଠିକ୍ ସେଇ ଅନୁଭୂତି ହେଲା ଯେବେ ମୁଁ ଉପନିଷଦ ଓ ଭଗବତ୍ ଗୀତା ପାଠକଲି । ଅଧିବିଦ୍ୟା ଅବା ଧର୍ମକର୍ମାନୁଷ୍ଠାନର ବର୍ଣ୍ଣନା କିମ୍ବା ଯେଉଁ ସବୁ ସମସ୍ୟାର ସମ୍ମୁଖୀନ ମୁଁ ହୋଇଥିଲି ସେଥି ସଙ୍ଗେ ସମ୍ପର୍କହୀନ ଅନ୍ୟ ବହୁତ କିଛି ବିଷୟରେ ମଧ୍ୟ ମୋର ଆଗ୍ରହ ନଥିଲା । ମୁଁ ଯାହା ପଢ଼ୁଥିଲି, ସେଥିର ବହୁତ କିଛିର ଆଭ୍ୟନ୍ତରୀଣ ତାତ୍ପର୍ଯ୍ୟ ହୁଏତ ମୁଁ ବୁଝିପାରି ନଥିଲି ଏବଂ ପ୍ରକୃତପକ୍ଷେ, ବେଳେବେଳେ ତାହା ଦ୍ୱିତୀୟବାର ପାଠକଲେ ମୁଁ ସେଥିରୁ ଅଧିକତର ଆଲୋକ ପାଉଥିଲି । ସେସବୁ ଗ୍ରନ୍ଥର ରହସ୍ୟପୂର୍ଣ୍ଣ ଅଂଶଗୁଡ଼ିକ ବୁଝିବା ପାଇଁ ମୁଁ ସେଭଳି ବିଶେଷ ପ୍ରୟାସ କେବେ କରିନି ଏବଂ ଯାହାର କୌଣସି ନିର୍ଦ୍ଦିଷ୍ଟ ତାତ୍ପର୍ଯ୍ୟ ମୋ ପାଇଁ ନଥିଲା ତାହା ଛାଡ଼ି ଯାଉଥିଲି । ଦୀର୍ଘ ବ୍ୟାଖ୍ୟା ଓ ଅଭିଧାନ ପ୍ରତି ମଧ୍ୟ ମୁଁ ଆଗ୍ରହିତ ନଥିଲି । ଏ ସବୁ ଗ୍ରନ୍ଥ ଅବା ଅନ୍ୟ ଯେ କେଉଁ ଗ୍ରନ୍ଥ ପଢ଼ିଲାବେଳେ ତାହା ଗୋଟାଏ ପବିତ୍ର ଶାସ୍ତ୍ର ଓ ତାହାକୁ ବିନା ବାକ୍ୟ ଅବା ପ୍ରଶ୍ନରେ ଗ୍ରହଣ କରାଯିବା ଉଚିତ— ଏ ପ୍ରକାର ଆଭିମୁଖ୍ୟ କରି ମୁଁ ଆଗେଇ ପାରିନଥିଲି । ପ୍ରକୃତ ପକ୍ଷେ, ସେ ପ୍ରକାର ପବିତ୍ର ଗ୍ରନ୍ଥର ଆଭିମୁଖ୍ୟ ସାଧାରଣତଃ ସେଥିରେ ଥିବା ବିଷୟ ପ୍ରତି ମତେ ବିମୁଖ କରୁଥିଲା ଏବଂ ସେ ସବୁ ପ୍ରଜ୍ଞାବାନ ତଥା ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତିଙ୍କଦ୍ୱାରା ଲିଖିତ ଯେଉଁମାନେ ସାଧାରଣ ନଶ୍ୱର ମଣିଷ, କୌଣସି ଅବତାର ଅବା ଦେବତାର ମୁଖପାତ୍ର ନୁହନ୍ତି, ଯାହାଙ୍କ ସମ୍ପର୍କରେ ମୋର ଜ୍ଞାନ ଅବା ନିଶ୍ଚିତତା କିଛି ନାହିଁ—ଯେବେ ଏପ୍ରକାର ଭାବ ଧରି ପଢ଼ିବାକୁ ବସେ, ସେଥିପ୍ରତି ମୁଁ ବିଶେଷ ବନ୍ଧୁଭାବାପନ୍ନ ହୋଇ ପାରୁଥିଲି ଓ ନିଜକୁ ଖୋଲି ଧରୁଥିଲି ।

ମୋର ସବୁବେଳେ ମନେହୋଇଥାଏ ଯେ କୌଣସି ଦେବତା ଅବା ଅଜ୍ଞେୟଶକ୍ତିର

ମୁଖପାତ୍ର ଭାବରେ ମାନସିକ ଓ ଆଧ୍ୟାତ୍ମିକ ଦିଗରୁ ଚଳିବାର ସେ ସବୁ ଶୀର୍ଷକୁ ଉଠି ଓ ତା'ପରେ ଅନ୍ୟମାନଙ୍କୁ ସେ ସ୍ତରକୁ ଉନ୍ନୀତ କରିବାର ପ୍ରୟାସ ଅପେକ୍ଷା ମଣିଷ ଭାବରେ ସେ ସବୁ ଶୀର୍ଷରେ ଉପନୀତ ହେବା ଅଧିକତର ମହାନ୍ ଓ ଚିତ୍ତାକର୍ଷକ । କେତେକ ଧର୍ମର ପ୍ରତିଷ୍ଠାତା ବଡ଼ ବିସ୍ମୟକର ବ୍ୟକ୍ତି ଥିଲେ; କିନ୍ତୁ ମୁଁ ଯେବେ ମଣିଷ ଭାବରେ ସେମାନଙ୍କୁ ଦେଖିବାର ଚେଷ୍ଟା ନକରେ, ମୋର ଦୃଷ୍ଟି ସମ୍ମୁଖରୁ ସେମାନଙ୍କର ସମସ୍ତ ଗୌରବ ଉଭେଇ-ଯାଏ । ମୋ ମନରେ ଯାହା ଗଭୀର ରେଖାପାତ କରେ ଓ ମୋର ପ୍ରାଣରେ ଯାହା ଆଶା ଭରେ ତାହା ହେଉଛି ମଣିଷର ମନ ଓ ଆତ୍ମାର ଏହି ବିକାଶ; ଲୋକଙ୍କ ଭିତରେ କୌଣସି ଦୈବବାଣୀର ବାର୍ତ୍ତାବହ ଭାବରେ ନୁହେଁ । ପୁରାଣଗାଥାଗୁଡ଼ିକୁ ମଧ୍ୟ ମୁଁ ଗ୍ରହଣ କରିଛି ମଣିଷର କଳ୍ପନା-ଶକ୍ତିର ବିକାଶଭାବରେ । ଲୋକେ ଯଦି ସେ ସବୁ ଉପାଖ୍ୟାନର ଘଟଣାବଳୀ ବିଶ୍ୱାସ କରନ୍ତି, ତାହାହେଲେ ସେସବୁ ସମ୍ପୂର୍ଣ୍ଣ ଅସଙ୍ଗତ ଓ ହାସ୍ୟାସ୍ପଦ ହୋଇ ଉଠିବ; କିନ୍ତୁ ସେ ପ୍ରକାର ବିଶ୍ୱାସ ନରଖି ଯଦି ପାଠ କରିଯାଏ ତାହାହେଲେ ଗୋଟାଏ ନୂତନ ଆଲୋକ, ନୂତନ ସୌନ୍ଦର୍ଯ୍ୟ, ଉଚ୍ଚ କଳ୍ପନା-ଶକ୍ତିର ଅଦ୍ଭୁତ ସ୍ଫୁରଣତା ଓ ମାନବିକ ଶିକ୍ଷାରେ ପୂର୍ଣ୍ଣ ଗୋଟାଏ ଅପୂର୍ବ ରୂପଧର ତାହା ସମ୍ମୁଖରେ ଉପସ୍ଥିତ ହୁଏ । ଗ୍ରୀକ୍‌ଦେବଦେବୀଙ୍କ କାହାଣୀ ଆଜି କେହି ବିଶ୍ୱାସ କରନ୍ତିନାହିଁ । ଅତଏବ ଅନାୟାସରେ ଆମେ ସେସବୁର ପ୍ରସଂଶା କରୁଁ ଏବଂ ସେସବୁ ଆମ ମାନସିକ ଐତିହ୍ୟର ଅଂଶବିଶେଷ ହୋଇ ରହିଛି । କିନ୍ତୁ ଆମକୁ ଯଦି ସେ ସବୁ କାହାଣୀ ବିଶ୍ୱାସ କରିବାକୁ ପଡ଼ିଥାନ୍ତା, ତାହା ଏତେବଡ଼ ଗୋଟାଏ ବୋଝ ହୋଇ ପଡ଼ନ୍ତା ଓ ସେହି ବିଶ୍ୱାସର ଓଜନ ଆମକୁ ଏଭଳି ଭାବରେ ଦବାଇ ରଖନ୍ତା ଯେ ଆମେ ସେଥିରେ ନିହିତ ଥିବା ସୌନ୍ଦର୍ଯ୍ୟ ଉପଲବ୍ଧି କରିପାରି ନଥାନ୍ତେ । ଭାରତର ପୁରାଣ ଅଧିକତର ବିଶାଳ, ସୁନ୍ଦର, ସମୃଦ୍ଧ ଓ ଅର୍ଥପୂର୍ଣ୍ଣ । ମୁଁ ବେଳେ-ବେଳେ ବିସ୍ମିତ ହୁଏ ଯେ ସେମାନେ ସବୁ କି ଧରଣର ନରନାରୀ, ଯେଉଁମାନେ ଏପରି ସବୁ ଉଜ୍ଜ୍ୱଳ ସ୍ୱପ୍ନ ଓ କମନୀୟ କଳ୍ପନାକୁ ରୂପଦେଇ ପାରିଲେ ଏବଂ କେଉଁ ଚିନ୍ତାର ସୁନାଖଣିରୁ ଏଭଳି ବଳିଷ୍ଠ କଳ୍ପନା ଅହରଣ କରିପାରିଲେ ?

ଶାସ୍ତ୍ର ଗ୍ରନ୍ଥକୁ ମଣିଷ ମନର ସୃଷ୍ଟି ଭାବରେ ଦେଖିଲେ ଆମକୁ ମନେ ରଖିବାକୁ ହେବ କେଉଁ ଯୁଗରେ ତାହା ଲେଖାଯାଇ ଥିଲା; କେଉଁ ପରିବେଷ୍ଟନୀ ଓ ମାନସିକ ଅବସ୍ଥାରୁ ତାହା ବିକାଶ ଲଭିକଲା; ଆଉ ସମୟ, ଚିନ୍ତା ଓ ଅଭିଜ୍ଞତାର କି ବିଶାଳ ଦୂରତା ସେହି କାଳ ଓ ଆମକୁ ପୃଥକ୍ କରିଛି । କର୍ମକାଣ୍ଡ ଆଦି ଧର୍ମୀ ଚର୍ଯ୍ୟାରେ ଆଭୂଷଣରେ ତାହା ଯେପରି ମଣ୍ଡିତ ହୋଇଛି, ଆମକୁ ସେ ସବୁ ଭୁଲିବାକୁ ପଡ଼ିବ ଏବଂ ମନେ ରଖିବାକୁ ପଡ଼ିବ କେଉଁ ସାମାଜିକ ପୃଷ୍ଠଭୂମିରେ ତାହା ପ୍ରସାରିତ ହୋଇଛି । ଏହି ସବୁ ପ୍ରାଚୀନ ଗ୍ରନ୍ଥରେ ଆଗ୍ରହ ଧରିବାର କାରଣ ହେଉଛି ଯେ ମଣିଷର ଜୀବନ ବହୁ ସମସ୍ୟା ସାଧାରଣତଃ ସ୍ଥାୟୀ ଓ ସେଥିରେ ଗୋଟିଏ ପ୍ରକାର ଚିରନ୍ତନର ସ୍ପର୍ଶ ଲାଗିଥାଏ; କିନ୍ତୁ ସେମାନଙ୍କର ନିର୍ଦ୍ଦିଷ୍ଟ ଯୁଗପାଇଁ ସୀମିତ, ସେ ସବୁ ଗ୍ରନ୍ଥରେ ଅଧିକ ନାନା ସମସ୍ୟା ନେଇ ଚର୍ଚ୍ଚା କରାଯାଇଛି, ଯେଉଁଥିରେ ଆମର ବର୍ତ୍ତମାନ କାଳର ସ୍ୱାର୍ଥ ସାଧିତ ହେବାପାଇଁ କିଛିନାହିଁ ।

## ୫. ବେଦ

ବହୁ ହିନ୍ଦୁ ବେଦଗୁଡ଼ିକୁ ଶ୍ରୁତ ଗ୍ରନ୍ଥ ବୋଲି ସ୍ୱୀକାର କରନ୍ତି । ଏ ପ୍ରକାର ସ୍ୱୀକୃତ ମତେ ବିଲକ୍ଷଣ ଭାବରେ ଦୁର୍ଭାଗ୍ୟଜନକ ମନେହୁଏ; କାରଣ ଏଥିଦ୍ୱାରା ଆମେ ତାର ପ୍ରକୃତ ତାତ୍ପର୍ଯ୍ୟ, ସଭ୍ୟତାର ପ୍ରାଥମିକ ଅବସ୍ଥାରେ ମଣିଷ-ମନର ଏହି ପ୍ରକାଶ, ଆମେ ହରାଇବସୁ । କି ବିସ୍ମୟକର ସେ ମନ ! ବେଦ ( ବିଦ୍ ଧାତୁ — ଜାଣିବା ) ତାତ୍କାଳିକ ଜ୍ଞାନର ଗୋଟାଏ ସଞ୍ଚୟନ । ସେଥିରେ ବହୁତ କିଛି ସମାବେଶିତ ହୋଇରହିଚ : ମନ୍ତ୍ର, ପ୍ରାର୍ଥନା-ସଙ୍ଗୀତ, ଯଜ୍ଞବିଧି, ଇନ୍ଦ୍ରଜାଲ ଓ ପ୍ରକୃତି ସମ୍ବନ୍ଧୀୟ କେତେ ଦେଦୀପ୍ୟମାନ କବିତା । ସେଥିରେ ମୂର୍ତ୍ତିପୂଜା ନାହିଁ କିମ୍ବା ଦେବ ମନ୍ଦିରର ସୂଚନା ନାହିଁ । ସେଥିରେ ଜୀବନର ଓଜ ଓ ସ୍ୱୀକୃତି ଯେଉଁଭଳି ସର୍ବବ୍ୟାପବ ହୋଇ ରହିଚ, ବାସ୍ତବିକ ଅସାଧାରଣ । ପ୍ରଥମକାଳୀନ ବୈଦିକ ଆର୍ଯ୍ୟ-ମାନଙ୍କର ଜୀବନ ପ୍ରତି ରୁଚି ଓ ଉତ୍ସାହ ଏତେ ପ୍ରବଳ ଭାବରେ ଥିଲା ଯେ ଆତ୍ମା ପ୍ରତି ସେମାନେ ବିଶେଷ ଧ୍ୟାନ ଦେଇ ନଥିଲେ । ମୃତ୍ୟୁ ପରେ ଗୋଟାଏ ପ୍ରକାର କିଛି ଅବସ୍ଥା ଅଛି ବୋଲି ସେମାନେ ଏକରକମ ଅସ୍ପଷ୍ଟ ଭାବରେ କେବଳ ବିଶ୍ୱାସ କରୁଥିଲେ ।

କ୍ରମଶଃ ଈଶ୍ୱର-କଳ୍ପନା ବଢ଼ି ଉଠିଲା : ପ୍ରଥମେ ଓଲିମ୍ପିଆସୁଲଭ କେତେ ଦେବଦେବୀ, ତଦନନ୍ତର ଏକେଶ୍ୱରବାଦ ଓ ପରେ ସେଥି ସଙ୍ଗେ ଏକରକମ ମିଶ୍ରିତ ଅଦ୍ୱୈତବାଦର ଅବଧାରଣା । ଭାବୁକତା ସେମାନଙ୍କୁ ବହୁ ଅଚିନ୍ତ୍ୟପୂର୍ବ ପ୍ରଦେଶକୁ ବହନ କରି ନେଇଚି ଏବଂ ପ୍ରକୃତିର ରହସ୍ୟ ଉପରେ ଧ୍ୟାନାବିଷ୍ଟ ହେବା ଓ ଜିଜ୍ଞାସା ପଛରେ ଉତ୍ସାହଭରେ ଧାବିତ ହେବା ସେମାନଙ୍କ ପକ୍ଷରେ ସମ୍ଭବ ହୋଇ ପାରିଚି । ଶତ ଶତ ବର୍ଷ ଭିତରେ ଏ ସମସ୍ତ ବିକାଶ ସାଧିତ ହୋଇଚି ଏବଂ ବେଦର ଅନ୍ତ ଅର୍ଥାତ୍ ବେଦାନ୍ତରେ ଉପନୀତ ହେଲା ବେଳକୁ ଆମେ ଉପନିଷଦର ଦର୍ଶନ ପ୍ରାପ୍ତ ହେଲେଣି ।

ବେଦଙ୍କ ଭିତରେ ସର୍ବ ପ୍ରଥମ—ଋଗ୍‌ବେଦ, ଖୁବ୍ ସମ୍ଭବ, ମାନବଜାତିର ସର୍ବପ୍ରଥମ ଗ୍ରନ୍ଥ । ସେଥିରେ ଆମେ ଦେଖିବାକୁ ପାଉଁ ମାନବ ପ୍ରାଣର କେତେ ଭାବୋଦ୍‌ଗାର, କାବ୍ୟର ପ୍ରସ୍ରବ, ପ୍ରକୃତିର କମନୀୟତା ଓ ରହସ୍ୟ ଉପଲବ୍ଧିର ଉଲ୍ଲାସ । ଡକ୍ଟର ମେକ୍‌ନିକଲ୍ ଯେପରି କହନ୍ତି, "ଏହି ପ୍ରାଚୀନ ଋକ୍‌ଗୁଡ଼ିକରେ ଯାହାର ଶୁଭାରମ୍ଭ ଦେଖିବାକୁ ମିଳେ ତାହା ହେଉଚି —କେଉଁ ଦୂର ଅତୀତରେ ସାଧିତ କେତେ ଅଦ୍‌ଭୂତ କର୍ମ ଯାହା ଏଥିରେ ଲିପିବଦ୍ଧ ହୋଇଚି, ଆଉ ସେମାନଙ୍କର କଥା ଯେଉଁମାନେ ଆମର ଏ ବିଶ୍ୱ ଓ ସେଥିରେ ମଣିଷ ଜୀବନର ତାତ୍ପର୍ଯ୍ୟ ଆବିଷ୍କାର କରିବାକୁ ଚାହିଁଚନ୍ତି ।···ଭାରତ ଏଠାରେ ଏପରି ଏକ ଅନ୍ୱେଷଣରେ ବାହାରିଚି, ଯାହା ସେ କେବେହେଲେ ବନ୍ଦ କରିନି ।"

ତଥାପି, ଋଗ୍‌ବେଦ ପଛରେ ହିଁ ଥିଲା ସଭ୍ୟ-ସ୍ଥିତି ଓ ସଭ୍ୟତାର କେତେ ଅଗଣିତ ଯୁଗ ଯେଉଁ ସମସ୍ତ ମଧ୍ୟରେ ସିନ୍ଧୁନଦ ସଭ୍ୟତା ଓ ମେସୋପୋଟାମିଆ ଆଦି କେତେ ସଭ୍ୟତା ଗଢ଼ି ଉଠିଥିଲା । ଅତଏବ, ଯଥାର୍ଥ ଭାବରେ ଋଗ୍‌ବେଦର ଉତ୍ସର୍ଗ ପତ୍ରରେ ଲିଖିତ ଅଛି : "ଆମର ପୂର୍ବପୁରୁଷ—ଦ୍ରଷ୍ଟା ଓ ପ୍ରଥମ ମାର୍ଗ ପ୍ରଦର୍ଶକମାନଙ୍କୁ ।"

ରବୀନ୍ଦ୍ରନାଥ ଠାକୁର ଏହି ଋକ୍‌ଗୁଡ଼ିକର ବର୍ଣ୍ଣନା ପ୍ରସଙ୍ଗରେ କହିଚନ୍ତି, "ଅସ୍ତିତ୍ୱର ବିସ୍ମୟ ଓ ଭୟପ୍ରତି ଗୋଟାଏ ଜାତିର ସମ୍ମିଳିତ ପ୍ରତିକ୍ରିୟାର କାବ୍ୟମୟ ଉଇଲନାମା ।"

ଜୀବନରେ ଅକ୍ଷୁଣ୍ଣ, ଅକ୍ଷୟ ରହସ୍ୟର ବୋଧ ପ୍ରତି ସଭ୍ୟତାର ଅରୁଣ ପ୍ରଭାତରେ ଉନ୍ମୀଳିତ ଗୋଟାଏ ଅବିମିଶ୍ର ତଥା କ୍ରିୟାଶୀଳ ଜାତିର ଅପୂର୍ବ କଳ୍ପନା । ସେମାନଙ୍କର ଏହା ଏକ ସରଳ ବିଶ୍ୱାସ, ଯାହା ପ୍ରକୃତିର ପ୍ରତ୍ୟେକ ମୌଳିକତା ଓ ଶକ୍ତି ଉପରେ ଦେବତ୍ୱ ଆରୋପ କରିଥିଲା; କିନ୍ତୁ ତାହା ଥିଲା ଗୋଟାଏ ସାହସିକ ତଥା ଆନନ୍ଦମୟ ବିଶ୍ୱାସ, ଯାହାକୁ ରହସ୍ୟର ବୋଧ ନୈରାଶ୍ୟରେ ଭାରାକ୍ରାନ୍ତ ନକରି ଜୀବନରେ ପ୍ରସନ୍ନତା ଭରିଥିଲା—ଗୋଟାଏ ଜାତିର ବିଶ୍ୱାସ ଯାହା ଭୌତିକ ବ୍ରହ୍ମାଣ୍ଡର ଦ୍ୱନ୍ଦ୍ୱମୟ ବିବିଧତା ଯେନି ଚିନ୍ତାମଗ୍ନତାର ବୋଝରୁ ମୁକ୍ତ ଥିଲା; ଯଦ୍ୟପି ତା'ର ଉପରେ କେବେକେବେ ସହଜ ଅନ୍ତର୍ଜ୍ଞାନର ପ୍ରକାଶ ଏପରି ଭାବରେ ପଡ଼ୁଥିଲା କି "ସତ୍ୟ ଏକ; (ଯଦିଓ) ବିପ୍ରମାନେ ତାକୁ ନାନା ନାମରେ ଅଭିହିତ କରିଥାନ୍ତି ।" ୧

କିନ୍ତୁ ଚିନ୍ତନର ଏହି ଭାବନା କ୍ରମଶଃ ସେ ପର୍ଯ୍ୟନ୍ତ ପ୍ରବେଶ କଲା, ଯେବେ ବେଦର ରଚୟିତା ଉଚ୍ଚ କଣ୍ଠରେ ଆହ୍ୱାନ କଲେ "ହେ ଧର୍ମ, ଆମକୁ ବିଶ୍ୱାସ ପ୍ରଦାନ କର" ଏବଂ 'ସୃଷ୍ଟିର ସଙ୍ଗୀତ' ୨ ଶୀର୍ଷକ ଗୋଟାଏ ମନ୍ତ୍ରରେ, ଯାହାକୁ ମେକ୍ସମୁଲ୍ଲେର 'ଅଜ୍ଞାତ ଈଶ୍ୱର ପ୍ରତି' ନାମ ଦେଇଛନ୍ତି, କେତେକ ଗମ୍ଭୀରତର ଜିଜ୍ଞାସା ଉତ୍ଥାପନ କଲେ :

୧. ସେତେବେଳେ ସେଠାରେ ଅସ୍ତିତ୍ୱ ନଥିଲା, ଅନସ୍ତିତ୍ୱ ବି ନଥିଲା, ତା'ର ଉପରେ ଆକାଶ ନଥିଲା । କ'ଣ ବ୍ୟାପ୍ତଥିଲା ଓ କେଉଁଠି ? ଏବଂ କ'ଣ ଆଶ୍ରୟ ହେଲା ? ସେଠାରେ କ'ଣ ଜଳ ଥିଲା, ଅତଳ ଜଳ ?

୨. ସେତେବେଳେ ମୃତ୍ୟୁ ନଥିଲା, କିମ୍ବା ଅମର କିଛି ନଥିଲା : ଦିନ ଓ ରାତିକୁ ବିଭକ୍ତ କରିବାର କୌଣସି ସୂଚନା ନଥିଲା ।

ସେହି ଏକ ବସ୍ତୁ, ଶ୍ୱାସ-ରହିତ, ନିଜ ପ୍ରକୃତି ଦ୍ୱାରା ଥିଲା ଶ୍ୱାସଗ୍ରାହୀ : ତାର ବ୍ୟତୀତ ଅନ୍ୟ କିଛି ନଥିଲା ।

୩. ସେଠାରେ ଅନ୍ଧକାର ଥିଲା : ପ୍ରଥମେ ଅନ୍ଧକାର ଭିତରେ ଲୁକ୍କାୟିତ ଏ ସମସ୍ତ ଥିଲା ପାର୍ଥକ୍ୟହୀନ ଘୋର ଅସ୍ତ-ବ୍ୟସ୍ତତା ।

ସେ ସମୟରେ ଯାହା କିଛି ଥିଲା, ତାହା ଶୂନ୍ୟ ଓ ନିରାକାର ଥିଲା : ତେଜର ମହାନ୍ ଶକ୍ତିଦ୍ୱାରା ସେହି ଏକକ ଜନ୍ମ ଲଭିଲା ।

୪. ତା'ର ପରେ ପ୍ରଥମେ ଇଚ୍ଛା ଉତ୍ପନ୍ନ ହେଲା, ଇଚ୍ଛା ଯାହା ଆତ୍ମାର ମୌଳିକବୀଜ ଓ ଉତ୍ପତ୍ତିର ମୂଳ ।

ଋଷିମାନେ ସେମାନଙ୍କ ହୃଦୟର ବିଚାରଦ୍ୱାରା ଅନୁସନ୍ଧାନ କରି ସତ୍ ସଙ୍ଗେ ଅସତ୍‌ର ସମ୍ବନ୍ଧ ଆବିଷ୍କାର କଲେ ।

୫. ତିର୍ଯ୍ୟକ ଭାବରେ ସେମାନଙ୍କର ବିଚ୍ଛିନ୍ନକାରୀ ରେଖା ପ୍ରସୃତ ହେଲା : ସେତେବେଳେ ତା'ର ଉପରେ କ'ଣ ଥିଲା ଓ ତଳେ କ'ଣ ଥିଲା ?

---

୧ ଏକଂ ସତ୍ ବିପ୍ରା ବହୁଧା ବଦନ୍ତି ।     ୨ ଋଗ୍‌ବେଦର ନାସଦୀୟ ସୂକ୍ତ ।

ସେଠାରେ ଜନ୍ମଦାତା ଥିଲେ, ଏକାଧିକ ମହାନ୍ ଶକ୍ତି ଥିଲା; ଏଠାରେ ବନ୍ଧନହୀନ କର୍ମ ଥିଲା ଓ ସେଠାରେ ଚିନ୍ତାଶକ୍ତି ଥିଲା ।

୬. ବାସ୍ତବରେ କିଏ ଜାଣେ ଓ କିଏ ଘୋଷଣା କରିପାରିବ, ଏହାର ଜନ୍ମ କେଉଁଠି ହେଲା ଓ ଏହି ସୃଷ୍ଟି କାହାଠାରୁ ଉତ୍ପନ୍ନ ହେଲା ?

ଏହି ବିଶ୍ୱର ଉତ୍ପତ୍ତି ପରେ ଦେବତାମାନେ ଉତ୍ପନ୍ନ ହେଲେ । ଅତଏବ କିଏ କହିପାରିବ, କେବେ ଏହାର ସୃଷ୍ଟି ହେଲା ।

୭. ସେ ଏହି ସୃଷ୍ଟିର ଆଦିପୁରୁଷ—ସେ ଏ ସମସ୍ତ ରଚନା କରିଥାନ୍ତୁ, ବା ନ କରିଥାନ୍ତୁ ଉଚ୍ଚତମ ଆକାଶରୁ ଯାହାଙ୍କ ଦୃଷ୍ଟି ଏହି ବିଶ୍ୱକୁ ନିୟନ୍ତ୍ରଣ କରେ, ବାସ୍ତବରେ ସେ ହିଁ ତାହା ଜାଣନ୍ତି, ଅବା ସେ ମଧ୍ୟ ହୁଏତ ଜାଣନ୍ତି ନାହିଁ ।

## ୭. ଜୀବନ : ନେତି ଓ ଅସ୍ତି

ଅତୀତର ଏହି ସବୁ ପ୍ରାରମ୍ଭିକ ଅଭିବ୍ୟକ୍ତିଠାରୁ ଭାରତୀୟ ଚିନ୍ତା ଓ ଦର୍ଶନ ଭାରତୀୟ ଜୀବନ ସଂସ୍କୃତି ଓ ସାହିତ୍ୟର ସ୍ରୋତପ୍ରବାହମାନ ବେଳକୁବେଳ ବିସ୍ତୃତ ଭାବରେ ତଥା ବର୍ଦ୍ଧିତ ପରିମାଣରେ ଏବଂ କେବେକେବେ ବନ୍ୟାରେ ପ୍ଲାବିତ ଧରଣୀକୁ, ଫଳତଃ ଉର୍ବର କରି ପ୍ରବାହିତ ହୋଇଛନ୍ତି । ଏହି ଶତ ଶତ ବର୍ଷ ଭିତରେ ସେମାନେ ସମୟେ ସମୟେ ସ୍ରୋତମୁଖ ପରିବର୍ତ୍ତନ କରିଚନ୍ତି, କ୍ଷୀଣ ପ୍ରତୀତ ହୋଇଚନ୍ତି; ତଥାପି ସେମାନଙ୍କର ସ୍ୱରୂପ ସଂରକ୍ଷଣ କରିଚନ୍ତି । ଜୀବନ ପ୍ରତି ଗୋଟାଏ ସୁସ୍ଥ ପ୍ରବୃତ୍ତିର ଅଧିକାରୀ ହୋଇ ନଥିଲେ, ସେମାନେ ସେପରି କରିପାରି ନଥାନ୍ତେ । ସେହି ପ୍ରତିବନ୍ଧ ଶକ୍ତି ପ୍ରୟୋଜନତଃ ଗୋଟାଏ ସଦ୍‌ଗୁଣ ନହୋଇ ପାରେ; ଏହାର ଅର୍ଥ ହୋଇପାରେ, ବହୁ ଦିନ ଧରି ଭାରତ ପ୍ରତି ଯେଉଁ ଅର୍ଥ ପ୍ରଯୁଜ୍ୟ ହୋଇଚି, ମୁଁ ମନେ କରେ, ଗତିହୀନତା ଓ ଅବନତି । ବିଶେଷକରି ଆଜିକାଲିର କାଳରେ ପୁନଃପୁନଃ ଯୁଦ୍ଧ ଓ ଦ୍ୱନ୍ଦ୍ୱଦ୍ୱାରା ଗୋଟାଏ ଗର୍ବିତ ତଥା ଅଗ୍ରଗାମୀ ସଭ୍ୟତାର ଛିନ୍ନତା ଆମେ ଯେବେ ଲକ୍ଷ୍ୟ କରୁଥାଉଁ, ଏହା ଗୋଟାଏ ପ୍ରଧାନ ହେତୁ ଯାହା ଉପରେ ବିଚାର କରିବା ଦରକାର । ଯୁଦ୍ଧର ଏହି ପାନ ଭିତରୁ, ଯେଉଁଥିରେ ବହୁତ କିଛି ବସ୍ତୁ ବିଚଳିତ ହୋଇଚି, ଆମର ଆଶା, ପାଶ୍ଚାତ୍ୟ ଓ ପ୍ରାଚ୍ୟ ନିମନ୍ତେ ପ୍ରକୃଷ୍ଟ କିଛି ଅବଶ୍ୟ ବାହାରିବ, ଯାହା ମାନବଜାତିର ସମସ୍ତ କିଛି ମହାନ ସାଫଲ୍ୟ ଧରିରଖିବା ସଙ୍ଗେ ସଙ୍ଗେ ସେଥିରେ ଯାହା ଅଭାବ ରହିଯାଇଚି ତାହା ପୂରଣ କରିବ; କିନ୍ତୁ ଭୌତିକ ସମ୍ବଳ ଓ ମଣିଷର ଜୀବନ କେବଳ ନୁହେଁ, ଅଧିକନ୍ତୁ ସେ ସବୁ ଅତ୍ୟାବଶ୍ୟକ ମୂଲ୍ୟବୋଧ ଯାହା ଜୀବନକୁ ଅର୍ଥ ଯୋଗାଇଚି, ପୁନଃପୁନଃ ତାର ଏ ସୁପରିବ୍ୟାପ୍ତ ଧ୍ୱଂସଲୀଳା ବାସ୍ତବିକ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ଏପରି କ'ଣ ହୋଇପାରେ କି ଯେ ବହୁମୁଖୀ ବିସ୍ତୃତକର ପ୍ରଗତି ଓ ତାର

୧ ହିନ୍ଦୁ ଧର୍ମଶାସ୍ତ୍ର ( Hindu Scriptures ) ଏଭ୍‌ରି ମେନ୍‌ସ ଲାଇବ୍ରେରି (ଡେଣ୍ଟ, ଲଣ୍ଡନ )

ଅନୁବର୍ତ୍ତୀ ଭିତରର ମୂଲ୍ୟମାନ ସମ୍ପର୍କେ, ଯାହା ପୂର୍ବ ଯୁଗରେ ଅତ୍ୟନ୍ତ ମୂଲ୍ୟ ଥିଲା, ଆମର ଆଧୁନିକ, ସମ୍ପ୍ରସାରିତ ଶିଳ୍ପ-ପ୍ରାଣ ସଭ୍ୟତାରେ ସେପରି କିଛି ସାରଭୂତ ଉପାଦାନ ନାହିଁ ଓ ସେଥିରେ ଆତ୍ମବିନାଶର ବୀଜ କେବଳ ରହିଛି ? ବୈଦେଶିକ ଶାସନାଧୀନ ଗୋଟାଏ ଦେଶ ଅନ୍ତର୍ହିତ ଗୋଟାଏ ଯୁଗର ନାନା ସ୍ୱପ୍ନ ଦେଖି ବର୍ତ୍ତମାନରୁ ପଳାୟନର ପନ୍ଥା ଖୋଜେ ଏବଂ ଅତୀତର ମହାନତା ସ୍ମରଣ କରି ସାନ୍ତ୍ୱନା ଲାଭ କରେ । ଏହା ଗୋଟାଏ ନିର୍ବୋଧ ତଥା ବିପଜ୍ଜନକ ବିନୋଦ ଯାହାକୁ ଆମ ଭିତରୁ ଅନେକେ ପ୍ରଶ୍ରୟ ଦେଇଥାନ୍ତି । ଭାରତରେ ଆମ ପକ୍ଷରେ ଆହୁରି ଏକ ବିପଜ୍ଜନକ ଅଭ୍ୟାସ ହେଉଛି ସେପରି ଖିଆଲ କରିବା ଯେପରି ଅନ୍ୟାନ୍ୟ ଭାବରେ ଦୁନିଆରେ ଆମର ଅବନତି ଘଟିଥିଲେ ମଧ୍ୟ ଆଧ୍ୟାତ୍ମିକତାରେ ଆମେ ଆଜି ବି ମହାନ୍ ରହିଛୁ । ଯଦ୍ୟପି ଆଧ୍ୟାତ୍ମିକତା ଅବା ଅନ୍ୟ ଯେ କେଉଁ ମହାନତା ସ୍ୱାଧୀନତା ଓ ସୁଯୋଗର ଅଭାବ ଉପରେ ଅବା ଅନାହାର ଓ ଦୈନ୍ୟ ଉପରେ ପ୍ରତିଷ୍ଠା କରିଯାଇ ପାରେନା । ବହୁ ପାଶ୍ଚାତ୍ୟ ଲେଖକ ଏହି ଖିଆଲକୁ ଉତ୍ସାହିତ କରିଚନ୍ତି ଯେ ଭାରତୀୟମାନେ ସାଂସାରିକ ବିଷୟସମ୍ପତ୍ତି ଉପରେ ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ । ମୁଁ ମନେ କରେ ପ୍ରତ୍ୟେକ ଦେଶରେ ଦରିଦ୍ର ଓ ହତଭାଗ୍ୟମାନେ ଯଦି ବିପ୍ଳବୀ ନ ହେଉଚନ୍ତି, କେତେକାଂଶରେ ଏପରି ପାରଲୌକିକ ବିଚାରରେ ପଡ଼ି ଆତ୍ମପ୍ରବଞ୍ଚନା କରିଚନ୍ତି । କାରଣ, ଦେଖିବାକୁ ଗଲେ, ଏ ବିଶ୍ୱ ସେମାନଙ୍କ ପାଇଁ ନୁହେଁ । ପରାଧୀନ ଜାତିମାନଙ୍କ ପାଇଁ ମଧ୍ୟ ଏହା ପ୍ରଯୁଜ୍ୟ ।

ମଣିଷ ଯେତେବେଳେ ପରିପକ୍ୱତା ଲାଭ କରେ ବାହ୍ୟ ବିଷୟସୁଖ ବିଶ୍ୱରେ ସମ୍ପୂର୍ଣ୍ଣ ଭାବରେ ସେ ଲିପ୍ତ ହୁଏ ନାହିଁ କିମ୍ବା ସେଥିରୁ ସେପରି ସନ୍ତୋଷ ପାଏ ନାହିଁ । ସେ ଖୋଜି ବସେ କିଛି ଆନ୍ତର ଅର୍ଥ, କିଛି ମନସ୍ତାତ୍ତ୍ୱିକ ଓ ଭୌତିକ ସନ୍ତୋଷ । ଜାତି ହେଉ କି ସଭ୍ୟତା ହେଉ ସେମାନଙ୍କର ବୟଃପ୍ରାପ୍ତି ଓ ପରିପକ୍ୱତା ସମ୍ପର୍କରେ ମଧ୍ୟ ଏହା ସତ୍ୟ । ପ୍ରତ୍ୟେକ ସଭ୍ୟତା ଓ ପ୍ରତ୍ୟେକ ଜାତି ବାହ୍ୟ ଜୀବନ ଓ ଆନ୍ତର୍ଜୀବନର ଦୁଇଟି ସମାନ୍ତରାଳ ଧାରା ପ୍ରଦର୍ଶିତ କରିଥାନ୍ତି । ଯେଉଁଠି ଏ ଉଭୟ ଧାରା ମିଳିତ ହୁଅନ୍ତି କିମ୍ବା ପରସ୍ପରର ନିକଟବର୍ତ୍ତୀ ହୁଅନ୍ତି, ସେଇଠି ଭାରସାମ୍ୟ ଓ ସ୍ଥିରତା ରହେ । ଯେବେ ପରସ୍ପରଠାରୁ ଦୂରେଇ ରହନ୍ତି, ମନ ଓ ପ୍ରାଣ ପକ୍ଷରେ ପୀଡ଼ାଦାୟକ, ଦ୍ୱନ୍ଦ୍ୱ ଓ ସଙ୍କଟ ଦେଖାଦିଏ ।

ଜୀବନ ଓ ଚିନ୍ତା ଏହି ଉଭୟ ଧାରାର ବିକାଶ ଋଗ୍‌ବେଦ ରଚନାକାଳରୁ ଆମେ ଦେଖିବାକୁ ପାଉଁ । ଏଥିର ପ୍ରଥମ କେତେକ ମନ୍ତ୍ର ସ୍ଥୂଳବିଶ୍ୱ, ପ୍ରକୃତିର ସୌନ୍ଦର୍ଯ୍ୟ ଓ ରହସ୍ୟ ଜୀବନର ଆନନ୍ଦ ଓ ଗୋଟାଏ ଉଚ୍ଛଳ ପ୍ରାଣଶକ୍ତିରେ ପୂର୍ଣ୍ଣ । ଓଲିମ୍ପାସ୍[୧]ରେ ଯେପରି, ଏଥିର ଦେବଦେବୀମାନେ ଅତିଶୟ ମାନବଭାବାପନ୍ନ । ଉପରୁ ଅବତରଣ କରି ସେମାନେ ପୃଥିବୀର ନରନାରୀ ସଙ୍ଗେ ମିଶିବାର କଳ୍ପନା ଏଥିରେ କରାଯାଇଚି । ମଣିଷ ଓ ଦେବତାକୁ ପୃଥକ୍

---

୧ ଘ୍ରୀସ୍‌ର ଏକ ପର୍ବତ । ପ୍ରାଚୀନ କାଳରେ ଏହା ଦେବଦେବୀଙ୍କ ନିବାସ ସ୍ଥାନ ବୋଲି ଲୋକେ ମାନୁଥିଲେ ।

କରିବାରେ ସେଭଳି କିଛି ଧାରାବନ୍ଧା ବିଭାଜନରେଖା ନାହିଁ । ଏହା ପରେ ଭାବୁକତା ଏବଂ ଜିଜ୍ଞାସାର ଉତ୍କଣ୍ଠା ଓ ସଙ୍ଘାତଶକ୍ତି ଗୋଟାଏ ବିଶ୍ୱର ରହସ୍ୟ ଗଭୀରତର ହୁଏ । ଜୀବନର ପ୍ରଚୁରତା ଫଳେମାଣ ହ୍ରାସ ନହେଲେ ମଧ୍ୟ ତାର ବାହ୍ୟ ପ୍ରକାଶ ଉପରୁ ମୁହଁ ଫେରାଇବାର ପ୍ରବୃତ୍ତି ଜାଗ୍ରତ ହୁଏ ଏବଂ ଦୃଷ୍ଟି ଯେତେ ଯେତେ ସେ ସବୁ ଅଦୃଶ୍ୟ ବସ୍ତୁ ଆଡ଼କୁ ଚାଲିରହେ, ଯାହାକୁ ସାଧାରଣ ଭାବରେ ଦେଖିବା, ଶୁଣିବା ଅବା ସ୍ପର୍ଶ କରିବା ସମ୍ଭବ ନୁହେଁ, ଗୋଟାଏ ଅନାସକ୍ତଭାବ ବଢ଼ିଉଠେ । ଏ ସବୁର ଉଦ୍ଦେଶ୍ୟ କଣ ? ଏହି ବ୍ରହ୍ମାଣ୍ଡ ପଛରେ କ'ଣ କିଛି ଉଦ୍ଦେଶ୍ୟ ଅଛି ? ଯଦି ଅଛି, ତେବେ ସେଥି ସଙ୍ଗେ ମଣିଷ ଜୀବନର ସଙ୍ଗତି କପରି ସାଧନ କରାଯାଇ ପାରିବ ? ଦୃଶ୍ୟମାନ ଓ ଅଦୃଶ୍ୟ ବିଶ୍ୱ ଭିତରେ ଗୋଟାଏ ସୁସଙ୍ଗତ ସମ୍ପର୍କ ପ୍ରତିଷ୍ଠା କରି ଆମେ କଣ ଜୀବନର ଶୁଦ୍ଧ ଆଚରଣ ପଦ୍ଧତି ନିର୍ଦ୍ଧାରଣ କରିପାରିବା ?

ଅତଏବ, ଅନ୍ୟ ଯେ କୌଣସି ସ୍ଥାନ ଭଳି, ଭାରତରେ ଚିନ୍ତା ଓ କର୍ମର ଏହି ଦୁଇଟି ଧାରା—ଗୋଟିକରେ ଜୀବନର ସ୍ୱୀକୃତି ଓ ଅନ୍ୟଟିରେ ଜୀବନର ପ୍ରତ୍ୟାହାର—ଭିନ୍ନ ଭିନ୍ନ ପର୍ଯ୍ୟାୟରେ କେବେ ଗୋଟିକ ଉପରେ, କେବେ ବା ଅନ୍ୟଟି ଉପରେ ଗୁରୁତ୍ୱ ଅର୍ପଣ କରି ପାର୍ଶ୍ୱବର୍ତ୍ତୀ ଭାବରେ ବିକାଶ ଲାଭ କରିବା ଆମେ ଦେଖିବାକୁ ପାଉଁ । ତଥାପି, ସେହି ସଂସ୍କୃତିର ମୌଳିକ ପୃଷ୍ଠଭୂମି ପରକାଳମୁଖୀ ଅବା ସଂସାରବିମୁଖ ନଥିଲା । ତଥାପି, ଦର୍ଶନ ଭାଷାରେ, ତାହା ଯେବେ ସଂସାର ମାୟା ବୋଲି ବ୍ୟାଖ୍ୟା କରି ବସିଲା, ସେହି ଅବଧାରଣାରେ ମଧ୍ୟ ପରମନ୍ତି ନଥିଲା, ଯାହାକୁ ଚରମ ବାସ୍ତବତା (ପ୍ଲେଟୋଙ୍କ ବାସ୍ତବତାର ଛାୟା ଭଳି କିଛି) ବୋଲି ବିବେଚନା କରାଯାଉଥିଲା, ସେଥି ସଙ୍ଗେ ସମ୍ପର୍କିତ ଥିଲା ଏବଂ ବିଶ୍ୱକୁ ଯଥାଯଥ ଭାବରେ ଗ୍ରହଣ କରି ଜୀବନକୁ ବଞ୍ଚିବାଯୋଗ୍ୟ ଓ ତାର ବହୁବିଧ ସୌନ୍ଦର୍ଯ୍ୟ ଉପଭୋଗ କରିବାର ପ୍ରୟାସ କରିଥିଲା । ସେମିଟିକ୍ ସଂସ୍କୃତି (ଇହୁଦୀ, ଆରବୀୟ, ପାରସିକ ଓ ଇଥିଓପିଆ ସମ୍ବଳିତ) ପ୍ରସୂତ ବହୁ ଧର୍ମରେ ତାର ଯେଉଁ ଆଦର୍ଶ ପ୍ରକଟିତ ହୋଇଛି ତାହା ଏବଂ ଆଦ୍ୟକାଳୀନ ଖ୍ରୀଷ୍ଟଧର୍ମ ମଧ୍ୟ ଆହୁରି ଅଧିକ ପରକାଳମୁଖୀ ଥିଲା । ଡି. ଇ. ଲରେନ୍ସ କହନ୍ତି ଯେ ସେ କଦ୍ୟଲଭ କରିଥାଉ କି ପରାଜିତ ହୋଇଥାଉ, ସମସ୍ତ ସେମିଟିକ୍ ଧର୍ମର ସର୍ବସାଧାରଣ ଭିତ୍ତିରେ ସଂସାରବୈରାଗ୍ୟର ଭାବ ସତତ ବିଦ୍ୟମାନ ଥିଲା । ଏହା ବାରମ୍ବାର ଆତ୍ମବିନୋଦନ ଓ ଆତ୍ମତ୍ୟାଗ ଭିତରେ ଏକାନ୍ତରିତ ହେଉଥିଲା ।

ଭାରତରେ ପ୍ରତ୍ୟେକ ଯୁଗରେ, ଯେବେ ତାର ସଭ୍ୟତା କୁସୁମିତ ହୋଇଛି, ଜୀବନ ଓ ପ୍ରକୃତିରେ ବିପୁଳ ଆନନ୍ଦ, ଜୀବନଯାପନରେ ପ୍ରମୋଦ, କଳା ଓ ସଙ୍ଗୀତ, ସାହିତ୍ୟ, ଗାନ ନୃତ୍ୟ ଚିତ୍ରକଳା, ମଞ୍ଚଶିଳ୍ପର ବିକାଶ ଏବଂ ଏପରି କି କାମବିଜ୍ଞାନ ସମ୍ବନ୍ଧୀୟ ବିବିଧ ଜିଜ୍ଞାସା ମଧ୍ୟ ଦେଖିବାକୁ ପାଉଁ । ପାରଲୌକିକତା ଅବା ସଂସାରବିମୁଖତା ଉପରେ ପ୍ରତିଷ୍ଠିତ ଗୋଟାଏ ସଂସ୍କୃତି ଅବା ଜୀବନର ଦୃଷ୍ଟିଭଙ୍ଗୀ, କର୍ମପ୍ରବଣ ତଥା ବିଚିତ୍ରତାପୂର୍ଣ୍ଣ ଜୀବନର ଏ ସମସ୍ତ ବହିଃପ୍ରକାଶ ସମ୍ଭବ କରିପାରେ ବୋଲି କେବେ ଧାରଣା କରାଯାଇ ପାରେନା । ପ୍ରକୃତ ପକ୍ଷେ, ଏ କଥା ସ୍ପଷ୍ଟ ହେବା ଉଚିତ ଯେ କୌଣସି ସଂସ୍କୃତି ଯାହା ମୌଳିକ ଭାବରେ ପରକାଳମୁଖୀ ହଜାର ହଜାର ବର୍ଷ ଧରି ଜୀବନ୍ତ ରହିପାରି ନଥାନ୍ତା ।

ତଥାପି, କେହି କେହି ମନେକରନ୍ତି ଯେ ଭାରତୀୟ ଚିନ୍ତା ଓ ସଂସ୍କୃତି ସାରତଃ ଜୀବନର ଅସ୍ତି-ସୂଚକ ନୁହେଁ; ନେତି-ସୂଚକ ମତର ପ୍ରତିନିଧିତ୍ୱ କରେ । କିନ୍ତୁ ମୁଁ ମନେକରେ ଯେ ସବୁ ପ୍ରାଚୀନ ଧର୍ମ ଓ ସଂସ୍କୃତିରେ ନେତି ଓ ଅସ୍ତି ଉଭୟ ମତ କମ୍ ବେଶୀ ପରିମାଣରେ ରହିଚି । ମୋର କିନ୍ତୁ ମନେହୁଏ, ସାମଗ୍ରିକ ଭାବରେ ଗ୍ରହଣ କଲେ, ଭାରତୀୟ ସଂସ୍କୃତି ଜୀବନର ନେତି ଦିଗ ଉପରେ କେବେ ଜୋର୍ ଦେଇନି; ଯଦିଓ ତାର କେତେକ ଦର୍ଶନରେ ସେପରି କରାଯାଇଚି । ତଥାପି, ତାହା ମଧ୍ୟ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ ଦର୍ଶନ ଅପେକ୍ଷା ଯଥେଷ୍ଟ ଭାବରେ କମ୍ । ବୌଦ୍ଧଧର୍ମ ଓ ଜୈନଧର୍ମ ଜୀବନରୁ ଅନୁପସ୍ଥିତି ଉପରେ ଜୋର୍ ଦେଉଥିଲେ ଏବଂ ଭାରତୀୟ ଇତିହାସର କେତେକ ପର୍ଯ୍ୟାୟରେ ଜୀବନରୁ ପଳାୟନ କରିବା ବିରାଟ ଆକାର ଧାରଣ କରିଥିଲା । ଉଦାହରଣସ୍ୱରୂପ, ସେ ସବୁ ସମୟରେ ବୌଦ୍ଧ-ବିହାରମାନଙ୍କରେ ଲୋକେ ବହୁ ସଂଖ୍ୟାରେ ଯୋଗ ଦେଉଥିଲେ । ଏହାର କାରଣ କ'ଣ ଥିଲା ମୁଁ ଅବଶ୍ୟ ଜାଣେନି । ମଧ୍ୟଯୁଗୀୟ ୟୁରୋପରେ ମଧ୍ୟ ଏପରି ଓ ଏହାଠାରୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣାମାନ ଦେଖିବାକୁ ମିଳେ । ବିଶେଷକରି ଗୋଟାଏ ସମୟରେ ଲୋକଙ୍କ ଭିତରେ ଖୁବ୍ ବ୍ୟାପକ ଭାବରେ ବିଶ୍ୱାସ ଉପୁଜିଥିଲା ଯେ ପୃଥିବୀର ଅନ୍ତିମ ମୁହୂର୍ତ୍ତ ଆସିଯାଉଚି । ହୁଏତ ରାଜନୈତିକ ଓ ଅର୍ଥନୈତିକ ହତାଶା ଅନୁଭୂତିରୁ ସଂସାରତ୍ୟାଗ ଓ ଜୀବନ ପ୍ରତି ନେତି ଭାବର ଧାରଣାମାନ ସୃଷ୍ଟି ହେଉଥାଏ ଅବା ସେଥି ଉପରେ ଜୋର୍ ଦିଆଯାଇଥାଏ ।

ତା'ର ଏକ ଅବା ତତୋଽଧିକ ତାତ୍ତ୍ୱିକ ଆଭିମୁଖ୍ୟ ସତ୍ତ୍ୱେ ବୌଦ୍ଧଧର୍ମ ବସ୍ତୁତଃ ନେତି ଓ ଅସ୍ତିର ଉଭୟ ପ୍ରାନ୍ତ ଏଡ଼ାଇ ପାରିଚି । ଏହା ମଧ୍ୟ-ପଥ ଅଥବା ସୁନେଲ୍-ମଧ୍ୟକର ଧର୍ମ । ଏପରି କି ନିର୍ବାଣର ଧାରଣା ମଧ୍ୟ, କେବେକେବେ ମନେକଲା ଭଳି, କୌଣସି ପ୍ରକାର ଶୂନ୍ୟବାଦ ନୁହେଁ । ଏହା ଏକ ନିଶ୍ଚିତ ଅବସ୍ଥା କିନ୍ତୁ ମାନବିକ ଚିନ୍ତାଧାରାର ଊର୍ଦ୍ଧ୍ୱରେ ରହିଥିବାରୁ ତାର ବର୍ଣ୍ଣନା ନିମନ୍ତେ ନେତିବାଚକ ଶବ୍ଦମାନ ବ୍ୟବହାର କରାଯାଇଥିଲା । ଭାରତୀୟ ଚିନ୍ତା ଓ ସଂସ୍କୃତିର ଅନ୍ୟତମ ବିଶିଷ୍ଟ ସୃଷ୍ଟି, ବୌଦ୍ଧଧର୍ମ ଯଦି ଜୀବନର ଗୋଟାଏ ନେତିବାଚକ ମତ କେବଳ ହେଇଥାନ୍ତା, ତାହାହେଲେ ତାର ଅନୁଗାମୀ କୋଟି କୋଟି ଲୋକଙ୍କ ଉପରେ ସେପରି କିଛି ପ୍ରଭାବ ନିଶ୍ଚିତ ଭାବରେ ପଡ଼ିଥାନ୍ତା । ତଥାପି ବୌଦ୍ଧ-ଧର୍ମାବଲମ୍ବୀ ଦେଶମାନଙ୍କରେ ବସ୍ତୁତଃ ଏହାର ବିପରୀତ ପ୍ରମାଣମାନ ହିଁ ବହୁଳ ଭାବରେ ଦେଖିବାକୁ ମିଳେ ଏବଂ ଜୀବନର ଅସ୍ତିବାଚକତା କ'ଣ ହେଇପାରେ, ଚୀନା ଲୋକେ ତାର ବିଶିଷ୍ଟ ଦୃଷ୍ଟାନ୍ତ ।

ଜୀବନର ଚରମ ଉଦ୍ଦେଶ୍ୟ ଉପରେ ଭାରତୀୟ ଚିନ୍ତା ସର୍ବଦା ବିଶେଷ ଜୋର୍ ଦେଇଥାଏ ବୋଲି ହୁଏତ ଏହି ହିତବୁଦ୍ଧିତା ଉପୁଜି ଥାଇପାରେ । ତା'ର ଧାତୁରେ ବର୍ତ୍ତମାନ ଭୂମିସ୍ଥ ତତ୍ତ୍ୱକୁ ଅବଜ୍ଞା କରିବା ତା' ପକ୍ଷରେ ସମ୍ଭବ ହେଇନି । ଅତଏବ, ଜୀବନର ଅସ୍ତି-ମହତ୍ତ୍ୱପୂର୍ଣ୍ଣ ଭାବରେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଜୀବନର ଶିକାର ଓ ଦାସ ହେବା ପ୍ରତ୍ୟାଖ୍ୟାନ କରିଚି । କୁହାଯାଇଚି, ସମସ୍ତ ଶକ୍ତି ବିନିଯୋଗ କରି ଉଚିତ କର୍ମରେ ପ୍ରବୃତ୍ତ ହୁଅ; କିନ୍ତୁ

ସବୁବେଳେ ତାର ଊର୍ଦ୍ଧ୍ୱରେ ରହିବା ପାଇଁ ଉଦ୍ୟମ କର ଏବଂ କର୍ମଫଳ ସମ୍ପର୍କରେ ବିଶେଷ ଭାବିତ ହୁଅ ନାହିଁ । ଏପରି ଭାବରେ, ଜୀବନ ଓ କର୍ମରେ ଏହା ଅନାସକ୍ତିର ଶିକ୍ଷା ଦିଏ; ଜୀବନ ଓ କର୍ମରୁ ଅନୁପସ୍ଥିତ ରହିବା କିମ୍ବା ପଳାୟନ କରିବା ନୁହେଁ । ଅଧିକାଂଶ ଦର୍ଶନରେ ଯେପରି, ଭାରତୀୟ ଚିନ୍ତା ଓ ଦର୍ଶନରେ ମଧ୍ୟ ଅନାସକ୍ତିର ଏହି ଭାବ ସତତ ବିଦ୍ୟମାନ । ଦୃଶ୍ୟମାନ ଓ ଅଦୃଶ୍ୟ ବିଶ୍ୱ ଭିତରେ ଯଥାର୍ଥ ସମତୁଳନ ଓ ଭାରସାମ୍ୟ ରଖାଯିବା ଉଚିତ ବୋଲି କହିବାର ଏହା ଅନ୍ୟ ଏକ ମାର୍ଗ; କାରଣ ଦୃଶ୍ୟମାନ ବିଶ୍ୱରେ ଯଦି କର୍ମ ପ୍ରତି ବିଶେଷ ଆସକ୍ତି ରହେ ଏବଂ ଅପର ବିଶ୍ୱ ଯଦି ବିସ୍ମୃତ ହୁଏ ଅବା ଦୃଷ୍ଟି ସମ୍ମୁଖରୁ ଲିଭିଯାଏ ତାହାହେଲେ କର୍ମ ତାର ଚରମ ଉଦ୍ଦେଶ୍ୟ ହରାଇବସେ ।

ଭାରତୀୟ ମନର ଏହି ସବୁ ପ୍ରଥମକାଳୀନ ଦୁଃସାହସିକତାରେ ସତ୍ୟ ଉପରେ ନିର୍ଭର କରିବା ପାଇଁ, ସତ୍ୟ ଆହରଣ ନିମନ୍ତେ ଉତ୍କଣ୍ଠିତ ହେବା ପାଇଁ ବିଶେଷ ଜୋର୍ ଦିଆଯାଇଛି । ହଠବାଦ ଅବା କୌଣସି ଅଲୌକିକ ସତ୍ତାର ପ୍ରକଟନ ବିଷୟ ସତ୍ୟକୁ ସ୍ପର୍ଶ କରିବାରେ ଅସମର୍ଥ ନ୍ୟୂନତର ମନ ନିମନ୍ତେ କେବଳ ବୋଲି ସେଥିଉପରେ ବିଶେଷ ଜୋର୍ ଦିଆଯାଇ ନଥିଲା । ବ୍ୟକ୍ତିଗତ ଅଭିଜ୍ଞତା ଉପରେ ଭିତ୍ତିକରି ସେହି ଆଭିମୁଖ୍ୟ ଥିଲା ପରୀକ୍ଷା-ନିରୀକ୍ଷାର । ଅଦୃଶ୍ୟ ବିଶ୍ୱକୁ ନେଇ ଚର୍ଚ୍ଚା କଲାବେଳର ସେହି ଅଭିଜ୍ଞତା, ଅନ୍ୟ ଯେତେ ପ୍ରକ୍ଷୋଭଗତ ତଥା ଆତ୍ମିକ ଅଭିଜ୍ଞତା ଭଳି, ଦୃଶ୍ୟମାନ ବାହ୍ୟ ବିଶ୍ୱର ଅଭିଜ୍ଞତାରୁ ପୃଥକ୍ ଥିଲା । ଆମର ଜ୍ଞାତ ତିନି-ଆୟତନବିଶିଷ୍ଟ ବିଶ୍ୱରୁ ଊର୍ଦ୍ଧ୍ୱକୁ ଉଠି ତାହା କୌଣସି ଉଚ୍ଚତର ପ୍ରଦେଶରେ ପ୍ରବେଶ କଲାଭଳି ଯେହେତୁ ଜଣାଯାଉଥିଲା, ପରିମାଣ-ଭାଷାରେ ତାହା ବର୍ଣ୍ଣନା କରିବା କଷ୍ଟକର ଥିଲା । ହେଇ ଅଭିଜ୍ଞତା କଣ ଏବଂ ତାହା ସତ୍ୟ ଓ ବାସ୍ତବତାର କେତେକ ବିଭାବର ଗୋଟାଏ ମାନସ-ଚିତ୍ର ଅବା ଉପଲବ୍ଧି କି ନା କିମ୍ବା କଳ୍ପନାର ଦୃଷ୍ଟିଭ୍ରମ କେବଳ, ମୁଁ ଜାଣେନି । ହୁଏତ ଅନେକ ଅବସରରେ ଏହାକୁ ଆତ୍ମପ୍ରତାରଣା କୁହାଯାଇପାରେ । କିନ୍ତୁ ମୋର ଚିତ୍ତକୁ ଯାହା ଘେନିଛି, ତାହା ହେଉଛି ସେହି ଆଭିମୁଖ୍ୟ ଯେଉଁଥିରେ କୌଣସି ଧର୍ମୀବିଚାର କିମ୍ବା ଅନୁଶାସନର କର୍ତ୍ତୃତ୍ୱ ନଥିଲା, ଜୀବନର ସ୍ଥୂଳବିଭବ ପଛରେ କଣ ଅଛି, ନିଜେ ଆବିଷ୍କାର କରିବାପାଇଁ ତାହା ଏକ ପ୍ରୟାସ ମାତ୍ର ।

ଏ କଥା ମନେରଖିବାକୁ ହେବ, ଭାରତରେ ଦର୍ଶନ କେତେଜଣ ଦାର୍ଶନିକ ଅବା ପଣ୍ଡିତଙ୍କର କାରବାର ନଥିଲା । ଦର୍ଶନ ଥିଲା ଜନସାଧାରଣଙ୍କ ଧର୍ମର ସାରଭୂତ ଅଂଶ । ତାହା କେଜାଣି କି ପ୍ରକାର ସୂକ୍ଷ୍ମ ରୂପରେ ସେମାନଙ୍କ ଭିତରେ ସଞ୍ଚିତ ହୋଇ ଯେଉଁ ଦାର୍ଶନିକ ଦୃଷ୍ଟିଭଙ୍ଗୀ ସୃଷ୍ଟି କଲା, ତାହା ଭାରତରେ; ଚୀନରେ ବି ଯେପରି, ପ୍ରାୟ ସର୍ବସାଧାରଣ ହୋଇ ଉଠିଲା । କେତେକଙ୍କ ପକ୍ଷରେ ସେହି ଦର୍ଶନ ଥିଲା ସମସ୍ତ ପ୍ରତିଭାସର ଶବଧ କାରଣ ଓ ନିୟମ ଜାଣିବାର ଗୋଟାଏ ଗମ୍ଭୀର ତଥା ଜଟିଳ ପ୍ରୟାସ; ଜୀବନର ଅସଲ ଉଦ୍ଦେଶ୍ୟର ସନ୍ଧାନ ଏବଂ ଜୀବନର ବହୁ ପରସ୍ପରବିରୋଧୀ ବିଷୟରେ ମୌଳିକ ଏକତା ଆହରଣର ଉଦ୍ୟମ । କିନ୍ତୁ ସର୍ବସାଧାରଣଙ୍କ ପାଇଁ ଏହା ଥିଲା ଅତି ସରଳ ଏକ ବିଷୟ ।

ତଥାପି ମଧ୍ୟ ଏହା ସେମାନଙ୍କୁ ଜୀବନର ଉଦ୍ଦେଶ୍ୟ ଓ କାର୍ଯ୍ୟ-କାରଣରେ କିଛି ବୋଧ ଅର୍ପଣ କଲା ଏବଂ ନିଜର ପ୍ରସନ୍ନତା ଓ ପ୍ରଶାନ୍ତି ହରାଇ ନଦେଇ ଦୁର୍ଭାଗ୍ୟ ଓ ସଙ୍କଟର ସମ୍ମୁଖୀନ ହେବା ପାଇଁ ସାହସ ଯୋଗାଇଲା । ରବୀନ୍ଦ୍ରନାଥ ଠାକୁର ଡକ୍ଟର ତାଇ-ଚି-ତାଓଙ୍କ ପାଖକୁ ଲେଖିଥିଲେ ଯେ ଚୀନ ଓ ଭାରତର ସୁପ୍ରାଚୀନ ପ୍ରଜ୍ଞା, 'ଟାଓ' ବା ସତ୍ୟ-ପଥ ହେଉଛି ପୂର୍ଣ୍ଣତାର ସନ୍ଧାନ ଓ ଜୀବନର ବିବିଧ କାର୍ଯ୍ୟ ସଙ୍ଗେ ବଞ୍ଚିବାର ଆନନ୍ଦ ସମ୍ମିଳିତ କରିବା । ସେହି ପ୍ରଜ୍ଞାର ଆଂଶିକ ପ୍ରଭାବ ନିରକ୍ଷର ତଥା ଅଜ୍ଞାନ ଜନସାଧାରଣଙ୍କ ଉପରେ ପଡ଼ିଥିଲା ଏବଂ ଆମେ ଦେଖିଲେ ଯେ ସାତବର୍ଷର ଭୟାବହ ଯୁଦ୍ଧ ପରେ ମଧ୍ୟ ଚୀନା ଲୋକେ ସେମାନଙ୍କର ବିଶ୍ୱାସର ସମ୍ବଳ ଅଥବା ମନର ପ୍ରସନ୍ନତା ହରାଇ ନାହାନ୍ତି । ଭାରତରେ ଆମର ଏ ସଂଗ୍ରାମ ଦୀର୍ଘଦିନ ଧରି ଚାଲିଛି ଏବଂ ଅକଥନୀୟ ଦୈନ୍ୟ ଓ ଦୁଃଖ ଆମ ଲୋକଙ୍କର ଚିରସାଥୀ ହୋଇ ରହିଛି । ତଥାପି ସେମାନେ ଆଜି ବି ହସୁଚନ୍ତି, ଗାଉଚନ୍ତି, ନୃତ୍ୟ କରୁଚନ୍ତି ଏବଂ ଆଶା ହରାଉନାହାନ୍ତି ।

## ୭. ସମନ୍ୱୟ ଓ ବ୍ୟବସ୍ଥା : ବର୍ଣ୍ଣ-ବ୍ୟବସ୍ଥାର ଆରମ୍ଭ

ଭାରତକୁ ଆର୍ଯ୍ୟମାନଙ୍କ ଆଗମନ, ଜାତିଗତ ଓ ରାଜନୈତିକ, କେତେକ ନୂତନ ସମସ୍ୟା ସୃଷ୍ଟି କଲା । ବିଜିତ ଦ୍ରାବିଡ଼ ଜାତିର ସଭ୍ୟତାର ଦୀର୍ଘ ଏକ ପୃଷ୍ଠଭୂମି ଥିଲା; କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ଆର୍ଯ୍ୟମାନେ ନିଜକୁ ଦ୍ରାବିଡ଼ମାନଙ୍କ ଅପେକ୍ଷା ଶ୍ରେଷ୍ଠତର ମଣୁଥିଲେ ଏବଂ ଉଭୟ ଜାତି ମଧ୍ୟରେ ବିଶାଳ ଏକ ବ୍ୟବଧାନ ରହିଥିଲା । ସେତେବେଳେ ବହୁ ଅନଗ୍ରସର ଆଦିମ ଉପଜାତି, ଯାଯାବର ଅବା ଅରଣ୍ୟବାସୀ ବି ଥିଲେ । ଏ ସମସ୍ତଙ୍କ ଭିତରେ ସଂଘାତ ଓ ପାରସ୍ପରିକ କ୍ରିୟା ଭିତର ଦେଇ କ୍ରମଶଃ ବର୍ଣ୍ଣବ୍ୟବସ୍ଥା ଗଢ଼ି ଉଠିଲା, ଯାହା ପରବର୍ତ୍ତୀ କେତେ ଶତକରେ ଭାରତୀୟ ଜୀବନକୁ ବିପୁଳ ଭାବରେ ପ୍ରଭାବିତ କଲା । ସମ୍ଭବତଃ, ବର୍ଣ୍ଣ-ବିଚାର ଆର୍ଯ୍ୟ କିମ୍ବା ଦ୍ରାବିଡ଼ ଜାତିରେ ନ ଥିଲା । ଏହା ଥିଲା ଭିନ୍ନ ଭିନ୍ନ ଜାତିକୁ ଗୋଟାଏ ସାମାଜିକ ସଂଗଠନର ଅନ୍ତର୍ଭୁକ୍ତ କରିବା ଉଦ୍ୟମ; ସେ ସମୟର ଅବସ୍ଥାକୁ ଗୋଟାଏ ସଙ୍ଗତ ରୂପ ଦେବାର ପ୍ରୟାସ । ପରବର୍ତ୍ତୀକାଳରେ ଏଥି ହେତୁରୁ ବହୁ ଦୁର୍ଗତି ଭୋଗିବାକୁ ପଡ଼ିଛି ଏବଂ ଆଜି ବି ଏହା ଗୋଟାଏ ବୋଝ ଓ ଅଭିଶାପ ହୋଇ ରହିଛି । କିନ୍ତୁ ପରବର୍ତ୍ତୀକାଳର ବିଭିନ୍ନ ଗତି ଓ ମୂଲ୍ୟମାନ ଦେଇ ଏହାର ବିଚାର କରିବା ଠିକ୍ ହେବ ନାହିଁ । ଆପାତତଃ ଚୀନ୍ ସେଥିରୁ ମୁକ୍ତ ଥିଲେ ହେଁ ସମୟର ଗତି ସଙ୍ଗେ ପାଦ ମିଳାଇ ଅଧିକାଂଶ ପ୍ରାଚୀନ ସଭ୍ୟତାରେ ଏପରି କିଛି ବର୍ଗବିନ୍ୟାସ ଘଟିଥିଲା । 'ସାସାନୀୟ' ଯୁଗରେ ଆର୍ଯ୍ୟମାନଙ୍କର ଅନ୍ୟତମ ଶାଖା ପାରସିକମାନଙ୍କ ଭିତରେ ମଧ୍ୟ ଏଭଳି ଚତୁର୍ବିଧ ବିଭାଜନ ଥିଲା; କିନ୍ତୁ ତାହା ଆମର ବର୍ଣ୍ଣ-ବ୍ୟବସ୍ଥା ଭଳି ପ୍ରସ୍ତରୀଭୂତ ହୋଇଯାଇ ନ ଥିଲା । ଗ୍ରୀସ୍ ସମେତ ଅନେକ ପ୍ରାଚୀନ ସଭ୍ୟତା ଦାସପ୍ରଥା ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଥିଲେ । ଭାରତରେ ସେପରି କିଛି ବ୍ୟାପକ ଦାସପ୍ରଥା ନଥିଲା ଯଦିଓ, ଅପେକ୍ଷାକୃତ ସ୍ୱଳ୍ପସଂଖ୍ୟକ ଲୋକ ପାରିବାରିକ ଭୃତ୍ୟ ଭାବରେ ରହିଥିଲେ । ପ୍ଲାଟୋ ତାଙ୍କର 'ରିପବ୍ଲିକ୍' ଗ୍ରନ୍ଥରେ ଭାରତର

ସ୍ତୁରବର୍ଣ୍ଣୀୟ ଭଳି ଗୋଟାଏ ବିଭାଜନ ଉଲ୍ଲେଖ କରନ୍ତି । ମଧ୍ୟଯୁଗୀୟ ରୋମାନ୍ କେଥଲିକ୍ ସମ୍ପ୍ରଦାୟ ଭିତରେ ବି ଏପରି କିଛି ବିଭାଜନ ଥିଲା ।

ଆର୍ଯ୍ୟ ଓ ଅନାର୍ଯ୍ୟ ଭେଦରୁ ଜାତି ଅବା ବର୍ଣ୍ଣର ଆରମ୍ଭ । ପରେ ଅନାର୍ଯ୍ୟମାନେ ବି ବିଭିନ୍ନ ଦ୍ରାବିଡ଼ ଜାତି ଓ ଆଦିମ ଉପଜାତିରେ ବିଭକ୍ତ ହେଲେ । ଆରମ୍ଭରେ ଆର୍ଯ୍ୟମାନଙ୍କ ଭିତରେ ଶ୍ରେଣୀ ବିଭାଜନ କିମ୍ବା କୌଣସି ଧନ୍ଦାର ବିଶେଷୀକରଣ ନଥିଲା । ଯେଉଁ ଧାତୁରୁ ଆର୍ଯ୍ୟ ଶବ୍ଦର ଉତ୍ପତ୍ତି; ତାର ଅର୍ଥ ହେଉଚି କର୍ଷଣ କରିବା ଏବଂ ଆର୍ଯ୍ୟମାନେ ସାମଗ୍ରିକ ଭାବରେ କୃଷକ ଥିଲେ ଓ କୃଷି ଗୋଟିଏ ସମ୍ମାନଜନକ ବୃତ୍ତି ବିବେଚିତ ହେଉଥିଲା । ଯିଏ କୃଷକ ସେ ପୁରୋହିତ, ସିପାହି ଅବା ବଣିକ ମଧ୍ୟ ହୋଇପାରୁଥିଲା ଏବଂ ସ୍ୱାଧୀକାରଭୋଗୀ କୌଣସି ପୁରୋହିତ ସମାଜ ନଥିଲା । ମୂଳତଃ, ଆର୍ଯ୍ୟ ଓ ଅନାର୍ଯ୍ୟଙ୍କୁ ପୃଥକ୍ କରିବା ନିମନ୍ତେ ବର୍ଣ୍ଣ-ଭେଦ ଉଦ୍ଦିଷ୍ଟ ଯଦିଓ ଥିଲା, ପରେ କିନ୍ତୁ ଏହାର ପ୍ରତିକ୍ରିୟା ଆର୍ଯ୍ୟମାନଙ୍କ ଭିତରେ ହିଁ ଦେଖାଦେଲା ଏବଂ ଧନ୍ଦା ଯେତେ ଯେତେ ବଢ଼ିବାକୁ ଲାଗିଲା ଓ ସେଥିଭିତରେ ପୁଣି ବିଶେଷୀକରଣ ନେଇ ବିଭାଜନ ବଢ଼ିଲା, ନୂଆ ବର୍ଗଗୁଡ଼ିକ ବର୍ଣ୍ଣ ବା ଜାତି ରୂପ ପରିଗ୍ରହ କଲେ ।

ଏପରି ଭାବରେ, ଗୋଟାଏ ସମୟରେ ବିଜିତ ଜାତିମାନଙ୍କୁ ନିଶ୍ଚିହ୍ନ କରିବା ଅବା ଦାସତ୍ୱରେ ରଖିବା ଯେବେ ବିଜୟୀମାନଙ୍କ ପକ୍ଷରେ ପ୍ରଥାସମ୍ମତ ଥିଲା, ବର୍ଣ୍ଣ-ବ୍ୟବସ୍ଥା ଗୋଟାଏ ଅଧିକତର ଶାନ୍ତିପୂର୍ଣ୍ଣ ସମାଧାନ ଯୋଗାଇଲା, ଯାହା ଫଳରେ ବିଜିତମାନେ ବିଭିନ୍ନ ବର୍ଣ୍ଣ ଭିତରକୁ ଗୃହୀତ ହୋଇପାରିଲେ । ଜୀବନର ବର୍ଗ-ବିନ୍ୟାସ କରାଗଲା ଓ ସେହି ବିଶାଳ କୃଷିଜୀବୀଙ୍କ ଭିତରୁ ବାହାରିଲେ ବୈଶ୍ୟ, କୃଷକ, କାରିଗର ଓ ବଣିକ; ବାହାରିଲେ କ୍ଷତ୍ରିୟ : ରାଜା ଓ ଯୋଦ୍ଧା; ବାହାରିଲେ ବ୍ରାହ୍ମଣ : ପୁରୋହିତ ଓ ଭାବୁକ ଯେଉଁମାନେ ଶାସନର ନୀତି ଉଚିତ ମାର୍ଗରେ ପରିଚାଳିତ କରିବା ଓ ଜାତିର ବିଭିନ୍ନ ଆଦର୍ଶ ଅନୁସରଣ ଓ ସଂରକ୍ଷଣ କରିବା ଦାୟିତ୍ୱ ଗ୍ରହଣ କରିଥିଲେ । ଏହି ତିନିଶ୍ରେଣୀ ତଳେ ରହିଥିଲେ ଶୂଦ୍ର ଅର୍ଥାତ୍ ଶ୍ରମିକ ଓ ଭୃତ୍ୟ । କୃଷକମାନେ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ନଥିଲେ । ଦେଶଜ ଉପଜାତିମାନଙ୍କ ଭିତରୁ ଅନେକଙ୍କୁ କ୍ରମଶଃ ବର୍ଗୀକୃତ ସମାଜରେ ନିମ୍ନପୀଢ଼ରେ ସ୍ଥାନ ଦେଇ ସମୀକରଣ କରାଯାଇଥିଲା । ଏହି ସମୀକରଣ ପ୍ରକ୍ରିୟା କେବେ ବ୍ୟାହତ ହୋଇନି । ପ୍ରଥମାବସ୍ଥାରେ ଏହି ବର୍ଣ୍ଣ-ବ୍ୟବସ୍ଥା ସେତେ କିଛି ଧରାବନ୍ଧା ଭାବରେ ଚାଲି ନଥିବ । ପରେ ଅବଶ୍ୟ ସେଥିଉପରେ କଠୋର ଶୃଙ୍ଖଳା ପ୍ରୟୋଗ କରାଗଲା । ଖୁବ୍ ସମ୍ଭବ ଶାସକଶ୍ରେଣୀ ହାତରେ ପ୍ରଭୂତ ଶକ୍ତି ରହୁଥିଲା ଏବଂ ଯେ ଯେଉଁ ବ୍ୟକ୍ତି, ବିଜୟ ଦ୍ୱାରା ହେଉ କିମ୍ବା ଅନ୍ୟ ପନ୍ଥାରେ ହେଉ କ୍ଷମତା ଅଧିକାର କରିପାରୁଥିଲା, ସେ ଇଚ୍ଛା କଲେ, କ୍ଷତ୍ରିୟଶ୍ରେଣୀଭୁକ୍ତ ହେବା ନିମନ୍ତେ ପୁରୋହିତଙ୍କୁ ହକାରି କୌଣସି ପ୍ରାଚୀନ ଆର୍ଯ୍ୟବୀରଙ୍କ ସଙ୍ଗେ ନିଜକୁ ସଂଯୋଜିତ କରିବା ଉଦ୍ଦେଶ୍ୟରେ ଯଥାବିହିତ ବଂଶାବଳୀ ଉଦ୍ଭବ କରାଇପାରୁଥିଲା ।

କ୍ରମେ ଆର୍ଯ୍ୟ ଶବ୍ଦର ଜାତିଗତ ତାତ୍ପର୍ଯ୍ୟ ଲୋପ ପାଇଲା ଓ ତାର ଅର୍ଥ ହେଲା ମହାନ୍ । ଠିକ୍ ସେପରି ଭାବରେ ଅନାର୍ଯ୍ୟର ଅର୍ଥ ହେଲା ହୀନ ଏବଂ ସାଧାରଣତଃ ଏହି ଶବ୍ଦ ପ୍ରଯୁକ୍ତ

ହେଉଥିଲା ଯାଯାବର ଉପଜାତି ଓ ଆରଣ୍ୟକ ଇତ୍ୟାଦିଙ୍କ ପ୍ରତି ।

ଭାରତୀୟ ମନ ଥିଲା ଅସାଧାରଣ ଭାବରେ ଅନୁଶୀଳନାତ୍ମକ ଏବଂ ବିଭିନ୍ନ ଭାବ ଓ ଧାରଣା ଏପରି କି ଜୀବନର ବିଭିନ୍ନ କର୍ମପନ୍ଥା ମଧ୍ୟ ଶ୍ରେଣୀଭୁକ୍ତ କରିବାରେ ତାର ଗୋଟାଏ ପ୍ରକାର ପ୍ରଗାଢ଼ ଆବେଗ ଥିଲା । ଆର୍ଯ୍ୟମାନେ ସମାଜକୁ ଯେ କେବଳ ଚାରୋଟି ମୁଖ୍ୟ ବର୍ଗରେ ବିଭକ୍ତ କରିଥିଲେ ତାହା ନୁହେଁ, ବ୍ୟକ୍ତିଗତ ଜୀବନକୁ ମଧ୍ୟ ଚାରୋଟି ଅବସ୍ଥାରେ ବିଭକ୍ତ କରିଥିଲେ । ପ୍ରଥମ ଅବସ୍ଥା ବ୍ରହ୍ମଚର୍ଯ୍ୟ—ଯେତେବେ ମଣିଷ କୈଶୋର ଅତିକ୍ରମ କରି ଯୌବନରେ ପଦାର୍ପଣ କରେ, ବିଦ୍ୟାଧ୍ୟୟନ କରେ, ଜ୍ଞାନ ଆହରଣ କରେ, ଆତ୍ମସଂଯମ ଓ ଶୃଙ୍ଖଳା ଅଭ୍ୟାସ କରେ; ଦ୍ୱିତୀୟ ଅବସ୍ଥା ଗୃହସ୍ଥର—ଯେତେବେ ସେ ନିଜକୁ ସାଂସାରିକତାରେ ନିୟୋଜିତ କରେ; ତୃତୀୟ ଅବସ୍ଥା ବ୍ୟବହାର-କୁଶଳ ବାନପ୍ରସ୍ଥର—ଯେତେବେ ତାର ଗୋଟାଏ ପ୍ରକାର ସ୍ଥୈର୍ଯ୍ୟ ଓ ସାଂସାରିକତାଜନିତ ବିଷୟ-ଜ୍ଞାନ ଏକରକମ ଆସିଯାଇଥାଏ ଏବଂ ନିଃସ୍ୱାର୍ଥ ଭାବରେ ସର୍ବସାଧାରଣ କର୍ମରେ ନିଜକୁ ନିୟୋଜିତ କରିବା ନିମନ୍ତେ ସେ ସମ୍ପୂର୍ଣ୍ଣ ଯୋଗ୍ୟ ହୋଇଥାଏ; ଶେଷ ଅବସ୍ଥା ସନ୍ନ୍ୟାସ—ଯେତେବେ ସଂସାର-ଜଞ୍ଜାଳରୁ ମଣିଷ ସମ୍ପୂର୍ଣ୍ଣ ମୁକ୍ତ ରହେ । ଏପରିଭାବରେ ସେମାନେ ଜୀବନର ଦୁଇଟି ପରସ୍ପରବିରୋଧୀ ଦିଗ—ପୂର୍ଣ୍ଣ ଜୀବନର ସ୍ୱୀକୃତି ଓ ତାର ପ୍ରତ୍ୟାଖ୍ୟାନ ଭିତରେ ବୁଝାମଣା ଆଣିପାରିଥିଲେ ।

ଚୀନରେ ଯେପରି ଭାରତରେ ମଧ୍ୟ ସେପରି ବିଦ୍‌ବତ୍ତା ଓ ପାଣ୍ଡିତ୍ୟକୁ ସର୍ବସାଧାରଣ ଦୃଷ୍ଟିରେ ଶ୍ରେଷ୍ଠ ଆସନ ଦିଆଯାଉଥିଲା; କାରଣ ବିଦ୍‌ବତ୍ତା କହିଲେ ଉଚ୍ଚତର ଜ୍ଞାନ ଓ ସଦ୍‌ଗୁଣ ତଥା ସଦାଚାରକୁ ବୁଝାଉଥିଲା । ବିଦ୍ୱାନ୍ ବ୍ୟକ୍ତି ସମ୍ମୁଖରେ ରାଜା ଓ ଯୋଦ୍ଧା ସର୍ବଦା ମସ୍ତକ ଅବନତ କରୁଥିଲେ । ପୁରାତନ ଭାରତୀୟ ତତ୍ତ୍ୱ ଥିଲା ଯେ ଯେଉଁମାନେ କ୍ଷମତା ବ୍ୟବହାର କରିବାରେ ଜଡ଼ିତ ସେମାନେ ସମ୍ପୂର୍ଣ୍ଣ ନ୍ୟାୟପରାୟଣ ହେବା ସମ୍ଭବ ନହୋଇ ପାରେ । ସେମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥ ଓ ତଦନୁରୂପ ବିଚାର ଏବଂ ସର୍ବସାଧାରଣ କର୍ତ୍ତବ୍ୟ ଭିତରେ ସଂଘାତ ଘଟିପାରେ । ଅତଏବ, ସାମାଜିକ ମୂଲ୍ୟ ନିରୂପଣ ଓ ସଦାଚରଣର ମାନ ସଂରକ୍ଷଣ ଦାୟିତ୍ୱ ସେପରି ଏକ ଚିନ୍ତାଶୀଳ ଶ୍ରେଣୀ ଅବା ଗୋଷ୍ଠୀ ଉପରେ ନ୍ୟସ୍ତ କରାଯାଇ-ଥିଲା, ଯେଉଁମାନେ ବିଷୟ-ଜଞ୍ଜାଳରୁ ମୁକ୍ତ ଥିଲେ ଏବଂ ଯେତେଦୂର ସମ୍ଭବ, କୌଣସି ଉପଲବ୍ଧିରେ ଆବଦ୍ଧ ନଥିଲେ । ଫଳତଃ, ଜୀବନର ବିବିଧ ସମସ୍ୟା ଉପରେ ସେମାନେ ଅନାସକ୍ତ ଭାବରେ ବିବେଚନା କରିପାରୁଥିଲେ । ଏହି ଚିନ୍ତାଶୀଳ ଅଥବା ଦାର୍ଶନିକଙ୍କ ଶ୍ରେଣୀ ସାମାଜିକ ବ୍ୟବସ୍ଥାର ଶୀର୍ଷସ୍ଥାନ ଅଧିକାର କରିଥିଲେ ଏବଂ ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ଥିଲେ । କର୍ମକ୍ଷେତ୍ରର ଲୋକେ ଅର୍ଥାତ୍ ରାଜା ଓ ଯୋଦ୍ଧାଙ୍କର ସ୍ଥାନ ସେମାନଙ୍କ ତଳେ ଥିଲା ଏବଂ କେତେ ଶକ୍ତିଶାଳୀ ହେଲେ ମଧ୍ୟ ଏମାନେ ସେମାନଙ୍କ ଭଳି ସମ୍ମାନଭାଜନ ନଥିଲେ । ବିତ୍ତବାନ୍ ସୌଦାଗର ପ୍ରତି ଶ୍ରଦ୍ଧା ଓ ସମ୍ମାନ ଆହୁରି କମ୍ ଥିଲା । ଯୋଦ୍ଧା ବା କ୍ଷତ୍ରିୟ ଶ୍ରେଣୀ ସାମାଜିକ ସଂଗଠନର ଶୀର୍ଷସ୍ଥାନ ଲାଭ କରି ନଥିଲେ ମଧ୍ୟ ଉଚ୍ଚପଦାଧିଷ୍ଠିତ ଥିଲେ । ଚୀନରେ ଏହି ଶ୍ରେଣୀର ଅବସ୍ଥା ଠିକ୍ ବିପରୀତ ଥିଲା । ଲୋକେ ଏମାନଙ୍କୁ ଘୃଣା ଚକ୍ଷୁରେ ଦେଖିଥିଲେ ।

ଏହା ଥିଲା ସାମାଜିକତାର ତତ୍ତ୍ୱ ଏବଂ ଅନ୍ୟାନ୍ୟ, କେତେ ପର୍ଯ୍ୟନ୍ତ, ମଧ୍ୟ-ଯୁଗୀୟ ୟୁରୋପର ଖ୍ରୀଷ୍ଟଧର୍ମାବଲମ୍ବୀଙ୍କ ଭିତରେ ଏହା ସେତେବେଳେ ଦେଖିବାକୁ ମିଳିଥିଲା ଯେବେ ରୋମାନ୍ କେଥଲିକ୍‌ମାନେ ଆଧ୍ୟାତ୍ମିକ, ଆଭ୍ୟନ୍ତରୀଣ, ନୈତିକ ଓ ରାଷ୍ଟ୍ର ପରିଚାଳନାର ବିଭିନ୍ନ ନୀତି ନିୟନ୍ତ୍ରଣ କରିବାର ନେତୃତ୍ୱ ଗ୍ରହଣ କରିଥିଲେ । କାର୍ଯ୍ୟତ, ଖ୍ରୀଷ୍ଟଧର୍ମର ସମ୍ରାଟ୍ ପୋପ୍ ପାର୍ଥିବ ବିଷୟରେ ବିଶେଷ ଲିପ୍ତ ହୋଇପଡ଼ିବାରୁ ଗିର୍ଜାର ସମ୍ଭ୍ରାନ୍ତ ବ୍ୟକ୍ତିମାନେ ରାଷ୍ଟ୍ରୀୟ ବ୍ୟାପାରରେ ସର୍ବମୟକର୍ତ୍ତା ହୋଇଉଠିଲେ । ଭାରତରେ ବ୍ରାହ୍ମଣସମାଜରୁ ଜ୍ଞାନୀ ଓ ଦାର୍ଶନିକମାନେ ବାହାରିଥିଲେ କେବଳ ନୁହେଁ, ସେଥିରୁ ଗୋଟାଏ ଶକ୍ତିଶାଳୀ ତଥା ସ୍ଥିତିବାନ୍ ପୁରୋହିତ ସମ୍ପ୍ରଦାୟ ମଧ୍ୟ ସୃଷ୍ଟି ହୋଇଥିଲା ଯେଉଁମାନେ ନିଜର ନ୍ୟସ୍ତସ୍ୱାର୍ଥ ସଂରକ୍ଷଣରେ ନିବିଷ୍ଟ ଥିଲେ । ତଥାପି, ଏହି ତତ୍ତ୍ୱ ଯୁଗେ ଯୁଗେ ଭାରତୀୟ ଜୀବନକୁ ବିପୁଳ-ଭାବରେ ପ୍ରଭାବିତ କରିଛି ଏବଂ ବିଦ୍‌ବତ୍ତା ଓ ଦାନଶୀଳତା, ତିତିକ୍ଷା, ଆତ୍ମସଂଯମ, ବହୁଜନ-ହିତାୟ ନିଜକୁ ଉତ୍ସର୍ଗ କରିବାର ସାମର୍ଥ୍ୟ—ଏହି ଆଦର୍ଶ ଅବିଚ୍ଛିନ୍ନ ଭାବରେ ରହିଆସିଛି । ବ୍ରାହ୍ମଣସମାଜ ଗୋଟାଏ ସ୍ୱାଧିକାରଭୋଗୀ ତଥା ସ୍ଥିତିବାନ୍ ଶ୍ରେଣୀର ସମସ୍ତ ଅସଦ୍‌ଗୁଣ ଅଜାଡ଼ରେ ପ୍ରକଟ କରିଛି ଏବଂ ସେମାନଙ୍କ ଭିତରୁ ଅନେକଙ୍କର ବିଦ୍‌ବତ୍ତା କିମ୍ବା ସଦ୍‌ଗୁଣ ତିଳେମାତ୍ର ନଥିଲା । ତଥାପି, ସର୍ବସାଧାରଣ ଦୃଷ୍ଟିରେ ସେମାନେ ଅନେକାଂଶରେ ନିଜର ସମ୍ମାନ ଯେ ବଜାୟ ରଖିପାରିଛନ୍ତି ତାହା ସେମାନଙ୍କର ଧନ ଅବା ପାର୍ଥିବ ଶକ୍ତି ଲାଗି ନୁହେଁ, ବରଂ ଯୁଗେ ଯୁଗେ ସେମାନଙ୍କ ଭିତରୁ ବହୁ ଜ୍ଞାନୀ ଓ ବିଚକ୍ଷଣ ବ୍ୟକ୍ତି ବାହାରିଛନ୍ତି ଏବଂ ସର୍ବସାଧାରଣ କଲ୍ୟାଣ ନିମନ୍ତେ ସେମାନଙ୍କର ବ୍ୟକ୍ତିଗତ ତ୍ୟାଗ ଓ ସେବା ନିଷ୍ଠାରେ କଳଙ୍କ ଲାଗିନାହିଁ ବୋଲି । ପ୍ରତ୍ୟେକ ଯୁଗରେ ମୁଷ୍ଟିମେୟ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଦୃଷ୍ଟାନ୍ତ ଯୋଗୁଁ ସମଗ୍ର ଶ୍ରେଣୀ ଲାଭବାନ୍ ଅବଶ୍ୟ ହୋଇଛି, ତଥାପି, ଜନସାଧାରଣଙ୍କ ସମ୍ମାନ ପଦାଧିକାର ପରିବର୍ତ୍ତେ କଥିତ ସଦ୍‌ଗୁଣାବଳୀ ପ୍ରତି କେବଳ ପ୍ରଦର୍ଶିତ ହୋଇଛି । ଯେକୌଣସି ବ୍ୟକ୍ତିର ବିଦ୍‌ବତ୍ତା ଓ ଉଦାରଚିତ୍ତତା ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଥିଲା ପରମ୍ପରା । ଅବ୍ରାହ୍ମଣମାନେ, ଏପରି କି ନୀଚ ଶ୍ରେଣୀର ଲୋକେ ମଧ୍ୟ, ବିଦ୍‌ବତ୍ତା ଓ ସଦ୍‌ଗୁଣ ଯୋଗୁଁ ସମ୍ମାନିତ ଓ କେବେକେବେ ଋଷି ଭାବରେ ବିବେଚିତ ହେବାର ବହୁ ଦୃଷ୍ଟାନ୍ତ ରହିଛି । ବିଦ୍‌ବତ୍ତା ଓ ସଦ୍‌ଗୁଣ ପ୍ରତି ପ୍ରଦର୍ଶିତ ସମ୍ମାନ ରାଜକୀୟ ପଦାଧିକାର ଓ ସାମରିକ କ୍ଷମତା ପ୍ରତି ନଥିଲା । ସେଥିପ୍ରତି ଭୟ ଅବଶ୍ୟ ରହିଥିଲା ।

ଆଜି ସୁଦ୍ଧା ଧନତନ୍ତ୍ରୀ ଏହି ଯୁଗରେ, ଏହି ଐତିହ୍ୟର ପ୍ରଭାବ ଲକ୍ଷଣୀୟ ଭାବରେ ରହିଛି ଏବଂ ସେଥି ହେତୁରୁ ଗାନ୍ଧିଜୀ ଅବ୍ରାହ୍ମଣ ହେଲେ ମଧ୍ୟ ଭାରତର ସର୍ବୋଚ୍ଚ ତଥା ସର୍ବଶ୍ରେଷ୍ଠ ଜନନାୟକ ହୋଇପାରିଲେ ଏବଂ କୌଣସି ପ୍ରକାର ବଳପ୍ରୟୋଗ, ବାଧ୍ୟବାଧକତା, ରାଜକୀୟ ପଦାଧିକାର ଅବା ଅର୍ଥଶକ୍ତି ବିନା କୋଟି କୋଟି ଲୋକଙ୍କ ହୃଦୟକୁ ବିଗଳିତ କରିପାରିଲେ । ହୁଏତ ଏହା ଗୋଟାଏ ଜାତିର ସାଂସ୍କୃତିକ ଐତିହ୍ୟର ଏବଂ ତାର ବାହ୍ୟଚେତନ ଅବା ମଗ୍ନଚେତନର ଯାହା ଲକ୍ଷ୍ୟ ତାର ଏକ ଯଥାର୍ଥ ପରୀକ୍ଷା—କେଉଁ ଧରଣର ନାୟକ ପ୍ରତି ସେ ଅନୁଗତ ରହିବ ?

ପ୍ରାଚୀନ ଭାରତୀୟ ସଭ୍ୟତା ଅଥବା ଆର୍ଯ୍ୟ ସଂସ୍କୃତିର ସନ୍ନିହିତ ଭାବ ଥିଲା ଧର୍ମ; ଯାହା ଧର୍ମ ଓ ବିଶ୍ୱାସଠାରୁ ଆହୁରି ମହତ୍ତ୍ୱର ଥିଲା ଏବଂ ଏହା କେତେକ ଉପକୃତ ଓ ନିଜ ପ୍ରତି ତଥା ଅନ୍ୟମାନଙ୍କ ପ୍ରତି କର୍ତ୍ତବ୍ୟ ପାଳନର ଥିଲା ଗୋଟାଏ ଅବଧାରଣା । ଏହି ଧର୍ମ 'ଋତୁ'ର ଅଂଶ ବିଶେଷ ଥିଲା; ଅର୍ଥାତ୍ ସେହି ଚିରନ୍ତନ ନୈତିକ ବିଧାନର ଅଙ୍ଗଥିଲା, ଯାହା ସମଗ୍ର ବ୍ରହ୍ମାଣ୍ଡ ଓ ଏହି ବିଶ୍ୱର ସବୁକିଛି କାର୍ଯ୍ୟକଳାପକୁ ପରିଚାଳିତ କରିଥାଏ । ଯଦି ଏପରି କୌଣସି ଅବସ୍ଥା ଅଛି ତେବେ ମନୁଷ୍ୟକୁ ସେଥିପ୍ରତି ଅନୁକୂଳ ହେବାକୁ ପଡ଼ିବ, ସେଥି ସଙ୍ଗେ ନିଜର ମେଳ ଯୋଗାଇବାକୁ ପଡ଼ିବ ଏବଂ ସେଥି ସଙ୍ଗେ ସଙ୍ଗତି ରକ୍ଷାକରି ଚଳପ୍ରଚଳ ହେବାକୁ ପଡ଼ିବ । ମଣିଷ ଯଦି ତାର କର୍ତ୍ତବ୍ୟ କରେ ଓ ସେହି କର୍ମରେ ନିଜର ଆତ୍ମଶୁଦ୍ଧି ରକ୍ଷା କରେ ତାହାହେଲେ ତଦନୁରୂପ ଫଳ ଫଳିବା ଅବଶ୍ୟମ୍ଭାବୀ । ଅଧିକାର ଉପରେ କେବେହେଲେ ଜୋର ଦିଆଯାଉନି । ଅତୀତରେ ଏହି ଦୃଷ୍ଟିଭଙ୍ଗୀ, କେତେ ପର୍ଯ୍ୟନ୍ତ ସଂଗଠିତ ବିରାଜିତ ଥିଲା । ଆଜିର ବ୍ୟକ୍ତିଗତ, ଗୋଷ୍ଠୀଗତ ଓ ଜାତିଗତ ବହୁବିଧ ଅଧିକାର ଦାବୀ ସଙ୍ଗେ ତୁଳନା କଲେ ଏଥିର ବୈଷମ୍ୟ ସହଜରେ ଲକ୍ଷ୍ୟ କରି ହୁଏ ।

## ୮. ଭାରତୀୟ ସଂସ୍କୃତିର ଧାରାବାହିକତା

ଏପରି ଭାବରେ ସେହି ପ୍ରାଥମିକ ଅବସ୍ଥାରେ ଆମେ ଦେଖିବାକୁ ପାଇଲେ ସଭ୍ୟତା ଓ ସଂସ୍କୃତିର ଉନ୍ମେଷ, ଯାହା ପରବର୍ତ୍ତୀ ଯୁଗମାନଙ୍କରେ ପ୍ରଚୁର ଭାବରେ ଓ ବର୍ଣ୍ଣବିମ୍ବାର ସହକାରେ ପ୍ରସ୍ଫୁଟିତ ହେଲା ଏବଂ ଯାହା ବହୁ ପରିବର୍ତ୍ତନ ସତ୍ତ୍ୱେ ବି ଆଜିପର୍ଯ୍ୟନ୍ତ ଅମ୍ଲାନ ରହି ଆସିପାରିଛି । ମୌଳିକ ଆଦର୍ଶ ଓ ପ୍ରମୁଖ ଧାରଣାମାନ ରୂପ ପରିଗ୍ରହ କରେ ଏବଂ ସାହିତ୍ୟ ଓ ଦର୍ଶନ, କଳା ଓ ନାଟକ ତଥା ଜୀବନର ଅନ୍ୟ ଯେତେ ସବୁ କର୍ମାନୁଷ୍ଠାନରେ ଏହି ସବୁ ଆଦର୍ଶ ଓ ବିଶ୍ୱ-ଦୃଷ୍ଟିଭଙ୍ଗୀ ଦ୍ୱାରା ନିୟନ୍ତ୍ରିତ ହୁଏ । ଆହୁରି ବି ଆମେ ଦେଖିବାକୁ ପାଉଁ ସେହି ଅନନ୍ୟତା ଓ ମତେ-ଛୁଅଁନା ଭାବ ଯାହା କ୍ରମଶଃ ବର୍ଦ୍ଧିତହୋଇ ପରିଶେଷରେ ଅପରିବର୍ତ୍ତନୀୟ ହୋଇପଡ଼ିଲା ଓ ଅସ୍ପୃଶ୍ୟ ଭଳି ସବୁକିଛି କବଳିତ କରିବାକୁ ବସିଲା; ଯେପରି ଆଧୁନିକ ଯୁଗର ଜାତିଆଣ ପ୍ରଥା । ଗୋଟାଏ ନିର୍ଦ୍ଦିଷ୍ଟ ସମୟ ପାଇଁ ବ୍ୟବସ୍ଥିତ, ସେ ସମୟର ସମାଜର ସଂଗଠନକୁ ସ୍ଥିତି, ଶକ୍ତି ଓ ଭାରସାମ୍ୟ ଦେବା ନିମନ୍ତେ ଉଦ୍ଦିଷ୍ଟ, ତାହା ସେହି ସାମାଜିକ ବ୍ୟବସ୍ଥା ଓ ମଣିଷର ମନ ନିମନ୍ତେ ଗୋଟାଏ କାରାଗାର ହୋଇଉଠିଲା । ପରିଶେଷରେ ଚରମ ପ୍ରଗତିକୁ ବଳି ଦେଇ ନିରାପତ୍ତା ଆହରଣ କରାଗଲା ।

ତଥାପି ବହୁକାଳ ପର୍ଯ୍ୟନ୍ତ ଏହି ବ୍ୟବସ୍ଥା କାଏମ୍ ରହିଲା ଏବଂ ଏପରି କି ସେହି ଗଣ୍ଡି ଭିତରେ ବି ସବୁ ଦିଗରେ ପ୍ରସାରିତ ହେବା ପାଇଁ ଅତିରିକ୍ତର ସଞ୍ଜୀବ, ମୌଳିକ ପ୍ରେରଣା ଏତେ ବିପୁଳ ଭାବରେ ଥିଲା ଯେ ତାହା ସମଗ୍ର ଭାରତ ଓ ପୂର୍ବୀୟ ସାଗର ସୀମା ଅତିକ୍ରମ କରି ବିସ୍ତୃତ ହେଲା ଏବଂ ତାର ସ୍ଥାୟିତ୍ୱ ଏତେ ଗଭୀର ଥିଲା ଯେ ବହୁ ଆକ୍ରମଣ ଓ ଧକ୍କାରୁ ବର୍ତ୍ତି ପାରିଲା । ଅଧ୍ୟାପକ ମେକ୍‌ଡୋନେଲ୍ ତାଙ୍କର 'ସଂସ୍କୃତ ସାହିତ୍ୟର ଇତିହାସ' ଗ୍ରନ୍ଥରେ

ଲେଖିଚନ୍ତି ଯେ "ସାମଗ୍ରିକ ଭାବରେ ଭାରତୀୟ ସାହିତ୍ୟର ମହତ୍ତ୍ୱ ତାର ମୌଳିକତାରେ ନିହିତ । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତକ ଆଡ଼କୁ ଯବନମାନେ ଯେବେ ଭାରତର ଉତ୍ତର-ପଶ୍ଚିମ ପ୍ରାନ୍ତ ଆକ୍ରମଣ କରନ୍ତି ସେତେବେଳକୁ ଭାରତୀୟମାନେ, ବୈଦେଶିକ ପ୍ରଭାବ ବର୍ଜିତ, ସେମାନଙ୍କର ଗୋଟାଏ ନିଜସ୍ୱ ଜାତୀୟ ସଂସ୍କୃତି ଗଢ଼ି ସାରିଥିଲେ । ଯବନ, ପାରସିକ, କୃଷ୍ଣସାଗର ତୀରବର୍ତ୍ତୀ ଯାଯାବର ଓ ମୁସଲମାନ ତଥା ପଠାଣମାନଙ୍କ ବାରମ୍ବାର ଆକ୍ରମଣ ଓ ବିଜୟ ସତ୍ତ୍ୱେ ଭାରତୀୟ ଆର୍ଯ୍ୟ ଜାତିର ଜୀବନ ଓ ସାହିତ୍ୟର ଜାତୀୟ ବିକାଶ ବସ୍ତୁତଃ ବ୍ରିଟିଶ ଯୁଗ ପର୍ଯ୍ୟନ୍ତ ଅନିରୁଦ୍ଧ ଓ ଅପରିବର୍ତ୍ତିତ ରହିପାରି ଥିଲା । ହିନ୍ଦ-ୟୁରୋପୀୟ ଅନ୍ୟ କୌଣସି ଜାତି ଏପରି ପୃଥକ ଭାବରେ ବିବର୍ତ୍ତନ ଭିତର ଦେଇ ଗତି କରିନାହାନ୍ତି । ଚୀନ ବ୍ୟତୀତ ଅନ୍ୟ କୌଣସି ଦେଶ ତାର ଭାଷା ଓ ସାହିତ୍ୟ, ଧର୍ମବିଶ୍ୱାସ ଓ ପର୍ବ, ଲଳିତକଳା ଓ ସାମାଜିକ ପ୍ରଥା ତିନି ହଜାର ବର୍ଷ ଧରି ଏପରି ଧାରାବାହିକ ଭାବରେ ବିକାଶ ଲାଭ କରିବା ଦର୍ଶାଇ ପାରିବ ନାହିଁ ।"

ତଥାପି ଭାରତ ବିଚ୍ଛିନ୍ନ ହୋଇ ରହି ନଥିଲା ଏବଂ ଇତିହାସର ଏହି ଦୀର୍ଘକାଳ ଭିତରେ ଅବିଚ୍ଛିନ୍ନ ଭାବରେ, ପାରସ୍ୟ, ଗ୍ରୀସ୍, ଚୀନ ଓ ମଧ୍ୟ-ଏସିଆ ତଥା ଅନ୍ୟ ଦେଶମାନଙ୍କ ସଙ୍ଗେ ସକ୍ରିୟ ଯୋଗାଯୋଗ ସ୍ଥାପନ କରିଥିଲା । ତାର ମୌଳିକ ସଂସ୍କୃତି ଏହିସବୁ ଯୋଗାଯୋଗ ସତ୍ତ୍ୱେ ଯଦି ନିଜତ୍ୱ ରକ୍ଷା କରିପାରିଲା, ତାହାହେଲେ ସେଥିରେ ସେପରି କିଛି ନିହିତ ଥିଲା—କିଛି ଆନ୍ତରଶକ୍ତି, ଜୀବନର କିଛି ବୁଝାମଣା—ଯାହା ତାକୁ ନିଜତ୍ୱ ରକ୍ଷାପାଇଁ ଗତିଶୀଳ କରିପାରିଲା । କାରଣ ଏହି ତିନି ଚାରି ହଜାର ବର୍ଷର ସାଂସ୍କୃତିକ ଅଭିବୃଦ୍ଧି ଓ ଅବିଚ୍ଛିନ୍ନତା ବାସ୍ତବିକ ଅଭୂତପୂର୍ବ । ବିଖ୍ୟାତ ପ୍ରାଚ୍ୟବିଦ୍ ପଣ୍ଡିତ ମାକ୍ସ ମୁଲ୍ଲାର ଏଥି ଉପରେ ଜୋର୍ ଦେଇ କହନ୍ତି : "ବସ୍ତୁତଃ, ତିନି ହଜାର ବର୍ଷ ଅବା ତତୋଽଧିକ କାଳ ଉପରେ ବିସ୍ତୃତ, ହିନ୍ଦୁ ଚିନ୍ତାର ଅତୀବ ପ୍ରାଚୀନ ଅବସ୍ଥା ଓ ଅତ୍ୟାଧୁନିକ ଅବସ୍ଥା ଭିତରେ ଗୋଟାଏ ଅବିଚ୍ଛିନ୍ନ କ୍ରମ ରହିଛି ।" ଏକରକମ ଉଦ୍‌ବୃଦ୍ଧ ଭାବରେ ମାକ୍ସ ମୁଲ୍ଲାର ଆହୁରି କହିଚନ୍ତି (୧୮୮୨ରେ ଇଂଲଣ୍ଡର କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ପ୍ରଦତ୍ତ ବକ୍ତୃତାରେ) : "ଯାହାକୁ ପ୍ରକୃତି ସର୍ବାପେକ୍ଷା ସମ୍ପନ୍ନ, ଶକ୍ତିମନ୍ତ ଓ ସୁନ୍ଦରକରି ଗଢ଼ିଚି, କେତେକାଂଶରେ ଯାହା ଭୂ-ସ୍ୱର୍ଗ ସମାନ, ସେପରି ଗୋଟିଏ ଦେଶର ସନ୍ଧାନ ନେବା ପାଇଁ ଆମକୁ ଯଦି ସମଗ୍ର ବିଶ୍ୱ ଉପରେ ଦୃଷ୍ଟି ଫେରାଇବାକୁ ପଡ଼େ, ମୁଁ କହିବି ଭାରତକୁ ଦେଖ । ମତେ ଯଦି କେହି ପଚାରେ ଯେକେଉଁ ଆକାଶ ତଳେ ମଣିଷ ମନ ତାର ସୁନିର୍ବାଚିତ ଗୁଣଗୁଡ଼ିକ ପୂର୍ଣ୍ଣ ରୂପରେ ବିକଶିତ କରିଚି, ମଣିଷ ଜୀବନର ଯେତେ ବଡ଼ ବଡ଼ ସମସ୍ୟା ସେଥି ଉପରେ ଗଭୀର ଅଭିନିବେଶ କରି ସେଥିରୁ କେତେକ ମୀମାଂସା କରିପାରିଚି, ଯେଉଁ ମୀମାଂସା ପ୍ଲାଟୋ ଓ କାଣ୍ଟଙ୍କ ଦର୍ଶନ ଅନୁରାଗୀଙ୍କ ପକ୍ଷରେ ମଧ୍ୟ ଅବଧାରଣଯୋଗ୍ୟ—ମୁଁ କହିବି, ଭାରତକୁ ଦେଖ । ଆଉ ମୁଁ ନିଜକୁ ଯଦି ପଚାରିବି ଯେ ତାହା କପରି ସାହିତ୍ୟ, ଯେଉଁଥିରୁ ଆମେ ୟୁରୋପବାସୀ—ଯେଉଁମାନେ ଯାବନିକ ଓ ରୋମୀୟ ତଥା ସେଇ ଏକ ସିମେଟିକ୍ ଜାତିର ଅର୍ଥାତ୍ ଇହୁଦୀଙ୍କ ବିଚାରଧାରା ସଙ୍ଗେ ଅନନ୍ୟଭାବରେ ପାଳିତ, ଆମର ଆନ୍ତର୍ଜୀବନ

ଆହୁରି ପୂର୍ଣ୍ଣ, ଆହୁରି ସହିତ, ଆହୁରି ସାର୍ବଜନୀନ, ବସ୍ତୁତଃ, ଆହୁରି ମାନବିକ କରିବା ପାଇଁ ଆମେ ଯଦି ଶିକ୍ଷା ଗ୍ରହଣ କରିବାକୁ ଚାହୁଁ—କେବଳ ଏ ଜୀବନ ପାଇଁ ନୁହେଁ, ପରନ୍ତୁ ଗୋଟାଏ ରୂପାନ୍ତରିତ ତଥା ଚିରନ୍ତନ ଜୀବନ ପାଇଁ—ପୁନର୍ବାର ମୁଁ କହିବି, ଭାରତକୁ ଦେଖ ।"

ପ୍ରାୟ ଅର୍ଦ୍ଧଶତାବ୍ଦୀ ପରେ ରୋମାରୋଲାଁ ଠିକ୍ ଏହି ଢଙ୍ଗରେ ଲେଖିଥିଲେ: "ପୃଥିବୀ ପୃଷ୍ଠରେ ଯେପରି ଯଦି ଗୋଟାଏ ସ୍ଥାନ ଅଛି; ଯେଉଁଠି କେଉଁ ଅନାଦି କାଳରୁ, ମଣିଷ ଯେବେ ତାର ଅସ୍ତିତ୍ୱର ସ୍ୱପ୍ନ ଦେଖିବା ଆରମ୍ଭ କରିଥିଲା, ଜୀବିତ ଓ ମଣିଷର ସମସ୍ତ ସ୍ୱପ୍ନ ଆଶ୍ରୟ ପାଇଁ ଆସିଚି, ତାହା ହେଉଚି ଭାରତ ।"

## ୯. ଉପନିଷଦ

ଖ୍ରୀଷ୍ଟ ଜନ୍ମର ଆଠଶହ ବର୍ଷ ପୂର୍ବେ ରଚିତ ଉପନିଷଦ ଆମକୁ ଭାରତୀୟ-ଆର୍ଯ୍ୟଙ୍କ ଚିନ୍ତାର ବିକାଶ ଦିଗରେ ଆଉ ଏକ ପାଦ ଆଗେଇ ନେଇଯାଏ, ଆଉ ସେ ଅଗ୍ରଗତି କିଛି ସାମାନ୍ୟ ବି ନୁହେଁ । ଆର୍ଯ୍ୟମାନେ ବହୁପୂର୍ବରୁ ଭାରତରେ ଥଇଥାନ ହୋଇ ସାରିଚନ୍ତି । ପୂଜା ବିଧାନର ପୃଷ୍ଠଭୂମିରେ ପ୍ରାଚୀନ ଧାରାର ବାହୁଳ୍ୟ ରହିଥିଲେ ସୁଦ୍ଧା ଆର୍ଯ୍ୟ ଚିନ୍ତା ଓ ଆଦର୍ଶର ପ୍ରବଳ ପ୍ରଭାବରେ, ନୂତନ ଓ ପୁରାତନର ସମ୍ମିଶ୍ରଣ, ଏକ ସ୍ଥାୟୀ ତଥା ସମୃଦ୍ଧ ସଭ୍ୟତା ଗଢ଼ିଉଠିଚି । ବେଦଗୁଡ଼ିକୁ ସମ୍ମାନ ସହକାରେ ଉଲ୍ଲେଖ କରାଯାଉଚି, ଯଦିଓ ସେଥିରେ ଶିଷ୍ଟ ବ୍ୟଙ୍ଗୋକ୍ତିର ସ୍ପର୍ଶ ଲାଗି ରହୁଚି । ବୈଦିକ ଦେବଦେବୀ ମଣିଷର ସନ୍ତୋଷ ବିଧାନ ଆଉ କରିପାରୁ ନାହାନ୍ତି ଏବଂ ପୁରୋହିତଙ୍କ କର୍ମକାଣ୍ଡ କୌତୁକର ସାମଗ୍ରୀ ହୋଇଉଠିଚି; କିନ୍ତୁ ଅତୀତରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇପଡ଼ିବା ଉଦ୍ୟମ କେବେ କରାଯାଇନି; ଅଧିକତର ପ୍ରଗତି ନିମନ୍ତେ ଅତୀତକୁ ଗ୍ରହଣ କରାଯାଇଚି ଯାତ୍ରାରମ୍ଭର କ୍ଷେତ୍ର ଭାବରେ ।

ମାନସିକ ଦୁଃସାହସିକତା, ବସ୍ତୁ ସମ୍ପର୍କରେ ସତ୍ୟ ଆହରଣର ଉତ୍କଣ୍ଠା ଓ ଜୀବନର ଜିଜ୍ଞାସାରେ ଉପନିଷଦଗୁଡ଼ିକ ପୂର୍ଣ୍ଣ । ଏଇ ସତ୍ୟର ସନ୍ଧାନ ଆଧୁନିକ ବିଜ୍ଞାନର ପରୀକ୍ଷା-ନିରୀକ୍ଷା ପ୍ରଣାଳୀଦ୍ୱାରା ପରିଚାଳିତ ହୋଇ ନଥିଲେ ମଧ୍ୟ ତାର ଆଭିମୁଖ୍ୟରେ ଗୋଟାଏ ପ୍ରକାର ବୈଜ୍ଞାନିକ ପ୍ରଣାଳୀର ସୂଚନା ମିଳେ । ସେଥିରେ କୌଣସିପ୍ରକାର ମତାନ୍ଧତା ପାଇଁ ସ୍ଥାନ ରହିନି । ସେଥିରେ ବହୁତ କିଛି ଅଛି ଯାହା ଆଜିର ଜୀବନ ପାଇଁ ଅର୍ଥହୀନ, ଅପ୍ରାସଙ୍ଗିକ ଅବା ତୁଚ୍ଛ ମନେ ହୋଇପାରେ । ସେଥିରେ ମୁଖ୍ୟତଃ ଜୋର ଦିଆଯାଇଚି ଆତ୍ମୋପଲବ୍ଧି ଉପରେ; ସାରତଃ ଏକ ଅତ୍ମା ଓ ପରମାତ୍ମାଜ୍ଞାନ ଉପରେ । ବିଷୟମୁଖୀ ବାହ୍ୟ ବିଶ୍ୱ ଅବାସ୍ତବ ବିବେଚିତ ହୋଇନି; ବାସ୍ତବ ବିବେଚିତ ହୋଇଚି ଆନୁଷଙ୍ଗିକତାର ଗୋଟାଏ ବିଭାବ ଭାବରେ ଓ ଆପେକ୍ଷିକବୋଧରେ ।

ଉପନିଷଦଗୁଡ଼ିକରେ ବହୁତ କିଛି ଏକାଧିକ ଅର୍ଥବୋଧକ ବିଷୟ ରହିଚି ଯାହାର ଭିନ୍ନ ଭିନ୍ନ ବ୍ୟାଖ୍ୟା ଦେଖିବାକୁ ମିଳେ; କିନ୍ତୁ ସେ ସବୁ ଦାର୍ଶନିକ ଓ ପଣ୍ଡିତମାନଙ୍କ ପାଇଁ । ଉପନିଷଦର ସାଧାରଣପ୍ରବଣତା ଅଦ୍ୱୈତଜ୍ଞାନ ପ୍ରତି । ତାର ସମଗ୍ର ଆଭିମୁଖ୍ୟ ସେ ସମୟରେ ଚାଲିଥିବା ମତଭେଦଜନିତ ପ୍ରବଳ ବାଦ ବିସମ୍ବାଦ ହ୍ରାସ କରିବା ଦିଗରେ ସ୍ପଷ୍ଟତଃ ଉଦ୍ଦିଷ୍ଟ ।

ଉପନିଷଦ ସମନ୍ୱୟର ମାର୍ଗ । ଐନ୍ଦ୍ରଜାଲିକତା ଓ ସେ ଧରଣର ଅଲୌକିକ ଜ୍ଞାନ ପ୍ରତି ସମସ୍ତ ପ୍ରକାର ଆଗ୍ରହକୁ କଠୋର ଭାବରେ ନିରୁତ୍ସାହିତ କରାଯାଇଚି ଏବଂ ସଂସ୍କାରହୀନ କର୍ମକାଣ୍ଡ ଓ ଉତ୍ସବ ଅନୁଷ୍ଠାନର ଅସାରତା ପ୍ରଦର୍ଶିତ ହୋଇଚି : "ଏଥିରେ ନିମ୍ନୋକ୍ତ ଲୋକେ ନିଜକୁ ସମଝଦାର ଓ ବିଜ୍ଞ ମଣି ମଧ୍ୟ ଏପରି ଲକ୍ଷ୍ୟହୀନ ଭାବରେ ବୁଲୁଛନ୍ତି, ଯେପରି ଅନ୍ଧକୁ ଅନ୍ଧ ରାସ୍ତା ଦେଖାଉଚି ଓ ଏମାନେ ଲକ୍ଷ୍ୟରେ ପହଞ୍ଚିବାରେ ବିଫଳ ହେଉଚନ୍ତି ।" ବେଦଗୁଡ଼ିକୁ ମଧ୍ୟ ନିମ୍ନସ୍ତରର ଜ୍ଞାନ କୁହାଯାଇଚି; ଅନ୍ତର୍ଜ୍ଞାନକୁ ଉଚ୍ଚତର ସ୍ଥାନ ଦିଆଯାଇଚି । ଆଚରଣରେ ସଂଯମରହିତ ଦାର୍ଶନିକ ବିଦ୍‌ବତ୍ତା ପ୍ରତି ସାବଧାନ କରାଯାଇଚି ଏବଂ ସର୍ବଦା ଆଧ୍ୟାତ୍ମିକ ଚିନ୍ତା ସଙ୍ଗେ ସାମାଜିକ କ୍ରିୟାକଳାପର ସଙ୍ଗତି ରକ୍ଷା ନିମନ୍ତେ ଅବିଚ୍ଛିନ୍ନ ପ୍ରୟାସ କରାଯାଇଚି । ଜୀବନର ବିବିଧ କର୍ତ୍ତବ୍ୟ ଓ ଉପକୃତି ଅନାସକ୍ତ ଭାବରେ ପାଳନ କରିବା ନିମନ୍ତେ ନିର୍ଦ୍ଦେଶ ଦିଆଯାଇଚି ।

ବ୍ୟକ୍ତିଗତ ପରାକାଷ୍ଠାର ଆଚରଣପଦ୍ଧତି ଉପରେ ଆବଶ୍ୟକତା ଅତିରିକ୍ତ ଜୋର ଦେବା ହେତୁରୁ ହୁଏତ ସାମାଜିକ ଦୃଷ୍ଟିଭଙ୍ଗୀ ବ୍ୟାହତ ହେଲା । ଉପନିଷଦକାର ଘୋଷଣା କଲେ —"ଆତ୍ମାଠାରୁ ବଡ଼ କିଛି ନାହିଁ ।" ସମାଜ ବ୍ୟବସ୍ଥା ସୁଦୃଢ଼ ଓ ସ୍ଥାୟୀ ବିବେଚିତ ହୋଇଥିବ ଏବଂ ସେଥି ହେତୁରୁ ମଣିଷର ମନ ସର୍ବଦା ବ୍ୟକ୍ତିଗତ ପରାକାଷ୍ଠା ପ୍ରତି ଧ୍ୟାନ ଦେଇଚି ଏବଂ ତାର ଅନ୍ୱେଷଣରେ ଅନ୍ତରୀକ୍ଷରୁ ଅନ୍ତରର ଗଭୀରତମ ପ୍ରଦେଶ ପର୍ଯ୍ୟନ୍ତ ବିଚରଣ କରିଚି । ଏହି ପ୍ରାଚୀନ ଭାରତୀୟ ଅଭିମୁଖ୍ୟ ସଙ୍କୀର୍ଣ୍ଣ ଜାତୀୟତାବାଦୀ ନଥିଲା; ଯଦିଓ ଭାରତ ପୃଥିବୀର ଅକ୍ଷ ବୋଲି ବିଚାର ରହିଥିବ । ବିଭିନ୍ନ ସମୟରେ ଚୀନ, ଗ୍ରୀସ୍ ଓ ରୋମରେ ବି ସେପରି ରହିଥିଲା । ମହାଭାରତ କହେ, "ନଶ୍ୱର ଏହି ବିଶ୍ୱର ନରମାନେ ପରସ୍ପର ନିର୍ଭରଶୀଳ ।"

ଉପନିଷଦଗୁଡ଼ିକରେ ଆଲୋଚିତ ବିବିଧ ପ୍ରଶ୍ନର ଆଧିଭୌତିକ ବିଭାବ ବୁଝିବା ମୋ ପକ୍ଷରେ କଷ୍ଟକର । କିନ୍ତୁ ଅନମନୀୟ ମତ ଓ ଅନ୍ଧବିଶ୍ୱାସ ଦ୍ୱାରା ବହୁଧା ଆଚ୍ଛନ୍ନ ଗୋଟାଏ ସମସ୍ୟା ପ୍ରତି ଏହି ଆଭିମୁଖ୍ୟ ମୋର ମନରେ ରେଖାପାତ କରିଚି । ଏହି ଆଭିମୁଖ୍ୟ ଦର୍ଶନର; ଧର୍ମର ନୁହେଁ । ଚିନ୍ତାର ଏହି ତେଜ, ଏହି ଜିଜ୍ଞାସା, ଯୁକ୍ତିସଙ୍ଗତ ପୃଷ୍ଠଭୂମି ମୁଁ ପସନ୍ଦ କରେ । ଗୁରୁଶିଷ୍ୟ ଭିତରେ ବହୁଧା ପ୍ରଶ୍ନୋତ୍ତର ଛଳରେ ରଚିତ ଉପନିଷଦ ଶୈଳୀ ସଂକ୍ଷିପ୍ତ ଓ ଶକ୍ତିଶାଳୀ ଏବଂ କେହି କେହି କହନ୍ତି ସେ ସବୁ ରଚନା ଗୁରୁଙ୍କଦ୍ୱାରା ଲିଖିତ ଗୋଟାଏରକମ ଭାଷଣ-ଟିପ୍‌ପଣୀ ଅବା ଶିଷ୍ୟଙ୍କଦ୍ୱାରା ଗୁରୁମୁଖରୁ ସଂଗୃହୀତ ଟିପ୍‌ପଣୀ । ଅଧ୍ୟାପକ ଏଫ୍. ଡବ୍ଲ୍ୟୁ. ଥୋମାସ୍ ତାଙ୍କର 'ଦ ଲିଗେସି ଅଫ୍ ଇଣ୍ଡିଆ' ଗ୍ରନ୍ଥରେ କହନ୍ତି: "ଉପନିଷଦଗୁଡ଼ିକ ଗୁଣରେ ଏପରି ଅତୁଳନୀୟ ଓ ମାନବିକ ଆବେଦନରେ ଏପରି ହୃଦୟସ୍ପର୍ଶୀ ହେବାର କାରଣ ତାର ରଚନାର ଗଭୀର ଆନ୍ତରିକତା ଓ ନିଷ୍କପଟତା; ଯେତେ ଯେପରି କେତେ ଜଣ ବନ୍ଧୁ ବସି କେତେକ ଗଭୀର ବିଷୟ ଉପରେ ଆଲୋଚନା କରୁଛନ୍ତି ।" ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଉଚ୍ଛ୍ୱସିତ କଣ୍ଠରେ କହିଚନ୍ତି—"ପ୍ରଶସ୍ତ କଳ୍ପନା, ଚିନ୍ତାର ଆଭିଜାତ୍ୟ ଓ ଅନ୍ୱେଷଣର ଦୁର୍ଦ୍ଧର୍ଷତା ଯେଉଁ ସତ୍ୟ ଆହରଣର ଉତ୍କଣ୍ଠାଦ୍ୱାରା ପ୍ରେରିତ ଉପନିଷଦର

ଗୁରୁ ଓ ଶିଷ୍ୟବୃନ୍ଦ ବ୍ରହ୍ମାଣ୍ଡର 'ମୂଳ ରହସ୍ୟ' ଭିତରକୁ ଯେପରି ପ୍ରବେଶ କରିଚନ୍ତି, ବିଶ୍ୱର ପବିତ୍ର ଗ୍ରନ୍ଥମାନଙ୍କ ଭିତରେ ପ୍ରାଚୀନତମ ଏହି ଗ୍ରନ୍ଥଗୁଡ଼ିକ ଏବେ ବି ଅତ୍ୟାଧୁନିକ ଓ ଅତୀବ ସନ୍ତୋଷଦାୟକ ହୋଇ ରହିଚି ।"

ସତ୍ୟ ଉପରେ ନିର୍ଭରତା ଉପନିଷଦଗୁଡ଼ିକର ପ୍ରଧାନ ଚାରିତ୍ରିକତା । "ସତ୍ୟ ସର୍ବଦା ଜୟୀ ହୁଏ; ମିଥ୍ୟା ନୁହେଁ । ସତ୍ୟର ପଥରେ ହିଁ ଆମେ ପରମାତ୍ମା ପର୍ଯ୍ୟନ୍ତ ପହଞ୍ଚି ପାରିବା ।" ଆଉ ଆଲୋକ ଓ ଉପଲବ୍ଧି ନିମନ୍ତେ ଉପନିଷଦର ସେହି ପ୍ରସିଦ୍ଧ ପ୍ରାର୍ଥନା : "ଅସତ୍ତରୁ ମତେ ସତ୍ତ ଆଡ଼କୁ ନେଇଚାଲ ! ଅନ୍ଧକାରରୁ ମତେ ଆଲୋକ ଆଡ଼କୁ ନେଇ ଚାଲ ! ମୃତ୍ୟୁରୁ ମତେ ଅମରତ୍ୱ ଆଡ଼କୁ ନେଇ ଚାଲ !"

ଅଶାନ୍ତ ମନ ବାରମ୍ବାର ଚାହିଁ ଦେଖିଚି, ସର୍ବଦା ଅନ୍ୱେଷଣ କରିଚି, ସର୍ବଦା ପ୍ରଶ୍ନ କରିଚି : "କାହାର ଆଜ୍ଞାରେ ମନ ନିଜ ବିଷୟ ଉପରେ ଅବତରଣ କରେ ? କାହାର ଆଜ୍ଞାରେ ଜୀବନ, ଯାହା ସର୍ବପ୍ରଥମ ବସ୍ତୁ, ଆଗୁସାର ହୁଏ ? କାହାର ଆଜ୍ଞାରେ ମଣିଷ ଏ ବଚନ ଉଚ୍ଚାରଣ କରେ ? କେଉଁ ବିଧାତା ପ୍ରକୃତ ପକ୍ଷରେ ଚକ୍ଷୁ ଓ କର୍ଣ୍ଣ ନିର୍ଦ୍ଦେଶିତ କଲା ?" ପୁନରପି : "ଏହି ବାୟୁ ସ୍ଥିର ରହୁନି କାହିଁକି ? ମଣିଷ ମନରେ ଶାନ୍ତି ନାହିଁ କାହିଁକି ? କାହିଁକି ଓ କାହାର ଅନ୍ୱେଷଣରେ ଜଳ ପ୍ରବାହିତ ହେଉଚି ଓ ମୁହୂର୍ତ୍ତିକ ପାଇଁ ସୁଦ୍ଧା ତାର ସ୍ରୋତ ବନ୍ଦ କରିପାରୁନି ?"

ମଣିଷ ଅହରହ ଗୋଟାଏ ଦୁଃସାହସିକ ଯାତ୍ରାରେ ପାଦ ବଢ଼ାଇଚି ଓ ସେଥିରେ ପଥ ମଧ୍ୟରେ ତାର ବିଶ୍ରାମ ନାହିଁ, ଏହି ଯାତ୍ରାର ଶେଷ ବି ନାହିଁ । 'ଐତରେୟ ବ୍ରାହ୍ମଣ'ରେ ଆମର ଏହି ସୁଦୀର୍ଘ ଅନ୍ତଃହୀନ ଯାତ୍ରା ସମ୍ପର୍କରେ ଗୋଟିଏ ମନ୍ତ୍ର ଅଛି ଏବଂ ପ୍ରତ୍ୟେକ ଶ୍ଳୋକର ଘୋଷା ହେଉଚି : ଚରୈବେତି, ଚରୈବେତି—"ଅତଏବ, ହେ ପାନ୍ଥ, ଆଗେଇ ଚାଲ, ଆଗେଇ ଚାଲ !"

ଏହି ସବୁ ଅନ୍ୱେଷଣରେ ସେପରି କିଛି ବିନମ୍ରଭାବ ନାହିଁ; ସେପରି ବିନମ୍ର ଯେପରି ଧର୍ମ ସଙ୍ଗେ ସଂଶ୍ଳିଷ୍ଟ କୌଣସି ସଂସ୍କାରମାନ ପରମାତ୍ମା ପ୍ରତି ପ୍ରଦର୍ଶନ କରାଯାଇଥାଏ । ଏହା ପରିବେଷ୍ଟନୀ ଉପରେ ମନର ବିଜୟ । "ମୋ ଦେହ ଭସ୍ମରେ ପରିଣତ ହେବ ଓ ମୋର ଶ୍ୱାସ ବିରାମହୀନ ତଥା ମୃତ୍ୟୁହୀନ ବାୟୁ ସଙ୍ଗେ ମିଳିତ ହେବ; କିନ୍ତୁ ମୁଁ ଓ ମୋର କର୍ମ ନୁହେଁ । ହେ ମନ, ସର୍ବଦା ଏହା ସ୍ମରଣ କର, ଏହା ସ୍ମରଣ କର ।" ଗୋଟାଏ ପ୍ରାତଃ ପ୍ରାର୍ଥନା ମନ୍ତ୍ରରେ ସୂର୍ଯ୍ୟଙ୍କୁ ସମ୍ବୋଧନ କରି କୁହାଯାଇଚି : "ହେ ଦେଦୀପ୍ୟମାନ ସୂର୍ଯ୍ୟ, ମୁଁ ହେଉଚି ସେହି ପୁରୁଷ, ଯିଏ ତୁମକୁ ତୁମ ଭଳି ଗଢ଼ିଚି !" କି ପ୍ରଚଣ୍ଡ ଆତ୍ମବିଶ୍ୱାସ !

ଆତ୍ମା କ'ଣ ? ଏହାର ବର୍ଣ୍ଣନା ଅବା ଏହାର ସଂଜ୍ଞା କେବଳ ନକାରାତ୍ମକ ଢଙ୍ଗରେ କରାଯାଇ ପାରେ : "ତାହା ଏହା ନୁହେଁ, ଏହା ନୁହେଁ ।" ଅଥବା ଏକ ପ୍ରକାର ନିଶ୍ଚୟାତ୍ମକ ଢଙ୍ଗରେ —"ତୁ ତାହା ଅଟୁ !" ବ୍ୟକ୍ତି-ଆତ୍ମା ପରମାତ୍ମାଙ୍କ ମହତ୍ତ୍ୱ ବହ୍ନିର ଗୋଟାଏ ସ୍ଫୁଲିଙ୍ଗ ଯାହା ସେଥିରୁ ବାହାରି ପୁଣି ସେଥିରେ ଲୀନ ହୁଏ । "ଅଗ୍ନି ଯେପରି ଅଖଣ୍ଡ ହୋଇ ସୁଦ୍ଧା ବସ୍ତୁରେ ପ୍ରବେଶ କରି ଯେଉଁ ବସ୍ତୁକୁ ଦହନ କରେ ତଦନୁସାରେ ଗୋଟାଏ ପୃଥକ୍ ଆକାର ଗ୍ରହଣ

କରେ, ସେହିପରି ଅନ୍ତରାତ୍ମା ସର୍ବଭୂତରେ ନିଜେ ଆକାରହୀନ ହୋଇ ପ୍ରତ୍ୟେକ ବସ୍ତୁର ଆକାର ଅନୁସାରେ ବିଭିନ୍ନ ଆକାର ଧାରଣ କରେ । ସର୍ବଭୂତରେ ସେହି ଏକତତ୍ତ୍ୱ ଯେ ବିରାଜିତ, ଏହି ଉପଲବ୍ଧି ଆମ ପରସ୍ପର ଭିତରେ ଥିବା ବିବିଧ ପ୍ରତିବନ୍ଧକ ଅପସାରଣ କରେ ଏବଂ ମାନବଜାତି ଓ ପ୍ରକୃତି ସଙ୍ଗେ ଗୋଟାଏ ଏକତ୍ୱବୋଧ ରଚନା କରେ—ଯେଉଁ ଏକତ୍ୱ ବାହ୍ୟ ବିଶ୍ୱର ବିବିଧତା ଓ ବିଚିତ୍ରତାରେ ବିଦ୍ୟମାନ । "ଯିଏ ଜାଣେ ଆତ୍ମବତ୍ ସର୍ବଭୂତେଷୁ ଅର୍ଥାତ୍ ସର୍ବବସ୍ତୁ ଆତ୍ମସ୍ୱରୂପ, ତାର ପାଇଁ ଦୁଃଖ କଅଣ, ଭ୍ରାନ୍ତି ବା କଅଣ ? ଯେବେ ସେ ଏହି ଏକତ୍ୱ ପ୍ରତ୍ୟକ୍ଷ କରି ପାରିଛି ?" ହଁ, ଯିଏ ସର୍ବଭୂତକୁ ସେହି ଆତ୍ମାରେ ଏପରି ଦେଖେ ଏବଂ ସର୍ବଭୂତରେ ଆତ୍ମାକୁ ଦେଖେ, ତାହାଠାରୁ ସେ ଆଉ ଲୁଚି ରହିବନି ।"

ଏହି ସମସ୍ତ ସର୍ବାଙ୍ଗୀନ ଆଭିମୁଖ୍ୟ ଯାହା ଜାତି, ବର୍ଗ ଓ ଅନ୍ୟ ସମସ୍ତ କିଛି ବାହ୍ୟ ତଥା ଆଭ୍ୟନ୍ତରୀଣ ପାର୍ଥକ୍ୟର ବିବିଧ ପ୍ରତିବନ୍ଧକ ଅତିକ୍ରମ କରିଯାଏ, ସେଥି ସଙ୍ଗେ ଭାରତସ୍ଥ ଆର୍ଯ୍ୟଙ୍କ ଗଭୀର ବ୍ୟକ୍ତିବାଦ ଓ ଅନନ୍ୟତା ତୁଳନା କରି ଓ ବୈଶିଷ୍ଟ୍ୟ ଦେଖାଇ, ଅଧ୍ୟୟନ କରିବା ବାସ୍ତବିକ କୌତୂହଳକର । ଏହି ସର୍ବାଙ୍ଗୀନ ଭାବ ଏକପ୍ରକାର ଆଧିଭୌତିକ ଗଣତନ୍ତ୍ର । ସେ ଯେଉଁ ଆତ୍ମାକୁ ସବୁ ବସ୍ତୁରେ ଓ ସବୁ ବସ୍ତୁକୁ ସେହି ଆତ୍ମାରେ ଦେଖେ, ଆଉ କୌଣସି ଜୀବକୁ ଘୃଣା ଚକ୍ଷୁରେ ଦେଖିପାରିବ ନାହିଁ ।" ଯଦିଓ ଏହା ତତ୍ତ୍ୱରେ କେବଳ ଥିଲା, ସନ୍ଦେହ କରିବାର ଅବକାଶ ନାହିଁ ଯେ ଏହା ଜୀବନକୁ ନିଶ୍ଚିତ ଭାବରେ ପ୍ରଭାବିତ କରି ସହିଷ୍ଣୁତା ଓ ଯୌକ୍ତିକତାର ସେହି ବାତାବରଣ ବିଶ୍ୱାସ ସମ୍ପର୍କରେ ସ୍ୱତନ୍ତ୍ରତାର ସହିଷ୍ଣୁତା ଓ ଯୌକ୍ତିକତାର ସେହି ବାତାବରଣ, ବିଶ୍ୱାସ ସମ୍ପର୍କରେ ସ୍ୱତନ୍ତ୍ରତାର ସେହି ସ୍ୱୀକୃତି, ନିଜେ ବଞ୍ଚି ରହିବାପାଇଁ ଓ ଅନ୍ୟକୁ ବଞ୍ଚିବାର ସୁଯୋଗ ଦେବାପାଇଁ ସେ ଯେଉଁ ଆକାଂକ୍ଷା ଓ ସାମର୍ଥ୍ୟ, ଯାହା ଭାରତୀୟ ସଂସ୍କୃତିର ପ୍ରଧାନ ବିଶିଷ୍ଟତା ସୃଷ୍ଟି କରିଥିବ । ଚୀନା ସଂସ୍କୃତି ସମ୍ପର୍କରେ ମଧ୍ୟ ଏହା ପ୍ରଯୁଜ୍ୟ । ଧର୍ମ ଅବା ସଂସ୍କୃତିରେ କୌଣସିପ୍ରକାର ଏକାଧିପତ୍ୟ ନଥିଲି ଏବଂ ତାହା ଅସୁରନ୍ତ ମାନସିକ ଭଣ୍ଡାରର ଗୋଟାଏ ପ୍ରାଚୀନ ତଥା ପ୍ରାଜ୍ଞ ସଭ୍ୟତା ଥିଲି ବୋଲି ସୂଚିତ ହୁଏ ।

ଉପନିଷଦରେ ଗୋଟିଏ ପ୍ରଶ୍ନ ଅଛି ଯାହାର ଉତ୍ତର ଅତି ବିଚିତ୍ର ଅଥଚ ତାତ୍ପର୍ଯ୍ୟପୂର୍ଣ୍ଣ ଭାବରେ ଦିଆଯାଇଛି । ପ୍ରଶ୍ନଟି ହେଲି : "ଏହି ବ୍ରହ୍ମାଣ୍ଡ କଅଣ ? କେଉଁଠାରୁ ଏହାର ଉତ୍ପତ୍ତି ? କେଉଁଥିରେ ଏହାର ଲୟ ପ୍ରାପ୍ତିହେବ ?" ଏହାର ଉତ୍ତର ହେଲି, "ମୁକ୍ତିରୁ ଏହାର ଉତ୍ପତ୍ତି, ମୁକ୍ତିରେ ଏହାର ସ୍ଥିତି, ମୁକ୍ତିରେ ଏହାର ବିଲୟ ।" ଏହାର ଠିକ୍ ଅର୍ଥ କଅଣ ମୁଁ ବୁଝିବାରେ ଅକ୍ଷମ । ଏତିକ ବୁଝିଛି ଯେ ଉପନିଷଦର ରଚୟିତାମାନେ ଅତି ଉଗ୍ର ଭାବରେ ମୁକ୍ତିର ଧାରଣା ପ୍ରତି ଆସକ୍ତ ଥିଲେ ଏବଂ ମୁକ୍ତି ଉପରେ ଭିତ୍ତିକରି ସବୁକିଛି ଜାଣିବାକୁ ଚାହିଁଥିଲେ ।

ସେହି ଦୂର ଅତୀତରେ ନିଜକୁ ଅବକ୍ଷେପିତ କରି ସେକାଳର ମାନସିକ ବାତାବରଣ ଭିତରେ ପ୍ରବେଶକରିବା ଆଜି ଆମ ପକ୍ଷରେ କଳ୍ପନାରେ ବି ସହଜ ନୁହେଁ । ସେ ଲେଖିବାର ଢଙ୍ଗ ସଙ୍ଗେ ମଧ୍ୟ ଆମେ ଅଭ୍ୟସ୍ତ ନୋହୁଁ । ସେ ସବୁ ଅନୁବାଦ କରିବା ଅତିଶୟ କଠିନ ଓ

ସେ ଜୀବନର ପୃଷ୍ଠଭୂମି ସମ୍ପୂର୍ଣ୍ଣ ଭିନ୍ନ । ଆଜି ଅନେକ କିଛି ବିଷୟକୁ ଆମେ ଅତି ସାଧାରଣ ଭାବରେ ଗ୍ରହଣ କରି ଯାଉଁ କାରଣ ଆମେ ସେଥିପ୍ରତି ଅତି ଅଭ୍ୟସ୍ତ; ଯଦିଓ ସେସବୁ ବିଚିତ୍ର ଓ ଯଥେଷ୍ଟ ଭାବରେ ଅଯୌକ୍ତିକ । ଯାହା ସାଙ୍ଗେ ଆମେ ମୋଟେ ଅଭ୍ୟସ୍ତ ନୋହୁଁ ତାକୁ ବୁଝିବା ବିଶେଷ କଷ୍ଟକର । ଏ ସମସ୍ତ ଅସୁବିଧା ଓ ଅନତିକ୍ରମଣୀୟ କେତେ ପ୍ରତିବନ୍ଧକ ସତ୍ତ୍ୱେ ଉପନିଷଦଗୁଡ଼ିକର ବାର୍ତ୍ତା ଭାରତର ଦୀର୍ଘ ଇତିହାସରେ ସମ୍ମତ ତଥା ଆତୁର ଶ୍ରୋତା ଲାଭ କରିଚି ଏବଂ ଜାତୀୟ ମାନସ ଓ ଚରିତ୍ରକୁ ଶକ୍ତିଶାଳୀ ଭାବରେ ଗଢ଼ିତୋଳିଚି । ବ୍ଲୁମ୍‌ଫିଲ୍ଡ଼ କହନ୍ତି, "ବିରୋଧୀ ବୌଦ୍ଧଧର୍ମ ସମେତ ହିନ୍ଦୁ ଚିନ୍ତାର ସେପରି କୌଣସି ଗୁରୁତ୍ୱପୂର୍ଣ୍ଣ ରୂପ ନାହିଁ ଯାହାର ମୂଳ ଉପନିଷଦରୁ ଉଦ୍‌ଗତ ହୋଇନାହିଁ ।"

ପ୍ରାଚୀନ ଭାରତୀୟ ଚିନ୍ତାର ପାରସ୍ୟ ଦେଇ ଗ୍ରୀସରେ ଉପନୀତ ହେଲା ଓ ସେଠାର କେତେକ ଭାବୁକ ଓ ଦାର୍ଶନିକଙ୍କୁ ପ୍ରଭାବିତ କଲା । ବହୁକାଳ ପରେ ପ୍ଲୋଟିନାସ୍ ପାରସ୍ୟ ଓ ଭାରତର ଦର୍ଶନ ଅଧ୍ୟୟନ କରିବା ଉଦ୍ଦେଶ୍ୟରେ ପ୍ରାଚ୍ୟ ଭୂଖଣ୍ଡରେ ପଦାର୍ପଣ କରିଥିଲେ ଏବଂ ଉପନିଷଦର ଅତୀନ୍ଦ୍ରିୟସ୍ୱଭାବ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ପ୍ଲୋଟିନାସ୍‌ଙ୍କଠାରୁ ଏଥିର ବହୁତ କିଛି ଧାରଣା ସନ୍ଥ ଅଗଷ୍ଟିନ୍ ଗ୍ରହଣ କରିଥିବା ଓ ତାଙ୍କ ଜରିଆରେ ସେ କାଳର ଖ୍ରୀଷ୍ଟଧର୍ମ ପ୍ରଭାବିତ ହୋଇଥିବା ଅନୁମାନ କରାଯାଏ । (୧)

ଗତ ଦେଢ଼ଶ ବର୍ଷ ଭିତରେ ୟୁରୋପ ଦ୍ୱାରା ଭାରତୀୟ ଦର୍ଶନର ପୁନରାବିଷ୍କାର ୟୁରୋପର ଦାର୍ଶନିକ ଓ ଭାବୁକମାନଙ୍କ ମନରେ ଗଭୀର ରେଖାପାତ କଲା । ଏ ସମ୍ପର୍କରେ ନୈରାଶ୍ୟବାଦୀ ଦାର୍ଶନିକ ସ୍କୋପେନ୍‌ହାଏରଙ୍କ ଲେଖା ବାରମ୍ବାର ଉଦ୍ଧାର କରାଯାଇ ଥାଏ; "ପ୍ରତ୍ୟେକ ବାକ୍ୟରୁ (ଉପନିଷଦର) ଗଭୀର, ମୌଳିକ ତଥା ଗାମ୍ଭୀର୍ଯ୍ୟପୂର୍ଣ୍ଣ ଚିନ୍ତାର ଉଦିତ ହୁଏ ଏବଂ ସେ ସମସ୍ତ ଗ୍ରନ୍ଥରେ ଗୋଟାଏ ଉଚ୍ଚ, ପବିତ୍ର ତଥ ଉତ୍ସୁକ ଭାବ ପୂର୍ଣ୍ଣ ହୋଇ ରହିଚି···ସମଗ୍ର ବିଶ୍ୱରେ ଏପରି ରଚନା ନାହିଁ ଯାହା ଉପନିଷଦ ଭଳି ଏତେ ଉପଯୋଗୀ ଓ ଉନ୍ନତକର···ସେସବୁ ଚୂଡ଼ାନ୍ତ ପ୍ରଜ୍ଞାର ଅଭିବ୍ୟକ୍ତି···ଦିନେ ନା ଦିନେ, ସତ୍ୱର ହେଉ କି ବିଳମ୍ବରେ ହେଉ, ମାନବ ଜାତିର ଧର୍ମ ହେବା ବିଧିନିର୍ଦ୍ଦିଷ୍ଟ" : ପୁନରପି : "ଉପନିଷଦ-ଗୁଡ଼ିକର ଅଧ୍ୟୟନ ମୋ ଜୀବନର ସାନ୍ତ୍ୱନା ଓ ମୋର ମୃତ୍ୟୁ ମୁହୂର୍ତ୍ତରେ ମଧ୍ୟ ତାହା ମତେ ସାନ୍ତ୍ୱନା ଦେବ ।" ଏ ସମ୍ପର୍କରେ ଲେଖିବାକୁ ଯାଇ ମାକ୍ସ ମୁଲ୍ଲାର କହନ୍ତି, "ସ୍କୋପେନ-ହାଏର ଜମରହିତ ଭାବରେ ଲେଖିବା ଭଳି ଲୋକ ନଥିଲେ କିମ୍ବା ତଥାକଥିତ ଅତୀନ୍ଦ୍ରିୟ ତଥା ଅସ୍ପଷ୍ଟ ଚିନ୍ତାର ଉପରେ ହର୍ଷୋତ୍‌ଫୁଲ୍ଲ ଭାବରେ ଭାସିଯିବା ଲୋକ ନଥିଲେ । ଏକଥା

---

(୧) ରୋମାଁ ରୋଲାଁ ତାଙ୍କର 'ବିବେକାନନ୍ଦ ଚରିତ' ଗ୍ରନ୍ଥର ପରିଶିଷ୍ଟ ଭାବରେ, 'ପ୍ରଥମ ଶତାବ୍ଦୀଗୁଡ଼ିକର ୟୁନାନୀ-ଇସାଇ ଅତୀନ୍ଦ୍ରିୟବାଦ ଓ ହିନ୍ଦୁ ଅତୀନ୍ଦ୍ରିୟବାଦ ସଙ୍ଗେ ତାର ସମ୍ବନ୍ଧ ଉପରେ ଟିପ୍ପଣୀ କରିଚନ୍ତି । ସେ କହନ୍ତି, ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ଗ୍ରୀସୀୟ ଚିନ୍ତାଧାରାରେ ପ୍ରାଚ୍ୟ ଚିନ୍ତାଧାରା କେତେ ବ୍ୟାପକ ଭାବରେ ମିଶ୍ରିତ ଥିଲା ତାର ବହୁ ପ୍ରମାଣ ରହିଚି ।'

କହିବା ପାଇଁ ମୁଁ ଭୀତ ନୁହେଁ କି ଲଜ୍ଜିତ ବି ନୁହେଁ ଯେ ବେଦାନ୍ତ ସମ୍ପର୍କରେ ତାଙ୍କର ଉତ୍ସାହର ମୁଁ ଜଣେ ଭାଗୀଦାର ଓ ମୋର ଜୀବନ ଯାହାରେ ମୁଁ ଯେତେ ଯାହା ସାହାଯ୍ୟ ଲାଭ କରିଛି ସେଥି ନିମନ୍ତେ ମୁଁ ବେଦାନ୍ତ ନିକଟରେ ଚିରଋଣୀ ।"

ଅନ୍ୟତ୍ର ମାକ୍ସମୁଲ୍ଲାର କହନ୍ତି : "ଗୋଟାଏ ପ୍ରଣାଳୀ ଯେଉଁଥିରେ, ମୋର ମନେହୁଏ ମାନବିକ କଳ୍ପନାର ଚରମୋତ୍କର୍ଷ ସାଧିତ ହୋଇଛି, ସେହି ବେଦାନ୍ତ ଦର୍ଶନର ଉତ୍ସ ହେଉଛି ଉପନିଷଦ ।" "ବୈଦାନ୍ତିକ ଗ୍ରନ୍ଥଗୁଡ଼ିକ ଅଧ୍ୟୟନ କରିବାରେ ମୋର ସର୍ବାପେକ୍ଷା ଆନନ୍ଦମୟ ସମୟ ଅତିବାହିତ ହୋଇଛି । ମୋ ପକ୍ଷରେ ସେସବୁ ଗ୍ରନ୍ଥର ମହତ୍ତ୍ୱ ସକାଳର ସୂର୍ଯ୍ୟାଲୋକ ଭଳି, ପର୍ବତଶୀର୍ଷର ନିର୍ମଳବାୟୁ ଭଳି—ଏତେ ସରଳ, ଏତେ ମୌଳିକ, ଏତେ ସ୍ୱାଭାବିକ ଯଦି ଥରେ ହୃଦ୍‌ବୋଧ ହୋଇଛି !"

କିନ୍ତୁ ଉପନିଷଦ ଓ ତାର ପରବର୍ତ୍ତୀ ଗ୍ରନ୍ଥ ଭଗବଦ୍‌ଗୀତା ପ୍ରତି ମୁକ୍ତକଣ୍ଠ ପ୍ରଶଂସା ହୁଏତ ଅର୍ପଣ କରିଚନ୍ତି ଆଇରିସ୍ କବି ଏ.ଇ. (ଜି.ଡବ୍ଲୁ. ରସେଲ) : "ଆଧୁନିକ କବି ଓ ଲେଖକଙ୍କ ଭିତରୁ ଗେଟେ, ଓ୍ୱାର୍ଡସ୍‌ଓ୍ୱାର୍ଥ, ଇମର୍ସନ ଓ ଥୋରେଙ୍କ ଭିତରେ ଏହି ତେଜ ଓ ପ୍ରଜ୍ଞାର କିୟଦଂଶ ଦେଖିବାକୁ ମିଳେ । କିନ୍ତୁ ଏମାନେ ଯାହା କିଛି କହିଛନ୍ତି ସେସବୁ ଓ ତା'ଠାରୁ ଆହୁରି ଅଧିକ ବହୁତ କିଛି ପ୍ରାଚ୍ୟର ସେହି ମହାନ୍ ଓ ପବିତ୍ର ଗ୍ରନ୍ଥମାନଙ୍କରୁ ଆମକୁ ମିଳି-ପାରିବ । ଭଗବଦ୍‌ଗୀତା ତଥା ଉପନିଷଦଗୁଡ଼ିକରେ ସବୁ କିଛି ବିଷୟ ଉପରେ ଜ୍ଞାନର ଏପରି ଦିବ୍ୟ ପୂର୍ଣ୍ଣତା ରହିଛି ଯାହା ମୋର ମନେ ହୁଏ, ସେ ସବୁର ପ୍ରଣେତାମାନେ ଯେଉଁସବୁ ବର୍ଷଯୁଗରେ ଆତ୍ମା ନିଷ୍ଠିତ ମନେକରେ ସେସବୁ ବିଷୟ ଉପରେ ଏପରି ନିର୍ଦ୍ଦିଷ୍ଟତା ଦେଇ ଲେଖିପାରିବା ପୂର୍ବରୁ, ଗୁମ୍ଫା ନିମନ୍ତେ ଓ ଛାୟା ସଙ୍ଗେ ଅଶାନ୍ତ ସଂଘର୍ଷରେ ପୂର୍ଣ୍ଣ, ଅତୀତର ସହସ୍ର ଆବେଗମୟ ଜୀବନ ଉପରେ ଶାନ୍ତ-ସ୍ମରଣୀୟ ଦୃଷ୍ଟି ବିସ୍ତୃତ କରିଥିବେ ।(୧)

## ୧୦. ବ୍ୟକ୍ତିବାଦୀୟ ଦର୍ଶନର ସୁବିଧା ଓ ଅସୁବିଧା

ଉପନିଷଦରେ ଶାରୀରିକ ସୁସ୍ଥତା ଓ ମାନସିକ ପବିତ୍ରତା ଉପରେ ଏବଂ କୌଣସି ଫଳପ୍ରଦ ସାଧନା କରିବା ପୂର୍ବରୁ ଦେହ ଓ ମନ ଉଭୟର ସଂଯମ ଉପରେ ବରାବର ଜୋର୍

(୧) ଛାନ୍ଦୋଗ୍ୟ ଉପନିଷଦରେ, ଯେ ସମୟ ପାଇ ଅଦଭୁତ, ଗୋଟାଏ ଚିତ୍ତାକର୍ଷକ ଶ୍ଳୋକ ଅଛି : 'ସୂର୍ଯ୍ୟ କେବେ ଉଦୟ ହୁଏ ନାହିଁ କିବା ଅସ୍ତ ହୁଏ ନାହିଁ । ଲୋକେ ଯେତେବେଳେ ମନେ କରନ୍ତି ଯେ ସୂର୍ଯ୍ୟ ଅସ୍ତ ଯାଉଛି, ସେତେବେଳେ ଦିନର ଶେଷରେ ଉପନୀତ ହେବା ପରେ ସେ କେବଳ ମୁଖ ପରିବର୍ତ୍ତନ କରେ ଓ ନିମ୍ନଦେଶ ଅନ୍ଧକାରରେ ଆଚ୍ଛନ୍ନ କରି ଅପର-ପାର୍ଶ୍ୱ ଦିବାଲୋକରେ ସ୍ନାତ କରେ । ତାର ପରେ ଲୋକ ଯେତେବେଳେ ମନେ କରନ୍ତି ଯେ, ସେ ପ୍ରଭାତରେ ଉଦୟ ହେଉଛି, ସେତେବେଳେ ସେ ରାତିର ଶେଷରେ ଉପନୀତ ହୋଇ ମୁଖ ପରିବର୍ତ୍ତନ କରେ ଓ ନିମ୍ନଦେଶ ଆଲୋକିତ କରି, ଅପରପାର୍ଶ୍ୱରେ ରାତିର ଅନ୍ଧକାର ବିସ୍ତାରିତ କରେ । ବସ୍ତୁତଃ, ସେ କେବେହେଲେ ଅସ୍ତ ହୁଏନି ।"

ଦିଆଯାଇଛି । ଜ୍ଞାନ ଆହରଣ ପାଇଁ ହେଉ ଅଥବା ଅନ୍ୟ ଯେକୌଣସି ସାଫଲ୍ୟ ପାଇଁ ହେଉ, ଆତ୍ମସଂଯମ, କୃଚ୍ଛ୍ର ସାଧନ ଓ ଆତ୍ମୋତ୍ସର୍ଗ ନିତାନ୍ତ ଆବଶ୍ୟକ । ଉପର ତଳ ପର୍ଯ୍ୟନ୍ତ, ଶୀର୍ଷସ୍ଥାନୀୟ ଭାବୁକମାନଙ୍କଠାରୁ ନିମ୍ନର ଅଗଣିତ ଅଶିକ୍ଷିତ ଜନସାଧାରଣଙ୍କ ପର୍ଯ୍ୟନ୍ତ ଭାରତୀୟ ଚିନ୍ତାଧାରାରେ ତପସ୍ୟାର ଏହି ଧାରଣା ନିହିତ । କେତେ ହଜାର ବର୍ଷ ପୂର୍ବେ ଯେପରି ଥିଲା, ଆଜିବି ସେହି ଧାରଣା ବିଦ୍ୟମାନ ଏବଂ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଯେଉଁ ବିପୁଳ ଜନଜାଗରଣ ଭାରତରେ ପ୍ରକାଶ ପାଇଲା, ତା' ପଛର ମନୋବୃତ୍ତି ଜାଣିବାକୁ ହେଲେ ଏହି ତ୍ୟାଗ ଓ ତପସ୍ୟାର ଧାରଣା ହୃଦୟଙ୍ଗମ କରିବା ଆବଶ୍ୟକ ।

ଏକଥା ସ୍ପଷ୍ଟ ଯେ, ଉପନିଷଦ ପ୍ରଣେତାମାନଙ୍କର ଉଚ୍ଚର ଓ ସେହି ବିରଳ ମାନସିକ ବାତାବରଣ, ଯେଉଁଥିରେ ସେମାନେ ବିଚରଣ କରୁଥିଲେ, ମୁଷ୍ଟିମେୟ ଭାବୁକ ଓ ଦାର୍ଶନିକଙ୍କ ଭିତରେ ସୀମିତ ଥିଲା ଯେଉଁମାନେ ତାହା ବୁଝିବା ପାଇଁ ସମର୍ଥ ଥିଲେ । ଜନସାଧାରଣଙ୍କ ପକ୍ଷରେ ତାହା ସମ୍ପୂର୍ଣ୍ଣ ଅବୋଧ ଥିଲା । ସର୍ବଦା ସଂଖ୍ୟାଲଘୁ ହେଲେ ମଧ୍ୟ ଯେଉଁମାନଙ୍କର ଚିନ୍ତା ରଚନାତ୍ମକ ଏବଂ ସେମାନେ ଯଦି ସଂଖ୍ୟାଗରିଷ୍ଠଙ୍କ ପ୍ରତି ସମ୍ବେଦନଶୀଳ ହୋଇ ଉଭୟ ମଧ୍ୟର ବ୍ୟବଧାନ ସଙ୍କୁଚିତ କରି ସେମାନଙ୍କୁ ଉପରକୁ ଉଠାଇବାର ଅବିଚ୍ଛିନ୍ନ ଉଦ୍ୟମ କରନ୍ତି, ତାର ପରିଣତି ଘଟେ ଗୋଟାଏ ପ୍ରଗତିଶୀଳ ସଂସ୍କୃତିରେ । ଏହି ରଚନାତ୍ମକ ସଂଖ୍ୟାଲଘୁଙ୍କ ବିହୁନରେ ଅବଶ୍ୟମ୍ଭାବୀ ଭାବରେ ସଭ୍ୟତାର ଅବନତି ଘଟେ । ଆହୁରି ମଧ୍ୟ, ଯେବେ ରଚନାତ୍ମକ ସଂଖ୍ୟାଲଘୁ ଓ ଅଶିକ୍ଷିତ ସଂଖ୍ୟାଗରିଷ୍ଠଙ୍କ ଭିତରେ ଥିବା ସମ୍ବେଦନାର ସମ୍ପର୍କ ଛିନ୍ନ ହୁଏ, ସାମଗ୍ରିକଭାବରେ ସମାଜରେ ଯଦି ସାମାଜିକ ଏକତା କ୍ଷୁଣ୍ଣ ହୁଏ ତେବେ ସଭ୍ୟତାର ଅବନତି ଘଟେ । ପରିଶେଷରେ ସେହି ସଂଖ୍ୟାଲଘୁ ତାର ସୃଜନଶୀଳତା ହରାଇ ସୃଷ୍ଟି ନିମନ୍ତେ ଅକ୍ଷମ ଓ ଅନୁଦ୍‌ଭାବନଶୀଳ ହୋଇପଡ଼େ; କିମ୍ବା ସମାଜରୁ ଉତ୍‌ଥିତ ଅନ୍ୟ କୌଣସି ସୃଜନାତ୍ମକ ଅଥବା ପ୍ରାଣସଞ୍ଚାରୀ ଶକ୍ତି ନିକଟରେ ସେହି ଅନ୍ତଃସାରଶୂନ୍ୟ ସଭ୍ୟତା ଆତ୍ମସମର୍ପଣ କରେ ।

ଅନ୍ୟ ବହୁ ଲୋକଙ୍କ ପକ୍ଷରେ ଯେପରି ମୋ ପକ୍ଷରେ ମଧ୍ୟ ସେପରି ଉପନିଷଦର କାଳ କଳ୍ପନା ଚକ୍ଷୁରେ ଦେଖିବା ଓ ସେ ସମୟର ବିବିଧ ଶକ୍ତିର କ୍ରିୟା ଅନୁଶୀଳନ କରିବା ପ୍ରକୃତରେ କଷ୍ଟକର । ମୁଷ୍ଟିମେୟ ଭାବୁକ-ସଂଖ୍ୟା-ଲଘୁ ଓ ସାଧାରଣ ଜନତା ମଧ୍ୟରେ ମାନସିକ ଓ ସାଂସ୍କୃତିକ ପାର୍ଥକ୍ୟ ଯେତେ ବିଶାଳ ହୋଇଥିନା କାହିଁକି, ମୋର ମନେ ହୁଏ, ଉଭୟ ମଧ୍ୟରେ ଗୋଟାଏ ଆତ୍ମୀୟତାର ସମ୍ପର୍କ ରହିଥିଲା କିମ୍ବା ଆଉ ଯାହା ଥାଉ ନା କାହିଁକି ସେପରି କିଛି ପ୍ରତୀୟମାନ ବ୍ୟବଧାନ ନଥିଲା । ଯେଉଁ ବର୍ଗ-ବିଭକ୍ତ ସମାଜରେ ସେମାନେ ରହୁଥିଲେ ତାର ମାନସିକ ବର୍ଗ-ଭେଦ ମଧ୍ୟ ରହିଥିଲା; ତାହା ଗୃହୀତ ହୋଇଥିଲା ଓ ସେଥି ନିମନ୍ତେ ବିହିତ ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ଏହା ଫଳରେ ଗୋଟାଏ ପ୍ରକାର ସାମାଜିକ ସଙ୍ଗତି ରକ୍ଷା କରାଯାଇପାରିଥିଲା ଓ ସଂଘାତ ଏଡ଼ାଯାଇ ପାରୁଥିଲା । ଏପରିକି, ଉପନିଷଦର ନୂତନ ଚିନ୍ତାଧାରାକୁ ଜନସାଧାରଣଙ୍କର ବିବିଧ ଅନ୍ଧବିଶ୍ୱାସ ଓ ବୈଷମ୍ୟ ପକ୍ଷରେ ପ୍ରୀତିକର ହେବାଭଳି ବ୍ୟାଖ୍ୟା କରିବା ଫଳରେ ତାର ବହୁତ କିଛି ସାରଭୂତ ଅର୍ଥ ନଷ୍ଟ ହୋଇଥିଲା ।

ବର୍ଗ-ବିଭକ୍ତ ସାମାଜିକ ସଙ୍ଗଠନ ଯଥାତଥା ଭାବରେ ସଂରକ୍ଷଣ କରାଗଲା । ବ୍ରହ୍ମବାଦର ଧାରଣା ଧର୍ମକର୍ମ ଉଦ୍ଦେଶ୍ୟରେ ଏକେଶ୍ୱରବାଦରେ ରୂପାନ୍ତରିତ ହେଲା ଏବଂ ନିମ୍ନ ଶ୍ରେଣୀର ନାନାବିଧ ବିଶ୍ୱାସ ଓ ପୂଜାବିଧାନ ପ୍ରତି ସହନଶୀଳତା ପ୍ରଦର୍ଶିତ ହେଲା କେବଳ ନୁହେଁ; ବରଂ ଗୋଟାଏ ନିର୍ଦ୍ଦିଷ୍ଟ ଅବସ୍ଥାର ଗତି ଉପରେ ଦୃଷ୍ଟି ରଖି ଉତ୍ସାହିତ ମଧ୍ୟ କରାଗଲା ।

ଅତଏବ, ଉପନିଷଦର ମତ-ବିଜ୍ଞାନ ଯେପରି ଲକ୍ଷ୍ୟଣୀୟ ଭାବରେ ଜନସାଧାରଣଙ୍କ ଭିତରେ ପ୍ରସାରିତ ହୋଇ ପାରିଲା ନାହିଁ ଏବଂ ସୃଜନଶୀଳ ସଂଖ୍ୟାଲଘୁ ଓ ଅଶିକ୍ଷିତ ସଂଖ୍ୟାଗରିଷ୍ଠଙ୍କ ଭିତରେ ବ୍ୟବଧାନ ସ୍ପଷ୍ଟ ହୋଇ ଉଠିଲା । କାଳକ୍ରମେ ଏହା କେତେ ନୂତନ ଆନ୍ଦୋଳନର ସୂତ୍ରପାତ କଲା; ବସ୍ତୁବାଦୀ ଦର୍ଶନ, ପ୍ରତ୍ୟକ୍ଷବାଦ ଓ ନାସ୍ତିକତା ଜନସାଗର ବକ୍ଷରେ ତରଙ୍ଗାୟିତ ହୋଇଉଠିଲା । ଏଥି ଭିତରୁ ପୁଣି ସୃଷ୍ଟି ହେଲା ବୌଦ୍ଧଧର୍ମ ଓ ଜୈନଧର୍ମ । ସଙ୍ଗେ ସଙ୍ଗେ ସଂସ୍କୃତରେ ଲିଖିତ ପୁରାଣ, ରାମାୟଣ ଓ ମହାଭାରତ ମାଧ୍ୟମରେ ବିଭିନ୍ନ ପରସ୍ପର ବିରୋଧୀ ମତ ଓ ଚିନ୍ତାଧାରା ଭିତରେ ପୁଣି ଏକ ସମନ୍ୱୟ ଆଣିବାର ପ୍ରୟାସ କରାଗଲା । ଜନସାଧାରଣଙ୍କର ଅଥବା ରଚନାତ୍ମକ ସଂଖ୍ୟାଲଘୁର ସୃଜନଶୀଳ ଶକ୍ତିର ଅଭିବ୍ୟକ୍ତି ଏହିସବୁ ପର୍ଯ୍ୟାୟ ଭିତରେ ଦେଖିବାକୁ ମିଳେ ଏବଂ ସଂଖ୍ୟାଲଘୁ ଓ ସଂଖ୍ୟାଗରିଷ୍ଠ ମଧ୍ୟରେ ପୂର୍ବର ସେହି ଆତ୍ମୀୟ ବନ୍ଧନ ପରିଲକ୍ଷିତ ହୁଏ । ମୋଟ ଉପରେ, ଉଭୟେ ମିଳିତ ଭାବରେ କ୍ରିୟାଶୀଳ ହୋଇପାରିଥିଲେ ।

ଏପରି ଭାବରେ, ପର୍ଯ୍ୟାୟ ପରେ ପର୍ଯ୍ୟାୟ ଅତିବାହିତ ହୋଇଛି ଏବଂ ସାହିତ୍ୟ ଓ ନାଟକ ଭାସ୍କର୍ଯ୍ୟ ଓ ସ୍ଥାପତ୍ୟ, ସାଂସ୍କୃତିକ ପ୍ରସାରଣ ଓ ଧର୍ମ ପ୍ରଚାର ଆଦି ଚିନ୍ତା ଓ କର୍ମର ବିବିଧ କ୍ଷେତ୍ରରେ ଏବଂ ଦରିଆପାରି ଉପନିବେଶ ସ୍ଥାପନ ଦିଗରେ ପ୍ରବଳ ରଚନାତ୍ମକ ଉଦ୍ୟମ ପ୍ରକାଶ ପାଇଛି । ମଝେ ମଝେ, ଆଭ୍ୟନ୍ତରୀଣ କାରଣମାନଙ୍କରୁ ଓ ବୈଦେଶିକ ଆକ୍ରମଣ ହେତୁରୁ ଅସଙ୍ଗତି ଓ ସଙ୍ଘର୍ଷମୟ ପରିସ୍ଥିତି ଯଦିଓ ଦେଖାଦେଇଛି, ତଥାପି ସେ ସବୁ ଅତିକ୍ରମ କରି ପୁନର୍ବାର ରଚନାତ୍ମକଶକ୍ତି ସଂଗଠିତ ହୋଇଛି । ନାନା ଦିଗରେ ଏ ପ୍ରକାର କାର୍ଯ୍ୟକଳାପର ଶେଷ ମହାନ ପର୍ଯ୍ୟାୟ ହେଉଛି ଭାରତୀୟ ଶାସ୍ତ୍ରୀୟ ଯୁଗ; ଯାହା ଖ୍ରୀଷ୍ଟ ପରବର୍ତ୍ତୀ ଚତୁର୍ଥ ଶତାବ୍ଦୀରେ ଆରମ୍ଭ ହୋଇଥିଲା । ଦଶମ ଶତାବ୍ଦୀ ବେଳକୁ ପ୍ରାୟ କିମ୍ବା ତା' ପୂର୍ବରୁ ଭାରତରେ ପ୍ରାଚୀନ କଳାସୃଷ୍ଟିର ଆବେଗ ଯଦିଓ କାର୍ଯ୍ୟକାରୀ ହେଉଥିଲା ଓ ଉଚ୍ଚ-କୋଟୀର କଳାସୃଷ୍ଟି ସମ୍ଭବ ହେଉଥିଲା, ତଥାପି ଏ ସମୟରେ ଆନ୍ତର ଅବନତିର ବହୁ ଲକ୍ଷଣ ଦୃଷ୍ଟିଗୋଚର ହୋଇଥିଲା । ଭିନ୍ନ ପୃଷ୍ଠଭୂମି ସଙ୍ଗେ ଘେନି କେତେ ନବ ନବ ଜାତି ଭାରତରେ ପ୍ରବେଶ କଲେ ଓ ଭାରତର କ୍ଳାନ୍ତ ମନ ଓ ଆତ୍ମାକୁ ନୂତନ ଗତିଶୀଳତା ଅର୍ପଣ କଲେ । ଏହି ସଙ୍ଘର୍ଷ ଫଳରେ କେତେ ନୂତନ ସମସ୍ୟା ଦେଖାଦେଲା ଓ ତାର ମୀମାଂସା ପାଇଁ ପୁଣି ନୂଆଭାବରେ ଉଦ୍ୟମ କରାଗଲା । ଭାରତୀୟ ଆର୍ଯ୍ୟଙ୍କର ଗଭୀର ବ୍ୟକ୍ତିବାଦ ପରିଶେଷରେ ସେମାନେ ସଂସ୍କୃତିରୁ ଉତ୍ପନ୍ନ ସବୁ କିଛି ଭଲ ଓ ମନ୍ଦର କାରଣ ହେଲା । ଭଲ ଦିଗରେ, ଏଇ ସଂସ୍କୃତି ଇତିହାସର ଗୋଟାଏ ନିର୍ଦ୍ଦିଷ୍ଟ ସୀମିତ ପର୍ଯ୍ୟାୟରେ କେବଳ ନୁହେଁ, ବାରମ୍ବାର ଓ ଯୁଗେ ଯୁଗେ ଅତି ଉତ୍କୃଷ୍ଟ ଧରଣର ଭାବୁକତା ସୃଷ୍ଟି କରିଛି । ବ୍ୟକ୍ତିବାଦ

ସମଗ୍ର ସଂସ୍କୃତିକୁ ଗୋଟାଏ ଆଦର୍ଶବାଦୀ ତଥା ଶୁଦ୍ଧାଚରଣର ପୃଷ୍ଠଭୂମି ଯୋଗାଇଲା, ଯାହା ସେ ସମୟରେ ପ୍ରବଳ ଥିଲା ଓ ଆଜି ବି ବିଭିନ୍ନ ଅଭ୍ୟାସ ଓ ଆଚରଣକୁ ସେତେ ଭାବରେ ପ୍ରଭାବିତ କରିପାରି ନଥିଲେ ମଧ୍ୟ ଅନେକାଂଶରେ ବଳବତ୍ତର ରହିଛି । ଏହି ପୃଷ୍ଠଭୂମି ସାହାଯ୍ୟରେ ଓ ଦୃଷ୍ଟାନ୍ତ ବଳରେ, ଯେତେବେଳେ ସାମାଜିକ ଗଠଣ ଭାଙ୍ଗିପଡ଼ିବାର ଉପକ୍ରମ କରିଛି, ସେମାନେ ତାକୁ ଧରିରଖି ପାରିଛନ୍ତି ଓ ତାର ସାମୟିକ ଯାହା କିଛି ଅବ୍ୟବସ୍ଥା ସୁଧାରିବାରେ ସମର୍ଥ ହୋଇଛନ୍ତି । ସଭ୍ୟତା ଓ ସଂସ୍କୃତିକୁ ବସ୍ତୁସ୍ଥଳର ଭାବରେ ସେମାନେ ବିକଶିତ କରିଥିଲେ ଯଦିଓ, ତାହା ଉପର ବର୍ଗରେ ହିଁ ଆବଦ୍ଧ ରହିଥିଲା । ତଥାପି, କେତେ ପର୍ଯ୍ୟନ୍ତ ଅବଶ୍ୟମ୍ଭାବୀ ଭାବରେ ତାହା ଜନସାଧାରଣଙ୍କ ଭିତରକୁ ପ୍ରସାରିତ ହୋଇଥିଲା । ଅନ୍ୟର ବିଶ୍ୱାସ ଓ ମାର୍ଗ ପ୍ରତି ଅତ୍ୟନ୍ତ ସହିଷ୍ଣୁ ହେବା ଫଳରେ ସମାଜକୁ ଯାହା ବହୁଧା ଛିନ୍ନ ବିଚ୍ଛିନ୍ନ କରିଛି ସେ ପ୍ରକାର ସଂଘାତ ସେମାନେ ଏଡ଼ାଇ ପାରିଥିଲେ ଏବଂ ଗୋଟାଏ ନିୟମ ଭାବରେ କୌଣସିମତେ ଭାରସାମ୍ୟ ରକ୍ଷା କରିପାରିଥିଲେ । ସମାଜର ବ୍ୟାପକ ପରିସୀମା ଭିତରେ, ଲୋକଙ୍କୁ ନିଜର ମନୋମତ ଜୀବନଯାପନ କରିବାକୁ ଯଥେଷ୍ଟ ସ୍ୱାଧୀନତା ଦେଇ ସେମାନେ ଗୋଟାଏ ପ୍ରାଚୀନ ତଥା ଅଭିଜ୍ଞ ଜାତିର ପ୍ରଜ୍ଞା ପ୍ରଦର୍ଶିତ କରିଛନ୍ତି । ଏ ସବୁ ଅତି ଅଦ୍ଭୁତ ଧରଣର ସଫଳତା ।

କିନ୍ତୁ ସେହି ବ୍ୟକ୍ତିବାଦ ଫଳରେ ମଣିଷର ସାମାଜିକ ସ୍ୱଭାବ, ସମାଜ ପ୍ରତି ମଣିଷର କର୍ତ୍ତବ୍ୟ ଉପରେ ବିଶେଷ ଗୁରୁତ୍ୱ ଦେବା ବାଧାପ୍ରାପ୍ତ ହେଲା । କାରଣ ସେହି ବର୍ଗ-ବିଭକ୍ତ ସମାଜରେ, ନିଜର ସଂକୀର୍ଣ୍ଣ କ୍ଷେତ୍ରରେ ପ୍ରତ୍ୟେକ ବ୍ୟକ୍ତି ପାଇଁ ବିବିଧ କର୍ତ୍ତବ୍ୟ ଓ ଦାୟିତ୍ୱ ନିର୍ଦ୍ଦିଷ୍ଟ କରି ଜୀବନର ପନ୍ଥା ବିଭକ୍ତ କରାଯାଇଥିଲା । ସାମଗ୍ରିକ ଭାବରେ ସମାଜ ପ୍ରତି ବ୍ୟକ୍ତିର କୌଣସି କର୍ତ୍ତବ୍ୟ ନଥିଲା କିମ୍ବା ସେପରି ଧାରଣା ନଥିଲା ଏବଂ ସମାଜ ସଙ୍ଗେ ତାର ସହିତ ସେ ଯେପରି ଅନୁଭବ କରି ପାରନ୍ତା ସେ ଦିଗରେ କୌଣସି ଉଦ୍ୟମ କରାଯାଇ ନଥିଲା । ଏହି ଧାରଣା ବୋଧହୁଏ ଗୋଟାଏ ଆଧୁନିକ ବିଷୟ । କୌଣସି ପ୍ରାଚୀନ ସମାଜରେ ଏହା ଦୃଷ୍ଟିଗୋଚର ହୁଏ ନାହିଁ । ତଥାପି ବ୍ୟକ୍ତିବାଦ, ଅନନ୍ୟତା ଓ ବର୍ଗୀକୃତ ଜାତି ଉପରେ ଏ ପ୍ରକାର ଗୁରୁତ୍ୱ ଅର୍ପଣ କରିବା ଭାରତରେ ଅପେକ୍ଷାକୃତ ଭାବରେ ଅଧିକ ଦୃଷ୍ଟିଗୋଚର ହୁଏ । ପରବର୍ତ୍ତୀ ଯୁଗମାନଙ୍କରେ ଆମ ଜନସାଧାରଣଙ୍କ ମନ ପକ୍ଷରେ ଏହା ଏକରକମ କାରାଗାରରେ ପରିଣତ ହେଲା ଏବଂ ପରିଣାମରେ ନିମ୍ନବର୍ଗର ଜାତିମାନେ କ୍ଷତିଗ୍ରସ୍ତ ଯେ ହେଲେ କେବଳ ନୁହେଁ, ଉପର ବର୍ଗକୁ ମଧ୍ୟ ଏହା କ୍ଷତିଗ୍ରସ୍ତ କଲା । ଆମର ଦୀର୍ଘ ଇତିହାସରେ ଆମକୁ ଦୁର୍ବଳ କରିବା ଦିଗରେ ଏହା ଅନ୍ୟତମ କାରଣ ଏବଂ ଏପରି କୁହାଯାଇପାରେ ଯେ ବର୍ଗ-ବ୍ୟବସ୍ଥାରେ ଅନାବଶ୍ୟକ ଶୃଙ୍ଖଳାର କଠିନତା ଯେତେ ଯେତେ ବୃଦ୍ଧି ପାଇଲା, ସେତିକି ସେତିକି ମନ ସଂକୀର୍ଣ୍ଣ ଓ ଅସହିଷ୍ଣୁ ହୋଇଉଠିଲା ଏବଂ ଜାତିର ରଚନାତ୍ମକ ଶକ୍ତି ନିସ୍ତେଜ ହେଲା ।

ଆଉ ଗୋଟାଏ ବିଚିତ୍ର ବାସ୍ତବତା ଉପରେ ଦୃଷ୍ଟି ଦିଆଯାଇପାରେ । ପ୍ରତ୍ୟେକ ଧରଣର ବିଶ୍ୱାସ ଓ ଆଚରଣ, ପ୍ରତ୍ୟେକ ଅନ୍ଧବିଶ୍ୱାସ ଓ ନିର୍ବୋଧତା ପ୍ରତି ନିର୍ବୋଧ ସହିଷ୍ଣୁତା

ଫଳରେ ତତ୍କାଳୀନ କ୍ଷତି ସହ୍ୟ କରିବାକୁ ପଡ଼ିଲା । କାରଣ ତାହା ନାନା ଅନିଷ୍ଟକର ପ୍ରଥା କାଏମ ରଖିଲା ଏବଂ ପ୍ରଗତିବିରୋଧୀ ସେସବୁ ଐତିହ୍ୟର ବୋଝ ଉତାରିବା ଦିଗରେ ଜନ-ସାଧାରଣଙ୍କ ସମ୍ମୁଖରେ ଅଲଙ୍ଘ୍ୟ ପ୍ରତିବନ୍ଧକ ହୋଇ ଠିଆହେଲା । ବର୍ଦ୍ଧନଶୀଳ ପୁରୋହିତ-ସମାଜ ନିଜ ସୁବିଧା ନିମନ୍ତେ ଏ ଅବସ୍ଥାରୁ ଲାଭ ଉଠାଇଲେ ଏବଂ ଜନସାଧାରଣଙ୍କ ଅନ୍ଧ-ବିଶ୍ୱାସର ଭିତ୍ତି ଉପରେ ସେମାନଙ୍କର ଶକ୍ତିଶାଳୀ ନ୍ୟସ୍ତସ୍ୱାର୍ଥ ପ୍ରତିଷ୍ଠିତ କଲେ । ଖ୍ରୀଷ୍ଟଧର୍ମର କେତେକ ଶାଖାରେ ଯେପରି ଦେଖାଯାଏ, ଭାରତର ସେହି ପୁରୋହିତ ଆଧିପତ୍ୟ ଖୁବ୍ ସମ୍ଭବ ସେତେ ଶକ୍ତିଶାଳୀ ନଥିଲା; କାରଣ ପ୍ରାୟ ସବୁ ସମୟରେ ସମାଜର ଆଧ୍ୟାତ୍ମିକ ନେତାମାନେ ତାର ଆଚରଣର ନିନ୍ଦା କରିଚନ୍ତି । ଅଧିକନ୍ତୁ, ବାଛିନେବା ପାଇଁ ଲୋକଙ୍କ ଆଗରେ ନାନା ଧରଣର ବିଶ୍ୱାସ ମଧ୍ୟ ଥିଲା; କିନ୍ତୁ ଜନସାଧାରଣଙ୍କୁ ନିଜ ଆୟତ୍ତରେ ରଖି ଶୋଷଣ କରିବା ନିମନ୍ତେ ତାହା ଯଥେଷ୍ଟ ଶକ୍ତିଶାଳୀ ଥିଲା ।

ଅତଏବ, ଚିନ୍ତା-ସ୍ୱାତନ୍ତ୍ର୍ୟ ଓ ନୈଷ୍ଠିକତା ଫଳପ୍ରଦ ଭାବରେ ରହି ଗଲା ଏବଂ ସେଥିରୁ ମଧ୍ୟଯୁଗୀୟ ଅଧ୍ୟାତ୍ମବାଦ ଓ ଆଚାରନିଷ୍ଠ କର୍ମକାଣ୍ଡ ଗଢ଼ି ଉଠିଲା । ପ୍ରତ୍ୟେକ କଥାରେ ପ୍ରାଚୀନ ସିଦ୍ଧାନ୍ତମାନ ଉଦ୍ଧାର କରାଯାଇଥାଏ; କିନ୍ତୁ ପରିବର୍ତ୍ତିତ ଅବସ୍ଥାକୁ ଧରି ସେ ସବୁର ନୀତି ବ୍ୟାଖ୍ୟା କରିବା ଦିଗରେ ବିଶେଷ ପ୍ରୟାସ କରାଯାଇ ନାହିଁ । ସବୁ କିଛି ରଚନାତ୍ମକ ତଥା ଆଧ୍ୟାତ୍ମିକ ଶକ୍ତି ଦୁର୍ବଳ ହୋଇପଡ଼ିଲା ଏବଂ ଦିନେ ଯାହା ପ୍ରାଣ ଓ ତାତ୍ପର୍ଯ୍ୟରେ ପୂର୍ଣ୍ଣ ଥିଲା ତାର ବହିରାବରଣ ଟିକକ କେବଳ ପଡ଼ିରହିଲା । ଶ୍ରୀ ଅରବିନ୍ଦ ଲେଖିଛନ୍ତି: "ଉପନିଷଦ କାଳର କିମ୍ବା ବୁଦ୍ଧଙ୍କ ସମୟର ଅଥବା ପରବର୍ତ୍ତୀ ଶାସ୍ତ୍ରୀୟ ଯୁଗର କୌଣସି ଜଣେ ଭାରତୀୟକୁ ଯଦି ଆଧୁନିକ ଭାରତରେ ଆଣି ଛାଡ଼ି ଦିଆଯାଏ, ସେ ଦେଖିବ ଯେ ତାର ଜାତି ଅତୀତର କେତେକ ଆଙ୍ଗିକ, ବହିରାବରଣ ଓ ଜରାଜୀର୍ଣ୍ଣ ପରିଚ୍ଛଦକୁ କେବଳ ଯାବୁଡ଼ି ରହିଚି ଏବଂ ଅତୀତର ଯାହାକିଛି ମହତ୍ତ୍ୱପୂର୍ଣ୍ଣ ତା'ର ଦଶଭାଗରୁ ନଅଭାଗ ହରାଇ ସାରିଲାଣି । ମାନସିକ ଦୈନ୍ୟ, ଚଳନଶକ୍ତିହୀନତା, ଗତିହୀନ ପୁନରାବୃତ୍ତି, ବିଜ୍ଞାନରୁ ନିବୃତ୍ତି, କଳାର ସୁଦୀର୍ଘ ନିଷ୍ଫଳତା ଓ ରଚନାତ୍ମକ ପ୍ରଜ୍ଞାର ଆପେକ୍ଷିକ ନିର୍ଜୀବତାର ଏହି ବ୍ୟାପ୍ତି ଦେଖି ସେ ବିସ୍ମିତ ହେବ ।"

## ୧୧. ବସ୍ତୁବାଦ

ଆମର ସବୁଠାରୁ ବଡ଼ ଦୁର୍ଭାଗ୍ୟ ହେଉଚି ଯେ ଗ୍ରୀସ୍‌ରେ, ଭାରତରେ ଓ ଅନ୍ୟତ୍ର ପୃଥିବୀର ବହୁତ କିଛି ପ୍ରାଚୀନ ସାହିତ୍ୟ ଆମେ ହରାଇ ବସିଚୁ । ଖୁବ୍ ସମ୍ଭବ ଏହାର ଅନ୍ୟଥା ହୋଇପାରି ନଥାନ୍ତା; କାରଣ ସେ ସବୁ ଗ୍ରନ୍ଥ ପ୍ରଥମାବସ୍ଥାରେ ତାଳପତ୍ର ଅବା ଭୂର୍ଜପତ୍ରରେ ଓ ପରବର୍ତ୍ତୀ କାଳରେ କାଗଜରେ ଲେଖାଯାଇଥିଲା । ଏସବୁ ମାଧ୍ୟମ ଅତି ଶୀଘ୍ର ନଷ୍ଟ ହୋଇଯିବା ସ୍ୱାଭାବିକ । କୌଣସି ଗ୍ରନ୍ଥର ସ୍ୱଳ୍ପ କେତେ ଖଣ୍ଡ ନକଲ କେବଳ ରହିଥାଏ ଓ ତାହା ଯଦି ନଷ୍ଟ ହୋଇଯାଏ କିମ୍ବା ହଜିଯାଏ, ସେ ସମ୍ପର୍କରେ ଜାଣିବାକୁ ମିଳେ ଅନ୍ୟାନ୍ୟ

ଗ୍ରନ୍ଥରେ ତାର ଉଲ୍ଲେଖରୁ ଅବା କିୟଦଂଶ ଉଦ୍ଧୃତରୁ କେବଳ । ତଥାପି, ପଚାଶରୁ ଷାଠିଏ ହଜାର ପର୍ଯ୍ୟନ୍ତ ସଂସ୍କୃତ ପାଣ୍ଡୁଲିପି କିମ୍ବା ତାର ରୂପାନ୍ତର ଖୋଜ ବାହାର କରାଯାଇ ତାଲିକାଭୁକ୍ତ କରାଗଲାଣି ଏବଂ ଏହି ସନ୍ଧାନପ୍ରକ୍ରିୟା ବରାବର ଚାଲୁ ରହିଛି । କେତେକ ପ୍ରାଚୀନ ଭାରତୀୟ ଗ୍ରନ୍ଥ ଏ ପର୍ଯ୍ୟନ୍ତ ଭାରତରେ ମିଳନି; କିନ୍ତୁ ତାର ଚୀନା ଅବା ତିବ୍ବତୀୟ ଭାଷାନ୍ତର ଆବିଷ୍କୃତ ହୋଇଛି । ସମ୍ଭବତଃ, ସଂଗଠିତ ଭାବରେ ଅନ୍ୱେଷଣ କଲେ ଏହି ସବୁ ପ୍ରାଚୀନ ପାଣ୍ଡୁଲିପିରୁ କିଛି କିଛି ଧର୍ମସଂସ୍ଥା, ବିହାର ଓ ବ୍ୟକ୍ତିଗତ ଗ୍ରନ୍ଥାଗାରମାନଙ୍କରୁ ମିଳି-ପାରିବ । ଦାସତ୍ୱର ବନ୍ଧନ ଛିନ୍ନକରି ଆମେ ଯେବେ ଆମର କଲ୍ୟାଣ ନିମନ୍ତେ କାର୍ଯ୍ୟ କରିବାର ସୁଯୋଗ ପାଇବା, ସେତେବେଳେ ଅନ୍ୟ ନାନାବିଧ କର୍ମ ଭିତରେ ଏହିସବୁ ପାଣ୍ଡୁଲିପି ଉଦ୍ଧାର କରିବା ଏବଂ ସେ ସବୁର ସମାଲୋଚନାମୂଳକ ପରୀକ୍ଷା ବାଞ୍ଛନୀୟ ବିବେଚିତ ହେବା-ସ୍ଥଳେ, ସେସବୁର ପ୍ରକାଶନ ଓ ଭାଷାନ୍ତରଣ ଆମକୁ କରିବାକୁ ପଡ଼ିବ । ଏ ପ୍ରକାର ଅଧ୍ୟୟନ ଭାରତର ଇତିହାସର ବହୁ ପର୍ଯ୍ୟାୟ ଉପରେ ଓ ବିଶେଷକରି ଐତିହାସିକ ଘଟଣା ଓ ପରିବର୍ତ୍ତିତ ଧାରଣାର ସାମାଜିକ ପୃଷ୍ଠଭୂମି ଉପରେ ନିଶ୍ଚିତ ଭାବରେ ଆଲୋକପାତ କରିବ । ବହୁଧା ଲୁପ୍ତ ଅଥବା ବିନଷ୍ଟ ହୋଇଥିଲେ ସୁଦ୍ଧା ଏବଂ ସେ ସବୁ ଖୋଜି ବାହାର କରିବା ପଛରେ ସେପରି କିଛି ସଂଗଠିତ ଉଦ୍ୟମ ନଥିଲେ ସୁଦ୍ଧା ପଚାଶ ହଜାରରୁ ଊର୍ଦ୍ଧ୍ୱ ପାଣ୍ଡୁଲିପି ଯେ ସଂଗୃହୀତ ହୋଇପାରିଛି; ଏଥିରୁ ଜଣାଯାଉଛି ଯେ ପ୍ରାଚୀନ କାଳରେ ସାହିତ୍ୟ, ନାଟକ ଓ ଦର୍ଶନ ସମ୍ବନ୍ଧରେ କି ଅସାଧାରଣ ଭାବରେ ସମୃଦ୍ଧ ଗ୍ରନ୍ଥମାନ ରଚିତ ହୋଇଥିଲା । ବହୁ ଆବିଷ୍କୃତ ପାଣ୍ଡୁଲିପିର ବିହିତ ସମୀକ୍ଷା ଏ ପର୍ଯ୍ୟନ୍ତ ହୋଇନାହିଁ ।

ଯେଉଁସବୁ ଗ୍ରନ୍ଥ ହଜିଯାଇଛି, ସେଥି ଭିତରେ ଅଛି ପ୍ରଥମକାଳୀନ ଉପନିଷଦ ଅନୁବର୍ତ୍ତୀ ପର୍ଯ୍ୟାୟର ଜଡ଼ବାଦ ଉପରେ ରଚିତ-ସବୁକିଛି ସାହିତ୍ୟ । ତେଥିର ଉଲ୍ଲେଖ ବର୍ତ୍ତମାନ ଦେଖିବାକୁ ମିଳୁଛି ସେଥି ଉପରେ ଲିଖିତ ମନ୍ତବ୍ୟ ଓ ଜଡ଼ବାଦୀ ସିଦ୍ଧାନ୍ତଗୁଡ଼ିକୁ ଖଣ୍ଡନ କରିବା ଦିଗରେ ଅତି ବିସ୍ତୃତ ଭାବରେ ଲିଖିତ ଗ୍ରନ୍ଥମାନଙ୍କରେ । ଏଥିରେ ସନ୍ଦେହ ନାହିଁ ଯେ ଶତ ଶତ ବର୍ଷ ଧରି ଭାରତରେ ଜଡ଼ବାଦୀ ଦର୍ଶନ ଅନୁସୃତ ହୋଇଛି ଓ ସେ ସମୟର ଜନସାଧାରଣଙ୍କୁ ପ୍ରବଳ ଭାବରେ ପ୍ରଭାବିତ କରିଛି । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ, ରାଜନୈତିକ ତଥା ଅର୍ଥନୈତିକ ସଂଘଟନ ଉପରେ ରଚିତ କୌଟିଲ୍ୟଙ୍କ ପ୍ରଖ୍ୟାତ 'ଅର୍ଥଶାସ୍ତ୍ର' ଗ୍ରନ୍ଥରେ ଜଡ଼ବାଦ ଭାରତର ଅନ୍ୟତମ ବଶିଷ୍ଟ ଦର୍ଶନ ବୋଲି ଉଲ୍ଲେଖ କରାଯାଇଛି ।

ଆମକୁ ବର୍ତ୍ତମାନ ନିର୍ଭର କରିବାକୁ ପଡ଼ୁଛି ସେହିସବୁ ସମାଲୋଚକ ଓ ଏହି ଦର୍ଶନ ଖଣ୍ଡନ କରିବା ଦିଗରେ ବିଶେଷ ଉତ୍ସାହୀ ବ୍ୟକ୍ତିମାନଙ୍କ ରଚନା ଉପରେ ଯେଉଁମାନେ ଏହି ଦର୍ଶନ କେତେଦୂର ଅସଙ୍ଗତ ପ୍ରମାଣ କରିବାର ପ୍ରବଳ ଉଦ୍ୟମ କରିଛନ୍ତି ଓ ତାକୁ ବିଦ୍ରୂପ କରିଛନ୍ତି । ତାହା କଣ ଥିଲା ଜାଣିବା ପାଇଁ ଏ ମାର୍ଗ ଅନୁସରଣ କରିବା ଆମ ପକ୍ଷରେ ବାସ୍ତବିକ ଦୁର୍ଭାଗ୍ୟଜନକ । ତଥାପି, ସେଥି ଉପରେ କଳଙ୍କ ବୋଳିବା ପାଇଁ ସମାଲୋଚକ-ମାନଙ୍କ ତୀବ୍ର ଆତୁରତା ପ୍ରମାଣ କରୁଛି ଯେ ସେମାନଙ୍କ ଦୃଷ୍ଟିରେ କଥିତ ଏହି ଦର୍ଶନ କେତେ ଗୁରୁତ୍ୱପୂର୍ଣ୍ଣ ଥିଲା । ଭାରତରେ ବସ୍ତୁବାଦର ବହୁତ କିଛି ସାହିତ୍ୟ ପରବର୍ତ୍ତୀ ପର୍ଯ୍ୟାୟ-

ମାନଙ୍କରେ ପୁରୋହିତ ଓ ନୈଷ୍ଠିକ ଧର୍ମଶାସ୍ତ୍ରୀମାନଙ୍କୁ ଲୋକେ ଖୁବ୍ ସମ୍ଭବ ନଷ୍ଟ କରିଦେଇଛନ୍ତି । ଧର୍ମ, ଦର୍ଶନ ଓ ବ୍ରହ୍ମବିଦ୍ୟା ଉପରେ, ଅତୀତର ସିଦ୍ଧାନ୍ତ ଓ ସମସ୍ତ ନ୍ୟସ୍ତସ୍ୱାର୍ଥ ଉପରେ ଜଡ଼ବାଦୀମାନେ ଆକ୍ରମଣ ଚଳାଇଥିଲେ । ସେମାନେ ବେଦ, ପୁରୋହିତ ତନ୍ତ୍ର ଓ ଐତିହ୍ୟ-ଗତ ସବୁ କିଛି ମତ-ବିଶ୍ୱାସକୁ ପ୍ରକାଶ୍ୟ ଭାବରେ ନିନ୍ଦା କରିଥିଲେ ଏବଂ ଘୋଷଣା କରିଥିଲେ ଯେ ସ୍ୱାଧୀନ ମତ-ବିଶ୍ୱାସର ଅବକାଶ ରହିବା ଦରକାର ଏବଂ କୌଣସି ପୂର୍ବାନୁମାନ ଅବା ଅତୀତର ପ୍ରତିଷ୍ଠିତ ପ୍ରମାଣ ଉପରେ କେବଳ ନିର୍ଭରକରିବା ଉଚିତ ନୁହେଁ । ସମସ୍ତ ଧରଣରେ ମନ୍ତ୍ର-ତନ୍ତ୍ର ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ ସେମାନେ ପ୍ରବଳ ପ୍ରଚାର ଚଳାଇ ଥିଲେ । ଆଧୁନିକ ବସ୍ତୁବାଦୀ ଆଭିମୁଖ୍ୟ ସଙ୍ଗେ ବହୁତ ଦିଗରେ ସେମାନଙ୍କର କର୍ମପନ୍ଥା ତୁଳନାଯୋଗ୍ୟ । ଅତୀତର ସମସ୍ତ ଶୃଙ୍ଖଳା ଓ ବୋଝରୁ, ଯାହା ଦୃଷ୍ଟିଗୋଚର ନୁହେଁ ସେପରି ବିଷୟ ଉପରେ ପ୍ରତୀକ କଳ୍ପନାରୁ ଓ କଳ୍ପିତ ଦେବଦେବୀଙ୍କ ପୂଜାରୁ ମୁକ୍ତ ହେବାପାଇଁ ସେମାନେ ଚାହିଁଥିଲେ । ଯାହା ପ୍ରତ୍ୟକ୍ଷଦୃଷ୍ଟି ତାର ଅସ୍ତିତ୍ୱ କେବଳ ସ୍ୱୀକାର କରାଯାଇପାରେ । ଅନ୍ୟ ସବୁକିଛି ଅନୁମାନ ଅବା କଳ୍ପନା, ହୁଏତ ସତ୍ୟ ହୋଇପାରେ ମିଥ୍ୟା ବି ହୋଇପାରେ । ଅତଏବ, ବସ୍ତୁର ସମସ୍ତ କିଛି ଆକାର ଏବଂ ଏହି ବିଶ୍ୱର କେବଳ ଅସ୍ତିତ୍ୱ ଅଛି ବୋଲି ବିବେଚନା କରାଯାଇ ପାରିବ । ଏହି ପୃଥିବୀ ପରେ ଆଉ କୌଣସି ବିଶ୍ୱ ନାହିଁ, ସ୍ୱର୍ଗ ନାହିଁ କି ନରକ ନାହିଁ; ଆଉ ଦେହଠାରୁ ସ୍ୱତନ୍ତ୍ର ଆତ୍ମା ବୋଲି ମଧ୍ୟ କିଛି ନାହିଁ । ମନ, ବୁଦ୍ଧି ଓ ଅନ୍ୟ ସବୁକିଛିର ଉତ୍ପତ୍ତି ପଞ୍ଚଭୂତରୁ । ମଣିଷର ବିବିଧ ମୂଲ୍ୟବୋଧ ସଙ୍ଗେ ପ୍ରାକୃତିକ ପ୍ରତିଭାସର କୌଣସି ସମ୍ପର୍କ ନାହିଁ ଏବଂ ଆମେ ଯାହା ଭଲ ଅବା ମନ୍ଦ ବିବେଚନା କରୁଁ ସେଥିପ୍ରତି ପ୍ରକୃତି ଉଦାସୀନ । ନୈତିକ ବିଧିବିଧାନ କେବଳ ପାରମ୍ପରିକ ଲୋକାଚାର ଓ ସେ ସବୁର ସ୍ରଷ୍ଟା ମଧ୍ୟ ମଣିଷ ।

ଏସବୁ ଆମେ ସ୍ୱୀକାର କରୁଁ । ବଡ଼ ବିଚିତ୍ର କଥା ଯେ ଏହା ଦୁଇ ହଜାରରୁ ଊର୍ଦ୍ଧ୍ୱ ବର୍ଷ ତଳର ଚିନ୍ତାପରି ଜଣା ନଯାଇ ଠିକ୍ ଆଜିର ଭଳି ମନେହେଉଛି । ଏସବୁ ଚିନ୍ତା, ଏସବୁ ସନ୍ଦେହ ଓ ସଂଘାତ, ପାରମ୍ପରିକ ପ୍ରାଧିକାର ବିରୁଦ୍ଧରେ ମଣିଷ ମନରେ ବିଦ୍ରୋହ କିପରି ଦେଖାଦେଲା ? ସେ ସମୟର ସାମାଜିକ ଓ ରାଜନୈତିକ ଅବସ୍ଥା ବିଷୟରେ ଆମେ ଯଥେଷ୍ଟ ଭାବରେ ଅବହିତ ନୋହୁଁ; କିନ୍ତୁ ମତେ ସ୍ପଷ୍ଟ ପ୍ରତୀତ ହେଉଛି ଯେ ତାହା ରାଜନୈତିକ ସଂଘାତ ଓ ସାମାଜିକ ଉଦ୍‌ବେଳନର ଗୋଟାଏ ଯୁଗ ଥିଲା, ଯେବେ ବିଶ୍ୱାସର ବିଚ୍ଛିନ୍ନତା ଘଟୁଥିଲା ଏବଂ ମନ ସନ୍ତୁଷ୍ଟ ହେଲାଭଳି କୌଣସି ପନ୍ଥା ଖୋଜି ବାହାର କରିବା ନିମନ୍ତେ ତୀବ୍ର ବୌଦ୍ଧିକ ଜିଜ୍ଞାସା ଚାଲିଥିଲା । ଏହି ମାନସିକ ଆନ୍ଦୋଳନ ଓ ସାମାଜିକ ଅସଙ୍ଗତି ଭିତରୁ ନବ ନବ ମାର୍ଗ ଉନ୍ମୋଚିତ ହେଲା ଓ ନବ ନବ ଦର୍ଶନ ପ୍ରଣାଳୀ ରୂପ ନେଲା । ଉପନିଷଦପ୍ରେରିତ ଅନ୍ତର୍ଜ୍ଞାନର ଆଭିମୁଖ୍ୟଠାରୁ ସ୍ୱତନ୍ତ୍ର, ନିବିଷ୍ଟ ଯୁକ୍ତି ଓ ବିତର୍କ ଉପରେ ପ୍ରତିଷ୍ଠିତ ପ୍ରଣାଳୀଗତ ଦର୍ଶନ, ଜୈନ, ବୌଦ୍ଧ ଆଦି ନାନା ରୂପରେ ଏବଂ ଉପଯୁକ୍ତ ଶବ୍ଦ ଅଭାବରୁ କୁହାଯାଇପାରେ, ହିନ୍ଦୁ ରୂପରେ ପ୍ରକାଶ ପାଇଲା । ରାମାୟଣ, ମହାଭାରତ

ଭଳି ବଡ଼ ବଡ଼ ମହାକାବ୍ୟ ଓ ଭଗବଦ୍‌ଗୀତା ଏହି କାଳର ଅନ୍ତର୍ଭୁକ୍ତ । ଏହି ସମୟରେ ଚିନ୍ତାଧାରା ଓ ତତ୍ତ୍ୱ ପରସ୍ପର ଉପରେ ଉଦ୍‌ବ୍ୟାପ୍ତ ହୋଇଥିବାରୁ କ୍ରିୟା ଓ ପ୍ରତିକ୍ରିୟା କରିଥିବା ହେତୁରୁ ସମୟର ଗୋଟିଏ ନିର୍ଭୁଲ କ୍ରମ ତିଆରି କରିବା କଷ୍ଟକର । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ବୁଦ୍ଧଦେବଙ୍କ ଆବିର୍ଭାବ ଘଟିଥିଲା । ଏଥିର କେତେକ ଘଟଣାର ବିସ୍ତାର ତାଙ୍କ ପୂର୍ବରୁ ଘଟିଥିଲା, କେତେ ତାଙ୍କ ପରେ ଘଟିଲା ଓ କେତେ ସମାନ୍ତରାଳଭାବରେ ଗଡ଼ି ଉଠିଥିଲା ।

ବୌଦ୍ଧଧର୍ମର ଅଭ୍ୟୁଦୟ କାଳରେ ପାରସ୍ୟ ସାମ୍ରାଜ୍ୟ ସିନ୍ଧୁତୀର ପର୍ଯ୍ୟନ୍ତ ବିସ୍ତୃତ ହୋଇ ସାରିଥିଲା । ଭାରତର ସୀମାନ୍ତ ପର୍ଯ୍ୟନ୍ତ ଏହି ବୃହତ୍ ଶକ୍ତିର ସଂଚରଣ ଭାରତୀୟ ଜନସାଧାରଣଙ୍କ ଚିନ୍ତାଧାରାକୁ ଅବଶ୍ୟ ପ୍ରଭାବିତ କରିଥିବ । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ସିକନ୍ଦର ଅଲ୍‌ଭନ ପାଇଁ ଉତ୍ତର-ପଶ୍ଚିମ ଭାରତ ଆକ୍ରମଣ କରିଥିଲେ । କେବଳ ଗୋଟାଏ ଆକ୍ରମଣ ଭାବରେ ଦେଖିଲେ ସେଥିରେ ବିଶେଷ ଗୁରୁତ୍ୱ ନଥିଲା; କିନ୍ତୁ ତାହା ଭାରତର ବହୁ ଦୂରପ୍ରସାରୀ ପରିବର୍ତ୍ତନର ଅଗ୍ରଦୂତ ଭାବରେ ପ୍ରକାଶ ପାଇଥିଲା । ସିକନ୍ଦରଙ୍କ ମୃତ୍ୟୁ ପରେ ପରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟସାମ୍ରାଜ୍ୟ ନିର୍ମାଣ କଲେ । ଇତିହାସ ଦୃଷ୍ଟିରୁ କହିଲେ ତାହା ଥିଲା ଭାରତର ସର୍ବପ୍ରଥମ ଶକ୍ତିଶାଳୀ, ସୁବିସ୍ତୃତ ଓ କେନ୍ଦ୍ରୀଭୂତ ସାମ୍ରାଜ୍ୟ । ଆମ ଐତିହ୍ୟରେ ଏପରି ବହୁ ରାଜା ଓ ସମ୍ରାଟଙ୍କ ବିଷୟ କଥିତ ଅଛି ଏବଂ ଗୋଟାଏ ପୁରାଣରେ ଭାରତ ଉପରେ ଅର୍ଥାତ୍ ସମ୍ଭବତଃ ଉତ୍ତର ଭାରତ ଉପରେ ସାର୍ବଭୌମତ୍ୱ ପ୍ରତିଷ୍ଠାମୂଳକ ସଂଗ୍ରାମର କାହାଣୀ ବର୍ଣ୍ଣିତ ଅଛି; କିନ୍ତୁ ଖୁବ୍ ସମ୍ଭବ ପ୍ରାଚୀନ ଭାରତ ଗ୍ରୀସ୍ ଭଳି କେତେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ଗୋଟାଏ ସମଷ୍ଟି ମାତ୍ର ଥିଲା । ସେତେବେଳେ ଅନେକ ଉପଜାତୀୟ ପ୍ରଜାତନ୍ତ୍ର ଥିଲା ଓ ସେଥିରୁ କେତେକ ଖୁବ୍ ବଡ଼ ବଡ଼ ଅଞ୍ଚଳ ଉପରେ ଆଧିପତ୍ୟ ବିସ୍ତାର କରିଥିଲେ । ସେଥି ସଙ୍ଗେ ଛୋଟ ଛୋଟ ରାଜତନ୍ତ୍ର ମଧ୍ୟ ଥିଲା ଏବଂ ଗ୍ରୀସ୍‌ରେ ଯେପରି ଥିଲା ବ୍ୟବସାୟୀ ନିକାୟ ବା ସଂଘଶାସିତ ପୌର ପ୍ରଜାତନ୍ତ୍ରମାନ ମଧ୍ୟ ଥିଲା । ବୁଦ୍ଧଙ୍କ ସମୟରେ ଏପରି ବହୁ ଉପଜାତୀୟ ପ୍ରଜାତନ୍ତ୍ର ଏବଂ ଉତ୍ତର ଗାନ୍ଧାର ଅଥବା ଆଫଗାନିସ୍ତାନ ଗୋଟାଏ ଅଂଶ ସମେତ ଓ ମଧ୍ୟ ଭାରତରେ ଷୋଳଗୋଟି ମୁଖ୍ୟ ରାଜ୍ୟ ଥିଲା । ସଂଗଠନର ରୂପ ଯାହା ହେଉନା କାହିଁକି ପୁର ଅବା ଗ୍ରାମର ସ୍ୱାୟତ୍ତଶାସିତ ପରମ୍ପରା ସୁଦୃଢ଼ ଥିଲା ଏବଂ କେତେବେଳେ କୌଣସି ସମ୍ରାଟଙ୍କ ଆଧିପତ୍ୟ ସ୍ୱୀକୃତ ହେଉଥିଲେ ସୁଦ୍ଧା ରାଜ୍ୟର ଆଭ୍ୟନ୍ତରୀଣ ବ୍ୟାପାରରେ କୌଣସି ପ୍ରକାର ହସ୍ତକ୍ଷେପ କରାଯାଉ ନଥିଲା । ଗ୍ରୀସ୍‌ଭଳି, ସମ୍ଭବତଃ ଉପର ବର୍ଗଙ୍କ ଭିତରେ ସୀମିତ, ସେତେବେଳେ ଗୋଟାଏ ପ୍ରକାର ଆଦିମ ଜନତନ୍ତ୍ର ରହିଥିଲା ।

ପ୍ରାଚୀନ ଭାରତ ଓ ପ୍ରାଚୀନ ଗ୍ରୀସ୍ ନାନା ଭାବରେ ପୃଥକ୍ ହେଲେ ସୁଦ୍ଧା ଉଭୟ ଭିତରେ ସେପରି ବହୁତ କିଛି ସାମଞ୍ଜସ୍ୟ ଥିଲା ଯଦ୍ଦ୍ୱାରା ମୁଁ ବିଶ୍ୱାସ କରେ ଯେ ଉଭୟର ଜୀବନର ପୃଷ୍ଠଭୂମି ଭିତରେ ବିଶେଷ ସୌସାଦୃଶ୍ୟ ଥିଲା । ଏଥେନୀୟ ଗଣତନ୍ତ୍ରର ବିଲୋପକାରୀ ପେଲୋପୋନେସୀୟ ଯୁଦ୍ଧ ସଙ୍ଗେ କେତେକ ଦିଗରୁ ମହାଭାରତ ଯୁଦ୍ଧର ତୁଳନା କରାଯାଇ ପାରେ । ଗ୍ରୀସୀୟ ଚିନ୍ତାଧାରା ଓ ସ୍ୱାଧୀନ ନଗରରାଷ୍ଟ୍ରର ବିଫଳତା ପରେ, ସନ୍ଦେହ ଓ

ନିର୍ଗଣ୍ୟ ନାନାପ୍ରକାର ରହସ୍ୟ ଓ ଦୈବିକ ଅନୁଭୂତି ପ୍ରତି ଜନସାଧାରଣଙ୍କୁ ଆକୃଷ୍ଟ କଲା । ଫଳତଃ, ତାହାର ପୂର୍ବତନ ବିଭିନ୍ନ ଆଦର୍ଶ ପତିତ ହେଲା । ଏହି ବିଶ୍ୱ ଅପେକ୍ଷା ପରବର୍ତ୍ତୀ କୌଣସି ବିଶ୍ୱ ପ୍ରତି ଦୃଷ୍ଟି ନିବଦ୍ଧ ହେଲା । 'ପରେ ନିସ୍ପୃହବାଦ' (୧) ଓ 'ସୁଖବାଦ' (୨)ର ଦର୍ଶନ ବିସ୍ତାର ଲାଭକଲା ।

କ୍ଷୀଣ ଓ କେବେକେବେ ଅସଙ୍ଗତ ତଥ୍ୟ ଉପରେ ଇତିହାସର ତୁଳନା କରିବା ବିପଜ୍ଜନକ ଓ ଭ୍ରାନ୍ତିକର । ତଥାପି ସେ ପ୍ରଲୋଭନ ଏଡ଼ିବା ବଡ଼ କଷ୍ଟକର । ଭାରତରେ ମହାଭାରତ ଯୁଦ୍ଧପରେ ଯେଉଁ ବିଶୃଙ୍ଖଳ ମାନସିକ ବାତାବରଣ ଦେଖାଦେଇଥିଲା ତାହା ଗ୍ରୀସ୍‌ର ସେହି ସମୟ ସ୍ମରଣ କରାଇ ଦିଏ ଯେବେ ଗ୍ରୀସୀୟ ସଂସ୍କୃତି ଜର୍ଜରିତ ହୋଇ ପଡ଼ିଥିଲା, ବିବିଧ ଆଦର୍ଶର ବିକୃତି ଘଟିଥିଲା ଓ ନୂତନ ଦର୍ଶନ ନିମନ୍ତେ ଅତୁର ଭାବରେ ସନ୍ଧାନ ଚାଲିଥିଲା । ରାଜନୀତି ଓ ଅର୍ଥନୀତିରେ, ଉପଜାତୀୟ ଗଣତନ୍ତ୍ର ଓ ପୌରରାଷ୍ଟ୍ରର ଦୁର୍ବଳତା ଓ ରାଷ୍ଟ୍ରଶକ୍ତିର କେନ୍ଦ୍ରୀକରଣ ପ୍ରବଣତା ଭଳି, ଆଭ୍ୟନ୍ତରୀଣ ପରିବର୍ତ୍ତନମାନ ଘଟିଥିବ ।

କିନ୍ତୁ ଏହି ତୁଳନା ଆମକୁ ବେଶୀ ଦୂର ନେଇ ଯାଉନି । ଗ୍ରୀସ୍ ସେ ସମସ୍ତ ଧକ୍କାରୁ ବାସ୍ତବରେ ଉଦ୍ଧାର ପାଇନଥିଲା; ଯଦିଓ ଗ୍ରୀକ୍ ସଭ୍ୟତା ଆଉ କେତେ ଶତାବ୍ଦୀ ପର୍ଯ୍ୟନ୍ତ ଭୂମଧ୍ୟସାଗର ଅଞ୍ଚଳରେ ତେଜୋଦ୍ୱାନ ରହିଲା ଏବଂ ରୋମ୍ ଓ ୟୁରୋପକୁ ପ୍ରଭାବିତ କରିଥିଲା; କିନ୍ତୁ ଭାରତର ଘଟିଥିଲା ସମ୍ପୂର୍ଣ୍ଣ ଭିନ୍ନ । ଭାରତ ଅତି ଅଦ୍‌ଭୁତ ଭାବରେ ସେହି ଦୁର୍ଦ୍ଦଶାରୁ ଉଦ୍ଧାର ଆସିଲା ଏବଂ ପୁରାଣ ଯୁଗ ଓ ବୁଦ୍ଧଙ୍କ ପରବର୍ତ୍ତୀ ହଜାରେ ବର୍ଷ ପର୍ଯ୍ୟନ୍ତ ରଚନାତ୍ମକ ଶକ୍ତିରେ ପୂର୍ଣ୍ଣ ଥିଲା । ଦର୍ଶନ, ସାହିତ୍ୟ, ନାଟକ, ଗଣିତ ଓ ବିବିଧ କଳାକ୍ଷେତ୍ରରେ ମହତ୍ତ୍ୱପୂର୍ଣ୍ଣ କେତେ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିଛି । ଖ୍ରୀଷ୍ଟୀୟ ଅବ୍ଦର ପ୍ରଥମ କେତେ ଶତକରେ ଉପନିବେଶ ସ୍ଥାପନର ସଂଗଠିତ ଉଦ୍ୟମ ଅଦ୍‌ଭୁତ ଭାବରେ ପ୍ରକାଶ ପାଇଲା । ଫଳରେ ଭାରତୀୟମାନେ ସେମାନଙ୍କର ସଂସ୍କୃତି ବହନ କରି ପ୍ରାଚ୍ୟସାଗରର ଅନ୍ତର୍ଭୁକ୍ତ ବହୁ ଦୂରବର୍ତ୍ତୀ ଦ୍ୱୀପମାନଙ୍କରେ ଉପନୀତ ହେଲେ ।

## ୧୨. ମହାକାବ୍ୟ, ଇତିହାସ, ପରମ୍ପରା ଓ ଅତିକଥା

ପ୍ରାଚୀନ ଭାରତର ଦୁଇଟି ମହାପୁରାଣ ରାମାୟଣ ଓ ମହାଭାରତ କେତେ ଶତବର୍ଷ ଭିତରେ ସ୍ୱୀକୃତ ରୂପ ନେଇଥିଲା ଓ ପରବର୍ତ୍ତୀ କାଳମାନଙ୍କରେ ସେଥିରେ ନୂଆ ନୂଆ ଉପାଖ୍ୟାନମାନ ଯୋଗ କରାଯାଇଥିଲା । ସେଥିରେ ଭାରତୀୟ ଆର୍ଯ୍ୟମାନଙ୍କ ଆଦ୍ୟକାଳୀନ ଚରିତ୍ର—ସେମାନଙ୍କର କେତେ ବିଜୟ ଓ ଗୃହଯୁଦ୍ଧ, ଯେବେ ସେମାନେ ସଂପ୍ରସାରିତ

---

(୧) ଏହିମତ ଘୋଷଣା କରୁଥିଲେ ଜେନୋ ନାମକ ଦାର୍ଶନିକ । ଏହି ମତବାଦର ଲୋକେ ମଣିଷର ନାନା ଆବେଗକୁ ନିୟନ୍ତ୍ରଣ କରିବା ଉପରେ ଜୋର୍ ଦେଉଥିଲେ ।

(୨) ଏହି ମତର ପ୍ରତିଷ୍ଠାତା ଦାର୍ଶନିକ ଏପିକ୍ୟୁରସ୍ । ବିଶ୍ୱରୁ ଆନନ୍ଦ ଗ୍ରହଣ କର—ଥିଲା ତାଙ୍କର ଶିକ୍ଷା ।

ହୋଇଥିଲେ ଓ ନିଜ ଆସ୍ଥାନ ଜମାଉଥିଲେ—ବର୍ଣ୍ଣିତ ଅଛି । କିନ୍ତୁ ଏହି ମହାକାବ୍ୟ ଦୁଇଟିର ପ୍ରଣୟନ ଓ ସଙ୍କଳନ ପରେ କରାଯାଇଥିଲା । ମୁଁ କେଉଁଠାରେ ହେଲେ ଏପରି ଗ୍ରନ୍ଥ ଥିବା ଜାଣିନି ଯାହା ଏ ଦୁଇ ମହାକାବ୍ୟ ଭଳି ଜନସାଧାରଣଙ୍କ ମନରେ ଏତେ ଅଖଣ୍ଡ ଓ ବ୍ୟାପକ ପ୍ରଭାବ ପକାଇ ପାରିଛି । କେଉଁ ଦୂର ଅତୀତରେ ରଚିତ ହୋଇଥିଲେ ସୁଦ୍ଧା ଭାରତୀୟ ଜନସାଧାରଣଙ୍କ ଜୀବନରେ ରାମାୟଣ ଓ ମହାଭାରତ ଏବେ ବି ଜୀବନ୍ତ ଓ ଜାଗ୍ରତ ହୋଇ ରହିଛି । ମୂଳ ସଂସ୍କୃତ ରୂପରେ ନୁହେଁ କାରଣ ତାହା ସ୍ୱଳ୍ପ କେତେକ ବୁଦ୍ଧିଜୀବୀଙ୍କ ନିକଟରେ କେବଳ ପହଞ୍ଚି ଥିଲା । କିନ୍ତୁ ନାନା ଅନୁବାଦ ମାଧ୍ୟମରେ, ଗ୍ରନ୍ଥାରେ ଲିଖିତ ଭାବରେ ଓ ସେ ପ୍ରକାର ନାନା ମାର୍ଗରେ, ଯେଉଁଥିରେ ପରମ୍ପରା ଓ କିମ୍ବଦନ୍ତୀ ପ୍ରସାର ଲାଭକରି ଜନସାଧାରଣଙ୍କ ଜୀବନର ଅଂଶବିଶେଷ ହୋଇପଡ଼େ ।

ଏଥିରେ ଆମକୁ ସେହି ନିଜସ୍ୱ ଭାରତୀୟ ଢଙ୍ଗ ମିଳେ ଯେଉଁଥିରେ ଭିନ୍ନ ଭିନ୍ନ ସାଂସ୍କୃତିକ ସ୍ତରର ଲୋକଙ୍କ ପାଇଁ ଏକା ସଙ୍ଗେ ସାମଗ୍ରୀ ପରିବେଷଣ କରାଯାଇଛି । ଅର୍ଥାତ୍ ଉଚ୍ଚକୋଟିର ବୁଦ୍ଧିଜୀବୀଙ୍କଠାରୁ ସରଳ ଅଶିକ୍ଷିତ ଗ୍ରାମବାସୀ ପର୍ଯ୍ୟନ୍ତ । ନାନା ଭାବରେ ବିଭକ୍ତ ଓ ବର୍ଣ୍ଣ-ବର୍ଗୀକୃତ ଗୋଟାଏ ବିଚିତ୍ର ସମାଜକୁ ଧରି ରଖିବାରେ, ସେଥିର ନାନା ବିଦ୍ୱେଷ ଦୂରକରି ସଙ୍ଗତି ଅର୍ପଣ କରିବାରେ ଏବଂ ବୀରତ୍ୱପୂର୍ଣ୍ଣ ପରମ୍ପରା ଓ ଆଚରଣଶୁଦ୍ଧ ଜୀବନଯାପନର ଗୋଟାଏ ସାର୍ବଜନୀନ ପୃଷ୍ଠଭୂମି ଯୋଗାଇବାରେ ପ୍ରାଚୀନ ଭାରତୀୟଙ୍କ ରହସ୍ୟର କିଛି ସୂତ୍ର ଆମକୁ ସେଥିରୁ ବୁଝିବାକୁ ମିଳେ । ଲୋକଙ୍କ ଭିତରେ ଦୃଷ୍ଟିଭଙ୍ଗୀର ଏକତା ଗଢ଼ିବାପାଇଁ ସେମାନେ ସୁଚିନ୍ତିତ ପ୍ରୟାସ କରିଥିଲେ ଯାହା ପରବର୍ତ୍ତୀ କାଳମାନଙ୍କରେ ସମସ୍ତପ୍ରକାର ବିବିଧତାକୁ ଗ୍ରସ୍ତାଚ୍ଛନ୍ନ କରି ଜୀବିତ ରହି ପାରିଲା ।

ୟୁରୋପ ଅବା ଆମେରିକାରେ ଶିଶୁ ଯେପରି ପରୀରାଜ୍ୟର କାହାଣୀ କିମ୍ବା ଅଦ୍ଭୁତକର୍ମର ନାନା ଗଳ୍ପ ଶୁଣିଥାଏ, ମୋର ବାଲ୍ୟବୟସରେ ରାମାୟଣ ଓ ମହାଭାରତର କାହାଣୀମାନ ମୋର ମା' ଅବା ଘରର ବୟସ୍କାମାନେ ମତେ କହିବା ମୋର ବେଶ୍ ସ୍ମରଣ ଅଛି । ସେ ସବୁ କାହାଣୀରେ ମୋ ପାଇଁ ଥିଲା ଅଦ୍ଭୁତକର୍ମ ଓ ରୂପକଥାର ସ୍ୱାଦ । ଆହୁରି ମଧ୍ୟ, ପ୍ରତିବର୍ଷ ମତେ ମଇଦାନର ଯାତ୍ରାମାନଙ୍କୁ ନିଅନ୍ତି ଯେଉଁଠି ରାମାୟଣଚରିତ ଅଭିନୀତ ହେଉଥାଏ ଆଉ ଯାହା ଦେଖିବାପାଇଁ ଲୋକେ ବହୁ ସଂଖ୍ୟାରେ ଆସନ୍ତି ଓ ଶୋଭାଯାତ୍ରାରେ ଯୋଗ ଦିଅନ୍ତି । ସେ ସବୁ ଅଭିନୟରେ ସେପରି କଳାକୁଶଳତା କିଛି ନଥାଏ; କିନ୍ତୁ ସେଥିଲାଗି ବିଶେଷକିଛି ଭାବିବାକୁ ହୁଏନି କାରଣ ରାମାୟଣକଥା ପ୍ରତ୍ୟେକ ଲୋକର କଣ୍ଠସ୍ଥ ଥିଲା । ଅଧିକନ୍ତୁ ଉତ୍ସବର ଦିନ ତ ଆନନ୍ଦର ଦିନ ।

ଏପରିଭାବରେ ଭାରତର ପୌରାଣିକ ଗାଥା ଓ ପ୍ରାଚୀନ ପରମ୍ପରା ମୋର ମନରେ ପ୍ରବେଶ କଲା ଓ କଳ୍ପନାପ୍ରସୂତ ଅନ୍ୟାନ୍ୟ ନାନାପ୍ରକାର ଜୀବଙ୍କ ବିଶୃଙ୍ଖଳାରେ ମିଶିଗଲା । ଏସବୁ କାହାଣୀ ତଥ୍ୟତଃ ସତ୍ୟବୋଲି ସେଥି ଉପରେ ଗୁରୁତ୍ୱ କେବେ ଅର୍ପଣ କରିବା ମୋର ମନେପଡ଼ୁନି । ଏପରିକି, ସେଥିରେ ଅଲୌକିକ ଓ ଅପ୍ରାକୃତ ତତ୍ତ୍ୱ ଉପରେ ବି ମୁଁ ସମାଲୋଚନା କରିଛି । କିନ୍ତୁ ସେସବୁ କାହାଣୀରେ ଅଲଫ୍‌ଲୈଲା (ଆରବ୍ୟ ରଜନୀ) କିମ୍ବା

ପଞ୍ଚତନ୍ତ୍ରର (ଜୀବଜନ୍ତୁ କାହାଣୀର ସେହି ଗଳ୍ପାଗାର ସେଉଁଥିରୁ ପଶ୍ଚିମ ଏସିଆ ଓ ୟୁରୋପ ବହୁତ କିଛି ଗ୍ରହଣ କରିଚନ୍ତି) କାହାଣୀ ଭଳି କଳ୍ପନାରେ ମୋ ପାଇଁ ବଡ଼ ସତ୍ୟ ବୋଲି ଥିଲ ୧। ମୋର ବୟସ ବୃଦ୍ଧି ସଙ୍ଗେ ମୋର ମନରେ ଆହୁରି କେତେ ଚିଜ ବଢ଼ିଉଠିଲା : ଭାରତୀୟ ଓ ୟୁରୋପୀୟ ରୂପକଥା, ଗ୍ରୀସୀୟ ପୌରାଣିକଗାଥାର ନାନା ଉପାଖ୍ୟାନ, 'ଜୋନ୍ ଅଫ୍ ଆର୍କ' କଥା, ଏଲିସ୍ ଇନ୍ ଓ୍ୱାଣ୍ଡରଲେଣ୍ଡ ବହୁତ ଆକବର ଓ ବୀରବଲ କାହାଣୀ, ସେରଲକ୍ ହୋମ୍‌ସଙ୍କ ଜାସୁସ କାହାଣୀ, କିଙ୍ଗ୍ ଆର୍ଥର ଓ ତାଙ୍କର ସରଦାରଙ୍କ କଥା, ବଡ଼ୋଦ୍ଦର ବୀରାଙ୍ଗନା ଝାନ୍‌ସୀ ରାଣୀଙ୍କ କାହାଣୀ ଏବଂ ରାଜପୁତମାନଙ୍କ ବୀରତ୍ୱ ଓ ଶୌର୍ଯ୍ୟର କାହାଣୀ। ଏହିସବୁ ଓ ଆହୁରି ଅନେକ ଏପରି କିଛି ମୋର ମନରେ ଏକ ବିଚିତ୍ର-ଧରଣର ବହୁଳତା ଭରି ରଖିଥିଲା; କିନ୍ତୁ ସର୍ବଦା ଜାଗ୍ରତ ଥିଲା ଭାରତୀୟ ପୁରାଣର ପୃଷ୍ଠଭୂମି ଯାହା ମୋର ବାଲ୍ୟ ବୟସରେ ଅମୃତ ଭଳି ମୁଁ ପାନ କରିଥିଲି।

ନାନାବିଧ ପ୍ରଭାବ ମୋର ମନ ଉପରେ କାର୍ଯ୍ୟକରୁଥିବା ସତ୍ତ୍ୱେ ପୁରାଣର ପୃଷ୍ଠଭୂମି ମୋ ଭିତରେ ଯଦି ସତେଜ ରହି ପାରିଲା, ସେଥିରୁ ମୁଁ ଉପଲବ୍ଧି କରିପାରୁଥିଲି ଯେ ପୌରାଣିକ-ଗାଥା ଓ ପରମ୍ପରା ଅନ୍ୟମାନଙ୍କ ମନ ଉପରେ ବିଶେଷତଃ ଆମର ଅଶିକ୍ଷିତ ଜନସାଧାରଣଙ୍କ ମନ ଉପରେ କେତେଭଳି ବଳିଷ୍ଠ ପ୍ରଭାବ ପକାଇ ନଥିବ ! ସଂସ୍କୃତି ଓ ନୀତିତତ୍ତ୍ୱ ଦୃଷ୍ଟିରୁ ସେହି ପ୍ରଭାବ ମୋ ପକ୍ଷରେ କଲ୍ୟାଣକର ହୋଇଚି ଏବଂ ସେହି ସବୁ କାହାଣୀ ଓ ରୂପକରେ ଥିବା ସୌନ୍ଦର୍ଯ୍ୟ ଓ କାଳ୍ପନିକ ପ୍ରତୀକ ଫିଙ୍ଗିଦେବା କିମ୍ବା ଭାଙ୍ଗିଦେବା ମୁଁ ଘୃଣା କରେ।

ଭାରତୀୟ ପୌରାଣିକଗାଥା ମହାକାବ୍ୟମାନଙ୍କ ଭିତରେ ଆବଦ୍ଧ ନୁହେଁ। ବୈଦିକ ଯୁଗରୁ ଏହା ନାନା ରୂପରେ, ନାନା ପରିଚ୍ଛଦରେ ସଂସ୍କୃତ ସାହିତ୍ୟରେ ଦେଖାଦେଇଚି। କବି ଓ

---

୧ ଏସୀୟ ତଥା ୟୁରୋପୀୟ ଭାଷାମାନଙ୍କୁ 'ପଞ୍ଚତନ୍ତ୍ର'ର ଅନୁବାଦ ଓ ଅଭିଯୋଜନର କାହାଣୀ ବଡ଼ ଦୀର୍ଘ, ଜଟିଳ ଓ ମୁଗ୍ଧକର। ପାରସ୍ୟ ବାଦ୍‌ଶାହ ଖୁସ୍ରୁ ନୌଷେରବାଁଙ୍କ ଆଦେଶକ୍ରମେ ପ୍ରଥମ ଜ୍ଞାତ ଅନୁବାଦ ଷଷ୍ଠ ଶତକ ମଧ୍ୟ ଭାଗରେ ସଂସ୍କୃତରୁ ପହ୍ଲବୀ ଭାଷାରେ କରାଯାଇଥିଲା। ପରେ ପରେ (ଖ୍ରୀ: ୫୭୦) ସିରିଅନ୍ ଭାଷାରେ ଅନୂଦିତ ହେଲା ଏବଂ ପରବର୍ତ୍ତୀ ସମୟରେ ଆରବ୍ୟ ଭାଷାରେ। ଏକାଦଶ ଶତକରେ ସିରିଅନ, ଆରବ୍ୟ ଓ ପାରସିକ ଭାଷାମାନଙ୍କରେ ପୁଣି ନୂତନକରି ଅନୂଦିତ ହେଲା। ପାରସିକ ଅନୁବାଦଟି 'କାଲିଆ ଦମନ'ଙ୍କ କାହାଣୀ ନାମରେ ପ୍ରଖ୍ୟାତ ଥିଲା। ଏହିସବୁ ଏସୀୟ ଭାଷାର ଅନୁବାଦ ଜରିଆରେ 'ପଞ୍ଚତନ୍ତ୍ର' ୟୁରୋପରେ ଉପନୀତ ହେଲା। ଏକାଦଶ ଶତକ ଶେଷଭାଗରେ ସିରିଏନ ଭାଷାରୁ ଗ୍ରୀକ୍ ଭାଷାରେ ଏବଂ ଅଳ୍ପ କିଛିକାଳ ପରେ ଇହୁଦୀଙ୍କ ଭାଷା ହିବ୍ରୁରେ ଅନୂଦିତ ହେଲା। ପଞ୍ଚଦଶ ଓ ଷୋଡ଼ଶ ଶତକରେ ଲଟିନ୍, ଇଟାଲୀୟ, ସ୍ପାନିସ୍, ଜର୍ମାନ, ସ୍ୱିଡ଼ିସ୍, ଡେନିସ୍, ଡଚ୍, ଆଇସ୍‌ଲେଣ୍ଡିସ୍, ଫରାସୀ, ଇଂରେଜୀ, ହଙ୍ଗେରୀୟ, ତୁରସ୍କ ଏବଂ କେତେକ ସ୍ଲାଭ ଭାଷାମାନଙ୍କରେ ଅନୂଦିତ ହେଲା। ଏପରି ଭାବରେ 'ପଞ୍ଚତନ୍ତ୍ର'ର କାହାଣୀଗୁଡ଼ିକ ଏସୀୟ ତଥା ୟୁରୋପୀୟ ସାହିତ୍ୟମାନଙ୍କରେ ସମ୍ପୂର୍ଣ୍ଣ ଭାବରେ ମିଶିଗଲା।

ନାଟ୍ୟକାରମାନେ ଏଥି ଉପରେ ଭିତ୍ତିକରି କେତେ ଚମତ୍କାର ଉପାଖ୍ୟାନ ଓ କମନୀୟ କଳ୍ପନା ଗଢ଼ି ପାରିଚନ୍ତି । କଥିତ ଅଛି, ସୁନ୍ଦରୀ ରମଣୀର ଚରଣ ସ୍ପର୍ଶରେ ଅଶୋକବୃକ୍ଷ ପୁଷ୍ପିତ ହୁଏ । ବନ୍ଧୁ ଋତୁରାଜ ବସନ୍ତ ଓ ପ୍ରିୟତମା ରତି (ଆନନ୍ଦମୟୀ) ସଙ୍ଗେ, ଆମେ ପଢ଼ିବାକୁ ପାଉଁ ପ୍ରେମର ଦେବତା କାମଙ୍କର କେତେ ଅଦ୍‌ଭୁତକର୍ମର କାହାଣୀ । କାମ ଅପୂର୍ବ ସାହସଭରେ ଶିବଙ୍କ ଉପରେ ପୁଷ୍ପବାଣ ନିକ୍ଷେପ କରନ୍ତି ଏବଂ ଶିବଙ୍କ ତୃତୀୟ ନେତ୍ରର ଦହନରେ ଭସ୍ମୀଭୂତ ହୁଅନ୍ତି । କିନ୍ତୁ ଅନଙ୍ଗ ରୂପରେ ଅର୍ଥାତ୍ ଦେହହୀନ ଭାବରେ ତାଙ୍କର ଅସ୍ତିତ୍ୱ ରହିଚି ।

ଅଧିକାଂଶ ଅତିକଥା ଓ ଉପାଖ୍ୟାନର ଧାରଣା, ଭାରତ୍ୱରେ ନିହିତ ଏବଂ, ପରିଣାମ ଯାହା ହେଉନା କାହିଁକି, ସତ୍ୟ ଓ ପ୍ରତିଶ୍ରୁତିରେ ଅଟଳ ରହିବା, ମୃତ୍ୟୁ ପର୍ଯ୍ୟନ୍ତ ଓ ପରେ ମଧ୍ୟ ବିଶ୍ୱସ୍ତତା ରକ୍ଷାକରିବା, ଧୈର୍ଯ୍ୟ ଧରିବା, ସତ୍‌କର୍ମ କରିବା ଓ ସାର୍ବଜନୀନ କଲ୍ୟାଣ ନିମନ୍ତେ ନିଜର ସବୁକିଛି ବଳିଦାନ ଦେବା ଶିକ୍ଷା ଦିଏ । କେତେବେଳେ ଏପରି ଉପାଖ୍ୟାନ କେବଳ ଗୋଟାଏ ଅତିକଥା କିମ୍ବା ଅତିକଥା ଓ ବାସ୍ତବତାର ଗୋଟାଏ ସମ୍ମିଶ୍ରଣ—ପରମ୍ପରା ଦ୍ୱାରା ସଂରକ୍ଷିତ କୌଣସି ଘଟଣାର ଅତିରଞ୍ଜିତ ବିବରଣୀ । ସତ୍ୟ ଘଟଣା ଓ କଳ୍ପନା ଏପରି ଭାବରେ ବୁଣାଯାଇଥାଏ ଯେ, ଉଭୟଙ୍କୁ ଅଲଗାକରିବା ଅସମ୍ଭବ ମନେହୁଏ । ଏହି ସଂଯୋଜନା ଗୋଟାଏ କଳ୍ପିତ ଇତିହାସରେ ପରିଣତ ହୁଏ, ଯାହା ଆମକୁ ପ୍ରକୃତ ଘଟଣାର ତଥ୍ୟ ପରିବେଷଣ ନକଲେ ସୁଦ୍ଧା ସେପରି ଗୁରୁତ୍ୱପୂର୍ଣ୍ଣ ଆଉ କିଛି ଅବଶ୍ୟ କହେ—ଲୋକେ ଯାହା ଘଟିଛି ବୋଲି ବିଶ୍ୱାସ କରନ୍ତି, ସେମାନଙ୍କର ଭାର ପୂର୍ବପୁରୁଷ କେତେ ଭଲ ସମର୍ଥ ଥିଲେ ଓ କି ଆଦର୍ଶ ସେମାନଙ୍କୁ ଅନୁପ୍ରାଣିତ କରିଥିଲା ବୋଲି ଲୋକେ ମନେକରନ୍ତି । ଅତଏବ, ସତ୍ୟ ଘଟଣା ହେଉ କି କାଳ୍ପନିକ ଘଟଣା ହେଉ, ଜନସାଧାରଣଙ୍କ ଜୀବନରେ ତାହା ଜୀବନ୍ତ ହୋଇ ରହିଲା ଯାହା ସେମାନଙ୍କୁ ସେମାନଙ୍କର ଦୈନନ୍ଦିନ ଜୀବନର ନୀରସତା ଓ ବୈଚିତ୍ର୍ୟହୀନତାରୁ ଉଚ୍ଚତର ମାନସିକ ଅବସ୍ଥାକୁ ସର୍ବଦା ଉତ୍ତୋଳନ କରିବାର ପ୍ରୟାସ କଲା ଏବଂ ସେ ଆଦର୍ଶ କେତେ ଦୂରସ୍ଥ ଓ ସେଥିରେ ଉପନୀତ ହେବା କେତେ କଷ୍ଟସାଧ୍ୟ ହେଲେ ସୁଦ୍ଧା ସର୍ବଦା ସଦୁଦ୍ୟମ ଓ ସତ୍‌ଜୀବନ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ରହିଲା ।

ପ୍ରାଚୀନ ରୋମ୍‌ର ଲୁକ୍ରେସିଆ ଓ ଅନ୍ୟମାନଙ୍କ ଭାରତ୍ୱର କାହାଣୀକୁ ଯେଉଁମାନେ କୃତ୍ରିମ ଓ ମିଥ୍ୟା ବୋଲି କହିଚନ୍ତି ସେମାନଙ୍କୁ ଗେଟେ ଧିକ୍‌କାର କରିଥିବା କଥିତ ଅଛି । ସେ କହିଚନ୍ତି ଯେ ଯାହା କିଛି ହେଉ, ତାହା ଯଦି ସାରତଃ ମିଥ୍ୟା ଓ କୃତ୍ରିମ, କେବେହେଲେ ସୁନ୍ଦର ଓ ଉଦ୍‌ବୋଧକ ହୋଇ ନ ପାରେ; ହୋଇପାରେ କେବଳ ଅସଙ୍ଗତ ଓ ନିଷ୍ଫଳ । "ରୋମୀୟମାନେ ଯଦି ସେତେ ମହାନ୍ ଥିଲେ ଯେ ସେପରି କାହାଣୀସବୁ ଉଦ୍‌ଭାବନ କରିପାରିଲେ; ସେସବୁ ବିଶ୍ୱାସ କରିବାପାଇଁ ଅନ୍ତତଃ ଆମେ ସେପରି ମହାନ୍ ହେବା ଦରକାର ।"

ଏପରି ଭାବରେ, କଳ୍ପିତ ଇତିହାସ, ସତ୍ୟ ଘଟଣା ଓ କଳ୍ପନାର ସଂଯୋଜନ, କେବେ ବା ନିଛକ କଳ୍ପନା କେବଳ, ପ୍ରତୀକ ଭାବରେ ସତ୍ୟ ହୋଇଉଠେ ଏବଂ ତାହା ନିର୍ଦ୍ଦିଷ୍ଟ

ଯୁଗର ଜନସାଧାରଣଙ୍କ ମନ, ହୃଦୟ ଓ ଉଦ୍ଦେଶ୍ୟର କଥା କହେ । ଆଉ ଏକଦିଗରୁ ଦେଖିଲେ ଏହା ସତ୍ୟ ମଧ୍ୟ । କାରଣ ଚିନ୍ତା ଓ କର୍ମ ନିମନ୍ତେ ଓ ଭବିଷ୍ୟତର ଇତିହାସ ନିମନ୍ତେ ଏହା ଭିତ୍ତି ଯୋଗାଇ ଥାଏ । ପ୍ରାଚୀନ ଭାରତରେ ଇତିହାସର ସାମଗ୍ରିକ ଅବଧାରଣା ଦର୍ଶନର ଧ୍ୟାନ-ଧାରଣା ତଥା ଆଚାର-ବିଚାର ଏବଂ ଧର୍ମ ଦ୍ୱାରା ପ୍ରଭାବିତ ହୋଇଥିଲା । ଗୋଟାଏ ପୁରାବୃତ୍ତ ଲେଖିବା କିମ୍ବା ଗୁଡ଼ାଏ ନଥିଭୁକ୍ତ ଘଟଣା ସଙ୍କଳନ କରିବା ଉପରେ ବିଶେଷ ଗୁରୁତ୍ୱ ଦିଆଯାଉ ନଥିଲା । ଯେଉଁ ବିଷୟରେ ସେମାନେ ବିଶେଷ ଆଗ୍ରହୀତ ଥିଲେ ତାହା ହେଉଚି, ମାନବିକ ଆଚରଣ ଉପରେ ମାନବିକ ଘଟଣା ଓ କର୍ମ କି ପ୍ରକାର କ୍ରିୟା କରେ ଓ ପ୍ରଭାବ ପକାଏ । ଗ୍ରୀକ୍‌ମାନଙ୍କ ଭଳି ସେମାନେ ବଡ଼ କଳ୍ପନାପ୍ରବଣ ଓ କଳାବିତ୍ ଲୋକ ଥିଲେ ଏବଂ ଭବିଷ୍ୟତର ଆଚରଣ ନିମନ୍ତେ ସେଥିରୁ ନୈତିକ ଶିକ୍ଷା ଆହରଣ କରିବାରେ ସେମାନେ ଯେହେତୁ ବିଶେଷ ତତ୍ପର ଥିଲେ, ପୁରାତନ ଘଟଣା ସମ୍ପର୍କୀୟ ଏହି କଳା ଓ କଳ୍ପନାର ସାମଗ୍ରୀକୁ ପରିବେଷଣ କରିବା ପୂର୍ବରୁ ସେମାନେ ବିଶେଷ ସତର୍କତା ଅବଲମ୍ବନ କରୁଥିଲେ ।

ଗ୍ରୀକ୍, ଚୀନା ଓ ଆରବୀୟମାନେ ଇତିହାସ ଲେଖିଥିଲେ; କିନ୍ତୁ ଭାରତୀୟମାନେ ଅତୀତରେ ଐତିହାସିକ ନଥିଲେ । ଏହା ଆମ ପକ୍ଷରେ ଅତୀବ ଦୁର୍ଭାଗ୍ୟଜନକ କାରଣ ପ୍ରତ୍ୟେକ ଯୁଗର ଅତି ନିରୂପଣ କରିବା ଓ ଗୋଟିଏ ନିର୍ଭୁଲ କାଳକ୍ରମ ତିଆରିକରିବା ବର୍ତ୍ତମାନ ଆମପାଇଁ କଷ୍ଟକର ହୋଇ ପଡ଼ୁଚି । ଘଟଣା ଉପରେ ଘଟଣା ଉଦ୍‌ବ୍ୟାପ୍ତ ରହିଚି ଓ ଗୋଟାଏ ଅସମ୍ଭବଧରଣର ବିଶୃଙ୍ଖଳା ସୃଷ୍ଟି ହୋଇଚି । ପଣ୍ଡିତମାନେ ଆଜି ଅତି ଧୈର୍ଯ୍ୟ ସହକାରେ କ୍ରମଶଃ ସେସବୁ ଭିତରୁ ଭାରତୀୟ ଇତିହାସର ସେହି ବିସ୍ମୃତ ସୂତ୍ର ଅନ୍ୱେଷଣ କରୁଚନ୍ତି । ସତ୍ୟ କହିଲେ, କେବଳ ଗୋଟିଏ ଗ୍ରନ୍ଥ, କହ୍ଲାଣଙ୍କ 'ରାଜତରଙ୍ଗିଣୀ', ଦ୍ୱାଦଶ ଶତାବ୍ଦୀରେ ଲିଖିତ କାଶ୍ମୀରର ଇତିହାସ, ଯାହାକୁ ଇତିହାସ ବୋଲି ବିବେଚନା କରାଯାଇ ପାରେ । ବାକି ଇତିହାସ ପାଇଁ ଆମକୁ ପୁରାଣମାନଙ୍କର ଓ ଅନ୍ୟାନ୍ୟ ଗ୍ରନ୍ଥର କଳ୍ପିତ ଇତିହାସ, ସମସାମୟିକ ନଥିପତ୍ର, ଶିଳାଲେଖ, କଳା ଓ ସ୍ଥାପତ୍ୟର ଧ୍ୱଂସାବଶେଷ, ମୁଦ୍ରା ଏବଂ ବିଶାଳ ସଂସ୍କୃତ ସାହିତ୍ୟର ଭଣ୍ଡାର ଭିତରକୁ ଖିଡ଼୍ କ୍ୱଚିତ୍ ପ୍ରାପ୍ତବ୍ୟ ସୂଚନା ନିମନ୍ତେ, ଯିବାକୁ ପଡ଼ିବ । ଆହୁରି ମଧ୍ୟ, ସେହିସବୁ ଗ୍ରୀକ୍, ଚୀନା ଏବଂ ପରବର୍ତ୍ତୀ ସମୟର ଆରବୀୟ ପର୍ଯ୍ୟଟକମାନଙ୍କ ବିହୁ ଦଲିଲ ଘାଣ୍ଟିବାକୁ ପଡ଼ିବ ।

ଏହି ଐତିହାସିକବୋଧର ଅଭାବ ଜନସାଧାରଣଙ୍କୁ କିନ୍ତୁ ସ୍ପର୍ଶ କରିନି, କାରଣ ଅନ୍ୟତ୍ର ଯେପରି ଓ ତଦପେକ୍ଷା ଆହୁରି ଅଧିକରେ, ପୁରୁଷାନୁକ୍ରମେପ୍ରାପ୍ତ ପାରମ୍ପରିକ ବିବରଣୀ, ଅତିକଥା ଓ କାହାଣୀ ଭିତରୁ ସେମାନେ ଅତୀତ ସମ୍ପର୍କରେ ସେମାନଙ୍କର ଦୃଷ୍ଟିକୋଣ ଗଢ଼ି ପାରିଥିଲେ । ଏହି କଳ୍ପିତ ଇତିହାସ ଏବଂ ପ୍ରକୃତ ଘଟଣା ଓ ଜନଶ୍ରୁତିର ମିଶ୍ର ଜନସାଧାରଣଙ୍କ ଭିତରେ ବ୍ୟାପ୍ତ ହେଲା ଏବଂ ସେମାନଙ୍କୁ ଗୋଟାଏ ଦୃଢ଼ ତଥା ସ୍ଥାୟୀ ସାଂସ୍କୃତିକ ପୃଷ୍ଠଭୂମି ଯୋଗାଇଲା । କିନ୍ତୁ ଇତିହାସକୁ ଅବଜ୍ଞା କରିବା ଫଳରେ ବହୁତ କିଛି ଅମଙ୍ଗଳ ଘଟିଲା ଯାହାର ଅନୁଧାବନ ଆମେ ଆଜି ସୁଦ୍ଧା କରି ଚାଲିଚୁ । ଏହା ଦୃଷ୍ଟିକୋଣର

ଅନିର୍ଦ୍ଦିଷ୍ଟତା, ଯଥାଯଥ ଜୀବନରୁ ବିଚ୍ଛେଦ, ସ୍ୱଳ୍ପ ପ୍ରମାଣ ଉପରେ ପୂର୍ଣ୍ଣ ବିଶ୍ୱାସସ୍ଥାପନର ବ୍ୟଗ୍ରତା ଏବଂ ସତ୍ୟ ଘଟଣା ସମ୍ବନ୍ଧରେ ମନର ଗୋଟାଏ ପ୍ରକାର ଅସ୍ପଷ୍ଟତା ଓ ଅନିଶ୍ଚିତତା ସୃଷ୍ଟି କଲା । କିନ୍ତୁ ସେହି ମନ ଅଧିକତର କଷ୍ଟସାଧ୍ୟ ଓ ଅବଶ୍ୟମ୍ଭାବୀ ଭାବରେ ଅଧିକତର ଅସ୍ପଷ୍ଟ ଓ ଅନିର୍ଦ୍ଦିଷ୍ଟ ଦର୍ଶନ କ୍ଷେତ୍ରରେ କେବେହେଲେ ଅସ୍ପଷ୍ଟ ବା ଅନିଶ୍ଚିତ ନଥିଲା । ସେହି ମନ ଥିଲା ଅନୁଶୀଳନାତ୍ମକ ଓ ସଂଶ୍ଳେଷଣାତ୍ମକ, ବହୁଧା ଅତିଶୟ ସମାଲୋଚନାପ୍ରବଣ ଓ ବେଳେବେଳେ ସଂଶୟୀ । କିନ୍ତୁ ସତ୍ୟ ଘଟଣା ସମ୍ବନ୍ଧରେ ତାର ସେପ୍ରକାର ସମାଲୋଚକ ଦୃଷ୍ଟି ନଥିଲା କାରଣ ନିର୍ଦ୍ଦିଷ୍ଟ ଘଟଣା ଉପରେ ତାହା ବିଶେଷ ଗୁରୁତ୍ୱ ଅର୍ପଣ କରୁ ନଥିଲା ।

ବିଜ୍ଞାନ ଓ ଆଧୁନିକ ବିଶ୍ୱର ଗୁରୁତ୍ୱ ଫଳରେ ସମାଲୋଚନା ଓ ପ୍ରମାଣଗୁଡ଼ିକୁ ଠିକ କରିବାର ବୁଦ୍ଧି ଉପୁଜିଲା ଏବଂ ପରମ୍ପରାକୁ ପରମ୍ପରା ଯେହେତୁ ବୋଲି ଗ୍ରହଣ କରିବା ପ୍ରତ୍ୟାଖ୍ୟାତ ହେଲା । ବର୍ତ୍ତମାନ ବହୁ ଦକ୍ଷ ଐତିହାସିକ କର୍ମରେ ଲିପ୍ତ ହୋଇଛନ୍ତି; କିନ୍ତୁ ଅପର ପାର୍ଶ୍ୱରେ ସେମାନେ ବହୁଧା ଭୁଲ୍ କରି ବସୁଛନ୍ତି ଏବଂ ସେମାନଙ୍କ କାର୍ଯ୍ୟ ଜୀବନ୍ତ ଇତିହାସ ହେବା ପରିବର୍ତ୍ତେ ଘଟଣାମାନଙ୍କର ଗୋଟାଏ ସସାବଧାନ ଅନୁକ୍ରମଣିକାରେ ପର୍ଯ୍ୟବସିତ ହେଉଛି । କିନ୍ତୁ ଆଜି ବି ଆମେ ପରମ୍ପରା ଦ୍ୱାରା ଅତ୍ୟଧିକ କିପରି ଅଭିଭୂତ ହୋଇପଡ଼ୁ, ପ୍ରକୃତରେ ବଡ଼ ବିଚିତ୍ର ଏବଂ ଏପରିକି ବୁଦ୍ଧିମାନ ଲୋକଙ୍କର ସମାଲୋଚନାତ୍ମକ ଶକ୍ତି ମଧ୍ୟ ନିବେଦ ହୋଇଯାଉଛି । ଏହା ଆଂଶିକ ଭାବରେ, ଆମର ଆଜିର ପରାଧୀନ ଅବସ୍ଥାରେ; ଆମକୁ ଶାସନକରୁଥିବା ଜାତୀୟତାବାଦ ଲାଗି ହୋଇଥାଇ ପାରେ । ଆମେ ଯେବେ ରାଜନୈତିକ ଓ ଅର୍ଥନୈତିକ ଦିଗରୁ ସ୍ୱାଧୀନ ହେବା ତେବେ ଯାଇ କେବଳ ଆମର ମନ ସ୍ୱାଭାବିକ ଭାବରେ ଓ ସମାଲୋଚକ ଭାବରେ କାର୍ଯ୍ୟ କରିବ ।

ଅଧୁନା ସମାଲୋଚନାତ୍ମକ ଦୃଷ୍ଟିଭଙ୍ଗୀ ଓ ଜାତୀୟତାବାଦୀ ପରମ୍ପରା ଭିତରେ ଏହି ସଂଘାତର ଗୋଟାଏ ତାତ୍ପର୍ଯ୍ୟପୂର୍ଣ୍ଣ ତଥା ପ୍ରକାଶମାନ ଦୃଷ୍ଟାନ୍ତ ଦେଖାଦେଇଛି । ଭାରତର ବୃହତ୍ତର ଭାଗରେ ବିକ୍ରମ ସମ୍ବତ୍ସର ଅନୁସୃତ ହୁଏ । ଏହା ସୌର ଗଣନା ଉପରେ ପ୍ରତିଷ୍ଠିତ; କିନ୍ତୁ ସାଧାରଣ ଗଣନାଗୁଡ଼ିକ ଚାନ୍ଦ୍ରଗତ ମାସରେ ଅର୍ଥାତ ୧୯୪୪ ଏପ୍ରିଲ୍‌ରେ ଏହି ପଞ୍ଜିକା ଅନୁଯାୟୀ ବିକ୍ରମ ସମ୍ବତ୍‌ର ଦୁଇହଜାର ବର୍ଷ ପୂର୍ଣ୍ଣ ହୋଇ ଗୋଟାଏ ନୂତନ ସହସ୍ରାବ୍ଦ ଆରମ୍ଭ ହେଲା । ଏଥି ଉଦ୍ଦେଶ୍ୟରେ ସମଗ୍ର ଭାରତରେ ଉତ୍ସବ ପାଳନ କରାଗଲା ଓ ଏହି ଉତ୍ସବ ପାଳନର ଯଥାର୍ଥତା ବି ଥିଲା । କାରଣ ସମୟ ଗଣନା ଦୃଷ୍ଟିରୁ ଏହା ଗୋଟାଏ ଅପୂର୍ବ ଅବସର ଏବଂ ବିକ୍ରମ ଅବା ବିକ୍ରମାଦିତ୍ୟ ଯାହାଙ୍କ ନାମ ସଙ୍ଗେ ଏହି ପଞ୍ଜିକା ସଂଶ୍ଳିଷ୍ଟ, ଲୋକପରମ୍ପରାରେ ବହୁକାଳରୁ ଜଣେ ମହାନ୍ ବୀର ଭାବରେ ପରିଚିତ ହୋଇ ଆସିଛନ୍ତି । ଅଗଣିତ କାହାଣୀ ତାଙ୍କର ନାମ ସଙ୍ଗେ ଜଡ଼ିତ ଏବଂ ମଧ୍ୟ-ଯୁଗରେ ଏଥିରୁ ବହୁତ କାହାଣୀ ଭିନ୍ନ ଭିନ୍ନ ରୂପରେ ପ୍ରଥମେ ଏସିଆ ଓ ପରେ ୟୁରୋପରେ ପ୍ରସାର ଲାଭ କଲା ।

ବହୁକାଳ ପୂର୍ବରୁ ଜଣେ ଜାତୀୟ ବୀର ଭାବରେ ଓ ଜଣେ ଗୁଣଗ୍ରାହୀ ଆଦର୍ଶ ନୃପତି ଭାବରେ ବିକ୍ରମ ବିବେଚିତ ହୋଇଆସିଛନ୍ତି । ସେ ସ୍ମରଣୀୟ ହୋଇଛନ୍ତି ଜଣେ ସମ୍ରାଟ ଭାବରେ ଯିଏ ସମସ୍ତ ବୈଦେଶିକ ଆକ୍ରମଣକାରୀଙ୍କୁ ଭାରତରୁ ବିତାଡ଼ିତ କରିଥିଲେ । କିନ୍ତୁ

ତାଙ୍କର ଖ୍ୟାତି ତାଙ୍କର ରାଜସଭାର ମହତ୍ତ୍ୱ ଲାଗି । ଦେଶର ସୁବିଖ୍ୟାତ କବି, କଳାକାର ଓ ସଙ୍ଗୀତଜ୍ଞ 'ନବରତ୍ନ' ରୂପରେ ତାଙ୍କର ରାଜସଭା ମଣ୍ଡନ କରିଥିଲେ । ତାଙ୍କ ସମ୍ପର୍କରେ କଥିତ ବହୁ କାହାଣୀରେ ଜନସାଧାରଣଙ୍କ କଲ୍ୟାଣବିଧାନ କରିବାର ଅଭିଲାଷ, ଫଳେ ମାନ୍ତ ପ୍ରରୋଚନାରେ ଅନ୍ୟ କାହାର କଲ୍ୟାଣ ନିମନ୍ତେ ନିଜର ବ୍ୟକ୍ତିଗତ ସ୍ୱାର୍ଥ ଏପରିକି ନିଜକୁ ମଧ୍ୟ ବଳିଦାନ ଦେବାର ଆତୁରତା ବିଷୟରେ ବର୍ଣ୍ଣିତ ହୋଇଛି । ତାଙ୍କର ଉଦାରତା, ଲୋକସେବା, ଧୈର୍ଯ୍ୟ ଓ ନିରହଙ୍କାର ଭାବ ଲାଗି ସେ ବିଖ୍ୟାତ । ସାରତଃ, ତାଙ୍କର ଜନପ୍ରିୟତାର ପ୍ରଧାନ କାରଣ ହେଉଛି ସେ ଜଣେ ମର୍ଯ୍ୟାଦାବାନ୍ ପୁରୁଷ ଏବଂ କଳା-ସାହିତ୍ୟ-ସଙ୍ଗୀତର ପୃଷ୍ଠପୋଷକ ଭାବରେ ସେ ବିବେଚିତ ହେଉଥିଲେ । ସେ ଯେ ଜଣେ ସଫଳ ଯୋଦ୍ଧା ଥିବା ଜଣେ ବିଖ୍ୟାତ ବିଜୟୀ ଖୁବ୍ ବିରଳ ଭାବରେ ତାଙ୍କ ସମ୍ପର୍କୀୟ କାହାଣୀମାନଙ୍କରୁ ଶୁଣିବାକୁ ମିଳିଥାଏ । ମଣିଷର ଉଦାରତା ଓ ଆତ୍ମବଳିଦାନର ପ୍ରଭାବ ଉପରେ ଏହି ଗୁରୁତ୍ୱ ଅର୍ପଣ ଭାରତୀୟ ମନ ଓ ଭାରତୀୟ ଆଦର୍ଶର ବୈଶିଷ୍ଟିକତା । ସିକେରିଙ୍କ ନାମଭଳି ବିକ୍ରମାଦିତ୍ୟଙ୍କ ନାମ ଗୋଟିଏ ପ୍ରକାର ପ୍ରତୀକ ଓ ଉପାଧି ହୋଇ ଉଠିଲା ଏବଂ ପରବର୍ତ୍ତୀ ଅଗଣିତ ନୃପତି ନିଜ ନାମ ସଙ୍ଗେ ତାହା ଯୋଗକରି ନିଜକୁ ଗୌରବାନ୍ୱିତ ମନେ କରୁଥିଲେ । ଏଥିରେ ଅନୁକ୍ରମିକ ଇତିହାସ ଅଧ୍ୟୟନରେ ବିଶୃଙ୍ଖଳା ଦେଖା ଦେଇଛି କାରଣ ସେଥିରୁ ବହୁ ବିକ୍ରମାଦିତ୍ୟଙ୍କ ନାମ ଦୃଷ୍ଟିଗୋଚର ହେଉଛି ।

କିନ୍ତୁ କିଏ ଏହି ବିକ୍ରମ ଓ ତାଙ୍କର ରାଜତ୍ୱକାଳ କେବେ ? ଇତିହାସ ଦୃଷ୍ଟିରୁ ଦେଖିଲେ ଏ ବିଷୟରେ ସବୁକିଛି ଅସ୍ପଷ୍ଟ । ଖ୍ରୀଷ୍ଟ ଜନ୍ମର ୫୭ ବର୍ଷ ପୂର୍ବେ ଯେବେ ବିକ୍ରମ ସମ୍ବତ୍ ଆରମ୍ଭ ହେବା ଜଣାଯାଏ, ସେ ସମୟରେ ବିକ୍ରମନାମକ କୌଣସି ରାଜାର ଚିହ୍ନ ମିଳୁ ନାହିଁ । ତେବେ ଖ୍ରୀଷ୍ଟୀୟ ଚତୁର୍ଥ ଶତକରେ ଉତ୍ତର ଭାରତରେ ବିକ୍ରମାଦିତ୍ୟ ନାମରେ ଜଣେ ରାଜା ଥିଲେ ଯିଏ ହୂଣମାନଙ୍କ ଆକ୍ରମଣ ପ୍ରତିହତ କରିଥିଲେ । ଇଏ ସେହି ବିକ୍ରମାଦିତ୍ୟ ଯାହାଙ୍କ ରାଜସଭାରେ 'ନବରତ୍ନ' ଥିଲେ ଓ ଯାହାଙ୍କୁ କେନ୍ଦ୍ର କରି ଏହିସବୁ କାହାଣୀ ଓ କିମ୍ବଦନ୍ତୀ ଗଢ଼ି ଉଠିଥିବା ଅନୁମିତ ହୁଏ । ତାହାହେଲେ ସମସ୍ୟା ହେଉଛି—ଏହି ବିକ୍ରମାଦିତ୍ୟ ଯଦି ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଥିଲେ, ଖ୍ରୀଷ୍ଟ ଜନ୍ମର ୫୭ ବର୍ଷ ପୂର୍ବେ ଆରମ୍ଭ ହୋଇଥିବା ବିକ୍ରମସମ୍ବତ୍ ସଙ୍ଗେ ସେ ସଂପୃକ୍ତ ହେଲେ କିପରି ? ଏହାର ଗୋଟାଏ ପ୍ରକାର ବ୍ୟାଖ୍ୟା ଦିଆଯାଇପାରେ ଯେ ଖ୍ରୀଷ୍ଟ ଜନ୍ମର ୫୭ ବର୍ଷ ପୂର୍ବେ ମଧ୍ୟ ଭାରତର ମାଳବ ରାଜ୍ୟରେ ଯେଉଁ କାଳ ଚାଲିଥିଲା ବିକ୍ରମଙ୍କ ବହୁକାଳ ପରେ ସେହି କାଳ ଓ ପଞ୍ଜିକାକୁ ତାଙ୍କ ସଙ୍ଗେ ସମ୍ପର୍କିତ କରି ଦିଆଗଲା ଓ ତାଙ୍କ ନାମରେ ନାମିତ କରାଗଲା । କିନ୍ତୁ ଏ ସବୁ ଅସ୍ପଷ୍ଟ ଓ ଅନିର୍ଦ୍ଦିଷ୍ଟ ।

ସେହିସବୁ ବର୍ତ୍ତମାନ ଲୋକେ ଯେଉଁମାନେ ଇତିହାସ ନେଇ ଚର୍ଚ୍ଚା କରିଥାନ୍ତି, ଦୁଇ ହଜାର ବର୍ଷ ତଳର ଗୋଟାଏ ଗଳ୍ପ ସଙ୍ଗେ ପାରମ୍ପରିକ ବୀର ବିକ୍ରମଙ୍କୁ ଯେ କୌଣସି ପ୍ରକାରେ ସଂଶ୍ଳିଷ୍ଟ କରିବା ନିମନ୍ତେ ଯେପରି ଭାବରେ ବ୍ୟାଖ୍ୟା ପରିବେଷଣ କରୁଛନ୍ତି ସବୁଠାରୁ ବଡ଼ ଆଶ୍ଚର୍ଯ୍ୟ କଥା । ଆହୁରି ମଧ୍ୟ, ବୈଦେଶିକ ଶତ୍ରୁମାନଙ୍କ ସଙ୍ଗେ ଲଢ଼ି, ସେମାନଙ୍କୁ ପ୍ରତିହତ କରି, ଗୋଟାଏ ଜାତୀୟ ରାଷ୍ଟ୍ର ଭାବରେ ଭାରତର ଏକତା ପ୍ରତିଷ୍ଠା କରିବା ଅଭିଳାଷ

ତାଙ୍କର ଥିଲି ବୋଲି ସେଥି ଉପରେ ବର୍ତ୍ତମାନ ଯେଉଁ ଜୋର୍ ଦିଆଯାଉଚି ତାହା ମଧ୍ୟ କୌତୂହଳ ଉଦ୍ଦୀପକ । ବସ୍ତୁତଃ, ବିଜୟମାନଙ୍କ ରାଜ୍ୟ ଉତ୍ତର ଓ ମଧ୍ୟଭାରତ ଭିତରେ ଅବସ୍ଥିତ ଥିଲି ।

ଭାରତୀୟମାନେ କେବଳ ନୁହନ୍ତି, ଯେଉଁମାନେ ଜାତୀୟବାଦୀ ପ୍ରେରଣା ଓ କଳ୍ପିତ ଜାତୀୟ ସ୍ୱାର୍ଥ ଦ୍ୱାରା ପ୍ରଭାବିତ ହୋଇ ଇତିହାସ ଲେଖିଚନ୍ତି ଅବା ତାର ବିଚାର କରିଚନ୍ତି, ଯେପରି ପ୍ରତ୍ୟେକ ଜାତି ନିଜର ଅତୀତକୁ ଉନ୍ନତ କରି ଦେଖାଇବା ଅଭିଳାଷରେ ଓ ନିଜର ସୁବିଧା ଦୃଷ୍ଟିରୁ ତାକୁ ଅଯଥା ରଞ୍ଜିତ ଅବା ବିକୃତ କରିବା ଅଭିଳାଷରେ ପ୍ରଭାବିତ ହେବା ଅନୁମିତ ହୁଏ । ଭାରତର ଯେଉଁସବୁ ଇତିହାସ ଗ୍ରନ୍ଥ ଆମ୍ଭମାନଙ୍କ ଭିତରୁ ଅନେକଙ୍କୁ ପଢିବାକୁ ପଡ଼ିଚି; ପ୍ରଧାନତଃ ସେ ସବୁ ଇଂରେଜଙ୍କ ଦ୍ୱାରା ଲିଖିତ । ସେଥିରେ ସାଧାରଣତଃ ବ୍ରିଟିଶ ରାଜତ୍ୱ ବିଷୟରେ ନାନା କୈଫିୟତ ଓ ତାର ଗୁଣଗାନ କରିବା ଆଭିମୁଖ୍ୟ ଭାବରେ ଗ୍ରହଣ କରାଯାଇଚି । ଅଧିକନ୍ତୁ ମଧ୍ୟ ବ୍ରିଟିଶ୍ ରାଜତ୍ୱର ହଜାର ହଜାର ବର୍ଷ ପୂର୍ବେ ଭାରତରେ ଯାହା ସବୁ ଘଟିଚି ତାର ବିବରଣୀ ଦେଲାବେଳେ ନିଜର ଘୃଣା ଭାବକୁ ବଡ଼ କୌଶଳରେ ଆଚ୍ଛାଦିତ କରାଯାଇଚି । ପ୍ରକୃତପକ୍ଷେ, ସେମାନଙ୍କ ଦୃଷ୍ଟିରେ ଭାରତର ଇତିହାସ ଆରମ୍ଭ ହେଲା ଭାରତରେ ଇଂରେଜର ଆବିର୍ଭାବ ପରେ । ତା ପୂର୍ବରୁ ଯାହାକିଛି କୌଣସି ପ୍ରକାରେ ଅପରିଜ୍ଞାତ ମାର୍ଗରେ ଚାଲିଥିଲା, ସେ ଏହି ନୈସର୍ଗିକ ପୂର୍ଣ୍ଣତା ନିମନ୍ତେ ଗୋଟାଏ ପ୍ରସ୍ତୁତି କେବଳ । ଏପରିକି ବ୍ରିଟିଶ ରାଜତ୍ୱ ଓ ବ୍ରିଟିଶ ସଦ୍‌ଗୁଣକୁ ଗୌରବାନ୍ୱିତ କରିବା ଉଦ୍ଦେଶ୍ୟରେ ବ୍ରିଟିଶ ରାଜତ୍ୱର ଇତିହାସକୁ ମଧ୍ୟ ବିକୃତ କରାଯାଇଚି । ଖୁବ୍ ଧୀରେ ଧୀରେ କିନ୍ତୁ ଅଧିକତର ଅଭ୍ରାନ୍ତ ଗୋଟାଏ ପରିପ୍ରେକ୍ଷୀ ବିକାଶଲାଭ କରୁଚି । କିନ୍ତୁ କେତେକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସଙ୍ଗେ ମିଳିବା ଭଳି ଓ ନିଜର କେତେକ ଖିଆଲ ଓ ବିଦ୍ୱେଷ ଭାବକୁ ସମର୍ଥନ ଯୋଗାଇବା ପାଇଁ କୌଶଳରେ କିପରି ଇତିହାସକୁ ବିକୃତ କରାଯାଇପାରେ ତାର ଦୃଷ୍ଟାନ୍ତ ଖୋଜି ଅତୀତରେ ପ୍ରବେଶ କରିବାର ଆବଶ୍ୟକତା ନାହିଁ । ବର୍ତ୍ତମାନ ମଧ୍ୟ ସେପରି ଦୃଷ୍ଟାନ୍ତରେ ପୂର୍ଣ୍ଣ ହୋଇ ରହିଚି । ଯେଉଁ ବର୍ତ୍ତମାନକୁ ଆମେ ଦେଖୁଥାଉଁ ଓ ଅନୁଭବ କରୁଥାଉଁ ତାକୁ ଯଦି ବିକୃତ ଭାବରେ ପରିବେଷଣ କରାଯାଇପାରେ, ଅତୀତ ପାଇଁ କି ଭରସା !

ସେ ଯାହାହେଉ, ଏକଥା ସତ୍ୟ ଯେ ପରମ୍ପରାକୁ ଗ୍ରହଣ କରି, ବିନା ସମାଲୋଚନା ଓ ପରୀକ୍ଷା-ନିରୀକ୍ଷାରେ, ଇତିହାସ ଭାବରେ ପରିବେଷଣ କରିବାରେ ଭାରତୀୟମାନେ ହିଁ ପ୍ରକୃତରେ ଦାୟୀ । ଏ ପ୍ରକାର ଅସମ୍ବନ୍ଧ ବିଚାର ଓ ନିଷ୍ପତ୍ତିରେ ଉପନୀତ ହେବାର ସହଜ ମାର୍ଗ ସେମାନଙ୍କୁ ଛାଡ଼ିବାକୁ ପଡ଼ିବ ।

କିନ୍ତୁ ମୂଳ ବିଷୟ ଛାଡ଼ିଦେଇ ମୁଁ ଦେବଦେବୀଙ୍କ ପାଖରୁ ଆଉ ସେ ସବୁ ଦିନରୁ, ଯେବେ ଅତିକଥା ଓ କିମ୍ବଦନ୍ତୀ ଆରମ୍ଭ ହୋଇଥିଲା, ଦୂରକୁ ଚାଲିଯାଇଚି । ସେ ସବୁ ସମୟରେ ଜୀବନ ପୂର୍ଣ୍ଣ ଥିଲା ଓ ପ୍ରକୃତି ସଙ୍ଗେ ଜୀବନର ସଙ୍ଗତି ଥିଲା; ବ୍ରହ୍ମାଣ୍ଡର ରହସ୍ୟ ଭିତରକୁ ଯେବେ ମଣିଷର ମନ ଆନନ୍ଦ ଓ ବିସ୍ମୟରେ ଚାହିଁଥିଲା; ଯେବେ ସ୍ୱର୍ଗ ଓ ମର୍ତ୍ତ୍ୟ ପରସ୍ପର

ଖୁବ୍ ନିକଟବର୍ତ୍ତୀ ମନେ ହେଉଥିଲି ଓ ଦେବଦେବୀମାନେ କୈଳାସରୁ ଅବା ହିମାଳୟର ଅନ୍ୟ କେଉଁ ଦେବତାନିବାସରୁ ଓଲିମ୍ପାସ୍ ପର୍ବତର ଦେବତାମାନଙ୍କ ଭଳି ନରନାରୀଙ୍କ ସଙ୍ଗେ କ୍ରୀଡ଼ା କରିବା ପାଇଁ ଓ ଆବଶ୍ୟକ ହେଲେ ସେମାନଙ୍କୁ ଦଣ୍ଡଦେବା ପାଇଁ ତଳକୁ ଖସି ଆସୁଥିଲେ । ଏହି ପ୍ରଚୁରତାର ଜୀବନ ଓ ସମୃଦ୍ଧ କଳ୍ପନା ଭିତରୁ ଅଦ୍ଭୁତକଥା ଓ କିମ୍ବଦନ୍ତୀ ଏବଂ ଶକ୍ତିଶାଳୀ ତଥା ସୁନ୍ଦର ଦେବଦେବୀମାନେ ଗଢ଼ିଉଠିଲେ କାରଣ ପ୍ରାଚୀନ ଭାରତୀୟମାନେ ଗ୍ରୀକ୍ମାନଙ୍କ ଭଳି ସୌନ୍ଦର୍ଯ୍ୟ ଓ ଜୀବନର ପୂଜାରୀ ଥିଲେ । ଅଧ୍ୟାପକ ଗିଲ୍‌ବର୍ଟ ମୁରେ (୧) ଆମକୁ ଓଲିମ୍ପୀୟ ଦେବଦେବୀଙ୍କ ପରେ ସୌନ୍ଦର୍ଯ୍ୟ ବିଷୟରେ କହନ୍ତି । ତାଙ୍କର ବର୍ଣ୍ଣନା ଭାରତୀୟ ମନର ପ୍ରଥମାବସ୍ଥାର ସୃଷ୍ଟି ସମ୍ପର୍କରେ ମଧ୍ୟ ପ୍ରଯୁଜ୍ୟ ହୋଇପାରେ । "ସେ ସବୁ କଳାବିତ୍ତର କେତେ ସ୍ୱପ୍ନ, କେତେ ଆଦର୍ଶ ଓ କେତେ ରୂପକ; ଯାହା ସେମାନଙ୍କର ଅତୀତ, ସେମାନେ ତାର ହିଁ ପ୍ରତୀକ । ସେମାନେ ଅର୍ଦ୍ଧ-ପ୍ରତ୍ୟାଖ୍ୟାତ ପରମ୍ପରାର, ଅଚେତନ ଛଳନାର ଓ ଇଚ୍ଛାଭିଳାଷର ଦେବତାଗଣ । ସେମାନେ ଦେବତା ଯାହାଙ୍କୁ, ଜଣେ ଦାର୍ଶନିକର ବହୁତ ସାବଧାନତା ହେତୁକାରେ, ଯଶସ୍ୱୀ ଦାର୍ଶନିକମାନେ ପ୍ରାର୍ଥନା କରିପାରନ୍ତି, ଯେପରି କରିଥାନ୍ତି ତାଙ୍କର ନାନା ସମୁଜ୍ଜ୍ୱଳ ଓ ହୃଦୟସ୍ଥ ଆଲୋଡ଼ନକାରୀ ଉପକଳ୍ପନାକୁ । ସେମାନେ ଯେପରି ଦେବତା ନୁହନ୍ତି ଯାହାଙ୍କୁ କେହିହେଲେ ଗୋଟାଏ ନିର୍ଦ୍ଦିଷ୍ଟ ସତ୍ୟ ଭାବରେ ବିଶ୍ୱାସ କରିବ ।" ଅଧ୍ୟାପକ ମୁରେ ଆହୁରି ଯାହା କହନ୍ତି ତାହା ଭାରତ ପାଇଁ ମଧ୍ୟ ପ୍ରଯୁଜ୍ୟ : "ମଣିଷ ଦ୍ୱାରା ଉତ୍କୀର୍ଣ୍ଣ କୌଣସି ସୁନ୍ଦରତମ ପ୍ରତିମା ଯେପରି ଦେବତା ନୁହେଁ, ସେହି ଦେବତାର ଧାରଣା ମନରେ ଆଣିବା ଦିଗରେ ସହାୟକ ଗୋଟାଏ ପ୍ରତୀକ କେବଳ, ସେହିପରି ସେହି ଦେବତା ମଧ୍ୟ ଧାରଣା କରାଯିବା ପରେ ପ୍ରକୃତ ସତ୍ୟ ନୁହେଁ; ସେହି ସତ୍ୟର ଧାରଣା କରିବା ଦିଗରେ ସହାୟକ ଗୋଟିଏ ପ୍ରତୀକ କେବଳ... ଇତିମଧ୍ୟରେ ଜ୍ଞାନକୁ ଖଣ୍ଡନ କରିବା ଭଳି କୌଣସି ମତବାଦ ଓ ତାର ଆନ୍ତରିକ ଆନ୍ଦୋଳକ ପ୍ରତି ପାପ କରିବା ଭଳି କୌଣସି ଆଦେଶନାମା ସେମାନେ ଜାରି କରି ନଥିଲେ ।"

କ୍ରମଶଃ ବୈଦିକ ଦେବଦେବୀ ଓ ଅନ୍ୟାନ୍ୟ ଦେବ-କଳ୍ପନାର କାଳ ପଛକୁ ହଟିଗଲା ଏବଂ ତାର ସ୍ଥାନ ଅଧିକାର କଲା କଠିନ ତଥା ଜଟିଳ ଦର୍ଶନ; କିନ୍ତୁ ଲୋକଙ୍କ ମନରେ, କେତେ ସୁଖ ଓ ଦୁଃଖର ସାଥୀ ସେହି ସବୁ ପ୍ରତିମା, ଅସ୍ପଷ୍ଟ ଭାବରେ ଅନୁଭୂତ ସେମାନଙ୍କର କେତେ ଆଦର୍ଶ ଓ ଇଚ୍ଛାଭିଳାଷ ଭାସମାନ ଥିଲା । ସେ ସମସ୍ତଙ୍କୁ ଘେରି କମନୀୟ କଳ୍ପନା ଓ ଅଳଙ୍କାରବହୁଳ କଳାକୃତିରେ ପୂର୍ଣ୍ଣ, କବିମାନେ ସେମାନଙ୍କର ସ୍ୱପ୍ନର ରାଜ୍ୟ ନିର୍ମାଣ କଲେ । ବହୁତ କିଛି ଜନଶ୍ରୁତି ଓ କବିକଳ୍ପନାକୁ ଏଫ୍-ଡବ୍ଲୁ-ବେଇନ୍ ତାଙ୍କର ଭାରତୀୟ ପୌରାଣିକ ଗାଥା ଗ୍ରନ୍ଥମାଳାରେ ବଡ଼ ସୁନ୍ଦର ଶୈଳୀରେ ପରିବେଷଣ କରିଚନ୍ତି । ସେଥିରୁ ଗୋଟିଏ କାହାଣୀ 'ଡିଜିଟ୍ ଅଫ୍ ଦି ମୁନ୍' ଅର୍ଥାତ୍ 'ଚନ୍ଦ୍ରକଳା' କାହାଣୀରେ ନାରୀ କିପରି

(୧) ଗିଲ୍‌ବର୍ଟ ମୁରେଙ୍କ 'ଫାଇଭ ଷ୍ଟେଜେସ୍ ଅଫ୍ ଗ୍ରୀକ୍ ରେଲିଜନ୍'—ପୃ.୭୭ (ଥିଙ୍କେର୍ସ ଲାଇବ୍ରେରୀ, ଲଣ୍ଡନ ) ।

ସୃଷ୍ଟି ହେଲା କୁହାଯାଇଛି: "ପ୍ରଥମେ ତ୍ୱଷ୍ଟା ଅର୍ଥାତ୍ ବିଶ୍ୱକର୍ମା ଯେବେ ନାରୀ ସୃଷ୍ଟି କରିବାକୁ ବସିଲେ, ସେ ଦେଖିଲେ ଯେ ନର ତିଆରି କରିବାରେ ତାଙ୍କର ସମସ୍ତ ସାମଗ୍ରୀ ଶେଷ ହୋଇ ଯାଇଛି । ଆଉ ଯେପରି କିଛି ସାନ୍ଦ୍ର ତଥା ସାରବସ୍ତୁ ଅବଶିଷ୍ଟ ନାହିଁ । ଏହି ଉଭୟ ସଙ୍କଟରେ ପଡ଼ି, ଗମ୍ଭୀରଭାବରେ ଚିନ୍ତାକରି, ସେ ପରିଶେଷରେ ଚନ୍ଦ୍ରର ବର୍ତ୍ତୁଳତା, ବ୍ରତତୀର ବକ୍ରତା, ଲତା-ତନ୍ତୁର ଦୋଳନ, ଦୁର୍ବାଦଳର କମ୍ପନ, ଶର ଘାସର କୃଶତା, ଫୁଲର ଫୁଲ୍ଲତା, ପତ୍ରର ଲଘୁତା, ହସ୍ତୀ ଶୁଣ୍ଢର କ୍ରମ-ସୂକ୍ଷ୍ମତା, ହରିଣର ଚାହାଣି, ମଧୁମକ୍ଷିକାର ଗୁଞ୍ଜନ, ସୂର୍ଯ୍ୟରଶ୍ମିର ଆନନ୍ଦ କ୍ରୀଡ଼ା, ମେଘର କ୍ରନ୍ଦନ, ବାୟୁର ଚଞ୍ଚଳତା, ଶଶକର ଭୀରୁତା, ମୟୂରର ବୃଥାଭିମାନ, ଶୁକ ବକ୍ଷର କୋମଳତା, ହୀରକର କଠିନତା, ମଧୁର ମଧୁରତା, ବ୍ୟାଘ୍ରର ନିର୍ଦ୍ଦୟତା, ଅଗ୍ନିର ଶିଖାହୀନ ଆଲୋକ, ସାରସର ଶଠତା, ବରଫର ଶୀତଳତା, ନୀଳକଣ୍ଠ ପକ୍ଷୀର କାକଳୀ, କୋକିଳର କୁହୁ ଓ ଚକ୍ରବାକର ବିଶ୍ୱସ୍ତତା ମିଶ୍ରିତ କରି ନାରୀକୁ ତିଆରି କଲେ ଓ ତାକୁ ନର ହାତରେ ସମର୍ପଣ କଲେ ।"

## ୧୩. ମହାଭାରତ

ପୁରାଣ ଗୁଡ଼ିକର କାଳ ନିରୂପଣ କରିବା କଷ୍ଟକର । ଆର୍ଯ୍ୟମାନଙ୍କର ବସତି ସ୍ଥାପନ ଓ ଆସ୍ଥାନ ଦୃଢ଼ କରିବା ଅବସ୍ଥା ଏ ଗୁଡ଼ିକରେ ବର୍ଣ୍ଣିତ ହୋଇଛି । ସ୍ପଷ୍ଟତଃ ବହୁ ରଚୟିତା ଏସବୁ ରଚନା କରିଚନ୍ତି କିମ୍ବା ପରବର୍ତ୍ତୀ କାଳମାନଙ୍କରେ ମୂଳ ବିଷୟରେ ଆଉ କିଛି କିଛି ଯୋଗ କରିଚନ୍ତି । ମହାକାବ୍ୟ ରାମାୟଣରେ ବିଷୟବସ୍ତୁର ଅବତାରଣା ପଛରେ ଗୋଟାଏ ନିର୍ଦ୍ଦିଷ୍ଟ ଏକତ୍ୱର ଅନୁଧାବନ ପରିଲକ୍ଷିତ ହୁଏ । ମହାଭାରତ ପ୍ରାଚୀନ ଜ୍ଞାନ ଓ ବିବିଧ କାହାଣୀର ଗୋଟାଏ ବିଶାଳ ସମାହାର । ପ୍ରାକ୍‌ବୌଦ୍ଧ କାଳରେ ଏ ଦୁଇଟି ପୁରାଣ ରଚିତ ହୋଇଥିବ ଯଦିଓ, ପରବର୍ତ୍ତୀ କାଳରେ ନିଃସନ୍ଦେହରେ ସେଥିରେ ନୂଆ ନୂଆ ବିଷୟ ଯୋଗ କରାଯାଇଛି ।

ଫରାସୀ ଐତିହାସିକ ମିଶେଲ୍ ୧୮୬୪ ଖ୍ରୀଷ୍ଟାବ୍ଦରେ ଏହି ଉଭୟ ପୁରାଣ ବିଷୟରେ, ବିଶେଷକରି ରାମାୟଣ ବିଷୟରେ, ଉଲ୍ଲେଖ କରିଚନ୍ତି—"ଯିଏ କେହି ମହତ୍ କାମ କରିଚନ୍ତି ଅଥବା ମହଦାକାଙ୍କ୍ଷା ପୋଷଣ କରନ୍ତି, ସେ ଏହି ଗଭୀର ପାତ୍ରରୁ ଜୀବନ ଓ ଯୌବନ ପୂର୍ଣ୍ଣ ପ୍ରାଣରେ ପାନ କରନ୍ତୁ···ପାଶ୍ଚାତ୍ୟରେ ସବୁ କିଛି ସଙ୍କୀର୍ଣ୍ଣ—ଗ୍ରୀସ୍ ଅତି କ୍ଷୁଦ୍ର ଓ ତାହା ମତେ ଶ୍ୱାସରୁଦ୍ଧ କରେ; ଜୁଡ଼ିଆ ଅତି ଶୁଷ୍କ ଓ ସେଥିରେ ମୁଁ ଧଇଁସଇଁ ହୁଏ । ମତେ ବିଶାଳ ଏସିଆ ଓ ରହସ୍ୟମୟ ପ୍ରାଚ୍ୟ ଆଡ଼କୁ କ୍ଷଣେ ଚାହିଁବାକୁ ଦିଅ । ସେଇଠି ଅଛି ମୋର ମହାକାବ୍ୟ—ଭାରତ ମହାସାଗର ଭଳି ବିସ୍ତୃତ, ମଙ୍ଗଳମୟ ସୂର୍ଯ୍ୟ କିରଣରେ ଝଲମଲ, ସୁସମ୍ବଦ୍ଧ ନିସର୍ଗତାର ମହାଗ୍ରନ୍ଥ ଯେଉଁଥିରେ ଅପସ୍ୱରର ଲେଶମାତ୍ର ନାହିଁ । ସେଠାରେ ଅତୁଳ ଏକ ପ୍ରଶାନ୍ତି ବିରାଜିତ କରେ ଏବଂ ସଂଘର୍ଷ ଭିତରେ ଗୋଟାଏ ଅନନ୍ତହୀନ ମଧୁରତା, ସୀମାହୀନ ସୌଭ୍ରାତୃତ୍ୱ, ଯାହା ସବୁକିଛି ଜୀବ-ସତ୍ତାରେ ବିସ୍ତୃତ, ପ୍ରେମ କରୁଣା ଓ ସହାନୁଭୂତିର ଅତଳ ଏକ ମହାସାଗର ।"

ପୁରାଣଭାବରେ ମହାକାବ୍ୟ ରାମାୟଣ ଜନସାଧାରଣଙ୍କ ଭିତରେ ତାର ମହତ୍ତ୍ୱ ଯେପରି

ଅଖଣ୍ଡ ଭାବରେ ଆବୃତ୍ତ ହୋଇ ଆସିଥିଲେ ମଧ୍ୟ ପୃଥିବୀର ବିଖ୍ୟାତ ଗ୍ରନ୍ଥମାନଙ୍କ ଭିତରେ ମହାଭାରତ ବାସ୍ତବରେ ଅନ୍ୟତମ । ଏହା ଏକ ବିଶାଳ ରଚନା, ପରମ୍ପରା ଓ ଜନଶ୍ରୁତି ଏବଂ ପ୍ରାଚୀନ ଭାରତର ରାଜନୈତିକ ଓ ସାମାଜିକ ଅନୁଷ୍ଠାନମାନଙ୍କର ଏହା ଗୋଟାଏ ଜ୍ଞାନକୋଷ । ଗୋଟାଏ ଦଶନ୍ଧି ଅବା ତତୋଽଧିକ ବର୍ଷଧରି ବହୁ ଦକ୍ଷ ଭାରତୀୟ ବିଦ୍ୱାନ୍ ଏହି ମହାପୁରାଣର ସମାଲୋଚନାମୂଳକ ପରୀକ୍ଷା ଓ ଗୋଟାଏ ପ୍ରାଧିକୃତ ସଂସ୍କରଣ ପ୍ରକାଶ କରିବା ଉଦ୍ଦେଶ୍ୟରେ ବିବିଧ ଧାରାରେ ପରିବେଶିତ, ପ୍ରାପ୍ତ ପାଠ୍ୟଗୁଡ଼ିକ ସଂକଳନ କରିବାରେ ନିୟୋଜିତ ଅଛନ୍ତି । ସେହି ସଂକଳନର କିୟଦଂଶ ସେମାନେ ପ୍ରକାଶ କଲେଣି ଯଦିଓ, କାର୍ଯ୍ୟ ଆହୁରି ଅସମ୍ପୂର୍ଣ୍ଣ ରହିଚି ଓ ପୂର୍ଣ୍ଣ କରିବାର ପ୍ରୟାସ ଚାଲିଚି । ଏଠାରେ ଲକ୍ଷ୍ୟ କରିବାର କଥା, ଏହି ବିଶ୍ୱଯୁଦ୍ଧର ଭୟାବହତା ଭିତରେ ମଧ୍ୟ ରୁଷିଆର ପ୍ରାଚ୍ୟଭାଷାବିଦ୍-ମାନେ ମହାଭାରତର ଗୋଟାଏ ରସିୟାନ୍ ଭାଷାନ୍ତରଣ ପ୍ରକାଶ କରିଚନ୍ତି ।

ସମ୍ଭବତଃ, ଏହା ଥିଲା ସେହି ସମୟ ଯେବେ ବହୁ ବିଦେଶୀ ଜାତି ସେମାନଙ୍କର ବିବିଧ ପ୍ରଥା ସଙ୍ଗେ ଧରି ଭାରତକୁ ଆସୁଥିଲେ । ଏହି ସବୁ ପ୍ରଥାର ଅଧିକାଂଶ ଆର୍ଯ୍ୟମାନଙ୍କ ପ୍ରଥା ସଙ୍ଗେ ମିଳୁ ନଥିଲା । ଅତଏବ, ବିବିଧ ବିରୋଧୀ ବିଚାର ଓ ପ୍ରଥାର ଗୋଟାଏ ବିଚିତ୍ର ମିଶ୍ରଣ ଦେଖିବାକୁ ମିଳେ । ଆର୍ଯ୍ୟମାନଙ୍କ ଭିତରେ ବହୁବର ପ୍ରଥା ନଥିଲା । ତଥାପି ମହାଭାରତର ଜଣେ ପ୍ରଧାନ ବୀରାଙ୍ଗନା ପଞ୍ଚପତି ବରଣ କରିଥିଲେ । କ୍ରମଶଃ ଭାରତର ତାତ୍କାଳିକ ଦେଶଜ ଜାତି ଓ ନବାଗତ ଜାତିମାନଙ୍କ ଭିତରେ ପାରସ୍ପରିକ ବିନିମୟ ଚାଲିଲା ଏବଂ ତଦନୁସାରେ ବୈଦିକ ଧର୍ମରେ ଆବଶ୍ୟକୀୟ ପରିବର୍ତ୍ତନ କରାଯାଇଥିଲା । ଏହି ସମୟରେ ବୈଦିକ ଧର୍ମ ଯେପରି ସର୍ବଗ୍ରାହୀ ସ୍ୱରୂପ ପରିଗ୍ରହ କରିବା ଆରମ୍ଭ କରିଥିଲା; ତାହାର ପରିଣତି ଆଧୁନିକ ହିନ୍ଦୁ ଧର୍ମ । ଏହା ସମ୍ଭବ ହୋଇପାରିଲା କାରଣ ଏହାର ମୌଳିକ ଆଭିମୁଖ୍ୟ ହୁଏତ ଥିଲା ଯେ ସତ୍ୟ ଉପଲବ୍ଧି କୌଣସି ଧର୍ମର ଏକଚାଟିଆ ଅଧିକାର ନୁହେଁ ଏବଂ ତାହା ପ୍ରତ୍ୟକ୍ଷ କରିବା ଓ ସେଥିରେ ଉପନୀତ ହେବାର ପନ୍ଥା ବହୁବିଧ । ଅତଏବ, ସବୁପ୍ରକାର ମତବିଶ୍ୱାସ ଏପରିକି ବହୁ ପରସ୍ପର ଖଣ୍ଡନଶୀଳ ମତବିଶ୍ୱାସ ମଧ୍ୟ ବରଦାସ୍ତ କରାଯାଉଥିଲା ।

ମହାଭାରତରେ ଭାରତର ଅର୍ଥାତ୍ ଭାରତବର୍ଷର ମୌଳିକ ଏକତା ଉପରେ ଗୁରୁତ୍ୱ ଦେବା ଦିଗରେ ନିର୍ଦ୍ଦିଷ୍ଟ ତଥା ନିଶ୍ଚିତ ପ୍ରୟାସ କରାଯାଇଚି । ଜାତିର ପ୍ରତିଷ୍ଠାତା ପୁରାଣ-ପୁରୁଷ ଭରତଙ୍କ ନାମରୁ ଭାରତବର୍ଷ ନାମର ଉତ୍ପତ୍ତି । ତା' ପୂର୍ବରୁ ଭାରତର ନାମ ଥିଲା ଆର୍ଯ୍ୟାବର୍ତ୍ତ ଅର୍ଥାତ୍ ଆର୍ଯ୍ୟମାନଙ୍କ ବାସଭୂମି; କିନ୍ତୁ ଏହା ଉତ୍ତର-ଭାରତ ଓ ମଧ୍ୟ-ଭାରତର ବିନ୍ଧ୍ୟ ପର୍ବତମାଳା ପର୍ଯ୍ୟନ୍ତ କେବଳ ବିସ୍ତୃତ ଥିଲା । ଆର୍ଯ୍ୟମାନେ ସମ୍ଭବତଃ ସେହି ସମୟରେ ବିନ୍ଧ୍ୟର ଅପରପାର୍ଶ୍ୱରେ ପ୍ରବେଶ କରିପାରି ନଥିଲେ । ରାମାୟଣ ଦକ୍ଷିଣକୁ ଆର୍ଯ୍ୟ ସମ୍ପ୍ରସାରଣର କାହାଣୀ । ମହାଭାରତରେ ବର୍ଣ୍ଣିତ ପରବର୍ତ୍ତୀ ସମୟର ମହା ଗୃହଯୁଦ୍ଧ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ଘଟିଥିବା ଅସ୍ପଷ୍ଟ ଭାବରେ ଅନୁମିତ ହୁଏ । ଭାରତର (ଅବା ଖୁବ୍ ସମ୍ଭବ ଉତ୍ତର-ଭାରତର) ସମ୍ରାଟ ପଦ ନିମନ୍ତେ ସେହି ଯୁଦ୍ଧ ଚାଲିଥିଲା ଏବଂ ଅଖଣ୍ଡ ଭାରତବର୍ଷ ଅବଧାରଣାର ଶୁଭ ପଡ଼ିଥିଲା । ଏହି ଅବଧାରଣାରେ ଆଧୁନିକ ଅଫଗାନିସ୍ଥାନର ବଡ଼

ଏକ ଅଂଶ, ସେତେବେଳେ ଯାହା ଗାନ୍ଧାର (ଯେଉଁଥିରୁ ଆଜିର କାନ୍ଦାହାର ନଗରୀ ନାମର ଉତ୍ପତ୍ତି) ନାମରେ ପରିଚିତ ଥିଲା, ଏକ ଅଚ୍ଛେଦ୍ୟ ଅଂଶ ଭାବରେ ଭାରତବର୍ଷର ଅନ୍ତର୍ଭୁକ୍ତ ଥିଲା । କୁରୁପତି ଧୃତରାଷ୍ଟ୍ରଙ୍କ ରାଣୀଙ୍କ ନାମ ଥିଲା ଗାନ୍ଧାରୀ ଅର୍ଥାତ୍ ଗାନ୍ଧାର ରାଜକନ୍ୟା । ଆଜି ଦିଲ୍ଲୀ ଯେଉଁ ଭାରତର ରାଜଧାନୀ ସେ ସମୟରେ ତାହା ନଥିଲା; କିନ୍ତୁ ଆଜିର ଦିଲ୍ଲୀ ସୀମା ନିକଟର ଦୁଇଟି ପ୍ରାଚୀନ ନଗରୀ ହସ୍ତିନାପୁର ଓ ଇନ୍ଦ୍ରପ୍ରସ୍ଥ ଭାରତବର୍ଷର ରାଜଧାନୀ ଥିଲା ।

ଭଗିନୀ ନିବେଦିତା ( ମାର୍ଗରେଟ୍ ନୋବଲ୍ ) ମହାଭାରତ ସମ୍ପର୍କରେ ଲେଖିବାକୁ ଯାଇ ସୂଚିତ କରିଚନ୍ତି : "ଏଥିରେ ଦୁଇଟି ବିଶିଷ୍ଟତା ହଠାତ୍ ବିଦେଶୀ ପାଠକର ଦୃଷ୍ଟି ଆକର୍ଷଣ କରେ : ପ୍ରଥମତଃ, ଜଟିଳତା ଭିତରେ ଏହାର ଏକତା ଏବଂ ଦ୍ୱିତୀୟତଃ, ରୂପ ପରିଗ୍ରହଣ ଓ ଏକୀକରଣରେ ଆବେଗ ଭାବରେ ନିଜର ଗୌରବପୂର୍ଣ୍ଣ ପରମ୍ପରା ସଙ୍ଗେ ଗୋଟାଏ ଏକକ, କେନ୍ଦ୍ରୀକୃତ ଭାରତର ଧାରଣା ତାର ଶ୍ରୋତାମାନଙ୍କ ମନରେ ମୁଦ୍ରିତ କରିବାର ଅବିଚ୍ଛିନ୍ନ ପ୍ରୟାସ ।" *

କୃଷ୍ଣ ଚରିତ ଓ ସେହି ବିଖ୍ୟାତ କାବ୍ୟ ଭଗବତ୍‌ଗୀତା ମହାଭାରତରୁ ମିଳେ । ତାର ଦର୍ଶନ ବିଭାବ ଅତିରିକ୍ତ, ରାଷ୍ଟ୍ରଚାଳନା ଏବଂ ଜୀବନଯାତ୍ରାରେ ଶୀଳାଚାର ଓ ନୈତିକ ସିଦ୍ଧାନ୍ତ ଉପରେ ଗୀତା ବିଶେଷ ଜୋର୍ ଦିଏ । ଧର୍ମର ଏହି ଭିତ୍ତି ବିନା ପ୍ରକୃତ ସୁଖ କିଛି ନାହିଁ ଏବଂ ସମାଜ ନିଜକୁ ସହିତ ରଖି ପାରିବ ନାହିଁ । ଏହାର ଲକ୍ଷ୍ୟ ହେଉଚି ସାମାଜିକ କଲ୍ୟାଣ । କୌଣସି ଗୋଟାଏ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର କେବଳ ନୁହେଁ ପରନ୍ତୁ ସମଗ୍ର ବିଶ୍ୱର, କାରଣ "ମଣିଷମାନଙ୍କ ଏହି ବିଶ୍ୱ ଗୋଟାଏ ଆତ୍ମନିର୍ଭରଶୀଳ ଜୀବ- ସଂଗଠନ ।" ତଥାପି, କେତେକ ମୌଳିକ ନୀତି ଯଥା ସତ୍ୟ ଓ ଅହିଂସା ପାଳନ ବ୍ୟତୀତ ଧର୍ମ ସ୍ୱୟଂ ଆପେକ୍ଷିକ ଏବଂ ତାହା ପ୍ରଚଳିତ କାଳ ଓ ଅବସ୍ଥାମାନଙ୍କ ଉପରେ ନିର୍ଭର କରେ । ଏହି ସବୁ ନୀତି ଅପରିବର୍ତ୍ତନୀୟ । ଅନ୍ୟଥା କର୍ତ୍ତବ୍ୟ ଓ ଦାୟିତ୍ୱର ସମ୍ମିଶ୍ରଣ ଧର୍ମ-ପରିବର୍ତ୍ତିତ ଯୁଗ ସଙ୍ଗେ ପରିବର୍ତ୍ତିତ ହୋଇଥାଏ । ଏଠାରେ ଓ ଅନ୍ୟତ୍ର ଅହିଂସା ଉପରେ ଯେପରି ଜୋର୍ ଦିଆଯାଇଚି ତାହା ବଡ଼ କୌତୂହଳ ଉଦ୍ଦୀପକ, କାରଣ ଅହିଂସା ଓ ଗୋଟାଏ ନ୍ୟାଯ୍ୟ ଉଦ୍ଦେଶ୍ୟ ନିମନ୍ତେ ଯୁଦ୍ଧ କରିବା ଭିତରେ କୌଣସି ସ୍ପଷ୍ଟ ଖଣ୍ଡନଶୀଳତା ଲକ୍ଷ୍ୟ କରାଯାଇନି । ସମଗ୍ର ପୁରାଣଟି ଗୋଟାଏ ମହାଯୁଦ୍ଧକୁ କେନ୍ଦ୍ର କରି ରଚିତ । ସ୍ପଷ୍ଟତଃ, ଅହିଂସାର ଧାରଣା ଏହି ଉଦ୍ଦେଶ୍ୟ ପଛରେ ଯଥେଷ୍ଟ ଶକ୍ତି ଯୋଗାଇଚି, କାରଣ ଏଥିରେ ହିଂସାତ୍ମକ ମାନସିକ ଆଭିମୁଖ୍ୟ ନାହିଁ । ଆତ୍ମସଂଯମ ନିମନ୍ତେ ଏବଂ ଘୃଣା ଓ କ୍ରୋଧ ନିୟନ୍ତ୍ରିତ କରିବା ନିମନ୍ତେ ନିର୍ଦ୍ଦେଶ ଦିଆଯାଇଚି । ଯଦିଓ ଆବଶ୍ୟକବେଳେ ଓ ଅବଶ୍ୟମ୍ଭାବୀ ହୋଇ ପଡ଼ିଲେ ଶାରୀରିକ

---

* ସାର୍ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ 'ଇଣ୍ଡିଆନ୍ ଫିଲସଫି' ଗ୍ରନ୍ଥରୁ ମୁଁ ଏହା ଉଦ୍ଧାର କରିଚି । ଏପରି ଆଉ କେତେ ଉଦ୍ଧୃତି ପାଇଁ ଏବଂ ଏହି ପରିଚ୍ଛେଦରେ ଓ ଅନ୍ୟାନ୍ୟ ପରିଚ୍ଛେଦରେ ଆହୁରି ବହୁତ କିଛି ପାଇଁ ମୁଁ ରାଧାକୃଷ୍ଣନଙ୍କ ପାଖରେ ଋଣୀ ।

ହିଂସା କାର୍ଯ୍ୟ କରିବା ନିଷେଧ କରାଯାଇନି ।

ମହାଭାରତ ଏପରି ଏକ ଗ୍ରନ୍ଥାଗାର ଯେଉଁଥିରୁ ସମସ୍ତ ପ୍ରକାର ମୂଲ୍ୟବାନ୍ ବସ୍ତୁ ଆମେ ପାଇପାରିବା । ଭାରତୀୟ ଚିନ୍ତାର ସେହି ଅପର ବିଭବ ଯାହା ତ୍ୟାଗ ଓ ସନ୍ନ୍ୟାସ ଉପରେ ଜୋର୍ ଦେଇଥାଏ, ତାର ଚିହ୍ନ ଏଥିରେ ନାହିଁ । ବରଂ ଦେଖିବାକୁ ମିଳେ ବିବିଧତା, ପ୍ରଚୁରତା ଓ ଉଚ୍ଛଳ ଜୀବନର ଚିହ୍ନ । ଯଦିଓ ଏଥିରେ ପ୍ରଚୁର ପରିମାଣରେ ଶୀଳାଚାର ଓ ନୈତିକତା ବିଷୟ ରହିଛି ତଥାପି ଏହା ମାତ୍ର ସିଦ୍ଧାନ୍ତର ଗୋଟାଏ ସମାହାର କେବଳ ନୁହେଁ । ମହାଭାରତର ସମସ୍ତ ଶିକ୍ଷା ଗୋଟିଏ ବାକ୍ୟରେ ବ୍ୟକ୍ତ କରାଯାଇଛି : "ଅନ୍ୟ ପ୍ରତି ତୁ ସେପରି କିଛି କରିବୁନି; ଯାହା ତୋ ପ୍ରତି ତୁ କରିବା ନାପସନ୍ଦ କରିବୁ ।" ଏଥିରେ ସାମାଜିକ କଲ୍ୟାଣ ଉପରେ ଯେଉଁ ଜୋର୍ ଦିଆଯାଇଛି ତାହା ଉଲ୍ଲେଖଯୋଗ୍ୟ; କାରଣ ଭାରତୀୟ ମନର ପ୍ରବଣତା ସାମାଜିକ କଲ୍ୟାଣ ଅପେକ୍ଷା ବ୍ୟକ୍ତିଗତ ପୂର୍ଣ୍ଣତା ସାଧନ ଦିଗରେ ଧାବିତ ହେଉଥିବା ସାଧାରଣତଃ ଅନୁମିତ ହୋଇଥାଏ । ଏଥିରେ କୁହାଯାଇଛି : "ଯାହା ସାମାଜିକ କଲ୍ୟାଣ ପକ୍ଷରେ ଅନୁକୂଳ ନୁହେଁ ଅବା ଯାହା କରିବାକୁ ଗଲେ ତତେ ଲଜ୍ଜାବୋଧ ହୁଏ, କରିବୁ ନାହିଁ ।"

ପୁନରପି : "ସତ୍ୟ, ଆତ୍ମ-ସଂଯମ, ସନ୍ନ୍ୟାସ, ଉଦାରତା, ଅହିଂସା, ଅଖଣ୍ଡ ସତ୍ୟନିଷ୍ଠା ଓ ଧର୍ମରେ ଅଟଳତା—ଏସବୁ ସଫଳତାର ପନ୍ଥା; ପରିବାର ଅବା ବର୍ଣ୍ଣ ନୁହେଁ ।" "ଜୀବନ ଓ ଅମରତ୍ୱ ଅପେକ୍ଷା ଧର୍ମ ବଡ଼ ।" "ପ୍ରକୃତ ଆନନ୍ଦ ପାଇଁ କଷ୍ଟ ସହିବାକୁ ପଡ଼େ ।" ଧନକାମୀ ପ୍ରତି ବ୍ୟଙ୍ଗ କରି କୁହାଯାଇଛି : "ରେଶମ ପୋକ ନିଜର ସମ୍ପଦ ଲାଗି ଜୀବନ ହରାଏ ।" ପରିଶେଷରେ, ଗୋଟାଏ ଜୀବନ୍ତ ତଥା ଅଗ୍ରଗାମୀ ଜାତି ପକ୍ଷରେ ଉପଯୁକ୍ତ, ଗୋଟାଏ ଆଦେଶ ରହିଛି :"ଅସନ୍ତୋଷ ପ୍ରଗତିର ଉଦ୍ଦୀପନ ।"

ମହାଭାରତରେ ବେଦର ବହୁଦେବବାଦ, ଉପନିଷଦର ଅଦ୍ୱୈତବାଦ ଏବଂ ଦେବବାଦ ଦ୍ୱୈତବାଦ ଓ ଏକେଶ୍ୱରବାଦ, ମଧ୍ୟ ଅଛି । ଏଥିର ଦୃଷ୍ଟିଭଙ୍ଗୀ ଏ ପର୍ଯ୍ୟନ୍ତ ରଚନାତ୍ମକ ଓ କମ୍ ବହୁତରେ ବୁଦ୍ଧି ବାଦୀ ଏବଂ ଅନନ୍ୟତାର ଭାବନା ତଦପେକ୍ଷା ଆହୁରି ସୀମିତ । ବର୍ଣ୍ଣ ବିଚାରରେ ସେପରି କଠୋର ଶୃଙ୍ଖଳା ନାହିଁ । ଲୋକଙ୍କ ଭିତରେ ନିଜ ଉପରେ ଯଥେଷ୍ଟ ଭରସା ଥିଲା; କିନ୍ତୁ ବାହ୍ୟ ଶତ୍ରୁମାନେ ଯେବେ ଆକ୍ରମଣ କଲେ ଓ ପୁରାତନ ବ୍ୟବସ୍ଥାର ନୀତିପଦ୍ଧତି ଉପରେ ଆଘାତ କଲେ ସେହି ଭରସା କିଞ୍ଚିତ୍ ହ୍ରାସ ପାଇଲା ଏବଂ ଆଭ୍ୟନ୍ତରୀଣ ଏକତା ଓ ଶକ୍ତି ଉତ୍ପାଦନ ନିମନ୍ତେ ଅଧିକତର ସମାନତା ପାଇଁ ଦାବି ଉଠିଲା । ନବ ନବ ନିଷେଧ ବଢ଼ିଉଠିଲା । ପୂର୍ବେ ଯାହା ପ୍ରତି ମୋଟେ ଅସ୍ପୃହା ନଥିଲା, ପରେ ସେହି ଗୋମାଂସ ଭକ୍ଷଣ ସମ୍ପୂର୍ଣ୍ଣ ଭାବରେ ନିଷିଦ୍ଧ କରାଗଲା । ସମ୍ମାନିତ ଅତିଥିମାନଙ୍କୁ ଗୋମାଂସ ଅବା ବାଛୁରୀ ମାଂସ ପରିବେଷଣ କରାଯାଉଥିବା ସମ୍ପର୍କରେ ମହାଭାରତରେ ଉଲ୍ଲେଖ ଅଛି ।

## ୧୪. ଭଗବଦ୍‌ଗୀତା

ଭଗବଦ୍‌ଗୀତା ମହାଭାରତର ଗୋଟାଏ ଅଂଶ, ସେହି ମହାନାଟକର ଗୋଟାଏ ଉପାଖ୍ୟାନ । କିନ୍ତୁ ଏହାର ଆୟନ ସ୍ୱତନ୍ତ୍ର ଓ ଏହା ସ୍ୱୟଂସମ୍ପୂର୍ଣ୍ଣ । ସାତ ଶହ ଶ୍ଳୋକ ସମ୍ବଳିତ ଏହା ଅପେକ୍ଷାକୃତ ଏକ କ୍ଷୁଦ୍ର କାବ୍ୟ—"ଅତୀବ ସୁନ୍ଦର, ହୁଏତ ପୃଥିବୀର ଯେ-କୌଣସି ଜ୍ଞାତଭାଷା ଭିତରେ ଏକମାତ୍ର ଦାର୍ଶନିକ କାବ୍ୟ ।" ଉଇଲିଏମ୍ ଓ୍ୱାନ୍ ହାମ୍‌ବୋଲ୍‌ଟ ଏହିପରି ବର୍ଣ୍ଣନା କରିଚନ୍ତି । ପ୍ରାଗ୍‌ବୈଦିକ ଯୁଗରେ ଯେବେ ଏହା ରଚିତ ଓ ଲିଖିତ ହୋଇଥିଲା ସେହିଦିନାବଧି ଏହାର ଜନ ପ୍ରିୟତା ଓ ପ୍ରଭାବ ତିଳେମାତ୍ର ହ୍ରାସ ହୋଇନି ଏବଂ ସେତେବେଳେ ଯେପରି ଆଜି ବି ସେପରି ଭାରତରେ ତାର ଆବେଦନ ଅଲଙ୍ଘ୍ୟ । ବିଚାର ଓ ଦର୍ଶନର ପ୍ରତ୍ୟେକ ଶାଖା ଗୀତା ଉପରେ ନିର୍ଭର କରନ୍ତି ଏବଂ ନିଜ ପନ୍ଥା ପ୍ରତି ଅନୁକୂଳ ଭାବରେ ତାର ବ୍ୟାଖ୍ୟା କରନ୍ତି । ସଙ୍କଟ ସମୟରେ ମଣିଷର ଚିତ୍ତ ଯେବେ ସଂଶୟାକୁଳ ହୁଏ ଓ ବିବିଧ କର୍ତ୍ତବ୍ୟର ସଂଘାତରେ କ୍ଷତବିକ୍ଷତ ହୁଏ, ଆଲୋକ ଓ ପଥ ନିର୍ଦ୍ଦେଶ ନିମନ୍ତେ ଅନନ୍ୟୋପାୟ ଭାବରେ ସେ ଗୀତାର ଆଶ୍ରୟ ଅବଲମ୍ବନ କରିଚି । କାରଣ ଏହା ସଙ୍କଟର ଏକ କାବ୍ୟ—ରାଜନୈତିକ ଓ ସାମାଜିକ ସଙ୍କଟ, ସର୍ବୋପରି ମଣିଷର ଆତ୍ମାର ସଙ୍କଟର ମହାକାବ୍ୟ । ଅତୀତରେ ଅଗଣିତ ସଂଖ୍ୟାରେ ଗୀତାର ଭିନ୍ନ ଭିନ୍ନ ଭାଷ୍ୟ ପ୍ରକାଶ ପାଇଚି ଏବଂ ଆଜି ବି ନିୟମିତଭାବରେ ପ୍ରକାଶ ପାଉଚି । ଏପରିକି ଆଜିର ଚିନ୍ତାନାୟକ ଓ କର୍ମବୀରମାନେ ଯଥା ତିଲକ, ଶ୍ରୀ ଅରବିନ୍ଦ ଓ ଗାନ୍ଧୀ ନିଜର ବ୍ୟାଖ୍ୟା ଦେଇ ଗୀତା ଉପରେ ଲେଖିଚନ୍ତି । ଗାନ୍ଧିଜୀ ଗୀତା ଉପରେ ଭିତ୍ତିକରି ଅହିଂସା ଉପରେ ତାଙ୍କର ଦୃଢ଼ବିଶ୍ୱାସ ସ୍ଥାପନ କରିଚନ୍ତି । ଅଥଚ ଅନ୍ୟମାନେ ଗୋଟାଏ ନ୍ୟାୟ୍ୟ ଲକ୍ଷ୍ୟ ନିମନ୍ତେ ହିଂସା ଓ ଯୁଦ୍ଧକୁ ସେହି ଗୀତା ଉପରେ ଭିତ୍ତିକରି ଯଥାର୍ଥ ପ୍ରତିପାଦନ କରିଚନ୍ତି ।

ମହାଭାରତ ଯୁଦ୍ଧ ଆରମ୍ଭ ହେବାର କିଛି ସମୟ ପୂର୍ବରୁ, ଯୁଦ୍ଧ କ୍ଷେତ୍ରରେ ଅର୍ଜ୍ଜୁନ ଓ ଶ୍ରୀକୃଷ୍ଣଙ୍କ କଥୋପକଥନରୁ ଏହି କାବ୍ୟର ଆରମ୍ଭ । ଅର୍ଜ୍ଜୁନ ଅତିଶୟ ବ୍ୟସ୍ତ ହୋଇ ପଡ଼ିଚନ୍ତି । ଯୁଦ୍ଧ କଥାରେ ଓ ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନ ସମେତ ଲକ୍ଷ ଲକ୍ଷ ଲୋକଙ୍କ ହତ୍ୟା କଥା ଭାଳି ତାଙ୍କର ବିବେକ ବିଦ୍ରୋହୀ ହୋଇ ଉଠିଚି । କେଉଁ ଉଦ୍ଦେଶ୍ୟ ସାଧନ ନିମନ୍ତେ ଏହି ହତ୍ୟାକାଣ୍ଡ ସଂଗଠନ ? ଏହି ଲୋକକ୍ଷୟ, ଏହି ପାପ କର୍ମରୁ କ'ଣ ବା ଲାଭ ହେବ ? ତାଙ୍କର ଜୀବନର ସମସ୍ତ କିଛି ମାନ ଓ ମୂଲ୍ୟବୋଧ ଭାଙ୍ଗି ପଡ଼େ । ଅର୍ଜ୍ଜୁନ ମନୁଷ୍ୟର ସେହି ଯନ୍ତ୍ରଣାବିକ୍ଷୁବ୍ଧ ଆତ୍ମାର ପ୍ରତୀକ ଯାହା ଯୁଗ ପରେ ଯୁଗ ସଂଘର୍ଷଶୀଳ ଉପକୃତ ଓ ନୈତିକତା ଦ୍ୱାରା କ୍ଷତ ବିକ୍ଷତ ହୋଇଆସିଚି । ଏହି ବ୍ୟକ୍ତିଗତ କଥୋପକଥନ ସ୍ତରରୁ ପାହାଚ ପରେ ପାହାଚ ଅତିକ୍ରମ କରି ଆମକୁ ବ୍ୟକ୍ତିଗତ କର୍ତ୍ତବ୍ୟ ଓ ସାମାଜିକ ଆଚରଣ, ମାନବ ଜୀବନରେ ଶୀଳାଚାରର ପ୍ରୟୋଗ ଓ ଯେଉଁ ଆଧ୍ୟାତ୍ମିକ ଦୃଷ୍ଟିଭଙ୍ଗୀ ସେ ସବୁ ଉପରେ କର୍ତ୍ତୃତ୍ୱ କରେ; ସେଥିର ଉଚ୍ଚତର ତଥା ଅଧିକତର ଅତୈନ୍ଦ୍ରିକ ପ୍ରଦେଶକୁ ନିଆଯାଏ । ସେଥିରେ ବହୁତ କିଛି ଅଛି ଯାହା ସାରତଃ ଆଧିଭୌତିକ ଏବଂ ମାନବିକ ବିକାଶର ତିନୋଟି ମାର୍ଗ ଭିତରେ ସମାଧାନ ଓ ସଙ୍ଗତି ରକ୍ଷା କରିବାର ଉଦ୍ୟମ କରାଯାଇଚି । ସେହି ତିନୋଟି ମାର୍ଗ ହେଲା ବୁଦ୍ଧି ଅବା

ଜ୍ଞାନର, କର୍ମ ଓ ଧର୍ମର । ସମ୍ଭବତଃ, ଧର୍ମ ଉପରେ ଅପେକ୍ଷାକୃତ ଅଧିକ ଗୁରୁତ୍ୱ ଦିଆଯାଇଚି ଏବଂ ଅବତାର୍ ପୁରୁଷ ଭାବରେ ଇଷ୍ଟଦେବତାର ଆରାଧନା ସମ୍ପର୍କରେ ଅବତାରଣା କରାଯାଇଚି । ମାନବ ଅସ୍ତିତ୍ୱର ଆଧ୍ୟାତ୍ମିକ ପୃଷ୍ଠଭୂମି ନେଇ ଗୀତା ସାରତଃ ଅର୍ଥ ଯୋଗାଇଚି ଏବଂ ଏହି ପ୍ରକରଣରେ ଦୈନନ୍ଦିନ ଜୀବନର ବିବିଧ ବାସ୍ତବ ସମସ୍ୟା ଆମ ସମ୍ମୁଖରେ ଉପସ୍ଥିତ ହୁଏ । ଜୀବନର ନାନା ଉପକୃତି ଓ କର୍ତ୍ତବ୍ୟର ସମ୍ମୁଖୀନ ହେବା ପାଇଁ ଏହା କର୍ମର ଏକ ଆହ୍ୱାନ; କିନ୍ତୁ ସେହି ଆଧ୍ୟାତ୍ମିକ ପୃଷ୍ଠଭୂମି ଓ ବ୍ରହ୍ମାଣ୍ଡର ବୃହତ୍ତର ଉଦ୍ଦେଶ୍ୟ କେବେହେଲେ ଦୃଷ୍ଟି ସମ୍ମୁଖରୁ ଅପସାରିତ କରାଯାଇନି । ସ୍ଥାଣୁତ୍ୱର ନିନ୍ଦା କରାଯାଇଚି ଏବଂ କର୍ମ ଓ ଜୀବନକୁ ଚଳିତ ଯୁଗର ଉଚ୍ଚତମ ଆଦର୍ଶ ଅନୁସାରେ ଚାଳିତ କରିବାର ନିର୍ଦ୍ଦେଶ ଦିଆଯାଇଚି । କାରଣ ଏହି ସବୁ ଆଦର୍ଶ ଯୁଗକୁ ଯୁଗ ପରିବର୍ତ୍ତିତ ହେଉଥାଏ । ଯୁଗ ଧର୍ମ ଅର୍ଥାତ୍ ସେହି ନିର୍ଦ୍ଦିଷ୍ଟ ଯୁଗର ଆଦର୍ଶ ସବୁସମୟରେ ଦୃଷ୍ଟି ସମ୍ମୁଖରେ ରଖିବା ଆବଶ୍ୟକ ।

ଆଧୁନିକ ଭାରତ ଯେହେତୁ ନୈରାଶ୍ୟରେ ପୂର୍ଣ୍ଣ ହୋଇ ରହିଚି ଏବଂ ନିବୃତ୍ତିବାଦ ଫଳରେ ଯେହେତୁ ଯଥେଷ୍ଟ ଦୁଃଖ ଭୋଗ କରିଚି, କର୍ମ ନିମନ୍ତେ ଏହି ଆହ୍ୱାନ ଗୋଟିଏ ବିଶେଷ ଆବେଦନ ଉପସ୍ଥାପିତ କରେ । ଆଧୁନିକ ଭାଷାରେ ସେହି କର୍ମ ସାମାଜିକ ଅବସ୍ଥାନ୍ତର ଏବଂ ସମାଜ ସେବା, ବାସ୍ତବ, ପରୋପକାର-ପ୍ରେରିତ, ଦେଶପ୍ରେମୀ ଓ ମାନବପ୍ରେମୀ କର୍ମ ବୋଲି ଏହାକୁ ବ୍ୟାଖ୍ୟା କରାଯାଇପାରେ । ଏ ପ୍ରକାର କର୍ମ, ଗୀତାର ନିର୍ଦ୍ଦେଶ ଅନୁସାରେ ବାଞ୍ଛନୀୟ; କିନ୍ତୁ ତାର ପଛରେ ଆଧ୍ୟାତ୍ମିକ ଆଦର୍ଶ ରହିବା ପ୍ରୟୋଜନ । ଫଳାଫଳ ବିଷୟର ନିରଖି କର୍ମ ଆସକ୍ତିହୀନ ହେବା ଆବଶ୍ୟକ । ସବୁ ଅବସ୍ଥାରେ କାର୍ଯ୍ୟକାରଣର ବିଧାନ ଅପରିବର୍ତ୍ତିତ ରହେ । ଅତଏବ, ଉଚିତ କର୍ମରୁ ଉଚିତ ଫଳ ଫଳିବା ସ୍ୱାଭାବିକ । ଯଦିଓ ଏହା ସେହି ସମୟରେ ହଠାତ୍ ଦୃଷ୍ଟିରେ ଧରା ଦେଇ ନଥାଏ ।

ଗୀତାର ବାର୍ତ୍ତା କୌଣସି ସଂପ୍ରଦାୟ ବିଶେଷ ପାଇଁ ନୁହେଁ କିମ୍ବା କୌଣସି ନିର୍ଦ୍ଦିଷ୍ଟ ଦର୍ଶନର ଶାଖା ପ୍ରତି ଉଦ୍ଦିଷ୍ଟ ନୁହେଁ । ବ୍ରାହ୍ମଣ ହେଉ କିମ୍ବା ବ୍ରାତ୍ୟ ହେଉ ତାହା ସମସ୍ତଙ୍କ ପାଇଁ ଓ ତାର ଆଭିମୁଖ୍ୟ ସାର୍ବଜନୀନ । "ସବୁମାର୍ଗ ମୋ ଠାରେ ଲୀନ ହୁଅନ୍ତି", ଗୀତରେ କୁହାଯାଇଚି । ଏହି ସାର୍ବଜନୀନତା ଯୋଗୁଁ ଏହା ସବୁ ଶ୍ରେଣୀ, ସବୁ ପ୍ରକାର ଚିନ୍ତାଧାରା ଦ୍ୱାରା ଆଦୃତ ହୋଇଚି । ସେଥିରେ ସେପରି କିଛି ଅଛି ଯାହା ପ୍ରତିନିୟତ ନବୀକୃତ ହେବାର ସାମର୍ଥ୍ୟ ଧରିଥିବା ଭଳି ଜଣାଯାଏ; ଯାହା କାଳର ପରିବର୍ତ୍ତନରେ ଅପ୍ରଚଳିତ ହୁଏ ନାହିଁ । ଉଗ୍ର କିଜ୍ଞାସା ଓ ଅନ୍ୱେଷଣ, ଚିନ୍ତା ଓ କର୍ମ, ସଙ୍ଘର୍ଷ ଓ ବିରୋଧିତା ସତ୍ତ୍ୱେ ସମତୁଳନ ଭାରସାମ୍ୟ ରକ୍ଷା କରିବାର ଗୋଟିଏ ଆନ୍ତର ଗୁଣ ତହିଁରେ ବିଦ୍ୟମାନ । ସେଥିରେ ସୌଷ୍ଠବ ଅଛି ଓ ବିବିଧତା ମଧ୍ୟରେ ଐକ୍ୟ ରହିଚି ଏବଂ ପରିବର୍ତ୍ତନଶୀଳ ପରିବେଷ୍ଟନୀ ଉପରେ ତାର ଆଧିପତ୍ୟ କରିବାର ଦମ୍ଭ ରହିଚି । ତାହା ଅବଶ୍ୟ ସେଥିରୁ ପଳାୟନର ପନ୍ଥା ଖୋଜି ନୁହେଁ, ସେଥିସଙ୍ଗେ ମେଳରଖି ଚାଳିବାରେ । ଗୀତା ରଚିତ ହେବାର ଏହି ଦୁଇହଜାର ପାଞ୍ଚଶହ ବର୍ଷ ଭିତରେ ଭାରତୀୟ ମାନବଜାତି ପୁନଃ ପୁନଃ ବହୁ ପରିବର୍ତ୍ତନ, ବିକାଶ ଓ ଅବନତିର ପ୍ରକ୍ରିୟା ଭିତରଦେଇ ଗତି କରିଚି । ଅଭିଜ୍ଞତା ପରେ ଅଭିଜ୍ଞତା

ଘଟିଛି, ଚିନ୍ତା ପରେ ଚିନ୍ତା ଅନୁସରଣ କରିଛି; କିନ୍ତୁ ଗୀତାରେ ଯେପରି କିଛି ଜୀବନ୍ତ ତତ୍ତ୍ୱ ରହିଛି ଯାହା ବିକାଶଶୀଳ ଚିନ୍ତାଧାରା ସଙ୍ଗେ ମେଳ ରଖିପାରିଛି ଏବଂ ମନର ବହୁ ଆଧ୍ୟାତ୍ମିକ ସମସ୍ୟାର ସମାଧାନ ଯୋଗାଇ ପାରିଛି ।

## ୧୪. ପ୍ରାଚୀନ ଭାରତରେ ଜୀବନ ଓ କର୍ମ

ପ୍ରାଚୀନ ଭାରତରେ ଦାର୍ଶନିକ ଓ ଆଧିଭୌତିକ ଚିନ୍ତାର ବିକାଶ କିଭଳି ହେଲା ଜାଣିବା ପାଇଁ ବିଦ୍ୱାନ ଓ ଦାର୍ଶନିକମାନେ ବହୁତ କିଛି କଲେଣି । ଐତିହାସିକ ଘଟଣାବଳୀର ଅନୁକ୍ରମ ଓ ସେ ସମୟମାନଙ୍କର ରାଜନୈତିକ ମାନଚିତ୍ର ନିର୍ଣ୍ଣୟ କରିବା ଦିଗରେ ମଧ୍ୟ ବହୁତ କିଛି କରାଗଲାଣି । କିନ୍ତୁ ସେ ସବୁ ସମୟର ସାମାଜିକ ଓ ଅର୍ଥନୈତିକ ଅବସ୍ଥାର ଅନୁସନ୍ଧାନ ପାଇଁ—ଲୋକେ କିଭଳି ରହୁଥିଲେ ଓ କିପରି ନିଜ ନିଜ କାର୍ଯ୍ୟ ନିର୍ବାହ କରୁଥିଲେ, କଅଣ ଓ କିପରି ଉତ୍ପାଦନ କରୁଥିଲେ, ବେପାର ବଣିଜ କିପରି ଚାଲୁଥିଲା— ଏସବୁ ଜାଣିବା ପାଇଁ ବିଶେଷ କିଛି କରାଯାଇନି ଏସବୁ ଗୁରୁତ୍ୱପୂର୍ଣ୍ଣ ବିଷୟ ପ୍ରତି ବର୍ତ୍ତମାନ ଅଧିକତର ଦୃଷ୍ଟି ଦିଆଯାଉଛି ଏବଂ ଏ ସମ୍ପର୍କରେ କେତେକ ଭାରତୀୟ ବିଦ୍ୱାନ୍ ଓ ଜଣେ ମାର୍କିନ ବିଦ୍ୱାନ୍‌ଙ୍କ ଗବେଷଣାମୂଳକ ଗ୍ରନ୍ଥ କେତେଖଣ୍ଡ ପ୍ରକାଶ ପାଇଛି । କିନ୍ତୁ କରିବା ପାଇଁ ଆହୁରି ବହୁତ କିଛି ରହିଛି । ମହାଭାରତ ସମାଜବିଜ୍ଞାନ ସମ୍ବନ୍ଧୀୟ ତଥ୍ୟ ତଥା ଅନ୍ୟାନ୍ୟ ବହୁ ସୂଚନାର ଗୋଟାଏ ଗଚ୍ଛିତ ଘର ଏବଂ ଅନ୍ୟାନ୍ୟ ଗ୍ରନ୍ଥମାନ ଦେଖିଲେ ସେଥିରୁ ନିଃସନ୍ଦେହରେ ଉପଯୋଗୀ ବହୁ ତଥ୍ୟ ମିଳିବ । କିନ୍ତୁ ଏହି ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣରୁ ସେଗୁଡ଼ିକର ସମାଲୋଚନାମୂଳକ ପରୀକ୍ଷା କରାଯିବା ଆବଶ୍ୟକ । ଗୋଟାଏ ଗ୍ରନ୍ଥ ଯାହାର ମୂଲ୍ୟ ଏହି ଦୃଷ୍ଟିକୋଣରୁ ଦେଖିଲେ ଖୁବ୍ ବେଶି ତାହା ହେଉଛି ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ପ୍ରଣୀତ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର । ସେଥିରେ ମୌର୍ଯ୍ୟ ସାମ୍ରାଜ୍ୟର ରାଜନୈତିକ, ସାମାଜିକ, ଅର୍ଥନୈତିକ ଓ ସାମରିକ ସଙ୍ଗଠନର ବିସ୍ତୃତ ବିବରଣୀ ଦେଖିବାକୁ ମିଳେ ।

ଆଉ ଏକ ପୂର୍ବିକ ବିବରଣୀ ଯାହା ଆମକୁ ନେଇ ନିଶ୍ଚିତଭାବରେ ଭାରତର ପ୍ରାଗ୍‌ବୌଦ୍ଧ ଯୁଗରେ ପହଞ୍ଚାଏ, ଜାତକ କାହାଣୀ ସଂଗ୍ରହରେ ଦେଖିବାକୁ ମିଳେ । ଆଜି ଯେଭଳି ପଢ଼ିବାକୁ ମିଳୁଛି, ଏଇ ଆକାର ଜାତକ କାହାଣୀଗୁଡ଼ିକୁ ବୁଦ୍ଧଙ୍କ ମହାନିର୍ବାଣ ପରେ କେବେ ହୁଏତ ଦିଆଯାଇଛି । ଏସବୁ କାହାଣୀ ବୁଦ୍ଧଙ୍କ ପୂର୍ବ ଅବତାରମାନଙ୍କ ସମ୍ପର୍କରେ ରଚିତ ଓ ବୌଦ୍ଧ ସାହିତ୍ୟର ତାହା ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଅଂଶ । କିନ୍ତୁ ସ୍ପଷ୍ଟତଃ କାହାଣୀ ଗୁଡ଼ିକ ଆହୁରି ପୁରାତନ ଏବଂ ସେଥିରୁ ପ୍ରାଗ୍‌ବୌଦ୍ଧ ଭାରତର ଜୀବନ ସମ୍ପର୍କରେ ବହୁ ମୂଲ୍ୟବାନ୍ ତଥ୍ୟ ମିଳେ । ଅଧ୍ୟାପକ ରାଇ ଡେଭିଡ୍‌ସ ସେ ବିଷୟରେ କହିଛନ୍ତି ଯେ ଜନଶ୍ରୁତି ସଂଗ୍ରହ ଭିତରେ ଜାତକ କାହାଣୀ ସର୍ବାପେକ୍ଷା ପ୍ରାଚୀନତମ, ପୂର୍ଣ୍ଣାବୟବ ଓ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପରବର୍ତ୍ତୀ ସମୟର ଜୀବଜନ୍ତୁ ସମ୍ବନ୍ଧୀୟ କାହାଣୀ ତଥା ଅନ୍ୟାନ୍ୟ କାହାଣୀ-ମାନଙ୍କର ଅନେକ ସଂଗ୍ରହ ଯାହା ଭାରତରେ ଲେଖାଯାଇଥିଲା ଏବଂ ଯାହା ପରବର୍ତ୍ତୀ

ସମୟରେ ପଶ୍ଚିମ ଏସିଆ ଓ ୟୁରୋପରେ ପ୍ରବେଶ କଲା ତାହାର ମୂଳ ଜାତକ କାହାଣୀ ଗୁଡ଼ିକରେ ନିହିତ ।

ଜାତକ ସେହି ସମୟର ଚିତ୍ର ଦିଏ ଯେବେ ଭାରତର ଦୁଇଟି ପ୍ରଧାନ ଜାତି ଦ୍ରାବିଡ଼ ଓ ଆର୍ଯ୍ୟଙ୍କର ସମ୍ମିଶ୍ରଣ ସମ୍ପୂର୍ଣ୍ଣ ହୋଇ ଆସୁଥିଲା । ସେଥିରୁ ପ୍ରକାଶ ପାଏ "ଗୋଟାଏ ବହୁରୂପୀ ତଥା ଅବ୍ୟବସ୍ଥିତ ସମାଜର ଚିତ୍ର ଯାହା ଶ୍ରେଣୀକରଣ ପ୍ରତ୍ୟେକ ପ୍ରୟାସକୁ କମ୍ ବହୁତରେ ପ୍ରତିରୋଧ କରେ ଏବଂ ସେ ଯୁଗରେ ବର୍ଣ୍ଣବ୍ୟବସ୍ଥା ଅନୁସାରେ ତାକୁ ସଙ୍ଗଠିତ କରିବା ଅସମ୍ଭବ ହୋଇ ପଡ଼ୁଥିଲା ।" ୧

ସେଥିରେ ବହୁ ରାଜା ଓ ରାଜ୍ୟର କାଳାନୁକ୍ରମ ଓ ବଂଶାନୁକ୍ରମ ଦେଖିବାକୁ ମିଳେ । ପ୍ରଥମେ ଯେଉଁ ରାଜପଦ ପାଇଁ ନିର୍ବାଚନ ହେଉଥିଲା, ପରେ ଜ୍ୟେଷ୍ଠତ୍ୱ ବିଧି ଅନୁସାରେ ବଂଶଗତ ହେଲା । ସ୍ଥାନେ ସ୍ଥାନେ ବ୍ୟତିକ୍ରମ ବ୍ୟତୀତ ନାରୀମାନେ ଏ ପ୍ରକାର ଉତ୍ତରାଧିକାରରୁ ବଞ୍ଚିତ ଥିଲେ । ଚୀନ ଭଳି, ରାଜ୍ୟର ସମସ୍ତ ଦୁର୍ଭାଗ୍ୟ ପାଇଁ ରାଜାକୁ ଦାୟୀ କରାଯାଉଥିଲା । ଯଦି କେଉଁଠି କିଛି ବିଚ୍ୟୁତି ଘଟିବ ତାହାହେଲେ ସେ ଦୋଷ ରାଜାର । ରାଜାର ମନ୍ତ୍ରି-ପରିଷଦ ଥିଲା ଏବଂ ଗୋଟାଏ ପ୍ରକାର ରାଜ୍ୟ ବିଧାନସଭାର ଉଲ୍ଲେଖ ମଧ୍ୟ ମିଳେ । ସେ ଯାହାହେଉ, ପ୍ରତିଷ୍ଠିତ ନାନା ପାରମ୍ପରିକ ପ୍ରଥା ଦ୍ୱାରା ଆବଦ୍ଧ ଥିଲେ ମଧ୍ୟ ରାଜା ଥିଲା ନିରଙ୍କୁଶ ଶାସକ । ଉପଦେଷ୍ଟା ତଥା ଧର୍ମାନୁଷ୍ଠାନର ଦାୟିତ୍ୱବାନ୍ ବ୍ୟକ୍ତି ଭାବରେ ରାଜସଭାରେ ରାଜପୁରୋହିତର ଆସନ ଥିଲା ଖୁବ୍ ଉଚ୍ଚରେ । ଆତ୍ମରକ୍ଷାନ ଅତ୍ୟାଚାରୀ ରାଜା ବିରୁଦ୍ଧରେ ଗଣବିଦ୍ରୋହ ଦେଖା ଦେଇ ଅପରାଧୀ ରାଜାକୁ କେବେ କେବେ ପ୍ରାଣଦଣ୍ଡ ଦିଆଯାଇଥିବା ବିଷୟ ଉଲ୍ଲେଖ ଅଛି ।

ଗ୍ରାମସଭା ଗୁଡ଼ିକ କେତେକାଂଶରେ ସ୍ୱଶାସନ ଭୋଗ କରୁଥିଲେ । ରାଜସ୍ୱର ପ୍ରଧାନ ପନ୍ଥା ଥିଲା ଜମି । ଭୂମିକର ଉତ୍ପାଦନର ରାଜଭୋଗ ଭାବରେ ଗୃହୀତ ହେଉଥିଲା ଏବଂ ସବୁ ସମୟରେ ନହେଲେ ମଧ୍ୟ ସାଧାରଣତଃ ଦ୍ରବ୍ୟ ରୂପରେ ତାହା ରାଜଭଣ୍ଡାରକୁ ଦିଆଯାଉଥିଲା । ଏହି କର ସମ୍ଭବତଃ ଉତ୍ପାଦନର ଏକଷଷ୍ଠାଂଶ ଥିଲା । ସେ ସମୟର ସଭ୍ୟତା ଥିଲା କୃଷିପ୍ରଧାନ ଏବଂ ସେଥିର ମୌଳିକ ଏକକ ଥିଲା ସ୍ୱଶାସିତ ଗ୍ରାମ । ଏହି ଗ୍ରାମଗୋଷ୍ଠୀ ଗୁଡ଼ିକରୁ ରାଜନୈତିକ ଓ ଅର୍ଥନୈତିକ ଗଢ଼ଣ ତିଆରି ହୋଇଥିଲା ଏବଂ ଏହି ଗ୍ରାମଗୋଷ୍ଠୀ ଦଶକ ସଙ୍ଖ୍ୟାରେ ଏକତ୍ରିତ କରାଯାଇଥିଲା । ଉଦ୍ୟାନ ଉନ୍ନୟନ, ପଶୁପାଳନ ଓ ଦୁଗ୍ଧ ଉତ୍ପାଦନ ବ୍ୟାପକ ଭାବରେ କରାଯାଉଥିଲା । ଉଦ୍ୟାନ ଓ ପ୍ରମୋଦବନ ଖୁବ୍ ଜନପ୍ରିୟ ଥିଲା ଏବଂ ଫଳ

---

୧ ରିଚାର୍ଡ଼ଫିକ୍—'ଦି ସୋସଲ ଅର୍ଗାନାଇଜେସନ୍ ଇନ୍ ନର୍ଥ-ଇଷ୍ଟ ଇଣ୍ଡିଆ ଇନ୍ ବୁଦ୍ଧସ୍ ଟାଇମ୍' (କଲିକତା ୧୯୨୦) ଜାତକ କାହାଣୀମାନଙ୍କ ଉପରେ ମୁଖ୍ୟତଃ ଭିତ୍ତିକରି ଲିଖିତ ଶ୍ରୀ ରତିଲାଲ ମେହେଟାଙ୍କ 'ପ୍ରି-ବୁଦ୍ଧିଷ୍ଟ ଇଣ୍ଡିଆ' (ବମ୍ବେ, ୧୯୩୯) ଏକ ଉପାଦେୟ ଗ୍ରନ୍ଥ । ମୋର ଆବଶ୍ୟକ ଅଧିକାଂଶ ତଥ୍ୟ ଯୋଗାଇ ଏ ବହିଟି ମତେ ତାର ନିକଟରେ ଋଣୀ କରିଛି ।

ଓ ପୁଷ୍ପ ପ୍ରତି ଯଥେଷ୍ଟ ମୂଲ୍ୟ ଦିଆଯାଉଥିଲା । ଫୁଲର ଗୋଟାଏ ଦୀର୍ଘ ତାଲିକା ସେଥିରେ ଦିଆଯାଇଛି । ଯେଉଁସବୁ ଫଳ ଲୋକଙ୍କର ପ୍ରିୟ ଥିଲା ତାହା ହେଉଛି ଆମ୍ବ, ଉଦୁମ୍ବର, ଅଙ୍ଗୁର, କଦଳୀ ଓ ଖଜୁରୀ । ସ୍ପଷ୍ଟତଃ, ନଗରମାନଙ୍କରେ ବହୁ ପରିବା, ଫଳ ଓ ଫୁଲ ଦୋକାନ ଥିଲା । ଏବେ ଯେପରି, ସେତେବେଳେ ମଧ୍ୟ ଫୁଲମାଳ ଭାରତୀୟଙ୍କର ଅତ୍ୟନ୍ତ ପ୍ରିୟ ଥିଲା ।

ପ୍ରଧାନତଃ ଖାଦ୍ୟ ଆହରଣ ଉଦ୍ଦେଶ୍ୟରେ ଶିକାର ଗୋଟାଏ ସ୍ୱୀକୃତ ବୃତ୍ତି ଥିଲା । ମାଂସ ଭୋଜନରେ କୌଣସି ନିଷେଧ ନଥିଲା ଏବଂ କୁକୁଡ଼ାମାଂସ ଓ ମାଛ ଆମିଷ ଭୋଜନର ଅନ୍ତର୍ଭୁକ୍ତ ଥିଲା । ମୃଗମାଂସ ଭୋଜନ ଉତ୍କୃଷ୍ଟ ଖାଦ୍ୟ ଭିତରେ ଗଣ୍ୟ ହେଉଥିଲା । ମନୁଷ୍ୟ କୃଷି ସଙ୍ଗେ ପଶୁମାରଣ ନିମନ୍ତେ ସ୍ଥାନ ନିର୍ଦ୍ଦିଷ୍ଟ ଥିଲା । ଖାଦ୍ୟଦ୍ରବ୍ୟ ଭିତରେ ଚାଉଳ, ଗହମ, ଯବ ଓ ବାଜରା ମୁଖ୍ୟ ଥିଲା । ଆଖୁରସରୁ ଶର୍କରା ଜାତୀୟ ଦ୍ରବ୍ୟ ଉତ୍ପାଦନ କରାଯାଉଥିଲା । ଏବେ ଯେପରି, ସେତେବେଳେ ମଧ୍ୟ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟ ଉପରେ ଯଥେଷ୍ଟ ମୂଲ୍ୟ ଦିଆଯାଉଥିଲା । ସେତେବେଳେ ମଦଦୋକାନ ବି ଥିଲା ଓ ଯେପରି ଜଣାଯାଉଛି ଚାଉଳ, ନାନାବିଧ ଫଳ ଓ ଆଖୁରସରୁ ମଦ୍ୟ ଉତ୍ପାଦିତ ହେଉଥିଲା ।

ବିବିଧ ଧାତୁ ଓ ମୂଲ୍ୟବାନ ରତ୍ନ ନିମନ୍ତେ ଖଣି ଖୋଳାଯାଉଥିଲା । ଧାତୁ ଭିତରେ ସୁନା, ରୁପା, ତମ୍ବା, ଲୁହା, ରଙ୍ଗ, ଟିଣ ଓ ପିତ୍ତଳ; ରତ୍ନ ଭିତରେ ହୀରା, ମାଣିକ୍ୟ, ପ୍ରବାଳ ଓ ମୁକ୍ତା ମଧ୍ୟ; ମୁଦ୍ରା ଭିତରେ ସୁନା, ରୁପା ଓ ତମ୍ବା ନାମ ଉଲ୍ଲେଖ ଅଛି । ବାଣିଜ୍ୟରେ ଅଂଶୀଦାର ବ୍ୟବସ୍ଥା ଥିଲା ଏବଂ ସୁଧହାର ରଖି ଋଣ ଦିଆଯାଉଥିଲା । ଉତ୍ପାଦିତ ଦ୍ରବ୍ୟମାନଙ୍କ ଭିତରେ ରେଶମ, ପଶମ ଓ ତୁଳା ଲୁଗା, କମ୍ବଳ, ପାଛୁଡ଼ି ଓ ଖରଡ଼ି ଥିଲା । ସୂତା କାଟିବା, ବୁଣିବା ଓ ରଙ୍ଗେଇ କରିବା ବଡ଼ ବଡ଼ ଶିଳ୍ପଭାବରେ ବିସ୍ତୃତ ଥିଲା । ଧାତୁଶୋଧନ ଶିଳ୍ପରେ ଯୁଦ୍ଧୋପକରଣ ଶିଳ୍ପ ତିଆରି ହେଉଥିଲା । ନିର୍ମାଣ ଶିଳ୍ପରେ ପଥର, କାଠ ଓ ଇଟା ବ୍ୟବହୃତ ହେଉଥିଲା । ବଢ଼େଇମାନେ ରଥ, ବୋଇତ, ଶକଟ, ପଲଙ୍କ, ଚୌକି, ବେଞ୍ଚ, ଆଲମାରି ଓ କଣ୍ଢେଇ ପ୍ରଭୃତି ନାନାବିଧ ଦ୍ରବ୍ୟ ତିଆରି କରୁଥିଲେ । ବେତ କାରିଗରମାନେ ତୋଷକ (ଚଟାଇ), ଚାଙ୍ଗୁଡ଼ା, ପଙ୍ଖା ଓ ଛତା ତିଆରି କରୁଥିଲେ । ପ୍ରତ୍ୟେକ ଗ୍ରାମରେ କୁମ୍ଭାର ଥିଲେ । ନାନାବିଧ ଫୁଲ ଓ ଚନ୍ଦନକାଠରୁ ନାନା ପ୍ରକାର ଅତର ଓ ଚନ୍ଦନଗୁଣ୍ଡ ସମେତ ବିବିଧ ପ୍ରସାଧନର ସାମଗ୍ରୀ ପ୍ରସ୍ତୁତ ହେଉଥିଲା । ନାନାବିଧ ଔଷଧ ଓ ଆସବ ଉତ୍ପାଦନ କରାଯାଉଥିଲା ଏବଂ କେବେ କେବେ ଶବଦେହ ସୁରକ୍ଷିତ କରିବାପାଇଁ ବିହିତ ମସଲା ବ୍ୟବହାର ବିଦିତ ଥିଲା ।

ଏ ସମସ୍ତ ଶିଳ୍ପ ଓ କାରୁକାର୍ଯ୍ୟ ବ୍ୟତୀତ ଅନ୍ୟାନ୍ୟ ପେଶା ସମ୍ପର୍କରେ; ଯଥା : ଶିକ୍ଷକ, ବୈଦ୍ୟ ଓ ଅସ୍ତ୍ର-ଚିକିତ୍ସକ, ବଣିକ, ଦୋକାନୀ, ସଙ୍ଗୀତଜ୍ଞ, ଜ୍ୟୋତିଷୀ, ପରିବାଦୋକାନୀ, ଅଭିନେତା, ନଟ, ଭ୍ରାମ୍ୟମାଣ ଯାଦୁକର, ବାଜିକର, କଣ୍ଢେଇନାଚବାଲା ଓ ଫେରିବାଲା ନାମ ଉଲ୍ଲେଖ ଅଛି ।

ପାରିବାରିକ ଭୃତ୍ୟପ୍ରଥା ପ୍ରାୟ ପ୍ରଚଳିତ ଥିଲା; କିନ୍ତୁ କୃଷି ଓ ଅନ୍ୟାନ୍ୟ କ୍ଷେତ୍ରରେ କାର୍ଯ୍ୟ

ନିମନ୍ତେ ମଜୁରିଆ ନିଯୁକ୍ତ ହେଉଥିଲେ । ସେତେବେଳେ ମଧ୍ଯ ଅସ୍ପୃଶ୍ୟ ଥିଲେ ଓ ସେମାନଙ୍କୁ ଚଣ୍ଡାଳ କୁହାଯାଉଥିଲା । ଶବ ସତ୍କାର ସେମାନଙ୍କର ପ୍ରଧାନ କର୍ମ ଥିଲା ।

ବଣିକସଂଘ ଓ କାରିଗରି ସଂସ୍ଥା ସମାଜରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲେ । ଫିକ କହନ୍ତି, "କେତେକାଂଶରେ ଅର୍ଥନୈତିକ କାରଣମାନଙ୍କରୁ, ମୂଳଧନର ଉପଯୁକ୍ତ ଖଟଣି ନିମନ୍ତେ ଏବଂ ବିନିମୟ ସୁବିଧା ନିମନ୍ତେ, କେତେକାଂଶରେ ସେମାନଙ୍କ ଶ୍ରେଣୀର ଆଇନଗତ ସ୍ୱାର୍ଥର ସୁରକ୍ଷା ନିମନ୍ତେ ବଣିକ ସଂଘମାନ ଯେ ଗଢ଼ିଉଠିଥିଲା, ତାହା ଭାରତୀୟ ସଂସ୍କୃତିର ପ୍ରାଥମିକ ଅବସ୍ଥା ପର୍ଯ୍ୟନ୍ତ ସନ୍ଧାନ କରାଯାଇପାରେ ।" ଜାତକରେ ଅଠରଗୋଟି କାରିଗରି ସଂସ୍ଥା ଥିଲା ବୋଲି କୁହାଯାଇଥିଲେ ମଧ୍ଯ ଚାରିଟି ସଂସ୍ଥାର ନାମ କେବଳ ଦିଆଯାଇଛି । ତାହା ହେଉଛି ବଢ଼େଇ,ରାଜମିସ୍ତ୍ରୀ, କମାର ଓ ସୁନାରି,ଚମାର ଓ ଚିତ୍ରକାର ।

ପୁରାଣମାନଙ୍କରେ ମଧ୍ଯ ବଣିକ ଓ କାରିଗରଙ୍କ ସଂଗଠନ ବିଷୟ ଉଲ୍ଲେଖ ଅଛି । ମହାଭାରତରୁ ଜଣାଯାଏ—"ସଂଘର ସୁରକ୍ଷା ହେଉଛି ଏକତା ।" ଆହୁରି ମଧ୍ଯ କୁହାଯାଇଛି, "ବଣିକ ସଂଘଗୁଡ଼ିକ ଏତେ ଶକ୍ତିଶାଳୀ ଥିଲା ଯେ, ସେଗୁଡ଼ିକ ବିରୁଦ୍ଧରେ କୌଣସି ଆଇନ ପ୍ରତିଷ୍ଠା କରିବା ପାଇଁ ରାଜାଙ୍କୁ ସୁଯୋଗ ଦିଆଯାଉନଥିଲା । ରାଜାର ଭୟ ଓ ଗଭୀର ଉଦ୍‌ବେଗର କାରଣ ଥିଲା, ପୁରୋହିତ ପରେ, ଏ ପ୍ରକାର ସଂଘ ମୁଖ୍ୟ ।"(୧) ବଣିକପ୍ରଧାନ ଯାହାକୁ ଶ୍ରେଷ୍ଠୀ (ଆଧୁନିକ ଶେଠ) କୁହାଯାଉଥିଲା, ସମାଜରେ ତାର ବିଶେଷ ପ୍ରାଧାନ୍ୟ ଥିଲା ।

ଆଉ ଏକ ଅସାଧାରଣ ବିଷୟ ଜାତକ ବିବରଣୀରୁ ଦେଖିବାକୁ ମିଳେ । ତାହା ହେଉଛି, ଗୋଟାଏ ନିର୍ଦ୍ଦିଷ୍ଟ ଧନ୍ଦାର ଲୋକଙ୍କ ପାଇଁ ନିର୍ଦ୍ଦିଷ୍ଟ ସ୍ଥାନରେ ବସତି ସ୍ଥାପନ । ସେଥିରେ ଲେଖାଅଛି, ଏକହଜାର୍ ପରିବାରବିଶିଷ୍ଟ ଗୋଟାଏ ବଢ଼େଇ ଗ୍ରାମ ଥିଲା, ଧାତୁ କର୍ମକାର ଓ ଅନ୍ୟ ଧନ୍ଦାର ଲୋକଙ୍କର ଖାସ୍ ବସତିମାନ ଥିଲା । ଏ ପ୍ରକାର କାରିଗର-ବସତି ସାଧାରଣତଃ ସହରତଳି ଅଞ୍ଚଳରେ ସ୍ଥାପିତ ଥିଲା । କାରିଗରମାନେ ନିକଟ ବଜାରରେ ସେମାନଙ୍କର ସୌଦା ଚଳାଉଥିଲେ ଏବଂ ଜୀବନର ଅନ୍ୟାନ୍ୟ ଆବଶ୍ୟକତା ସଂଗ୍ରହ କରୁଥିଲେ । ସମଗ୍ର ଗ୍ରାମ ସମବାୟ ସୂତ୍ରରେ ଖୁବ୍ ବଡ଼ ବଡ଼ ବରାଦ ତୁଲାଉଥିବା ଅନୁମିତ ହୁଏ । ଖୁବ୍ ସମ୍ଭବ ଏ ପ୍ରକାର ବିଶେଷ ସଂଗଠନ ଓ ବିଚ୍ଛିନ୍ନ ଭାବରେ ବସତି କରିବା ଭିତରୁ ବର୍ଣ୍ଣ-ବ୍ୟବସ୍ଥା ଆରମ୍ଭ ହେଲା ଓ ବିସ୍ତୃତି ଲାଭକଲା । ବ୍ରାହ୍ମଣ ଓ ସମ୍ଭ୍ରାନ୍ତ ଶ୍ରେଣୀର ଲୋକେ ଯେଉଁ ଦୃଷ୍ଟାନ୍ତ ଦେଖାଉଥିଲେ ତାହା କ୍ରମଶଃ ଉତ୍ପାଦନକାରୀ ସଂଘ ଓ ବାଣିଜ୍ୟ ସମିତିମାନଙ୍କଦ୍ୱାରା ଅନୁସୃତ ହେଉଥିଲା । ବଡ଼ ବଡ଼ ରାଜପଥ, ମଝେ ମଝେ ପାନ୍ଥ-ନିବାସ ଓ କଦାଚିତ୍ ଚିକିତ୍ସାଳୟ ସମଗ୍ର ଉତ୍ତର-ଭାରତରେ ବ୍ୟବସ୍ଥିତ ଥିଲା ଏବଂ ଦେଶର

(୧) କେମ୍ବ୍ରିଜ ହିଷ୍ଟ୍ରି ଅଫ୍ ଇଣ୍ଡିଆ, ୧ମ ଖଣ୍ଡ, ପୃ. ୨୦୧—ଅଧ୍ୟାପକ ଇ. ୱାସ୍‌ବର୍ଣ୍ଣ, ହପ୍‌କିନ୍‌ସ ।

ଦୂରବର୍ତ୍ତୀ ଅଞ୍ଚଳମାନଙ୍କ ସଙ୍ଗେ ସଂଯୋଗ ସ୍ଥାପନ କରିଥିଲା । ଦେଶ ଭିତରେ କେବଳ ନୁହେଁ, ଭାରତ ଓ ଅନ୍ୟାନ୍ୟ ଦେଶ ଭିତରେ ମଧ୍ୟ ବାଣିଜ୍ୟ ଚାଲୁଥିଲା । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ମିଶର ଦେଶର ମେମ୍ଫିସ୍‌ଠାରେ ଭାରତୀୟ ବଣିକଙ୍କ ଗୋଟାଏ ବସତି ଥିବା ବିଷୟ ସେଠାରେ ଆବିଷ୍କୃତ ମୂର୍ତ୍ତି ପ୍ରତିରୂପଗୁଡ଼ିକ ଭାରତୀୟ ନମୁନା ପ୍ରମାଣିତ କରେ । ଖୁବ୍ ସମ୍ଭବ, ଭାରତ ଓ ଦକ୍ଷିଣ-ପୂର୍ବ ଏସିଆର ଦ୍ୱୀପପୁଞ୍ଜ ଭିତରେ ବାଣିଜ୍ୟ କାରବାର ଥିଲା । ଦରିଆପାରି ବାଣିଜ୍ୟ ନିମନ୍ତେ ବୋଇତ ବ୍ୟବହୃତ ହେଉଥିଲା ଏବଂ ଏଥିରେ ସନ୍ଦେହ ନାହିଁ ଯେ, ସେ ସମୟର ଭାରତରେ ଭୂ-ମଧ୍ୟ ଜଳପଥ ଓ ସମୁଦ୍ରପଥ ନିମନ୍ତେ ବିବିଧ ଜଳଯାନ ନିର୍ମାଣ କରାଯାଉଥିଲା । ଦୂରାଗତ ବଣିକମାନେ ଜାହାଜ ମାସୁଲ ଦେବା ବିଷୟ ପୁରାଣମାନଙ୍କରେ କଥିତ ଅଛି ।

ବଣିକମାନଙ୍କ ଜଳଯାତ୍ରାର ଉଲ୍ଲେଖ ଜାତକରେ ପ୍ରଚୁର ପରିମାଣରେ ରହିଛି । ସ୍ଥଳ-ପଥରେ ମଧ୍ୟ ମରୁଭୂମି ଅତିକ୍ରମକରି ପଶ୍ଚିମର ବନ୍ଦର ଭାରୋଚ ଓ ଉତ୍ତରରେ ଗାନ୍ଧାର ଏବଂ ମଧ୍ୟ-ଏସିଆ ଅଭିମୁଖେ କାରବାଁ ଅର୍ଥାତ୍ ଓଟ ପିଠିରେ ମାଲ୍ ବୋହେଇ କରି ବଣିକମାନେ ଯାତ୍ରା କରିବା ବିଷୟ ବର୍ଣ୍ଣିତ ଅଛି । ଭାରୋଚରୁ ବୋଇତ ବେବିଲନ୍‌ରେ (ବାଭେରୁ) ପହଞ୍ଚିବା ପାଇଁ ପାରସ୍ୟ ଉପସାଗର ଦେଇ ଯାତ୍ରା କରିଥାଏ । ଜାତକର ବିବରଣୀ ଅନୁସାରେ ଦେଶର ନଦୀପଥରେ ବନାରସ, ପାଟଣା, ଚମ୍ପା (ଭାଗଲପୁର) ଓ ଅନ୍ୟାନ୍ୟ ନଗର ଦେଇ ସମୁଦ୍ରପଥରେ ଜାହାଜ ସିଂହଳ ଓ ମାଳୟ ଯାତ୍ରା କରିଥାଏ । ଦକ୍ଷିଣରେ ଆନ୍ତର୍ଜାତୀୟ ବାଣିଜ୍ୟର ଅନ୍ୟତମ କେନ୍ଦ୍ର କାବେରୀ ନଦୀର କାବେରୀପଟ୍ଟିଣମ୍ ବନ୍ଦର ବିଶେଷ ସମୃଦ୍ଧ ଥିଲା ବୋଲି ପ୍ରାଚୀନ ତାମିଲ କାବ୍ୟମାନଙ୍କରେ ବର୍ଣ୍ଣିତ ଅଛି । ଜାତକରୁ ଜଣାଯାଏ ଯେ ଏହି ସବୁ ଜାହାଜ ଖୁବ୍ ବଡ଼ ଧରଣର ଥିଲା । କାରଣ ଶତଶତ ସୌଦାଗର ଓ ବିଦେଶରେ ରହି ଜୀବିକା କରିବା ଉଦ୍ଦେଶ୍ୟରେ ଯାଉଥିବା ଯାତ୍ରୀ ଗୋଟାଏ ଜାହାଜରେ ଯାଇପାରୁଥିଲେ ।

'ମିଲିନ୍ଦ'ରେ (ଏ ହେଉଛନ୍ତି ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଉତ୍ତର-ଭାରତରେ ରାଜତ୍ୱ କରୁଥିବା ଗ୍ରୀକ୍-ବାକ୍ଟ୍ରୀ ରାଜା ମିଲିନ୍ଦ ଯିଏ ବୌଦ୍ଧଧର୍ମର ଜଣେ ନୈଷ୍ଠିକ ଅନୁଗାମୀ ଥିଲେ) କୁହାଯାଇଛି : "ଜଣେ ଜାହାଜ-ମାଲିକ କୌଣସି ସାମୁଦ୍ରିକ ବନ୍ଦର ସହରରେ ବରାବର ମାଲ ଉପରୁ ଭଡ଼ା ଆଦାୟ କରି ଯେବେ ଖୁବ୍ ଧନବାନ୍ ହୁଏ, ସେ ସମୁଦ୍ରପଥରେ ବଙ୍ଗ, ତକ୍କୋଲ, ଚୀନ, ସୋବୀର, ସୁରଟ, ଆଲେକଜାଣ୍ଡ୍ରିଆ, ଚୋଳମଣ୍ଡଳ ଉପକୂଳ କିମ୍ବା ଦରିଆପାରି ଭାରତ ଅବା ଅନ୍ୟ ଯେକୌଣସି ସ୍ଥାନକୁ, ଯେଉଁଠି ବିଭିନ୍ନ ଦେଶର ଜାହାଜ ସମାଗମ ହୁଏ, ଯାଇ ପାରିବ । (୧)

ସେ ସମୟରେ ଭାରତର ସୌଦାଗରମାନେ ଯେଉଁ ସବୁ ଦ୍ରବ୍ୟ ରପ୍ତାନି କରୁଥିଲେ, ସେଥି-ଭିତରେ ପ୍ରଧାନ ଥିଲା ରେଶମ ବସ୍ତ୍ର । ଅତି ସୂକ୍ଷ୍ମ କାର୍ପାସ ବସ୍ତ୍ର, କମ୍ବଳଭୂଷଣ ଓ ଯୋଦ୍ଧବର୍ମ,

---

(୧) କେମ୍ବ୍ରିଜ୍ ହିଷ୍ଟ୍ରି ଅଫ୍ ଇଣ୍ଡିଆ (୧ମ ଖଣ୍ଡ, ପୃ.୨୧୨)ରୁ ମିସେସ୍ ସି.ଏ. ଏଫ୍. ରାଇଜ୍ ଡେଭିଡ୍‌ସ ଉଦ୍ଧାର କରିଚନ୍ତି ।

କଶଦାର ବସ୍ତ୍ର, ସୀବନକୃତ ପରିଚ୍ଛଦ ଓ କମ୍ବଳ, ନାନାବିଧ ସୁଗନ୍ଧ ଦ୍ରବ୍ୟ ଓ ଔଷଧ, ହାତୀଦାନ୍ତ ଓ ହାତୀଦାନ୍ତତିଆରି ପଦାର୍ଥ, ଅଳଙ୍କାର ଓ ସୁନା (ଖୁବ୍ କ୍ୱଚିତ୍ ରୁପା । (୧)

ଭାରତ ଅଥବା ଉତ୍ତର-ଭାରତ ଯୁଦ୍ଧାସ୍ତ୍ର ନିମନ୍ତେ ବିଶେଷକରି ଖଣ୍ଡା, ଛୁରି ଓ ଇସ୍ପାତର ଉତ୍କୃଷ୍ଟତା ନିମନ୍ତେ ପ୍ରସିଦ୍ଧ ଥିଲା । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ବଡ଼ ଧରଣର ଏକ ଭାରତୀୟ ସେନାବାହିନୀ, ଅଶ୍ୱାରୋହୀ ଓ ପଦାତିକ, ପାରସିକ ବାହିନୀ ସଙ୍ଗେ ଗ୍ରୀସ୍ ଅଭିମୁଖେ ଯୁଦ୍ଧଯାତ୍ରା କରିଥିଲେ । ସିକନ୍ଦର ଯେବେ ପାରସ୍ୟ ଆକ୍ରମଣ କଲେ (ଫିର୍ଦ୍ଦୌସିଙ୍କ ପାରସିକ ଭାଷାରେ ଲିଖିତ 'ଶାହନାମା' ଅନୁସାରେ) ପାରସିକମାନେ ଖୁବ୍ ସୁନ୍ଦର ଖଣ୍ଡା ଆଦି ଯୁଦ୍ଧାସ୍ତ୍ର ଭାରତରୁ ଅଣାଇଥିଲେ । ଖଣ୍ଡାର ପ୍ରାଚୀନ (ପ୍ରାଗ୍-ଇସ୍‌ଲାମିକ) ଆରବ୍ୟ ଶବ୍ଦ ହେଉଛି 'ମୁହନ୍ନଦ' । ଏହାର ଅର୍ଥ ହେଉଛି 'ଭାରତରୁ' ଅବା ଭାରତୀୟ । ଏବେ ସୁଦ୍ଧା ଆରବ ଭାଷାରେ ଏ ଶବ୍ଦର ପ୍ରଚଳନ ଅଛି ।

ପ୍ରାଚୀନ ଭାରତରେ ଲୌହଶୋଧନ ଦିଗରେ ଅସାମାନ୍ୟ ପ୍ରଗତି ସାଧିତ ହେବାଭଳି ଅନୁମିତ ହୁଏ । ଦିଲ୍ଲୀ ନିକଟରେ ଗୋଟିଏ ପ୍ରକାଣ୍ଡ ଲୌହସ୍ତମ୍ଭ ଅଛି । କେଉଁ ଉପାୟରେ ଏହା ତିଆରି ହେଉଥିବାରୁ ଆଜି ସୁଦ୍ଧା କେତେ ପାଣି, ପବନ, ଖରା, ତୁଷାର ଅତ୍ୟାଚାର ସତ୍ତ୍ୱେ ସେଥିରେ ଟିକିଏ ବୋଲି କଳଙ୍କ ଯେ ଲଗିନି, ତାର ରହସ୍ୟ ବୁଝି ନପାରି ଆଧୁନିକ ବୈଜ୍ଞାନିକମାନେ ହତବୁଦ୍ଧି ହୋଇ ପଡ଼ୁଛନ୍ତି । ସେଥିରେ ଅଭିଲେଖ ଗୁପ୍ତଲିପିରେ ଖୋଦିତ; ଯାହା ଖ୍ରୀଷ୍ଟୀୟ ଚତୁର୍ଥରୁ ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ବ୍ୟବହୃତ ହେଉଥିଲା । କେତେ ପଣ୍ଡିତ ଅବଶ୍ୟ ମତ ଦିଅନ୍ତି ଯେ ସେହି ସ୍ତମ୍ଭ ଅଭିଲେଖ ଅପେକ୍ଷା ଆହୁରି ପୁରାତନ । ପରବର୍ତ୍ତୀ କେଉଁ ସମୟରେ ହୁଏତ ସ୍ତମ୍ଭ ଗାତ୍ରରେ ସେହି ଅଭିଲେଖ ଖୋଦିତ ହୋଇଛି ।

ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ସିକନ୍ଦରଙ୍କ ଭାରତ ଆକ୍ରମଣ ସାମରିକ ଦୃଷ୍ଟିକୋଣରୁ ଗୋଟାଏ ଗୌଣ ବ୍ୟାପାର । ଏହାକୁ ଆମ ସୀମାନ୍ତ ଉପରେ ଗୋଟାଏ ସଶସ୍ତ୍ର ଲୁଣ୍ଠନ କୁହାଯାଇପାରେ ଏବଂ ତାହା ମଧ୍ୟ ସିକନ୍ଦରଙ୍କ ପକ୍ଷରେ ସଫଳ ହୋଇନଥିଲା । ସୀମାନ୍ତର ଜଣେ ରାଜା ତାଙ୍କୁ ଏପରି ପ୍ରବଳଭାବରେ ପ୍ରତିରୋଧ କରିଥିଲେ ଯେ ଭାରତ ଭିତରକୁ ପଶିବା ବିଷୟରେ ତାଙ୍କୁ ପୁନର୍ବିଚାର କରିବାକୁ ପଡ଼ିଥିଲା । ସୀମାନ୍ତରେ ଜଣେ ସାମାନ୍ୟ ରାଜା ଯଦି ତାଙ୍କୁ ଏପରି ବ୍ୟତିବ୍ୟସ୍ତ କରିଦେଇ ପାରେ, ଆଉ ଦକ୍ଷିଣକୁ ଆଗେଇଲେ ଅନ୍ୟାନ୍ୟ ବୃହତ୍ତର ତଥା ଶକ୍ତିଶାଳୀ ରାଜାମାନଙ୍କର ସମ୍ମୁଖୀନ ସେ ହେବେ କିପରି ? ଖୁବ୍ ସମ୍ଭବ ଏହି କାରଣରୁ ମୁଖ୍ୟତଃ, ତାଙ୍କର ସେନାବାହିନୀ ଆଉ ଅଗ୍ରସର ହେବା ଚାହିଁନଥିଲେ ଏବଂ ସ୍ୱଦେଶକୁ ଫେରିଯିବା ପାଇଁ ଧରିବସିଥିଲେ ।

ସିକନ୍ଦରଙ୍କ ପ୍ରତ୍ୟାଗମନ ଓ ମୃତ୍ୟୁ ପରେ ପରେ ସେଲ୍ୟୁକସ୍ ଯେବେ ପୁନର୍ବାର ଆକ୍ରମଣର ଉଦ୍ୟମ କରନ୍ତି, ଭାରତର ସାମରିକ ଶକ୍ତିର ମହତ୍ତ୍ୱ ପ୍ରକଟିତ ହେଲା । ଚନ୍ଦ୍ରଗୁପ୍ତଙ୍କ ଦ୍ୱାରା ସେ ପରାଜିତ ହେଲେ ଏବଂ ସସୈନ୍ୟ ଭାରତର ସୀମା ଛାଡ଼ିବାକୁ ବାଧ୍ୟ ହେଲେ । ସେତେବେଳେ

(୧) ରାଜ୍ ଡେଭିଡ୍‌ସ, ବୁଦ୍ଧିଷ୍ଟ ଇଣ୍ଡିଆ, ପୃ. ୯୮ ।

ଭାରତୀୟ ସେନାବାହିନୀର ଗୋଟାଏ ବଡ଼ ସୁବିଧା ଥିଲା, ଯାହା ଅନ୍ୟମାନଙ୍କର ନଥିଲା । ତାହା ହେଉଛି ତାଲିମପ୍ରାପ୍ତ ଯୁଦ୍ଧହସ୍ତୀ । ଏହି ସମ୍ବଳ ଭାରତୀୟ ସେନାଙ୍କ ନିକଟରେ ଯଥେଷ୍ଟ ପରିମାଣରେ ଥିଲା ଏବଂ ଯାହାକୁ ଆଜିର ଟେଙ୍କ୍ ସଙ୍ଗେ ତୁଳନା କରାଯାଇପାରେ । ଖ୍ରୀଷ୍ଟଜନ୍ମ ୩୦୨ ବର୍ଷ ପୂର୍ବେ ଏସିଆମାଇନରରେ ଏଣ୍ଟିଗୋନାସ ବିରୁଦ୍ଧରେ ଯୁଦ୍ଧ ଅଭିଯାନ କରିବା ପାଇଁ ସେଲ୍ୟୁକସ୍ ନିକାଟୋ ଭାରତରୁ ପାଞ୍ଚଶହ ଯୁଦ୍ଧହସ୍ତୀ ନେଇଥିଲେ । ସାମରିକ ଐତିହାସିକମାନେ କହନ୍ତି, ଏହି ଯୁଦ୍ଧରେ ଏଣ୍ଟିଗୋନାସଙ୍କ ମୃତ୍ୟୁ, ତାଙ୍କ ପୁତ୍ର ଡେମେଟ୍ରି-ଆସ୍‌ର ପଳାୟନ ଏବଂ ସେନାବାହିନୀର ଛତ्रଭଙ୍ଗ ମୂଳରେ ଥିଲା ଏହି ଯୁଦ୍ଧହସ୍ତୀଙ୍କ ନିଷ୍ପତ୍ତି-ମୂଳକ କାର୍ଯ୍ୟ । ଯୁଦ୍ଧ ନିମନ୍ତେ ହାତୀ ତାଲିମ୍ କରିବା ଓ ଉତ୍କୃଷ୍ଟ ଧରଣର ଘୋଡ଼ା ପ୍ରଜନନ କରିବା ବିଷୟରେ ବହିମାନ ଲେଖାଯାଇଛି । ଏ ପ୍ରକାର ବହିକୁ ଶାସ୍ତ୍ର ନାମ ଦିଆଯାଇଛି । ଏହି ଶବ୍ଦ ଧର୍ମଗ୍ରନ୍ଥକୁ ବୁଝାଉଥିଲେ ମଧ୍ୟ ପ୍ରତ୍ୟେକ ରକମର ଜ୍ଞାନ ଓ ବିଜ୍ଞାନ ଏପରିକି ଗଣିତଠାରୁ ନୃତ୍ୟ ପର୍ଯ୍ୟନ୍ତ ସବୁ ସମ୍ପର୍କରେ ବିନା ବାଛବିଚାରରେ ବ୍ୟବହାର କରାଯାଇଛି । ବସ୍ତୁତଃ ଧର୍ମ ଓ ଧର୍ମନିରପେକ୍ଷ ଜ୍ଞାନ ଭିତରେ ସେପରି କୌଣସି ଧରିବା ସୀମାରେଖା ଟଣାଯାଇ ନଥିଲା । ପରସ୍ପର ଭିତରେ ଉଦ୍‌ବ୍ୟାପ୍ତି ଘଟିଥିଲା ଏବଂ ଜୀବନ ପକ୍ଷରେ ଯାହାକିଛି ଉପଯୋଗୀ ବୋଧହେଉଥିଲା, ତାହା ଜିଜ୍ଞାସା ଓ ଗବେଷଣାର ବିଷୟ ହେଉଥିଲା ।

ଅକ୍ଷର ଲିଖନ ଭାରତରେ ଅତି ପ୍ରାଚୀନକାଳ ପର୍ଯ୍ୟନ୍ତ ବିସ୍ତୃତ । ନୂତନ ପ୍ରସ୍ତରଯୁଗର ପୁରାତନ ମାଟିପାତ୍ରରେ ଖୋଦିତ ବ୍ରାହ୍ମୀ ଲିପିର ଅକ୍ଷର ଦେଖିବାକୁ ମିଳୁଛି । ମହେଞ୍ଜୋ-ଦାରୋରୁ ମିଳୁଥିବା ଲେଖାଗୁଡ଼ିକ ଏ ପର୍ଯ୍ୟନ୍ତ ପୂର୍ଣ୍ଣଭାବରେ ପାଠ କରାଯାଇ ପାରିନି । ସମଗ୍ର ଭାରତରେ ଦୃଷ୍ଟ ବ୍ରାହ୍ମୀ ଲେଖ ନିଃସନ୍ଦେହରେ ହେଉଛି ସେହି ମୂଳଲିପି; ଯେଉଁଥିରୁ ନାଗରୀ ଓ ଅନ୍ୟାନ୍ୟ ଲିପି ଉଠିଆସି ହେଲା । ଅଶୋକଙ୍କର କେତେଗୁଡ଼ିଏ ଲେଖ ବ୍ରାହ୍ମୀ-ଲିପିରେ ଖୋଦିତ । ଉତ୍ତର-ପଶ୍ଚିମ ଭାରତର ଲେଖଗୁଡ଼ିକରୁ ଲିପି ହେଉଛି ଖରୋଷ୍ଟି ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଅବା ସପ୍ତମ ଶତାବ୍ଦୀ ବେଳକୁ ପାଣିନି ତାଙ୍କର ପ୍ରସିଦ୍ଧ ବ୍ୟାକରଣ ଗ୍ରନ୍ଥ ସଂସ୍କୃତ ଭାଷାରେ ଲେଖିସାରିଲେଣି । (୧) ତାଙ୍କ ଗ୍ରନ୍ଥରେ ସେ ପୂର୍ବବର୍ତ୍ତୀ କେତେ ବ୍ୟାକରଣ ଗ୍ରନ୍ଥ ବିଷୟ ଉଲ୍ଲେଖ କରିଛନ୍ତି ଏବଂ ତାଙ୍କର ସମୟବେଳକୁ ସଂସ୍କୃତ ତାର ସମୃଦ୍ଧି ଯୋଗୁଁ ଗୋଟାଏ ବର୍ଦ୍ଧନଶୀଳ ସାହିତ୍ୟର ଭାଷା ଭାବରେ ପ୍ରତିଷ୍ଠା ଲାଭ କଲାଣି । ପାଣିନିଙ୍କ ଗ୍ରନ୍ଥକୁ କେବଳ ବ୍ୟାକରଣ କହିବା ଠିକ୍ ହେବନି । ଲେନିନ୍‌ଗାଡ୍‌ର ସୋଭିଏଟ୍ ଅଧ୍ୟାପକ ଶେରବାଟସ୍କୀ ଏହାର ବର୍ଣ୍ଣନା ଦେବାକୁ ଯାଇ "ମଣିଷମନର ଶ୍ରେଷ୍ଠତମ ସୃଷ୍ଟି ଭିତରେ ଅନ୍ୟତମ", ବୋଲି କହିଛନ୍ତି । ଏବେ ସୁଦ୍ଧା ପାଣିନିଙ୍କ ସଂସ୍କୃତ ବ୍ୟାକରଣ ପ୍ରମାଣିତ ଗ୍ରନ୍ଥ ଭାବରେ ଗ୍ରହଣ କରାଯାଉଛି, ଯଦିଓ ପରବର୍ତ୍ତୀ ବୈୟାକରଣମାନେ ସେଥିରେ ଅଧିକ କିଛି

(୧) କେଇଥ୍ ଓ ଅନ୍ୟ କେହି କେହି ପାଣିନିଙ୍କ କାଳ ଖ୍ରୀ: ପୂର୍ବ ୩୦୦ ବୋଲି ନିର୍ଣ୍ଣୟ କରନ୍ତି । କିନ୍ତୁ ସମସ୍ତ ପ୍ରମାଣ ତୁଳି ଦେଖିଲେ ଏକଥା ସ୍ପଷ୍ଟ ପ୍ରକାଶ ପାଉଛି ଯେ ପାଣିନି ବୌଦ୍ଧଯୁଗ ଆରମ୍ଭ ହେବା ପୂର୍ବରୁ ତାଙ୍କର ରଚନା ଶେଷ କରିଥିଲେ ।

ଯୋଗ କରିଛନ୍ତି ଓ ନିଜସ୍ୱ ବ୍ୟାଖ୍ୟା ଦେଇଛନ୍ତି । ପାଣିନି ତାଙ୍କର ଗ୍ରନ୍ଥରେ ଗ୍ରୀକ୍‌ଲିପି ବିଷୟ ଚର୍ଚ୍ଚା କରିବା ବାସ୍ତବରେ କୌତୂହଳ ଉଦ୍ଦୀପକ । ଏଥିରୁ ସୂଚିତ ହୁଏ, ସିକନ୍ଦର ପ୍ରାଚ୍ୟ ଭୂଖଣ୍ଡକୁ ଆସିବା ବହୁ ପୂର୍ବରୁ ଭାରତ ଓ ଗ୍ରୀସ୍ ମଧ୍ୟରେ କୌଣସି ରକମର ସମ୍ପର୍କ ସ୍ଥାପିତ ହୋଇସାରିଥିଲା ।

ଜ୍ୟୋତିଷ-ଚର୍ଚ୍ଚା ବିଶେଷ ଭାବରେ ଅନୁସୃତ ହେଉଥିଲା ଏବଂ ଅନେକ ସମୟରେ ଏହା ଫଳିତ-ଜ୍ୟୋତିଷ-ଚର୍ଚ୍ଚାରେ ପର୍ଯ୍ୟବସିତ ହେଉଥିଲା । ଚିକିତ୍ସାଳୟ ଥିଲା ଏବଂ ଚିକିତ୍ସା ସମ୍ବନ୍ଧରେ ମଧ୍ୟ ପାଠ୍ୟପୁସ୍ତକ ଲେଖାଯାଇଥିଲା । ଭାରତୀୟ ଔଷଧ ବିଜ୍ଞାନର ପ୍ରତିଷ୍ଠାତା ହେଉଛନ୍ତି ପୁରାଣପ୍ରସିଦ୍ଧ ଧନ୍ୱନ୍ତରି; କିନ୍ତୁ ଯେଉଁ ସବୁ ସୁପରିଜ୍ଞାତ ପ୍ରାଚୀନ ଔଷଧ ସମ୍ବନ୍ଧୀୟ ପାଠ୍ୟପୁସ୍ତକ ମିଳୁଛି, ସେସବୁ ଖ୍ରୀଷ୍ଟୀୟ ପ୍ରାଥମିକ କେତେ ଶତାବ୍ଦୀର ରଚନା । ଏଥିରେ ଔଷଧ ଚିକିତ୍ସାର ପ୍ରଣେତା ହେଉଛନ୍ତି ଚରକ ଏବଂ ଅସ୍ତ୍ର-ଚିକିତ୍ସାର ପ୍ରଣେତା ସୁଶ୍ରୁତ । ଚରକ କନିଷ୍କଙ୍କ ରାଜବୈଦ୍ୟ ଥିବା ଅନୁମିତ ହୁଏ । କନିଷ୍କଙ୍କ ରାଜଧାନୀ ଉତ୍ତର-ପଶ୍ଚିମ ଭାରତରେ ଅବସ୍ଥିତ ଥିଲା । ଏହି ସବୁ ପାଠ୍ୟପୁସ୍ତକରେ ନାନାବିଧ ରୋଗ ସମ୍ବନ୍ଧରେ ଲେଖାଯାଇଛି ଏବଂ ତାର ନିଦାନ ପ୍ରଣାଳୀ ଓ ଚିକିତ୍ସା ବିଷୟରେ ନିର୍ଦ୍ଦେଶ ଅଛି । ଏସବୁ ପୁସ୍ତକରେ ଅସ୍ତ୍ରୋପଚାର, ଧାତ୍ରୀକର୍ମ, ସ୍ନାନବିଧାନ, ପଥ୍ୟ, ପରିଚ୍ଛନ୍ନତା, ଶିଶୁଖାଦ୍ୟ ଓ ଚିକିତ୍ସା ସମ୍ପର୍କୀୟ ଶିକ୍ଷା ଦିଆଯାଇଛି । ଏଥିରେ ଆଭିମୁଖ୍ୟ ଥିଲା ପରୀକ୍ଷା-ନିରୀକ୍ଷାମୂଳକ ଏବଂ ଅସ୍ତ୍ରୋପଚାର ତାଲିମରେ ଶବ-ବ୍ୟବଚ୍ଛେଦ ଅଭ୍ୟାସ କରାଯାଉଥିଲା । ସୁଶ୍ରୁତ ନାନାବିଧ ଅସ୍ତ୍ରୋପକରଣର ନାମ ଲେଖିଛନ୍ତି ଏବଂ ଅଙ୍ଗ କାଟିବା, ପେଟ ଚିରି ସନ୍ତାନ ବାହାର କରିବା, ଓ ଆଖିର ପରଳ ବାହାର କରିବା ପାଇଁ କି ପ୍ରକାର ଅସ୍ତ୍ରୋପଚାର କରାଯିବ ସେ ବିଷୟରେ ଚର୍ଚ୍ଚା କରିଛନ୍ତି । ଘା'ରେ ଧୂଆଁ ଦେଇ ଜୀବାଣୁ ନଷ୍ଟ କରାଯାଉଥିଲା । ଖ୍ରୀଷ୍ଟପୂର୍ବ ତୃତୀୟ ଅବା ଚତୁର୍ଥ ଶତାବ୍ଦୀ ବେଳକୁ ପଶୁ-ଚିକିତ୍ସାଳୟ ମଧ୍ୟ ସ୍ଥାପିତ ହୋଇଥିଲା । ଏହା ବୋଧହୁଏ ଅହିଂସା ଉପରେ ଜୋର ଦେଉଥିବା ଜୈନଧର୍ମ ଓ ବୌଦ୍ଧଧର୍ମର ପ୍ରଭାବ ।

ଗଣିତରେ ପ୍ରାଚୀନ ଭାରତୀୟମାନେ କେତେକ ଯୁଗପ୍ରବର୍ତ୍ତନକାରୀ ଆବିଷ୍କାର କରିଥିଲେ । ସେଥିଭିତରୁ ଦଶମିକ ସ୍ଥାନ-ମୂଲ୍ୟ ପଦ୍ଧତିରେ ବ୍ୟବହୃତ '୦'(ଶୂନ) ଚିହ୍ନ,'—'(ବିୟୋଗ) ଚିହ୍ନ ଓ ବୀଜଗଣିତରେ ଅଜ୍ଞାତ-ସଂଖ୍ୟାସୂଚକ ବର୍ଣ୍ଣମାଳାର ଅକ୍ଷର ପ୍ରୟୋଗ ପ୍ରଧାନ । ଏସବୁର ସମୟ ନିରୂପଣ କରିବା କଷ୍ଟକର; କାରଣ ଗୋଟାଏ ଆବିଷ୍କାର ଓ ତାର ବାସ୍ତବ ପ୍ରୟୋଗ ମଧ୍ୟରେ ସର୍ବଦା ସମୟର ବଡ଼ ବ୍ୟବଧାନ ରହୁଥିଲା; କିନ୍ତୁ ଏକଥା ସ୍ପଷ୍ଟ ଯେ ଅତି ପ୍ରାଚୀନ କାଳରୁ ପାଟୀଗଣିତ, ବୀଜଗଣିତ ଓ ଜ୍ୟାମିତି ସମ୍ପର୍କରେ ଗବେଷଣା ଆରମ୍ଭ ହୋଇଥିଲା । ଋଗ୍‌ବେଦ କାଳରେ ମଧ୍ୟ ଗଣନାର ଭିତ୍ତି ଥିଲା ଦଶକ ସଂଖ୍ୟା । ପ୍ରାଚୀନ ଭାରତୀୟଙ୍କର ସମୟ ଓ ସଂଖ୍ୟା ଜ୍ଞାନ ଥିଲା ଅସାଧାରଣ । ଉଚ୍ଚ ରାଶିମାନଙ୍କ ନାମର ଏକ ଲମ୍ବା ସୂଚୀ ପ୍ରସ୍ତୁତ କରାଯାଇଥିଲା । ଗ୍ରୀକ୍, ରୋମାନ୍, ପାରସିକ ଓ ଆରବଙ୍କର ହଜାରକରୁ ଊର୍ଦ୍ଧ୍ୱ କିମ୍ବା ବଡ଼ ହେଲେ ଦଶହଜାରରୁ ଊର୍ଦ୍ଧ୍ୱ ($10^4 = 10000$) ସଂଖ୍ୟାର ନାମ ନଥିଲା । ଭାରତରେ ଅଠରଗୋଟି ($10^{18}$) ନିଶ୍ଚିତ ନାମକରଣ ଥିଲା । ତା'ଛଡ଼ା ଆହୁରି ଦୀର୍ଘତର ସୂଚୀ ତିଆରି

ହୋଇଥିଲା । ବୁଦ୍ଧଦେବଙ୍କ ବାଲ୍ୟଶିକ୍ଷା-ଚରିତରୁ ଜଣାଯାଏ ସେ $10^{50}$ ପର୍ଯ୍ୟନ୍ତ ନାମ କହିପାରୁଥିଲେ ।

ଅପର ପକ୍ଷରେ, ସମୟର ଖୁବ୍ ସୂକ୍ଷ୍ମ ବିଭାଜନ କରାଯାଇଥିଲା । ତାର ନିମ୍ନତମ ଏକକ ଥିଲା ଗୋଟିଏ ସେକେଣ୍ଡର ପ୍ରାୟ $\frac{1}{17}$ ଭାଗ ଏବଂ ଦୀର୍ଘତାର ନିମ୍ନତମ ପରିମାପ ଯାହା ଦିଆଯାଇଛି ସଂଖ୍ୟାରେ ଲେଖିଲେ ତାହା ହେବ $1.37 \times 7^{-10}$ । ଏଥିରେ ସନ୍ଦେହ ନାହିଁ ଯେ ଏହିପରି ବୃହତ୍ ଓ କ୍ଷୁଦ୍ର ରାଶି ସମ୍ପୂର୍ଣ୍ଣ କାଳ୍ପନିକ ଏବଂ ଦାର୍ଶନିକ ବିଷୟରେ କେବଳ ବ୍ୟବହୃତ ହେଉଥିଲା । ତଥାପି ପ୍ରାଚୀନ ଭାରତୀୟଙ୍କର ଦେଶ ଓ କାଳର ଧାରଣା ଯେପରି ବିଶାଳ ଥିଲା, ଅନ୍ୟ କୌଣସି ପ୍ରାଚୀନ ଜାତିର ସେପରି ନାହିଁ । ସେମାନଙ୍କର ଚିନ୍ତା ଅତି ଉଚ୍ଚ ପ୍ରଦେଶରେ ଅବତରଣ କରୁଥିଲା । ସେମାନଙ୍କ ପୌରାଣିକ ଗାଥାରେ ମଧ୍ୟ କେତେ ଅର୍ବୁଦ-ଖର୍ବ ବର୍ଷର ଯୁଗ ସମ୍ପର୍କରେ ବର୍ଣ୍ଣନା କରାଯାଇଛି । ଆଧୁନିକ ଭୂବିଦ୍ୟାର ବିଶାଳ ପର୍ଯ୍ୟାୟ ଅଥବା ନକ୍ଷତ୍ରମାନଙ୍କର ଅନ୍ତରୀକ୍ଷ-ଦୂରତା ସେମାନଙ୍କୁ ବିସ୍ମିତ କରିନଥାନ୍ତା । ଏହି ପୃଷ୍ଠଭୂମି ଯୋଗୁଁ ଡାର୍‌ଉଇନଙ୍କ ପ୍ରଜାତିତତ୍ତ୍ୱ ଓ ସେପରି ଆଉ କେତେ ତତ୍ତ୍ୱ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ୟୁରୋପରେ ଯେପରି ଆନ୍ଦୋଳନ ଓ ଆନ୍ତର ସଂଘାତ ସୃଷ୍ଟି କଲା, ତାହା ଭାରତରେ ସମ୍ଭବ ହେଲାନାହିଁ । ସାଧାରଣ ୟୁରୋପୀୟ-ମାନସ ଯେଉଁ ସମୟ ପରିମାପକ ସଙ୍ଗେ ଅଭ୍ୟସ୍ତ, ତାହା କେତେ ହଜାର ବର୍ଷ ଭିତରେ କେବଳ ସୀମାବଦ୍ଧ ।

'ଅର୍ଥଶାସ୍ତ୍ର'ରେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ଉତ୍ତର-ଭାରତରେ ପ୍ରଚଳିତ ଓଜନ ଓ ମାପ ଦିଆଯାଇଛି । ହାଟ-ବଜାରରେ ସେ ସମସ୍ତ ମାପ-ଓଜନର ସଯତ୍ନ ସମୀକ୍ଷଣ କରାଯାଇଥାଏ ।

ପୁରାଣ ଯୁଗରେ, ସହର ଅବା ନଗର ଉପକଣ୍ଠରେ ଅବସ୍ଥିତ ଅଶ୍ରମ ବିଦ୍ୟାଳୟ (ଯାହା ଏକପ୍ରକାର ବିଶ୍ୱବିଦ୍ୟାଳୟ ମଧ୍ୟ) ବିଷୟ ଆମେ ବାରମ୍ବାର ଶୁଣିବାକୁ ପାଉଁ; ଯେଉଁଠି ଶିକ୍ଷାର୍ଥୀମାନେ ଶିକ୍ଷା ଓ ତାଲିମ ନିମନ୍ତେ ପ୍ରଖ୍ୟାତ ବିଦ୍ୱାନ୍‌ମାନଙ୍କୁ ଘେରି ରହୁଥିଲେ ଏବଂ ସାମରିକ ତାଲିମ୍ ସମେତ ନାନାବିଧ ବିଷୟରେ ଶିକ୍ଷାଲାଭ କରୁଥିଲେ । ଏ ପ୍ରକାର ଆଶ୍ରମ-ଶିକ୍ଷା ପସନ୍ଦ କରାଯାଉଥିଲା; କାରଣ ବିଦ୍ୟାର୍ଥୀମାନେ ସହରର ହଟ୍ଟଗୋଳ ଓ ନାନାବିଧ ଆକର୍ଷଣରୁ ଦୂରରେ ରହି ସଂଯମ ତଥା ବ୍ରହ୍ମଚର୍ଯ୍ୟର ଜୀବନ ଯାପନ କରିପାରୁଥିଲେ । ଏପରି ଭାବରେ କେତେବର୍ଷ ଶିକ୍ଷାଲାଭ କରିବା ପରେ ସେମାନେ ନିଜ ନିଜର ସ୍ଥାନକୁ ଫେରିଯାଇ ଗୃହସ୍ଥ ତଥା ନାଗରିକ ଜୀବନ ଯାପନ କରୁଥିଲେ । ଏହି ସବୁ ଆଶ୍ରମ ଖୁବ୍ ସମ୍ଭବ ସ୍ୱଳ୍ପସଂଖ୍ୟକ ବିଦ୍ୟାର୍ଥୀଙ୍କୁ ନେଇ ଚାଲୁଥିଲା, ଯଦିଓ, କୀର୍ତ୍ତିତ ଆଚାର୍ଯ୍ୟମାନଙ୍କ ନିକଟରେ ବହୁ ସଂଖ୍ୟକ ବିଦ୍ୟାର୍ଥୀ ସମବେତ ହେବାର ସୂଚନା ମିଳୁଛି ।

ବନାରସ ସବୁ ଯୁଗରେ ବିଦ୍ୟାକେନ୍ଦ୍ର ଭାବରେ ରହିଆସିଛି ଓ ବୁଦ୍ଧଙ୍କ ସମୟରେ ମଧ୍ୟ ଏହା ପ୍ରସିଦ୍ଧ ଥିଲା ଓ ତାର ପ୍ରାଚୀନତା ସ୍ୱୀକୃତ ହୋଇଥିଲା । ବନାରସ ସମୀପସ୍ଥ 'ମୃଗଦାବ'ରେ ବୁଦ୍ଧଦେବ ତାଙ୍କର ପ୍ରଥମ ଉପଦେଶ ପ୍ରଚାର କରିଥିଲେ; କିନ୍ତୁ ବନାରସ କେଉଁ ସମୟରେ ହେଲେ, ଭାରତର ଅନ୍ୟାନ୍ୟ ଅଂଶରେ ସେତେବେଳେ ଓ ପରବର୍ତ୍ତୀ ସମୟରେ ମଧ୍ୟ ଯେପରି

ଥିଲା, ଗୋଟାଏ ବିଶ୍ୱବିଦ୍ୟାଳୟ ଭଳି ଦେଖାଦେଉଥିଲା । ସେଠାରେ ଜଣେ ଜଣେ ଆଚାର୍ଯ୍ୟଙ୍କୁ ଘେରି ଦଳ ଦଳ ବିଦ୍ୟାର୍ଥୀ ରହୁଥିଲେ ଏବଂ ବିରୋଧୀଦଳମାନଙ୍କ ଭିତରେ ଶାସ୍ତ୍ର ଆଲୋଚନା ନେଇ ବହୁଧା ପ୍ରବଳ ଯୁକ୍ତିତର୍କ ଚାଲିଥାଏ ।

କିନ୍ତୁ ଉତ୍ତର-ପଶ୍ଚିମ ଭାରତରେ ଆଧୁନିକ ପେଶାବାର ନିକଟସ୍ଥ, ତକ୍ଷଶୀଳାରେ ଗୋଟାଏ ପ୍ରାଚୀନ ତଥା ସୁବିଖ୍ୟାତ ବିଶ୍ୱବିଦ୍ୟାଳୟ ଥିଲା । ଏହା ପ୍ରଧାନତଃ, ବିଜ୍ଞାନ, ଚିକିତ୍ସାଶାସ୍ତ୍ର ଓ ବିବିଧ କଳାଶାସ୍ତ୍ର ନିମନ୍ତେ ପ୍ରସିଦ୍ଧ ଥିଲା ଏବଂ ଭାରତର ଦୂରଦୂରାନ୍ତରୁ ବିଦ୍ୟାର୍ଥୀମାନେ ଆସି ସେଠାରେ ସମବେତ ହେଉଥିଲେ । ବ୍ରାହ୍ମଣ ଓ ସମ୍ଭ୍ରାନ୍ତବଂଶୀୟ ସନ୍ତାନମାନେ, ନିରସ୍ୱ ତଥା ଭୃତ୍ୟ ପରିଚ୍ଛଦହୀନ, ଶିକ୍ଷା ନିମନ୍ତେ ତକ୍ଷଶୀଳା ଯାତ୍ରା କରିବାର ବହୁ ଦୃଷ୍ଟାନ୍ତ ଜାତକ କାହାଣୀମାନଙ୍କରେ ବର୍ଣ୍ଣିତ ଅଛି । ତକ୍ଷଶୀଳା ଗୋଟାଏ ସୁବିଧାଜନକ ସ୍ଥାନରେ ଅବସ୍ଥିତ ଥିବାଯୋଗୁଁ ସମ୍ଭବତଃ, ମଧ୍ୟ-ଏସିଆ ଓ ଆଫଗାନିସ୍ତାନରୁ ମଧ୍ୟ ବିଦ୍ୟାର୍ଥୀମାନେ ସେଠାକୁ ଯାଉଥିଲେ । ତକ୍ଷଶୀଳାରୁ ସ୍ନାତକ ଉପାଧି ଗ୍ରହଣ କରିବା ଗୋଟିଏ ବିଶିଷ୍ଟ ସମ୍ମାନ ଭାବରେ ଗଣ୍ୟ ହେଉଥିଲା । ସେଠାରୁ ଉପାଧିପ୍ରାପ୍ତ ଚିକିତ୍ସକମାନଙ୍କୁ ଲୋକେ ଖୁବ୍ ଦକ୍ଷ ମଣୁଥିଲେ ଏବଂ କୁହାଯାଇଛି ଯେ ବୁଦ୍ଧଦେବ ଯେତେବେଳେ ଅସୁସ୍ଥତା ଅନୁଭବ କରନ୍ତି, ତାଙ୍କର ଭକ୍ତମାନେ ତକ୍ଷଶୀଳାର ସ୍ନାତକ କୌଣସି ବିଖ୍ୟାତ ଚିକିତ୍ସକଙ୍କୁ ତାଙ୍କର ଚିକିତ୍ସା ନିମନ୍ତେ ଆଣିଥାନ୍ତି । ଖ୍ରୀଷ୍ଟପୂର୍ବ ଷଷ୍ଠ-ସପ୍ତମ ଶତାବ୍ଦୀର ମହାନ୍ ବୈୟାକରଣ ପାଣିନି ତକ୍ଷଶୀଳାରେ ଅଧ୍ୟୟନ କରିଥିଲେ ବୋଲି ଜଣାଯାଏ ।

ଅତଏବ, ତକ୍ଷଶୀଳା ଥିଲା ପ୍ରାକ୍ ବୌଦ୍ଧଯୁଗର ବିଶ୍ୱବିଦ୍ୟାଳୟ ଏବଂ ବ୍ରାହ୍ମଣ୍ୟ ବିଦ୍ବତ୍ତାର ଗୋଟାଏ ପ୍ରଧାନ ପୀଠ । ବୌଦ୍ଧଯୁଗରେ ମଧ୍ୟ ଏହା ବୌଦ୍ଧ ବିଦ୍ବତ୍ତାର ଗୋଟାଏ ପ୍ରଧାନ କେନ୍ଦ୍ର ହୋଇଉଠିଲା ଏବଂ ଭାରତ ତଥା ପଡ଼ୋଶୀ ଦେଶମାନଙ୍କରୁ ବହୁ ବୌଦ୍ଧ ବିଦ୍ୟାର୍ଥୀ ସେଠାକୁ ଆକର୍ଷିତ ହେଲେ । ତକ୍ଷଶୀଳା ନଗରୀ ଥିଲା ମୌର୍ଯ୍ୟ-ସାମ୍ରାଜ୍ୟର ପଶ୍ଚିମ ପ୍ରଦେଶର ରାଜଧାନୀ ।

ଭାରତର ପ୍ରାଚୀନତମ ସ୍ମୃତିକାର ମନୁଙ୍କ ଅନୁସାରେ ସମାଜରେ ନାରୀର ସ୍ଥାନ ନିଶ୍ଚିତ ଭାବରେ ଭଲ ନଥିଲା । ପିତା ହେଉ, ସ୍ୱାମୀ ହେଉ କି ପୁତ୍ର ହେଉ, କାହା ଉପରେ ହେଲେ ତାକୁ ନିର୍ଭର କରି ରହିବାକୁ ପଡ଼ୁଥିଲା । ଆଇନ ଅନୁସାରେ ପୁରୁଷର ପ୍ରାପ୍ୟ ଅସ୍ଥାବର ସମ୍ପତ୍ତି ଭାବରେ ସେ ଗଣ୍ୟ ହେଉଥିଲା । ତଥାପି ପୁରାଣମାନଙ୍କର ବହୁ ଉପାଖ୍ୟାନରୁ ଜଣାଯାଏ ଯେ ଏହି ଆଇନ୍ ସେମାନଙ୍କ ପ୍ରତି ସେତେ କଠୋର ଶୃଙ୍ଖଳା ସହକାରେ ପ୍ରୟୋଗ କରାଯାଇ ନଥିଲା ଏବଂ ଘରେ ଓ ସମାଜରେ ସେମାନେ ସମ୍ମାନଜନକ ସ୍ଥାନ ଲାଭକରିଥିଲେ । ପ୍ରାଚୀନ ସ୍ମୃତିକାର ମନୁ କହନ୍ତି : "ଯେଉଁଠି ନାରୀମାନଙ୍କୁ ସମ୍ମାନ ଦିଆଯାଏ, ସେଠାରେ ଦେବତାମାନେ ବାସକରନ୍ତି ।" ତକ୍ଷଶୀଳା କିମ୍ବା ଅନ୍ୟ କୌଣସି ପ୍ରାଚୀନ ବିଶ୍ୱବିଦ୍ୟାଳୟରେ ନାରୀମାନେ ଶିକ୍ଷାଲାଭ କରିଥିବା ବିଷୟ ଉଲ୍ଲେଖ ନାହିଁ । କିନ୍ତୁ ସେମାନଙ୍କ ଭିତରୁ କେହି କେହି କେଉଁଠି ନା କେଉଁଠି ଅବଶ୍ୟ ଶିକ୍ଷାଲାଭ କରିଥିବେ; କାରଣ ପୁରାଣରେ ବିଦ୍ୱାନ୍ ତଥା ବିଦୁଷୀ ନାରୀମାନଙ୍କ କଥା ପୁନଃ ପୁନଃ ଉଲ୍ଲେଖ କରାଯାଇଛି । ପରବର୍ତ୍ତୀ ଯୁଗମାନଙ୍କରେ

ମଧ୍ୟ ବହୁ ପ୍ରସିଦ୍ଧ ପଣ୍ଡିତଙ୍କ ବିଷୟ ଜାଣିବାକୁ ମିଳେ । ପ୍ରାଚୀନ ଭାରତରେ, ଆଜିର ଅବସ୍ଥା ଦୃଷ୍ଟିରୁ ବିଚାରକଲେ, ନାରୀର ସ୍ଥାନ ଯଦିଓ ଅତି ଦୟନୀୟ ଥିଲା, ତଥାପି ପ୍ରାଚୀନ ଗ୍ରୀସ୍ ଓ ରୋମ, ଖ୍ରୀଷ୍ଟଯୁଗର ପ୍ରଥମାବସ୍ଥା, ମଧ୍ୟଯୁଗୀୟ ୟୁରୋପର ପାଦ୍ରୀ ଅନୁଶାସନ ଏବଂ ପ୍ରକୃତପକ୍ଷେ ଊନବିଂଶ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ ନାରୀମାନଙ୍କ ଆଇନସଙ୍ଗତ ସ୍ଥିତି ଅପେକ୍ଷାକୃତ ବହୁ ଗୁଣରେ ଭଲ ଥିଲା ।

ମନୁ ଓ ତାଙ୍କର ପରବର୍ତ୍ତୀ ସ୍ମୃତିକାରମାନେ ନାନାବିଧ ଯୌଥ ବ୍ୟବସାୟ ପ୍ରଚଳିତ ଥିବା ଉଲ୍ଲେଖ କରନ୍ତି । ମନୁ ମୁଖ୍ୟତଃ ଉଲ୍ଲେଖ କରିଚନ୍ତି, ପୁରୋହିତଙ୍କ ବିଷୟରେ; କିନ୍ତୁ ଯାଜ୍ଞବଲକ୍ୟ ସେଥିରେ ବାଣିଜ୍ୟ ଓ କୃଷି ଯୋଗ କରିଛନ୍ତି । ନାରଦ ନାମକ ଜଣେ ପରବର୍ତ୍ତୀ ସ୍ମୃତିକାର କହନ୍ତି : "ପ୍ରତ୍ୟେକ ଅଂଶୀଦାରର କ୍ଷତି, ଖର୍ଚ୍ଚ ଓ ଲାଭ ତାର ନିୟୋଜିତ ପୁଞ୍ଜି ଅନୁସାରେ ସମାନ, ଅଧିକ ଅବା କମ୍ ହୁଏ । ଚୁକ୍ତି ଅନୁସାରେ ଗୋଦାମ, ଖାଦ୍ୟ, ଟିକସ, କ୍ଷତି, ଭଡ଼ା ଓ ତଦାରଖ ବାବଦର ପ୍ରତ୍ୟେକ ଖର୍ଚ୍ଚ ପ୍ରତ୍ୟେକ ଅଂଶୀଦାରକୁ ଦେବାକୁ ପଡ଼ିବ ।"

ମନୁଙ୍କ ରାଷ୍ଟ୍ରଧାରଣା ସ୍ପଷ୍ଟତଃ ଗୋଟାଏ କ୍ଷୁଦ୍ର ରାଜ୍ୟରେ ସୀମିତ ଥିଲା । ଏହି ଧାରଣା ଅବଶ୍ୟ ବର୍ଦ୍ଧିତ ଓ ପରିବର୍ତ୍ତିତ ହୋଇ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମୌର୍ଯ୍ୟ-ସାମ୍ରାଜ୍ୟରେ ପର୍ଯ୍ୟବସିତ ହେଲା ଏବଂ ଗ୍ରୀକ୍ ଦୁନିଆ ସଙ୍ଗେ ସମ୍ପର୍କ ସ୍ଥାପନ କଲା ।

ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତକରେ ଭାରତରେ ଅବସ୍ଥିତ ଗ୍ରୀକ୍ ରାଜଦୂତ ମେଗାସ୍ଥେନିସ୍ ଭାରତରେ ଦାସ ପ୍ରଥା ନଥିବା ବିଷୟ ସ୍ପଷ୍ଟଭାବରେ ପ୍ରକାଶ କରିଛନ୍ତି । କିନ୍ତୁ ଏଥିରେ ସେ ଭୁଲ୍ କରିଚନ୍ତି; କାରଣ ପାରିବାରିକ ଭୃତ୍ୟ ବ୍ୟତୀତ ସେହି ସମୟର ଭାରତୀୟ ଗ୍ରନ୍ଥମାନଙ୍କରେ ଦାସମାନଙ୍କ ଅବସ୍ଥାର ଉନ୍ନତି କରାଯିବା ବିଷୟ ଉଲ୍ଲେଖ ଅଛି । ଏକଥା ଅବଶ୍ୟ ସ୍ପଷ୍ଟ ଯେ ସେପରି ବ୍ୟାପକ ଦାସ ପ୍ରଥା ସେତେବେଳେ ନଥିଲା ଏବଂ ଅନ୍ୟ ଦେଶମାନଙ୍କ ପରି କୃଷି ଇତ୍ୟାଦି କର୍ମରେ ଦାସମାନଙ୍କୁ ନିଯୁକ୍ତ କରାଯାଉନଥିଲା । ଏଥିରୁ ମେଗାସ୍ଥେନିସ୍ ଭାରତରେ ଦାସ ପ୍ରଥା ନାହିଁ ବୋଲି ବିଶ୍ୱାସ କରିଥିଲେ । ଗୋଟାଏ ଅନୁଶାସନ ଅଛି, 'ଆର୍ଯ୍ୟଙ୍କୁ କେବେ ଦାସ କରାଯାଇ ନପାରେ । ଯଥାର୍ଥ ଭାବରେ କିଏ ଆର୍ଯ୍ୟ ଓ କିଏ ନୁହେଁ କହିବା କଠିନ; କିନ୍ତୁ ସେହି ସମୟରେ କେତେ ଅସ୍ପଷ୍ଟ ଭାବରେ ହେଲେ ମଧ୍ୟ ଶୂଦ୍ର ସମେତ ମୌଳିକ ଚାରିବର୍ଣ୍ଣଙ୍କୁ ବୁଝାଉଥିଲା । ଅଚ୍ଛୁତମାନେ ଏଥିରୁ ବାଦ୍ ପଡ଼ୁଥିଲେ ।

ଚୀନରେ ମଧ୍ୟ ହୂଣ ରାଜବଂଶର ପ୍ରଥମାବସ୍ଥାରେ ଗୃହସ୍ଥି କର୍ମ ନିମନ୍ତେ ମୁଖ୍ୟତଃ ଦାସ ନିଯୁକ୍ତ ଚାଲୁଥିଲା । କୃଷି ତଥା ଅନ୍ୟାନ୍ୟ ବଡ଼ ବଡ଼ କର୍ମକ୍ଷେତ୍ରରେ ସେମାନଙ୍କର ଗୁରୁତ୍ୱ ନଥିଲା । ଭାରତରେ ଓ ଚୀନରେ ଏହି ପାରିବାରିକ ଭୃତ୍ୟଙ୍କ ସଂଖ୍ୟା ଉଲ୍ଲେଖଯୋଗ୍ୟ ଥିଲା ଏବଂ ଏହି ଦୃଷ୍ଟିରୁ ଦେଖିଲେ ଭାରତ ଓ ଚୀନର ସମାଜ ଏବଂ ସମସାମୟିକ ଗ୍ରୀକ୍ ଓ ରୋମାନ୍ ସମାଜ ଭିତରେ ବିଶେଷ ପାର୍ଥକ୍ୟ ଥିଲା ।

ସେହି ଦୂର ଅତୀତରେ ଭାରତୀୟମାନେ କିପରି ଥିଲେ ? ଏତେ ଅତୀତର ଏବଂ ଆମଠାରୁ ଏତେ ଭିନ୍ନ ଗୋଟାଏ ଯୁଗ ସମ୍ପର୍କରେ ଧାରଣା କରିବା କଷ୍ଟକର । ତଥାପି ଆମେ ଯେଉଁ

ବିବିଧ ତଥ୍ୟ ପ୍ରମାଣ ପାଇ, ସେଥିରୁ ଗୋଟାଏ ଅସ୍ପଷ୍ଟ ଚିତ୍ର ଆଖି ଆଗରେ ଭାସିଉଠେ । ନିଜର ବହୁବିଧ ପରମ୍ପରାରେ ବିଶ୍ୱାସୀ ଓ ଅଭିମାନୀ, ରହସ୍ୟର ଅନ୍ୱେଷଣ ନିମନ୍ତେ ଆତୁର, ପ୍ରକୃତି ଓ ମଣିଷର ଜୀବନ ପକ୍ଷରେ ଜିଜ୍ଞାସୁ, ନିଜର ସୂକ୍ଷ୍ମ ବିବିଧମାନ ଓ ମୂଲ୍ୟବୋଧ ପ୍ରତି ଅନୁରାଗୀ, ଜୀବନକୁ ସହଜ-ସରଳ ତଥା ପୂର୍ଣ୍ଣପ୍ରାଣରେ ଗ୍ରହଣକରି ମୃତ୍ୟୁର ସମ୍ମୁଖୀନ ହେବାରେ ନିରୁଦ୍‌ବିଗ୍ନ, ସେମାନେ ଗୋଟାଏ ପ୍ରକାର ଜଞ୍ଜାଳ-ଉଦାସୀନ, ଉଚ୍ଛଳ ପ୍ରକୃତିକ ଜାତି ଥିଲେ । ସିକନ୍ଦରଙ୍କ ଉତ୍ତର-ଭାରତ ଅଭିଯାନର ଗ୍ରୀକ୍ ଐତିହାସିକ ଏରିଅନ୍ ଆର୍ଯ୍ୟ-ମାନଙ୍କ ଏ ପ୍ରକାର ମନୋଭାବ ଦେଖି ସ୍ତମ୍ଭିତ ହୋଇଥିଲେ । 'କୌଣସି ଜାତି', ସେ ଲେଖିଚନ୍ତି, 'ଭାରତୀୟ ଅପେକ୍ଷା ସଙ୍ଗୀତ ଓ ନୃତ୍ୟପ୍ରିୟ ନୁହେଁ ।'

## ୧୭. ମହାବୀର ଓ ବୁଦ୍ଧ : ବର୍ଣ୍ଣ-ବ୍ୟବସ୍ଥା

ପ୍ରାଗ୍‌ବୈଦିକକାଳରୁ ବୌଦ୍ଧଯୁଗର ପ୍ରାରମ୍ଭିକ ଅବସ୍ଥା ପର୍ଯ୍ୟନ୍ତ ଉତ୍ତରଭାରତରେ ଏପରି କୌଣସି ପୃଷ୍ଠଭୂମି ସୃଷ୍ଟିହୋଇଥିଲା । ଏହା ରାଜନୈତିକ ଓ ଅର୍ଥନୈତିକ ଦିଗରୁ ସତତ ପରିବର୍ତ୍ତିତ ହେଉଥିଲା ଏବଂ ସମ୍ମିଶ୍ରଣ ଓ ସମନ୍ୱୟ ତଥା ଶ୍ରମ-ବିଶେଷୀକରଣର ପ୍ରକ୍ରିୟା ଚାଲିଥିଲା । ଚିନ୍ତାଜଗତରେ ବାରମ୍ବାର ସଂଘାତ ସତ୍ତ୍ୱେ ଅବିଚ୍ଛିନ୍ନ ବିକାଶ ଘଟିଥିଲା । ପ୍ରାଥମିକ ଉପନିଷଦ କାଳର ଅନୁବର୍ତ୍ତୀ ଭାବରେ ନାନା ଦିଗରେ ଚିନ୍ତାର ବିକାଶ ଓ କର୍ମତତ୍ତ୍ୱପରତା ପ୍ରକାଶ ପାଇଥିଲା । ପୁରୋହିତ ଓ କର୍ମକାଣ୍ଡ ବିରୁଦ୍ଧରେ ଉପନିଷଦ ଥିଲା ଗୋଟିଏ ପ୍ରତିକ୍ରିୟା । ଲୋକେ ଯାହା ଦେଖୁଥିଲେ, ସେଥିପ୍ରତି ସେମାନଙ୍କ ମନ ବିଦ୍ରୋହୀ ହୋଇ ଉଠିଥିଲା ଏବଂ ସେହି ବିଦ୍ରୋହରୁ ପ୍ରଥମ କେତେକ ଉପନିଷଦ ଓ ଅଳ୍ପକାଳ ପରେ ବସ୍ତୁବାଦର ଗୋଟାଏ ବିପୁଳ ପ୍ରବାହ, ଜୈନଧର୍ମ ଓ ବୌଦ୍ଧଧର୍ମ ସୃଷ୍ଟି ହେଲା ଏବଂ ନାନାଧରଣର ଧର୍ମବିଶ୍ୱାସକୁ ସମନ୍ୱିତ କରିବାର ଉଦ୍ୟମ ଭଗବଦ୍‌ଗୀତାରେ ଦେଖାଦେଲା । ଏସବୁ ଭିତରୁ ପୁଣି ଗଢ଼ିଉଠିଲା ଭାରତୀୟ ଷଡ଼୍‌ଦର୍ଶନ । ତଥାପି ଏ ସମସ୍ତ ମାନସିକ ସଂଘାତ ଓ ବିଦ୍ରୋହ ପଛରେ ପ୍ରଚ୍ଛନ୍ନ ଥିଲା ଗୋଟିଏ ସ୍ପଷ୍ଟ ତଥା ବର୍ତ୍ତମାନ ଜାତୀୟ-ଜୀବନ ।

ଜୈନଧର୍ମ ଓ ବୌଦ୍ଧଧର୍ମ ଗୋଟାଏ ଦୃଷ୍ଟିରେ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ବୋଧ ହୋଇପାରେ; ତଥାପି ଉଭୟ ଧର୍ମ ବୈଦିକଧର୍ମ ଓ ତାର ଶାଖା-ପ୍ରଶାଖାରୁ ଏକରକମ ବିଦ୍ରୋହ କରି ଛାଡ଼ି ଯାଇଥିଲେ । ବେଦର ପ୍ରାଧିକାର ଓ ପ୍ରମାଣ ସେମାନେ ଅସ୍ୱୀକାର କରନ୍ତି ଓ ଯାହା ସବୁଠାରୁ ମୌଳିକ ଓ ଗୁରୁତ୍ୱପୂର୍ଣ୍ଣ, ତାହା ହେଉଚି ଯେ ଆଦି-କାରଣର ଅସ୍ତିତ୍ୱ ସମ୍ପର୍କରେ ସେମାନେ ଏକେ ନୀରବ ଅବା ତାହା ଅସ୍ୱୀକାର କରନ୍ତି ନାହିଁ । ଉଭୟେ ଅହିଂସା ଉପରେ ଜୋର ଦିଅନ୍ତି ଏବଂ ବ୍ରହ୍ମଚାରୀ, ଭିକ୍ଷୁ ଓ ପୁରୋହିତମାନଙ୍କ ସଙ୍ଗଠନ ଗଢ଼ି ତୋଳିଥିଲେ । ଅଦୃଶ୍ୟ ବିଶ୍ୱ ସଙ୍ଗେ ଆମର କାରବାରରେ ଯଦିଓ ତାହା ଅବଶ୍ୟମ୍ଭାବୀ ଭାବରେ ଆମକୁ ବହୁଦୂର ପର୍ଯ୍ୟନ୍ତ ନେଇଯାଏନି, ତଥାପି ସେମାନଙ୍କ ଆଭିମୁଖ୍ୟରେ ଗୋଟାଏ ପ୍ରକାର ଯଥାର୍ଥବାଦ ଓ ବୁଦ୍ଧିବାଦ ଥିଲା । ଜୈନଧର୍ମର ଗୋଟାଏ ମୌଳିକ ସିଦ୍ଧାନ୍ତ ହେଉଚି ଯେ ସତ୍ୟ ଆମ ଦୃଷ୍ଟିରସାପେକ୍ଷ । ଏହା ଏକ କଠୋର ନୀତିବାଦୀ ତଥା ପରୀକ୍ଷବାଦୀ ବିଶ୍ୱରପଦ୍ଧତି, ଯାହା

ଜୀବନ ଓ ଚରିତ୍ରର ତପସ୍ୟା ଭାବର ଉପରେ ବିଶେଷ ଜୋର ଦିଏ ।

ଜୈନଧର୍ମର ପ୍ରତିଷ୍ଠାତା ମହାବୀର ଓ ବୁଦ୍ଧ ସମସାମୟିକ ଏବଂ ଉଭୟେ କ୍ଷତ୍ରିୟ ଜାତିରେ ଜନ୍ମଗ୍ରହଣ କରିଥିଲେ । ଖ୍ରୀଷ୍ଟଜନ୍ମର ୫୪୪ ବର୍ଷ ପୂର୍ବେ ଅଶୀବର୍ଷ ବୟସରେ ବୁଦ୍ଧଦେବଙ୍କର ମହାପରିନିର୍ବାଣ ଘଟିଲା ଏବଂ ସେହି ତିଥିରୁ ଆରମ୍ଭ ହେଲା ବୌଦ୍ଧଯୁଗ । (ଏହି ତିଥି ପାରମ୍ପରିକ । ଐତିହାସିକମାନେ ଖ୍ରୀଷ୍ଟଜନ୍ମର ଚାରିଶହ ସତାଅଶୀ ବର୍ଷ ପୂର୍ବେ ଏହି ତିଥି ନିର୍ଣ୍ଣୟ କରିଥିଲେ; କିନ୍ତୁ ପାରମ୍ପରିକ ତିଥି ଅଧିକତର ନିର୍ଭୁଲ ବୋଲି ଗ୍ରହଣ କରିବାପାଇଁ ସେମାନେ ପ୍ରସ୍ତୁତ ହେଉଛନ୍ତି ।) ଆଜି ବୈଶାଖୀ ପୂର୍ଣ୍ଣିମା, ୨୪୮୮ତମ ବୌଦ୍ଧ ନବବର୍ଷ ତିଥିରେ ମୁଁ ଏକଥା ଲେଖିବସିବା ଗୋଟାଏ ବିଚିତ୍ର ସଂଯୋଗ ଭଳି ମନେହୁଏ । ବୌଦ୍ଧ ସାହିତ୍ୟରୁ ଜଣାଯାଏ, ବୁଦ୍ଧ ବୈଶାଖ ପୂର୍ଣ୍ଣିମା (ମଇ-ଜୁନ୍) ତିଥିରେ ଜନ୍ମଗ୍ରହଣ କରିଥିଲେ । ସେହି ତିଥିରେ ବୁଦ୍ଧତ୍ୱ ପ୍ରାପ୍ତ ହେଲେ ଏବଂ ବର୍ଷର ସେହି ତିଥିରେ ପୁଣି ନିର୍ବାଣ ପ୍ରାପ୍ତ ହେଲେ ।

ସେହି ସମୟରେ ପ୍ରଚଳିତ ଧର୍ମ, ଅନ୍ଧବିଶ୍ୱାସ, ଧର୍ମକର୍ମାନୁଷ୍ଠାନ, ଯଜ୍ଞପ୍ରଥା ଏବଂ ଏସବୁ ସଙ୍ଗେ ଜଡ଼ିତ ବିବିଧ ନ୍ୟସ୍ତସ୍ୱାର୍ଥ ଉପରେ ନିର୍ଭୀକ ଭାବରେ ସେ ଆକ୍ରମଣ ଚଳାଇଥିଲେ । ସେ ଆଧିଭୌତିକ ଓ ପାରମାର୍ଥିକ ଦୃଷ୍ଟିଭଙ୍ଗୀ, ଦୈବିକ ଘଟଣା, ଦୈବବାଣୀ ଓ ଅଲୌକିକତା ନେଇ ଯେତେ ସବୁ କାରବାର ତାହା ନିନ୍ଦିତ କରିଥିଲେ । ତାଙ୍କର ଆବେଦନ ଥିଲା ଯୁକ୍ତି, ତର୍କ ଓ ଅଭିଜ୍ଞତା ପ୍ରତି । ଶୀଳାଚାରର ଉପରେ ସେ ବିଶେଷ ଜୋର ଦେଉଥିଲେ ଏବଂ ତାଙ୍କର ପ୍ରଣାଳୀ ଥିଲା ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ଯେଉଁ ମନସ୍ତତ୍ତ୍ୱରେ ଆତ୍ମାର ସ୍ଥାନ ନଥିଲା । ଆଧିଭୌତିକ କଳ୍ପନାର ଅବରୁଦ୍ଧତା ପରେ ତାଙ୍କର ସମଗ୍ର ଆତ୍ମମୁଖ୍ୟ ସଦ୍ୟ ଉତ୍ଥିତ ପାର୍ବତ୍ୟ ପବନ ଭଳି ବୋଧହୁଏ ।

ବର୍ଣ୍ଣ-ବ୍ୟବସ୍ଥା ପ୍ରତି ସିଧାସଳଖ ଭାବରେ ବୁଦ୍ଧ ଆକ୍ରମଣ କରିନାହାନ୍ତି; କିନ୍ତୁ ତାଙ୍କର ସଂଘରେ ସେ ତାହା ସ୍ୱୀକାର କରି ନାହାନ୍ତି ଏବଂ ସେଥିରେ ସନ୍ଦେହ ନାହିଁ, ତାଙ୍କର ସମସ୍ତ ମନୋଭାବ ଓ କର୍ମତତ୍ପରତା ବର୍ଣ୍ଣ-ବ୍ୟବସ୍ଥାକୁ ଦୁର୍ବଳ କଲା । ହୁଏତ ତାଙ୍କ ସମୟରେ ଓ ପରବର୍ତ୍ତୀ କେତେ ଶତାବ୍ଦୀ ପର୍ଯ୍ୟନ୍ତ ବର୍ଣ୍ଣ ବ୍ୟବସ୍ଥା ଅତି ତରଳ ଅବସ୍ଥାରେ ଥିଲା । ଏକଥା ସ୍ପଷ୍ଟ ଯେ ବର୍ଣ୍ଣ-ପୀଡ଼ିତ ଗୋଟାଏ ଜାତି ବିଦେଶ ସଙ୍ଗେ ବାଣିଜ୍ୟ କିମ୍ବା କୌଣସି ଦୁଃସାହସିକ କର୍ମରେ ଜଡ଼ିତ ହୋଇପାରିନଥାନ୍ତା । ତଥାପି ବୁଦ୍ଧଙ୍କ ପରେ ପନ୍ଦର ଶହ ବର୍ଷ ପର୍ଯ୍ୟନ୍ତ ଭାରତ ଓ ତାର ପଡ଼ୋଶୀ ଦେଶମାନଙ୍କ ଭିତରେ ବାଣିଜ୍ୟ ବୃଦ୍ଧି ପାଇଥିଲା ଏବଂ ବାହାର ଦେଶମାନଙ୍କରେ ଭାରତୀୟ ଉପନିବେଶ ସମୃଦ୍ଧି ଲାଭ କରିଥିଲା । ଭାରତକୁ ଉତ୍ତର-ପଶ୍ଚିମ ଦିଗରୁ ନାନାପ୍ରକାର ପରଦେଶୀ ଆସୁଥିଲେ ଏବଂ ଭାରତରେ ଲୀନ ହେଉଥିଲେ ।

ଉଭୟ ମୁଣ୍ଡରେ ଚାଲିଥିବା ଜାତି ସମ୍ମିଶ୍ରଣର ଏହି ପ୍ରକ୍ରିୟା ଲକ୍ଷ୍ୟ କରିବା ବଡ଼ ମନୋରଞ୍ଜକ । ତଳ ପୀଢ଼ିରେ ବହୁ ନୂଆ ବର୍ଣ୍ଣ ଗଢ଼ିଉଠୁଥିଲା ଏବଂ ଯେ କେଉଁ ବିଜୟୀ ବୈଦେଶିକ ଅବିଳମ୍ବେ କ୍ଷତ୍ରିୟରେ ରୂପାନ୍ତରିତ ହେଉଥିଲା । ଖ୍ରୀଷ୍ଟୀୟ ଯୁଗର ଠିକ୍ ଆଗରୁ

ଓ ପରେ ପରେ ପ୍ରଚଳିତ ମୁଦ୍ରାରୁ ଦୁଇ ତିନି ପୁରୁଷ ଭିତରେ ଘଟିଥିବା ଏହି ଦ୍ରୁତ ପରିବର୍ତ୍ତନର ପ୍ରମାଣ ମିଳେ । ପ୍ରଥମ ଶାସକର ନାମ ପଢ଼ିଲେ ତାହା ବିଦେଶୀ ଜଣାପଡ଼େ; କିନ୍ତୁ ତାର ପୁଅ ଅବା ନାତି ସଂସ୍କୃତ ନାମ ଧରି ଦେଖାଦେଇଛନ୍ତି ଏବଂ କ୍ଷତ୍ରିୟ ରୀତି ଅନୁସାରେ ସେମାନଙ୍କର ରାଜ୍ୟାଭିଷେକ କରାଯାଇଛି ।

ରାଜପୁତ୍‌, କ୍ଷତ୍ରିୟ ବଂଶଗୁଡ଼ିକରୁ ଅନେକ ସେହି ସମୟରୁ ଆରମ୍ଭ ହୋଇଛି, ଯେବେ ଶକ ଅବା ସିଥିୟଙ୍କ ଆକ୍ରମଣ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ଆରମ୍ଭ ହୋଇଥିଲା ଅବା ପରେ ଯେବେ ଧଳାହୂଣମାନେ ଆକ୍ରମଣ କରିଥିଲେ । ଏମାନେ ସମସ୍ତେ ଭାରତର ଧର୍ମମତ ଓ ଧର୍ମାଚରଣ ଗ୍ରହଣ କଲେ ଏବଂ ତା'ପରେ କୌଣସି ପୁରାଣ-ପୁରୁଷଙ୍କ ସଙ୍ଗେ ନିଜକୁ ସଂଯୁକ୍ତ କରିବା ଉଦ୍ୟମ କଲେ । ଅତଏବ, କ୍ଷତ୍ରିୟ ସମ୍ପ୍ରଦାୟ କୁଳଗୋତ୍ର ଅପେକ୍ଷା ବୃତ୍ତି ଓ ପଦମର୍ଯ୍ୟାଦା ଉପରେ ନିର୍ଭର କରିଥିଲା । ସୁତରାଂ ବୈଦେଶିକମାନଙ୍କୁ ସେଥିରେ ଅନ୍ତର୍ଭୁକ୍ତ କରିବା ଖୁବ୍ ସହଜ ହୋଇଥିଲା ।

ଏ କଥା ସତ୍ୟ ଓ ତାତ୍ପର୍ଯ୍ୟପୂର୍ଣ୍ଣ ଯେ ଭାରତ ଇତିହାସରେ ଏହି ଦୀର୍ଘକାଳ ଭିତରେ ମହାପୁରୁଷମାନେ ପୁରୋହିତ ଓ ବର୍ଣ୍ଣ-ବ୍ୟବସ୍ଥାର କଠୋର ଶୃଙ୍ଖଳା ବିରୁଦ୍ଧରେ ବାରମ୍ବାର ଚେତାବନୀ ଦେଇଛନ୍ତି ଓ ବହୁ ଶକ୍ତିଶାଳୀ ଆନ୍ଦୋଳନ ମଧ୍ୟ ତାର ବିରୁଦ୍ଧରେ ମୁଣ୍ଡ ଟେକି ଉଠିଛି । ତଥାପି ଧୀରେ ଧୀରେ, ଅଲକ୍ଷ୍ୟ ଭାବରେ, ସତେ ଯେପରି ଏହା ଭାଗ୍ୟର ଅବଶ୍ୟ-ମ୍ଭାବୀ ଗତି, ବର୍ଣ୍ଣ-ବ୍ୟବସ୍ଥା ବିସ୍ତୃତି ଲାଭକରି ଭାରତୀୟ ଜୀବନର ପ୍ରତ୍ୟେକ ବିଭାଗକୁ କବଳିତ କରିଛି । ଏହାର ବିଦ୍ରୋହୀମାନଙ୍କ ପଛରେ ବହୁ ଅନୁଗାମୀ ସମବେତ ହୋଇଛନ୍ତି; କିନ୍ତୁ ସମୟକ୍ରମେ ସେମାନେ ପୁଣି ଏକ ନୂଆଁ ବର୍ଣ୍ଣରେ ପରିଣତ ହୋଇଛନ୍ତି । ଜୈନଧର୍ମ ଯାହା ମାତୃଧର୍ମ ବିରୁଦ୍ଧରେ ବିଦ୍ରୋହୀ ହୋଇ ଗଢ଼ି ଉଠିଥିଲା ଏବଂ ନାନା ଦିଗରେ ନିଜର ସ୍ୱତନ୍ତ୍ରତା ପ୍ରମାଣ କରିପାରିଥିଲା, ତଥାପି ବର୍ଣ୍ଣ-ବ୍ୟବସ୍ଥା ପ୍ରତି ତାହା ସହନଶୀଳ ଥିଲା ଏବଂ ନିଜକୁ ତାର ଉପଯୋଗୀ କରି ରଖିଲା । ଆଜି ଭାରତରେ ଜୈନଧର୍ମ ଜୀବିତ ରହିଛି, ହିନ୍ଦୁଧର୍ମର ପ୍ରାୟ ଗୋଟାଏ ଶାଖା ଭାବରେ । ବୌଦ୍ଧଧର୍ମ ବର୍ଣ୍ଣ-ବ୍ୟବସ୍ଥା ପ୍ରତି ଉପଯୋଗୀ ହୋଇ ନ ପାରିବା ଫଳରେ ଏବଂ ଚିନ୍ତା ଓ ଦୃଷ୍ଟିଭଙ୍ଗୀରେ ଅଧିକତର ସ୍ୱାତନ୍ତ୍ର୍ୟ ରକ୍ଷାକରିବା ଫଳରେ ଭାରତ ଓ ହିନ୍ଦୁଧର୍ମକୁ ଗଭୀର ଭାବରେ ପ୍ରଭାବିତ କରିଥିଲେ ମଧ୍ୟ ପରିଶେଷରେ ତାହା ଭାରତରୁ ଲୋପ ପାଇଯାଇଛି । ୧୮୦୦ ବର୍ଷ ତଳେ ଖ୍ରୀଷ୍ଟଧର୍ମ ଭାରତକୁ ଆସିଲା, ଏଠାରେ ପ୍ରତିଷ୍ଠିତ ହେଲା ଏବଂ କ୍ରମଶଃ ନିଜର ବର୍ଣ୍ଣ-ବ୍ୟବସ୍ଥା ଗଢ଼ିଲା । ଭାରତରେ ମୁସଲମ ସାମାଜିକ ଗଠଣୀ, ସମ୍ପ୍ରଦାୟ ଭିତରେ ଜାତିଆଣର ସମସ୍ତ ପ୍ରତିବନ୍ଧକ ବିରୁଦ୍ଧରେ ପ୍ରବଳ ନିନ୍ଦାବାଦ କରିଥିବା ସତ୍ତ୍ୱେ ନିଜେ ଆଂଶିକ ଭାବରେ ତଦ୍ୱାରା ପ୍ରଭାବିତ ହୋଇଛି ।

ସାଂପ୍ରତିକ କାଳରେ ବର୍ଣ୍ଣ-ବ୍ୟବସ୍ଥାର ଅତ୍ୟାଚାର ଲୋପକରିବା ଉଦ୍ଦେଶ୍ୟରେ ମଧ୍ୟବିତ୍ତ ଶ୍ରେଣୀ ଭିତରେ ବହୁ ଆନ୍ଦୋଳନ ମୁଣ୍ଡଟେକି ଉଠିଛି । ଫଳରେ କିଛିଟା ଲାଭହୋଇଛି ସତ୍ୟ; କିନ୍ତୁ ଜନସାଧାରଣଙ୍କ ଦିଗରୁ ଦେଖିଲେ ସେପରି କିଛି ବଡ଼ ପରିବର୍ତ୍ତନ ଲକ୍ଷ୍ୟ କରିବାର ନାହିଁ । ସେମାନଙ୍କର ଉପାୟ ଥିଲା ସାଧାରଣତଃ ପ୍ରତ୍ୟକ୍ଷ ଆକ୍ରମଣର । ତା'ପରେ ଗାନ୍ଧିଙ୍କର

ଆବିର୍ଭାବ ଘଟିଲା ଏବଂ ସେ ଏହି ସମସ୍ୟାକୁ ଅତି ପ୍ରାଚୀନ ଭାରତୀୟ ରୀତିରେ, ଅପ୍ରତ୍ୟକ୍ଷ ଭାବରେ, ଜନସାଧାରଣଙ୍କ ଉପରେ ଦୃଷ୍ଟି ରଖି, ସମାଧାନ ନିମନ୍ତେ ହାତକୁ ନେଲେ । ସେ ଯଥେଷ୍ଟ ଭାବରେ ପ୍ରତ୍ୟକ୍ଷ ମାର୍ଗ ଅନୁସରଣ କଲେ, ଯଥେଷ୍ଟ ଆକ୍ରମଣଶୀଳ ହେଲେ, ସେଥିରେ ବରାବର ଲାଗିରହିଲେ, ତଥାପି ସେ ବୃତ୍ତିବର୍ଣ୍ଣୀୟ କିମ୍ବା ସେଥିର ମୌଳିକ ତତ୍ତ୍ୱକୁ ଆହ୍ୱାନ ଜଣାଇନଥିଲେ । ଏହି ବ୍ୟବସ୍ଥା ଉପରେ ଓ ତଳେ ଯେପରି ଜଙ୍ଗଲ ମାଡ଼ିଯାଇଥିଲା ସେ ତାହା ନିର୍ମଳ କରିବାକୁ ଚାହିଁଥିଲେ ଏବଂ ସେ ଭଲଭାବରେ ଜାଣିଥିଲେ ଯେ ସେପରି କରିବା ଦ୍ୱାରା ସେ ସମଗ୍ର ଜାତିଆଣ ପ୍ରଥାର ଚେର କାଟି ପକାଉଛନ୍ତି । (ବର୍ଣ୍ଣ-ବ୍ୟବସ୍ଥାର ଭିତ୍ତି ସେ ଦୋହଲାଇ ସାରିଲେଣି ଓ ତାର ପ୍ରଭାବ ଲୋକଙ୍କ ଉପରେ ପ୍ରବଳ ଭାବରେ ପଡ଼ିଲାଣି । ସେମାନେ ବୁଝୁଛନ୍ତି ଯେ ଏହି ବ୍ୟବସ୍ଥା ଏବେ ରହିବ କିମ୍ବା ଧୂଳିସାତ ହେବ; କିନ୍ତୁ ଗାନ୍ଧିଜୀଙ୍କ ଅପେକ୍ଷା ଗୋଟାଏ ବୃହତ୍ତର ଶକ୍ତି କାର୍ଯ୍ୟ କରି ଚାଲିଛି, ତାହା ହେଉଛି ଆମର ଆଧୁନିକ ଜୀବନର ନାନା ଅବସ୍ଥା ଏବଂ ଯେପରି ଦେଖାଯାଉଛି ପରିଶେଷରେ ଅତୀତର ଏହି ପଲିତ ଓ ଅଲିଭା ଚିହ୍ନ ଲୋପ ପାଇବ ।

କିନ୍ତୁ ଭାରତରେ ଆମେ ଏହି ବର୍ଣ୍ଣ-ବ୍ୟବସ୍ଥା ବିରୁଦ୍ଧରେ (ଯାହା ମୂଳତଃ ଦେହର ବର୍ଣ୍ଣରୁ ଉପୁଜିଥିଲା) ସଂଗ୍ରାମ ଚଳାଇଥିଲାବେଳେ ପାଶ୍ଚାତ୍ୟ ଭୂଖଣ୍ଡରେ ଜାତୀୟ ଅନନ୍ୟତାର ସିଦ୍ଧାନ୍ତ ଯେନ, ସମୟେ ସମୟେ ରାଜନୈତିକ ତଥା ଅର୍ଥନୈତିକ ଭାଷାରେ ଆବୃତ ହୋଇ, ଏପରିକି ଗଣତନ୍ତ୍ରର ଭାଷା କହି କେତେ ନୂଆ ଓ ଉଦ୍ଧତ ବର୍ଣ୍ଣ ମୁଣ୍ଡ ଟେକି ଉଠିଛନ୍ତି ।

ବୁଦ୍ଧଙ୍କ ପୂର୍ବରୁ, ଖ୍ରୀଷ୍ଟଜନ୍ମର ୮୦୦ ବର୍ଷ ପୂର୍ବରୁ, ସ୍ମୃତିକାର ଋଷି ଯାଜ୍ଞବଲ୍‌କ୍ୟ କହିଥିବା ଜଣାଯାଇଛି : "ଆମର ଧର୍ମ, ଆମ ଚମଡ଼ାର ରଙ୍ଗ ଆମ ଭିତରେ ସଦ୍‌ଗୁଣ ସୃଷ୍ଟି କରେନି;

(୧) ଜାତିଆଣ ପ୍ରଥା ସମ୍ପର୍କରେ ଗାନ୍ଧିଜୀଙ୍କ ମନ୍ତବ୍ୟ ଦିନକୁ ଦିନ ତୀବ୍ର ହେଉଉଠୁଛି । ବାରମ୍ବାର ଏକଥା ସେ ସ୍ପଷ୍ଟ ଭାଷାରେ କହୁଛନ୍ତି ଯେ ଏହି ପ୍ରଥାର ବିଲୋପ ସାଧନ ଅବଶ୍ୟମ୍ଭାବୀ । ଯେଉଁ ରଚନାତ୍ମକ କାର୍ଯ୍ୟକ୍ରମ ସେ ଜାତି ସମ୍ମୁଖରେ ଉପସ୍ଥାପିତ କରିଛନ୍ତି, ସେ ବିଷୟରେ ଉଲ୍ଲେଖ କରି ସେ କହନ୍ତି, 'ଏଥିରେ ସନ୍ଦେହ ନାହିଁ ଯେ ଏହାର ଲକ୍ଷ୍ୟ ହେଉଛି ସ୍ୱାଧୀନତା—ରାଜନୈତିକ, ସାମାଜିକ, ଓ ଅର୍ଥନୈତିକ । ବିରାଟ ଏକ ଜାତିର ଜୀବନ ପକ୍ଷରେ, ଜୀବନର ସମସ୍ତ ବିଭାବ ପକ୍ଷରେ, ଏହା ଏକ ନୈତିକ ତଥା ଅହିଂସା ବିପ୍ଳବ । ପରିଣାମରେ ଜାତିଆଣ ପ୍ରଥା, ଅସ୍ପୃଶ୍ୟତା ଏବଂ ସେପରି ଯେତେସବୁ କୁସଂସ୍କାର ଲୋପ ପାଇବ, ହିନ୍ଦୁ ମୁସଲମ୍‌ ବିବାଦ ବିଗତ ଦିନର କଥା ହୋଇ ରହିବ; ଇଂରେଜ ହେଉ କି ୟୁରୋପୀୟ ହେଉ, ଲୋକେ ଶତ୍ରୁତା କଥା ସମ୍ପୂର୍ଣ୍ଣ ଭୁଲିଯିବେ··· ।' ଅଳ୍ପଦିନ ତଳେ ଗାନ୍ଧିଜୀ ପୁଣି କହିଛନ୍ତି, 'ଜାତିଆଣ ପ୍ରଥା କହିଲେ ଆମେ ଯାହା ବୁଝୁ, ଆଜିର ଯୁଗ ସଙ୍ଗେ ତାର ସମ୍ପର୍କ ନାହିଁ କି ସଙ୍ଗତି ନାହିଁ । ତିଷ୍ଠି ରହିବାକୁ ହେଲେ, ପ୍ରଗତି କରିବାକୁ ହେଲେ, ହିନ୍ଦୁଧର୍ମ ଓ ଭାରତର ଉଭୟ ନିମନ୍ତେ ଜାତିଆଣି ପ୍ରଥାର ବିଲୋପ ସାଧନ ଅନିବାର୍ଯ୍ୟ ।'

ସଦ୍‌ଗୁଣ ଅଭ୍ୟାସରୁ ଉପୁଜିଥାଏ । ଅତଏବ, ନିଜ ପ୍ରତି ଯାହା କରିବାକୁ କେହି ଚାହିଁ ନଥାନ୍ତି, ଅନ୍ୟମାନଙ୍କ ପ୍ରତି ସେ ସେପରି ନକରୁ ।"

## ୧୭. ଚନ୍ଦ୍ରଗୁପ୍ତ ଓ ଚାଣକ୍ୟ : ମୌର୍ଯ୍ୟ ସାମ୍ରାଜ୍ୟର ପ୍ରତିଷ୍ଠା

ବୌଦ୍ଧଧର୍ମ କ୍ରମଶଃ ଭାରତରେ ବିସ୍ତାର ଲାଭ କଲା । ମୂଳତଃ ଏହା ଗୋଟାଏ କ୍ଷତ୍ରିୟ ଆନ୍ଦୋଳନ ଏବଂ ଶାସକଶ୍ରେଣୀ ଓ ପୁରୋହିତଙ୍କ ସଂଘର୍ଷର ଏହା ପ୍ରତିନିଧିତ୍ୱ କରିଥିଲେ ସୁଦ୍ଧା ଏହାର ନୀତିଶାସ୍ତ୍ରଗତ ଓ ଗଣତାନ୍ତ୍ରିକ ଦୃଷ୍ଟିଭଙ୍ଗୀ ଏବଂ ବିଶେଷ କରି ଯଜ୍ଞ ଓ କର୍ମକାଣ୍ଡ ବିରୁଦ୍ଧରେ ଏହା ସଂଗ୍ରାମପରାୟଣତା ଜନମାନସକୁ ସ୍ପର୍ଶକଲା । ଗୋଟାଏ ଜନପ୍ରିୟ ସଂସ୍କାର ଆନ୍ଦୋଳନ ଭାବରେ ଏହା ବିକାଶ ଲାଭକଲା ଏବଂ କେତେକ ବ୍ରାହ୍ମଣ ଭାବୁକ ମଧ୍ୟ ଏଥିପ୍ରତି ଆକୃଷ୍ଟ ହୋଇଥିଲେ; କିନ୍ତୁ ସାଧାରଣତଃ ବ୍ରାହ୍ମଣମାନେ ଏହାର ବିରୋଧ କଲେ ଏବଂ ବୌଦ୍ଧମାନଙ୍କୁ ପ୍ରତିଷ୍ଠିତ ଧର୍ମର ବିଦ୍ରୋହୀ ଓ ନାସ୍ତିକ ବୋଲି ଘୋଷଣା କଲେ । ଏହି ବାହ୍ୟ ପ୍ରଗତି ଅପେକ୍ଷା ବୌଦ୍ଧଧର୍ମ ଓ ପ୍ରଚଳିତ ଧର୍ମ ପରସ୍ପର ଉପରେ ଯେପରି ଅନ୍ୟୋନ୍ୟକ୍ରିୟା କରୁଥିଲେ ଏବଂ ବ୍ରାହ୍ମଣମାନେ ଯେପରି ଭାବରେ ବରାବର ଆଧିପତ୍ୟ ହରାଉଥିଲେ ତାହା ଅଧିକତର ଗୁରୁତ୍ୱପୂର୍ଣ୍ଣ । ଅଢ଼େଇଶହ ବର୍ଷ ପରେ ସମ୍ରାଟ ଅଶୋକ ବୌଦ୍ଧଧର୍ମ ଗ୍ରହଣକଲେ ଏବଂ ଭାରତର ଘରେ ଓ ବାହାରେ ଶାନ୍ତିପୂର୍ଣ୍ଣ ଉଦ୍ୟମରେ ସେହି ଧର୍ମର ପ୍ରଚାର ନିମନ୍ତେ ନିଜର ସମସ୍ତ ଶକ୍ତି ନିୟୋଜିତ କଲେ ।

ଏଇ ଦୁଇ ଶତାବ୍ଦୀରେ ଭାରତରେ ବହୁ ପରିବର୍ତ୍ତନ ଘଟିଚି । ଜାତୀୟ ଏକତା ଆଣିବା ପାଇଁ ଏବଂ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଓ ପ୍ରଜାତନ୍ତ୍ର ଗୁଡ଼ିକର ସମ୍ମିଶ୍ରଣ ପାଇଁ ନାନାବିଧ ପ୍ରକ୍ରିୟା ଅନେକ ଦିନରୁ କାର୍ଯ୍ୟ କରୁଥିଲା । ଗୋଟାଏ ସମ୍ମିଳିତ କେନ୍ଦ୍ରୀକୃତ ରାଜ୍ୟ ଗଢ଼ିବା ପାଇଁ ଅନ୍ତରର ସେହି ଆବେଗ କାର୍ଯ୍ୟ କରୁଥିଲା ଏବଂ ଏ ସମସ୍ତ ଭିତରୁ ଗୋଟାଏ ଶକ୍ତିଶାଳୀ ଓ ଉନ୍ନତ ଧରଣର ସାମ୍ରାଜ୍ୟ ଗଢ଼ିଉଠିଲା । ଉତ୍ତର-ପଶ୍ଚିମରେ ସିକନ୍ଦରଙ୍କ ଆକ୍ରମଣ ଦୁଇଶହ ବର୍ଷର ଏହି ପ୍ରକ୍ରିୟାକୁ ତ୍ୱରାନ୍ୱିତ କଲା ଏବଂ ଏହି ପରିବର୍ତ୍ତିତ ଅବସ୍ଥାର ସୁଯୋଗ ନେଇ, ନିଜର ଇଚ୍ଛାନୁଯାୟୀ ତାକୁ ରୂପ ଦେବାପାଇଁ ଯେଉଁ ଦୁଇଜଣ ଅଦ୍‌ଭୁତ ବ୍ୟକ୍ତି ମୁଣ୍ଡ ଟେକି ଉଠିଲେ, ସେମାନେ ହେଉଛନ୍ତି ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଏବଂ ତାଙ୍କର ବନ୍ଧୁ, ଉପଦେଷ୍ଟା ଓ ମନ୍ତ୍ରୀ ବ୍ରାହ୍ମଣ ଚାଣକ୍ୟ । ଏହି ମେଳ ଖୁବ୍ ଭଲ ଚାଲିଲା । ମଗଧର ଶକ୍ତିଶାଳୀ ନନ୍ଦରାଜ୍ୟରୁ, ଯାହାର ରାଜଧାନୀ ପାଟଳୀପୁତ୍ରରେ (ଆଧୁନିକ ପାଟଣା) ଅବସ୍ଥିତ ଥିଲା, ଉଭୟେ ନିର୍ବାସିତ ହୋଇଥିଲେ । ଉଭୟେ ଉତ୍ତର-ପଶ୍ଚିମରେ ତକ୍ଷଶୀଳାରେ ସିକନ୍ଦରଙ୍କଦ୍ୱାରା ଅବସ୍ଥାପିତ ଗ୍ରୀକ୍‌ମାନଙ୍କ ସଙ୍ଗେ ସମ୍ପର୍କ ସ୍ଥାପନ କରିଥିଲେ । ସିକନ୍ଦରଙ୍କ ସଙ୍ଗେ ଚନ୍ଦ୍ରଗୁପ୍ତଙ୍କ ସାକ୍ଷାତ ଘଟିଲା; ତାଙ୍କର ବିଜୟ ମଣ୍ଡିତ ଗୌରବର କାହାଣୀ ଶୁଣି ଚନ୍ଦ୍ରଗୁପ୍ତଙ୍କ ମନରେ ଉଚ୍ଚାଭିଳାଷ ଉଦ୍ଦୀପିତ ହୋଇଥିଲା ଏବଂ ସେଭଳି ଖ୍ୟାତି ଅର୍ଜନ କରିବା ପାଇଁ ସେ ସଂକଳ୍ପ କରିଥିଲେ । ଅବସ୍ଥା ଉପରେ ଲକ୍ଷ୍ୟ ରଖି ଚନ୍ଦ୍ରଗୁପ୍ତ ଓ ଚାଣକ୍ୟ ପ୍ରସ୍ତୁତ କରିବାକୁ ଲାଗିଲେ । ନାନା ଦୁଃସାହସିକ ଯୋଜନା ଓ ତଦନୁରୂପ ଆୟୋଜନ ଦିଗରେ ଧ୍ୟାନଦେଇ ଉଚ୍ଚାଭିଳାଷ ପୂର୍ଣ୍ଣ

କରିବା ଉଦ୍ଦେଶ୍ୟରେ ଉଭୟେ ଉପଯୁକ୍ତ ସୁଯୋଗ ଅପେକ୍ଷାରେ ରହିଲେ ।

ଖ୍ରୀଷ୍ଟଜନ୍ମର ୩୨୩ ବର୍ଷ ପୂର୍ବେ ବେବିଲୋନ୍‌ରେ ସିକନ୍ଦରଙ୍କ ମୃତ୍ୟୁ ଘଟିବା ସମ୍ବାଦ ଭାରତରେ ପହଞ୍ଚିଲା ଏବଂ ଅବିଳମ୍ବେ ଚନ୍ଦ୍ରଗୁପ୍ତ ଓ ଚାଣକ୍ୟ, ପୁରାତନ ଅଥଚ ନିତ୍ୟନୂତନ, ଜାତୀୟତା-ବାଦର ସ୍ୱର ଉତ୍ତୋଳନ କରି ବୈଦେଶିକ ଆକ୍ରମଣକାରୀ ବିରୁଦ୍ଧରେ ଜନସାଧାରଣଙ୍କୁ ଜାଗ୍ରତ କଲେ । ଦୁର୍ଗରକ୍ଷୀ ଗ୍ରୀକ୍ ସେନାଦଳ ବିତାଡ଼ିତ ହେଲେ ଓ ତକ୍ଷଶିଳା ଅଧିକୃତ ହେଲା । ଜାତୀୟତାବାଦର ଆବେଦନ ଚନ୍ଦ୍ରଗୁପ୍ତଙ୍କ ନିକଟରେ ବନ୍ଧୁ ମିତ୍ର ଆଣି ଜୁଟାଇଲା ଏବଂ ସେମାନଙ୍କ ସଙ୍ଗେ ସେ ଉତ୍ତର ଭାରତର ସୀମା ଅତିକ୍ରମ କରି ପାଟଳିପୁତ୍ର ଅଭିମୁଖେ ଅଭିଯାନ ଚଳାଇଲେ । ସିକନ୍ଦରଙ୍କ ମୃତ୍ୟୁର ଦୁଇବର୍ଷ ଭିତରେ ପାଟଳିପୁତ୍ର ଓ ମଗଧ ତାଙ୍କର ହସ୍ତଗତ ହୋଇ ସାରିଥିଲା; ମୌର୍ଯ୍ୟ ସାମ୍ରାଜ୍ୟ ପ୍ରତିଷ୍ଠିତ ହେଲା ।

ସିକନ୍ଦରଙ୍କର ସେନାପତି ସେଲ୍ୟୁକେସ୍, ଯିଏ ସିକନ୍ଦରଙ୍କ ମୃତ୍ୟୁପରେ ଉତ୍ତରାଧିକାର ସୂତ୍ରରେ ଲେବାନନ୍‌ରୁ ଭାରତ ପର୍ଯ୍ୟନ୍ତ ସମସ୍ତ ଦେଶ ଲାଭ କରିଥିଲେ, ଉତ୍ତର ପଶ୍ଚିମ ଭାରତରେ ପୁନର୍ବାର ତାଙ୍କର ଆଧିପତ୍ୟ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ସସୈନ୍ୟ ସିନ୍ଧୁନଦୀ ଲଙ୍ଘନ କଲେ । ପରାଜିତ ସେଲ୍ୟୁକେସ୍‌ଙ୍କୁ କାବୁଲଠାରୁ ହିରାଟ୍ ପର୍ଯ୍ୟନ୍ତ ଆଫଗାନିସ୍ତାନର ଗୋଟାଏ ଅଂଶ ଏବଂ ନିଜ କନ୍ୟାକୁ ଚନ୍ଦ୍ରଗୁପ୍ତଙ୍କ ହାତରେ ସମର୍ପଣ କରିବାକୁ ପଡ଼ିଲା । ଦକ୍ଷିଣ ଭାରତ ବ୍ୟତୀତ, ଆରବ ସାଗରରୁ ବଙ୍ଗୋପସାଗର ପର୍ଯ୍ୟନ୍ତ ଏବଂ ଉତ୍ତରରେ କାବୁଲ ପର୍ଯ୍ୟନ୍ତ ଚନ୍ଦ୍ରଗୁପ୍ତଙ୍କ ସାମ୍ରାଜ୍ୟ ସମଗ୍ର ଭାରତରେ ବିସ୍ତୃତ ହେଲା । ଲିଖିତ ଇତିହାସରେ ପ୍ରଥମ ଥର ପାଇଁ ଭାରତରେ ଏକ ବିଶାଳ କେନ୍ଦ୍ରୀୟ ଶାସନ ପ୍ରତିଷ୍ଠିତ ହେଲା । ଏହି ବିଶାଳ ସାମ୍ରାଜ୍ୟର ରାଜଧାନୀ ଥିଲା ପାଟଳିପୁତ୍ର ।

ଏହି ନୂତନ ପ୍ରଭୁତ୍ୱ କି ଧରଣର ଥିଲା ? ସୌଭାଗ୍ୟର କଥା, ଭାରତୀୟ ଓ ଗ୍ରୀସୀୟ ଉଭୟ ପକ୍ଷରୁ ଏ ସମ୍ପର୍କରେ ଲିଖିତ ପୂର୍ଣ୍ଣ ବିବରଣୀ ଆମ ପାଖରେ ଅଛି । ଭାରତରେ ସେଲ୍ୟୁକେସ୍‌ଙ୍କ ଦୂତ ମେଗାସ୍ଥେନିସ୍ ଗୋଟାଏ ଲିଖିତ ବିବରଣୀ ରଖିଯାଇଚନ୍ତି ଏବଂ ତା'ଠାରୁ ଅଧିକତର ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ ହେଉଚି ସମସାମୟିକ ବିବରଣୀସମ୍ବଳିତ ରାଜନୈତିକ ସଙ୍ଗଠନ ବିଜ୍ଞାନ ସମ୍ବନ୍ଧୀୟ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ଯାହା ସମ୍ପର୍କରେ ଏଥିପୂର୍ବେ ଉଲ୍ଲେଖ କରାଯାଇଚି । କୌଟିଲ୍ୟ ଚାଣକ୍ୟଙ୍କ ଅନ୍ୟ ଏକ ନାମ ଏବଂ ଅର୍ଥଶାସ୍ତ୍ର ଜଣେ ମହାନ୍ ବିଦ୍ୱାନ୍‌ଙ୍କଦ୍ୱାରା କେବଳ ପ୍ରଣୀତ ହୋଇନି, ସେଥିସଙ୍ଗେ ଜଡ଼ିତ ଅଛି ଜଣେ ଅଦ୍ଭୁତ ଲୋକର ଅଭିଜ୍ଞତା, ଯିଏ ମୌର୍ଯ୍ୟ ସାମ୍ରାଜ୍ୟର ପ୍ରତିଷ୍ଠା, ବିକାଶ ଓ ସଂରକ୍ଷଣରେ ପ୍ରବଳ ପ୍ରଭାବୀ ଭୂମିକା ଗ୍ରହଣ କରିଥିଲେ । ଚାଣକ୍ୟଙ୍କୁ ଭାରତୀୟ ମେକିଆଭେଲି ବୋଲି ଅଭିହିତ କରାଯାଇଚି ଏବଂ କେତେ ପର୍ଯ୍ୟନ୍ତ ଏ ତୁଳନା ଯଥାର୍ଥ ମଧ୍ୟ; କିନ୍ତୁ ମେକିଆଭେଲି ଅପେକ୍ଷା ସେ ପ୍ରତ୍ୟେକ ଦିଗରୁ ବୁଦ୍ଧି ଓ କର୍ମ ଦିଗରୁ ଶ୍ରେଷ୍ଠତର ଓ ମହତ୍ତର ବ୍ୟକ୍ତି ଥିଲେ । ଜଣେ ରାଜାର କେବଳ ଅନୁସରଣକାରୀ କିମ୍ବା ଜଣେ ସର୍ବଶକ୍ତିମାନ୍ ସମ୍ରାଟ୍‌ର ଜଣେ ବିନମ୍ର ଉପଦେଷ୍ଟା କେବଳ ସେ ନଥିଲେ । ଏହି ସମୟର ଅବସ୍ଥା ଉପରେ ରଚିତ, ପୁରାତନ ଭାରତୀୟ ନାଟକ 'ମୁଦ୍ରାରାକ୍ଷସ'ରୁ ତାଙ୍କର ଏକ ପୂର୍ଣ୍ଣାଙ୍ଗ ଚିତ୍ର ଫୁଟିଉଠେ । ଦାମ୍ଭିକ ଓ ଚକ୍ରାନ୍ତ-ଚତୁର,

ଗର୍ବିତ ଓ ପ୍ରତିଶୋଧପରାୟଣ, ସାମାନ୍ୟ ଅପମାନ ମଧ୍ୟ ସିଏ କେବେ ଭୁଲି ପାରେନି, ଉଦ୍ଦେଶ୍ୟ ଯାହାର ସର୍ବଦା ସର୍ବାଗ୍ରରେ ରହେ, ଶତ୍ରୁକୁ ବିଭ୍ରାନ୍ତ ଓ ପରାଜିତ କରିବା ନିମନ୍ତେ ସବୁ ପ୍ରକାର କୌଶଳ ସିଏ ଅବଲମ୍ବନ କରିପାରେ ସେହି ଚାଣକ୍ୟ ମୌର୍ଯ୍ୟ-ସାମ୍ରାଜ୍ୟର ବଲ୍‌ଗା ନିଜ ହାତରେ ଧରି ବସିଥିଲେ ଏବଂ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କୁ ତାଙ୍କର ପ୍ରଭୁ ଭାବରେ ନୁହେଁ, ଦେଖୁଥିଲେ ନିଜର ଜଣେ ପ୍ରିୟ ଶିଷ୍ୟ ଭାବରେ । ଜୀବନରେ ସରଳ ଓ ସଂଯମୀ, ଉଚ୍ଚପଦର ଆଡ଼ମ୍ବର ଓ ଜାକଜମକ ପ୍ରତି ଆଗ୍ରହହୀନ, ଯେବେ ତାଙ୍କର ସଙ୍କଳ୍ପ ପୂର୍ଣ୍ଣ ହେଲା ଓ ଉଦ୍ଦେଶ୍ୟ ସାଧିତ ହେଲା, ବ୍ରାହ୍ମଣୋଚିତ ରୀତିରେ ମନନ ଓ ଚିନ୍ତନରେ ଜୀବନ ଅତିବାହିତ କରିବା ପାଇଁ ରାଜକାର୍ଯ୍ୟରୁ ସେ ଅବସର ନେବାକୁ ଚାହିଁଥିଲେ ।

ଉଦ୍ଦେଶ୍ୟ ସାଧନ ନିମନ୍ତେ ସେପରି କିଛି ନାହିଁ ଯାହା କରିବା ପାଇଁ ଚାଣକ୍ୟ ପଶ୍ଚାତ୍‌ପଦ ହୋଇଥାନ୍ତେ । ସେ ଯଥେଷ୍ଟ ଭାବରେ ନିର୍ଭିବାପନ୍ନ ଥିଲେ, ତଥାପି ଲକ୍ଷ୍ୟ ପ୍ରତି ଅନୁପଯୁକ୍ତ ଉପାୟ ଅବଲମ୍ବନଦ୍ୱାରା ଉଦ୍ଦେଶ୍ୟ ପରାଜିତ ହୋଇପାରେ ବୋଲି ହୃଦୟଙ୍ଗମ କରିବା ପାଇଁ ତାଙ୍କର ଯଥେଷ୍ଟ ବୁଦ୍ଧି ମଧ୍ୟ ଥିଲା । କ୍ଲଜ୍‌ବିଜ୍‌ଙ୍କ ବହୁ ପୂର୍ବରୁ ଚାଣକ୍ୟ କହିଥିବା ଜଣାଯାଏ ଯେ ଯୁଦ୍ଧ ଅନ୍ୟ ଉପାୟରେ ଶାସନ ନୀତି ପରିଚାଳନାର ଗୋଟାଏ ବ୍ୟାପାର କେବଳ; କିନ୍ତୁ ସେ ଆହୁରି କହିଥିଲେ ଯେ ଯୁଦ୍ଧ ରାଜନୀତିର ବୃହତ୍ତର ଉଦ୍ଦେଶ୍ୟଗୁଡ଼ିକ ସର୍ବଦା ପୂର୍ଣ୍ଣ କରିବା ଦରକାର, ତାହା କେବଳ ଲକ୍ଷ୍ୟରେ ପରିଣତ ହେବା ଉଚିତ ନୁହେଁ । ଶତ୍ରୁର ପରାଜୟ ଓ ବିନାଶ କେବଳ ନୁହେଁ, ଯୁଦ୍ଧ ଫଳରେ ରାଜ୍ୟର ଉନ୍ନତିକଳ୍ପନା ରାଜନୀତିଜ୍ଞଙ୍କର ଉଦ୍ଦେଶ୍ୟ ପଛରେ ସର୍ବଦା ରହିବା ଆବଶ୍ୟକ । ଯୁଦ୍ଧ ଫଳରେ ଯଦି ଉଭୟ ପକ୍ଷର ବିନାଶ ଘଟେ, ତାହାହେଲେ ତାହା ରାଜ୍ୟଦର୍ଶିତାର ଦେଉଳିଆପଣ । ସାମରିକ ବାହିନୀ ଯୁଦ୍ଧ ଚଲାଇବେ ସତ୍ୟ; କିନ୍ତୁ ସାମରିକ ବଳ ଅପେକ୍ଷା ବହୁଗୁଣରେ ଗୁରୁତ୍ୱପୂର୍ଣ୍ଣ ହେଉଛି ଅଭେଦ୍ୟ ରଣକୌଶଳ ଓ କୂଟନୀତି ଯାହା ଶତ୍ରୁର ନୈତିକ ବଳ ଶୋଷଣ କରେ, ତାର ସୈନ୍ୟବାହିନୀରେ ବିଭେଦ ସୃଷ୍ଟିକରେ ଏବଂ ସଶସ୍ତ୍ର ଆକ୍ରମଣ ପୂର୍ବରୁ ତାର ଶକ୍ତିପାତ ଘଟାଏ, କିମ୍ବା ଠିକ୍ ସେହି ଅବସ୍ଥାର ସୀମାରେ ନେଇ ପହଞ୍ଚାଏ । ଉଦ୍ଦେଶ୍ୟ ସାଧନରେ ଚାଣକ୍ୟ କେତେ ବିଚାରହୀନ ଓ କଠୋର ହେଲେ ମଧ୍ୟ ସେ କେବେ ଭୁଲି ନଥିଲେ ଯେ ଜଣେ ବୁଦ୍ଧିମାନ୍ ଓ ଉଚ୍ଚମନା ଶତ୍ରୁକୁ ପଦଦଳିତ କରିବା ଅପେକ୍ଷା ତାକୁ କୌଶଳରେ ନିଜ ପକ୍ଷକୁ ଘେନିଆସିବା ବହୁ ଗୁଣରେ ଭଲ । ଶତ୍ରୁର ଦଳ ଭିତରେ ବିଭେଦର ବୀଜ ବୁଣି ସେ ତାଙ୍କର ଅନ୍ତିମ ବିଜୟ ହାସଲ କରିଥିଲେ ଏବଂ ବିଜୟର ମୁହୂର୍ତ୍ତରେ ହିଁ, କଥିତ ଅଛି ପ୍ରତିପକ୍ଷ ଅଧିନାୟକ ପ୍ରତି ଉଦାର ହେବାପାଇଁ ସେ ଚନ୍ଦ୍ରଗୁପ୍ତଙ୍କୁ ପ୍ରବର୍ତ୍ତାଇଥିଲେ । ଚାଣକ୍ୟ ନିଜେ ମଧ୍ୟ କୁଆଡ଼େ ତାଙ୍କର ଉଚ୍ଚପଦର ପରିଚୟ ଚିହ୍ନ ପ୍ରତିପକ୍ଷ ମନ୍ତ୍ରୀଙ୍କ ହାତରେ ବଢ଼ାଇ ଦେଇଥିଲେ; କାରଣ ନିଜର ରାଜା ପ୍ରତି ସେହି ମନ୍ତ୍ରୀଙ୍କର ଆନୁଗତ୍ୟ ଓ ତାଙ୍କର ବୁଦ୍ଧିମତ୍ତା ଚାଣକ୍ୟଙ୍କ ମନରେ ଗଭୀର ରେଖାପାତ କରିଥିଲା । ଏପରି ଭାବରେ, ଏହି ଚରିତ ପରାଜୟ ଓ ଅପମାନର ତିକ୍ତତା ସଙ୍ଗେ ନୁହେଁ, ବରଂ ପୁନର୍ମିଳନ ସଙ୍ଗେ ଓ ରାଜ୍ୟର ଦୃଢ଼ ତଥା ସ୍ଥାୟୀ ଭିତ୍ତି ସ୍ଥାପନ କରିବା ସଙ୍ଗେ ସଙ୍ଗେ ସମ୍ପୂର୍ଣ୍ଣ ହେଲା, ଯେଉଁଥିରେ ଶତ୍ରୁ ପରାଜିତ କେବଳ ହୋଇନି; ପରନ୍ତୁ

ତାର ହୃଦୟ ପରିବର୍ତ୍ତନ କରି ପୁଣି ତାଙ୍କୁ ନିଜ ପକ୍ଷକୁ ଅଣାଯାଇପାରିଲା ।

ସେଲ୍ୟୁକସ ଓ ତାଙ୍କ ଉତ୍ତରାଧିକାରୀମାନଙ୍କ ସଙ୍ଗେ ଏବଂ ଟୋଲେମି ଫିଲଡେଲ୍‌ଫାସଙ୍କ ସଙ୍ଗେ ଅର୍ଥାତ୍‌ ଗ୍ରୀକ୍‌ ଦୁନିଆ ସଙ୍ଗେ ମୌର୍ଯ୍ୟ-ସାମ୍ରାଜ୍ୟ କୂଟନୈତିକ ସମ୍ପର୍କ ରକ୍ଷାକରିଥିଲା । ଏହି ସମ୍ପର୍କ ଉଭୟ ଦିଗରୁ ବାଣିଜ୍ୟଗତ କଲ୍ୟାଣର ସୁଦୃଢ଼ ଭିତ୍ତି ଉପରେ ଠିଆହୋଇଥିଲା । ସ୍ତ୍ରାବୋ କହନ୍ତି ଯେ ମଧ୍ୟ-ଏସିଆର ଆମୁ ନଦୀ ଥିଲା ସେହି ମହତ୍ତ୍ୱପୂର୍ଣ୍ଣ ବ୍ୟାପାରର ଏକ କେନ୍ଦ୍ର, ଯେଉଁଠାରୁ ଭାରତୀୟ ପଣ୍ୟ କାସ୍ପିଆନ ସାଗର ଓ କୃଷ୍ଣସାଗର ଦେଇ ୟୁରୋପରେ ପହଞ୍ଚୁଥିଲା । ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ଏହି ପଥ ପ୍ରାୟ ବ୍ୟବହୃତ ହେଉଥିଲା । ମଧ୍ୟ-ଏସିଆ ସେହି ସମୟରେ ଖୁବ ଉର୍ବର ଓ ବିଭବଶାଳୀ ଥିଲା । ପ୍ରାୟ ସହସ୍ରାଧିକ ବର୍ଷ ପରେ ଆମୁ ନଦୀ ଶୁଖିବାକୁ ଆରମ୍ଭ କଲା । ରାଜାଙ୍କ ଅଶ୍ୱାବଳରେ ଆରବ ଦେଶୀୟ ଘୋଡ଼ା ଥିଲା ବୋଲି ଅର୍ଥଶାସ୍ତ୍ରରେ ଲେଖା ଅଛି ।

## ୧୮. ରାଷ୍ଟ୍ର-ସଂଗଠନ

ଭାରତର ଅଧିକାଂଶ ଭାଗ ଓ ଉତ୍ତରରେ କାବୁଲ ପର୍ଯ୍ୟନ୍ତ ବିସ୍ତୃତ । ଖ୍ରୀଷ୍ଟଜନ୍ମର ୩୨୧ ବର୍ଷ ପୂର୍ବେ ଏହି ଯେଉଁ ନୂତନ ସାମ୍ରାଜ୍ୟ ଗଢ଼ିଉଠିଲା, ଏହାର ଚେହେରା କିଅଣ ଥିଲା ? ଏହା ଥିଲା ଗୋଟାଏ ସ୍ୱୈରତନ୍ତ୍ର ଓ ପ୍ରତ୍ୟେକ ସାମ୍ରାଜ୍ୟରେ ପୂର୍ବେ ଯେପରି ଥିଲା, ଏବେ ବି ଯେପରି ଅଛି ଶୀର୍ଷରେ ଅଧିଷ୍ଠିତ ଗୋଟାଏ ଏକଚ୍ଛତ୍ର ଶାସନ । ସହର ଓ ଗ୍ରାମସଭାଗୁଡ଼ିକ ବିଶେଷ ପରିମାଣରେ ସ୍ୱଶାସିତ ଥିଲା ଓ ନିର୍ବାଚିତ ପୌର ପ୍ରତିନିଧିମାନେ ଏହିସବୁ ସ୍ଥାନୀୟ ବ୍ୟାପାର ପରିଚାଳନା କରୁଥିଲେ । ଲୋକେ ଏହି ସ୍ଥାନୀୟ ସ୍ୱଶାସନକୁ ଖୁବ୍‌ ପସନ୍ଦ କରୁଥିଲେ ଓ କୌଣସି ରାଜା ଅବା ସମ୍ରାଟ୍‌ ଖୁବ କ୍ୱଚିତ୍‌ ସେଥିରେ ହସ୍ତକ୍ଷେପ କରୁଥିଲେ । ତଥାପି କେନ୍ଦ୍ର ସରକାରଙ୍କ ନାନା ପାର୍ଶ୍ୱିକ କ୍ରିୟାକଳାପର ପ୍ରଭାବ ସର୍ବବ୍ୟାପକ ଥିଲା ଏବଂ କେତେ ଦିଗରେ ଏହି ମୌର୍ଯ୍ୟ ସାମ୍ରାଜ୍ୟ ଆଧୁନିକ ଏକଚ୍ଛତ୍ରବାଦର ବ୍ୟବସ୍ଥା ସ୍ମରଣ କରାଏ । ସେ ସମୟର ଅବିମିଶ୍ର କୃଷି ଯୁଗରେ, ଆଜି ଯେପରି ଆମେ ଦେଖିବାକୁ ପାଉଁ; ବ୍ୟକ୍ତିଗତ ଜୀବନ ଉପରେ ରାଷ୍ଟ୍ର ନିୟନ୍ତ୍ରଣ ଜାରି କରିପାରି ନଥିବ । ତଥାପି କେତେ ସୀମିତ ହେଲେ ସୁଦ୍ଧା ଜୀବନକୁ ନିୟନ୍ତ୍ରିତ, ବିଧିସମ୍ମତ କରିବାର ଉଦ୍ୟମ କରାଯାଇଥିଲା । ଘରେ ଓ ବାହାରେ ଶାନ୍ତିରକ୍ଷା କରିବାରେ ନିୟୋଜିତ ଓ ରାଜସ୍ୱ ସଂଗ୍ରହରେ ନିବିଷ୍ଟ ଏହା କେବଳ ଗୋଟାଏ ପୁଲିସ୍‌ଶାସିତ ରାଜ୍ୟ ନଥିଲା ।

ଗୋଟାଏ ବ୍ୟାପକ ତଥା କଠୋର ଶୃଙ୍ଖଳାର ଅମଲାତନ୍ତ୍ର ରାଜ୍ୟର ପ୍ରଶାସନ ଚଳାଉଥିଲା ଏବଂ ବହୁବାର ଗୋଇନ୍ଦା କାର୍ଯ୍ୟକଳାପ ବିଷୟ ଉଲ୍ଲେଖ କରାଯାଇଛି । କୃଷି ଓ ସୁଧର ହାର ନାନା ଭାବରେ ନିୟମାଧୀନ କରାଯାଇଥିଲା । ଖାଦ୍ୟ, ବଜାର, ଉତ୍ପାଦନ, ପଶୁହତ୍ୟା, ଗୃହ, ଗୋ-ଶାଳା, ଜଳଭଣ୍ଡାର, କ୍ରୀଡ଼ା, ବେଶ୍ୟାଳୟ ଓ ମଦ୍ୟଶାଳାଗୁଡ଼ିକ ପର୍ଯ୍ୟାୟକ୍ରମେ ସମୀକ୍ଷଣ କରାଯାଉଥିଲା ଏବଂ ଏଥିନିମନ୍ତେ ପ୍ରବିଧାନ ଜାରି ଥିଲା । ମାପ ଓ ଓଜନର ପ୍ରମାଣୀକରଣ କରାଯାଇଥିଲା । ଖାଦ୍ୟଦ୍ରବ୍ୟ ଅପମିଶ୍ରଣ କରିବା ଅବା ଲୁକ୍‌କାୟିତ କରିବା

ଉପରେ କଠିନ ଦଣ୍ଡର ବ୍ୟବସ୍ଥା ଥିଲା । ବାଣିଜ୍ୟ ଉପରେ ମଧ୍ୟ କର ବସିଥିଲା ଓ କେତେକ ଭାବରେ ଧର୍ମକର୍ମାଚରଣ ଉପରେ ମଧ୍ୟ କର ପଡ଼ୁଥିଲା । କେଉଁଠି ଯଦି ପ୍ରବିଧାନ ଭଙ୍ଗ କରାଗଲା କିମ୍ବା ଅସଦାଚରଣ ଦେଖାଦେଲା ତାହାହେଲେ ମନ୍ଦିରର ସମ୍ପତ୍ତି ବାଜ୍ୟାପ୍ତ ହେଉଥିଲା । କୌଣସି ଧନୀ ବ୍ୟକ୍ତି ଯଦି ଧନ ଆତ୍ମସାତ୍ କରିବା ଦୋଷରେ ଅଥବା ଜାତୀୟ ଦୁର୍ବିପାକରୁ ଲାଭ ଉଠାଇବାରେ ଦୋଷୀ ସାବ୍ୟସ୍ତ ହୁଏ, ତାର ସମ୍ପତ୍ତି ମଧ୍ୟ ବାଜ୍ୟାପ୍ତ କରି-ଯାଉଥିଲା । ଚିକିତ୍ସାଳୟ ଓ ସର୍ବସାଧାରଣ ସ୍ୱାସ୍ଥ୍ୟ ବ୍ୟବସ୍ଥା କରାଯାଇଥିଲା ଓ ପ୍ରଧାନ ପ୍ରଧାନ କେନ୍ଦ୍ରମାନଙ୍କରେ ଚିକିତ୍ସାବିତ୍ ଅବସ୍ଥାପିତ ଥିଲେ । ବିଧବା, ଅନାଥ, ରୁଗ୍ଣ ଓ ପଙ୍ଗୁ ବ୍ୟକ୍ତିଙ୍କୁ ରାଜ୍ୟ ତରଫରୁ ସାହାଯ୍ୟ ଦିଆଯାଉଥିଲା । ଦୁର୍ଭିକ୍ଷ ବିଷୟରେ ସରକାର ବିଶେଷ ଜାଗ୍ରତ ରହୁଥିଲେ ଏବଂ ସରକାରୀ ଧାନଗୋଲାମାନଙ୍କର ଅର୍ଦ୍ଧେକ ଭାଗ ନିଅଣ୍ଟ ଓ ନ'ଅଙ୍କ କାଳପାଇଁ ସଂରକ୍ଷିତ ହେଉଥିଲା ।

ଏ ସମସ୍ତ ବିଧିବିଧାନ ଖୁବ୍ ସମ୍ଭବ ଗ୍ରାମ ଅପେକ୍ଷା ନଗର ଉପରେ ଅଧିକତର ଲାଗୁ-ହେଉଥିଲା ଓ ଏହା ମଧ୍ୟ ଖୁବ୍ ସମ୍ଭବପର ଯେ କାର୍ଯ୍ୟତଃ ବିଶେଷ କିଛି ତତ୍ତ୍ୱାନୁମୋଦିତ ଭାବରେ ହୋଇପାରୁ ନଥିଲା । ତଥାପି ଶାସନ-ବ୍ୟବସ୍ଥାର ଏହି ତାତ୍ତ୍ୱିକ ପରିକଳ୍ପନା ବାସ୍ତବିକ ଚମତ୍କାରିକ । ଗ୍ରାମସବୁଗୁଡ଼ିକ ବସ୍ତୁତଃ ସ୍ୱଶାସିତ ଥିଲା ।

ଚାଣକ୍ୟଙ୍କ ଅର୍ଥଶାସ୍ତ୍ରରେ ନାନାବିଧ ବିଷୟରେ ଏବଂ ଶାସନର ତତ୍ତ୍ୱ ଓ ଆଚରଣର ପ୍ରାୟ ପ୍ରତ୍ୟେକ ବିଭାଗ ଉପରେ ଚର୍ଚ୍ଚା କରାଯାଇଛି । ଏଥିରେ ଆଲୋଚିତ ହୋଇଛି ରାଜା ଓ ତାଙ୍କର ମନ୍ତ୍ରୀ ତଥା ପାର୍ଷଦମାନଙ୍କ କର୍ତ୍ତବ୍ୟ ସମ୍ପର୍କରେ; ପରିଷଦ ବୈଠକ, ସରକାରୀ ବିଭାଗ, କୂଟନୀତି ଏବଂ ଯୁଦ୍ଧ ଓ ଶାନ୍ତି ବିଷୟରେ ବିସ୍ତୃତ ଭାବରେ ଲେଖାଯାଇଛି । ପଦାତିକ ଅଶ୍ୱାରୋହୀ, ରଥାରୋହୀ ଓ ଯୁଦ୍ଧହସ୍ତୀ ସମ୍ବଳିତ ଚନ୍ଦ୍ରଗୁପ୍ତଙ୍କ ବିଶାଳ ସାମରିକ ବାହିନୀର ବିସ୍ତୃତ ବିବରଣୀ ଦିଆଯାଇଛି । (୧) ତଥାପି ଚାଣକ୍ୟ କହନ୍ତି ଯେ, କେବଳ ସଂଖ୍ୟାରେ କିଛି ଯାଏ-ଆସେନି । ଶୃଙ୍ଖଳା ଓ ଉପଯୁକ୍ତ ନେତୃତ୍ୱ ଅଭାବରେ ଏ ପ୍ରକାର ବାହିନୀ କେବଳ ମସ୍ତବଡ଼ ଗୋଟାଏ ବୋଝ ହୋଇଯାଏ । ଦୁର୍ଗ ଓ ପ୍ରତିରକ୍ଷା ବ୍ୟବସ୍ଥା ସମ୍ପର୍କରେ ମଧ୍ୟ ଏଥିରେ କୁହାଯାଇଛି ।

ଏହି ଗ୍ରନ୍ଥରେ ଅନ୍ୟାନ୍ୟ ବିଷୟ ଭିତରେ ବ୍ୟବସାୟ ଓ ବାଣିଜ୍ୟ, ଆଇନ ଓ ବିଚାରାଳୟ, ନଗରପାଳିକା ଶାସନ, ସାମାଜିକ ପ୍ରଥା, ବିବାହ ଓ ଛାଡ଼ପତ୍ର, ସ୍ତ୍ରୀ ଅଧିକାର, କର ଓ ରାଜସ୍ୱ, କୃଷି, ଖଣି ଓ କାରଖାନା ପରିଚାଳନା, କାରିଗର, ବଜାର, ଉଦ୍ୟାନ ଉନ୍ନୟନ, ଉତ୍ପାଦନ, ଜଳସେଚନ ଓ ପୟଃପ୍ରଣାଳୀ, ଜାହାଜ ଓ ନୌପରିବହନ, ପୌର ପ୍ରତିଷ୍ଠାନ, ଜନସୁମାରି, ମତ୍ସ୍ୟପାଳନ, କଂସାଇଖାନା, ପାରପତ୍ର ଓ ବନ୍ଦୀ ନିବାସ ବିଷୟରେ ଆଲୋଚିତ

(୧) ଆଜିର 'ଚେସ୍'ଖେଳ ଭାରତରେ ହିଁ ଆରମ୍ଭ ହୋଇଥିଲା । ଏହା ପଛରେ ଖୁବ୍ ସମ୍ଭବ ଥିଲା ଚତୁରଙ୍ଗ ସେନାସଙ୍ଗଠନର ଅବଧାରଣା । ଏହା 'ଚତୁରଙ୍ଗ' ନାମରେ ଅଭିହିତ ଥିଲା । ଚାରି ଜଣ ଖେଳାଳି ଏ ଖେଳ ଯେପରି ଖେଳନ୍ତି, ତାର ବିବରଣୀ ଆଲ୍‌ବେରୁଣି ଦେଇଛନ୍ତି ।

ହୋଇଛି । ବିଧବା ବିବାହ ଓ କେତେକ ଅବସ୍ଥାରେ ଗ୍ରହଣ ପତ୍ର ମଧ୍ୟ ସ୍ୱୀକାର କରାଯାଇଛି ।

ଏହି ଗ୍ରନ୍ଥରେ ଚୀନପଟ୍ଟ ଅର୍ଥାତ୍ ଚୀନ ଦେଶରେ ଉତ୍ପାଦିତ ରେଶମ ବସ୍ତ୍ର ବିଷୟ ଉଲ୍ଲେଖ ଅଛି ଏବଂ ଭାରତରେ ଉତ୍ପାଦିତ ରେଶମବସ୍ତ୍ର ଓ ଚୀନପଟ୍ଟ ଭିତରେ ବୈଶିଷ୍ଟ୍ୟ ଦର୍ଶାଯାଇଛି । ଖୁବ୍ ସମ୍ଭବ ଚୀନପଟ୍ଟ ଟିକିଏ ମୋଟା ଧରଣର ଥିଲା । ଚୀନପଟ୍ଟର ଆମଦାନୀ ସୂଚିତ କରେ ଯେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀ ସୁଦ୍ଧା ଚୀନ ସଙ୍ଗେ ବାଣିଜ୍ୟ ସମ୍ପର୍କ ସ୍ଥାପିତ ହୋଇସାରିଥିଲା ।

ରାଜ୍ୟାଭିଷେକ ସମୟରେ ପ୍ରଜାଙ୍କ ସେବା କରିବା ନିମନ୍ତେ ରାଜାକୁ ଶପଥ ଗ୍ରହଣ କରିବାକୁ ପଡ଼ୁଥିଲା—"ମୁଁ ଯଦି ପ୍ରଜାପୀଡ଼ନ କରେ ତେବେ ମୁଁ ନିର୍ବଂଶ ହେବି, ଜୀବନରୁ ଓ ସ୍ୱର୍ଗବାସରୁ ବଞ୍ଚିତ ହେବି ।" ପ୍ରଜାଙ୍କ ସୁଖରେ, କଲ୍ୟାଣରେ ତାର ସୁଖ ନିହିତ; ଯାହା ତାକୁ ଆନନ୍ଦ ଦିଏ, ତାହା ଭଲ ବୋଲି ସେ ମଣିବ ନାହିଁ; କିନ୍ତୁ ଯାହା ତାର ପ୍ରଜାଙ୍କୁ ଆନନ୍ଦ ଦିଏ ତାହା ସେ ଭଲ ମଣିବ ।" "ରାଜା ଯଦି ଉତ୍ସାହୀ, ତାର ପ୍ରଜା ମଧ୍ୟ ସେହିମତେ ଉତ୍ସାହୀ ହେବେ ।" ରାଜାର ଆନନ୍ଦ ଲାଗି ସର୍ବସାଧାରଣ କାର୍ଯ୍ୟ ଅପେକ୍ଷା କରିବ ନାହିଁ କିମ୍ବା ବ୍ୟାହତ ହେବନାହିଁ । ସେଭଳି କାର୍ଯ୍ୟ ପାଇଁ ସେ ସର୍ବଦା ପ୍ରସ୍ତୁତ ରହି ଥିବାକୁ ହେବ । ଆଉ ରାଜା ଯଦି ଦୁର୍ବ୍ୟବହାର କରେ ତାକୁ ଗାଦିଚ୍ୟୁତ କରି ତାର ସ୍ଥାନରେ ଅନ୍ୟ ଜଣକୁ ବସାଇବା ପାଇଁ ଜନସାଧାରଣଙ୍କର ଅଧିକାର ଥିଲା ।

ରାଜ୍ୟର ବଡ଼ ପୟଃପ୍ରଣାଳୀ ତଦାରଖ କରିବା ପାଇଁ ଗୋଟାଏ ଜଳସେଚନ ବିଭାଗ ଥିଲା ଏବଂ ଗୋଟାଏ ନୌପରିବହନ ବିଭାଗ ବନ୍ଦର, ଘାଟ, ପୋଲ ଓ ନଦୀମାନଙ୍କରେ ଚାଲୁଥିବା ଅଗଣିତ ନୌକା ଏବଂ ସମୁଦ୍ର ଅତିକ୍ରମ କରି ବ୍ରହ୍ମଦେଶ ଓ ଅନ୍ୟାନ୍ୟ ଦେଶଗାମୀ ଜାହାଜ ଗୁଡ଼ିକର ତଦାରଖ କରୁଥିଲା । ଯେପରି ଜଣାଯାଏ, ସ୍ଥଳବାହିନୀର ଅନୁଲଗ୍ନ ଭାବରେ କୌଣସି ଏକପ୍ରକାର ନୌବାହିନୀ ମଧ୍ୟ ଥିଲା ।

ସାମ୍ରାଜ୍ୟରେ ବାଣିଜ୍ୟ ଖୁବ୍ ବୃଦ୍ଧି ଲାଭ କରିଥିଲା । ବଡ଼ ବଡ଼ ସଡ଼କ ଦୂରବର୍ତ୍ତୀ ଅଞ୍ଚଳମାନଙ୍କୁ ରାଜଧାନୀ ସଙ୍ଗେ ସଂଯୁକ୍ତ କରିଥିଲା । ରାସ୍ତାର ମଝେ ମଝେ ଯାତ୍ରୀଙ୍କ ପାଇଁ ପାନ୍ଥଶାଳା ବ୍ୟବସ୍ଥା କରାଯାଇଥିଲା । ମୁଖ୍ୟ ସଡ଼କ ରାଜପଥ ନାମରେ ନାମିତ ଥିଲା ଏବଂ ଏହା ପାଟଳୀପୁତ୍ରରୁ ଉତ୍ତର-ପଶ୍ଚିମ ସୀମାନ୍ତ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ବିଦେଶୀ ସୌଦାଗରଙ୍କ ସୁବିଧା ପ୍ରତି ବିଶେଷ ଧ୍ୟାନ ଦିଆଯାଉଥିଲା ଏବଂ ସେମାନେ ଯେପରି ଜଣାଯାଏ, ଗୋଟାଏ ପ୍ରକାର ବହିଃସୀମୀସ୍ଥ ଅଧିକାର ଭୋଗକରୁଥିଲେ । କୁହାଯାଇଛି, ପୁରାତନ ମିଶରୀୟମାନେ ସେମାନଙ୍କର ସଂରକ୍ଷିତ ଶବ ଦେହକୁ ଭାରତୀୟ ମଖମଲ ବସ୍ତ୍ରରେ ଆବୃତ କରୁଥିଲେ ଓ ଭାରତୀୟ ନୀଳରେ ବସ୍ତ୍ର ରଙ୍ଗାଉଥିଲେ । ପ୍ରାଚୀନ ଖଣ୍ଡହରମାନଙ୍କରୁ ଗୋଟାଏ ପ୍ରକାର କାଚ ମଧ୍ୟ ଆବିଷ୍କୃତ ହୋଇଛି । ଗ୍ରୀକ୍ ରାଜଦୂତ ମେଗାସ୍ଥେନିସ୍ କହନ୍ତି, ଭାରତୀୟମାନେ ଅଳଙ୍କାର, ଆଭୂଷଣ ଓ ରମଣୀୟତା ସୁଖ ପାଆନ୍ତି ଏବଂ ଉଚ୍ଚତା ବୃଦ୍ଧି ନିମନ୍ତେ ପାଦୁକା ବ୍ୟବହାର କରନ୍ତି ।

ମୌର୍ଯ୍ୟ-ସାମ୍ରାଜ୍ୟରେ ବିଳାସିତା ବୃଦ୍ଧିଲାଭ କରିଥିଲା । ଜୀବନ ଅଧିକତର ଜଟିଳ, ବିଶେଷିତ ଓ ସଂଗଠିତ ହୋଇଥିଲା । "ନାନାବିଧ ଭୋଜନାଳୟ, ସରାଇ, ବିଶ୍ରାମାଳୟ ଓ

ଦ୍ୟୁତକ୍ରୀଡ଼ାଳୟ ବିଶେଷ ପରିମାଣରେ ଥିବା ପ୍ରତୀତ ହୁଏ । ବିଭିନ୍ନ ସଂପ୍ରଦାୟ ଓ ବିଭିନ୍ନ କାରିଗରମାନଙ୍କର ସଭାଗୃହ ଥିଲା ଏବଂ କାରିଗରମାନେ ମଧ୍ୟେ ମଧ୍ୟେ ସର୍ବସାଧାରଣ ଭୋଜିରେ ସମ୍ମିଳିତ ହେଉଥିଲେ । ନାନାବିଧ ଶ୍ରେଣୀର ଗାୟକ, ନଟ ଓ ଅଭିନେତାମାନେ ନିଜ ନିଜ କଳା ପ୍ରଦର୍ଶନ କରି ଜୀବିକା ନିର୍ବାହ କରୁଥିଲେ । ଏମାନେ ଗ୍ରାମାଞ୍ଚଳକୁ ମଧ୍ୟ ଯାଉଥିଲେ ଏବଂ ଏମାନଙ୍କ କଳା ପ୍ରଦର୍ଶନ ନିମନ୍ତେ ନିର୍ମିତ ଭବନ ଗ୍ରାମବାସୀଙ୍କ ପାରି-ବାରିକ ଜୀବନ ଓ କୃଷିକର୍ମ ପକ୍ଷରେ କ୍ଷତିକାରକ ବୋଲି ଅର୍ଥଶାସ୍ତ୍ରର ପ୍ରଣେତା ସେ ପ୍ରକାର ଭବନ ନିର୍ମାଣ ନିରୁତ୍ସାହିତ କରିଚନ୍ତି । କିନ୍ତୁ ଏଥି ସଙ୍ଗେ ସଙ୍ଗେ ସର୍ବସାଧାରଣ ଚିତ୍ତ-ବିନୋଦନ ନିମନ୍ତେ କୌଣସି ସଂଗଠନ ଉଦ୍ୟମକୁ ସାହାଯ୍ୟ ନକଲେ ଦଣ୍ଡ ବ୍ୟବସ୍ଥା ମଧ୍ୟ ରହିଥିଲା । କୌଣସି ଅବସର ନିମନ୍ତେ ରାଜା ଦ୍ୱାରା ନିର୍ମିତ ଷ୍ଟେଡ଼ିଏମ ଅର୍ଥାତ୍ କ୍ରୀଡ଼ାମଞ୍ଚରେ ନାଟକ, ମଲ୍ଲଯୁଦ୍ଧ ଏବଂ ମହିଷ ଓ ପଶୁଙ୍କର ଅନ୍ୟାନ୍ୟ ପ୍ରତିଯୋଗିତା ଓ ବିଚିତ୍ର ଚିତ୍ର ପ୍ରଦର୍ଶନ ବ୍ୟବସ୍ଥା କରାଯାଇଥିଲା ।.. ଉତ୍ସବ ଦିନମାନଙ୍କରେ ସହର ବିଶେଷ ଭାବରେ ଆଲୋକିତ କରାଯାଉଥିଲା ।" (୧)ରାଜପଟୁଆର ଓ ପାରିଧିଯାତ୍ରା ମଧ୍ୟ ଥିଲା ।

ଏହି ବିଶାଳ ସାମ୍ରାଜ୍ୟ ମଧ୍ୟରେ ବହୁ ଜନବହୁଳ ନଗରୀ ଥିଲା ଓ ସେଥିଭିତରେ ପ୍ରଧାନ ଥିଲା ଗଙ୍ଗା ଓ ଶୋଣ ନଦୀର ସଙ୍ଗମ ତୀରରେ ପରିବ୍ୟାପ୍ତ, ବସ୍ତୁତଃରେ ପୂର୍ଣ୍ଣ ଏକ ବୃହତ୍ ନଗର, ରାଜଧାନୀ ପାଟଳୀପୁତ୍ର । ଏଥିର ବର୍ଣ୍ଣନା ପ୍ରସଙ୍ଗରେ ମେଗାସ୍ଥେନିସ୍ ଲେଖିଚନ୍ତି: "ଏହି ନଦୀ (ଗଙ୍ଗା) ଓ ଅନ୍ୟ ଏକ ନଦୀ (ଶୋଣ)ର ସଙ୍ଗମ ସ୍ଥଳରେ ଅବସ୍ଥିତ ପାଲିବୋଥ୍ରା ନାମକ ନଗରୀର ଦୈର୍ଘ୍ୟ ୯.୨ ମାଇଲ୍ ଓ ପ୍ରସ୍ଥ ୧.୭ ମାଇଲ୍ । ଏହା ସମାନ୍ତରିକ ଆକୃତିକ ଓ କାଷ୍ଠ ପ୍ରାଚୀର ଦ୍ୱାରା ପରିବେଷ୍ଟିତ । ତୀର ନିକ୍ଷେପ କରିବା ନିମନ୍ତେ ପ୍ରାଚୀର ଗାତ୍ରରେ ରନ୍ଧ୍ରମାନ ରହିଚି । ପ୍ରତିରକ୍ଷା ନିମନ୍ତେ ପ୍ରାଚୀର ଅପରପାର୍ଶ୍ୱରେ ନଗରକୁ ବେଷ୍ଟନ କରିଚି ଗୋଟାଏ ପରିଖା ଯାହା ଭିତରକୁ ନଗରର ଅନିର୍ମଳ ଜଳ ନିଷ୍କାସିତ ହୋଇଥାଏ । ଏହି ପରିଖାର ପ୍ରସ୍ଥ ୬୦୦ ଫୁଟ ଓ ଗଭୀର ତିରିଶି ହାତ । ପ୍ରାଚୀରଟି ୫୭୦ ବୁରୁଜରେ ମଣ୍ଡିତ ଓ ସେଥିରେ ୬୪ ଗୋଟି ଦ୍ୱାର ଅଛି ।"

କେବଳ ଏହି ମହାନ୍ ପ୍ରାଚୀର ଯେ କାଷ୍ଠରେ ନିର୍ମିତ ହୋଇଥିଲା ତାହା ନୁହେଁ, ଅଧିକାଂଶ ଗୃହ ମଧ୍ୟ କାଷ୍ଠନିର୍ମିତ ଥିଲା । ସେହି ଅଞ୍ଚଳରେ ଭୂମିକମ୍ପ ବାରମ୍ବାର ଘଟୁଥିବା ହେତୁରୁ ବୋଧହୁଏ ଏ ପ୍ରକାର ସାବଧାନତା ଅବଲମ୍ବନ କରାଯାଇଥିଲା । ୧୯୩୪ ଖ୍ରୀଷ୍ଟାବ୍ଦରେ ବିହାରରେ ଯେଉଁ ଭୂମିକମ୍ପ ଘଟିଲା ତାହା ଆମକୁ ଏହି ବିଷୟ ବଳପୂର୍ବକ ସ୍ମରଣ କରାଇ-ଥିଲା । ଗୃହଗୁଡ଼ିକ କାଷ୍ଠନିର୍ମିତ ହୋଇଥିବା ଯୋଗୁଁ ଗୃହଦାହ ନିରୋଧ କରିବା ଉଦ୍ଦେଶ୍ୟରେ ବିବିଧ ସତର୍କତାମୂଳକ ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ପ୍ରତ୍ୟେକ ଗୃହସ୍ଥ ନିଶୁଣି, ଅଙ୍କୁଡ଼ି ଓ ଜଳପୂର୍ଣ୍ଣ ପାତ୍ର ରଖିବା ପାଇଁ ବାଧ୍ୟ ଥିଲା ।

(୧) ଉଦ୍ଧୃତ ଏଫ୍. ଡ଼ବ୍ଲୁ. ଥୋମାସ୍, ଦ କେମ୍ବ୍ରିଜ୍ ହିଷ୍ଟ୍ରି ଅଫ୍ ଇଣ୍ଡିଆ, ୧ମ ଖଣ୍ଡ, ପୃ. ୪୮୦

ପାଟଳୀପୁତ୍ରରେ ନଗରପାଳିକା ଥିଲା ଓ ସେଥିନିମନ୍ତେ ପ୍ରତିନିଧି ନିର୍ବାଚିତ ହେଉଥିଲେ । ଏମାନଙ୍କ ସଂଖ୍ୟା ଥିଲା ୩୦ ଏବଂ ଛଅଟି କମିଟିରେ ବିଭକ୍ତ ହୋଇ ଏମାନେ ଶ୍ରମଶିଳ୍ପ ଓ ହସ୍ତଶିଳ୍ପ, ଜନ୍ମ ଓ ମୃତ୍ୟୁ, ଉତ୍ପାଦନ, ପର୍ଯ୍ୟଟକ ଓ ତୀର୍ଥଯାତ୍ରୀଙ୍କ ନିମନ୍ତେ ବନ୍ଦୋବସ୍ତ ଇତ୍ୟାଦି ବିଷୟ ବୁଝୁଥିଲେ । ନଗରପାଳିକା ପରିଷଦ ସାମୂହିକ ଭାବରେ ଅର୍ଥ, ପରିଚ୍ଛନ୍ନତା, ଜଳଯୋଗାଣ, ସର୍ବସାଧାରଣ ପ୍ରାସାଦ ଓ ଉଦ୍ୟାନ ବିଷୟ ବୁଝୁଥିଲେ ।

## ୧୯. ବୁଦ୍ଧଙ୍କ ଶିକ୍ଷା

ଏହିସବୁ ରାଜନୈତିକ ଓ ଅର୍ଥନୈତିକ ବିପ୍ଳବ ଯାହା ଭାରତର ଚେହେରା ବଦଳାଇ ଦେଉଥିଲା, ତାର ପଛରେ ଥିଲା ବୌଦ୍ଧଧର୍ମର ଉତ୍ତାଳତା ଓ ପୁରାତନ ପ୍ରତିଷ୍ଠିତ ଧର୍ମବିଶ୍ୱାସ ସଙ୍ଗେ ତାର ସଙ୍ଘର୍ଷ ଓ ଧର୍ମର ନ୍ୟସ୍ତସ୍ୱାର୍ଥ ସଙ୍ଗେ ତାର ବିବାଦ । ଏହିସବୁ ଯୁକ୍ତିତର୍କ ଯାଁଷ ପ୍ରତି ଭାରତ ସବୁକାଳେ ମୋହିତ, ତାହା ଅପେକ୍ଷା ଲୋକଙ୍କ ମନରେ ଗଭୀର ଭାବରେ ରେଖାପାତ କରିଥିଲା ଜଣେ ସମୁଜ୍ଜ୍ୱଳ ବିରାଟ ପୁରୁଷଙ୍କ ବ୍ୟକ୍ତିତ୍ୱ ଏବଂ ତାଙ୍କର ସ୍ମୃତି ଲୋକଙ୍କ ମନରେ ସଦ୍ୟ-ସମୁଜ୍ଜ୍ୱଳ ଥିଲା । ତାଙ୍କର ବାର୍ତ୍ତା ପୁରାତନ ହେଲେହେଁ, ଆଧିଭୌତିକ ସୂକ୍ଷ୍ମବିଚାରରେ ଯେଉଁମାନେ ମଜ୍ଜି ରହିଛନ୍ତି ସେମାନଙ୍କ ପକ୍ଷରେ ନୂତନ ଓ ମୌଳିକ, ବୁଦ୍ଧିଜୀବୀମାନଙ୍କ କଳ୍ପନାକୁ ପ୍ରବଳଭାବରେ ପ୍ରଭାବିତ କଲା ଓ ସେହି ବାର୍ତ୍ତା ଜନସାଧାରଣଙ୍କ ହୃଦୟ କନ୍ଦରରେ ପ୍ରବେଶ କଲା । "ପୃଥିବୀର ସମସ୍ତ ଦେଶକୁ ଯାଅ", ବୁଦ୍ଧଦେବ ତାଙ୍କର ଶିଷ୍ୟମାନଙ୍କୁ କହିଥିଲେ, "ଓ ଏହି ଧର୍ମ ପ୍ରଚାର କର । ସେମାନଙ୍କୁ କୁହ ଯେ ଦରିଦ୍ର ଓ ଦୀନ, ଧନୀ ଓ ମାନୀ, ସମସ୍ତେ ସମାନ ଏବଂ ସବୁ ନଦୀ ସମୁଦ୍ରରେ ଲୀନ ହେଲାଭଳି ଏହି ଧର୍ମରେ ସବୁ ବର୍ଣ୍ଣ ମିଳିତ ହବେ ।" ତାଙ୍କ ବାର୍ତ୍ତା ଥିଲା ସାର୍ବଜନୀନ, ଔଦାର୍ଯ୍ୟ ଓ ସାର୍ବଜନୀନ ପ୍ରେମର । କାରଣ ଏହି ବିଶ୍ୱରେ ଘୃଣା ଦ୍ୱାରା କେବେ ଘୃଣା ଶେଷ ହୋଇନି; ଘୃଣା ଶେଷ ହବ ପ୍ରେମଦ୍ୱାରା" ଏବଂ "କ୍ରୋଧକୁ ଦୟା ଦ୍ୱାରା ଓ ମନ୍ଦକୁ ଭଲ ଦ୍ୱାରା ମଣିଷ ଜୟ କରୁ ।"

ଏହା ଥିଲା ନ୍ୟାୟପରାୟଣତା ଓ ଆତ୍ମସଂଯମର ଗୋଟାଏ ଆଦର୍ଶ । "ଜଣେ ଲୋକ ଯୁଦ୍ଧରେ ହଜାରେ ଲୋକଙ୍କୁ ପରାସ୍ତ କରିପାରେ; କିନ୍ତୁ ଯିଏ ନିଜକୁ ଜୟ କରିପାରେ ସେ ହିଁ ମହତ୍ତମ ବିଜୟୀ ।" "ଜନ୍ମ ଦ୍ୱାରା ନୁହେଁ, ନିଜର ଆଚରଣ ଦ୍ୱାରା କେବଳ ମଣିଷ ଶୂଦ୍ର ଅବା ବ୍ରାହ୍ମଣ ହୋଇଥାଏ ।" ଜଣେ ପାପୀକୁ ମଧ୍ୟ ନିନ୍ଦା କରିବା ଉଚିତ ନୁହେଁ, କାରଣ "ଯେଉଁମାନେ ଅପକର୍ମ କରିଚନ୍ତି ସେମାନଙ୍କ ପ୍ରତି ଜାଣିଶୁଣି କିଏ କଠୋର ଭାଷା ପ୍ରୟୋଗ କରିବ ? କାରଣ ଏ ପ୍ରକାର କଠୋର ଭାଷା ତାର ଅପରାଧର କ୍ଷତରେ ଲୁଣ ଘୂରାଇବା ଭଳି ।" ଅନ୍ୟ ଉପରେ ବିଜୟ ଦୁଃଖକର ପରିଣତିକୁ ବାଟ କଢ଼ାଇଥାଏ—"ବିଜୟ ଘୃଣା ଉପୁଜାଏ; କାରଣ ବିଜିତ ଦୁଃଖିତ ହୋଇଥାଏ ।"

କୌଣସି ଧର୍ମର ଅନୁଶାସନ ଅବା କୌଣସି ଦେବତା କିମ୍ବା ଅନ୍ୟ ବିଶ୍ୱର ଉଲ୍ଲେଖ ନକରି ସେ ଏସବୁ ପ୍ରଚାର କରିଥିଲେ । ବୁଦ୍ଧି ତର୍କ ଉପରେ ସେ ଭରସା କରନ୍ତି ଏବଂ ଲୋକଙ୍କୁ କହନ୍ତି ଯେ ସତ୍ୟକୁ ନିଜ ମନ ଭିତରେ ଖୋଜ । ସେ କହିଥିଲେ ବୋଲି

କୁହାଯାଇଛି : "କେହିହେଲେ ମୋର ଅନୁଶାସନକୁ ପୂଜ୍ୟଭାବ ଘେନି ଗ୍ରହଣ କରିବା ଠିକ୍ ନୁହେଁ; ବରଂ ଅଗ୍ନିରେ ସୁନା ପରୀକ୍ଷିତ ହେଲାଭଳି ପ୍ରଥମେ ପରୀକ୍ଷା କରି ଦେଖ ।" ସତ୍ୟ ସମ୍ବନ୍ଧେ ଅଜ୍ଞାନତା ସବୁ ଦୁଃଖର ହେତୁ । ଈଶ୍ୱର ବୋଲି କିମ୍ବା ପରଂବ୍ରହ୍ମ ବୋଲି କେହି ଅଛନ୍ତି କି ନାହିଁ ସେ ସମ୍ପର୍କରେ ସେ ନୀରବ । ସେଥିପାଇଁ ତାଙ୍କର ସ୍ୱୀକାର ନାହିଁ କି ଅସ୍ୱୀକାର ନାହିଁ । ଯେଉଁ ବିଷୟ ନେଇ ଜ୍ଞାତ ନୁହ, ସେ ବିଷୟରେ ରାୟ ଦେବା ଠିକ୍ ନୁହେଁ । ଗୋଟିଏ ପ୍ରଶ୍ନର ଉତ୍ତରରେ ବୁଦ୍ଧ କହିଥିବା ଜଣାଯାଏ: "ପରଂବ୍ରହ୍ମ ଅର୍ଥ ଯଦି ହୁଏ ସମସ୍ତ ଜ୍ଞାତବସ୍ତୁ ସଙ୍ଗେ ସମ୍ପର୍କର ବାହାରେ ତାର ଅସ୍ତିତ୍ୱ, କୌଣସି ଜ୍ଞାତ ଯୁକ୍ତିଦ୍ୱାରା ତାହା ପ୍ରତିଷ୍ଠା କରାଯାଇପାରେନା । କୌଣସି ବସ୍ତୁ ଅନ୍ୟାନ୍ୟ ବସ୍ତୁ ସଙ୍ଗେ ସମ୍ବନ୍ଧ ନରଖି ତିଷ୍ଠିପାରେ ବୋଲି ଆମେ ଜାଣିବା କିପରି ? ଆମେ ଯେପରି ଜାଣିଥାଉଁ ସମଗ୍ର ବ୍ରହ୍ମାଣ୍ଡ କେତେକ ସମ୍ବନ୍ଧର ଗୋଟିଏ ପ୍ରଣାଳୀ, ସେପରି କୌଣସି ବସ୍ତୁ ସମ୍ପର୍କରେ ଆମେ ଜ୍ଞାତ ନୋହୁଁ ଯାହା ସମ୍ବନ୍ଧହୀନ ଅଟେ ଅବା ହୋଇପାରେ ।" ଅତଏବ ଆମେ ଯାହା ଦେଖିପାରୁ ଏବଂ ଯାହା ସମ୍ପର୍କରେ ଆମେ ନିର୍ଦ୍ଦିଷ୍ଟ ଜ୍ଞାନ ଆହରଣ କରିପାରୁ, ନିଜକୁ ସେତିକରେ ସୀମିତ ରଖିବା ଆମ ପକ୍ଷରେ ଉଚିତ ।

ଆତ୍ମାର ଅସ୍ତିତ୍ୱ ସମ୍ପର୍କରେ ବୁଦ୍ଧ କୌଣସି ସ୍ପଷ୍ଟ ଉତ୍ତର ଦେଇ ନାହାନ୍ତି । ସେ ତାହା ସ୍ୱୀକାର କିମ୍ବା ଅସ୍ୱୀକାର କରି ନାହାନ୍ତି । ବିଶେଷ ଲକ୍ଷ୍ୟ କରିବାର କଥା ଯେ, ଏହି ପ୍ରଶ୍ନ ଉପରେ ସେ ଆଲୋଚନା କରିବାକୁ ଚାହିଁ ନାହାନ୍ତି; କାରଣ ତାଙ୍କ ସମୟର ଭାରତୀୟ ମନ ଜୀବାତ୍ମା ଓ ପରମାତ୍ମା, ଅଦ୍ୱୈତବାଦ ଓ ଏକେଶ୍ୱରବାଦ ଏବଂ ଅନ୍ୟାନ୍ୟ ଆଧିଭୌତିକ ପ୍ରକଳ୍ପରେ ପୂର୍ଣ୍ଣ ଥିଲା । କିନ୍ତୁ ବୁଦ୍ଧ ସମସ୍ତ ପ୍ରକାର ଆଧିଭୌତିକ ବିଚାରର ବିରୁଦ୍ଧରେ ତାଙ୍କର ମନ ନିୟୋଜିତ କରିଥିଲେ । କିନ୍ତୁ ଗୋଟିଏ ପ୍ରାକୃତିକ ନିୟମର ସ୍ଥାୟିତ୍ୱ, ସାର୍ବଜନୀନ ହେତୁ ପରିଣାମବାଦ ଉପରେ ତାଙ୍କର ବିଶ୍ୱାସ ଥିଲା ଏବଂ ଏହି ପ୍ରକାରେ, ପ୍ରତ୍ୟେକ ଅବସ୍ଥା ତାର ପୂର୍ବବର୍ତ୍ତୀ ଅବସ୍ଥାମାନଙ୍କ ନିର୍ଦ୍ଧାରିତ ଏବଂ ସତ୍କର୍ମ ଓ ସୁଖ, ଅସତ୍କର୍ମ ଓ ଦୁଃଖ ପରସ୍ପର ସଙ୍ଗେ ସ୍ୱାଭାବିକ ଭାବରେ ସମ୍ବନ୍ଧିତ ବୋଲି ମଧ୍ୟ ସେ ବିଶ୍ୱାସ କରୁଥିଲେ ।

ଅଭିଜ୍ଞତାର ଏହି ବିଶ୍ୱରେ ଆମେ ବିବିଧ ଶବ୍ଦ ଓ ବର୍ଣ୍ଣନା ପ୍ରୟୋଗ କରୁ ଓ କହୁ 'ଏହା ଅଛି' କିମ୍ବା 'ଏହା ନାହିଁ' । ବସ୍ତୁର ଗୌଣ ସ୍ୱଭାବ ଛାଡ଼ି ଆଉ ଟିକିଏ ଭିତରକୁ ଯଦି ଆମେ ପ୍ରବେଶ କରୁ ତାହାହେଲେ ଏହି 'ଅଛି' ଓ 'ନାହିଁ' ଉଭୟରୁ କେଉଁଟି ହେଲେ ନିର୍ଭୁଲ ନ ହୋଇପାରେ ଏବଂ ପ୍ରକୃତରେ କଅଣ ଘଟୁଛି ତାହା ବର୍ଣ୍ଣନା କରିବା ପାଇଁ ଆମର ଭାଷା ଯଥେଷ୍ଟ ନହୋଇ ପାରେ । ଏହି 'ଅଛି' ଓ 'ନାହିଁ'ର ମଝିରେ କେଉଁଠି କିମ୍ବା ତାର ବାହାରେ ସତ୍ୟ ରହି ଥାଇପାରେ । ନଦୀ ଅବିରାମ ଭାବରେ ବହିଯାଉଥାଏ ଓ ପ୍ରତି ମୁହୂର୍ତ୍ତରେ ତାର ସ୍ରୋତ ସମାନ ପ୍ରତୀତ ହୋଇଥାଏ, କିନ୍ତୁ ତାର ଜଳ ସର୍ବଦା ପରିବର୍ତ୍ତିତ ହେଉଥାଏ । ଅଗ୍ନି ବିଷୟ ମଧ୍ୟ ଏହିପରି । ଶିଖା ପ୍ରଜ୍ୱଳିତ ରହେ ଓ ନିଜର ଆକାର ବଜାୟ ରଖେ । ତଥାପି ସେହି ଶିଖା ସର୍ବଦା ରହେ ନାହିଁ, ବରଂ କ୍ଷଣ କ୍ଷଣକୁ ପରିବର୍ତ୍ତିତ ହେଉଥାଏ । ଅତଏବ ଜୀବନ ମଧ୍ୟ ବରାବର ପରିବର୍ତ୍ତିତ ହେଉଥାଏ ଓ ନିଜର ସମସ୍ତ ରୂପରେ ତାହା

ଗୋଟିଏ ଧାରା ସ୍ୱରୂପ, ଯାହାକୁ ଆମେ 'ହେବାର ପ୍ରକ୍ରିୟା' କହିପାରୁ । ବାସ୍ତବତା ସ୍ଥାୟୀ ଓ ଅପରିବର୍ତ୍ତିତ ସେପରି କିଛି ନୁହେଁ, ବରଂ ଗୋଟାଏ ପ୍ରକାର ସମୁଜ୍ଜ୍ୱଳ ତେଜ, ଗତି ଓ ଶକ୍ତିର ଏକ ବସ୍ତୁ, କ୍ରମପରିଣାମର ଏକ ଧାରା । ସମୟର ଧାରଣା, "ଏହି ଅବା ସେହି ଘଟଣାର ପ୍ରୟୋଗରୁ ଆହରିତ ଗୋଟାଏ ଧାରଣା ମାତ୍ର ।" କୌଣସି ଏକ ବସ୍ତୁ ଅନ୍ୟ କେଉଁ ବସ୍ତୁର ହେତୁ ବୋଲି ଆମେ କହି ନପାରୁ; କାରଣ ସ୍ଥାୟୀ ସତ୍ତାର ସେପରି କିଛି ପରିବର୍ତ୍ତନଶୀଳ ଅନ୍ତଃସ୍ଥଳ ନାହିଁ । ବସ୍ତୁର ତତ୍ତ୍ୱ ଅନ୍ୟ ତଥାକଥିତ ବସ୍ତୁମାନଙ୍କ ସଙ୍ଗେ ତାର ସମ୍ପର୍କର ଅନ୍ତର୍ନିହିତ ନିୟମ । ଆମର ଦେହ ଓ ଆତ୍ମା କ୍ଷଣକୁ କ୍ଷଣ ପରିବର୍ତ୍ତିତ ହେଉଥାଏ; ସେମାନଙ୍କର ଅନ୍ତ ହୁଏ ଏବଂ ଅନ୍ୟ କିଛି, ସେମାନଙ୍କ ପରି ଅଥଚ ଭିନ୍ନ, ଦେଖାଦିଏ ଓ ତା'ପରେ ଅପସରିଯାଏ । ଗୋଟାଏ ଦୃଷ୍ଟିରେ, ଆମେ ସର୍ବଦା ମରୁଚୁ ଓ ପୁନର୍ବାର ଜନ୍ମ ହେଉଚୁ ଓ ଏହି ଅନୁକ୍ରମ ଗୋଟାଏ ଅଖଣ୍ଡ ଏକତ୍ୱ ଭଳି ପ୍ରତୀତ ହୋଇଥାଏ । ଏହା 'ଗୋଟାଏ ସଦାପରିବର୍ତ୍ତିତ ଏକରୂପତାର ଅନୁବୃତ୍ତି' । ଆନ୍ଦୋଳନ ଓ ପରିବର୍ତ୍ତନ ସବୁକିଛି ଗୋଟାଏ ପ୍ରବାହ ।

ଚିନ୍ତାରେ ଓ ଭୌତିକ ପ୍ରତିଭାସ ବ୍ୟାଖ୍ୟା କରିବାରେ କେତେକ ଧରାବନ୍ଧା ପ୍ରଣାଳୀ ପ୍ରତି ଆମେ ଅଭ୍ୟସ୍ତ ହୋଇପଡ଼ିଥିବା ଯୋଗୁଁ ଏସବୁ ହୃଦ୍‌ବୋଧ କରିବା ଆମ ପକ୍ଷରେ କଷ୍ଟକର । ତଥାପି ବୁଦ୍ଧଙ୍କର ଏହି ଦର୍ଶନ ଆଧୁନିକ ପଦାର୍ଥବିଜ୍ଞାନ ଓ ଆଧୁନିକ ଦାର୍ଶନିକ ଚିନ୍ତାର ନାନା ଧାରଣାର ଏତେ ନିକଟବର୍ତ୍ତୀ ହେବା ବାସ୍ତବିକ୍ ଅଦ୍ଭୁତ ।

ବୁଦ୍ଧଙ୍କ ପ୍ରଣାଳୀ ଥିଲା ମନସ୍ତାତ୍ତ୍ୱିକ ଅନୁଶୀଳନର ଓ ଏଥିରେ ମଧ୍ୟ ଆଜିର ବିଜ୍ଞାନର କେତେ ନବନବ ଅନ୍ୱେଷଣ ପ୍ରତି ତାଙ୍କର ଅନ୍ତର୍ଦୃଷ୍ଟିର ଗଭୀରତା ଦେଖି ବିସ୍ମିତ ହେବାକୁ ହୁଏ । କୌଣସି ସ୍ଥାୟୀ ଆତ୍ମା ପ୍ରତି ଉଲ୍ଲେଖ ନକରି ମଣିଷର ଜୀବନ ଉପରେ ବିଚାର ଓ ପରୀକ୍ଷା କରାଯାଇଚି; କାରଣ ଯଦି ସେପରି କିଛି ଗୋଟାଏ ଆତ୍ମାର ଅସ୍ତିତ୍ୱ ଥାଏ ତେବେ ତାହା ଆମର ଧାରଣାର ଅତୀତ । ମନକୁ ଦେହର ଗୋଟାଏ ଅଂଶ ଭାବରେ ଗ୍ରହଣ କରାଯାଏ ଏବଂ ଏହି ଦେହ କେତେକ ମାନସିକ ଶକ୍ତିର ଗୋଟାଏ ମିଶ୍ର । ଏପରି ଭାବରେ ବ୍ୟକ୍ତି କେତେକ ମାନସିକ ଅବସ୍ଥାର ସମାହାର ଓ ଆତ୍ମା ହେଉଚି କେତେକ ଭାବର ଏକ ପ୍ରବାହ ମାତ୍ର ।" ଯାହା କିଛି ଆମେ ଅଛୁଁ ତାହା ଆମେ ଯାହା ଭାବିଥିଲୁ ତାର ପରିଣତି ।"

ଜୀବନର ବ୍ୟଥା ଓ ବେଦନା ଉପରେ ଜୋର୍ ଦିଆଯାଇଚି ଏବଂ ଯେଉଁ 'ଚତୁର୍ବିଧ ସତ୍ୟ' ବୁଦ୍ଧ ବିନ୍ୟାସ କରିଚନ୍ତି ତାହା ଏହି ଦୁଃଖ, ତାର କାରଣ, ତାର ବିନାଶର ସମ୍ଭାବନା ଓ ତାହା ସାଧନ କରିବାର ମାର୍ଗ ନିର୍ଦ୍ଦେଶ । ତାଙ୍କର ଶିଷ୍ୟମାନଙ୍କୁ ଉପଦେଶ ଦେବାକୁ ଯାଇ ସେ କହିଚନ୍ତି : "ଏବଂ ଯୁଗ-ଯୁଗଧରି ତୁମେ ଏହା (ଦୁଃଖ) ଅନୁଭବ କଲ, ତୁମର ଆଖିରୁ ଏତେ ଲୁହ ବହିଚି ଯେବେ ତୁମେ ଏହି (ଜୀବନର) ଯାତ୍ରାରେ ପଥଭ୍ରାନ୍ତ ଭଳି ଘୁରି ବୁଲିଲ, ଦୁଃଖକଲ ଓ ରୋଦନ କଲ; କାରଣ ତୁମେ ଯାହା ଘୃଣା କରୁଥିଲ ତାହା ପାଇଲ ଓ ଯାହା ସୁଖ ପାଉଥିଲ ତାହା ପାଇଲ ନାହିଁ; ତୁମ ଆଖିର ସେହି ସବୁ ଲୁହ, ଚାରି ମହାସମୁଦ୍ରର ଜଳ ପରିମାଣ ଅପେକ୍ଷା ଅଧିକ ।"

ଦୁଃଖର ଏହି ପରିସ୍ଥିତି ଅନ୍ତ କରିବାରେ 'ନିର୍ବାଣ' ପ୍ରାପ୍ତି ଘଟେ । ନିର୍ବାଣ କଅଣ—ଏ ବିଷୟରେ ନାନା ଲୋକଙ୍କର ନାନା ମତ; କାରଣ ଆମର ଅପ୍ରାଚୁର୍ଯ୍ୟ ଭାଷା ଏବଂ ଆମର ସୀମିତ ମନର ବିଭିନ୍ନ ଧାରଣାର ଅଭିବ୍ୟକ୍ତି ଦ୍ୱାରା ଏପରି ଏକ ସର୍ବାତିରିକ୍ତ ଅବସ୍ଥା ବର୍ଣ୍ଣନା କରିବା ଅସମ୍ଭବ । ଥୋକେ କହନ୍ତି, ଏହା ସମ୍ପୂର୍ଣ୍ଣ ବିଲୋପ—ଗୋଟାଏ ନିର୍ବାପନ । ତଥାପି କୁହାଯାଏ ଯେ ବୁଦ୍ଧ ଏହା ଅସ୍ୱୀକାର କରିଚନ୍ତି ଓ ନିର୍ବାଣକୁ ଗୋଟାଏ ପ୍ରକାର ନିବିଷ୍ଟ କର୍ମତତ୍ପରତା ବୋଲି ସୂଚିତ କରିଚନ୍ତି; ଏହା ମିଥ୍ୟା ଆକାଂକ୍ଷାର ବିଲୋପ ସିନା, ଦେହର ସର୍ବଥା ବିନାଶ ନୁହେଁ । କିନ୍ତୁ ନେତିବାଚକ ଅଭିବ୍ୟକ୍ତି ବ୍ୟତୀତ ଅନ୍ୟ ଉପାୟରେ ଏହା ବର୍ଣ୍ଣନା କରିବା ଆମ ପକ୍ଷରେ ସମ୍ଭବ ନୁହେଁ । ବୁଦ୍ଧଙ୍କ ପନ୍ଥା ହେଉଚି ମଧ୍ୟମପଥ ଯାହା ଆତ୍ମ ରତି ଓ କୃଚ୍ଛ୍ର ସାଧନର ମଧ୍ୟଭାଗରେ ଅବସ୍ଥିତ । ନିଜର କୃଚ୍ଛ୍ର ସାଧନାର ଅଭିଜ୍ଞତାରୁ ସେ କହିଚନ୍ତି ଯେ ଯେଉଁ ବ୍ୟକ୍ତି ତାର ଶାରୀରିକ ବଳ ହରାଇବସିଚି ସେ ଠିକ୍ ମାର୍ଗରେ ଅଗ୍ରଗତି କରିପାରିବ ନାହିଁ । ଏହି ମଧ୍ୟମ ପଥ ଆର୍ଯ୍ୟଙ୍କ ଅଷ୍ଟାଙ୍ଗ ମାର୍ଗ : ଯଥା—ଉଚିତ ବିଶ୍ୱାସ, ଉଚିତ ଆକାଂକ୍ଷା, ଉଚିତ ବଚନ, ଉଚିତ କର୍ମ, ଉଚିତ ଆଚାର, ଉଚିତ ପ୍ରଯତ୍ନ, ଉଚିତ ବୃତ୍ତି ଓ ଉଚିତ ଆନନ୍ଦ । ଏହା ଆତ୍ମବିକାଶର ପ୍ରଶ୍ନ; କାହାର କୃପାର ପ୍ରଶ୍ନ ନୁହେ ଏବଂ ଯେଉଁ ବ୍ୟକ୍ତି ଏହି ଦିଗରେ ନିଜର ବିକାଶ କରିବାରେ ସଫଳ ହୁଏ ଓ ନିଜ ଉପରେ ବିଜୟ ହାସଲ କରିପାରେ ତା ପାଇଁ ପରାଜୟ ନାହିଁ; "ନିଜକୁ ପରାଜିତ କରିବାରେ ମଣିଷର ଯେଉଁ ବିଜୟ ତାହାକୁ କୌଣସି ଦେବତା ମଧ୍ୟ ପରାଜୟରେ ରୂପାନ୍ତରିତ କରି ପାରିବ ନାହିଁ ।"

ବୁଦ୍ଧ ନିଜ ଶିଷ୍ୟମାନଙ୍କୁ ସେ ସବୁ ବିଷୟ କହିଚନ୍ତି ଯାହା ତାଙ୍କର ବିଚାରରେ ସେମାନେ ବୁଝିପାରୁଥିଲେ ଓ ଯାହା ଜୀବନରେ ଅଭ୍ୟାସ କରି ପାରୁଥିଲେ । ଯାହାକିଛି ବର୍ତ୍ତମାନ ତାହାର ସମ୍ପୂର୍ଣ୍ଣ ପ୍ରକଟନ କିମ୍ବା ପ୍ରତ୍ୟେକ କିଛିର ଗୋଟାଏ ପୂର୍ଣ୍ଣାଙ୍ଗ ବ୍ୟାଖ୍ୟା ଦେବା ପାଇଁ ତାଙ୍କର ଉପଦେଶ ଉଦ୍ଦିଷ୍ଟ ନଥିଲା । ଥରେ, କୁହାଯାଉଚି, ସେ ମୁଠାଏ ଶୁଖିଲା ପତ୍ର ହାତରେ ଧରି, ତାହା ବ୍ୟତୀତ ବାହାରେ ଆଉ ପତ୍ର ଅଛି କି ନାହିଁ ବୋଲି ତାଙ୍କର ପ୍ରିୟ ଶିଷ୍ୟ ଆନନ୍ଦଙ୍କୁ ପଚାରିଥିଲେ । ଆନନ୍ଦ ଉତ୍ତର କଲେ :"ଚତୁର୍ଦ୍ଦିଗରେ ଶରତ୍ର ପତ୍ରଝଡ଼ା ଆରମ୍ଭ ହେଇଚି । ଯେତେ ପତ୍ର ଝଡ଼ୁଚି ତାହା କଳନାର ଅତୀତ ।" ସଙ୍ଗେ ସଙ୍ଗେ ବୁଦ୍ଧ ଉତ୍ତର କଲେ : "ସେହିପରି ମୁଁ ତୁମକୁ ମୁଠାଏ ମାତ୍ର ସତ୍ୟ ଦାନ କରିଚି; କିନ୍ତୁ ସେତିକି ବ୍ୟତୀତ ଆହୁରି ଏତେ ସତ୍ୟ ଅଛି ଯେ ତାହା କଳନା କରାଯାଇପାରେନା ।"

## ୨୦. ବୁଦ୍ଧଚରିତ

ମୋର ଅତି ବାଲ୍ୟବୟସରୁ ବୁଦ୍ଧଚରିତ ମତେ ଆକର୍ଷିତ କରିଥିଲା ଏବଂ ମୁଁ ସେଇ ଯୁବକ ସିଦ୍ଧାର୍ଥଙ୍କ ଆଡ଼କୁ, ଯିଏ ବହୁ ଅନ୍ତର୍ଦ୍ୱନ୍ଦ୍ୱ, ଦୁଃଖ ଓ ତପସ୍ୟା ପରେ ବୁଦ୍ଧତ୍ୱ ପ୍ରାପ୍ତହେଇଥିଲେ, ଟାଣିହେଇଯାଉଥିଲି । ଏଡ଼ଓ୍ୱିନ୍ ଆର୍ଣ୍ଣଲଡ଼୍ଙ୍କ କାବ୍ୟ 'ଲାଇଟ୍ ଅଫ୍ ଏସିଆ' ମୋର ଗୋଟାଏ ପ୍ରିୟ ଗ୍ରନ୍ଥ ହେଇପଡ଼ିଥିଲା । ପରବର୍ତ୍ତୀ ସମୟରେ ଆମ ପ୍ରଦେଶରେ ମୁଁ ଯେବେ

ବ୍ୟାପକ ଭାବରେ ପର୍ଯ୍ୟଟନ କରୁଥିଲି; ବୁଦ୍ଧଚରିତ ସଙ୍ଗେ ସମ୍ପର୍କିତ ସ୍ଥାନଗୁଡ଼ିକ ଦେଖିବା-ପାଇଁ ମୁଁ ଖୁବ୍ ଭଲପାଉଥିଲି ଏବଂ ସେଥିପାଇଁ ବେଳେବେଳେ ବାଟ ଭାଙ୍ଗି ମଧ୍ୟ ଯାଇଛି । ଏଥିର ଅଧିକାଂଶ ସ୍ଥାନ ମୋର ପ୍ରଦେଶରେ ଅବା ତା'ଠାରୁ ଅଦୂରରେ ଅବସ୍ଥିତ । ଏଠାରେ (ନେପାଳ ସୀମାନ୍ତରେ) ବୁଦ୍ଧ ଜନ୍ମଗ୍ରହଣ କରିଥିଲେ, ଏଠାରେ ପରିବ୍ରାଜନ କରିଥିଲେ, ଏଠାରେ (ବିହାର ଅନ୍ତର୍ଗତ ଗୟାରେ) ବୋଧିଦ୍ରୁମ ତଳେ ତପସ୍ୟାରେ ବସି ବୁଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ, ଏଠାରେ ସେ ତାଙ୍କର ପ୍ରଥମ ଧର୍ମଚକ୍ର ପ୍ରବର୍ତ୍ତନ କରିଥିଲେ ଏବଂ ଏଠାରେ ହିଁ ମହାପରିନିର୍ବାଣ ଲଭିଥିଲେ ।

ଯେଉଁଠାରେ ଏବେସୁଦ୍ଧା ବୌଦ୍ଧଧର୍ମ ଗୋଟାଏ ଜୀବନ୍ତ ତଥା ଆଧିପତ୍ୟଶୀଳ ଧର୍ମ ଭାବରେ ରହିଚି, ସେହି ସବୁ ଦେଶ ପରିଦର୍ଶନ କଲାବେଳେ ମୁଁ ବୌଦ୍ଧ ମନ୍ଦିର ଓ ବିହାରମାନ ଦେଖିବାକୁ ଯାଇଚି, ଭିକ୍ଷୁ ଓ ସାଧାରଣ ଲୋକଙ୍କୁ ଭେଟିଚି ଏବଂ ବୌଦ୍ଧଧର୍ମ ଲୋକଙ୍କ ପାଇଁ କଅଣ କରିଚି ଜାଣିବା ଉଦ୍ୟମ କରିଚି । ଏହା ସେମାନଙ୍କୁ କିଭଳି ପ୍ରଭାବିତ କରିଥିଲା; ସେମାନଙ୍କ ଦେହ ଓ ମନରେ ଏହା କି ପ୍ରକାର ଛାପ ପକାଇଛି ଏବଂ ଆଧୁନିକ ଜୀବନ ପ୍ରତି ସେମାନଙ୍କର ପ୍ରତିକ୍ରିୟା କଅଣ ? ସେଥିରେ ବହୁତ କିଛି ଥିଲା ଯାହା ମୁଁ ପସନ୍ଦ କରିନି । ଏହି ବୁଦ୍ଧିବାଦୀ ନୀତିଭିତ୍ତିକ ସିଦ୍ଧାନ୍ତ ଉପରେ ଏତେ ନିରର୍ଥକ ବ୍ୟାଖ୍ୟା, ଏତେ କର୍ମକାଣ୍ଡ, ଏତେ ବିଧିବିଧାନ ଓ ବୁଦ୍ଧଙ୍କ ଶିକ୍ଷାର ବିପରୀତ ଏତେ ଆଧିଭୌତିକ ସିଦ୍ଧାନ୍ତ ଏବଂ ଏପରିକି ଯାଦୁବିଦ୍ୟାର ଆଚ୍ଛାଦନ ଏତେ ଭାବରେ ଜମିଯାଇଚି; ସେକଥା କହିବାର ନୁହେଁ । ବୁଦ୍ଧଙ୍କର ଚେତାବନୀ ସତ୍ତ୍ୱେ ସେମାନେ ତାଙ୍କୁ ଈଶ୍ୱର ଆସନରେ ଅଧିଷ୍ଠିତ କରିଚନ୍ତି ଏବଂ ମନ୍ଦିର ଭିତରେ କିମ୍ବା ଅନ୍ୟତ୍ର ତାଙ୍କର ବିଶାଳ ବିଗ୍ରହଗୁଡ଼ିକ ମତେ ଚାହିଁଲାବେଳେ ସେ କଅଣ ମନେ କରୁଥିବେ ଭାବି ମୁଁ ବିସ୍ମିତ ହୋଇଥାଏ । ଅଧିକାଂଶ ଭିକ୍ଷୁ ଅଜ୍ଞାନ ଓ ଅହଂକାରୀ ଥିଲେ ଏବଂ ସେମାନଙ୍କ ସମ୍ମୁଖରେ କିମ୍ବା ସେମାନଙ୍କ ପରିଚ୍ଛଦ ସମ୍ମୁଖରେ ମସ୍ତକ ଅବନତ କରିବା ଦାବି କରୁଥିଲେ । ପ୍ରତ୍ୟେକ ଦେଶରେ ଜାତୀୟ ବୈଶିଷ୍ଟ୍ୟ ଧର୍ମ ଉପରେ ସବାର ହୋଇ ତାର ବିବିଧ ପ୍ରଥା ଓ ଜୀବନଯାପନ ପ୍ରଣାଳୀର ଅନୁରୂପ ଭାବରେ ତାକୁ ରୂପାୟିତ କରିଚି । ଏ ସମସ୍ତ ଅତି ସ୍ୱାଭାବିକ ଏବଂ ଏ ପ୍ରକାର ବିକାଶ ଧ୍ରୁବ ଅବଶ୍ୟମ୍ଭାବୀ ଥିଲା ।

ସେପରି ବହୁତ କିଛି ମଧ୍ୟ ଦେଖିଲି, ଯାହା ମତେ ଭଲ ଲାଗିଲା । କେତେକ ବିହାର ଓ ତତ୍‌ସଂଲଗ୍ନ ବିଦ୍ୟାଳୟମାନଙ୍କରେ ଶାନ୍ତିପୂର୍ଣ୍ଣ ଅଧ୍ୟୟନ ଓ ଧ୍ୟାନ-ଧାରଣାର ବାତାବରଣ ବିରାଜିତ ଥିଲା । ବହୁ ଭିକ୍ଷୁଙ୍କ ବଦନରେ ପ୍ରଶାନ୍ତି, ମର୍ଯ୍ୟାଦା, କୋମଳତା ଓ ଅନାସକ୍ତି ତଥା ମୁକ୍ତିର ଆଭା ପରିସ୍ଫୁଟ ହୋଇଥିଲା । ଆଜିର ଜୀବନ ସଙ୍ଗେ ଏହାର ସମତା ଅଛି ନା ଜୀବନରୁ ଏହା ଏକ ପ୍ରକାର ପଳାୟନ କେବଳ ? ଜୀବନର ବିରାମହୀନ ସଂଗ୍ରାମ ସଙ୍ଗେ ଏହାକୁ ଉପଯୋଗୀ କରି ତିଆରି ଆମେ ଯେଉଁ ବନ୍ୟତା, ଅପହରଣଶୀଳତା ଓ ହିଂସାରେ ପୀଡ଼ିତ ହୋଇପଡ଼ିଚୁ ତାହା କ'ଣ ପ୍ରଶମିତ କରି ହେବନି ?

ଜୀବନ ପ୍ରତି ମୋର ଅଭିମୁଖ୍ୟ ସଙ୍ଗେ ବୌଦ୍ଧଧର୍ମର ନୈରାଶ୍ୟବାଦ ମେଳ ଖାଇପାରି-ନାହିଁ କିମ୍ବା ଜୀବନରୁ ଓ ତାର ବିବିଧ ସମସ୍ୟାରୁ ପଳାଇଯିବାର ପ୍ରବୃତ୍ତି ମତେ ପ୍ରଭାବିତ

କରିପାରିନି । ମୋର ମନର କୌଣସି ଅପ୍ରକାଶ୍ୟ କୋଣରେ ମୁଁ ଥିଲି ଧର୍ମ ପ୍ରତି ଜଣେ ଉଦାସୀନ ବ୍ୟକ୍ତି ଓ ସେପରି ବ୍ୟକ୍ତି ଜୀବନ ଓ ପ୍ରକୃତିର ପ୍ରାଚୁର୍ଯ୍ୟକୁ ଯେପରି ସୁଖ ପାଇଥାଏ ସେହିପରି ମୁଁ ଦେଖିଥିଲି ଏବଂ ଜୀବନ ଯେଉଁ ସବୁ ସଂଘର୍ଷ ଯୋଗାଇଥାଏ ସେଥିପ୍ରତି ମୁଁ ବିଶେଷ ସ୍ପୃହାହୀନ ନଥିଲି । ଯାହା ମୁଁ ଅଭିଜ୍ଞତା କରିଥିଲି, ମୋର ଚତୁଃପାର୍ଶ୍ୱରେ ଯାହା-ସବୁ ଦେଖୁଥିଲି, କେତେକ କ୍ଳେଶକର ଓ ଦୁଃଖଦାୟକ ହେଲେ ମଧ୍ୟ, ସେଥିରେ ମୋର ପ୍ରବୃତ୍ତି ନିସ୍ତେଜ ହୋଇଯାଇ ନଥିଲା ।

ବୌଦ୍ଧଧର୍ମ ତେବେ କ'ଣ ନିଷ୍କ୍ରିୟତା ଓ ନୈରାଶ୍ୟବାଦର ପ୍ରଚାରକ ? ତାର ବ୍ୟାଖ୍ୟାକାରମାନେ ଏପରି କହିପାରନ୍ତି; ତା'ର ଉପାସକମାନେ ଏହି ଅର୍ଥ ହୁଏତ ଆହରଣ କରିପାରିଥାନ୍ତି । ତା'ର ସୂକ୍ଷ୍ମ ବିଚାର, ତା'ର ପରବର୍ତ୍ତୀ ଜଟିଳତା ଓ ଆଧିଭୌତିକ ବିକାଶ ଉପରେ ବିଚାରକରିବା ନିମନ୍ତେ ମୁଁ ସମର୍ଥ ନୁହେଁ । କିନ୍ତୁ ମୁଁ ଯେବେ ବୁଦ୍ଧଙ୍କ ବିଷୟ ଚିନ୍ତାକରେ; ଏ ପ୍ରକାର କୌଣସି ଭାବ ମୋର ମନରେ ଉଦିତ ହୁଏନି କିମ୍ବା ନିଷ୍କ୍ରିୟତା ଓ ନୈରାଶ୍ୟବାଦ ଉପରେ ମୁଖ୍ୟତଃ ପ୍ରତିଷ୍ଠିତ ଗୋଟାଏ ଧର୍ମ କୋଟି କୋଟି ଲୋକଙ୍କ ଉପରେ ଏବଂ ସେମାନଙ୍କ ଭିତରୁ ଅତି ବିଚକ୍ଷଣ ଲୋକଙ୍କ ଉପରେ ଏ ପ୍ରକାର ଶକ୍ତିଶାଳୀ ପ୍ରଭାବ ପକାଇ ପାରେ ବୋଲି ମୁଁ କଳ୍ପନା କରି ନପାରେ ।

ବୁଦ୍ଧଙ୍କର ଏହି ଅବଧାରଣା ଯାହାକୁ କେତେ ଅଗଣିତ ସ୍ନେହଶୀଳ ହସ୍ତ ଉତ୍କୀର୍ଣ୍ଣ ଶିଳା, ମର୍ମର ଶିଳା ଓ ବ୍ରୋଞ୍ଜ୍ (କଂସା, ତମ୍ବା ଓ ଦସ୍ତା ସମ୍ମିଶ୍ରିତ ଧାତୁ ବିଶେଷ) ରେ ରୂପାୟିତ କରିଚନ୍ତି, ଭାରତୀୟ ଭାବୁକତାର ଉତ୍କର୍ଷ ଅଥବା ତାର ଅନ୍ତତଃ ଗୋଟାଏ ପ୍ରେରଣାଦାୟୀ ବିଭବର ପ୍ରତୀକ ରୂପ ଭଳି ମନେହୁଏ । ପଦ୍ମଫୁଲ ଉପରେ ଉପବିଷ୍ଟ, ପ୍ରଶାନ୍ତ ଓ ନିର୍ବିକାର, ଆବେଗ ଓ ବାସନାର ଏବଂ ଏହି ବିଶ୍ୱର ବହୁ ଝଡ଼ଝଞ୍ଜା ଓ ସଂଘାତର ବହୁ ଊର୍ଦ୍ଧ୍ୱରେ ଅବସ୍ଥିତ ବୁଦ୍ଧ ଧରାଛୁଆଁର ବାହାରେ; ବହୁ ଦୂରରେ ଅଲଭ୍ୟ ମନେ ହୋଇଥାନ୍ତି । ତଥାପି ପୁନର୍ବାର ଚାହିଁଲେ ସେହି ସ୍ଥିର ଅଚଳ ବଦନ ପଛରେ ଆମର ଜ୍ଞାତ ଆବେଗ ଓ ପ୍ରକ୍ଷୋଭ ଅପେକ୍ଷା ଅଧିକତର ଶକ୍ତିଶାଳୀ ଓ ବିଚିତ୍ର ଗୋଟାଏ ଆବେଗ ଓ ପ୍ରକ୍ଷୋଭ ଦୃଷ୍ଟିରେ ପଡ଼େ । ଚକ୍ଷୁ ତାଙ୍କର ମୁଦ୍ରିତ କିନ୍ତୁ ଆତ୍ମାର କୌଣସି ଶକ୍ତି ସେଥିଭିତରୁ ଅବଲୋକନ କରେ ଏବଂ ତାଙ୍କର ଶରୀର ଗୋଟାଏ ପ୍ରାଣସଞ୍ଚାରୀ ଶକ୍ତିରେ ପୂର୍ଣ୍ଣ ମନେ ହୁଏ । ଯୁଗ ପରେ ଯୁଗ ଅତିବାହିତ ହୋଇଚି ଏବଂ ବୁଦ୍ଧ ଯେପରି ଦେଖାଯାଏ, ପ୍ରକୃତରେ ସେତେ ଦୂରସ୍ଥ ଓ ଅଲଭ୍ୟ ନୁହନ୍ତି । ତାଙ୍କର ବାଣୀ ଆମର କାନରେ ଧୀରେ ଧୀରେ କହେ ଯେ ସଂଘର୍ଷରୁ ପଳାୟନ କରିବା ଠିକ୍ ନୁହେଁ, ଶାନ୍ତ ଦୃଷ୍ଟିରେ ତାର ସମ୍ମୁଖୀନ ହେବା ଆବଶ୍ୟକ ଏବଂ ଜୀବନରେ ସର୍ବଦା ଅଗ୍ରଗତି ଓ ଅଭିବୃଦ୍ଧି ନିମନ୍ତେ ବୃହତ୍ତର ସୁଯୋଗ ଦେଖିବା ଉଚିତ ।

ଯେବେହେଲେ ବ୍ୟକ୍ତିତ୍ୱର ପ୍ରାଧାନ୍ୟ ଅନିବାର୍ଯ୍ୟ ଏବଂ ଯିଏ ବୁଦ୍ଧଙ୍କ ଭଳି ମାନବ-ଜାତିର ଚିନ୍ତାକୁ ଏତେ ଗମ୍ଭୀରଭାବରେ ପ୍ରଭାବିତ କରିପାରେ ଯେ ଆଜି ବି ତାଙ୍କର ସ୍ମରଣମାତ୍ରେ ଗୋଟାଏ କିଛି ଜୀବନ୍ତ ତଥା ସ୍ପନ୍ଦିତଭାବ ଅନ୍ତରରେ ଖେଳିଯାଏ, ନିଶ୍ଚିତ ଭାବରେ ଜଣେ ଅଦ୍ଭୁତ ଶକ୍ତିମାନ ବ୍ୟକ୍ତି ହୋଇଥିବେ । ବାର୍ଥ କହନ୍ତି, "ସେ ବ୍ୟକ୍ତି ଶାନ୍ତ ଓ ମଧୁର

ତେଜସ୍ୱୀତାର ପ୍ରତିମୂର୍ତ୍ତି; ଜୀବମାତ୍ର ପ୍ରତି ଅନନ୍ତ କୋମଳତା ଓ ପୀଡ଼ିତ ପ୍ରତି କରୁଣାଘନ, ଯିଏ ସମସ୍ତ ପ୍ରକାର ବିଦ୍ୱେଷରୁ ମୁକ୍ତ ରହି ସମ୍ପୂର୍ଣ୍ଣ ନୈତିକ ସ୍ୱାତନ୍ତ୍ର୍ୟ ଲାଭ କରିଥିଲି ।" ଯେଉଁ ଦେଶ ଓ ଯେଉଁ ଜାତି ଏଭଳି ଗୋଟାଏ ଦେଦୀପ୍ୟମାନ ମହାନ ବ୍ୟକ୍ତିତ୍ୱ ସୃଷ୍ଟି କରିପାରେ, ତା'ର ଭିତରେ ପ୍ରଜ୍ଞା ଓ ଆନ୍ତରଶକ୍ତିର ଗଭୀର ଭଣ୍ଡାର ଅବଶ୍ୟ ଥିବ ।

## ୨୧. ଅଶୋକ

ଭାରତ ଓ ପାଶ୍ଚାତ୍ୟ ଭୂଖଣ୍ଡ ମଧ୍ୟରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଯେଉଁ ସମ୍ପର୍କ ପ୍ରତିଷ୍ଠା କରିଥିଲେ ତାହା ତାଙ୍କର ପୁତ୍ର ବିନ୍ଦୁସାରଙ୍କ ରାଜତ୍ୱ କାଳରେ ଅବ୍ୟାହତ ରହିଥିଲା । ପାଟଳୀପୁତ୍ରର ଦରବାରକୁ ରାଜଦୂତମାନେ ମିଶର ଦେଶର ଟୋଲେମି ଓ ପଶ୍ଚିମ ଏସିଆର ସେଲ୍ୟୁକସ୍ ନିକୋଟାରଙ୍କ ପୁତ୍ର ଓ ଉତ୍ତରାଧିକାରୀ ଏଣ୍ଟିଓକାସ୍‌ଙ୍କ ଦରବାରରୁ ଆସିଥିଲେ । ଚନ୍ଦ୍ରଗୁପ୍ତଙ୍କ ପୌତ୍ର ଅଶୋକ ଏହି ସମ୍ପର୍କ ଆହୁରି ବଢ଼ାଇଥିଲେ ଓ ଏହାଙ୍କ ରାଜତ୍ୱ କାଳରେ ଭାରତ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଆନ୍ତର୍ଜାତିକ କେନ୍ଦ୍ରରେ ପରିଣତ ହେଲା । ଏହାର ପ୍ରଧାନ କାରଣ ହେଉଚି ବୌଦ୍ଧଧର୍ମର ଦ୍ରୁତ ପ୍ରସାର ।

ଖ୍ରୀଷ୍ଟ ଜନ୍ମର ପ୍ରାୟ ୨୭୩ ବର୍ଷ ପୂର୍ବେ ଅଶୋକ ବିଶାଳ ମୌର୍ଯ୍ୟ ସାମ୍ରାଜ୍ୟର ସମ୍ରାଟ ପଦରେ ଅଭିଷିକ୍ତ ହେଲେ । ତା' ପୂର୍ବରୁ ଉତ୍ତର-ପଶ୍ଚିମ ପ୍ରଦେଶରେ ସେ ପ୍ରାଦେଶିକ ରାଜପ୍ରତିନିଧି ଅର୍ଥାତ୍ ବଡ଼ଲାଟ ଭାବରେ ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ସେହି ପ୍ରଦେଶର ରାଜଧାନୀ ଥିଲା ବିଶ୍ୱବିଦ୍ୟାଳୟ କେନ୍ଦ୍ର ତକ୍ଷଶୀଳା । ସେତେବେଳକୁ ଭାରତର ବୃହତ୍ତର ଅଂଶ ମୌର୍ଯ୍ୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇସାରିଥିଲା ଏବଂ ମଧ୍ୟ-ଏସିଆ ଭିତରକୁ ବିସ୍ତୃତ ଥିଲା । ଏହି ସାମ୍ରାଜ୍ୟର ଆଧିପତ୍ୟରୁ ବାହାରେ ରହିଥିଲା ଭାରତର ଦକ୍ଷିଣ-ପୂର୍ବ ଓ ଦକ୍ଷିଣର ଗୋଟାଏ ଅଂଶ କେବଳ । ସମଗ୍ର ଭାରତକୁ ଗୋଟାଏ ସାର୍ବଭୌମ ଶାସନଛତ୍ର ତଳେ ସମ୍ମିଳିତ କରିବାର ପୁରାତନ ସ୍ୱପ୍ନ ଅଶୋକଙ୍କ ପ୍ରାଣରେ ଜାଗ୍ରତ ହେଲା ଏବଂ ଅନତି-ବିଳମ୍ବେ ପୂର୍ବୋପକୂଳରେ କଳିଙ୍ଗ ରାଜ୍ୟ ଜୟଯାତ୍ରାରେ ସେ ବହିର୍ଗତ ହେଲେ । ସେ ସମୟର କଳିଙ୍ଗ ଆଧୁନିକ ଓଡ଼ିଶା ଓ ଆନ୍ଧ୍ରର କେତେକ ଅଂଶ ନେଇ ଗଠିତ ହୋଇଥିଲା । କଳିଙ୍ଗବାସୀଙ୍କ ବୀରତ୍ୱପୂର୍ଣ୍ଣ ତଥା ପ୍ରାଣମୂର୍ଚ୍ଛା ପ୍ରତିରୋଧ ସତ୍ତ୍ୱେ ଅଶୋକଙ୍କ ବାହିନୀ ବିଜୟ-ଲାଭ କଲେ । ଏହି ଯୁଦ୍ଧରେ ପ୍ରବଳ ଲୋକକ୍ଷୟ ଘଟିଥିଲା ଏବଂ ସେ ସମ୍ବାଦ ଯେବେ ଅଶୋକଙ୍କ ନିକଟରେ ପହଞ୍ଚିଲା ସେ ଅତିଶୟ ଦୁଃଖିତ ଓ ଅନୁତପ୍ତ ହେଲେ ଏବଂ ଯୁଦ୍ଧ ପ୍ରତି ତାଙ୍କର ଗଭୀର ବିରକ୍ତି ଉପୁଜିଲା । ଇତିହାସର ବିଜୟୀ ସମ୍ରାଟ ଓ ସେନାପତିଙ୍କ ଭିତରେ ଅଦ୍ୱିତୀୟ, ବିଜୟ ଗୌରବର ଶୀର୍ଷ ଦେଲେ ସେ ଯୁଦ୍ଧବିଦ୍ୟା ଚିରଦିନ ତ୍ୟାଗ କରିବା ପାଇଁ ସଙ୍କଳ୍ପ କଲେ । ଦକ୍ଷିଣର ସ୍ୱଳ୍ପ ଅଂଶ ବ୍ୟତୀତ ସମଗ୍ର ଭାରତ ତାଙ୍କର ସାର୍ବଭୌମତ୍ୱ ସ୍ୱୀକାର କରିସାରିଥିଲା ଏବଂ ଇଚ୍ଛା କରିଥିଲେ ଯେକୌଣସି ମୁହୂର୍ତ୍ତରେ ଦକ୍ଷିଣର ସେହି ଅବଶିଷ୍ଟାଂଶ ଉପରେ ତାଙ୍କର ଆଧିପତ୍ୟ ସେ ବିସ୍ତାର କରିପାରିଥାନ୍ତେ; କିନ୍ତୁ ପୁନର୍ବାର କୌଣସି ରକମର ଆକ୍ରମଣ ଅଭିଯାନରୁ ସେ ବିରତ ହେଲେ ଏବଂ ବୁଦ୍ଧଙ୍କ ଶିକ୍ଷାର ପ୍ରଭାବ

ଫଳରେ ଅନ୍ୟାନ୍ୟ କ୍ଷେତ୍ରରେ ବିଜୟ ଓ ଅଦ୍‌ଭୁତ କର୍ମ ନିମନ୍ତେ ମନ ତାଙ୍କର ବ୍ୟାକୁଳ ହେଲା । ଶିଳା ଓ ଧାତୁ ଦେହରେ ଉତ୍କୀର୍ଣ୍ଣ ଅଗଣିତ ଅନୁଶାସନରୁ ଅଶୋକଙ୍କ ମନରେ ଯୁଦ୍ଧ ଓ ଲୋକକ୍ଷୟ ପ୍ରତି କି ପ୍ରକାର ପ୍ରତିକ୍ରିୟା ହୋଇଥିଲା ଓ ଫଳତଃ ସେ କି ପ୍ରକାର କର୍ମରେ ନିଜକୁ ନିୟୋଜିତ କରିଥିଲେ, ତାଙ୍କର ନିଜ ଘୋଷଣାରୁ ଜଣାଯାଏ । ସେ ସବୁ ଅନୁଶାସନ ଯାହା ସମଗ୍ର ଭାରତରେ ବିସ୍ତୃତ ଥିଲା, ଆଜି ବି ଆମ ପାଖରେ ରହିଚି ଏବଂ ତାଙ୍କର ପ୍ରଜାଙ୍କ ପାଇଁ କେବଳ ନୁହେଁ; ବରଂ ଉତ୍ତରପୁରୁଷମାନଙ୍କ ପାଇଁ ମଧ୍ୟ ତାଙ୍କର ବାର୍ତ୍ତାବହନ କରିଚନ୍ତି । ଗୋଟାଏ ଅନୁଶାସନରେ କୁହାଯାଇଚି :

"ପରମ ପବିତ୍ର ପ୍ରିୟଦର୍ଶୀ ସମ୍ରାଟ ତାଙ୍କର ରାଜତ୍ୱର ଅଷ୍ଟମ ବର୍ଷରେ କଳିଙ୍ଗ ଜୟ କଲେ । ଏହି ଯୁଦ୍ଧରେ ଦେଢ଼ ଲକ୍ଷ ଲୋକ ବନ୍ଦୀ ଭାବରେ ସେଠାରୁ ଆନୀତ ହେଲେ, ଏକ ଲକ୍ଷ ଲୋକ ଯୁଦ୍ଧକ୍ଷେତ୍ରରେ ନିହତ ହେଲେ ଏବଂ ଏହି ସଂଖ୍ୟାର ବହୁଗୁଣ ଲୋକ ନାନା ଭାବରେ ଜୀବନ ହରାଇଲେ ।"

"କଳିଙ୍ଗ ଅଧିକୃତ ହେବା ପରେ ପରେ ପବିତ୍ର ସମ୍ରାଟ ଅହିଂସା ଧର୍ମ ପାଳନ କଲେ; ସେହି ଧର୍ମ ପ୍ରତି ପ୍ରେମ ପ୍ରଦର୍ଶନ ଓ ତାର ପ୍ରଚାର ଆରମ୍ଭ ହେଲା । ଏହି ପ୍ରକାରେ କଳିଙ୍ଗ ବିଜୟ କରିଥିବା ହେତୁରୁ ପ୍ରିୟଦର୍ଶୀ ସମ୍ରାଟଙ୍କର ଅନୁଶୋଚନା ଉଦିତ ହେଲା; କାରଣ ପୂର୍ବରୁ ଅଜେୟ ଗୋଟାଏ ଦେଶ ଜୟ କରିବାକୁ ଗଲେ ସେ ଦେଶବାସୀଙ୍କୁ ହତ୍ୟା କରିବାକୁ ପଡ଼େ, ମୃତ୍ୟୁ ହସ୍ତରେ ଅର୍ପଣ କରିବାକୁ ପଡ଼େ ଓ ବନ୍ଦୀ କରି ଆଣିବାକୁ ପଡ଼େ । ଏହା ପ୍ରିୟଦର୍ଶୀ ସମ୍ରାଟଙ୍କ ପକ୍ଷରେ ଘୋର ଦୁଃଖ ଓ ପରିତାପର ବିଷୟ ।"

ଅନୁଶାସନ ଆହୁରି ଘୋଷଣା କରେ ଯେ ଅଶୋକ ଆଉ ହତ୍ୟା କରିବା, ବନ୍ଦୀ କରିବା, ଏପରିକି କଳିଙ୍ଗରେ ନିହତ ଓ ଧୃତ ସଂଖ୍ୟାର ଶତାଂଶ ଅଥବା ସହସ୍ରାଂଶ ମଧ୍ୟ, ସହ୍ୟ କରିବେ ନାହିଁ । କର୍ତ୍ତବ୍ୟ ଅବା କରୁଣାର ଧର୍ମଦ୍ୱାରା ଲୋକଙ୍କ ହୃଦୟ ଉପରେ ବିଜୟ ହାସଲ କରିବା ହିଁ ପ୍ରକୃତ ବିଜୟ ଏବଂ ଅଶୋକ କହନ୍ତି, ଏ ପ୍ରକାର ପ୍ରକୃତ ବିଜୟ ତାଙ୍କର ନିଜ ସାମ୍ରାଜ୍ୟ ଭିତରେ କେବଳ ନୁହେଁ; ବରଂ ଦୂରଦୂରାନ୍ତ ରାଜ୍ୟମାନଙ୍କରେ ମଧ୍ୟ ସେ ହାସଲ କଲେଣି । ଅନୁଶାସନରେ ଆହୁରି କୁହାଯାଇଚି :

"ଅଧିକନ୍ତୁ, ଯଦି କେହି ତାଙ୍କ ସଙ୍ଗେ ମନ୍ଦ ଆଚରଣ କରେ, ତେବେ ଯେତେଦୂର ସମ୍ଭବପର ପ୍ରିୟଦର୍ଶୀ ସମ୍ରାଟ ତାହା ସହ୍ୟ କରିବେ । ନିଜ ରାଜ୍ୟର ଅରଣ୍ୟ ଅଧିବାସୀଙ୍କୁ ମଧ୍ୟ ପ୍ରିୟଦର୍ଶୀ ସମ୍ରାଟ କୃପା ଦୃଷ୍ଟିରେ ଦେଖନ୍ତି ଏବଂ ସେମାନେ ଯେପରି ଉଚିତ ଚିନ୍ତା-କରନ୍ତି, ସମ୍ରାଟ ସେ ଦିଗରେ ଚେଷ୍ଟିତ ଅଛନ୍ତି; କାରଣ ସେ ଯଦି ସେପରି ନ କରନ୍ତି, ତାଙ୍କୁ ସେଥି ନିମନ୍ତେ ଅନୁତାପ କରିବାକୁ ପଡ଼ିବ । କାରଣ ପ୍ରିୟଦର୍ଶୀ ସମ୍ରାଟ ଚାହାନ୍ତି ଯେ ଜୀବମାନେ ନିରାପତ୍ତା, ଆତ୍ମସଂଯମ, ମାନସିକ ଶାନ୍ତି ଓ ଆନନ୍ଦ ପ୍ରାପ୍ତ ହୁଅନ୍ତୁ ।"

ଭାରତ ଓ ଏସିଆର ଅନ୍ୟାନ୍ୟ ଅଞ୍ଚଳମାନଙ୍କରେ ପରମ ଆଦରଣୀୟ ଏହି ଅଦ୍‌ଭୁତ ଧରଣର ରାଜା ବୁଦ୍ଧଙ୍କ ବାଣୀର ପ୍ରସାର ଉଦ୍ଦେଶ୍ୟରେ, ନ୍ୟାୟପରାୟଣତା ଓ କଲ୍ୟାଣ କାମନା ନିମନ୍ତେ ଏବଂ ଜନସାଧାରଣଙ୍କ ହିତ କାମନାରେ ନାନାବିଧ ସର୍ବସାଧାରଣ କାର୍ଯ୍ୟରେ ନିଜକୁ

ଉତ୍ସର୍ଗିତ କରିଥିଲେ । ରାଜକାର୍ଯ୍ୟ ନିର୍ବାହ କରିବାରେ ସେ କଠୋର ପରିଶ୍ରମ କରୁଥିଲେ ଏବଂ ସେଥି ନିମନ୍ତେ ସର୍ବଦା ସେ ପ୍ରସ୍ତୁତ ରହୁଥିଲେ : "ମୁଁ ଭୋଜନ ଗୃହରେ ଥାଏ କି ରାଣୀହଂସପୁରରେ ଥାଏ, ଶୟନ କକ୍ଷରେ କିବା ମୋର ବ୍ୟକ୍ତିଗତ ପ୍ରକୋଷ୍ଠରେ ଥାଏ, ରଥରେ ଯାତ୍ରା କରୁଥାଏ କିମ୍ବା ଉଦ୍ୟାନ ଭ୍ରମଣ କରୁଥାଏ—ସବୁ ସମୟରେ, ସବୁ ସ୍ଥାନରେ ଦୂତମାନେ ଲୋକଙ୍କ କାରବାର ବିଷୟରେ ମତେ ବରାବର ଜ୍ଞାତ ରଖିବେ···ଯେ କେଉଁ ସ୍ଥାନରେ, ଯେ କେଉଁ ସମୟରେ ଜନକଲ୍ୟାଣ ନିମନ୍ତେ ମତେ ଅବଶ୍ୟ କାର୍ଯ୍ୟ କରିବାକୁ ପଡ଼ିବ ।"

ଅଶୋକଙ୍କ ଅଭିବାଦନ ଓ ବୁଦ୍ଧଙ୍କ ବାଣୀ ବହନକରି ତାଙ୍କର ବାର୍ତ୍ତାବହ ଓ ରାଜଦୂତମାନେ ସିରିଆ, ମିଶର, ମେସିଡୋନିଆ, ସାଇରିନ ଓ ଏପିରସ୍ ଯାତ୍ରା କରିଥିଲେ । ସେମାନେ ମଧ୍ୟ-ଏସିଆ, ବର୍ମା ଓ ଶ୍ୟାମ ଦେଶକୁ ମଧ୍ୟ ଯାଇଥିଲେ ଏବଂ ସେ ନିଜର ପୁତ୍ର ଓ କନ୍ୟା ମହେନ୍ଦ୍ର ଓ ସଙ୍ଘମିତ୍ରାଙ୍କୁ ସିଂହଳ ପ୍ରେରଣ କରିଥିଲେ । ସର୍ବତ୍ର ମଣିଷର ମନ ଓ ହୃଦୟକୁ ଆବେଦନ କରାଯାଇଥିଲା । କୌଣସି କ୍ଷେତ୍ରରେ ବାଧ୍ୟବାଧକତା କିମ୍ବା ବଳପ୍ରୟୋଗର ପ୍ରଶ୍ନ ନଥିଲା । ଜଣେ ନିଷ୍ଠାପର ବୌଦ୍ଧ ଭାବରେ ଅଶୋକ ଅନ୍ୟାନ୍ୟ ଧର୍ମ-ପ୍ରତି ସମ୍ମାନ ପ୍ରଦର୍ଶନ କରୁଥିଲେ ଏବଂ ସେଥିର ଶିକ୍ଷାର ବିଷୟ ପ୍ରତି କେବେହେଲେ ଅସହିଷ୍ଣୁ ନଥିଲେ । ଗୋଟାଏ ଅନୁଶାସନରେ ସେ ଘୋଷଣା କରିଚନ୍ତି :

"କୌଣସି ନା କୌଣସି କାରଣ ଲାଗି ପ୍ରତ୍ୟେକ ଧର୍ମ, ସମ୍ପ୍ରଦାୟ ସମ୍ମାନଯୋଗ୍ୟ । ଏ ପ୍ରକାର ଆଚରଣଦ୍ୱାରା ମଣିଷ ନିଜ ସମ୍ପ୍ରଦାୟକୁ ଗୌରବାନ୍ୱିତ କରେ ଏବଂ ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ସମ୍ପ୍ରଦାୟର ଲୋକଙ୍କର ସେବା କରିଥାଏ ।"

କାଶ୍ମୀରଠାରୁ ସିଂହଳ ପର୍ଯ୍ୟନ୍ତ ବୌଦ୍ଧଧର୍ମ ଦ୍ରୁତ ଭାବରେ ଭାରତରେ ପ୍ରସାର ଲାଭ କଲା । ଏହା ନେପାଳରେ ପ୍ରବେଶ କଲା ଏବଂ ପରେ ତିବ୍ବତ, ଚୀନ ଓ ମଙ୍ଗୋଲିଆରେ ପହଞ୍ଚି ପାରିଥିଲା । ଭାରତରେ ବୌଦ୍ଧଧର୍ମର ପ୍ରଭାବ ଫଳରେ ନିରାମିଷ ଆହାର ଓ ମାଦକଦ୍ରବ୍ୟ ବର୍ଜନ ବୃଦ୍ଧି ଲାଭକଲା । ସେ ପର୍ଯ୍ୟନ୍ତ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ବହୁ ଅବସରରେ ମାଂସ ଓ ମଦ୍ୟ ସେବନ କରୁଥିଲେ, ପଶୁବଳି ଉପରେ ନିଷେଧାଜ୍ଞା ଜାରି ହେଲା ।

ଏହି ଧର୍ମପ୍ରଚାରମୂଳକ ଉଦ୍ୟୋଗଦ୍ୱାରା ବୈଦେଶିକ ସମ୍ପର୍କ ବୃଦ୍ଧି ଫଳରେ ଭାରତ ଓ ଅନ୍ୟାନ୍ୟ ଦେଶମାନଙ୍କ ମଧ୍ୟରେ ବାଣିଜ୍ୟ ସମ୍ପର୍କ ଅବଶ୍ୟ ବୃଦ୍ଧି ଲାଭ କରିଥିବ । ଖୋଟାନ୍‌ରେ (ମଧ୍ୟ-ଏସିଆରେ ଅବସ୍ଥିତ ଆଜିର ସିଙ୍କିଆଙ୍ଗ) ଗୋଟିଏ ଭାରତୀୟ ଉପନିବେଶ ଥିବା ଐତିହାସିକ ନଥିପତ୍ର ଭିତରୁ ଦେଖିବାକୁ ମିଳେ । ଭାରତୀୟ ବିଶ୍ୱବିଦ୍ୟାଳୟ ଗୁଡ଼ିକ ମଧ୍ୟ, ବିଶେଷତଃ ତକ୍ଷଶୀଳା, ବିଦେଶର ବହୁ ବିଦ୍ୟାର୍ଥୀଙ୍କୁ ଆକର୍ଷିତ କରିଥିଲେ ।

ଅଶୋକ ଥିଲେ ଜଣେ ମହାନ୍ ନିର୍ମାତା ଏବଂ ଅନୁମାନ କରିବାପାଇଁ କାରଣ ବି ରହୁଚି ଯେ ସେ ତାଙ୍କର କେତେକ ସୁବିଶାଳ ସୌଧ, ସ୍ତମ୍ଭ ଓ ବିହାର ଆଦି ଇମାରତ ନିର୍ମାଣ ନିମନ୍ତେ ବୈଦେଶିକ କାରିଗରମାନଙ୍କୁ ନିୟୋଜିତ କରିଥିଲେ । ସେପରି କେତେକ ସ୍ତମ୍ଭ-

ରାଜାର ଗଢ଼ଣ ଯାହା ପେର୍‌ସେପୋଲିସ୍ ବିଷୟ ସ୍ମରଣ କରାଏ, ଏହି ଅନୁମାନ ମନରେ ଆଣେ । କିନ୍ତୁ ସେହି ସମୟର ଭାସ୍କର୍ଯ୍ୟ ଓ ଅନ୍ୟାନ୍ୟ ଭଗ୍ନାବଶେଷରେ ମଧ୍ୟ ଭାରତୀୟ କଳାର ଐତିହ୍ୟ ସ୍ପଷ୍ଟଭାବରେ ବିଦ୍ୟମାନ ।

ପ୍ରାୟ ତିରିଶବର୍ଷ ତଳେ ପ୍ରତ୍ନତତ୍ତ୍ୱବିତ୍‌ମାନେ ପାଟଳୀପୁତ୍ରରେ ନିର୍ମିତ ଅଶୋକଙ୍କ ରାଜପ୍ରାସାଦର ବିଖ୍ୟାତ ଏକ ବହୁସ୍ତମ୍ଭବିଶିଷ୍ଟ ଇମାରତ ଆଂଶିକ ଭାବରେ ଖନନ କରିଛନ୍ତି । ଭାରତର ପ୍ରତ୍ନତାତ୍ତ୍ୱିକ ବିଭାଗର ଡକ୍ଟର ସ୍ପୁନେର ତାଙ୍କର ଆନୁଷ୍ଠାନିକ ପ୍ରତିବେଦନରେ କହିଚନ୍ତି କି ଏହା "ଏପରି ସୁରକ୍ଷିତ ଅବସ୍ଥାରେ ପ୍ରାପ୍ତ ହୋଇଚି ଯେ ଏତେ ପୁରାତନ ବୋଲି ପ୍ରାୟ ବିଶ୍ୱାସ କରି ହୁଏନା । ଯେଉଁସବୁ ଗଣ୍ଡିକାଠରେ ଏହା ନିର୍ମିତ, ତାହା ଏପରି ଚିକ୍‌କଣ ଓ ଅକ୍ଷତ ଅବସ୍ଥାରେ ରହିଚି, ଯେପରି ଦୁଇହଜାରରୁ ଅଧିକ ବର୍ଷ ତଳେ ନିର୍ମିତ ହେବା ବେଳେ ଥିଲି ।" ସେ ଆହୁରି କହନ୍ତି, "ଆବଶ୍ୟକୀୟ ସ୍ଥାନରେ କାଷ୍ଠର ଧାରଗୁଡ଼ିକ ଏତେ ଉତ୍କୃଷ୍ଟ ଭାବରେ ଯୋଡ଼ାଯାଇଚି ଯେ ଯୋଡ଼ା ସ୍ଥାନର ଚିହ୍ନ ମଧ୍ୟ ବାରି ହୁଏନି । ପୁରାତନ କାଷ୍ଠର ଏପ୍ରକାର ଅଦ୍‌ଭୁତ ସଂରକ୍ଷଣ ଦର୍ଶକମାନଙ୍କୁ ମୁଗ୍ଧ ଓ ବିସ୍ମିତ କରିଥିଲି । ଏଥିର ପ୍ରତ୍ୟେକଟି ଅଂଶ ଏପରି ବିଚକ୍ଷଣପୂର୍ଣ୍ଣ ଯତ୍ନ ଓ ସୂକ୍ଷ୍ମାବଧାରଣ ସହକାରେ ନିର୍ମିତ ହୋଇଚି ଯେ ଏହାଠାରୁ ଅଧିକତର ଉତ୍କର୍ଷତା ଆହରଣ କରିବା ଆଜି ମଧ୍ୟ ହୁଏତ ସମ୍ଭବ ନୁହେଁ···ସଂକ୍ଷେପରେ କହିଲେ ଏହି ଇମାରତ ଏ ପ୍ରକାର ନିର୍ମାଣକର୍ମର ଏକ ପରାକାଷ୍ଠା ।"

ଦେଶର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ଖୋଳି ବାହାର କରାଯାଇଥିବା ପ୍ରାସାଦଗୁଡ଼ିକର କାଠ କଡ଼ି ଓ ବରଗାଗୁଡ଼ିକ ନିଖୁଣ ଅବସ୍ଥାରେ ସଂରକ୍ଷିତ ହୋଇଚି । ପୃଥିବୀର ଯେ କେଉଁ ଅଞ୍ଚଳରେ ଏହା ବିସ୍ମୟ ଉତ୍ପାଦନ କରିପାରେ । ବିଶେଷକରି ଭାରତରେ, କାରଣ ଏଠାର ଜଳବାୟୁ ଓ ବିବିଧ କୀଟର ଦୌରାତ୍ମ୍ୟରୁ ରକ୍ଷା ପାଇବା ସାଧାରଣ କଥା ନୁହେଁ । ଶତ ଶତ ବର୍ଷଧରି ଏଭଳି ଅକ୍ଷତ ଅବସ୍ଥାରେ ରଖାଯାଇ ପାରିବା ଉଦ୍ଦେଶ୍ୟରେ କାଠକୁ କୌଣସି ରକମର ପାଗ ନିଶ୍ଚୟ କରାଯାଇଥିବ; କିନ୍ତୁ ତାହା କିଅଣ, ମୋର ବିଶ୍ୱାସ, ଏ ପର୍ଯ୍ୟନ୍ତ ରହସ୍ୟାବୃତ ।

ପାଟଳିପୁତ୍ର (ପାଟନା) ଓ ଗୟା ମଧ୍ୟରେ ନାଳନ୍ଦା ବିଶ୍ୱବିଦ୍ୟାଳୟର ଚିତ୍ତାକର୍ଷକ ଧ୍ୱଂସାବଶେଷ ବିଦ୍ୟମାନ । ପରବର୍ତ୍ତୀକାଳରେ ନାଳନ୍ଦା ବିଶ୍ୱବିଦ୍ୟାଳୟ ବିପୁଳ ଖ୍ୟାତି ଲାଭ କରିଥିଲି । ଏହା କେଉଁ ସମୟରୁ ଚାଲୁ ହେଲି ସେ ସମ୍ପର୍କରେ କୌଣସି ସ୍ପଷ୍ଟ ବିବରଣୀ ଜଣା ଯାଇନି ଏବଂ ଅଶୋକଙ୍କ ସମୟରେ ଏ ସମ୍ବନ୍ଧୀୟ କୌଣସି ଅଭିଲେଖ ନାହିଁ ।

ଦୀର୍ଘ ୪୧ ବର୍ଷ କ୍ରିୟାଶୀଳ ଭାବରେ ରାଜତ୍ୱ କରି ଖ୍ରୀଷ୍ଟ ଜନ୍ମର ୨୩୨ ବର୍ଷ ପୂର୍ବେ ଅଶୋକ ଇହଲୀଳା ସାଙ୍ଗ କଲେ । ଏଇଚ. ଜି. ଓ୍ୱେଲ୍‌ସ୍ ତାଙ୍କର 'ଆଉଟ୍ ଲାଇନ୍ ଅଫ୍ ହିଷ୍ଟ୍ରି' ଗ୍ରନ୍ଥରେ ଅଶୋକଙ୍କ ସମ୍ପର୍କରେ କହିଚନ୍ତି : "ଇତିହାସର ସ୍ତମ୍ଭମାନଙ୍କରେ ମହାରାଜ, ରାଜାଧିରାଜ, ସମ୍ରାଟ ତଥା ଚକ୍ରବର୍ତ୍ତୀ ଭାବରେ ଯେତେ ନରପତି ସମବେତ ହୋଇଚନ୍ତି ସେମାନଙ୍କ ମଧ୍ୟରୁ ଗୋଟିଏ ନାମ ଯାହା କେବଳ ଏକ ତାରକା ପ୍ରାୟ ଦୀପ୍ତିମନ୍ତ ରହିଚି,

ତାହା ହେଉଛି ଅଶୋକ । ଆଜିସୁଦ୍ଧା ଭଲ୍‌ଗା ନଦୀ ତୀରରୁ ଜାପାନ ପର୍ଯ୍ୟନ୍ତ ଲୋକେ ସମ୍ମାନ ସହକାରେ ତାଙ୍କର ନାମ ଉଚ୍ଚାରଣ କରନ୍ତି । ଚୀନ୍ ଓ ତିବ୍ବତରେ ଏବଂ ଏପରିକି ଭାରତରେ ମଧ୍ୟ, ଯେଉଁଠି ବୌଦ୍ଧ ଧର୍ମ ବିଲୁପ୍ତ ଲଭିଛି, ଅଶୋକଙ୍କ ମହାନତାର ଐତିହ୍ୟ ସଂରକ୍ଷିତ ହୋଇଛି । ଆଜି ଯେତେ ଲୋକ ତାଙ୍କର ନାମ ସ୍ମରଣ କରନ୍ତି, ସେତିକି ଲୋକଙ୍କ ହୁଏତ କନ୍‌ଷ୍ଟେଣ୍ଟାଇନ୍ ଅବା ଶାର୍ଲମେନ୍ ନାମ କେବେ ଶୁଣି ମଧ୍ୟ ନଥିବେ ।"

□□□

# ପଞ୍ଚମ ପରିଚ୍ଛେଦ

# ଯୁଗେ ଯୁଗେ

## ୧· ଗୁପ୍ତଯୁଗର ଜାତୀୟତାବାଦ ଓ ସାମ୍ରାଜ୍ୟବାଦ

ମୌର୍ଯ୍ୟ ସାମ୍ରାଜ୍ୟ ମଉଳିଗଲା ଓ ତାର ସ୍ଥାନରେ ସୁଙ୍ଗ ବଂଶ, ଅପେକ୍ଷାକୃତ କ୍ଷୁଦ୍ର ଏକ ଅଞ୍ଚଳ ଉପରେ, ନିଜର ଆଧିପତ୍ୟ ବିସ୍ତାର କଲା । ଦକ୍ଷିଣରେ କେତେ ବଡ଼ ବଡ଼ ରାଜ୍ୟ ଗଢ଼ି ହେଉଥିଲା ଏବଂ ଉତ୍ତରରେ ବେକ୍‌ଟ୍ରିଆସ୍ଥ ଅର୍ଥାତ୍ ଇଣ୍ଡୋଗ୍ରୀକ୍‌ମାନେ କାବୁଲଠାରୁ ପଞ୍ଜାବ ପର୍ଯ୍ୟନ୍ତ ବିସ୍ତୃତ ହେଉଥିଲେ । ମିନାଣ୍ଡେରଙ୍କ ନେତୃତ୍ୱରେ ସେମାନେ ପାଟଳୀପୁତ୍ର ପର୍ଯ୍ୟନ୍ତ ମାଡ଼ି ଆସିଥିଲେ; କିନ୍ତୁ ପରାଜିତ ହୋଇ ପ୍ରତ୍ୟାବର୍ତ୍ତନ କରିଥିଲେ । ମିନାଣ୍ଡେର୍ ନିଜେ ଭାରତର ବାତାବରଣ ଓ ତାର ଜୀବନର ମର୍ମ ନିକଟରେ ଆତ୍ମସମର୍ପଣ କରି ବୌଦ୍ଧ-ଧର୍ମ ଗ୍ରହଣ କଲେ । ବୌଦ୍ଧ କାହାଣୀ ଓ କିଂବଦନ୍ତୀରେ ରାଜର୍ଷି ମିଲିନ୍ଦ ନାମରେ ସେ ପ୍ରଖ୍ୟାତ । ଭାରତୀୟ ଓ ଗ୍ରୀସୀୟ ସଂସ୍କୃତିର ସମ୍ମିଶ୍ରଣରୁ ଗାନ୍ଧାରକଳା ଅର୍ଥାତ୍ ଗ୍ରୀସୀୟ ବୌଦ୍ଧକଳା ଜନ୍ମଲାଭ କଲା । ଆଜିର ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ଦେଶ ଓ ଅଫଗାନିସ୍ଥାନ ମିଶି ଗାନ୍ଧାର ନାମରେ ପରିଚିତ ଥିଲା । ମଧ୍ୟ-ଭାରତରେ, ସାଞ୍ଚି ନିକଟବର୍ତ୍ତୀ ବେସ୍‌ନଗରରେ, ସଂସ୍କୃତ ଲିପିରେ ଉତ୍କୀର୍ଣ୍ଣ ଗୋଟାଏ ଲେଖ ବହନ କରି ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରୁ ହେଲିଓଡ଼ୋରାସ୍ ସ୍ତମ୍ଭ ନାମରେ ଗୋଟାଏ ମୁଗୁନି ଶିଳାସ୍ତମ୍ଭ ଦଣ୍ଡାୟମାନ ରହିଛି । ଯେଉଁ ଗ୍ରୀକ୍‌ମାନେ ଭାରତର ସୀମାନ୍ତକୁ ଆସିଥିଲେ ସେମାନେ ଭାରତୀୟତ୍ୱ ଲାଭ କରିବାର ପ୍ରକ୍ରିୟା ଏବଂ ଭାରତୀୟ ସଂସ୍କୃତି ଗ୍ରହଣ କରିବାର ଏକ ଆଭାସ ଏଥିରୁ ଆମକୁ ମିଳେ । ସେହି ଲେଖ ନିମ୍ନଲିଖିତ ଭାବରେ ଅନୂଦିତ ହୋଇଛି : "ଦେବ ଦେବ ବାସୁଦେବଙ୍କ (ବିଷ୍ଣୁ) ଏହି ଗରୁଡ଼ ସ୍ତମ୍ଭ ତକ୍ଷଶୀଳା ଅଧିବାସୀ ବିଷ୍ଣୁ ଉପାସକ ଡିଅନ୍ ପୁତ୍ର ହେଲିଓଡ଼ୋରାସ୍ ଦ୍ୱାରା ଉତ୍ଥିତ । ଲୋକତାରଣ ରାଜା କାଶୀପୁତ୍ର ଭାଗଭଦ୍ରଙ୍କ ରାଜତ୍ୱର ଚତୁର୍ଦ୍ଦଶ ବର୍ଷରେ ଗ୍ରୀକ୍ ମହାରାଜା ଏଣ୍ଟିଆଲ୍‌ସିଡ଼ାସ୍‌ଙ୍କ ଦରବାରରୁ ରାଜଦୂତ ଭାବରେ ସେ ଆସିଥିଲେ ।"

"ଯେଉଁ ତିନୋଟି ଶାଶ୍ୱତ ସିଦ୍ଧାନ୍ତ ଆଚରଣୀୟ ଭାବରେ ପାଳନ କଲେ ସ୍ୱର୍ଗଲାଭ ହୁଏ ତାହା ହେଉଛି ଆତ୍ମସଂଯମ, ଆତ୍ମତ୍ୟାଗ (ଦାନ) ଓ ସତ୍ୟନିଷ୍ଠା ।"

ମଧ୍ୟ-ଏସିଆରେ ଶକ ଅବା ସିଥିଏନ (ସେଇସ୍ତାନ୍—ଶକସ୍ତାନ)ମାନେ ଅକ୍ଷୁ ଉପତ୍ୟକାରେ ନିଜକୁ ପ୍ରତିଷ୍ଠିତ କରିସାରିଥିଲେ । ଆହୁରି ଦୂର ପୂର୍ବରୁ ଆଗତ ୟୁଇ-ଚି ମାନେ ସେମାନଙ୍କୁ ଉତ୍ତର-ଭାରତକୁ ବିତାଡ଼ିତ କଲେ । ଏହି ଶକମାନେ ବୌଦ୍ଧଧର୍ମ ଓ ହିନ୍ଦୁଧର୍ମ ଗ୍ରହଣ

କରିଥିଲେ । ୟୁଇ-ଚି ମାନିଙ୍କ ଭିତରୁ ଗୋଟାଏ ଶାଖା—କୁଶାଣମାନେ ନିଜର ପ୍ରଭୁତ୍ୱ ପ୍ରତିଷ୍ଠା କରି ପରେ ଉତ୍ତର-ଭାରତ ଉପରେ ଆଧିପତ୍ୟ ବିସ୍ତାର କଲେ । ସେମାନେ ଶକମାନଙ୍କୁ ପରାଜିତ କରି ଆହୁରି ଦୂର ଦକ୍ଷିଣକୁ ବିତାଡ଼ିତ କଲେ । ବିତାଡ଼ିତ ଶକମାନେ କାଥିଆୱାର ଓ ଦକ୍ଷିଣାପଥ ଅଞ୍ଚଳରେ ବସବାସ କଲେ । ତଦୁପରି କୁଶାଣମାନେ ସମଗ୍ର ଉତ୍ତର-ଭାରତ ଓ ମଧ୍ୟ-ଏସିଆର ବଡ଼ ଏକ ଭୂଖଣ୍ଡ ଉପରେ ବିଶାଳ ତଥା ସ୍ଥିତିବାନ୍ ଏକ ସାମ୍ରାଜ୍ୟ ପ୍ରତିଷ୍ଠା କଲେ । ସେମାନଙ୍କ ଭିତରୁ ଥୋକେ ହିନ୍ଦୁଧର୍ମ ଗ୍ରହଣ କଲେ; କିନ୍ତୁ ଅଧିକାଂଶ ବୌଦ୍ଧଧର୍ମ ଗ୍ରହଣକଲେ । ଏମାନଙ୍କର ବିଖ୍ୟାତ ରାଜା କନିଷ୍କ ବୌଦ୍ଧ କିଂବଦନ୍ତୀର ଅନ୍ୟତମ ବୀର ପୁରୁଷ ଏବଂ ବୌଦ୍ଧଗ୍ରନ୍ଥମାନଙ୍କରେ ତାଙ୍କର ବହୁତ ଜନକଲ୍ୟାଣକର ମହତ୍ କର୍ମର ଉଲ୍ଲେଖ ରହିଛି । କନିଷ୍କ ନିଜେ ବୌଦ୍ଧ ଥିଲେ ମଧ୍ୟ, ଯେପରି ଜଣାଯାଏ, ତାଙ୍କର ରାଷ୍ଟ୍ର-ଧର୍ମ ଥିଲା ଗୋଟାଏ ପ୍ରକାର ମିଶ୍ରିତ ବ୍ୟାପାର ଯେଉଁଥିରେ ଆଜିର ଭାରତୀୟ ପାର୍ଶୀଙ୍କ ଧର୍ମ ଯୋରାଷ୍ଟ୍ରିୟ ଧର୍ମ ମଧ୍ୟ ସମ୍ମିଳିତ ଥିଲା । କୁଶାଣ ସାମ୍ରାଜ୍ୟ ନାମରେ ଅଭିହିତ ଏହି ସୀମାନ୍ତ ରାଜ୍ୟର ରାଜଧାନୀ ଆଧୁନିକ ପେଶାବାର ଓ ପୁରାତନ ତକ୍ଷଶୀଳା ବିଶ୍ୱବିଦ୍ୟାଳୟର ନିକଟରେ ଅବସ୍ଥିତ ଥିଲା ଯେଉଁଠି ନାନା ଜାତିର ଲୋକେ ମିଳିତ ହେଉଥିଲେ । ସେଠାରେ ଭାରତୀୟମାନେ ଶିଥୀୟ, ୟୁଇ-ଚି, ପାରସିକ, ବେକ୍ଟ୍ରୀୟ-ଗ୍ରୀକ୍, ତୁର୍କୀ ଓ ଚୀନାମାନଙ୍କ ସଙ୍ଗେ ମିଶୁଥିଲେ ଏବଂ ବିଭିନ୍ନ ସଂସ୍କୃତି ପରସ୍ପର ଉପରେ କ୍ରିୟା କରୁଥିଲା । ଏ ପ୍ରକାର କ୍ରିୟାପ୍ରତିକ୍ରିୟା ଫଳରେ ଭାସ୍କର୍ଯ୍ୟ ଓ ଚିତ୍ରକଳାର ଏକ ବଳିଷ୍ଠ ଶାଖା ଗଢ଼ିଉଠିଲା । ଇତିହାସ ଦୃଷ୍ଟିରୁ ଦେଖିଲେ ଏହି ସମୟରେ ହିଁ ଭାରତ ଓ ଚୀନ ଭିତରେ ପ୍ରଥମ କରି ସମ୍ପର୍କ ସ୍ଥାପିତ ହୋଇଥିଲା ଏବଂ ଖ୍ରୀଷ୍ଟ ଜନ୍ମର ଚଉଷଠିତମ ବର୍ଷରେ ଜଣେ ଚୀନାରାଜଦୂତ ଭାରତକୁ ଆସିଥିଲେ । ସାମାନ୍ୟ ହୋଇଥିଲେ ସୁଦ୍ଧା ଚୀନା ରାଜଦୂତ ଭାରତକୁ ଉପହାର ସ୍ୱରୂପ ଆଣିଥିବା ଗୋଲପଜାମୁ ଓ ନାସ୍‌ପାତି ଗଛ ସେ ସମୟରେ ଖୁବ୍ ପ୍ରଶଂସିତ ହୋଇଥିଲା । ଗୋବୀ ମରୁଭୂମିର ଠିକ୍ ସୀମା ଉପରେ, ତୁର୍ଫାନ୍ ଓ କୁଚ୍ଚିରେ ଭାରତୀୟ, ଚୀନ ଓ ପାରସିକ ସଂସ୍କୃତିର ଗୋଟାଏ ଚିତ୍ତାକର୍ଷକ ସମ୍ମିଶ୍ରଣ ମୁଣ୍ଡଟେକି ଉଠିଲା ।

କୁଶାଣମାନଙ୍କ ସମୟରେ, ମହାଯାନ ଓ ହୀନଯାନ ନାମରେ ବୌଦ୍ଧଧର୍ମ ଦୁଇଭାଗରେ ବିଭକ୍ତ ହେଲା ଏବଂ ଉଭୟ ମଧ୍ୟରେ ଖୁବ୍ ବିବାଦ ଚାଲିଲା । ଭାରତର ରୀତି ଯେପରି, ଏହି ସବୁ ବିବାଦ ବଡ଼ ବଡ଼ ସଭାମାନଙ୍କରେ ଆଲୋଚିତ ହୋଇଥାଏ ଯେଉଁ ସଭାମାନଙ୍କରେ ଭାରତର ବିଭିନ୍ନ ପ୍ରାନ୍ତରୁ ପ୍ରତିନିଧି ଆସି ଯୋଗ ଦେଉଥିଲେ । ସାମ୍ରାଜ୍ୟର କେନ୍ଦ୍ର ନିକଟରେ ଅବସ୍ଥିତ କାଶ୍ମୀରରେ ଏ ପ୍ରକାର ବୈଠକ ଓ ସାଂସ୍କୃତିକ କାର୍ଯ୍ୟକଳାପ ବିପୁଳ ଭାବରେ ଚାଲିଥିଲା । ଏହି ବିବାଦ ଭିତରେ ଗୋଟିଏ ନାମ ଯାହା ବରାବର ଉଚ୍ଚାରିତ ହେଉଥିଲା ତାହା ହେଉଛି ନାଗାର୍ଜ୍ଜୁନ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ନାଗାର୍ଜ୍ଜୁନ ଜୀବିତ ଥିଲେ । ବୌଦ୍ଧ ଶାସ୍ତ୍ରଜ୍ଞ ଓ ଭାରତୀୟ ଦର୍ଶନର ଜଣେ ଧୁରନ୍ଧର ପଣ୍ଡିତ ନାଗାର୍ଜ୍ଜୁନଙ୍କ ବିରାଟ ବ୍ୟକ୍ତିତ୍ୱ ଫଳରେ ମହାଯାନ ଭାରତରେ ବିଜୟ ଲାଭକଲା । ଏହି ମହାଯାନ ଶାଖା ହିଁ

ଚୀନ ଦେଶକୁ ପ୍ରସ୍ତୁତ ହେଉଥିଲା । କିନ୍ତୁ ସିଂହଳ ଓ ବ୍ରହ୍ମଦେଶରେ ହୀନଯାନ ପ୍ରତିଷ୍ଠିତ ଥିଲା ।

କୁଶାଣମାନେ ଭାରତୀୟତାରେ ରୂପାନ୍ତରିତ ହୋଇ ସାରିଥିଲେ ଏବଂ ଭାରତୀୟ ସଂସ୍କୃତିର ପ୍ରଧାନ ପୃଷ୍ଠପୋଷକ ଥିଲେ । ତଥାପି ସେମାନଙ୍କ ବିରୁଦ୍ଧ ପ୍ରତି ଜାତୀୟତାବାଦୀ ପ୍ରତିରୋଧର ଏକ ଅନ୍ତଃସ୍ରୋତ ବରାବର ପ୍ରବାହିତ ଥିଲା ଏବଂ ପରେ ଯେତେବେଳେ ନବ ନବ ଉପଜାତି ଭାରତ ଭିତରକୁ ପଶିଆସିଲେ, ଏହି ଜାତୀୟତାବାଦୀ ତଥା ପ୍ରତି-ବୈଦେଶିକ ଆନ୍ଦୋଳନ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀ ପ୍ରାରମ୍ଭରେ ରୂପ ପରିଗ୍ରହ କଲା । ଅନ୍ୟ ଏକ ମହାନ୍ ଶାସକ ଯାହାଙ୍କର ନାମ ମଧ୍ୟ ଚନ୍ଦ୍ରଗୁପ୍ତ, ନୂତନ ଆକ୍ରମଣକାରୀମାନଙ୍କୁ ବିତାଡ଼ିତ କରି ଗୋଟାଏ ଶକ୍ତିଶାଳୀ ତଥା ସୁବିସ୍ତୃତ ସାମ୍ରାଜ୍ୟ ପ୍ରତିଷ୍ଠା କଲେ ।

ଏପରିଭାବରେ ଖ୍ରୀଷ୍ଟପୂର୍ବ ୩୨୦ [illegible] ବର୍ଷରେ ସାମ୍ରାଜ୍ୟବାଦୀ ଗୁପ୍ତମାନଙ୍କର ଯେଉଁ ଯୁଗ ଆରମ୍ଭ ହେଲା ସେଥିରୁ ଜଣଙ୍କ ପରେ ଜଣେ, ବଡ଼ ଅଦ୍ଭୁତ ଭାବରେ ଯୁଦ୍ଧ ଓ ଶାନ୍ତି ସ୍ଥାପନ କୌଶଳରେ ପ୍ରବୀଣ, ବହୁ ମହାମାନ୍ୟ ନରପତି ସୃଷ୍ଟି ହେଲେ । ବାରମ୍ବାର ବୈଦେଶିକ ଆକ୍ରମଣ ଗୋଟାଏ ତୀବ୍ର ବିଦେଶୀ ବିରୋଧୀ ଭାବ ସୃଷ୍ଟି କରିସାରିଥିଲା ଏବଂ ଦେଶର ପୁରାତନ ବ୍ରାହ୍ମଣ, କ୍ଷତ୍ରିୟ ନେତାମାନେ ଜନ୍ମଭୂମି ଓ ଜାତୀୟ ସଂସ୍କୃତି ପ୍ରତିରକ୍ଷା ନିମନ୍ତେ ଉପଯୁକ୍ତ ପନ୍ଥା ଅବଲମ୍ବନ ବିଷୟରେ ଗାମ୍ଭୀରଭାବରେ ଚିନ୍ତା କରିବାକୁ ବାଧ୍ୟ ହୋଇଥିଲେ । ଯେଉଁ ପରଦେଶୀମାନେ ଭାରତରେ ଏକ ରକମ ମିଶି ଯାଇଥିଲେ ସେମାନେ ଗୃହୀତ ହେଲେ; କିନ୍ତୁ ନବାଗତ ସମସ୍ତେ ବିପୁଳ ପ୍ରତିରୋଧର ସମ୍ମୁଖୀନ ହେଲେ ଏବଂ ପୁରାତନ ବ୍ରାହ୍ମଣ୍ୟ ଆଦର୍ଶ ଉପରେ ଭିତ୍ତିକରି ଗୋଟାଏ ସମମତାବଲମ୍ବୀ ରାଜ୍ୟ ଗଠନର ଉଦ୍ୟମ କରାଗଲା । କିନ୍ତୁ ସେହି ପୁରାତନ ଆତ୍ମବିଶ୍ୱାସ କ୍ରମଶଃ ଭାଙ୍ଗି ପଡ଼ୁଥିଲା ଏବଂ ଏହି ସବୁ ବ୍ରାହ୍ମଣ୍ୟ ଆଦର୍ଶ ଏପରି ଏକ କଠୋର ଶୃଙ୍ଖଳା ଘେନି ପ୍ରକାଶ ପାଉଥିଲା ଯାହା ସେମାନଙ୍କ ସ୍ୱଭାବ ପକ୍ଷରେ ପ୍ରତିକୂଳ ଥିଲା । ଦେହ ଓ ମନ ଉଭୟ ଦିଗରୁ, ଯେପରି ମନେହୁଏ, ଭାରତ ନିଜକୁ ତାର ଖୋଳପା ଭିତରକୁ ସଙ୍କୁଚିତ କରି ନେଉଥିଲା ।

ତଥାପି ସେହି ଖୋଳପା ଥିଲା ଗଭୀର ଓ ପ୍ରଶସ୍ତ । ଏଥିପୂର୍ବେ ଆର୍ଯ୍ୟମାନଙ୍କର ଭାରତ ଓ ସେମାନଙ୍କ ଭାଷାରେ ଆର୍ଯ୍ୟାବର୍ତ୍ତ ଅବା ଭାରତବର୍ଷ ଆଗମନ କାଳରୁ ଭାରତ ଯେଉଁ ସମସ୍ୟାର ସମ୍ମୁଖୀନ ହୋଇଥିଲା, ତାହା ହେଉଛି ଏହି ନୂତନ ଜାତି ଓ ସଂସ୍କୃତି ସଙ୍ଗେ ପୁରାତନ ଜାତି ଓ ପ୍ରଚଳିତ ସଭ୍ୟତାର ସମନ୍ୱୟୀକରଣ । ଏଥି ଉପରେ ଭାରତ ମନୋନିବେଶ କରିଥିଲା ଏବଂ ଇଣ୍ଡୋ-ଆର୍ଯ୍ୟ ମିଳିତ ସଂସ୍କୃତିର ଦୃଢ଼ ଭିତ୍ତି ଉପରେ ଗୋଟାଏ ସ୍ଥିତିବାନ୍ ମୀମାଂସା ବାହାରକଲା । ଅନ୍ୟାନ୍ୟ ବୈଦେଶିକମାନେ ଆସିଲେ ଓ ଭାରତରେ ଲୀନ ହେଲେ । ସେମାନଙ୍କର ଉପସ୍ଥିତି କୌଣସି ପାର୍ଥକ୍ୟ ସୃଷ୍ଟି କରିନଥିଲା । ବାଣିଜ୍ୟ ତଥା ଅନ୍ୟାନ୍ୟ ଦିଗରେ ଅନ୍ୟାନ୍ୟ ଦେଶ ସଙ୍ଗେ ଭାରତର ସମ୍ପର୍କ ନାନା ଭାବରେ ସ୍ଥାପିତ ହୋଇଥିଲେ ମଧ୍ୟ ସାରତଃ ସେ ନିଜ ଭିତରେ ହିଁ ନିମଗ୍ନ ଥିଲା ଓ ଅନ୍ୟତ୍ର କ'ଣ ଘଟୁଛି ସେଥିପ୍ରତି ଧ୍ୟାନ ଦେଉନଥିଲା; କିନ୍ତୁ ବର୍ତ୍ତିମାନ କେତେ ବିଚିତ୍ର ପ୍ରଥା ଅନୁଗାମୀ ବିଚିତ୍ର ଜାତିଙ୍କର କ୍ରମାଗତ ଆକ୍ରମଣ ତାକୁ

ଚହଲାଇ ଦେଇଥିଲା ଏବଂ ଏସବୁ ଉତ୍ପାତ ସେ ଅବଜ୍ଞା କରିପାରି ନଥିଲା; କାରଣ ତାହା ତାର ରାଜନୈତିକ ଗଠଣ କେବଳ ଯେ ଭାଙ୍ଗି ଦେଉଥିଲା ତାହା ନୁହେଁ, ତାର ସାଂସ୍କୃତିକ ଆଦର୍ଶ ଓ ସାମାଜିକ ଗଠଣକୁ ମଧ୍ୟ ବିପନ୍ନ କରିଥିଲା । ସାରତଃ ଏହା ଥିଲା ଗୋଟାଏ ଜାତୀୟତାବାଦୀ ଉଦ୍‌ବେଳନ ଓ ସ୍ୱଭାବତଃ ସେଥିରେ ଥିଲା ଜାତୀୟତାବାଦର ଶକ୍ତି ଓ ସଂକୀର୍ଣ୍ଣତା । ଧର୍ମ ଓ ଦର୍ଶନ, ଇତିହାସ ଓ ପରମ୍ପରା, ପ୍ରଥା ଓ ସାମାଜିକ ଗଠଣର ସେହି ସମ୍ମିଶ୍ରଣ ଯାହାର ପ୍ରସାରତା ଭିତରେ ଜୀବନର ଭାରତୀୟ ପ୍ରାୟ ପ୍ରତ୍ୟେକ ବିଭାଗ ମିଳିତ ଥିଲା ଓ ଯାହାକୁ ବ୍ରାହ୍ମଣ୍ୟବାଦ ଅବା (ପରବର୍ତ୍ତୀ କାଳରେ ଗୋଟାଏ ଶବ୍ଦ ବ୍ୟବହାର କଲେ) ହିନ୍ଦୁଧର୍ମ କୁହାଯାଇପାରେ, ଜାତୀୟତାବାଦର ପ୍ରତୀକ ହୋଇ ଉଠିଲା । ପ୍ରକୃତ ପକ୍ଷେ, ଏହା ଥିଲା ଗୋଟାଏ ଜାତୀୟ ଧର୍ମ ଓ ତା'ର ଆବେଦନ ଥିଲା ସେହିସବୁ ଗଭୀର ଜାତୀୟ ଓ ସାଂସ୍କୃତିକ ପ୍ରବୃତ୍ତି ପ୍ରତି ଯାହା ଆଜିର ଯୁଗରେ ସବଳ ଜାତୀୟତାବାଦର ଭିତ୍ତି ହୋଇଥାଏ । ଭାରତୀୟ ଭାବୁକତାର ସନ୍ତାନ ବୌଦ୍ଧ-ଧର୍ମର ମଧ୍ୟ ଜାତୀୟତାବାଦୀ ପୃଷ୍ଠଭୂମି ଥିଲା । ବୌଦ୍ଧଧର୍ମ ପକ୍ଷରେ ଭାରତ ଥିଲା ସେହି ପବିତ୍ର ସ୍ଥାନ ଯେଉଁଠି ବୁଦ୍ଧ ତାଙ୍କର ଜୀବନକାଳ ଅତିବାହିତ କରିଥିଲେ, ଧର୍ମ ପ୍ରଚାର କରିଥିଲେ ଓ ମହାପରିନିର୍ବାଣ ଲାଭ କରିଥିଲେ ଏବଂ ଯେଉଁଠି କେତେ ବିଖ୍ୟାତ ବିଦ୍ୱାନ ଓ ସନ୍ଥ ସେହି ଧର୍ମ ପ୍ରସାରିତ କଲେ । କିନ୍ତୁ ସାରତଃ ବୌଦ୍ଧଧର୍ମ ଥିଲା ଗୋଟାଏ ଆନ୍ତର୍ଜାତିକ ତଥା ବିଶ୍ୱଧର୍ମ ଏବଂ ତା'ର ବିକାଶ ଓ ପ୍ରସାର ସଙ୍ଗେ ସଙ୍ଗେ ତାର ଏହି ଚରିତ୍ର ବର୍ଦ୍ଧିତ ହେଲା । ଅତଏବ, ଜାତୀୟତାବାଦୀ ପୁନର୍ଜାଗରଣ ଯାହା ବାରମ୍ବାର ଦେଖା ଦେଉଥିଲା, ବ୍ରାହ୍ମଣ୍ୟଧର୍ମ ତାର ପ୍ରତୀକ ହେବାରେ କୌଣସି ଅସ୍ୱାଭାବିକତା ନଥିଲା ।

ଭାରତରେ ପ୍ରଚଳିତ ବିବିଧ ଧର୍ମ ଓ ତା'ର ଅଧିବାସୀ ନାନା ଜାତି ପ୍ରତି ସେହି ଧର୍ମ ଓ ଦର୍ଶନ ସହନଶୀଳ ଓ ବିନୀତ ଥିଲା ଏବଂ ତାର ସୁବିସ୍ତୃତ ଗଠଣ ଭିତରେ ସମସ୍ତଙ୍କୁ ତାହା କ୍ରମଶଃ ଲୀନ କରିନେଉଥିଲା; କିନ୍ତୁ ବୈଦେଶିକଙ୍କ ପ୍ରତି ତାହା କ୍ରମଶଃ ବର୍ଦ୍ଧିତ ଭାବରେ ଆକ୍ରମଣଶୀଳ ହୋଇ ଉଠିଲା ଏବଂ ସେମାନଙ୍କ ପ୍ରଭାବରୁ ନିଜକୁ ନିରାପଦ କରିବାର ପନ୍ଥା ଅନୁସରଣ କଲା । ଏରୂପରେ କରିବାଦ୍ୱାରା ଯେଉଁ ଜାତୀୟତାବାଦର ଆତ୍ମାକୁ ସେମାନେ ଜାଗ୍ରତ କରିଥିଲେ, ତାହା ବହୁଧା ସାମ୍ରାଜ୍ୟବାଦର ରୂପ ପରିଗ୍ରହ କଲା; କାରଣ ଜାତୀୟତାବାଦର ଶକ୍ତି ବୃଦ୍ଧି ପାଇଲେ ପରିଣତିରେ ତାହା ହିଁ ହୋଇଥାଏ । ଜୀବନସଞ୍ଚାରୀ ଶକ୍ତିରେ ଉଚ୍ଛଳ, ଚିତ୍ତ ସମୃଦ୍ଧିସମ୍ପନ୍ନ, ଆଲୋକପ୍ରାପ୍ତ ତଥା ତେଜସ୍ୱୀ ଗୁପ୍ତ ଯୁଗ ଅତି ଦ୍ରୁତ ଗତିରେ ଏହି ନବ ସାମ୍ରାଜ୍ୟବାଦୀପ୍ରବଣତା ପ୍ରକାଶ କଲା । ଏହି ଯୁଗର ଅନ୍ୟତମ ମହାନ୍ ଶାସକ ସମୁଦ୍ରଗୁପ୍ତଙ୍କୁ ଭାରତୀୟ ନେପୋଲିଅନ୍ କୁହାଯାଇଥାଏ । ସାହିତ୍ୟ ଓ କଳା ଦୃଷ୍ଟିରୁ ଏହା ମଧ୍ୟ ଉଜ୍ଜ୍ୱଳ ଥିଲା ।

ଚତୁର୍ଥ ଶତାବ୍ଦୀର ପ୍ରାରମ୍ଭରୁ ପ୍ରାୟ ଦେଢ଼ଶହ ବର୍ଷ ପର୍ଯ୍ୟନ୍ତ ଉତ୍ତର ଭାରତରେ ଗୋଟାଏ ଶକ୍ତିଶାଳୀ ତଥା ସମୃଦ୍ଧିଶାଳୀ ରାଜ୍ୟରେ ଗୁପ୍ତମାନେ ରାଜତ୍ୱ କରିଥିଲେ । ଏମାନଙ୍କର ଉତ୍ତରାଧିକାରୀମାନେ ଆଉ ପ୍ରାୟ ଦେଢ଼ଶହ ବର୍ଷ ପର୍ଯ୍ୟନ୍ତ ଶାସନ କରିଥିଲେ ମଧ୍ୟ ସେମାନଙ୍କର ସାମରିକ କାର୍ଯ୍ୟକଳାପର ଚରିତ୍ର ଆକ୍ରମଣାତ୍ମକ ବଦଳରେ ଆତ୍ମରକ୍ଷାମୂଳକ

ହୋଇପଡ଼ିଥିଲା ଏବଂ ସାମ୍ରାଜ୍ୟ କ୍ରମଶଃ ସଙ୍କୁଚିତ ହେବାକୁ ଲାଗିଲା । ମଧ୍ୟ-ଏସିଆରୁ ନବ ନବ ଆକ୍ରମଣକାରୀ ଭାରତ ଭିତରକୁ ପଶି ଆସି ସେମାନଙ୍କ ଉପରେ ଆକ୍ରମଣ ଚଳାଉଥିଲେ । ଏମାନେ ହେଉଚନ୍ତି ଶ୍ୱେତ ହୂଣ ଜାତି, ଯେଉଁମାନେ ଯେଉଁଠି ପ୍ରବେଶ କରୁଥିଲେ ତାହା ବିଧ୍ୱସ୍ତ କରୁଥିଲେ, ଏଟିଲାଙ୍କ ନେତୃତ୍ୱରେ ଏମାନେ ୟୁରୋପରେ ଯେପରି ଲୁଟି କଟାକଟି ଚଳାଇଥିଲେ । ହୂଣମାନଙ୍କର ଏହି ବର୍ବର ଆଚରଣ ଓ ପୈଶାଚିକ କ୍ରୂରତା ପରିଶେଷରେ ଜନସାଧାରଣଙ୍କୁ ଜାଗ୍ରତ କଲା ଏବଂ ଯଶୋବର୍ମନଙ୍କ ନେତୃତ୍ୱରେ ମିଳିତ ପ୍ରତିରୋଧ ଓ ଆକ୍ରମଣ ବ୍ୟବସ୍ଥା କରାଗଲା । ହୂଣଶକ୍ତି ଭାଙ୍ଗିପଡ଼ିଲା ଏବଂ ସେମାନଙ୍କ ଅଧିନାୟକ ମିହିରଗୁଲ ବନ୍ଦୀ ହେଲେ; କିନ୍ତୁ ଦେଶର ପ୍ରଥା ଅନୁସାରେ ଗୁପ୍ତ ନୃପତି ବାଳାଦିତ୍ୟ ତାଙ୍କ ପ୍ରତି ଉଦାରତା ପ୍ରଦର୍ଶନ କରି ଭାରତ ଛାଡ଼ିଯିବା ପାଇଁ ତାଙ୍କୁ ଅନୁମତି ଦେଇଥିଲେ । ଏହି ଉଦାରତା ଓ ବଦାନ୍ୟତାର ପ୍ରତିଦାନ ସ୍ୱରୂପ କିଛିକାଳ ପରେ ପୁଣି ଫେରିଆସି କପଟରେ ମିହିରଗୁଲ ବାଳାଦିତ୍ୟଙ୍କ ଉପରେ ଆକ୍ରମଣ କରିଥିଲେ ।

କିନ୍ତୁ ଉତ୍ତର-ଭାରତରେ ହୂଣ ରାଜତ୍ୱ ବେଶିକାଳ ତିଷ୍ଠିପାରି ନଥିଲା—ପ୍ରାୟ ପଚାଶ ବର୍ଷ ମାତ୍ର । ସେମାନଙ୍କ ଭିତରୁ ଅନେକେ ଛୋଟ ଛୋଟ ସର୍ଦ୍ଦାର ଭାବରେ ରହିଗଲେ, ବେଳେବେଳେ ସାମାନ୍ୟ ଗଣ୍ଡଗୋଳ ସୃଷ୍ଟି କରୁଥିଲେ; କିନ୍ତୁ ଧୀରେ ଧୀରେ ଭାରତୀୟ ଜନସମୁଦ୍ରରେ ଲୀନ ହୋଇଯାଉଥିଲେ । ସପ୍ତମ ଶତାବ୍ଦୀ ପ୍ରାରମ୍ଭରେ ଏହିପରି କେତେ ସର୍ଦ୍ଦାର ଆକ୍ରମଣମୁଖୀ ହୋଇଉଠିଲେ । କାନ୍ୟକୁବ୍ଜର ରାଜା ହର୍ଷବର୍ଦ୍ଧନ ସେମାନଙ୍କୁ ପଦଦଳିତ କରି ତତ୍ପରେ ଉତ୍ତର ଓ ମଧ୍ୟ-ଭାରତରେ ଗୋଟିଏ ଶକ୍ତିଶାଳୀ ରାଜ୍ୟ ପ୍ରତିଷ୍ଠା କଲେ । ସେ ଥିଲେ ମହାଯାନପନ୍ଥୀ ଜଣେ ନୈଷ୍ଠିକ ବୌଦ୍ଧ । ହିନ୍ଦୁଧର୍ମ ସଙ୍ଗେ ମହାଯାନ ବୌଦ୍ଧଧର୍ମର ନାନା ସାଦୃଶ୍ୟ ଥିଲା । ହର୍ଷବର୍ଦ୍ଧନ ବୌଦ୍ଧଧର୍ମ ଓ ହିନ୍ଦୁଧର୍ମ ଉଭୟ ଉତ୍ସାହିତ କରିଥିଲେ । ତାଙ୍କ ସମୟରେ ବିଖ୍ୟାତ ଚୀନା ପରିବ୍ରାଜକ ହୁଏନ୍‌ସାଁ ଭାରତକୁ ଆସିଥିଲେ । ହର୍ଷବର୍ଦ୍ଧନ ଥିଲେ ଜଣେ କବି ଓ ନାଟ୍ୟକାର ଏବଂ ସାଂସ୍କୃତିକ କାର୍ଯ୍ୟକଳାପ ନିମନ୍ତେ ପ୍ରସିଦ୍ଧ ତାଙ୍କ ରାଜଧାନୀ ଉଜ୍ଜୟିନୀରେ ତାଙ୍କର ରାଜସଭାରେ ବହୁ କବି ଓ କଳାକାର ଭିଡ଼ ହେଉଥିଲେ । ଖ୍ରୀଷ୍ଟପୂର୍ବ ୬୪୮ତମ ବର୍ଷରେ ହର୍ଷବର୍ଦ୍ଧନଙ୍କ ବିୟୋଗ ଘଟିଲା । ଠିକ୍ ଏହି ସମୟରେ ଆରବ୍ୟର ମରୁଭୂମି ବକ୍ଷରୁ ଇସଲାମ୍ ଉଦିତ ହେଉଥିଲା । ପରବର୍ତ୍ତୀ କାଳରେ ଅତି ଦ୍ରୁତ ଗତିରେ ତାହା ଏସିଆ ଓ ଆଫ୍ରିକାରେ ବିସ୍ତୃତି ଲାଭକରିଥିଲା ।

## ୨. ଦକ୍ଷିଣ ଭାରତ

ମୌର୍ଯ୍ୟ ସାମ୍ରାଜ୍ୟର କ୍ରମସଙ୍କୋଚନ ଓ ସମ୍ପୂର୍ଣ୍ଣ ବିଲୋପ ପରେ ହଜାରରୁ ଅଧିକ ବର୍ଷ ପର୍ଯ୍ୟନ୍ତ ଦକ୍ଷିଣ-ଭାରତରେ ଖୁବ୍ ବଡ଼ ବଡ଼ ରାଜ୍ୟ ଐଶ୍ୱର୍ଯ୍ୟ ଓ ଆଡ଼ମ୍ବର ସହକାରେ ତିଷ୍ଠି ରହିଥିଲା । ଅନ୍ଧ୍ରମାନେ ଶକମାନଙ୍କ ପରାଜିତ କରିପାରିଥିଲେ ଏବଂ ପରବର୍ତ୍ତୀ କାଳରେ

କୁଶାଣମାନଙ୍କର ସମସାମୟିକ ଥିଲେ । ତା' ପରେ ପଶ୍ଚିମରେ ଗଢ଼ି ଉଠିଲା ଚାଲୁକ୍ୟ ସାମ୍ରାଜ୍ୟ ଏବଂ ସେମାନଙ୍କ ପରେ ପରେ ଆସ୍ଥାନ ଦଖଲ କଲେ ରାଷ୍ଟ୍ରକୂଟମାନେ । ଆହୁରି ଦକ୍ଷିଣକୁ ରହିଥିଲେ ପଲ୍ଲବମାନେ, ଯେଉଁମାନେ ଭାରତ ବାହାରକୁ ଉପନିବେଶ ଅଭିଯାନ-ମାନ ଚଳାଇଥିଲେ । ତା' ପରେ ଦେଖାଦେଲା ଚୋଳ ସାମ୍ରାଜ୍ୟ । ଏହା ଦକ୍ଷିଣର ଉପଦ୍ୱୀପ ଉପରେ ଆଧିପତ୍ୟ ବିସ୍ତାରକରି ସିଂହଳ ଓ ଦକ୍ଷିଣ-ବ୍ରହ୍ମଦେଶ ପର୍ଯ୍ୟନ୍ତ ନିଜର ସୀମା ବିସ୍ତୃତ କରିଥିଲା । ଚୋଳବଂଶର ଶେଷ ମହାନ୍ ଅଧିପତି ରାଜେନ୍ଦ୍ର ଖ୍ରୀଷ୍ଟପୂର୍ବ ଏକାଦଶର ଚଉରାଳିଶି ଅବଦେ ଶେଷ ନିଃଶ୍ୱାସ ଗ୍ରହିଥିଲେ ।

ଦକ୍ଷିଣ ଭାରତ ମୁଖ୍ୟତଃ ସାମୁଦ୍ରିକ ବାଣିଜ୍ୟ ଓ କେତେକ କମନୀ ଉତ୍ପାଦନ ନିମନ୍ତେ ପ୍ରସିଦ୍ଧ ଥିଲା । ସେମାନେ ସାମୁଦ୍ରିକ-ଶକ୍ତି ଥିଲେ ଏବଂ ସେମାନଙ୍କର ଜାହାଜ ଦୂର ଦୂର ଦେଶମାନଙ୍କରେ ମାଲପତ୍ର ନେଇ ପହଞ୍ଚାଉଥିଲା । ଦକ୍ଷିଣ ଭାରତରେ ଗ୍ରୀକ୍‌ମାନଙ୍କର ଶ୍ରେଷ୍ଠ ଶ୍ରେଷ୍ଠ ଉପନିବେଶ ଥିଲା ଓ ରୋମାନ୍ ସାମ୍ରାଜ୍ୟର ମୁଦ୍ରା ସେଠାରୁ ଦେଖିବାକୁ ମିଳିଚି । ଚାଲୁକ୍ୟ ରାଜ୍ୟ ସଙ୍ଗେ ପାରସ୍ୟର ସାସାନୀ ଶାସକଙ୍କ ଭିତରେ ରାଜଦୂତ ବିନିମୟ ଘଟିଥିଲା ।

ଉତ୍ତର ଭାରତ ଉପରେ ବାରମ୍ବାର ବୈଦେଶିକ ଆକ୍ରମଣ ଘଟିଥିଲେ ସୁଦ୍ଧା ପ୍ରତ୍ୟକ୍ଷ-ଭାବରେ ଦକ୍ଷିଣ-ଭାରତ ଉପରେ ତାର କୌଣସି ପ୍ରଭାବ ପଡ଼ି ନଥିଲା । ପରୋକ୍ଷଭାବରେ ଦେଖିଲେ ବହୁଲୋକ ଉତ୍ତରରୁ ଦକ୍ଷିଣକୁ ପ୍ରବ୍ରଜିତ ହୋଇଥିଲେ ଏବଂ ସେମାନଙ୍କ ଭିତରେ ଥିଲେ ବହୁ ସ୍ଥପତି, କାରିଗର ଓ ଶିଳ୍ପୀ । ଏହା ଫଳରେ ଦକ୍ଷିଣ ପୁରାତନ କଳା ପରମ୍ପରାର କେନ୍ଦ୍ର ହୋଇଥିବାବେଳେ ଉତ୍ତରରେ ଆକ୍ରମଣକାରୀମାନେ ଆଣିଥିବା ନାନା ନୂତନ ପ୍ରବାହର ପ୍ରଭାବ ପଡ଼ିଥିଲା । ପରବର୍ତ୍ତୀ ଶତାବ୍ଦୀମାନଙ୍କରେ ଏହି ପ୍ରକ୍ରିୟାରେ ବୃଦ୍ଧି ଘଟିଥିଲା ଏବଂ ଦକ୍ଷିଣ ହିନ୍ଦୁ ନୈଷ୍ଠିକତାର ଦୁର୍ଗ ହୋଇ ଉଠିଲା ।

## ୩. ଶାନ୍ତିପୂର୍ଣ୍ଣ ବିକାଶ ଓ ସଂଗ୍ରାମର ବିବିଧ ପ୍ରଣାଳୀ

ବାରମ୍ବାର ବହିରାକ୍ରମଣ ଓ କେତେକ ସାମ୍ରାଜ୍ୟର ଉତ୍ଥାନ ଓ ପତନର ଗୋଟାଏ ସଂକ୍ଷିପ୍ତ ବିବରଣୀ ସେ ସମୟର ଭାରତ ସମ୍ପର୍କରେ ଗୋଟାଏ ଭୁଲ ଧାରଣା ଦେବାର ସମ୍ଭାବନା ରହିପାରେ; କିନ୍ତୁ ମନେ ରଖିବାକୁ ହେବ ଯେ, ଯେଉଁ ହଜାରେ ବର୍ଷର ପରିକ୍ରମା ଏଠାରେ କରାଗଲା, ସେଥି ଭିତରେ ଦେଶର ଦୀର୍ଘକାଳବ୍ୟାପୀ ଶାନ୍ତିପୂର୍ଣ୍ଣ ତଥା ଶୃଙ୍ଖଳାର ଶାସନ ବିରାଜିତ ଥିଲା ।

ମୌର୍ଯ୍ୟ, କୁଶାଣ, ଗୁପ୍ତ ଓ ଦକ୍ଷିଣରେ ଅନ୍ଧ୍ର, ଚାଲୁକ୍ୟ, ରାଷ୍ଟ୍ରକୂଟ ଓ ଅନ୍ୟମାନେ ପ୍ରତ୍ୟେକେ ଦୁଇଶହରୁ ତିନିଶହ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଆଜି ପର୍ଯ୍ୟନ୍ତ ହିସାବ କରି ଦେଖିଲେ ଭାରତରେ ବ୍ରିଟିଶ ସାମ୍ରାଜ୍ୟ ଯେତେଦିନ ତିଷ୍ଠିଚି ତା' ଅପେକ୍ଷା ସେମାନେ ଅଧିକ ଦିନ ତିଷ୍ଠି ଥିଲେ । ଏ ସମସ୍ତେ ପ୍ରାୟ ଦେଶଜ ବଂଶ ଥିଲେ ଏବଂ କୁଶାଣମାନଙ୍କ ପରି ଯେଉଁମାନେ ଭାରତର ଉତ୍ତର ସୀମାନ୍ତ ଅତିକ୍ରମ କରି ଆସିଥିଲେ ଅନତିବିଳମ୍ବେ ଏ ଦେଶ ଓ ତାର ସାଂସ୍କୃତିକ ପରମ୍ପରା ଗ୍ରହଣ କରି ଭାରତୀୟ ଶାସକ

ଭାବରେ ଭାରତୀୟତା ଉପରେ ଭିତ୍ତିକରି ରାଜତ୍ୱ କରିଥିଲେ । ବେଳେବେଳେ ଦୁଇ ପଡ଼ୋଶୀ ରାଜ୍ୟ ଭିତରେ ସୀମାନ୍ତ ଉପରେ ସଂଘର୍ଷ ଘଟୁଥିଲେ ମଧ୍ୟ ଦେଶରେ ଶାନ୍ତିପୂର୍ଣ୍ଣ ଶାସନ ପ୍ରାୟ ଚାଲିଥିଲା ଏବଂ ଶାସକମାନେ କଳା ଓ ସଂସ୍କୃତି ସମ୍ବନ୍ଧୀୟ କାର୍ଯ୍ୟକଳାପକୁ ଉତ୍ସାହ ଯୋଗାଇବାରେ ବିଶେଷ ଗର୍ବ ଅନୁଭବ କରୁଥିଲେ । ଏହିସବୁ କାର୍ଯ୍ୟକଳାପ ରାଜ୍ୟ ସୀମାନ୍ତ ଅପର ପାର୍ଶ୍ୱକୁ ବିସ୍ତୃତ ହେଉଥିଲା; କାରଣ ସମଗ୍ର ଭାରତର ସାଂସ୍କୃତିକ ଓ ସାହିତ୍ୟିକ ପୃଷ୍ଠଭୂମି ସମାନ ଥିଲା । ଧର୍ମ ଓ ଦର୍ଶନର ପ୍ରତ୍ୟେକ ବିବାଦ ଅବିଲମ୍ବେ ସମଗ୍ର ଦେଶରେ ସଞ୍ଚାରିତ ହେଉଥିଲା ଏବଂ ଉତ୍ତର ଓ ଦକ୍ଷିଣରେ ସମାନ ଭାବରେ ଏଥି ଉପରେ ବିତର୍କ ଚାଲୁଥିଲା ।

ଦୁଇ ପଡ଼ୋଶୀ ରାଜ୍ୟ ଭିତରେ ଯୁଦ୍ଧ ଲାଗିଥିଲା ବେଳେ କିମ୍ବା କୌଣସି ଆଭ୍ୟନ୍ତରୀଣ ରାଜନୈତିକ ବିପ୍ଳବବେଳେ ମଧ୍ୟ ଜନସାଧାରଣଙ୍କର କାର୍ଯ୍ୟକଳାପରେ ପ୍ରାୟ ହସ୍ତକ୍ଷେପ କରାଯାଉ ନଥିଲା । ଯୁଯୁତ୍ସୁ ଶାସକଙ୍କ ଭିତରେ ଏବଂ ସ୍ୱ-ଶାସିତ ଗ୍ରାମସଭାମାନଙ୍କ ଭିତରେ ଫସଲ ନଷ୍ଟ ନ କରିବା ପାଇଁ ଏବଂ ଅନିଚ୍ଛାକୃତ ଭାବରେ ମଧ୍ୟ ଜମିର କ୍ଷତି ଘଟାଇଲେ ଉପଯୁକ୍ତ କ୍ଷତିପୂରଣ କରିବା ପାଇଁ ପ୍ରତିଶ୍ରୁତି ଦେଇଥିବା ଅଭିଲେଖମାନ ଉଦ୍ଧାର କରାଯାଇଛି । ଏହା ଅବଶ୍ୟ ବୈଦେଶିକ ଆକ୍ରମଣକାରୀଙ୍କ ପ୍ରତି ପ୍ରଯୁଜ୍ୟ ହୋଇପାରୁନଥିଲା କିମ୍ବା ସାର୍ବଭୌମତ୍ୱ ନିମନ୍ତେ ପ୍ରକୃତ ସଂଗ୍ରାମ ପ୍ରତି ମଧ୍ୟ ଖୁବ୍ ସମ୍ଭବ ଏହା ପ୍ରଯୁଜ୍ୟ ନଥିଲା ।

ପୁରାତନ ଇଣ୍ଡୋ-ଆର୍ଯ୍ୟ ସଂଗ୍ରାମତତ୍ତ୍ୱ ଯୁଦ୍ଧରେ କୌଣସି ପ୍ରକାର ଅବୈଧ ପ୍ରଣାଳୀର ପ୍ରୟୋଗ ନିଷିଦ୍ଧ କରିଥିଲା ଏବଂ ଗୋଟାଏ ଯଥାର୍ଥ ଉଦ୍ଦେଶ୍ୟ ସାଧନ ନିମନ୍ତେ ଯୁଦ୍ଧ କରିବାରେ ନ୍ୟାୟପରାୟଣତା ଅବଲମ୍ବନ କରିବା ନିର୍ଦ୍ଦେଶିତ ହୋଇଥିଲା । କାର୍ଯ୍ୟତଃ ଏହି ତତ୍ତ୍ୱ କେତେଦୂର ପାଳିତ ହେଉଥିଲା ସେକଥା ଅବଶ୍ୟ ସ୍ୱତନ୍ତ୍ର । ବିଷାକ୍ତ ତୀର, ଗୁପ୍ତ ଆୟୁଧ ବ୍ୟବହାର ଅବା ଯେଉଁମାନେ ନିଦ୍ରିତ, ପଳାୟନପର ଅବା ଶରଣପ୍ରାର୍ଥୀ ସେମାନଙ୍କୁ ହତ୍ୟା କରିବା ନିଷିଦ୍ଧ ଥିଲା । ବଡ଼ ବଡ଼ ପ୍ରାସାଦ ଧ୍ୱଂସ କରାଯିବ ନାହିଁ ବୋଲି ଘୋଷଣା କରାଯାଉ-ଥିଲା କିନ୍ତୁ ଚାଣକ୍ୟଙ୍କ ସମୟରେ ଏଇ ଦୃଷ୍ଟିଭଙ୍ଗୀ ପରିବର୍ତ୍ତିତ ହୋଇଥିଲା; କାରଣ ଶତ୍ରୁର ପରାଜୟ ନିମନ୍ତେ ଅତ୍ୟାବଶ୍ୟକ ବିବେଚିତ ହେଲେ ଅଧିକତର ଧ୍ୱଂସମୂଳକ ତଥା ଶଠତାପୂର୍ଣ୍ଣ ଉପାୟ ଅବଲମ୍ବନ କରିବା ପ୍ରତି ସେ ସମର୍ଥନ ଜ୍ଞାପନ କରୁଥିଲେ ।

ଚାଣକ୍ୟ ତାଙ୍କର ଅର୍ଥଶାସ୍ତ୍ର ଗ୍ରନ୍ଥରେ ଯୁଦ୍ଧାସ୍ତ୍ର ଆଲୋଚନା ପ୍ରସଙ୍ଗରେ ଥରକେ ଶହେ ଜଣଙ୍କୁ ନିପାତ କରିପାରିବା ଭଳି ଯନ୍ତ୍ର ଓ କୌଣସି ପ୍ରକାର ବିସ୍ଫୋରକ ଦ୍ରବ୍ୟ ବିଷୟ ଉଲ୍ଲେଖ କରିବା ବାସ୍ତବିକ କୌତୂହଳ ଉଦ୍ଦୀପକ । ଖାଇ-ଯୁଦ୍ଧ ବିଷୟ ମଧ୍ୟ ସେ ଉଲ୍ଲେଖ କରିଛନ୍ତି । ଏ ସବୁର ପ୍ରକୃତ ତାତ୍ପର୍ଯ୍ୟ କଅଣ ବର୍ତ୍ତମାନ କହିବା ସମ୍ଭବ ନୁହେଁ । ସମ୍ଭବତଃ ଏହା ପାରମ୍ପରିକ କାହାଣୀ ବର୍ଣ୍ଣିତ କୌଣସି ମାୟା-ଯୁଦ୍ଧର ଉଲ୍ଲେଖ ମାତ୍ର । ସେତେବେଳେ ବିସ୍ଫୋରକ ଦ୍ରବ୍ୟ ପ୍ରତି ଏହା ଲକ୍ଷ୍ୟ କରାଯାଇଛି ବୋଲି ଭାବିବାର କୌଣସି କାରଣ ନାହିଁ ।

ତାର ଦୀର୍ଘ ଇତିହାସରେ ଭାରତ ଯେପରି ବହୁ ଦୁଃଖ ଓ ସଙ୍କଟର କାଳ ଲଙ୍ଘିଆସିଛି ଯେବେ ବହ୍ନି ଓ କୃପାଣ ଅବା ଦୁର୍ଭିକ୍ଷର ଉତ୍ପାତ ଘଟିଛି ଓ ତାର ଆଭ୍ୟନ୍ତରୀଣ ଶୃଙ୍ଖଳାର ବ୍ୟବସ୍ଥା ଲୋପପାଇଛି; କିନ୍ତୁ ଏହି ଇତିହାସର ଗୋଟାଏ ବ୍ୟାପକ ସମୀକ୍ଷା ଦ୍ୱାରା କଲଭଲ ଜଣାଯାଏ ଯେ ଦୀର୍ଘକାଳ ଧରି ଏଠାରେ ଯେଉଁ ବ୍ୟବସ୍ଥା ଓ ଶାନ୍ତିପୂର୍ଣ୍ଣ ଜୀବନ ରହିଥିଲା, ସେପରି ୟୁରୋପରେ ନଥିଲା । ତୁର୍କି ଓ ଅଫଗାନ ଅଭିଯାନ ପରବର୍ତ୍ତୀକାଳରୁ ମୋଗଲ ସାମ୍ରାଜ୍ୟର ବିଚ୍ଛିନ୍ନତା ପର୍ଯ୍ୟନ୍ତ ସେହି କେତେକ ଶତାବ୍ଦୀ ପ୍ରତି ମଧ୍ୟ ଏହା ପ୍ରଯୁଜ୍ୟ । ଭାରତରେ ପ୍ରଥମ ଥର ପାଇଁ ବ୍ରିଟିଶ ସାମ୍ରାଜ୍ୟ ଶାନ୍ତି ଓ ଶୃଙ୍ଖଳା ପ୍ରତିଷ୍ଠା କରି ପାରିଲା ବୋଲି ଯେଉଁ ଧାରଣା ଜନ୍ମିଥାଏ, ତାହା ଅତ୍ୟନ୍ତ ଅସାଧାରଣ ଏକ ଭ୍ରମାତ୍ମକ ଧାରଣା । ଏକଥା ଅବଶ୍ୟ ସତ୍ୟ ଯେ ଭାରତରେ ବ୍ରିଟିଶ ରାଜତ୍ୱ ପ୍ରତିଷ୍ଠା ହେବାବେଳକୁ ଏହି ଦେଶ ତାର ଜୀବନର ନିମ୍ନତମ ଭଟ୍ଟାରେ ଉପନୀତ ହୋଇ ସାରିଥିଲା ଏବଂ ତାର ରାଜନୈତିକ ଓ ଅର୍ଥନୈତିକ ଗଢ଼ଣ ଭାଙ୍ଗି ପଡ଼ିଥିଲା । ପ୍ରକୃତପକ୍ଷେ, ବ୍ରିଟିଶ ରାଜତ୍ୱ ପ୍ରତିଷ୍ଠାର ଏହା ଥିଲା ଅନ୍ୟତମ କାରଣ ।

## ୪. ମୁକ୍ତି ନିମନ୍ତେ ଭାରତର ପ୍ରେରଣା

'ଚରମ ଅବଜ୍ଞାଭରେ ଧୈର୍ଯ୍ୟ ସହକାରେ
ତୋଫାନ ଆଗରେ ପ୍ରାଚ୍ୟ ନତ କଲା ଶିର,
ଘୋର ରବେ ବହିଗଲା ଯବନବାହିନୀ,
ଧ୍ୟାନର ଗର୍ଭରେ ପୁଣି ହେଲା ନିମଜ୍ଜିତ ।'

କବି ଏପରି କହିଚନ୍ତି ଓ ତାଙ୍କର ଏହି ପଙ୍କ୍ତି ବାରମ୍ବାର ଉଦ୍ଧୃତ ହେଉଛି । ଏକଥା ସତ୍ୟ ଯେ ପ୍ରାଚ୍ୟ ଅଥବା ତାର ସେହି ଅଂଶ ଯାହାକୁ ଭାରତ କୁହାଯାଏ, ଭାବରାଜ୍ୟରେ ବୁଡ଼ିରହିବା ଖୁବ୍ ପସନ୍ଦକରିଛି ଓ ବାରମ୍ବାର ସେପରି ସବୁ ବିଷୟରେ ଚିନ୍ତାକରିଛି ଯାହା, ଯେଉଁମାନେ ନିଜକୁ ସାଂସାରିକ ମଣିଷ ମନେକରନ୍ତି ସେମାନଙ୍କ ପକ୍ଷରେ, ନିତାନ୍ତ ଅସଙ୍ଗତ ଓ ଉଦ୍ଦେଶ୍ୟହୀନ । ଭାରତ ସବୁବେଳେ ଭାବୁକତା ଓ ଭାବୁକଙ୍କୁ ସମ୍ମାନିତ କରିଛି ଏବଂ ସେମାନଙ୍କ ଅପେକ୍ଷା ଅସ୍ତ୍ରଧାରୀ ଯୋଦ୍ଧା ଅବା ବିତ୍ତଶାଳୀ ବ୍ୟକ୍ତିଙ୍କୁ ଉଚ୍ଚକୋଟୀର ମଣିଷ ବୋଲି ବିବେଚନା କରିନି । ତାର ଅବନତିର ଦୁର୍ଦ୍ଦିନରେ ମଧ୍ୟ ସେ ଚିନ୍ତାରେ ହିଁ ଆତ୍ମସ୍ଥ ହୋଇଛି ଓ ସେଥିରୁ କିଛି ଆଶ୍ୱାସନା ଲାଭ କରିଛି ।

କିନ୍ତୁ ଏକଥା କେବେହେଁ ସତ୍ୟ ନୁହେଁ ଯେ ଭାରତ କେବେହେଲେ ନାନ୍ୟୋପାୟ ଭାବରେ କୌଣସି ନିର୍ଘାତ ସମ୍ମୁଖରେ ମୁଣ୍ଡ ନୁଆଁଇଛି କିମ୍ବା ତାର ମାଟି ଉପରେ ସାମରିକ ବାହିନୀ ପାଦ ଦେଇଛି ଯିବା ପ୍ରତି ଉଦାସୀନ ରହିଛି । ସବୁସମୟରେ ସେ ସେମାନଙ୍କୁ ପ୍ରତିରୋଧ କରିଛି, କେବେ ସଫଳ ଭାବରେ କେବେ ବା ବିଫଳ ଭାବରେ, ଏବଂ ଯେତେବେଳେ ବିଫଳ ମଧ୍ୟ ହୋଇଛି ସେ ତାର ପରାଜୟ ଭୁଲି ଯାଇନି ଏବଂ ପୁନର୍ବାର ବିଜୟ ଉଦ୍ଦେଶ୍ୟରେ ପ୍ରସ୍ତୁତ

କରିଚି । ତାର ଉପାୟ ଥିଲା ଦ୍ୱିବିଧ—ଯୁଦ୍ଧକରି ସେମାନଙ୍କୁ ଭାରତ ମାଟିରୁ ବିତାଡ଼ିତ କରିବା ଓ ଯେଉଁମାନଙ୍କୁ ବିତାଡ଼ିତ କରିବା ସମ୍ଭବ ନୁହେଁ ସେମାନଙ୍କୁ ନିଜ ଭିତରେ ଲୀନ କରି ନେବା । ସିକନ୍ଦରଙ୍କ ବାହିନୀକୁ ଯଥେଷ୍ଟ ସଫଳତା ସହକାରେ ସେ ପ୍ରତିରୋଧ କରିଥିଲା ଏବଂ ତାଙ୍କର ମୃତ୍ୟୁ ପରେ ପରେ ଉତ୍ତରରେ ସ୍ଥାପିତ ଗ୍ରୀକ୍ ବାହିନୀକୁ ବିତାଡ଼ିତ କରିଥିଲା । ପରେ ଇଣ୍ଡୋ-ଗ୍ରୀକ୍ ଓ ଇଣ୍ଡୋ-ଶିଥୀଏନ୍‌ମାନଙ୍କୁ ସେ ନିଜ ଭିତରେ ଲୀନ କରି ପରିଶେଷରେ ପୁନର୍ବାର ଗୋଟାଏ ଜାତୀୟ ଶାସନ ପ୍ରତିଷ୍ଠା କରି ପାରିଥିଲା । ପୁରୁଷ ପୁରୁଷ ଧରି ହୂଣମାନଙ୍କ ସଙ୍ଗେ ଯୁଦ୍ଧ କରି ନିଜ ମାଟିରୁ ସେମାନଙ୍କୁ ବିତାଡ଼ନ କଲା । ଯେଉଁମାନେ ରହିଗଲେ ସେମାନଙ୍କୁ ନିଜ ଦେହରେ ଲୀନ କଲା । ଆରବମାନେ ଯେବେ ଆସିଲେ, ସିନ୍ଧୁ ନଦୀ ନିକଟରେ ଅଟକିଗଲେ । ତୁର୍କୀ ଓ ଆଫଗାନମାନେ କ୍ରମଶଃ କେବଳ ଆହୁରି ଆଗକୁ ବଢ଼ି ପାରିଥିଲେ । ଦିଲ୍ଲୀ ସିଂହାସନରେ ଦୃଢ଼ଭାବରେ ଅଧିଷ୍ଠିତ ହେବାପାଇଁ ସେମାନଙ୍କୁ ବହୁ ଶତାବ୍ଦୀର ଘାତ ପ୍ରତିଘାତ ଭିତର ଦେଇ ଗତି କରିବାକୁ ପଡ଼ିଥିଲା । ତାହା ଥିଲା ଗୋଟାଏ ଅଖଣ୍ଡ ଦୀର୍ଘକାଳବ୍ୟାପୀ ସଙ୍ଘର୍ଷ ଏବଂ ଏହି ସଂଘର୍ଷ ଚାଲିଥିଲାବେଳେ ସେମାନଙ୍କର ଭାରତୀୟକରଣ ଓ ଲୀନ ହେବାର ପ୍ରକ୍ରିୟା ମଧ୍ୟ ଚାଲିଥିଲା । ପରିଶେଷରେ ଏହି ଆକ୍ରମଣକାରୀମାନେ ଦେଶଜ ଭାରତୀୟଙ୍କ ଭଳି ଭାରତୀୟରେ ରୂପାନ୍ତରିତ ହେଲେ । ଭାରତର ସେହି ପୁରାତନ ଆଦର୍ଶ ଅର୍ଥାତ୍ ବିବିଧତାର ସମନ୍ୱୟ ଓ ସେମାନଙ୍କର ଘନିଷ୍ଠ ମିଳନରେ ଗୋଟାଏ ସାର୍ବଜନୀନ ଜାତୀୟତାର ପ୍ରସାର—ଆକବର ହେଲେ ତାର ମହାନ୍ ପ୍ରତିନିଧି । ଭାରତ ସଙ୍ଗେ ସେ ନିଜକୁ ମିଶାଇ ନେଇଥିଲେ ଏବଂ ସେ ନବାଗତ ହେଲେ ମଧ୍ୟ ଭାରତ ତାଙ୍କୁ ଆପଣାର କରିଥିଲା । ଏହି କାରଣରୁ କେବଳ ସେ ଭଲଭାବରେ ଗଢ଼ିପାରିଲେ ଏବଂ ଗୋଟାଏ ଦୀପ୍ତିମାନ୍ ସାମ୍ରାଜ୍ୟର ଭିତ୍ତି ସ୍ଥାପନ କଲେ । ଯେତେ ଦିନ ପର୍ଯ୍ୟନ୍ତ ଏହି ମତ ଓ ଜାତିର ବିଚକ୍ଷଣତା ସଙ୍ଗେ ତାଙ୍କର ଉତ୍ତରାଧିକାରୀମାନେ ସଙ୍ଗତି ରକ୍ଷା କରିପାରିଥିଲେ ସେମାନଙ୍କର ସାମ୍ରାଜ୍ୟ ରହିଥିଲା । ଯେତେବେଳେ ସେମାନେ ନିଜକୁ ବିଚ୍ଛିନ୍ନ କରିନେଇ ଜାତୀୟ ବିକାଶ ପକ୍ଷରେ ପ୍ରତିକୂଳ ହୋଇ ଉଠିଲେ, ସେମାନେ ଦୁର୍ବଳ ହୋଇ ପଡ଼ିଲେ ଏବଂ ସେମାନଙ୍କର ସାମ୍ରାଜ୍ୟ ଭାଙ୍ଗି ଚୂରମାର ହୋଇଗଲା । ଦୃଷ୍ଟିଭଙ୍ଗୀ ଦିଗରୁ ସଙ୍କୀର୍ଣ୍ଣ ହେଲେ ହେଁ ଗୋଟାଏ ଜାଗ୍ରତ ଜାତୀୟବାଦର ପ୍ରତିନିଧି ଭାବରେ ନବ ନବ ଆନ୍ଦୋଳନ ମୁଣ୍ଡ ଟେକି ଉଠିଲା ଏବଂ ସ୍ଥାୟୀ ଭାବରେ କିଛି ଗଢ଼ିନେବା ପାଇଁ ସେମାନେ ଯଥେଷ୍ଟ ଶକ୍ତିଶାଳୀ ହୋଇ ନଥିଲେ ମଧ୍ୟ ମୋଗଲ ସାମ୍ରାଜ୍ୟ ଧ୍ୱଂସ କରିଦେବା ପାଇଁ ସେମାନେ ସମର୍ଥ ହୋଇଥିଲେ । କିଛିକାଳ ପାଇଁ ଅବଶ୍ୟ ସେମାନେ ସଫଳତା ଲଭିକଲେ; କିନ୍ତୁ ପରେ ସେମାନେ ଅତ୍ୟାଧାରେ ଅତୀତ ଭିତରକୁ ନିରୀକ୍ଷଣ କରିଥିଲେ ଓ ସେହି ଅତୀତର ପୁନର୍ଜାଗରଣ ଦିଗରେ ଚିନ୍ତାକରି ବସିଲେ । ସେମାନେ ଉପଲବ୍ଧି କଲେନାହିଁ ଯେ ବହୁତ କିଛି ଘଟିଯାଇଛି ଯାହାକୁ ଅବଜ୍ଞା କରିବା ଅବା ଗୁରୁତ୍ୱ ନଦେଇ ଆଡ଼େଇ-ଯିବା ଆଉ ସମ୍ଭବ ନୁହେଁ । ବର୍ତ୍ତମାନର ସ୍ଥାନ ଅତୀତ କେବେହେଲେ ଅଧିକାର କରିପାରିବ

ନାହିଁ ଏବଂ ସେମାନଙ୍କ ସମସ୍ତର ଭାରତରେ ସେହି ବର୍ତ୍ତମାନ ଥିଲା ବଦ୍ଧତା ଓ ଅବନତିର ବର୍ତ୍ତମାନ । ପରିବର୍ତ୍ତିତ ବିଶ୍ୱ ସଙ୍ଗେ ତାର ସମ୍ପର୍କ ତୁଟି ଯାଇଥିଲା ଓ ଭାରତ ବହୁତ ପଛରେ ପଡ଼ିଥିଲା । ସେମାନେ ବୁଝିପାରୁ ନଥିଲେ ଯେ ଗୋଟାଏ ନୂତନ ତଥା ପ୍ରାଣବାନ ବିଶ୍ୱ ପଶ୍ଚିମରେ ଗଢ଼ିଉଠୁଛି ଯାହା ଗୋଟାଏ ନୂତନ ଦୃଷ୍ଟିଭଙ୍ଗୀ, ନୂତନ କାରୁ କୌଶଳ ଓ ନୂତନ ଶକ୍ତି ଉପରେ ଭିତ୍ତି କରିଛି । ଏହି ନୂତନ ବିଶ୍ୱର ପ୍ରତିନିଧିତ୍ୱ କରିଥିଲା ଇଂଲଣ୍ଡ; ଯାହା ସମ୍ପର୍କରେ ସେମାନେ ପ୍ରାୟ ସମ୍ପୂର୍ଣ୍ଣ ଅଜ୍ଞାନ ଥିଲେ । ଇଂରେଜମାନେ ଜୟଲାଭ କଲେ; କିନ୍ତୁ ସେମାନେ ପ୍ରତିଷ୍ଠିତ ହୋଇଚନ୍ତି କି ନାହିଁ ଉତ୍ତରରେ ମହାନ ସିପାହି ବିଦ୍ରୋହ ଦେଖାଦେଲା ଏବଂ ତାହା ସ୍ୱାଧୀନତା ସଂଗ୍ରାମରେ ରୂପାନ୍ତରିତ ହୋଇ ଭାରତରେ ବ୍ରିଟିଶ ଶାସନର ଉଚ୍ଛେଦ ପ୍ରାୟ ଘଟାଇଥିଲା କହିଲେ ଚଳେ । ବିଦେଶୀ ଆଧିପତ୍ୟ ସମ୍ମୁଖରେ ମସ୍ତକ ଉନ୍ନତ କରି ଠିଆହେବା ଏବଂ ମୁକ୍ତି ପାଇଁ, ସ୍ୱତନ୍ତ୍ରତା ପାଇଁ ବିବଶ ଓ ଉନ୍ମୁଖ ହେବା ଭାରତରେ ସବୁକାଳରେ ଦେଖାଯାଇଛି ।

## ୫. ପ୍ରଗତି ବନାମ ନିରାପତ୍ତା

ଆମେ ଗୋଟାଏ ଅନନ୍ୟ ଜାତି ଭାବରେ ବଢ଼ିଆସିଚୁ । ଆମର ଅତୀତ ଓ ଆମର ଐତିହ୍ୟ ନେଇ ଆମେ ଗର୍ବିତ ଏବଂ ଏହି ଅନନ୍ୟତାର ସଂରକ୍ଷଣ ଲାଗି ଆମେ ବରାବର ପ୍ରାଚୀର ଓ ପ୍ରତିବନ୍ଧକ ନିର୍ମାଣ କରିବା ଉଦ୍ୟମ କରିଚୁ । ତଥାପି ଆମର ଜାତି-ସଚେତନତା ଓ ବର୍ଣ୍ଣ-ବ୍ୟବସ୍ଥାର କଠୋର ଶୃଙ୍ଖଳା ସତ୍ତ୍ୱେ, ଆମେ ଅନ୍ୟମାନଙ୍କ ଭଳି, ଯେଉଁମାନେ ନିଜର ଜାତୀୟତା ଓ କୁଳୀନତାର ଶୁଦ୍ଧତା ନେଇ ଗର୍ବ କରିଥାନ୍ତି, ଗୋଟାଏ ବିଚିତ୍ର ମିଶ୍ର ଜାତିରେ ରୂପାନ୍ତରିତ ହେଲୁ । ଆର୍ଯ୍ୟ, ଦ୍ରାବିଡ଼, ତୁରାନୀୟ, ସେମିଟିକ୍ ଓ ମଙ୍ଗୋଲୀୟଙ୍କୁ ନେଇ ଏହି ମିଶ୍ରର ରଚନା । ଆର୍ଯ୍ୟମାନେ ପୁନଃପୁନଃ ତରଙ୍ଗ ପରେ ତରଙ୍ଗରେ ଭାରତରେ ପ୍ରବେଶ କଲେ ଓ ଦ୍ରାବିଡ଼ମାନଙ୍କ ସଙ୍ଗେ ମିଶ୍ରିତ ହେଲେ । ଏହା ପରେ ହଜାର ହଜାର ବର୍ଷ ଭିତରେ ଅନୁବର୍ତ୍ତିତ କ୍ରମରେ ଅନ୍ୟ ପ୍ରବ୍ରଜିତ ଜାତି ଓ ଉପଜାତି—ମେଡୀୟ, ପାରସିକ, ଯବନ, ବେକ୍‌ଟ୍ରୀୟ, ପାର୍ଥୀୟ, ଶକ ଅଥବା ସିଥୀୟ, କୁଶାଣ ଅବା ୟୁଇ-ଚି, ତୁର୍କୀ, ତୁର୍କୀ-ମଙ୍ଗୋଲ୍ ଏବଂ ଅନ୍ୟାନ୍ୟମାନେ କ୍ଷୁଦ୍ର ଅବା ବୃହତ୍ ଗୋଷ୍ଠୀରେ ଆସି ଭାରତରେ ବସବାସ କଲେ । ଡଡ଼୍‌ୱେଲ୍ ତାଙ୍କର 'ଇଣ୍ଡିଆ' ଗ୍ରନ୍ଥରେ କହନ୍ତି, "ହିଂସ୍ର ତଥା ରଣପ୍ରିୟ ଉପଜାତିମାନେ ବାରମ୍ବାର ତାର (ଭାରତର) ଉତ୍ତର ସମତଳଭୂମି ଆକ୍ରମଣ କଲେ, ତାର ରାଜାମାନଙ୍କୁ ଗାଦିଚ୍ୟୁତ କଲେ, ତାର ନଗରୀଗୁଡ଼ିକୁ ଲୁଣ୍ଠନ ଓ ଧ୍ୱଂସ କଲେ, ନୂଆରାଜ୍ୟ ଗଢ଼ି ନିଜର ନୂଆ ରାଜଧାନୀ ନିର୍ମାଣ କଲେ ଏବଂ ଶେଷରେ ସେମାନଙ୍କର ଉତ୍ତରପୁରୁଷଙ୍କ ନିମନ୍ତେ ଦ୍ରୁତ ଲଘୁତାପ୍ରାପ୍ତ ବିଦେଶୀ ରକ୍ତର କିଛି ସ୍ୱାତନ୍ତ୍ର୍ୟ ଏବଂ କେତେକ ବିଦେଶୀ ପ୍ରଥା ଯାହା ଅତି ଅଳ୍ପକାଳ ମଧ୍ୟରେ ସେମାନଙ୍କର ପରିଭୂତଙ୍କର ପରିବେଷ୍ଟନୀ ସଙ୍ଗେ ସୌସାଦୃଶ୍ୟ ରକ୍ଷାକରିବା ଭଳି ରୂପାନ୍ତରିତ ହେଲା, ମାନବତାର
ପରିବେଷ୍ଟନୀ ସଙ୍ଗେ ସୌସାଦୃଶ୍ୟ ରକ୍ଷାକରିବା ଭଳି ରୂପାନ୍ତରିତ ହେଲା, ମାନବତାର
ମହାନ୍ ତରଙ୍ଗରେ ମିଳାଇ ଗଲେ ।"

ଏହି ବାଧକର ପରିବେଶର ହେତୁ କଅଣ ? ଆଂଶିକ ଭାବରେ ଏହା ଭୂଗୋଳ ଓ ଜଳବାୟୁ ତଦୋପରି ଭାରତର ବାୟୁମଣ୍ଡଳର ପ୍ରଭାବ; କିନ୍ତୁ ଏକଥା ନିଶ୍ଚିତ ଯେ ଅଧିକତର ପ୍ରଭାବ ଥିଲା କୌଣସି ଶକ୍ତିଶାଳୀ ଆବେଗ, କୌଣସି ବିପୁଳ ବିବଶତା କିମ୍ବା ଜୀବନର ତାତ୍ପର୍ଯ୍ୟର କୌଣସି ଭାବ ଯାହା ଭାରତର ମଗ୍ନଚେତନରେ ମୋହରାଙ୍କିତ ହୋଇଥିଲା—ଇତିହାସର ଅରୁଣ ପ୍ରଭାତରେ ସଦ୍ୟତା ଓ ତାରୁଣ୍ୟରେ ସେ ଯେବେ ଉତ୍‌ଫୁଲ୍ଲ ଥିଲା । ସେହି ଛାପ ଯୁଗେ ଯୁଗେ ତିଷ୍ଠି ରହିବା ପାଇଁ ଓ ତାର ସମ୍ପର୍କରେ ଆସୁଥିବା ସମସ୍ତଙ୍କୁ ପ୍ରଭାବିତ କରିବା ପାଇଁ ଏବଂ ସେମାନେ କେତେ ବିଭିନ୍ନ ହେଲେ ମଧ୍ୟ ନିଜ ଦେହରେ ସେମାନଙ୍କୁ ଲୀନ କରିନେବା ପାଇଁ ଯଥେଷ୍ଟ ବଳବାନ୍ ଥିଲା । ଏହା କ'ଣ ସେହି ଆବେଗ, ସେହି ଭାବ, ସେହି ପ୍ରାଣସଞ୍ଚାରୀ ସ୍ଫୁଲିଙ୍ଗ ଯାହା ଏହି ଦେଶରେ ବର୍ଦ୍ଧିତ ସଭ୍ୟତାକୁ ସମୁଜ୍ଜ୍ୱଳ କଲା ଏବଂ କେତେ ଐତିହାସିକ ଯୁଗ ଭିତରଦେଇ ତାର ଜନସାଧାରଣଙ୍କୁ ଅଖଣ୍ଡ ଭାବରେ ପ୍ରଭାବିତ କରିଆସିଲା ।

ଭାରତୀୟ ସଭ୍ୟତାର ଅଭିବୃଦ୍ଧି ପଛରେ ଗୋଟାଏ ଆବେଗ ଅବା ଜୀବନର ଗୋଟାଏ ଭାବ ନିହିତ ଅଛି କହିବା ଅସଙ୍ଗତ ଓ ଅପ୍ରମାଣିକ ସଙ୍କଳ୍ପ ଭଳି ପ୍ରତୀକ ହୁଏ । ବ୍ୟକ୍ତିଗତ ଜୀବନ ମଧ୍ୟ ଅନେକ ଦିଗରୁ ଜୀବନର ଖାଦ୍ୟ ଆହରଣ କରେ । ଗୋଟାଏ ଜାତି ଅବା ସଭ୍ୟତାର ଜୀବନ ଅଧିକତର ଜଟିଳ । ଭାରତର ଆସ୍ତରଣ ଉପରେ ଅଗଣିତ ବିଷୟର ସମୃଦ୍ଧିବାହୀ ତୁଚ୍ଛବସ୍ତୁ ଭଳି ଇତସ୍ତତଃ ଭାସମାନ ରହେ ଓ ସେଥିରୁ ଅଧିକାଂଶ ପରସ୍ପର ଖଣ୍ଡନଶୀଳ । ଗୋଟାଏ ନିର୍ଦ୍ଦିଷ୍ଟ ନିବନ୍ଧକୁ ତାତ୍ପର୍ଯ୍ୟ ଦେବା ନିମନ୍ତେ ସେଥି ଭିତରୁ ଗୋଟାଏ ଗୋଷ୍ଠୀକୁ ତୋଳିନେବା ଯେପରି ସହଜ ତାକୁ ଖଣ୍ଡନ କରିବା ପାଇଁ ଆଉ ଏକ ଗୋଷ୍ଠୀ ତୋଳି ନେବା ଠିକ୍ ସେହିପରି ସହଜ । ଏହା, କେତେ ପର୍ଯ୍ୟନ୍ତ, ସ୍ୱାଭାବିକ ସମ୍ଭବ ଏବଂ ଭାରତ ଭଳି ଏକ ପୁରାତନ ତଥା ବିଶାଳ ଦେଶରେ ଯେଉଁଠି ଜୀବିତ ଦେହରେ ମରଣର ବହୁତ କିଛି ଲାଗି ରହିଛି ଏହା ବଡ଼ ବିଚକ୍ଷଣଭାବରେ ସହଜ । ଆହୁରି ମଧ୍ୟ, ଅତୀତର ଜଟିଳ ପ୍ରତିଭାସଗୁଡ଼ିକର ସରଳ ଶ୍ରେଣୀକରଣରେ ସ୍ପଷ୍ଟ ଭାବରେ ବିପଦ ରହିଥାଏ । ଆଚରଣ ଓ ଚିନ୍ତାର ବିବର୍ତ୍ତନରେ ସେଭଳି ତୀବ୍ର ବୈଷମ୍ୟ ପ୍ରାୟ ନଥାଏ । ଗୋଟାଏ ଚିନ୍ତା ଅନ୍ୟ ଏକ ଚିନ୍ତା ସଙ୍ଗେ ଜଡ଼ିତ ରହେ ଏବଂ ଏପରିକି ଧାରଣାଗୁଡ଼ିକର ମଧ୍ୟ ବାହ୍ୟରୂପ ଯଥାଯଥ ଥିବାବେଳେ ଆନ୍ତର ଆଧେୟ ପରିବର୍ତ୍ତିତ ହୋଇଥାଏ । ଅନ୍ୟଥା ଗୋଟାଏ ପରିବର୍ତ୍ତିତ ବିଶ୍ୱରେ ସେ ସବୁ ହୁଏତ ପଛରେ ପଡ଼ିଯାଏ କିମ୍ବା ପରିବର୍ତ୍ତନ ପଥରେ ପ୍ରତିବନ୍ଧକ ସୃଷ୍ଟି କରି ବସେ ।

ଯୁଗେ ଯୁଗେ ଆମେ ବରାବର ପରିବର୍ତ୍ତିତ ହୋଇଛୁ ଏବଂ କୌଣସି ଯୁଗରେ ହେଲେ ଆମେ ତାର ପୂର୍ବବର୍ତ୍ତୀ ଯୁଗ ସଙ୍ଗେ ସାଦୃଶ୍ୟ ରକ୍ଷା କରିନାହୁଁ । ଜାତି ଅବା ସଂସ୍କୃତି ଦୃଷ୍ଟିରୁ ଆମେ ଯାହା ଥିଲୁ ଆଜି ତାହା ନୋହୁଁ ଏବଂ ଭାରତ ଅବା ଅନ୍ୟତ୍ର ମୁଁ ମୋର ପରିପାର୍ଶ୍ୱରେ ପରିବର୍ତ୍ତନ ଦୀର୍ଘ ପଦକ୍ଷେପ କରି ଯାଉଥିବା ଦେଖିପାରୁଛି । ତଥାପି ଏ ବିଷୟରେ ମୁଁ ଭୁଲି ପାରୁନାହିଁ ଯେ ଭାରତ ଓ ଚୀନର ସଭ୍ୟତା ଗୋଟାଏ ଅସାଧାରଣ ସ୍ଥାୟିତ୍ୱଶକ୍ତି ଓ

ଉପଯୋଗିତା ପ୍ରଦର୍ଶିତ କରିଚନ୍ତି ଏବଂ ବହୁ ପରିବର୍ତ୍ତନ ଓ ସଙ୍କଟ ସତ୍ତ୍ୱେ ହଜାର ହଜାର ବର୍ଷ ଧରି ନିଜର ମୌଳିକ ପରିଚୟ ସଂରକ୍ଷଣ କରିବାରେ ସଫଳତା ଲାଭକରିଚନ୍ତି । ଜୀବନ ଓ ପ୍ରକୃତି ସଙ୍ଗେ ସଙ୍ଗତି ରକ୍ଷା କରିପାରି ନଥିଲେ ସେମାନେ ଏ ସଫଳତା ହାସଲ କରିପାରି-ନଥାନ୍ତେ । ଭଲ ହେଉ କି ମନ୍ଦ ହେଉ କିମ୍ବା ଉଭୟର ସମ୍ମିଶ୍ରଣ ହେଉ, ପ୍ରାଚୀନର ନଙ୍ଗର ସଙ୍ଗେ ସେମାନଙ୍କୁ ଜଡ଼ିତ ରଖିବାରେ ସେ ଯାହା ହେଉନା କାହିଁକି ନିଶ୍ଚୟ ସେଥିରେ କିଛି ଶକ୍ତି ଥିଲା, ଅନ୍ୟଥା ଏତେ ଦୀର୍ଘକାଳପର୍ଯ୍ୟନ୍ତ ତାହା ତିଷ୍ଠି ପାରିନଥାନ୍ତା । ହୁଏତ ଅନେକ ଦିନରୁ ତାର ଉପଯୋଗିତା ଶେଷ ହୋଇଯାଇଚି ଏବଂ ସେହି ସମୟରୁ ଗୋଟାଏ ପ୍ରତିବନ୍ଧକ ଓ ଗଳଗ୍ରହଭାବରେ କେବଳ ତାହା ରହି ଆସିଚି । ଏପରି ମଧ୍ୟ ହୋଇପାରେ ଯେ ପରବର୍ତ୍ତୀ ଯୁଗମାନଙ୍କର ଉପଲେଖ ତାର ଯାହା କିଛି ଭଲ ଅଂଶ ନଷ୍ଟ କରି ଦେଇଚି ଓ ମୃତଜୀବର ଶୂନ୍ୟ ଖୋଳପା କେବଳ ପଡ଼ିରହିଚି ।

ପ୍ରଗତିର ଧାରଣା ଏବଂ ନିରାପତ୍ତା ଓ ସ୍ଥାୟିତ୍ୱର ଧାରଣା ଭିତରେ ଗୋଟାଏ ସଂଘାତ ହୁଏତ ସର୍ବଦା ରହିଚି । ଉଭୟ ଭିତରେ ମେଳ ନାହିଁ । ପ୍ରଗତି ପରିବର୍ତ୍ତନ ଦାବୀ କରେ; ନିରାପତ୍ତା ଓ ସ୍ଥାୟିତ୍ୱ ଚାହେଁ ଗୋଟାଏ ଆପଦହୀନ ଅପରିବର୍ତ୍ତିତ ଆଶ୍ରୟ ଏବଂ ସ୍ଥିତାବସ୍ଥା । ପ୍ରଗତିର ଏହି ଧାରଣା ଆଧୁନିକ ଏବଂ ପଶ୍ଚିମରେ ମଧ୍ୟ ଅପେକ୍ଷାକୃତ ନୂତନ । ପ୍ରାଚୀନ ଓ ମଧ୍ୟଯୁଗୀୟ ଉଭୟ ସଭ୍ୟତା ସ୍ୱର୍ଣ୍ଣିମୟ ଅତୀତ ଓ ତାର ପରବର୍ତ୍ତୀ ଅବନତି ଦଶାରେ ବହୁତ କିଛି ଚିନ୍ତା କରିଥିଲେ । ଭାରତରେ ମଧ୍ୟ ସବୁବେଳେ ଅତୀତକୁ ଗରିମାମୟ କରାଯାଇଚି । ଯେଉଁ ସଭ୍ୟତା ଏଠାରେ ନିର୍ମିତ ହେଲା, ତାହା ସାରତଃ ଭିତ୍ତି କରିଥିଲା ସ୍ଥାୟିତ୍ୱ ଓ ନିରାପତ୍ତା ଉପରେ ଏବଂ ଏହି ଦୃଷ୍ଟିକୋଣରୁ ପଶ୍ଚିମର ଯେକୌଣସି ସଭ୍ୟତା ଅପେକ୍ଷା ଏହା ଅଧିକତର ସଫଳତା ଲାଭକରିଥିଲା । ବର୍ଣ୍ଣବ୍ୟବସ୍ଥା ଓ ଏକାନ୍ନବର୍ତ୍ତୀ ପରିବାର ସଙ୍ଗଠନ ଉପରେ ପ୍ରତିଷ୍ଠିତ ସାମାଜିକ ଗଢ଼ଣ ଏହି ଉଦ୍ଦେଶ୍ୟର ଅନୁକୂଳତା ସମ୍ପାଦନ କରି ଗୋଷ୍ଠୀ-ପାଇଁ ସାମାଜିକ ନିରାପତ୍ତା ଯୋଗାଇବାରେ ଏବଂ ଯେଉଁ ବ୍ୟକ୍ତି ବୟସ, ପଙ୍ଗୁତା କିମ୍ବା ଅନ୍ୟ ଯେକୌଣସି ଅସାମର୍ଥ୍ୟ ଯୋଗୁଁ ନିଜର ଭରଣପୋଷଣ ପାଇଁ ଅକ୍ଷମ ଥିଲା, ତାକୁ ଗୋଟାଏ ପ୍ରକାର ଜୀବନବୀମା ଯୋଗାଇବାରେ ସଫଳ ହୋଇଥିଲା । ଏପରି ଏକ ବ୍ୟବସ୍ଥା ଦୁର୍ବଳର ତୋଷଣ କଲାବେଳେ କେତେ ପର୍ଯ୍ୟନ୍ତ ସବଳର ମାର୍ଗରେ ବାଧା ପହଞ୍ଚାଏ । ଏହା ଅସାଧାରଣ, ମନ୍ଦ ଅବା ପ୍ରତିଭାବାନ୍ ବ୍ୟକ୍ତିର ବିନିମୟରେ ମାମୁଲି ହାରାହାରି ସ୍ତରର ବ୍ୟକ୍ତିଙ୍କୁ ଉତ୍ସାହିତ କରେ । ଏହା ନିମ୍ନରେ ହେଉ କିମ୍ବା ଉଚ୍ଚରେ ହେଉ ଗୋଟାଏ ପ୍ରକାର ସମାନତାର ବ୍ୟବସ୍ଥା ଆଣେ ଏବଂ ଏଥିରେ ବ୍ୟକ୍ତିତ୍ୱବାଦ ବିଶେଷ କାର୍ଯ୍ୟରେ ଲାଗେନାହିଁ । ଏକଥା ବଡ଼ କୌତୂହଳକର ଯେ ଭାରତୀୟ ଦର୍ଶନ ଯେବେ ବିପୁଳଭାବରେ ବ୍ୟକ୍ତିତ୍ୱବାଦୀ ଏବଂ ବ୍ୟକ୍ତିର ଅଭିବୃଦ୍ଧି ନେଇ ଓ ତାର କୌଣସି ଆନ୍ତର ପରିପୂର୍ଣ୍ଣତା ନେଇ ସମ୍ପୂର୍ଣ୍ଣତଃ ଏହାର କାରବାର, ଭାରତୀୟ ସାମାଜିକ ଗଢ଼ଣ ଥିଲା ସାଂପ୍ରଦାୟିକ ଏବଂ ତାର ସମସ୍ତ ଦୃଷ୍ଟି ନିବେଶିତ ଥିଲା ଗୋଷ୍ଠୀର ବିକାଶ ସାଧନରେ । ନିଜର ଇଚ୍ଛାମତ ଚିନ୍ତା କରିବାପାଇଁ ଓ ନିଜର ପସନ୍ଦ ଅନୁସାରେ ବିଶ୍ୱାସ କରିବା ପାଇଁ ବ୍ୟକ୍ତିକୁ ପୂର୍ଣ୍ଣ ସ୍ୱାଧୀନତା ଯଦିଓ

ଦିଆଯାଇଥିଲା, ତାକୁ ସାମାଜିକ ତଥା ସାଂପ୍ରଦାୟିକ ସ୍ଥିତି ସଙ୍ଗେ ଖୁବ୍ ସାବଧାନ ଭାବରେ ପାଦମିଳାଇ ଚାଲିବାକୁ ପଡ଼ୁଥିଲା ।

ଏହି ସବୁ ସାଦୃଶ୍ୟ ସଙ୍ଗେ ସାମଗ୍ରିକ ଭାବରେ ଗୋଷ୍ଠୀରେ ଏକ ପ୍ରକାର ନମନୀୟତା ମଧ୍ୟ ଥିଲା ଏବଂ ସେପରି କୌଣସି ଆଇନ ଅବା ସାମାଜିକ ନିୟମ ନଥିଲା, ଯାହା ପ୍ରଥା ଦ୍ୱାରା ପରିବର୍ତ୍ତିତ ହୋଇ ନ ପାରନ୍ତା । ଅଧିକ ମଧ୍ୟ, ନବ ନବ ଗୋଷ୍ଠୀ ସେମାନଙ୍କ ନିଜ ନିଜ ପ୍ରଥା, ବିଶ୍ୱାସ ଓ ଅଭ୍ୟାସ ଅନୁସରଣ କରିବା ସଙ୍ଗେ ସଙ୍ଗେ ବୃହତ୍ତର ସାମାଜିକ ଗୋଷ୍ଠୀର ସଭ୍ୟଭାବରେ ବିବେଚିତ ହେଉଥିଲେ । ଏହି ନମନୀୟତା ଓ ସମୁପଯୋଗିତା ବୈଦେଶିକ ଜାତିମାନଙ୍କୁ ଲୀନ କରିବାରେ ସହାୟତା କଲା । ଏ ସମସ୍ତ ପଛରେ ଥିଲା ଗୋଟାଏ କିଛି ମୌଳିକ ଶୀଳାଚରଣୀୟ ସିଦ୍ଧାନ୍ତ ଓ ଜୀବନ ପ୍ରତି ଗୋଟାଏ ଦାର୍ଶନିକ ଆଭିମୁଖ୍ୟ ଏବଂ ଅନ୍ୟମାନଙ୍କ ଜୀବନଧାରା ପ୍ରତି ସହନଶୀଳତା ।

ଦୃଷ୍ଟି ଆଗରେ ପ୍ରଧାନ ଲକ୍ଷ୍ୟ ଭାବରେ ଯେ ପର୍ଯ୍ୟନ୍ତ ସ୍ଥାୟିତ୍ୱ ଓ ନିରାପତ୍ତା ରହିଥିଲା, ଏହି ଗଠନ କମ୍ ବହୁତରେ ସଫଳ ଭାବରେ ଚାଲିଲା ଏବଂ ଯେତେବେଳେ କୌଣସି ଅର୍ଥନୈତିକ ପରିବର୍ତ୍ତନ ତାକୁ କ୍ଷତିଗ୍ରସ୍ତ କରିଛି, ଉପଯୋଗିତାର ପ୍ରକ୍ରିୟା ଆରମ୍ଭ ହୋଇଛି ଏବଂ ଏହି ଗଠନ ପୂର୍ବଭଳି କାର୍ଯ୍ୟକାରୀ ହୋଇଛି । ଏହି ସାମାଜିକ ଗଠନ ପ୍ରତି ପ୍ରକୃତ ଆହ୍ୱାନ ଆସିଲା ସାମାଜିକ ପ୍ରଗତିର ନୂତନ ଗତିଶୀଳ ଧାରଣାରୁ ଯାହା ପୁରାତନ ବଦ୍ଧଧାରଣାମାନଙ୍କ ସଙ୍ଗେ ମିଶି ପାରୁନଥିଲା । ଏହି ନୂତନ ଧାରଣା ହିଁ ପାଶ୍ଚାତ୍ୟରେ ଦିନେ ଯେପରି କରିଥିଲା, ପ୍ରାଚ୍ୟରେ ମଧ୍ୟ ପୁରାତନ ପ୍ରତିଷ୍ଠିତ ପ୍ରଣାଳୀଗୁଡ଼ିକୁ ମୂଲୋତ୍ପାଟିତ କରୁଛି । ପାଶ୍ଚାତ୍ୟରେ ଏବେ ବି ଯେଉଁଠି ପ୍ରଗତିର ଜୁଆର ଚାଲିଛି, ନିରାପତ୍ତା ପାଇଁ ଦାବୀ ବୃଦ୍ଧି ପାଉଛି । ଭାରତରେ ନିରାପତ୍ତାର ଏହି ଗୁରୁତର ଅଭାବ ଯେତେ ସବୁ ପୁରାତନ ଧାରା ଛାଡ଼ିବା ପାଇଁ ଲୋକଙ୍କୁ ବାଧ୍ୟ କରିଛି ଏବଂ ଯାହା ଅଧିକତର ନିରାପତ୍ତା ଯୋଗାଇବ, ସେହି ପ୍ରଗତି ଭାବନାରେ ସେମାନଙ୍କୁ ନିୟୋଜିତ କରିଛି ।

ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତରେ ଅବଶ୍ୟ ପ୍ରଗତିର ସେପରି କିଛି ଆହ୍ୱାନ ନଥିଲା; କିନ୍ତୁ ପରିବର୍ତ୍ତନର ଆବଶ୍ୟକତା ଓ ଅବିଚ୍ଛିନ୍ନ ସମୁପଯୋଗିତା ସ୍ୱୀକୃତ ହୋଇଥିଲା ଏବଂ ସମନ୍ୱୟ ନିମନ୍ତେ ଉତ୍କଣ୍ଠା ରହିଥିଲା । ଏ ସମନ୍ୱୟ ଭାରତକୁ ଯେଉଁ ବୈଦେଶିକ ଜାତି ଆସୁଥିଲେ ସେମାନଙ୍କ ପାଇଁ କେବଳ ନୁହେଁ, ଏହା ଥିଲା ବ୍ୟକ୍ତିର ବାହ୍ୟ ଓ ଆନ୍ତର ଜୀବନ ଭିତରେ, ମଣିଷ ଓ ପ୍ରକୃତି ଭିତରେ ଗୋଟାଏ ସମନ୍ୱୟର ଉଦ୍ୟମ । ଆଜି ଯେଉଁଭଳି ଦେଖାଯାଏ, ସେତେବେଳେ ସେପରି କିଛି ବିସ୍ତୃତ ବ୍ୟବଧାନ ନଥିଲା । ଏହି ସାର୍ବଜନୀନ ସାଂସ୍କୃତିକ ପୃଷ୍ଠଭୂମି ଭାରତକୁ ସୃଷ୍ଟି କଲା ଏବଂ ତାର ବିବିଧତା ସତ୍ତ୍ୱେ ତାକୁ ଏକତାର ଗୋଟାଏ ଗମ୍ଭୀର ଭାବ ଅର୍ପଣ କଲା । ରାଜନୈତିକ ଗଠନର ମୂଳରେ ଥିଲା ସ୍ୱ-ଶାସିତଗ୍ରାମ ବ୍ୟବସ୍ଥା; ଯାହା କେତେ ରାଜବଂଶର ଉତ୍ଥାନ ପତନ ସତ୍ତ୍ୱେ ଭିତ୍ତି ଭାବରେ ସ୍ଥିତିବାନ୍ ଥିଲା । ବାହାରର ନବ ନବ ଅନୁପ୍ରବେଶ ଓ ଆକ୍ରମଣ ଏହି ଗଠନର ଉପର ସ୍ତରକୁ କେବଳ ବିଚଳିତ କରୁଥିଲା; କିନ୍ତୁ ମୂଳଭିତ୍ତି ଯେଉଁଭଳି ସେଇଭଳି ଦୃଢ଼ ରହିଥିଲା । ରାଜ୍ୟର ଶକ୍ତି

କେତେ ଦୁର୍ଦ୍ଧର୍ଷ ପ୍ରତୀତ ହେଲେ ମଧ୍ୟ ପରମ୍ପରାଗତ ତଥା ସାମ୍ବିଧାନିକ ବାଧ୍ୟବାଧକତା ଦ୍ୱାରା ନାନାଭାବରେ ସଙ୍କୁଚିତ ହୋଇଥିଲା ଏବଂ କୌଣସି ଶାସକ ଗ୍ରାମଗୋଷ୍ଠୀର ସ୍ୱତ୍ୱ ଓ ସ୍ୱାଧିକାର ଉପରେ ସହଜରେ ହସ୍ତକ୍ଷେପ କରିପାରୁନଥିଲା । ଏହିସବୁ ପରମ୍ପରାଗତ ସ୍ୱତ୍ୱ ଓ ସ୍ୱାଧିକାର ଗୋଷ୍ଠୀ ଓ ବ୍ୟକ୍ତି ଉଭୟ ନିମନ୍ତେ କେତେ ପରିମାଣରେ ସ୍ୱାତନ୍ତ୍ର୍ୟ ସୁନିଶ୍ଚିତ କରିଥିଲା ।

ଆଜିର ଭାରତବାସୀଙ୍କ ମଧ୍ୟରେ ରାଜପୁତମାନଙ୍କ ଅପେକ୍ଷା ଅନ୍ୟ କେହି ଅଧିକତର ଆଦର୍ଶ ଭାବରେ ଭାରତୀୟ କିମ୍ବା ଭାରତୀୟ ସଂସ୍କୃତି ଓ ପରମ୍ପରାର ଲାଗି ଗର୍ବିତ ନୁହଁନ୍ତି । ଅତୀତରେ ସେମାନଙ୍କର ଯେତେ ସବୁ ବୀରୋଚିତ କର୍ମ ସେହି ପରମ୍ପରାର ଗୋଟାଏ ଜୀବନ୍ତ ଅଂଶରେ ପରିଣତ ହୋଇଛି । ତଥାପି ରାଜପୁତମାନଙ୍କ ଭିତରୁ ଅନେକେ ଇଣ୍ଡୋ-ଶିଥିଅନ୍ ବଂଶଜ ବୋଲି ଏବଂ କେତେ ଭାରତକୁ ଆସିଥିବା ହୂଣଙ୍କ ବଂଶଜବୋଲି ମଧ୍ୟ ବୁଝାଯାଇଥାଏ । ଜାଠ ଅପେକ୍ଷା ଅଧିକତର ବଳଶାଳୀ ଓ ଉତ୍ତମ କୃଷକ, ମାଟି ଯାହାର ପ୍ରାଣର ଏକ ଅଂଶ ଏବଂ ତାର ଜମି ଉପରେ କୌଣସି ପ୍ରକାର ହସ୍ତକ୍ଷେପ ସିଏ ବରଦାସ୍ତ କରିବାକୁ ପ୍ରସ୍ତୁତ ନୁହେଁ, ଆଜି ଭାରତରେ ବିରଳ । ମୂଳତଃ ସେ ଶିଥୀଏନ୍ ମଧ୍ୟ । ଏହିପରି କାଠିଆବାଡ଼ର ଦୀର୍ଘ ଓ ସୁଦୃଶ୍ୟ କାଥୀ କୃଷକ ମଧ୍ୟ ସେହି ମୂଳରୁ ଉଦ୍ଭୂତ । ଆମ ଜନସାଧାରଣଙ୍କ ଭିତରୁ କେତେକଙ୍କର ଜାତୀୟ ଉତ୍ପତ୍ତି କିଛିଟା ନିର୍ଦ୍ଦିଷ୍ଟତା ଦେଇ ଅନୁଧାବନ କରିହେବ । ଅନ୍ୟମାନଙ୍କ ସମ୍ପର୍କରେ ଏପରି କରିବା ସମ୍ଭବ ନୁହେଁ । ତେବେ ଉତ୍ପତ୍ତି ଯାହା ହେଇ ଥାଉନା କାହିଁକି ସମସ୍ତେ ସ୍ପଷ୍ଟଭାବରେ ଭାରତୀୟ ହୋଇ ପାରିଚନ୍ତି ମିଳିତ ଭାବରେ ଭାରତୀୟ ସଂସ୍କୃତିରେ ଅଂଶ ଗ୍ରହଣ କରୁଚନ୍ତି ଏବଂ ଭାରତର ଅତୀତ ପରମ୍ପରାଗୁଡ଼ିକୁ ଆପଣାର ମଣୁଚନ୍ତି ।

ଏଥିରୁ ଅନୁମିତ ହେବ ଯେ ଭାରତକୁ ସିଏ କେହି ବାହାରୁ ଆସିଚି, ଭାରତରେ ଲୀନ ହୋଇଚି, ଭାରତକୁ କିଛି ଦେଇଚି ଓ ତା'ଠାରୁ ବହୁତ କିଛି ନେଇଚି । ତାର ନିଜର ଓ ଭାରତର ବଳ ବୃଦ୍ଧି କରିବାରେ ତାର ଦାନ ରହିଚି; କିନ୍ତୁ ଯେଉଁ ବିଦେଶାଗତ ଜାତି ନିଜକୁ ଅସଂପୃକ୍ତ ରଖିଚି କିମ୍ବା ଭାରତୀୟ ଜୀବନ ଓ ତାର ସମୃଦ୍ଧି ତଥା ବିବିଧତାର ସଂସ୍କୃତିରେ ଅଂଶ ଗ୍ରହଣ କରିବାରେ ଅସମର୍ଥ ହୋଇଚି, ଭାରତ ଉପରେ ଦୀର୍ଘକାଳ ସ୍ଥାୟୀ କୌଣସି ପ୍ରଭାବ ପ୍ରସାରିତ କରିପାରିନି; ପରିଶେଷରେ ମଉଳି ଯାଇଚି ଏବଂ ମଉଳିସିବାର ପ୍ରକ୍ରିୟାରେ ନିଜକୁ ଓ ଭାରତକୁ ଆହତ କରିଚି ।

## ୭. ଭାରତ ଓ ପାରସ୍ୟ

ଭାରତର ସମ୍ପର୍କରେ ଆସି ଯେଉଁ ଜାତିମାନେ ତାର ଜୀବନ ଓ ସଂସ୍କୃତିକୁ ପ୍ରଭାବିତ କଲେ, ସେମାନଙ୍କ ଭିତରୁ ପ୍ରାଚୀନତମ ଓ ଅନିବାର୍ଯ୍ୟ ହୋଇଥିଲେ ପାରସିକମାନେ । ପ୍ରକୃତପକ୍ଷେ, ଭାରତୀୟ ଓ ପାରସିକଙ୍କ ସମ୍ପର୍କ ଇଣ୍ଡୋ-ଆର୍ଯ୍ୟ ସଭ୍ୟତା ଆରମ୍ଭର ପୂର୍ବବର୍ତ୍ତୀ, କାରଣ ସେପରି କୌଣସି ଗୋଟାଏ ଗଣ୍ଡିରୁ ଇଣ୍ଡୋ-ଆର୍ଯ୍ୟ ଓ ପ୍ରାଚୀନ ପାରସିକମାନେ

ଶାଖା ରୂପେ ବାହାରି ନିଜ ନିଜ ମାର୍ଗ ଧରିଥିଲେ । ଜାତି ଦିଗରୁ ଏ ପ୍ରକାର ସମ୍ପର୍କ ଯୋଗୁଁ ସେମାନଙ୍କର ପୁରାତନ ଧର୍ମ ଓ ଭାଷାରେ ମଧ୍ୟ ଗୋଟାଏ ସାର୍ବଜନୀନ ପୃଷ୍ଠଭୂମି ଥିଲା । ଜରଥୁଷ୍ଟ୍ରଙ୍କ ଧର୍ମ (ଭାରତୀୟ ପାର୍ଶୀ ଧର୍ମ) ଓ ବୈଦିକ ଧର୍ମ ଭିତରେ ବହୁତ କିଛି ସୌସାଦୃଶ୍ୟ ଥିଲା ଏବଂ 'ଆଭେସ୍ତା'ର ଭାଷା ପୁରାତନ ହେଲେ ବି ଓ ବୈଦିକ ସଂସ୍କୃତ ଭିତରେ ବହୁତ ପରିମାଣରେ ସାମଞ୍ଜସ୍ୟ ରହିଛି । ଶାସ୍ତ୍ରୀୟ ସଂସ୍କୃତ ଓ ଫାରସୀ ସ୍ୱତନ୍ତ୍ରଭାବରେ ବିକଶିତ ହୋଇଥିଲେ ମଧ୍ୟ ବହୁତ ମୂଳଶବ୍ଦ ଉଭୟ ପକ୍ଷରେ ଯେପରି ସମାନ ସେପରି କେତେ ଶବ୍ଦ ସମସ୍ତ ଆର୍ଯ୍ୟ ଭାଷା ପାଇଁ ସମାନ । ଏହି ଦୁଇ ଭାଷା ଏବଂ କିଛି ଅଧିକ ଭାବରେ ମଧ୍ୟ ସେମାନଙ୍କର କଳା ଓ ସଂସ୍କୃତି ପରସ୍ପରର ପରିବେଷ୍ଟନୀଦ୍ୱାରା ପ୍ରଭାବିତ ହୋଇଥିଲା । ପାରସୀକଳା ପାରସ୍ୟର ମାଟି ଓ ପ୍ରାକୃତିକ ଦୃଶ୍ୟ ସଙ୍ଗେ ଘନିଷ୍ଠ ଭାବରେ ସମ୍ବନ୍ଧିତ ଭଳି ଜଣାଯାଏ ଏବଂ ସେଥିଲାଗି ହୁଏତ ପାରସ୍ୟର କଳା-ପରମ୍ପରା ଏତେ ଦୃଢ଼ଭାବରେ ରହି ଆସିଛି । ସେହିପରି ମଧ୍ୟ ଭାରତୀୟ ଆର୍ଯ୍ୟ କଳା-ପରମ୍ପରା ଓ ବିଭିନ୍ନ ଆଦର୍ଶ ହିମାବୃତ ପର୍ବତମାଳା, ଶ୍ୟାମଳ ଅରଣ୍ୟାନୀ ଓ ଉତ୍ତର-ଭାରତର ମହାନ ନଦୀମାନଙ୍କରୁ ବଢ଼ି-ଉଠିଲା ।

ଭାରତ ଭଳି ପାରସ୍ୟ ମଧ୍ୟ ତାର ଆକ୍ରମଣକାରୀମାନଙ୍କୁ ପ୍ରଭାବିତ କରିବା ପାଇଁ ଓ ବହୁ ଅବସରରେ ନିଜ ଭିତରେ ଲୀନ କରିବା ପାଇଁ ତାର ସାଂସ୍କୃତିକ ଭିତ୍ତିରେ ଯଥେଷ୍ଟ ଦୃଢ଼ ଥିଲା । ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀରେ ଆରବମାନେ ପାରସ୍ୟ ଜୟ କରିଥିଲେ ସୁଦ୍ଧା ଅଳ୍ପ କାଳ ମଧ୍ୟରେ ଏହି ପ୍ରଭାବ ନିକଟରେ ଆତ୍ମସମର୍ପଣ କଲେ ଏବଂ ନିଜର ମରୁଭୂମି ସୁଲଭ ସରଳ ଜୀବନଧାରା ଛାଡ଼ି ପାରସ୍ୟର ଜଟିଳ ପୌରସଂସ୍କୃତି ଗ୍ରହଣ କଲେ । ୟୁରୋପରେ ଫାରସୀ ଭାଷା ଭଳି ପାରସିକ ଭାଷା ଏସିଆର ବ୍ୟାପକ ଅଞ୍ଚଳରେ ସଭ୍ୟ ଶିକ୍ଷିତ ଲୋକଙ୍କ ଭାଷା ଭାବରେ ବ୍ୟବହୃତ ହେଲା । ପାରସିକ କଳା ଓ ସଂସ୍କୃତି ପଶ୍ଚିମରେ କନ୍‌ଷ୍ଟେଣ୍ଟି-ନୋପଲ୍‌ଠାରୁ ଗୋବି ମରୁଭୂମି ଧାର ପର୍ଯ୍ୟନ୍ତ ବିସ୍ତୃତ ହେଲା ।

ଭାରତରେ ଏହି ପାରସିକ ପ୍ରଭାବ ଅବିଚ୍ଛିନ୍ନ ଭାବରେ ରହିଥିଲା ଏବଂ ଆଫଗାନ ଓ ମୋଗଲ ରାଜତ୍ୱ କାଳରେ ଏହା ଭାରତର ଦରବାରୀ ଭାଷା ଭାବରେ ପ୍ରଚଳିତ ଥିଲା । ଭାରତରେ ବ୍ରିଟିଶ ରାଜତ୍ୱର ଆରମ୍ଭ ପର୍ଯ୍ୟନ୍ତ ଏହି ଅବସ୍ଥା ରହିଥିଲା । ଭାରତର ସମସ୍ତ ଆଧୁନିକ ଭାଷାରେ ପାରସିକ ଶବ୍ଦ-ବହୁଳ ଭାବରେ ରହିଛି । ସଂସ୍କୃତରୁ ଉତ୍ପନ୍ନ ଭାଷାମାନଙ୍କ ପକ୍ଷରେ ବିଶେଷକରି ମିଶ୍ରିତ ଭାଷା ହିନ୍ଦୁସ୍ଥାନୀ ପକ୍ଷରେ ଏହା ସ୍ୱାଭାବିକ; କିନ୍ତୁ ଦକ୍ଷିଣର ଦ୍ରାବିଡ ଭାଷାଗୁଡ଼ିକ ମଧ୍ୟ ପାରସିକ ପ୍ରଭାବ ବହନ କରିଚନ୍ତି । ଅତୀତରେ ଭାରତରେ ପାରସିକ ଭାଷାର କେତେ ଧୀମନ୍ତ କବି ସୃଷ୍ଟି ହୋଇଚନ୍ତି ଏବଂ ଆଜି ମଧ୍ୟ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ପାରସିକ ଭାଷାର ବହୁ ବିଦ୍ୱାନ ରହିଚନ୍ତି ।

ଏଥିରେ ସନ୍ଦେହର ବିଶେଷ ଅବକାଶ ଆଉ ନାହିଁ ଯେ ପାରସ୍ୟ ଓ ମେସୋପଟାମିଆର ସମସାମୟିକ ସଭ୍ୟତା ସଙ୍ଗେ ସିନ୍ଧୁନଦ ସଭ୍ୟତାର ସମ୍ପର୍କ କିଛି ରହିଥିଲା । କେତେକ ନକ୍ସା ଓ ମୋହର ଭିତରେ ବସ୍ତୁସ୍ତୁକର ସାଦୃଶ୍ୟ ରହିଛି । ପ୍ରାକ୍-ଅଶୀରିୟନ୍ ଯୁଗରେ

ମଧ୍ୟ ପାରସ୍ୟ ଓ ଭାରତ ମଧ୍ୟରେ ସମ୍ପର୍କ ଥିଲାଭଳି କେତେକ ପ୍ରମାଣ ମିଳୁଛି । ଆଭେସ୍ତାରେ ଭାରତର ଉଲ୍ଲେଖ ଅଛି ଏବଂ ସେଥିରେ ଉତ୍ତର ଭାରତର କିଛି ବର୍ଣ୍ଣନା ମଧ୍ୟ ରହିଛି । ଋଗ୍‌ବେଦରେ ପାରସ୍ୟ ସମ୍ପର୍କରେ ଉଲ୍ଲେଖ ରହିଛି । ପ୍ରଥମେ ଏହି ଦେଶବାସୀଙ୍କୁ 'ପାର୍ଥିବ' କୁହାଯାଉଥିଲା ଏବଂ ପରେ 'ପାରସିକ' କୁହାଗଲା । ଏଥିରୁ ଆଧୁନିକ 'ପାର୍ସୀ' ଶବ୍ଦର ଉତ୍ପତ୍ତି । ପାର୍ଥୀୟନ୍‌ମାନଙ୍କୁ 'ପାର୍ଥିବ' ନାମରେ ଉଲ୍ଲେଖ କରାଯାଇଛି । ଏପରିଭାବରେ, ଅଶୀନିୟନ୍ ବଂଶ ପୂର୍ବରୁ, ଅତି ପ୍ରାଚୀନ କାଳରୁ ପାରସ୍ୟ ଓ ଉତ୍ତର-ଭାରତ ପାରମ୍ପରିକ ଭାବରେ ପରସ୍ପର ପ୍ରତି ଆଗ୍ରହିତ ଥିଲେ । ସମ୍ରାଟ ସାଇରସ୍‌ଙ୍କ ସମୟରୁ ଅଧିକ ମଧ୍ୟ ସମ୍ପର୍କର ପ୍ରମାଣ ମିଳେ । ସାଇରସ୍ ଭାରତର ସୀମାନ୍ତରେ ସମ୍ଭବତଃ କାବୁଲ ଓ ବେଲୁଚିସ୍ତାନ ପର୍ଯ୍ୟନ୍ତ ଆସିଥିଲେ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଡାରିୟସ୍‌ଙ୍କ ରାଜତ୍ୱରେ ପାରସ୍ୟ ସାମ୍ରାଜ୍ୟ ସିନ୍ଧୁ ପ୍ରଦେଶ ଓ ସମ୍ଭବତଃ ପଶ୍ଚିମ ପଞ୍ଜାବର ଗୋଟିଏ ଅଂଶସମେତ ଉତ୍ତର-ପଶ୍ଚିମ ଭାରତ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ଏହି ପର୍ଯ୍ୟାୟକୁ ଭାରତୀୟ ଇତିହାସର ଜରାଥୁଷ୍ଟ୍ର ଯୁଗ ବୋଲି କେବେ କେବେ ଉଲ୍ଲେଖ କରାଯାଇଥାଏ ଏବଂ ଏହାର ପ୍ରଭାବ ଖୁବ୍ ବ୍ୟାପକ ହୋଇଥିବ । ଏହି ସମୟରେ ସୂର୍ଯ୍ୟ ପୂଜା ଉତ୍ସାହିତ କରାଯାଇଥିଲା ।

ଡାରିୟସ୍‌ଙ୍କ ସାମ୍ରାଜ୍ୟରେ ଭାରତୀୟ ପ୍ରଦେଶଟି ଅତୀବ ସମୃଦ୍ଧ ଓ ଜନବହୁଳ ଥିଲା । ଆଧୁନିକ କାଳର ବିଖଣ୍ଡିତ ମରୁ ଅଞ୍ଚଳଠାରୁ ସେ ସମୟର ସିନ୍ଧୁ ପ୍ରଦେଶ ନିଶ୍ଚୟ ଭିନ୍ନ ହୋଇଥିବ । ଭାରତୀୟ ପ୍ରଜାବର୍ଗଙ୍କ ସମ୍ପଦ ଓ ଧନବତ୍ତା ଏବଂ ଡାରିୟସ୍‌ଙ୍କୁ ଦିଆ ଯାଇଥିବା ଭେଟି ସମ୍ପର୍କରେ ହେରୋଡୋଟାସ୍ ଆମକୁ କହନ୍ତି, "ଆମର ଜଣା ସମସ୍ତ ଜାତିଙ୍କ ଅପେକ୍ଷା ଭାରତର ଜନସଂଖ୍ୟା ବୃହତ୍ତମ ଏବଂ ସେମାନେ ଦେବା ଭେଟି ମଧ୍ୟ ଅନ୍ୟମାନଙ୍କ ଅପେକ୍ଷା ଆନୁପାତିକ ଭାବରେ ଅଧିକ : ଏହାର ପରିମାଣ ହେଉଛି ୩୬୦ ଟେଲେଣ୍ଟ୍ ସୁନାଚୂର୍ଣ୍ଣ ଯାହା ଆଜିର ହିସାବରେ ଦଶଲକ୍ଷ ପାଉଣ୍ଡରୁ ଅଧିକ । ପାରସିକ ସେନାବାହିନୀର ଭାରତୀୟ ଅଂଶରେ ପଦାତିକ, ଅଶ୍ୱାରୋହୀ ଓ ରଥାରୋହୀ ସୈନିକ ଥିବା ହେରୋଡୋଟାସ୍ ଉଲ୍ଲେଖ କରିଛନ୍ତି । ପରେ ହାତୀ ବିଷୟ ମଧ୍ୟ କୁହାଯାଇଛି ।

ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀ ପୂର୍ବରୁ ଓ ପରବର୍ତ୍ତୀ ବହୁ ଯୁଗ ପର୍ଯ୍ୟନ୍ତ ପାରସ୍ୟ ଓ ଭାରତ ମଧ୍ୟରେ ବିଶେଷତଃ ଭାରତ ଓ ବେବିଲନ୍ ମଧ୍ୟରେ ବିଶେଷ ପରିମାଣରେ ପାରସ୍ୟ ଉପସାଗର ଦେଇ ବ୍ୟବସାୟ ଓ ବାଣିଜ୍ୟ ସମ୍ପର୍କ ରହିଥିବା ବିଷୟରେ କେତେକ ପ୍ରମାଣ ମିଳେ ।(୧) ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରୁ ସାଇରସ୍ ଓ ଡାରିୟସ୍‌ଙ୍କ ଅଭିଯାନ ଜରିଆରେ ପ୍ରତ୍ୟକ୍ଷ ସମ୍ପର୍କ ବଢ଼ି ଉଠିଲା । ଏହି ସମ୍ପର୍କ ଚାଲୁ ରହିଲା ଏବଂ କେହି କେହି କହନ୍ତି, ଅଶୋକଙ୍କ ସୌଧ-ଗୁଡ଼ିକରେ ପେର୍ସେପୋଲିସ ସ୍ଥାପତ୍ୟର ପ୍ରଭାବ ପଡ଼ିଥିଲା । ଉତ୍ତର-ପଶ୍ଚିମ ଭାରତ ଓ ଆଫଗାନିସ୍ତାନରେ ଗ୍ରୀକ୍-ବୌଦ୍ଧ କଳାର ଯେଉଁ ବିକାଶ ଘଟିଲା, ସେଥିରେ ମଧ୍ୟ ପାରସ୍ୟର ସ୍ପର୍ଶ ଲାଗିଥିଲା । ଖ୍ରୀଷ୍ଟପୂର୍ବ ଚତୁର୍ଥ ପଞ୍ଚମ ଶତାବ୍ଦୀରେ କଳା ଓ ସାଂସ୍କୃତିକ କାର୍ଯ୍ୟକଳାପ

---

(୧) ଅଧ୍ୟାପକ ଏ. ଭି. ୱିଲିଏମ୍‌ସ, କେମ୍ବ୍ରିଜ୍ ହିଷ୍ଟ୍ରି ଅଫ୍ ଇଣ୍ଡିଆ, ୧ମ ଖଣ୍ଡ, ପୃ.୩୨୯

ନିମନ୍ତେ ପ୍ରସିଦ୍ଧ ଭାରତର ଗୁପ୍ତ ଯୁଗରେ ପାରସ୍ୟ ସଙ୍ଗେ ଯୋଗାଯୋଗ ଅବ୍ୟାହତ ଥିଲା ।

କାବୁଲ କାନ୍ଦାହାର ଓ ସେଇସ୍ତାନର ସୀମାନ୍ତ ଅଞ୍ଚଳ, ଯାହା ବହୁଧା ରାଜନୈତିକ ଦିଗରୁ ଭାରତର ଅଂଶ ବିଶେଷ ଥିଲା, ପୁଣି ଥିଲା ଭାରତୀୟ ଓ ପାରସିକଙ୍କର ମିଳନସ୍ଥାନ, ପରବର୍ତ୍ତୀ ପାର୍ଥୀୟ କାଳରେ ସେ ଭୂଭାଗକୁ 'ସଫେଦ ଭାରତ' କୁହାଯାଉଥିଲା । ଏହି ସବୁ ଅଞ୍ଚଳ ବିଷୟରେ ଉଲ୍ଲେଖ କରିବାକୁ ଯାଇ ଫରାସୀ ବିଦ୍ୱାନ ଜେମ୍‌ସ ଡାର୍‌ମି ଷ୍ଟେଲର୍ କହନ୍ତି, "ହିନ୍ଦୁ ସଭ୍ୟତା ସେହି ସବୁ ଅଂଶରେ ପ୍ରଚଳିତ ଥିଲା; ଯାହା ବସ୍ତୁତଃ ଖ୍ରୀଷ୍ଟପୂର୍ବ ଓ ପରବର୍ତ୍ତୀ ଦୁଇଟି ଶତାବ୍ଦୀରେ 'ସଫେଦ ଭାରତ' ନାମରେ ପରିଚିତ ଥିଲା ଓ ମୁସଲମାନଙ୍କ ବିଜୟକାଳ ପର୍ଯ୍ୟନ୍ତ ପାରସିକ ଅପେକ୍ଷା ଅଧିକତର ଭାରତୀୟ ଭାବରେ ରହିଥିଲା ।" ଉତ୍ତରରେ ବ୍ୟବସାୟୀ ଓ ଯାତ୍ରୀ ସ୍ଥଳପଥ ଦେଇ ଭାରତକୁ ଆସିଥିଲେ । ଦକ୍ଷିଣ ଭାରତ ଅଧିକତଃ ସମୁଦ୍ର ଉପରେ ନିର୍ଭର କରିଥିଲେ ଓ ସମୁଦ୍ରବାହୀ ବାଣିଜ୍ୟ ତାକୁ ଅନ୍ୟାନ୍ୟ ଦେଶ ସଙ୍ଗେ ସଂଯୁକ୍ତ କରିଥିଲା । ଦକ୍ଷିଣରେ ଗୋଟିଏ ରାଜ୍ୟ ଓ ସାସାନିଙ୍କ ପାରସ୍ୟ ମଧ୍ୟରେ ରାଜଦୂତ ବିନିମୟ ହେବାର ଲିଖିତ ପ୍ରମାଣ ରହିଛି ।

ତୁର୍କୀ, ଆଫଗାନ ଓ ମୋଗଲଙ୍କ ଭାରତ ବିଜୟ, ମଧ୍ୟ ଓ ପଶ୍ଚିମ ଏସିଆ ସଙ୍ଗେ ଭାରତର ସମ୍ପର୍କର ବିକାଶ ଦ୍ରୁତତର କରିଥିଲା । ପଞ୍ଚଦଶ ଶତାବ୍ଦୀରେ (ୟୁରୋପର ଠିକ୍ ରାନେସାଁ ସମୟରେ) ସମରକନ୍ଦ ଓ ବୋଖାରାରେ ଯେଉଁ ତୈମୁରୀ ରାନେସାଁ ବା ପୁନର୍ଜାଗରଣ ପୁଷ୍ପିତ ହେଉଥିଲା, ତାହା ଖୁବ୍ ଶକ୍ତିଶାଳୀ ଭାବରେ ପାରସ୍ୟଦ୍ୱାରା ପ୍ରଭାବିତ ହୋଇଥିଲା । ବାବର ନିଜେ ଏହି ତୈମୁରୀୟ ବଂଶର ରାଜକୁମାର ଥିଲେ ଏବଂ ଏହି ବାତାବରଣରୁ ବାହାରି ଦିଲ୍ଲୀ ସିଂହାସନରେ ନିଜକୁ ପ୍ରତିଷ୍ଠିତ କଲେ । ତାହା ହେଉଛି ଷୋଡ଼ଶ ଶତାବ୍ଦୀ ପ୍ରାରମ୍ଭର କଥା; ଯେତେବେଳେ ସଫାବି ବାଦଶାହମାନଙ୍କ ଅମଳରେ ଗୋଟିଏ ଉଜ୍ଜ୍ୱଳ କଳାତ୍ମକ ପୁନର୍ଜାଗରଣ ପାରସ୍ୟରେ ଚାଲିଥିଲା । ଏହି ଯୁଗକୁ ପାରସିକ କଳାର ସ୍ୱର୍ଣ୍ଣଯୁଗ କୁହାଯାଏ । ବାବରଙ୍କ ପୁଅ ହୁମାୟୁନ ପରାଜିତ ହୋଇ ସଫାବି ଶାହଙ୍କ ନିକଟରେ ଆଶ୍ରୟ ନେଇଥିଲେ ଏବଂ ତାଙ୍କ ସାହାଯ୍ୟରେ ହିଁ ଭାରତକୁ ପୁଣି ଫେରିଆସି ଦିଲ୍ଲୀ ସିଂହାସନ ଦଖଲ କରିଥିଲେ । ଭାରତର ମୋଗଲ ସମ୍ରାଟମାନେ ପାରସ୍ୟ ସଙ୍ଗେ ଘନିଷ୍ଠ ସମ୍ପର୍କ ରକ୍ଷା କରିଥିଲେ ଏବଂ ଭାରତର ଉତ୍ତର ସୀମା ଅତିକ୍ରମ କରି ବହୁ ବିଦ୍ୱାନ ଓ କଳାବିତ୍ତ ଖ୍ୟାତି ଓ ସମ୍ପଦ ଅନ୍ୱେଷଣରେ ମହାନ୍ ମୋଗଲଙ୍କ ଜାକ୍‌ଜମକପୂର୍ଣ୍ଣ ଦରବାରରେ ଉପସ୍ଥିତ ହେଉଥିଲେ ।

ଭାରତୀୟ ଆଦର୍ଶ ଓ ପାରସିକ ପ୍ରେରଣା ସମ୍ମିଶ୍ରଣରେ ଭାରତରେ ନୂତନ ଏକ ସ୍ଥାପତ୍ୟ ବିକାଶ ଲାଭକଲା ଏବଂ ଦିଲ୍ଲୀ ଓ ଆଗ୍ରା ବହୁ ସୁନ୍ଦର ଓ ମହାନ୍ ସୌଧମାଳାରେ ପୂର୍ଣ୍ଣ ହେଲା । ଏଥି ଭିତରୁ ପ୍ରସିଦ୍ଧିରେ ଶ୍ରେଷ୍ଠ ହେଉଛି ତାଜମହଲ, ଯାହା ସମ୍ପର୍କରେ ଫରାସୀ ବିଦ୍ୱାନ୍ ଏମ୍. ଗ୍ରସେ କହିଛନ୍ତି ଯେ, ଏହା ହେଉଛି "ଭାରତର ଦେହରେ ପାରସିକ ଆତ୍ମାର ଅବତରଣ ।"

ମୂଳରୁ ଓ ଇତିହାସର ଦୀର୍ଘକାଳ ଭିତରେ ଭାରତ ଓ ପାରସ୍ୟ ଭିନ୍ନ ଅନ୍ୟ କୌଣସି ଦୁଇଟି ଦେଶ ଏତେ ଭିନ୍ନ ଘନିଷ୍ଠଭାବରେ ସମ୍ପର୍କିତ ହେବା ଖୁବ୍ କ୍ୱଚିତ୍ ଦୃଷ୍ଟିଗୋଚର ହୋଇଥାଏ । ଦୁର୍ଭାଗ୍ୟବଶତଃ, ଏହି ଦୀର୍ଘ ଅନ୍ତରଙ୍ଗ ତଥା ସମ୍ମାନଜନକ ସମ୍ପର୍କର ଶେଷ

ସୃଷ୍ଟି ହେଉଛି ନାଦିରଶାହଙ୍କ ଆକ୍ରମଣ—ଗୋଟାଏ ସ୍ୱଳ୍ପକାଳସ୍ଥାୟୀ ତଥା ଭୟାବହ ଦୁର୍ଘଟଣା ଯାହା ଦୁଇଶହ ବର୍ଷ ତଳେ ଘଟିଥିଲା ।

ତା'ପରେ ଆସିଲେ ଇଂରେଜ ଓ ଏସିଆରେ ଆମର ପଡ଼ୋଶୀମାନଙ୍କ ସଙ୍ଗେ ଯେଉଁସବୁ ପଥରେ ଆମର ସମ୍ପର୍କ ରହିଥିଲା, ସେ ସବୁ ରୁଦ୍ଧ କଲେ । ସମୁଦ୍ର ଦେଇ ନୂଆ ନୂଆ ମାର୍ଗ ଖୋଲିଗଲା, ଯାହା ଆମକୁ ୟୁରୋପ ବିଶେଷକରି ଇଂଲଣ୍ଡର ନିକଟବର୍ତ୍ତୀ କଲା; କିନ୍ତୁ ସ୍ଥଳପଥରେ ଭାରତ ସଙ୍ଗେ ପାରସ୍ୟ, ମଧ୍ୟ-ଏସିଆ ଓ ଚୀନର ସମ୍ପର୍କ କଟିଗଲା । ବର୍ତ୍ତମାନ ଯୁଗରେ କେବଳ ଆକାଶପଥ ଉନ୍ମୁକ୍ତ ହେବା ଫଳରେ ଆମେ ଆମର ପୁରାତନ ବନ୍ଧୁତା ପୁନରୁଦ୍ଧାର କଲୁ । ଏସିଆରୁ ଏହି ଅସ୍ୱାଭାବିକ ବିଚ୍ଛିନ୍ନତା ଭାରତରେ ବ୍ରିଟିଶ ରାଜତ୍ୱର ଅନ୍ୟତମ ଅତ୍ୟନ୍ତ ବିଲକ୍ଷଣ ତଥା ଦୁର୍ଭାଗ୍ୟଜନକ ପରିଣତି । (୧)

ସେ ଯାହାହେଉ, ଗୋଟାଏ ବନ୍ଧନ କିନ୍ତୁ ଆଧୁନିକ କାଳର ଇରାନ୍ ସଙ୍ଗେ ନୁହେଁ, ପୁରାତନ ପାରସ୍ୟ ସଙ୍ଗେ ବରାବର ଅତୁଟ ରହିଛି । ତେରଶହ ବର୍ଷପୂର୍ବେ ଇସ୍‌ଲାମ୍ ଯେତେବେଳେ ପାରସ୍ୟରେ ଉପନୀତ ହେଲା ପୁରାତନ ଜରଥୁଷ୍ଟ୍ର ଧର୍ମାବଲମ୍ବୀ କେତେ ଲକ୍ଷ ପାରସିକ ଭାରତକୁ ଆସିଗଲେ । ଏଠାରେ ସେମାନଙ୍କୁ ସ୍ୱାଗତ କରାଗଲା ଏବଂ ସେମାନଙ୍କର ଧର୍ମ ଓ ବିବିଧ ପ୍ରଥା ଅନୁସରଣ କରି ସେମାନେ ପଶ୍ଚିମ ଉପକୂଳରେ ବସବାସ କଲେ । ସେମାନଙ୍କ ଧର୍ମାଚରଣରେ କେହି ହସ୍ତକ୍ଷେପ କଲେନାହିଁ କିମ୍ବା ସେମାନେ ଅନ୍ୟ କାହା ଧର୍ମରେ ହସ୍ତକ୍ଷେପ କରିନାହାନ୍ତି । ଭାରତରେ ସେମାନେ ଆଜି ପାର୍ସି ନାମରେ ପରିଚିତ । ବଡ଼ ଅଦ୍ଭୁତ କଥା ଯେ ଏହି ପାର୍ସିମାନେ ନୀରବରେ ଓ ନିରାଡ଼ମ୍ବର ଭାବରେ ଭାରତ ପ୍ରତି ନିଜକୁ ଅନୁକୂଳ କରିନେଲେ, ଭାରତକୁ ନିଜର ଘର ମଣିଲେ; ତଥାପି ଗୋଟାଏ କ୍ଷୁଦ୍ର ସମ୍ପ୍ରଦାୟ ଭାବରେ ନିଜର ପୁରାତନ ବିବିଧ ପ୍ରଥାକୁ ଜାବୁଡ଼ି ଧରି ଲକ୍ଷଣୀୟ ଭାବରେ ଅଲଗା ହୋଇ ରହିଲେ । ନିଜ ସମ୍ପ୍ରଦାୟ ବାହାରେ ବିବାହ କରିବା ସେମାନଙ୍କ ପାଇଁ ନିଷିଦ୍ଧ ଏବଂ ଏଥିର ବ୍ୟତିକ୍ରମ ଖୁବ୍ ବିରଳ । ସେଥିଲାଗି ଭାରତରେ କେହି ବିସ୍ମିତ ହେବାର କିଛି ନଥିଲା; କାରଣ

(୧) ଅଧ୍ୟାପକ ଇ. ଜେ. ରେପ୍‌ସନ୍ ଲେଖିଛନ୍ତି : "ସମସ୍ତ ଅଧସ୍ତନ ଶାସକବର୍ଗଙ୍କୁ ଗୋଟିଏ ବିରାଟ ଶାସନ ପ୍ରଣାଳୀର ଅନ୍ତର୍ଭୁକ୍ତ କରିବାରେ ଯେଉଁ ଶକ୍ତି ସାଫଲ୍ୟ ହାସଲ କଲା, ତାହା ସାଧାରଣତଃ ସାମୁଦ୍ରିକ; ଏବଂ ସମୁଦ୍ରପଥଗୁଡ଼ିକ ଯେହେତୁ ତାର ନିୟନ୍ତ୍ରଣାଧୀନ, କରିସାରି ଦୃଷ୍ଟିରୁ ସ୍ଥଳପଥଗୁଡ଼ିକ ବନ୍ଦ କରିଦେବା ପାଇଁ ସେ ବାଧ୍ୟ ହୋଇଛି । ଭାରତୀୟ ସାମ୍ରାଜ୍ୟର ସୀମାନ୍ତରେ ଯେଉଁସବୁ ଦେଶ ଅବସ୍ଥିତ (ଯଥା—ଆଫଗାନିସ୍ତାନ, ବେଲୁଚିସ୍ତାନ ଓ ବର୍ମା) ସେମାନଙ୍କ ପ୍ରତି ବ୍ରିଟିଶ ନୀତିର ଏହା ହିଁ ଲକ୍ଷ୍ୟ ରହି ଆସିଛି । ଏପରି ଭାବରେ, ରାଜନୈତିକ ଏକତାର ପରିଣାମ ସ୍ୱରୂପ ଦେଖାଦେଲା ରାଜନୈତିକ ବିଚ୍ଛିନ୍ନତା; କିନ୍ତୁ ଏକଥା ମନେରଖିବା ଉଚିତ ଯେ ଏହି ରାଜନୈତିକ ବିଚ୍ଛିନ୍ନତା, ଭାରତର ଇତିହାସରେ, ସମ୍ପୂର୍ଣ୍ଣ ଭାବରେ ଅଧୁନାତନ ଓ ଅଭିନବ । ଅତୀତକୁ ବର୍ତ୍ତମାନ ଦେହରୁ ବିଚ୍ଛିନ୍ନ କରିବାରେ ଏହାର ପଟାନ୍ତର ନାହିଁ ।

ଏଠାର ରୀତି ହେଉଛି ନିଜ ବର୍ଣ୍ଣ ଭିତରେ ବିବାହ କରିବା । ପାର୍ସିଙ୍କ ଜନସଂଖ୍ୟା ବିଶେଷ ବୃଦ୍ଧି ଲାଭ କରିନି ଏବଂ ଏବେ ମଧ୍ୟ ସେମାନଙ୍କର ସମଗ୍ର ଜନସଂଖ୍ୟା ହୁଏତ ପ୍ରାୟ ଏକଲକ୍ଷ ହେବ । ବ୍ୟବସାୟ-ବାଣିଜ୍ୟରେ ସେମାନେ ଖୁବ୍ ସମୃଦ୍ଧ ହୋଇଛନ୍ତି ଏବଂ ସେମାନଙ୍କ ଭିତରୁ ଅନେକେ ଭାରତର ଶିଳ୍ପ ଉଦ୍ୟମକୁ ନେତୃତ୍ୱ ଦେଇଛନ୍ତି । ବସ୍ତୁତଃ ପାରସ୍ୟ ସଙ୍ଗେ ସେମାନଙ୍କର କୌଣସି ସମ୍ପର୍କ ନାହିଁ । ସମ୍ପୂର୍ଣ୍ଣଭାବରେ ସେମାନେ ଭାରତୀୟ; ତଥାପି ସେମାନେ ସେମାନଙ୍କର ପୁରାତନ ଐତିହ୍ୟ ଓ ସେମାନଙ୍କର ପ୍ରାଚୀନ ଜନ୍ମଭୂମିର ସ୍ମୃତି ସାଇତି ରଖିଛନ୍ତି ।

ଅଧୁନା ପାରସ୍ୟରେ ପ୍ରାକ୍‌ଇସଲାମ୍‌କାଳୀନ ପୁରାତନ ସଭ୍ୟତା ବିଷୟରେ ଜାଣିବାପାଇଁ ଗୋଟାଏ ପ୍ରବଳ ପ୍ରବଣତା ଦେଖାଦେଇଛି । ଏଥିରେ ଧର୍ମର କୌଣସି ସମ୍ପର୍କ ନାହିଁ । ଏହା ଏକ ସାଂସ୍କୃତିକ ତଥା ଜାତୀୟତାବାଦୀ ଜାଗରଣ, ଯାହା ପାରସ୍ୟର ଦୀର୍ଘ ତଥା ସୁଦୃଢ଼ ସାଂସ୍କୃତିକ ପରମ୍ପରା ଅନୁଧାବନ କରି ସେଥିରେ ଗର୍ବ ଅନୁଭବ କରେ ।

ବିଶ୍ୱର ଗତି ଏବଂ ପାରସ୍ପରିକ ସ୍ୱାର୍ଥ ଏସିଆର ଦେଶମାନଙ୍କୁ ପରସ୍ପରକୁ ଚାହିଁବା ପାଇଁ ବାଧ୍ୟ କରୁଛି । ୟୁରୋପୀୟ ଆଧିପତ୍ୟର ଯୁଗ ଗୋଟାଏ ଦୁଃସ୍ୱପ୍ନ ଭଳି ଅତୀତ ହୋଇଯାଉଛି ଏବଂ ଅତୀତର ବହୁ ସ୍ମୃତି ସେମାନଙ୍କୁ ପୁରାତନ ବନ୍ଧୁତା ଓ କେତେ ସାଧାରଣ ଦୁଃସାହସିକତା ବିଷୟ ସ୍ମରଣ କରାଇଦେଉଛି । ଏଥିରେ ସନ୍ଦେହ ନାହିଁ ଯେ ନିକଟ-ଭବିଷ୍ୟତରେ ଭାରତ ଆଜି ଯେପରି ଚୀନ ସଙ୍ଗେ ଘନିଷ୍ଠ ହେବାକୁ ଯାଉଛି, ପାରସ୍ୟ ସଙ୍ଗେ ମଧ୍ୟ ଘନିଷ୍ଠ ହେବ ।

ଦୁଇମାସ ତଳେ ଭାରତକୁ ଆସିଥିବା ପାରସିକ ସାଂସ୍କୃତିକ ପ୍ରତିନିଧି ଦଳର ନେତା ଅଲହାବାଦରେ କହିଛନ୍ତି : "ପାରସିକ ଓ ଭାରତୀୟ ଦୁଇ ଭାଇ ଭଳି ଯେଉଁମାନେ ଗୋଟାଏ ପାରସିକ କିଂବଦନ୍ତୀ ଅନୁସାରେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ଜଣେ ପୂର୍ବ ଦିଗକୁ ଓ ଅନ୍ୟ ଜଣକ ପଶ୍ଚିମ ଦିଗକୁ ଯାତ୍ରା କରିଥିଲେ, ସେମାନଙ୍କ ପରିବାରବର୍ଗ ପରସ୍ପରକୁ ଭୁଲିଯାଇଥିଲେ ଏବଂ ଗୋଟିଏ ବିଷୟ କେବଳ ଯାହା ସେମାନଙ୍କ ଭିତରେ ସମାନ ରହିଥିଲା । ତାହା ହେଉଛି, କେତୋଟି ପୁରାତନ ଗୀତର ରାଗିଣୀ ଯାହା ସେମାନେ ସବୁଦା ନିଜ ନିଜ ବଂଶୀରେ ବଜାଇଥାନ୍ତି । ଏହି କେତୋଟି ରାଗିଣୀ ଜରିଆରେ କେତେ ଶତାବ୍ଦୀ ପରେ ଦୁଇ ପରିବାର ପରସ୍ପରକୁ ଚିହ୍ନି ପାରିଲେ ଓ ପୁନର୍ବାର ମିଳିତ ହେଲେ । ଏଇଭଳି ଆମେ ବି ଆମ ବଂଶୀରେ ଆମର ସେହି ପୁରାତନ ଗୀତ ବଜାଇବାକୁ ଭାରତକୁ ଆସିଚୁ, ଏଇ ଆଶାରେ ଯେ ତାହା ଶୁଣି ଆମ ଭାରତୀୟ ଭାଇମାନେ ଆମକୁ ସେମାନଙ୍କର ଆପଣାର ଲୋକ ବୋଲି ଚିହ୍ନି ପାରିବେ ଓ ସେମାନେ ପାରସିକ ଭାଇଙ୍କ ସଙ୍ଗେ ପୁନର୍ବାର ମିଳିତ ହେବେ ।"

# ୭. ଭାରତ ଓ ଗ୍ରୀସ୍

ପ୍ରାଚୀନ ଗ୍ରୀସ୍‌କୁ ୟୁରୋପୀୟ ସଭ୍ୟତାର ଉଦ୍‌ଗମ ସ୍ଥଳ ମନେକରାଯାଇଥାଏ ଏବଂ ପ୍ରାଚ୍ୟ ଓ ପାଶ୍ଚାତ୍ୟର ମୌଳିକ ପ୍ରଭେଦ ବିଷୟରେ ବହୁତ କିଛି ଲେଖାଯାଇଛି । ଏହି ଭେଦ ମୁଁ ବୁଝିପାରେନାହିଁ । ତଥ୍ୟଜନିତ ବିଶେଷ ଭିତ୍ତି ଅଭାବରୁ ଏଥିର ବହୁତ କିଛି ମତେ ଅସ୍ପଷ୍ଟ ଓ ଅବୈଜ୍ଞାନିକ ପ୍ରତୀତ ହୁଏ । ଏଇ ଅଳ୍ପଦିନ ପର୍ଯ୍ୟନ୍ତ ବହୁ ୟୁରୋପୀୟ ଭାବୁକ ମନେ କରୁଥିଲେ ଯେ ଯାହା କିଛି ଉଚିତ ଅଥବା ଯୋଗ୍ୟ ତା'ର ମୂଳ ଗ୍ରୀସ୍ ନଇରୁବା ରୋମ୍‌ରେ ନିହିତ ଥିଲା । ସାର୍ ହେନ୍‌ରି ମେଇନ୍ କେଉଁଠି ଗୋଟାଏ ଜାଗାରେ କହିଛନ୍ତି ଯେ ପ୍ରକୃତିର ଅନ୍ଧ-ବଳ ବ୍ୟତୀତ ବିଶ୍ୱରେ ସେପରି କୌଣସି ଗତିଶୀଳ ବସ୍ତୁ ନାହିଁ ଯାହା ମୂଳତଃ ଗ୍ରୀକ୍ ନୁହେଁ । ୟୁରୋପର ଶାସ୍ତ୍ରୀୟ ପଣ୍ଡିତମାନେ ଗ୍ରୀକ୍ ଓ ଲାଟିନ୍ ବିଦ୍ୟାରେ ଗଭୀର ପାଣ୍ଡିତ୍ୟ ଲାଭ କରିଥିଲେ ସୁଦ୍ଧା ଭାରତ ଓ ଚୀନ ସମ୍ପର୍କରେ କିଛି ଜାଣିନଥିଲେ କହିଲେ ଚଳେ । ତଥାପି ଅଧ୍ୟାପକ ଇ. ଆର୍. ଡଡ୍‌ସ୍ ଜୋର୍ ଦେଇ କହନ୍ତି ଯେ "ସେହି ପ୍ରାଚ୍ୟ ପୃଷ୍ଠଭୂମି ଯେଉଁଥିରୁ ଗ୍ରୀକ୍ ସଂସ୍କୃତି ମୁଣ୍ଡ ଟେକି ଉଠିଲା, ଶାସ୍ତ୍ରୀୟ ପଣ୍ଡିତଙ୍କ ମନ ବ୍ୟତୀତ, ସେଥିରୁ କେବେହେଲେ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହେଇନାହିଁ ।

ଅନେକ କାଳ ପର୍ଯ୍ୟନ୍ତ ୟୁରୋପରେ ବିଦ୍ୱତ୍ତା ଗ୍ରୀକ୍, ହିବ୍ରୁ ଓ ଲାଟିନ୍‌ରେ ଆବଶ୍ୟକତା ସୀମିତ ଥିଲା ଏବଂ ସେଥିରୁ ବିଶ୍ୱର ଯେଉଁ ଚିତ୍ର ଫୁଟିଉଠୁଥିଲା, ତାହା ଥିଲା ଭୂମଧ୍ୟସାଗରୀୟ ବିଶ୍ୱର ଚିତ୍ର । ଏହାର ମୌଳିକ ଧାରଣା ପୁରାତନ ରୋମାନ୍‌ମାନଙ୍କ ଧାରଣାଠାରୁ ସାରତଃ ଭିନ୍ନ ନଥିଲା, ଯଦିଓ ଅବଶ୍ୟମ୍ଭାବୀଭାବରେ ସେଥିରେ ବହୁତ କିଛି ପରିବର୍ତ୍ତନ ଓ ଅନୁକୂଳନ କରିବାକୁ ପଡ଼ୁଥିଲା । ଇତିହାସ ଓ ଭୂ-ରାଜନୀତିର ଅବଧାରଣା ଏବଂ ସଂସ୍କୃତି ଓ ସଭ୍ୟତାର ବିକାଶ କେବଳ ଯେ ସେହି ଭାବଦ୍ୱାରା ପରିଚାଳିତ ହେଇଥିଲା ତାହା ନୁହେଁ; ବରଂ ବୈଜ୍ଞାନିକ ପ୍ରଗତିର ମଧ୍ୟ ପଥରୋଧ କରିଥିଲା । ମଣିଷର ମନ-ଜଗତକୁ ଅଧିକାର କରିଥିଲେ ପ୍ଲେଟୋ ଓ ଏରିଷ୍ଟୋଟଲ୍ । ଅତୀତରେ ଏସିଆର ଲୋକେ ଯାହା କରିଥିଲେ ସେ ସମ୍ପର୍କରେ କିଛି ଜ୍ଞାନ ଯଦି ୟୁରୋପୀୟ ମନରେ ସଞ୍ଚରୁଥିଲା, ତାହା ସ୍ୱେଚ୍ଛାରେ ଗୃହୀତ ହେଉନଥିଲା । ସେଥିପ୍ରତି ଗୋଟାଏ ଅଜ୍ଞାତ ପ୍ରତିରୋଧ ବରାବର ରହୁଥିଲା ଓ ପୂର୍ବବର୍ତ୍ତୀ ଚିତ୍ର ସଙ୍ଗେ କୌଣସିମତେ ତାକୁ ଯୋଡ଼ିବାର ଉଦ୍ୟମ ରହୁଥିଲା । ଯଦି ପଣ୍ଡିତମାନେ ଏପରି ବିଶ୍ୱାସ କରୁଥିଲେ, ଅଶିକ୍ଷିତ ଜନତା ପ୍ରାଚ୍ୟ ଓ ପାଶ୍ଚାତ୍ୟର କୌଣସି ମୌଳିକ ପ୍ରଭେଦ ଉପରେ ଆହୁରି ଅଧିକ ଭାବରେ ବିଶ୍ୱାସ ସ୍ଥାପନକରି ନଥିବେ କାହିଁକି ? ୟୁରୋପର ଶିଳ୍ପୀକରଣ ଓ ତତ୍ଜନିତ ବୈଷୟିକ ପ୍ରଗତି ଜନମାନସରେ ଏହି ପାର୍ଥକ୍ୟ ଆହୁରି ଦୃଢ଼ତର କଲା ଏବଂ ଗୋଟାଏ ଅଭିନବୀକରଣର ଏକ ବିଚିତ୍ର ପ୍ରକ୍ରିୟାରେ ଗ୍ରୀସ୍ ଆଧୁନିକ ୟୁରୋପ ଓ ଆମେରିକାର ଜନକ-ଜନନୀର ସ୍ଥାନ ଅଧିକାର କଲା । ବିଶ୍ୱର ଅତୀତ ସମ୍ପର୍କୀୟ ଅଧିକ କିଛି ଜ୍ଞାନ ମୁଷ୍ଟିମେୟ ଭାବୁକଙ୍କ ମନରେ ଏହି ସବୁ ସିଦ୍ଧାନ୍ତ ପଛର ବିଶ୍ୱାସକୁ ଦୋହଲାଇ ଦେଉଥିଲା । ତଥାପି ଜନସାଧାରଣଙ୍କ ମନରେ, ସେମାନେ ବୁଦ୍ଧିମାନ ହୁଅନ୍ତୁ କି ନିର୍ବୋଧ ହୁଅନ୍ତୁ, ଏହିସବୁ ଶତ ଶତ ବର୍ଷର ପୁରାତନ ଧାରଣା ଜୀବିତ ଥିଲା; ସେମାନଙ୍କର ଚେତନାର ଉପର ସ୍ତରରେ କେତେ ଆଭାସ ଇତସ୍ତତଃ ଭାସି ଭାସି ସେମାନଙ୍କ କଳ୍ପନାର ଦୃଶ୍ୟଚିତ୍ର ଭିତରେ ମଉଳି

ଯାଉଥିଲା ।

ୟୁରୋପ ଓ ଆମେରିକାରେ ଖୁବ୍ ବ୍ୟାପକଭାବରେ ଶିଳ୍ପିକ ପ୍ରଗତି ସାଧିତ ହୋଇଛି ଏବଂ ଏ ଦିଗରେ ଏସିଆ ବହୁତ ପଛରେ ପଡ଼ିଛି—ଏହି ବୋଧ ବିନା ଅନ୍ୟ କେଉଁ ବିଷୟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶବ୍ଦର ବ୍ୟବହାର ମୁଁ ବୁଝିପାରେନାହିଁ । ଏହି ଶିଳ୍ପୀକରଣ ପୃଥିବୀର ଇତିହାସରେ ଏକରକମ ନୂତନ ଏବଂ ଏହା ପୃଥିବୀକୁ ଅନ୍ୟ ଯାହା କିଛି ଅପେକ୍ଷା ଅଧିକତର ଭାବରେ ପରିବର୍ତ୍ତିତ କରିଛି ଓ କରିବାରେ ଲାଗିଛି । ହେଲେନିକ୍ ସଭ୍ୟତା ଓ ଆଧୁନିକ ୟୁରୋପୀୟ ଓ ମାର୍କିନ ସଭ୍ୟତାର ଭିତରେ କୌଣସି ମୂଳଗତ ସମ୍ପର୍କ ନାହିଁ । ଆଜିର ଏ ଯେଉଁ ବିଶ୍ୱର ଯେ ଜୀବନକୁ ସୁଖ-ସ୍ୱାଚ୍ଛନ୍ଦ୍ୟ ଯୋଗାଇବା ହିଁ ପ୍ରକୃତରେ ଗୁରୁତ୍ୱପୂର୍ଣ୍ଣ; ଗ୍ରୀକ୍ ଅବା ଅନ୍ୟ ଯେକୌଣସି ପ୍ରାଚୀନ ସାହିତ୍ୟର ଭାବ ସଙ୍ଗେ ଏହାର କୌଣସି ଆତ୍ମୀୟତା ନାହିଁ । ଗ୍ରୀକ୍, ଭାରତୀୟ, ଚୈନିକ ଓ ପାରସିକମାନେ ସର୍ବଦା ଜୀବନର ସେପରି ଏକ ଦର୍ଶନ ଓ ଧର୍ମ ଅନ୍ୱେଷଣ କରୁଥିଲେ, ଯାହା ସେମାନଙ୍କର ସମସ୍ତ କାର୍ଯ୍ୟ-କଳାପକୁ ପ୍ରଭାବିତ କରୁଥିଲା ଏବଂ ଗୋଟାଏ ସଙ୍ଗତିବୋଧ ଓ ଭାରସାମ୍ୟ ନିମନ୍ତେ ଯାହା ଉଦ୍ଦିଷ୍ଟ ଥିଲା । ଜୀବନର ପ୍ରତ୍ୟେକ ବିଭାବରେ—ସାହିତ୍ୟ, କଳା ଓ ଅନୁଷ୍ଠାନମାନଙ୍କରେ ଏହି ଆଦର୍ଶ ଜାଗ୍ରତ ରହିଛି ଓ ଗୋଟାଏ ପରିମାଣବୋଧ ଓ ସମ୍ପୂର୍ଣ୍ଣତା ସୃଷ୍ଟି କରୁଛି । ହୁଏତ ଏହିସବୁ ଧାରଣା ପଛରେ ଯଥେଷ୍ଟ ଔଚିତ୍ୟ ନଥିଲା ଏବଂ ଜୀବନର ପ୍ରକୃତ ଅବସ୍ଥା ହୁଏତ ଭିନ୍ନ ଧରଣର ହୋଇଥିବ । ତଥାପି ମଧ୍ୟ, ଆଧୁନିକ ୟୁରୋପ ଓ ଆମେରିକାବାସୀ ସେମାନଙ୍କର ବିଶ୍ରାନ୍ତ ମୁହୂର୍ତ୍ତରେ ଯାହାଙ୍କୁ ଏତେ ପ୍ରଶଂସା କରନ୍ତି, ସେମାନଙ୍କ ହୃଦୟର କୌଣସି ଅଭିଳାଷକୁ ସନ୍ତୋଷ ଦେବା ଉଦ୍ଦେଶ୍ୟରେ ଯାହାଙ୍କ ସଙ୍ଗେ କେଉଁ ଦୂର ଅତୀତରୁ ସମ୍ପର୍କିତ ହେବାକୁ ଚାହାନ୍ତି କିମ୍ବା ଆଧୁନିକ ଅସ୍ତିତ୍ୱର ନିଷ୍ଠୁର ତଥା ଉତ୍ତପ୍ତ ମରୁଭୂମିରେ କୌଣସି ରକମ ମରୂଦ୍ୟାନ ଲାଭ କରିବାକୁ ଚାହାଁନ୍ତି, ସେହି ପ୍ରାଚୀନ ଗ୍ରୀକ୍‌ମାନଙ୍କ ପାଖରୁ ଆଜି କେତେ ଯେ ଦୂରେଇଯାଇଚନ୍ତି ମନେରଖିବା ପ୍ରକୃତରେ ଗୁରୁତ୍ୱପୂର୍ଣ୍ଣ ।

ପ୍ରାଚ୍ୟ ଓ ପାଶ୍ଚାତ୍ୟରେ, ପ୍ରତ୍ୟେକ ଦେଶ ଓ ଜାତିର ଗୋଟାଏ ବ୍ୟକ୍ତିତ୍ୱ, ଗୋଟାଏ ବାର୍ତ୍ତା ଥିଲା ଏବଂ ପ୍ରତ୍ୟେକେ ନିଜ ନିଜ ଧାରାରେ ଜୀବନର ବିବିଧ ସମସ୍ୟାର ସମାଧାନ ଉଦ୍ୟମ କରିଥିଲେ । ନିଜ ଧାରାରେ, ଗ୍ରୀସ୍ ଗୋଟାଏ କିଛି ନିଶ୍ଚିତ ଓ ଐଶ୍ୱର୍ଯ୍ୟଯୁକ୍ତ; ସେପରି ମଧ୍ୟ ଭାରତ, ସେପରି ପାରସ୍ୟ । ପ୍ରାଚୀନ ଭାରତ ଓ ପ୍ରାଚୀନ ଗ୍ରୀସ୍ ପରସ୍ପରଠାରୁ ଭିନ୍ନ ଥିଲେ । ତଥାପି ଚିନ୍ତାଜଗତରେ ପ୍ରାଚୀନ ଭାରତ ଓ ପ୍ରାଚୀନ ଚୀନର ବହୁ ପ୍ରଭେଦ ସତ୍ତ୍ୱେ ଯେପରି ଗୋଟାଏ ପାରିବାରିକ ସମ୍ବନ୍ଧ ଥିଲା, ସେହିପରି ସମ୍ବନ୍ଧ ଥିଲା ପ୍ରାଚୀନ ଭାରତ ଓ ପ୍ରାଚୀନ ଗ୍ରୀସ୍‌ର । ଏ ସମସ୍ତଙ୍କର ସେହି ଏକାଧରଣର ଉଦାର, ସହିଷ୍ଣୁ, ଓ ସଗୁଣ-ବ୍ରହ୍ମୋପାସକ ଦୃଷ୍ଟିଭଙ୍ଗୀ, ଜୀବନରେ ଏବଂ ପ୍ରକୃତିର ବିସ୍ମୟକର ସୌନ୍ଦର୍ଯ୍ୟ ଓ ଅନନ୍ତ ବୈଚିତ୍ର୍ୟରେ ଆନନ୍ଦ, କଳାପ୍ରୀତି ଏବଂ ଗୋଟାଏ ପୁରାତନ ଜାତିର ସଞ୍ଚିତ ଅଭିଜ୍ଞତାରୁ ଯେଉଁ ପ୍ରଜ୍ଞା ଲାଭ ହୁଏ ତାହା ଥିଲା । ପ୍ରତ୍ୟେକେ ନିଜ ନିଜ ପ୍ରାକୃତିକ ପରିବେଷ୍ଟନୀ ଦ୍ୱାରା

ପ୍ରଭାବିତ, ଜାତୀୟ ପ୍ରତିଭା ଅନୁସାରେ ବିକାଶଲାଭ କରିଥିଲେ ଏବଂ ଅନ୍ୟମାନଙ୍କ ଅପେକ୍ଷା ଅଧିକଭାବେ ଜୀବନର କୌଣସି ଗୋଟାଏ ବିଭାବ ଉପରେ ଜୋର୍ ଦେଉଥିଲେ । ଏହି ଅଭିବ୍ୟକ୍ତିର ନିର୍ଦ୍ଦିଷ୍ଟତା ସମସ୍ତଙ୍କ ପକ୍ଷରେ ସମାନ ନଥିଲା । ଗ୍ରୀକ୍‌ମାନେ ଗୋଟାଏ ଜାତି ଭାବରେ ବର୍ତ୍ତମାନ ଉପରେ ହିଁ ଅଧିକତର ଉଦ୍ଦେଶ୍ୟ ଓ ମହତ୍ତ୍ୱ ଅର୍ପଣ କରି ଜୀବନ ଅତିବାହିତ କରିଥିବେ ଏବଂ ଯେଉଁ ସୌନ୍ଦର୍ଯ୍ୟ ସେମାନଙ୍କର ଦୃଷ୍ଟିଗୋଚର ହେଉଥିଲା ଅଥବା ଯାହା ସେମାନେ ନିଜେ ସୃଷ୍ଟି କରିଥିଲେ, ସେଥିରୁ ଆନନ୍ଦ ଓ ସଙ୍ଗତି ଉପଲବ୍ଧି କରିଥିବେ । ଭାରତୀୟମାନେ ମଧ୍ୟ ସାଂପ୍ରତିକ ସେହି ଆନନ୍ଦ ଓ ସଙ୍ଗତି ଉପଲବ୍ଧି କରିଥିଲେ; କିନ୍ତୁ ସେଥି ସଙ୍ଗେ ସଙ୍ଗେ ସେମାନଙ୍କର ଦୃଷ୍ଟି କେଉଁ ଗଭୀରତର ଜ୍ଞାନ ପ୍ରତି ନିବଦ୍ଧ ଥିଲା ଏବଂ ସେମାନଙ୍କର ମନ ନାନା ଅଦ୍ଭୁତ କଳ୍ପନା ଯେନ ସଂଚରଣ କରୁଥିଲା । ଚୀନାମାନେ ଏହି ସବୁ ପ୍ରଶ୍ନ ଓ ସେଥିର ରହସ୍ୟ ସମ୍ପର୍କରେ ସମ୍ପୂର୍ଣ୍ଣ ଅବହିତ ରହି ସେମାନଙ୍କ ପ୍ରଜ୍ଞାର ନିର୍ଦ୍ଦେଶରେ ସେ ସବୁରେ ଜଡ଼ିତ ହେବା ଏଡ଼ାଇ ପାରିଥିଲେ । ପ୍ରତ୍ୟେକେ ନିଜ ନିଜ ଧାରାରେ ଭିନ୍ନ ଭିନ୍ନ ଭାବରେ ଜୀବନର ପୂର୍ଣ୍ଣତା ଓ ସୌନ୍ଦର୍ଯ୍ୟ ବ୍ୟକ୍ତ କରିବା ଉଦ୍ୟମ କରିଥିଲେ । ଇତିହାସ ପ୍ରମାଣ କରିଚି ଯେ ଭାରତ ଓ ଚୀନର ଦୃଢ଼ତର ଭିତ୍ତି ଓ ବୃହତ୍ତର ସ୍ଥାୟିତ୍ୱଶକ୍ତି ଥିଲା । ଉଭୟର ଭିତ୍ତି ଦୋହଲି ଯାଇଥିଲେ ମଧ୍ୟ, ଉଭୟର ଅବନତି ଘଟିଥିଲେ ମଧ୍ୟ ଏବଂ ଭବିଷ୍ୟତର କୌଣସି ସ୍ପଷ୍ଟ ଚିତ୍ର ଆଖି ଆଗରେ ନଥିଲେ ମଧ୍ୟ ସେମାନେ ଏ ପର୍ଯ୍ୟନ୍ତ ତିଷ୍ଠି ପାରିଚନ୍ତି । ପୁରାତନ ଗ୍ରୀସ୍ ତାର ସମସ୍ତ ସାଫଲ୍ୟ ସତ୍ତ୍ୱେ ସ୍ୱଳ୍ପାୟୁ ଥିଲା; ଯଦିଓ ସେ ଉତ୍ତରଜୀବନ ଲାଭ କରିପାରିଲା, ତାହା ତାର କେତେକ ଅଦ୍ଭୁତ କୀର୍ତ୍ତି, ଅନୁବର୍ତ୍ତୀ ସଂସ୍କୃତିମାନଙ୍କ ଉପରେ ତାର ପ୍ରଭାବ ଏବଂ ପ୍ରାଚୁର୍ଯ୍ୟଭରା ଜୀବନର ସେହି ସ୍ୱଳ୍ପକାଳସ୍ଥାୟୀ ଉଜ୍ଜ୍ୱଳ ଅବସର ସ୍ମୃତି ଦ୍ୱାରା କେବଳ । ହୁଏତ ବର୍ତ୍ତମାନରେ ଏହା ବିଶେଷ ଲୁପ୍ତ ହୋଇ ପଡ଼ିଥିଲା ବୋଲି ଅତୀତରେ ପର୍ଯ୍ୟବସିତ ହେଲା ।

ଆଜିର ୟୁରୋପୀୟ ଜାତିମାନେ ନିଜନିଜକୁ ସେହି ହେଲେନିକ୍ ଅର୍ଥାତ୍ ଗ୍ରୀସୀୟ ଆତ୍ମାର ସନ୍ତାନ ବୋଲି ଅଭିହିତ କରୁଥିଲେ ମଧ୍ୟ, ଆଜିର ଭାରତ ଆତ୍ମା ଓ ଦୃଷ୍ଟିଭଙ୍ଗୀ ଦିଗରୁ, ପ୍ରାଚୀନ ଗ୍ରୀସ୍ ପ୍ରତି ଅଧିକ ଅନ୍ତରଙ୍ଗ । ଆମେ ଏକଥା ଭୁଲିଯାଉଥାଉଁ; କାରଣ ଉତ୍ତରାଧିକାର ସୂତ୍ରରେ ଆମେ ସେପରି କିଛି ବଦ୍ଧଧାରଣା ଲାଭକରିଚୁ ଯାହା ଯୁକ୍ତିସଙ୍ଗତ ଚିନ୍ତାର ପଥ ଅବରୋଧ କରି ବସୁଚି । ଅନେକେ କହନ୍ତି ଯେ ଭାରତ ଧର୍ମପରାୟଣ, ଦାର୍ଶନିକ ଦୃଷ୍ଟିଭଙ୍ଗୀ-ସମ୍ପନ୍ନ, ଅତିକଳ୍ପନାପ୍ରବଣ, ଆଧିଭୌତିକ ଏହି ବିଶ୍ୱ ପ୍ରତି ଉଦାସୀନ ଏବଂ ପରଲୋକ ଓ ପରକାଳର ସ୍ୱପ୍ନରେ ନିମଗ୍ନ । ଆମକୁ ଅନେକେ କହନ୍ତି ଏବଂ ଯେଉଁମାନେ କହନ୍ତି ସେମାନେ ହୁଏତ ଚାହାନ୍ତି ମଧ୍ୟ ଯେ ଭାରତ ଚିନ୍ତାରେ ଓ ଅତିକଳ୍ପନାରେ ବୁଡ଼ିରହିଲେ ସେମାନେ ଏହି ଭାବୁକମାନଙ୍କଦ୍ୱାରା କୌଣସି ପ୍ରକାର ବାଧାପ୍ରାପ୍ତ ନହୋଇ ଏଇ ବିଶ୍ୱ ଓ ତାର ପୂର୍ଣ୍ଣତର ଜୀବନକୁ ଅଧିକତର କରିବେ ଓ ସେଥିର ଆନନ୍ଦ ଉପଭୋଗ କରିବେ । ସତ୍ୟ କହିଲେ ଭାରତରେ ଏ ସବୁ ଥିଲା; କିନ୍ତୁ ଏହାଠାରୁ ଆହୁରି କିଛି ଅଧିକ ମଧ୍ୟ ଥିଲା । ବାଲ୍ୟାବସ୍ଥାର ସରଳତା ଓ ବିକାରହୀନତା, ଯୌବନର ଭାବୋଦ୍‌ବେଗ ଓ ତ୍ୟାଗପରାୟଣତା ଏବଂ ବ୍ୟଥା

ଓ ପ୍ରମୋଦ ଅଭିଜ୍ଞତାସଞ୍ଜାତ ପ୍ରୌଢ଼ାବସ୍ଥାର ପରିପକ୍ୱପ୍ରଜ୍ଞା ତାର' ଥିଲା ଏବଂ ଥରକୁଥର ସେ ତାର ବାଲ୍ୟ, ଯୌବନ ଓ ପ୍ରୌଢ଼ତ୍ୱ ପୁନର୍ଜୀବିତ କରିଛି । ବୟସ ଓ ଆକାରର ପ୍ରବଳ ଜଡ଼ତା ତାକୁ ଭାରାକ୍ରାନ୍ତ କରିଥିଲା, ଅପଯଶକାରକ ପ୍ରଥା ଓ ମନ୍ଦ ଆଚରଣଗୁଡ଼ିକ ତାର ପ୍ରାଣଶକ୍ତି ଦୁର୍ବଳ କରୁଥିଲେ, ବହୁ ପରଜୀବୀ ତାର ଦେହରେ ଲାଗି ରହି ତାର ରକ୍ତ ଶୋଷଣ କରୁଥିଲେ । କିନ୍ତୁ ଏ ସବୁ ପଛରେ ରହିଥିଲା ଯୁଗ ଯୁଗର ଶକ୍ତି ଓ ଗୋଟାଏ ପ୍ରାଚୀନ ଜାତିର ସୂକ୍ଷ୍ମଚେତନ ପ୍ରଜ୍ଞା; କାରଣ ଆମେ ଅତି ପ୍ରାଚୀନ ଏବଂ ବହୁ ପଥହରା ଶତାବ୍ଦୀର ଭାଷା ଆମ କର୍ଣ୍ଣକୁହରରେ ଗୁଞ୍ଜରିତ ହୁଏ । ଯଦିଓ ସେ ସବୁ ଅତୀତ ଯୁଗର ସ୍ମୃତି ଓ ସ୍ୱପ୍ନ ଆମ ଭିତରେ ବରାବର ରହିଛି, ତଥାପି ଥରକୁ ଥର କିପରି ଯୌବନ ଆମ ଶରୀରରେ ପୁନର୍ବାର ସଞ୍ଚରିପାରେ ତାର କୌଶଳ ଆମେ ଜାଣିଥିଲୁ ।

ଏହି ଯେତେ ଦୀର୍ଘ ଯୁଗ ଭିତରେ ଭାରତକୁ ଯାହା ପ୍ରାଣବାନ୍ ତଥା ଗତିଶୀଳ ରଖି ପାରିଲା ତାହା କୌଣସି ଗୁପ୍ତ ସିଦ୍ଧାନ୍ତ ଅଥବା ଗୂଢ଼ଜ୍ଞାନ ନୁହେଁ; ବରଂ ଗୋଟାଏ ସମ୍ବେଦନଶୀଳ ମାନବତା, ଗୋଟାଏ ବିଚିତ୍ର ତଥା ସହନଶୀଳ ସଂସ୍କୃତି ଏବଂ ଜୀବନ ଓ ତାର ଯେତେ ରହସ୍ୟମୟ ମାର୍ଗର ଗଭୀର ପରିଜ୍ଞାନ । ତାର ଐଶ୍ୱର୍ଯ୍ୟଶାଳୀ ସାହିତ୍ୟ ଓ କଳା ଯାହାର ସ୍ୱଳ୍ପାଂଶ ମାତ୍ର ଆଜି ଲୋକଲୋଚନକୁ ଆସିଛି ଏବଂ ବହୁତ କିଛି ହୁଏତ ଗୋପନୀୟ ଅବସ୍ଥାରେ ରହିଛି କିମ୍ବା ପ୍ରକୃତି ଅଥବା ମଣିଷର ସୌନ୍ଦର୍ଯ୍ୟ-ବିନାଶ ଲିପ୍ସାରେ ନଷ୍ଟ ହୋଇ ଯାଇଛି, ସେଥିରୁ ଯୁଗ ପରେ ଯୁଗ ତାର ପ୍ରଚୁର ପ୍ରାଣଶକ୍ତି ପ୍ରବାହିତ ହୋଇଛି । ଏଲିଫେଣ୍ଟା-ଗୁହାର ତ୍ରିମୂର୍ତ୍ତି ସ୍ୱୟଂ ଭାରତର ବହୁମୁଖୀ ପ୍ରତିମୂର୍ତ୍ତି ବି ହୋଇପାରେ । ସେହି ମୂର୍ତ୍ତିର ଗଭୀର ଜ୍ଞାନ ଓ ବୁଝାମଣାପୂର୍ଣ୍ଣ, ବାଧକର ତଥା ଶକ୍ତିଶାଳୀ ଦୃଷ୍ଟି ଆମକୁ ଚାହିଁଛି । ଅଜନ୍ତା ଭିତ୍ତିଚିତ୍ରଗୁଡ଼ିକରେ ଜୀବନ ଓ ସୌନ୍ଦର୍ଯ୍ୟ, ପ୍ରେମ ଓ ସୌକୁମାର୍ଯ୍ୟ ପୂର୍ଣ୍ଣ ହୋଇ ରହିଛି; ତଥାପି ଆହୁରି କିଛି ଗଭୀରତର, ଆହୁରି କିଛି ପାରଲୌକିକତାର ଆଭାସ ମିଳୁଛି ।

ଭୂଗୋଳ ଓ ଜଳବାୟୁ ଦିଗରୁ ଗ୍ରୀସ୍ ଭାରତଠାରୁ ଭିନ୍ନ । ଭାରତରେ ଯେପରି, ଗ୍ରୀସ୍‌ରେ ନଦୀ ପଦବାଚ୍ୟ ସେପରି କିଛି ନଦୀ ନାହିଁ, ଅରଣ୍ୟ ନାହିଁ, ବୃହଦାକାର ବୃକ୍ଷ ବି ନାହିଁ । ସମୁଦ୍ର, ତାର ବିଶାଳତା ଓ ପରିବର୍ତ୍ତିତ ଅବସ୍ଥା ଯେନ ଭାରତୀୟମାନଙ୍କ ଅପେକ୍ଷା ଅଧିକ ଭାବରେ ଗ୍ରୀକ୍‌ମାନଙ୍କୁ ପ୍ରଭାବିତ କରିଥିଲା । ଅବଶ୍ୟ ଭାରତର ସମୁଦ୍ର ଉପକୂଳ ନିକଟରେ ଯେଉଁମାନେ ବାସକରିଥାନ୍ତି, ସେମାନଙ୍କ କଥା ସ୍ୱତନ୍ତ୍ର । ଭାରତର ଜୀବନ ଅଧିକତର ଭାବରେ ମହାଦେଶୀୟ ଧରଣର ଥିଲା— ବିଶାଳ ପ୍ରାନ୍ତର ଓ ଅତିକାୟ ପର୍ବତମାଳା, ମହାନ୍ ନଦନଦୀ ଓ ବିସ୍ତୃତ ଅରଣ୍ୟାନୀ । ଗ୍ରୀସ୍‌ରେ ମଧ୍ୟ ପର୍ବତ କେତେ ଥିଲା ଏବଂ ସେମାନେ ଓଲିମ୍ପାସ୍ ପର୍ବତକୁ ସେମାନଙ୍କ ଦେବଦେବୀଙ୍କ ଆବାସ ମଣୁଥିଲେ, ଯେପରି ଭାରତୀୟମାନେ ହିମାଳୟକୁ ସେମାନଙ୍କର ଦେବଦେବୀ ଓ ଋଷିମାନଙ୍କ ଆସ୍ଥାନ ମନେକରିଥାନ୍ତି । ଉଭୟ ଦେଶରେ, ଇତିହାସ ସଙ୍ଗେ ଅବିଭାଜ୍ୟ ଭାବରେ ମିଶ୍ରିତ, ପୁରାଣଗାଥା ବିକାଶ ଲାଭ କରିଥିଲା ଏବଂ ସେଥିରେ ପ୍ରକୃତ ଘଟଣା ଓ କାଳ୍ପନିକ ଘଟଣା ଭିତରେ ସୀମାରେଖା ଟାଣିବା ସମ୍ଭବ ନଥିଲା । ପ୍ରାଚୀନ ଗ୍ରୀକ୍‌ମାନେ ଯେପରି କିଛି ଅତିମାତ୍ରାରେ ଭୋଗୀ ନଥିଲେ କିମ୍ବା ବୈରାଗୀ

ନଥିଲେ । ପ୍ରମୋଦକୁ ମନ୍ଦ ଓ ଅନୈତିକ ବୋଲି ସେମାନେ ପ୍ରତ୍ୟାଖ୍ୟାନ କରି ନ ଥିଲେ କିମ୍ବା ଏକାଳର ଲୋକେ ଯେପରି କରିଥାନ୍ତି, ପ୍ରମୋଦ ପାଇଁ ବୋଲି ଜାଣିଶୁଣି କେଉଁଥିରେ ଲିପ୍ତ ହେଉ ନଥିଲେ । ଆଜି ଆମମାନଙ୍କ ଭିତରୁ ଅନେକଙ୍କୁ ଯେପରି ନାନାପ୍ରକାର ବାଧା ଦୁଃଖ ଦେଇଥାଏ, ସେଥିରୁ ମୁକ୍ତ ରହି ସେମାନେ ଜୀବନକୁ ସହଜଭାବରେ ଗ୍ରହଣ କରିଥିଲେ ଏବଂ ଯାହା କରୁଥିଲେ, ସେଥିରେ ମନ ପ୍ରାଣ ଅର୍ପଣ କରି ପାରୁଥିଲେ ଏବଂ ଏଥିରୁ ଏକରକମ ପ୍ରତୀତ ହେଉଛି ଯେ ସେମାନେ ଆମ ଅପେକ୍ଷା ଅଧିକତର ସହିଷ୍ଣୁ ଓ ଜୀବନ୍ତ ଥିଲେ । ଆମର ପ୍ରାଚୀନ ସାହିତ୍ୟରୁ ମଧ୍ୟ ଭାରତର ଜୀବନ ସମ୍ପର୍କରେ ଏପରି କିଛି ଗୋଟାଏ ଧାରଣା କରି ହେଇଥାଏ । ଗ୍ରୀସ୍‌ରେ ପରେ ଯେପରି ଦେଖାଦେଲା, ଭାରତରେ ମଧ୍ୟ ସେପରି ଜୀବନର ଗୋଟାଏ ବୈରାଗ୍ୟ ଭାବ ଥିଲା; କିନ୍ତୁ ଏହା ଥିଲା ସ୍ୱଳ୍ପ ଲୋକଙ୍କ ଭିତରେ ସୀମିତ ଏବଂ ସାଧାରଣତଃ ଜୀବନକୁ ପ୍ରଭାବିତ କରୁ ନଥିଲା । ଜୈନଧର୍ମ ଓ ବୌଦ୍ଧଧର୍ମର ପ୍ରଭାବରେ ସେହି ଭାବ ଅଧିକତର ଗୁରୁତ୍ୱପୂର୍ଣ୍ଣ ହେଇଉଠିଥିଲେ ମଧ୍ୟ ବସ୍ତୁତଃ ଜୀବନର ପୃଷ୍ଠଭୂମିରେ ପରିବର୍ତ୍ତନ ଆଣିପାରିନଥିଲା ।

ଜୀବନକୁ ଯଥାଯଥଭାବରେ ଗ୍ରହଣ କରି ଭାରତ ଓ ଗ୍ରୀସ୍ ଉଭୟ ଦେଶରେ ତାର ମାଦକତା ଆହରଣ କରାଯାଇଥିଲା । ତଥାପି, କୌଣସି ରକମର ଗୋଟାଏ ଅନ୍ତର୍‌ଜୀବନର ପ୍ରାଧାନ୍ୟ ଉପରେ ବି ବିଶ୍ୱାସ ସ୍ଥାପନ କରାଯାଇଥିଲା । ଏହା କୌତୁହଳ ଓ ଦୂରକଳ୍ପନା ଆଡକୁ ଅଗ୍ରସର କଲା; କିନ୍ତୁ ଜିଜ୍ଞାସାର ଉତ୍କଣ୍ଠା ବିଷୟମୁଖୀ ଅଭିଜ୍ଞତା ପ୍ରତି ଯେତେ ଭାବରେ ପରିଚାଳିତ ହେଉନଥିଲା, ତା'ଠାରୁ ଅଧିକ ଦୃଷ୍ଟି ନିବେଶିତ କରିଥିଲା, ସ୍ପଷ୍ଟତଃ ସତ୍ୟଭାବରେ ଗୃହୀତ, କେତେକ ପ୍ରତ୍ୟୟ ଉପରେ ଆବଦ୍ଧ, ସଙ୍ଗତ ଯୌକ୍ତିକତା ଉପରେ । ପ୍ରକୃତ ପକ୍ଷେ, ବୈଜ୍ଞାନିକ ଧାରାର ଅଭ୍ୟୁଦୟ ପୂର୍ବରୁ ସର୍ବତ୍ର ଏହି ଭାବ ପ୍ରଚଳିତ ଥିଲା । ସମ୍ଭବତଃ, ଏହି ଦୂରକଳ୍ପନା ସ୍ୱଳ୍ପ ସଂଖ୍ୟକ ବୁଦ୍ଧିଜୀବୀଙ୍କ ଭିତରେ ଆବଦ୍ଧ ଥିଲା । ତଥାପି ସାଧାରଣ ନାଗରିକମାନେ ମଧ୍ୟ ଏଥିଦ୍ୱାରା ପ୍ରଭାବିତ ହେଇଥିଲେ ଏବଂ ସେମାନଙ୍କ ସାଧାରଣ ସଭାମଣ୍ଡଳରେ ଅନ୍ୟ ସମସ୍ତ ବିଷୟ ଉପରେ ଆଲୋଚନା କଲାଭଳି ଦର୍ଶନଗତ ସମସ୍ୟା-ମାନ ମଧ୍ୟ ଆଲୋଚନା କରୁଥିଲେ ।

ଆଜି ଯେପରି, ସେ କାଳର ଭାରତରେ ମଧ୍ୟ ଲୋକେ ଗୋଷ୍ଠୀଭୁକ୍ତ ଭାବରେ ଜୀବନ ଅତିବାହିତ କରୁଥିଲେ । ବିଶେଷତଃ ଗ୍ରାମାଞ୍ଚଳରେ ଏହା ଅନୁଭୂତ ହେଉଥିଲା ଯେଉଁଠି ଲୋକେ ହାଟରେ, ମନ୍ଦିର ଅବା ମସ୍‌ଜିଦରେ, କିଅ ଚକଡ଼ାରେ କିମ୍ବା ଯେଉଁଠି ଥାଏ, ପଞ୍ଚାୟତ ଘରେ ମିଳିତ ହେଇ ସେ ଦିନର ଖବର ଓ ସେମାନଙ୍କର ବିବିଧ ଅଭାବ ଅସୁବିଧା ସମ୍ପର୍କରେ ଆଲୋଚନା କରୁଥିଲେ । ଏପରିଭାବରେ ଲୋକମତ ତିଆରି ହେଉଥିଲା ଓ ଅଭିବ୍ୟକ୍ତି ପାଉଥିଲା । ଏ ପ୍ରକାର ଆଲୋଚନା ନିମନ୍ତେ ପ୍ରଚୁର ସମୟ ବି ମିଳୁଥିଲା । ତଥାପି, ଗ୍ରୀକ୍‌ମାନଙ୍କ ବହୁ ଧୀସମ୍ପନ୍ନମାନ୍ ସଫଳତା ଭିତରେ ଯାହା ଅଦ୍ୱିତୀୟ ତାହା ହେଉଛି ପରୀକ୍ଷାମୂଳକ ବିଜ୍ଞାନର ଆରମ୍ଭ । ଏହା ଖାସ୍ ଗ୍ରୀକ୍ ଅପେକ୍ଷା ବହୁଭାବରେ ଆଲେକ୍‌ଜାଣ୍ଡ୍ରିୟାର ଗ୍ରୀକ୍ ଦୁନିଆରେ ବିଶେଷଭାବରେ ବିକାଶ ଲାଭ କରିଥିଲା ଏବଂ ଖ୍ରୀଷ୍ଟପୂର୍ବ ୩୩୦ ରୁ ୧୩୦

ପର୍ଯ୍ୟନ୍ତ ଏହି ଦୁଇ ଶହ ବର୍ଷ ବୈଜ୍ଞାନିକ ବିକାଶ ଓ ଯାନ୍ତ୍ରିକ ଉଦ୍‌ଭାବନର ଇତିହାସରେ ଉଜ୍ଜ୍ୱଳ ହୋଇ ରହିଛି । ଏଥି ସଙ୍ଗେ ତୁଳନା ହେବାଭଳି ଭାରତରେ କିଛି ନାହିଁ କିମ୍ବା ଏପରି ଭାବରେ ଦେଖିଲେ ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନ ପୁଣି ବିରାଟ ପଦକ୍ଷେପ କରିବା ପର୍ଯ୍ୟନ୍ତ ପୃଥିବୀରେ ଅନ୍ୟ କେଉଁଠି ମଧ୍ୟ ସେ ପ୍ରକାର ତୁଳନୀୟ ଅବସ୍ଥା ନଥିଲା । ଏପରିକି, ରୋମ୍ ମଧ୍ୟ ତା'ର ସାମ୍ରାଜ୍ୟ ଓ ତଦନ୍ତର୍ଗତ ସୁବିଶାଳ ଏକ ଅଞ୍ଚଳ ଉପରେ ତାର ଆଧିପତ୍ୟ ସତ୍ତ୍ୱେ, ଗ୍ରୀସିୟ ସଭ୍ୟତା ସଙ୍ଗେ ଘନିଷ୍ଠ ଯୋଗାଯୋଗ ସତ୍ତ୍ୱେ, ପୃଥିବୀର ନାନା ଜାତିର ଅଭିଜ୍ଞତା ଓ ବିଦ୍‌ବର୍ଗରୁ ଶିକ୍ଷା ନେବାର ବହୁ ସୁଯୋଗ ଥିବା ସତ୍ତ୍ୱେ ବିଜ୍ଞାନ, ଯନ୍ତ୍ରଉଦ୍‌ଭାବନ ଅବା ତାର ଉନ୍ନୟନ ପ୍ରତି କୌଣସି ତାତ୍ପର୍ଯ୍ୟପୂର୍ଣ୍ଣ ଅବଦାନ ଦେଇନାହିଁ । ୟୁରୋପରେ ଗ୍ରୀସ ଓ ରୋମ୍‌ର ସଭ୍ୟତା ବିନଷ୍ଟ ହେବା ପରେ ଆରବମାନେ କେବଳ ମଧ୍ୟଯୁଗ ସାରା ବିଜ୍ଞାନର ମଶାଲ ଜାଳି ରଖିଥିଲେ ।

ଏଥିରେ ସନ୍ଦେହ ନାହିଁ ଯେ ଆଲେକ୍‌ଜାଣ୍ଡ୍ରିୟାର ବିଜ୍ଞାନ ଓ ଯନ୍ତ୍ରଉଦ୍‌ଭାବନର ଏହି ଅପୂର୍ବ କର୍ମତତ୍ପରତା ଗୋଟାଏ ବର୍ଦ୍ଧମାନ ସମାଜ ଓ ସମୁଦ୍ରଯାତ୍ରାର ଆବଶ୍ୟକତାରୁ ଉଦ୍‌ଭୂତ ସେ କାଳର ଗୋଟାଏ ସାମାଜିକ ଉତ୍ପାଦନ ଥିଲା; ଠିକ୍ ଯେପରି, ପାଟୀଗଣିତ ଓ ବୀଜଗଣିତ ପ୍ରଣାଳୀର ଅଗ୍ରଗତି, ଶୂନ ଚିହ୍ନର ବ୍ୟବହାର ଓ ଦଶମିକ ପଦ୍ଧତି ଭାରତରେ ସାମାଜିକ ଆବଶ୍ୟକତାରୁ—ଅଗ୍ରଗାମୀ ବାଣିଜ୍ୟ ଓ ଜଟିଳତର ସଙ୍ଗଠନ ଯୋଗୁଁ ଉତ୍ପୁଜି-ଥିଲା; କିନ୍ତୁ ସାମଗ୍ରିକ ଭାବରେ ପ୍ରାଚୀନ ଗ୍ରୀକ୍‌ମାନଙ୍କ ଭିତରେ ଏହି ବୈଜ୍ଞାନିକ ଭାବନା କେତେଦୂର ଥିଲା ନିଃସନ୍ଦେହରେ କୁହାଯାଇ ନପାରେ । ମଣିଷ ଓ ପ୍ରକୃତି ଭିତରେ ସଂହତି ଓ ସଂଗତି ଖୋଜି ସେମାନଙ୍କର ପ୍ରାଚୀନ ଦାର୍ଶନିକ ଆଭିମୁଖ୍ୟ ଉପରେ ପ୍ରତିଷ୍ଠିତ ସେମାନଙ୍କର ଜୀବନ ପାରମ୍ପରିକଧାରା ଅବଶ୍ୟ ଅନୁସରଣ କରିଥିବ । ଏହି ଆଭିମୁଖ୍ୟ ଭାରତ ଓ ଗ୍ରୀସ୍ ଉଭୟ ପକ୍ଷରେ ସାଙ୍ଗଜନୀନ । ଭାରତରେ ଯେପରି, ଗ୍ରୀସ୍‌ରେ ବି ସେପରି ପରି-ବର୍ତ୍ତିତ ଋତୁ ଅନୁଯାୟୀ ନାନା ଲୋକୋତ୍ସବଦ୍ୱାରା ବର୍ଷକୁ ଭାଗ ଭାଗ କରିଯାଉଥିଲା । ଏହା ପ୍ରକୃତିର ଅବସ୍ଥା ସଙ୍ଗେ ମଣିଷକୁ ମେଳ ଖୁଆଇ ରଖୁଥିଲା । ବସନ୍ତୋତ୍ସବ, ପୌଷ ଉତ୍ସବ ଓ ଶେଷ ଶରତ୍ତୁର ଦୀପାବଳୀ ଉତ୍ସବ, ଗ୍ରୀଷ୍ମାରମ୍ଭର ହୋଲି ଉତ୍ସବ ଏବଂ କେତେ ପୁରାଣ-ପ୍ରସିଦ୍ଧ ବୀରଙ୍କ ଜୟନ୍ତୀ ପାଳନ ଭାବରେ ଏହିସବୁ ଏବେ ସୁଦ୍ଧା ଭାରତରେ ଅନୁଷ୍ଠିତ ହେଉଛି । ଏବେ ବି ରାସଲୀଳା ଭଳି କେତେକ ଉତ୍ସବ ଲୋକନୃତ୍ୟ ଓ ଲୋକସଙ୍ଗୀତରେ ଉଚ୍ଛଳ ହେଉଛନ୍ତି ।

ରାଜାବରୋଧ ଓ ସମ୍ଭ୍ରାନ୍ତ ପରିବାରକୁ କେତେ ପର୍ଯ୍ୟନ୍ତ ବାଦ୍ ଦେଲେ ପ୍ରାଚୀନ ଭାରତରେ ନାରୀମାନଙ୍କୁ ଅସୂର୍ଯ୍ୟମ୍ପଶ୍ୟା କରି ରଖିବାର ରୀତି ନଥିଲା । ସମ୍ଭବତଃ ସେ ସମୟରେ ଭାରତ ଅପେକ୍ଷା ଗ୍ରୀସ୍‌ରେ ସ୍ତ୍ରୀ ପୁରୁଷଙ୍କର ଏ ପ୍ରକାର ପୃଥକୀକରଣ ଅଧିକ ଭାବରେ ଥିଲା । ପ୍ରାଚୀନ ଭାରତର ଗ୍ରନ୍ଥମାନଙ୍କରେ ସୁବିଖ୍ୟାତ ବିଦୁଷୀମାନଙ୍କ ଉଲ୍ଲେଖ ବାରମ୍ବାର ଦେଖିବାକୁ ମିଳେ । ଶାସ୍ତ୍ରାର୍ଥପ୍ରକାଶ ଆଦି ବହୁ ବିତର୍କରେ ସେମାନେ ବହୁଧା ଅଂଶ ଗ୍ରହଣ କରୁଥିଲେ । ଗ୍ରୀସ୍‌ରେ ଯେପରି ଅନୁମିତ ହୁଏ, ବିବାହ ସମ୍ପୂର୍ଣ୍ଣଭାବରେ ଗୋଟାଏ ଚୁକ୍ତି ସଦୃଶ ବ୍ୟାପାରଥିଲା; କିନ୍ତୁ ଭାରତରେ ଯଦିଓ ଅନ୍ୟ କେତେ ପ୍ରକାର ବିବାହର ପ୍ରଚଳନ

ଥିଲା ତଥାପି ପ୍ରଧାନତଃ ବିବାହକୁ ଗୋଟାଏ ଧର୍ମଗତ ସଂସ୍କାର ଭାବରେ ସର୍ବଦା ବିବେଚନା କରାଯାଉଥିଲା ।

ଭାରତରେ, ଯେପରି ଜଣାଯାଏ, ଗ୍ରୀକ୍ ରମଣୀଙ୍କର ବିଶେଷ ଆଦର ଥିଲା । ପୁରାତନ ନାଟକମାନଙ୍କରେ ରାଜା ବିରୋଧରେ ପରିଚାରିକା ଭାବରେ ଗ୍ରୀକ୍ ରମଣୀଙ୍କର ଉଲ୍ଲେଖ ବାରମ୍ବାର ଦେଖିବାକୁ ମିଳେ । ବାରଗାଜା (ପଶ୍ଚିମ ଭାରତର ଭାରୋଚ) ବନ୍ଦର ଦେଇ ଗ୍ରୀସ୍‌ରୁ ଭାରତକୁ ଯାହା ସବୁ ଆମଦାନୀ କରାଯାଉଥିଲା ସେଥିଭିତରେ ପ୍ରସିଦ୍ଧ ଥିଲା "ଗୀତକଣ୍ଠ ବାଳକ ଓ ସୁନ୍ଦରୀ ତରୁଣୀବୃନ୍ଦ ।" ମୌର୍ଯ୍ୟସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ଜୀବନଯାପନ-ପ୍ରଣାଳୀ ବର୍ଣ୍ଣନା କରିବାକୁ ଯାଇ ମେଗାସ୍ଥେନିସ୍ ଆମକୁ କୁହନ୍ତି : "ରମଣୀଗଣ ରାଜାଙ୍କ ଖାଦ୍ୟ ପ୍ରସ୍ତୁତ କରନ୍ତି ଏବଂ ସେମାନେ ହିଁ ଭାରତୀୟଙ୍କର ପ୍ରିୟ ସୁରା ତାଙ୍କୁ ପରିବେଷଣ କରିଥାନ୍ତି ।" ଏଥିଭିତରୁ କେତେକ ପ୍ରକାର ମଦ୍ୟ ଗ୍ରୀସ୍ ଦେଶ ଅଥବା ଉପନିବେଶମାନଙ୍କରୁ ନିଶ୍ଚିତ ଭାବରେ ଆସୁଥିଲା; କାରଣ ଜନୈକ ପୁରାତନ ତାମିଲ କବି "ଯବନଙ୍କ ଦ୍ୱାରା ସେମାନଙ୍କ ଉତ୍ତମ ଜାହାଜରେ ଆନୀତ ଶୀତଳ ଓ ସୁଗନ୍ଧଯୁକ୍ତ ସୁରା" ବିଷୟ ଉଲ୍ଲେଖ କରିଛନ୍ତି । ଗୋଟାଏ ଗ୍ରୀକ୍ ବିବରଣୀରୁ ଜଣାଯାଏ ଯେ ପାଟଳିପୁତ୍ରର ରାଜା (ସମ୍ଭବତଃ ଅଶୋକଙ୍କ ପିତା ବିନ୍ଦୁସାର) ତାଙ୍କ ଦେଶରୁ ସୁମଧୁର ସୁରା, ଶୁଖିଲା ଉଦୁମ୍ବର ଓ ଜଣେ ସୋଫିଷ୍ଟ (ବିତଣ୍ଡାବାଦୀ) ଦାର୍ଶନିକ କ୍ରୟକରି ତାଙ୍କ ପାଖକୁ ପଠାଇବା ନିମନ୍ତେ ଏଣ୍ଟିଓକାସ୍‌ଙ୍କ ପାଖକୁ ପତ୍ର ଲେଖିଥିଲେ । ଏଣ୍ଟିଓକାସ୍ ଉତ୍ତର ଦେଲେ : "ଆମେ ଆପଣଙ୍କ ପାଖକୁ ସୁରା ଓ ଉଦୁମ୍ବର ଅବଶ୍ୟ ପଠାଇବୁ; କିନ୍ତୁ ଗ୍ରୀସ୍‌ରେ ଜଣେ ସୋଫିଷ୍ଟକୁ ବିକ୍ରି କରିବା ଆଇନତଃ ମନା ।" ଗ୍ରୀକ୍ ସାହିତ୍ୟରୁ ସ୍ପଷ୍ଟ ଜଣାଯାଏ ଯେ ସମ-ଲିଙ୍ଗ ସମ୍ବନ୍ଧକୁ ଘୃଣାଚକ୍ଷୁରେ ଦେଖାଯାଉ ନଥିଲା । ପ୍ରକୃତ ପକ୍ଷେ ସେଥିପ୍ରତି ଗୋଟାଏ ପ୍ରକାର ସରସ ଅନୁମୋଦନର ଭାବ ରହିଥିଲା । ଏହାର କାରଣ ହୋଇପାରେ ଯେ ଯୌବନାବସ୍ଥାରେ ଯୁବକ-ଯୁବତୀଙ୍କୁ ଅଲଗା କରି ରଖାଯାଉଥିଲା । ଏ ପ୍ରକାର ପ୍ରବୃତ୍ତି ପାରସ୍ୟରେ ମଧ୍ୟ ଦେଖିବାକୁ ମିଳେ ଓ ପାରସିକ ସାହିତ୍ୟରେ ଏ ବିଷୟରେ ବହୁଳ ଉଲ୍ଲେଖ ରହିଛି । ପ୍ରିୟ-ଜୀବନକୁ ଜଣେ କିଶୋର ରୂପରେ ଚିତ୍ରଣ କରିବା ଗୋଟାଏ ପ୍ରତିଷ୍ଠିତ ସାହିତ୍ୟିକ ଆଙ୍ଗିକ ଓ ରୀତି ହୋଇଥିବା ଅନୁମିତ ହୁଏ । ସଂସ୍କୃତ ସାହିତ୍ୟରେ ଏପରି କିଛି ନାହିଁ ଏବଂ ଭାରତରେ ସମ-ଲିଙ୍ଗ ସମ୍ବନ୍ଧ ପଛରେ ସ୍ପଷ୍ଟତଃ ଅନୁମୋଦନ କିମ୍ବା ଆଦର ନଥିଲା ।

ଇତିହାସର ପ୍ରାରମ୍ଭରୁ ଭାରତ ଓ ଗ୍ରୀସ୍ ମଧ୍ୟରେ ପାରସ୍ପରିକ ସମ୍ବନ୍ଧ ରହିଥିଲା ଏବଂ ପରବର୍ତ୍ତୀ ଏକସମୟରେ ପଶ୍ଚିମ-ଏସିଆ ଭିତରେ ଭାରତ ଓ ଗ୍ରୀକ୍ ସଭ୍ୟତାର ଘନିଷ୍ଠ ସମ୍ପର୍କ ସ୍ଥାପିତ ହୋଇଥିଲା । ମଧ୍ୟ-ଭାରତରେ ଉଜ୍ଜୟିନୀ ନଗରୀରେ ସ୍ଥାପିତ ବୃହତ୍ ବେଧଶାଳା, ମିଶରର ଆଲେକ୍‌ଜାଣ୍ଡ୍ରିଆ ସଙ୍ଗେ ସମ୍ପର୍କିତ ଥିଲା । ସମ୍ପର୍କର ଏହି ସୁଦୀର୍ଘ ପର୍ଯ୍ୟାୟ ଭିତରେ ଏହି ଦୁଇଟି ପ୍ରାଚୀନ ସଭ୍ୟତା ମଧ୍ୟରେ ଭାବୁକତା ଓ ସଂସ୍କୃତି କ୍ଷେତ୍ରରେ ବହୁ ବିନିମୟ ଘଟିଥିବ । କେତେକ ଗ୍ରୀକ୍ ଗ୍ରନ୍ଥରେ ଲିପିବଦ୍ଧ ଗୋଟାଏ ଐତିହ୍ୟ ହେଉଛି ଯେ ଭାରତୀୟ ବିଦ୍ୱାନ୍‌ମାନେ ସକ୍ରେଟିସ୍‌ଙ୍କ ସଙ୍ଗେ ସାକ୍ଷାତ କରି ତାଙ୍କୁ କେତେକ ପ୍ରଶ୍ନ ପଚାରିଥିଲେ ।

ପିଥାଗୋରସ୍ ଭାରତୀୟ ଦର୍ଶନଦ୍ୱାରା ବିଶେଷଭାବରେ ପ୍ରଭାବିତ ହୋଇଥିଲେ ଏବଂ ଅଧ୍ୟାପକ ଏଇଚ୍. ଜି. ରାଲିନ୍‌ସନ ମନ୍ତବ୍ୟ କରନ୍ତି ଯେ 'ପିଥାଗୋରସ୍‌ବାଦୀମାନେ ଶିକ୍ଷା ଦେଉଥିବା ଧର୍ମ, ଦର୍ଶନ ଓ ଗଣିତ ସମ୍ବନ୍ଧୀୟ ପ୍ରାୟ ସମସ୍ତ କିଛି ତତ୍ତ୍ୱ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର ଭାରତରେ ଜ୍ଞାତ ଥିଲା ।' ଜନୈକ ୟୁରୋପୀୟ ଶାସ୍ତ୍ରବିଦ୍ ପଣ୍ଡିତ ଉର୍‌ଓ୍ୱିକ୍ ପ୍ଲାଟୋଙ୍କ 'ରିପବ୍ଲିକ୍' ଉପରେ ତାଙ୍କର ବ୍ୟାଖ୍ୟା ଭାରତୀୟ ବିଶ୍ୱର ଉପରେ ଭିତ୍ତି କରିଛନ୍ତି । (୧) ଗ୍ରୀକ୍ ପ୍ଲାଟୋନୀୟତତ୍ତ୍ୱ ଓ ଭାରତୀୟ ତତ୍ତ୍ୱକୁ ଏକୀଭୂତ କରିବା ଦିଗରେ ଖ୍ରୀଷ୍ଟୀୟ ତତ୍ତ୍ୱବାଦ ଗୋଟାଏ ନିଶ୍ଚିତ ପ୍ରୟାସ ବୋଲି ମନେକରାଯାଏ । ଉଆନାର ଦାର୍ଶନିକ ଏପୋଲୋନିଆସ୍ ଖ୍ରୀଷ୍ଟୀୟ ଯୁଗର ପ୍ରାରମ୍ଭରେ ଉତ୍ତର-ପଶ୍ଚିମ ଭାରତର ତକ୍ଷଶୀଳା ବିଶ୍ୱବିଦ୍ୟାଳୟ ସମ୍ଭବତଃ ପରିଦର୍ଶନ କରିଥିଲେ ।

ମଧ୍ୟ-ଏସିଆର ଖୋରାସାନରେ ଜନ୍ମଗ୍ରହଣ କରିଥିବା ବିଖ୍ୟାତ ପର୍ଯ୍ୟଟକ ଓ ପାରସିକ ପଣ୍ଡିତ ଆଲ୍‌ବେରୁଣି ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀରେ ଭାରତକୁ ଆସିଥିଲେ । ସେ ଭାରତ ଆସିବା ବେଳକୁ ଗ୍ରୀକ୍ ଦର୍ଶନ ଅଧ୍ୟୟନ କରିସାରିଥିଲେ । ବାଗ୍‌ଦାଦ୍‌ରେ ସେତେବେଳକୁ ଇସଲାମଧର୍ମ ମୁଣ୍ଡ ଟେକି ଉଠିଥିଲା । ତଥାପି ଗ୍ରୀକ୍ ଦର୍ଶନ ବିଶେଷ ଜନପ୍ରିୟ ଥିଲା । ଭାରତରେ ଭାରତୀୟ ଦର୍ଶନ ଅଧ୍ୟୟନ କରିବା ଉଦ୍ଦେଶ୍ୟରେ ସେ କଷ୍ଟ ସ୍ୱୀକାର କରି ସଂସ୍କୃତ ଶିକ୍ଷା କରିଥିଲେ । ଗ୍ରୀକ୍ ଓ ଭାରତୀୟ ଉଭୟ ଦର୍ଶନ ଭିତରେ କେତେକ ସାମଞ୍ଜସ୍ୟ ଲକ୍ଷ୍ୟକରି ସେ ଆଚମ୍ବିତ ହୋଇଥିଲେ ଏବଂ ଭାରତ ଉପରେ ଲିଖିତ ତାଙ୍କର ଗ୍ରନ୍ଥରେ ସେ ଉଭୟ ଦର୍ଶନର ଏକ ତୁଳନାତ୍ମକ ଅଧ୍ୟୟନ କରିଛନ୍ତି । ଏହି ଗ୍ରନ୍ଥରେ ଗ୍ରୀକ୍ ଓ ରୋମାନ୍ ଜ୍ୟୋତିର୍ବିଦ୍ୟା ସମ୍ପର୍କରେ ସଂସ୍କୃତ ଗ୍ରନ୍ଥମାନଙ୍କରେ ଆଲୋଚନା କରାଯାଇଥିବା ଉଲ୍ଲେଖ କରିଛନ୍ତି ।

ଯଦିଓ ଅବଶ୍ୟମ୍ଭାବୀ ଭାବରେ ଉଭୟେ ପରସ୍ପରକୁ ପ୍ରଭାବିତ କରୁଥିଲେ ତଥାପି ନିଜେ ନିଜେ ତିଷ୍ଠିରହିବା ପାଇଁ ଓ ସ୍ୱକୀୟ ଧାରାରେ ବିକାଶ ଲାଭ କରିବାପାଇଁ ଗ୍ରୀକ୍ ଓ ଭାରତୀୟ ଉଭୟ ସଭ୍ୟତା ଯଥେଷ୍ଟ ଶକ୍ତିଶାଳୀ ଥିଲା । ପୂର୍ବେ ଯେପରି ସବୁକିଛି ଗ୍ରୀସ୍ ଓ ରୋମର ଅବଦାନ ବୋଲି କହିବା ଗୋଟାଏ ସର୍ବସମ୍ମତ ଧାରାରେ ପଡ଼ିଯାଇଥିଲା, ଅଧୁନା କେତେ ବର୍ଷହେଲା ସେଥିର ପ୍ରତିଦ୍ୱନ୍ଦ୍ୱୀ ଭାବରେ ଏସିଆ ବିଶେଷତଃ ଭାରତର ଭୂମିକା ଉପରେ ଜୋର ଦିଆଯାଉଚି । ଅଧ୍ୟାପକ ଟାର୍ଣ୍ଣ କହନ୍ତି, "ସ୍ଥୂଳତଃ ବିବେଚନା କଲେ ଗ୍ରୀକ୍‌ମାନଙ୍କ ପାଖରୁ ଏସୀୟମାନେ ଯାହା ଗ୍ରହଣ କରିଛନ୍ତି ତାହା ସାଧାରଣତଃ ବାହ୍ୟ ତଥା ଆଙ୍ଗିକ କେବଳ । କେତେକ ନାଗରିକ ସଂସ୍ଥା ବ୍ୟତିକ୍ରମ ଭାବରେ ଗ୍ରହଣ କଲେ ମଧ୍ୟ, ଏସୀୟମାନେ ଖ୍ରୀଷ୍ଟ୍ କ୍ୱଚିତ୍ ଗ୍ରୀସ୍‌ର ସାର ଅଂଶ ଗ୍ରହଣ କରିଛନ୍ତି; କିନ୍ତୁ ସେଥିର ଆତ୍ମିକ ବିଷୟ ସେମାନେ କେବେ ସ୍ପର୍ଶ କରିନାହାନ୍ତି । କାରଣ ଆତ୍ମିକ ବିଷୟରେ ଏସିଆର ବିଶ୍ୱାସ ଓ ଦମ୍ଭ ଥିଲା

(୧) କମେଣ୍ଟ୍ ତାଙ୍କର 'ଦି ଗ୍ରୀକ୍ କମନଓ୍ୱେଲ୍‌ଥ୍'ରେ ଉର୍‌ଓ୍ୱିକ୍ ପ୍ରଣୀତ 'ଦି ମେସେଜ୍ ଅଫ୍ ପ୍ଲାଟୋ'ର ଉଲ୍ଲେଖ କରିଛନ୍ତି । ଏ ବହି ମୋର ଦୃଷ୍ଟିରେ ପଡ଼ିନି ।

ଯେ ଗ୍ରୀକ୍‌ମାନଙ୍କ ଅପେକ୍ଷା ତାହା ଦୀର୍ଘଜୀବୀ ହେବ ଏବଂ ତାହା ହେଲା ମଧ୍ୟ ।" ପୁନରପି : "ଗ୍ରୀକ୍ ସଭ୍ୟତା ବିରୁଦ୍ଧରେ ନିଜର ଆସ୍ଥାନ ଦୃଢ଼ ରଖିବା ପାଇଁ ଭାରତୀୟ ସଭ୍ୟତା ଯଥେଷ୍ଟ ଶକ୍ତିଶାଳୀ ଥିଲା । କିନ୍ତୁ ଧର୍ମର କ୍ଷେତ୍ରରେ ବେବିଲୋନିଆ ତାକୁ ଯେପରି ପ୍ରଭାବିତ କରୁଥିଲା, ସେଭଳି ପ୍ରଭାବ ବେବିଲୋନିଆ ଉପରେ ପକାଇବା ପାଇଁ ଭାରତୀୟ ସଭ୍ୟତା ଆପାତଦୃଷ୍ଟିରେ ସେତେଭଳି ଶକ୍ତିଶାଳୀ ନଥିଲା । ତଥାପି ଆମେ ବିଚାରିବା ପାଇଁ ଯଥେଷ୍ଟ କାରଣ ପାଇ ପାରିବା ଯେ କେତେକ ବିଷୟରେ ଭାରତ ବରାବର ଆଧିପତ୍ୟ କରିଥିଲା ।" 'କେବଳ ବୁଦ୍ଧ ପ୍ରତିମୂର୍ତ୍ତିକୁ ବାଦ୍ ଦେଲେ, ସାରତଃ ଭାରତର ଇତିହାସ ଯାହା ହେଉଛି ଠିକ୍ ତାହାହିଁ ହୋଇଥାନ୍ତା ଯଦିଓ ପୃଥିବୀରେ ଗ୍ରୀକ୍‌ମାନଙ୍କର ଅସ୍ତିତ୍ୱ ସୁଦ୍ଧା ନଥାନ୍ତା ।"

ମୂର୍ତ୍ତିପୂଜା ଗ୍ରୀସ୍‌ରୁ ଯେ ଭାରତକୁ ଆସିଲା, ଏ ବିଚାରର ବାସ୍ତବିକ୍ ଚିନ୍ତାକର୍ଷକ । ବୈଦିକଧର୍ମ ସମସ୍ତ ପ୍ରକାର ବିଗ୍ରହ ଓ ପ୍ରତିମା ପୂଜାର ବିରୋଧୀ ଥିଲା । ବୈଦିକ ଯୁଗରେ ଦେବତାଙ୍କ ନିମନ୍ତେ କୌଣସି ମନ୍ଦିର ବି ନଥିଲା । ବୈଦିକ ଧର୍ମ ଅପେକ୍ଷା ପ୍ରାଚୀନତର, ଭାରତର ଅନ୍ୟାନ୍ୟ ଧର୍ମବିଶ୍ୱାସରେ ସମ୍ଭବତଃ ପ୍ରତିମା ପୂଜାର ସୂଚନା କିଛି କିଛି ଥିଲା; କିନ୍ତୁ ଏକଥା ନିଶ୍ଚିତ ଯେ ଜନସାଧାରଣଙ୍କ ଭିତରେ ତାର କୌଣସି ବିସ୍ତାର ନଥିଲା । ପ୍ରଥମାବସ୍ଥାରେ ବୌଦ୍ଧଧର୍ମ ପ୍ରତିମା ପୂଜାର ଘୋର ବିରୋଧୀ ଥିଲା ଏବଂ ବୁଦ୍ଧଙ୍କର କୌଣସି ପ୍ରତିମୂର୍ତ୍ତି ଓ ପ୍ରତିରୂପ ପ୍ରତିଷ୍ଠା ନ କରିବା ପାଇଁ ବିଶେଷ ଭାବରେ ନିଷେଧ ଜାରି ଥିଲା; କିନ୍ତୁ ଆଫଗାନିସ୍ତାନରେ ଓ ଭାରତୀୟ ସୀମାନ୍ତର ଆଖପାଖରେ ଗ୍ରୀକ୍ କଳାର ପ୍ରଭାବ ପ୍ରବଳ ଥିଲା ଏବଂ କ୍ରମଶଃ ତାହା ଭାରତରେ ପ୍ରବେଶ କଲା । ତଥାପି ପ୍ରାରମ୍ଭରେ କୌଣସି ବୁଦ୍ଧମୂର୍ତ୍ତି ନିର୍ମିତ ହୋଇନଥିଲା; କିନ୍ତୁ ଏପୋଲୋ ସଦୃଶ ବୋଧିସତ୍ତ୍ୱ (ଯାହାଙ୍କୁ ବୁଦ୍ଧଙ୍କ ପୂର୍ବବର୍ତ୍ତୀ ଅବତାର ମନେକରାଯାଏ) ମୂର୍ତ୍ତିମାନ ଦେଖାଦେଲା । ଏହା ପରେ ପରେ ବୁଦ୍ଧଙ୍କ ପ୍ରତିମୂର୍ତ୍ତିମାନ ନିର୍ମିତ ହେଲା । ଏଥିରୁ ହିନ୍ଦୁଧର୍ମର କେତେକ ଶାଖାରେ ମଧ୍ୟ ମୂର୍ତ୍ତି ପୂଜା ପ୍ରୋତ୍ସାହନ ଲାଭକଲା; କିନ୍ତୁ ବୈଦିକ ଧର୍ମ ଏଥିରୁ ସମ୍ପୂର୍ଣ୍ଣ ମୁକ୍ତ ଥିଲା । ପ୍ରତିମା ଅବା ମୂର୍ତ୍ତି ପାଇଁ ପାରସିକ ଓ ହିନ୍ଦୁସ୍ଥାନ ଶବ୍ଦ ହେଉଛି 'ବୁତ୍'—ଯାହା ବୁଦ୍ଧ ଶବ୍ଦରୁ ଆହରିତ ।

ଜୀବନ, ପ୍ରକୃତି ଓ ବ୍ରହ୍ମାଣ୍ଡ ଭିତରେ କୌଣସି ପ୍ରକାର ଗୋଟିଏ ଏକତ୍ୱ ଖୋଜି ବାହାର କରିବାପାଇଁ ମଣିଷର ଉତ୍କଣ୍ଠା ଥିବା ଭଳି ଜଣାଯାଏ । ସେହି ଅଭିଳାଷ, ଯଥାର୍ଥ ହେଉ ବା ନହେଉ, ମନର କେତେକ ଅତ୍ୟାବଶ୍ୟକ ଅଭାବ ଅବଶ୍ୟ ପୂରଣ କରେ । ପୁରାତନ ଦାର୍ଶନିକମାନେ ଏହାର ସନ୍ଧାନରେ ବରାବର ଲାଗିରହିଥିଲେ ଏବଂ ଆଧୁନିକ ବୈଜ୍ଞାନିକମାନେ ମଧ୍ୟ ଏହି ପ୍ରେରଣାଦ୍ୱାରା ତାଡ଼ିତ । ଆମର ଯେତେ ସବୁ ଯୋଜନା ଓ ପରିକଳ୍ପନା, ଶିକ୍ଷା, ସାମାଜିକତା ଓ ରାଜନୈତିକ ସଂଗଠନ ସମ୍ବନ୍ଧୀୟ ଧାରଣା ପଛରେ ରହିଛି ଏହି ଏକତା ଓ ସଙ୍ଗତିର ସନ୍ଧାନ । ବର୍ତ୍ତମାନ କେତେକ ଧୂରନ୍ଧର ଭାବୁକ ଓ ଦାର୍ଶନିକ ଆମକୁ କହନ୍ତି ଯେ ଏହି ମୌଳିକ ଅବଧାରଣା ଭ୍ରମାତ୍ମକ ଏବଂ ଆକସ୍ମିକତାର ଏହି ବ୍ରହ୍ମାଣ୍ଡରେ ଶୃଙ୍ଖଳା ଓ ଏକତା ବୋଲି ସେପରି କିଛି ନାହିଁ । ତାହା ହୁଏତ ସେପରି ହୋଇପାରେ; କିନ୍ତୁ ଏକଥା ନିଃସନ୍ଦେହ ଯେ ଯଦି ସେପରି

ହୋଇଥାଏ, ଏହି ଭ୍ରମାତ୍ମକ ବିଶ୍ୱାସ ଓ ଏକତା ନିମନ୍ତେ ଅନ୍ୱେଷଣ ଭାରତ, ଗ୍ରୀସ୍ ଓ ଅନ୍ୟତ୍ର ପ୍ରତ୍ୟକ୍ଷ ଫଳ ପ୍ରଦର୍ଶିତ କରିଛି ଏବଂ ଜୀବନରେ ସମରସତା, ସମତୁଳନ ଓ ସମ୍ପନ୍ନତା ସୃଷ୍ଟି କରିଛି ।

## ୮. ପ୍ରାଚୀନ ଭାରତର ରଙ୍ଗମଞ୍ଚ

ୟୁରୋପ ଦ୍ୱାରା ପ୍ରାଚୀନ ଭାରତୀୟ ନାଟକ-ସାହିତ୍ୟ ଆବିଷ୍କୃତ ହେବା ସଙ୍ଗେ ସଙ୍ଗେ ଅନୁମାନ ଜାଗ୍ରତ ହେଲା ଯେ ତାହାର ମୂଳ ହୁଏତ ଗ୍ରୀକ୍ ନାଟକରେ ନିହିତ ଅଥବା ଗ୍ରୀକ୍ ନାଟକ ଦ୍ୱାରା ତାହା ବହୁଳଭାବରେ ପ୍ରଭାବିତ । ଏହି ତତ୍ତ୍ୱ କିୟତ୍ପରିମାଣରେ ସମ୍ଭାବ୍ୟ ଥିଲା; କାରଣ ସେ ପର୍ଯ୍ୟନ୍ତ କୌଣସି ପ୍ରାଚୀନ ନାଟକ ଥିବା ଜଣାଯାଇ ନଥିଲା ଏବଂ ସିକନ୍ଦରଙ୍କ ଆକ୍ରମଣ ପରେ ଭାରତର ସୀମାନ୍ତରେ ଗ୍ରୀକ୍ ସଭ୍ୟତା-ପ୍ରଧାନ ରାଜ୍ୟମାନ ସ୍ଥାପିତ ହୋଇଥିଲା । ଏହିସବୁ ରାଜ୍ୟ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ତିଷ୍ଠିରହିଥିଲା ଏବଂ ସେଠାରେ ଗ୍ରୀକ୍ ନାଟକ କିମ୍ବା ସେହି ଶୈଳୀରେ ପ୍ରସ୍ତୁତ ଭାରତୀୟ ନାଟକ ଅଭିନୀତ ହୋଇଥିବ । ଏହି ପ୍ରଶ୍ନ ଉପରେ ଊନବିଂଶ ଶତାବ୍ଦୀ ସାରା ୟୁରୋପୀୟ ବିଦ୍ୱାନମାନେ ପୁଙ୍ଖାନୁପୁଙ୍ଖ ଭାବରେ ଅନୁଧ୍ୟାନ ଓ ବିତର୍କ କରିଛନ୍ତି । ବର୍ତ୍ତମାନ ସମସ୍ତେ ସ୍ୱୀକାର କରନ୍ତି ଯେ ଭାରତୀୟ ରଙ୍ଗମଞ୍ଚ ତାର ସୃଷ୍ଟିରେ, ତାର ପରିକଳ୍ପନା-ବିଶୃତିରେ ଓ ତାର ବିକାଶରେ ସମ୍ପୂର୍ଣ୍ଣ ଭାବରେ ସ୍ୱତନ୍ତ୍ର ଥିଲା । ଏହାର ପ୍ରାରମ୍ଭ ଋଗ୍‌ବେଦର ଋଗ୍‌ବଳୀ ଓ ସଂଳାପରେ ଦେଖିବାକୁ ମିଳେ; କାରଣ ଋଗ୍‌ବେଦର ରଚନାରେ ଏକପ୍ରକାର ନାଟକୀୟ ଚରିତ୍ର ପରିଲକ୍ଷିତ ହୁଏ । ରାମାୟଣ ଓ ମହାଭାରତରେ ମଧ୍ୟ 'ନାଟକ'ର ଉଲ୍ଲେଖ ମିଳେ । କୃଷ୍ଣଲୀଳାର ନୃତ୍ୟ ଓ ସଙ୍ଗୀତରେ ଭାରତୀୟ ନାଟକର ରୂପ ପରିଗ୍ରହଣ ଆରମ୍ଭ ହେଲା । ଖ୍ରୀଷ୍ଟପୂର୍ବ ଷଷ୍ଠ ଅବା ସପ୍ତମ ଶତାବ୍ଦୀର ମହାନ୍ ବୈୟାକରଣ ପାଣିନି କେତେକ ନାଟ୍ୟରୂପ ବିଷୟ ଉଲ୍ଲେଖ କରିଛନ୍ତି । ନାଟ୍ୟକଳା ସମ୍ପର୍କରେ ଲିଖିତ 'ନାଟ୍ୟଶାସ୍ତ୍ର' ନାମକ ଏକ ଗ୍ରନ୍ଥ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଲେଖାଯାଇଥିବା ଅନୁମିତ ହୁଏ । କିନ୍ତୁ ଏହି ଗ୍ରନ୍ଥ ଏହି ବିଷୟ ଉପରେ ଲିଖିତ ପୂର୍ବବର୍ତ୍ତୀ କେତେକ ଗ୍ରନ୍ଥ ଉପରେ ସ୍ପଷ୍ଟତଃ ଭିତ୍ତି କରିଛି । ନାଟ୍ୟକଳା ସମ୍ପୂର୍ଣ୍ଣରୂପରେ ବିକାଶ ଲାଭ କରିନଥିଲେ ଓ ନାଟକ ପ୍ରଦର୍ଶନ ଏକ ସାଧାରଣ ବ୍ୟାପାର ହୋଇ ନଥିଲେ ନାଟ୍ୟଶାସ୍ତ୍ର ଭଳି ଏକ ଗ୍ରନ୍ଥ ଲେଖିବା ସମ୍ଭବ ହୋଇ ନଥାନ୍ତା । ଏହା ଲେଖାହେବା ପୂର୍ବରୁ ପ୍ରଚୁର ପରିମାଣରେ ନାଟ୍ୟ ସାହିତ୍ୟ ଲେଖାଯାଇଥିବ ଓ ତାର ପଛରେ ଥିବ କେତେ ଶତାବ୍ଦୀର କ୍ରମବିକାଶ । ଅଧୁନା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ଏକ ପ୍ରାଚୀନ ରଙ୍ଗମଞ୍ଚ ଛୋଟନାଗପୁର ଅନ୍ତର୍ଗତ ରାମଗଡ଼ ପାର୍ବତ୍ୟ ଅଞ୍ଚଳରେ ଖୋଳି ବାହାର କରାଯାଇଛି । ଏହା ତାତ୍ପର୍ଯ୍ୟପୂର୍ଣ୍ଣ; କାରଣ ନାଟ୍ୟଶାସ୍ତ୍ରରେ ରଙ୍ଗମଞ୍ଚର ଯେଉଁ ବର୍ଣ୍ଣନା ଦିଆଯାଇଛି ସେଥି ସଙ୍ଗେ ଏହି ଆବିଷ୍କୃତ ରଙ୍ଗମଞ୍ଚର ଆକାରରେ ସାଦୃଶ୍ୟ ରହିଛି ।

ବର୍ତ୍ତମାନ ବିଶ୍ୱାସ କରାଯାଉଛି ଯେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ବେଳକୁ ଯଥେଷ୍ଟ ସଂସ୍କୃତ ନାଟକ ପୂର୍ଣ୍ଣଭାବରେ ପ୍ରତିଷ୍ଠିତ ହୋଇ ସାରିଥିଲା । କେହି କେହି ବିଦ୍ୱାନ୍ ଅବଶ୍ୟ ଏହି କାଳ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ ବୋଲି ଅନୁମାନ କରନ୍ତି । ସମ୍ପ୍ରତି ଯେଉଁସବୁ ନାଟକ ଆମର ହସ୍ତଗତ ହୋଇଛି ସେଥିରେ ବହୁଧା ପୂର୍ବବର୍ତ୍ତୀ ନାଟ୍ୟକାର ଓ ନାଟକମାନଙ୍କ ଉଲ୍ଲେଖ ମିଳୁଛି । ସେ ସବୁ ନାଟକ ଏ ପର୍ଯ୍ୟନ୍ତ ଲୋକଲୋଚନକୁ ଆସିନାହିଁ । ସେଭଳି ଜଣେ ନାଟ୍ୟକାର ହୋଉଛନ୍ତି 'ଭାସ' ଯାହାଙ୍କୁ ତାଙ୍କର ପରବର୍ତ୍ତୀ ନାଟ୍ୟକାରମାନେ ଉଚ୍ଚକଣ୍ଠରେ ପ୍ରଶଂସା କରିଛନ୍ତି । ଚଳିତ ଶତାବ୍ଦୀ ପ୍ରାରମ୍ଭରେ ଭାସଙ୍କର ତେରଗୋଟି ନାଟକ ଗ୍ରନ୍ଥ ଆବିଷ୍କାର କରାଯାଇଛି । ଏ ପର୍ଯ୍ୟନ୍ତ ଆବିଷ୍କୃତ ସଂସ୍କୃତ ନାଟକମାନଙ୍କ ଭିତରୁ ପ୍ରାଚୀନତମ ହେଉଛି ସମ୍ଭବତଃ ଅଶ୍ୱଘୋଷଙ୍କ ରଚିତ ନାଟକାବଳୀ । ଖ୍ରୀଷ୍ଟୀୟ ଯୁଗର ଠିକ୍ ପୂର୍ବରୁ ଅବା ପରେ ପରେ ଅଶ୍ୱଘୋଷ ଜୀବିତ ଥିଲେ । ତାଙ୍କର ଆବିଷ୍କୃତ ହସ୍ତ ରଚନା ତାଳପତ୍ର ପାଣ୍ଡୁଲିପିର କେତେକ ଛିନ୍ନପତ୍ର ମାତ୍ର ଏବଂ ବଡ଼ ବିଚିତ୍ର ଯେ ଏ ସବୁର ସନ୍ଧାନ ମିଳିଲା ତୁର୍ଫାନରେ— ଗୋବି ମରୁଭୂମିର ସୀମାନ୍ତରେ । ଅଶ୍ୱଘୋଷ ଜଣେ ଧର୍ମପ୍ରାଣ ବୌଦ୍ଧ ଥିଲେ ଓ ସେ 'ବୁଦ୍ଧଚରିତ' ନାମକ ଏକ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ ଯାହା ଭାରତ, ଚୀନ ଓ ତିବ୍ବତରେ ବହୁ ଶତାବ୍ଦୀ ଧରି ଜନପ୍ରିୟ ଥିଲା । ଅତୀତରେ ଏହି ଗ୍ରନ୍ଥର ଚୀନା ଭାଷାନ୍ତର କରିଛନ୍ତି ଜଣେ ଭାରତୀୟ ବିଦ୍ୱାନ୍ । ଏହି ସବୁ ଆବିଷ୍କାର ପ୍ରାଚୀନ ଭାରତୀୟ ନାଟକର ଇତିହାସକୁ ଗୋଟିଏ ନୂତନ ପରିପ୍ରେକ୍ଷୀ ଦାନ କରିଛି ଏବଂ ଏ ଦିଗରେ ନବ ନବ ଆବିଷ୍କାର ଭାରତୀୟ ସଂସ୍କୃତିର ଏହି ମନୋରଞ୍ଜକ ବିକାଶ ଉପରେ ଅଧିକତର ଆଲୋକପାତ କରିବ । କାରଣ ସିଲ୍‌ଭାଁ ଲେଭି ତାଙ୍କ ରଚିତ 'ଲ ଥି ଏନ ଇନ୍ଦିୟାନ' (ଭାରତୀୟ ରଙ୍ଗମଞ୍ଚ) ଗ୍ରନ୍ଥରେ ଯେପରି ଲେଖିଛନ୍ତି : "ନାଟକରେ ଭାରତୀୟମାନ ସଭ୍ୟତାର ମହତ୍ତମ ଅଭିବ୍ୟକ୍ତି ଘଟିଥାଏ । ଏହା ଜୀବନର ପ୍ରକୃତ ରୂପ ପ୍ରଦର୍ଶିତ କରେ । ଏହା ଚମତ୍କାର ଭାବରେ ସାରଭୂତ ତଥ୍ୟଗୁଡ଼ିକୁ ଗୌଣ ବିଷୟରୁ ଅଲଗା କରି ଆମ ସମ୍ମୁଖରେ ଗୋଟାଏ ପ୍ରତୀକ ରୂପରେ ଉପସ୍ଥାପିତ କରେ । ଭାରତର ମୌଳିକତା ତାର ନାଟ୍ୟକଳାରେ ସମ୍ପୂର୍ଣ୍ଣରୂପରେ ଅଭିବ୍ୟକ୍ତି ପାଇଛି । ଏହି କଳାରେ ଭାରତର ବିଭିନ୍ନ ରୁଚି, ସିଦ୍ଧାନ୍ତ ଓ ସଂସ୍ଥାର ଏକ ସାରସମ୍ମିଶ୍ରଣ ଦେଖିବାକୁ ମିଳେ···"

ସାର୍ ଓ୍ୱିଲିୟମ୍ ଜୋନ୍‌ସ କର୍ତ୍ତୃକ ଅନୂଦିତ କାଳିଦାସଙ୍କ ନାଟକ ଶକୁନ୍ତଳା ଯେବେ ଖ୍ରୀ: ୧୭୮୯ରେ ପ୍ରକାଶ ପାଇଲା, ୟୁରୋପ ପ୍ରଥମଥର ପାଇଁ ପୁରାତନ ଭାରତୀୟ ନାଟକ ସମ୍ପର୍କରେ ଅବହିତ ହେଲା । ଏଇ ଆବିଷ୍କାର ୟୁରୋପୀୟ ବୁଦ୍ଧିଜୀବୀ ମହଲରେ ଏକପ୍ରକାର ଚାଞ୍ଚଲ୍ୟ ସୃଷ୍ଟିକଲା ଏବଂ ଗୋଟାଏ ପରେ ଗୋଟାଏ, ଶକୁନ୍ତଳାର ବହୁ ସଂସ୍କରଣ ପ୍ରକାଶ ପାଇଲା । ସାର୍ ଓ୍ୱିଲିଏମଙ୍କ ଅନୁବାଦରୁ ଜର୍ମାନ, ଫରାସୀ, ଡେନିସ୍ ଓ ଇଟାଲୀୟ ଭାଷାରେ ଅନୂଦିତ ହେଲା । ଶକୁନ୍ତଳା ନାଟକ ଗେଟେଙ୍କ ମନରେ ଗଭୀର ରେଖାପାତ କଲା ଓ ସେ ତାର ଭୂୟସୀ ପ୍ରଶଂସା କରିଛନ୍ତି । 'ଫଷ୍ଟ'ରେ ପ୍ରସ୍ତାବନା ଯୋଗକରିବାର ବିଚାର, କୁହାଯାଏ କାଳିଦାସଙ୍କ ଶକୁନ୍ତଳାର ପ୍ରସ୍ତାବନା ପଢ଼ି ଗେଟେଙ୍କ ମନରେ ଉଦିତ ହେଲା ଯାହା ସଂସ୍କୃତ

ନାଟକର ସାଧାରଣ ପରମ୍ପରା ଅନୁସରଣରେ ଲେଖା ଯାଇଥିଲା । (୧)

ସଂସ୍କୃତ ସାହିତ୍ୟରେ କାଳିଦାସ ଶ୍ରେଷ୍ଠତମ କବି ଓ ନାଟ୍ୟକାର ଭାବରେ ସ୍ୱୀକୃତ । ଅଧ୍ୟାପକ ସିଲଭାଁ ଲେଭି କହନ୍ତି : "ଭାରତୀୟ କାବ୍ୟ ଓ ସାହିତ୍ୟ କ୍ଷେତ୍ରରେ କାଳିଦାସଙ୍କ ନାମ ଭାସ୍ୱର । ନାଟକ, ମହାକାବ୍ୟ ଓ ବିରହଗୀତ ଆଜି ସୁଦ୍ଧା ଏହି କଳାକାରଙ୍କ ପ୍ରତିଭା ଓ ବୋଧର ପ୍ରମାଣ ଦିଏ । ସରସ୍ୱତୀଙ୍କ ବରପୁତ୍ରମାନଙ୍କ ଭିତରେ କାଳିଦାସ ଅଦ୍ୱିତୀୟ ଓ ଏହାଙ୍କୁ ହିଁ ସେଭଳି ମହାନ୍ ରଚନା କରିବାର ସୌଭାଗ୍ୟ ମିଳିଲା ଯେଉଁଥିରୁ ବାହାରେ ଭାରତର ଆଦର ବଢ଼ିଲା ଏବଂ ମାନବତା ନିଜେ ନିଜକୁ ଚିହ୍ନି ପାରିଲା । 'ଶକୁନ୍ତଳା'ର ଜନ୍ମ ପରେ ଉଜ୍ଜୟିନୀରେ ଯେଉଁ ଆଲୋକ ପ୍ରକାଶନ ଘଟିଥିଲା କେତେ ଦୀର୍ଘ ଶତାବ୍ଦୀ ଅନ୍ତେ ତାହା ପଶ୍ଚିମ ଦୁନିଆକୁ ମଧ୍ୟ ଆଲୋକିତ କଲା ଯେବେ ସାର୍ ଓ୍ୱିଲିଏମ୍ ୟୁରୋପ ମହାଦେଶରେ ତାର ପରିଚୟ ଦେଲେ । କାଳିଦାସ ନିଜ ପାଇଁ ଉଜ୍ଜ୍ୱଳ ତାରକାଙ୍କ ମଧ୍ୟରେ ସ୍ଥାନ କରି ନେଇଛନ୍ତି ଯେଉଁଠି ପ୍ରତ୍ୟେକ ନାମ ମାନବୀୟ ଭାବନାର ଗୋଟାଏ ଯୁଗର ପ୍ରତିନିଧିତ୍ୱ କରେ । ଏହିସବୁ ନାମ ସଙ୍ଗେ ଜଡ଼ିତ ବ୍ୟାପାର ଇତିହାସ ରଚନା କରେ; ବରଂ ଏପରି ବି କୁହାଯାଇପାରେ ଯେ ପ୍ରତ୍ୟେକ ନାମ ଗୋଟାଏ ଲେଖା ଇତିହାସ ହୋଇ ଉଠେ ।"

କାଳିଦାସ ଅନେକ କେତେ କାବ୍ୟ ଓ ନାଟକ ରଚନା କରିଛନ୍ତି । ତାଙ୍କର ଜୀବନକାଳ ସମ୍ପର୍କରେ ଏ ପର୍ଯ୍ୟନ୍ତ ଅନିଶ୍ଚିତତା ଥିଲେ ସୁଦ୍ଧା ଖୁବ୍ ସମ୍ଭବ ଗୁପ୍ତବଂଶୀୟ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ରାଜତ୍ୱକାଳରେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ସେ ଉଜ୍ଜୟିନୀରେ ଜୀବନ

(୧) ଭାରତର ପ୍ରାଚୀନ ସାହିତ୍ୟ ଓ ଦର୍ଶନର ପ୍ରଶସ୍ତି କରିବାକୁ ଗଲାବେଳେ ୟୁରୋପୀୟ ବିଦ୍ୱାନ୍‌ମାନଙ୍କ ଲେଖାରୁ ବଡ଼ ବଡ଼ ଅଂଶ ଉଦ୍ଧାର କରିବାର ପ୍ରବଣତା ଭାରତୀୟ ଲେଖକ-ମାନଙ୍କଠାରେ ପ୍ରକାଶ ପାଉଛି । ଏଥିଦ୍ୱାରା ମୁଁ ବି ଆଂଶିକ ଭାବରେ ପ୍ରଭାବିତ ହୋଇଛି । ଏହାର ବିପରୀତ ଦୃଷ୍ଟିକୋଣ ଅର୍ଥାତ୍ ନିନ୍ଦନ ନିମନ୍ତେ ଉଦ୍ଧୃତି ଦେବା ମଧ୍ୟ କଷ୍ଟକର ନୁହେଁ; ପ୍ରକୃତ ପକ୍ଷେ, ଅଧିକତର ସହଜ । ଅଷ୍ଟାଦଶ ଓ ଊନବିଂଶ ଶତକର ୟୁରୋପୀୟ ବିଦ୍ୱାନ୍‌ମାନେ ଭାରତୀୟ ଭାଷାତତ୍ତ୍ୱ ଓ ଦର୍ଶନ ଉପରେ ଆଲୋକପାତ କରିବା ଫଳରେ ପାଶ୍ଚାତ୍ୟ ଜଗତରେ ଏକ ନୂତନ ଆଲୋଡ଼ନ ସୃଷ୍ଟି ହେଲା; ଶତମୁଖରେ ପ୍ରଶଂସା ରଚିତ ହେଲା । ଅନେକେ ଅନୁଭବ କଲେ, ୟୁରୋପୀୟ ସଂସ୍କୃତି ଯାହା କରିପାରି ନଥିଲା, ସେ ଅଭାବ ଏଥିଦ୍ୱାରା ପୂର୍ଣ୍ଣ ହୋଇଛି । ପରେ କିନ୍ତୁ ଯେଉଁ ପ୍ରତିକ୍ରିୟା ପ୍ରକାଶ ପାଇଲା ତାହା ଏହି ମନୋଭାବକୁ ଖଣ୍ଡନ କଲା ଏବଂ ସମାଲୋଚନା ଓ ସନ୍ଦେହବାଦ ବର୍ଦ୍ଧିତ ହେଲା । ଏହାର କାରଣ, କେହି କେହି ଅନୁଭବ କଲେ ଯେ ଭାରତୀୟ ଦର୍ଶନ ଆକାରହୀନ ଓ ଅସ୍ପଷ୍ଟ ଏବଂ ଭାରତୀୟ ବର୍ଣ୍ଣବ୍ୟବସ୍ଥାର କଠୋର ଶୃଙ୍ଖଳା ସେମାନଙ୍କର ପସନ୍ଦ ହୋଇ ନଥିଲା । କିନ୍ତୁ ସପକ୍ଷରେ ହେଉ କି ବିପକ୍ଷରେ ହେଉ, ଉଭୟ ପ୍ରତିକ୍ରିୟାର ଭିତ୍ତି ଥିଲା ପ୍ରାଚୀନ ଭାରତୀୟ ସାହିତ୍ୟ ଯାହା ସମ୍ପର୍କରେ ଉଭୟ ପକ୍ଷର ଜ୍ଞାନ ନଗଣ୍ୟ ଥିଲା କହିଲେ ଚଳେ । ନିଜେ

ଅତିବାହିତ କରିଥିଲେ । ପରମ୍ପରାରୁ ଜଣାଯାଏ, ବିକ୍ରମାଦିତ୍ୟଙ୍କ ରାଜସଭାର ନବରତ୍ନଙ୍କ ଭିତରେ ସେ ଥିଲେ ଅନ୍ୟତମ ଏବଂ ଏଥିରେ ସନ୍ଦେହ ନାହିଁ ଯେ ତାଙ୍କର ଜୀବଦ୍ଦଶାରେ ତାଙ୍କର ଅସାଧାରଣ ପ୍ରତିଭା ପ୍ରଶଂସିତ ଓ ପୂର୍ଣ୍ଣରୂପରେ ସ୍ୱୀକୃତ ହୋଇଥିଲା । ସେ ସେହି ଭାଗ୍ୟବାନମାନଙ୍କ ଭିତରେ ଥିଲେ ଯେଉଁମାନଙ୍କୁ ଜୀବନରେ ଆଦର ଓ ଆପ୍ୟାୟନ ମିଳିଛି ଏବଂ ଯେଉଁମାନେ ଜୀବନର କଠୋରତା ଓ ରୁକ୍ଷତା ଅପେକ୍ଷା ତାର ସୌନ୍ଦର୍ଯ୍ୟ ଓ ସୌକୁମାର୍ଯ୍ୟ ଅଧିକ ଭାବରେ ଉପଭୋଗ କରିଛନ୍ତି । ତାଙ୍କର ରଚନାବଳୀରୁ ଜୀବନ ପ୍ରତି ଏହି ପ୍ରେମ ଓ ପ୍ରକୃତିର ସୌନ୍ଦର୍ଯ୍ୟ ନିମନ୍ତେ ଗୋଟାଏ ବିପୁଳ ଉତ୍କଣ୍ଠା ପ୍ରକାଶ ପାଏ ।

କାଳିଦାସଙ୍କର ଅନ୍ୟତମ କାବ୍ୟ ହେଉଛି ମେଘଦୂତ । ଜଣେ ପ୍ରଣୟୀ, ବନ୍ଦୀ ହେବା ଫଳରେ ପ୍ରଣୟିନୀ ସଙ୍ଗେ ଯାହାର ବିଚ୍ଛେଦ ଘଟିଛି, ଆଦ୍ୟ-ଆଷାଢ଼ର ମେଘମାଳାକୁ ନିବେଦନ କରୁଛି ଯେ ସେ ତାର ପ୍ରାଣର ପ୍ରଣୟ ଆକୁଳତା ତାର ପ୍ରଣୟିନୀ ନିକଟକୁ ବହନ କରି ନେଉ । ଏହି କାବ୍ୟ ଓ ତାର ସ୍ରଷ୍ଟା କାଳିଦାସଙ୍କୁ ମାର୍କିନ ବିଦ୍ୱାନ ରାଇଡ଼େର ଉଚ୍ଛ୍ୱସିତ ପ୍ରଶଂସା ଜ୍ଞାପନ କରିଛନ୍ତି । ଶଂସିତ କାବ୍ୟର ଉଭୟ 'ମେଘ' ବିଷୟରେ ଉଲ୍ଲେଖ କରି ସେ କହନ୍ତି : "ପୂର୍ବ ମେଘ ପ୍ରଧାନତଃ ବହିଃରଙ୍ଗ ପ୍ରକୃତିର ବର୍ଣ୍ଣନା ହୋଇଥିଲେ ମଧ୍ୟ ଏଥିରେ ମାନବିକ ଅନୁଭୂତି ଜଡ଼ିତ ରହିଛି । ପରବର୍ତ୍ତୀ ମେଘ ମାନବିକ ହୃଦୟର ଗୋଟାଏ ଛବି । ତଥାପି ଏହି ଛବି ବନ୍ଧେଇ କରାହୋଇଛି ପ୍ରାକୃତିକ ସୌନ୍ଦର୍ଯ୍ୟରେ । ଏହା ଏତେ ଚମତ୍କାରିତା ସହକାରେ କରାଯାଇଛି ଯେ ଉଭୟ ଭାଗ ମଧ୍ୟରୁ କେଉଁଟି ଉତ୍କୃଷ୍ଟ

---

ଗୋଟେ ମଧ୍ୟ କୌଣସି ମତ ଉପରେ ସ୍ଥିର ରହିପାରି ନାହାନ୍ତି । ପାଶ୍ଚାତ୍ୟ ସଭ୍ୟତା ଭାରତୀୟ ଚିନ୍ତାଧାରା ବିପ୍ଳବକର ଭାବରେ ଉଦ୍ଦୀପିତ ହୋଇଛି ବୋଲି ସେ ସ୍ୱୀକାର କରୁଥିଲେ ସୁଦ୍ଧା, ତାର ଦୂରପ୍ରସାରୀ ପ୍ରଭାବ ନିକଟରେ ଆତ୍ମସମର୍ପଣ କରିବା ଲାଗି ସେ ରାଜି ନୁହନ୍ତି । ଭାରତ ସମ୍ପର୍କରେ ଏହି ଦ୍ୱୈତ ତଥା ପରସ୍ପରବିରୋଧୀ ଆଭିମୁଖ୍ୟ ୟୁରୋପୀୟ ମାନସର ଚରିତ୍ରଗତ ବୈଶିଷ୍ଟ୍ୟ । ଅଧୁନା, ଜଣେ ମହାନ୍ ୟୁରୋପୀୟ ତଥା ୟୁରୋପୀୟ ସଂସ୍କୃତିର ଜୀବନ୍ତ ପ୍ରତୀକ ରୋମା ରୋଲାଁ ଭାରତୀୟ ଚିନ୍ତାର ମୌଳିକ ଭିତ୍ତି ପ୍ରତି ଅଧିକତର ସମନ୍ୱୟ-ଦୃଷ୍ଟିଭଙ୍ଗୀ ଓ ସହୃଦୟତାପୂର୍ଣ୍ଣ ଆଭିମୁଖ୍ୟ ପ୍ରକାଶ କରିଛନ୍ତି । ତାଙ୍କର ମତରେ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ତପସ୍ୟାନିରତ ମାନବାତ୍ମାର ଭିନ୍ନ ଭିନ୍ନ ଦଶାର ପ୍ରତିନିଧିତ୍ୱ କରିଛନ୍ତି । ଏହି ପ୍ରସଙ୍ଗରେ ଅର୍ଥାତ୍ ଭାରତୀୟ ଚିନ୍ତାପ୍ରତି ପାଶ୍ଚାତ୍ୟ ଜଗତର ପ୍ରତିକ୍ରିୟା ଉପରେ, ଶାନ୍ତିନିକେତନ ବିଶ୍ୱବିଦ୍ୟାଳୟର ଶ୍ରୀଯୁକ୍ତ ଆଲେକ୍ସ ଆରନ୍ସନଙ୍କ ମନ୍ତବ୍ୟ ପାଣ୍ଡିତ୍ୟପୂର୍ଣ୍ଣ ଓ ଦକ୍ଷତାର ପରିଚାୟକ । କଲିକତା ନିକଟବର୍ତ୍ତୀ ବୋଲପୁରରେ ଅବସ୍ଥିତ ଶାନ୍ତିନିକେତନ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର । ସେ ଶାନ୍ତିନିକେତନରେ ରହୁଥିଲେ ଏବଂ ୧୯୪୧ରେ ତାଙ୍କର ଦେହାବସାନ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟ ସଙ୍ଗେ ଘନିଷ୍ଠ ଭାବରେ ସମ୍ପୃକ୍ତ ଥିଲେ ।

କହିବା କାହା ପକ୍ଷରେ ହେଲେ ସମ୍ଭବ ନୁହେଁ । ଏହି ପୃଥ୍ବୀଙ୍କ କାବ୍ୟ ଯେଉଁମାନେ ମୂଳ ସଂସ୍କୃତରେ ଅଧ୍ୟୟନ କରିଚନ୍ତି ସେମାନଙ୍କ ଭିତରୁ କେହି ପୂର୍ବ-ମେଘଦ୍ୱାରା କେହି ବା ଉତ୍ତର-ମେଘ ଦ୍ୱାରା ଅଭିଭୂତ ହୋଇଚନ୍ତି । ୟୁରୋପ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଯାହା ଶିକ୍ଷା କରିପାରି ନଥିଲା ତାହା ପଞ୍ଚମ ଶତାବ୍ଦୀରେ କାଳିଦାସ ଉପଲବ୍ଧି କରି ପାରିଥିଲେ । ଏବେ ସୁଦ୍ଧା ୟୁରୋପ ଅସଂପୂର୍ଣ୍ଣ ଭାବରେ କେବଳ ଗ୍ରହଣ କରି ପାରୁଚି ଯେ ବିଶ୍ୱ ମଣିଷ ପାଇଁ ସୃଷ୍ଟି ହୋଇ ନଥିଲା । ଯାହା ମାନବିକ ନୁହେଁ ସେହି ଜୀବନର ମହତ୍ତ୍ୱ ଓ ସାର୍ଥକତା ଉପଲବ୍ଧି କରିପାରିଲେ କେବଳ ମଣିଷ ତାର ପୂର୍ଣ୍ଣତ୍ୱରେ ଉପନୀତ ହୁଏ । ଏହି ସତ୍ୟ କାଳିଦାସ ଯେ ହୃଦୟଙ୍ଗମ କରିପାରିଥିଲେ ତାହା ତାଙ୍କର ବୌଦ୍ଧିକ ଶକ୍ତିର ମହତ୍ତ୍ୱ ଯାହା ଅନବଦ୍ୟ ଆଙ୍ଗିକ ଓ ମହାନ କାବ୍ୟ ନିମନ୍ତେ ନିତାନ୍ତ ଆବଶ୍ୟକ । କାବ୍ୟିକ ପ୍ରାଞ୍ଜଳତା ବିରଳ ନୁହେଁ; ବୌଦ୍ଧିକ ଧାରଣା ମଧ୍ୟ ସେତେ ଅସାଧାରଣ ନୁହେଁ; କିନ୍ତୁ ଏହି ଉଭୟର ସମ୍ମିଶ୍ରଣ ପୃଥିବୀର ଅଭ୍ୟୁଦୟ କାଳରୁ ହୁଏତ ଦଶ ବାର ଥରରୁ ଅଧିକ ସମ୍ଭବ ହୋଇ ପାରିନି । ଏହି ସଙ୍ଗତିସଂପନ୍ନ ଅସାଧାରଣ ପ୍ରତିଭାର ଅଧିକାରୀ ହୋଇଥିବାରୁ କାଳିଦାସ ଏନାକ୍ରିୟନ୍, ହୋରେସ୍ ଓ ସେଲିଙ୍କ ଗହଣରେ କେବଳ ନୁହେଁ ବରଂ ସୋଫୋକ୍ଲିସ୍, ଭର୍ଜିଲ୍ ଓ ମିଲଟନ୍ଙ୍କ ମେଳରେ ସ୍ଥାନ ପାଇଚନ୍ତି ।''

କାଳିଦାସଙ୍କ ବହୁ ପୂର୍ବରୁ ସମ୍ଭବତଃ ଆଉ ଏକ ବିଖ୍ୟାତ ନାଟକ ରଚିତ ହୋଇଥିଲା । ତାହା ହେଉଚି ଶୂଦ୍ରକଙ୍କ ରଚିତ 'ମୃଚ୍ଛକଟିକ' ନାଟକ—ଗୋଟାଏ କୋମଳ ଓ କେତେ ପର୍ଯ୍ୟନ୍ତ କୃତ୍ରିମ ନାଟକ । ତଥାପି ଏଥିରେ ଯେଉଁ ବାସ୍ତବତାର ଚିତ୍ର ପରିବେଶିତ ହୋଇଚି ତାହା ଆମକୁ ପ୍ରଭାବିତ କରେ ଓ ସେଥିରୁ ତତ୍କାଳୀନ ଚିନ୍ତା ଓ ସଭ୍ୟତାର ଗୋଟାଏ ଝଲକ ଆମ ଆଖିରେ ପଡ଼େ । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ବେଳକୁ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱକାଳରେ ହିଁ ଆଉରି ଗୋଟାଏ ଉଲ୍ଲେଖଯୋଗ୍ୟ ନାଟକ ରଚିତ ହୋଇଥିଲା । ତାହା ହେଉଚି ବିଶାଖଦତ୍ତଙ୍କ 'ମୁଦ୍ରାରାକ୍ଷସ' । ଏହା ଗୋଟାଏ ଖାଣ୍ଟିମତ ରାଜନୈତିକ ନାଟକ ଏବଂ ଏଥିରେ ପୁରାଣର କୌଣସି କାହାଣୀ ଅବା ପ୍ରେମମୂଳକ ବିଷୟବସ୍ତୁ ନାହିଁ । ନାଟକର କାଳ ଚନ୍ଦ୍ରଗୁପ୍ତଙ୍କ ମୌର୍ଯ୍ୟଙ୍କ ରାଜତ୍ୱକାଳରେ ସନ୍ନିବେଶିତ ଏବଂ ଏହି ନାଟକର ନାୟକ ହେଉଚନ୍ତି ଚନ୍ଦ୍ରଗୁପ୍ତଙ୍କ ପ୍ରଧାନମନ୍ତ୍ରୀ ତଥା ଅର୍ଥଶାସ୍ତ୍ରରଚୟିତା ଚାଣକ୍ୟ । କେତେ ଭାବରେ ଏହା ଏକ ଅଦ୍ଭୁତ ନାଟକ ଓ ଏହା ଆଜି ପାଇଁ ମଧ୍ୟ ପ୍ରଯୁଜ୍ୟ ।

ସପ୍ତମ ଶତାବ୍ଦୀ ଆରମ୍ଭରେ ରାଜା ହର୍ଷ ଏକ ନୂତନ ସାମ୍ରାଜ୍ୟ ପ୍ରତିଷ୍ଠା କଲେ । ସେ ମଧ୍ୟ ଥିଲେ ଜଣେ ନାଟ୍ୟକାର ଏବଂ ତାଙ୍କ ପ୍ରଣୀତ ତିନିଗୋଟି ନାଟକ ଆମକୁ ମିଳେ । ସପ୍ତମ ଶତାବ୍ଦୀ ବେଳକୁ ସଂସ୍କୃତ ସାହିତ୍ୟର ଅନ୍ୟତମ ଉଜ୍ଜ୍ୱଳ ନକ୍ଷତ୍ର ଭବଭୂତି ଜୀବିତ ଥିଲେ । ତାଙ୍କର ରଚନା ଅନୁବାଦ କରିବା ସହଜ ହେଉନି; କାରଣ ତାଙ୍କର ରଚନାର ସୌନ୍ଦର୍ଯ୍ୟ ଓ ପରିପାଟୀ ରହିଚି ପ୍ରଧାନତଃ ଭାଷାରେ । କିନ୍ତୁ ଭାରତରେ ସେ ବିଖ୍ୟାତ ଏବଂ ସାହିତ୍ୟରେ ତାଙ୍କଠାରୁ ଉଚ୍ଚ ଆସନ ଦିଆଯାଇଥାଏ କେବଳ କାଳିଦାସଙ୍କୁ । ଏ ଉଭୟଙ୍କ ସମ୍ପର୍କରେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ସଂସ୍କୃତ ଅଧ୍ୟାପକ ଉଇଲସନ୍ କହିଚନ୍ତି :

"ଭବଭୂତି ଓ କାଳିଦାସଙ୍କ ଶ୍ଳୋକ ଭଳି ଭାଷା ଯେ ଏତେ ସୁନ୍ଦର ଭାବରେ ସଙ୍ଗୀତମୟ ଅବା ଏତେ ଦେଦୀପ୍ୟମାନ ଭାବରେ ମହାନ୍ ହୋଇପାରେ, ଧାରଣା କରିବା ସମ୍ଭବ ନୁହେଁ ।"

ଶତାବ୍ଦୀ ପରେ ଶତାବ୍ଦୀ ଧରି ସଂସ୍କୃତ ନାଟକ ରଚନାର ପ୍ରବାହ ଅବ୍ୟାହତ ରହିଲା; କିନ୍ତୁ ମୁରାରିଙ୍କ ପରେ, ନବମ ଶତାବ୍ଦୀ ଆରମ୍ଭରେ, ଗୁଣ ଦିଗରୁ ଏସବୁ ନାଟକରେ ପତନର ସ୍ପଷ୍ଟ ସୂଚନା ପରିଲକ୍ଷିତ ହୁଏ । ଏହି ପତନ ଓ କ୍ରମାଗତ ଅବନତି ଜୀବନର ଅନ୍ୟାନ୍ୟ କର୍ମାନୁସରଣରେ ମଧ୍ୟ ଦୃଷ୍ଟିଗୋଚର ହୋଇଥିଲା । କେହି କେହି କହନ୍ତି ଯେ ନାଟକର ଏହି ପତନ ଇଣ୍ଡୋ-ଆଫଗାନ୍ ଓ ମୋଗଲ ରାଜତ୍ୱ କାଳରେ ରାଜକୀୟ ପୃଷ୍ଠପୋଷକତା ଅଭାବରୁ ଏବଂ ମୁଖ୍ୟତଃ ଜାତୀୟ ଧର୍ମ ସଙ୍ଗେ ଅନ୍ତରଙ୍ଗ ଭାବରେ ସଂଶ୍ଳିଷ୍ଟ ଥିବା ହେତୁରୁ ନାଟକକୁ ଗୋଟାଏ କଳା-ରୂପ ଭାବରେ ଗ୍ରହଣ କରିବା ପ୍ରତି ଇସ୍‌ଲାମୀୟ ବିମୁଖତା ଆଂଶିକ ଭାବରେ ଦାୟୀ । କାରଣ ଏହି ଦୃଶ୍ୟ କାବ୍ୟ କେତେ ଲୋକପ୍ରିୟ ହେଲାବେଳେ ବାହକ ହୋଇଥିଲେ ମଧ୍ୟ ମୂଳତଃ ଏହା ଉଚ୍ଚବର୍ଗୀୟ ରୁଚି ଓ ବିଚାରର ପ୍ରତିଫଳିତ କରୁଥିଲା ଏବଂ ରାଜପୃଷ୍ଠପୋଷକତା ଉପରେ ନିର୍ଭରଶୀଳ ଥିଲା । କିନ୍ତୁ ଏହି ଯୁକ୍ତିରେ ବିଶେଷ ସାର ନାହିଁ ଯଦିଓ, ଏହା ବି ସମ୍ଭବ ଯେ ଉପରସ୍ତରରେ କେତେକ ରାଜନୈତିକ ପରିବର୍ତ୍ତନର ଅପ୍ରତ୍ୟକ୍ଷ ପ୍ରଭାବ ଏହା ଉପରେ ପଡ଼ିଥିଲା । ବସ୍ତୁତଃ, ଏ ସମସ୍ତ ରାଜନୈତିକ ପରିବର୍ତ୍ତନ ଘଟିବା ବହୁ ପୂର୍ବରୁ ସଂସ୍କୃତ ନାଟକର ପତନ ସ୍ପଷ୍ଟ ପ୍ରତୀୟମାନ ଥିଲା । ଅଧିକନ୍ତୁ, ସେହି ସବୁ ପରିବର୍ତ୍ତନ କେତେ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍ତର ଭାରତରେ କେବଳ ସୀମିତ ଥିଲା ଏବଂ ନାଟକରେ ଯଦି କିଛି ଜୀବନୀ-ଶକ୍ତି ଅବଶିଷ୍ଟ ରହିଥାନ୍ତା ତାହାହେଲେ ଦକ୍ଷିଣ ଭାରତରେ ତାର ରଚନାତ୍ମକ ଧାରା ଅବ୍ୟାହତ ରହିଥାନ୍ତା । କେତେକ ସ୍ୱଳ୍ପକାଳସ୍ଥାୟୀ ଭାରତୀୟତାବିଦ୍ୱେଷୀ ପର୍ଯ୍ୟାୟ ବାଦ୍ ଦେଲେ, ଇଣ୍ଡୋ-ଆଫ୍‌ଗାନ୍, ତୁର୍କୀ ଓ ମୋଗଲ ଶାସକମାନେ ବରାବର ଭାରତୀୟ ସଂସ୍କୃତିର ବିକାଶ ଉତ୍ସାହିତ କରିଥିଲେ ଏବଂ ବେଳେବେଳେ ସେଥିରେ ପରିବର୍ତ୍ତନ ଓ ଉନ୍ନୟନ ସାଧନ କରିଥିଲେ । ମୁସ୍‌ଲିମ୍ ରାଜଦରବାର ଓ ସମ୍ଭ୍ରାନ୍ତ ପରିବାରମାନେ ସାମଗ୍ରିକ ଭାବରେ ଓ ଉତ୍ସାହ ସହକାରେ ଭାରତୀୟ ସଙ୍ଗୀତକୁ ଅଙ୍ଗୀକାର କରିଥିଲେ ଏବଂ ସେଥିରେ କେତେକ ମହାନ୍ ଆଚାର୍ଯ୍ୟ ଥିଲେ ମୁସଲମାନ୍ । ସାହିତ୍ୟ ଓ କାବ୍ୟ ମଧ୍ୟ ପ୍ରୋତ୍ସାହନ ପାଇଥିଲା ଏବଂ ହିନ୍ଦୀ ଭାଷାର ବିଖ୍ୟାତ କବିମାନଙ୍କ ଭିତରେ ମୁସଲମାନ୍‌ମାନେ ମଧ୍ୟ ସ୍ଥାନ ପାଇଛନ୍ତି । ବିଜାପୁର ସୁଲତାନ ଇବ୍ରାହିମ୍ ଅଦିଲ ଶାହ ଭାରତୀୟ ସଙ୍ଗୀତ ଉପରେ ହିନ୍ଦୀ ଭାଷାରେ ଏକ ଭାଷ୍ୟ ଲେଖିଛନ୍ତି । ଭାରତୀୟ କାବ୍ୟ ଓ ସଙ୍ଗୀତରେ ହିନ୍ଦୁ ଦେବଦେବୀଙ୍କ ବହୁଳ ଉଲ୍ଲେଖ ରହିଥିଲେ ମଧ୍ୟ ତାହା ଗୃହୀତ ହୋଇଥିଲା ଏବଂ ପୁରାତନ ରୂପକ ଓ ଅଳଙ୍କାର ପୂର୍ବଭଳି ବ୍ୟବହୃତ ହେଉଥିଲା । କେବଳ ମୂର୍ତ୍ତି ନିର୍ମାଣ ବିଷୟ ବାଦ୍ ଦେଲେ, କୁହାଯାଇପାରେ ଯେ, ମୁଷ୍ଟିମେୟ କେତେକଙ୍କ ବ୍ୟତୀତ, ମୁସଲିମ୍ ଶାସକମାନେ କୌଣସି ଭାରତୀୟ କଳାରୂପ ନଷ୍ଟ କରିବା ଦିଗରେ ଉଦ୍ୟମ କରି ନାହାନ୍ତି ।

ସଂସ୍କୃତ ନାଟକ ପତନଶୀଳ ହେଲା, କାରଣ ସେ କାଳର ଭାରତରେ ବହୁତ କିଛି ପତନାଭିମୁଖୀ ହୋଇଥିଲା ଓ ତାର ସୃଜନାତ୍ମକ ଶକ୍ତି ହ୍ରାସ ପାଉଥିଲା । ଦିଲ୍ଲୀ ସିଂହାସନରେ ଆଫଗାନ ଓ ତୁର୍କୀମାନେ ଅଧିଷ୍ଠିତ ହେବା ପୂର୍ବରୁ ଏହାର ପତନ ଘଟିଥିଲା । ପରବର୍ତ୍ତୀ ସମୟରେ ଅମୀର ଓ ଅଭିଜାତ୍ୟର ଭାଷା ପାରସିକଭାଷା ସଙ୍ଗେ ସଂସ୍କୃତକୁ କେତେ ପର୍ଯ୍ୟନ୍ତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ପଡ଼ୁଥିଲା । କିନ୍ତୁ ଯେପରି ଜଣାଯାଏ, ଗୋଟାଏ ସ୍ପଷ୍ଟ କାରଣ ହେଉଛି, ସଂସ୍କୃତ ନାଟକର ଭାଷା ଓ ଦୈନନ୍ଦିନ ଜୀବନର ବିଭିନ୍ନ ଭାଷା ଭିତରେ ବଢ଼ି ଉଠୁଥିବା ବ୍ୟବଧାନ । ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀ ବେଳକୁ ବିଭିନ୍ନ କଥିତଭାଷା, ଯେଉଁଥିରୁ ଆମର ଆଧୁନିକ ଭାଷାଗୁଡ଼ିକ ବଢ଼ି ଉଠିଛି, ସାହିତ୍ୟରୂପ ପରିଗ୍ରହ କରୁଥିଲା ।

ତଥାପି, ଏସବୁ ସତ୍ତ୍ୱେ, ସଂସ୍କୃତ ନାଟକ ସମଗ୍ର ମଧ୍ୟଯୁଗ ଓ ଆଧୁନିକ କାଳ ପର୍ଯ୍ୟନ୍ତ କିପରି ଅବ୍ୟାହତ ଭାବରେ ରଚିତ ହୋଇ ପାରିଲା ବଡ଼ ଆଶ୍ଚର୍ଯ୍ୟର କଥା । ୧୮୯୨ ଖ୍ରୀଷ୍ଟାବ୍ଦରେ ସେକ୍‌ସପିୟରଙ୍କ 'ମିଡ୍‌-ସାମାର୍‌ ନାଇଟ୍‌ସ ଡ୍ରିମ୍‌'ର ସଂସ୍କୃତ ରୂପାନ୍ତର ପ୍ରକାଶ ପାଇଲା । ପୁରାତନ ନାଟକମାନଙ୍କର ପାଣ୍ଡୁଲିପି ବରାବର ଖୋଜି ବାହାର କରାଯାଉଛି । ୧୮୯୦ ଖ୍ରୀଷ୍ଟାବ୍ଦରେ ଅଧ୍ୟାପକ ସିଲ୍‌ଭାଁ ଲେଭି ଏ ସବୁର ଏକ ତାଲିକା ପ୍ରସ୍ତୁତ କରିଥିଲେ । ସେଥିରେ ୧୮୯ ନାଟ୍ୟକାରଙ୍କ ରଚିତ ୩୭୬ଟି ନାଟକର ଉଲ୍ଲେଖ ଅଛି । ଅଧୁନାତନ ଏକ ତାଲିକାରେ ୬୫୦ ଟି ନାଟକର ଉଲ୍ଲେଖ ଅଛି ।

ପୁରାତନ ନାଟକ ଗୁଡ଼ିକର ଭାଷା ( କାଳିଦାସ ଓ ଅନ୍ୟମାନଙ୍କ ଦ୍ୱାରା ବ୍ୟବହୃତ ) ଥିଲା ସଂସ୍କୃତ ଓ ଏକ ବା ତତୋଽଧିକ ପ୍ରାକୃତ ଭାଷାର ସମ୍ମିଶ୍ରଣ । ଗୋଟାଏ ନାଟକରେ ଶିକ୍ଷିତ ଚରିତ୍ର ମୁହଁରେ ସଂସ୍କୃତ ଭାଷା ଦିଆଯାଉଥିଲା ଏବଂ ସାଧାରଣ ଅଶିକ୍ଷିତ ଲୋକ ତଥା, କଦାଚିତ୍‌ ବ୍ୟତିକ୍ରମ ବ୍ୟତୀତ, ନାରୀ ଚରିତ୍ରର ମୁହଁରେ ପ୍ରାକୃତ ଭାଷା ଦିଆଯାଉଥିଲା । ନାଟକରେ ଯାହା ବହୁଳଭାବରେ ରହୁଥିଲା ସେହି କାବ୍ୟିକ ଅଂଶ ଅଥବା ଶ୍ଲୋକ ଓ ଗୀତାଂଶ ସଂସ୍କୃତ ଭାଷାରେ ରଚିତ ହେଉଥିଲା । ଏହି ସମ୍ମିଶ୍ରଣ ସମ୍ଭବତଃ ନାଟକକୁ ସାଧାରଣ ଲୋକଙ୍କ ନିକଟରେ ପହଞ୍ଚାଇ ପାରିଥିଲା । ଏହା ଥିଲା ସାହିତ୍ୟିକ ଭାଷା ଓ ଲୋକପ୍ରିୟ କଳା ମଧ୍ୟରେ ଗୋଟାଏ ସାଲିସ୍‌ । ତଥାପି, ସାରତଃ, ପୁରାତନ ନାଟକ ରାଜଦରବାର ଭଳି ପୌରରୁଚିସମ୍ପନ୍ନ ଶ୍ରୋତାଙ୍କ ନିମନ୍ତେ ଉଦ୍ଦିଷ୍ଟ ଗୋଟାଏ ଆଭିଜାତ୍ୟ-ମୂଳକ କଳାର ପ୍ରତିନିଧିତ୍ୱ କରେ । ସିଲ୍‌ଭାଁ ଲେଭି କେତେକ ଦିଗରେ ଫରାସୀ ଦୁଃଖାନ୍ତ ନାଟକ ସଙ୍ଗେ ଏହାର ତୁଳନା କରିଛନ୍ତି । କଥିତ ଫରାସୀ ନାଟକ ତାର ବିଷୟବସ୍ତୁ ମନୋ-ନୟନରେ ଜନଗହଳରୁ ବିଚ୍ଛିନ୍ନ ହୋଇପଡ଼ିଥିଲା ଏବଂ ଜୀବନର ବାସ୍ତବତା ଉପରୁ ମୁହଁ ଫେରାଇ ଗୋଟାଏ ପରମ୍ପରାଗତ ସମାଜ ସୃଷ୍ଟି କରି ବସିଲା ।

କିନ୍ତୁ ଏହି ଉଚ୍ଚକୋଟୀର ସାହିତ୍ୟିକ ରଙ୍ଗମଞ୍ଚ ବ୍ୟତୀତ ଆଉ ଜନପ୍ରିୟ ରଙ୍ଗମଞ୍ଚ ସର୍ବଦା ରହିଥିଲା ଯେଉଁଠି ଭାରତୀୟ ମହାକାବ୍ୟ ଓ ପୁରାଣମାନଙ୍କରୁ ଗୃହୀତ କାହାଣୀ ଉପରେ ଭିତ୍ତି କରି ରଚିତ ଲୀଳାମାନ ପ୍ରଦର୍ଶିତ ହେଉଥିଲା । ଏଥିରେ ବିଷୟବସ୍ତୁ ସଙ୍ଗେ ଜନସାଧାରଣ ଘନିଷ୍ଠ ଭାବରେ ପରିଚିତ ଥିଲେ ଓ ଏଥିରେ ନାଟକୀୟତା ଅପେକ୍ଷା ରଙ୍ଗ ଓ

ଅଭିନୟର ଢଙ୍ଗ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ନିର୍ଦ୍ଦିଷ୍ଟ ଆଞ୍ଚଳିକ ଭାଷାରେ ଏସବୁ ଲୀଳା ରଚିତ ହୋଇଥିବା ହେତୁରୁ ଏହାର ଜନପ୍ରିୟତା ସେହି ନିର୍ଦ୍ଦିଷ୍ଟ ଅଞ୍ଚଳରେ ସୀମିତ ଥିଲା । ସଂସ୍କୃତ ନାଟକ ଗୁଡ଼ିକ ଭାରତର ଶିକ୍ଷିତ ଲୋକଙ୍କ ଭାଷାରେ ରଚିତ ହୋଇ-ଥିବାରୁ ସମଗ୍ର ଭାରତରେ ତାର ପ୍ରସାର କ୍ରମଶଃ କ୍ଷେତ୍ର ରହିଥିଲା ।

ଏହି ସବୁ ସଂସ୍କୃତ ନାଟକ ନିଃସନ୍ଦେହରେ ଅଭିନୟ ନିମନ୍ତେ ଉଦ୍ଦିଷ୍ଟ ଥିଲି ଏବଂ ମଞ୍ଚ-ପରିଚାଳନା ଓ ପ୍ରେକ୍ଷାଳୟ ବ୍ୟବସ୍ଥା ସମ୍ପର୍କରେ ନାନା ନୀତି ନିୟମ ପ୍ରଣୀତ ହୋଇଥିଲା । ପ୍ରାଚୀନ ଗ୍ରୀସରେ ଅଭିନୀତ ନାଟକରେ ନାରୀମାନେ ଅଂଶ ଗ୍ରହଣ କରିବାର ଚଳଣି ନଥିଲା; କିନ୍ତୁ ଭାରତୀୟ ମଞ୍ଚରେ ନାରୀମାନେ ଅବତରଣ କରୁଥିଲେ । ଗ୍ରୀକ୍ ଓ ସଂସ୍କୃତ ଉଭୟରେ ପ୍ରକୃତି ସମ୍ବନ୍ଧରେ ଗୋଟାଏ ସୂକ୍ଷ୍ମ ଚେତନା ଦେଖିବାକୁ ମିଳେ । ଏପରି ଏକ ଭାବ ଦେଖିବାକୁ ମିଳେ ଯେ ମଣିଷ ପ୍ରକୃତିର ଅଂଶବିଶେଷ । ଏଥିରେ ଗୀତିକବିତା ସୁଲଭ ଗୋଟାଏ ଅନୁଭୂତି ବିଦ୍ୟମାନ ଓ ଏଥିର କବିତା ଅର୍ଥ ଓ ତାତ୍ପର୍ଯ୍ୟରେ ପୂର୍ଣ୍ଣ, ଜୀବନର ଗୋଟାଏ ଅପରିହାର୍ଯ୍ୟ ଅଂଶ ଭାବରେ ପ୍ରତୀତ ହୁଏ । ଏସବୁ ପ୍ରାୟଶଃ ଆବୃତ୍ତି କରାଯାଇଥାଏ । ଗ୍ରୀକ୍ ନାଟକ ପଢ଼ିବା ବେଳେ ପାଠକ ନାନାବିଧ ପ୍ରଥା ବିଶ୍ୱାସ ଓ ଜୀବନର ନାନା ମାର୍ଗର ସମ୍ମୁଖୀନ ହୁଏ; ଯାହା ଅଗ୍ରନିକ ତାର ମନରେ ପୁରାତନ ନାନାବିଧ ଭାରତୀୟ ପ୍ରଥା ସ୍ମରଣ କରାଇଦିଏ । ତଥାପି, ସାରତଃ ଗ୍ରୀକ୍ ନାଟକ ସଂସ୍କୃତ ନାଟକଠାରୁ ଭିନ୍ନ ।

ସାରତଃ ଗ୍ରୀକ୍ ନାଟକର ଭିତ୍ତି ହେଉଛି ବିୟୋଗାନ୍ତକ ଓ ପାପର ସମସ୍ୟା । ମଣିଷ ଦୁଃଖ ଭୋଗ କରେ କାହିଁକି ? ଦୁନିଆରେ ପାପ କାହିଁକି ଅଛି ? ଈଶ୍ୱର ଓ ଧର୍ମର ପ୍ରହେଳିକା । ମଣିଷ ସତେ କେତେ ଦୟାର ପାତ୍ର ! ଦୁଇଦିନ ପାଇଁ ତାର ଏ ଜୀବନ ତଥାପି ସର୍ବଶକ୍ତିମାନ ଭାଗ୍ୟ ବିରୁଦ୍ଧରେ କିଭଳି ଅନ୍ଧ ଭାବରେ ଓ ଲକ୍ଷ୍ୟହୀନ ଭାବରେ ସେ ଉଦ୍ୟମ କରି ଚାଲିଛି : "ଏହା ସେହି ନିୟମ ଯାହା ଚିରକାଳ କାଏମ୍ ରହେ, ଯୁଗଯୁଗ ଧରି ଯାହାର ପରିବର୍ତ୍ତନ ନାହିଁ ।" ଦୁଃଖ ଭୋଗରୁ ହିଁ ମଣିଷ ଶିକ୍ଷା କରିବ ଏବଂ ଯଦି ସେ ଭାଗ୍ୟବାନ ତାର ଉଦ୍ୟମର ଊର୍ଦ୍ଧ୍ୱକୁ ଉଠିପାରିବ ।

"ସୁଖୀ ସେ ଯିଏ କ୍ଲାନ୍ତିକର ସମୁଦ୍ର ବକ୍ଷରେ ତୋଫାନ କବଳରୁ ମୁକ୍ତି ପାଇ ସୁରକ୍ଷିତ ପୋତାଶ୍ରୟରେ ପହଞ୍ଚି ପାରିଛି ।"

"ସୁଖୀ ସେ ଯିଏ ନିଜ ଉଦ୍ୟମର ଊର୍ଦ୍ଧ୍ୱକୁ ଉଠି ମୁକ୍ତ ହୋଇ ପାରିଛି ।"

"କାରଣ ଜୀବନର କଳା ଗୋଟାଏ ବିଚିତ୍ର ଢଙ୍ଗରେ ଗଢ଼ାଯାଇଛି ଯେ ଜଣେ ନା ଜଣେ, ନିଜ ଭାଇକୁ ଧନ ଓ ଶକ୍ତି ବଳରେ ପଛରେ ପକାଇ ଦେଇ ଯାଉଛି ।"

"ଆଉ କୋଟି କୋଟି ଲୋକ ଭାସୁଚନ୍ତି ଓ ବଢ଼ିଯିବାରେ ଲାଗିଚନ୍ତି; ଆଉ କୋଟିଏ ଆଶାର ଝଡ଼ ସେମାନଙ୍କ ଦେହରେ ବହି ଯାଉଛି ।"

"ଆଉ ଏକେତ ସେମାନଙ୍କ ଇଚ୍ଛା ପୂର୍ଣ୍ଣ ହେଉଛି, ଅବା ଅପୂର୍ଣ୍ଣ ରହି ଯାଉଛି; ଆଉ ନାନା ଆଶା ଏକେତ ମରି ଯାଉଛି ଅବା ସେପରି ରହୁଛି ।"

"କିନ୍ତୁ କାଳ ଅତିବାହିତ ହେବା ସଙ୍ଗେ, ଯିଏ ବି ଏହା ଜାଣିପାରେ କି ବଞ୍ଚିବା ଅର୍ଥ

ସୁଖୀ ହେବା, ସେ ନିଜର ସ୍ୱର୍ଗ ପାଇ ଯାଇଛି !''

"ମଣିଷ ଦୁଃଖଭୋଗରୁ ଶିକ୍ଷା ନିଏ । କିପରି ଜୀବନର ସମ୍ମୁଖୀନ ହେବାକୁ ହେବ ସେହି ଜ୍ଞାନ ଲାଭ କରେ; କିନ୍ତୁ ସେ ଆହୁରି ମଧ୍ୟ ଜାଣେ ଯେ ସେହି ଚରମ ରହସ୍ୟ ରହିଛି ଏବଂ ଭଲ ଓ ମନ୍ଦର ପ୍ରହେଳିକା ସମାଧାନ କରିବା ଉଦ୍ଦେଶ୍ୟରେ ତାର ବିବିଧ ପ୍ରଶ୍ନ ପାଇଁ ସେ କୌଣସି ଉତ୍ତର ଖୋଜି ପାରିବନି ।''

"ରହସ୍ୟ ବହୁରୂପୀ; ଆଉ ବହୁତ କିଛି ବସ୍ତୁ ଯାହା ଈଶ୍ୱର ସୃଷ୍ଟି କରିଚନ୍ତି, ଆଶା ଓ ଭୟ ଉଭୟର ଊର୍ଦ୍ଧ୍ୱରେ । ଯେଉଁ ଅନ୍ତ ପାଇଁ ମଣିଷ ସନ୍ଧାନ କରୁଚି, ତାହା ଆସୁନି ଏବଂ ଯେଉଁଠି କୌଣସି ଲୋକର ଖିଆଲ ପହଞ୍ଚି ପାରୁନି ସେଠାରେ ଗୋଟିଏ ପଥ ରହିଛି ।'' (୧)

ଗ୍ରୀକ୍ ବିୟୋଗାନ୍ତ ନାଟକର ତେଜସ୍ୱୀତା ଓ ଶକ୍ତି ସଙ୍ଗେ ତୁଳନୀୟ ସଂସ୍କୃତରେ ସେପରି କିଛି ନାହିଁ । ପ୍ରକୃତ ପକ୍ଷେ, ସଂସ୍କୃତ ନାଟକରେ 'ଟ୍ରାଜେଡ଼ି' ନାହିଁ କାରଣ ଗୋଟିଏ ବିୟୋଗାନ୍ତ ପରିସମାପ୍ତି ଅନୁସରଣର ଧାରା ସେଥିରେ ନାହିଁ । ସେପରି କିଛି ମୌଳିକ ପ୍ରଶ୍ନର ବିଚାର-ଆଲୋଚନା ସେଥିରେ ନାହିଁ; କାରଣ ନାଟ୍ୟକାରମାନେ ଧର୍ମବିଶ୍ୱାସ ମୂଳକ କେତେକ ସାଧାରଣ ଧାରଣାକୁ ଆଦର୍ଶ ଗ୍ରହଣ କରୁଥିଲେ । ଏଥି ଭିତରେ ଥିଲା ପୁନର୍ଜନ୍ମ ତଥା କାର୍ଯ୍ୟ-କାରଣ ଧର୍ମକର୍ମୀୟ ବିବିଧ ସିଦ୍ଧାନ୍ତ । ଆକସ୍ମିକ ଘଟଣା ଅବା ଅସତ୍ କିଛି ଅହେତୁକ ବୋଲି ମନେ କରାଯାଉ ନଥିଲା କାରଣ ବର୍ତ୍ତମାନ ଯାହା କିଛି ଘଟୁଚି ତାହା କୌଣସି ପୂର୍ବଜନ୍ମର ଘଟଣାର ଆବଶ୍ୟକୀୟ ପରିଣତି ବୋଲି ବିଶ୍ୱାସ କରାଯାଉଥିଲା । ସେଥିରେ ସେପରି କିଛି ଅଜ୍ଞାତଶକ୍ତିର ହସ୍ତକ୍ଷେପ ନାହିଁ ଯା'ର ବିରୁଦ୍ଧରେ ମଣିଷ, ତା'ର ସଂଗ୍ରାମର କିଛି ଅର୍ଥ ନଥିଲେ ମଧ୍ୟ ସଂଗ୍ରାମ କରିବ । ଏସବୁ ସରଳ କୈଫିୟତରେ ଦାର୍ଶନିକ ଓ ଭାବୁକମାନେ ସନ୍ତୁଷ୍ଟ ନଥିଲେ ଏବଂ ସେମାନେ ବରାବର ଅଧିକତର ବୁଝାମଣା ଓ ଅନ୍ତିମ କାରଣର ସନ୍ଧାନରେ ସେ ସବୁର ରହସ୍ୟ ଉଦ୍‌ଘାଟନ କରିବା ପ୍ରୟାସ କରୁଥିଲେ । କିନ୍ତୁ ସାଧାରଣତଃ ଜୀବନର ଧାରା ଏହିସବୁ ବିଶ୍ୱାସ ଦ୍ୱାରା ପରିଚାଳିତ ହେଉଥିଲା ଏବଂ ନାଟ୍ୟକାରମାନେ ଏସବୁ ବିରୁଦ୍ଧରେ ଲେଖନୀ ତୋଳିବା ଚାହିଁ ନଥିଲେ । ସଂସ୍କୃତର ନାଟକ ଓ କାବ୍ୟ ସାଧାରଣତଃ ଭାରତୀୟ ଆତ୍ମା ସଙ୍ଗେ ସଂପୂର୍ଣ୍ଣ ସହମତ ଥିଲା ଏବଂ ସେଥିରେ ଖୁବ୍ କ୍ୱଚିତ୍ ବିଦ୍ରୋହର ଆଭାସ ଦେଖିବାକୁ ମିଳେ । ନାଟକ ରଚନା ପାଇଁ ନାନା କଡ଼ା ନୀତି ନିୟମ ପ୍ରଣୀତ ହୋଇଥିଲା ଏବଂ ସେସବୁ ଲଙ୍ଘନ କରିବା ସହଜ ନଥିଲା । ତଥାପି କେଉଁଠାରେ ହେଲେ ଭାଗ୍ୟ ନିକଟରେ ବିନୀତ ଭାବରେ ଆତ୍ମସମର୍ପଣର ପ୍ରସଙ୍ଗ ନାହିଁ; ନାଟକର ନାୟକକୁ ସବୁବେଳେ ଜଣେ ବୀର ଓ ସାହସିକ ବ୍ୟକ୍ତି ଭାବରେ ଚିତ୍ରଣ କରାଯାଇଚି ଯିଏ ସମସ୍ତ କିଛି ଦୁର୍ଦ୍ଦୈବର ସମ୍ମୁଖୀନ ହୋଇ ପାରିବ । ନିତାନ୍ତ ଅବଜ୍ଞା ସହକାରେ ଯୁଣକ୍ୟ ମୁଦ୍ରା ରାକ୍ଷସ

---

(୧) ଏ ଦୁଇଟି ଉଦ୍ଧୃତି ଅଧ୍ୟାପକ ଗିଲ୍‌ବର୍ଟ ମରେଙ୍କ ଦ୍ୱାରା ଅନୂଦିତ 'ୟୁରିପାଇଡ୍‌ସରୁ ସଂଗୃହୀତ । ପ୍ରଥମଟି 'ବାକ୍‌ବାଇ'ରୁ ଓ ଦ୍ୱିତୀୟଟି 'ଅଲ୍‌ସେସ୍‌ଟିସ୍'ରୁ ।

ନାଟକରେ କହୁଚନ୍ତି, "ଅଜ୍ଞାନ ବ୍ୟକ୍ତି ଭାଗ୍ୟ ଉପରେ ଭରସା କରି ରହେ । ନିଜ ଉପରେ ଭରସା କରିବା ପରିବର୍ତ୍ତେ ସେ ସାହାଯ୍ୟ ନିମନ୍ତେ ଚାହିଁ ରହେ କେଉଁ ଦୂର ନକ୍ଷତ୍ର ଆଡ଼କୁ ।" ସଂସ୍କୃତ ନାଟକରେ କିଛି କୃତ୍ରିମତା ବି ପ୍ରବେଶ କରିଚି : ନାୟକ ସବୁବେଳେ ବୀର ଓ ପୁଣ୍ୟବାନ ଆଉ ଦୁଷ୍ଟମତି ବ୍ୟକ୍ତି ପ୍ରାୟଶଃ ଦୁଷ୍ଟ କାର୍ଯ୍ୟରେ ହିଁ ଲିପ୍ତ ରହେ; ଏ ଉଭୟର ମଧ୍ୟବର୍ତ୍ତୀ କୌଣସି ଚରିତ୍ରର ଚିତ୍ରଣ କ୍ୱଚିତ୍ ଦୃଷ୍ଟିଗୋଚର ହୁଏ ।

ତଥାପି ସେଥିରେ ନିବିଡ଼ ସୌନ୍ଦର୍ଯ୍ୟମାନ ଭାଷା ଓ କଳ୍ପନାଶକ୍ତିରେ ଗ୍ରଥିତ, ସ୍ୱପ୍ନଦୃଷ୍ଟି କୌଣସି ଚିତ୍ର ଭଳି କିଛି ବାସ୍ତବ କିଛି ଅବାସ୍ତବ ଭାବରେ ପ୍ରତୀତ, ଶକ୍ତିଶାଳୀ ନାଟକୀୟ ପରିସ୍ଥିତି ଓ ପ୍ରଭାବଶାଳୀ ଦୃଶ୍ୟ ଏବଂ ଜୀବନର ଗୋଟାଏ ପୃଷ୍ଠଭୂମି ରହିଚି । ଏସବୁ ପଢ଼ିଲେ ମନେ ହେଉଚି, ଯଦିଓ ସେତେବେଳେ ସେପରି ମନେ ହେଇ ନଥିବ, ସେ ସମୟର ଭାରତରେ ଜୀବନ ଅଧିକତର ଶାନ୍ତିପୂର୍ଣ୍ଣ ଓ ବ୍ୟବସ୍ଥିତ ଥିଲା; ସେ ଯେପରି ତାର ମୂଳ ଆବିଷ୍କାର କରି ସାରିଥିଲା ଓ ତାର ବିବିଧ ପ୍ରଶ୍ନର ମୀମାଂସା ପାଇ ସାରିଥିଲା । ଜୀବନର ପ୍ରବାହରେ ପ୍ରଶାନ୍ତି ଥିଲା । ଆଉ ଯେତେ ବାତ୍ୟା ଓ ତୋଫାନ ତାର ଉପରିଭାଗ କେବଳ ସ୍ପର୍ଶ କରି ଯାଉଥିଲା । ଗ୍ରୀକ୍ ବିୟୋଗାନ୍ତ ନାଟକ ଭଳି ସେଥିରେ ହିଂସ୍ର ତଥା ଉଗ୍ର ତୋଫାନ ସେପରି କିଛି ନାହିଁ; କିନ୍ତୁ ତାହା ଅତିଶୟ ମାନବିକ ଓ ସେଥିରେ ଗୋଟାଏ କାନ୍ତି ସଙ୍ଗତି ଓ ଯୁକ୍ତିସଙ୍ଗତ ଐକ୍ୟବୋଧ ରହିଚି । ସିଲଭାଁ ଲେଭି କହନ୍ତି, ନାଟକ ଏବେ ବି ଭାରତୀୟ ପ୍ରତିଭାର ସୂକ୍ଷ୍ମପୂର୍ଣ୍ଣ ଉଦ୍‌ଭାବନ ହେଇ ରହିଚି ।

ଅଧ୍ୟାପକ ଏ. ବେରିଡେଲ୍ କୀଥ୍ (୧) ମଧ୍ୟ କହନ୍ତି ଯେ "ସଂସ୍କୃତ ନାଟକ ଭାରତୀୟ କାବ୍ୟର ଶ୍ରେଷ୍ଠତମ ସୃଷ୍ଟି ବୋଲି ନ୍ୟାୟତଃ ଗ୍ରହଣ କରାଯାଇପାରେ ଏବଂ ସାରତଃ ଭାରତୀୟ ସାହିତ୍ୟର ଅତୀବ ଆତ୍ମସଚେତନ ସ୍ରଷ୍ଟାମାନଙ୍କ ଦ୍ୱାରା ସମ୍ପନ୍ନ ସାହିତ୍ୟିକ-କଳାର ଚୂଡ଼ାନ୍ତ ଅବଧାରଣା···। ବସ୍ତୁତଃ ଅନ୍ୟାନ୍ୟ ବିଷୟରେ ଯେପରି ଏ ବିଷୟରେ ମଧ୍ୟ ବହୁଧା ନିନ୍ଦିତ ବ୍ରାହ୍ମଣ ହିଁ ଭାରତରେ ବୈଦିକ ପରାକାଷ୍ଠାର ଉତ୍ସ ଥିଲା । ଭାରତୀୟ ଦର୍ଶନ ସେ ଯେପରି ସୃଷ୍ଟି କରିଥିଲା ତାର ବୁଦ୍ଧିର ଆଉ ଏକ ପ୍ରୟାସ ବଳରେ ନାଟକର ଏହି ସୂକ୍ଷ୍ମ ତଥା ଫଳପ୍ରଦ ଆଙ୍ଗିକ ଉଦ୍‌ଭାବନ କଲା ।"

ଶୂଦ୍ରକଙ୍କ 'ମୃଚ୍ଛକଟିକ' ନାଟକର ଗୋଟାଏ ଇଂରେଜୀ ଭାଷାନ୍ତର ଖ୍ରୀ: ୧୯୨୪ ରେ ନ୍ୟୁୟର୍କ ନଗରୀରେ ମଞ୍ଚସ୍ଥ କରାଯାଇଥିଲା । 'ନେସନ୍' କାଗଜର ନାଟକ ସମାଲୋଚକ ଯୋସେଫ୍ ଉଡ୍ କ୍ରାଚ୍ ସେ ବିଷୟରେ ଲେଖିଥିଲେ : "ଏଠାରେ, ଯଦି କେଉଁଠାରେ, ଦର୍ଶକ ବିଶୁଦ୍ଧ କଳା-ରଙ୍ଗମଞ୍ଚର ଅସଲି ଦୃଷ୍ଟାନ୍ତ, ଯାହା ସମ୍ପର୍କରେ ତାତ୍ତ୍ୱିକମାନେ ଚର୍ଚ୍ଚା କରିଥାନ୍ତି, ଦେଖିବାକୁ ପାଇବ । ଏଠାରେ ଆହୁରି ମଧ୍ୟ ପ୍ରାଚ୍ୟର ସେହି ପ୍ରକୃତ ପ୍ରଜ୍ଞା ଉପରେ

---

(୧) ସିଲଭାଁ ଲେଭିଙ୍କ 'ଲି ଥିଏଟ୍ରି, ଇଣ୍ଡିଆନ୍' (ପେରିସ, ୧୮୯୦) ଓ ବେରିଡେଲ୍ କୀଥ୍‌ଙ୍କ 'ଦି ସେନ୍‌ସ୍କ୍ରିଟ୍ ଡ୍ରାମା' (ଅକ୍‌ସ୍‌ଫୋର୍ଡ଼ ୧୯୨୪) ବହି ଦୁଇଟି ମୁଁ ବାରମ୍ବାର ଲେଉଟାଇଚି ଏବଂ ଉଭୟରୁ କିଛି କିଛି ଉଦ୍ଧାର କରିଚି ।

ବିସ୍ତାର କରିବା ପାଇଁ ତାକୁ ସୁଯୋଗ ମିଳିବ ଯାହା ଗୂଢ଼ ସିଦ୍ଧାନ୍ତମାନଙ୍କ ଭିତରେ ବନ୍ଦୀ ନୁହେଁ । ବରଂ ପାରମ୍ପରିକ ଖ୍ରୀଷ୍ଟଧର୍ମ ଅପେକ୍ଷା, ଯାହା ଇହୁଦୀ ମତର କଠୋର ପବିତ୍ରତା ଦ୍ୱାରା ଏତେ ପର୍ଯ୍ୟାପ୍ତ ଭାବରେ ଦୂଷିତ, ଆହୁରି ଗଭୀର ଓ ଆହୁରି ଶୁଦ୍ଧ ସହାନୁଭୂତିଶୀଳତାରେ ନିବେଶିତ·· । ତଥାପି ସମ୍ପୂର୍ଣ୍ଣ କଳ୍ପିତ ଏ ନାଟକର ପ୍ରଭାବ ଅତି ପ୍ରବଳ କାରଣ ଏହା ବାସ୍ତବିକତାର ଚରଣ ନୁହେଁ ବରଂ ପୂର୍ଣ୍ଣତଃ ବାସ୍ତବ·· । ଗ୍ରନ୍ଥକାର ସିଏ ହୋଇଥାନ୍ତୁ ନା କାହିଁକି, ଚତୁର୍ଥ ଅବା ଅଷ୍ଟମ ଯେ କେଉଁ ଶତାବ୍ଦୀରେ ସେ ଜୀବିତ ଥାଆନ୍ତୁ ନା କାହିଁକି,· ସେ ଥିଲେ ଜଣେ ଉତ୍ତମ ବୁଦ୍ଧିମାନ୍ ବ୍ୟକ୍ତି ଓ ତାଙ୍କର ବୁଦ୍ଧିମତ୍ତା ଅବା ମହାନୁଭବତା ମାତ୍ରବାଦୀର ମୁହଁରୁ ଅବା ତାର ଅଭିବ୍ୟକ୍ତ ଆତୁର ଲେଖନୀରୁ ନିର୍ଗତ ହୋଇନାହିଁ; ହୋଇଛି ତାଙ୍କ ହୃଦୟରୁ । ଯୌବନ ଓ ପ୍ରେମର ସର୍ବ୍ୟସୌନ୍ଦର୍ଯ୍ୟସମ୍ପନ୍ନ ଗୋଟାଏ କମ୍ ସହାନୁଭୂତି ତାଙ୍କର ମନକୁ ପ୍ରଶାନ୍ତ କରିଥିଲା ଏବଂ ଏକଥା ବୁଝିବା ପାଇଁ ତାଙ୍କର ଉଚିତ ବୟସ ବି ହୋଇଥିଲା ଯେ ଘଟଣା ଜଟିଳ ଗୋଟାଏ ଲଘୁ ତଥାପ୍ରସନ୍ନତାର କାହାଣୀକୁ ସ୍ନେହଶୀଳ ମାନବତା ଓ ନିଷ୍ଠିତ ମହାନୁଭବତାର ବାହକ କରାଯାଇ ପାରିବ । ··ସ୍ଥାୟିତ୍ୱରେ ଉପନୀତ ଗୋଟାଏ ସଭ୍ୟତା କେବଳ ଏପରି ଏକ ନାଟକ ସୃଷ୍ଟି କରିପାରେ ଯେତେବେଳେ ଗୋଟାଏ ସଭ୍ୟତା ତାର ସମ୍ମୁଖୀନ ସମସ୍ତ ସମସ୍ୟା ଭିତରୁ ମାର୍ଗର ବିସ୍ତାର କରି ନେଇପାରେ, ତେବେ ତାହା ଏପରି ଶାନ୍ତ ଓ ସରଳ ଅବସ୍ଥାରେ ଉପନୀତ ହୋଇପାରେ । ମେକ୍‌ବେଥ୍ ଓ ଓଥେଲୋ କେତେ ମହାନ୍ ଓ ପ୍ରଭାବଶାଳୀ ଚରିତ୍ର ହୁଅନ୍ତୁ ନା କାହିଁକି ସେମାନଙ୍କୁ ବର୍ବର ନାୟକ ହିଁ କୁହାଯିବ; କାରଣ ସେକ୍‌ସପିଅରଙ୍କ ଭାବାବେଗ ଏପରି ଏକ ଆବେଗ ଯାହାକୁ ଏକ ନୂତନ ତଥା ଜାଗ୍ରତ ଚେତନା ଓ ବର୍ବର-ଯୁଗର ବହୁତ କିଛି ନୈତିକ ଧାରଣାର ସଙ୍ଘର୍ଷ ଜନ୍ମ ଦେଇଛି । ଆମ ସମୟର ବାସ୍ତବବାଦୀ ନାଟକ ଏପରି ଏକ ବିଶୃଙ୍ଖଳାର ସୃଷ୍ଟି; କିନ୍ତୁ ବିବିଧ ସମସ୍ୟା ଯେବେ ମୀମାଂସିତ ହୁଏ ଓ କୌଣସି ଏକ ବୁଦ୍ଧିର ନିଷ୍ପତ୍ତିରେ ନାନା ଆବେଗ ଶାନ୍ତ ହୁଏ, ରହିଯାଏ କେବଳ ତାର ଆଙ୍ଗୀକ । ଗ୍ରୀକ୍ ଓ ରୋମକୁ ବାଦ୍‌ଦେଲେ, ଆମ ୟୁରୋପୀୟ ଅତୀତରେ, ଅଧିକତର ସଂସ୍କୃତ ଏକ କୃତି କୁତ୍ରାପି ଦୃଷ୍ଟିଗୋଚର ହୁଏ ନାହିଁ ।"(୧)

## ୯. ସଂସ୍କୃତର ପ୍ରାଣଶକ୍ତି ନିର୍ବନ୍ଧ

ସଂସ୍କୃତ ଅଦ୍‌ଭୁତ ଭାବରେ ସମୃଦ୍ଧ, ଉଚ୍ଛୃଙ୍ଖଳିତ, ନାନା ବିଭବ ସମନ୍ୱିତ, ତଥାପି ସୁଦ୍ଧା ବଡ଼ ନିର୍ଦ୍ଦିଷ୍ଟ ଏବଂ ଦୁଇହଜାର ଛଅଶହ ବର୍ଷ ପୂର୍ବେ ପାଣିନୀଙ୍କ ଦ୍ୱାରା ପ୍ରଣୀତ ବ୍ୟାକରଣ ନିୟମରେ ଶୃଙ୍ଖଳିତ, ଏକ ମହାନ୍ ଭାଷା । ସମୟକ୍ରମେ ଏହା ବିସ୍ତୃତ ହୋଇଛି ନିଜର ସମ୍ଭାର ବୃଦ୍ଧି କରିଛି, ଅଧିକତର ପୂର୍ଣ୍ଣ ଓ ଅଳଙ୍କାର-ମଣ୍ଡିତ ହୋଇଛି । ତଥାପି ବେବେ

(୧) ମୁଁ ଏହି ଲମ୍ବା ଉଦ୍ଧୃତ ଆର୍. ଏସ୍. ପଣ୍ଡିତଙ୍କ ଦ୍ୱାରା ଅନୂଦିତ 'ମୁଦ୍ରାରାକ୍ଷାସ'ର ଭୂମିକାରୁ ଗ୍ରହଣ କରିଛି ।

ହେଲେ ତାର ମୂଳରୁ ବିଚ୍ଛିନ୍ନ ହେଇନାହିଁ । ତାର ପତନମୁଖୀ ପର୍ଯ୍ୟାୟରେ, ସଂସ୍କୃତ ସାହିତ୍ୟ ତାର କିଛି ଶୈଳୀଗତ ଶକ୍ତି ଓ ସରଳତା ହରାଇଛି ଏବଂ ନାନା ଜଟିଳ ଆଙ୍ଗିକ ଓ ବିସ୍ତୃତ ଉପମା ତଥା ରୂପକ ଅଳଙ୍କାରରେ ପୂର୍ଣ୍ଣ ହେଇଛି । ସନ୍ଧିବିଚ୍ଛେଦ ପାଇଁ ଯେଉଁ ବ୍ୟାକରଣ ନିୟମ ପ୍ରଣୀତ ହେଇଥିଲା ତାହା ପରବର୍ତ୍ତୀ କାଳରେ ଅକୁଶଳ ଉତ୍ତରାଧିକାରୀଙ୍କ ହାତରେ ପଦ ସଙ୍ଗେ ପଦଯୋଡ଼ି ଚରଣ ପରେ ଚରଣ ବିଳମ୍ବିତ କରିବାର ଚତୁରତା ପ୍ରଦର୍ଶନର ଗୋଟାଏ କୌଶଳ ହେଇ ରହିଲା ।

ଖ୍ରୀ: ୧୭୪୮ ସୁଦ୍ଧା ସାର୍ ଓ୍ୱିଲିଏମ୍ ଜୋନ୍‌ସ ମନ୍ତବ୍ୟ କରିଥିଲେ, "ସଂସ୍କୃତ ଭାଷା, ତାର ପ୍ରାଚୀନତା ଯାହା ହେଉନା କାହିଁକି, ଗୋଟାଏ ବିସ୍ମୟକର ଗଢ଼ଣର ଭାଷା । ଏହା ଗ୍ରୀକ୍ ଅପେକ୍ଷା ଅଧିକ ସମ୍ପନ୍ନ, ଲାଟିନ୍ ଅପେକ୍ଷା ଅଧିକ ବ୍ୟାପକ ଓ ଉଭୟ ଅପେକ୍ଷା ଅଧିକ ସୂକ୍ଷ୍ମ ଭାବରେ ମାର୍ଜିତ । ତଥାପି ଏହି ଉଭୟ ଭାଷା ସଙ୍ଗେ ଧାତୁ, କ୍ରିୟା ଓ ବ୍ୟାକରଣର ବିବିଧ ରୂପ ଦିଗରୁ ଏତେ ସାମଞ୍ଜସ୍ୟ ରହିଛି ଯେ ଏହି ସଂଯୋଗ କେବେହେଲେ ଆକସ୍ମିକ ହେଇ ନପାରେ । ପ୍ରକୃତ ପକ୍ଷେ, ଏହି ମେଳ ଏତେ ଗଭୀର ଯେ କୌଣସି ଭାଷାବିତ୍ ଏସବୁ ପରୀକ୍ଷା କଲା ପରେ ବିଶ୍ୱାସ ନକରି ରହି ପାରିବ ନାହିଁ ଯେ ଏସବୁ ଭାଷା ଦୂର ଅତୀତରେ କୌଣସି ଗୋଟାଏ ଉତ୍ସରୁ ଜାତ ହୋଇଥିଲା ଓ ସେହି ଉତ୍ସ ହୁଏତ ଆଉ ନାହିଁ···।" ସାର୍ ଓ୍ୱିଲିଏମ୍‌ଙ୍କ ପରେ ଇଂରେଜ, ଫରାସୀ, ଜର୍ମାନ ଓ ଅନ୍ୟାନ୍ୟ ୟୁରୋପୀୟ ବିଦ୍ୱାନମାନେ ସଂସ୍କୃତ ଅଧ୍ୟୟନ କରି ଗୋଟାଏ ନୂତନ ବିଜ୍ଞାନ ଅର୍ଥାତ୍ ତୁଳନାତ୍ମକ ଭାଷା ବିଜ୍ଞାନର ଭିତ୍ତି ସ୍ଥାପନ କଲେ । ଏହି ନୂତନ କ୍ଷେତ୍ରରେ ଜର୍ମାନ ବିଦ୍‌ବତ୍ତା ବିଶେଷ ଅଗ୍ରଗତି କରିପାରିଲା ଏବଂ ସଂସ୍କୃତରେ ଗବେଷଣା ନିମନ୍ତେ ଊନବିଂଶ ଶତାବ୍ଦୀର ଏହି ଜର୍ମାନ ବିଦ୍ୱାନମାନେହିଁ ଉଚ୍ଚତମ ପ୍ରଶଂସାର ଅଧିକାରୀ । ବସ୍ତୁତଃ ପ୍ରତ୍ୟେକ ଜର୍ମାନ ବିଶ୍ୱ-ବିଦ୍ୟାଳୟରେ ସଂସ୍କୃତ ବିଭାଗ ଥିଲା ଓ ତାର ଦାୟିତ୍ୱରେ ଜଣେ ଦୁଇଜଣ ଅଧ୍ୟାପକ ଥିଲେ । ଭାରତରେ ପାଣ୍ଡିତ୍ୟର ଅଭାବ ନଥିଲା; କିନ୍ତୁ ଏଠାର ପଣ୍ଡିତମାନେ ପୁରାତନ ଶୈଳୀ ଅନୁସରଣ କରୁଥିଲେ । ସମାଲୋଚନା ବୃତ୍ତି ସେଥିରେ ନଥିଲା ଏବଂ ଆରବ୍ୟ ଓ ପାରସିକ ଭାଷା ବ୍ୟତୀତ ଅନ୍ୟ କୌଣସି ବୈଦେଶିକ ଶାସ୍ତ୍ରୀୟ ଭାଷା ସଙ୍ଗେ ସେମାନଙ୍କର ପରିଚୟ ନଥିଲା । ୟୁରୋପୀୟ ପ୍ରେରଣାରେ ନୂତନ ଏକ ଧରଣର ଅଧ୍ୟୟନ ଭାରତରେ ଆରମ୍ଭ ହେଲା ଓ ବହୁ ଭାରତୀୟ ୟୁରୋପ(ସାଧାରଣତଃ ଜର୍ମାନୀ) ଯାତ୍ରା କଲେ ଗବେଷଣାର ନବ ନବ ପ୍ରଣାଳୀ ଏବଂ ସମାଲୋଚନା ଓ ତୁଳନାତ୍ମକ ଅଧ୍ୟୟନରେ ନିପୁଣତା ପ୍ରାପ୍ତି ନିମନ୍ତେ । ୟୁରୋପୀୟଙ୍କ ଅପେକ୍ଷା ଏହି ଭାରତୀୟମାନଙ୍କର ଗୋଟାଏ ସୁବିଧା ଥିଲା ଓ ଗୋଟାଏ ଅସୁବିଧା ମଧ୍ୟ ଥିଲା । ଅସୁବିଧାଟି ହେଉଛି ସେମାନଙ୍କର ପୂର୍ବକଳ୍ପିତ କେତେକ ଧାରଣା ଓ ପାରମ୍ପରିକ ଐତିହ୍ୟ ଯାହା ନିଷ୍ପକ୍ଷ ସମାଲୋଚନା ପାଇଁ ସେମାନଙ୍କର ପଥରୋଧ କରୁଥିଲା । ସୁବିଧା ହେଉଛି, ଆଉ ସେ ସୁବିଧା ମଧ୍ୟ ଖୁବ୍ ବଡ଼, ରଚନାର ଅନ୍ତର୍ନିହିତ ଭାବ ଗ୍ରହଣ କରିବା, ତାର ପାଳିତ ପରିବେଷ୍ଟନୀର ଚିତ୍ର ଆହରଣ କରିବାର ସାମର୍ଥ୍ୟ ସେମାନଙ୍କର ଥିଲା ଓ ସେଥି ସଙ୍ଗେ ସେମାନେ ସଙ୍ଗତି ରକ୍ଷା

କରିପାରୁଥିଲେ ।

ଯେ କେଉଁ ଭାଷା ତାର ବ୍ୟାକରଣ ଓ ଭାଷାତତ୍ତ୍ୱଠାରୁ ନାନା ଗୁଣରେ ମହାନ୍ । ଏହା ଗୋଟାଏ ଜାତିର ପ୍ରତିଭା ଓ ସଂସ୍କୃତିର କାବ୍ୟିକ ଇତିହାସ ଏବଂ ତାକୁ ରୂପ ଦେଇଥିବା ବିବିଧ ଚିନ୍ତା ଓ କଳ୍ପନାର ଜୀବନ୍ତ ରୂପ । ଯୁଗ ପରେ ଯୁଗ ଅତୀତ ହେବା ସଙ୍ଗେ ଶବ୍ଦର ଅର୍ଥ ପରିବର୍ତ୍ତିତ ହୁଏ ଏବଂ ପୁରାତନ ପରିଚ୍ଛଦ ବହୁଧା ଧାରଣ କରି ମଧ୍ୟ ପୁରାତନ ଯେତେ ଧାରଣା ନୂତନ ରୂପ ପରିଗ୍ରହ କରେ । ଗୋଟାଏ ପୁରାତନ ଶବ୍ଦ ଅବା ବାକ୍ୟାଂଶର ଅନ୍ତର୍ନିହିତ ଭାବ ବୁଝିବା ତ ଦୂରର କଥା, ତାର ସାଧାରଣ ଅର୍ଥ ଧରିବା ବି କଷ୍ଟକର ହୋଇଥାଏ । ସେହି ପୁରାତନ ଅର୍ଥର ଗୋଟାଏ ଝଲକ ଯଦି ଦେଖିବାକୁ ଆମେ ଚାହୁଁ ଏବଂ ଅତୀତରେ ଯେଉଁମାନେ ସେହି ଭାଷା ବ୍ୟବହାର କରିଥିଲେ ସେମାନଙ୍କର ମନ ଅଧ୍ୟୟନ କରିବା ପାଇଁ ଯଦି ଆଗ୍ରହ କରୁଁ, ତାହାହେଲେ ଗୋଟାଏ ପ୍ରକାର ଭାବୁକତା ତଥା କାବ୍ୟିକ ଅଭିମୁଖ୍ୟ ଆବଶ୍ୟକ ହୁଏ । ଭାଷା ଯେତେ ସମ୍ପନ୍ନ ଓ ଯେତେ ବିଭବପୂର୍ଣ୍ଣ ତାର ଅର୍ଥ ଗ୍ରହଣ କରିବାରେ ସେତିକି କଷ୍ଟ ହୁଏ । ଅନ୍ୟାନ୍ୟ ଶାସ୍ତ୍ରୀୟ ଭାଷା ଭଳି ସଂସ୍କୃତ ମଧ୍ୟ ଏପରି ସବୁ ଶବ୍ଦରେ ପୂର୍ଣ୍ଣ ହୋଇ ରହିଛି ଯାହାର କାବ୍ୟିକ ସୌନ୍ଦର୍ଯ୍ୟ କେବଳ ନୁହେଁ ଗମ୍ଭୀର ତାତ୍ପର୍ଯ୍ୟ ବି ଅଛି । ଏତେ ସମ୍ମିଳିତ ଭାବ ବି ରହିଛି ଯାହା, ଦୃଷ୍ଟିଭଙ୍ଗୀ ଓ ପ୍ରାଣ ଦିଗରୁ ଅନାମ୍ନୀୟ, ଅନ୍ୟ ଏକ ଭାଷାକୁ ଅନୁଦିତ କରିବା ସମ୍ଭବ ନୁହେଁ । ଏପରିକି ତାର ବ୍ୟାକରଣ ତାର ଦର୍ଶନରେ ମଧ୍ୟ ଗୋଟାଏ ଗମ୍ଭୀର କାବ୍ୟିକ ଆଧେୟ ରହିଛି । ସଂସ୍କୃତର ଏକ ପୁରାତନ ଅଭିଧାନ କାବ୍ୟରେ ରଚିତ ।

ଆମ ଭିତରୁ ଯେଉଁମାନେ ସଂସ୍କୃତ ଅଧ୍ୟୟନ କରିଚନ୍ତି ସେମାନଙ୍କ ପକ୍ଷରେ ମଧ୍ୟ ଏହି ପ୍ରାଚୀନ ଭାଷାର ପ୍ରାଣରେ ପ୍ରବେଶ କରିବା ଓ ସେହି ଦୂର ଅତୀତରେ ତାର ବିଶ୍ୱରେ ଜୀବନ୍ତ କରିବା କିଛି ସହଜ କଥା ନୁହେଁ । ତଥାପି କେତେ ପର୍ଯ୍ୟନ୍ତ ଆମେ କରିପାରିବା କାରଣ ଆମେ ବହୁ ପୁରାତନ ପରମ୍ପରାର ଉତ୍ତରାଧିକାରୀ ଏବଂ ସେହି ପୁରାତନ ଦୁନିଆ ଏବେ ବି ଆମ କଳ୍ପନାରେ ଜୀବିତ ରହିଛି । ଆମର ଯେତେ ସବୁ ଆଧୁନିକ ଭାଷା ସଂସ୍କୃତର ସନ୍ତାନ ଏବଂ ଏସବୁ ଭାଷାର ଅଧିକାଂଶ ଶବ୍ଦସମ୍ଭାର ଓ ଅଭିବ୍ୟକ୍ତିର ଆଙ୍ଗିକ ପାଇଁ ଆମେ ସଂସ୍କୃତ ନିକଟରେ ଋଣୀ । ସଂସ୍କୃତ କାବ୍ୟ ଓ ଦର୍ଶନର ବହୁ ସମୃଦ୍ଧ ତଥା ତାତ୍ପର୍ଯ୍ୟପୂର୍ଣ୍ଣ ଶବ୍ଦ, ଯାହା କୌଣସି ବୈଦେଶିକ ଭାଷାରେ ଅନୁବାଦ କରିବା ଅସମ୍ଭବ, ଏବେ ବି ଆମ ଆଧୁନିକ ଭାଷାମାନଙ୍କର ଜୀବନ୍ତ ଅଂଶ ହୋଇ ରହିଛି । ସଂସ୍କୃତ ଗୋଟାଏ ଭାଷା ଭାବରେ ବହୁଦିନରୁ ଅପ୍ରଚଳିତ ହୋଇ ପଡ଼ିଥିଲେ ସୁଦ୍ଧା ତାର ପ୍ରାଣସଂସ୍ପର୍ଶୀ ଶକ୍ତି ଏବେ ବି ବଡ଼ ବିସ୍ମୟକର ଭାବରେ ରହିଛି । କିନ୍ତୁ କେତେ ପଣ୍ଡିତ ହୋଇଥିଲେ ମଧ୍ୟ ବିଦେଶୀଙ୍କ ପାଇଁ ଏ ଦିଗରେ ଅସୁବିଧାର ଅନ୍ତ ନାହିଁ । ଦୁର୍ଭାଗ୍ୟବଶତଃ ବିଦ୍ୱାନ ଓ ଜ୍ଞାନୀମାନେ କବି ନୁହନ୍ତି ଏବଂ ଗୋଟାଏ ଭାଷା ବ୍ୟାଖ୍ୟା କରିବା ପାଇଁ ପଣ୍ଡିତ କବି ହିଁ ଆବଶ୍ୟକ । ମସିଏ ବାର୍ଥ୍ ଯେଉଁଭଳି ସୂଚିତ କରିଚନ୍ତି ଆମେ ଏହି ବିଦ୍ୱାନମାନଙ୍କ ପାଖରୁ ସାଧାରଣତଃ "ଯେଉଁ ଶବ୍ଦାନୁବାଦ ପାଇଥାଉ ତାହା ପ୍ରକୃତ ଅର୍ଥଠାରୁ ଦୂର କେବଳ ନୁହେଁ ବରଂ ବିପରୀତ ମଧ୍ୟ ।"

ଅତଏବ ତୁଳନାତ୍ମକ ଭାଷା-ବିଜ୍ଞାନ ଯେବେ ପ୍ରଗତି କରୁଛି ଓ ସଂସ୍କୃତ ଉପରେ ବହୁ ଗବେଷଣା ବି ଯଦିଓ ହୋଇ ସାରିଛି, ତାହା ଏହି ଭାଷା ପ୍ରତି ଗୋଟିଏ କାବ୍ୟିକ ତଥା ଭାବୁକ ଆଭିମୁଖ୍ୟର ଦୃଷ୍ଟିକୋଣରୁ ଦେଖିଲେ ଉପର ଓ ନିରର୍ଥକ ମନେହୁଏ । ଇଂରେଜୀ ଅବା ଅନ୍ୟ କୌଣସି ବୈଦେଶିକ ଭାଷାରେ ସଂସ୍କୃତରୁ ସେପରି କିଛି ହୁଏତ ଅନୁବାଦ କରାଯାଇନି ଯାହାକୁ ମୂଳ ରଚନାର ଯୋଗ୍ୟ ଅବା ଯଥାର୍ଥ କୁହାଯାଇ ପାରିବ ନାନା କାରଣରୁ ଭାରତୀୟ ଓ ବୈଦେଶିକମାନେ ଏହି କାର୍ଯ୍ୟରେ ଅସଫଳ ହୋଇଛନ୍ତି । ଏହା ଦୁଃଖର କଥା ଏବଂ ସୌନ୍ଦର୍ଯ୍ୟ, କଳ୍ପନା ଓ ଗଭୀର ଚିନ୍ତାରେ ପୂର୍ଣ୍ଣ ଏବଂ ଯାହା ଭାରତର କେବଳ ନୁହେଁ ସମଗ୍ର ମାନବ ଜାତିର ଐତିହ୍ୟ ହେବା ଉଚିତ ସେପରି କିଛି ପାଇବାରୁ ବିଶ୍ୱ ବଞ୍ଚିତ ହେଉଛି ।

ବାଇବେଲର ପ୍ରାମାଣିକ ସଂସ୍କରଣର ଇଂରେଜୀ ଅନୁବାଦ ପଛର କଠୋର ସଂଯମ, ସଂଭ୍ରମଭରା ଆଭିମୁଖ୍ୟ ଓ ଅନ୍ତର୍ଦୃଷ୍ଟି ଗୋଟାଏ ମହାନ ଗ୍ରନ୍ଥ ଯେ ସୃଷ୍ଟି କଲା କେବଳ ନୁହେଁ, ଇଂରେଜୀ-ଭାଷାକୁ ମଧ୍ୟ ଶକ୍ତି ଓ ଗୌରବ ଅର୍ପଣ କଲା । ପୁରୁଷାନୁକ୍ରମେ, ୟୁରୋପୀୟ ବିଦ୍ୱାନ ଓ କବିମାନେ ଗ୍ରୀକ୍ ଲାଟିନ୍ ଭାଷାର ପ୍ରତିଷ୍ଠିତ ଗ୍ରନ୍ଥମାନ ଗଭୀର ଶ୍ରଦ୍ଧା ସହକାରେ ଅଧ୍ୟୟନ କରି ବିଭିନ୍ନ ୟୁରୋପୀୟ ଭାଷାରେ ଚମତ୍କାର ଅନୁବାଦ ଗ୍ରନ୍ଥମାନ ପ୍ରକାଶ କରି ସାରିଛନ୍ତି । ସୁତରାଂ ସାଧାରଣ ଲୋକେ ମଧ୍ୟ କେତେ ପର୍ଯ୍ୟନ୍ତ ସେସବୁ ସଂସ୍କୃତିରୁ ଲାଭ ପାଇପାରୁଛନ୍ତି ଏବଂ ସେମାନଙ୍କ ନୀରସ ଜୀବନରେ ସତ୍ୟ ଓ ସୌନ୍ଦର୍ଯ୍ୟର ରସ କିୟତ୍ ପରିମାଣରେ ଆସ୍ୱାଦନ କରି ପାରୁଛନ୍ତି । ଦୁର୍ଭାଗ୍ୟର କଥା, ସଂସ୍କୃତର ପ୍ରତିଷ୍ଠିତ ଗ୍ରନ୍ଥମାନଙ୍କୁ ନେଇ ଆଧୁନିକ ଭାରତୀୟ ଭାଷାମାନଙ୍କରେ ଏ ପ୍ରକାର କାର୍ଯ୍ୟ ସମ୍ପାଦିତ ହୋଇପାରିନାହିଁ; କେବେ ହେବ ଅବା ହେବ କି ନାହିଁ ମୁଁ ଜାଣେନି । ଆମର ବିଦ୍ୱାନ ସଂଖ୍ୟା ବୃଦ୍ଧି ପାଉଛି, ବିଦ୍ୱତ୍ତା ବି ବୃଦ୍ଧି ପାଉଛି, ଆମର କବିମାନେ ବି ଅଛନ୍ତି; କିନ୍ତୁ ଉଭୟ ଭିତରେ ବ୍ୟବଧାନ ବରାବର ବଢ଼ି ଚାଲିଛି । ଆମର ରଚନାତ୍ମକ ପ୍ରବୃତ୍ତି ଅନ୍ୟ ଏକ ଦିଗରେ ପରିଚାଳିତ ହେଉଛି ଏବଂ ଆଜିର ଦୁନିଆ ଆମପାଖରେ ଯେତେ ସବୁ ଦାବୀ ଉପସ୍ଥାପିତ କରୁଛି, ସେଥିରୁ ମୁକ୍ତ ହୋଇ ନିରୁଦ୍‌ବେଗ ଭାବରେ ସଂସ୍କୃତର ପ୍ରତିଷ୍ଠିତ ଗ୍ରନ୍ଥମାନ ଅଧ୍ୟୟନ କରିବା ନିମନ୍ତେ ପ୍ରାୟ ଅବକାଶ ରହୁନି କହିଲେ ଚଳେ । ଭାରତରେ ବିଶେଷତଃ, ଆମକୁ ଅନ୍ୟ ଏକ ଦିଗରେ ଧାବିତ ହୋଇ ଆମର ବହୁକାଳରୁ ନଷ୍ଟ ହୋଇଥିବା ସମୟ ପୂରଣ କରିବାକୁ ପଡ଼ୁଛି । ଅତୀତରେ ଏହିସବୁ ପ୍ରତିଷ୍ଠିତ ଗ୍ରନ୍ଥ ଚର୍ଚ୍ଚାରେ ଆମେ ଏତେ ନିମଜ୍ଜିତ ହୋଇ ପଡ଼ିଥିଲୁ ଏବଂ ଆମେ ଆମର ନିଜସ୍ୱ ରଚନାତ୍ମକ ପ୍ରବୃତ୍ତି ଯେହେତୁ ହରାଇ ବସିଲୁ, କାଳକ୍ରମେ ଯେଉଁ ସବୁ ଗ୍ରନ୍ଥ ନେଇ ଆମେ ଏତେ ଗର୍ବ କରୁଥିଲୁ ସେଥିରୁ ମଧ୍ୟ ଆମେ ପ୍ରେରଣା ପାଇପାରିଲୁ ନାହିଁ । ଭାରତୀୟ ସଂସ୍କୃତ ଗ୍ରନ୍ଥମାନଙ୍କର ଅନୁବାଦ, ମୁଁ ମନେକରେ, ଅବ୍ୟାହତ ଭାବରେ ପ୍ରକାଶ ପାଇବ ଏବଂ ସଂସ୍କୃତ ଶବ୍ଦ ଓ ନାମ ଗୁଡ଼ିକର ଯଥାଯଥ ବନାନ ଓ ଭେଦ, ଆବଶ୍ୟକୀୟ ଭେଦ-ପ୍ରଦର୍ଶକ ଚିହ୍ନ ଗୁଡ଼ିକ ଯେପରି ରହିବ ଏବଂ ପ୍ରଚୁର ଭାବରେ ସେସବୁର ବ୍ୟାଖ୍ୟା, ଅନୁସ୍ଥ ଓ ତୁଳନାତ୍ମକ

ଅଧ୍ୟୟନ ଯେପରି ସମ୍ମିବେଶିତ ହୁଏ, ବିଦ୍ଵାନ ମାନେ ସେଥିପ୍ରତି ଯଥୋଚିତ ଦୃଷ୍ଟି ଦେବେ । ସେ ପଚାର ସଚେତନ ଅନୁଚ ଦରେ ବସ୍ତୁତଃ ସବୁ କିଛି ରହିବ, ରହିବନି କେବଳ ତାର ଆତ୍ମା । ଦିନେ ଯାହା ଥିଲା ଜୀବନ ଓ ଆନନ୍ଦର ଆଧାର, ଏବେ କମନୀୟ ଓ ଗୀତିମୟ; ମାନ୍ସିକ କଲ୍ପନାରେ ପୃଷ୍ଟ—ପୁରାତନ, ନିରସ ଓ ପାଣହୀନ ହୋଇ ପଡ଼ିବ । ସେଥିରେ ନା ରହିବ ଯୌବନ ନା ସୌନ୍ଦର୍ଯ୍ୟ; ରହିବ ପଣ୍ଡିତଙ୍କ ଗ୍ରନ୍ଥାଗାରର ଧୂଳି ଓ ମଧ୍ୟଯୁଗୀ ଲଣ୍ଠନର ବିଚିତ୍ର ଗନ୍ଧ ।

କେତେକାଳ ଧରି ସଂସ୍କୃତ ଗୋଟାଏ ମୃତଭାଷା ହୋଇ ରହିଛି ଅର୍ଥାତ୍ ଲୋକ-ଭାଷା ହୋଇ ଆଉ ରହିନାହିଁ, ମୁଁ ଜାଣେନି । କାଳିଦାସଙ୍କ ସମୟରୁ ମଧ୍ୟ ଭାରତସାରା ଯଦିଓ ଏହା ଶିକ୍ଷିତ ଲୋକଙ୍କର ଭାଷା ଥିଲା, ଜନସାଧାରଣଙ୍କର ଭାଷା ହୋଇ ନ ଥିଲା । ତଥାପି ସେପରି ଭାବରେ ହିଁ ଏହା ପ୍ରଚଳିତ ରହିଲା ଏବଂ ମଧ୍ୟ-ଏସିଆ ଓ ଦକ୍ଷିଣ-ପୂର୍ବ ଏସିଆର ଭାରତୀୟ ଉପନିବେଶମାନଙ୍କୁ ବିସ୍ତୃତ ହେଲା । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ କାମ୍ବୋଡ଼ିଆ ମନ୍ଦିରରେ ଉପଯୁକ୍ତ ସମୟରେ ସଂସ୍କୃତ ଗ୍ରନ୍ଥମାନଙ୍କରୁ ଆବୃତ୍ତି କରାଯିବା ଓ ସମ୍ଭବତଃ ସଂସ୍କୃତ ନାଟକମାନ ବି ମଞ୍ଚସ୍ଥ ହେବାର ପ୍ରମାଣ ରହିଛି । ଏବେ ବି ଆମ ଦେଶରେ କେତେକ ଧର୍ମକର୍ମାନୁଷ୍ଠାନରେ ସଂସ୍କୃତ ବ୍ୟବହୃତ ହେଉଛି । ଭାରତରେ ସଂସ୍କୃତର ଜୀବନୀ ଶକ୍ତି ବିସ୍ମୟକର ଭାବରେ ଅକ୍ଷୁର୍ଣ୍ଣ ରହି ଆସିଛି । ତ୍ରୟୋଦଶ ଶତାବ୍ଦୀ ପ୍ରାରମ୍ଭରେ ଆଫଗାନୀ ସୁଲତାନମାନେ ଯେବେ ଦିଲ୍ଲୀ ସିଂହାସନରେ ଅଧିଷ୍ଠିତ ହେଲେ, ପାରସିକ ଭାଷା ରାଜଦରବାରର ଭାଷା ଭାବରେ ଭାରତର ବହୁ ଅଞ୍ଚଳରେ ପ୍ରଚଳିତ ହେଲା ଏବଂ କ୍ରମଶଃ ବହୁ ଶିକ୍ଷିତ ଲୋକ ସଂସ୍କୃତ ଅପେକ୍ଷା ପାରସିକ ଭାଷାରେ ବୃତ୍ତି ଲାଭ କରିବା ପାଇଁ ଚେଷ୍ଟିତ ହେଲେ । ଜନସାଧାରଣଙ୍କ ଦ୍ୱାରା ବ୍ୟବହୃତ ବିଭିନ୍ନ ଭାଷା ମଧ୍ୟ ସମୃଦ୍ଧ ହେବାକୁ ଲାଗିଲା ଏବଂ ଏ ସବୁ ଭାଷାରେ ବିବିଧ ସାହିତ୍ୟିକ ଆଙ୍ଗିକ ବିକାଶ ଲାଭକଲା । ତଥାପି ଏ ସବୁ ସତ୍ତ୍ୱେ ସଂସ୍କୃତର ଜୀବନଧାରା ଅବ୍ୟାହତ ରହିଲା ଯଦିଓ, ତାର ଗୁଣାତ୍ମକ ଉତ୍କର୍ଷ ସାଧିତ ହୋଇ ପାରୁ ନଥିଲା । ଖ୍ରୀ: ୧୯୩୭ ରେ ତ୍ରିବାନ୍ଦ୍ରମରେ ଅନୁଷ୍ଠିତ ପ୍ରାଚ୍ୟ ସମ୍ମିଳନୀରେ ସଭାପତିତ୍ୱ କରି ଡକ୍ଟର ଏଫ୍. ଏଫ୍. ଥୋମାସ ଭାରତରେ ସଂସ୍କୃତ କିପରି ଏକୀକରଣର ଗୋଟାଏ ମହାନ୍ ଶକ୍ତି ଭାବରେ କାର୍ଯ୍ୟ କରି ଆସିଛି ଏବଂ ଏ ପର୍ଯ୍ୟନ୍ତ ବି ତାହା କିପରି ବହୁ ବିସ୍ତୃତ ହୋଇ ରହିଛି, ସୂଚିତ କରିଥିଲେ । ଆହୁରି ମଧ୍ୟ, ସେ ପରାମର୍ଶ ଦେଇ କହିଥିଲେ ଯେ ସଂସ୍କୃତର ଗୋଟାଏ ସରଳ ରୂପ, ଗୋଟାଏ ପ୍ରକାର ମୌଳିକ-ସଂସ୍କୃତ ବର୍ତ୍ତମାନ ସାଧାରଣ ସର୍ବଭାରତୀୟ ଭାଷା ଭାବରେ ଉତ୍ସାହିତ କରାଯିବା ଉଚିତ । ତାଙ୍କର ମତ ପାଇଁ ସମର୍ଥନ ଯୋଗାଇବାକୁ ଯାଇ ପୂର୍ବେ ମେକ୍ସମୁଲ୍ଲାର ଯାହା କହି-ଥିଲେ ତାହା ସେ ଉଦ୍ଧାର କରିଥିଲେ : "ଭାରତର ଅତୀତ ଓ ବର୍ତ୍ତମାନ ଭିତରେ ଏପରି ଅପୂର୍ବ ଅବିଚ୍ଛିନ୍ନତା ରହିଛି ଯେ ବାରମ୍ବାର କେତେ ସାମାଜିକ ଉଦ୍‌ବେଳନ, ଧର୍ମ ର ସଂସ୍କାର ଏବଂ ବୈଦେଶିକ ଆକ୍ରମଣ ସତ୍ତ୍ୱେ ଏହି ବିଶାଳ ଦେଶରେ ଏବେ ସୁଦ୍ଧା ସଂସ୍କୃତ ହିଁ ଏକମାତ୍ର ଭାଷା ଯାହା ସମଗ୍ର ଦେଶରେ କଥିତ ହେଉଛି ବୋଲି କୁହାଯାଇ ପାରେ...ଏପରିକି ଏହି ମୁହୂର୍ତ୍ତରେ, ଶତେକ ବର୍ଷର ଇଂରେଜୀ ଶାସନ ଓ ଇଂରାଜୀ

ଶିକ୍ଷା ପ୍ରଚଳନ ପରେ ମଧ୍ୟ ମୋର ବିଶ୍ୱାସ ଯେ ସଂସ୍କୃତ ଭାରତରେ ଯେତେ ବିସ୍ତୃତ ଭାବରେ ବୋଧଗମ୍ୟ ହୋଇ ରହିଛି, ଦାନ୍ତେଙ୍କ ସମୟର ୟୁରୋପରେ ଲାଟିନ୍ ଭାଷାର ସେ ବିସ୍ତାର ନ ଥିଲା ।"

ଦାନ୍ତେଙ୍କ ସମୟରେ ୟୁରୋପରେ ଲାଟିନ୍ ଭାଷା ବୁଝୁଥିବା ଲୋକଙ୍କ ସଂଖ୍ୟା କେତେ ଥିଲା ସେ ସମ୍ପର୍କରେ ମୋର କୌଣସି ଧାରଣା ନାହିଁ; ଆଜିର ଭାରତରେ ମଧ୍ୟ କେତେ ସଂଖ୍ୟକ ଲୋକ ସଂସ୍କୃତ ବୁଝନ୍ତି ତାହା ମୁଁ ଜାଣେନା; କିନ୍ତୁ ସଂସ୍କୃତ ବୁଝିପାରିବା ଲୋକଙ୍କ ସଂଖ୍ୟା ଏବେ ବି ଯେ ଖୁବ୍ ବେଶି ଓ ତାହା ମଧ୍ୟ ବିଶେଷକରି ଦକ୍ଷିଣ ଭାରତରେ, ମୁଁ ଜାଣେ । ଏ ଯୁଗର ହିନ୍ଦୀ, ବଙ୍ଗଳା, ମରାଠୀ ଓ ଗୁଜରାଟୀ ଇତ୍ୟାଦି ଇଣ୍ଡୋ-ଆର୍ଯ୍ୟ ଭାଷାମାନଙ୍କ ଭିତରୁ ଯେ କୌଣସି ଗୋଟିଏ ଭାଷା ଭଲ ଭାବରେ ଜାଣି-ଥିବା ଲୋକ ପକ୍ଷରେ ସରଳ କଥିତ ସଂସ୍କୃତ ବୁଝିପାରିବା ସେତେ କଷ୍ଟକର ନୁହେଁ । ଏପରିକି ଆଜିର ଉର୍ଦ୍ଦୁ ମଧ୍ୟ ଯାହା ପୂର୍ଣ୍ଣତଃ ଗୋଟାଏ ଇଣ୍ଡୋ-ଆର୍ଯ୍ୟ ଭାଷା, ସେଥିର ଶତକଡ଼ା ଅଶୀ ଭାଗ ଶବ୍ଦ ସଂସ୍କୃତରୁ ଉତ୍ପନ୍ନ । ଗୋଟାଏ ଶବ୍ଦ ସଂସ୍କୃତରୁ କି ପାରସିକ ଭାଷାରୁ ଆସିଛି କହିବା ବହୁଧା କଠିନ ହୋଇ ପଡ଼େ; କାରଣ ଉଭୟ ଭାଷାର ମୂଳଶବ୍ଦ ଗୁଡ଼ିକ ପ୍ରାୟ ସମାନ । ଆହୁରି ବିଚିତ୍ର କଥା ଯେ ଦକ୍ଷିଣ ଭାରତର ଦ୍ରାବିଡ଼ ଭାଷା ଗୁଡ଼ିକ ମୂଳତଃ ସଂସ୍କୃତ ଠାରୁ ସମ୍ପୂର୍ଣ୍ଣ ଭିନ୍ନ ସତ୍ତ୍ୱେ; ସଂସ୍କୃତରୁ ଏତେ ବହୁଳଭାବରେ ଶବ୍ଦ ଗ୍ରହଣ କରିଛନ୍ତି ଯେ ଆଜିର ଯେକୌଣସି ଦକ୍ଷିଣ ଭାରତୀୟ ଭାଷାର ପ୍ରାୟ ଅର୍ଦ୍ଧେକ ଶବ୍ଦ ସଂସ୍କୃତ ସଙ୍ଗେ ଘନିଷ୍ଠ ଭାବେ ସମ୍ପର୍କିତ ।

ନାଟକ ସମେତ ନାନା ବିଷୟବସ୍ତୁ ଉପରେ ସମଗ୍ର ମଧ୍ୟଯୁଗରେ ଓ ଆଧୁନିକ ଯୁଗ ପର୍ଯ୍ୟନ୍ତ ଅବ୍ୟାହତ ଭାବରେ ସଂସ୍କୃତରେ ଗ୍ରନ୍ଥମାନ ପ୍ରଣୀତ ହୋଇଛି । ଏବେ ବି ସମୟେ ସମୟେ ସେ ପ୍ରକାର ବହି ଓ ସଂସ୍କୃତ ପତ୍ରିକା ପ୍ରକାଶ ପାଉଛି । ଏ ସବୁର କୋଟୀ ଉଚ୍ଚ ନୁହେଁ ଓ ସଂସ୍କୃତ ସାହିତ୍ୟର ମୂଲ୍ୟ ବୃଦ୍ଧି କରିବା ଦିଗରେ ଏ ସବୁର ଅବଦାନ କିଛି ନୁହେଁ । କିନ୍ତୁ ବିସ୍ମୟର କଥା ହେଉଛି ଯେ ଏତେ ଦୀର୍ଘକାଳ ଧରି ସଂସ୍କୃତର ଏ ଆକର୍ଷଣ କିପରି ଅକ୍ଷୁର୍ଣ୍ଣ ରହି ପାରିଛି ? ଆଜି ବି କେବେ କେବେ ବଡ଼ ବଡ଼ ସଭାମାନଙ୍କରେ ସଂସ୍କୃତରେ ଭାଷଣ ଦିଆଯାଇଥାଏ । ଏକଥା ଅବଶ୍ୟ ସ୍ୱାଭାବିକ ଯେ ସଭାର ଶ୍ରୋତା କମ୍ ବହୁତରେ ଶିକ୍ଷିତ ।

ସଂସ୍କୃତର ଏ ପ୍ରକାର ଅବ୍ୟାହତ ବ୍ୟବହାର ନିଃସନ୍ଦେହରେ ଆଧୁନିକ ଭାରତୀୟ ଭାଷା ଗୁଡ଼ିକର ସ୍ୱାଭାବିକ ଅଭିବୃଦ୍ଧି ନିରୋଧିତ କରିଛି । ଶିକ୍ଷିତ ବୁଦ୍ଧିଜୀବୀମାନେ ଏହି ସବୁ ଭାଷାକୁ ଅସଂସ୍କୃତ ଓ ଅମାର୍ଜିତ ଏବଂ କୌଣସି ରଚନାତ୍ମକ ଅବା ପାଣ୍ଡିତ୍ୟପୂର୍ଣ୍ଣ କୃତି ନିମନ୍ତେ ସଂସ୍କୃତ ଭଲ ଓ ପରବର୍ତ୍ତୀ କାଳରେ ପାରସିକ ଭାଷା ଭଲ ଉପଯୋଗୀ ମଣୁନଥିଲେ । ଏହି ପ୍ରତିବନ୍ଧକ ସତ୍ତ୍ୱେ ପ୍ରାଦେଶିକ ଭାଷା ଶତ ଶତ ବର୍ଷ ଭିତରେ କ୍ରମଶଃ ରୂପ ପରିଗ୍ରହ କଲା, ସାହିତ୍ୟିକ ଆଙ୍ଗିକ ବିକାଶ କଲା ଏବଂ ନିଜର ସାହିତ୍ୟ ନିର୍ମାଣ କଲା

ଆଧୁନିକ ଶ୍ୟାମ ଦେଶରେ ଶିଳ୍ପ, ବିଜ୍ଞାନ ଓ ପ୍ରଶାସନ କ୍ଷେତ୍ର ନିମନ୍ତେ ନୂତନ

ଶବ୍ଦଭାଷା ଯେବେ ଆବଶ୍ୟକ ହେଲା, ସେସବୁ ସଂସ୍କୃତରୁ ଗ୍ରହଣ କରାଗଲା । ଏହା ବାସ୍ତବିକ କୌତୂହଳକର ।

ପ୍ରାଚୀନ ଭାରତୀୟମାନେ ଧ୍ୱନି ଉପରେ ବିଶେଷ ଗୁରୁତ୍ୱ ଅର୍ପଣ କରୁଥିଲେ । ଅତଏବ ସେମାନଙ୍କ ରଚନାରେ, ପଦ୍ୟ ହେଉ କି ଗଦ୍ୟ ହେଉ, ଧ୍ୱନିମେଳ ଓ ସ୍ୱର ସମ୍ବନ୍ଧୀୟ ଗୁଣ ରହୁଥିଲା । ଶବ୍ଦର ନିର୍ଭୁଲ ଉଚ୍ଚାରଣ ନିଶ୍ଚିତ କରିବା ନିମନ୍ତେ ବିଶେଷ ପ୍ରୟାସ କରାଯାଉଥିଲା ଓ ସେଥିନିମନ୍ତେ ବିସ୍ତୃତ ଭାବରେ ନିୟମମାନ ପ୍ରଣୀତ ହେଲା । ଏହାର ଅବଶ୍ୟକତା ମଧ୍ୟ ଯଥେଷ୍ଟ ଥିଲା; କାରଣ ପୁରାକାଳରେ ଶିକ୍ଷା ଥିଲା ମୌଖିକ ଏବଂ ବଡ଼ ବଡ଼ ଗ୍ରନ୍ଥ ସମ୍ପୂର୍ଣ୍ଣ ଭାବରେ କଣ୍ଠସ୍ଥ କରି ପୁରୁଷରୁ ପୁରୁଷ ଅର୍ପଣ କରାଯାଉଥିଲା । ଶବ୍ଦର ଧ୍ୱନି ସଙ୍ଗେ ଜଡ଼ିତ ତାତ୍ପର୍ଯ୍ୟ, ଧ୍ୱନି ସଙ୍ଗେ ବୋଧ ସମନ୍ୱିତ କରିବାର ପ୍ରଚେଷ୍ଟା ଉଦ୍ରେକ କଲା । ଫଳତଃ, ଏ ପ୍ରକାର ମିଶ୍ରଣ କେବେ ଆନନ୍ଦଦାୟକ ହୋଇଛି ତ କେବେ ଅସ୍ୱାଭାବିକ କୃତ୍ରିମତାରେ ପର୍ଯ୍ୟବସିତ ହୋଇଛି । ଇ. ଏଇଚ୍. ଜନ୍‌ସନ୍ ଏ ସମ୍ପର୍କରେ ଲେଖିଛନ୍ତି, "ଭାରତର ସଂସ୍କୃତ କବିମାନେ ଧ୍ୱନିର ପରିବର୍ତ୍ତନ ପ୍ରତି ବଡ଼ ସଚେତନଶୀଳ । ଏ ଦିଗରେ ଅନ୍ୟାନ୍ୟ ଦେଶର ସାହିତ୍ୟରେ ଖୁବ୍ କ୍ୱଚିତ୍ ପଟାନ୍ତର ମିଳିପାରେ ଓ ସେମାନଙ୍କର ଶବ୍ଦବିନ୍ୟାସ ପ୍ରକୃତିରେ ଆନନ୍ଦର ଆଧାର; କିନ୍ତୁ ସେମାନଙ୍କ ଭିତରୁ କେହି କେହି ଧ୍ୱନି ଓ ବୋଧ ବା ଆଶ୍ରୟକୁ ଏପରି ଭାବରେ ବି ମିଳାଇବାକୁ ଚେଷ୍ଟା କରିଛନ୍ତି ଯେ ସେଥିରେ ନିଶ୍ଚିତ ଭାବରେ ସୂକ୍ଷ୍ମକଳାର ଅଭାବ ରହିଛି ଏବଂ ମାତ୍ର କେତୋଟି ଅବା ଏପରିକି କେବେ କେବେ ଗୋଟିଏ ମାତ୍ର ବ୍ୟଞ୍ଜନବର୍ଣ୍ଣ ନେଇ ଶ୍ଳୋକ ରଚନାରେ ସେମାନେ ବାସ୍ତବିକ ଅତ୍ୟାଗ୍ରହ ହିଁ କରିଛନ୍ତି ।" (୧)

ଆଜି ବି ବେଦମାନଙ୍କରୁ ଆବୃତ୍ତି ପ୍ରାଚୀନ କାଳରେ ପ୍ରଣୀତ ଉଚ୍ଚାରଣର ନିର୍ଦ୍ଦିଷ୍ଟ ନିୟମ ଅନୁସାରେ ହିଁ କରାଯାଇଥାଏ ।

ଯେଉଁ ସବୁ ଆଧୁନିକ ଭାରତୀୟ ଭାଷା ସଂସ୍କୃତରୁ ଉଦ୍‌ଭୂତ ଏବଂ ସେଥିପାଇଁ ଯେହେତୁ ସେହି ଭାଷାମାନଙ୍କୁ ଭାରତୀୟ ଆର୍ଯ୍ୟ-ଭାଷା ନାମରେ ଅଭିହିତ କରାଯାଇଥାଏ, ସେସବୁ ହେଉଛି; ହିନ୍ଦୀ-ଉର୍ଦ୍ଦୁ, ବଙ୍ଗଳା, ମରାଠୀ ଗୁଜୁରାଟୀ, ଓଡ଼ିଆ, ଅହମିଆ, ରାଜସ୍ଥାନୀ, ପଞ୍ଜାବୀ, ସିନ୍ଧୀ, ପୁସ୍ତୁ ଓ କାଶ୍ମୀରୀ । ଦ୍ରାବିଡ଼ ଭାଷା ଗୁଡ଼ିକ ହେଉଛି : ତାମିଲ, ତେଲୁଗୁ, କାନାଡ଼ ଓ ମାଲୟାଲମ୍ । ଏହି ପନ୍ଦର ଗୋଟି ଭାଷା ସମଗ୍ର ଭାରତ ଆବୃତ କରିଛି ଓ ଏ ସବୁ ଭିତରୁ ହିନ୍ଦୀ ଓ ତାର ରୂପାନ୍ତର ଉର୍ଦ୍ଦୁ ସର୍ବାପେକ୍ଷା ବିସ୍ତୃତ ଭାବରେ ବ୍ୟବହୃତ ଏବଂ ଯେଉଁଠି ଏହା ସ୍ଥାନୀୟ ଭାଷା ନୁହେଁ ସେଠାରେ ମଧ୍ୟ ଏହା ବୋଧ । ଏ ସବୁ ବ୍ୟତୀତ, କେତେକ ସୀମିତ ଅଞ୍ଚଳରେ, ଅନଗ୍ରସର ପାର୍ବତ୍ୟ ଉପଜାତିମାନଙ୍କ ଦ୍ୱାରା ବ୍ୟବହୃତ ସ୍ୱଳ୍ପ, କେତେକ ଉପଭାଷା ଓ କେତେକ ଅନୁନ୍ନତ ଲିପିହୀନ ଭାଷା ବି ରହିଛି । ଭାରତରେ ପାଞ୍ଚଶହ କିମ୍ବା ତତୋଧିକ ଭାଷା ବ୍ୟବହୃତ ହେଉଛି ବୋଲି ବହୁବାର ଯେଉଁ କାହାଣୀ ପ୍ରଚାର କରାଯାଉଛି ତାହା

(୧) ଅଶ୍ୱଘୋଷଙ୍କ 'ବୁଦ୍ଧ - ଚରିତ'ର ଇ. ଏଇଚ୍. ଜନ୍‌ସନ କୃତ ଇଂରେଜୀ ଅନୁବାଦରୁ (ଲାହୋର, ୧୯୩୬).

କେତେ ମହତ୍ତ୍ୱ ଲୋକଙ୍କ ଦ୍ୱାରା ବ୍ୟବହୃତ ଗୋଟାଏ ଉପଭାଷାର ଅପଭ୍ରଂଶ ଓ ପ୍ରତ୍ୟେକ କ୍ଷୁଦ୍ର ପାର୍ବତ୍ୟ କଥିତ ଭାଷାକୁ ଗୋଟାଏ ସ୍ୱତନ୍ତ୍ର ଭାଷା ବୋଲି ଜନଗଣ କମିଶନର ଯାହା ଟିପି ନିଅନ୍ତି ତାହା ତାଙ୍କର ମନର କଳ୍ପନା କେବଳ । ଏହି ସବୁ ତଥାକଥିତ ଶତ ଶତ ଭାଷା ଭିତରୁ ଅଧିକାଂଶ ଭାରତର ଏହି ପୂର୍ବ ସୀମାନ୍ତ ଓ ବର୍ମାର ପୂର୍ବ ସୀମାନ୍ତ ଅଞ୍ଚଳରେ ଆବଦ୍ଧ । ଜନଗଣ କମିଶନରମାନଙ୍କ ଗୃହୀତ ପ୍ରଣାଳୀ ଅନୁସାରେ ୟୁରୋପରେ ଶତ ଶତ ଭାଷା ବ୍ୟବହୃତ ହେଉଛି ଏବଂ ଜର୍ମାନୀର ଏ ପ୍ରକାର ପ୍ରାୟ ୬୦ ଗୋଟି ଭାଷା ତାଲିକାଭୁକ୍ତ କରାଯାଇଛି ବୋଲି ମୋର ମନେ ହୁଏ ।

ଭାରତରେ ପ୍ରକୃତ ଭାଷା ପ୍ରଶ୍ନ ଯାହା, ସେଥି ସଙ୍ଗେ ଏ ବିବିଧତାର କିଛି ସମ୍ପର୍କ ନାହିଁ । ବସ୍ତୁତଃ, ଏହା ହିନ୍ଦୀ-ଉର୍ଦ୍ଦୁରେ ଆବଦ୍ଧ ଯାହା ଗୋଟିଏ ଭାଷା କିନ୍ତୁ ଦୁଇଟି ଲିପି ଓ ଦୁଇଟି ସାହିତ୍ୟିକ ଆଙ୍ଗିକ । ଏ ଦୁଇଟି ଭାଷାର କହିବା ଶୈଳୀରେ ପ୍ରାୟ ପାର୍ଥକ୍ୟ ନାହିଁ । କିନ୍ତୁ ଲେଖିଲା ବେଳେ ବିଶେଷତଃ ସାହିତ୍ୟିକ ଶୈଳୀରେ ବ୍ୟବଧାନ ବଢ଼ିଉଠେ ଏହି ବ୍ୟବଧାନ ସଙ୍କୁଚିତ କରି ଗୋଟାଏ ସାଧାରଣ ରୂପ ଦେବା ନିମନ୍ତେ ଉଦ୍ୟମ ହୋଇଛି ଓ ଏବେବି ତାହା ଚାଲିଛି । ଏହି ନୂତନ ରୂପକୁ ସାଧାରଣତଃ ହିନ୍ଦୁସ୍ତାନୀ କୁହାଯାଇଥାଏ । ଭାରତସାରା ବୋଧଗମ୍ୟ ଏହା ଗୋଟାଏ ସର୍ବସାଧାରଣ ଭାଷା ଭାବରେ ବିକାଶ ଲାଭ କରୁଛି ।

ସଂସ୍କୃତରୁ ଉତ୍ପନ୍ନ ଅନ୍ୟତମ ଭାରତୀୟ-ଆର୍ଯ୍ୟଭାଷା ପୁସ୍ତୁ ଉତ୍ତର-ପଶ୍ଚିମ ସୀମାନ୍ତପ୍ରଦେଶ ଓ ଆଫଗାନିସ୍ଥାନର ସର୍ବସାଧାରଣ ଭାଷା । ଆମର ଅନ୍ୟାନ୍ୟ ଭାଷା ଅପେକ୍ଷା ପୁସ୍ତୁ ପାରସିକ ଭାଷା ଦ୍ୱାରା ଅଧିକ ଭାବରେ ପ୍ରଭାବିତ । ଅତୀତରେ ଏହି ସୀମାନ୍ତ ଅଞ୍ଚଳ ଆମକୁ ସଂସ୍କୃତ ଭାଷାର କେତେ ମହାନ ଭାବୁକ, ବିଦ୍ୱାନ ଓ ବ୍ୟାକରଣକାର ଦାନ କରିଛି ।

ସିଂହଳର ଭାଷା ହେଉଛି ସିଂହଳୀ । ଏହା ମଧ୍ୟ ସଂସ୍କୃତରୁ ପ୍ରତ୍ୟକ୍ଷ ଭାବରେ ଉତ୍ପନ୍ନ ଗୋଟାଏ ଭାରତୀୟ ଆର୍ଯ୍ୟଭାଷା । ସିଂହଳର ଲୋକେ ସେମାନଙ୍କର ଧର୍ମ ବୌଦ୍ଧ-ଧର୍ମ କେବଳ ଭାରତରୁ ଲାଭ କରିଛନ୍ତି ବୋଲି ନୁହେଁ, ଭାଷା ଦିଗରୁ ଓ ଜାତି ଦିଗରୁ ସେମାନେ ଭାରତୀୟଙ୍କ ସ୍ୱଜନ ।

ବର୍ତ୍ତମାନ ଦ୍ୱିଧାହୀନ ଭାବରେ ସ୍ୱୀକାର କରାଯାଉଛି ଯେ ସଂସ୍କୃତ ୟୁରୋପର ଗ୍ରୀକ୍ ଓ ଲାଟିନ୍ ତଥା ଆଧୁନିକ ଭାଷାମାନଙ୍କ ସଙ୍ଗେ ସମ୍ବନ୍ଧିତ । ଏପରିକି ସ୍ଲାଭ ଭାଷା ଗୁଡ଼ିକରେ ମଧ୍ୟ ସଂସ୍କୃତ ସଙ୍ଗେ ସମ୍ବନ୍ଧିତ କେତେକ ମୂଳ ଶବ୍ଦ ଓ ଶବ୍ଦରୂପ ରହିଛି । ୟୁରୋପରେ ସଂସ୍କୃତ ପ୍ରତି ନିକଟତମ ଭାଷା ହେଉଛି ଲିଥୁଆନିଆ ଲୋକଙ୍କ ଭାଷା ।

## ୧୦. ବୌଦ୍ଧ ଦର୍ଶନ

ବୁଦ୍ଧ ତାଙ୍କର ସ୍ଥାନୀୟ ଭାଷା ପ୍ରାକୃତ, ଯାହା ସଂସ୍କୃତରୁ ଉତ୍ପନ୍ନ, ବ୍ୟବହାର କରୁ-ଥିଲେ ବୋଲି କୁହାଯାଏ । ସେ ଅବଶ୍ୟ ସଂସ୍କୃତ ଜାଣିଥିଲେ; କିନ୍ତୁ ଲୋକଙ୍କ ନିକଟରେ ପହଞ୍ଚିବା ପାଇଁ ସେମାନଙ୍କର ଭାଷା ବ୍ୟବହାର କରିବା ପସନ୍ଦ କରିଥିଲେ । ଏହି ପ୍ରାକୃତ ଭାଷାରୁ ପ୍ରଥମ କାଳୀନ ବୌଦ୍ଧ ଶାସ୍ତ୍ର ଗ୍ରନ୍ଥମାନଙ୍କରେ ବ୍ୟବହୃତ, ପାଲି ଭାଷା ବିକାଶ

ଲାଭ କଲା । ବୁଦ୍ଧଙ୍କ ମହାପରିନିର୍ବାଣର ବହୁକାଳ ପରେ ମଧ୍ୟ ତାଙ୍କର ସଂଳାପ, ଅନ୍ୟାନ୍ୟ ବିବରଣୀ ଓ ବିଷୟର ଆଲୋଚନା ପାଲିରେ ଲିପିବଦ୍ଧ କରାଯାଇଥିଲା ଏବଂ ଏ ସବୁ ହିଁ ସିଂହଳ, ବର୍ମା ଓ ଶ୍ୟାମ ଦେଶରେ, ବୌଦ୍ଧଧର୍ମର ଭିତ୍ତି ସ୍ଥାପନ କଲା ଯେଉଁଠି ବୌଦ୍ଧଧର୍ମର ହୀନଯାନ ଶାଖା ଆଜି ପ୍ରଚଳିତ ।

ବୁଦ୍ଧଙ୍କ ପରବର୍ତ୍ତୀ କେତେ ଶତାବ୍ଦୀ ଅନ୍ତେ ଭାରତରେ ସଂସ୍କୃତ ପୁନର୍ବାର ପ୍ରାଧାନ୍ୟ ଲାଭ କଲା ଏବଂ ବୌଦ୍ଧ ପଣ୍ଡିତମାନେ ସେମାନଙ୍କ ଦର୍ଶନ ତଥା ଅନ୍ୟାନ୍ୟ ଗ୍ରନ୍ଥ ସଂସ୍କୃତରେ ପ୍ରଣୟନ କଲେ । ଅଶ୍ୱଘୋଷଙ୍କର ନାଟକ ଓ ଅନ୍ୟାନ୍ୟ ରଚନାର ଭାଷା ହେଉଛି ସଂସ୍କୃତ ଯାହା ବୌଦ୍ଧଧର୍ମର ପ୍ରଚାର ଉଦ୍ଦେଶ୍ୟରେ ରଚିତ ହୋଇଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ, ଅଶ୍ୱଘୋଷଙ୍କ ପ୍ରଣୀତ ନାଟକ ଗୁଡ଼ିକ ହେଉଛି ଭାରତର ଆଦ୍ୟ ନାଟକ ଭାରତର ବୌଦ୍ଧ ବିଦ୍ୱାନମାନଙ୍କର ଏହି ସବୁ ସଂସ୍କୃତ ଗ୍ରନ୍ଥ ଚୀନ, ଜାପାନ, ତିବ୍ବତ ଓ ମଧ୍ୟ-ଏସିଆରେ ପହଞ୍ଚିଲା ଯେଉଁଠି ବୌଦ୍ଧଧର୍ମର ମହାଯାନ ଶାଖା ପ୍ରଚଳିତ ଥିଲା । ଯେଉଁ ଯୁଗ ବୁଦ୍ଧଙ୍କୁ ଜନ୍ମ ଦେଲା ତାହା ଭାରତରେ ବିପୁଳ ମାନସିକ ଉଦ୍‌ବେଳନ ଓ ଦାର୍ଶନିକ ଜିଜ୍ଞାସାର ଯୁଗ । ଭାରତରେ କେବଳ ନୁହେଁ, ସେ ଯୁଗରେ ପୃଥିବୀର ଅନ୍ୟାନ୍ୟ ସ୍ଥାନରେ ଦେଖାଦେଇଥିଲେ ଲଓ-ସେ, କନ୍‌ଫୁସିୟସ୍‌, ଜରଥୁଷ୍ଟ୍ର ଓ ପାଇଥାଗୋରସ୍‌ । ଭାରତରେ ଏହି ଯୁଗ ବସ୍ତୁବାଦକୁ ଜନ୍ମ ଦେବା ସଙ୍ଗେ ସଙ୍ଗେ ଭଗବଦ୍‌ ଗୀତା, ବୌଦ୍ଧଧର୍ମ, ଜୈନଧର୍ମ ଓ ଅନ୍ୟାନ୍ୟ ବହୁ ଚିନ୍ତାର ସ୍ରୋତ ପ୍ରବାହିତ କଲା ଯାହାସବୁ ପରବର୍ତ୍ତୀ କାଳରେ ବିବିଧ ଭାରତୀୟ ଦର୍ଶନ ପ୍ରଣାଳୀରେ ସମ୍ମିଳିତ ହୋଇଥିଲା । ଚିନ୍ତାର ବିଭିନ୍ନ ସ୍ତର ଥିଲା, ଗୋଟାଏ ସ୍ତର ଅନ୍ୟ ସ୍ତରରେ ଉପନୀତ କରାଉଥିଲା ଏବଂ କେବେ କେବେ ଦୁଇଟି ସ୍ତର ପରସ୍ପର ଉପରେ ଉଦ୍‌ବ୍ୟାପ୍ତ ରହୁଥିଲା । ବୌଦ୍ଧଧର୍ମ ସଙ୍ଗେ ସଙ୍ଗେ ଦର୍ଶନର ବିଭିନ୍ନ ଶାଖା ବିକାଶ ଲାଭ କଲା ଏବଂ ବୌଦ୍ଧଧର୍ମରେ ମଧ୍ୟ ଭେଦ ପ୍ରକାଶ ପାଇ ଦୁଇଟି ଶାଖାରେ ପରିଣତ ହେଲା । କ୍ରମଶଃ ଦାର୍ଶନିକ ଜିଜ୍ଞାସା ପତନାଭିମୁଖୀ ହେଲା ଏବଂ ତାର ସ୍ଥାନ ଅଧିକାର କଲା ପାଣ୍ଡିତ୍ୟର ଘଟା ଓ ତାର୍କିକ ବାଗ୍‌ବିତଣ୍ଡା ।

ଆଧିଭୌତିକ ପ୍ରଶ୍ନମାନଙ୍କ ଉପରେ ପାଣ୍ଡିତ୍ୟ ପ୍ରକାଶକ ବିବାଦରେ ଲିପ୍ତ ନହେବା ପାଇଁ ବୁଦ୍ଧ ତାଙ୍କର ଶିଷ୍ୟ ଓ ଉପାସକ ମାନଙ୍କୁ ବାରମ୍ବାର ସାବଧାନ କରିଥିଲେ । "ଯେଉଁ ବିଷୟରେ କହିବାର ଆବଶ୍ୟକତା ନାହିଁ ସେଇଠି ନୀରବ ରହିବା ଉଚିତ," ସେ କହିଥିବା ଜଣାଯାଏ । ସତ୍ୟର ସନ୍ଧାନ ନେବାକୁ ହୁଏ ଜୀବନରୁ; ଜୀବନର ପରିସର ବହିର୍ଭୂତ ନାନା ବିଷୟକ ତର୍କବିତର୍କରୁ ନୁହେଁ । ଅତଏବ, ତାହା ମାନବିକ ବୁଦ୍ଧିର ଊର୍ଦ୍ଧ୍ୱରେ ଅବସ୍ଥିତ । ଜୀବନର ନୀତିଗତ ଦିଗ ଉପରେ ସେ ଜୋର ଦେଇଥିଲେ ଏବଂ ସ୍ପଷ୍ଟ ଭାବରେ ଅନୁଭବ କରୁଥିଲେ ଯେ ଆଧିଭୌତିକ ତର୍କ ଜଞ୍ଜାଳରେ ଲିପ୍ତ ହେଲେ ଏହି ଦିଗ ଅବହେଳିତ ହେଉଛି ଓ ତାର ବିକାଶ ବାଧାପ୍ରାପ୍ତ ହେଉଛି । ଆଦ୍ୟ ବୌଦ୍ଧଧର୍ମରେ ବୁଦ୍ଧଙ୍କର ଏହି ଦାର୍ଶନିକ ତଥା ବୁଦ୍ଧିବାଦୀ ବିଚାରତତ୍ତ୍ୱ କେତେ ପର୍ଯ୍ୟନ୍ତ ପ୍ରତିଫଳିତ ହେଉଛି ଏବଂ ତାର ସମସ୍ତ କିଛୁ ଜିଜ୍ଞାସା ଅଭିଜ୍ଞତା ଉପରେ ପ୍ରତିଷ୍ଠିତ । ଅଭିଜ୍ଞତାର ଦୁନିଆରେ ଶୁଦ୍ଧ-ସତ୍ତାର

ସ୍ୱରୂପ ଅବଧାରଣ କରିବା ଯେହେତୁ ସମ୍ଭବ ନୋହିଲା, ଅତଏବ, ତାଙ୍କୁ ସେଥିରୁ ଅଲଗା କରିଦିଆଗଲା ଏବଂ ସେପରି ମଧ୍ୟ ସୃଷ୍ଟିକର୍ତ୍ତା ପରମେଶ୍ୱର ଧାରଣା, ଯାହା ଗୋଟାଏ ଅନୁମାନ କେବଳ ଏବଂ ଯାହାର କୌଣସି ଯୁକ୍ତିସଙ୍ଗତ ପ୍ରମାଣ ଦିଆଯାଇ ପାରେନା, ବାଦ ଦିଆଗଲା । ତଥାପି ଅଜ୍ଞେୟତା ରହିଲା ଓ ଗୋଟାଏ ଅର୍ଥରେ ତାହା ବାସ୍ତବ ମଧ୍ୟ ଥିଲା । ଗୋଟାଏ 'ହେବାର-ପ୍ରକ୍ରିୟା' ଯାହା ଅନବରତ ପରିବର୍ତ୍ତିତ ହେବାରେ ଲାଗିଛି, ଏହା ଛଡ଼ା ଆଉ କ'ଣ ହୋଇପାରେ ? ଅତଏବ, ଏହି ମାଧ୍ୟମିକ ବାସ୍ତବତାକୁ ସ୍ୱୀକାର କରିଗଲା ଏବଂ ଏହି ଧାରାରେ ଜିଜ୍ଞାସା ଗୋଟାଏ ମନସ୍ତାତ୍ତ୍ୱିକ ଭିତ୍ତି ଉପରେ ଅଗ୍ରଗତି କଲା ।

ବୁଦ୍ଧ ଯଦିଓ ବିଦ୍ରୋହୀର ଭୂମିକା ଗ୍ରହଣ କରିଥିଲେ, ଦେଶର ପ୍ରାଚୀନ ଧର୍ମବିଶ୍ୱାସରୁ ସେ କେବେହେଲେ ନିଜକୁ ବିଚ୍ଛିନ୍ନ କରି ନେଇ ନାହାନ୍ତି । ଶ୍ରୀମତୀ ରାଜ୍ ଡେଭିଡ୍‌ସ କହନ୍ତି, "ଗୌତମ ଜନ୍ମ ହେଲେ ହିନ୍ଦୁ ଭାବରେ, ପରିପାଳିତ ହେଲେ ହିନ୍ଦୁ ଭାବରେ ଏବଂ ସେ ଜୀବନର ଓ ମରଣରେ ହିନ୍ଦୁ ହିଁ ଥିଲେ···ଗୌତମଙ୍କର ଆଧିଭୌତିକ ବିଷୟ ଓ ଅନ୍ୟାନ୍ୟ ନୀତିରେ ସେପରି ବିଶେଷ କିଛି ନଥିଲା ଯାହା ଅନ୍ୟାନ୍ୟ ରକ୍ଷଣଶୀଳ ମତ-ବିଶ୍ୱାସରେ ନଥିଲା ଏବଂ ତାଙ୍କର ନୈତିକତା ସମ୍ପର୍କୀୟ ବିଷୟର ବହୁତ କିଛି ସମତୁଲ ତାଙ୍କ ପୂର୍ବବର୍ତ୍ତୀ ଅବା ପରବର୍ତ୍ତୀକାଳୀନ ହିନ୍ଦୁ ଶାସ୍ତ୍ର ଗ୍ରନ୍ଥମାନଙ୍କରେ ଥିଲା । ତାଙ୍କ ପୂର୍ବରୁ ଅନ୍ୟମାନେ ଯାହା ଖୁବ୍ ଭଲଭାବରେ କହି ସାରିଥିଲେ ସେଥିରେ ତତ୍ତ୍ୱଗୁଡ଼ିକୁ ଗ୍ରହଣ କରିବା, ବିସ୍ତୃତ କରିବା, ମହତ୍ତ୍ୱପୂର୍ଣ୍ଣ କରିବା ଓ ପ୍ରଣାଳୀବଦ୍ଧ କରିବା ଶୈଳୀରେ ଗୌତମଙ୍କର ଯାହାକିଛି ମୌଳିକତା ନିହିତ । ବହୁ ବିଖ୍ୟାତ ହିନ୍ଦୁ ଭାବୁକ ନିଷ୍ପକ୍ଷପାତିତା ଓ ନ୍ୟାୟର ନୀତି ସମ୍ପର୍କରେ ଯାହା ସ୍ୱୀକାର କରିଥିଲେ, ସେ ସମସ୍ତଙ୍କୁ ଗୋଟାଏ ଯୁକ୍ତି-ସଙ୍ଗତ ମୀମାଂସାରେ ନେଇ ଉପନୀତ କରାଇବାରେ ଥିଲା ଗୌତମଙ୍କ ବିଶେଷତ୍ୱ । ତାଙ୍କ ଭିତରେ ଓ ଅନ୍ୟାନ୍ୟ ଉପଦେଷ୍ଟାଙ୍କ ଭିତରେ ମୁଖ୍ୟତଃ ଯାହା ପ୍ରଭେଦ ଥିଲା, ତାହା ହେଉଛି ଗୌତମଙ୍କ ଗଭୀର ଆନ୍ତରିକତା ଓ ସର୍ବବ୍ୟାପକ ଲୋକକଲ୍ୟାଣ ଭାବନା ।" (୧)

ତଥାପି ସେ ସମୟର ପ୍ରଚଳିତ ଧର୍ମାଚରଣ ବିରୁଦ୍ଧରେ ବୁଦ୍ଧ ବିଦ୍ରୋହର ବୀଜ ବୁଣିଥି[illegible] । ତାଙ୍କର ତତ୍ତ୍ୱ ଅବା ଦର୍ଶନ ବିରୁଦ୍ଧରେ ପ୍ରତିବାଦ ଉଠି ନଥିଲା; କାରଣ ପ୍ରତ୍ୟେକ ଅବ୍ୟାରଣଯୋଗ୍ୟ ଦର୍ଶନ ରକ୍ଷଣଶୀଳ ଧର୍ମବିଶ୍ୱାସର ସୀମା ଭିତରେ ପ୍ରଶ୍ରୟ କରି[illegible]-ପାରେ, ଯେତେକାଳ ପର୍ଯ୍ୟନ୍ତ ତାହା ଗୋଟାଏ ତତ୍ତ୍ୱ ଭାବରେ ହିଁ ରହେ; କିନ୍ତୁ ସାମାଜିକ ଜୀବନ ଓ ଜନସଂଗଠନରେ ହସ୍ତକ୍ଷେପ କଲେ ତାହା ପ୍ରବଳ ବିରୋଧର ସମ୍ମୁଖୀନ ହୁଏ । ତାଛଡ଼ା ପୁରାତନ ମତବିଶ୍ୱାସରେ କିଛି ଧରାବନ୍ଧା ନିୟମ ଶୃଙ୍ଖଳା ନଥିଲା; [illegible] ପ୍ରକାର ମତପ୍ରକାଶର ସ୍ୱାଧୀନତା ଥିଲା; କିନ୍ତୁ ଆଚରଣରେ ସେହି ଧର୍ମବିଶ୍ୱାସ କ[illegible]ର

(୧) ଏହି ଉଦ୍ଧୃତି ଓ ଆହୁରି ବହୁତ କିଛି ସାର୍ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ 'ଇଣ୍ଡିଆନ୍ ଫିଲସଫି' (ଜର୍ଜ ଏଲେନ୍ ଏଣ୍ଡ୍ ଅନ୍‌ୱିନ୍, ଲଣ୍ଡନ, ୧୯୪୦) ଗ୍ରନ୍ଥରୁ ନିଆଯାଇଛି ।

ଶୃଙ୍ଖଳା ଭିତରେ ଆବଦ୍ଧ ଥିଲା ଏବଂ ସେଥିରେ ବ୍ୟତିକ୍ରମ ଗୃହୀତ ହେଉ ନଥିଲା । ଅତଏବ, ଅବଶ୍ୟମ୍ଭାବୀ ଭାବରେ, ବୌଦ୍ଧଧର୍ମ ପୁରାତନ ଧର୍ମବିଶ୍ୱାସରୁ ବାଟଭାଙ୍ଗି ଯିବାକୁ ବସିଲା ଏବଂ ବୁଦ୍ଧଙ୍କ ଦେହରକ୍ଷା ପରେ ଏହି ବ୍ୟବଧାନ ବୃଦ୍ଧି ପାଇଲା ।

ଆଦ୍ୟ ବୌଦ୍ଧଧର୍ମର ପତନ ପରେ ମହାଯାନ ଶାଖା ବିସ୍ତାର ଲାଭ କଲା । ଏହି ପୂର୍ବେ ଯେଉଁ ଶାଖା ପ୍ରତିଷ୍ଠା ଲାଭ କରିଥିଲା ତାର ନାମ ହେଉଛି ହୀନଯାନ । ଏହି ମହାଯାନ ଶାଖାରେ ହିଁ ବୁଦ୍ଧଙ୍କୁ ଈଶ୍ୱରରୂପ ଅର୍ପଣ କରାଗଲା ଏବଂ ଇଷ୍ଟଦେବତା ରୂପରେ ତାଙ୍କ ପ୍ରତି ଆତ୍ମନିବେଦନର ପନ୍ଥା ବିକାଶ ଲାଭ କଲା । ଗ୍ରୀସ୍ ଅଧିକୃତ ଉତ୍ତର-ପଶ୍ଚିମରେ ବୁଦ୍ଧପ୍ରତିମା ମଧ୍ୟ ଦେଖାଦେଲା । ପ୍ରାୟ ସେହି ସମୟରେ ହିଁ ଭାରତରେ ବ୍ରାହ୍ମଣ୍ୟଧର୍ମ ଓ ସଂସ୍କୃତ ସାହିତ୍ୟର ପୁନର୍ଜାଗରଣ ଦେଖା ଦେଲା । ବୌଦ୍ଧଧର୍ମର ଦୁଇ ଶାଖା—ହୀନଯାନ ଓ ମହାଯାନ ଭିତରେ ତିକ୍ତ ବିବାଦ ରହିଥିଲା ଏବଂ ପରବର୍ତ୍ତୀ ଇତିହାସରେ ମଧ୍ୟ ଏ ଉଭୟର ସମ୍ପର୍କରେ ତର୍କବିତର୍କ ଓ ପରସ୍ପର ବିରୋଧିତା ଚାଲୁରହିଲା । ଏବେ ମଧ୍ୟ ହୀନଯାନ ଅନୁଗାମୀ ଦେଶମାନେ ଯଥା ସିଂହଳ, ବର୍ମା ଓ ଶ୍ୟାମ ମହାଯାନ ଅନୁଗାମୀ ଦେଶ ଚୀନ ଓ ଜାପାନକୁ ନିମ୍ନଦୃଷ୍ଟିରେ ଦେଖିଆନ୍ତି ଏବଂ ମୋର ବିଶ୍ୱାସ, ଏ ପ୍ରକାର ଦୃଷ୍ଟି ଏକତରଫା ନୁହେଁ ।

ହୀନଯାନ ଯେତେବେଳେ କେତେକ ପରିମାଣରେ, ବୌଦ୍ଧ ସିଦ୍ଧାନ୍ତର ପ୍ରାଚୀନ ଶୁଦ୍ଧତା ପ୍ରତି ଅନୁରକ୍ତ ରହି ତାକୁ ପାଲି ଧର୍ମଶାସ୍ତ୍ରର ସୀମାବଦ୍ଧ କରିଥିଲା, ମହାଯାନ ସବୁ କିଛି ପ୍ରତି ସହନଶୀଳ ଭାବରେ ପ୍ରତ୍ୟେକ ଦେଶର ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀ ପ୍ରତି ମେଳରଖି ପ୍ରତ୍ୟେକ ଦିଗରେ ବିସ୍ତୃତ ହେଲା । ଭାରତରେ ଏହା ଜନସାଧାରଣଙ୍କ ଆଚରିତ ଧର୍ମର ନିକଟବର୍ତ୍ତୀ ହେବା ଉଦ୍ୟମ କଲା ଏବଂ ଅନ୍ୟ ଦେଶମାନଙ୍କରେ ଅର୍ଥାତ୍ ଚୀନ, ଜାପାନ ଓ ତିବ୍ବତରେ ଏହାର ବିକାଶ ଅନ୍ୟ ଭାବରେ ଘଟିଲା । ଆଦ୍ୟ ବୌଦ୍ଧ-ଭିକ୍ଷୁକମାନଙ୍କ ଭିତରୁ କେତେକ ବ୍ୟକ୍ତି ଆତ୍ମାର ଅସ୍ତିତ୍ୱ ସମ୍ପର୍କରେ ବୁଦ୍ଧ ଯେଉଁ ଅଜ୍ଞାବାଦୀ ପ୍ରତିନ୍ୟାସ ଗ୍ରହଣ କରିଥିଲେ ସେଥିରୁ ଦୂରେଇଯାଇ ତାହା ସମ୍ପୂର୍ଣ୍ଣ ଭାବରେ ପ୍ରତ୍ୟାଖ୍ୟାନ କଲେ । ବିଚକ୍ଷଣ ବୁଦ୍ଧିସମ୍ପନ୍ନ ଗୋଷ୍ଠୀଏ ... ର ମଣ୍ଡଳ ଭିତରୁ ଯେଉଁ ନାମ ଜାଜ୍ୱଲ୍ୟମାନ ... ଉଠେ ତାହା ହେଉଛି ନାଗାର୍ଜ୍ଜୁନ । ଏ ସ୍ତରର ପ୍ରତିଭା, ଭାରତର ଦୀର୍ଘ ଇତିହାସରେ, ଖୁବ୍ କ୍ୱଚିତ୍ ଦୃଷ୍ଟିଗୋଚର ହୁଏ । ଖ୍ରୀଷ୍ଟୀୟ ଯୁଗର ପ୍ରାରମ୍ଭରେ କନିଷ୍କଙ୍କ ରାଜତ୍ୱ କାଳରେ ନାଗାର୍ଜ୍ଜୁନ ଜୀବିତ ଥିଲେ ଏବଂ ମହାଯାନ ସିଦ୍ଧାନ୍ତ ଗୁଡ଼ିକୁ ରୂପ ଦେବାରେ ସେ ହିଁ ମୁଖ୍ୟ ସ୍ଥପତିର ଭୂମିକା ଗ୍ରହଣ କରିଥିଲେ । ତାଙ୍କ ଚିନ୍ତାର ଶକ୍ତି ଓ ସାହସ ଥିଲା ଅପୂର୍ବ ଏବଂ ଅନେକଙ୍କୁ ସାଧା... ମୂଳକ ଓ ବିବଣକର ମନେ ହୁଅନ୍ତା ସେ ପ୍ରକାର ମୀମାଂସାରେ ପହଞ୍ଚିବା ପାଇଁ ସେ ... ହେଇ ନାହାନ୍ତି । ନିର୍ମମ ତର୍କ ସହକାରେ ସେ ତାଙ୍କର ଯୁକ୍ତି ଅନୁଧାବନ କରନ୍ତି ଏବଂ ସେ ପର୍ଯ୍ୟନ୍ତ ସେ ସନ୍ତୁଷ୍ଟ ରହିନାହାନ୍ତି ଯେ ପର୍ଯ୍ୟନ୍ତ ସେ ଯାହା ବିଶ୍ୱାସ କରନ୍ତି ତାହା ମଧ୍ୟ ଖଣ୍ଡିତ ନ ହୋଇଛି । ଚିନ୍ତା ନିଜକୁ ଜାଣି ପାରେନା ଏବଂ ନିଜ ବାହାରକୁ ଯାଇ ପାରେନା କିମ୍ବା ଅନ୍ୟକୁ ଜାଣି ପାରେନା । ବ୍ରହ୍ମାଣ୍ଡରୁ ବିଚ୍ଛିନ୍ନ ଭାବରେ କୌଣସି ଈଶ୍ୱରସତ୍ତା ନାହିଁ ଏବଂ

ଈଶ୍ୱରଙ୍କଠାରୁ ବିଚ୍ଛିନ୍ନଭାବରେ କୌଣସି ବ୍ରହ୍ମାଣ୍ଡ ବି ନାହିଁ । ଅଥଚ ଏ ଉଭୟ ଆଶ୍ରୟ ମାତ୍ର । ଏପରିଭାବରେ ସେ ତାଙ୍କର ଯୁକ୍ତି ଉପସ୍ଥାପିତ କରିକରିଯାଆନ୍ତି ଯେବେ ସତ୍ୟ ଓ ଭ୍ରମ ଭିତରେ କୌଣସି ପାର୍ଥକ୍ୟ ରହେନି; କୌଣସି ବିଷୟ ବୁଝିବା ଅବା ଭୁଲ ବୁଝିବାର ସମ୍ଭାବନା ରହେନି । କାରଣ ଯାହା ଅବାସ୍ତବ ତାକୁ କିଏ ହେଲେ ଭୁଲ ବୁଝିବ କାହିଁକି ? କିଛି ବାସ୍ତବ ନୁହେଁ । ବିଶ୍ୱର ଗୋଟାଏ ପ୍ରତିଭାସିକ ଅସ୍ତିତ୍ୱ କେବଳ ଅଛି; ଗୁଣ ଓ ସମ୍ବନ୍ଧର ଏହା ଗୋଟିଏ ଆଦର୍ଶ ପ୍ରଣାଳୀ କେବଳ, ଯାହା ଆମେ ବିଶ୍ୱାସ କରୁ କିନ୍ତୁ ବୁଦ୍ଧିଦ୍ୱାରା ବ୍ୟାଖ୍ୟା କରିବା ଯାହା ସମ୍ଭବ ନୁହେଁ । ତଥାପି ଏ ସମସ୍ତ ଅଭିଜ୍ଞତା ପଛରେ ସେ ସେପରି ଏକ ପରମସତ୍ତା ସୂଚିତ କରନ୍ତି ଯାହା ଆମର ଚିନ୍ତାରେ ଧରିପାରିବାର ସାମର୍ଥ୍ୟର ବାହାରେ; କାରଣ ସେହି ଚିନ୍ତାର ପ୍ରକ୍ରିୟାରେ ତାହା ଆପେକ୍ଷିକ ଅନ୍ୟ କିଛି ହୋଇ ପଡେ । (୧)

---

(୧) ସୋଭିଏଟ୍ ୟୁନିଅନ୍‌ର ଏକାଡେମୀ ଅଫ୍ ସାଇନସେସ୍‌ର ଅଧ୍ୟାପକ ଡ଼. ଶେରବାତ୍‌ସକି ତାଙ୍କର 'ଦି କନ୍‌ସେପ୍‌ସନ୍ ଅଫ୍ ବୁଦ୍ଧିଷ୍ଟ ନିର୍ବାଣ' (ଲେନିନ୍‌ଗ୍ରାଡ ୧୯୨୭) ପୁସ୍ତକରେ ସୂଚିତ କରନ୍ତି ଯେ ନାଗାର୍ଜୁନଙ୍କୁ "ମାନବ ଜାତିର ମହାନ ଦାର୍ଶନିକମାନଙ୍କ ଗଣନାରେ" ଆସନ ଦେବା ଉଚିତ । ସେ ତାଙ୍କର ସେହି 'ଅଦ୍‌ଭୁତ ଶୈଳୀ'ର ଉଲ୍ଲେଖ କରନ୍ତି, ଯାହା ସର୍ବଦା ଚିତ୍ତାକର୍ଷକ, ସାହସପୂର୍ଣ୍ଣ, ବାଧ୍ୟକ ଓ କେତେ କେବେ ଆପାତ-ଉଦ୍ଭଟ ମନେହୋଇଥାଏ । ସେ ନାଗାର୍ଜୁନଙ୍କ ଦୃଷ୍ଟିଭଙ୍ଗୀକୁ ବ୍ରେଡ଼ଲି ଓ ହେଗେଲଙ୍କ ବିଚାର ସଙ୍ଗେ ତୁଳନା କରିଛନ୍ତି : "ଏମିତିଭାବରେ ନାଗାର୍ଜୁନଙ୍କ ନକାରବାଦରେ ଓ ମିଷ୍ଟର୍ ବ୍ରେଡଲେଙ୍କ ଦ୍ୱାରା ଆମର ଦୈନନ୍ଦିନ ବିଶ୍ୱର ପ୍ରତ୍ୟେକ ଧାରଣାର ପ୍ରାୟ ସାର୍ବିକ ଖଣ୍ଡନରେ ଯଥା ବସ୍ତୁ ଓ ତାର ଗୁଣ ସମ୍ବନ୍ଧ, ଦେଶ ଓ କାଳ, ପରିବର୍ତ୍ତନ, କାର୍ଯ୍ୟ-କାରଣ-ସମ୍ବନ୍ଧ, ଜୀବ ଓ ଆତ୍ମାର ଅଦ୍‌ଭୁତ ସାମ୍ୟ ପରିଲକ୍ଷିତ ହୁଏ । ଭାରତୀୟ ଦୃଷ୍ଟିକୋଣରୁ ହେଗେଲଙ୍କୁ ଜଣେ ଅକୃତ୍ରିମ ମାଧ୍ୟମିକ କୁହାଯାଇପାରେ । କିନ୍ତୁ ଏ ସମସ୍ତ ସମାନାନ୍ତରତା ଉଭୟରେ ଆମେ ହେଗେଲଙ୍କ ତର୍କ-ନିପୁଣ୍ୟ ଓ ନାଗାର୍ଜୁନଙ୍କ ତତ୍ତ୍ୱଦର୍ଶିତା ମଧ୍ୟରେ ଆହୁରି ମହତ୍ତ୍ୱର ଗୋଟାଏ ପାରିବାରିକ ସୌସାଦୃଶ୍ୟ ହୁଏତ ଲକ୍ଷ୍ୟ କରିପାରୁଁ । ଶେରବାତ୍‌ସ୍କି ଆଧୁନିକ ବିଜ୍ଞାନ ବିଶେଷତଃ 'ଏଣ୍ଟ୍ରୋପି' ଅର୍ଥାତ୍ ତାପ-ଆଧେୟ ପରିମାପ ନିୟମ ଅନୁସାରେ ବ୍ରହ୍ମାଣ୍ଡର ଅନ୍ତିମ ଅବସ୍ଥାର ଅବଧାରଣା ସଙ୍ଗେ ବୌଦ୍ଧ ଦର୍ଶନର କେତେକ ଶାଖାର କେତେକ ସାଦୃଶ୍ୟ ଦର୍ଶାଇଛନ୍ତି । ସେ ଏକ ଚିତ୍ତାକର୍ଷକ ବିଷୟ ଉଲ୍ଲେଖ କରିଛନ୍ତି । ସୋଭିଏତ୍ ୟୁନିଅନର ଟ୍ରାନ୍‌ସବୈକାଲିଆ ଅନ୍ତର୍ଗତ ବୁର୍‌ୟାତ୍‌ମାନଙ୍କ ନବପ୍ରତିଷ୍ଠିତ ସାଧାରଣତନ୍ତ୍ରର ଶିକ୍ଷାବିଭାଗୀୟ କର୍ତ୍ତୃପକ୍ଷ ଯେବେ ଧର୍ମବିରୋଧୀ ପ୍ରଚାର ଆରମ୍ଭ କଲେ, ସେମାନେ ଜୋର୍ ଦେଇ କହୁଥିଲେ ଯେ ଆଧୁନିକ ବିଜ୍ଞାନ ବ୍ରହ୍ମାଣ୍ଡକୁ ଗୋଟାଏ ବସ୍ତୁବାଦୀ ଦୃଷ୍ଟିକୋଣରୁ ଦେଖେ, ସେହି ସାଧାରଣତନ୍ତ୍ରର ବୌଦ୍ଧ ଭିକ୍ଷୁମାନେ; ଯେଉଁମାନେ ମହାଯାନ ପନ୍ଥାର ଅନୁଗାମୀ ଥିଲେ, ଗୋଟାଏ ପ୍ରଚାରପତ୍ରରେ ଜବାବ ଦେଇ କହିଲେ ଯେ ବସ୍ତୁବାଦ ସେମାନଙ୍କର ଅଜ୍ଞାତ ନୁହେ ଏବଂ ବସ୍ତୁତଃ ସେମାନଙ୍କ ଦର୍ଶନର ଗୋଟାଏ ଶାଖା ବସ୍ତୁବାଦୀତତ୍ତ୍ୱର ତଥ୍ୟ ଉଦ୍ଗମିତ ନିକଟ

ବୌଦ୍ଧ ଦର୍ଶନରେ ଏହି ପରମସତ୍ତ୍ୱକୁ ଶୂନ୍ୟତା ନାମରେ ବହୁଧା ଉଲ୍ଲେଖ କରାଯାଇଛି, କିନ୍ତୁ ଏହା ଆମର ଶକ୍ତ ଅବା 'କିଛୁ-ନାହିଁ'ର ଧାରଣାରୁ ସମ୍ପୂର୍ଣ୍ଣ ଭିନ୍ନ । (୧) ଆମର ଅଭିଜ୍ଞତାର ବିଶ୍ୱରେ ଆମେ ତା'କୁ ଶୂନ୍ୟତା ହିଁ କହିବାକୁ ପଡ଼ିବ; କାରଣ ସେଥିପାଇଁ ଅନ୍ୟ କୌଣସି ଶବ୍ଦ ନାହିଁ । କିନ୍ତୁ ଆଧିଭୌତିକ ବାସ୍ତବତାର ଭାଷାରେ ଏହାର ଅର୍ଥ ହେଉଛି ସମସ୍ତ ବସ୍ତୁଙ୍କର ଯାହାକିଛି ଅନ୍ତର୍ନିହିତ ଓ ସର୍ବାତିଶକ୍ତି । ଜଣେ ବିଖ୍ୟାତ ବୌଦ୍ଧ ବିଦ୍ୱାନ୍ କହନ୍ତି "ଶୂନ୍ୟତା ହେତୁରୁ କେବଳ ସବୁକିଛି ସମ୍ଭବ ହୁଏ; ତାର ବିହୁନରେ ବିଶ୍ୱରେ କିଛି ସମ୍ଭବ ହୋଇ ପାରେନା ।"

ଏ ସବୁ ପ୍ରମାଣ କରୁଛି ଯେ ଅଧିବିଦ୍ୟା ମଣିଷକୁ କେଉଁ ଦିଗକୁ ଧାବିତ କରେ ଏବଂ ଏ ପ୍ରକାର ଅତିକଳ୍ପନାରେ ମଗ୍ନ ନ ହେବା ପାଇଁ ଶିଷ୍ୟ ଭକ୍ତଙ୍କୁ ସାବଧାନ କରିବାରେ ବୁଦ୍ଧ କି ବୁଦ୍ଧିମତ୍ତାର ପରିଚୟ ନ ଦେଇଛନ୍ତି ! ତଥାପି ମଣିଷ ମନ ବନ୍ଦୀ ହେବାକୁ ଚାହେଁନା ଏବଂ ସବୁଦା ସେହି ଜ୍ଞାନର ଫଳ ନିମନ୍ତେ ହାତ ବଢ଼ାଇ ଧାଏଁ ଯାହା ସମ୍ବନ୍ଧେ ଜାଣିବା ସେ ପାଇବାର ବାହାରେ । ଅଧିବିଦ୍ୟା ବୌଦ୍ଧଦର୍ଶନରେ ଯଦିଓ ବଢ଼ି ଉଠିଲା ତା'ର ପ୍ରଣାଳୀ; କିନ୍ତୁ ଭିତ୍ତି କଲା ଗୋଟାଏ ମନସ୍ତାତ୍ତ୍ୱିକ ଆଭିମୁଖ୍ୟ ଉପରେ । ଆଧୁନିକ ମଧ୍ୟ ମନର ବିଭିନ୍ନ ମନୋବୈଜ୍ଞାନିକ ଅବସ୍ଥା ପ୍ରତି ଯେଉଁ ଅନ୍ତର୍ଦୃଷ୍ଟି ଅର୍ପଣ କରାଯାଇଛି, ତାହା ବିସ୍ମୟକର । ଆଧୁନିକ ମନୋବିଜ୍ଞାନରେ ଅବଚେତନ ମନ ବିଷୟରେ ସ୍ପଷ୍ଟ ଧାରଣା କରାଯାଇଛି ଓ ତାହା ପ୍ରାଞ୍ଜଳଭାବରେ ବିବେଚିତ ହୋଇଛି । ଏକ ପୁରାତନ ଗ୍ରନ୍ଥର ଗୋଟାଏ ଅସାଧାରଣ ଅଂଶ ପ୍ରତି ମୋର ଦୃଷ୍ଟି ଆକର୍ଷଣ କରାଯାଇଛି । ପ୍ରତିପାଦନର ଧାରା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ହେଲେ ସୁଦ୍ଧା ଏହା ମତେ ଏକ ପ୍ରକାର 'ଇଡ଼ିପାସ୍ କମ୍ପ୍ଲେକ୍ସ' ତତ୍ତ୍ୱ ସ୍ମରଣ କରାଏ । (୨) ବୌଦ୍ଧଧର୍ମରେ ଚାରିଗୋଟି ନିର୍ଦ୍ଦିଷ୍ଟ ଦର୍ଶନର ପରିଣତି ଲାଭ କଲା । ଏଥିରୁ ଦୁଇଟି ହୀନଯାନ ଶାଖାର

(୧) ଅଧ୍ୟାପକ ଶେରବାସ୍କି, ଯିଏ ଏ ବିଷୟ ଉପରେ ଜଣେ ବିକ୍ପାଳ ପଣ୍ଡିତ, ତିବ୍ବତୀୟ ଭାଷା ସମେତ ବିଭିନ୍ନ ଭାଷାର ଏ ସମ୍ପର୍କୀୟ ମୂଳଗ୍ରନ୍ଥମାନ ପରୀକ୍ଷା କରି କହନ୍ତି ଯେ ଶୂନ୍ୟତା ହେଉଛି ଆପେକ୍ଷିକତା । ପ୍ରତ୍ୟେକ ବସ୍ତୁ ଯେହେତୁ ଆପେକ୍ଷିକ ଓ ପରସ୍ପର ନିର୍ଭରଶୀଳ ତାହାର କୌଣସି ପରମତ୍ତ୍ୱ ନାହିଁ । ଅତଏବ ତାହା ଶୂନ୍ୟ । ଅପର ପକ୍ଷରେ, ପ୍ରାତିଭାସିକ ବିଶ୍ୱର ସମ୍ପୂର୍ଣ୍ଣ ଊର୍ଦ୍ଧ୍ୱରେ ଅଥଚ ତାର ଅନ୍ତର୍ଭୁକ୍ତ ସେପରି କିଛି ଅଛି ଯାହାକୁ ପରମସତ୍ତ୍ୱ କୁହାଯାଇପାରେ । ସସୀମ ଓ ପ୍ରାତିଭାସିକ ବିଶ୍ୱ ଆକାରରେ ଏହା ଧାରଣା କିମ୍ବା କଳ୍ପନା କରାଯାଇପାରେନା । ଅତଏବ ଏହାକୁ 'ତଥ୍ୟତା' କୁହାଯାଉଛି । ଏହି ପରମସତ୍ତ୍ୱକୁ ଶୂନ୍ୟତା ନାମରେ ମଧ୍ୟ ଅଭିହିତ କରାଯାଇଛି ।

(୨) ଏହା ବସୁବନ୍ଧୁଙ୍କ 'ଅଭିଧର୍ମ କୋଷ' ଗ୍ରନ୍ଥରେ ଦେଖିବାକୁ ମିଳେ; ଯାହା ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ଆରମ୍ଭରେ ରଚିତ ହୋଇଥିଲା ଏବଂ ଯେଉଁଥିରେ ପୂର୍ବବର୍ତ୍ତୀ ବିଭିନ୍ନଦୃଷ୍ଟିକୋଣ ଓ ପରମ୍ପରା ସଙ୍କଳିତ ହୋଇଛି । ଏହାର ମୂଳସଂସ୍କୃତ ଗ୍ରନ୍ଥର ସନ୍ଧାନ ମିଳୁନି । କିନ୍ତୁ ଏହାର ଚୀନା ଓ ତିବ୍ବତୀୟ ଭାଷାନ୍ତର ରହିଛି । ଚୀନା ଭାଷାରେ ଅନୁବାଦ କରିଥିଲେ ବିଖ୍ୟାତ ଚୀନା

ଓ ଅନ୍ୟ ଦୁଇଟି ମହାଯାନର । ଏ ସମସ୍ତ ବୌଦ୍ଧଦର୍ଶନ ପଦ୍ଧତିର ମୂଳ ଉପନିଷଦ୍‌ମାନଙ୍କରେ ନିହିତ; କିନ୍ତୁ ସେମାନେ ଚତୁର୍ବେଦର ପ୍ରମାଣ ଅସ୍ୱୀକାର କରନ୍ତି । ବେଦ ପ୍ରତି ଏହି ଅବଜ୍ଞା ସେମାନଙ୍କୁ ସମକାଳୀନ ତଥାକଥିତ ହିନ୍ଦୁ ଦର୍ଶନପଦ୍ଧତି ଠାରୁ ସ୍ୱତନ୍ତ୍ର ଭାବରେ ଚିହ୍ନିତ କରେ । ହିନ୍ଦୁ ଦର୍ଶନ ସାଧାରଣ ଭାବରେ ବେଦର ପ୍ରମାଣ ଗ୍ରହଣ କରିଥିଲେ ସୁଦ୍ଧା ଏବଂ ଗୋଟାଏ ପ୍ରକାର ଶ୍ରଦ୍ଧାଭାବ ନିବେଦନ କରୁଥିଲେ ସୁଦ୍ଧା, ଦାର୍ଶନିକମାନେ ବେଦକୁ କେବେହେଲେ ଅଭ୍ରାନ୍ତ ବିବେଚନା କରି ନାହାନ୍ତି ଏବଂ ପ୍ରକୃତପକ୍ଷେ, ସେଥିପ୍ରତି ବିଶେଷ ଦୃଷ୍ଟି ନ ଦେଇ, ନିଜ ପନ୍ଥା ଅନୁଧାବନ କରିଛନ୍ତି । ବେଦ ଓ ଉପନିଷଦ୍‌ମାନଙ୍କରେ ବହୁ ଜିନିଷ ସେହେତୁ ଧ୍ୱନିତ ହୋଇଚି, ପରବର୍ତ୍ତୀ ବିଦ୍ୱଜ୍ଜନଙ୍କ ପକ୍ଷରେ ସେସବୁର କୌଣସି ଏକ ବିଷୟ ଉପରେ ଜୋର୍ ଦେବାରେ ଏବଂ ସେହି ଭିତ୍ତି ଉପରେ ଆପଣା ପଦ୍ଧତି ନିର୍ମାଣ କରିବାରେ କେବେହେଲେ ଅସମ୍ଭବ କିଛି ନଥିଲା ।

ଅଧ୍ୟାପକ ଶ୍ଚର୍ବାଟ୍‌ସ୍କିନ୍ ବୌଦ୍ଧ-ଚିନ୍ତାର ବିକାଶକ୍ରମ ଯେପରି ଗୁରିଗୋଟି ଦର୍ଶନ ପଦ୍ଧତିରେ ଅଭିବ୍ୟକ୍ତ ଲଭିଚି ଏପରିଭାବରେ ବର୍ଣ୍ଣନା କରିଚନ୍ତି : "ଏହା ଦ୍ୱୈତ୍ୟ ଆଧିଭୌତିକବାଦରେ ଆରମ୍ଭ ହୁଏ ଓ ଜ୍ଞାନକୁ ବସ୍ତୁସମୂହର ପ୍ରତ୍ୟକ୍ଷବୋଧ ବୋଲି ଗ୍ରହଣ କରେ । ପରବର୍ତ୍ତୀ ଅବସ୍ଥାରେ ସେହିସବୁ ଭାବ ବାସ୍ତବତା ଅବଧାରଣା କରିବାର ମାଧ୍ୟମ ଭାବରେ ବ୍ୟବହୃତ ହୁଏ ଏବଂ ମନ ଓ ବସ୍ତୁ ମଧ୍ୟରେ ଗୋଟାଏ ପରଦା ପଡିତ ହୁଏ । ଏହି ଦୁଇ ଅବସ୍ଥା ହୀନଯାନ ମତର ପ୍ରତିନିଧିତ୍ୱ କରେ । ମହାଯାନ ମତ ଆହୁରି ଆଗକୁ ପଦକ୍ଷେପ କରି ସେହି ପ୍ରତିରୂପ ପଛରେ ଯେଉଁ ବସ୍ତୁ ରହିଚି ତାର ଉଚ୍ଛେଦ ସାଧନ କରେ ଓ ସମସ୍ତ ଆକାଂକ୍ଷାକୁ ସେମାନଙ୍କ ମନର ବିଶ୍ୱରକ୍ରମ ବୋଲି ସ୍ୱୀକାର କରେ । ତା'ପରେ ଆସେ ଆପେକ୍ଷିକତା ଓ ଅଚେତନ ମନର ନାନା ଭାବ । ଶେଷ ଅବସ୍ଥାରେ, ଯାହା ନାଗାର୍ଜ୍ଜୁନଙ୍କ ମାଧ୍ୟମିକ ଦର୍ଶନ ବା ମଧ୍ୟପନ୍ଥା, ମନ ହିଁ ନାନା ଧାରଣାର ରୂପ ପରିଗ୍ରହ କରେ ଏବଂ ଆମ ଆଗରେ କେତେକ ଶିଥିଳ ଭାବ ଓ ବୋଧ ରହିଯାଏ ଯାହା ସମ୍ପର୍କରେ ନିଶ୍ଚିତ ଭାବରେ କିଛି କୁହାଯାଇପାରେନା ।

ଏପରିଭାବରେ, ପରିଶେଷରେ, ଆମେ ଯେପରି ଏକ ଶୂନ୍ୟତା ଅବା ଯେପରି କିଛି ଅବସ୍ଥାରେ ଉପନୀତ ହେଉ ଯାହା ଆମର ସୀମିତ ମନ ପକ୍ଷରେ ଗ୍ରହଣ କରିବା କଠିନ । କାରଣ ତାହା ବର୍ଣ୍ଣନା କରିବା କିମ୍ବା ତାର ସଂଜ୍ଞା ନିରୂପଣ କରିବା ସମ୍ଭବ ନୁହେଁ । ଖୁବ୍

---

ପରିବ୍ରାଜକ ହୁଏନ୍‌ସାଂ ଯିଏ ଭାରତକୁ ଆସିଥିଲେ । ଏହି ଚୀନା ଅନୁବାଦର ଫରାସୀ ଭାଷାରେ ଗୋଟାଏ ଅନୁବାଦ (ପ୍ରେସ୍‌—ଲୁବେନ୍; ୧୯୨୬) ପ୍ରକାଶ ପାଇଚି । ମୋର ସହଯୋଗୀ ଓ ସହବନ୍ଦୀ ଆଚାର୍ଯ୍ୟ ନରେନ୍ଦ୍ର ଦେବ ଏହି ଫରାସୀ ଗ୍ରନ୍ଥ ହିନ୍ଦୀ ଓ ଇଂରେଜୀରେ ଅନୁବାଦ କରୁଚନ୍ତି । ଉଲ୍ଲିଖିତ ଅଂଶ ସେ ମତେ ଦେଖାଇଚନ୍ତି । ତାହା ରହିଚି ପୁସ୍ତକର ତୃତୀୟ ଅଧ୍ୟାୟରେ ।

ବେଶି କହିଲେ ଏତିକି କେବଳ କୁହାଯାଇପାରେ ଯେ ଏହା ଗୋଟାଏ ପ୍ରକାର ଚେତନା —ବୌଦ୍ଧ ଦର୍ଶନର ଭାଷାରେ ଯାହାର ନାମ 'ବିଜ୍ଞାନ' ।

ମନୋବୈଜ୍ଞାନିକ ତଥା ଆଧିଭୌତିକ ବିଶ୍ଳେଷଣ ଦ୍ୱାରା ଏହି ମୀମାଂସାରେ ଉପନୀତ ହେବା ସତ୍ତ୍ୱେ ଅର୍ଥାତ୍ ଯାହା ପରିଶେଷରେ ଅଦୃଶ୍ୟ ବସ୍ତୁ ଅବା ପରମସତ୍ତ୍ୱର ଅବଧାରଣାକୁ ବିଶୁଦ୍ଧ ଚେତନାରେ ପରିଣତ କରେ ଏବଂ ଯେ ପର୍ଯ୍ୟନ୍ତ ଆମେ ଶବ୍ଦ ପ୍ରୟୋଗ କରିପାରୁଁ ଅବା ଶବ୍ଦଦ୍ୱାରା ଅର୍ଥ ଧାରଣା କରିପାରୁ, ସେଥିରେ ତା'ର କିଛି ଅର୍ଥ ନହେବା ସତ୍ତ୍ୱେ, ଜୋର୍ ଦେଇ କୁହାଯାଇଛି ଯେ ଆମର ଏହି ସୀମିତ ବିଶ୍ୱରେ ଶୀଳାଚାରଗତ ସମ୍ବନ୍ଧର ନିର୍ଦ୍ଦିଷ୍ଟ ମୂଲ୍ୟ ରହିଛି । ଅତଏବ, ଆମର ଜୀବନରେ ଓ ଆମର ମାନବିକ ସମ୍ପର୍କରେ ଆମକୁ ଶୀଳାଚାର ଅନୁସରଣ କରି ନିର୍ମଳ ଜୀବନ ଯାପନ କରିବାକୁ ହେବ । ସେହି ଜୀବନ ଓ ଏହି ଦୃଶ୍ୟମାନ ବସ୍ତୁ ପ୍ରତି ଆମେ ଯୁକ୍ତି, ଜ୍ଞାନ ଓ ଅନୁଭୂତି ପ୍ରୟୋଗ କରିପାରୁଁ ଓ କରିବା ଉଚିତ ମଧ୍ୟ । ଯାହା ଅସୀମ ଅବା ଯାହାକୁ ଅନ୍ୟ ଯେ କୌଣସି ଭାବରେ ନାମିତ କରାଯାଇନାହିଁ, ଆମର ଧାରଣାର ବାହାରେ ରହିଛି । ଅତଏବ ସେଥିପ୍ରତି ଏସବୁ ପ୍ରୟୋଗ କରାଯାଇନପାରେ ।

## ୧୧ । ହିନ୍ଦୁଧର୍ମ ଉପରେ ବୌଦ୍ଧଧର୍ମର ପ୍ରଭାବ

ପ୍ରାଚୀନ ଆର୍ଯ୍ୟଧର୍ମ ଓ ତାତ୍କାଳିକ ଭାରତରେ ପ୍ରଚଳିତ ନାନା ବୋଧ ଓ ବିଶ୍ୱାସ ଉପରେ ବୁଦ୍ଧଙ୍କ ଶିକ୍ଷାର କି ପ୍ରଭାବ ପଡ଼ିଲା ? ଏଥିରେ ସନ୍ଦେହ ନାହିଁ ଯେ ଜାତୀୟ ଜୀବନ, ପ୍ରଥା ଓ ଧର୍ମଜୀବନର ନାନା ଦିଗ ଉପରେ ତାର ଶକ୍ତିଶାଳୀ ତଥା ସ୍ଥାୟୀ ପ୍ରଭାବ ପଡ଼ିଲା । ବୁଦ୍ଧ ନିଜକୁ କେବେହେଲେ ଗୋଟାଏ ନୂତନ ଧର୍ମର ପ୍ରବର୍ତ୍ତକ ବୋଲି ମନେ କରି ନ ଥିଲେ; ହୁଏତ ସେ ନିଜକୁ ଜଣେ ସଂସ୍କାରକ କେବଳ ବୋଲି ଭାବିଥିବେ; କିନ୍ତୁ ତାଙ୍କର ଅପ୍ରତିରୋଧ୍ୟ ବ୍ୟକ୍ତିତ୍ୱ ଏବଂ ନାନା ସାମାଜିକ ତଥା ଧର୍ମଗତ ଅଭ୍ୟାସ ଉପରେ ତାଙ୍କର ବଳିଷ୍ଠ ବାଣୀର ଆକ୍ରମଣ, ଅବଶ୍ୟମ୍ଭାବୀ ଭାବରେ, ନ୍ୟସ୍ତସ୍ୱାର୍ଥ ପୁରୋହିତବର୍ଗ ସଙ୍ଗେ ସଂଘର୍ଷରେ ପର୍ଯ୍ୟବସିତହେଲା । ପ୍ରଚଳିତ ସାମାଜିକ ସଙ୍ଗଠନ ଅବା ଅର୍ଥନୈତିକ ବ୍ୟବସ୍ଥାର ମୂଳୋତ୍ପାଟନ କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା । ସେ ସବୁର ମୌଳିକଭିତ୍ତି ସେ ସ୍ୱୀକାର କରୁଥିଲେ ଏବଂ ସେଥି ଉପରେ ଗଢ଼ି ଉଠୁଥିବା ନାନା ଅସଦାଚାରକୁ କେବଳ ଆକ୍ରମଣ କରୁଥିଲେ । ତଥାପି, କେତେ ପର୍ଯ୍ୟନ୍ତ, ସେ ଜଣେ ସାମାଜିକ ବିପ୍ଳବୀ ଭାବରେ ହିଁ ନିଜକୁ କ୍ରିୟାଶୀଳ ରଖିଥିଲେ ଏବଂ ଏଥିହେତୁରୁ କେବଳ ଯେଉଁମାନେ ପ୍ରଚଳିତ ସାମାଜିକ ଅଭ୍ୟାସର ସ୍ଥିତାବସ୍ଥା ରକ୍ଷାକରିବାକୁ ଚାହୁଁଥିଲେ ସେହି ବ୍ରାହ୍ମଣ୍ୟବର୍ଗର କୋପ ଦୃଷ୍ଟିରେ ପଡ଼ିଲେ । ବୁଦ୍ଧଙ୍କ ଶିକ୍ଷାରେ ସେପରି କିଛି ନାହିଁ; ଯାହା ହିନ୍ଦୁ ଚିନ୍ତାର ବିସ୍ତୀର୍ଣ୍ଣ କ୍ଷେତ୍ରରେ ଯଥୋଚିତ ସ୍ଥାନ ପାଇନପାରେ । କିନ୍ତୁ ବ୍ରାହ୍ମଣ୍ୟ ଆଧିପତ୍ୟ ଯେତେ ଆକ୍ରମିତ ହେଲା ପରିଣତି ହେଇଉଠିଲା ଅନ୍ୟ ରକମ ।

କୌତୂହଳର କଥା ଯେ ଉତ୍ତର-ଭାରତର ମଗଧରେ ଯେଉଁଠି ବ୍ରାହ୍ମଣ୍ୟ ଧର୍ମ ବିଶେଷ

ପ୍ରଭାବଶାଳୀ ନଥିଲା ସେଠାରେ ବୌଦ୍ଧଧର୍ମ ପ୍ରଥମେ ପ୍ରତିଷ୍ଠା ଲାଭକଲା । କ୍ରମଶଃ, ତାହା ପଶ୍ଚିମ ଓ ଉତ୍ତର ଦିଗକୁ ବିସ୍ତୃତ ହେଲା ଏବଂ ବହୁ ବ୍ରାହ୍ମଣ ତାର ଅନୁଗାମୀ ହେଲେ । ପ୍ରଥମେ ସାରତଃ ଗୋଟାଏ କ୍ଷତ୍ରିୟ ଆନ୍ଦୋଳନ ଭାବରେ ଏହା ଆତ୍ମପ୍ରକାଶ କଲା । ତାର ଆବେଦନ କିନ୍ତୁ ଜନ-ଜୀବନକୁ ପ୍ରଭାବିତ କରୁଥିଲା । ପରବର୍ତ୍ତୀ କାଳରେ ଯେଉଁ ବ୍ରାହ୍ମଣମାନେ ସେଥିରେ ଯୋଗ ଦେଇଥିଲେ ସେମାନଙ୍କ ଲାଗି ହୁଏତ ଏହା ଅଧିକତର ଭାବରେ ଦାର୍ଶନିକ ତଥା ଅଧିଭୌତିକ ଧାରାରେ ବିକାଶ ଲାଭକଲା । ଏହା ମଧ୍ୟ ହୋଇପାରେ ଯେ, ବୌଦ୍ଧଧର୍ମାବଲମ୍ବୀ ବ୍ରାହ୍ମଣମାନଙ୍କ ଯୋଗୁଁ ପ୍ରଧାନତଃ ବୌଦ୍ଧଧର୍ମର ମହାଯାନ ଶାଖା ବିକାଶଲାଭ କଲା; କାରଣ କେତେକ ଭାବରେ ଓ ମୁଖ୍ୟତଃ ତାର ସାର୍ବଭୌମିକ ବିବିଧତାରେ ଏହା ପ୍ରଚଳିତ ଆର୍ଯ୍ୟଧର୍ମର ବିଭିନ୍ନ ଶାଖା ପ୍ରଶାଖା ସଙ୍ଗେ ଅଧିକତର ସମ୍ବନ୍ଧିତ ଥିଲା ।

ଭାରତୀୟ ଜୀବନକୁ ବୌଦ୍ଧଧର୍ମ ନାନା ଦିଗରେ ପ୍ରଭାବିତ କଲା ଏବଂ ସେ ପ୍ରକାର ପ୍ରଭାବ ବି ନପଡ଼ି ରହିପାରି ନଥାନ୍ତା; କାରଣ ଏକଥା ମନେ ରଖିବାକୁ ହେବ, ତାହା ସହସ୍ରାଧିକ ବର୍ଷ ପର୍ଯ୍ୟନ୍ତ ଭାରତରେ ଗୋଟାଏ ଜୀବନ୍ତ, ଗତିଶୀଳ ତଥା ସୁପରିବ୍ୟାପ୍ତ ଧର୍ମ ଭାବରେ ତିଷ୍ଠି ରହିଥିଲା । ଭାରତରେ ତାର ପତନ କାଳରେ ଏବଂ ପରବର୍ତ୍ତୀ କାଳରେ, ଯେତେବେଳେ ଗୋଟାଏ ସ୍ୱତନ୍ତ୍ର ଧର୍ମ ଭାବରେ ବସ୍ତୁତଃ ତାହା ମାନ୍ୟ ହୋଇ ଆଉ ନଥିଲା, ତାର ବହୁତ କିଛି ତଥାପି ହିନ୍ଦୁଧର୍ମ ଏବଂ ଜାତୀୟ ଜୀବନ ତଥା ଚିନ୍ତାର ଅଙ୍ଗ ଭାବରେ ରହିଲା । ଗୋଟାଏ ସ୍ୱତନ୍ତ୍ର ଧର୍ମ ଭାବରେ ଜନସାଧାରଣଙ୍କ ଦ୍ୱାରା ପରିଶେଷରେ ଏହା ପ୍ରତ୍ୟାଖ୍ୟାତ ହେଉଥିଲେ ମଧ୍ୟ ତାର ଅଲକ୍ଷ୍ୟ ଚିହ୍ନ ରହିଥିଲା ଓ ତାହା ଜାତୀୟ ବିକାଶକୁ ପ୍ରବଳ ଭାବରେ ପ୍ରଭାବିତ କଲା । ଏହି ସ୍ଥାୟୀ ପ୍ରଭାବ କୌଣସି ଧର୍ମବିଶ୍ୱାସ, ଦାର୍ଶନିକତତ୍ତ୍ୱ ଅବା ଧର୍ମାନ୍ଧତା ସଙ୍ଗେ ସମ୍ପର୍କିତ ନଥିଲା । ଏହା ବୁଦ୍ଧ ଓ ତାଙ୍କର ଧର୍ମର ନୈତିକ, ସାମାଜିକ ଓ ବ୍ୟାବହାରିକ ଆଦର୍ଶବାଦ କେବଳ ଯାହା ଆମ ଜନସାଧାରଣଙ୍କୁ ପ୍ରଭାବିତକଲା ଓ କାର ଅଲକ୍ଷ୍ୟ ଚିହ୍ନ ରଖିଦେଇ ଗଲା । ଯେପରିକି ଖ୍ରୀଷ୍ଟଧର୍ମର ନୈତିକ ଆଦର୍ଶ ୟୁରୋପକୁ ପ୍ରଭାବିତ କଲା; ୟୁରୋପ ତାର ଧର୍ମଗତ ବିଶ୍ୱାସ ପ୍ରତି ଯଦିଓ କେବେ ବିଶେଷ ଧ୍ୟାନ ଦେଇ । ସେପରିକି ମଧ୍ୟ, ଇସ୍‌ଲାମ ଧର୍ମର ମାନବିକ, ସାମାଜିକ ଓ ବ୍ୟାବହାରିକ ଆଭିମୁଖ୍ୟ ବହୁ ଲୋକଙ୍କୁ ପ୍ରଭାବିତ କଲା ଯେଉଁମାନେ ସେଥିର ଧର୍ମଗତ ଆଙ୍ଗିକ ଓ ବିଶ୍ୱାସ ପ୍ରତି ଆକୃଷ୍ଟ ହୋଇ ନଥିଲେ ।

ଏହି ଦେଶ ମଧ୍ୟରେ ସୀମିତ, ଭାରତର ଆର୍ଯ୍ୟ ଧର୍ମ ସାରତଃ ଥିଲା ଗୋଟାଏ ଜାତୀୟ-ଧର୍ମ ଏବଂ ତାହା ଯେଉଁ ସାମାଜିକ ବର୍ଣ୍ଣ-ବ୍ୟବସ୍ଥାର ଉନ୍ନତି ବିଧାନ କରୁଥିଲା, ଏହି ଜାତୀୟ ବିଭାବ ଉପରେ ଜୋର୍ ଦେଇଥିଲା । ଧର୍ମ ପ୍ରଚାର କରିବାର କୌଣସି ସ୍ୱତନ୍ତ୍ର ପ୍ରୟାସ ନଥିଲା । ଧର୍ମ ପରିବର୍ତ୍ତନ କରିବାର ଖିଆଲ ଜାଗି ନଥିଲା କିମ୍ବା ଭାରତର ସୀମାନ୍ତ ଅପର ପାର୍ଶ୍ୱକୁ ଦୃଷ୍ଟି ଚାଲି ନଥିଲା । ଭାରତ ଭିତରେ ଏହାର ଏକ ନିଜସ୍ୱ ଗତି ଥିଲା ଯେଉଁଥିରେ ନଥିଲା ଉଗ୍ରତା ଏବଂ ଯାହା କେବେ ଜ୍ଞାତ କେବେ ବା ଅଜ୍ଞାତ ଭାବରେ ନୂତନ ଓ ପୁରାତନ ସମସ୍ତଙ୍କୁ, ନବନବ ବର୍ଣ୍ଣ ସୃଷ୍ଟି କରି, ଗ୍ରହଣ କରିନେଉଥିଲା । ବାହାର ଦୁନିଆ ପ୍ରତି ଏ ପ୍ରକାର ମନୋବୃତ୍ତି ସେକାଳ ପାଇଁ ସ୍ୱାଭାବିକ ଥିଲା; କାରଣ ଯାତାୟାତର ସୁବିଧା ନଥିଲା

ଏବଂ ବୈଦେଶିକ ସମ୍ପର୍କର ଆବଶ୍ୟକତା ପ୍ରାୟ ଉପୁଜିନଥିଲା । ଅବଶ୍ୟ ବାଣିଜ୍ୟ ଓ ଅନ୍ୟାନ୍ୟ ଉଦ୍ଦେଶ୍ୟ ନିମନ୍ତେ ଏ ପ୍ରକାର ସମ୍ପର୍କ ଯେ ଥିଲା ସେଥିରେ ସନ୍ଦେହ ନାହିଁ । କିନ୍ତୁ ତାହା ଭାରତର ଜୀବନଧାରାରେ କୌଣସି ପରିବର୍ତ୍ତନ ଆଣି ନଥିଲା । ଭାରତୀୟ ଜୀବନର ମହାସମୁଦ୍ର ଥିଲା ସ୍ୱୟଂସମ୍ପୂର୍ଣ୍ଣ ଏବଂ ତାର ବିଶାଳତା ଓ ବିବିଧତା ତାର ସବୁ ପ୍ରକାର ପ୍ରବାହର ସ୍ୱଚ୍ଛନ୍ଦ ଗତି ନିର୍ବାହ କରିଥିଲା । ଆତ୍ମସଚେତନ ତଥା ନିଜ ଭିତରେ ନିମଗ୍ନ, ତାର ସୀମାନ୍ତ ବାହାରେ କ'ଣ ଘଟୁଚି ସେଥିପ୍ରତି ଭାରତ ବିଶେଷ ଧ୍ୟାନ ଦେଇ ନଥିଲା । ଏହି ମହାସମୁଦ୍ରର ଠିକ୍ ମଧ୍ୟ ଭାଗରେ ଗୋଟାଏ ନୂତନ ଉଜ୍ଜ୍ୱଳ ନିର୍ଝର ଫୁଟିଉଠିଲା ଏବଂ ତାର ସଦ୍ୟ ତଥା ସ୍ୱଚ୍ଛ ଜଳଧାରା ପୁରାତନ ଜଳବକ୍ଷ ବିଚଳିତ କରି, ମଣିଷ ଅବା ପ୍ରକୃତିସୃଷ୍ଟ ସମସ୍ତ ପ୍ରକାର ପୁରାତନ ବାଧାବନ୍ଧ ଓ ସୀମା-ସରହଦ ଲଙ୍ଘନ କରି ପ୍ରବାହିତ ହେଲା । ବୁଦ୍ଧଙ୍କ ଶିକ୍ଷାର ଏହି ପ୍ଲାବନର ଆବେଦନ ଥିଲା ଜାତି ପ୍ରତି; କିନ୍ତୁ ଏହା ସେତିକିରେ ମଧ୍ୟ ସୀମିତ ନଥିଲା । ଉତ୍ତମ ଜୀବନ ନିମନ୍ତେ ଏହାର ଆବେଦନ ଥିଲା ସାର୍ବଜନୀନ ଏବଂ ଶ୍ରେଣୀ, ବର୍ଣ୍ଣ ଅବା ଜାତି—କୌଣସି ପ୍ରକାର ବୈଷମ୍ୟ ଅବା ବୈଶିଷ୍ଟ୍ୟ ତାର ଅଙ୍ଗୀକାର ପାଇନଥିଲା ।

ତାଙ୍କ ସମୟର ଭାରତ ପାଇଁ ଏହା ଥିଲା ଗୋଟାଏ ଅଭିନବ ଆଭିମୁଖ୍ୟ । ସମ୍ରାଟ ଅଶୋକ ହେଉଚନ୍ତି ପ୍ରଥମ ବ୍ୟକ୍ତି ଯିଏ ବିଦେଶରେ ତାଙ୍କର ଦୂତ ବାସ ଜରିଆରେ ଓ ଅନ୍ୟବିଧ ଧର୍ମପ୍ରଚାର ମାଧ୍ୟମରେ ଏହି ନୂତନ ମାର୍ଗର ପ୍ରସାର ବ୍ୟବସ୍ଥା କରିଥିଲେ । ଏପରିଭାବରେ, ଭାରତ ବାହାର ଦୁନିଆ ପ୍ରତି ସଚେତନ ହେବାକୁ ଲାଗିଲା ଏବଂ ବିଶେଷ ଭାବରେ ଏଥି-ହେତୁରୁ ସମ୍ଭବତଃ, ଖ୍ରୀଷ୍ଟୀୟ ଯୁଗର ଆଦ୍ୟ ଶତାବ୍ଦୀମାନଙ୍କରେ ବିଶାଳ ଉପନିବେଶମାନ ସ୍ଥାପନ କରିବା ଉଦ୍ୟମର ସୂତ୍ରପାତ ହେଲା । ଏହିସବୁ ଦରିଆପାରି ଅଭିଯାନ ହିନ୍ଦୁ ଭୂପତିମାନେ ସଙ୍ଗଠନ କରିଥିଲେ ଏବଂ ତାହା ଥିଲା ବ୍ରାହ୍ମଣ୍ୟ ଧର୍ମ ଓ ଆର୍ଯ୍ୟ-ସଂସ୍କୃତିର ପରିବାହକ । ଗୋଟାଏ ସ୍ୱୟଂସମ୍ପୂର୍ଣ୍ଣ ଧର୍ମବିଶ୍ୱାସ ଓ ସଂସ୍କୃତି ଯାହା କ୍ରମଶଃ, ପାରମ୍ପରିକ ଭାବରେ ଅନନ୍ୟ, ଗୋଟାଏ ବର୍ଣ୍ଣ-ବ୍ୟବସ୍ଥା ନିର୍ମାଣ କରୁଥିଲା, ତାର ପକ୍ଷରେ ବାସ୍ତବିକ୍ ଏହା ଏକ ଅସାଧାରଣ ପଦକ୍ଷେପ । କୌଣସି ଶକ୍ତିଶାଳୀ ପ୍ରେରଣା ଏବଂ ସେମାନଙ୍କର ମୌଳିକ ଦୃଷ୍ଟିଭଙ୍ଗୀ ପରିବର୍ତ୍ତନ କଳ୍ପଭଳି କିଛି ଆବେଗ କେବଳ, ଏହା ସମ୍ଭବ କରି-ଥିବ । ସେହି ପ୍ରେରଣା ପଛରେ ନାନା କାରଣ ଥାଇପାରେ ଏବଂ ହୁଏତ ବାଣିଜ୍ୟ କରିବା ଓ ଗୋଟାଏ ସଂପ୍ରସାରଣଶୀଳ ସମାଜର ଆବଶ୍ୟକତା ପୂରଣ କରିବା ସେଥି ଭିତରୁ ମୁଖ୍ୟ ହୋଇପାରେ; କିନ୍ତୁ ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ଆଂଶିକ ଭାବରେ ବୌଦ୍ଧଧର୍ମ ଯୋଗୁଁ ଏବଂ ତଜ୍ଜନିତ ବୈଦେଶିକ ସମ୍ପର୍କ ଯୋଗୁଁ ସମ୍ଭବ ହୋଇପାରିଲା । ସେହିକାଳରେ ହିନ୍ଦୁଧର୍ମ ମଧ୍ୟ ଯଥେଷ୍ଟଭାବରେ ଗତିଶୀଳ ଓ ଜୀବନୀ-ଶକ୍ତିରେ ଉଜ୍ଜ୍ୱଳ ଥିଲା; କିନ୍ତୁ ବିଦେଶ ପ୍ରତି ଏଥିପୂର୍ବେ ବିଶେଷ ଦୃଷ୍ଟି ଦେଇନଥିଲା । ଏହି ନୂତନ ଧର୍ମର ସାର୍ବଜନୀନତାର ଅନ୍ୟତମ ଫଳ ସ୍ୱରୂପ ସେହି ଗତିଶୀଳ ଶକ୍ତି ଦୂରଦେଶମାନଙ୍କୁ ପ୍ରବାହିତ ହେବାର ପ୍ରେରଣାଲାଭକଲା ।

ବୈଦିକ ଧର୍ମ ତଥା ପ୍ରଚଳିତ ବିଶ୍ୱାସର ଅନ୍ୟାନ୍ୟ ଅଙ୍ଗିକ ସଙ୍ଗେ ସଂଶ୍ଳିଷ୍ଟ, ପୂଜାପଦ୍ଧତି ଓ ଅନୁଷ୍ଠାନପ୍ରଣାଳୀର ବହୁତ କିଛି ଏବଂ ମୁଖ୍ୟତଃ ପଶୁବଳି ବ୍ୟବସ୍ଥା ଲୁପ୍ତ ହେଲା । ବେଦ

ଓ ଉପନିଷଦମାନଙ୍କରେ ନିହିତ ଅହିଂସାଭାବ ଉପରେ ବୌଦ୍ଧଧର୍ମ ଓ ଆହୁରି ନିଷ୍ଠାପର ଭାବରେ ଜୈନଧର୍ମ ଜୋର୍ ଦେଲା । ଜୀବପ୍ରତି ଦୟା ଓ ଜୀବନ ପ୍ରତି ଗୋଟାଏ ନୂତନ ସମ୍ମାନବୋଧ ବଢ଼ିଉଠିଲା ଏବଂ ଏ ସବୁ ପଛରେ ସବୁ ସମୟରେ ରହିଥିଲା ଗୋଟାଏ ମହତ୍ତର, ଉଚ୍ଚତର ଜୀବନଯାପନର ନିରବଚ୍ଛିନ୍ନ ଉଦ୍ୟମ ।

ବୁଦ୍ଧ କଠୋର ତପଶ୍ଚର୍ଯ୍ୟାର ନୈତିକ ମୂଲ୍ୟ ଅସ୍ୱୀକାର କରିଥିଲେ; କିନ୍ତୁ ଜୀବନ ପ୍ରତି ତାଙ୍କର ଶିକ୍ଷାର ସାମଗ୍ରିକ ପ୍ରଭାବ ଥିଲା ମୁଖ୍ୟତଃ ନୈରାଶ୍ୟମୂଳକ । ବିଶେଷରେ ଏହା ଥିଲା ହୀନଯାନ ଓ ଜୈନଧର୍ମର ଦୃଷ୍ଟିଭଙ୍ଗୀ । ପାରଲୌକିକତା, ଜୀବନ୍ମୁକ୍ତି ଓ ସାଂସାରିକ ଜଞ୍ଜାଳରୁ ଅବ୍ୟାହତି ପାଇବା ଉପରେ ଜୋର୍ ଦିଆଯାଇଥିଲା । ବ୍ରହ୍ମଚର୍ଯ୍ୟପାଳନ ଉତ୍ସାହିତ କରାଗଲା ଏବଂ ଶାକାହାରର ମହତ୍ତ୍ୱ ବୃଦ୍ଧି ପାଇଲା । ଏ ସବୁ ବିଷୟ ବୁଦ୍ଧଙ୍କ ପୂର୍ବରୁ ମଧ୍ୟ ଭାରତରେ ପ୍ରଚଳିତ ଥିଲା; କିନ୍ତୁ ସେଥି ଉପରେ ଏତେ ଭଳି ଗୁରୁତ୍ୱ ଆରୋପ କରାଯାଇ ନ ଥିଲା । ପୁରାତନ ଆର୍ଯ୍ୟ ଆଦର୍ଶ ଗୁରୁତ୍ୱ ଦେଇଥିଲା ଗୋଟାଏ ପୂର୍ଣ୍ଣ ତଥା ସର୍ବତୋମୁଖୀ ଜୀବନ ଉପରେ । ବିଦ୍ୟାର୍ଥୀ ଅବସ୍ଥା ଥିଲା ବ୍ରହ୍ମଚର୍ଯ୍ୟ ଓ ସଂଯମର; ଜୀବନର ବିଭିନ୍ନ କାର୍ଯ୍ୟକଳାପରେ ଗୃହସ୍ଥ ପୂର୍ଣ୍ଣ ଅଂଶ ଗ୍ରହଣ କରୁଥିଲା ଏବଂ 'ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା' ଥିଲା ସେଥି ଭିତରୁ ଅନ୍ୟତମ । ତାର ପରବର୍ତ୍ତୀ ଅବସ୍ଥା ହେଉଚି ବ୍ୟକ୍ତିଗତ ଜଞ୍ଜାଳର କ୍ରମସଂକୋଚନ ଓ ଲୋକ-କଲ୍ୟାଣ କର୍ମରେ ଅଧିକତର ଅଭିନିବେଶ ଅର୍ପଣ । ଜୀବନର ଶେଷ ଅବସ୍ଥା କେବଳ ଅର୍ଥାତ୍ ବୃଦ୍ଧାବସ୍ଥା ସନ୍ନ୍ୟାସର—ଗତାନୁଗତିକ ସମସ୍ତ କିଛି କର୍ମରୁ ବିରତି, ଆସକ୍ତିହୀନତା ।

ପୂର୍ବେ ଅରଣ୍ୟର ଋଷି ଆଶ୍ରମରେ ବିଦ୍ୟାର୍ଥୀମାନେ ରୁଣ୍ଡ ହେଉଥିଲେ । ବୌଦ୍ଧଧର୍ମର ପ୍ରସାର ଫଳରେ ସର୍ବତ୍ର ବଡ଼ବଡ଼ ଭିକ୍ଷୁ ଓ ଭିକ୍ଷୁଣୀ ବିହାରମାନ ଗଢ଼ି ଉଠିଲା ଓ ସେ ଦିଗରେ ଜନସ୍ରୋତ ପ୍ରବାହିତ ହେଲା । ଆଜିର ବିହାର ପ୍ରଦେଶର ନାମ ପ୍ରାଚୀନ ସେହି 'ବିହାର' ଶବ୍ଦରୁ ଉତ୍ପନ୍ନ । ଏଥିରୁ ସୂଚିତ ହୁଏ ଯେ ସେହିସମୟରେ ସେହି ବିଶାଳ ଅଞ୍ଚଳ ବିହାରମାନଙ୍କରେ ପୂର୍ଣ୍ଣ ଥିଲା । ଏ ପ୍ରକାର ବିହାର ବିଦ୍ୟାପୀଠ ଭାବରେ ମଧ୍ୟ ବ୍ୟବହୃତ ହେଉଥିଲା କିମ୍ବା ବାହାରେ ଏକାଧିକ ବିଦ୍ୟାୟତନ ଓ କେବେ କେବେ ଏକାଧିକ ବିଶ୍ୱବିଦ୍ୟାଳୟ ସଙ୍ଗେ ଏହାର ସମ୍ବନ୍ଧ ରହିଥିଲା ।

ଭାରତରେ କେବଳ ନୁହେଁ, ସମଗ୍ର ମଧ୍ୟ-ଏସିଆରେ ବି ବହୁ ସଂଖ୍ୟକ ବିଶାଳ ବୌଦ୍ଧ ବିହାର ଥିଲା । ଗୋଟାଏ ପ୍ରସିଦ୍ଧ ବିହାର ଥିଲା ବଲ୍ଖରେ; ଯେଉଁଠି ଏକହଜାର ଭିକ୍ଷୁ ବାସ କରୁଥିଲେ । ଏ ସଂକ୍ରାନ୍ତରେ ବହୁ ପ୍ରମାଣ ଦେଖିବାକୁ ମିଳେ । ଏହାର ନାମ ଥିଲା ନବ-ବିହାର ଓ ଯାହାର ପାରସିକ ଅପଭ୍ରଂଶ ହେଉଚି 'ନୌବିହାର' ।

ଭାରତରେ ବୌଦ୍ଧଧର୍ମର ପରିଣାମ ଆତ୍ୟନ୍ତିକ ପାରଲୌକିକତାରେ ପର୍ଯ୍ୟବସିତ ହେଲା ଏବଂ ଚୀନ, ଜାପାନ ଓ ବର୍ମା ଭଳି ଦେଶମାନଙ୍କରେ ଯେଉଁଠି ବହୁକାଳ ପର୍ଯ୍ୟନ୍ତ ଏହା ସମୃଦ୍ଧ ଥିଲା ସେଠାରେ ଏ ଆଦର୍ଶ ଏତେ ଉଗ୍ର କାହିଁକି ବା ନହେଲା, ମୁଁ ଅବଶ୍ୟ ଜାଣେନି; କିନ୍ତୁ ମୋର ମନେହୁଏ, ପ୍ରତ୍ୟେକ ଦେଶର ଜାତୀୟ ପୃଷ୍ଠଭୂମି ତାର ନିଜ ରୂପରେ

କୌଣସି ଧର୍ମକୁ ଗଢ଼ିବା ପାଇଁ ଯଥେଷ୍ଟ ଶକ୍ତିଶାଳୀ ଥିଲା । ଉଦାହରଣ ସ୍ୱରୂପ, ଚୀନ କନ୍‌ଫୁସିୟସ୍, ଲାଓ-ସେ ଓ ଅନ୍ୟ ଦାର୍ଶନିକଙ୍କଠାରୁ ଉତ୍ପନ୍ନ ଶକ୍ତିଶାଳୀ ପରମ୍ପରାମାନ ସଂରକ୍ଷିତ କରିଥିଲା । ଆହୁରି ମଧ୍ୟ ଚୀନ ଓ ଜାପାନ ବୌଦ୍ଧଧର୍ମର ମହାଯାନ ଶାଖାର ଅନୁଗାମୀ ଥିଲେ ଯାହା ହୀନଯାନ ଭଳି ସମ୍ପୂର୍ଣ୍ଣ ନୈରାଶ୍ୟବାଦମୂଳକ ନଥିଲା । ଭାରତ ଜୈନଧର୍ମ ଦ୍ୱାରା ବି ପ୍ରଭାବିତ ହୋଇଥିଲା ଯାହା ଏ ସମସ୍ତ ସିଦ୍ଧାନ୍ତ ଓ ଦର୍ଶନ ଅପେକ୍ଷା ଚରମ ଭାବରେ ପାରଲୌକିକ ଓ ବୈରାଗ୍ୟମୂଳକ ଥିଲା ।

ଭାରତ ଓ ତାର ସାମାଜିକ ଗଠନ ଉପରେ ବୌଦ୍ଧଧର୍ମର ଆହୁରି ଏକ ବିଚିତ୍ର ପ୍ରଭାବ ହେଉଛି ଯାହା ସଂପୂର୍ଣ୍ଣ ଭାବରେ ତାର ସମଗ୍ର ଦୃଷ୍ଟିଭଙ୍ଗୀର ପରିପନ୍ଥୀ ଥିଲା । ଏହା ବର୍ଣ୍ଣ-ବ୍ୟବସ୍ଥା ସମ୍ବନ୍ଧୀୟ । ବୌଦ୍ଧଧର୍ମ ବର୍ଣ୍ଣ-ବ୍ୟବସ୍ଥାର ମୌଳିକ ଭିତ୍ତି ସ୍ୱୀକାର କରିଥିଲେ ମଧ୍ୟ ତାର ସମର୍ଥକ ନଥିଲା । ବୁଦ୍ଧଙ୍କ ସମୟରେ ବର୍ଣ୍ଣ-ବ୍ୟବସ୍ଥାରେ ଯଥେଷ୍ଟ ନମନୀୟତା ଥିଲା ଓ ପରବର୍ତ୍ତୀ କାଳମାନଙ୍କର କଠୋର ଶୃଙ୍ଖଳା ନଥିଲା । ସାମର୍ଥ୍ୟ, ଚରିତ୍ର ଓ ବୃତ୍ତି ଉପରେ କୁଳ ଅପେକ୍ଷା ଅଧିକ ଗୁରୁତ୍ୱ ଅର୍ପିତ ହେଉଥିଲା । ସ୍ୱୟଂ ବୁଦ୍ଧ ମଧ୍ୟ ବହୁଧା ଯୋଗ୍ୟ, ତପସ୍ୱୀ ଓ ସଂଯମୀ ବ୍ୟକ୍ତି ପ୍ରତି ବ୍ରାହ୍ମଣ ଶବ୍ଦ ପ୍ରୟୋଗ କରିବା ଦେଖାଯାଏ । ଛାନ୍ଦୋଗ୍ୟ ଉପନିଷଦରେ ଗୋଟିଏ ପ୍ରଖ୍ୟାତ ଉପାଖ୍ୟାନ ଅଛି ଯାହା ସେ ସମୟରେ ବର୍ଣ୍ଣ ଏବଂ ସ୍ତ୍ରୀ ଓ ପୁରୁଷର ମିଳନ ସମ୍ପର୍କକୁ କିପରି ଭାବରେ ଦେଖୁଥିଲେ ସେଥି ଉପରେ ଆଲୋକପାତ କରେ ।

ଏହି ଉପାଖ୍ୟାନ ହେଉଛି ସତ୍ୟକାମ ଓ ତାଙ୍କର ମାତା ଜାବାଲା ସମ୍ପର୍କରେ । ସତ୍ୟକାମ ଋଷି ଗୌତମଙ୍କ (ବୁଦ୍ଧଦେବ ନୁହନ୍ତି) ନିକଟରେ ଅଧ୍ୟୟନ କରିବାକୁ ଇଚ୍ଛା କଲେ । ଘର ଛାଡ଼ିଯିବା ସମୟରେ ମାତାଙ୍କୁ ସେ ପଚାରିଲେ, "ମୋର ଗୋତ୍ର କ'ଣ ?" ମାତା କହିଲେ, "ବାପରେ, ତୁ କେଉଁ କୁଳ କୁଟୁମ୍ବର ମୁଁ ଜାଣେନି । ମୋର ଯୁବା ବୟସରେ ମୋର ବାପାଙ୍କ ଅତିଥିମାନଙ୍କ ସେବାରେ ମୁଁ ଯେବେ ନିୟୋଜିତ ଥିଲି, ତୁ ଗର୍ଭକୁ ଆସିଲୁ । ତୋର କୁଳ କ'ଣ କୁଟୁମ୍ବ କ'ଣ ମୁଁ ଜାଣେନି । ମୋର ନାଁ ଜାବାଲା ଆଉ ମୁଁ ତୋତେ ନାମ ଦେଇଛି ସତ୍ୟକାମ । ଗୁରୁ ପଚାରିଲେ କହିବୁ ଯେ ତୁ ସତ୍ୟକାମ-ଜାବାଲ; ଜାବାଲାର ପୁତ୍ର ସତ୍ୟକାମ ।"

ତଦନନ୍ତର ସତ୍ୟକାମ ଗୌତମଙ୍କ ଆଶ୍ରମକୁ ଗଲେ ଏବଂ ସେ ପଚାରିବାମାତ୍ରେ ନିଜ ଗୋତ୍ର ସମ୍ବନ୍ଧରେ ତାଙ୍କ ଧାରଣା ଯାହା କହିଥିଲେ ତାହା କହିଲେ । ଗୁରୁ ଗୌତମ ସନ୍ତୁଷ୍ଟ ହୋଇ କହିଲେ, "ପ୍ରକୃତ ବ୍ରାହ୍ମଣ ବିନା ଅନ୍ୟ କେହି ଏପରି କହି ନପାରେ । ବତ୍ସ, ଯାଅ ଅରଣି ସଂଗ୍ରହ କରି ଆଣ । ମୁଁ ତୁମକୁ ଦୀକ୍ଷା ଦେବି । ତୁମେ ସତ୍ୟରୁ ବିଚ୍ୟୁତ ହୋଇନାହଁ ।"

ବୁଦ୍ଧଙ୍କ ସମୟରେ ସମ୍ଭବତଃ ବ୍ରାହ୍ମଣ୍ୟବର୍ଗ ହିଁ ଥିଲା, କମ୍ ବହୁତରେ, କଠୋର ଶୃଙ୍ଖଳା ଦ୍ୱାରା ଆବଦ୍ଧ । କ୍ଷତ୍ରିୟମାନେ ନିଜର କୁଳ ଓ କୁଟୁମ୍ବର ପରମ୍ପରା ପ୍ରତି ଅଭିମାନୀ ଯଦିଓ ଥିଲେ ଗୋଟିଏ ଶ୍ରେଣୀ ଭାବରେ କିନ୍ତୁ ଶାସନରେ ଅଧିଷ୍ଠିତ କୌଣସି ବ୍ୟକ୍ତି ବିଶେଷ ଅବା ପରିବାରକୁ ଗ୍ରହଣ କରିବା ପାଇଁ ସେମାନଙ୍କର ଦ୍ୱାର ଉନ୍ମୁକ୍ତ ଥିଲା । ଏମାନଙ୍କ ବ୍ୟତୀତ ଅଧିକାଂଶଲୋକ ବୈଶ୍ୟ ଥିଲେ ଯେଉଁମାନେ କୃଷିକର୍ମ କରିଥାନ୍ତି । କୃଷି ଗୋଟିଏ

ସମ୍ମାନଜନକ ବୃତ୍ତି ଭାବରେ ଗଣ୍ୟ ହେଉଥିଲା । ଅନ୍ୟାନ୍ୟ ବୃତ୍ତି-ପ୍ରଧାନ ବର୍ଣ୍ଣ ବି ଥିଲା । ତଥାକଥିତ ନୀଚ ଜାତି ଅଥବା ଅସ୍ପୃଶ୍ୟ ସଂଖ୍ୟା ସ୍ୱଳ୍ପ ଥିବା ଜଣାଯାଏ । ଏମାନଙ୍କ ଭିତରେ ଗଣ୍ୟ ହେଉଥିଲେ ହୁଏତ କିଛି ଜଙ୍ଗଲି ଲୋକ ଆଉ ସେମାନେ; ଯେଉଁମାନଙ୍କର ବୃତ୍ତି ଥିଲା ଶବସତ୍କାର କରିବା ।

ଅହିଂସା ଉପରେ ଜୈନଧର୍ମ ଓ ବୌଦ୍ଧଧର୍ମ ଯେଉଁ ଗୁରୁତ୍ୱ ଅର୍ପଣ କଲେ ସେଥିରେ କୃଷିକର୍ମ ଗୋଟାଏ ନୀଚ ବୃତ୍ତି ଭାବରେ ବିବେଚିତ ହେଲା; କାରଣ ସେଥିରେ ବହୁଧା ଜୀବହିଂସା କରିବାକୁ ପଡ଼ୁଥିଲା । ଏହି ବୃତ୍ତି, କାଳେ ଯାହା ଭାରତୀୟ ଆର୍ଯ୍ୟମାନଙ୍କ ଗର୍ବର କାରଣ ଥିଲା, ତାର ମୌଳିକ ଗୁରୁତ୍ୱ ସତ୍ତ୍ୱେ, ଦେଶର କେତେକ ଅଞ୍ଚଳରେ ଯଥୋଚିତ ମୂଲ୍ୟ ହରାଇଲା ଏବଂ କୃଷକ ମଧ୍ୟ ସାମାଜିକ ସ୍ତରରୁ ପତିତ ହେଲା ।

ଏପରିଭାବରେ ବୌଦ୍ଧଧର୍ମ ଯାହା ଯାଜକତନ୍ତ୍ର ଓ କର୍ମକାଣ୍ଡ ବିରୁଦ୍ଧରେ ଏବଂ ଯେ କେଉଁ ଲୋକର ଅବନତି, ଅଭିବୃଦ୍ଧିର ସୁଯୋଗ ତଥା ଗୋଟାଏ ଉଚ୍ଚତର ଜୀବନଯାପନରୁ ବଞ୍ଚିତ ହେବା ବିରୁଦ୍ଧରେ ବିଦ୍ରୋହ ଭଳି ଗଢ଼ି ଉଠିଥିଲା, ନିଜ ଅଜ୍ଞାତରେ, କୃଷିକର୍ମରେ ନିଯୋଜିତ ଅଗଣିତ ଲୋକଙ୍କ ଅବନତି ଓ ବଞ୍ଚନାର କାରଣ ହେଲା । ଏଥି ନିମନ୍ତେ ବୌଦ୍ଧଧର୍ମକୁ ଦାୟୀ କରିବା ଭୁଲ ହେବ; କାରଣ ଅନ୍ୟ କେଉଁଠି ଏ ପ୍ରକାର ପରିଣତି ଘଟିନାହିଁ । ବର୍ଣ୍ଣ-ବ୍ୟବସ୍ଥା ଭିତରେ ଅନ୍ତର୍ନିହିତ ସେପରି କିଛି ଥିଲା ଯାହା ତାକୁ ଏ ଦିଗରେ ଟାଣିନେଲା । ଅହିଂସା ପ୍ରତି ଅତ୍ୟଧିକ ନିଷ୍ଠା ଯୋଗୁଁ ଜୈନଧର୍ମ ତାକୁ ସେ ଦିଗରେ ଚାଳିତ କଲା ଏବଂ ବୌଦ୍ଧଧର୍ମ ବି ଅନବଧାନତା ଯୋଗୁଁ ସେହି ପ୍ରକ୍ରିୟାର ସହାୟକ ହେଲା ।

## ୧୬. ବୌଦ୍ଧଧର୍ମ ହିନ୍ଦୁଧର୍ମରେ ଲୀନହେଲା

ଆଠ ନଅବର୍ଷ ପୂର୍ବେ ମୁଁ ଯେବେ ସେଠାରେ ଥିଲି, ଆନ୍ଦ୍ରେ ମାଲ୍‌ରୋ ଆମର ସୁଖାଲାପ ଆରମ୍ଭରେ ହିଁ ଗୋଟାଏ ବିଚିତ୍ର ପ୍ରଶ୍ନ ମତେ ପଚାରି ବସିଲେ । ସେ ମତେ ପଚାରି ଥିଲେ ଯେ ତାହା କ'ଣ ଯାହା ସହସ୍ରାଧିକ ବର୍ଷ ପୂର୍ବେ ବିନା କୌଣସି ଉଲ୍ଲେଖଯୋଗ୍ୟ ସଙ୍ଘର୍ଷରେ ସୁସଂଗଠିତ ବୌଦ୍ଧଧର୍ମକୁ ଭାରତରୁ ବିତାଡ଼ିତ କଲା ? ବୌଦ୍ଧଧର୍ମର ଏତେ ବଡ଼ ବିସ୍ତୃତି ଓ ଜନପ୍ରିୟତା ସତ୍ତ୍ୱେ, ସେପରି କୌଣସି ଧର୍ମଯୁଦ୍ଧ ବିନା, ଯାହା ବହୁଦେଶର ଇତିହାସକୁ କଳୁଷିତ କରିଥାଏ, ନିଜ ଦେହରେ ଲୀନ କରି ନେବାରେ ହିନ୍ଦୁଧର୍ମ କିପରି ସଫଳ ହେଲା ? ସେ ସମୟରେ ହିନ୍ଦୁଧର୍ମରେ କି ଆତ୍ମିକ ଶକ୍ତି ବା ଥିଲା; ଯାହା ଏହି ଅଭୂତକର୍ମ ସମ୍ପାଦନ କରିବା ପାଇଁ ତାକୁ ସମର୍ଥ କଲା ? ଆଜିର ଭାରତରେ ସେହି ଆତ୍ମିକଶକ୍ତି ଓ ତେଜ କ'ଣ ଅଛି ? ଯଦି ଥାଏ, ତାର ସ୍ୱାଧୀନତା ଓ ମହାନତା ଅନିବାର୍ଯ୍ୟ ବୋଲି ବୁଝିବାକୁ ହେବ ।

ଜଣେ କ୍ରିୟାଶୀଳ ଫରାସୀ ବୁଦ୍ଧିଜୀବୀ ପକ୍ଷରେ ଏ ପ୍ରଶ୍ନ ହୁଏତ ସ୍ୱାଭାବିକ ଥିଲା । ୟୁରୋପ ଅବା ଆମେରିକାରେ ଖୁବ୍ କମ୍ ଲୋକ ତଥାପି ଏପରି ବିଷୟ ନେଇ ମୁଣ୍ଡ ଖେଳାଇଥାନ୍ତେ । ଆଜିର ବିଭିନ୍ନ ସମସ୍ୟାରେ ଓତପ୍ରୋତଭାବରେ ଜଡ଼ିତ, ଏ ପ୍ରକାର ବିଷୟରେ ଧ୍ୟାନ ଦେବା ପାଇଁ ସେମାନେ ଅବକାଶ ପାଇ ନଥାନ୍ତେ । ଆଜିର ବିଭିନ୍ନ ବିଶ୍ୱ ସମସ୍ୟା ନେଇ ମାଲ୍‌ରୋ

ବି ଗମ୍ଭୀରଭାବରେ ଚିନ୍ତିତ ଥିଲେ ଏବଂ ତାଙ୍କର ଶକ୍ତିଶାଳୀ ତଥା ବିଶ୍ଳେଷଣାତ୍ମକ ମାନସ ଯେକୌଣସି, ଅତୀତରୁ ହେଉ କି ବର୍ତ୍ତମାନରୁ ହେଉ—ଚିନ୍ତା, ଉକ୍ତି ଓ ଲେଖାରୁ କିମ୍ବା ସର୍ବାପେକ୍ଷା ଯାହା ଶ୍ରେଷ୍ଠ ସେହି କର୍ମତତ୍ପରତା ଭିତରୁ, ଅଥବା ଜୀବନ ଓ ମୃତ୍ୟୁର ଖେଳ ଭିତରୁ, ଯେଉଁଠି ସୂଚନା ମିଳେ ସେ ଏ ଦିଗରେ ଆଲୋକର ସନ୍ଧାନ କରୁଥିଲେ ।

ମାଲ୍‌ରୋଙ୍କ ପକ୍ଷରେ ଏ ପ୍ରଶ୍ନ କେବଳ ପୋଥି ଅବା ନଥିପତ୍ରର ପ୍ରଶ୍ନ ଯେ ନଥିଲା, ସ୍ପଷ୍ଟ ଜଣାଯାଉଥିଲା । ଏ ଚିନ୍ତାରେ ସେ ପୂର୍ଣ୍ଣ ହୋଇ ରହିଥିଲେ ଏବଂ ଆମର ଦେଖା ହେବା ମାତ୍ରେ ତାହା ଉତ୍ଥାପନ କଲେ । ଏ ପ୍ରଶ୍ନ ଥିଲା ମୋର ପ୍ରାଣସମ୍ପୃକ୍ତ କିମ୍ବା ଏପରି ବି କୁହାଯାଇପାରେ, ଯେଉଁ ପ୍ରଶ୍ନ ମୋର ମନରେ ବାରମ୍ବାର ଗଢ଼ିଉଠୁଥିଲା ଆଉ ଯା'ର ମୀମାଂସା ପାଇଁ ମୁଁ ମଧ୍ୟ ଆକୁଳ ଥିଲି । ମୋ ପାଇଁ ହେଉ କିମ୍ବା ତାଙ୍କ ପାଇଁ ହେଉ ଏଥିର ସନ୍ତୋଷଜନକ ଉତ୍ତର ମୋ ପାଖରେ ନଥିଲା । ଏ ସମ୍ବନ୍ଧରେ ନାନାବିଧ ଉତ୍ତର ଓ ବ୍ୟାଖ୍ୟା ଯଦିଓ ରହିଛି ସେସବୁ ଏ ପ୍ରଶ୍ନର ଅନ୍ତଃସ୍ଥଳରେ ଉପନୀତ ହୋଇଥିବା ଭଳି ଜଣାଯାଉନି ।

ଏ କଥା ସ୍ପଷ୍ଟ ଯେ ଭାରତରେ ବୌଦ୍ଧଧର୍ମର କୌଣସି ବ୍ୟାପକ ଅବା ଧ୍ୱଂସାତ୍ମକ ପରିସମାପ୍ତି ଘଟିନି । କେବେ କେବେ ଜଣେ ହିନ୍ଦୁ ରାଜା ଓ ବୌଦ୍ଧ ସଂଘ ଅର୍ଥାତ୍ ଭିକ୍ଷୁ ସଂଗଠନ ଭିତରେ, ଯାହା ପ୍ରଭାବଶାଳୀ ହୋଇ ଉଠିଥାଏ, ସ୍ଥାନୀୟଭାବରେ ବିବାଦ ଅବା ସଂଘର୍ଷ ଦେଖା ଦେଇଛି । ଏ ସବୁ ମୂଳରେ ସାଧାରଣତଃ ରାଜନୈତିକ କାରଣ ରହିଥାଏ; କିନ୍ତୁ ତଦ୍ୱାରା ସାରତଃ କୌଣସି ପ୍ରଭେଦ ଦେଖା ଦିଏନି । ଏ କଥା ମଧ୍ୟ ମନେ ରଖିବା ଉଚିତ ଯେ ବୌଦ୍ଧଧର୍ମ କସ୍ମିନ୍‌କାଳେ ହିନ୍ଦୁଧର୍ମକୁ ସମ୍ପୂର୍ଣ୍ଣଭାବରେ ସ୍ଥାନଚ୍ୟୁତ କରିପାରି ନାହିଁ । ଭାରତରେ ବୌଦ୍ଧଧର୍ମର ଯଶସ୍ୱୀ ଅବସ୍ଥାରେ ମଧ୍ୟ ହିନ୍ଦୁଧର୍ମ ବିସ୍ତୃତ ଭାବରେ ପ୍ରଚଳିତ ଥିଲା । ଭାରତରେ ବୌଦ୍ଧଧର୍ମ ସ୍ୱାଭାବିକ ମୃତ୍ୟୁ ଘଟିଲା କିମ୍ବା ଅନ୍ୟଭାବରେ କହିଲେ ଏହାର କ୍ରମରୂପାନ୍ତର ସାଧିତ ହେଲା । ଶ୍ରୀଅଦ୍ କହନ୍ତି, "ଭାରତର ଗୋଟାଏ ବିଚିତ୍ର ପ୍ରତିଭା ହେଉଛି ଯେ ଯାହା ସେ ବାହାରୁ ଆଣେ, ତାକୁ ପରିବର୍ତ୍ତନ କରି ନିଜ ଭିତରେ ଲୀନ କରି ନିଏ ।" ବହିର୍ଦ୍ଦେଶରୁ ଅବା ବିରୋଧୀ ସୂତ୍ରରୁ ଗ୍ରହଣ କରିବା ସମ୍ବନ୍ଧେ ଏହା ଯଦି ସତ୍ୟ, ଯାହା ତାର ନିଜ ମନ ଓ ଚିନ୍ତାରୁ ଉଦ୍ଭୂତ ସେପରି କିଛି ବିଷୟରେ ଏହା ଆହୁରି ଅଧିକ ଭାବରେ ପ୍ରଯୁଜ୍ୟ । ବୌଦ୍ଧଧର୍ମ ସମ୍ପୂର୍ଣ୍ଣ ଭାବରେ ଭାରତ ମାଟିର ସୃଷ୍ଟି କେବଳ ନୁହେଁ; ବରଂ ଏହାର ଦର୍ଶନ ପୂର୍ବବର୍ତ୍ତୀ ଭାରତୀୟ ଚିନ୍ତା ଓ ବେଦାନ୍ତ ଦର୍ଶନ ସଙ୍ଗେ ଏକାଧାରରେ ସମାବିଷ୍ଟ । ଉପନିଷଦର ଯାଜକତନ୍ତ୍ର ଓ କର୍ମକାଣ୍ଡକୁ ବିଦ୍ରୂପ କରାଯାଇଛି ଏବଂ ବର୍ଣ୍ଣର ଗୁରୁତ୍ୱ ଲଘୁ କରାଯାଇଛି ।

ବ୍ରାହ୍ମଣ୍ୟବାଦ ଓ ବୌଦ୍ଧଧର୍ମ ପରସ୍ପର ଉପରେ କ୍ରିୟା-ପ୍ରତିକ୍ରିୟା କରି, ଉଭୟର ଦ୍ୱନ୍ଦ୍ୱାତ୍ମକ ସଂଘାତ ସତ୍ତ୍ୱେ, ଅଥବା ସେଥିହେତୁରୁ ହୁଏତ, ଦର୍ଶନର ଦୁନିଆରେ ଓ ଜନବିଶ୍ୱାସର କ୍ଷେତ୍ରରେ, ପରସ୍ପରର ନିକଟବର୍ତ୍ତୀ ହେବା ଆଭିମୁଖ୍ୟ ଅନୁସରଣ କଲେ । ବ୍ରାହ୍ମଣ୍ୟବାଦ ଓ ମହାଯାନ ମଧ୍ୟର ବ୍ୟବଧାନ ସଙ୍କୁଚିତ ହୋଇ ଆସିଲା । ଯେ ପର୍ଯ୍ୟନ୍ତ ତାର

ନୈତିକ ପୃଷ୍ଠଭୂମି ଅକ୍ଷୁର୍ଣ୍ଣ ରହିଛି, ମହାଯାନ ମତ ଅନ୍ୟ ସବୁ ବିଷୟରେ ପ୍ରାୟ ଭାଳନାମା ପାଇଁ ପ୍ରସ୍ତୁତ ଥିଲା । ବ୍ରାହ୍ମଣ୍ୟବାଦ ବୁଦ୍ଧଙ୍କୁ ଅବତାର ଭାବରେ ଗ୍ରହଣ କରିନେଲା । ବୌଦ୍ଧ-ଧର୍ମ ମଧ୍ୟ ତାହା ହିଁ କଲା । ମହାଯାନ ମତ କ୍ଷିପ୍ରଭାବରେ ବିସ୍ତାର ଲାଭ କଲା । କିନ୍ତୁ ବିସ୍ତୃତି ଲାଭ ସଙ୍ଗେ ତାର ବୈଶିଷ୍ଟ୍ୟ ଓ ଗୁଣାତ୍ମକ ବିଭବର କ୍ଷତି ଘଟିଲା । ବିହାର ଧନ ସମ୍ପଦରେ ପୂର୍ଣ୍ଣ ହେଲା, ନ୍ୟସ୍ତସ୍ୱାର୍ଥର କେନ୍ଦ୍ର ହେଲା ଓ ତାର ଅନୁଶାସନ ଶିଥିଳ ହୋଇ ପଡ଼ିଲା । ସାର୍ବଜନୀନ ପୂଜାବିଧିରେ ତନ୍ତ୍ରସାଧନ ଓ ଅନ୍ଧବିଶ୍ୱାସ ପ୍ରବେଶ କଲା । ତାର ଅଭ୍ୟୁଦୟର ପ୍ରଥମ ସହସ୍ର ବର୍ଷ ପରେ ଭାରତରେ ବୌଦ୍ଧଧର୍ମ କ୍ରମଶଃ ପତନାଭିମୁଖୀ ହେଲା । ସେହି ସମୟରେ ତାର ରୁଗ୍‌ଣାବସ୍ଥା ସମ୍ପର୍କରେ ସୂଚିତ କରି ଶ୍ରୀମତୀ ରାଇସ୍ ଡେଭିଡ୍‌ସ କହନ୍ତି : "ଏହି ସବୁ ରୁଗ୍‌ଣ କଳ୍ପନାର ଅଭିଭୂତକର ପ୍ରଭାବରେ ଗୌତମଙ୍କ ନୀତିଶିକ୍ଷା ପ୍ରାୟ ଆମ ଦୃଷ୍ଟିର ଅନ୍ତରାଳ ହୋଇଯାଇଛି । ତତ୍ତ୍ୱ ପରେ ତତ୍ତ୍ୱ ଗଢ଼ି ଉଠିଛି, ଐଶ୍ୱର୍ଯ୍ୟ ଓ ଆଡ଼ମ୍ବର ଲାଭ କରିଛି; ପ୍ରତ୍ୟେକ ନୂତନ ପଦକ୍ଷେପ, ନୂତନ ପ୍ରକଳ୍ପ ଅନ୍ୟ ଏକ ପ୍ରକଳ୍ପ ଦାବି କରିଛି ଏବଂ ଏ ସବୁ ସେ ପର୍ଯ୍ୟନ୍ତ ଚାଲୁ ରହିଛି ଯେ ପର୍ଯ୍ୟନ୍ତ ସମଗ୍ର ଆକାଶ ମସ୍ତିଷ୍କର ଜାଲସୂତାରେ ପୂର୍ଣ୍ଣ ନ ହୋଇଛି ଏବଂ ଧର୍ମ ପ୍ରବର୍ତ୍ତିକଙ୍କ ମହତ୍ତ୍ୱ ତଥା ସରଳ ଉପଦେଶାବଳୀ ଆଧିଭୌତିକ ସୂକ୍ଷ୍ମ ବିଚାରର ଆପାତଉଜ୍ଜ୍ୱଳ ଗଣ୍ଠି ତଳେ ଚପି ହୋଇ ଶ୍ୱାସରୁଦ୍ଧ ହୋଇ ନ ଯାଇଛି ।"(୧)

ସେହି ସମୟରେ ବ୍ରାହ୍ମଣ୍ୟବାଦ ଓ ତାର ଶାଖା ପ୍ରଶାଖାକୁ ଯେଉଁସବୁ 'ରୁଗ୍‌ଣ-କଳ୍ପନା' ଓ 'ମସ୍ତିଷ୍କର ଜାଲସୂତା' ପୀଡ଼ିତ କରୁଥିଲା, ସେଥିର ବହୁତ କିଛି ପ୍ରତି ମଧ୍ୟ ଏହି ବର୍ଣ୍ଣନା ପ୍ରଯୁଜ୍ୟ ହୋଇପାରେ ।

ଭାରତରେ ସାମାଜିକ ଓ ଆଧ୍ୟାତ୍ମିକ ପୁନର୍ଜାଗରଣ ତଥା ସଂସ୍କାର ସାଧନ କାଳରେ ବୌଦ୍ଧଧର୍ମ ପ୍ରବର୍ତ୍ତିତ ହେଲା । ଜନସାଧାରଣଙ୍କ ଭିତରେ ଏହା ନୂତନ ଜୀବନର ନିଃଶ୍ୱାସ ପ୍ରବାହିତ କଲା, ଲୋକଶକ୍ତିର ନବନବ ଉତ୍ସ ଉଦ୍‌ଘାଟିତ କଲା ଏବଂ ନେତୃତ୍ୱ ପାଇଁ ନୂତନ ପ୍ରତିଭା ଓ ସାମର୍ଥ୍ୟ ଉତ୍ସାହିତ କଲା । ସମ୍ରାଟ ଅଶୋକଙ୍କ ପୃଷ୍ଠପୋଷକତାରେ ଏହା ଅତି କ୍ଷିପ୍ର ଗତିରେ ବିସ୍ତାର ଲାଭ କଲା ଏବଂ ଭାରତର ସର୍ବପ୍ରଧାନ ଧର୍ମ ଭାବରେ ବଢ଼ି ଉଠିଲା । ଅନ୍ୟାନ୍ୟ ଦେଶମାନଙ୍କ ମଧ୍ୟ ଏହା ପ୍ରସାରିତ ହେଲା ଏବଂ ଭାରତ ଓ ଅନ୍ୟାନ୍ୟ ଦେଶ ମଧ୍ୟରେ ବହୁ ଖ୍ୟାତନାମା ବୌଦ୍ଧ ବିଦ୍ୱାନଙ୍କ ଗତାଗତ ଆରମ୍ଭ ହେଲା । ବୁଦ୍ଧଙ୍କ ମହାପରିନିର୍ବାଣର ହଜାରେ ବର୍ଷ ପରେ, ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ, ଚୀନ ପରିବ୍ରାଜକ ଫା-ହିୟାନ୍ ଯେବେ ଭାରତକୁ ଆସିଥିଲେ, ଦେଖିଲେ ବୌଦ୍ଧଧର୍ମ ନିଜ ଜନ୍ମଭୂମିରେ ଐଶ୍ୱର୍ଯ୍ୟ ଓ ଆଡ଼ମ୍ବରରେ ପୂର୍ଣ୍ଣ ହୋଇ ରହିଛି । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ବିଖ୍ୟାତ ଚୀନା ପରିବ୍ରାଜକ ହୁଏନ୍ ସାଁ ଭାରତକୁ ଆସିଥିଲେ ଏବଂ କେତେକ ଅଞ୍ଚଳରେ ତାର ଆଧିପତ୍ୟ ରହିଥିଲେ ସୁଦ୍ଧା, ବୌଦ୍ଧଧର୍ମର ଅବନତି ଲକ୍ଷ୍ୟ କରିଥିଲେ । କ୍ରମଶଃ ବୌଦ୍ଧ ବିଦ୍ୱାନ୍ ଓ ଭିକ୍ଷୁ ବହୁ ସଂଖ୍ୟାରେ ଭାରତ ଛାଡ଼ି ଚୀନ ଅଭିମୁଖେ ଚାଲିଲେ ।

---

(୧) ସର୍ବପଲ୍ଲି ରାଧାକୃଷ୍ଣନ, ଇଣ୍ଡିୟାନ୍ ଫିଲସଫି' (ଏଲେନ୍ ଏଣ୍ଡ୍ ଆନ୍‌ୱିନ୍ ୧୯୨୭)

ଇତିମଧ୍ୟରେ, ବ୍ରାହ୍ମଣବାଦ ବି ପୁନର୍ଜାଗରିତ ହୋଇଛି ଏବଂ ଖ୍ରୀଷ୍ଟୀୟ ଚତୁର୍ଥ-ପଞ୍ଚମ ଶତାବ୍ଦୀରେ ଗୁପ୍ତ ସମ୍ରାଟମାନଙ୍କ ପୃଷ୍ଠପୋଷକତାରେ ଏକ ମହାନ୍ ସାଂସ୍କୃତିକ 'ରେନେସାଁ' ଅର୍ଥାତ୍ ପୁନର୍ଭ୍ୟୁଦୟ ପ୍ରକାଶ ପାଇଛି । କୌଣସି ଭାବରେ ହେଲେ ଏହା ବୌଦ୍ଧ ବିରୋଧୀ ନଥିଲା; କିନ୍ତୁ ଏହା ନିଶ୍ଚିତ ଭାବରେ ବ୍ରାହ୍ମଣ୍ୟବାଦର ଗୁରୁତ୍ୱ ଓ ଶକ୍ତି ବୃଦ୍ଧି କଲା । ଆହୁରି ମଧ୍ୟ ଏହା ଥିଲା ବୌଦ୍ଧଧର୍ମର ପାରଲୌକିକତା ବିରୁଦ୍ଧରେ ଏକ ପ୍ରତିକ୍ରିୟା । ପରବର୍ତ୍ତୀ ଗୁପ୍ତ ସମ୍ରାଟମାନଙ୍କୁ ବହୁ ବର୍ଷ ପର୍ଯ୍ୟନ୍ତ ଲୁହାଇ ଲୁହାଇ ଆସୁଥିବା ହୂଣ ଆକ୍ରମଣ ପ୍ରତିରୋଧ କରିବାକୁ ପଡ଼ିଥିଲା ଏବଂ ପରିଶେଷରେ ସେମାନେ ସମ୍ପୂର୍ଣ୍ଣ ଭାବରେ ବିତାଡ଼ିତ ହୋଇଥିଲେ ସୁଦ୍ଧା ଦେଶ ଦୁର୍ବଳ ହୋଇ ପଡ଼ିଲା ଓ ପତନର ପ୍ରକ୍ରିୟା ଆରମ୍ଭ ହେଲା । ପରବର୍ତ୍ତୀ କାଳରେ ବହୁ ଉଜ୍ଜ୍ୱଳ ପର୍ଯ୍ୟାୟ ଅତିବାହିତ ହୋଇଛି ଓ ବହୁ ଅସାଧାରଣ ବ୍ୟକ୍ତି ଆବିର୍ଭୂତ ହୋଇଛନ୍ତି । ତଥାପି ବ୍ରାହ୍ମଣ୍ୟବାଦ ଓ ବୌଦ୍ଧଧର୍ମ ଉଭୟ ପତନଶୀଳ ହେଲା ଏବଂ ସେଥିଭିତରେ ନାନା ହୀନକର ଅଭ୍ୟାସ ବଢ଼ି ଉଠିଲା । ସ୍ୱତନ୍ତ୍ର ଭାବରେ ଉଭୟଙ୍କୁ ଚିହ୍ନିବା କଷ୍ଟକର ହେଲା । ବ୍ରାହ୍ମଣ୍ୟବାଦ ଯଦି ବୌଦ୍ଧଧର୍ମକୁ ଶୋଷଣ କରି ନେଲା ତାହାହେଲେ ଏହି ପ୍ରକ୍ରିୟାରେ ବ୍ରାହ୍ମଣ୍ୟବାଦ ମଧ୍ୟ ଅନେକ ଦିଗରେ ପରିବର୍ତ୍ତିତ ହେଲା ।

ଅଷ୍ଟମ ଶତାବ୍ଦୀରେ, ଭାରତର ମହତ୍ତମ ଦାର୍ଶନିକମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ, ଶ୍ରୀ ଶଙ୍କରାଚାର୍ଯ୍ୟ ହିନ୍ଦୁ ସନ୍ନ୍ୟାସୀମାନଙ୍କ ପାଇଁ ଏକାଧିକ ମଠ ସ୍ଥାପନ କଲେ । ଏହା ବୌଦ୍ଧ ସଂଘର ଅନୁରୂପ । ବ୍ରାହ୍ମଣ୍ୟ ଧର୍ମରେ ଏଥିପୂର୍ବେ ଏ ପ୍ରକାର ସନ୍ନ୍ୟାସୀ ସଙ୍ଗଠନ ନଥିଲା । ଅବଶ୍ୟ କେଉଁଠି କେଉଁଠି କ୍ଷୁଦ୍ର ଗୋଷ୍ଠୀ ଆକାରରେ ସନ୍ନ୍ୟାସୀ ରହୁଥିଲେ ।

ବୌଦ୍ଧଧର୍ମର କେତେକ ବିକୃତ କ୍ରିୟାନୁଷ୍ଠାନ ପୂର୍ବବଙ୍ଗ ଓ ଉତ୍ତର-ପଶ୍ଚିମ ଭାରତର ସିନ୍ଧୁ ପ୍ରଦେଶରେ ଅବ୍ୟାହତ ରହିଲା । ଅନ୍ୟଥା, ଗୋଟାଏ ସୁପରିବ୍ୟାପ୍ତ ଧର୍ମ ଭାବରେ ବୌଦ୍ଧଧର୍ମ କ୍ରମଶଃ ଭାରତରୁ ଅନ୍ତର୍ହିତ ହେଲା ।

## ୧୩. ଭାରତୀୟ ଦର୍ଶନର ଆଭିମୁଖ୍ୟ

ଯଦିଓ ଗୋଟାଏ ବିଷୟର ଆଉ ଏକ ବିଷୟର ଭିତରକୁ ବାଟ କଢ଼ାଇ ନିଏ, ପ୍ରତ୍ୟେକଟି କିନ୍ତୁ ସଚରାଚର ଜୀବନର ପରିବର୍ତ୍ତନଶୀଳ ଗଠନ ସଙ୍ଗେ ସମ୍ପର୍କିତ ଏବଂ ମାନବିକ ମନର ଗୋଟାଏ ଯୁକ୍ତିସଙ୍ଗତ ଆନ୍ଦୋଳନ, ବେଳେବେଳେ ପରିଲକ୍ଷିତ ହୁଏ । ତଥାପି ବିଷୟର ଉପରେ ବିଷୟର ଲଦି ହୁଏ ଏବଂ ନୂତନ ଓ ପୁରାତନ—ସାମଞ୍ଜସ୍ୟହୀନ, ବହୁଧା ପରସ୍ପର ଖଣ୍ଡନଶୀଳ—ପାର୍ଶ୍ୱବର୍ତ୍ତୀ ଭାବରେ ରହିଥାଏ । ବ୍ୟକ୍ତି ମନ ପରସ୍ପର ବିରୋଧୀ ବିଷୟରର ଗୋଟାଏ ସମାହାର ଏବଂ ତାର ଗୋଟାଏ କର୍ମ ସଙ୍ଗେ ଅନ୍ୟ ଏକ କର୍ମର ସଙ୍ଗତି ଦେଖିବା ବାସ୍ତବିକ କଷ୍ଟକର । ଗୋଟାଏ ଜାତି ଭିତରେ ଯେଉଁଠି ସାଂସ୍କୃତିକ ବିକାଶର ବିଭିନ୍ନ ଅବସ୍ଥା ରହିଥାଏ, ସେ ଜାତିରେ ଓ ତାର ବିଷୟର, ମତ-ବିଶ୍ୱାସ ଓ କ୍ରିୟାକଳାପରେ ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ସବୁ ପର୍ଯ୍ୟାୟର ଲକ୍ଷଣ ରହିଥାଏ । ତାର କାର୍ଯ୍ୟକଳାପ ବର୍ତ୍ତମାନର ସାମାଜିକ ଓ ସାଂସ୍କୃତିକ ଆଦର୍ଶର ଅନୁରୂପ ହୋଇପାରେ । ଅନ୍ୟଥା ଜୀବନର

ପ୍ରବାହରୁ ସେ ବିଚ୍ଛିନ୍ନ ଓ ନିର୍ବାସିତ ହୋଇଯିବ; କିନ୍ତୁ ଏସବୁ କ୍ରିୟାକଳାପ ପଛରେ ରହିଛି କେତେ ଆଦିମ ବିଶ୍ୱାସ ଓ ଏପରି କେତେ ଦୃଢ଼ ପ୍ରତ୍ୟୟ ଯାହା ଯୁକ୍ତି ଦ୍ୱାରା ପ୍ରତିପାଦନ କରିଯାଇନପାରେ । ଶିଳ୍ପ ଦିଗରେ ଅଗ୍ରଗାମୀ ଦେଶମାନଙ୍କରେ ମଧ୍ୟ, ଯେଉଁଠି ପ୍ରତ୍ୟେକ ବ୍ୟକ୍ତି ଅଧୁନାତନ ଉଦ୍‌ଭାବନ ଓ ଯନ୍ତ୍ରକୌଶଳର ସୁଯୋଗ ସ୍ୱତଃ ଗ୍ରହଣ କରିଥାଏ, ସେପରି କେତେ ବିଶ୍ୱାସ ଓ ବଦ୍ଧଧାରଣା ଯାହାକୁ ଯୁକ୍ତି ଅସ୍ୱୀକାର କରେ ଓ ବୁଦ୍ଧି ଗ୍ରହଣ କରିବାପାଇଁ ପଶ୍ଚାତ୍‌ପଦ ହୁଏ, ଦେଖିବାକୁ ମିଳେ । ଏହା ବାସ୍ତବିକ ବିସ୍ମୟକର । ବିଜ୍ଞତା ଅବା ଯୌକ୍ତିକତାର ଗୋଟାଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ ନ ହୋଇ ସୁଦ୍ଧା ଜଣେ ରାଜନୀତିଜ୍ଞ ତାଙ୍କର ଧନ୍ଦାରେ ସଫଳତା ହାସଲ କରିପାରନ୍ତି । ଜଣେ ଓକିଲ ନିଜର ଯୁକ୍ତି ଚମତ୍କାର ଭାବରେ ଉପସ୍ଥାପିତ କରି ପାରନ୍ତି ଏବଂ ଆଇନ-ବିଜ୍ଞାନବେତ୍ତା ହୋଇ ପାରନ୍ତି, ତଥାପି ଅନ୍ୟାନ୍ୟ ବିଷୟରେ ତାଙ୍କର ଅଜ୍ଞତା ଅତି ବିଚିତ୍ର ମନେ ହୋଇପାରେ । ଏପରିକି, ଆଧୁନିକ ଯୁଗର ଆଦର୍ଶ ପ୍ରତିନିଧି ବୈଜ୍ଞାନିକ ମଧ୍ୟ ତାଙ୍କର ଗବେଷଣାଗାର ବାହାରେ ବିଜ୍ଞାନର ପ୍ରଣାଳୀ ଓ ଦୃଷ୍ଟିଭଙ୍ଗୀ ବହୁଧା ବିସ୍ମୃତ ହୋଇଥାନ୍ତି ।

ଆମର ଦୈନନ୍ଦିନ ଜୀବନରେ ଯେଉଁସବୁ ସମସ୍ୟାର ପ୍ରଭାବ ଆମ ଉପରେ ପଡ଼ିଥାଏ, ସେସବୁର ବୈଷୟିକ ବିଭାବ ପ୍ରତି ମଧ୍ୟ ଏହା ପ୍ରଯୁଜ୍ୟ । ଦର୍ଶନ ଓ ଅଧିବିଦ୍ୟାର ଯାହା ସମସ୍ୟା ସେ ସବୁ ଅଧିକତର ଅଫଳଲଗ୍ନ, କମ୍ ପରିମାଣରେ ଅଚିରସ୍ଥାୟୀ ଓ ଆମର ଦୈନନ୍ଦିନ କାର୍ଯ୍ୟକ୍ରମସଙ୍ଗେ ସେତେଭାବରେ ସଂଲଗ୍ନ ନୁହେଁ । କଠୋର ଶୃଙ୍ଖଳା ଓ ମନର ବହୁତ ତାଲିମ୍ ବିନା ଆମ ଭିତରୁ ଅଧିକାଂଶଙ୍କ ପାଇଁ ସେ ସବୁ ସମ୍ପୂର୍ଣ୍ଣ ଭାବରେ ଧୃତିର ବାହାରେ । ତଥାପି, ସଚେତନ ହେଉ ବା ଅଚେତନ ହେଉ, ଆମ ସମସ୍ତଙ୍କର କୌଣସି ପ୍ରକାର ଗୋଟାଏ ଜୀବନ ଦର୍ଶନ ରହିଛି ଏବଂ ତାହା ଯଦି ନିଜ ଚିନ୍ତାରରୁ ଉଦ୍ଭୂତ ନ ହୋଇଛି ତାହାହେଲେ ସେ ଦର୍ଶନ ଏକେ ଉତ୍ତରାଧିକାର ସୂତ୍ରରେ ଆମକୁ ମିଳିଛି ଅଥବା ଅନ୍ୟମାନଙ୍କ ପାଖରୁ ଗୃହୀତ ହୋଇଛି ଏବଂ ସ୍ୱୟଂପ୍ରକାଶ୍ୟ ବିବେଚିତ ହୋଇଛି । କିମ୍ବା ଚିନ୍ତାର ବିପଦରୁ ରକ୍ଷା ପାଇବା ପାଇଁ କୌଣସି ଧର୍ମବିଶ୍ୱାସ ଅବା ମତାନ୍ଧତାରେ, ଅଥବା ଜାତୀୟ ଭାଗ୍ୟରେ କରୁଥିବା ଗୋଟାଏ ପ୍ରକାର ଅସ୍ପଷ୍ଟ ତଥା ଆଶ୍ୱାସକର ମାନବହିତୈଷିତାରେ ଆମେ ଆଶ୍ରୟ ଖୋଜିଥାଉଁ । ବହୁଧା ଏସବୁ ଓ ଅନ୍ୟସବୁ ଏକାସଙ୍ଗେ ରହିଥାଏ ଯଦିଓ, ପରସ୍ପର ଭିତରେ ସମ୍ପର୍କର ସୂତ୍ର ସେପରି କିଛି ନଥାଏ । ଫଳରେ ଆମ ଭିତରେ ଏକାଧିକ ବ୍ୟକ୍ତିତ୍ୱ ବିକାଶଲାଭ କରେ ଆଉ ପ୍ରତ୍ୟେକଟି ନିଜର ସ୍ୱତନ୍ତ୍ର ପ୍ରକୋଷ୍ଠ ଭିତରେ ରହି କ୍ରିୟାଶୀଳ ହୋଇଥାଏ ।

ସମ୍ଭବତଃ ପୂର୍ବକାଳରେ ମାନବିକ ବ୍ୟକ୍ତିତ୍ୱରେ ଅଧିକତର ଏକତ୍ୱ ଓ ସଙ୍ଗତି ଥିଲା; ଯଦିଓ କେତେକ ଉଚ୍ଚକୋଟୀର ବ୍ୟକ୍ତିଙ୍କ ବ୍ୟତୀତ ଏହା ଆଜି ଅପେକ୍ଷା ନିମ୍ନତର ସ୍ତରରେ ରହିଥିଲା । ପରିବର୍ତ୍ତନର ଏହି ଦୀର୍ଘକାଳ ଭିତରେ ଯାହାର ଭିତରଦେଇ ମାନବଜାତି ଗତି କରୁଛି ଆମେ ସେ ଏକତା ଭଙ୍ଗକରି ପାରିଛୁ; କିନ୍ତୁ ତାର ସ୍ଥାନରେ ଅନ୍ୟ ପ୍ରକାର ଏକତା ହାସଲ କରିବା ଦିଗରେ ଅଦ୍ୟାପି ସଫଳ ହୋଇନାହୁଁ । ଏବେ ବି ଆମେ ମତାନ୍ଧତାର ବିଭିନ୍ନ

ରୂପକୁ ଯାବୁଡ଼ି ରହିଛୁ, ନାନା ଅନାବଶ୍ୟକ ଅଭ୍ୟାସ ଓ ବିଶ୍ୱାସରୁ ଆମେ ଆଦୌ ମୁକ୍ତ ନୋହୁଁ; ତଥାପି ଆମେ କହୁ ଓ ମନେକରୁ ଯେ ବୈଜ୍ଞାନିକ ପ୍ରଣାଳୀ ଅନୁସାରେ ଆମେ ଜୀବନ ଅତିବାହିତ କରୁଛୁ । ହୁଏତ ଜୀବନ ପ୍ରତି ବିଜ୍ଞାନର ଆଭିମୁଖ୍ୟ ଅତିଶୟ ସଂକୀର୍ଣ୍ଣ ହୋଇ ପଡ଼ିଛି ଏବଂ ଜୀବନର ଅନେକ ଅପରିହାର୍ଯ୍ୟ ବିଭବକୁ ଅବଜ୍ଞା କରିଛି । ଅତଏବ, ନୂତନ ଏକ ଏକତ୍ୱ ଓ ସଙ୍ଗତି ପାଇଁ ଏହା ଉପଯୁକ୍ତ ଭିତ୍ତି ଯୋଗାଇ ପାରିନାହିଁ । ବର୍ତ୍ତମାନ ଏ ଭିତ୍ତି ବୋଧହୁଏ କ୍ରମଶଃ ପ୍ରସାରିତ ହେଉଛି ଏବଂ ଆମେ ମାନବିକ ବ୍ୟକ୍ତିତ୍ୱ ପାଇଁ ଏକ ନୂତନ ସଙ୍ଗତି, ପୂର୍ବାପେକ୍ଷା ଆହୁରି ଉଚ୍ଚସ୍ତରରେ, ଅଚିରେ ଲାଭ କରିପାରିବା ।

ବର୍ତ୍ତମାନ; କିନ୍ତୁ ଏ ସମସ୍ୟା ବଡ଼ କଷ୍ଟକର ଓ ଜଟିଳ ହୋଇ ଉଠିଛି କାରଣ ଏହା ମାନବିକ ବ୍ୟକ୍ତିତ୍ୱର ସୀମା ବାହାରକୁ ବଢ଼ିଯାଇଛି । ପ୍ରାଚୀନ ଓ ମଧ୍ୟଯୁଗର ସୀମାବଦ୍ଧ କ୍ଷେତ୍ରରେ କୌଣସି ଏକ ପ୍ରକାର ସୁସାମଞ୍ଜସ୍ୟ ବ୍ୟକ୍ତିତ୍ୱ ବିକାଶ କରିବା ହୁଏତ ସହଜ ଥିଲା । ସହର ଓ ଗ୍ରାମର ସେହି କ୍ଷୁଦ୍ର ଦୁନିଆରେ ଯେଉଁଠି ସାମାଜିକ ସଙ୍ଗଠନ ଓ ଆଚରଣର ସିଦ୍ଧାନ୍ତ ନିର୍ଦ୍ଦିଷ୍ଟ ଥିଲା, ବ୍ୟଷ୍ଟି ଓ ସମଷ୍ଟି ବାହ୍ୟ ଝଡ଼ଝଞ୍ଜାରୁ ସଂରକ୍ଷିତ ଭାବରେ, ସେମାନଙ୍କର ସ୍ୱୟଂସମ୍ପୂର୍ଣ୍ଣ ଜୀବନଯାପନ କରୁଥିଲେ । ଆଜି ବ୍ୟକ୍ତିର କ୍ଷେତ୍ର ବି ବିଶ୍ୱବ୍ୟାପକ ହୋଇ ଉଠିଛି ଏବଂ ସାମାଜିକ ସଙ୍ଗଠନର ବିଭିନ୍ନ ଧାରଣା ଭିତରେ ପାରସ୍ପରିକ ସଙ୍ଘର୍ଷ ଚାଲିଛି ଓ ସେ ସବୁ ପଛରେ ରହିଛି ଜୀବନର ବିଭିନ୍ନ ଦର୍ଶନ । ପ୍ରବଳ ଏକ ବାତ୍ୟା କେଉଁଠି ଜାଗ୍ରତ ହୋଇ ଗୋଟାଏ ସ୍ଥାନରେ ତୋଫାନ ସୃଷ୍ଟି କରେ ଓ ଅନ୍ୟ ସ୍ଥାନରେ ସୃଷ୍ଟି ହୁଏ ପ୍ରତି-ତୋଫାନ । ଅତଏବ, ବ୍ୟକ୍ତି ଯଦି ଐକ୍ୟ ହାସଲ କରିବ ତାହାହେଲେ ସମଗ୍ର ବିଶ୍ୱରେ ଶାନ୍ତିପୂର୍ଣ୍ଣ ତଥା ବନ୍ଧୁତ୍ୱପୂର୍ଣ୍ଣ ଏକ ସାମାଜିକ ସ୍ଥିତି ତାର ଅବଲମ୍ବନ ହେବା ଆବଶ୍ୟକ । ଭାରତରେ, ଅନ୍ୟ ଯେ କେଉଁ ସ୍ଥାନ ଅପେକ୍ଷା ଅଧିକ ଭାବରେ, ସାମାଜିକ ସଙ୍ଗଠନର ପୁରାତନ ଧାରଣା ଓ ତାର ପଛର ଜୀବନ ଦର୍ଶନ ଆଜି ସୁଦ୍ଧା କେତେ ପର୍ଯ୍ୟନ୍ତ ଅନୁସୃତ ହୋଇ ଆସୁଛି । ଏହା ସମ୍ଭବ ହୋଇ ନଥାନ୍ତା ଯଦି ସମାଜକୁ ସ୍ଥାୟିତ୍ୱ ଦେବାପାଇଁ ଓ ଜୀବନର ବିବିଧ ଅବସ୍ଥା ପ୍ରତି ଅନୁକୂଳ ହେବା ପାଇଁ ଉଭୟର କିଛି ସଦ୍‌ଗୁଣ ନଥାନ୍ତା ଏବଂ ଉଭୟର ଅସଦ୍‌ଗୁଣ ଯଦି ସେହି ସଦ୍‌ଗୁଣକୁ ପରାଜିତ କରି ନଥାନ୍ତା ତାହାହେଲେ ଉଭୟେ ପରିଶେଷରେ ବିଫଳ ହୋଇ ନଥାନ୍ତେ ଏବଂ ଜୀବନରୁ ବିତାଡ଼ିତ ହୋଇ ଗୋଟାଏ ବୋଝ ଅବା ପ୍ରତିବନ୍ଧକରେ ପରିଣତ ହୋଇ ନଥାନ୍ତେ । ସେ ଯାହାହେଉ, ଆଜି ଉଭୟକୁ ଆଉ ବିଚ୍ଛିନ୍ନ ଭାବରେ ବିବେଚନା କରାଯାଇ ନପାରେ; ଉଭୟକୁ ସେହି ବିଶ୍ୱ ପ୍ରକରଣରୁ ଦେଖିବାକୁ ହେବ ଏବଂ ସେଥି ସଙ୍ଗେ ଉଭୟର ସଙ୍ଗତି ବିଧାନ କରିବାକୁ ହେବ ।

ହାଭେଲ୍ କହନ୍ତି, "ଭାରତରେ ଧର୍ମ ଗୋଟାଏ ମତାନ୍ଧତା ନୁହେଁ; କିନ୍ତୁ ଜୀବନର ବିଭିନ୍ନ ଅବସ୍ଥାରେ ବିଭିନ୍ନ ସ୍ତରର ଆଧ୍ୟାତ୍ମିକ ବିକାଶ ସଙ୍ଗେ ସମ୍ପର୍କିତ ମାନବିକ ଆଚରଣରେ ଗୋଟାଏ କାର୍ଯ୍ୟକାରୀ ପ୍ରକଳ୍ପ ମାତ୍ର ।" ଜୀବନରୁ ବିଚ୍ଛିନ୍ନ କୌଣସି ମତାନ୍ଧତା ଉପରେ ବିଶ୍ୱାସ ଜାରି ରହିପାରେ; କିନ୍ତୁ ମାନବିକ ଆଚରଣର ଗୋଟାଏ କାର୍ଯ୍ୟକାରୀ ପ୍ରକଳ୍ପ ଜୀବନ ପକ୍ଷରେ ଉପଯୋଗୀ ଓ କ୍ରିୟାଶୀଳ ହେବାକୁ ହେବ । ଅନ୍ୟଥା ଏହା ଜୀବନର

ଗତିରୋଧ କରିଥାଏ । ଏପରି ଏକ ପ୍ରକଳ୍ପ ସୃଷ୍ଟି ହେବାର ପ୍ରଧାନ କାରଣ ହେଉଛି ତାର କାର୍ଯ୍ୟକାରିତା, ଜୀବନ ପକ୍ଷରେ ତାର ଉପଯୋଗିତା ଓ ପରିବର୍ତ୍ତିତ ଅବସ୍ଥା ସଙ୍ଗେ ମେଳ ରଖି ଚଳିବା ପାଇଁ ତାର ସାମର୍ଥ୍ୟ । ଯେ ପର୍ଯ୍ୟନ୍ତ ତାହା ଏ ସବୁ କରିପାରେ, ତାର ଉଦ୍ଦେଶ୍ୟ ସାଧନ କରେ ଓ ତାର ନିର୍ଦ୍ଦିଷ୍ଟ କାର୍ଯ୍ୟ ପୂରଣ କରେ । ଜୀବନର ମୋଡ଼ରୁ ତାହା ଯେବେ ସ୍ଥିରୀକୃତ ଆକାରରେ ଛାଡ଼ି ପଡ଼େ, ସାମାଜିକ ଆବଶ୍ୟକତା ସଙ୍ଗେ ତାର ସଂଯୋଗ ତୁଟିଯାଏ ଏବଂ ଜୀବନ ଓ ତାର ଭିତରେ ଦୂରତା ବୃଦ୍ଧି ପାଏ; ସେହି ପ୍ରକଳ୍ପ ତାର ସମସ୍ତ ଜୀବନସଞ୍ଚାରୀ ଶକ୍ତି ଓ ତାତ୍ପର୍ଯ୍ୟ ହରାଇ ବସେ ।

ଆଧିଭୌତିକ ସିଦ୍ଧାନ୍ତ ଓ ଅତିକଳ୍ପନା ଚିର ପରିବର୍ତ୍ତନଶୀଳ ଜୀବନର ଉପାଦାନ ନେଇ ଚର୍ଚ୍ଚା କରେନି; କରେ ଜୀବନ ପଛର ସ୍ଥାୟୀ ବାସ୍ତବତା ଅର୍ଥାତ୍ ପରମସତ୍ତା ନେଇ; ଅବଶ୍ୟ ସେପରି କିଛିର ଅସ୍ତିତ୍ୱ ଯଦି ଥାଏ । ଅତଏବ, ତାର ଗୋଟାଏ କିଛି ଚିରନ୍ତନ ଅଛି ଯାହା ବାହାରିଙ୍ଗ ସମସ୍ତ କିଛି ପରିବର୍ତ୍ତନ ଦ୍ୱାରା ପ୍ରଭାବିତ ହୁଏ ନାହିଁ; କିନ୍ତୁ ଅବଶ୍ୟମ୍ଭାବୀ ଭାବରେ ତାହା ତାକୁ ବଢ଼ାଇଥିବା ପରିବେଷ୍ଟନୀର ସୃଷ୍ଟି ଏବଂ ଯେଉଁ ମନରେ ତାର ଗର୍ଭାଧାନ ଘଟିଲି ସେହି ମନର ବିକାଶୋନ୍ମୁଖୀ ଅବସ୍ଥା । ତାର ପ୍ରଭାବ ଯଦି ପ୍ରସାରିତ ହୁଏ ସେହି ଦ୍ୱାରା ଗୋଟାଏ ଜାତିର ସର୍ବସାଧାରଣ ଜୀବନ ଦର୍ଶନ ଉପରେ ପ୍ରଭାବ ପଡ଼େ । ଭାରତରେ ଦର୍ଶନ, ଉଚ୍ଚ ସ୍ତରରେ ଯଦିଓ କେତେକ ନିର୍ବାଚିତ ବ୍ୟକ୍ତିଙ୍କ ଭିତରେ ଆବଦ୍ଧ, ଅନ୍ୟ ଯେକୌଣସି ସ୍ଥାନ ଅପେକ୍ଷା ଅଧିକତର ବ୍ୟାପକ ଏବଂ ଜାତୀୟ ଦୃଷ୍ଟିଭଙ୍ଗୀ ଗଢ଼ିବାରେ ଓ ଗୋଟାଏ ବିଶିଷ୍ଟାଦର୍ଶୀ ମନୋଭାବ ବିକାଶ କରିବାରେ ବିପୁଳ ପ୍ରଭାବ ପକାଇଥିଲା ।

ଏହି ପ୍ରକ୍ରିୟାରେ ବୌଦ୍ଧଦର୍ଶନ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ଏବଂ ମଧ୍ୟଯୁଗରେ, ନୂତନ କେତେ ସମ୍ପ୍ରଦାୟର ଆବର୍ତ୍ତନ ଜରିଆରେ, ପ୍ରତ୍ୟକ୍ଷ ଓ ପରୋକ୍ଷଭାବରେ ଜାତୀୟ ଦୃଷ୍ଟିଭଙ୍ଗୀ ଉପରେ ଇସଲାମ୍ ତାର ଛାପ ପକାଇଲା । ଏ ସବୁ ସଂପ୍ରଦାୟ ହିନ୍ଦୁ ଧର୍ମ ଓ ଇସ୍‌ଲାମୀୟ ସାମାଜିକ ତଥା ଧର୍ମମୂଳକ ଗଢ଼ଣ ମଧ୍ୟରେ ରହିଥିବା ବ୍ୟବଧାନ ଉପରେ ସେତୁ ନିର୍ମାଣର ପ୍ରୟାସ କରିଥିଲେ; କିନ୍ତୁ ମୁଖ୍ୟତଃ ଭାରତୀୟ ଷଡ଼ଦର୍ଶନର ପ୍ରଭାବ ହିଁ ଆଧିପତ୍ୟ ବିସ୍ତାର କରିଥିଲା । ଏଥି ଭିତରୁ କେତେକ ଦର୍ଶନ ବୌଦ୍ଧ ବିଗ୍ଭର ଦ୍ୱାରା ପ୍ରବଳ ଭାବରେ ପ୍ରଭାବିତ ହୋଇଥିଲେ । ଏ ସମସ୍ତ ଦର୍ଶନ ନୈଷ୍ଠିକ ବିବେଚିତ ହେଲେ ସୁଦ୍ଧା, କେତେକ ସାଧାରଣ ଧାରଣା ସବୁଥିରେ ସମାନ ଥିଲେ ସୁଦ୍ଧା, ଆଭିମୁଖ୍ୟ ଓ ନିର୍ଦ୍ଧାରଣରେ ସେମାନେ ବିଭିନ୍ନ । ସେଥିରେ ବହୁଦେବବାଦ, ସାକାର ଈଶ୍ୱରବାଦ, ବିଶୁଦ୍ଧ ଅଦ୍ୱୈତବାଦ ଅଛି ଏବଂ ଗୋଟାଏ ଶାଖାର ମତରେ ଈଶ୍ୱରଙ୍କୁ ସଂପୂର୍ଣ୍ଣ ଅବଜ୍ଞା କରି ବିବର୍ତ୍ତନର ଗୋଟାଏ ତତ୍ତ୍ୱ ଉପରେ ଭିତ୍ତି କରାଯାଇଛି । ସେଥିଲେ ଆଦର୍ଶବାଦ ଅଛି ଓ ବାସ୍ତବବାଦ ବି ଅଛି । ଏହି ସବୁ ଦର୍ଶନର ଏକତା ଓ ବିବିଧତାରେ ଆମକୁ ଜଟିଳ ତଥା ସାର୍ବଗ୍ରାହୀ ଭାରତୀୟ ମାନସର ଅନେକ ତଳ ଦେଖିବାକୁ ମିଳେ । ମେକ୍‌ସମୁଲାର ଏହି ଉଭୟ ବିଷୟ ପ୍ରତି ଦୃଷ୍ଟି ଆକର୍ଷଣ କରିଚନ୍ତି : "...ମୋର ଉପରେ ଏହି ସତ୍ୟର ଅଧିକାଧିକ ପ୍ରଭାବ ପଡ଼ିଛି ଯେ ଏହି ଷଡ଼ଦର୍ଶନର ବିବିଧତା ପଛରେ ଏପରି କିଛି ସାଧାରଣ ଭଣ୍ଡାର ରହିଛି ଯାହାକୁ ଆମେ

ଜାତୀୟ ତଥା ଲୋକ-ଦର୍ଶନ ନାମରେ ଅଭିହିତ କରାଯାଉଥିବା···ଯେଉଁଥିରୁ ପ୍ରତ୍ୟେକ ଶ୍ରେଣୀ ନିଜର ଉଦ୍ଦେଶ୍ୟ ନିମନ୍ତେ ବସ୍ତୁର ଆହରଣ କରିବାର ସୁଯୋଗ ପାଉଥିଲେ ।"

ଏ ସବୁ ଦର୍ଶନରେ ଗୋଟିଏ ସାର୍ବଜନୀନ ଅନୁମାନ ବିଦ୍ୟମାନ : ଏହି ବ୍ରହ୍ମାଣ୍ଡରେ ଶୃଙ୍ଖଳା ଅଛି ଓ ନିୟମ ଅନୁସାରେ ତାହା କାର୍ଯ୍ୟକାରୀ ହେଉଛି ଏବଂ ସେଥିରେ ଗୋଟିଏ ମହତ୍ତ୍ୱ ଛନ୍ଦ ଅଛି । ଏପରି କିଛି ଅନୁମାନ ଆବଶ୍ୟକ ହୋଇପଡ଼େ; କାରଣ ଅନ୍ୟଥା ସେପରି କିଛି ପଦ୍ଧତି ହୁଏତ ନାହିଁ ଯଦ୍ଦ୍ୱାରା ତାର ବିହିତ ବ୍ୟାଖ୍ୟା ଦିଆଯାଇ ପାରିବ । ଯଦିଓ ହେତୁବାଦ ଓ କାର୍ଯ୍ୟ-କାରଣର ସିଦ୍ଧାନ୍ତ ଅବ୍ୟାହତ ରହେ, ତଥାପି ବ୍ୟକ୍ତିର ନିଜ ଭାଗ୍ୟ ନିର୍ମାଣ କରିବାପାଇଁ କେତେ ମାତ୍ରାରେ ସ୍ୱତନ୍ତ୍ରତା ରହିଛି । ଏଥିରେ ପୁନର୍ଜନ୍ମ ଉପରେ ବିଶ୍ୱାସ ସ୍ଥାପନ କରାଯାଇଛି ଏବଂ ନିଃସ୍ୱାର୍ଥ ପ୍ରେମ ଓ ନିଷ୍କାମ କର୍ମ ଉପରେ ଜୋର୍ ଦିଆଯାଇଛି । ବିବେଚନା ଓ ଯୁକ୍ତି ଉପରେ ଆସ୍ଥା ସ୍ଥାପନ କରାଯାଇଛି ଏବଂ ଯୁକ୍ତି ବଢ଼ାଇବାରେ ତାହା ଫଳପ୍ରଦ ଭାବରେ ବ୍ୟବହୃତ ହୋଇଛି; କିନ୍ତୁ ଏକଥା ସ୍ୱୀକାର କରାଯାଇଛି ଯେ ଅନ୍ତଃପ୍ରେରଣା ବହୁଧା ଏହି ଉଭୟ ଅପେକ୍ଷା ମହତ୍ତର । ଗୋଟିଏ ଯୁକ୍ତିସଙ୍ଗତ ଭିତ୍ତି ଉପରେ ସାଧାରଣ ବିବେଚନା ଚାଲେ, ଯେ ପର୍ଯ୍ୟନ୍ତ ବୁଦ୍ଧିର ପ୍ରୟୋଗ ସେହି ସବୁ ପରସ୍ପର ବହିର୍ଭୂତ ବିଷୟମାନଙ୍କ ଉପରେ କରାଯାଇ ପାରେ । ଅଧ୍ୟାପକ କୀଥ୍ ସୂଚିତ କରିଛନ୍ତି ଯେ "ଏହିସବୁ ଦର୍ଶନ ପ୍ରକୃତ ପକ୍ଷେ ନୈଷ୍ଠିକ ଓ ବେଦର ପ୍ରାଧିକାର ସ୍ୱୀକାର କରନ୍ତି; କିନ୍ତୁ ଅସ୍ତିତ୍ୱ ସମ୍ବନ୍ଧୀୟ ସମସ୍ୟାଗୁଡ଼ିକୁ ମାନବିକ ଉପାୟରେ ବୁଝାଇବାର ପ୍ରୟାସ ସେଥିରେ କରାଯାଇଛି ଏବଂ ଦେଖାଯାଏ ଯେ ଧର୍ମଗ୍ରନ୍ଥ କେବଳ ସେହି ପରିଣତିଗୁଡ଼ିକର ସମର୍ଥନ ନିମନ୍ତେ ବ୍ୟବହୃତ ହୋଇଛି ଯେଉଁଥିରେ ସେମାନେ ସ୍ୱତନ୍ତ୍ର ଭାବରେ ଉପନୀତ ହୋଇଛନ୍ତି ଓ ପ୍ରାୟଶଃ ତାର ସିଦ୍ଧାନ୍ତ ପ୍ରୟୋଗରେ ସନ୍ଦିଗ୍ଧ ହୋଇଛନ୍ତି ।"

## ୧୪. ଷଡ଼୍‌ଦର୍ଶନ

ଭାରତୀୟ ଦର୍ଶନର ବିଭିନ୍ନ ଶାଖାର ପ୍ରାରମ୍ଭିକ କାଳ ଜାଣିବାକୁ ହେଲେ ଆମକୁ ପ୍ରାକ୍‌ବୌଦ୍ଧ ଯୁଗକୁ ଯିବାକୁ ପଡ଼େ । ବ୍ରାହ୍ମଣ୍ୟ ଓ ବୌଦ୍ଧ ଉଭୟର ଦର୍ଶନପଦ୍ଧତି ଏକା ସମୟରେ ପାର୍ଶ୍ୱବର୍ତ୍ତୀ ଭାବରେ, ପରସ୍ପରକୁ ସମାଲୋଚନା କରି ଓ ପରସ୍ପରଠାରୁ ବହୁଧା ଗ୍ରହଣ କରି, କ୍ରମଶଃ ବିକାଶ ଲାଭ କରେ । ଖ୍ରୀଷ୍ଟୀୟ ଯୁଗର ଆରମ୍ଭ ପୂର୍ବରୁ ବ୍ରାହ୍ମଣ୍ୟ ଷଡ଼ଦର୍ଶନ ନାନା ଅବସ୍ଥାନ୍ତର ଭିତର ଦେଇ ରୂପପରିଗ୍ରହ କରିଥିଲା । ଏଥିରୁ ପ୍ରତ୍ୟେକର ଗୋଟିଏ ସ୍ୱତନ୍ତ୍ର ଆଭିମୁଖ୍ୟ, ସ୍ୱତନ୍ତ୍ର ଯୁକ୍ତି-ପ୍ରଣାଳୀ ରହିଥିଲେ ସୁଦ୍ଧା, ପ୍ରତ୍ୟେକଟି ପରସ୍ପରଠାରୁ ବିଚ୍ଛିନ୍ନ ହେବା ପରିବର୍ତ୍ତେ ଗୋଟିଏ କିଛି ବୃହତ୍ତର ଯୋଜନାର ଅଂଶ ବିଶେଷ ଭାବରେ ପ୍ରତୀତ ହୁଏ ।

ଏହି ଷଡ଼୍‌ଦର୍ଶନ ହେଉଛି : (୧) ନ୍ୟାୟ (୨) ବୈଶେଷିକ (୩) ସାଂଖ୍ୟ (୪) ଯୋଗ (୫) ମୀମାଂସା (୬) ବେଦାନ୍ତ ।

ନ୍ୟାୟ ଶାଖା ବିଶ୍ଳେଷଣାତ୍ମକ ଓ ଯୁକ୍ତିମୂଳକ । ବସ୍ତୁତଃ ନ୍ୟାୟ ଅର୍ଥ ହେଉଛି ଯୁକ୍ତିବିଦ୍ୟା ଅବା ସଙ୍ଗତହେତୁର ବିଜ୍ଞାନ । ଅନେକ ଭାବରେ ଆରିଷ୍ଟୋଟଲଙ୍କ ତର୍କଶୈଳୀ ସଙ୍ଗେ ଏହାର ସାଦୃଶ୍ୟ ଯଦିଓ ଲକ୍ଷିତ ହୁଏ, ଉଭୟ ମଧ୍ୟରେ ମୌଳିକ ପାର୍ଥକ୍ୟ ବି ରହିଛି । ନ୍ୟାୟ ତର୍କ-ବିଦ୍ୟାର ମୂଳସୂତ୍ରଗୁଡ଼ିକ ଅନ୍ୟ ଦର୍ଶନରେ ଗୃହୀତ ହୋଇଛି ଏବଂ ଗୋଟାଏ ପ୍ରକାର ମାନସିକ ସଂଯମ ଓ ଶୃଙ୍ଖଳା ଭାବରେ, ସମଗ୍ର ପ୍ରାଚୀନକାଳ ଓ ମଧ୍ୟଯୁଗରେ, ଏପରିକି ଆଜି ବି ଭାରତର ବିଭିନ୍ନ ବିଦ୍ୟାୟତନ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ନ୍ୟାୟ ଶିକ୍ଷା ଦିଆଯାଏ । ଭାରତର ଆଧୁନିକ ଶିକ୍ଷା ପଦ୍ଧତିରୁ ଏହା ବାଦ୍ ଦିଆଯାଇଥିଲେ ମଧ୍ୟ ପୁରାତନ ଢଙ୍ଗରେ ସଂସ୍କୃତ ଯେଉଁଠି ପଢ଼ାଯାଏ ନ୍ୟାୟ ଏବେ ବି ସେଠି ପାଠ୍ୟକ୍ରମର ଗୋଟାଏ ଅତ୍ୟାବଶ୍ୟକୀୟ ଅଂଶ ହୋଇ ରହେ । ଦର୍ଶନ ଅଧ୍ୟୟନର ପ୍ରସ୍ତୁତି ପକ୍ଷରେ ଏହା ଅପରିହାର୍ଯ୍ୟ ବିବେଚିତ ହୋଇଥାଏ କେବଳ ନୁହେଁ; ବରଂ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ନିମନ୍ତେ ଏହା ଏକ ଆବଶ୍ୟକୀୟ ମାନସିକ ତାଲିମ ମନେ କରାଯାଏ । ପ୍ରାଚୀନ ଭାରତୀୟ ଶିକ୍ଷାର ଯୋଜନାରେ ନ୍ୟାୟର ସେତିକି ଅନ୍ତତଃ ଗୁରୁତ୍ୱପୂର୍ଣ୍ଣ ଆସନ ଥିଲା, ୟୁରୋପୀୟ ଶିକ୍ଷାରେ ଯେପରି ଥିଲା ଆରିଷ୍ଟୋଟଲଙ୍କ ଯୁକ୍ତିବିଦ୍ୟାର ସ୍ଥାନ ।

ଆଧୁନିକ ବିଜ୍ଞାନର ବାସ୍ତବ ଅନୁସନ୍ଧାନ ପ୍ରଣାଳୀଠାରୁ ନ୍ୟାୟର ପ୍ରଣାଳୀ ସଂପୂର୍ଣ୍ଣ ଭିନ୍ନ ଧରଣର ଅବଶ୍ୟ ଥିଲା । ତଥାପି ତାର ନିଜସ୍ୱ ଧାରାରେ ଏହା ପରୀକ୍ଷାମୂଳକ ଥିଲା ଏବଂ କେବଳ ଗୋଟାଏ ବିଶ୍ୱାସ ଉପରେ ନିର୍ଭର ନକରି ସମାଲୋଚନା ଦୃଷ୍ଟିରେ ପ୍ରତ୍ୟେକ ଜ୍ଞାତବସ୍ତୁ ପରୀକ୍ଷା କରିବାର ଉଦ୍ୟମ କରି ଯୁକ୍ତିସଙ୍ଗତ ପ୍ରମାଣର ପ୍ରଣାଳୀଦ୍ୱାରା ଅଗ୍ରଗତି କରିଥିଲା । ଏ ସବୁ ପଛରେ କିଛି ବିଶ୍ୱାସ ଓ ଅନୁମାନ ଅବଶ୍ୟ ଥିଲା, ଯାହାକୁ ଯୁକ୍ତିବିଦ୍ୟାର ପ୍ରଣାଳୀରେ ପ୍ରମାଣିତ କରାଯାଇ ନ ପାରେ । କେତେକ ପ୍ରକଳ୍ପ ଗ୍ରହଣକରି ସେଥିର ଭିତ୍ତି ଉପରେ ଏହି ଦର୍ଶନର ପ୍ରଣାଳୀ ନିର୍ମିତ ହୋଇଥିଲା । ଏଥିର ଅନୁମାନ ଅନୁସାରେ ଜୀବନ ଓ ପ୍ରକୃତି ଭିତରେ ଏକତ୍ୱ ଓ ଛନ୍ଦ ରହିଛି । ସାକାର ଈଶ୍ୱରସତ୍ତାରେ ଯେପରି ବିଶ୍ୱାସ ରହିଛି, ସେହିପରି ବ୍ୟକ୍ତି ଆତ୍ମା ଓ ଗୋଟାଏ ପାରମାଣିକ ବ୍ରହ୍ମାଣ୍ଡ ଉପରେ ମଧ୍ୟ ବିଶ୍ୱାସ ସ୍ଥାପନ କରାଯାଇଛି । ଏଥିରେ ପ୍ରମାଣ କରାଯାଇଛି ଯେ ବ୍ୟକ୍ତି ତାର ଦେହ ଅବା ଆତ୍ମା କେବଳ ନୁହେଁ; ବରଂ ଉଭୟର ସମ୍ମିଳିତ କିଛି ବସ୍ତୁ । ବାସ୍ତବତାକୁ ପ୍ରକୃତି ଓ ଏକାଧିକ ଆତ୍ମାର ଗୋଟାଏ ଜଟିଳ ମିଶ୍ରଣ ବୋଲି ମନେ କରାଯାଇଛି ।

ନ୍ୟାୟ ସଙ୍ଗେ ଅନେକ ଦିଗରେ ବୈଶେଷିକ ଦର୍ଶନର ସାଦୃଶ୍ୟ ରହିଛି । ଏହା ଜୀବ ଓ ବସ୍ତୁର ସ୍ୱତନ୍ତ୍ରତା ଉପରେ ଜୋର ଦିଏ ଏବଂ ବ୍ରହ୍ମାଣ୍ଡର ପରମାଣୁତତ୍ତ୍ୱ ଅର୍ଥାତ୍ ସମଗ୍ର ସୃଷ୍ଟି ପରମାଣୁରେ ନିର୍ମିତ ବୋଲି ପ୍ରମାଣ କରିବାକୁ ଯାଏ । ଧର୍ମ ଅର୍ଥାତ୍ ନୈତିକ ବିଧିବିଧାନ ଦ୍ୱାରା ବ୍ରହ୍ମାଣ୍ଡ ପରିଚାଳିତ ବୋଲି ଏଥିରେ କୁହାଯାଇଛି ଏବଂ ଏହାକୁ କେନ୍ଦ୍ର କରି ଏହି ଦର୍ଶନ ଗଢ଼ି ଉଠିଛି । ଗୋଟାଏ ପରମସତ୍ତାର ପ୍ରକଳ୍ପ ସ୍ପଷ୍ଟଭାବରେ ସ୍ୱୀକୃତ ହୋଇନାହିଁ । ନ୍ୟାୟ ଓ ବୈଶେଷିକ ଏବଂ ଆଦ୍ୟ ବୌଦ୍ଧଦର୍ଶନ ଭିତରେ ବହୁ ସଂଯୋଗ ସ୍ଥଳ ରହିଛି । ସାମଗ୍ରିକ ଭାବରେ ଏ ସବୁର ଆଭିମୁଖ୍ୟ ହେଉଛି ଯଥାର୍ଥବାଦମୂଳକ ।

ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀରେ କପିଳମୁନି ବହୁ ଆଦ୍ୟ ତଥା ପ୍ରାକ୍‌ବୌଦ୍ଧ ଚିନ୍ତାର ପ୍ରବାହ ଭିତରୁ ଯେଉଁ ଦର୍ଶନ ରୂପ ଦେଇଥିଲେ, ତାହାର ନାମ ହେଉଛି ସାଂଖ୍ୟ । ରିଚାର୍ଡ଼ ଗାର୍ବଙ୍କ ଅନୁସାରେ : "କପିଳଙ୍କ ସିଦ୍ଧାନ୍ତରେ, ବିଶ୍ୱ ଇତିହାସରେ ପ୍ରଥମଥର ପାଇଁ, ମଣିଷ ମନର ସମ୍ପୂର୍ଣ୍ଣ ସ୍ୱତନ୍ତ୍ରତା ଓ ମୁକ୍ତାବସ୍ଥା ଏବଂ ନିଜ ଶକ୍ତି ଉପରେ ପୂର୍ଣ୍ଣ ନିର୍ଭରତା ପ୍ରକଟିତ ହୋଇଛି ।"

ବୌଦ୍ଧଧର୍ମର ଅଭ୍ୟୁଦୟ ପରେ ସାଂଖ୍ୟ ଗୋଟାଏ ସୁସଂଗଠିତ ଓ ସୁବ୍ୟବସ୍ଥିତ ଦର୍ଶନ ଶାଖାରେ ପରିଣତ ହେଲା । ଏଥିର ଚିନ୍ତା ଅବିମିଶ୍ର ଭାବରେ ମଣିଷ ମନର ଦାର୍ଶନିକ ତଥା ଅଧିଭୌତିକ ଅବଧାରଣାରୁ ଉତ୍ପନ୍ନ ଏବଂ ଏଥିରେ ବସ୍ତୁଜଗତର ବିବିଧ ପଦାର୍ଥର ସମୀକ୍ଷା ନାହିଁ । ପ୍ରକୃତ ପକ୍ଷେ, ସେସବୁ ବିଷୟ ଯାହା ଧୃତର ବାହାରେ, ତାର ସମୀକ୍ଷା ସମ୍ଭବ ନୁହେଁ । ବୌଦ୍ଧଧର୍ମ ଭଳି ସାଂଖ୍ୟ ଦର୍ଶନ ଜିଜ୍ଞାସାର ଯୁକ୍ତିସଙ୍ଗତ ଧାରାରେ ଗଢ଼ିଉଠିଲା ଏବଂ କୌଣସି ପ୍ରାମାଣିକ ଅବଲମ୍ବନ ନଥିଲେ ସୁଦ୍ଧା ନିଜର ଯୁକ୍ତିଯୁକ୍ତ ତର୍କର ପରିସର ଭିତରେ ବୌଦ୍ଧଧର୍ମ ପ୍ରଚାରିତ ଆହ୍ୱାନର ସମ୍ମୁଖୀନ ହେଲା । ଏହି ବୁଦ୍ଧିବାଦୀ ଆଭିମୁଖ୍ୟ ଯୋଗୁଁ ଈଶ୍ୱର-ଚିନ୍ତାର ଅଲଗା ରହିବାକୁ ପଡ଼ିଲା । ଅତଏବ ସାଂଖ୍ୟ ଦର୍ଶନରେ ସାକାର ଅବା ନିରାକାର ଈଶ୍ୱର କିମ୍ବା ଏକେଶ୍ୱରବାଦ ଅବା ଅଦ୍ୱୈତବାଦ ନାହିଁ । ଏହାର ଆଭିମୁଖ୍ୟ ଥିଲା ନିରୀଶ୍ୱରବାଦମୂଳକ ଏବଂ ଗୋଟାଏ ଲୋକାତୀତ ଧର୍ମର ଭିତ୍ତିକୁ ଏହା ପ୍ରବଳ ଭାବରେ ଆଘାତ କଲା । ଏଥିରେ ବ୍ରହ୍ମାଣ୍ଡ ପରମେଶ୍ୱରଙ୍କଦ୍ୱାରା ସୃଷ୍ଟି ବୋଲି ସେପରି କିଛି ନାହିଁ; ବରଂ ଗୋଟାଏ ନିତ୍ୟ-ବିବର୍ତ୍ତନ ଏବଂ ପ୍ରକୃତି ଓ ପୁରୁଷର ପାରସ୍ପରିକ କ୍ରିୟାର ଏହା ପରିଣତି ବୋଲି କୁହାଯାଇଛି । ଆଉ ପ୍ରକୃତି ସ୍ୱୟଂ ଶକ୍ତିରୂପା । ଏହି ବିବର୍ତ୍ତନ ଗୋଟାଏ ନିରବଚ୍ଛିନ୍ନ ପ୍ରକ୍ରିୟା ।

ସାଂଖ୍ୟକୁ 'ଦ୍ୱୈତବାଦୀ' ଦର୍ଶନ ମଧ୍ୟ କୁହାଯାଏ; କାରଣ ଏହା ଦୁଇଗୋଟି ଆଦି-କାରଣ ଉପରେ ଆଧାରିତ : ଗୋଟାଏ ହେଉଛି 'ପ୍ରକୃତି' ଯାହା ଚିରକ୍ରିୟାଶୀଳ ଓ ପରିବର୍ତ୍ତନଶୀଳ ସ୍ୱଭାବର ଗୋଟାଏ ଶକ୍ତି । ଅନ୍ୟଟି ହେଉଛି ପୁରୁଷ ଯାହା ଚେତନା ଓ ଯାହାର ପରିବର୍ତ୍ତନ ନାହିଁ । ଚେତନ ରୂପ ପୁରୁଷ ଅବା ଆତ୍ମାର ସଂଖ୍ୟା ଅଗଣିତ । ପୁରୁଷ ସ୍ୱୟଂ ନିଷ୍କ୍ରିୟ; କିନ୍ତୁ ତାର ପ୍ରଭାବରେ ପ୍ରକୃତି ବିବର୍ତ୍ତିତ ହୁଏ ଓ ଗୋଟାଏ ନିରନ୍ତର ପୂର୍ଣ୍ଣତାପ୍ରୟାସୀ ଦୁନିଆର ରୂପ ପରିଗ୍ରହ କରେ । କାର୍ଯ୍ୟକାରଣ ସମ୍ବନ୍ଧ ଏଥିରେ ସ୍ୱୀକୃତ ହୋଇଛି; କିନ୍ତୁ କୁହାଯାଇଛି ଯେ କାର୍ଯ୍ୟ ପ୍ରକୃତରେ କାରଣ ଭିତରେ ନିହିତ ଅଛି । ଏପରିଭାବରେ କାର୍ଯ୍ୟ ଓ କାରଣ ଏକ ହିଁ ବସ୍ତୁର ସ୍ପଷ୍ଟ ଓ ଅସ୍ପଷ୍ଟ ଅବସ୍ଥା । ଆମର ବାସ୍ତବ ଦୃଷ୍ଟିକୋଣରୁ ଅବଶ୍ୟ କାର୍ଯ୍ୟ ଓ କାରଣ ଉଭୟ ଭିନ୍ନ ଓ ସ୍ୱତନ୍ତ୍ର; କିନ୍ତୁ ମୂଳତଃ ଉଭୟ ଭିତରେ ସାମ୍ୟ ରହିଛି ।

ଏ ଭାବରେ ତର୍କ ଚାଲେ ଓ ପ୍ରଦର୍ଶିତ କରେ କିପରି ଅବ୍ୟକ୍ତ ପ୍ରକୃତି ଅବା ଶକ୍ତି ଭିତରୁ ପୁରୁଷ ଅବା ଚୈତନ୍ୟର ପ୍ରଭାବରେ ଏବଂ ହେତୁବାଦର ସିଦ୍ଧାନ୍ତ ଅନୁସାରେ ଏତେ ଜଟିଳ ଓ ବିବିଧ ରୂପ ଧାରଣ କରେ ଓ ବରାବର ପରିବର୍ତ୍ତିତ ଓ ବିକଶିତ ହେଉଥାଏ । ବ୍ରହ୍ମାଣ୍ଡର ନିମ୍ନତମ ଓ ଉଚ୍ଚତମ ପ୍ରାଣୀ ଭିତରେ ଗୋଟାଏ ଅଖଣ୍ଡତା ଓ ଏକତା ରହିଛି । ଏହି ସମଗ୍ର

ଧାରଣା ଆଧିଭୌତିକ ଏବଂ କେତେକ ପ୍ରକଳ୍ପ ଉପରେ ଭିତ୍ତି କରିଥିବା ଏହାର ବିବେଚନା ଦୀର୍ଘ, ଜଟିଳ ଓ ତର୍କ ଜଞ୍ଜାଳରେ ପୂର୍ଣ୍ଣ ।

ପତଞ୍ଜଳିଙ୍କ ଯୋଗଦର୍ଶନ ସାରତଃ ଶରୀର ଓ ମନର ସଂଯମ ନିମନ୍ତେ ଏକ ପଦ୍ଧତି ଏବଂ ଏଥିରୁ ମନସ୍ତାତ୍ତ୍ୱିକ ଓ ଆଧ୍ୟାତ୍ମିକ ଶିକ୍ଷା ମିଳେ । ପତଞ୍ଜଳି ଏହି ପୁରାତନ ଦର୍ଶନକୁ ଗୋଟାଏ ସଙ୍ଗଠିତ ରୂପ ଦେଲେ କେବଳ ନୁହେଁ, ପାଣିନିଙ୍କ ସଂସ୍କୃତ ବ୍ୟାକରଣର ଗୋଟାଏ ବିଖ୍ୟାତ ଟୀକା ମଧ୍ୟ ପ୍ରଣୟନ କରିଥିଲେ । ଏହି ଟୀକା ଯାହାକୁ 'ମହାଭାଷ୍ୟ' କୁହାଯାଏ, ପାଣିନିଙ୍କ ମୂଳ ବ୍ୟାକରଣ ଭଳି ଗୋଟାଏ ପ୍ରାମାଣିକ ଗ୍ରନ୍ଥ । ଲେନିନଗ୍ରାଡ୍‌ର ଅଧ୍ୟାପକ ଶେରବାସ୍କି ଲେଖିଚନ୍ତି, "ଭାରତର ଆଦର୍ଶ ବୈଜ୍ଞାନିକ କୃତି ହେଉଚି ପାଣିନିଙ୍କ ବ୍ୟାକରଣ ଓ ସେଥି ଉପରେ ଲିଖିତ ପତଞ୍ଜଳିଙ୍କ 'ମହାଭାଷ୍ୟ ।" (୧)

ୟୁରୋପ ଓ ଆମେରିକାରେ ଯୋଗ ଶବ୍ଦ ଆଜି ଖୁବ୍ ଭଲ ଭାବରେ ପ୍ରଚଳିତ । ଅବଶ୍ୟ ସେ ବିଷୟରେ ବୁଝିବା ଲୋକଙ୍କ ସଂଖ୍ୟା ଖୁବ୍ କମ୍ ଏବଂ ଏହାର ସମ୍ବନ୍ଧ କେତେକ ବିଚିତ୍ର କ୍ରିୟା ସଙ୍ଗେ ଜଡ଼ିତ କରାଯାଇଥାଏ । ବିଶେଷତଃ ବୁଦ୍ଧଙ୍କ ଭଳି ଆସନ କରି ନିଜର ନାଭି ଅବା ନାସାଗ୍ରକୁ ନିବିଷ୍ଟ ଭାବରେ ଚାହିଁବା ପାଇଁ କୁହାଯାଇଥାଏ । (୨) ପଶ୍ଚିମ ଜଗତରେ କେତେକ ଲୋକ ଶରୀର ସମ୍ପର୍କୀୟ କିଛି କୌଶଳ ଶିକ୍ଷାକରି ଯୋଗରେ ନିଜକୁ ଅଧିକାରୀ ମଣିଥାନ୍ତି ଏବଂ ସରଳବିଶ୍ୱାସୀ ତଥା ଗୂଢ଼ତତ୍ତ୍ୱ-ସନ୍ଧାନୀଙ୍କୁ ସେଥିପ୍ରତି ଆକୃଷ୍ଟ କରି ଠକୁଥାନ୍ତି । ସେହି ସବୁ ତୁଚ୍ଛ କୌଶଳ ଅପେକ୍ଷା ଏହି ପ୍ରଣାଳୀ ଅତିଶୟ ଉଚ୍ଚକୋଟୀର ଏବଂ ଏହା ସେହି ମନୋବୈଜ୍ଞାନିକ ଅବଧାରଣା ଉପରେ ପ୍ରତିଷ୍ଠିତ ଯାହା କହେ, ମନ ଉତ୍ତେଜନାଶୂନ୍ୟ ହେଲେ, ଚେତନାର କେତେକ ଉଚ୍ଚତର ଅବସ୍ଥାରେ ପହଞ୍ଚି ହେବ । ଏହି ପ୍ରଣାଳୀର ଉଦ୍ଦେଶ୍ୟ ହେଉଚି, ନିଜ ଚେଷ୍ଟାରେ ମଣିଷ ବସ୍ତୁ ସମ୍ପର୍କରେ ଜ୍ଞାତ ହେଉ; ବ୍ରହ୍ମାଣ୍ଡ ଅବା ବାସ୍ତବତା ସମ୍ପର୍କରେ କୌଣସି ପୂର୍ବକଳ୍ପିତ ଆଧିଭୌତିକ ତତ୍ତ୍ୱଦ୍ୱାରା ନୁହେଁ । ଅତଏବ, ଏହା ଏକ ପ୍ରୟୋଗାତ୍ମକ ପଦ୍ଧତି ଓ ସେ ପ୍ରକାର ପରୀକ୍ଷା ନିମନ୍ତେ ଯଥାବିହିତ ଉପାୟ ସୂଚିତ କରାଯାଇଚି । ଏଥି ହେତୁରୁ ଏହି ପ୍ରଣାଳୀକୁ ଯେକୌଣସି ଦର୍ଶନ, ତାର ତାତ୍ତ୍ୱିକ ଆଭିମୁଖ୍ୟ ଯାହା ହେଉନା କାହିଁକି, ଗ୍ରହଣ କରିପାରେ ଓ ତାହା ନିଜ କ୍ଷେତ୍ରରେ ପ୍ରୟୋଗ ମଧ୍ୟ କରିପାରେ । ଅତଏବ, ନିରୀଶ୍ୱରବାଦୀ ସାଂଖ୍ୟ ଦର୍ଶନର ଅନୁଗାମୀମାନେ ମଧ୍ୟ ଏହି ପ୍ରଣାଳୀ ବ୍ୟବହାର କରିପାରନ୍ତି । ବୌଦ୍ଧଧର୍ମ ଓ ଯୋଗ ଭିତରେ ବି ଆଂଶିକ ଭାବରେ

(୧) ଯୋଗଶାସ୍ତ୍ର ପ୍ରଣେତା ପତଞ୍ଜଳି ଓ ବୈୟାକରଣ ପତଞ୍ଜଳି ଏକ ବ୍ୟକ୍ତି ବୋଲି ଆହୁରି ସ୍ୱୀକୃତ ହୋଇନି । ବୈୟାକରଣଙ୍କ ଜୀବନକାଳ ନିଶ୍ଚିତ ଭାବରେ ଜଣାଯାଇଚି— ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ । କାହା କାହାର ମତ ଯେ ଯୋଗଶାସ୍ତ୍ର ପ୍ରଣେତା ବୈୟାକରଙ୍କଠାରୁ ଭିନ୍ନ ଏବଂ ସେ ଜନ୍ମିଥିଲେ ଆହୁରି ଦୁଇଶହ କି ତିନିଶହ ବର୍ଷ ପରେ ।

(୨) 'ଯୋଗ' ଶବ୍ଦର ଅର୍ଥ ହେଉଚି 'ମେଳ' । ସମ୍ଭବତଃ, ଇଂରେଜୀ ଶବ୍ଦ 'ୟୋକ୍' (ଅର୍ଥାତ୍, ଯୋଡ଼ିବା) ଭଳି ଏହା କୌଣସି ଏକା ଧାତୁରୁ ଉତ୍ପନ୍ନ ।

ସାଦୃଶ୍ୟ ରହିଛି; କିନ୍ତୁ ବୌଦ୍ଧଧର୍ମ, ଯୋଗଠାରୁ ଆଂଶିକ ଭାବରେ ଭିନ୍ନ, ନିଜର ସ୍ୱତନ୍ତ୍ର ଯୋଗାଭ୍ୟାସର ଧାରା ବିକାଶ କରିଥିଲା । ସୁତରାଂ ପତଞ୍ଜଳିଙ୍କ ଯୋଗ ପଦ୍ଧତିର ତାତ୍ତ୍ୱିକ ଅଂଶ ଆପେକ୍ଷିକ ଭାବରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ; ପ୍ରଧାନ ହେଉଛି ଏହାର ପ୍ରୟୋଗ ପ୍ରଣାଳୀ । ଈଶ୍ୱରବିଶ୍ୱାସ ଏହି ପଦ୍ଧତିର ଅତ୍ୟାବଶ୍ୟକୀୟ ଅଂଶ ନୁହେଁ; କିନ୍ତୁ ଏଥିରେ ପରାମର୍ଶ ଦିଆଯାଇଛି ଯେ ଇଷ୍ଟ-ବିଶ୍ୱାସ ଓ ତାଙ୍କ ପ୍ରତି ଅନୁରକ୍ତି ମନର ଏକାଗ୍ରତା ପ୍ରତି ସହାୟକ ହୁଏ ଏବଂ ଏପରିଭାବରେ ବ୍ୟାବହାରିକ ଉଦ୍ଦେଶ୍ୟ ସିଦ୍ଧ କରେ ।

ଯୋଗର ପରବର୍ତ୍ତୀ ଅବସ୍ଥାମାନଙ୍କରେ ଗୋଟାଏ ପ୍ରକାର ସହଜ ପରିଜ୍ଞାନ ଅବା ଅନ୍ତର୍ଦୃଷ୍ଟି ବ୍ୟକ୍ତିମାନଙ୍କ କଥିତ ପରମାନନ୍ଦ ଅବସ୍ଥା ପ୍ରାପ୍ତ ହେବାର କଳ୍ପନା କରାଯାଇଛି । ଏହା ସେପରି କୌଣସି ଉଚ୍ଚତର ମାନସିକ ସ୍ଥିତି ଯାହା ଅଧିକତର ଜ୍ଞାନପାଇଁ ଦ୍ୱାର ଉନ୍ମୁକ୍ତ କରେ କିମ୍ବା ଗୋଟାଏ ପ୍ରକାର ବ୍ୟାମୋହ କେବଳ ମୁଁ ଜାଣେନି । ଏଥିରୁ ପ୍ରଥମଟି ଯଦି ସମ୍ଭବ, ଦ୍ୱିତୀୟ ଅବସ୍ଥା ବି ପ୍ରାପ୍ତବ୍ୟ । ଏ କଥା ସମସ୍ତେ ଭଲଭାବରେ ଜାଣନ୍ତି ଯେ ଅନିୟମିତ ଯୋଗାଭ୍ୟାସ କେବେକେବେ ଶିକ୍ଷାର୍ଥୀ ମନର ଦୁର୍ଭାଗ୍ୟଜନକ ପରିଣତି ଘଟାଇଛି; କିନ୍ତୁ ଧ୍ୟାନ ଓ ମନନର ଏହି ଅନ୍ତିମ ଅବସ୍ଥାଗୁଡ଼ିକରେ ଉପନୀତ ହେବା ପୂର୍ବରୁ ଦେହ ଓ ମନର ସଂଯମ ଅଭ୍ୟାସ କରିବା ଆବଶ୍ୟକ । ଦେହ ଉପଯୁକ୍ତ ଓ ସୁସ୍ଥ, ନମନୀୟ ଓ କମନୀୟ, ଶକ୍ତ ଓ ବଳିଷ୍ଠ ହେବା ଦରକାର । ବହୁତ କିଛି ଆସନ ବ୍ୟବସ୍ଥା କରାଯାଇଛି, ପ୍ରାଣାୟାମ ପ୍ରଣାଳୀ ବି ବତାଇ ଦିଆଯାଇଛି ଯଦ୍ଦ୍ୱାରା ଶ୍ୱାସ ପ୍ରଶ୍ୱାସ ନିଜ ବଶରେ ରହିପାରିବ ଓ ଗଭୀର ତଥା ଦୀର୍ଘ ନିଃଶ୍ୱାସ ଗ୍ରହଣ କରିବା ସହଜ ହେବ । ଏହାକୁ ବ୍ୟାୟାମ କହିବା ଠିକ୍ ହେବନି; କାରଣ ଏଥିରେ ସେପରି କିଛି ଆୟାସକର ଅଙ୍ଗଚାଳନା ନାହିଁ । ଏହା ଏକ ପ୍ରକାର ଶାରୀରିକ ତାଲିମ ଯାହାକୁ ଦର୍ଶନ ଭାଷାରେ ଆସନ କୁହାଯାଏ ଏବଂ ଯଥୋଚିତ ଭାବରେ ଅଭ୍ୟାସ କରିପାରିଲେ ଶରୀରକୁ ସହଜ-ବିଶ୍ରାନ୍ତି ମିଳେ, ତାଜା ରଖେ ଓ ଶରୀର କ୍ୱଚିତ୍ କ୍ଳାନ୍ତ ହୁଏ । ଶରୀରକୁ ଉପଯୁକ୍ତ ରଖିବାର ଏହି ପୁରାତନ ତଥା ନିଜସ୍ୱ ଭାରତୀୟ ପ୍ରଣାଳୀ ସଙ୍ଗେ ଆଧୁନିକ ବିବିଧ ଉପାୟ ତୁଳନାକରି ଦେଖିଲେ ବାସ୍ତବିକ୍ ଆଚମ୍ବିତ ଲାଗେ । ଆଜିର ସର୍ବଜନବିଦିତ ବ୍ୟାୟାମ ବ୍ୟବସ୍ଥାରେ ଯେଉଁ ପ୍ରକାର ଡିଆଁ ଉକୁଟି, ଟଣାଓଟରା ଓ ଦୌଡ଼ ଝାପଟ କରିବାକୁ ହୁଏ ସେଥିରେ ମଣିଷ ଧଇଁସଇଁ ହୋଇ ସମ୍ପୂର୍ଣ୍ଣ ଅବସନ୍ନ ହୋଇ ପଡ଼େ । କୁସ୍ତି, ସନ୍ତରଣ, ଅଶ୍ୱାରୋହଣ, ବନାଉଟି, ତୀର କ୍ଷେପଣ, ଗଦା-ମୁଦ୍‌ଗର (ଜୁ-ଜିତ୍‌ସୁ ଢଙ୍ଗର) ଚାଳନ ଓ ଅନ୍ୟାନ୍ୟ ନାନାବିଧ ଖେଳ ଓ ମନୋରଞ୍ଜନ ଭାରତରେ ଥିଲା; କିନ୍ତୁ ଏହି ଆସନ ପଦ୍ଧତି ବୋଧହୁଏ ଭାରତର ସମ୍ପୂର୍ଣ୍ଣ ନିଜସ୍ୱ ଓ ତାର ଦର୍ଶନ ପ୍ରତି ବିଶେଷ ଅନୁକୂଳ ମନେହୁଏ । ଏଥିରେ ଗୋଟାଏ ପ୍ରକାର ଭାରସାମ୍ୟ ରହିଛି ଏବଂ ଏହି ପ୍ରକ୍ରିୟାରେ ଚିତ୍ତଚାଞ୍ଚଲ୍ୟ ଦୂର ହୁଏ; ଶାନ୍ତି ମିଳେ । ଶକ୍ତି କ୍ଷୟ ନକରି ଅବା ମନକୁ ବିଚଳିତ ନକରି ଏଥି ଦ୍ୱାରା ବଳ ଓ ସ୍ୱାସ୍ଥ୍ୟ ଲାଭ ହୁଏ । ଏଥି ହେତୁରୁ, ଯେ କେଉଁ ବୟସରେ, ଏପରିକି ବୃଦ୍ଧ ବୟସରେ ମଧ୍ୟ କେତେକ ଆସନ ବିଶେଷ ହିତକର ।

ଆସନ ନାନାପ୍ରକାର । ଅନେକ ବର୍ଷ ହେଲା ସେଥି ଭିତରୁ କେତେକ ସରଳ ଆସନ,

ଯେତେବେଳେ ସୁଯୋଗ ପାଇଛି, ମୁଁ ଅଭ୍ୟାସ କରିଛି ଏବଂ ସନ୍ଦେହ ନାହିଁ, ସେଥି ଦ୍ୱାରା ବିଶେଷଭାବରେ ଉପକୃତ ହୋଇଛି । ଶରୀର ଓ ମନ ପକ୍ଷରେ ପ୍ରତିକୂଳ ଯେ ପ୍ରକାର ପରିବେଶ ଭିତରେ ମତେ ବହୁଧା ରହିବାକୁ ପଡ଼ିଥାଏ, ଆସନ ବାସ୍ତବିକ୍ ମତେ ସୁଫଳ ଦେଇଛି । ଏହି କେତୋଟି ଆସନ ଓ ପ୍ରାଣାୟାମବିଧି ଭିତରେ ମୋର ଯୋଗାଭ୍ୟାସ ସୀମିତ । ଦେହର ପ୍ରାଥମିକ ଅବସ୍ଥାରୁ ମୁଁ ଅଧିକ ଦୂରକୁ ଯାଇପାରିନି ଏବଂ ମୋର ମନ ଏବେ ମଧ୍ୟ ମୋର ବଶ ହୋଇନି; ତାର ଅନୁଚିତ ବ୍ୟବହାର ବି କମ୍ ନୁହେଁ ।

ଶାରୀରିକ ସଂଯମ ଭିତରେ ପାନ ଭୋଜନର ଉଚିତାନୁଚିତ ବିଚାର ଅନ୍ତର୍ଭୁକ୍ତ । ସେଥି ସଙ୍ଗେ ଯୋଗ ଦର୍ଶନ ଯାହାକୁ ନୈତିକ ପ୍ରସ୍ତୁତି ବୋଲି ବର୍ଣ୍ଣନା କରେ ତାହା କରିବା ମଧ୍ୟ ଏକାନ୍ତ ଆବଶ୍ୟକ । ଏଥି ଭିତରେ ରହିଛି ଅହିଂସା, ସତ୍ୟବାଦିତା, ବ୍ରହ୍ମଚର୍ଯ୍ୟ ଇତ୍ୟାଦି । ଅହିଂସାର ଅର୍ଥ ଶାରୀରିକ ହିଂସାଚରଣ ନ କରିବା କେବଳ ନୁହେଁ; ବରଂ ମନକୁ ଘୃଣା ଓ ଦ୍ୱେଷରୁ ମୁକ୍ତ ରଖିବା ।

ଏ ସବୁ ଦ୍ୱାରା ଇନ୍ଦ୍ରିୟ ସଂଯମ କରାଯାଏ । ତା'ପରେ ଧ୍ୟାନ ଓ ମନନ ଏବଂ ପରିଶେଷରେ ସମାଧି ଅବସ୍ଥା, ଯେଉଁଥିରୁ ନାନାବିଧ ଅନ୍ତର୍ଦୃଷ୍ଟି ଓ ଅନ୍ତର୍ଜ୍ଞାନ ପ୍ରାପ୍ତ ହୁଏ ।

ଆଧୁନିକ କାଳରେ, ଯୋଗ ଓ ବେଦାନ୍ତର ଅନ୍ୟତମ ଶ୍ରେଷ୍ଠ ବ୍ୟାଖ୍ୟାକାର ସ୍ୱାମୀ ବିବେକାନନ୍ଦ ଯୋଗ ପ୍ରୟୋଗମୂଳକ ଚରିତ୍ର ଉପରେ ଓ ଯୋଗର ବୁଦ୍ଧି ଉପରେ ଭିତ୍ତି କରିବା ପାଇଁ ବାରମ୍ବାର ଜୋର୍ ଦେଇ କହିଛନ୍ତି । "ଏଥି ଭିତରୁ କୌଣସି ଯୋଗ ବିବେକକୁ ଅସ୍ୱୀକାର କରେନି, କିଏ କହୁନି ଯେ ତୁମେ ତୁମର ବିବେକ-ବୁଦ୍ଧି ପୁରୋହିତଙ୍କ ହାତରେ କମ୍ବା ସେ ଶ୍ରେଣୀସ୍ଥ ଅନ୍ୟ କାହା ହସ୍ତରେ ଅର୍ପଣ କରିଦିଅ···ପ୍ରତ୍ୟେକ ଯୋଗ ନିର୍ଦ୍ଦେଶ କରେ ବିବେକ ଉପରେ ଭଲ ଭାବରେ ନିର୍ଭର କରି ରହିବା ପାଇଁ ।" ବିଜ୍ଞାନର ଅନ୍ତର୍ନିହିତ ଉଦ୍ଦେଶ୍ୟ ସଙ୍ଗେ ଯୋଗ ଓ ବେଦାନ୍ତର ଆତ୍ମୀୟତା ପରିଲକ୍ଷିତ ହେଲେ ସୁଦ୍ଧା ଏକଥା ସତ୍ୟ ଯେ ଉଭୟର ମାଧ୍ୟମ ଭିନ୍ନ ଓ ସେଥି ହେତୁରୁ ଉଭୟ ମଧ୍ୟର ବ୍ୟବଧାନ ଦୂର ହେବା ଅସମ୍ଭବ । ଯୋଗ ଅନୁସାରେ ଚେତନା ବୁଦ୍ଧି ପର୍ଯ୍ୟନ୍ତ ସୀମିତ ନୁହେଁ ଓ "ବିଚାର ହିଁ କର୍ମ, କେବଳ କର୍ମ ଯୋଗୁଁ ବିଚାରର ଯାହା କିଛି ମୂଲ୍ୟ ।" ପ୍ରେରଣା ଓ ଅନ୍ତର୍ଦୃଷ୍ଟିକୁ ସ୍ୱୀକାର କରାଯାଇଛି; କିନ୍ତୁ ତାହା ଭ୍ରାନ୍ତ ପଥକୁ ଟାଣିବାର ଅବକାଶ ନାହିଁ କି ? ବିବେକାନନ୍ଦ କହନ୍ତି, ପ୍ରେରଣା ବୁଦ୍ଧିକୁ ଖଣ୍ଡନ କରିବା ଉଚିତ ନୁହେଁ : "ଆମେ ଯାହାକୁ ପ୍ରେରଣା କହୁଁ ତାହା ବୁଦ୍ଧିର ବିକାଶ ଅବସ୍ଥା ମାତ୍ର । ଅନ୍ତର୍ଦୃଷ୍ଟିର ମାର୍ଗ ବିବେକ ଭିତରେ ନିହିତ···କୌଣସି ସତ୍‌ପ୍ରେରଣା କେବେହେଲେ ବିବେକର ବିରୋଧିତା କରେନାହିଁ । ଯେଉଁଠି ଏହା ଘଟେ, ତାହା ପ୍ରେରଣା ପଦବାଚ୍ୟ ନୁହେଁ ।" ଆହୁରି ମଧ୍ୟ "ପ୍ରେରଣା ସମସ୍ତଙ୍କ ମଙ୍ଗଳ ପାଇଁ ହେବା ଉଚିତ; ଯଶ, ଗୌରବ ଅବା ବ୍ୟକ୍ତିଗତ ଲାଭ ପାଇଁ ନୁହେଁ । ବିଶ୍ୱର ମଙ୍ଗଳ ନିମନ୍ତେ ଏହା ଉଦ୍ଦିଷ୍ଟ ହେବା ଉଚିତ ଓ ସଂପୂର୍ଣ୍ଣ ଭାବରେ ନିଃସ୍ୱାର୍ଥ ହେବା ବିଧେୟ ।

ସେ ଆଉରି କହନ୍ତି, "ଜ୍ଞାନର ଏକମାତ୍ର ଆଧାର ହେଉଛି ଅନୁଭୂତି ।" ବିଜ୍ଞାନ ଓ

ବାହ୍ୟଜ୍ଞାନ ସମ୍ପର୍କରେ ଆମେ ଯେଉଁ ପରୀକ୍ଷା-ନିରୀକ୍ଷା ଉପାୟ ଅବଲମ୍ବନ କରିଥାଉଁ, ଧର୍ମ ବିଷୟରେ ମଧ୍ୟ ତାହା ପ୍ରୟୋଗ କରିବା ଦରକାର । "କୌଣସି ଧର୍ମ ଯଦି ଏ ପ୍ରଣାଳୀରେ ନଷ୍ଟ ହୁଏ, ବୁଝିବାକୁ ହେବ ଯେ ତାହା ଧର୍ମ ନୁହେଁ, ଗୋଟାଏ ଅନାବଶ୍ୟକ ତଥା ଅନୁପଯୁକ୍ତ ଅନ୍ଧବିଶ୍ୱାସ ମାତ୍ର ।" ଏଭଳି ଧର୍ମ ଯେତେ ଚଞ୍ଚଳ ଲୋପ ପାଏ ସେତେ ଭଲ । "ଯେଉଁ ଧର୍ମ ହେଉନା କାହିଁକି, ବିବେକ ବୁଦ୍ଧିର ଦୃଷ୍ଟି କୋଣ ଧରି ଗ୍ରହଣ ପାଇଁ ତାହା ବାଧ୍ୟ ନୁହେଁ ବୋଲି ଦାବୀ କରିବା ଠିକ୍ ନୁହେଁ ।...କାରଣ ବୁଦ୍ଧିକୁ ଅନୁସରଣ କରି ମଣିଷଜାତି ନିରୀଶ୍ୱରବାଦୀ ହୋଇଯିବା ବରଂ ଭଲ ସିନା, କାହାର ପ୍ରମାଣ ଅନୁସରଣକରି କୋଡ଼ିଏ କୋଟି ଦେବଦେବୀଙ୍କ ଉପରେ ଅନ୍ଧ ଭାବରେ ବିଶ୍ୱାସ ସ୍ଥାପନ କରିବା ଠିକ୍ ନୁହେଁ ...ହୁଏତ ସେଭଳି ସିଦ୍ଧପୁରୁଷ ଅଛନ୍ତି ଯେଉଁମାନେ ଇନ୍ଦ୍ରିୟର ସୀମା ଅତିକ୍ରମ କରି ଅତୀନ୍ଦ୍ରିୟ ଅନୁଭୂତି ଲାଭ କରିଚନ୍ତି । ଆମ ଜୀବନରେ ସେଭଳି ଅନୁଭୂତି ଲାଭ କରିପାରିଲେ କେବଳ ଆମେ ତାହା ବିଶ୍ୱାସ କରିବା; ତା ପୂର୍ବରୁ ନୁହେଁ ।" କୁହାଯାଇଚି, ବୁଦ୍ଧିର ବଳ ଯଥେଷ୍ଟ ନୁହେଁ । ତାହା ବହୁଧା ଭୁଲ୍‌କରି ବସେ । ବୁଦ୍ଧି ଯଦି ଦୁର୍ବଳ, ତେବେ ଗୋଟାଏ ଦଳ ପୁରୋହିତ ଆମ ଅପେକ୍ଷା ଭଲ ପଥପ୍ରଦର୍ଶକ ବୋଲି ବିବେଚିତ ହେବେ କାହିଁକି ? ଏ ସମ୍ପର୍କରେ ସ୍ୱାମୀ ବିବେକାନନ୍ଦ ଆହୁରି କହିଚନ୍ତି, "ମୁଁ ମୋର ବୁଦ୍ଧି ଦ୍ୱାରା ହିଁ ଚାଳିତ ହେବି । କାରଣ ତାର ସମସ୍ତ ଦୁର୍ବଳତା ସତ୍ତ୍ୱେ, ସେଥି ଭିତର ଦେଇ ସତ୍ୟରେ ଉପନୀତ ହେବାର କିଛି ନା କିଛି ସୁଯୋଗ ରହିଚି...ଅତଏବ, ଆମେ ବୁଦ୍ଧିକୁ ଅନୁସରଣ କରିଯିବା ଏବଂ ଏ ପ୍ରକାର କରି ଯେଉଁମାନେ କୌଣସି ଲକ୍ଷ୍ୟରେ ଉପନୀତ ହୋଇପାରି ନାହାନ୍ତି ସେମାନଙ୍କ ପ୍ରତି ମଧ୍ୟ ସହାନୁଭୂତି ରଖିବାକୁ ହେବ ।" "ଏହି ରାଜଯୋଗ ଅନୁଧ୍ୟାନ ନିମନ୍ତେ କୌଣସି ପ୍ରକାର ଧର୍ମବିଶ୍ୱାସ ଅନାବଶ୍ୟକ । ନିଜେ ସାଧନାକରି ସତ୍ୟ ଲାଭ କଲା ପର୍ଯ୍ୟନ୍ତ କିଛି ବିଶ୍ୱାସ କରନାହିଁ ।" (୧)

ବୁଦ୍ଧି ଉପରେ ସ୍ୱାମୀ ବିବେକାନନ୍ଦଙ୍କର ଏହି କ୍ରମାଗତ ଗୁରୁତ୍ୱ ଅର୍ପଣ ଏବଂ କେବଳ ବିଶ୍ୱାସ ଉପରେ ଯାହା କିଛି ମାନିନେବା ପାଇଁ ତାଙ୍କର ଅରାଜି, ମନର ସ୍ୱତନ୍ତ୍ରତା ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସରୁ ଉତ୍ପନ୍ନ ଏବଂ ଆହୁରି ଗୋଟାଏ କାରଣ ବି ହେଉଚି ଯେ ସ୍ୱଦେଶରେ ଏହି ପ୍ରାମାଣିକତାଜନିତ ବହୁ ଅକଲ୍ୟାଣ ସେ ଦେଖି ସାରିଥିଲେ । "କାରଣ ମୁଁ ଏପରି ଏକ ଦେଶରେ ଜନ୍ମ ହେଲି ଯେଉଁଠି ସେମାନେ ପ୍ରାମାଣିକତାର ଶେଷ ସୀମା ପର୍ଯ୍ୟନ୍ତ ଚାଲି ଯାଇଚନ୍ତି ।" ଏପରିଭାବରେ, ପୁରାତନ ବିବିଧ ଯୋଗପ୍ରଣାଳୀ ଓ ବେଦାନ୍ତ ସେ ବ୍ୟାଖ୍ୟା କରିଚନ୍ତି ଏବଂ ଏପରି ବ୍ୟାଖ୍ୟା କରିବାର ଅଧିକାର ତାଙ୍କର ଥିଲା; କିନ୍ତୁ ତାର ପଛରେ ଯେତେ କିଛି ପରୀକ୍ଷା-ନିରୀକ୍ଷା ଓ ବୁଦ୍ଧିର ଖେଳ ଥାଉନା କାହିଁକି, ସେଥିରେ ଏପରି ସବୁ ପ୍ରଦେଶର ଆଲୋଚନା କରାଯାଇଚି; ଯାହା ସାଧାରଣ ମଣିଷର ବୋଧ ଓ ସ୍ପର୍ଶର

(୧) ସ୍ୱାମୀ ବିବେକାନନ୍ଦଙ୍କ ଲେଖାର ଅଧିକାଂଶ ଉଦ୍ଧୃତି ରୋମା ରୋଲାଁଙ୍କ 'ଲାଇଫ୍ ଅଫ୍ ବିବେକାନନ୍ଦ' ଗ୍ରନ୍ଥରୁ ଗୃହୀତ ।

ବାହାରେ । ତାହା ହେଉଛି ମାନସିକ ଓ ମନସ୍ତାତ୍ତ୍ୱିକ ଅଭିଜ୍ଞତାର ଗୋଟାଏ ପ୍ରଦେଶ ଯାହା ଆମର ଜ୍ଞାତ ତଥା ଅଭ୍ୟସ୍ତ ବିଶ୍ୱର ଅଭିଜ୍ଞତାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସେସବୁ ପରୀକ୍ଷା-ନିରୀକ୍ଷା ଓ ଅଭିଜ୍ଞତା ଭାରତରେ କେବଳ ସୀମିତ ନୁହେଁ । ଖ୍ରୀଷ୍ଟାନ୍ ରହସ୍ୟବାଦୀ, ପାରସିକ ସୁଫି ଓ ଅନ୍ୟମାନଙ୍କ ଲିଖିତ ନଥିପତ୍ରରେ ପ୍ରଚୁର ପ୍ରମାଣ ରହିଛି । ଏ ସମସ୍ତ ଅନୁଭୂତିରେ ସାଦୃଶ୍ୟ କିପରି ରହି ପାରିଲା, ଭାବିଲେ ଆଚମ୍ବିତ ଲାଗେ । ରୋମା ରୋଲାଁ ଯେପରି କହନ୍ତି, "ଧର୍ମାନୁଭୂତିର ଏହି ସବୁ ମହାନ୍ ଘଟଣା ସର୍ବତ୍ର ଓ ସବୁକାଳରେ ଦେଖିବାକୁ ମିଳେ; ଜାତି ଓ କାଳର ବିଭିନ୍ନ ପରିଚ୍ଛଦ ଯଦି ଉତାରି ନିଆଯାଏ ତାହାହେଲେ ଏ ସବୁ ସମାନ ଦେଖାଯିବ ଓ ଏଥିରୁ ଜଣାଯାଉଛି ଯେ ମାନବର ଭାବନାରେ ବରାବର ଏକତା ରହିଛି—ବରଂ ଏହା ଭାବନାଠାରୁ ବି ଅଧିକ ଗଭୀରତାରେ ପ୍ରବେଶକ୍ଷମ ଆଉ କିଛି, ଯାହାର ସନ୍ଧାନରେ ଏହି ଭାବନା ସ୍ୱୟଂ ରହେ ଏବଂ ମନୁଷ୍ୟ ମାତ୍ରେ ଯେଉଁ ତତ୍ତ୍ୱରୁ ସୃଷ୍ଟ ତାହା ଏକ ଓ ଅନନ୍ୟ ।"

ଅତଏବ, ବ୍ୟକ୍ତିର ଆଧ୍ୟାତ୍ମିକ ପୃଷ୍ଠଭୂମି ଭିତରକୁ ସନ୍ଧାନ କରି ଯିବା ଏବଂ ମନର ସଂଯମ ଓ କେତେକ ଚେତନାର ବିକାଶ ନିମନ୍ତେ ଯୋଗ ଗୋଟାଏ ପ୍ରୟୋଗାତ୍ମକପଦ୍ଧତି । ଆଜି-କାଲିର ମନୋବିଜ୍ଞାନ ଏଥିରୁ କେତେ ପର୍ଯ୍ୟନ୍ତ ଲାଭ ଉଠାଇ ପାରିବ, ମୁଁ କହି ପାରିବିନି; କିନ୍ତୁ ଏ ଦିଗରେ କିଛି ଉଦ୍ୟମ କରାଗଲେ ଭଲ ହୁଅନ୍ତା । ଅରବିନ୍ଦ ଘୋଷ ଯୋଗର ପରିଭାଷାରେ କହିଛନ୍ତି : "ସମସ୍ତ ରାଜଯୋଗ ଏହି ଚେତନା ଓ ଅନୁଭବ ଉପରେ ନିର୍ଭର କରେ ଯେ ଆମର ଅନ୍ତର-ତତ୍ତ୍ୱ, ତାର ସମ୍ମିଶ୍ରଣ, କୃତ୍ୟ, ବିବିଧ ଶକ୍ତି—ଏ ସମସ୍ତକୁ ଅଲଗା ଓ ଛିନ୍ନଭିନ୍ନ କରାଯାଇପାରେ ଏବଂ ନୂତନ ଭାବରେ ମିଶ୍ରିତ କରି, ଏଥି ପୂର୍ବେ ଅସମ୍ଭବ ତଥା ଅଭିନବ ବ୍ୟବହାରକୁ ଅଣାଯାଇ ପାରେ କିମ୍ବା ରୂପାନ୍ତରିତ କରି ନିର୍ଦ୍ଦିଷ୍ଟ କେତେକ ଆନ୍ତର ପ୍ରକ୍ରିୟା ଦ୍ୱାରା ଗୋଟାଏ ନୂତନ ସମନ୍ୱୟ ସୃଷ୍ଟି କରାଯାଇ ପାରେ ।"

ଦର୍ଶନର ଅନ୍ୟତମ ପଦ୍ଧତିର ନାମ ହେଉଛି ମୀମାଂସା । ଏହା କର୍ମକାଣ୍ଡଆଶ୍ରିତ ଓ ବହ୍ୱୀଶ୍ୱରବାଦ ପ୍ରତି ଏହାର ପ୍ରବଣତା ରହିଛି । ପ୍ରଚଳିତ ହିନ୍ଦୁଧର୍ମ ଓ ହିନ୍ଦୁ ବିଧାନ ଏହି ସିଦ୍ଧାନ୍ତ ଓ ତାର ବିବିଧ ନିୟମ ଦ୍ୱାରା ବହୁଳ ଭାବରେ ପ୍ରଭାବିତ । ଧର୍ମ କ'ଣ ଓ ସେହି ଅନୁସାରେ ଆଚାର କିପରି ହେବା ଉଚିତ, ଏହା ବିଧାନ କରେ । ଏକଥା ଲକ୍ଷ୍ୟ କରିବା ଉଚିତ ଯେ ହିନ୍ଦୁମାନଙ୍କ ବହ୍ୱୀଶ୍ୱରବାଦ ଗୋଟାଏ ବିଚିତ୍ର ଧରଣର; କାରଣ ଦେବତା-ମାନଙ୍କ ଭିତରେ ଯେତେ ବିଶେଷ ଶକ୍ତି ରହୁ ନା କାହିଁକି ମଣିଷ ଅପେକ୍ଷା ନିମ୍ନତର ଶ୍ରେଣୀର ସୃଷ୍ଟି ବୋଲି ମନେ କରାଯାଇଛି । ହିନ୍ଦୁ ଓ ବୌଦ୍ଧ ଉଭୟେ ବିଶ୍ୱାସ କରନ୍ତି ଯେ ଆତ୍ମୋପ-ଲବ୍ଧିର ମାର୍ଗରେ ମଣିଷ ଜନ୍ମ ହେଉଛି ସବୁର ଉଚ୍ଚତମ ଅବସ୍ଥା । ଏହି ମୁକ୍ତାବସ୍ଥା ଓ ଉପଲବ୍ଧି ଦେବତାମାନେ ମଧ୍ୟ ଆହରଣ କରିପାରନ୍ତି କେବଳ ମନୁଷ୍ୟ ଦେହରେ । ସାଧାରଣ ବହୁଦେବବାଦରୁ ଏହି ଅବଧାରଣା ସ୍ପଷ୍ଟତଃ ଭିନ୍ନ । ବୌଦ୍ଧମାନେ କହନ୍ତି ଯେ ବୁଦ୍ଧତ୍ୱପ୍ରାପ୍ତି ମଣିଷ ଦେହରେ କେବଳ ସମ୍ଭବ ।

ଏହି ଅନୁକ୍ରମର ଶେଷ ଦର୍ଶନପଦ୍ଧତି ହେଉଛି ବେଦାନ୍ତ । ଉପନିଷଦମାନଙ୍କରୁ ରୂପ

ପରିଗ୍ରହ କରି ଏହା ନାନା ଆକାର ଓ ଆଙ୍ଗିକରେ ବିକାଶ ଲାଭ କଲା; କିନ୍ତୁ ଏହାର ଭିତ୍ତି ସବୁବେଳେ ରହିଛି ବ୍ରହ୍ମାଣ୍ଡର ଅଦ୍ୱୈତବାଦୀ ତତ୍ତ୍ୱ ଉପରେ । ସାଂଖ୍ୟର-ପୁରୁଷ ଓ ପ୍ରକୃତି ସ୍ୱତନ୍ତ୍ର ବସ୍ତୁ ଭାବରେ ଏଥିରେ ବିବେଚିତ ହୋଇନି । ବରଂ ଏକ ହିଁ ସତ୍ତା—ପରମ ପୁରୁଷର ବିଭିନ୍ନ ବିଭବ ମନେ କରାଯାଇଛି । ଆଦ୍ୟ ବେଦାନ୍ତର ଭିତ୍ତି ଉପରେ ଶଙ୍କରାଚାର୍ଯ୍ୟ ଅଦ୍ୱୈତ ବେଦାନ୍ତ ନିର୍ମାଣ କଲେ । ଏହା ସେହି ଦର୍ଶନ; ଯାହା ଆଜିର ହିନ୍ଦୁଧର୍ମର ମୁଖ୍ୟ ଦାର୍ଶନିକ ଦୃଷ୍ଟିଭଙ୍ଗୀର ପ୍ରତିନିଧିତ୍ୱ କରେ ।

ଏହାର ଭିତ୍ତି ବିଶୁଦ୍ଧ ଅଦ୍ୱୈତବାଦ; ଆଧିଭୌତିକ ଅର୍ଥରେ ଅନ୍ତିମ ସତ୍ତା ହେଉଛି ଆତ୍ମନ୍ ବା ପରମାତ୍ମା । ତାହା ହିଁ ସତ୍ଯରୂପ; ଆଉ ସବୁ କିଛି କେବଳ ଦୃଶ୍ୟମାନ । ପରଂବ୍ରହ୍ମ କିପରି ଭାବରେ ସର୍ବ ବସ୍ତୁରେ ବ୍ୟାପ୍ତ; ଏକ କିପରି ଅନେକ ରୂପରେ ପ୍ରତୀୟମାନ ଅଥଚ ଅଖଣ୍ଡ, କାରଣ ଅବିଭାଜ୍ୟ ପରଂବ୍ରହ୍ମଙ୍କୁ ଭାଗ ଭାଗ କରାଯାଇ ନପାରେ—ଏ ସବୁ ତର୍କ ଦ୍ୱାରା ବୁଝିବା କଠିନ; କାରଣ ଆମର ମନ ଶାନ୍ତ ବିଶ୍ୱଦ୍ୱାରା ସୀମିତ । ଏହି ଆତ୍ମନ୍‌କୁ ଉପନିଷଦ୍ ଯେପରି ବର୍ଣ୍ଣନା କରିଛନ୍ତି; ଯଦି ଏହାକୁ ବର୍ଣ୍ଣନା ବୋଲି କୁହାଯାଏ : "ତାହା ପୂର୍ଣ୍ଣ ଅଟେ, ଏହା ବି ପୂର୍ଣ୍ଣ ଅଟେ; ପୂର୍ଣ୍ଣରୁ ପୂର୍ଣ୍ଣ ବାହାରେ; ପୂର୍ଣ୍ଣରୁ ପୂର୍ଣ୍ଣକୁ ବାହାର କରିନେଲେ, (ତଥାପି ମଧ୍ୟ) ପୂର୍ଣ୍ଣ ଅବଶେଷ ରହେ ।" (୧)

ଶଙ୍କର ଜ୍ଞାନର ଏକ ଜଟିଳ ତଥା ସୂକ୍ଷ୍ମ ସିଦ୍ଧାନ୍ତ ନିର୍ମାଣ କଲେ ଓ କେତେକ ଅନୁମାନର ଆଧାର ଉପରେ, ଯୁକ୍ତି ଦ୍ୱାରା ପଦେ ପଦେ ଆଗକୁ ବଢ଼ି, ଅଦ୍ୱୈତବାଦର ସମ୍ପୂର୍ଣ୍ଣ ପଦ୍ଧତି ନିର୍ମାଣ କଲେ । ବ୍ୟକ୍ତି-ଆତ୍ମାର ସ୍ୱତନ୍ତ୍ର ସତ୍ତା ନାହିଁ; ବରଂ ତାହା ହିଁ ପରମାତ୍ମା, ଯିଏ ନିଜକୁ କେତେକ ଭାବରେ ସୀମିତ କରି ନେଇଛନ୍ତି । ଏହାର ତୁଳନା ଏପରି ଭାବରେ କରାଯାଇଛି ଯେ, ଆତ୍ମନ୍ ଯେହେତୁ ସର୍ବବ୍ୟାପକ-ଆକାଶ, ଏହା ଗୋଟାଏ ପାତ୍ର ମଧ୍ୟସ୍ଥ ଆକାଶ ମାତ୍ର । ବ୍ୟାବହାରିକ ଦୃଷ୍ଟିରେ ଆମେ ଏହି ଉଭୟଙ୍କୁ ସ୍ୱତନ୍ତ୍ର ମନେକରି ପାରୁ; କିନ୍ତୁ ଏହି ଭେଦ କେବଳ ଆପାତ ପ୍ରକୃତ ନୁହେଁ । ଏହି ଏକତାକୁ ଅର୍ଥାତ୍ ବ୍ୟକ୍ତିଗତ ଆତ୍ମା ଓ ପରମାତ୍ମାର ଏକତ୍ୱକୁ ଉପଲବ୍ଧି କରିବା ହିଁ ମୁକ୍ତାବସ୍ଥା ।

ଏପରିଭାବରେ ଆମେ ଯେଉଁ ବସ୍ତୁ-ଜଗତକୁ ଆମ ଚତୁଃପାର୍ଶ୍ୱରେ ଦେଖୁଁ, ତାହା ସେହି ସତ୍ତାର ଗୋଟାଏ ପ୍ରତିବିମ୍ବ କେବଳ, ଅଥବା ଅନୁଭବର ସ୍ତର ଉପରେ ପଡ଼ିଛି ତାର ଛାୟା । ଏହାକୁ 'ମାୟା' କୁହାଯାଇଛି । ଏହି ଶବ୍ଦର ଇଂରେଜୀ ଅନୁବାଦର 'ଇଲ୍ୟୁଜନ୍' ବୋଲି ଯାହା କରାଯାଇଛି, ଠିକ୍ ନୁହେଁ । ଏହା ଅନସ୍ତିତ୍ୱ ନୁହେଁ । ସତ୍ ଓ ଅସତ୍ ମଧ୍ୟବର୍ତ୍ତୀ ଏକ ରୂପ । ଏହା ଏକ ପ୍ରକାର ଆପେକ୍ଷିକ ସ୍ଥିତି ଏବଂ ଏଥିଲାଗି ହୁଏତ ଆପେକ୍ଷିକବାଦର ଅବଧାରଣା ଆମକୁ 'ମାୟା'ର ନିକଟବର୍ତ୍ତୀ କରେ । ଏହି ବିଶ୍ୱରେ ତେବେ ଭଲ ଆଉ ମନ୍ଦ କ'ଣ ? ଏସବୁ ମଧ୍ୟ କ'ଣ କେବଳ ପ୍ରତିବିମ୍ବ ଓ ବସ୍ତୁହୀନ ଛାୟା ମାତ୍ର ? ଅନ୍ତିମ

---

(୧) ପୂର୍ଣ୍ଣମଦଂ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ପୂର୍ଣ୍ଣମୁଦଚ୍ୟତେ । ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।

ବିଶ୍ଳେଷଣରେ, ଆମର ଏହି ଇନ୍ଦ୍ରିୟଗ୍ରାହ୍ୟ ବିଶ୍ୱରେ ସେସବୁ ଯାହା ହେଉନା କାହିଁକି, ଏସବୁ ନୈତିକ ବୈଶିଷ୍ଟ୍ୟରେ ଯଥାର୍ଥତା ଓ ମହତ୍ତ୍ୱ ରହିଛି । ଯେଉଁଠି ବ୍ୟକ୍ତି ବ୍ୟକ୍ତି ଭିନ୍ନ କାର୍ଯ୍ୟକାରୀ ହୁଏ, ସେଇଠି ଏହି ଭେଦ ସଙ୍ଗତ ହୋଇଉଠେ ।

ଏହିସବୁ ଶାନ୍ତ ବ୍ୟକ୍ତିଙ୍କ ପକ୍ଷରେ ଅସୀମକୁ ସୀମିତ ନକରି ତାର କଳ୍ପନା କରିବା ଦୁରୁହ । ସେମାନେ ତାର ସୀମିତ ଓ ବସ୍ତୁଗତ ଧାରଣା କେବଳ କରିପାରନ୍ତି । ତଥାପି ଏହି ସବୁ ସୀମିତ ଆକାର ଓ ଧାରଣା ବି ପରିଶେଷରେ ଅନନ୍ତ ତଥା ପରଂବ୍ରହ୍ମରେ ହିଁ ଆଶ୍ରୟ ଗ୍ରହଣ କରନ୍ତି । ଏଥି ହେତୁରୁ ଧର୍ମର ରୂପ ଗୋଟାଏ ସାପେକ୍ଷ ବିଷୟ ହୋଇଉଠେ ଏବଂ ନିଜ ସାମର୍ଥ୍ୟ ଅନୁସାରେ ଏ ପ୍ରକାର ଧାରଣା କରିବାର ସ୍ୱାତନ୍ତ୍ର୍ୟ ପ୍ରତ୍ୟେକ ବ୍ୟକ୍ତିର ଅଛି ।

ଜାତିର ସାମୂହିକ ଅଭିଜ୍ଞତା ଓ ପ୍ରଜ୍ଞାର ପ୍ରତିନିଧି ସ୍ୱରୂପ ବର୍ଣ୍ଣବ୍ୟବସ୍ଥାର ଭିତ୍ତି ଉପରେ ପ୍ରତିଷ୍ଠିତ ସାମାଜିକ ଜୀବନର ବ୍ରାହ୍ମଣ୍ୟ ସଙ୍ଗଠନକୁ ଶଙ୍କର ଗ୍ରହଣ କରିଥିଲେ; କିନ୍ତୁ ସେ କହିଚନ୍ତି, ଯେ କେଉଁ ବର୍ଣ୍ଣର ଅନ୍ତର୍ଗତ ଯେ କେଉଁ ବ୍ୟକ୍ତି ପରମଜ୍ଞାନ ପ୍ରାପ୍ତ ହୋଇପାରେ ।

ଶଙ୍କରଙ୍କ ଦର୍ଶନ ଓ ତାଙ୍କର ଦୃଷ୍ଟିଭଙ୍ଗୀରେ ସଂସାରକୁ ଅସ୍ୱୀକାର କରିବା ଓ ଆତ୍ମାର ମୁକ୍ତି ପାଇଁ, ଯାହା ତାଙ୍କର ବିଗ୍ୱରରେ ମଣିଷର ପରମ ଧ୍ୟେୟ, କର୍ମରୁ ନିବୃତ ହେବାର ବୋଧ ମିଳେ । ତ୍ୟାଗ, ବୈରାଗ୍ୟ ଓ ଆସକ୍ତିହୀନତା ଉପରେ ବି ସେଥିରେ ବରାବର ଜୋର୍ ଦିଆଯାଇଚି ।

ଏ ସବୁ ସତ୍ତ୍ୱେ ଶଙ୍କର ଥିଲେ ଜଣେ ଅଦ୍‌ଭୁତ ଶକ୍ତିସମ୍ପନ୍ନ ଏବଂ ବିପୁଳ ଭାବରେ କର୍ମ-ପ୍ରବଣ ବ୍ୟକ୍ତି । ନିଜର ବ୍ୟକ୍ତିଗତ ପୂର୍ଣ୍ଣତା ସାଧନରେ ନିଜ ଭିତରେ ବୁଡ଼ିରହିବା କିମ୍ବା ଅରଣ୍ୟର କେଉଁ ଅଜ୍ଞାତ ଏକ କୋଣରେ ଆସନ ପାତିବା ଅଥବା ଅନ୍ୟମାନଙ୍କର କ'ଣ ହେଉଚି ହେଉ ସେଥିପ୍ରତି ଉଦାସୀନ ରହିବା ଭଳି ପଳାୟନପନ୍ଥୀ ସେ ନଥିଲେ । ଦକ୍ଷିଣ-ଭାରତର ମାଲବାର ପ୍ରଦେଶରେ ସେ ଜନ୍ମ ଗ୍ରହଣ କରିଥିଲେ ଏବଂ ଭାରତସାରା ନିରନ୍ତର ପର୍ଯ୍ୟଟନ କରି ଅଗଣିତ ଲୋକଙ୍କ ସଙ୍ଗେ ସାକ୍ଷାତ କରି, ଯୁକ୍ତି କରି, ବିତର୍କ ସଭାମାନଙ୍କରେ ଯୋଗଦେଇ, ବୁଝାଇ ନିଜର ଉତ୍ସାହ ଓ ଜୀବନୀଶକ୍ତିର କିଯଦଂଶ ସେମାନଙ୍କୁ ଅର୍ପଣ କରିଥିଲେ । ସ୍ପଷ୍ଟତଃ ସେ ନିଜର ଧ୍ୟେୟ ସମ୍ପର୍କରେ ନିବିଷ୍ଟ ଭାବରେ ସଚେତନ ଥିଲେ; କୁମାରିକାଠାରୁ ହିମାଳୟ ପର୍ଯ୍ୟନ୍ତ ସମଗ୍ର ଭାରତକୁ ସେ ନିଜର କର୍ମକ୍ଷେତ୍ର ମଣିଥିଲେ; ସେ ଭଲ ଭାବରେ ବୁଝିଥିଲେ ଯେ ବାହ୍ୟିକ କେତେ ବିଭିନ୍ନତା ସତ୍ତ୍ୱେ ଭାରତ ଗୋଟାଏ ସାଂସ୍କୃତିକ ସୂତ୍ରରେ ଗ୍ରନ୍ଥିତ ଏବଂ ଗୋଟିଏ ଭାବରେ ଭାବିତ । ତାଙ୍କ ସମୟର ଭାରତୀୟ ମନରେ ବିବିଧ ଚିନ୍ତାର ପ୍ରବାହ ଯେଉଁ ଜଞ୍ଜାଳ ସୃଷ୍ଟି କରିଥିଲା, ସେସବୁ ସମନ୍ୱିତ କରିବା ପାଇଁ ଏବଂ ସେହି ବିବିଧତା ଭିତରୁ ଦୃଷ୍ଟିଭଙ୍ଗୀର ଐକ୍ୟ ସୃଷ୍ଟି କରିବା ପାଇଁ ସେ ଆପ୍ରାଣ ଉଦ୍ୟମ କରିଥିଲେ । ବତିଶ ବର୍ଷର ସ୍ୱଳ୍ପ ଜୀବନକାଳ ଭିତରେ ବହୁ ଦୀର୍ଘ ଜୀବନର କାର୍ଯ୍ୟ ସମ୍ପାଦନ କରିଚନ୍ତି ଏବଂ ଭାରତ ଉପରେ ତାଙ୍କର ଶକ୍ତିଶାଳୀ ମନ ଓ ବିସ୍ମୟକର ବ୍ୟକ୍ତିତ୍ୱର ଯେଉଁ ଛାପ ରଖିଯାଇଚନ୍ତି, ଆଜି ଯୁଗା ତାହା ସ୍ପଷ୍ଟ ପ୍ରତୀୟମାନ । ଦାର୍ଶନିକ ଓ ପଣ୍ଡିତ, ଜଡ଼ବାଦୀ ଓ ରହସ୍ୟବାଦୀ, କବି ଓ ସନ୍ନ୍ୟାସୀ—ସେ ଥିଲେ ଏକ ବିଚିତ୍ର ସମ୍ମିଶ୍ରଣ ଏବଂ

ସର୍ବୋପରି, ବାସ୍ତବ ପକ୍ଷେ, ଜଣେ ସଂସ୍କାରକ ଓ ସମର୍ଥ ସଙ୍ଗଠକ । ବ୍ରାହ୍ମଣ୍ୟଧର୍ମ ଭିତରେ ପ୍ରଥମ ଥର ପାଇଁ ସେ ଦଶଗୋଟି ସମ୍ପ୍ରଦାୟ ଗଢ଼ିଥିଲେ ଏବଂ ସେଥିରୁ ଚାରିଟି ଆଜି ବି ପୂର୍ବ ଭଳି ଭାବରେ ତିଷ୍ଠି ରହିଛି । ଭାରତର ଚାରି କୋଣରେ, ପରସ୍ପରଠାରୁ ବହୁ ଦୂରରେ ସେ ଚାରିଗୋଟି ମଠ ସ୍ଥାପନ କରିଥିଲେ : ଦକ୍ଷିଣରେ ମହୀଶୂର ଅନ୍ତର୍ଗତ ଶ୍ରିଙ୍ଗେରି, ପୂର୍ବ ଉପକୂଳରେ ପୁରୀ, ପଶ୍ଚିମ ଉପକୂଳରେ କାଥିଆବାଡ଼ ଅନ୍ତର୍ଗତ ଦ୍ୱାରକା ଓ ଉତ୍ତରରେ ହିମାଳୟ ମଧ୍ୟରେ ଅବସ୍ଥିତ ବଦ୍ରିନାଥ । ବତିଶ ବର୍ଷ ବୟସରେ, ଗ୍ରୀଷ୍ମମଣ୍ଡଳୀୟ ଦକ୍ଷିଣର ଏହି ବ୍ରାହ୍ମଣ ହିମାଳୟର ହିମାବୃତ ପ୍ରଦେଶ କେଦାରନାଥରେ ପରଲୋକ ଗମନ କରିଥିଲେ ।

ଗୋଟାଏ ସମୟରେ, ଯାତାୟାତ ଯେବେ ସୁବିଧାଜନକ ନଥିଲା ଏବଂ ପରିବହନ ବ୍ୟବସ୍ଥା ଥିଲା ଅତି ମନ୍ଥର ଓ ଅଧମ, ସେତେବେଳେ ଏହି ବିଶାଳ ଦେଶରେ ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ଶଙ୍କରାଚାର୍ଯ୍ୟଙ୍କ ଏହି ସବୁ ଯାତ୍ରାର ତାତ୍ପର୍ଯ୍ୟ ଅବଶ୍ୟ ରହିଛି । ଏ ସବୁ ଯାତ୍ରାର କଳ୍ପନା, ସବୁଠି ସମପ୍ରକୃତିକ ଲୋକଙ୍କ ସଙ୍ଗେ ସାକ୍ଷାତ୍, ଦେଶରେ ସୁପ୍ରତିଷ୍ଠିତ ପଣ୍ଡିତଙ୍କ ଭାଷା ସଂସ୍କୃତରେ ସେମାନଙ୍କ ସଙ୍ଗେ ଆଳାପ ଆଲୋଚନା—ଏ ସମସ୍ତ ପ୍ରଦର୍ଶିତ କରେ ଯେ ସେହି ଦୂରଅତୀତରେ ମଧ୍ୟ ସାରତଃ ଭାରତର ଗୋଟାଏ ଏକତା ଥିଲା । ଶଙ୍କରଙ୍କ ସମୟରେ କିମ୍ବା ତାଙ୍କର ପୂର୍ବରୁ ଏ ପ୍ରକାର ସ୍ୱଦେଶ ଭ୍ରମଣ କିଛି ନୂତନ କଥା ହୋଇ ନଥିବ । ରାଜନୈତିକ ବିଭାଜନ ସତ୍ତ୍ୱେ ଲୋକେ ଗୋଟାଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ଯାତ୍ରା କରୁଥିଲେ; କେତେ ନବ ନବ ଗ୍ରନ୍ଥ ସେମାନଙ୍କ ସଙ୍ଗେ ଯାତ୍ରା କରୁଥିଲା ଏବଂ ପ୍ରତ୍ୟେକ ନୂତନ ବିଚାର ଅବା ନୂତନ ସିଦ୍ଧାନ୍ତ ସମଗ୍ର ଦେଶରେ ସତ୍ୱର ପ୍ରସାରିତ ହୋଇ ତତ୍ତ୍ୱିକଧର୍ମିକ ଆଳାପ ଓ ବହୁଧା ନିବଷ୍ଟ ବିତର୍କର ବିଷୟବସ୍ତୁ ହୋଇ ଉଠୁଥିଲା । ଶିକ୍ଷିତ ଲୋକଙ୍କ ଭିତରେ ବୌଦ୍ଧିକ ଓ ସାଂସ୍କୃତିକ ଜୀବନର ସ୍ତର ସମାନ ଥିଲା କେବଳ ନୁହେଁ; ବରଂ ସାଧାରଣ ଲୋକେ ମଧ୍ୟ, ସମଗ୍ର ଦେଶରେ ପରିବ୍ୟାପ୍ତ, ପୁରାଣ ପ୍ରସିଦ୍ଧ ତୀର୍ଥସ୍ଥାନମାନଙ୍କୁ ବରାବର ଯାତ୍ରା କରୁଥିଲେ । ଏପରିଭାବରେ, ଗୋଟାଏ ପ୍ରଦେଶରୁ ଅନ୍ୟ ପ୍ରଦେଶକୁ ଯିବା, ବିଭିନ୍ନ ପ୍ରଦେଶର ଲୋକଙ୍କ ସଙ୍ଗେ ମିଳାମିଶା କରିବା, ଏକ-ଦେଶ ଓ ଏକ-ସଂସ୍କୃତିର ଅବଧାରଣାକୁ ନିଶ୍ଚିତ ଭାବରେ ପ୍ରଗାଢ଼ କରିଥିବ । ଏ ପ୍ରକାର ପର୍ଯ୍ୟଟନ ଉଚ୍ଚବର୍ଗର ଲୋକଙ୍କ ଭିତରେ କେବଳ ଆବଦ୍ଧ ନଥିଲା; ତୀର୍ଥଯାତ୍ରୀଙ୍କ ଭିତରେ ସବୁ ଶ୍ରେଣୀ ଓ ସବୁ ବର୍ଣ୍ଣର ନରନାରୀ ଥିଲେ । ଜନସାଧାରଣଙ୍କ ମନରେ ଏ ସବୁ ତୀର୍ଥାଟନର ଧର୍ମଗତ ତାତ୍ପର୍ଯ୍ୟ ଯାହା ହୋଇପାରୁନା କାହିଁକି, ଆଜି ଭଳି ସେତେବେଳେ ମଧ୍ୟ ଏ ସବୁ ଯାତ୍ରାକୁ କର୍ମ-ବିରତିର ଆନନ୍ଦ, ଚିତ୍ତ-ବିନୋଦନର ସୁଯୋଗ ଓ ଦେଶର ବିଭିନ୍ନ ଅଞ୍ଚଳ ପରିଦର୍ଶନ ଭାବରେ ଗ୍ରହଣ କରାଯାଉଥିଲା । ପ୍ରତ୍ୟେକ ତୀର୍ଥସ୍ଥାନରେ ଭାରତର ସବୁ ଅଞ୍ଚଳର କିଛି ନା କିଛି ଲୋକ ବସବାସ କରି ରହିଥିଲେ । ସେମାନଙ୍କର ପ୍ରଥା, ପରିଚ୍ଛଦ ଓ ଭାଷା ର ବିବିଧତା ସତ୍ତ୍ୱେ ସେମାନେ ପରସ୍ପର ଭିତରେ ଥିବା ସେହି ବନ୍ଧନ ପ୍ରତି ବରାବର ସଚେତନ ଥିଲେ; ଯାହା ସେମାନଙ୍କୁ ଭାରତର ବିଭିନ୍ନ ସ୍ଥାନରୁ ଆକର୍ଷିତ କରି ଆଣି ଗୋଟାଏ ସ୍ଥାନରେ ଠୁଳ

କରିଥିଲା । ଉତ୍ତର-ଦକ୍ଷିଣ ଭାଷା ପାର୍ଥକ୍ୟ ସୁଦ୍ଧା ସେମାନଙ୍କ ଭିତରେ ସମ୍ପର୍କ ସ୍ଥାପନର ବଡ଼ ପ୍ରତିବନ୍ଧକ ହୋଇ ନ ଥିଲା । ସେତେବେଳେ ଯେ ପରିସ୍ଥିତି ଏ ପ୍ରକାର ଥିଲା, ସେ ବିଷୟରେ ଶଙ୍କର ନିଃସନ୍ଦେହରେ ସମ୍ପୂର୍ଣ୍ଣ ଭାବରେ ଅବହିତ ଥିଲେ । ଜାତୀୟ ଏକତା ଓ ଚେତନାର ଏହି ବୋଧରେ କିଛି ଯୋଗ କରିବା ପାଇଁ ଶଙ୍କର ଅବଶ୍ୟ ଚାହିଁଥିବେ । ବୁଦ୍ଧି, ଦର୍ଶନ ଓ ଧର୍ମର ଉଚ୍ଚତର ପ୍ରଦେଶରେ ନିଜକୁ କ୍ରିୟାଶୀଳ ରଖି ସମଗ୍ର ଦେଶରେ ଚିନ୍ତାର ଏକ ବୃହତ୍ତର ଏକତା ସମ୍ପାଦନ ନିମନ୍ତେ ସେ ପ୍ରୟାସ କଲେ । ଜନସାଧାରଣଙ୍କ ସ୍ତରରେ ମଧ୍ୟ ନାନା ଭାବରେ କାର୍ଯ୍ୟ କରି ସେ ବହୁତ କିଛି ଅନ୍ଧବିଶ୍ୱାସର ବିଲୋପସାଧନ କଲେ ଏବଂ ନିଜ ଦର୍ଶନ-ମନ୍ଦିରର ଦ୍ୱାର ସେମାନଙ୍କ ପାଇଁ ଉନ୍ମୁକ୍ତ ରଖିଲେ ଯେଉଁମାନଙ୍କର ସେଥିରେ ପ୍ରବେଶ କରିବାର ଯୋଗ୍ୟତା ଥିଲା । ଦେଶର ଉତ୍ତର, ଦକ୍ଷିଣ, ପୂର୍ବ ଓ ପଶ୍ଚିମରେ ଚାରିଗୋଟି ମହାନ୍ ମଠ ସ୍ଥାପନ କରି ସଂସ୍କୃତି ଦିଗରୁ ଭାରତର ଏକତ୍ୱ ଧାରଣାକୁ ପ୍ରୋତ୍ସାହିତ କରିବା ସେ ଯେ ଚାହିଁଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଏହି ଚାରିଟି ସ୍ଥାନ ଶଙ୍କରଙ୍କ ପୂର୍ବରୁ ବି ତୀର୍ଥକ୍ଷେତ୍ର ଭାବରେ ସୁବିଦିତ ଥିଲା ଏବଂ ଦେଶର ବିଭିନ୍ନ ଅଞ୍ଚଳରୁ ଲୋକେ ସେ ସବୁ ସ୍ଥାନକୁ ଯାତ୍ରା କରୁଥିଲେ; କିନ୍ତୁ ଶଙ୍କରଙ୍କ ସାଧନା-ବଳରେ ଏହି ଚାରିଗୋଟି ତୀର୍ଥସ୍ଥାନ ଚାରିଧାମରେ ପରିଣତ ହେଲା ।

ପ୍ରାଚୀନକାଳର ଭାରତୀୟମାନେ ସେମାନଙ୍କର ତୀର୍ଥକ୍ଷେତ୍ର ନିମନ୍ତେ କି ଚମତ୍କାର ସ୍ଥାନ ସବୁ ନିରୂପଣ କରି ନଥିଲେ ! ଏ ଭଳି ପ୍ରତ୍ୟେକ କ୍ଷେତ୍ର ପ୍ରାୟଶଃ ରମଣୀୟ ପ୍ରକୃତି ଦ୍ୱାରା ପରିବେଷ୍ଟିତ । କାଶ୍ମୀରରେ ବରଫାବୃତ ଅମରନାଥ ଗୁହା, ଦକ୍ଷିଣ ଭାରତରେ କୁମାରିକା ଅନ୍ତରୀପ ନିକଟସ୍ଥ ରାମେଶ୍ୱରମ୍‌ର କନ୍ୟାକୁମାରୀ ମନ୍ଦିର; ଗଙ୍ଗା-ପ୍ରସନ୍ନ ବାରାଣସୀ, ହିମାଳୟ ସାନୁଦେଶରେ ହରଦ୍ୱାର ଯେଉଁଠି ବନ୍ଧୁର ପାର୍ବତ୍ୟ ଉପତ୍ୟକା ପାର ହୋଇ ଗଙ୍ଗା ଭାରତର ସମତଳଭୂମିକୁ ପ୍ରବାହିତ ହେଉଛି; ପ୍ରୟାଗ ବା ଆଲହାବାଦ ଯେଉଁଠି ଗଙ୍ଗା, ଯମୁନା ସଙ୍ଗମ ଘଟିଛି; ଯମୁନାକୂଳର ମଥୁରା ଓ ବୃନ୍ଦାବନ ଯାହାକୁ କେନ୍ଦ୍ର କରି କୃଷ୍ଣଲୀଳାର କେତେ କିଂବଦନ୍ତୀ ଗଢ଼ି ଉଠିଛି ଏବଂ ବୁଦ୍ଧଗୟା ଯେଉଁଠି ଗୌତମ ବୁଦ୍ଧତ୍ୱ ଲାଭ କରିଥିଲେ । ଦକ୍ଷିଣ ଭାରତରେ ମଧ୍ୟ ଏପରି ବହୁତ ତୀର୍ଥ କ୍ଷେତ୍ର ଅଛି । ବହୁ ପୁରାତନ ମନ୍ଦିର, ବିଶେଷତଃ ଦକ୍ଷିଣର ମନ୍ଦିରମାନଙ୍କରେ କଳା ଓ ଭାସ୍କର୍ଯ୍ୟର ବହୁ ବିଖ୍ୟାତ ଓ ମନୋହର ସ୍ମାରକ ଚିହ୍ନ ସବୁ ରହିଛି । ଅଧିକାଂଶ ତୀର୍ଥ କ୍ଷେତ୍ର ପରିଦର୍ଶନ ଫଳରେ ଭାରତୀୟ କଳାର ଅନ୍ତର୍ନିହିତ ଭାବ ମନରେ ପ୍ରକଟିତ ହୁଏ ।

କୁହାଯାଇଛି ଯେ ଶଙ୍କର ଭାରତରେ ସୁପରିବ୍ୟାପ୍ତ ବୌଦ୍ଧଧର୍ମର ଅବସାନ ଘଟାଇବା ଦିଗରେ ସହାୟକ ହୋଇଥିଲେ ଏବଂ ତଦନନ୍ତର ବ୍ରାହ୍ମଣ୍ୟବାଦ ତାକୁ ଭ୍ରାତୃତ୍ୱର ଆଲିଙ୍ଗନରେ ଆପଣାର କରିନେଲା; କିନ୍ତୁ ପ୍ରକୃତ ପକ୍ଷେ, ଶଙ୍କରଙ୍କ ଅଭ୍ୟୁଦୟ ପୂର୍ବରୁ ହିଁ ଭାରତରେ ବୌଦ୍ଧଧର୍ମର ପରିସର ସଙ୍କୁଚିତ ହୋଇ ସାରିଥିଲା । ଶଙ୍କରଙ୍କ ପ୍ରତିପକ୍ଷ ବ୍ରାହ୍ମଣମାନେ ତାଙ୍କୁ ଜଣେ ଛଦ୍ମବେଶୀ ବୌଦ୍ଧ ବୋଲି କହିଥାନ୍ତି । ଏ କଥା ସତ୍ୟ ଯେ ଶଙ୍କରଙ୍କ ଉପରେ ବୌଦ୍ଧଧର୍ମର ପ୍ରଭାବ ଭଲଭାବରେ ପଡ଼ିଥିଲା ।

## ୧୪. ଭାରତ ଓ ଚୀନ

ବୌଦ୍ଧଧର୍ମ ଜରିଆରେ ଚୀନ ଓ ଭାରତ ପରସ୍ପରର ନିକଟବର୍ତ୍ତୀ ହେଲେ ଏବଂ ଉଭୟ ଦେଶ ମଧ୍ୟରେ ସମ୍ପର୍କର ବିକାଶ ଘଟିଲା । ଅଶୋକଙ୍କ ରାଜତ୍ୱ ପୂର୍ବରୁ ଏ ପ୍ରକାର ସମ୍ପର୍କ ସ୍ଥାପିତ ହୋଇଥିଲା କି ନା, ଆମେ ଜାଣୁନା : ସମ୍ଭବତଃ, କିଛି ସାଗରବାହୀ ବାଣିଜ୍ୟ ଚାଲିଥିଲା; କାରଣ ରେଶମ ବସ୍ତ୍ର ଚୀନରୁ ହିଁ ଭାରତକୁ ଆମଦାନୀ ହେଉଥିଲା । ତଥାପି କେଉଁ ଦୂର ଅତୀତରେ, ଉଭୟ ଦେଶ ମଧ୍ୟରେ ସ୍ଥଳପଥରେ ଯୋଗାଯୋଗ ଓ ଅଭିପ୍ରସ୍ଥାଣ ଅବଶ୍ୟ ଘଟିଥିବ; କାରଣ ପୂର୍ବଭାରତର ସୀମାନ୍ତ ଅଞ୍ଚଳରେ ମଙ୍ଗୋଲ ଆକୃତିକ ଚେହେରା ବହୁଳ ଭାବରେ ଦେଖିବାକୁ ମିଳେ । ନେପାଳୀଙ୍କ ଚେହେରାରେ ଏହା ସ୍ପଷ୍ଟ ଭାବରେ ପ୍ରମାଣିତ । ଆସାମ ବା ଅହମରେ (ପୁରାତନ କାମରୂପ) ଓ ବଙ୍ଗ ଭୂମିରେ ଏହା ବହୁଧା ଦୃଷ୍ଟିଗୋଚର ହୁଏ । ଇତିହାସ ଅନୁସରଣ କରି କହିଲେ, ଅବଶ୍ୟ ଅଶୋକଙ୍କ ଧର୍ମପ୍ରଚାରକମାନେ ପଥ ଉନ୍ମୁକ୍ତ କଲେ ଏବଂ ଚୀନରେ ବୌଦ୍ଧଧର୍ମ ଯେବେ ପ୍ରସାର ଲାଭ କଲା, ଭାରତ ଓ ଚୀନ ମଧ୍ୟରେ ହଜାରେ ବର୍ଷ ପର୍ଯ୍ୟନ୍ତ ଅବିଚ୍ଛିନ୍ନ ଭାବରେ ତୀର୍ଥଯାତ୍ରୀ ଓ ବିଦ୍ୱାନ୍‌ମାନଙ୍କ ପର୍ଯ୍ୟଟନ ଚାଲିଲା । ଗୋବୀ ମରୁଭୂମି, ମଧ୍ୟ-ଏସିଆର ପର୍ବତ, ପ୍ରାନ୍ତର ଓ ହିମାଳୟ ଅତିକ୍ରମ କରି ଗୋଟାଏ ଦୀର୍ଘ, ଦୁର୍ଗମ ତଥା ବିପଦସଙ୍କୁଳ ପଥରେ ସେମାନେ ଯାତ୍ରା କରୁଥିଲେ । ବହୁ ଭାରତୀୟ ଓ ଚୀନା ଏହି ଯାତ୍ରାପଥରେ ଜୀବନ ହରାଇଚନ୍ତି ଏବଂ ଗୋଟାଏ ବିବରଣୀରୁ ଜଣାଯାଏ ଯେ ଏକ ସମୟରେ ଗୋଟାଏ ତୀର୍ଥଯାତ୍ରୀ ଦଳର ଶତକଡ଼ା ନବେ ଅଂଶ ଲୋକ ଜୀବନ ହରାଇଥିଲେ । ଅନେକେ ଏଭଳି ଦୀର୍ଘ ଦୁର୍ଗମ ପଥ ଅତିକ୍ରମ କରି ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପରେ ନିଜ ଦେଶକୁ ଫେରିଯିବା ପାଇଁ ଆଉ ମନ ବଳାଇ ନାହାନ୍ତି । ଅଧିକତର ନିରାପଦ ନ ହେଲେ ସୁଦ୍ଧା, ସମ୍ଭବତଃ ନାତିଦୀର୍ଘ, ଆଉ ଏକ ପଥ ମଧ୍ୟ ଥିଲା : ଏହା ହେଉଚି ଇଣ୍ଡୋ-ଚୀନ, ଜାଭା, ସୁମାତ୍ରା, ମାଲୟ ଓ ନିକୋବର ଦ୍ୱୀପପୁଞ୍ଜ ଦେଇ ଯିବା ଜଳପଥ । ଏହି ପଥ ମଧ୍ୟ ସେତେଭଳି ଅବହେଳିତ ହୋଇନଥିଲା ଏବଂ କେବେ କେବେ କୌଣସି ତୀର୍ଥଯାତ୍ରୀ ସ୍ଥଳପଥରେ ଯାତ୍ରାକରି ଜଳପଥରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରୁଥିଲେ । ବୌଦ୍ଧଧର୍ମ ଓ ଭାରତୀୟ ସଂସ୍କୃତି ସମଗ୍ର ମଧ୍ୟ-ଏସିଆ ଓ ଇଣ୍ଡୋନେସିଆର କେତେକ ଅଞ୍ଚଳରେ ବିସ୍ତାରଲାଭ କରିଥିଲା ଏବଂ ଏହି ସବୁ ବିଶାଳ ଅଞ୍ଚଳରେ ବୌଦ୍ଧ ବିହାର ଓ ଶିକ୍ଷା-କେନ୍ଦ୍ରମାନ ବହୁ ସଂଖ୍ୟାରେ ସ୍ଥାପିତ ହୋଇଥିଲା । ଭାରତ ଅବା ଚୀନର ପର୍ଯ୍ୟଟକମାନେ ସ୍ଥଳ ଅବା ଜଳ ଯେ କେଉଁ ପଥରେ ଯାତ୍ରାକଲେ ମଧ୍ୟ କଥିତ ବିହାର ଓ ଶିକ୍ଷାକେନ୍ଦ୍ର-ମାନଙ୍କରେ ସମାଦର ଓ ଆଶ୍ରୟ ଲାଭ କରିଥିଲେ । କେବେ କେବେ, ଚୀନରୁ ଭାରତକୁ ଆସୁଥିବା ବିଦ୍ୱାନ୍‌ମାନେ ପଥ ମଧ୍ୟରେ ଇଣ୍ଡୋନେସିଆର କୌଣସି ଭାରତୀୟ ଉପନିବେଶରେ କେତେ ମାସ ଅଟକି ଯାଇ ସଂସ୍କୃତ ଭାଷା ଶିକ୍ଷା କରିଥାନ୍ତି । କାରଣ ଜ୍ଞାନର ବିନିମୟ ନିମନ୍ତେ ସଂସ୍କୃତ ଭାଷା ଭାରତରେ ଅନିବାର୍ଯ୍ୟ ଥିଲା । ଖ୍ରୀ: ୬୭ରେ ଯେଉଁ ଭାରତୀୟ ବିଦ୍ୱାନ୍ ଚୀନ ସମ୍ରାଟ୍ ମିଙ୍ଗ୍-ତିଙ୍କ ରାଜତ୍ୱ କାଳରେ ଓ ଖୁବ୍ ସମ୍ଭବ ତାଙ୍କର ନିମନ୍ତ୍ରଣକ୍ରମେ ଚୀନରେ ଉପନୀତ ହୋଇଥିବା ଐତିହାସିକ ତଥ୍ୟପତ୍ରରୁ ଜଣାଯାଏ, ତାଙ୍କର ନାମ ହେଉଚି କାଶ୍ୟପ ମାତଙ୍ଗ । ଚୀନର ଲୋ ନଦୀ ତୀରରେ ଲୋ-ୟାଙ୍ଗ୍‌ରେ ସେ ବସତି କରିଥିଲେ । ଧର୍ମରକ୍ଷ ବି

ତାଙ୍କ ସାଥିରେ ଯାଇଥିଲେ । ପରବର୍ତ୍ତୀକାଳରେ ଯେଉଁ ଭାରତୀୟ ବିଦ୍ୱାନ୍‌ମାନେ ଚୀନରେ ପହଞ୍ଚିଥିଲେ ସେମାନଙ୍କ ଭିତରୁ ଉଲ୍ଲେଖଯୋଗ୍ୟ କେତୋଟି ନାମ ଦେଉଛି : ବୁଦ୍ଧଭଦ୍ର, ଜିନଭଦ୍ର, କୁମାରଜୀବ, ପରମାର୍ଥ, ଜିନଗୁପ୍ତ ଓ ବୋଧିଧର୍ମ । ଏମାନେ ପ୍ରତ୍ୟେକେ ନିଜ ସାଥିରେ କିଛି ଶିଷ୍ୟ ଅବା ଭିକ୍ଷୁ ଧରି ଯାଇଥିଲେ । କୁହାଯାଏ ଯେ ଏକସମୟରେ (ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ) ଚୀନର ଲୋ-ୟାଙ୍ଗ୍ ପ୍ରଦେଶରେ ଭାରତୀୟ ପରିବାର ଓ ବୌଦ୍ଧ ଭିକ୍ଷୁଙ୍କ ସଂଖ୍ୟା ଥିଲା ଯଥାକ୍ରମେ ଦଶ ହଜାର ଓ ତିନି ହଜାର ।

ଏହିସବୁ ଭାରତୀୟ ବିଦ୍ୱାନ୍, ଯେଉଁମାନେ ଚୀନ ଯାତ୍ରା କରୁଥିଲେ, ଗଲାବେଳେ ଭାରତରୁ ବହୁ ସଂସ୍କୃତ ପାଣ୍ଡୁଲିପି ସାଥିରେ ନେଇ ଯାଇଥିଲେ । ପରେ ସେ ସବୁ ଚୀନା ଭାଷାରେ ଅନୁବାଦ କରିଥିଲେ କେବଳ ନୁହେଁ, ସେମାନଙ୍କ ଭିତରୁ କେହି କେହି ଚୀନା ଭାଷାରେ ମଧ୍ୟ ଗ୍ରନ୍ଥମାନ ପ୍ରଣୟନ କରିଥିଲେ । କାବ୍ୟ-କବିତା ସମେତ ଚୀନା ସାହିତ୍ୟକୁ ଏମାନଙ୍କର ଅବଦାନ ନଗଣ୍ୟ କୁହାଯାଇନପାରେ । କୁମାରଜୀବ ଖ୍ରୀ: ୪୦୧ରେ ଚୀନ ଯାଇଥିଲେ । ସେ ଥିଲେ ଜଣେ ବହୁପ୍ରସୂ ପ୍ରଣେତା ଓ ବିଭିନ୍ନ ବିଷୟ ଉପରେ ଲିଖିତ ତାଙ୍କର ସତ୍ତରୀକୋଟି ଗ୍ରନ୍ଥ ଆମକୁ ମିଳିଛି । ଚୀନା ଭାଷାରେ ତାଙ୍କର ରଚନାଶୈଳୀ ପାଣ୍ଡିତ୍ୟପୂର୍ଣ୍ଣ ଥିବା ଅନୁମିତ ହୁଏ । ଭାରତୀୟ ମନୀଷୀ ନାଗାର୍ଜୁନଙ୍କ ଜୀବନୀ ସେ ଚୀନା ଭାଷାରେ ଅନୁବାଦ କରିଥିଲେ । ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଜିନଗୁପ୍ତ ଚୀନ ଦେଶକୁ ଯାଇଥିଲେ । ସେ ସତତରିଶଟି ମୂଳ ସଂସ୍କୃତ ଗ୍ରନ୍ଥ ଚୀନା ଭାଷାରେ ଅନୁବାଦ କରିଥିଲେ । ତାଙ୍କର ଜ୍ଞାନ ଓ ପ୍ରତିଭା ଏତେ ଭାବରେ ଆଦୃତ ହୋଇଥିଲା ଯେ ତାଙ୍ଗ୍-ବଂଶର ଜଣେ ସମ୍ରାଟ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

ଭାରତ ଓ ଚୀନ ମଧ୍ୟରେ ବିଦ୍ୱାନ୍‌ମାନଙ୍କ ଗମନାଗମନ ଚାଲିଥିଲା ଏବଂ ବହୁ ଚୀନା ବିଦ୍ୱାନ୍ ଭାରତକୁ ଆସିଥିଲେ । ଏମାନଙ୍କ ଭିତରୁ ଯେଉଁ ବିଖ୍ୟାତ ପରିବ୍ରାଜକମାନେ ନିଜ ନିଜ ଯାତ୍ରା ବୃତ୍ତାନ୍ତ ଲେଖି ରଖିଯାଇଛନ୍ତି ସେମାନେ ହେଉଛନ୍ତି ଫାହିୟାନ୍ (ଫାଁ ସିୟାଂ), ସୁଙ୍ଗ୍-ୟୁନ୍, ହୁଏନ୍‌ସାଂ ଓ ଇ-ସିଙ୍ଗ୍ । ଫାହିୟାନ୍ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଭାରତକୁ ଆସିଥିଲେ । ନିଜ ଦେଶରେ ସେ ଥିଲେ କୁମାରଜୀବଙ୍କ ଶିଷ୍ୟ । ଭାରତ ଯାତ୍ରାକଲା ପୂର୍ବରୁ ଶିଷ୍ୟ ଗୁରୁଙ୍କ ପାଖରୁ ବିଦାୟ ନେବା ପାଇଁ ଯାଇଥିଲାବେଳେ କୁମାରଜୀବ ତାଙ୍କୁ ଯାହା କହିଥିଲେ ତାର ଏକ ଚିତ୍ତାକର୍ଷକ ବିବରଣୀ ଦେଖିବାକୁ ମିଳେ । ଭାରତ ଅବସ୍ଥାନ କାଳରେ ସମସ୍ତ ସମୟ ଧର୍ମଗତଜ୍ଞାନ ସଂଗ୍ରହ କରିବାରେ କେବଳ ବିନିଯୋଗ ନକରି ପ୍ରାୟ ପୁଙ୍ଖାନୁପୁଙ୍ଖ ଭାବରେ ଭାରତୀୟଙ୍କ ଜୀବନ ଓ ଆଚରଣ ଅଧ୍ୟୟନ କରିବା ପାଇଁ କୁମାରଜୀବ ପ୍ରିୟ ଶିଷ୍ୟ ଫାହିୟାନଙ୍କୁ ଉପଦେଶ ଦେଇଥିଲେ; କାରଣ ତାହାହେଲେ କେବଳ ଚୀନ ପକ୍ଷରେ ଭାରତକୁ ଓ ସେଠାରୁ ଆସିଥିବା ବୌଦ୍ଧ ଭିକ୍ଷୁମାନଙ୍କୁ ଭଲ ଭାବରେ ଜାଣିବା ସହଜ ହେବ । ଫାହିୟାନ୍ ପାଟଳୀପୁତ୍ର ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିଥିଲେ ।

ଯେଉଁ ଚୀନା ପରିବ୍ରାଜକମାନେ ଭାରତକୁ ଆସିଥିଲେ ସେମାନଙ୍କ ଭିତରୁ ହୁଏନ୍‌ସାଂ ବହୁବିଶ୍ରୁତ । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଚୀନ ଦେଶର ତାଙ୍ଗ୍ ରାଜତ୍ୱକାଳରେ ଓ ଉତ୍ତର

ଭାରତରେ ହର୍ଷବର୍ଦ୍ଧନ ଯେତେବେଳେ ଏକ ବିଶାଳ ସାମ୍ରାଜ୍ୟର ଅଧିପତି ଥିଲେ ହୁଏନ୍‌ସାଂ ଭାରତକୁ ଆସିଥିଲେ । ସ୍ଥଳପଥରେ ଗୋବି ମରୁଭୂମି ପାର ହୋଇ, ତୁର୍ଫାନ୍ ଓ କୁଚ୍ଚ, ତାସ୍‌କନ୍ଦ ଓ ସମରକନ୍ଦ, ବଲ୍‌ଖ, ଖୋଟାନ୍ ଓ ୟାରକନ୍ଦ ଦେଇ ହିମାଳୟ ଲଙ୍ଘନ କରି ହୁଏନ୍-ସାଂ ଭାରତକୁ ଆସିଥିଲେ । ଯାତ୍ରାକାଳରେ, ସେ କିପରି ଦୁଃସାହସିକତା ସହକାରେ ବହୁବାର ବିପଦରୁ ଉଦ୍ଧାର ହୋଇଥିଲେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ, ମଧ୍ୟ-ଏସିଆର ବୌଦ୍ଧ ରାଜା ଓ ବୌଦ୍ଧ ବିହାରମାନଙ୍କ ବିଷୟରେ ଏବଂ ସେ ସମୟର ତୁର୍କିମାନେ କିଭଳି ନୈଷ୍ଠିକ ବୌଦ୍ଧ ଥିଲେ, ଜଣାଇଚନ୍ତି । ସର୍ବତ୍ର ସମ୍ମାନିତ ଓ ଆଦୃତ, ସେ ସମଗ୍ର ଭାରତ ପରିବ୍ରଜନ କରିଥିଲେ ଏବଂ ବିଭିନ୍ନ ସ୍ଥାନ ଓ ଜନସାଧାରଣଙ୍କ ବିଷୟରେ ସୂକ୍ଷ୍ମ ବିବରଣୀ, କେତେ ମନୋରଞ୍ଜକ ତଥା ଅଦ୍ଭୁତ କାହାଣୀ ଲେଖିଯାଇଚନ୍ତି । ପାଟଳିପୁତ୍ରଠାରୁ ଅନତିଦୂରରେ ଅବସ୍ଥିତ, ବିହୁମୁଖୀ ଶାସ୍ତ୍ରଚର୍ଚ୍ଚା ନିମନ୍ତେ ପ୍ରସିଦ୍ଧ, ନାଳନ୍ଦା ବିଶ୍ୱବିଦ୍ୟାଳୟରେ ସେ କେତେବର୍ଷ ଅତିବାହିତ କରିଥିଲେ । କୁହାଯାଇଚି ଯେ ଦେଶର ସର୍ବାଞ୍ଚଳରୁ ଆଗତ ପ୍ରାୟ ଦଶହଜାର ବିଦ୍ୟାର୍ଥୀ ଓ ଭିକ୍ଷୁ ବିଶ୍ୱବିଦ୍ୟାଳୟ ପରିସର ଭିତରେ ବାସ କରୁଥିଲେ । ନାଳନ୍ଦାରୁ ହୁଏନ୍‌ସାଂ ନ୍ୟାୟାଚାର୍ଯ୍ୟ ଉପାଧି ଲାଭ କରିଥିଲେ ଓ ପରେ ସେଠାରେ ଉପାଧ୍ୟକ୍ଷ ଆସନ ଗ୍ରହଣ କଲେ ।

ହୁଏନ୍‌ସାଂଙ୍କ ପ୍ରଣୀତ ଗ୍ରନ୍ଥ 'ସି-ୟୁ-କୀ' ଅର୍ଥାତ୍ ପଶ୍ଚିମ ରାଜ୍ୟ (ଭାରତ) ପ୍ରସଙ୍ଗ ଏକ ମନୋରଞ୍ଜକ ଗ୍ରନ୍ଥ । ସେତେବେଳେ ସମୟରେ ଚୀନର ରାଜଧାନୀ ସି-ଆନ୍-ଫୁ ଯେତେବେଳେ କଳା ଓ ବିଦ୍ୟାଚର୍ଚ୍ଚାର କେନ୍ଦ୍ର ଥିଲା ଏବଂ ସମଗ୍ର ଚୀନ ଯେତେବେଳେ ସଭ୍ୟତାର ଚରମୋତ୍କର୍ଷ ଲାଭ କରିଥିଲା, ସେଠାରୁ ଆସିଥିବାରୁ ଭାରତର ତାତ୍କାଳିକ ପରିସ୍ଥିତି ସମ୍ପର୍କରେ ହୁଏନ୍-ସାଂଙ୍କ ବର୍ଣ୍ଣନା ଓ ମନ୍ତବ୍ୟ ବାସ୍ତବିକ ମୂଲ୍ୟବାନ୍ । ଭାରତର ଶିକ୍ଷା ପ୍ରଣାଳୀ ସମ୍ପର୍କରେ କହିବାକୁ ଯାଇ ସେ ଲେଖିଚନ୍ତି ଯେ ବାଲ୍ୟବୟସରୁ ବିଦ୍ୟାରମ୍ଭ କରାଯାଏ ଏବଂ ବିଦ୍ୟାର୍ଥୀ କ୍ରମଶଃ ବିଶ୍ୱବିଦ୍ୟାଳୟ ସ୍ତରରେ ଉପନୀତ ହୁଏ । ବିଶ୍ୱବିଦ୍ୟାଳୟରେ ପାଞ୍ଚଗୋଟି ବିଷୟରେ ଯଥା (୧) ବ୍ୟାକରଣ, (୨) କଳା, ବିଜ୍ଞାନ ଓ ହସ୍ତଶିଳ୍ପ, (୩) ଚିକିତ୍ସା-ବିଜ୍ଞାନ, (୪) ନ୍ୟାୟ-ଶାସ୍ତ୍ର (୫) ଦର୍ଶନ ଶିକ୍ଷା ଦିଆଯାଏ । ଭାରତୀୟଙ୍କ ବିଦ୍ୟାନୁରାଗ ଲକ୍ଷ୍ୟକରି ସେ ଆଚମ୍ଭିତ ହୋଇଥିଲେ । ଶିକ୍ଷକମାନେ ପ୍ରାୟଶଃ ଭିକ୍ଷୁ ଓ ପୁରୋହିତ ଶ୍ରେଣୀର ହୋଇଥିବାରୁ ପ୍ରାଥମିକ ଶିକ୍ଷା ସମଗ୍ର ଦେଶରେ ବିପୁଳ ପ୍ରସାର ଲାଭ କରିଥିଲା । ଜନସାଧାରଣଙ୍କ ବିଷୟରେ ସେ କହନ୍ତି : "ସାଧାରଣ ଲୋକେ ସ୍ୱଭାବତଃ ଲଘୁମାନସିକ ହେଲେ ସୁଦ୍ଧା ନ୍ୟାୟବାନ୍ ଓ ମର୍ଯ୍ୟାଦାବାନ୍ ଅଟନ୍ତି । ଟଙ୍କା ପଇସା ବ୍ୟାପାରରେ ସେମାନେ ଧୂର୍ତ୍ତ ନୁହନ୍ତି ଏବଂ ନ୍ୟାୟ ଦେବାବେଳେ ସବୁ ଦିଗରୁ ନିରପେକ୍ଷ ଭାବରେ ବିଚାର କରିଥାନ୍ତି । ଆଚରଣରେ ସେମାନେ ଶଠ ଅବା କପଟୀ ନୁହନ୍ତି ଏବଂ ପ୍ରତିଶ୍ରୁତି ବରାବର ରକ୍ଷାକରନ୍ତି । ସେମାନଙ୍କର ଶାସନ ପରିଚାଳନାରେ ଅଦ୍ଭୁତ ସଦାଚାର ପରିଲକ୍ଷିତ ହୁଏ, କିନ୍ତୁ ଆଚରଣରେ ସେମାନେ ବିଶେଷ ନମ୍ର ଓ ମଧୁରାଳାପୀ । ଦେଶରେ ଅପରାଧୀ ଅବା ବିଦ୍ରୋହୀଙ୍କ ସଂଖ୍ୟା ପ୍ରାୟ ନଗଣ୍ୟ ଓ ସେମାନଙ୍କର ଉପଦ୍ରବ୍ୟ ମଧ୍ୟ ତଦ୍ରୂପ ।" ସେ ଆହୁରି କହନ୍ତି : "ପ୍ରଶାସନ ବ୍ୟବସ୍ଥା

କେତେକ ଉଦାରନୀତି ଉପରେ ପ୍ରତିଷ୍ଠିତ ହୋଇଥିବାରୁ ସରକାରୀ କର୍ମରେ ସେପରି କିଛି ଜଟିଳତା ନାହିଁ···ଲୋକଙ୍କୁ ବେଠି ବେଗାରି କରିବାକୁ ପଡ଼ୁନାହିଁ···ଏପରି ଭାବରେ, ଲୋକେ କର-ବାଧା ଭୋଗୁନାହାନ୍ତି···ବ୍ୟବସାୟ ବାଣିଜ୍ୟରେ ନିୟୋଜିତ ସୌଦାଗରମାନେ ସୁରୁଖୁରୁରେ ନିଜ ନିଜ ଧନ୍ଦା ଚଳାଇଚନ୍ତି ।"

ହୁଏନ୍ ସାଂ ମଧ୍ୟ-ଏସିଆ ଦେଇ ଯେପରି ଆସିଥିଲେ ସେହି ପଥରେ ହିଁ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ ଏବଂ ବହୁ ପାଣ୍ଡୁଲିପି ସାଥିରେ ନେଇଯାଇଥିଲେ । ତାଙ୍କର ଲିଖିତ ବିବରଣୀରୁ ଖୋରାସନ, ଇରାକ, ମୋସୁଲ ଓ ସିରିଆ ସରହଦ ପର୍ଯ୍ୟନ୍ତ ବୌଦ୍ଧଧର୍ମର ବ୍ୟାପକ ପ୍ରଭାବର ଏକ ସ୍ପଷ୍ଟ ଚିତ୍ର ସଂଗ୍ରହ କରିହୁଏ । ତଥାପି, ଏହା ହେଉଚି ସେହି ସମୟ ଯେବେ କଥିତ ଭୂଖଣ୍ଡରେ ବୌଦ୍ଧଧର୍ମର ପତନ ପ୍ରକ୍ରିୟା ଚାଲିଥିବ ଏବଂ ଏସବୁ ଅଞ୍ଚଳରେ ଅତି ନିକଟରେ ପ୍ରଭାବ ବିସ୍ତାର କରିବା ପାଇଁ, ଆରବ ଦେଶରେ ଇସ୍‌ଲାମ୍‌ଧର୍ମ ମୁଣ୍ଡ ଟେକି ସାରିଥିଲା । ଇରାନୀଙ୍କ ସମ୍ପର୍କରେ ହୁଏନ ସାଂ ଏକ ଚିତ୍ତାକର୍ଷକ କଥା କହିଚନ୍ତି : "ସେମାନେ ବିଦ୍ୟାପ୍ରତି ମୋଟେ ଧ୍ୟାନ ଦିଅନ୍ତି ନାହିଁ; କିନ୍ତୁ କଳା-କର୍ମରେ ସମ୍ପୂର୍ଣ୍ଣ ଭାବରେ ନିଜକୁ ନିୟୋଜିତ ରଖନ୍ତି । ସେମାନେ ଯାହା ତିଆରି କରନ୍ତି; ପଡ଼ୋଶୀ ଦେଶମାନେ ତାହା ଖୁବ୍ ମୂଲ୍ୟବାନ୍ ମଣନ୍ତି ।"

ଇରାନ ସେତେବେଳେ, ସେଥିପୂର୍ବରୁ ଓ ପରେ ମଧ୍ୟ, ଜୀବନର ସୌନ୍ଦର୍ଯ୍ୟ ଓ ଶ୍ରୀ ବୃଦ୍ଧି କରିବା ଦିଗରେ ମନୋନିବେଶ କରିଥିଲା ଏବଂ ତାର ପ୍ରଭାବ ଏସିଆ ମହାଦେଶରେ ବହୁଦୂର ପ୍ରସାର ଲାଭ କରିଥିଲା । ଗୋବୀ ମରୁଭୂମି ତୀରରେ ଅବସ୍ଥିତ କ୍ଷୁଦ୍ର ତଥା ବିଚିତ୍ର ରାଜ୍ୟ ତୁର୍‌ଫାନ୍ ସମ୍ବନ୍ଧରେ ହୁଏନ୍ ସାଂ ଆମକୁ କହିଛନ୍ତି ଏବଂ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ କାର୍ଯ୍ୟ ଯୋଗୁଁ ଅଧୁନା ଆମେ ତାର ସମ୍ପର୍କରେ ଅଧିକ କିଛି ଜାଣିବାକୁ ପାଇଚୁ । ଏହି କ୍ଷୁଦ୍ର ରାଜ୍ୟରେ ବହୁ ସଂସ୍କୃତିର ସମାଗମ ଘଟିଚି ଏବଂ ପରସ୍ପର ଭିତରେ ମିଶ୍ରଣ ଓ ଆଦାନ-ପ୍ରଦାନ ଫଳରେ ଯେଉଁ ସମନ୍ୱୟ ଘଟିଲା ତାହା ଚୀନ, ଭାରତ, ପାରସ୍ୟ ଓ ଏପରିକି ହେଲେନିକ୍ ଧାରାରୁ ମଧ୍ୟ ପ୍ରେରଣା ଲାଭ କରିଥିଲା । ଭାରତ ଓ ପାରସିକ ଭାଷାରୁ ଉତ୍ପନ୍ନ ଏଠାର ଭାଷା ଥିଲା ଇଣ୍ଡୋ-ୟୁରୋପୀୟ ଓ କେତେକ ଦିଗରେ ୟୁରୋପର କେଲଟିକ୍ ଭାଷାମାନଙ୍କ ସଙ୍ଗେ ଏହାର ସାମଞ୍ଜସ୍ୟ ଥିଲା । ଏଠାର ଧର୍ମବିଶ୍ୱାସ ଆସିଥିଲା ଭାରତରୁ; ଜୀବନଯାପନର ପ୍ରଣାଳୀ ଥିଲା ଚୀନା ଢଙ୍ଗର; ପାରସ୍ୟରୁ ଆସିଥିଲା ବହୁତ କିଛି କଳାକୃତି । ରମଣୀୟ ଭାବରେ ନିର୍ମିତ ବୁଦ୍ଧ ତଥା ବିବିଧ ଦେବଦେବୀଙ୍କ ମୂର୍ତ୍ତି ଓ ଭିତ୍ତିଚିତ୍ରର ପରିଚ୍ଛଦ ଥିଲା ଭାରତୀୟ ଓ ଶିରପା ଯାବନିକ । ମସିଏ ଗ୍ରୁସେ କହନ୍ତି, "ଏହିସବୁ ଦେବୀମୂର୍ତ୍ତି ହିନ୍ଦୁ ନମନୀୟତା, ୟୁନାନି ପ୍ରଗଲ୍‌ଭତା ଓ ଚୈନିକ ମନୋହରତାର ଏକ ଶ୍ରୀମନ୍ତ ସମ୍ମିଶ୍ରଣର ପ୍ରତିନିଧିତ୍ୱ କରନ୍ତି ।"

ହୁଏନ୍ ସାଂ ଭାରତ ପର୍ଯ୍ୟଟନ ସାରି ଚୀନ ଫେରିଗଲେ । ଚୀନ ସମ୍ରାଟ ଓ ପ୍ରଜା ତାଙ୍କୁ ସ୍ୱାଗତସମ୍ବର୍ଦ୍ଧନା ଜ୍ଞାପନ କଲେ । ଯେଉଁସବୁ ପାଣ୍ଡୁଲିପି ସେ ଭାରତରୁ ନେଇଥିଲେ ସେସବୁ ଚୀନା ଭାଷାରେ ଅନୁବାଦ କରିବା ଦିଗରେ ଓ ତାଙ୍କର ଯାତ୍ରାବୃତ୍ତାନ୍ତ ଲେଖିବାରେ ସେ ମନୋନିବେଶ କଲେ । ବହୁ ବର୍ଷ ପୂର୍ବେ ସେ ଯେବେ ଭାରତ ପର୍ଯ୍ୟଟନରେ ବାହାରିଲେ

ପ୍ରଚଳିତ ଏକ କିଂବଦନ୍ତୀରୁ ଜଣାଯାଏ, ତାଙ୍ଗ୍-ବଂଶୀୟ ଚୀନ ସମ୍ରାଟ ସ୍ୱହସ୍ତ ପାନପାତ୍ରରେ ମୁଠାଏ ଧୂଳି ମିଶ୍ରିତ କରି ତାଙ୍କ ପାଖକୁ ବଢ଼ାଇଲାବେଳେ କହିଥିଲେ : "ତୁମେ ଏହା ପାନ କରିଥିବା ଭଲ; କାରଣ ଆମକୁ ଏକଥା କ'ଣ କୁହାଯାଇନି ଯେ ଜନ୍ମଭୂମିର ମୁଠାଏ ଧୂଳି ହଜାର ହଜାର ମହଣ ବିଦେଶୀ ସୁନା ଅପେକ୍ଷା ଅଧିକ ମୂଲ୍ୟବାନ ?"

ହୁଏନ୍ ସାଂଙ୍କ ଭାରତ ପରିଦର୍ଶନ ଏବଂ ଚୀନ ଓ ଭାରତ ଉଭୟ ଦେଶରେ ତାଙ୍କ ଯେଉଁଭଳି ସମ୍ମାନ ଓ ସମାଦର ମିଳିଥିଲା ତାର ଫଳ ସ୍ୱରୂପ ଉଭୟ ଦେଶର ଶାସକଙ୍କ ମଧ୍ୟରେ ରାଜନୈତିକ ସମ୍ପର୍କ ସ୍ଥାପିତ ହେଲା । କାନ୍ୟକୁବ୍ଜର ଅଧୀଶ୍ୱର ହର୍ଷବର୍ଦ୍ଧନ ଓ ତାଙ୍ଗ୍-ସମ୍ରାଟ ପରସ୍ପର ଭିତରେ ରାଜଦୂତ ବିନିମୟ କଲେ । ହୁଏନ୍ ସାଂ ନିଜେ ବି ଭାରତ ସଙ୍ଗେ ସମ୍ପର୍କ ରକ୍ଷା କରିଥିଲେ, ଭାରତର ବନ୍ଧୁମାନଙ୍କ ସଙ୍ଗେ ତାଙ୍କର ପତ୍ରାଳାପ ଚାଲିଥିଲା ଏବଂ ନାନା ପାଣ୍ଡୁଲିପି ତାଙ୍କ ପାଖରେ ପହଞ୍ଚୁଥିଲା । ସଂସ୍କୃତରେ ଲିଖିତ ଦୁଇଟି ଚିତ୍ତାକର୍ଷକ ଚିଠି ଚୀନରେ ସଂରକ୍ଷିତ ହୋଇଛି । ଏଥିରୁ ଗୋଟିଏ ଚିଠି ଖ୍ରୀଷ୍ଟୀୟ ୬୫୪ ଅବ୍ଦରେ ଜଣେ ଭାରତୀୟ ବୌଦ୍ଧ ବିଦ୍ୱାନ୍ ସ୍ଥବିର ପ୍ରଜ୍ଞାଦେବ ହୁଏନ୍ ସାଂଙ୍କୁ ଲେଖିଥିଲେ । ଏହି ଚିଠିରେ ଅଭିବାଦନ ଓ ମିତ୍ରମାନଙ୍କର କୁଶଳ ସମାଚାର ଓ ସେମାନଙ୍କର ସାହିତ୍ୟକର୍ମ ସମ୍ବନ୍ଧେ ଜଣାଇ ସାରି ସେ ଲେଖିଛନ୍ତି : "ତୁମକୁ ଯେ ଆମେ ଭୁଲି ନାହୁଁ ତାର ନିଦର୍ଶନ ସ୍ୱରୂପ ଗୋଟାଏ ଯୋଡ଼ା ଶୁଭ୍ର ବସ୍ତ୍ର ତୁମ ନିମନ୍ତେ ପଠାଇଲୁ । ପଥ ଯେହେତୁ ଦୀର୍ଘ ଓ ଦୁର୍ଗମ ଆମର ଏ ଉପହାର ଅଳ୍ପ ବୋଲି ମନରେ କିଛି ଭାବିବ ନାହିଁ । ଏହା ତୁମେ ଗ୍ରହଣ କରିବ ବୋଲି ଆମର ଅଭିଳାଷ । ଯେଉଁ ସବୁ ସୂତ୍ର ଓ ଶାସ୍ତ୍ର ତୁମର ଆବଶ୍ୟକ ତାର ଏକ ତାଲିକା ଦୟାପୂର୍ବକ ଆମ ପାଖକୁ ପଠାଅ । ସେସବୁର ନକଲ ବାହାରକରି ତୁମ ନିକଟକୁ ପଠାଇବୁ ।" ହୁଏନ୍ ସାଂ ତାଙ୍କର ଉତ୍ତରରେ କହିଛନ୍ତି : "ଅଧୁନା ଭାରତରୁ ପ୍ରତ୍ୟାଗତ ଜଣେ ରାଜଦୂତଙ୍କ ପାଖରୁ ଶୁଣିବାକୁ ପାଇଲି ଯେ ମହାନ୍ ଆଚାର୍ଯ୍ୟ ଶୀଳଭଦ୍ର ଆଉ ଇହଜଗତରେ ନାହାନ୍ତି । ଏହି ସମ୍ବାଦ ମତେ ଅସୀମ ଦୁଃଖରେ ଅଭିଭୂତ କରିଛି ।... ଯେଉଁ କେତେକ ସୂତ୍ର ଓ ଶାସ୍ତ୍ର ମୁଁ, ହୁଏନ୍ ସାଂ, ସାଥିରେ ଆଣିଥିଲି ସେଥିରୁ ଯୋଗାଚାର୍ଯ୍ୟ-ଭୂମି ଶାସ୍ତ୍ର ଓ ଅନ୍ୟ କେତେକ ଗ୍ରନ୍ଥ ସର୍ବମୋଟ ତିରିଶି ଗୋଟି ଗ୍ରନ୍ଥ ମୁଁ ଅନୁବାଦ କରି ସାରିଲିଣି । ବିନୟପୂର୍ବକ ମୁଁ ଆପଣଙ୍କୁ ଜଣାଉଛି ଯେ ପ୍ରତ୍ୟାବର୍ତ୍ତନ କାଳରେ ସିନ୍ଧୁନଦୀ ପାରହେଲାବେଳେ ପବିତ୍ର ଗ୍ରନ୍ଥମାନଙ୍କର ଗୋଟାଏ ଗଣ୍ଠିଲି ମୁଁ ହରାଇଲି । ଏହି ପତ୍ର ସଙ୍ଗେ ମୁଁ ବର୍ତ୍ତମାନ କେତେକ ଗ୍ରନ୍ଥର ସୂଚୀ ପଠାଉଛି । ମୋର ଅନୁରୋଧ, ସୁଯୋଗ ପାଇଲେ ଏଗୁଡ଼ିକ ମୋ ପାଖକୁ ପଠାଇବେ । କେତୋଟି ସାମାନ୍ୟ ବସ୍ତୁ ଉପହାର ସ୍ୱରୂପ ପଠାଉଛି । ଦୟାପୂର୍ବକ ଗ୍ରହଣ କରିବେ ।" (୧)

ନାଳନ୍ଦା ବିଶ୍ୱବିଦ୍ୟାଳୟ ସମ୍ପର୍କରେ ହୁଏନ୍ ସାଂ ଆମକୁ ବହୁତ କିଛି ଜଣାଇଛନ୍ତି ଏବଂ ସେ ସମ୍ପର୍କରେ ଅନ୍ୟାନ୍ୟ କେତେକ ବିବରଣୀ ମଧ୍ୟ ରହିଛି । ତଥାପି କେତେବର୍ଷ ପୂର୍ବେ ମୁଁ

---

(୧) ଡକ୍ଟର ପି. ସି. ବାଗ୍‌ଚିଙ୍କ 'ଇଣ୍ଡିଆ ଏଣ୍ଡ୍ ଚାଇନା' ଗ୍ରନ୍ଥରେ ସନ୍ନିବେଶିତ ।

ଯେବେ ସେଠାକୁ ଯାଇ ନାଳନ୍ଦାର ଖନନକାର୍ଯ୍ୟ ଦେଖିଲି, ତାର ବିସ୍ତୃତି ଓ ତାର ଯୋଜନାର ବିଶାଳତା ମତେ ଆଚମ୍ବିତ କଲା । ଏପର୍ଯ୍ୟନ୍ତ ସେଥିର ଏକ ଅଂଶ ମାତ୍ର ଉନ୍ମୋଚନ କରାଯାଇଛି ଏବଂ ଅବଶେଷ ଅଂଶ ଉପରେ ଲୋକେ ବସବାସ କରି ରହିଛନ୍ତି; କିନ୍ତୁ ଯେତିକି ଅଂଶ ଖୋଲାଯାଇଛି, ସେଥିରେ ବଡ଼ ବଡ଼ ଅଙ୍ଗନ ସବୁ ରହିଛି ଯାହାର ଚାରି ଦିଗରେ, କେଉଁ ସମୟରେ, ଶିଳାନିର୍ମିତ ବଡ଼ ବଡ଼ ପ୍ରାସାଦ ନିଶ୍ଚିତ ଘେରିରହିଥିବ ।

ଚୀନରେ ହୁଏନ ସାଂଙ୍କ ମୃତ୍ୟୁ ପରେ ଅନ୍ୟ ଜଣେ ବିଖ୍ୟାତ ଚୀନା ପରିବ୍ରାଜକ ଭାରତ ଆସିଥିଲେ । ଖ୍ରୀଷ୍ଟୀୟ ୬୭୧ ଅବ୍ଦରେ ସେ ଯାତ୍ରାରମ୍ଭ କଲେ ଏବଂ ହୁଗୁଲି ନଦୀ ମୁହାଣର ତାମ୍ରଲିପ୍ତ ବନ୍ଦରରେ ପହଞ୍ଚିବା ପାଇଁ ପ୍ରାୟ ଦୁଇବର୍ଷ ତାଙ୍କୁ ଲାଗିଥିଲା; କାରଣ ସେ ସମୁଦ୍ରପଥରେ ଆସିଥିଲେ ଏବଂ ସଂସ୍କୃତ ଅଧ୍ୟୟନ ନିମନ୍ତେ ଶ୍ରୀଭୋଗ (ସୁମାତ୍ରା ଅନ୍ତର୍ଗତ ଆଜିର ପାଲେମ୍‌ବାଙ୍ଗ୍)ରେ ଅନେକ ମାସ ଅଟକିଯାଇଥିଲେ । ତାଙ୍କର ଏହି ସମୁଦ୍ରଯାତ୍ରାର ଯଥେଷ୍ଟ ତାତ୍ପର୍ଯ୍ୟ ରହିଛି କାରଣ, ଏପରି ହୋଇପାରେ, ସେ ସମୟରେ ମଧ୍ୟ-ଏସିଆର ଅବସ୍ଥା ଉପଦ୍ରୁତ ଥିଲା ଓ ରାଜନୈତିକ ପରିବର୍ତ୍ତନମାନ ଘଟୁଥିଲା । ପଥ ମଧ୍ୟରେ ଯେଉଁସବୁ ବନ୍ଧୁଭାବାପନ୍ନ ବୌଦ୍ଧ-ବିହାରମାନ ରହିଥିଲା, ସେ ସବୁର ନିଶ୍ଚିତ ଅସ୍ତିତ୍ୱ ନଥିବ । ଏହା ମଧ୍ୟ ସମ୍ଭବ ଯେ, ଇଣ୍ଡୋନେସିଆରେ ଭାରତୀୟ ଉପନିବେଶମାନଙ୍କର ଅଭିବୃଦ୍ଧି ଏବଂ ସେହି ସବୁ ଦେଶମାନଙ୍କ ସଙ୍ଗେ ଭାରତର ବାଣିଜ୍ୟ ତଥା ଅନ୍ୟବିଧ ସମ୍ପର୍କ ଯୋଗୁଁ ସମୁଦ୍ରପଥ ଅଧିକତର ସୁବିଧାଜନକ ଥିଲା । ତାଙ୍କର ଓ ଅନ୍ୟ କେତେକ ବିବରଣୀରୁ ଜଣାଯାଏ ଯେ ସେହି ସମୟରେ ପାରସ୍ୟ, ଭାରତ, ମାଲୟ, ସୁମାତ୍ରା ଓ ଚୀନ ମଧ୍ୟରେ ନିୟମିତ ବୋଇତ ଯାତାୟାତ କରୁଥିଲା । ଇ-ତ୍ସିଙ୍ଗ୍ କ୍ୱାଙ୍ଗ୍-ଟାଙ୍ଗ୍‌ରୁ ଏକ ପାରସ୍ୟ ବୋଇତରେ ଚଢ଼ି ପ୍ରଥମେ ସୁମାତ୍ରା ଯାତ୍ରା କରିଥିଲେ ।

ଇ-ତ୍ସିଙ୍ଗ୍ ମଧ୍ୟ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ବହୁଦିନ ଧରି ଅଧ୍ୟୟନ କରିଥିଲେ ଏବଂ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କାଳରେ ଶତ ଶତ ସଂସ୍କୃତ ଗ୍ରନ୍ଥ ସାଥିରେ ନେଇଥିଲେ । ସେ ମୁଖ୍ୟତଃ ଆଗ୍ରହୀ ଥିଲେ ବୌଦ୍ଧ ଧର୍ମାଚରଣ ପଦ୍ଧତି, ପର୍ବପର୍ବାଣି ନେଇ ଏବଂ ସେସବୁ ସମ୍ପର୍କରେ ସେ ବିସ୍ତାରିତ ଭାବରେ ଲେଖିଯାଇଛନ୍ତି; କିନ୍ତୁ ସେ ସମୟର ବିଭିନ୍ନ ରୀତିନୀତି, ପୋଷାକ ପରିଚ୍ଛଦ ଓ ଖାଦ୍ୟ ସମ୍ପର୍କରେ ମଧ୍ୟ ସେ ବହୁତ କଥା ପ୍ରକାଶ କରିଚନ୍ତି । ବର୍ତ୍ତମାନ ଭଳି ସେ ସମୟରେ ମଧ୍ୟ ଉତ୍ତର-ଭାରତର ପ୍ରଧାନ ଖାଦ୍ୟ ଥିଲା ଗହମ ଏବଂ ଦକ୍ଷିଣ ଓ ପୂର୍ବରେ ଥିଲା ଚାଉଳ । ବେଳେବେଳେ ମାଂସ ବି ଖିଆଯାଉଥିଲା; କିନ୍ତୁ ବଡ଼ ବିରଳ ଭାବରେ । (ଇ-ତ୍ସିଙ୍ଗ୍ ସମ୍ଭବତଃ ଅନ୍ୟମାନଙ୍କ ଅପେକ୍ଷା ବୌଦ୍ଧଭିକ୍ଷୁଙ୍କ ବିଷୟରେ ଆମକୁ ଅଧିକତର ଭାବରେ ଜଣାଇଚନ୍ତି) ଘିଅ, ତେଲ, ଦୁଧ ଓ ସର ସର୍ବତ୍ର ମିଳୁଥିଲା ଏବଂ ଫଳ ଓ ନାନାବିଧ ପିଠା ଖଜାର ପ୍ରାଚୁର୍ଯ୍ୟ ଥିଲା । ଆହାର-ବିହାର ଶୁଦ୍ଧତା ଉପରେ ଭାରତୀୟମାନେ ସବୁ ସମୟରେ ଯେଉଁ ମହତ୍ତ୍ୱ ଅର୍ପଣ କରିଆନ୍ତି ଇ-ତ୍ସିଙ୍ଗ୍ ତାର ବିବରଣୀ ଦେଇଚନ୍ତି : "ପଞ୍ଚପ୍ରଦେଶର ଭାରତ ଓ ଅନ୍ୟାନ୍ୟ ଜାତି ଭିତରେ ପ୍ରଧାନ ପାର୍ଥକ୍ୟ ହେଉଛି ପବିତ୍ରତା ଓ ଅପବିତ୍ରତାର ବାଛବିଚାର ।" ଅଧିକନ୍ତୁ ମଧ୍ୟ : "ଭୋଜନ ପରେ ପ୍ରାନ୍ତର ଉଚ୍ଛିଷ୍ଟ ଚୀନ

ଦେଶରେ ଯେପରି ସଂରକ୍ଷଣ କରାଯାଇଥାଏ, ଭାରତୀୟ ରୀତି ଅନୁସାରେ ତାହା କରଣୀୟ ନୁହେଁ ।''

ଇ-ତ୍ସିଙ୍ଗ୍ ଭାରତକୁ ସାଧାରଣତଃ ପଶ୍ଚିମ ଦେଶ ବୋଲି ଉଲ୍ଲେଖ କରିଥିଲେ ପୁଣି ଆର୍ଯ୍ୟ ଦେଶ ନାମରେ ପରିଚିତ ବୋଲି ମଧ୍ୟ କହିଛନ୍ତି : ''ଆର୍ଯ୍ୟ-ଦେଶ; 'ଆର୍ଯ୍ୟ' ଅର୍ଥାତ୍ ମହତ୍ ଓ 'ଦେଶ' ଅର୍ଥାତ୍ ପ୍ରଦେଶ; ମହତ୍ ବା ଉତ୍ତମ ପ୍ରଦେଶ—ଯାହା ପଶ୍ଚିମର ନାମବିଶେଷ । ଏହାକୁ ଆର୍ଯ୍ୟ ଦେଶ କହିବାର ଅନ୍ୟତମ କାରଣ ମଧ୍ୟ ଅଛି ଯେ ସେଠାରେ ଉତ୍ତମ ଚରିତ୍ରବାନ୍ ବ୍ୟକ୍ତି କ୍ରମାଗତ ଭାବରେ ଦେଖାଦେଇଥାନ୍ତି ଏବଂ ସମସ୍ତେ ଏହି ନାମରେ ଦେଶର ପ୍ରଶଂସା କରନ୍ତି । ଏହାକୁ 'ମଧ୍ୟଦେଶ' ବୋଲି ମଧ୍ୟ ନାମିତ କରାଯାଇଥାଏ; କାରଣ ଏହା ଶତ ସହସ୍ର ଦେଶର ମଧ୍ୟଭାଗରେ ଅବସ୍ଥିତ । ସବୁଲୋକ ଏହି ନାମ ସଙ୍ଗେ ପରିଚିତ । ଉତ୍ତରାଞ୍ଚଳର ଉପଜାତିମାନେ (ହୁ ଅବା ମଙ୍ଗୋଲ ଅବା ତୁର୍କୀ) କେବଳ ଏହି ମହତ୍ ଦେଶକୁ 'ହିନ୍ଦୁ' (ହିନ୍-ତୁ) କହିଥାନ୍ତି; କିନ୍ତୁ ଏହି ନାମ ସର୍ବଜନବିଦିତ ନୁହେଁ; ଏହା ଗୋଟାଏ ଦେଶଜ ନାମ କେବଳ ଏବଂ ଏହାର ବିଶେଷ ତାତ୍ପର୍ଯ୍ୟ କିଛି ନାହିଁ । ଭାରତୀୟମାନେ ଏହି ନାମ ସମ୍ପର୍କରେ ଅଜ୍ଞାତ ଏବଂ ଭାରତ ପାଇଁ ପ୍ରକୃତ ନାମ ହେଉଛି 'ଆର୍ଯ୍ୟ ଦେଶ' । 'ହିନ୍ଦୁ' ଶବ୍ଦଟିକୁ ଇ-ତ୍ସିଙ୍ଗ୍ ଯେଭଳି ଉଲ୍ଲେଖ କରିଛନ୍ତି, ବାସ୍ତବିକ୍ ବଡ଼ ଚିତ୍ତାକର୍ଷକ । ବ୍ୟାଖ୍ୟା କରିବାକୁ ଯାଇ ସେ କହନ୍ତି : ''କେହି କେହି କହନ୍ତି, ଇନ୍ଦୁ ଅର୍ଥ ଚନ୍ଦ୍ର ଏବଂ ଭାରତ କ୍ରମରେ ଚୀନା ନାମ ଅର୍ଥାତ୍ ଇନ୍ଦୁ (ୟିନ୍-ତୁ) ସେଥିରୁ ଉତ୍ପନ୍ନ । ଏହି ଅର୍ଥାନ୍ତର ହେଲେ ବି ସର୍ବଜନବିଦିତ ନୁହେଁ । ମହାନ୍ 'ଚୁଉ' (ଚୀନ)ର ଭାରତୀୟ ନାମ ଚୀନ ଅଟେ; କିନ୍ତୁ ଏହା ଏକ ନାମ କେବଳ ଓ ଏହା ବିଶେଷ ଅର୍ଥ କିଛି ନାହିଁ ।'' କୋରିଆ ଓ ଅନ୍ୟାନ୍ୟ ଦେଶର ସଂସ୍କୃତ ନାମ ମଧ୍ୟ ସେ ବ୍ୟାଖ୍ୟା କରିଛନ୍ତି ।

ଭାରତ ଓ ଭାରତୀୟ, ବହୁତ କିଛି ପ୍ରତି ତାଙ୍କର ଆଦର ଓ ପ୍ରଶଂସା ସତ୍ତ୍ୱେ ଇ-ତ୍ସିଙ୍ଗ୍ ଏକଥା ପ୍ରାଞ୍ଜଳ ଭାବରେ ବ୍ୟକ୍ତ କରିଛନ୍ତି ଯେ ନିଜର ଜନ୍ମଭୂମି ଚୀନ ଦେଶକୁ ସେ ପ୍ରଥମ ସ୍ଥାନ ଦିଅନ୍ତି । ଭାରତ 'ଆର୍ଯ୍ୟ ଦେଶ' ହୋଇପାରେ; କିନ୍ତୁ ଚୀନ ହେଉଛି 'ଦେବ-ଭୂମି' । ''ପଞ୍ଚପ୍ରଦେଶ ଭାରତର ଲୋକେ ନିଜର ପବିତ୍ରତା ଓ ଉତ୍ତମତା ନେଇ ଗର୍ବିତ; କିନ୍ତୁ ଉଚ୍ଚକୋଟୀର ରୁଚି, ସାହିତ୍ୟିକ ପରାକାଷ୍ଠା, ଶିଷ୍ଟତା, ମର୍ଯ୍ୟାଦାବୋଧ, ସ୍ୱାଗତିକ ଓ ବିଦାୟକାଳୀନ ଶିଷ୍ଟାଚାର, ରୁଚିକର ଭୋଜନ ଏବଂ ଉଦାରତା ଓ ନ୍ୟାୟପରାୟଣତାର ଶାଳୀନତା ଚୀନ ଦେଶରେ କେବଳ ପ୍ରାପ୍ତବ୍ୟ । ଅନ୍ୟ କୌଣସି ଦେଶ ଏ ସବୁରେ ଚୀନର ସମକକ୍ଷ ନୁହେଁ ।'' ''ସୂଚିବିଦ୍ଧ କରି ଓ ଦଗ୍ଧ କରି ରୋଗ ନିରାମୟ କରିବା କ୍ରିୟାରେ, ନାଡ଼ିକା ଦେଖି ରୋଗ ନିଦାନ କରିବା ଦକ୍ଷତାରେ ଭାରତର କୌଣସି ପ୍ରଦେଶ ଚୀନକୁ ବଳି ଯାଇପାରିନାହିଁ; ମଣିଷକୁ ଦୀର୍ଘାୟୁ କରିବାର ମହୌଷଧି ଚୀନରେ କେବଳ ମିଳେ । ମନୁଷ୍ୟମାନଙ୍କ ଚରିତ୍ର ଓ ଦ୍ରବ୍ୟଗୁଣ ଦୃଷ୍ଟିରୁ ଚୀନକୁ 'ଦେବଭୂମି' କୁହାଯାଇଥାଏ । ଭାରତର ପଞ୍ଚପ୍ରଦେଶରେ ଏପରି କୌଣସି ଲୋକ କିଏ ଅଛି ଯିଏ ଚୀନକୁ ପ୍ରଶଂସା ନ କରେ ?

ପୁରାତନ ସଂସ୍କୃତ ପରିଭାଷାରେ ଚୀନ ସମ୍ରାଟଙ୍କୁ 'ଦେବପୁତ୍ର' ନାମରେ ଅଭିହିତ କରାଯାଇଛି, ଯାହା ଠିକ୍ ସେହି ଆଶୟର ଚୀନା ଶବ୍ଦର ଅନୁବାଦ ।

ଇ-ସିଙ୍ଗ୍ ସ୍ୱୟଂ ସଂସ୍କୃତଭାଷାରେ ବିଦ୍ୱାନ୍ ଥିଲେ ଏବଂ ଏହି ଭାଷାର ପ୍ରଶଂସା-ବାଚନରେ ସେ କହିଚନ୍ତି ଯେ ଉତ୍ତର ଓ ଦକ୍ଷିଣର ଦୂର ଦେଶମାନଙ୍କରେ ଏହା ସମ୍ମାନ ଓ ଆଦର ଲାଭକରିଛି : ..."ଦେବଭୂମି ଚୀନ ଓ ନିସର୍ଗତାର ଭଣ୍ଡାର ଭାରତର ଲୋକଙ୍କୁ ଏହି ଭାଷାର ପ୍ରକୃତ ସୂତ୍ର ଓ ନିୟମ ଆହ୍ୱାନ କେତେ ଦେବାକୁ ନ ପଡ଼ିବ ।" ଚୀନ୍‌ରେ ସଂସ୍କୃତ ବିଦ୍ୟାଚର୍ଚ୍ଚା ଖୁବ୍ ବ୍ୟାପକ ହୋଇଥିବ । ବଡ଼ କୌତୂହଳର କଥା ଯେ, କେତେକ ଚୀନା ବିଦ୍ୱାନ୍ ସଂସ୍କୃତର ଧ୍ୱନି-ନିୟମ ଚୀନା ଭାଷାରେ ପ୍ରୟୋଗ କରିବା ଉଦ୍ୟମ କରିଥିଲେ । ଏମାନଙ୍କ ଭିତରୁ ବିଶେଷ ଉଲ୍ଲେଖଯୋଗ୍ୟ ଭିକ୍ଷୁ ଶନ୍-ଓ୍ୱନ୍ ଯିଏ ତାଙ୍ଗ୍ ବଂଶ ଅମଳରେ ଜୀବିତ ଥିଲେ । ଚୀନା ଭାଷାରେ ଏହି ଧାରାରେ ଏକ ବର୍ଣ୍ଣମାଳାର ପ୍ରସ୍ତୁତ ଦିଗରେ ସେ ଉଦ୍ୟମ କରିଥିଲେ ।

ଭାରତରେ ବୌଦ୍ଧଧର୍ମର ପତନ ଫଳରେ, ଭାରତ ଓ ଚୀନ ମଧ୍ୟରେ ଏହି ବିଦ୍ୱାନ୍-ବିନିମୟ ବସ୍ତୁତଃ ବନ୍ଦ ହେଲା । ତେବେ, ସମୟେ ସମୟେ, ଭାରତର ବୌଦ୍ଧ ତୀର୍ଥମାନ ପରିଦର୍ଶନ କରିବା ପାଇଁ ଚୀନା ତୀର୍ଥଯାତ୍ରୀ ଆସୁଥିଲେ । ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀରୁ ଭାରତରେ ଯେଉଁ ରାଜନୈତିକ ବିପ୍ଳବମାନ ଘଟିଲା, ସେଥିରେ ଆତଙ୍କିତ ଦଳଦଳ ବୌଦ୍ଧ-ଭିକ୍ଷୁ ବୌଦ୍ଧ ପାଣ୍ଡୁଲିପିମାନ ବହନ କରି ଏକେ ନେପାଳ ଅଭିମୁଖେ ଯାତ୍ରାକଲେ କିମ୍ବା ହିମାଳୟ ଅତିକ୍ରମ କରି ତିବ୍ବତରେ ପ୍ରବେଶ କଲେ । ଏପରି ଭାବରେ ଓ ଏଥିପୂର୍ବରୁ ମଧ୍ୟ ପ୍ରାଚୀନ ଭାରତୀୟ ସାହିତ୍ୟର ଏକ ବିପୁଳ ଅଂଶ ଚୀନ ଓ ତିବ୍ବତରେ ସଂରକ୍ଷିତ ହେଲା ଏବଂ ଅଧୁନାତନ କାଳରେ ସେ ସବୁ ମୂଳ ରଚନା ଆକାରରେ ଅଥବା ବହୁ ପକ୍ଷରେ ଅନୁବାଦ ଆକାରରେ ପୁନର୍ବାର ଆବିଷ୍କୃତ ହେଉଛି । ବହୁ ଭାରତୀୟ ଶାସ୍ତ୍ରଗ୍ରନ୍ଥ ଯାହା ଚୀନା ଓ ତିବ୍ବତୀୟ ଭାଷାରେ ଅନୂଦିତ ହୋଇ ସଂରକ୍ଷିତ ହୋଇଛି, ସେ ସବୁ ବୌଦ୍ଧଧର୍ମ ସମ୍ବନ୍ଧୀୟ କେବଳ ନୁହେଁ, ବ୍ରାହ୍ମଣ୍ୟଧର୍ମ, ଜ୍ୟୋତିର୍ବିଜ୍ଞାନ, ଗଣିତ ଓ ଔଷଧ ସମ୍ବନ୍ଧୀୟ ମଧ୍ୟ । ଚୀନର ସୁଙ୍ଗ୍-ପାଓ ସଂଗ୍ରହାଳୟରେ ଏଭଳି ଆଠ ହଜାର ଶାସ୍ତ୍ରଗ୍ରନ୍ଥ ରହିଥିବା ଅନୁମାନ କରାଯାଏ । ତିବ୍ବତରେ ଏସବୁ ଗ୍ରନ୍ଥର ସଂଖ୍ୟା ଅପରିମେୟ । ଭାରତ, ଚୀନ ଓ ତିବ୍ବତରେ ବିଦ୍ୱାନ୍‌ମାନେ ପ୍ରାୟଶଃ ମିଳିମିଶି କାର୍ଯ୍ୟ କରୁଥିଲେ । ଏ ପ୍ରକାର ସହଯୋଗର ଗୋଟାଏ ଉଲ୍ଲେଖଯୋଗ୍ୟ ଦୃଷ୍ଟାନ୍ତ ହେଉଛି, ଯାହା ଏପର୍ଯ୍ୟନ୍ତ ପ୍ରଚଳିତ, ସଂସ୍କୃତ-ତିବ୍ବତୀୟ ଚୀନା ଭାଷାରେ ବୌଦ୍ଧ ପରିଭାଷାର ଅଭିଧାନ । ଏହା ହୁଏତ ଖ୍ରୀଷ୍ଟୀୟ ନବମ କିମ୍ବା ଦଶମ ଶତାବ୍ଦୀର ସଙ୍କଳନ ଓ ଏହାର ନାମ ହେଉଛି 'ମହାବ୍ୟୁତ୍ପତ୍ତି' ।

ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରୁ ଚୀନରେ ମୁଦ୍ରିତ ପ୍ରାଚୀନତମ ଗ୍ରନ୍ଥମାନଙ୍କ ଭିତରେ କେତେକ ହେଉଛି ସଂସ୍କୃତ ଭାଷାର ଗ୍ରନ୍ଥ । କାଠତିଆରି ବ୍ଲକରୁ ଏସବୁ ମୁଦ୍ରିତ ହୋଇଥିଲା । ଦଶମ ଶତାବ୍ଦୀରେ ଚୀନରେ ଏକ ରାଜକୀୟ ମୁଦ୍ରଣ କମିଶନ ସଙ୍ଗଠନ କରାଗଲା ଏବଂ ଏହା ଫଳରେ ସୁଙ୍ଗ୍-ଯୁଗ ପର୍ଯ୍ୟନ୍ତ ମୁଦ୍ରଣ-ଶିଳ୍ପ ଦ୍ରୁତଗତିରେ ବିକାଶଲାଭ

କଲ୍ପ । ଶତ ଶତ ବର୍ଷ ଧରି ଭାରତୀୟ ତଥା ଚୀନା ବିଦ୍ୱାନ୍‌ଙ୍କ ମଧ୍ୟରେ ଥିବା ଏହି ସମ୍ପର୍କ ଏବଂ ବିବିଧ ଗ୍ରନ୍ଥ ଓ ପାଣ୍ଡୁଲିପି ବିନିମୟ ସତ୍ତ୍ୱେ, ସେହି ସମୟରେ, ଭାରତରେ ପୁସ୍ତକ ମୁଦ୍ରଣର କୌଣସି ପ୍ରମାଣ ନ ରହିବା ଯେପରି ବିସ୍ମୟକର ତାର କାରଣ ଦର୍ଶାଇବା ସେପରି କଷ୍ଟକର ମଧ୍ୟ । ମୁଦ୍ରଣଶିଳ୍ପର ଆଦ୍ୟାବସ୍ଥାରେ ବ୍ଲକ୍‌ମୁଦ୍ରଣଶୈଳୀ ଚୀନରୁ ତିବ୍ବତକୁ ପ୍ରସାରିତ ହୋଇଥିଲା ଏବଂ ମୋର ବିଶ୍ୱାସ, ସେଠାରେ ଏବେ ସୁଦ୍ଧା ସେହି ରୀତି ଅନୁସୃତ ହେଉଛି । ମଙ୍ଗୋଲ୍ ବଂଶୀୟ ୟୁଆନ୍ ରାଜତ୍ୱ କାଳରେ (୧୨୬୦ ରୁ ୧୩୬୮) ଚୀନା ମୁଦ୍ରଣଶୈଳୀ ୟୁରୋପ ମହାଦେଶରେ ପ୍ରୟୋଗ କରାଗଲା । ଜର୍ମାନୀରେ ପ୍ରଥମେ ପ୍ରଚଳିତ ହେବାପରେ ପଞ୍ଚଦଶ ଶତାବ୍ଦୀରେ ଏହା ୟୁରୋପର ଅନ୍ୟାନ୍ୟ ଦେଶମାନଙ୍କରେ ପ୍ରସାର ଲାଭକଲା ।

ଭାରତରେ ଇଣ୍ଡୋ-ଆଫଗାନ୍ ଓ ମୋଗଲ ରାଜତ୍ୱକାଳରେ ମଧ୍ୟ ଭାରତ ଓ ଚୀନ ମଧ୍ୟରେ ସମୟେ ସମୟେ କୂଟନୈତିକ ସମ୍ପର୍କ ରହିଥିଲା । ଦିଲ୍ଲୀ ସୁଲତାନ ମହମ୍ମଦ ବିନ୍ ତୋଗ୍‌ଲକ୍ (୧୩୨୬-୫୧) ବିଖ୍ୟାତ ଆରବୀ ପର୍ଯ୍ୟଟକ ଇବନ୍ ବତୁତାଙ୍କୁ ରାଜଦୂତ ଭାବରେ ଚୀନ ଦରବାରକୁ ପଠାଇଥିଲେ । ସେ ସମୟରେ ଦିଲ୍ଲୀ ସାର୍ବଭୌମତ୍ୱ ଛିନ୍ନକରି ବଙ୍ଗ ଗୋଟାଏ ସ୍ୱାଧୀନ ସୁଲତାନ୍ ରାଜ୍ୟରେ ପରିଣତ ହୋଇଥିଲା । ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରେ ଚୀନ ରାଜଦରବାରରୁ ଦୁଇଜଣ ରାଜଦୂତ ହୁ-ସୀନ୍ ଓ ହିନ୍-ସୀନ୍ ବଙ୍ଗ ସୁଲତାନଙ୍କ ଦରବାରକୁ ପ୍ରେରିତ ହୋଇଥିଲେ । ଏହା ଫଳରେ ସୁଲତାନ ଗିୟାସୁଦ୍ଦିନଙ୍କ ରାଜତ୍ୱକାଳରେ ବଙ୍ଗ ଦରବାରରୁ ରାଜଦୂତମାନେ ଚୀନ ଦରବାରକୁ ବରାବର ପ୍ରେରିତ ହୋଇଥିଲେ । ଚୀନରେ ଏହା ମିଙ୍ଗ୍ ସମ୍ରାଟମାନଙ୍କ ରାଜତ୍ୱର କାଳ । ଖ୍ରୀ: ୧୪୧୪ ରେ ସୁଲତାନ୍ ସୈଫୁଦ୍ଦିନ୍ ଚୀନକୁ ଯେଉଁ ରାଜଦୂତ ପଠାଇଥିଲେ ସେ ବହୁ ମୂଲ୍ୟବାନ୍ ଉପହାର ସାଥିରେ ନେଇଥିଲେ ଓ ସେଥିଭିତରେ ଥିଲା ଗୋଟାଏ ଜୀଅନ୍ତା ଜିରାଫ୍ । ଗୋଟାଏ ଜିରାଫ୍ ଭାରତରେ କିପରି ପହଞ୍ଚିପାରିଲା ବାସ୍ତବିକ୍ ରହସ୍ୟମୟ । ସମ୍ଭବତଃ, ଆଫ୍ରିକାରୁ ଉପହାର ଭାବରେ ତାହା ଆସିଥିଲା ଏବଂ ଯେହେତୁ ଗୋଟାଏ ବିଚିତ୍ର ଜୀବ, ପ୍ରଶଂସିତ ହେବ ବୋଲି ମିଙ୍ଗ୍ ସମ୍ରାଟଙ୍କ ନିକଟକୁ ପ୍ରେରିତ ହେଲା । ପ୍ରକୃତରେ ଏହି ଜିରାଫ୍ ଚୀନରେ ବିଶେଷ ସମାଦର ଲାଭକଲା; କାରଣ କନ୍‌ଫୁସିଅସଙ୍କ ଅନୁଗାମୀମାନେ ଜିରାଫ୍‌କୁ ଏକ ଶୁଭ-ସଙ୍କେତ ଅବା ପବିତ୍ର-ପ୍ରତୀକ ମନେକରିଥାନ୍ତି । ପ୍ରେରିତ ଏହି ଜୀବ ପ୍ରକୃତରେ ଜିରାଫ୍ ଯେ ଥିଲା ସେଥିରେ ସନ୍ଦେହ ନାହିଁ; କାରଣ ତାର ଏକ ଦୀର୍ଘ ବର୍ଣ୍ଣନା ବଂଶୀତ, ଚୀନା ରେଶମ ବସ୍ତ୍ର ଉପରେ ତାର ଏକ ଚିତ୍ର ମଧ୍ୟ ଦେଖିବାକୁ ମିଳେ । ଯେଉଁ ରାଜଚିତ୍ରକାର ଏହି ଚିତ୍ର ଅଙ୍କନ କରିଥିଲେ, ଜିରାଫର ଭୂୟସୀ ପ୍ରଶଂସା କରିଚନ୍ତି ଓ ତାର ଲାଗି ସୌଭାଗ୍ୟ କିପରି ଆସେ, ଏକ ଦୀର୍ଘ ବିବରଣୀ ଲେଖିଚନ୍ତି : "ଜିରାଫ୍‌କୁ ଦେଖିବାପାଇଁ ମନ୍ତ୍ରୀମାନେ ଓ ଜନସାଧାରଣ ରୁଣ୍ଡହେଲେ ଏବଂ ସେମାନଙ୍କର ଆନନ୍ଦର ଅବଧି ରହିନଥିଲା ।"

ବୌଦ୍ଧ-ଯୁଗରେ ଭାରତ ଓ ଚୀନ ମଧ୍ୟରେ ବାଣିଜ୍ୟ ଯେଭଳି ପ୍ରସାରଲାଭ କରିଥିଲା, ଇଣ୍ଡୋ-ଆଫଗାନ୍ ଓ ମୋଗଲ ରାଜତ୍ୱକାଳରେ ମଧ୍ୟ ତାହା ଅବ୍ୟାହତ ରହିଲା ଏବଂ ଉଭୟ

ଦେଶ ମଧ୍ୟରେ ପଣ୍ୟ ବିନିମୟ ବରାବର ଚାଲିଥିଲା । ଏହି ବାଣିଜ୍ୟ ଉତ୍ତର-ହିମାଳୟର ବିଭିନ୍ନ ଗିରିସଙ୍କଟ ଭିତର ଦେଇ ମଧ୍ୟ-ଏସିଆର ପୁରାତନ କାରବାଁ ରାସ୍ତାରେ ଚାଲିଥିଲା । ସମୁଦ୍ର-ପଥରେ ମଧ୍ୟ ଏହି ବାଣିଜ୍ୟ ବହୁଳ ଭାବରେ ଚାଲିଥିଲା । ଦକ୍ଷିଣ-ପୂର୍ବ ଏସିଆର ଦ୍ୱୀପପୁଞ୍ଜ ଦେଇ ବୋଇତ ଆସି ଲାଗୁଥିଲା ଭାରତର ବନ୍ଦରମାନଙ୍କରେ; ମୁଖ୍ୟତଃ ଦକ୍ଷିଣରେ ।

ଭାରତ ଓ ଚୀନ ମଧ୍ୟରେ ଏହି ହଜାରେ ଅବା ତତୋଽଧିକ ବର୍ଷର ଘନିଷ୍ଠ ସମ୍ପର୍କ ମଧ୍ୟରେ ଉଭୟ ଦେଶ ପରସ୍ପରଠାରୁ ଚିନ୍ତା ଓ ଦର୍ଶନ କ୍ଷେତ୍ରରେ କେବଳ ନୁହେଁ, ଜୀବନର ବିବିଧ କଳା ଓ ବିଜ୍ଞାନ ସମ୍ପର୍କରେ ମଧ୍ୟ କିଛି ନା କିଛି ଶିକ୍ଷାଲାଭ କରିଚନ୍ତି । ସମ୍ଭବତଃ, ଭାରତ ଚୀନ ଦ୍ୱାରା ଯେତିକ ପ୍ରଭାବିତ ହୋଇଥିଲା ତଦପେକ୍ଷା ଅଧିକତର ଭାବରେ ଚୀନ ଭାରତ ଦ୍ୱାରା ପ୍ରଭାବିତ ହୋଇଥିଲା । ଏହା ବିଶେଷ ଦୁଃଖର ବିଷୟ ନୁହେଁ, କାରଣ ନିଜର ଲାଭ ପାଇଁ ଭାରତ ଚୀନାମାନଙ୍କର ସାଧାରଣ ଜ୍ଞାନରୁ କିଛି ଆହରଣ କରିପାରିଥାନ୍ତା ଏବଂ ତାର ସାହାଯ୍ୟରେ ନିଜର ବହୁ ଅନିୟନ୍ତ୍ରିତ କଳ୍ପନା ନିୟନ୍ତ୍ରଣ କରିପାରିଥାନ୍ତା । ଭାରତରୁ ଚୀନ ବହୁତ କିଛି ନେଲା; କିନ୍ତୁ ନିଜ ଜୀବନର ଗଢ଼ଣରେ, ନିଜକୁ ସୁହାଇଲା ଭଳି ସେ ସବୁ ପ୍ରୟୋଗ କରିବା ଦିଗରେ ତାର ସବୁ ସମୟରେ ବଳ ଓ ଦମ୍ଭ ଯଥେଷ୍ଟ ଭାବରେ ଥିଲା । ଏପରିକି ବୌଦ୍ଧଧର୍ମ ଓ ତାର ଜଟିଳ ଦର୍ଶନ କନ୍‌ଫୁସିଅସ ଓ ଲାଓ-ସେଙ୍କ ଦର୍ଶନରେ ରଞ୍ଜିତ ହୋଇ ଉଠିଲା । ବୌଦ୍ଧ-ଦର୍ଶନର କଣ୍ଟକିତ ନୈରାଶ୍ୟବାଦୀ ଦୃଷ୍ଟିଭଙ୍ଗୀ ଚୀନାମାନଙ୍କର ଅଭ୍ୟସ୍ତ ଜୀବନ ପ୍ରତି ଅନୁରକ୍ତି ଓ ଆମୋଦପ୍ରମୋଦ ପ୍ରୀତିକୁ ପରିବର୍ତ୍ତନ କିମ୍ବା ଦମନ କରିପାରିଲା ନାହିଁ । ଗୋଟାଏ ପୁରାତନ ଚୀନା ପ୍ରବାଦ ହେଉଚି : "ସରକାର ଯଦି ତୁମକୁ ଧରିନିଏ, ପିଟିପିଟି ତମର ଜୀବନ ନେବ; ବୌଦ୍ଧମାନେ ଯଦି ତୁମକୁ ଧରିନେବେ ଅନାହାରରେ ରଖି ତୁମର ଜୀବନ ନେବେ !"

ଉ ଚେନ୍-ଏନ୍ କୃତ ଷୋଡ଼ଶ ଶତକର ଏକ ବିଖ୍ୟାତ ଚୀନା ଉପନ୍ୟାସ—'ମାଙ୍କଡ଼' (ଯାହାର ଇଂରେଜୀ ଅନୁବାଦ କରିଚନ୍ତି ଅର୍ଥର୍ ଓ୍ୱେଲେ) । ଭାରତଯାତ୍ରୀ ହୁଏନ୍ ସାଂଙ୍କୁ ନେଇ ବହୁ କଳ୍ପିତ ତଥା ଅତିରଞ୍ଜିତ ବିଷୟ ଏଥିରେ ପରିବେଷଣ କରାଯାଇଚି । ଭାରତ ପ୍ରତି ଏକ ଉତ୍ସର୍ଗ ଲିପି ସଙ୍ଗେ ଗ୍ରନ୍ଥ ଶେଷ କରାଯାଇଚି : "ମୁଁ ଏହି ଗ୍ରନ୍ଥକୁ ବୁଦ୍ଧଙ୍କ ବିଶୁଦ୍ଧ ଭୂମି ଉଦ୍ଦେଶ୍ୟରେ ଉତ୍ସର୍ଗ କରୁଚି । ମୋର ପ୍ରାର୍ଥନା ଯେ ମୋର ସଂରକ୍ଷକ ଗୁରୁଙ୍କ କରୁଣାର ଏହି ଋଣ କେତେକାଂଶରେ ପରିଶୋଧ ହେବ ଏବଂ କେତେ ପଥହରା ଓ ପତିତଙ୍କ ବେଦନା ହ୍ରାସ ହେବ··· ।"

ବହୁ ଶତାବ୍ଦୀ ଧରି ପରସ୍ପରଠାରୁ ବିଚ୍ଛିନ୍ନ ହେବା ପରେ ଭାରତ ଓ ଚୀନ, କୌଣସି ବିଚିତ୍ର ଭାଗ୍ୟର ବଳରେ, ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀର ପ୍ରଭାବର ପରିସର ଭିତରକୁ ଆନୀତ ହେଲେ । ବହୁକାଳ ଭାରତକୁ ଏହି ପ୍ରଭାବ ବରଦାସ୍ତ କରିବାକୁ ପଡ଼ିଲା; ସ୍ୱଳ୍ପକାଳ ହେଲେ ମଧ୍ୟ ଚୀନକୁ ଏହି ସମ୍ପର୍କ ଆଣିଦେଲା ଅଫିମ ଓ ଯୁଦ୍ଧ ।

ଆଜି ବର୍ତ୍ତମାନ ଭାଗ୍ୟଚକ୍ର ସମ୍ପୂର୍ଣ୍ଣ ଭାବରେ ଘୂରିଯାଇଚି ଏବଂ ଭାରତ ଓ ଚୀନ ପରସ୍ପରକୁ ଚାହିଁଲାବେଳେ ଉଭୟ ମନରେ କେତେ ଶତାବ୍ଦୀର ସ୍ମୃତି ପୁଞ୍ଜିଭୂତ ହେଉଚି;

ପୁନର୍ବାର ନୂତନଧରଣର କେତେ ତୀର୍ଥଯାତ୍ରୀ ଉଭୟ ଦେଶକୁ ବିଚ୍ଛିନ୍ନ କରିଥିବା ପର୍ବତ-ଶ୍ରେଣୀ ଅତିକ୍ରମ କରି କମ୍ପା ସେଥିଉପରେ ଉଡ଼ିଯାଇ ଆନନ୍ଦ ଓ ଶୁଭେଚ୍ଛାର ବାର୍ତ୍ତା ଜ୍ଞାପନ କରୁଚନ୍ତି ଓ ବନ୍ଧୁତାର ଏପରି ଏକ ସମ୍ପର୍କ ସ୍ଥାପନ କରୁଚନ୍ତି ଯାହା ଦୀର୍ଘକାଳଧରି ରହି ପାରିବ ।

## ୧୭. ଦକ୍ଷିଣ ପୂର୍ବ ଏସିଆରେ ଭାରତୀୟ ଉପନିବେଶ ଓ ଭାରତୀୟ ସଂସ୍କୃତି

ଭାରତକୁ ଚିହ୍ନିବାକୁ ଓ ବୁଝିବାକୁ ହେଲେ ଦେଶ ଓ କାଳ ଭିତରକୁ ବହୁଦୂର ପର୍ଯ୍ୟନ୍ତ ଯାତ୍ରା କରିବାକୁ ପଡ଼ିବ, କିଛିକାଳ ପାଇଁ ତାର ସାମ୍ପ୍ରତିକ ଅବସ୍ଥାରେ ଦୁଃଖ, ଦୈନ୍ୟ ଓ ଦୁର୍ଦ୍ଦଶା ଭୁଲିଯିବାକୁ ପଡ଼ିବ ଏବଂ ସେ କ'ଣ ଥିଲା ଓ କ'ଣ କରିଥିଲା ସେଥିର କେତୋଟି ଦୃଶ୍ୟ ଆଖି ଆଗରେ ରଖିବାକୁ ହେବ । "ମୋ ଦେଶକୁ ଚିହ୍ନିବାକୁ ହେଲେ", ରବୀନ୍ଦ୍ରନାଥ ଠାକୁର ଲେଖିଚନ୍ତି : "ସେ ଯୁଗକୁ ଯାତ୍ରାକରି ଯିବାକୁ ପଡ଼ିବ ଯେବେ ସେ ଆତ୍ମୋପଲବ୍ଧି କରିଥିଲା ଓ ସେଥିହେତୁରୁ ସମସ୍ତ କିଛି ଭୌତିକ ସୀମାନ୍ତ ଲଂଘନ କରିପାରିଥିଲା; ଗୋଟାଏ ଆତ୍ମର ମହାନୁଭବତାରେ ନିଜ ସତ୍ତା ଉଦ୍‌ଭାସିତ କରି ସେ ଯେବେ ପୂର୍ବ ଦିଗନ୍ତ ଆଲୋକରେ ପ୍ଲାବିତ କରିଥିଲା; ସେହି ସବୁ ଦୂର ଉପକୂଳମାନଙ୍କରେ ଲୋକେ ଜୀବନର ଏକ ବିସ୍ମୟ ପ୍ରତି ଜାଗ୍ରତ ହୋଇ ଭାରତକୁ ଯେବେ ଅତି ଆପଣାର ମଣିଥିଲେ; କିନ୍ତୁ ଆଜି ଯେପରି ସେ ନିଜକୁ ଦୁର୍ବୋଧତାର ଗୋଟାଏ ଅପରିସ୍ତ ଅବରୋଧ ଭିତରକୁ, ଅନନ୍ୟତାର ଏକ କୃପଣତାପ୍ରବଣ ଅହମିକା ଭିତରକୁ ଏବଂ ମନର ଶୋଷଣ ଏକ ଦୈନ୍ୟ ଭିତରକୁ ସଙ୍କୁଚିତ କରି ନେଇଚି, ଯେଉଁଥିରୁ ତାର ପ୍ରକୃତ ପରିଚୟ ଲାଭକରିବା ସମ୍ଭବ ହେଉନି । ସେହି ମନ, ନିଜକୁ କେନ୍ଦ୍ରକରି, ଗୋଟାଏ ଅତୀତର ଯାହା ତାର ଆଲୋକ ହରାଇ ସାରିଚି ଓ ଭବିଷ୍ୟତର ଯାତ୍ରୀମାନଙ୍କ ପାଇଁ ଯାହାର କୌଣସି ବାଣୀ ଅବା ସନ୍ଦେଶ ନାହିଁ, ଅର୍ଥହୀନ ପୁନରାବୃତ୍ତିରେ ସ୍ୱପ୍ନାବିଷ୍ଟ ଭାବରେ ଘୂରୁଚି ।"

ଆଖି ଆଗରେ ଅତୀତର ଚିତ୍ର ଲେଖିଲେ କେବଳ ଯଥେଷ୍ଟ ହେବନି; ଦେହରେ ନହେଲେ ବି ମନରେ ଏସିଆର ସେ ସବୁ ଦେଶମାନଙ୍କୁ ଯାତ୍ରା କରିବାକୁ ପଡ଼ିବ ଯେଉଁଠି ଭାରତ ନିଜକୁ ନାନାଭାବରେ ପ୍ରସାରିତ କରିଥିଲା ଓ ତାର ଆତ୍ମା, ତାର ଶକ୍ତି, ତାର ସୌନ୍ଦର୍ଯ୍ୟ-ବୋଧର ଅମର ସ୍ୱାକ୍ଷର ଲେଖିଥିଲା । ଆମର ଅତୀତର ଏହିସବୁ ମହାନ୍ କୃତି ସମ୍ପର୍କରେ ଆମେ କେତେ ଜଣ ଅଳ୍ପ ଜାଣୁଁ ? କେତେ ଜଣ ଉପଲବ୍ଧି କରୁ ଯେ ଭାରତ ଯଦି ତାର ଚିନ୍ତା ଓ ଦର୍ଶନରେ ମହାନ୍ ଥିଲା, କର୍ମତତ୍ପରତାରେ ମଧ୍ୟ ସମାନ ଭାବରେ ତାର ମହାନତା ବଜାୟ ରଖିଥିଲା ? ଜନ୍ମଭୂମିର ବହୁଦୂରରେ ଭାରତର ନରନାରୀ ଯେଉଁ ଇତିହାସ ସୃଷ୍ଟି କରିଥିଲେ ତାହା ଆଜିଯାଏ ଲେଖାହୋଇ ପାରିନି । ବହୁ ପାଶ୍ଚାତ୍ୟ ପଣ୍ଡିତ ଏବେ ବି ମନେ କରନ୍ତି ଯେ ପ୍ରାଚୀନ ଇତିହାସ ବହୁଳଭାବରେ ମଧ୍ୟୋପସାଗରୀୟ ଦେଶମାନଙ୍କ ସଙ୍ଗେ

ସମ୍ପର୍କିତ ଏବଂ ମଧ୍ୟ-ଯୁଗ ଓ ଆଧୁନିକ ଯୁଗର ଇତିହାସ କହିଲେ କଳିହମୁଖର କ୍ଷୁଦ୍ର ୟୁରୋପ ମହାଦେଶର ଇତିହାସ ଏବଂ ଏବେ ବି ଭବିଷ୍ୟତ ପାଇଁ ଯୋଜନା କଲାବେଳେ ସେମାନେ ୟୁରୋପକୁ କେବଳ ଆଖି ଆଗରେ ରଖୁଚନ୍ତି । ସତେ ଯେପରି ୟୁରୋପ ହିଁ କେବଳ ସବୁକିଛି ଓ ପୃଥିବୀର ଅବଶିଷ୍ଟ ଭୂଭାଗକୁ ସେଥି ସଙ୍ଗେ କେଉଁଠିହେଲେ ଯୋଡ଼ି ଦିଆଯାଇପାରିବ ।

ସାର୍ ଚାର୍ଲେସ୍ ଏଲିଅଟ୍ ଲେଖିଚନ୍ତି, "ୟୁରୋପର ଐତିହାସିକମାନେ ବିଶ୍ୱରେ ଭାରତର ସ୍ଥାନ ପ୍ରତି ଅନ୍ୟାୟ ବିଚାର କରୁଚନ୍ତି ଯେବେ ସେମାନେ ତାର ଆକ୍ରମଣକାରୀଙ୍କ ବୃତ୍ତାନ୍ତ ଲେଖୁଚନ୍ତି ଓ ଏପରି ଚିତ୍ର ଅଙ୍କନ କରୁଚନ୍ତି ସତେ ଯେପରି ତାର ଲୋକେ ଥିଲେ ବଡ଼ ଦୁର୍ବଳ, ସ୍ୱପ୍ନବିଳାସୀ ଓ ସମୁଦ୍ର ତଥା ପାର୍ବତ୍ୟ ଅବରୋଧ ଦ୍ୱାରା ଅବଶିଷ୍ଟ ମାନବଜାତିଠାରୁ ବିଚ୍ଛିନ୍ନ । ଏପରି ଏକ ଚିତ୍ରରେ ହିନ୍ଦୁମାନଙ୍କ ବୌଦ୍ଧିକ ବିଜୟର ବୃତ୍ତାନ୍ତ ମିଳେ ନାହିଁ । ଏପରିକି, ସେମାନଙ୍କର ରାଜନୈତିକ ବିଜୟ ମଧ୍ୟ ନଗଣ୍ୟ ନୁହେଁ ଏବଂ ସେମାନେ ଯେଉଁସବୁ ଅଞ୍ଚଳମାନଙ୍କରେ ଅଧିପତ୍ୟ ବିସ୍ତାର କରିଥିଲେ, ଆୟତନ ଦୃଷ୍ଟିରୁ ନହେଲେ ବି ଦୂରତା ଦୃଷ୍ଟିରୁ, ବାସ୍ତବିକ ଅସାଧାରଣ...କିନ୍ତୁ ଭାରତୀୟ ଚିନ୍ତାର ବିସ୍ତାର ସଙ୍ଗେ ତୁଳନା କରି ଦେଖିଲେ ଏ ପ୍ରକାର ସାମରିକ ଅବା ବାଣିଜ୍ୟଗତ ଆକ୍ରମଣ ଅତୀବ ତୁଚ୍ଛ । (୧)

ଏକଥା ଲେଖିଲାବେଳେ ଏଲିଅଟ୍ ଦକ୍ଷିଣ-ପୂର୍ବ ଏସିଆର ଅଧୁନାତନ କେତେକ ଆବିଷ୍କାର, ଯାହା ଭାରତ ଓ ଏସିଆର ଅତୀତ ସମ୍ପର୍କୀୟ ଧାରଣାରେ ବିପ୍ଳବାତ୍ମକ ପରିବର୍ତ୍ତନ ଆଣିଦେଇଚି, ହୁଏତ ଜାଣି ନଥିଲେ । ସେସବୁ ଆବିଷ୍କାର ସମ୍ପର୍କରେ ଜ୍ଞାତ ଥିଲେ ତାଙ୍କର ଯୁକ୍ତି ଅଧିକ ବଳଶାଳୀ ହୋଇଥାନ୍ତା ଏବଂ ସେ ଦର୍ଶାଇପାରିଥାନ୍ତେ ଯେ ବହିର୍ଭାରତରେ ଭାରତୀୟ ଚିନ୍ତାର ବିସ୍ତୃତି ବ୍ୟତୀତ ଅନ୍ୟାନ୍ୟ ଦିଗରେ ମଧ୍ୟ ଭାରତର କ୍ରିୟାକଳାପ କୌଣସି ଭାବରେ ନଗଣ୍ୟ ନଥିଲା । ମୋର ମନେପଡ଼େ, ଆଜକୁ ପନ୍ଦର ବର୍ଷ ତଳେ, ଦକ୍ଷିଣ-ପୂର୍ବ ଏସିଆର ଗୋଟାଏ ପ୍ରକାର ବିସ୍ତୃତ ଐତିହାସିକ ବିବରଣୀ ପ୍ରଥମଥର ପାଇଁ ପଢ଼ି ମୁଁ ଆଚମ୍ବିତ ଓ ଉଦ୍‌ବୁଦ୍ଧ ହୋଇଥିଲି । ମୋର ଦୃଷ୍ଟି ସମ୍ମୁଖରେ କେତେ ନବ ନବ ପରିଦୃଶ୍ୟ, ଇତିହାସର ନବ ନବ ପରିପ୍ରେକ୍ଷୀ, ଭାରତର ଅତୀତ ସମ୍ପର୍କରେ ନବ ନବ ଧାରଣା ଉଦ୍‌ଭାସିତ ହୋଇ ଉଠୁଥିଲା ଏବଂ ସେହି ଅନୁସାରେ ମୋର ପୂର୍ବବର୍ତ୍ତୀ ସମସ୍ତ ବିଚାର ଓ ଧାରଣାକୁ ମତେ ବଦଳାଇବାକୁ ପଡ଼ିଲା । ଚମ୍ପା, କମ୍ବୋଡ଼ିଆ ଓ ଆଙ୍ଗକୋର, ଶ୍ରୀବିଜୟ ଓ ମଜ୍ଜାପହିତ ଅକସ୍ମାତ ଶୂନ୍ୟ ଭିତରୁ ସାକାର ହୋଇ ଉଠିଲେ, ସଜୀବ ରୂପ ପରିଗ୍ରହ କଲେ ଏବଂ ସେଥି ସଙ୍ଗେ ଗୋଟାଏ ସ୍ୱାଭାବିକ ଅନୁଭୂତିର ସ୍ପନ୍ଦନ ଥିଲା ଯାହା ବର୍ତ୍ତମାନ ସଙ୍ଗେ ଅତୀତକୁ ସମ୍ମିଳିତ କରୁଥିଲା ।

ଯୁଦ୍ଧ, ବିଜୟ ଓ ଅନ୍ୟାନ୍ୟ କେତେ ସଫଳତାରେ କୀର୍ତ୍ତିମନ୍ତ ପ୍ରତାପଶାଳୀ ବ୍ୟକ୍ତି ଶ୍ରୀ ଶୈଳେନ୍ଦ୍ରଙ୍କ ସମ୍ପର୍କରେ ଡକ୍ଟର ଏଇଚ୍. ଜି. କ୍ୱାରିଚ୍ ଓ୍ୱେଲ୍‌ସ ଲେଖିଛନ୍ତି : "ଏହି

---

(୧) ଏଲିଅଟ୍, 'ହିନ୍ଦୁଇଜ୍‌ମ୍ ଏଣ୍ଡ୍ ବୁଦ୍ଧିଜମ୍', ୧ମ-ଖଣ୍ଡ ।

ମହାନ୍ ବିଜୟୀ ଯାହାଙ୍କ କୀର୍ତ୍ତିର ତୁଳନା ପାଶ୍ଚାତ୍ୟ ଇତିହାସରେ ସୁବିଦିତ ମହାନ୍ ଯୋଦ୍ଧାମାନଙ୍କ ସଙ୍ଗେ କେବଳ କରାଯାଇପାରେ ଏବଂ ନିଜ ସମୟରେ ଯାହାଙ୍କର ଯଶ ପାରସ୍ୟରୁ ଚୀନ ପର୍ଯ୍ୟନ୍ତ ଉଚ୍ଚାରିତ ହେଉଥିଲା, ଗୋଟାଏ ଅବା ଦୁଇଟି ପିଢ଼ିରେ ଏପରି ଏକ ବିଶାଳ ସାମୁଦ୍ରିକ ସାମ୍ରାଜ୍ୟ ଗଠନ କରିପାରିଲେ ଯାହା ପାଞ୍ଚଶହ ବର୍ଷ ପର୍ଯ୍ୟନ୍ତ ତିଷ୍ଠି ପାରିଲା ଏବଂ ଜାଭା ଓ କମ୍ବୋଡ଼ିଆରେ ଭାରତୀୟ କଳା ଓ ସ୍ଥାପତ୍ୟର ଅପୂର୍ବ ବିକଚ-ବିକାଶ ସମ୍ଭବ କରି ପାରିଲା । ତଥାପି ଆମର ବିଶ୍ୱକୋଷ ଓ ଇତିହାସମାନଙ୍କରେ ଏହି ସୁଦୂରପ୍ରସାରୀ ସାମ୍ରାଜ୍ୟ କିମ୍ବା ତାର ମହାନୁଭବ ପ୍ରତିଷ୍ଠାତାଙ୍କ ସମ୍ପର୍କରେ କୌଣସି ଉଲ୍ଲେଖ ବିଫଳ ଭାବରେ ସନ୍ଧାନ କରିବାକୁ ପଡ଼େ···କେବଳ ମୁଷ୍ଟିମେୟ ପ୍ରାଚ୍ୟ ବିଦ୍ୱାନଙ୍କ ବ୍ୟତୀତ ଏପରି ଏକ ସାମ୍ରାଜ୍ୟ ଗଢ଼ିଉଠିଥିଲା ବୋଲି ପ୍ରାୟ କେହି ଜାଣନ୍ତି ନାହିଁ ।'' ଆଦ୍ୟକାଳୀନ ଏହି ଭାରତୀୟ ଔପନିବେଶିକମାନଙ୍କ ସାମରିକ ବିଜୟର ଯଥେଷ୍ଟ ଗୁରୁତ୍ୱ ରହିଛି; କାରଣ ତାହା ଭାରତୀୟ ଚରିତ୍ର ଓ ପ୍ରତିଭାର କେତେକ ଦିଗର ଉପରେ ଆଲୋକପାତ କରେ ଯାହା ଏଥିପୂର୍ବେ ଉପଯୁକ୍ତ ଭାବରେ ଗ୍ରହଣ କରାଯାଇ ନଥିଲା; କିନ୍ତୁ ଏହା ଅପେକ୍ଷା ଅଧିକତର ଗୁରୁତ୍ୱପୂର୍ଣ୍ଣ ହେଉଛି, ସେମାନେ ସେମାନଙ୍କର ଉପନିବେଶ ଓ ବସତିମାନଙ୍କରେ ଯେଉଁ ସମ୍ପନ୍ନ ସଭ୍ୟତା ଗଢ଼ି ତୋଳିଥିଲେ ଯାହା ସହସ୍ରାଧିକ ବର୍ଷଧରି ରହିପାରିଲା । ଗତ ପଚିଶି ବର୍ଷ ଭିତରେ ଦକ୍ଷିଣ-ପୂର୍ବ ଏସିଆର ଏହି ବିସ୍ତୃତ ଅଞ୍ଚଳର ଇତିହାସ ଉପରେ, ଯେଉଁ ଅଞ୍ଚଳକୁ ବେଳେବେଳେ ବୃହତ୍ତର ଭାରତ ବୋଲି ଉଲ୍ଲେଖ କରାଯାଇଥାଏ, ବହୁତ କିଛି ଆଲୋକପାତ କରାଯାଇଛି । ଏବେ ବି ସେଥିରେ ବହୁ ଫାଙ୍କ, ବହୁ ପରସ୍ପରବିରୋଧୀ କଥା ରହିଛି, ବିଦ୍ୱାନ୍‌ମାନେ ନାନା ବିବାଦିତ ତତ୍ତ୍ୱ ଉପସ୍ଥାପିତ କରୁଛନ୍ତି; କିନ୍ତୁ ଏହି ଇତିହାସର ମୋଟାମୋଟି ରୂପରେଖ ଯଥେଷ୍ଟ ସ୍ପଷ୍ଟ ହୋଇପାରିଛି ଏବଂ କେତେ କେତେ ସେଥିରେ ବିବରଣୀର ପ୍ରଚୁରତା ବି ଦେଖିବାକୁ ମିଳୁଛି । ଏ ସମ୍ପର୍କରେ ବିଷୟବସ୍ତୁର ଅଭାବ ନାହିଁ କାରଣ ବହୁ ଭାରତୀୟ ଗ୍ରନ୍ଥରେ ଓ ଆରବ ପର୍ଯ୍ୟଟକମାନଙ୍କ ଯାତ୍ରା ବୃତ୍ତାନ୍ତରେ ଏବଂ ସର୍ବୋପରି ଚୀନା ଐତିହାସିକ ବିବରଣୀମାନଙ୍କରେ ଏହାର ବହୁଳ ଉଲ୍ଲେଖ ରହିଛି । ବହୁ ପୁରାତନ ଶିଳାଲେଖ, ତାମ୍ରଫଳକ ଇତ୍ୟାଦି ବି ରହିଛି ଏବଂ ଜାଭା ଓ ବାଲିରେ ଭାରତୀୟ ଆଧାର ଉପରେ ପ୍ରତିଷ୍ଠିତ ଗୋଟାଏ ସମୃଦ୍ଧ ସାହିତ୍ୟ ଗଢ଼ିଉଠିଛି ଯାହା ବହୁଧା ଭାରତୀୟ ପୁସ୍ତକମାନଙ୍କର ବ୍ୟାଖ୍ୟାନୁବାଦ କହିଲେ ଚଳେ । ଗ୍ରୀକ୍ ଓ ଲାଟିନ୍ ଆଧାରରୁ ମଧ୍ୟ ଏ ସମ୍ପର୍କରେ କିଛି କିଛି ସୂଚନା ମିଳେ; କିନ୍ତୁ ସର୍ବୋପରି ମୂକସାକ୍ଷୀ ଭାବରେ ରହିଛି ଅଙ୍ଗକୋର ଓ ବୋରୋବୁଦୁରରେ କେତେ ପ୍ରାଚୀନ ଇମାରତର ଦେଦୀପ୍ୟମାନ ଧ୍ୱଂସାବଶେଷ । (୧)

---

(୧) ଡକ୍ଟର ଆର୍. ସି. ମଜୁମଦାରଙ୍କ 'ଏନ୍‌ସିଏଣ୍ଟ ଇଣ୍ଡିଆନ୍ କଲୋନିସ୍ ଇନ୍ ଦି ଫାର ଇଷ୍ଟ' (କଲିକତା, ୧୯୨୭); 'ସ୍ୱର୍ଣ୍ଣଦ୍ୱୀପ' (କଲିକତା, ୧୯୩୭) ଏବଂ କଲିକତା 'ଗ୍ରେଟର ଇଣ୍ଡିଆ ସୋସାଇଟି'ର ଏକାଧିକ ପ୍ରକାଶନ ଦ୍ରଷ୍ଟବ୍ୟ ।

ଖ୍ରୀଷ୍ଟୀୟ ଯୁଗର ପ୍ରଥମ ଶତକରୁ ଭାରତୀୟ ଔପନିବେଶିକମାନେ, ତରଙ୍ଗ ପରେ ତରଙ୍ଗରେ, ପୂର୍ବ ଓ ଦକ୍ଷିଣ-ପୂର୍ବ ଦିଗକୁ ସମୁଦ୍ରପଥରେ ଯାତାୟାତ କରି ସିଂହଳ, ବ୍ରହ୍ମଦେଶ, ମାଲୟ, ଜାଭା, ସୁମିତ୍ରା, ବୋର୍ଣ୍ଣିଓ, ଶ୍ୟାମ, କାମ୍ବୋଡ଼ିଆ ଓ ଇଣ୍ଡୋଚୀନରେ ପହଞ୍ଚି ପାରିଥିଲେ । ସେମାନଙ୍କ ଭିତରୁ ଥୋକେ ଫର୍ମୋଜା, ଫିଲିପାଇନ୍ ଓ ସେଲିବସ୍ ଦ୍ୱୀପ ଉପକୂଳରେ ମଧ୍ୟ ଉଠିଥିଲେ । ଏବେ ବି ମାଡ଼୍ଗାସ୍କାର ପର୍ଯ୍ୟନ୍ତ ପ୍ରଚଳିତ ଭାଷା ହେଉଛି ସଂସ୍କୃତ ଶବ୍ଦ ମିଶ୍ରିତ ଇଣ୍ଡୋନେସୀୟ ଭାଷା । ଏପରିଭାବରେ ବ୍ୟାପ୍ତ ହେବା ପାଇଁ ସେମାନଙ୍କୁ ଶତ ଶତ ବର୍ଷ ଲାଗିଥିବ ଏବଂ ଖୁବ୍ ସମ୍ଭବ ଏ ସମସ୍ତ ସ୍ଥାନକୁ ସିଧାସଳଖ ଭାରତରୁ ନଯାଇ ମଧ୍ୟବର୍ତ୍ତୀ କୌଣସି ଉପନିବେଶରୁ ସେମାନେ ଯାଇଥିବେ । ଖ୍ରୀଷ୍ଟୀୟ ପ୍ରଥମ ଶତକରୁ ପ୍ରାୟ ନବମ ଶତକ ପର୍ଯ୍ୟନ୍ତ ଉପନିବେଶ ସ୍ଥାପନ ଦିଗରେ ମୁଖ୍ୟତଃ ଚାରିଗୋଟି ତରଙ୍ଗର ସୂଚନା ମିଳେ ଏବଂ ଏହି କାଳ ମଧ୍ୟରେ ଲୋକେ ବରାବର ପୂର୍ବାଭିମୁଖରେ ଯାତ୍ରା କରିଥିବେ । ଏହିସବୁ ଦୁଃସାହସିକତା ସମ୍ବନ୍ଧରେ ଲକ୍ଷ୍ୟ କରିବାର କଥା ଯେ ଏସବୁ ସ୍ପଷ୍ଟତଃ ରାଜଶକ୍ତିଦ୍ୱାରା ସଂଗଠନ କରାଯାଇଥିଲା । ଦୂର ଦୂରରେ ଅବସ୍ଥିତ ଉପନିବେଶମାନ ପ୍ରାୟ ଏକା ସମୟରେ ସ୍ଥାପିତ ହୋଇଥିଲା ଏବଂ ପ୍ରାୟ ସବୁଯାକ ଏହିସବୁ ଉପନିବେଶ ସାମରିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଓ ମୁଖ୍ୟ ବାଣିଜ୍ୟପଥମାନଙ୍କରେ ଅବସ୍ଥିତ ଥିଲା । ଏହିସବୁ ଉପନିବେଶମାନଙ୍କୁ ପୁରାତନ ଭାରତୀୟ ନାମରେ ନାମିତ କରାଯାଇଥିଲା । ଉଦାହରଣ ସ୍ୱରୂପ ଆଜି ଯାହା କାମ୍ବୋଡ଼ିଆ ନାମରେ ପରିଚିତ ତାର ନାମ ଥିଲା କମ୍ବୋଜ । ପ୍ରାଚୀନ ଭାରତର ଗାନ୍ଧାର ଅବା ଆଜିର କାବୁଲ ଉପତ୍ୟକାର ଏହା ଥିଲା ବହୁ ବିଖ୍ୟାତ ଏକ ସହର । ମୋଟାମୋଟି ଭାବରେ ଏହା ଉପନିବେଶ ସ୍ଥାପନର କାଳ ସୂଚିତ କରେ; କାରଣ ସେ ସମୟରେ ଗାନ୍ଧାର (ଆଫ୍‌ଗାନିସ୍ଥାନ) ଥିଲା ଭାରତର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ହୋଇଥିବ ।

ବିପଦସଙ୍କୁଳ ସମୁଦ୍ରପଥରେ ଏହିସବୁ ଅସାଧାରଣ ଅଭିଯାନର ଉଦ୍ଦେଶ୍ୟ କ'ଣ ଓ ତାର ପଛରେ କି ବିପୁଳ ପ୍ରେରଣା ରହିଥିଲା ? ଏ ବିଷୟରେ ଚିନ୍ତାକରିବା କିମ୍ବା ସଂଗଠନ ଗଢ଼ିବା ସମ୍ଭବ ହୋଇପାରି ନଥାନ୍ତା ଯଦି ତତ୍‌ପୂର୍ବରୁ ପୁରୁଷାନୁକ୍ରମିକ ଭାବରେ ଶତଶତ ବର୍ଷ ଧରି କେହି କେହି ବ୍ୟକ୍ତି ଅବା କ୍ଷୁଦ୍ରଗୋଷ୍ଠୀ ବ୍ୟବସାୟ ସମ୍ବନ୍ଧରେ ସେସବୁ ଅଞ୍ଚଳକୁ ଯାଇନଥାନ୍ତେ । ଅତି ପ୍ରାଚୀନ ସଂସ୍କୃତ ଗ୍ରନ୍ଥମାନଙ୍କରେ ଏହିସବୁ ପୂର୍ବୀୟ ଦେଶମାନଙ୍କର ଅସ୍ପଷ୍ଟ ଉଲ୍ଲେଖ ଦେଖିବାକୁ ମିଳେ । ସେସବୁ ଗ୍ରନ୍ଥରେ ଏ ସବୁ ଦେଶମାନଙ୍କୁ ଯେଉଁଭାବରେ ନାମିତ କରାଯାଇଛି, ଆଜିର ପ୍ରଚଳିତ ନାମ ଭିତରୁ ପରିଚୟ ଆହରଣ କରିବା ସହଜ ନୁହେଁ; କିନ୍ତୁ ବେଳେବେଳେ ଏହା ସହଜ ହୋଇପଡ଼େ ଯଥା ଆଜିର 'ଜାଭା ନାମ' ପ୍ରାଚୀନ 'ଯବ ଦ୍ୱୀପ'ର ଯେ ଏକପ୍ରକାର ଅପଭ୍ରଂଶ, ସହଜରେ ଅନୁମେୟ । ଆଜିସୁଦ୍ଧା ଭାରତରେ 'ଯବ' ଏକ ଖାଦ୍ୟ ଶସ୍ୟର ନାମବିଶେଷ । ପୁରାତନ ଗ୍ରନ୍ଥମାନଙ୍କରେ ଉଲ୍ଲେଖ ଥିବା ବିବିଧ ନାମ ମଧ୍ୟ ସାଧାରଣତଃ କୌଣସି ଖଣିଜଦ୍ରବ୍ୟ, ଧାତୁ ଅଥବା କୌଣସି ଶିଳ୍ପ ଅବା କୃଷିଜାତ ଦ୍ରବ୍ୟ ସଙ୍ଗେ ସମ୍ପୃକ୍ତ । ଏହି ନାମକରଣରୁ ହିଁ ବାଣିଜ୍ୟ ଆଡ଼କୁ ଧ୍ୟାନ ଯାଏ । ଡକ୍ଟର ଆର୍, ସି. ମଜୁମଦାର ସୂଚିତ କରିଚନ୍ତି

ଯେ "ସାହିତ୍ୟ ଯଦି ସର୍ବସାଧାରଣ ମନର ଗୋଟାଏ ଯଥାଯଥ ଦର୍ପଣ ହୋଇପାରେ, ତେବେ ଖ୍ରୀଷ୍ଟୀୟ ଯୁଗ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ପ୍ରଥମ କେତେକ ଶତକରେ ବ୍ୟବସାୟ ଓ ବାଣିଜ୍ୟ ଢଗରେ ଭାରତରେ ପ୍ରବଳ ଉତ୍ସାହ ଦେଖାଦେଇଥିବ ।" ଏ ସବୁ ଗୋଟାଏ ପ୍ରସାରଶୀଳ ଅର୍ଥନୀତି ଓ ଦୂର ଦେଶମାନଙ୍କରେ ନିରବଚ୍ଛିନ୍ନ ଭାବରେ ବଜାର ସନ୍ଧାନର ସୂଚନା ଦିଏ ।

ଖ୍ରୀଷ୍ଟପୂର୍ବ ତୃତୀୟ ଓ ଦ୍ୱିତୀୟ ଶତକରେ ଏହି ବାଣିଜ୍ୟ କ୍ରମଶଃ ବୃଦ୍ଧି ଲାଭ କଲା ଏବଂ ସେହି ଅଦ୍‌ଭୁତକର୍ମା ସୌଦାଗର ଓ ଶ୍ରେଷ୍ଠୀଙ୍କ ପଛରେ ଧର୍ମପ୍ରଚାରକମାନେ ନିଶ୍ଚିତ ଯାଇଥିବେ; କାରଣ ଏହା ଠିକ୍ ଅଶୋକଙ୍କ ପରବର୍ତ୍ତୀକାଳର କଥା । ପୁରାତନ ସଂସ୍କୃତ କାହାଣୀମାନଙ୍କରେ ବିପଦସଙ୍କୁଳ ସମୁଦ୍ରଯାତ୍ରା ଓ ବୋଇତ-ଭୁଡ଼ି ବିଷୟରେ ବହୁ ବର୍ଣ୍ଣନା ଦେଖିବାକୁ ମିଳେ । ଗ୍ରୀକ୍ ଓ ଆରବ ଉଭୟ ସୂତ୍ରର ବୃତ୍ତାନ୍ତ ପ୍ରଦର୍ଶିତ କରେ ଯେ ଖ୍ରୀଷ୍ଟୀୟ ପ୍ରଥମ ଶତକ ପର୍ଯ୍ୟନ୍ତ ଭାରତ ଓ ସୁଦୂରପ୍ରାଚ୍ୟ ମଧ୍ୟରେ ଧାରାବାହିକ ସାମୁଦ୍ରିକ ଯୋଗାଯୋଗ ରହିଥିଲା । ଚୀନ ଏବଂ ଭାରତ, ପାରସ୍ୟ, ଆରବ୍ୟ ଓ ମଧ୍ୟୋପସାଗରୀୟ ଦେଶମାନଙ୍କ ଭିତରେ ସିଧାସଳଖ ବାଣିଜ୍ୟ ପଥରେ ପଡ଼ୁଥିଲା ମାଳୟ ଉପଦ୍ୱୀପ ଓ ଇଣ୍ଡୋନେସୀୟ ଦ୍ୱୀପପୁଞ୍ଜ । ଭୌଗୋଳିକ ଗୁରୁତ୍ୱ ବ୍ୟତୀତ ଏହିସବୁ ଦେଶମାନଙ୍କରେ ମୂଲ୍ୟବାନ ଖଣିଜଦ୍ରବ୍ୟ, ଧାତୁ, ମସଲା ଓ ନାନାବିଧ ମୂଲ୍ୟବାନ କାଷ୍ଠ ପ୍ରଚୁର ପରିମାଣରେ ରହିଥିଲା । ଆଜି ଯେପରି, ସେ କାଳରେ ମଧ୍ୟ ସେପରି, ମାଳୟ ଟିଣ ଖଣି ନିମନ୍ତେ ପ୍ରସିଦ୍ଧ ଥିଲା । ଭାରତର ପୂର୍ବୋପକୂଳ—କଳିଙ୍ଗ, ବଙ୍ଗ, ବ୍ରହ୍ମଦେଶ ଓ ତା'ପରେ ମାଳୟ ଉପଦ୍ୱୀପ ଦେଇ ପ୍ରଥମକାଳୀନ ସମୁଦ୍ରପଥ ସମ୍ଭବତଃ ନିର୍ଦ୍ଧାରିତ କରାଯାଇଥିଲା । ପରେ ପୂର୍ବ ଓ ଦକ୍ଷିଣ ଭାରତରୁ ସିଧାସଳଖ ସମୁଦ୍ରପଥ ଉନ୍ମୁକ୍ତ ହେଲା । ଏହି ପଥ ଦେଇ ଚୀନା ପରିବ୍ରାଜକ ଭାରତକୁ ଆସିଥିଲେ । ପଞ୍ଚମ ଶତକରେ ଫା-ହିୟାନ୍ ଜାଭା ଦେଇ ଯାତ୍ରା କଲାବେଳେ ଅଭିଯୋଗ କରିଚନ୍ତି ଯେ ସେଠାରେ ସେ ସମୟରେ ବହୁ ନାସ୍ତିକ ବାସ କରୁଥିଲେ । ଏହାର ଅର୍ଥ ହେଉଛି ସେ ସମୟର ଜାଭା ଅଧିବାସୀ ବ୍ରାହ୍ମଣ୍ୟ ଧର୍ମର ଅନୁଗାମୀ ଥିଲେ; ବୌଦ୍ଧଧର୍ମର ନୁହେଁ ।

ଏକଥା ସ୍ପଷ୍ଟ ଯେ ପ୍ରାଚୀନ ଭାରତରେ ବୋଇତ ନିର୍ମାଣ ବେଶ୍ ଉନ୍ନତ ଥିଲା ଓ ଗୋଟିଏ ବର୍ଦ୍ଧିଷ୍ଣୁ ଶିଳ୍ପ ଉଦ୍ୟୋଗରେ ପରିଣତ ହୋଇଥିଲା । ସେ କାଳରେ ନିର୍ମିତ ଜାହାଜ ସମ୍ପର୍କରେ ଆମ ପାଖରେ ବିସ୍ତୃତ ବିବରଣୀ ରହିଛି । ବହୁ ଭାରତୀୟ ପୋତାଶ୍ରୟର ନାମ ଲିଖିତ ଅଛି । ଖ୍ରୀଷ୍ଟୀୟ ଦ୍ୱିତୀୟ ଓ ତୃତୀୟ ଶତକର ଭାରତୀୟ (ଆନ୍ଧ୍ର) ମୁଦ୍ରାରେ (ଦୋଡ଼ାପାଲ ବିଶିଷ୍ଟ) ବୋଇତର ଚିତ୍ର ଦେଖିବାକୁ ମିଳେ । ଅଜନ୍ତାର ଭିତ୍ତିଚିତ୍ରର ବିଷୟବସ୍ତୁ 'ସିଂହଳ ବିଜୟ' । ଏଥିରେ ହସ୍ତୀବୋଝାଇ ଜାହାଜର ଚିତ୍ର ଅଛି । ପ୍ରଥମ ଭାରତୀୟ ଉପନିବେଶଗୁଡ଼ିକରୁ ଯେଉଁସବୁ ବଡ଼ ବଡ଼ ରାଜ୍ୟ ଓ ସାମ୍ରାଜ୍ୟ ଗଢ଼ିଉଠିଲା, ସେସବୁ ଥିଲେ ମୁଖ୍ୟତଃ ସାମୁଦ୍ରିକ ଶକ୍ତି । ବାଣିଜ୍ୟ ଥିଲା ସେମାନଙ୍କର ପ୍ରଧାନ କର୍ମ ଓ ସେଥିହେତୁରୁ ସମୁଦ୍ରପଥଗୁଡ଼ିକୁ ସେମାନେ ଅକ୍ତିଆର କରିଥିଲେ । ସମୁଦ୍ର ବକ୍ଷରେ ପରସ୍ପର

ଭିତରେ ସେମାନଙ୍କର ଲଢ଼ାଇ ଲାଗିଥିଲା ଏବଂ ଅନ୍ତତଃ ଥରେ ସେମାନଙ୍କ ଭିତରୁ ଜଣେ ଦକ୍ଷିଣ-ଭାରତର ଚୋଳ ରାଜ୍ୟର ପ୍ରଭୁତ୍ୱକୁ ଆହ୍ୱାନ ଜଣାଇପାରିଥିଲା; କିନ୍ତୁ ସମୁଦ୍ରରେ ଚୋଳମାନେ ମଧ୍ୟ ପରାକ୍ରମଶାଳୀ ଥିଲେ ଏବଂ ସେମାନଙ୍କଦ୍ୱାରା ପ୍ରେରିତ ଏକ ସାମୁଦ୍ରିକ ଅଭିଯାନ କିଛିକାଳ ପାଇଁ ଶୈଳେନ୍ଦ୍ର ସାମ୍ରାଜ୍ୟକୁ ପରାଭୂତ କରିଥିଲା ।

ଖ୍ରୀଷ୍ଟୀୟ ୧୦୮୮ର ଏକ କୌତୂହଳକର ତାମିଲ୍ ଶିଳାଲେଖ ଦେଖିବାକୁ ମିଳେ । ଏଥିରେ 'ପନ୍ଦର ଶହଙ୍କ ସଙ୍ଘ'ର ଉଲ୍ଲେଖ କରାଯାଇଛି । ଆପାତତଃ, ଏହା ବଣିକମାନଙ୍କର ଗୋଟାଏ ସଂଘ ଯେଉଁମାନଙ୍କୁ "କୃତ ଯୁଗର ଆରମ୍ଭରୁ, ଜଳ ଓ ସ୍ଥଳପଥରେ ଷଡ଼ ମହାଦେଶର ବହୁ ଦେଶରେ ଭ୍ରମଣ କରି, ପାଇକାରୀ କିମ୍ବା ଖୁଚୁରାରେ ଘୋଡ଼ା, ହାତୀ, ମୂଲ୍ୟବାନ ରତ୍ନ, ସୁଗନ୍ଧ ଦ୍ରବ୍ୟ ଓ ଔଷଧ କାରବାର କରିବାପାଇଁ ଜନ୍ମିଥିବା ସାହସିକ ଲୋକେ" ବୋଲି ବର୍ଣ୍ଣନା କରାଯାଇଛି ।

ଭାରତୀୟଙ୍କର ଉପନିବେଶ ସ୍ଥାପନ ଦିଗରେ ଆଦ୍ୟାବସ୍ଥାର ଏହା ଥିଲା ପୃଷ୍ଠଭୂମି । ବାଣିଜ୍ୟ ଓ ଦୁଃସାହସିକତା ଏବଂ ସଂପ୍ରସାରଣର ପ୍ରେରଣା ଏମାନଙ୍କୁ ଏହିସବୁ ପୂର୍ବୀୟ ଦେଶମାନଙ୍କୁ ଆକର୍ଷିତ କରିଥିଲା । ଯେଉଁସବୁ ଦେଶକୁ ପୁରାତନ ସଂସ୍କୃତ ଗ୍ରନ୍ଥମାନଙ୍କରେ ସୁବର୍ଣ୍ଣ-ଭୂମି ଅଥବା ସୁବର୍ଣ୍ଣ-ଦ୍ୱୀପ ନାମରେ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ଏହି ନାମରେ ହିଁ ପ୍ରଲୋଭନ ରହିଥିଲା । ଆଦ୍ୟକାଳୀନ ଔପନିବେଶିକମାନେ ବସତି ସ୍ଥାପନ କଲେ, ତାର ପରେ ଆହୁରି କେତେ ଗଲେ ଏବଂ ଏପରିଭାବରେ ଗୋଟିଏ ଶାନ୍ତିପୂର୍ଣ୍ଣ ଉପନିବେଶ ସ୍ଥାପନର ପ୍ରକ୍ରିୟା ଅବ୍ୟାହତ ଭାବରେ ଚାଲିଲା । ସ୍ଥାନୀୟ ଅଧିବାସୀ ଓ ଏହି ଭାରତୀୟଙ୍କ ମଧ୍ୟରେ ମିଳାମିଶା ଘଟିଲା ଏବଂ ଗୋଟାଏ ମିଶ୍ରିତ ସଂସ୍କୃତି ବିବର୍ତ୍ତିତ ହେଲା । ସେତେବେଳେ ଯାଇ କେବଳ ସମ୍ଭବତଃ ଭାରତର ରାଜନୈତିକ ବର୍ଗର ଲୋକେ—କେତେକ କ୍ଷତ୍ରିୟ ରାଜକୁମାର, ଧନ୍ୱନ୍ତରୀବଂଶୀୟ ସୈନିକ ରାଜ୍ୟ ଓ ଦୁଃସାହସିକ ଅଭିଜ୍ଞତାର ସନ୍ଧାନରେ ଭାରତର କୂଳ ଛାଡ଼ିଲେ । ନାମର ସାଦୃଶ୍ୟରୁ ସୂଚିତ ହୁଏ ଯେ ଯେଉଁମାନେ ଭାରତ ଛାଡ଼ିଯାଇଥିଲେ, ସେମାନଙ୍କ ଭିତରୁ ଅନେକେ ଭାରତରେ ସୁବିସ୍ତୃତ ମାଳବ ଜାତିର ଲୋକ । ଅତଏବ, ଏମାନେ ମାଳୟ ଜାତି ନାମରେ ପରିଚିତ ହେଲେ ଏବଂ ସମଗ୍ର ଇଣ୍ଡୋନେସିଆରେ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ମଧ୍ୟଭାରତର ଗୋଟାଏ ଅଂଶ ଏବେ ବି ମାଳବ ନାମରେ ପରିଚିତ । ପ୍ରଥମକାଳୀନ ଔପନିବେଶିକମାନେ ଭାରତର ପୂର୍ବୋପକୂଳରୁ, କଳିଙ୍ଗ (ଓଡ଼ିଶା) ଦେଶରୁ ଯାଇଥିବା ଅନୁମିତ ହୁଏ; କିନ୍ତୁ ଦକ୍ଷିଣ-ଭାରତର ହିନ୍ଦୁ ଧର୍ମାବଲମ୍ବୀ ପଲ୍ଲବମାନେ ହିଁ ଉପନିବେଶ ସ୍ଥାପନ ନିମନ୍ତେ ସଂଗଠିତ ଉଦ୍ୟମ କରିଥିଲେ । ଦକ୍ଷିଣ-ପୂର୍ବ ଏସିଆରେ ଯେଉଁ ଶୈଳେନ୍ଦ୍ର ରାଜବଂଶ ସୁବିଖ୍ୟାତ ହୋଇ ଉଠିଲା, ତାର ପ୍ରଥମ ପୁରୁଷ ଓଡ଼ିଶାରୁ ଯାଇଥିବା ଅନୁମାନ କରାଯାଏ । ସେହି ସମୟରେ ଓଡ଼ିଶା ବୌଦ୍ଧଧର୍ମର ଗୋଟିଏ ପ୍ରଧାନ କ୍ଷେତ୍ର ଥିଲା; କିନ୍ତୁ ରାଜତ୍ୱ କରୁଥିବା ରାଜବଂଶ ଥିଲା ବ୍ରାହ୍ମଣ୍ୟ ଧର୍ମ ଅନୁଗାମୀ ।

ଏ ସମସ୍ତ ଭାରତୀୟ ଉପନିବେଶ ଦୁଇଟି ମହାନ ଦେଶ ଓ ଦୁଇଟି ମହାନ୍ ସଭ୍ୟତା—

ଭାରତ ଓ ଚୀନ ମଧ୍ୟରେ ଅବସ୍ଥିତ ଥିଲା । ଏସୀୟ ଭୂଭାଗରେ ଅବସ୍ଥିତ ସେଥିରୁ କେତେ ଚୀନ ସାମ୍ରାଜ୍ୟର ସୀମାନ୍ତ ସ୍ପର୍ଶ କରିଥିଲା ଏବଂ ଅନ୍ୟଗୁଡ଼ିକ ଚୀନ ଓ ଭାରତ ମଧ୍ୟସ୍ଥ ସିଧା-ସଳଖ ବାଣିଜ୍ୟ ପଥରେ ଅବସ୍ଥିତ ଥିଲା । ଅତଏବ, ଏସବୁ ଉପନିବେଶ ଉପରେ ଏହି ଉଭୟ ଦେଶର ପ୍ରଭାବ ପଡ଼ିଥିଲା ଏବଂ ଗୋଟାଏ ମିଶ୍ରିତ ଭାରତ-ଚୀନା ସଭ୍ୟତା ଗଢ଼ି ଉଠିଲା; କିନ୍ତୁ ଏହି ଉଭୟ ସଂସ୍କୃତିର ପ୍ରକୃତି ଏପରି ଥିଲା ଯେ ଉଭୟ ମଧ୍ୟରେ ସଂଘର୍ଷ କେବେହେଲେ ଘଟିନାହିଁ ଏବଂ ଭିନ୍ନ ଭିନ୍ନ ରୂପରେ ଏହି ମିଳିତ ସଂସ୍କୃତିର କେତେ ଆଦର୍ଶ ବିକାଶ ଲାଭକଲା । ଏସିଆ ଭୂଖଣ୍ଡର ବ୍ରହ୍ମଦେଶ, ଶ୍ୟାମ ଓ ଇଣ୍ଡୋଚୀନ ଉପରେ ଅଧିକତର ଭାବରେ ଚୀନର ପ୍ରଭାବ ପଡ଼ିଲା ଏବଂ ବିଭିନ୍ନ ଦ୍ୱୀପ ଓ ମାଳୟ ଉପଦ୍ୱୀପ ଉପରେ ଭାରତର ପ୍ରଭାବ ବିଶେଷଭାବରେ ଲକ୍ଷଣୀୟ ହୋଇଉଠିଲା । ନିୟମତଃ, ଶାସନ ପ୍ରଣାଳୀ ଓ ଜୀବନର ସର୍ବସାଧାରଣ ଦର୍ଶନ ଦେଲା ଚୀନ ଏବଂ ଧର୍ମ ଓ କଳା ଦେଲା ଭାରତ । ମୂଳ ଭୂଖଣ୍ଡର ଦେଶମାନେ ବାଣିଜ୍ୟ ନିମନ୍ତେ ଅଧିକତର ଚୀନ ଉପରେ ନିର୍ଭର କଲେ ଏବଂ ଏହିସବୁ ଦେଶ ଓ ଚୀନ ମଧ୍ୟରେ ରାଜଦୂତ ବିନିମୟ ଘଟିଲା; କିନ୍ତୁ କାମ୍ବୋଡ଼ିଆରେ ଏବଂ ବିଶାଳ ଆଙ୍ଗକୋର ଧ୍ୱଂସାବଶେଷରେ କଳାକୁଶଳତାର ଯେଉଁ ପ୍ରଭାବ ଏ ପର୍ଯ୍ୟନ୍ତ ଲକ୍ଷ୍ୟ କରାଯାଇଚି ତାହା ଭାରତୀୟ; କିନ୍ତୁ ଭାରତୀୟ କଳାରେ ନମନୀୟତା ଥିଲା ଏବଂ ପ୍ରତ୍ୟେକ ଦେଶ ତାର ମୌଳିକ ସ୍ୱଭାବ ବଜାୟ ରଖି ନିଜ ଦେଶର ସ୍ୱଭାବ ଅନୁସାରେ ନବ ନବ ଧାରାରେ ଏହାର ବିକାଶ ସାଧନ କରିପାରିଲେ । ସାର ଜନ୍ ମାର୍ଶଲ୍ "ଭାରତୀୟ କଳାର ବିସ୍ମୟକର ଜୀବନୀଶକ୍ତି ଓ ନମନୀୟ ଚରିତ୍ର" ବିଷୟରେ ଉଲ୍ଲେଖ କରି, ଭାରତୀୟ ଓ ଗ୍ରୀକ୍ ଉଭୟ କଳା "ସେମାନଙ୍କ ସଂସ୍ପର୍ଶରେ ଆସିଥିବା ପ୍ରତ୍ୟେକ ଦେଶ, ଜାତି ଓ ଧର୍ମର ଆବଶ୍ୟକତା ପ୍ରତି ଉପଯୋଗୀ ହେବାର ସାମର୍ଥ୍ୟ" କିପରି ପାଇଥିଲେ ତାହା ସୂଚିତ କରିଚନ୍ତି ।

ଭାରତୀୟ କଳାର ମୌଳିକ ଚରିତ୍ର ଭାରତର ଧର୍ମଗତ ଓ ଦାର୍ଶନିକ ଦୃଷ୍ଟିଭଙ୍ଗୀ ସଙ୍ଗେ ଜଡ଼ିତ କେତେକ ଆଦର୍ଶରୁ ଉତ୍ପନ୍ନ । ଏହିସବୁ ପୂର୍ବୀୟ ଭୂଖଣ୍ଡକୁ ଧର୍ମ ଯେପରି ଭାରତରୁ ଗଲା, ସେପରିଭାବରେ ତାକୁ ଅନୁସରଣ କଲା ଭାରତୀୟ କଳାର ମୌଳିକ ଅବଧାରଣା । ସମ୍ଭବତଃ ଆଦ୍ୟକାଳୀନ ଉପନିବେଶଗୁଡ଼ିକ ନିଶ୍ଚିତ ଭାବରେ ବ୍ରାହ୍ମଣ୍ୟଧର୍ମ ପ୍ରଧାନ ଥିଲା ଏବଂ ପରେ ଅବଶ୍ୟ ବୌଦ୍ଧଧର୍ମ ପ୍ରସାର ଲାଭକଲା । ବନ୍ଧୁ ଭାବରେ ଉଭୟର ସହାବସ୍ଥାନ ସମ୍ଭବ ହୋଇଥିଲା ଏବଂ ସର୍ବସାଧାରଣ ପୂଜା ଅର୍ଚ୍ଚନାର ବହୁ ମିଶ୍ରିତ ରୂପ ଗଢ଼ିଉଠିଲା । ଏହି ବୌଦ୍ଧଧର୍ମ ମୁଖ୍ୟତଃ ଥିଲା ମହାଯାନ ଶାଖା ଅନ୍ତର୍ଗତ ଓ ସହଜରେ ଗ୍ରହଣଯୋଗ୍ୟ ଏବଂ ବ୍ରାହ୍ମଣ୍ୟଧର୍ମ ଓ ବୌଦ୍ଧଧର୍ମ ଉଭୟେ ସ୍ଥାନୀୟ ଅଭ୍ୟାସ ଓ ପରମ୍ପରାର ପ୍ରଭାବରେ ସେମାନଙ୍କର ମୌଳିକ ଶୁଦ୍ଧତାରୁ ସମ୍ଭବତଃ ଦୂରେଇ ଯାଇଥିଲେ । ପରବର୍ତ୍ତୀ କାଳରେ ଗୋଟାଏ ବୌଦ୍ଧ ରାଜ୍ୟ ଓ ବ୍ରାହ୍ମଣ୍ୟ ରାଜ୍ୟ ମଧ୍ୟରେ ବହୁବାର ପ୍ରବଳ ସଂଘର୍ଷ ଘଟିଥିଲା; କିନ୍ତୁ ସାରତଃ ଏସବୁ ସଂଘର୍ଷ ମୂଳରେ ଥିଲା ବାଣିଜ୍ୟ ଓ ସମୁଦ୍ରପଥ ଉପରେ ନିୟନ୍ତ୍ରଣ ଜାରି କରିବାର
ଏସବୁ ସଂଘର୍ଷ ମୂଳରେ ଥିଲା ବାଣିଜ୍ୟ ଓ ସମୁଦ୍ରପଥ ଉପରେ ନିୟନ୍ତ୍ରଣ ଜାରି କରିବାର
ରାଜନୈତିକ ଓ ଅର୍ଥନୈତିକ ଉଦ୍ଦେଶ୍ୟ ।

ଏହିସବୁ ଭାରତୀୟ ଉପନିବେଶର ଇତିହାସ ପ୍ରାୟ ତେରଶହ କିମ୍ବା ତତୋଽଧିକ ବର୍ଷର

ଏକ ମହାନ ପର୍ଯ୍ୟାୟରେ ବିସ୍ତୃତ; ଖ୍ରୀଷ୍ଟୀୟ ପ୍ରଥମ ଅବା ଦ୍ୱିତୀୟ ଶତାବ୍ଦୀ ଆରମ୍ଭରୁ ପଞ୍ଚଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ । ଆଦ୍ୟ ଶତାବ୍ଦୀଗୁଡ଼ିକର ଇତିହାସ ବଡ଼ ଅନିଶ୍ଚିତ ଏବଂ ସେଥିରୁ ବେଶି କିଛି ଜାଣିବାକୁ ମିଳେନି । ଏତିକି କେବଳ ଜାଣିହୁଏ ଯେ ସେହି ସମୟରେ କ୍ଷୁଦ୍ର କ୍ଷୁଦ୍ର ବହୁତ ରାଜ୍ୟ ଥିଲା । କ୍ରମଶଃ ପଞ୍ଚମ ଶତାବ୍ଦୀ ବେଳକୁ ବଡ଼ ବଡ଼ ନଗରୀମାନ ଗଢ଼ି ଉଠିଲା । ଅଷ୍ଟମ ଶତାବ୍ଦୀ ବେଳକୁ ସାମୁଦ୍ରିକ ସାମ୍ରାଜ୍ୟମାନ ମୁଣ୍ଡଟେକି ଉଠିଲେଣି । ଏସବୁ ଆଂଶିକଭାବରେ କେନ୍ଦ୍ରିତ ଥିଲେ ମଧ୍ୟ ଅନେକ ଭୂଖଣ୍ଡ ଉପରେ ଗୋଟାଏ ପ୍ରକାର ଅନିରୂପିତ ଆଧିପତ୍ୟ ବିସ୍ତାର କରିଥିଲେ । ଏହିସବୁ କରଦରାଜ୍ୟ ବେଳେବେଳେ ସ୍ୱାଧୀନ ହୋଇ ଉଠୁଥିଲେ ଏବଂ ଏପରିକି କେନ୍ଦ୍ର ପ୍ରଭୁତ୍ୱ ଉପରେ କେବେକେବେ ଆକ୍ରମଣ କରିଥିଲା ଭଳି ମଧ୍ୟ ଅନୁମିତ ହୁଏ । ଏଥିହେତୁରୁ ସେ ସମୟର ଅବସ୍ଥା ସମ୍ପର୍କରେ ନିଶ୍ଚିତ ଭାବରେ କିଛି ଜାଣିବାକୁ ଚାହିଁଲେ' କେତେକ ପରିମାଣରେ ବିଭ୍ରାଟ ଘଟୁଚି ।

ଏସବୁ ରାଜ୍ୟ ମଧ୍ୟରେ ବୃହତ୍ତମ ଥିଲା ଶୈଳେନ୍ଦ୍ର ସାମ୍ରାଜ୍ୟ ଅଥବା ଶ୍ରୀବିଜୟଙ୍କ ସାମ୍ରାଜ୍ୟ, ଯାହା ଅଷ୍ଟମ ଶତାବ୍ଦୀ ବେଳକୁ ସମଗ୍ର ମାଲେସିଆରେ ଗୋଟିଏ ପ୍ରଭାବଶାଳୀ ଜଳ ଓ ସ୍ଥଳ ଶକ୍ତି ହୋଇ ଉଠିଥିଲା । ମାତ୍ର ସେଦିନ ପର୍ଯ୍ୟନ୍ତ, ଏହାର ଉତ୍ପତ୍ତି ସୁମାତ୍ରାରେ ଏବଂ ରାଜଧାନୀ ମଧ୍ୟ ସେଠାରେ ଅବସ୍ଥିତ ଥିଲା ବୋଲି ଅନୁମାନ କରାଯାଉଥିଲା ଯଦିଓ, ପରବର୍ତ୍ତୀ କାଳର ଗବେଷଣା ଏହାର ଉତ୍ପତ୍ତି ମାଳୟ ଉପଦ୍ୱୀପରେ ଘଟିଥିବା ସୂଚିତ କରେ । ଏହି ସାମ୍ରାଜ୍ୟର ଶକ୍ତି ଚରମୋତ୍କର୍ଷ ଲାଭକଲାବେଳକୁ ମାଳୟ, ସିଂହଳ, ସୁମାତ୍ରା, ଜାଭାର କିଛି ଅଂଶ, ବୋର୍ଣ୍ଣିଓ, ସେଲିବସ୍, ଫିଲିପାଇନ୍‌ସ ଓ ଫରମୋଜାର କିଛି ଅଂଶ ଏହାର ଅନ୍ତର୍ଭୁକ୍ତ ଥିଲା ଏବଂ ସମ୍ଭବତଃ ଏହା କାମ୍ବୋଡ଼ିଆ ଓ ଚମ୍ପା (ଆନମ୍) ଉପରେ ମଧ୍ୟ ରାଜନୈତିକ ଆଧିପତ୍ୟ ବିସ୍ତାର କରିଥିଲା । ଏହି ସାମ୍ରାଜ୍ୟ ବୌଦ୍ଧଧର୍ମ ପ୍ରଧାନ ଥିଲା ।

କିନ୍ତୁ ଶୈଳେନ୍ଦ୍ର ରାଜବଂଶ ଏହି ସାମ୍ରାଜ୍ୟର ସ୍ଥିତି ସୁଦୃଢ଼ କରିବା ବହୁ ପୂର୍ବରୁ ମାଳୟ, କାମ୍ବୋଡ଼ିଆ ଓ ଜାଭାରେ ଶକ୍ତିଶାଳୀ ରାଜ୍ୟମାନ ଗଢ଼ି ଉଠିଥିଲା । ମାଳୟ ଉପଦ୍ୱୀପର ଉତ୍ତରାଂଶରେ, ଶ୍ୟାମଦେଶ ସୀମାନ୍ତରେ, ମୂକସାକ୍ଷୀ ବିସ୍ତୀର୍ଣ୍ଣ ଧ୍ୱଂସାବଶେଷ, ଆର୍. ଜେ. ଉଇଲକିନ୍‌ସନ୍ କହନ୍ତି, "ବହୁ ଶକ୍ତିଶାଳୀ ରାଜ୍ୟର ଅବସ୍ଥିତି, ଅପର୍ଯ୍ୟାପ୍ତ ଧନ ସମ୍ପଦ ଓ ରୁଚିର ବିଳାସିତା ସୂଚିତ କରେ ।" ତୃତୀୟ ଶତାବ୍ଦୀରେ ଚମ୍ପା (ଆନମ) ରାଜ୍ୟରେ ପାଣ୍ଡୁରଙ୍ଗମ୍ ନଗରୀ ଅବସ୍ଥିତ ଥିଲା ଏବଂ ପଞ୍ଚମ ଶତାବ୍ଦୀରେ କମ୍ବୋଜ ଏକ ବିଶାଳ ନଗରୀ ହୋଇଉଠିଲା । ନବମ ଶତାବ୍ଦୀରେ ରାଜା ଜୟବର୍ମଣ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟଗୁଡ଼ିକୁ ଏକତ୍ର କରି କାମ୍ବୋଡ଼ିଆ ସାମ୍ରାଜ୍ୟ ନିର୍ମାଣ କଲେ ଏବଂ ଏହାର ରାଜଧାନୀ ଥିଲା ଆଙ୍ଗକୋର । କେବେ-କେବେ, ସମ୍ଭବତଃ କାମ୍ବୋଡ଼ିଆ ଶୈଳେନ୍ଦ୍ରମାନଙ୍କ ଆଧିପତ୍ୟ ମାନିନେଉଥିଲା; କିନ୍ତୁ ତାହା ନାମକୁମାତ୍ର ହୋଇଥିବ; କାରଣ ନବମ ଶତାବ୍ଦୀରେ ଏହି ରାଜ୍ୟ ତାର ସ୍ୱାଧୀନତା ଓ ସାର୍ବଭୌମତ୍ୱ ଘୋଷଣା କଲା । ଏହି ରାଜ୍ୟ ପ୍ରାୟ ଚାରିଶତ ବର୍ଷ ପର୍ଯ୍ୟନ୍ତ ତିଷ୍ଠି ପାରିଥିଲା ଏବଂ ଜୟ ବର୍ମଣ, ଯଶୋ ବର୍ମଣ, ଇନ୍ଦ୍ର ବର୍ମଣ ଓ ସୂର୍ଯ୍ୟ ବର୍ମଣଙ୍କ ଭଳି ମହାନ ଦଣ୍ଡଧର ଓ ସାମ୍ରାଜ୍ୟ ନିର୍ମାତାମାନେ ଏଥିରେ ରାଜତ୍ୱ କରିଥିଲେ । କାମ୍ବୋଡ଼ିଆର ରାଜଧାନୀ "ଐଶ୍ୱର୍ଯ୍ୟଶାଳୀ

ଅଙ୍ଗକୋର ନାମରେ ଏସିଆ ମହାଦେଶରେ ବିଖ୍ୟାତ ହୋଇ ଉଠିଥିଲା । ଏହି ନଗରୀରେ ଦଶଲକ୍ଷ ଲୋକ ବାସ କରୁଥିଲେ ଏବଂ ଏହା ସିଜର୍‌ମାନଙ୍କ ରୋମ୍ ଅପେକ୍ଷା ଅଧିକତର ବିଶାଳ ଓ ବିଭବଶାଳୀ ଥିଲା । ନଗର ଉପକଣ୍ଠରେ ସୁବିଶାଳ ସୁରମ୍ୟ ଦେବାଳୟ 'ଅଙ୍ଗକୋର ବଟ' ଦଣ୍ଡାୟମାନ ଥିଲା । ତ୍ରୟୋଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ କାମ୍ବୋଡ଼ିଆ-ସାମ୍ରାଜ୍ୟ ସମୃଦ୍ଧିଶାଳୀ ଥିଲା ଏବଂ ଖ୍ରୀଷ୍ଟାବ୍ଦ ୧୨୯୭ ଅବ୍ଦରେ ପରିଦର୍ଶକ ଜଣେ ଚୀନା ରାଜଦୂତଙ୍କ ବିବରଣୀରୁ ଏହି ରାଜଧାନୀର ବୈଭବ ଓ ଐଶ୍ୱର୍ଯ୍ୟର ବର୍ଣ୍ଣନା ଦେଖିବାକୁ ମିଳେ; କିନ୍ତୁ ଅକସ୍ମାତ୍ ଏହାର ଅବସାନ ଘଟିଲା । ଏ ସମାପ୍ତି ଏତେ ଅପ୍ରତ୍ୟାଶିତ ଥିଲା ଯେ କେତେ ପ୍ରାସାଦ ଅର୍ଦ୍ଧନିର୍ମିତ ଅବସ୍ଥାରେ ପରିତ୍ୟକ୍ତ ହୋଇଛି । ଅଙ୍ଗକୋର୍ ବାହାରୁ ଆକ୍ରମିତ ହୋଇଛି ସତ, ଆଭ୍ୟନ୍ତରୀଣ ଅଶାନ୍ତି ବି ଅନ୍ୟତମ ହେତୁ; କିନ୍ତୁ ବିପର୍ଯ୍ୟୟର ପ୍ରଧାନ କାରଣ ହୁଏତ ମେକଂ ନଦୀରେ ପଙ୍କ ବୃଦ୍ଧି, ଯାହା ନଗରର ପ୍ରବେଶପଥଗୁଡ଼ିକ ଜଳାଭୂମିରେ ପରିଣତ କଲା । ଫଳତଃ, ଲୋକେ ନଗର ଛାଡ଼ି ଚାଲିଯିବା ପାଇଁ ବାଧ୍ୟ ହେଲେ ।

ନବମ ଶତାବ୍ଦୀରେ ଜାଭା ମଧ୍ୟ ଶୈଳେନ୍ଦ୍ର ସାମ୍ରାଜ୍ୟରୁ ବିଚ୍ଛିନ୍ନ ହୋଇପଡ଼ିଲା । ତେବେ ମଧ୍ୟ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଶୈଳେନ୍ଦ୍ରମାନେ ଇଣ୍ଡୋନେସିଆର ଅଗ୍ରଗାମୀ ଶକ୍ତି ଭାବରେ ରହିଥିଲେ । ସେହି ସମୟରେ ଦକ୍ଷିଣ-ଭାରତର ଚୋଳ-ଶକ୍ତି ସଙ୍ଗେ ସେମାନଙ୍କର ସଂଘର୍ଷ ଘଟିଲା । ଚୋଳମାନେ ବିଜୟୀ ହେଲେ ଏବଂ ପଚାଶ ବର୍ଷ ପର୍ଯ୍ୟନ୍ତ ଇଣ୍ଡୋନେସିଆର ବିଶାଳ କେତେ ଅଂଶ ଉପରେ ଆଧିପତ୍ୟ ବିସ୍ତାର କରିଥିଲେ । ଚୋଳମାନଙ୍କ ପ୍ରତ୍ୟାବର୍ତ୍ତନ ପରେ ଶୈଳେନ୍ଦ୍ରମାନେ ଅପହୃତ ଅଞ୍ଚଳମାନ ଉଦ୍ଧାର କରିଥିଲେ ଏବଂ ପରବର୍ତ୍ତୀ ତିନି ଶତ ବର୍ଷ ପର୍ଯ୍ୟନ୍ତ ଗୋଟିଏ ସ୍ୱାଧୀନ ରାଜ୍ୟ ଭାବରେ ତିଷ୍ଠି ପାରିଥିଲେ; କିନ୍ତୁ ପୂର୍ବୀୟ ସମୁଦ୍ର-ମାନଙ୍କରେ ଏମାନେ ଆଉ ପୂର୍ବଭଳି ପ୍ରଭାବଶାଳୀ ଶକ୍ତି ହୋଇନଥିଲେ ଏବଂ ତ୍ରୟୋଦଶ ଶତାବ୍ଦୀରେ ଏମାନଙ୍କ ସାମ୍ରାଜ୍ୟ ବିଚ୍ଛିନ୍ନ ହେବାକୁ ଲାଗିଲା । ଫଳତଃ, ଜାଭା ଓ ଶ୍ୟାମ ଦେଶ ଏହି ଦୁର୍ବଳତାର ସୁଯୋଗ ନେଇ ନିଜ ନିଜ ଶକ୍ତି ବୃଦ୍ଧି କରିବାରେ ଲାଗିଲେ । ଚତୁର୍ଦ୍ଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଶ୍ରୀବିଜୟଙ୍କ ଶୈଳେନ୍ଦ୍ର ସାମ୍ରାଜ୍ୟକୁ ଜାଭା ସମ୍ପୂର୍ଣ୍ଣ ଭାବରେ ଜୟ କଲା ।

ଏହି ଯେଉଁ ଜାଭା ରାଜ୍ୟ ବର୍ତ୍ତମାନ ପ୍ରାଧାନ୍ୟ ଲାଭକରି ଉଠିଲା, ଏହା ପଛରେ ଥିଲା ଦୀର୍ଘ ଏକ ଇତିହାସ । ଏହା ଥିଲା ବ୍ରାହ୍ମଣ୍ୟଧର୍ମପ୍ରଧାନ ଗୋଟାଏ ରାଜ୍ୟ ଏବଂ ବୌଦ୍ଧଧର୍ମର ପ୍ରସାର ସତ୍ତ୍ୱେ ଏହା ନିଜର ଚିରାଚରିତ ଧର୍ମବିଶ୍ୱାସରୁ ବିଚ୍ୟୁତ ହୋଇନଥିଲା । ଶ୍ରୀବିଜୟଙ୍କ ଶୈଳେନ୍ଦ୍ର ସାମ୍ରାଜ୍ୟର ରାଜନୈତିକ ଓ ଅର୍ଥନୈତିକ ପ୍ରତାପର ପ୍ରତିରୋଧ ସେ କରି-ପାରିଥିଲା ସତ୍ୟ, ଯେତେବେଳକୁ ଅର୍ଦ୍ଧାଧିକ ଜାଭା ଶ୍ରୀବିଜୟ ଅଧିକାର କରି ସାରିଥିଲେ । ଜାଭାବାସୀ ସାଗର-ବାଣିଜ୍ୟରେ ଆଗ୍ରହୀ ଥିଲେ ଏବଂ ଖୁବ୍ ବଡ଼ ବଡ଼ ଶୈଳ ସୌଧ ନିର୍ମାଣ କରିବାକୁ ଭଲ ପାଉଥିଲେ । ପ୍ରଥମେ ଏହି ରାଜ୍ୟର ନାମ ଥିଲା 'ସିଂହସାରି'; କିନ୍ତୁ ଖ୍ରୀ: ୧୨୯୨ରେ ଗୋଟିଏ ନୂତନ ନଗର 'ମଜ୍ଜପହିତ' ସ୍ଥାପିତ ହେଲା ଏବଂ ସେଥିରୁ ଗଢ଼ିଉଠିଲା ମଜ୍ଜପହିତ ସାମ୍ରାଜ୍ୟ ଯାହା ଶ୍ରୀବିଜୟଙ୍କ ପରେ ଦକ୍ଷିଣ-ପୂର୍ବ ଏସିଆରେ

ଅପ୍ରତିଦ୍ୱନ୍ଦ୍ୱୀ ହୋଇ ଉଠିଲ । କୁବ୍ଲାଇ ଖାଁଙ୍କ ଦ୍ୱାରା ପ୍ରେରିତ କେତେଜଣ ଚୀନା ଦୂତଙ୍କୁ ମଜ୍ଜପହିତ ଅପମାନିତ କଲା ଏବଂ ତାର ପରିଣାମ ହେଲା ମଜ୍ଜପହିତ ଉପରେ ଚୀନର ପ୍ରଚଣ୍ଡ ଆକ୍ରମଣ । ଚୀନାମାନଙ୍କ ପାଖରୁ ସମ୍ଭବତଃ ଜାଭାବାସୀ ବାରୁଦ ବ୍ୟବହାର କରିବା ଶିଖିଥିଲେ ଏବଂ ଶୈଳେନ୍ଦ୍ରମାନଙ୍କୁ ପରିଶେଷରେ ପରାଜିତ କରିବାରେ ତାହା ସହାୟକ ହୋଇଥିଲା ।

ମଜ୍ଜପହିତ ଥିଲା ଗୋଟାଏ କେନ୍ଦ୍ରଶାସନାଧୀନ, ପ୍ରସାରଶୀଳ ସାମ୍ରାଜ୍ୟ । ଏହାର କର ବ୍ୟବସ୍ଥା ସୁସଙ୍ଗଠିତ ଥିଲା ଏବଂ ବାଣିଜ୍ୟ ଓ ଉପନିବେଶମାନଙ୍କ ପ୍ରତି ବିଶେଷ ଦୃଷ୍ଟି ଦିଆଯାଉଥିଲା । ମଜ୍ଜପହିତ ଶାସନ ବ୍ୟବସ୍ଥାରେ ବାଣିଜ୍ୟ, ଉପନିବେଶ, ସର୍ବସାଧାରଣ ସ୍ୱାସ୍ଥ୍ୟ, ଯୁଦ୍ଧ, ସ୍ୱରାଷ୍ଟ୍ର ଇତ୍ୟାଦି ବିବିଧ ବିଭାଗ ରହିଥିଲା । କେତେଜଣ ନ୍ୟାୟାଧୀଶଙ୍କୁ ନେଇ ସର୍ବୋଚ୍ଚ ନ୍ୟାୟାଳୟ ଗଠିତ ହୋଇଥିଲା । ଏହି ସାମ୍ରାଜ୍ୟବାଦୀ ରାଜ୍ୟ ଏତେ ସୁନ୍ଦର ଭାବରେ କିପରି ସଙ୍ଗଠନ କରାଯାଇ ପାରିଲା ଭାବିଲେ ଆଚମ୍ବିତ ଲାଗେ । ଏହାର ପ୍ରଧାନ ବ୍ୟାପାର ଥିଲା ଚୀନ ଓ ଭାରତ ସଙ୍ଗେ ବାଣିଜ୍ୟ କରିବା । ମଜ୍ଜପହିତର ସୁବିଦିତ ଶାସକମାନଙ୍କ ଭିତରେ ରାଣୀ ସୁହିତା ଅନ୍ୟତମା ।

ମଜ୍ଜପହିତ ଓ ଶ୍ରୀବିଜୟଙ୍କ ମଧ୍ୟରେ ଯେଉଁ ଯୁଦ୍ଧ ଘଟିଲା, ସେଥିରେ ମଜ୍ଜପହିତ ସମ୍ପୂର୍ଣ୍ଣ ଭାବରେ ବିଜୟୀ ହୋଇଥିଲେ ମଧ୍ୟ ପୁଣି ନବ ନବ ସଂଘର୍ଷର ସୂତ୍ରପାତ ହେଲା । ଶୈଳେନ୍ଦ୍ର ଶକ୍ତିର ଧ୍ୱଂସସ୍ତୂପରୁ ଅନ୍ୟ କେତେ ଜାତି ସଙ୍ଗେ ସମ୍ମିଳିତ ଭାବରେ ମୁଖ୍ୟତଃ ଆରବ ଓ ଧର୍ମାନ୍ତରିତ ମୁସଲିମ ଜାତିସହ ସୁମାତ୍ରା ଓ ମାଲକାରେ ମାଲୟ-ଶକ୍ତି ମୁଣ୍ଡ ଟେକି ଉଠିଲା । ପୂର୍ବୀୟ ସମୁଦ୍ର ଉପରେ ଦକ୍ଷିଣ-ଭାରତ ଅଥବା-ଭାରତୀୟ ଉପନିବେଶମାନ ଯେଉଁ ପ୍ରଭୁତ୍ୱ ବିସ୍ତାର କରିଥିଲେ, ତାହା ଆରବମାନଙ୍କ ହାତକୁ ଗଲା । ବାଣିଜ୍ୟ ଓ ରାଜନୈତିକ ଶକ୍ତିର ପୀଠ ଭାବରେ ମାଲକା ବହୁବିଖ୍ୟାତ ହୋଇଉଠିଲା ଏବଂ ମାଲୟ ଉପଦ୍ୱୀପ ଓ ସମୀପବର୍ତ୍ତୀ ଦ୍ୱୀପପୁଞ୍ଜରେ ଇସ୍‌ଲାମ ଧର୍ମ ପ୍ରସାର ଲାଭକଲା । ପଞ୍ଚଦଶ ଶତାବ୍ଦୀ ଶେଷଆଡ଼କୁ ଏହି ନୂତନ ଶକ୍ତି ପରିଶେଷରେ ମଜ୍ଜପହିତର ପରିସମାପ୍ତି ଘଟାଇଲା; କିନ୍ତୁ, ମାତ୍ର କେତେକ ବର୍ଷ ଭିତରେ, ଖ୍ରୀ: ୧୫୧୧ରେ ଆଲ୍‌ବୁକେରେକ୍ ଅଧିନାୟକତ୍ୱରେ ପର୍ତ୍ତୁଗୀଜମାନେ ଆସି ମାଲକା ଅଧିକାର କଲେ । ନୂତନ ଭାବରେ ବଢ଼ି ଉଠୁଥିବା ତାର ସାମୁଦ୍ରିକ-ଶକ୍ତିବଳରେ ୟୁରୋପ ଦକ୍ଷିଣ-ପୂର୍ବ ଏସିଆରେ ପଦାର୍ପଣ କଲା ।

## ୧୨. ଭାରତ ବାହାରେ ଭାରତୀୟ କଳାର ପ୍ରଭାବ

ପ୍ରାଚୀନ ସାମ୍ରାଜ୍ୟ ଓ ରାଜବଂଶର ଏହିସବୁ ବିବରଣୀ ପୁରାତତ୍ତ୍ୱବିତ୍ ପାଇଁ କୌତୂହଳର ବିଷୟ; କିନ୍ତୁ ସଭ୍ୟତା ଓ କଳାର ଇତିହାସ ଦୃଷ୍ଟିରୁ ଦେଖିଲେ ଏସବୁର ମହତ୍ତ୍ୱ ଅଛି । ଭାରତୀୟ ଦୃଷ୍ଟିକୋଣରୁ ସେସବୁ ନିର୍ଦ୍ଦିଷ୍ଟ ଭାବରେ ଗୁରୁତ୍ୱପୂର୍ଣ୍ଣ; କାରଣ ଭାରତ ସେଠାରେ କ୍ରିୟାଶୀଳ ହୋଇଛି ଏବଂ ନିଜର ଜୀବନୀ-ଶକ୍ତି ଓ ପ୍ରତିଭା ନାନା ଭାବରେ ପ୍ରଦର୍ଶିତ କରିଛି । ଆମେ ଦେଖିବାକୁ ପାଉଁ ପ୍ରାଣଶକ୍ତିରେ ଉଚ୍ଛଳ, ଭାରତ କିପରି ଦୂରଦୂରାନ୍ତକୁ ପ୍ରସରି ଯାଇଛି

ଏବଂ ସାଥିରେ ନେଇ ଯାଇଚ ତାର ଚିନ୍ତା ଓ ଆଦର୍ଶ କେବଳ ନୁହେଁ, ତାର କଳା, ତାର ବାଣିଜ୍ୟ, ତାର ଭାଷା ଓ ସାହିତ୍ୟ ଏବଂ ତାର ଶାସନପ୍ରଣାଳୀ । ସେ ଜଡ଼ତା ଭଜନଥିଲ, ପ୍ରବାହର ପାର୍ଶ୍ୱ କାଟି ଠିଆହୋଇ ଯାଇନଥିଲ କମ୍ବା ପର୍ବତ ଓ ସମୁଦ୍ରଦ୍ୱାରା ବାହାର ଦୁନିଆରୁ ବିଚ୍ଛିନ୍ନ ହୋଇଯାଇ ନଥିଲ । ତାର ଲୋକେ ସେହିସବୁ ଦୁର୍ଲଙ୍ଘ୍ୟ ଗିରି ଅବରୋଧ ଏବଂ ବିପଦସଙ୍କୁଳ ମହୋଦଧି ଅତିକ୍ରମ କରି, ଏମ୍. ରେନେଁ ଗ୍ରାଉସ୍ ଯେପରି କହନ୍ତି, ନିର୍ମାଣ କଲେ "ଗୋଟାଏ ବୃହତ୍ତର ଭାରତ, ଯାହା ରାଜନୀତି ଦୃଷ୍ଟିରୁ ବୃହତ୍ତର ଗ୍ରୀସ୍ ଭଳି କେତେ ଲଘୁ ଭାବରେ ସଙ୍ଗଠିତ ହୋଇଥିଲେ ମଧ୍ୟ ନୈତିକତା ଦୃଷ୍ଟିରୁ ସମାନ ଭାବରେ ସଂଗତିବନ୍ତ ଥିଲ । ଭାରତୀୟ ରାଜନୈତିକ ଗଢ଼ଣ ସଙ୍ଗେ ସମ୍ବନ୍ଧ ନଥିଲେ ସୁଦ୍ଧା ଏହି ମାଲେସିଆ ରାଜ୍ୟ-ମାନଙ୍କର ରାଜନୈତିକ ସଂଗଠନ ଉଚ୍ଚକୋଟୀର ଥିଲ ।" ଯେଉଁସବୁ ବିସ୍ତୃତ ଅଞ୍ଚଳରେ ଭାରତୀୟ ସଂସ୍କୃତି ପ୍ରସାରଲଭ କରିଥିଲ ଏମ୍. ଗ୍ରୁସେ ସେ ବିଷୟରେ କହନ୍ତି : "ପୂର୍ବ ଇରାନ୍‌ର ଉଚ୍ଚ ମାଳଭୂମିରେ, ସେରିନ୍ଦିଆର ମରୂଦ୍ୟାନମାନଙ୍କରେ, ତିବ୍ବତ, ମଙ୍ଗୋଲିଆ ଓ ମାଞ୍ଚୁରିଆର ଶୁଷ୍କ ବନ୍ଧୁରଭୂମିରେ, ପ୍ରାଚୀନ ସଭ୍ୟତାର ଚୀନ ଓ ଜାପାନରେ, ଆଦିମ ମନ୍ ଓ ଖ୍ମେର୍ ଅଧ୍ୟୁଷିତ ଅଞ୍ଚଳରେ, ଇଣ୍ଡୋଚୀନର ଅନ୍ୟାନ୍ୟ ଉପଜାତିଙ୍କ ଭିତରେ, ମାଲୟ ପୋଲିନେସିଆର ଦେଶମାନଙ୍କରେ, ଇଣ୍ଡୋନେସିଆ ଓ ମାଲୟରେ ଭାରତ ତାର ମହାନ ସଂସ୍କୃତିର ଉଜ୍ଜ୍ୱଳ ସ୍ୱାକ୍ଷର ଲେଖିଚି; ଧର୍ମ ଉପରେ କେବଳ ନୁହେଁ, କଳା ଓ ସାହିତ୍ୟ ଉପରେ ମଧ୍ୟ । ପଦେକରେ କହିଲେ, ଆତ୍ମୋନ୍ନତିର ସବୁ କିଛି ବିଭବ ଉପରେ । (୧)

ଭାରତୀୟ ସଭ୍ୟତା ଦକ୍ଷିଣ-ପୂର୍ବ ଏସିଆର ଦେଶମାନଙ୍କରେ ବିଶେଷଭାବରେ ଚେର ଧରିଥିଲ ଏବଂ ତାର ପ୍ରମାଣ ସେ ଅଞ୍ଚଳରେ ସର୍ବତ୍ର ଆଜି ଦେଖିବାକୁ ମିଳେ । ଚମ୍ପା, ଆଙ୍ଗକୋର, ଶ୍ରୀବିଜୟ, ମଜ୍ଜପହିତ ଓ ଅନ୍ୟାନ୍ୟ ସ୍ଥାନରେ ଚର୍ଚ୍ଚାର ମହାନ୍ କେନ୍ଦ୍ରମାନ ଥିଲ । ବିଭିନ୍ନ ରାଜ୍ୟ ଓ ସାମ୍ରାଜ୍ୟ ଯାହା କାଳକ୍ରମେ ମୁଣ୍ଡଟେକି ଉଠିଥିଲ, ତାର ଶାସକ ମାନଙ୍କ ନାମ ଥିଲ ଅବିମିଶ୍ର ଭାବରେ ଭାରତୀୟ ଓ ସଂସ୍କୃତ ଶବ୍ଦରୁ ଉତ୍ପନ୍ନ । ଏହାର ଅର୍ଥ ନୁହେଁ ଯେ ସେମାନେ ଅବିକଳ ଭାବରେ ଭାରତୀୟ ଥିଲେ; କିନ୍ତୁ ଏତିକି ଅବଶ୍ୟ କୁହାଯାଇ-ପାରିବ ଯେ ସେମାନେ ଭାରତୀୟ ଭାବରେ ରୂପାନ୍ତରିତ ହୋଇଥିଲେ । ରାଜକୀୟ ସମସ୍ତ କିଛି ଉତ୍ସବ ଅନୁଷ୍ଠାନ ଭାରତୀୟ ରୀତିରେ ଓ ସଂସ୍କୃତ ଶାସ୍ତ୍ର ଅନୁସାରେ ପରିଚାଳିତ ହେଉଥିଲ । ସମସ୍ତ ରାଜକର୍ମଚାରୀ ସଂସ୍କୃତ ଉପାଧି ଧାରଣ କରିଥିଲେ ଏବଂ ସେଥିଭିତରୁ କେତେକ ଉପାଧି ଓ ପଦାଧିକାରସୂଚକ ଶବ୍ଦ ଆଜି ସୁଦ୍ଧା ଶ୍ୟାମ ଦେଶରେ କେବଳ ନୁହେଁ, ବରଂ ମାଲୟର ମୁସ୍‌ଲିମ୍ ରାଜ୍ୟମାନଙ୍କରେ ମଧ୍ୟ ବ୍ୟବହୃତ ହେଉଚି । ଇଣ୍ଡୋନେସିଆରେ ଏହିସବୁ ଅଞ୍ଚଳର ପୁରାତନ ସାହିତ୍ୟ ଭାରତୀୟ ପୁରାଣଗାଥା ଓ କିଂବଦନ୍ତୀରେ ପୂର୍ଣ୍ଣ । ଜାଭା ଓ ବାଲିର ବିଖ୍ୟାତ ନୃତ୍ୟ ଭାରତୀୟ ନୃତ୍ୟରୁ ଉତ୍ପନ୍ନ । କ୍ଷୁଦ୍ର ବାଲିଦ୍ୱୀପ ପ୍ରକୃତପକ୍ଷେ ଏ

୧ । ରେନେ ଗ୍ରୁସେ, 'ସିଭିଲଜେସନ ଅଫ୍ ଦି ଇଷ୍ଟ' ୨ୟ ଖଣ୍ଡ, ପୃ. ୨୭୬

ପର୍ଯ୍ୟନ୍ତ ବହୁଭାବରେ ପୁରାତନ ଭାରତୀୟ ସଂସ୍କୃତି ବଜାୟ ରଖିଛି । ଏପରିକି ହିନ୍ଦୁ ଧର୍ମ ମଧ୍ୟ ସେଠାରେ ପ୍ରଚଳିତ ଅଛି । ଫିଲିପାଇନ୍‌ସର ଲିଖନ-କଳା ଭାରତରୁ ଗ୍ରହଣ କରାଯାଇଛି ।

କାମ୍ବୋଡ଼ିଆର ବର୍ଣ୍ଣମାଳା ଦକ୍ଷିଣ ଭାରତରୁ ଗ୍ରହଣ କରାଯାଇଛି ଏବଂ ସାମାନ୍ୟ ପରିବର୍ତ୍ତିତ ଭାବରେ ବହୁ ସଂସ୍କୃତ ଶବ୍ଦ ସେହି ଭାଷାରେ ସ୍ଥାନ ପାଇଛି । ଦେୱାନୀ ଆଇନ ଓ ଫୌଜଦାରୀ ଆଇନ ଭାରତର ପ୍ରାଚୀନ ସ୍ମୃତିକାର ମନୁଙ୍କ ସଂହିତା ଉପରେ ପ୍ରତିଷ୍ଠିତ ଏବଂ ବୌଦ୍ଧଧର୍ମର ପ୍ରଭାବ ଯୋଗୁଁ ସାମାନ୍ୟ ପରିବର୍ତ୍ତନ କରି ସେସବୁ ଆଧୁନିକ କାମ୍ବୋଡ଼ିଆର ଆଇନ ଗ୍ରନ୍ଥମାନଙ୍କରେ ସମ୍ମିଳିତ କରାଯାଇଛି ।

ସର୍ବୋପରି, ଏହିସବୁ ପୁରାତନ ଭାରତୀୟ ଉପନିବେଶମାନଙ୍କର ଦେଦୀପ୍ୟମାନ କଳା ଓ ସ୍ଥାପତ୍ୟରେ ଭାରତୀୟ ପ୍ରଭାବ ବିଶେଷଭାବରେ ଲକ୍ଷଣୀୟ । ମୌଳିକ ଭାରତୀୟ ପ୍ରେରଣାକୁ ପରିମାର୍ଜିତ କରି ଓ ସ୍ଥାନୀୟ ପ୍ରତିଭା ସଙ୍ଗେ ଯୋଗକରି ପରିସ୍ଥିତି ପ୍ରତି ଅନୁକୂଳ ଭାବରେ ତାହା ଯେପରି ପ୍ରୟୋଗ କରାଗଲା, ସେଥିରୁ ଗଢ଼ିଉଠିଲା ଅଙ୍ଗକୋର ଓ ବୋରୋବୁଦୁର୍‌ର କେତେ ସୁବିଶାଳ ସ୍ତମ୍ଭସୌଧ ଓ ରମଣୀୟ ମନ୍ଦିର । ଜାଭାର ବୋରୋବୁଦୁର୍‌ରେ ବୁଦ୍ଧଙ୍କ ଜୀବନଚରିତ ଶିଳାରେ ଖୋଦିତ ହୋଇଛି । ଅନ୍ୟାନ୍ୟ ସ୍ଥାନରେ ମୂର୍ତ୍ତି-ପଟ୍ଟ ଉପରେ ବିଷ୍ଣୁ, ରାମ ଓ କୃଷ୍ଣଙ୍କ ଲୀଳାପ୍ରସଙ୍ଗମାନ ଉତ୍କୀର୍ଣ୍ଣ କରାଯାଇଛି । ଆଙ୍ଗକୋର ସମ୍ପର୍କରେ ଅସ୍‌ବୋର୍ଟ ଷ୍ଟିଲ୍‌ୱେଲ୍ ଲେଖିଛନ୍ତି : "ଦ୍ୱିଧାହୀନ ଭାବରେ କୁହାଯାଇପାରେ ଯେ ଆଙ୍ଗକୋର, ଆଜି ଯେପରି ଦଣ୍ଡାୟମାନ ରହିଛି, ବିଶ୍ୱର ପ୍ରମୁଖ ବିସ୍ମୟ ମଧ୍ୟରେ ଗଣ୍ୟ । ମଣିଷର ପ୍ରତିଭା ଶିଳା ସ୍ୱପ୍ନରେ କେତେ ଊର୍ଦ୍ଧ୍ୱକୁ ଉଠିପାରେ ଏହା ତାର ପ୍ରମାଣ । ଚୀନରେ ଆଜି ଯାହା କିଛି ଦୃଷ୍ଟିଗୋଚର ହୁଏ ତଦପେକ୍ଷା ବହୁ ଗୁଣରେ ମନୋହର, ରମଣୀୟ ଓ ଭାବମୟ ଏହି ଶିଳାର ସ୍ୱପ୍ନ···ଗୋଟାଏ ସଭ୍ୟତା ଯାହା ଛ'ଶହ ବର୍ଷ ପର୍ଯ୍ୟନ୍ତ ତାର ଉଜ୍ଜ୍ୱଳ ପକ୍ଷ ଆନ୍ଦୋଳିତ କରିଥିଲା ଏବଂ ତା'ପରେ ଏପରିଭାବରେ ସମାପ୍ତି ଲଭିଲା ଯେ ତାର ନାମ ସୁଦ୍ଧା ମଣିଷ ସ୍ମୃତିରୁ ଲୋପ ପାଇଛି । ଆଙ୍ଗକୋର ସେହି ସଭ୍ୟତାର ଭୌତିକ ଅବଶେଷ ।"(୧)

ସୁବିଶାଳ ମନ୍ଦିର ଆଙ୍ଗକୋର ବଟକୁ ଘେରି କୃତ୍ରିମ ହ୍ରଦ ଓ ଜଳାଶୟ, ସେତୁଯୁକ୍ତ ନାଳିକା ଏବଂ "ବିଶାଳ ଏକ ଶିଳା-ମସ୍ତକର କମନୀୟ, ସ୍ମିତଯୌତ ଅଥଚ ଦୁର୍ବୋଧ କାମ୍ବୋଡ଼ୀୟ ବଦନ" ପରିଶୋଭିତ ଏକ ବିଶାଳ ତୋରଣ ଆଜି ଏକ ବିସ୍ତୃତ ଅଞ୍ଚଳର ଧ୍ୱଂସାବଶେଷ । (୨) ବିଚିତ୍ର ଭାବରେ ଚିତ୍ତାକର୍ଷକ ତଥା ଆନ୍ଦୋଳନକର ସେହି ବଦନର ମନ୍ଦହାସ – 'ଆଙ୍ଗକୋର ମନ୍ଦହାସ'—ଏକାଧିକ ସ୍ଥାନରେ ଦେଖିବାକୁ ମିଳେ । ପାର୍ଶ୍ୱସ୍ଥ 'ବେୟନ' ଶିଖରେ ଅଦ୍ୱିତୀୟ ଓ କମ୍ର କଳ୍ପନାପୂର୍ଣ୍ଣ । ଆଙ୍ଗକୋର ବଟ ଅପେକ୍ଷା ବେୟନ୍ ଅଧିକତର ରମଣୀୟ; କାରଣ ତାର କଳ୍ପନା ଓ ଅବଧାରଣା ଅଲୌକିକ । ମନେହୁଏ, ଏହା ଯେପରି କୌଣସି ଦୂର ଗ୍ରହରେ ଅବସ୍ଥିତ ନଗରୀର ଏକ ମନ୍ଦିର ··ଏବଂ ଏଥି ସଙ୍ଗେ ସେହି

(୧) ଅସ୍‌ବୋର୍ଟ ଷ୍ଟିଲ୍‌ୱେଲ୍‌ଙ୍କ 'ଏସ୍‌କେପ୍ ଓ୍ୱିଥ୍ ମି—ଏନ୍ ଓରିଏଣ୍ଟେଲ୍ ସ୍କେଚ୍ ବୁକ୍'ରୁ ଉଦ୍ଧୃତ । (୨) ଉଲ୍ଲିଖିତ ପୁସ୍ତକରୁ ।

ରହସ୍ୟମୟ ସୌନ୍ଦର୍ଯ୍ୟଜଡ଼ିତ ଯାହା କୌଣସି ମହାନ୍ କାବ୍ୟର ପଙ୍କ୍ତି ଭିତରେ ଜୀବିତ ଥାଏ ।" (୧)

ଆଙ୍ଗକୋର ପାଇଁ ପ୍ରେରଣା ଆସିଥିଲା ଭାରତରୁ; କିନ୍ତୁ ଖ୍ମେରର ପ୍ରତିଭା ହିଁ ତାକୁ ବିକଶିତ କଲା କିମ୍ବା ଉଭୟର ସମ୍ମିଶ୍ରଣରେ ଏହି ବିସ୍ମୟ ସୃଷ୍ଟି ହୋଇପାରିଲା । କାମ୍ବୋଡ଼ିଆର ଯେଉଁ ରାଜା ଏହି ମହାନ୍ ମନ୍ଦିର ନିର୍ମାଣ କରିଥିବା ଅନୁମିତ ହୁଏ, ସେ ହେଉଛନ୍ତି ଦ୍ୱିତୀୟ ଜୟ ବର୍ମଣ । ଅବିକଳ ଭାରତୀୟ ନାମ । ଡକ୍ଟର କ୍ୱାରିଚ ୱେଲ୍‌ସ କହନ୍ତି : ଭାରତର ନିର୍ଦ୍ଦେଶକ ହସ୍ତ ଯେବେ ଅପସାରିତ ହେଲା, ତାର ପ୍ରେରଣା କିନ୍ତୁ ବିସ୍ମୃତ ହୋଇ ନଥିଲା; କିନ୍ତୁ ସେଥିରୁ ବିସ୍ମୟକରଭାବରେ ପ୍ରାଣବନ୍ତ ବିପୁଳ କେତେ ନବ ନବ ଧାରଣା ଓ କଳ୍ପନାର ରୂପାୟନ ନିମନ୍ତେ ଖ୍ମେର ପ୍ରତିଭା ନିୟୋଜିତ ହେଲା । ଭାରତୀୟ ପରିବେଶରେ ପରିପୁଷ୍ଟ ଯେ କେଉଁ ଅବଧାରଣାଠାରୁ ଏହା ଭିନ୍ନ । ସୁତରାଂ ଉଭୟର ତୁଳନା ଠିକ୍ ଭାବରେ କରିଯାଇପାରେ···ଏ କଥା ସତ୍ୟ ଯେ ଖ୍ମେର ସଂସ୍କୃତି ସାରତଃ ଭାରତର ପ୍ରେରଣା ଉପରେ ପ୍ରତିଷ୍ଠିତ ଯାହା ବିନା ଖ୍ମେରମାନେ ବଡ଼ ହେଲେ ମଧ୍ୟ-ଆମେରିକାର ମୟମାନଙ୍କ ବର୍ବର ପ୍ରଭା ଅପେକ୍ଷା ମହତ୍ତର କିଛି ସୃଷ୍ଟି କରିପାରି ନଥାନ୍ତେ । କିନ୍ତୁ ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ ଏଠାରେ, ବହିର୍ଭାରତର ଅନ୍ୟ ଯେକୌଣସି ଅଞ୍ଚଳ ଅପେକ୍ଷା ଅଧିକ ଭାବରେ, ଏହି ପ୍ରେରଣା ଉର୍ବର ଭୂମିରେ ପଡ଼ିଥିଲା ।" (୨)

ଏଥିରୁ ଏପରି ଅନୁମାନ ଜାଗେ ଯେ ଭାରତରେ ସେହି ମୌଳିକ ପ୍ରେରଣା କ୍ରମଶଃ ମଉଳିଗଲା; କାରଣ ତାର ମାନସ ଓ ଭୂମି ନୂତନ ପ୍ରବାହ ଓ ଧାରଣା ଅଭାବରୁ ଅତିମାତ୍ରାରେ ପରିଶ୍ରାନ୍ତ ଓ ଅପରିପୁଷ୍ଟ ହୋଇପଡ଼ିଲା । ଯେ ପର୍ଯ୍ୟନ୍ତ ଭାରତ ତାର ମାନସ-ମନ୍ଦିର ମୁକ୍ତ ରଖିଥିଲା ଓ ଅନ୍ୟମାନଙ୍କୁ ତାର ସମ୍ପଦ ଦାନ କରୁଥିଲା ଏବଂ ଅନ୍ୟମାନଙ୍କଠାରୁ ଗ୍ରହଣ କରି ତାର ଯାହା କିଛି ଅଭାବ ପୂରଣ କରୁଥିଲା ସେ ସୁସ୍ଥ, ସବଳ ଓ ପ୍ରାଣଶକ୍ତିରେ ଉଚ୍ଛଳ ରହିଥିଲା । କିନ୍ତୁ ନିଜ ସଂରକ୍ଷଣ ନିମନ୍ତେ ନିବିଷ୍ଟ, ବାହ୍ୟ ପ୍ରଭାବରୁ ମୁକ୍ତ ରହିବା ଉଦ୍ଦେଶ୍ୟରେ ସେ ଯେତେ ଯେତେ ନିଜକୁ ସଙ୍କୁଚିତ କରିନେଲା, ସେତେ ଭାବରେ ସେ ସେହି ପ୍ରେରଣା ହରାଇ ବସିଲା ଏବଂ ତାର ଜୀବନ ନିର୍ଦ୍ଧିତ ଭାବରେ ମୃତ ଅତୀତରେ କେନ୍ଦ୍ରିତ କେତେକ ଅର୍ଥହୀନ କର୍ମକଙ୍କାଳରେ ପର୍ଯ୍ୟବସିତ ହେଲା । ସୌନ୍ଦର୍ଯ୍ୟସୃଷ୍ଟିର କଳାକୌଶଳ ହରାଇ ତାହା ଚିହ୍ନିବାର ସାମର୍ଥ୍ୟ ମଧ୍ୟ ତାର ସନ୍ତାନମାନେ ହରାଇବସିଲେ ।

ଜାଭା, ଅଙ୍ଗକୋର ଓ ବହିର୍ଭାରତର ପ୍ରତ୍ନତାତ୍ତ୍ୱିକ କର୍ମ ଓ ଆବିଷ୍କାର ନିମନ୍ତେ ୟୁରୋପୀୟ ବିଦ୍ୱାନ ଓ ପ୍ରତ୍ନତତ୍ତ୍ୱବିତ୍‌ମାନେ ବିଶେଷତଃ ଫରାସୀ ଓ ଓଲନ୍ଦାଜ ବିଦ୍ୱାନମାନେ ଧନ୍ୟବାଦାର୍ହ । କେତେ ବିଶାଳ ନଗରୀ ଓ ସ୍ମୃତି-ସୌଧ ସମ୍ଭବତଃ ଏବେ ବି ମୁକ୍ତିପ୍ରତୀକ୍ଷାରେ

(୧) ଅସ୍‌ବେର୍ଟ ସିଟ୍‌ୱେଲ୍‌ଙ୍କ 'ଏସ୍କେପ୍ ୱିଥ୍ ମି—ଏନ୍ ଓରିଏଣ୍ଟେଲ୍ ସ୍କେଚ ବୁକ୍' ପୁସ୍ତକରୁ ।

(୨) ଡକ୍ଟର ଏଇଚ୍. ଜି. କ୍ୱାରିଚ୍ ୱେଲ୍‌ସଙ୍କ 'ଟୱାର୍ଡ଼ସ୍ ଆଙ୍ଗକୋର' ପୁସ୍ତକରୁ ଉଦ୍ଧୃତ ।

ଭୂଗର୍ଭରେ ଆବଦ୍ଧ ରହିଚି । ଇତ୍ୟବସରରେ ଶୁଣାଯାଉଚି ଯେ ପ୍ରାଚୀନ ଧ୍ୱଂସାବଶେଷ ଧାରକ ମାଳୟର କେତେକ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ, ସଡ଼କ ନିର୍ମାଣ ନିମନ୍ତେ ଉପାଦାନ ସଂଗ୍ରହ ଉଦ୍ଦେଶ୍ୟରେ, ବାରୁଦ ପ୍ରୟୋଗଦ୍ୱାରା ବିଧ୍ୱସ୍ତ କରିଯାଉଚି । ଏଥିରେ ସନ୍ଦେହ ନାହିଁ ଯେ ଏହି ବିଶ୍ୱଯୁଦ୍ଧ ଏପରି ବହୁତ କିଛି ଧ୍ୱଂସ କରିବ ।

କେତେ ବର୍ଷ ପୂର୍ବେ ଜଣେ ଶ୍ୟାମଦେଶୀୟ ଭିକ୍ଷୁ ନିକଟରୁ ମୁଁ ଖଣ୍ଡିଏ ପତ୍ର ପାଇଥିଲି । ରବୀନ୍ଦ୍ରନାଥ ଠାକୁରଙ୍କ ଶାନ୍ତିନିକେତନକୁ ସେ ଆସିଥିଲେ ଏବଂ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କାଳରେ ମୋ ପାଖକୁ ପତ୍ରରେ ଲେଖିଥିଲେ : "ଏହି ମହାନ୍ ତଥା ପ୍ରାଚୀନ ଆର୍ଯ୍ୟାବର୍ତ୍ତକୁ ଆସିବାକୁ ସକ୍ଷମ ହୋଇଥିବାରୁ ଏବଂ ମାତାମହୀ ଭାରତର ପଦତଳେ ବସି ମୋର ବିନମ୍ର ପ୍ରଣତି ଜଣାଇବା ନିମନ୍ତେ ସୁଯୋଗ ପାଇଥିବା ହେତୁରୁ ମୁଁ ନିଜକୁ ସର୍ବଦା ଅତିଶୟ ଭାଗ୍ୟବାନ୍ ମନେକରେ; କାରଣ ଭାରତର ସ୍ନେହଶୀଳ କୋଳରେ ମୋର ମାତୃଭୂମି ପରିପାଳିତା ଏବଂ ସଂସ୍କୃତି ଓ ଧର୍ମରେ ଯାହା କିଛି ସୁନ୍ଦର ଓ ମହନୀୟ ସେଥିପ୍ରତି ଅନୁରକ୍ତ ରହିବାପାଇଁ ଏହି ଦେଶରୁ ହିଁ ଶିକ୍ଷା କରିପାରିଚି ।" ଏହା ପ୍ରତୀକ ନ ହୋଇପାରେ; କିନ୍ତୁ କେତେ ଅସ୍ପଷ୍ଟ ଓ ଅନ୍ୟ ବହୁତ କିଛି ଦ୍ୱାରା ଭାରାକ୍ରାନ୍ତ ହେଲେ ସୁଦ୍ଧା ସେହି ସାଧାରଣ ମନୋଭାବ ବ୍ୟକ୍ତିକରେ ଯାହା ଦକ୍ଷିଣ-ପୂର୍ବ ଏସିଆର ବହୁ ଦେଶରେ ଏବେ ବି ଦେଖିବାକୁ ମିଳେ । ସର୍ବତ୍ର ସଂକୀର୍ଣ୍ଣ ତଥା ତୀବ୍ର ଜାତୀୟତାବାଦ ବଢ଼ିଚାଲିଚି, ଯାହା ନିଜ ଦେଶ ବାହାରକୁ ଦେଖିବାର କଷ୍ଟ କରେନି । ଯଦିବା ଦେଖିଚି, ପ୍ରତ୍ୟୟହୀନ ଆଖିରେ । ଗୋଟାଏ ଦିଗରେ ୟୁରୋପୀୟ ଆଧିପତ୍ୟ ପ୍ରତି ଭୟ ଓ ଘୃଣା ରହିଚି; ଅନ୍ୟ ଦିଗରେ ୟୁରୋପ ଓ ଆମେରିକା ସଙ୍ଗେ ସମାନ ହେବା ଅଭିଳାଷ ବି ରହିଚି । ତାର ଏ ପରାଧୀନ ଅବସ୍ଥାଲାଗି ଭାରତ ପ୍ରତି ବେଳେବେଳେ ବିଦ୍ୱେଷଭାବ ବି ପ୍ରକାଶ ପାଉଚି; ତଥାପି ସବୁ କିଛି ପଛରେ ଭାରତ ପ୍ରତି ଶ୍ରଦ୍ଧା ଓ ସମ୍ମାନବୋଧ ରହିଚି; କାରଣ ପୁରାତନ ସ୍ମୃତି ସହଜରେ ପାସୋରିଯିବାର ନୁହେଁ ଏବଂ ଲୋକେ ଏବେ ବି ଭୁଲି ନାହାନ୍ତି ଯେ ଦିନ ଥିଲା ଯେବେ ଭାରତ ମାତୃଭୂମି ଭାବରେ ତାର ନିଜ ଭଣ୍ଡାରର ସବୁ କିଛି ମୂଲ୍ୟବାନ୍ ଉପାଦାନ ଦେଇ ଏ ଭୂଭାଗକୁ ପରିପୁଷ୍ଟ କରିଥିଲା । ଗ୍ରୀକ୍ ସଂସ୍କୃତି ଯେପରି ଗ୍ରୀକ୍ ଦେଶରୁ ମଧ୍ୟୋପସାଗରୀୟ ଦେଶମାନଙ୍କୁ ଓ ପଶ୍ଚିମ-ଏସିଆର ଦେଶମାନଙ୍କୁ ପ୍ରସରିଗଲା, ଭାରତର ସାଂସ୍କୃତିକ ପ୍ରଭାବ ମଧ୍ୟ ବହୁ ଦେଶକୁ ପ୍ରସରିଯାଇ ନିଜର ଶକ୍ତିଶାଳୀ ମୋହର ଅଙ୍କିତ କଲା ।

"ପାରସ୍ୟରୁ ଚୀନା ସାଗର ପର୍ଯ୍ୟନ୍ତ", ସିଲ୍‌ଭାଁ ଲେଭି ଲେଖିଚନ୍ତି, "ହିମାଚ୍ଛାଦିତ ସାଇବେରିଆରୁ ଜାଭା ଓ ବୋର୍ଣ୍ଣିଓ ପର୍ଯ୍ୟନ୍ତ, ଓସିଆନିଆରୁ ସୋକୋଟ୍ରା ପର୍ଯ୍ୟନ୍ତ ଭାରତ ତାର ସଭ୍ୟତା, ତାର ପୁରୁଣା ଗାଥା ଓ ତାର ନାନା ମତବିଶ୍ୱାସ ପ୍ରସାରିତ କରିଚି । ଶତ ଶତ ବର୍ଷଧରି କ୍ରମାଗତ ଭାବରେ ମାନବଜାତିର ଏକ-ଚତୁର୍ଥାଂଶ ଉପରେ ତାର ଅଲିଭା ସ୍ୱାକ୍ଷର ଲେଖିଚି । ଅଜ୍ଞତା ଏତେକାଳ ଧରି ତାକୁ ଯାହା ଦେବାଲାଗି ଅସ୍ୱୀକାର କରିଚି, ବିଶ୍ୱ-ଇତିହାସରେ ଭାରତ ସେହି ସ୍ଥାନ ଦାବୀ କରିବା ପାଇଁ ଏବଂ ମାନବ ଆତ୍ମାର ପ୍ରତୀକ ତଥା ସାର୍ବଭୌମିକ ଜାତିମାନଙ୍କ ମଧ୍ୟରେ ତାର ଉପଯୁକ୍ତ ଆସନ ଗ୍ରହଣ କରିବା ପାଇଁ

ସର୍ବତୋଭାବେ ଅଧିକାଂଶ ।"(୧)

# ୧୮ : ପୁରାତନ ଭାରତୀୟ କଳା

ଅନ୍ୟ ଦେଶମାନଙ୍କୁ ଭାରତୀୟ ସଂସ୍କୃତି ଓ କଳାର ଏହି ବସ୍ତୁଗୁଡ଼ିକର ସଂପ୍ରସାରଣ ଭାରତ ବାହାରେ ଏହି କଳାର କେତେ ରମଣୀୟ ତଥା କମନୀୟ ଅଭିବ୍ୟକ୍ତି, ଯାହା ଆଜି ବି ଦୃଷ୍ଟିଗୋଚର ହୁଏ, ସମ୍ଭବ କରିପାରିଥିଲା । ଦୁର୍ଭାଗ୍ୟବଶତଃ, ଆମର ବହୁ ପୁରାତନ ଭାସ୍କର୍ଯ୍ୟ ଓ ସ୍ଥାପତ୍ୟ ବିଶେଷତଃ ଉତ୍ତର-ଭାରତର ଏ ପ୍ରକାର ସମ୍ପଦ କାଳକ୍ରମେ ଲୋପପାଇଛି । ସାର ଜନ୍ ମାର୍ସଲ କହନ୍ତି,"ଭାରତୀୟ କଳା ସମ୍ପର୍କରେ ଭାରତରେ କେବଳ ଜ୍ଞାତହେବାକୁ ଚାହିଁବା ଅର୍ଥ ତାର କାହାଣୀର ଅର୍ଦ୍ଧାଂଶ ମାତ୍ର ଜାଣିବା । ସମ୍ପୂର୍ଣ୍ଣ ରୂପରେ ଜାଣିବାକୁ ହେଲେ ବୌଦ୍ଧଧର୍ମର ପଦାଙ୍କ ଅନୁସରଣ କରି ଆମକୁ ମଧ୍ୟ-ଏସିଆ, ଚୀନ ଓ ଜାପାନ ଯିବାକୁ ପଡ଼ିବ; ଆମକୁ ଲକ୍ଷ୍ୟ କରିବାକୁ ପଡ଼ିବ ତିବ୍ବତ, ବର୍ମା ଓ ଶ୍ୟାମ ଦେଶରେ ପ୍ରସାର ଲାଭ କଲାବେଳେ କେତେ ନବ ନବ ରୂପରେ, କପରି କେତେ ନବ ନବ ସୌନ୍ଦର୍ଯ୍ୟ ପ୍ରସ୍ଫୁଟିତ କରୁଛି; କାମ୍ବୋଡ଼ିଆ ଓ ଜାଭାରେ ଯେଉଁ ଅତୁଳନୀୟ ଶୋଭାସମ୍ଭାର ସୃଷ୍ଟିକରିଛି, ସେଥିପ୍ରତି ବିସ୍ମୟଭରା ନିର୍ନିମେଷ ନୟନରେ ଆମକୁ ଚାହିଁବାକୁ ପଡ଼ିବ । ଏହିସବୁ ଦେଶମାନଙ୍କରେ ଭାରତୀୟ କଳା ଭିନ୍ନ ଜାତୀୟପ୍ରତିଭା, ଭିନ୍ନ ପରିବେଷ୍ଟନୀର ସମ୍ମୁଖୀନ ହୋଇଛି ଏବଂ ସେ ସବୁର ସୁନ୍ଦରତର ପ୍ରଭାବରେ ଭିନ୍ନ ବେଶ ଧାରଣ କରିଛି ।"(୨)

ଭାରତୀୟ କଳା, ଭାରତୀୟ ଧର୍ମ ଓ ଦର୍ଶନ ସଙ୍ଗେ ଏତେ ଅନ୍ତରଙ୍ଗ ଭାବରେ ସଂଶ୍ଳିଷ୍ଟ ଯେ, ଭାରତୀୟ ମନକୁ ପରିଚାଳିତ କରୁଥିବା ବିଭିନ୍ନ ଆଦର୍ଶ ସମ୍ବନ୍ଧରେ ଜ୍ଞାନ ଆହରଣ ନକଲେ, ତାର ମୂଲ୍ୟାଙ୍କନ କରିବା କଷ୍ଟକର । ସଙ୍ଗୀତରେ ଯେପରି, କଳାରେ ମଧ୍ୟ ସେପରି ଗୋଟାଏ ବ୍ୟବଧାନ ରହିଛି ଯାହା ପ୍ରାଚ୍ୟ ଓ ପାଶ୍ଚାତ୍ୟ ଅବଧାରଣାକୁ ବିଚ୍ଛିନ୍ନ କରେ । ୟୁରୋପର ମଧ୍ୟଯୁଗୀୟ ମହାନ୍ କଳାକାର ଓ ନିର୍ମାତାମାନେ ଆଧୁନିକ ୟୁରୋପର କଳା-କାରମାନଙ୍କ ଅପେକ୍ଷା ଯେଉଁମାନେ ରେନେସାଁ ଓ ତତ୍‌ପରବର୍ତ୍ତୀ ଯୁଗରୁ ଅନ୍ତତଃ ଆଂଶିକ ଭାବରେ ପ୍ରେରଣା ଲାଭ କରିଥାନ୍ତି, ଭାରତୀୟ କଳା ଓ ଭାସ୍କର୍ଯ୍ୟ ସଙ୍ଗେ ଅଧିକତର ସାମଞ୍ଜସ୍ୟ ସମ୍ଭବତଃ ଉପଲବ୍ଧି କରିପାରିଥାନ୍ତେ । କାରଣ ଭାରତୀୟ କଳାରେ ସର୍ବଦା ଗୋଟାଏ ଧାର୍ମିକ ଆବେଗ, ଗୋଟାଏ ପାରଲୌକିକ ଦୃଷ୍ଟି ରହିଛି, ଯାହା ୟୁରୋପର ମହାନ୍ ଗୀର୍ଜାଘର ନିର୍ମାତାମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା । ସୌନ୍ଦର୍ଯ୍ୟର କଳ୍ପନା କରାଯାଇଛି ବସ୍ତୁମୁଖୀ ଭାବରେ

୧ । ୟୁ. ଏନ୍. ଘୋଷାଲଙ୍କ 'ପ୍ରୋଗ୍ରେସ୍ ଅଫ୍ ଗ୍ରେଟର ଇଣ୍ଡିଆ ରିସେର୍ଚ୍ଚ', ୧୯୧୭-୧୯୪୨ (କଲିକତା, ୧୯୪୩)ରେ ଉଦ୍ଧୃତ ।

୨ । ରେଜିନାଲ୍ଡ଼ ଲେ 'ମେକ୍ସ ବୁଦ୍ଧିଷ୍ଟ ଆର୍ଟ ଇନ୍ ସିଆମ' (କେମ୍ବ୍ରିଜ୍, ୧୯୩୮) ମୁଖବନ୍ଧରୁ ନେଇ ଉଲ୍ଲିଖିତ ପୁସ୍ତକରେ ଲିପିବଦ୍ଧ କରିଛନ୍ତି ଶ୍ରୀ ଘୋଷାଲ ।

ନୁହେଁ, ଆତ୍ମମୁଖୀ ଭାବରେ; ଯଦିଓ ଏହା ଜଡ଼ବସ୍ତୁରେ ଅବା ଆଧାରରେ କମନୀୟ ରୂପ ଘେନିପାରେ, ସାରତଃ ଏହା ଆତ୍ମାର ବିଷୟ । ଗ୍ରୀକମାନେ ସୌନ୍ଦର୍ଯ୍ୟକୁ ସୌନ୍ଦର୍ଯ୍ୟ ପାଇଁ ବୋଲି ଭଲ ପାଉଥିଲେ ଏବଂ ସେମାନେ ସେଥିରୁ ଆନନ୍ଦ କେବଳ ନୁହେଁ ସତ୍ୟ ମଧ୍ୟ ପାଉଥିଲେ; ପ୍ରାଚୀନ ଭାରତୀୟମାନେ ସୌନ୍ଦର୍ଯ୍ୟର ପୂଜାରୀ ଥିଲେ ସୁଦ୍ଧା ସେମାନଙ୍କ କଳାସୃଷ୍ଟିରେ କିଛି ଗଭୀରତର ତାତ୍ପର୍ଯ୍ୟ, ଉପଲବ୍ଧ ଆନ୍ତର ସତ୍ୟର କିଛି କଳ୍ପନା, ଯାହାର ଆଭାସ ସେମାନେ ପାଉଥିଲେ ଦେବାଲାଗି ସର୍ବଦା ଚେଷ୍ଟିତ ଥିଲେ । ସେମାନଙ୍କର ରଚନାତ୍ମକ କର୍ମର ପ୍ରତିଭୂ ଦୃଷ୍ଟାନ୍ତମାନଙ୍କରେ ଗ୍ରାହକ ନିକଟରୁ ପ୍ରଶଂସା ସେମାନେ କବୁଲ କରିନଥାନ୍ତି ଯଦିଓ, ସେମାନେ କେଉଁ ଲକ୍ଷ୍ୟର ଅନୁଧାବନ କରିଚନ୍ତି କିମ୍ବା କେଉଁ ସବୁ ଭାବଦ୍ୱାରା ସେମାନେ ପରିଚାଳିତ ବୁଝିବା ସହଜ ନୁହେଁ । ଅନ୍ୟାନ୍ୟ ଲଘୁତର ଦୃଷ୍ଟାନ୍ତମାନଙ୍କରେ ଏହି ବୁଝାମଣାର ଅଭାବ, ଶିଳ୍ପୀର ମନ ବୁଝିବାର ଅକ୍ଷମତା, ପ୍ରଶଂସା ଓ ମୂଲ୍ୟାୟନର ବାଧକ ହୋଇଉଠେ । ବୋଧର ଅଗମ୍ୟ କୌଣସି ବସ୍ତୁ ପ୍ରତି ଗୋଟାଏ ଅସ୍ପଷ୍ଟ ବିମୁଖଭାବ, ଏପରିକି ବିରକ୍ତି ମଧ୍ୟ ଉପୁଜିଥାଏ ଏବଂ ଏହି ଭାବ ସେହି ମୀମାଂସାରେ ନେଇ ପହଞ୍ଚାଏ ଯେ ଶିଳ୍ପୀ ତାର ଶିଳ୍ପ ସମ୍ପର୍କରେ ଆବଶ୍ୟକୀୟ ଧାରଣ କରିପାରିନି; ଫଳତଃ ବିଫଳ ହୋଇଛି । ବେଳେବେଳେ ଗୋଟାଏ ପ୍ରକାର ବିରାଗ ଭାବ ବି ଆସିଥାଏ ।

ପ୍ରାଚ୍ୟ ହେଉ କି ପାଶ୍ଚାତ୍ୟ ହେଉ କଳା ସମ୍ପର୍କରେ ମୁଁ କିଛି ଜାଣେନି ଏବଂ ସେ ବିଷୟରେ କିଛି କହିବା ପାଇଁ ମୁଁ ଯୋଗ୍ୟ ନୁହେଁ । କଳା ପ୍ରତି ମୋର ପ୍ରତିକ୍ରିୟା ଜଣେ ସାଧାରଣ ଅଶିକ୍ଷିତ ଲୋକର । କୌଣସି ଚିତ୍ର ଅବା ଭାସ୍କର୍ଯ୍ୟ ଅବା ଇମାରତି ମୋର ଅନ୍ତର ଆନନ୍ଦରେ ପୂର୍ଣ୍ଣ କରେ କିମ୍ବା ମତେ ବିଚଳିତ କରେ ଓ ଗୋଟାଏ ବିଚିତ୍ର ଭାବର ପ୍ରବଣତା ଅନୁଭବ କରାଏ କିମ୍ବା ମତେ ସାମାନ୍ୟ କିଛି ବିନୋଦ ଦିଏ ମାତ୍ର; କିମ୍ବା ତାର କୌଣସି ପ୍ରଭାବ ମୋ ଉପରେ ପଡ଼େନି ଏବଂ ପ୍ରାୟ ଅଲକ୍ଷ୍ୟ ଭାବରେ ମୁଁ ତାହା ଆଡ଼େଇ ଦେଇ ଯାଏ; କିମ୍ବା ମୋର ସେଥିପ୍ରତି ବିତୃଷ୍ଣା ଜାତହୁଏ । ଏ ସମସ୍ତ ପ୍ରତିକ୍ରିୟା ବୁଝାଇବା ପାଇଁ ମୁଁ ସକ୍ଷମ ନୁହେଁ କିମ୍ବା କଳାକୃତିର ଦୋଷ-ଗୁଣ ସମ୍ପର୍କରେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରିବା ବି ସମ୍ଭବ ନୁହେଁ । ସିଂହଳର ଅନୁରାଧାପୁରରେ ସ୍ଥାପିତ ବୁଦ୍ଧମୂର୍ତ୍ତି ମତେ ପ୍ରବଳ ଭାବରେ ପ୍ରଭାବିତ କରିଥିଲା ଏବଂ ତାର ଗୋଟିଏ ଚିତ୍ର ବହୁ ବର୍ଷ ପର୍ଯ୍ୟନ୍ତ ମୁଁ ପାଖରେ ରଖିଥିଲି । ଅନ୍ୟ ଦିଗରେ, କାରୁକାର୍ଯ୍ୟମଣ୍ଡିତ ଦକ୍ଷିଣ-ଭାରତର ବହୁ ବିଖ୍ୟାତ ମନ୍ଦିର ମତେ ବିଚଳିତ କରେ ଓ ମନରେ ଗୋଟାଏ ପ୍ରକାର ଅସ୍ୱସ୍ତିବୋଧ ଜାଗ୍ରତ କରେ ।

ଗ୍ରୀସୀୟ ପରମ୍ପରା ଅନୁସାରେ ଶିକ୍ଷିତ ଇଉରୋପୀୟମାନେ ଗ୍ରୀସୀୟ ଦୃଷ୍ଟିଭଙ୍ଗୀରୁ ପ୍ରଥମେ ଭାରତୀୟ କଳାର ପରୀକ୍ଷା-ନିରୀକ୍ଷା କରିଥିଲେ । ଗାନ୍ଧାର ଓ ଉତ୍ତର ସୀମାନ୍ତର ଗ୍ରୀକୋ-ବୌଦ୍ଧ କଳାରୁ, ସେମାନେ ଯାହା ଜାଣିଥିଲେ, କିଛି ଚିହ୍ନି ପାରିଥିଲେ ଏବଂ ଭାରତର ଅନ୍ୟାନ୍ୟ କଳା-ଆଙ୍ଗିକକୁ ସେଥିର ଦୂଷିତ ନମୁନା ବୋଲି ବିବେଚନା କରିଥିଲେ । କ୍ରମଶଃ ଗୋଟାଏ ନୂତନ ଆଭିମୁଖ୍ୟ ପ୍ରକାଶ ପାଇଲା ଏବଂ ସୂଚିତ କରାଗଲା ଯେ ଭାରତୀୟ

କଳା ମୌଳିକ ଓ ତେଜସ୍ୱୀ ଏବଂ କୌଣସି ରୂପରେ ହେଲେ ଗ୍ରୀକୋ-ବୌଦ୍ଧ କଳାରୁ ଉତ୍ପନ୍ନ ନୁହେଁ । ବରଂ ଗ୍ରୀକୋ-ବୌଦ୍ଧ କଳା ଭାରତୀୟ କଳାର ଏକ ମଳିନ ପ୍ରତିଛବି ମାତ୍ର । ଏହି ନୂତନ ଆଭିମୁଖ୍ୟ ଇଂଲଣ୍ଡ ଅପେକ୍ଷା ମହାଦେଶ (ୟୁରୋପ)ରେ ଅଧିକତର ପ୍ରସାର ଲାଭକଲା । ଏକଥା ବଡ଼ ବିଚିତ୍ର ଯେ ଭାରତୀୟ କଳା, ସଂସ୍କୃତ ସାହିତ୍ୟ ଭଳି, ଇଂଲଣ୍ଡ ଅପେକ୍ଷା ୟୁରୋପର ଅନ୍ୟାନ୍ୟ ଦେଶମାନଙ୍କରେ ଅଧିକତର ପ୍ରଶଂସିତ ହୋଇଛି । ଭାରତ ଓ ଇଂଲଣ୍ଡ ମଧ୍ୟରେ ରହିଥିବା ଦୁର୍ଭାଗ୍ୟଜନକ ରାଜନୈତିକ ସମ୍ପର୍କ ଦ୍ୱାରା ଏହା କେତେଦୂର ନିୟନ୍ତ୍ରିତ ମୁଁ ଅନେକ ସମୟରେ ଚକିତ ହୋଇଥାଏ । ଅନ୍ୟାନ୍ୟ ବହୁତ କିଛି ମୌଳିକ କାରଣ ଥିଲେ ମଧ୍ୟ ଏହି ପ୍ରଭେଦ ପଛରେ ସମ୍ଭବତଃ କିଛି ନା କିଛି ରାଜନୈତିକ ବିଚାର ଅବଶ୍ୟ ରହିଛି । ବହୁ ଇଂରେଜ-ଶିଳ୍ପୀ ଓ ବିଦ୍ୱାନ୍ ଏବଂ ଅନ୍ୟମାନେ ଭାରତର ଦୃଷ୍ଟିଭଙ୍ଗୀ ଓ ଆତ୍ମାର ନିକଟବର୍ତ୍ତୀ ହୋଇ ଆମର ବହୁ ପୁରାତନ ଭଣ୍ଡାର ଆବିଷ୍କାର କରିବାରେ ଏବଂ ବିଶ୍ୱକୁ ତାର ବ୍ୟାଖ୍ୟା ବିଶ୍ଳେଷଣ ଯୋଗାଇବାରେ ସହାୟକ ହୋଇଛନ୍ତି । ସେପରି ମଧ୍ୟ ଅନେକ ଅଛନ୍ତି ଯାହାଙ୍କର ସାନୁରାଗ ବନ୍ଧୁତ୍ୱ ଓ ସେବା ନିମନ୍ତେ ଭାରତ ସେମାନଙ୍କ ନିକଟରେ କୃତଜ୍ଞ । ତଥାପି ଏକଥା ସ୍ୱୀକାର କରିବାକୁ ହିଁ ପଡ଼ିବ ଯେ ଭାରତୀୟ ଓ ଇଂରେଜଙ୍କ ମଧ୍ୟରେ ଗୋଟାଏ ବ୍ୟବଧାନ, ପ୍ରସାରଶୀଳ ବ୍ୟବଧାନ ରହିଛି । ଭାରତୀୟ ଦିଗରୁ, ଅନ୍ତତଃ ମୋ ପକ୍ଷରେ, ଏହା ବୁଝିବା କଷ୍ଟକର ନୁହେଁ । କାରଣ ଅଧୁନାତନ କେତେକ ବର୍ଷ ଭିତରେ ସେପରି ବହୁତ କିଛି ଘଟିଯାଇଛି ଯାହା ମନରୁ ପୋଛିପକାଇବା ଆମ ପକ୍ଷରେ ସହଜ ନୁହେଁ । ଆମର ଆତ୍ମାକୁ ବାଧୁଛି । ଅନ୍ୟ ପକ୍ଷରେ, ଅନ୍ୟାନ୍ୟ କାରଣରୁ ହୁଏତ, ଠିକ୍ ଏହିଭଳି ପ୍ରତିକ୍ରିୟା ପ୍ରକାଶ ପାଉଛି; ସେଥିଭିତରୁ ଗୋଟାଏ ହେଉଛି ପୃଥିବୀ ସମକ୍ଷରେ ଦୋଷୀ ସାବ୍ୟସ୍ତ ହେବାରେ କ୍ରୋଧ; ଯେଉଁଥିପାଇଁ ସେମାନଙ୍କ ମତରେ ସେମାନେ ଦୋଷୀ ନୁହନ୍ତି । କିନ୍ତୁ ଏହି ଅନୁଭୂତି ରାଜନୀତି ଅପେକ୍ଷା ଗଭୀରତର ଏବଂ ନିଜ ଅଜ୍ଞାତରେ ଏହା ପ୍ରକାଶ ପାଇଯାଏ । ଇଂରେଜ ବୁଦ୍ଧିଜୀବୀମାନେ ସର୍ବାପେକ୍ଷା ଏଥିରେ ଜଡ଼ିତ । ସେମାନଙ୍କ ଆଖିରେ ଭାରତୀୟ ମାନେ ଅଦ୍ଧ-ପାପର ଏକ ଅସାମାନ୍ୟ ପ୍ରକାଶ ଏବଂ ତାର ସମସ୍ତ କର୍ମରେ ଏହି ଚିହ୍ନ ସୁସ୍ପଷ୍ଟ । ଜଣେ ଜନପ୍ରିୟ ଇଂରେଜ ଲେଖକ, ଇଂରେଜ ବିଚାର ଅଥବା ବୁଦ୍ଧିମତ୍ତାର ପ୍ରତିନିଧି ଯଦିଓ ନୁହନ୍ତି, ଅଳ୍ପଦିନ ତଳେ ଖଣ୍ଡିଏ ବହି ଲେଖିଛନ୍ତି ଯାହା ଭାରତୀୟ ସବୁକିଛି ପ୍ରତି ତିକ୍ତ ଘୃଣା ଓ ଅତିଶୟ ବିତୃଷ୍ଣାରେ ପୂର୍ଣ୍ଣ । ଏହାଙ୍କ ଅପେକ୍ଷା ଅଧିକ ଭାବରେ ବିଦିତ ପ୍ରତିନିଧିସ୍ଥାନୀୟ, ଅନ୍ୟତମ ଇଂରେଜ ଲେଖକ ମିଷ୍ଟର ଅସ୍‌ବେର୍ଟ ଷ୍ଟିଲ୍‌ୱେଲ୍ ତାଙ୍କର 'ଏସ୍‌କେପ୍ ଉ୍ୱିଥ୍ ମି' (୧୯୪୧) ବହିରେ ଲେଖିଛନ୍ତି ଯେ "ତାର ଅନେକାନେକ ତଥା ବହୁବିଧ ଚମତ୍କାରିତା ସତ୍ତ୍ୱେ ଭାରତର ଧାରଣାମାତ୍ର ସମସ୍ତ ଆକର୍ଷଣ ପ୍ରତିହତ କରେ" । "ହିନ୍ଦୁ କଳାକୃତିକୁ ଯାହା ବହୁଧା କ୍ଷୁଣ୍ଣ କରିଥାଏ ସେହି ଘୃଣାବ୍ୟଞ୍ଜକ ଚର୍ବିଲ ଗୁଣ" ବିଷୟ ମଧ୍ୟ ସେ ଉଲ୍ଲେଖ କରିଛନ୍ତି ।

ଭାରତୀୟ କଳା ଅଥବା ଭାରତ ସମ୍ପର୍କରେ ସାଧାରଣ ଭାବରେ ଏ ପ୍ରକାର ମତ ପୋଷଣ କରିବା ନିମନ୍ତେ ଷ୍ଟିଲ୍‌ୱେଲ୍‌ଙ୍କର ପୂର୍ଣ୍ଣ ଯଥାର୍ଥତା ଅଛି । ମୋର ବିଶ୍ୱାସ, ସେ ସେପରି

ଭାବରେ ଅନୁଭବ କରନ୍ତି । ମୋ ନିଜ କଥା କହିଲେ, ଭାରତର ବହୁ କିଛି ପ୍ରତି ମୋର ବିସେଉଳି ବିତୃଷ୍ଣା ଜନ୍ମିଥାଏ; କିନ୍ତୁ ଭାରତ ସମ୍ପର୍କରେ ସାମଗ୍ରିକ ଭାବରେ ମୁଁ ଏଭଳି ଭାବିପାରେ ନାହିଁ । ଏହା ସ୍ୱାଭାବିକ; କାରଣ ମୁଁ ଜଣେ ଭାରତୀୟ ଏବଂ ମୁଁ କେତେ ଅଯୋଗ୍ୟ ହେଲେ ମଧ୍ୟ ନିଜକୁ ଘୃଣା କରିବା ମୋ ପକ୍ଷରେ ସହଜ ନୁହେଁ । କିନ୍ତୁ ଏହା କୌଣସି ମତାମତର ପ୍ରଶ୍ନ ଅବା କଳା ପ୍ରତି ଦୃଷ୍ଟିଭଙ୍ଗୀର କଥା ନୁହେଁ; ଏହା ବହୁ ଅଂଶରେ ଗୋଟାଏ ଜାତି ପ୍ରତି, ଜାଣିତ ଓ ଅଜାଣିତ, ଘୃଣା ତଥା ଶତ୍ରୁତାର ବିଷୟ । ଏକଥା କଣ ସତ୍ୟ ଯେ ଯେଉଁମାନଙ୍କୁ ଆମେ କ୍ଷତିଗ୍ରସ୍ତ କରିଥାଉ ଅବା ଆଘାତ ଦେଇଥାଉ ସେମାନଙ୍କୁ ନାପସନ୍ଦ କରୁ ଓ ଘୃଣା କରୁ ?

ଇଂରେଜମାନଙ୍କ ମଧ୍ୟରେ ଯେଉଁମାନେ ଭାରତୀୟ କଳାର ଗୁଣ ଗ୍ରହଣ କରିଚନ୍ତି ଏବଂ ବିବେଚନାରେ ନୂତନ ମାନ ପ୍ରୟୋଗ କରିଚନ୍ତି, ସେମାନେ ହେଉଚନ୍ତି ଲରେନ୍ସ ବିନ୍ୟନ୍ ଓ ଇ. ବି. ହାଭେଲ୍ । ହାଭେଲ୍ ଭାରତୀୟ କଳାର ବିବିଧ ଆଦର୍ଶ ଓ ତାର ମୂଳରେ ଥିବା ତତ୍ତ୍ୱ ପ୍ରତି ବିଶେଷତଃ ଆଗ୍ରହିତ । ସେ ଜୋର ଦେଇ କହନ୍ତି ଯେ, ଗୋଟାଏ ମହାନ୍ ଜାତୀୟ କଳା, ଜାତୀୟ ବିଶ୍ୱର ଓ ଚରିତ୍ରର ସାଙ୍କେତିକ ପ୍ରକାଶ ସମ୍ଭବ କରିଥାଏ । କିନ୍ତୁ ସେ ସବୁ ପଛର ଆଦର୍ଶ ବୁଝିପାରିଲେ ହିଁ ତାର ଗୁଣ ଗ୍ରହଣ କରିହୁଏ । ସେ ସବୁ ଆଦର୍ଶକୁ ଭୁଲ୍ ଭାବରେ ବୁଝି ଓ ଖୁଣ ଖୋଜି ଗୋଟାଏ ବିଦେଶୀ ଶାସକ ଜାତି ମାନସିକ ବିରୋଧିତାର ବୀଜ ବୁଣିଥାନ୍ତି । ଭାରତୀୟ କଳା, ସେ କହନ୍ତି, ଗୋଟାଏ ସଙ୍କୀର୍ଣ୍ଣ ପରିସରଭୁକ୍ତ ସ୍ୱଳ୍ପସଂଖ୍ୟକ ବୁଦ୍ଧିଜୀବୀଙ୍କ ପ୍ରତି ସମ୍ବୋଧିତ ହୋଇ ନଥିଲା । ତାର ଉଦ୍ଦେଶ୍ୟ ଥିଲା ଧର୍ମ ସମ୍ବନ୍ଧୀୟ ବିବିଧ ବିଶ୍ୱର ଓ ଦର୍ଶନ ସର୍ବସାଧାରଣଙ୍କ ବୋଧଗମ୍ୟ କରିବା । "ହିନ୍ଦୁ କଳା ଏ ପ୍ରକାର ଶିକ୍ଷା ବିତରଣ କରିବାରେ ସଫଳତା ହାସଲ କରିଥିଲା । ଭାରତୀୟ ଜୀବନ ସଙ୍ଗେ ଯେଉଁମାନେ ଘନିଷ୍ଠ ସମ୍ପର୍କ ସ୍ଥାପନ କରିପାରିଚନ୍ତି ସେମାନେ ନିଶ୍ଚୟ ଜାଣନ୍ତି ଯେ, ଭାରତୀୟ ଗ୍ରାମବାସୀ ପାଶ୍ଚାତ୍ୟ ଦୃଷ୍ଟିକୋଣରୁ ନିରକ୍ଷର ବିବେଚିତ ହେଲେ ମଧ୍ୟ, ବିଶ୍ୱର ଯେ କେଉଁ ସ୍ଥାନର ସେହି ଶ୍ରେଣୀୟ ଲୋକଙ୍କ ଭିତରେ ଭାରତୀୟ କୃଷକ ସର୍ବାପେକ୍ଷା ସଂସ୍କୃତିବନ୍ତ ।"(୧)

ସଂସ୍କୃତ କାବ୍ୟ-କବିତା ଓ ଭାରତୀୟ ସଙ୍ଗୀତରେ ଯେପରି କାଳରେ ମଧ୍ୟ ସେପରି ଏ କଥା ସ୍ୱୀକାର କରାଯାଇଥିଲା ଯେ କଳାକାର ପ୍ରକୃତିର ସବୁ କିଛି ବିଭବ ସଙ୍ଗେ ଏକାତ୍ମ ଭାବରେ ପ୍ରକୃତି ଓ ବ୍ରହ୍ମାଣ୍ଡ ସଙ୍ଗେ ମଣିଷର ଅପରିହାର୍ଯ୍ୟ ସମ୍ବନ୍ଧ ବ୍ୟକ୍ତ କରିବ । ସମସ୍ତ ଏସୀୟ କଳାର ଏହା ଥିଲା ପ୍ରଧାନ ସ୍ୱର ଏବଂ ଏଥି ହେତୁରୁ କେବଳ କେତେ ସ୍ପଷ୍ଟ ପ୍ରତୀୟମାନ ବିପୁଳ ବିବିଧତା ଓ ଜାତୀୟ ପାର୍ଥକ୍ୟ ସତ୍ତ୍ୱେ ଏସିଆର କଳାରେ ଗୋଟାଏ ପ୍ରକାର ଐକ୍ୟ ବିଦ୍ୟମାନ । ଅଜନ୍ତାର ରମଣୀୟ ଭିତ୍ତିଚିତ୍ର ବ୍ୟତୀତ ଭାରତରେ ପୁରାତନ ଚିତ୍ରାଙ୍କନ ସେପରି ବିଶେଷ କିଛି ନାହିଁ । ହୁଏତ ବହୁତ କିଛି ନଷ୍ଟ ହୋଇଯାଇଚି । ଚୀନ ଓ ଜାପାନ

(୧) ଇ. ବି. ହାଭେଲ୍—'ଦି ଆଇଡ଼ିଏଲ୍ସ ଅଫ୍ ଇଣ୍ଡିଆନ ଆର୍ଟ (୧୯୨୦)

ଚିତ୍ରକଳାର ଯେପରି ଉତ୍କର୍ଷ ସାଧନ କରିଥିଲେ, ଭାରତ କରିଥିଲା ତାର ଭାସ୍କର୍ଯ୍ୟ ଓ ସ୍ଥାପତ୍ୟରେ ।

ଭାରତୀୟ ସଙ୍ଗୀତ ଯାହା ୟୁରୋପୀୟ ସଙ୍ଗୀତଠାରୁ ସମ୍ପୂର୍ଣ୍ଣ ଭିନ୍ନ, ତାର ନିଜସ୍ୱ ଶୈଳୀରେ ଉଚ୍ଚକୋଟୀରେ ଉପନୀତ ହୋଇ ପାରିଥିଲା ଏବଂ ଏ ଦିଗରେ ଭାରତର ପ୍ରାଧାନ୍ୟ ଚୀନ ଓ ସୁଦୂର ପ୍ରାଚ୍ୟ ବ୍ୟତୀତ ଏସିଆର ଅନ୍ୟାନ୍ୟ ଦେଶର ସଙ୍ଗୀତକୁ ବିପୁଳଭାବରେ ପ୍ରଭାବିତ କଲା । ଏପରି ଭାବରେ, ସଙ୍ଗୀତ ଜରିଆରେ ପାରସ୍ୟ, ଆଫଗାନିସ୍ତାନ, ଆରବ, ତୁର୍କିସ୍ତାନ ଏବଂ ଅନ୍ୟ ଯେଉଁସବୁ ଅଞ୍ଚଳରେ ଆରବ ସଭ୍ୟତା ପ୍ରଚଳିତ ଥିଲା, ଉଦାହରଣସ୍ୱରୂପ ଉତ୍ତର ଆଫ୍ରିକା ସଙ୍ଗେ ଭାରତର ସମ୍ବନ୍ଧ ସ୍ଥାପିତ ହେଲା । ଏହିସବୁ ଦେଶମାନଙ୍କରେ ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତ ଧ୍ରୁବତଃ ପ୍ରଶଂସିତ ହେବ ।

ଏସିଆର ଯେ କେଉଁ ଅଞ୍ଚଳ ଭଳି ଭାରତରେ ମଧ୍ୟ କଳାର ବିକାଶ ସାଧନରେ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ହେଉଛି ଖୋଦିତ ବିଗ୍ରହ ପ୍ରତି ଧର୍ମଗତ ବିଦ୍ୱେଷ । ବେଦ ମୂର୍ତ୍ତିପୂଜାର ବିରୋଧୀ ଥିଲା ଏବଂ ବୌଦ୍ଧଧର୍ମର ଅନ୍ତିମ ପର୍ଯ୍ୟାୟରେ କେବଳ ଭାସ୍କର୍ଯ୍ୟ ଓ ଚିତ୍ରରେ ବୁଦ୍ଧ-ମୂର୍ତ୍ତି ଉଦ୍ଧାର କରାଯାଉଥିଲା । ମଥୁରାର ଯାଦୁଘରେ, ଶକ୍ତି ଓ ସାମର୍ଥ୍ୟରେ ପରିପୂର୍ଣ୍ଣ, ଗୋଟାଏ ବିଶାଳ ବୋଧିସତ୍ତ୍ୱ ଶିଳାବିଗ୍ରହ ସଂରକ୍ଷିତ ହୋଇଛି । ଖ୍ରୀଷ୍ଟୀୟ ଯୁଗ ଆରମ୍ଭରେ ଏହା କୁଶାଣ କାଳର କୃତି ।

ଭାରତୀୟ କଳାର ଆଦ୍ୟ ଅବସ୍ଥାରେ ପ୍ରକୃତିବାଦର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । ଚୀନ ଦେଶର ପ୍ରଭାବ, ଆଂଶିକ ଭାବରେ, ଏହାର କାରଣ ହୋଇପାରେ । ଭାରତୀୟ କଳାର ଇତିହାସରେ, ବିଭିନ୍ନ ଅବସ୍ଥାରେ, ଏହି ପ୍ରକୃତିବାଦ ବିକଶିତ କରିବାରେ ଚୀନା ପ୍ରଭାବ ସ୍ପଷ୍ଟ ଭାବରେ ପ୍ରତୀତ ହୁଏ । ସେପରି ଭାବରେ ଭାରତୀୟ ଆଦର୍ଶବାଦ ମଧ୍ୟ ଚୀନ ଓ ଜାପାନକୁ ସେମାନଙ୍କର ମହାନ୍ କେତେ ପର୍ଯ୍ୟାୟରେ ପ୍ରବଳ ଭାବରେ ପ୍ରଭାବିତ କରିଥିଲା ।

ଖ୍ରୀଷ୍ଟୀୟ ଚତୁର୍ଥରୁ ଷଷ୍ଠ ଶତକ ପର୍ଯ୍ୟନ୍ତ ଗୁପ୍ତଯୁଗରେ ଯାହାକୁ ଭାରତର ସ୍ୱର୍ଣ୍ଣଯୁଗ ବୋଲି ଅଭିହିତ କରାଯାଏ, ଅଜନ୍ତାର ଗୁହାଗୁଡ଼ିକ ଖୋଦନକରି ସେଥିରେ ଭିତ୍ତିଚିତ୍ର ଅଙ୍କନ କରାଯାଇଥିଲା । ବାଗ୍ ଓ ବାଦାମୀ ମଧ୍ୟ ଏହି ସମୟର । ଅଜନ୍ତାର ଏହିସବୁ ରମଣୀୟ ଭିତ୍ତିଚିତ୍ର ଆବିଷ୍କୃତ ହେବା କାଳରୁ ଆମର ଆଜିକାର କଳାକାରମାନଙ୍କୁ ପ୍ରବଳ ଭାବରେ ପ୍ରଭାବିତ କରିଛି । ଫଳତଃ ସେମାନେ ଜୀବନରୁ ମୁହଁ ଫେରାଇ ଅଜନ୍ତା ଶୈଳୀରେ ନିଜ ନିଜ କଳାର ପ୍ରତିରୂପଣ କରିବାକୁ ଯାଇ ବିଶେଷ ସଫଳ ହୋଇ ନାହାନ୍ତି ।

ଅଜନ୍ତା ତାର ଦର୍ଶକକୁ କୌଣସି ଦୂର ସ୍ୱପ୍ନ ସମ ଅଥଚ ବାସ୍ତବ ଗୋଟାଏ ବିଶ୍ୱ ଭିତରକୁ ନେଇଯାଏ । ବୌଦ୍ଧ ଭିକ୍ଷୁମାନେ ପ୍ରସ୍ତରଗାତ୍ରରେ ଏହି ସବୁ ଚିତ୍ର ଲେଖିଥିଲେ । ନାରୀଠାରୁ ଦୂରରେ ରହି, ସେମାନଙ୍କ ଉପରେ ଦୃଷ୍ଟିପାତ ସୁଦ୍ଧା କରନାହିଁ; କାରଣ ସେମାନେ ବିପଜ୍ଜନକ—ଏ ସବୁ କଥା ସେମାନଙ୍କର ଗୁରୁ ଭଗବାନ୍ ବୁଦ୍ଧ ବହୁ କାଳ ପୂର୍ବରୁ କହିଥିଲେ । ତଥାପି ଏ ସବୁ ଚିତ୍ରରେ ନାରୀ ଅଂଶ ହିଁ ବହୁଳ : ରୂପବତୀ, ରାଜକୁମାରୀ, ଗାୟିକା, ନର୍ତ୍ତକୀ—ଉପବିଷ୍ଟ ଓ ଦଣ୍ଡାୟମାନ—ଏକେ ରୂପଚର୍ଚ୍ଚାରେ ନିରତ ଅଥବା ଶୋଭା

ଯାହାରେ ଚଳମାନ । ଅଜନ୍ତାର ନାରୀମାନଙ୍କ ଖ୍ୟାତି ଭାରତ ସୀମା ଅତିକ୍ରମ କରିଛି । ସେହି ଚିତ୍ରକାର-ଭିକ୍ଷୁମାନେ ଦୁନିଆକୁ ଓ ଜୀବନର ମର୍ମସ୍ପର୍ଶୀ ନାଟକକୁ କେତେ ଭଲ-ଭାବରେ ବୁଝି ନଥିଲେ ଏବଂ କି ସ୍ନେହପ୍ରସୂ ହସ୍ତରେ ସେସବୁ ଚିତ୍ରଣ କରିନାହାନ୍ତି ! ସେମାନଙ୍କ ତୂଳୀର ବୋଧିସତ୍ତ୍ୱ ମୂର୍ତ୍ତି ମଧ୍ୟ ଶାନ୍ତ-ସମାହିତ, ପାରଲୌକିକ ପ୍ରଭାଯୁକ୍ତ । ଏ ସବୁ ଭାବିଲେ ବିସ୍ମୟରେ ଅଭିଭୂତ ହେବାକୁ ହୁଏ ।

ସପ୍ତମ ଓ ଅଷ୍ଟମ ଶତାବ୍ଦୀରେ ଏଲୋରାର ବିଶାଳ ଗୁମ୍ଫାଗୁଡ଼ିକ ପଥର ଦେହରୁ ଖୋଦିତ ହେଲା । ମଝିରେ ରହିଲା ବିଶାଳକାୟ କୈଳାସ ମନ୍ଦିର । ମଣିଷ ମନ ଏହା କିପରି ଧାରଣା କରିପାରିଲା କିମ୍ବା ଧାରଣା କରି ତାକୁ କିପରି ସାକାର କଲା, କଳ୍ପନା କରିବା କଠିନ । ଯେଉଁଠି ଶକ୍ତିଶାଳୀ ତଥା ରହସ୍ୟମୟ ତ୍ରିମୂର୍ତ୍ତି ବିଦ୍ୟମାନ, ଏଲିଫେଣ୍ଟାର ଗୁମ୍ଫାଗୁଡ଼ିକ ମଧ୍ୟ ଏହି ସମୟର । ଦକ୍ଷିଣ-ଭାରତରେ ମହାବଳିପୁରମ୍‌ର ଇମାରତଗୁଡ଼ିକ ମଧ୍ୟ ଏହି କାଳର ।

ଏଲିଫେଣ୍ଟା ଗୁମ୍ଫାରେ ଗୋଟିଏ ନଟରାଜ ଶିବଙ୍କ ବିଗ୍ରହ ଭଗ୍ନ ଅବସ୍ଥାରେ ଅଛି; ନୃତ୍ୟରତ ଶିବ । ଏହି ଛିନ୍ନାଙ୍ଗ ଅବସ୍ଥାରେ ମଧ୍ୟ, ହାଭେଲ୍ କହନ୍ତି, ଏହା ଏକ ତେଜସ୍ୱୀ କଳ୍ପନା ଏବଂ ଅତିମାନୁଷିକ ଶକ୍ତିର ଆଧାର । "ନୃତ୍ୟର ଛନ୍ଦ ସଙ୍ଗେ ଶିଳାଖଣ୍ଡ ସ୍ପନ୍ଦିତ ହେବା ଭଳି ଯଦିଓ ପ୍ରତୀତ ହୁଏ, ସେହି ମହିମ୍ନ ଆନନ୍ଦରେ ବିରାଜିତ ଥାଏ ନିର୍ବିକଳ୍ପ ଦିବ୍ୟ ପ୍ରଶାନ୍ତି ଯାହା ବୁଦ୍ଧ ମୂର୍ତ୍ତିର ମୁଖମଣ୍ଡଳକୁ ପ୍ରଭାନ୍ୱିତ କରିଥାଏ ।"

ବ୍ରିଟିଶ୍ ମ୍ୟୁଜିଅମ୍ ବା ଯାଦୁଘରେ ଅଛି ଏକ ନଟରାଜ ଶିବମୂର୍ତ୍ତି ଅଛି । ସେଥି ସମ୍ପର୍କରେ ଏପ୍‌ଷ୍ଟେଇନ୍ ଲେଖିଚନ୍ତି : "ଲୋକ ସୃଷ୍ଟି କରି ଓ ଲୟ କରି ଶିବ ନୃତ୍ୟରତ । ତାଙ୍କର ଲୟମଗ୍ନତା ଅନନ୍ତକାଳର କଳ୍ପନା ଦୃଷ୍ଟି ସମ୍ମୁଖରେ ଉଦ୍‌ଭାସିତ କରେ ଓ ତାଙ୍କର ଗତିରେ, ମନ୍ତ୍ରୋଚ୍ଚାରଣ ଭଳି, ଦୁର୍ବାର ଐନ୍ଦ୍ରଜାଲିକ ଶକ୍ତି ଅନୁଭୂତ ହୁଏ । ବ୍ରିଟିଶ ଯାଦୁଘରେ ସଂରକ୍ଷିତ ଏହି କ୍ଷୁଦ୍ର ସଂଗ୍ରହରେ, କଦାଚିତ ଦୃଷ୍ଟ, ଆମକୁ ପ୍ରେମ ସାଧନାରେ ଅନ୍ତିକ ଅଭିବ୍ୟକ୍ତିର ମର୍ମାନ୍ତିକ ଚିତ୍ର ଦେଖିବାକୁ ମିଳେ ଏବଂ ଯାହା ଅନ୍ୟ କୌଣସି କୃତିରେ ସମ୍ଭବ ହୋଇନ, ମାନବିକ ଭାବାବେଗରେ ନିହିତ ଭାଗ୍ୟ-ନିର୍ଦ୍ଧାରକ ତତ୍ତ୍ୱର ସାରବତ୍ତା ପ୍ରକାଶ କରେ । ଏହିସବୁ ନିଗୂଢ଼ କୃତି ତୁଳନାରେ ଆମର ୟୁରୋପୀୟ ପ୍ରତୀକ ତୁଚ୍ଛ, ଅର୍ଥହୀନ ପ୍ରତୀତ ହୁଏ । ଏଥିରେ ପ୍ରତୀକବାଦର ଆଡ଼ମ୍ବର ନାହିଁ, ସାରବସ୍ତୁ ପ୍ରତି ଧ୍ୟାନ ବେଶୀ ଏବଂ ଏଥିରେ ମୂର୍ତ୍ତିମତ୍ତା ସୁନ୍ଦର ଭାବରେ ପ୍ରକଟିତ ।" (୧)

ଜାଭାର ବୋରୋବୁଦୁର୍‌ରୁ ଗୋଟିଏ ବୋଧିସତ୍ତ୍ୱ ମସ୍ତକ କୋପେନ୍‌ହାଗେନ୍‌ର ଗ୍ଲିପ୍‌ଟୋଟେକ୍‌କୁ ସ୍ଥାନାନ୍ତରିତ କରାଯାଇଛି । ଶିଳ୍ପିକ ସୌନ୍ଦର୍ଯ୍ୟବୋଧ ଦିଗରୁ ଏହା ସୁନ୍ଦର; କିନ୍ତୁ ହାଭେଲ୍ ଯେପରି କହନ୍ତି, ସେଥିରେ ଆହୁରି କିଛି ଗଭୀରତର ସତ୍ତ୍ୱ ରହିଛି ଯାହା ଦର୍ପଣରେ ପ୍ରତିଫଳିତ କଳିଭଳି ବୋଧିସତ୍ତ୍ୱଙ୍କ ଶୁଦ୍ଧଆତ୍ମା ଉଦ୍‌ଭାସିତ କରେ । "ଏହା

---

(୧) ଏପ୍‌ଷ୍ଟେଇନ୍ 'ଲେଟ୍ ଦେର ବି କଲଚର୍' (୧୯୪୬) ପୃ. ୧୯୩ ।

ଗୋଟିଏ ମୁଖ ଯାହା ମହାସାଗରବକ୍ଷର ନିସ୍ତବ୍ଧତା, ନୀଳ ମେଘମୁକ୍ତ ଆକାଶର ପ୍ରଶାନ୍ତି ଏବଂ ମାନବିକ ଅବଧାରଣାର ଅତୀତ ନୈସର୍ଗ ସୌନ୍ଦର୍ଯ୍ୟ ମୂର୍ତ୍ତିମନ୍ତ କରେ ।"

"ଜାଭାରେ ଭାରତୀୟ କଳାର", ହାଭେଲ ଆହୁରି କହନ୍ତି, "ଗୋଟାଏ ନିଜସ୍ୱ ଚରିତ୍ର ଅଛି ଯାହା ତାକୁ ତାର ଉତ୍ପତ୍ତିର ଦେଶ ଭାରତର କଳାଠାରୁ ପୃଥକ୍ ଓ ବିଶିଷ୍ଟ କରେ । ଉଭୟ ମଧ୍ୟରେ ସେହି ଏକାରକମର ଗମ୍ଭୀର ପ୍ରଶାନ୍ତ ପ୍ରବାହିତ ହୁଏ । କିନ୍ତୁ ଜାଭାର ଦିବ୍ୟ ଆଦର୍ଶରେ ଆମକୁ ସେହି ତପସ୍ୟାର ଭାବ ଦେଖିବାକୁ ମିଳେନି ଯାହା ଏଲିଫେଣ୍ଟା ଓ ମାମଲ୍ଲାପୁରମ୍ (ମହାବଳୀପୁରମ୍)ର ହିନ୍ଦୁ ଭାସ୍କର୍ଯ୍ୟର ବୈଶିଷ୍ଟ୍ୟ । ଇଣ୍ଡୋ-ଜାଭାନିଜ୍ କଳାରେ ମାନବିକ ତୃପ୍ତି ଓ ଉଲ୍ଲାସ ଅଧିକ ମାତ୍ରାରେ ଦେଖିବାକୁ ମିଳେ । ଏହା ସେହି ଶାନ୍ତିପୂର୍ଣ୍ଣ ନିର୍ଭୟତାର ଅଭିବ୍ୟକ୍ତି ଯାହା ଭାରତୀୟ ଔପନିବେଶିକମାନେ ସେମାନଙ୍କର ସୁଖମୟ ଦ୍ୱୀପରେ, ସେମାନଙ୍କର ପୂର୍ବପୁରୁଷ ମହାପ୍ରଦେଶରେ ଅନୁଭବ କରିଥିବା କେତେ ଶତ ବର୍ଷର ସଂଗ୍ରାମ ପରେ ଉପଭୋଗ କରୁଥିଲେ ।" (୧)

## ୧୯. ଭାରତର ବୈଦେଶିକ ବାଣିଜ୍ୟ

ଖ୍ରୀଷ୍ଟ ଯୁଗର ପ୍ରଥମ ସହସ୍ର ବର୍ଷ ପର୍ଯ୍ୟନ୍ତ ଭାରତର ବାଣିଜ୍ୟ ବ୍ୟାପକ ଥିଲା ଏବଂ ଭାରତୀୟ ସୌଦାଗରମାନେ ବହୁ ବୈଦେଶିକ ବଜାର ନିୟନ୍ତ୍ରଣ କରୁଥିଲେ । ପୂର୍ବୀୟ ସମୁଦ୍ର-ମାନଙ୍କରେ ଭାରତୀୟ ବାଣିଜ୍ୟ ପ୍ରାଧାନ୍ୟ ବିସ୍ତାର କରିଥିଲା ଏବଂ ମଧ୍ୟୋପସାଗର ପର୍ଯ୍ୟନ୍ତ ମଧ୍ୟ ପହୁଞ୍ଚିଥିଲା । ଗୋଲମରିଚ ଓ ଅନ୍ୟାନ୍ୟ ମସଲା ଭାରତରୁ କମ୍ବା ଭାରତ ଦେଇ ବହୁଧା ଭାରତୀୟ ଅବା ଚୀନା ବୋଇତମାନଙ୍କରେ ପଶ୍ଚିମକୁ ଯାଉଥିଲା ଏବଂ କଥିତ ଅଛି ଯେ ଗୋଥ୍ ଅଲେରିକ୍ ରୋମ୍‌ରୁ ତିନିହଜାର ପାଉଣ୍ଡ ଗୋଲମରିଚ ବଳପୂର୍ବକ ନେଇଯାଇଥିଲେ । ରୋମ୍‌ର ଲେଖକମାନେ ସେହି କାଳରେ ବରାବର ଖେଦ ପ୍ରକାଶ କରିଥାନ୍ତି ଯେ ବିବିଧ ବିଳାସବ୍ୟସନର ଦ୍ରବ୍ୟ ବିନିମୟରେ ରୋମ୍‌ର ସୁନା ଭାରତ ଓ ପୂର୍ବୀୟ ଦେଶମାନଙ୍କୁ ବହିଯାଉଛି ।

ସେହି ସମୟରେ, ଅନ୍ୟ ଯେ କେଉଁଠି ଭଳି ଭାରତରେ ମଧ୍ୟ, ଏହି ବାଣିଜ୍ୟ ସ୍ଥାନୀୟ ଭାବରେ ଉତ୍ପନ୍ନ ଓ ମାର୍ଜିତ ଦ୍ରବ୍ୟର ବିନିମୟରେ ଅଧିକତଃ ସୀମିତ ଥିଲା । ଭାରତ ଥିଲା ଗୋଟାଏ ଉର୍ବର ଦେଶ ଏବଂ ସେଭଳି କେତେକ ବସ୍ତୁରେ ସମୃଦ୍ଧ ଯାହା ଅନ୍ୟ ଦେଶମାନଙ୍କରେ ନଥିଲା । ସମୁଦ୍ରପଥର ସୁବିଧା ନେଇ ସେ ଏହି ସବୁ ଦ୍ରବ୍ୟ ଅନ୍ୟ ଦେଶମାନଙ୍କୁ ରପ୍ତାନୀ କରୁଥିଲା । ପୂର୍ବୀୟ ଦ୍ୱୀପମାନଙ୍କରୁ ସଉଦା ସଂଗ୍ରହ କରି ପଶ୍ଚିମକୁ ଯୋଗାଇ ଯୋଗାଣଦାର ଭାବରେ ଲାଭ ପାଉଥିଲା । ଆହୁରି କେତେ ସୁବିଧା ବି ତାର ଥିଲା । କେଉଁ ଦୂର ଅତୀତରୁ, ଅନ୍ୟ ଦେଶମାନେ ସକ୍ଷମ ହେବା ପୂର୍ବରୁ, ସେ ଲୁଗା ଉତ୍ପାଦନ କରୁଥିଲା ଏବଂ ତାର ବୟନ-ଶିଳ୍ପ ଉନ୍ନତ ଧରଣର ଥିଲା । ଭାରତୀୟ ବସ୍ତ୍ର ଦୂର ଦେଶ-

(୧) ହାଭେଲ 'ଦ ଆଇଡ଼ିଏଲସ ଅଫ୍ ଇଣ୍ଡିଆନ୍ ଆର୍ଟ୍' (୧୯୧୧), ପୃ. ୧୬୯

ମାନଙ୍କରେ ପହଞ୍ଚିଥିଲା । ଆରମ୍ଭରୁ ହିଁ ଭାରତରେ ରେଶମ ବସ୍ତ୍ର ବୟନ କରାଯାଉଥିଲା; କିନ୍ତୁ ଚୀନା ରେଶମ ଭଳି ତାହା ସେତେ ଉତ୍କୃଷ୍ଟ ନଥିଲା । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରୁ ଭାରତ ଚୀନା ରେଶମ ଆମଦାନୀ କରିଚି । ଭାରତୀୟ ରେଶମ-ଶିଳ୍ପ ପରବର୍ତ୍ତୀ ସମୟରେ ଯଥେଷ୍ଟ ପ୍ରସାର ଲାଭ କରିଥିବ; କିନ୍ତୁ ଏଥିରେ ଉତ୍କର୍ଷ ସାଧନର ସୂଚନା ଦେଖିବାକୁ ମିଳେନି । କପଡ଼ା ରଙ୍ଗେଇବାରେ ଭାରତ ଖୁବ୍ ଅଗ୍ରଗତି କରିଥିଲା ଏବଂ ସ୍ଥାୟୀ ରଙ୍ଗ ପ୍ରସ୍ତୁତ କରିବାର ବିଶେଷ ପ୍ରଣାଳୀମାନ ଆବିଷ୍କୃତ ହୋଇଥିଲା । ଏଥିଭିତରୁ ଗୋଟିଏ ରଙ୍ଗ ହେଉଚି ନୀଳ ଯାହାକୁ ଇଂରେଜମାନେ 'ଇଣ୍ଡିଗୋ' କହନ୍ତି । ଏହି ଶବ୍ଦ 'ଇଣ୍ଡିଆ' ଶବ୍ଦରୁ ଉତ୍ପନ୍ନ ଓ ତାହା ଆସିଚି ଗ୍ରୀସ୍ ଦେଇ । ରଙ୍ଗେଇ କରିବାର ଏହି କୌଶଳ ସମ୍ଭବତଃ ବିଦେଶ ସଙ୍ଗେ ଭାରତର ବାଣିଜ୍ୟ ବୃଦ୍ଧି କରିଥିଲା ।

ଖ୍ରୀଷ୍ଟୀୟ ଆଦ୍ୟ କେତେକ ଶତକରେ ଭାରତରେ ରସାୟନ ଶାସ୍ତ୍ରଜ୍ଞାନ ଅନ୍ୟ ଦେଶ-ମାନଙ୍କ ଅପେକ୍ଷା ସମ୍ଭବତଃ ଅଧିକତର ଉନ୍ନତ ଥିଲା । ଏ ସମ୍ପର୍କରେ ମୁଁ ବେଶି କିଛି ଜାଣେନି; କିନ୍ତୁ ଭାରତୀୟ ରସାୟନବିତ୍ ଓ ବୈଜ୍ଞାନିକଙ୍କ ଭିତରେ ପ୍ରମୁଖ ସାର୍ ପି.ସି.ରାୟ, ଯିଏ ଏକାଧିକ ପୁରୁଷର ଭାରତୀୟ ବୈଜ୍ଞାନିକମାନଙ୍କୁ ତାଲିମ କରିଚନ୍ତି 'ହିଷ୍ଟ୍ରି ଅଫ୍ ହିନ୍ଦୁ କେମିଷ୍ଟ୍ରି' ଅର୍ଥାତ୍ ହିନ୍ଦୁ ରସାୟନବିଦ୍ୟାର ଇତିହାସ ଶୀର୍ଷକ ଖଣ୍ଡିଏ ଗ୍ରନ୍ଥ ପ୍ରଣୟନ କରିଚନ୍ତି । ସେହି କାଳରେ ରସାୟନବିଦ୍ୟା କିମିଆ ଓ ଧାତୁବିଦ୍ୟା ସଙ୍ଗେ ଘନିଷ୍ଠଭାବେ ଜଡ଼ିତ ଥିଲା । ଜଣେ ଭାରତୀୟ ରସାୟନବିତ୍ ଓ ଧାତୁବିଦ୍ୟାବିତ୍ ନାଗାର୍ଜୁନ ବହୁବିଖ୍ୟାତ ଥିଲେ । ନାମର ସାମଞ୍ଜସ୍ୟ ନେଇ କେହି କେହି ଏହାଙ୍କୁ ଖ୍ରୀଷ୍ଟୀୟ ପ୍ରଥମ ଶତକର ମହାନ ଦାର୍ଶନିକ ନାଗାର୍ଜୁନ ବୋଲି ସୂଚିତ କରିଥାନ୍ତି; କିନ୍ତୁ ଏହା ଅତିଶୟ ସନ୍ଦେହଜନକ ।

ଭାରତୀୟମାନେ ପୂର୍ବକାଳରୁ ଲୁହା ପାଗ କରିବାର ପ୍ରଣାଳୀ ଜାଣିଥିଲେ ଏବଂ ଭାରତୀୟ ଲୁହା ଓ ଇସ୍ପାତ୍ ବିଦେଶରେ ମହତ୍ତ୍ୱ ଅର୍ଜନ କରିଥିଲା; କାରଣ ମାରଣାସ୍ତ୍ର ତିଆରି ନିମନ୍ତେ ତାହା ଉତ୍କୃଷ୍ଟ ବିବେଚିତ ହେଉଥିଲା । ଅନ୍ୟ ଧାତୁମାନଙ୍କ ସମ୍ପର୍କରେ ବି ଆମ ଲୋକେ ଜାଣିଥିଲେ ଓ ସେସବୁ ବ୍ୟବହାର ମଧ୍ୟ କରୁଥିଲେ । ଔଷଧ ନିମନ୍ତେ ଧାତବ-ଯୌଗ ମଧ୍ୟ ପ୍ରସ୍ତୁତ କରାଯାଉଥିଲା । ଭସ୍ମୀକରଣ ଓ ପାତନ ପଦ୍ଧତି ଲୋକେ ଜାଣିଥିଲେ । ଚିକିତ୍ସା-ବିଜ୍ଞାନ ଖୁବ୍ ଭଲଭାବରେ ବିକାଶ ଲାଭ କରିଥିଲା । ପ୍ରାଚୀନ ଗ୍ରନ୍ଥମାନ ପ୍ରଧାନତଃ ଅନୁସୃତ ହେଉଥିଲେ ମଧ୍ୟ ମଧ୍ୟଯୁଗ ପର୍ଯ୍ୟନ୍ତ ପରୀକ୍ଷା-ନିରୀକ୍ଷାରେ ବିସ୍ତର ପ୍ରଗତି କରାଯାଇଥିଲା । ଶରୀରସ୍ଥାନ ଓ ଶରୀର-ବିଜ୍ଞାନ ଅଧ୍ୟୟନ କରାଯାଉଥିଲା ଏବଂ ହାର୍ଭେଙ୍କ ବହୁ ପୂର୍ବରୁ ଭାରତୀୟମାନେ ରକ୍ତ-ସଞ୍ଚାଳନ ସମ୍ପର୍କରେ ଜ୍ଞାତ ଥିଲେ ।

ବିବିଧ ବିଜ୍ଞାନ ଭିତରେ ପ୍ରାଚୀନତମ ଜ୍ୟୋତିର୍ବିଜ୍ଞାନ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମର ବରାବର ଅନ୍ତର୍ଭୁକ୍ତ ଥିଲା ଏବଂ ଏଥି ସଙ୍ଗେ ଫଳିତ ଜ୍ୟୋତିଷ ବି ମିଶ୍ରିତ ଥିଲା । ଗୋଟିଏ ଶୁଦ୍ଧ ପଞ୍ଜିକା ପ୍ରସ୍ତୁତ ହୋଇଥିଲା ଏବଂ ତାହା ଆଜି ଯାଏ ସାର୍ବଜନୀନ ଭାବରେ ବ୍ୟବହୃତ ହେଉଛି । ଚାନ୍ଦ୍ରମାସ ଗଣନା-ସମ୍ବଳିତ ଏହା ଏକ ସୌର ପଞ୍ଜିକା ହୋଇଥିବାରୁ ସମୟେ ସମୟେ ସମାଯୋଜନ କରିବା ଆବଶ୍ୟକ ହୋଇଥାଏ । ଅନ୍ୟ ଯେକୌଣସି ସ୍ଥାନ ଭଳି ଏଠାରେ ମଧ୍ୟ

ପୁରୋହିତ ଅର୍ଥାତ୍ ବ୍ରାହ୍ମଣମାନେ ବିଶେଷଭାବରେ ଏହି ପଞ୍ଜାଙ୍ଗର ଅଧିକାରୀ ଥିଲେ ଏବଂ ସେମାନେ ବିବିଧ ପର୍ବପର୍ବାଣି ଦିବସ ନିରୂପଣ କରିବା ସଙ୍ଗେ ସଙ୍ଗେ ସୂର୍ଯ୍ୟ ପରାଗ ଓ ଚନ୍ଦ୍ର ଗ୍ରହଣର ଠିକ୍ ସମୟ ସୂଚିତ କରୁଥିଲେ । ଏହି ପରାଗ ତିଥି ମଧ୍ୟ ପର୍ବଦିନ ଭାବରେ ପାଳିତ ହେଉଥିଲା । ଏହି ଜ୍ଞାନର ସୁବିଧା ନେଇ ସେମାନେ ଲୋକଙ୍କ ଭିତରେ ନାନାବିଧ ବିଶ୍ୱାସ ସୃଷ୍ଟି କରୁଥିଲେ ଓ ପୂଜାପାଠ ଉତ୍ସାହିତ କରୁଥିଲେ; ଯଦିଓ ସେମାନେ ଜାଣିଥିଲେ ଯେ ସେ ସବୁ କୁସଂସ୍କାର କେବଳ । ଏପରି ଭାବରେ ସେମାନେ ସେମାନଙ୍କର ମର୍ଯ୍ୟାଦା ବୃଦ୍ଧି କରିଥିଲେ । ଯେଉଁମାନେ ସମୁଦ୍ରରେ ଯାତାୟାତ କରୁଥିଲେ, ସେମାନଙ୍କ ପକ୍ଷରେ ଜ୍ୟୋତିର୍ବିଜ୍ଞାନ ସମ୍ପର୍କୀୟ ବାସ୍ତବଜ୍ଞାନ ବିଶେଷ ସହାୟକ ହେଉଥିଲା । ଜ୍ୟୋତିର୍ବିଜ୍ଞାନରେ ଅଭିଗତ କରିପାରିଥିଲେ ବୋଲି ପ୍ରାଚୀନ ଭାରତୀୟମାନେ ଗର୍ବ ଅନୁଭବ କରୁଥିଲେ । ଅଲେକ୍‌ଜାଣ୍ଡ୍ରିଆରେ ଅଧିକତଃ କେନ୍ଦ୍ରିତ, ଆରବ୍ୟ ଜ୍ୟୋତିର୍ବିଜ୍ଞାନ ସଙ୍ଗେ ସେମାନେ ଯୋଗାଯୋଗ ସ୍ଥାପନ କରିଥିଲେ ।

ସେ କାଳରେ ଯନ୍ତ୍ରପାତି କେତେଦୂର ବିକାଶ ଲାଭ କରିଥିଲା କହିବା କଠିନ; କିନ୍ତୁ ବୋଇତ ନିର୍ମାଣ କରିବା ଗୋଟାଏ ଉନ୍ନତ ଧରଣର ଶିଳ୍ପ ଥିଲା ଏବଂ ବାରମ୍ବାର ନାନାବିଧ ଯନ୍ତ୍ରର ବିଶେଷତଃ ଯୁଦ୍ଧୋପଯୋଗୀ ଯନ୍ତ୍ରର ଉଲ୍ଲେଖ ଦେଖିବାକୁ ମିଳେ । ଏଥିଲାଗି କେତେକ ଉତ୍ସାହୀ ତଥା ବିଶ୍ୱାସୀ ଭାରତୀୟ ସେ ସମୟରେ ନାନାପ୍ରକାର ଜଟିଳ ଯନ୍ତ୍ରପାତି ବ୍ୟବହୃତ ହେଉଥିଲା ବୋଲି ଅନୁମାନ କରନ୍ତି । ଏତିକି ଅବଶ୍ୟ ଜଣାଯାଏ ଯେ ଭାରତ ସେହି ସମୟରେ ଯନ୍ତ୍ରୋପକରଣ ଉତ୍ପାଦନ ଓ ବ୍ୟବହାରରେ ଏବଂ ରସାୟନଶାସ୍ତ୍ର ଓ ଧାତୁ ବିଦ୍ୟାର ଜ୍ଞାନ ଦିଗରେ କୌଣସି ଦେଶର ପଛରେ ପଡ଼ିନଥିଲା । ଏହି ଜ୍ଞାନ ବାଣିଜ୍ୟରେ ତାକୁ କେତେକ ସ୍ୱତନ୍ତ୍ର ସୁବିଧା ଯୋଗାଇଥିଲା ଏବଂ ବହୁ ଶତ ବର୍ଷ ପର୍ଯ୍ୟନ୍ତ ଏକାଧିକ ବିଦେଶୀ ବଜାର ନିୟନ୍ତ୍ରଣ କରିବା ନିମନ୍ତେ ସମର୍ଥ କରିଥିଲା ।

ସମ୍ଭବତଃ ତାର ଆଉ ଗୋଟାଏ ସୁବିଧା ମଧ୍ୟ ଥିଲା । ତାହା ହେଉଚି ଦାସ ପ୍ରଥା, ଯାହା ଗ୍ରୀକ୍ ଓ ଅନ୍ୟାନ୍ୟ ଆଦ୍ୟକାଳୀନ ସଭ୍ୟତାଗୁଡ଼ିକର ପ୍ରଗତିର ପଥରୋଧ କରିଥିଲା, ଭାରତରେ ନଥିଲା । ବର୍ଣ୍ଣ-ବ୍ୟବସ୍ଥାରେ କେତେ ଅକଲ୍ୟାଣ ରହିଥିଲେ ସୁଦ୍ଧା ଏବଂ ତାହା କେତେ ଭାବରେ ବୃଦ୍ଧି ପାଇଥିଲେ ସୁଦ୍ଧା, ସମାଜର ନିମ୍ନତମ ସ୍ତରର ଲୋକ ପାଇଁ ମଧ୍ୟ ଦାସବୃତ୍ତି କେବେହେଲେ ଲୋଭନୀୟ ହୋଇପାରି ନଥାନ୍ତା । ପ୍ରତ୍ୟେକ ବର୍ଣ୍ଣ ଭିତରେ ସମାନତା ଓ କେତେକାଂଶରେ ସ୍ୱତନ୍ତ୍ରତା ବି ଥିଲା । ପ୍ରତ୍ୟେକ ଜାତି ବୃତ୍ତିପ୍ରଧାନ ଥିଲା ଏବଂ ତାର ନିର୍ଦ୍ଦିଷ୍ଟ କର୍ମରେ ନିଯୁକ୍ତ ଥିଲା । ଏହା ଫଳରେ ହସ୍ତଶିଳ୍ପ ଓ କାରୁକର୍ମରେ ଦକ୍ଷତା ଓ ବିଶିଷ୍ଟତା ଅର୍ଜନ କରିବା ସମ୍ଭବ ହୋଇପାରିଥିଲା ।

## ୨୦. ପ୍ରାଚୀନ ଭାରତର ଗଣିତଶାସ୍ତ୍ର

ପ୍ରାଚୀନ ଭାରତରେ ଜ୍ଞାନାଲୋକପ୍ରାପ୍ତ ବ୍ୟକ୍ତି ଥିଲେ ଏବଂ ନାନା ବିମୂର୍ତ୍ତ ଚିନ୍ତାରେ ମଗ୍ନ ରହିବାରେ, କୌଣସି ବିଷୟର ତତ୍ତ୍ୱ ଅନ୍ୱେଷଣ କରିବାରେ ଯେହେତୁ ଥିଲା ସେମାନଙ୍କର

ଆନନ୍ଦ, ଗଣିତଶାସ୍ତ୍ରରେ ସେମାନେ ଉତ୍କର୍ଷତା ହାସଲ କରିଥିବେ ବୋଲି ଅନାୟାସରେ ବିଶ୍ୱାସ କରାଯାଇପାରେ । ଆଦ୍ୟକାଳୀନ ପାଟୀଗଣିତ ଓ ବୀଜଗଣିତ ୟୁରୋପ ଲାଭକଲା ଆରବମାନଙ୍କ ନିକଟରୁ । ସେଥିହେତୁ 'ଆରବ୍ୟ ସଂଖ୍ୟା' ନାମ । କିନ୍ତୁ ଆରବମାନେ ତତ୍‌ପୂର୍ବରୁ ତାହା ଲାଭକରିଥିଲେ ଭାରତରୁ । ଭାରତୀୟମାନେ-ଗଣିତଶାସ୍ତ୍ରରେ ଯେଉଁ ପ୍ରକାର ବିସ୍ମୟକର ପ୍ରଗତି ସାଧନ କରିଥିଲେ, ସେ କଥା ଆଜି କାହାରିକୁ ଅଛପା ନୁହେଁ ଏବଂ ଏହା ସ୍ୱୀକାର ବି କରାଯାଉଚି ଯେ ଆଧୁନିକ ପାଟୀଗଣିତ ଓ ବୀଜଗଣିତର ଭିତ୍ତି ସ୍ଥାପିତ ହୋଇଥିଲା ଭାରତରେ, ବହୁ ପୂର୍ବରୁ । ଗଣନ-ଯନ୍ତ୍ର ବା କାଉଣ୍ଟିଙ୍ଗ ଫ୍ରେମ୍ ବ୍ୟବହାର କରିବାର ଅସୁବିଧାଜନକ ପଦ୍ଧତି ଏବଂ ରୋମାନ୍ ତଥା ଅନ୍ୟ ପ୍ରକାର ସଂଖ୍ୟାର ବ୍ୟବହାର ବହୁକାଳଧରି ପ୍ରଗତି ପଥରେ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ଭାରତରେ 'ଶୂନ' ସମ୍ବଳିତ ଦଶକ ସଂଖ୍ୟାର ଉଦ୍‌ଭାବନ ଫଳରେ ମାନବିକ ମନ ନାନାବିଧ ଅସୁବିଧା ଓ ନିବନ୍ଧନରୁ ମୁକ୍ତ ହେଲା କେବଳ ନୁହେଁ, ଏହି ସବୁ ସଂଖ୍ୟାର ଆଚରଣ ଉପରେ ବି ଆଲୋକପାତ ଘଟିଲା । ଏହି ସବୁ ସଂଖ୍ୟା-ପ୍ରତୀକ ଥିଲା ଅଦ୍ୱିତୀୟ ଓ ଅନ୍ୟାନ୍ୟ ଦେଶମାନଙ୍କରେ ବ୍ୟବହୃତ ପ୍ରତୀକ-ମାନଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଆଜି ଏ ସବୁ ସଂଖ୍ୟା ଅତି ସାଧାରଣ ଓ ସ୍ୱାଭାବିକ ମନେହୁଏ; କିନ୍ତୁ ସେଥିରେ ଢନେ ବୈପ୍ଳବିକ ପ୍ରଗତିର ବୀଜ ରହିଥିଲା । ଏ ସବୁ ସଂଖ୍ୟାର ଉଦ୍‌ଭାବନ ଓ ବାଗଦାଦ୍ ଦେଇ ପଶ୍ଚିମ ଜଗତରେ ପହଞ୍ଚିବା ଭିତରେ ବହୁ ଶତକ ଅତିବାହିତ ହୋଇଥିଲା ।

ଦେଢ଼ଶହ ବର୍ଷ ପୂର୍ବେ, ନେପୋଲିୟନଙ୍କ ରାଜତ୍ୱକାଳରେ, ଲା ପ୍ଲାକ୍ ଲେଖିଥିଲେ : "ଭାରତ ହିଁ ଆମକୁ ଦଶୋଟି ସଙ୍କେତରେ ସମସ୍ତ ସଂଖ୍ୟାକୁ ବ୍ୟକ୍ତ କରିବାର ଯୁକ୍ତିଯୁକ୍ତ ପ୍ରଣାଳୀ ଦାନକଲା, ଯେଉଁଥିରେ ପ୍ରତ୍ୟେକ ସଙ୍କେତର ଗୋଟାଏ ସ୍ଥାନ-ମୂଲ୍ୟ ଓ ପରମ-ମୂଲ୍ୟ ରହିଚି । ଏହି ଗଭୀର ତଥା ଗୁରୁତ୍ୱପୂର୍ଣ୍ଣ ଭାବ ଆମକୁ ଆଜି ଏତେ ସରଳ ପ୍ରତୀତ ହୁଏ ଯେ ଆମେ ତାର ପ୍ରକୃତ ଗୁଣ ଭୁଲିଯାଉଥାଉଁ; କିନ୍ତୁ ଏହି ନିପଟ ସରଳତା ହିଁ ସବୁ ପ୍ରକାର ସଗଣନ ବ୍ୟବସ୍ଥାକୁ ଯେଉଁ ଭଳି ସହଜ କରିଚି, ପ୍ରୟୋଜନୀୟ ବିବିଧ ଉଦ୍‌ଭାବନ ଭିତରେ, ଆମ ପାଟୀଗଣିତ ପ୍ରଥମ ଶ୍ରେଣୀ ଆସନ ଲାଭ କରିପାରିଚି । ଏହି କୃତିତ୍ୱର ମହତ୍ତ୍ୱ ସେତେବେଳେ ଯାଇ ଉପଲବ୍‌ଧି କରିହେବ, ଯେବେ ଆମେ ସ୍ମରଣକରିବା ଯେ ପ୍ରାଚୀନ-କାଳର ଦୁଇଟି ଅତିମାନୁଷିକ ପ୍ରତିଭା ଆର୍କିମେଡ଼ିସ ଓ ଏପୋଲୋନିଏସଙ୍କ ଚିନ୍ତାରେ ଏହା ଉଦିତ ହୋଇପାରିନଥିଲା ।" (୧)

ଭାରତରେ ଜ୍ୟାମିତି, ପାଟୀଗଣିତ ଓ ବୀଜଗଣିତର ଉତ୍ପତ୍ତି ଆମକୁ ବହୁ ପ୍ରାଚୀନ କାଳରେ ନେଇ ଉପନୀତ କରାଏ । ସମ୍ଭବତଃ, ବୈଦିକ ଯଜ୍ଞବେଦି ଉପରେ ମଣ୍ଡଳ ଆଦି କାଟିବାପାଇଁ ଏକପ୍ରକାର ଜ୍ୟାମିତିକ ବୀଜଗଣିତରୁ ଏହାର ଆରମ୍ଭ । ସୁପ୍ରାଚୀନ ଗ୍ରନ୍ଥମାନଙ୍କରେ ଗୋଟାଏ ବର୍ଗକ୍ଷେତ୍ରକୁ ଗୋଟାଏ ବାହୁ ଅବଲମ୍ବନରେ ଆୟତକ୍ଷେତ୍ରରେ

(୧) ହଗ୍‌ବେନ୍, 'ମେଥେମେଟିକ୍ସ ଫର୍ ଦି ମିଲିଅନ୍' ଲଣ୍ଡନ, (୧୯୪୨)

ପରିଣତ କରିବା ପଦ୍ଧତିର ଉଲ୍ଲେଖ ଅଛି; ଯଥା : ଅ କ୍ଷ = ସ । ଏବେ ବି ହିନ୍ଦୁ କର୍ମାନୁଷ୍ଠାନରେ ଜ୍ୟାମିତିକ ଚିତ୍ରର ପ୍ରଚଳନ ଅଛି । ଭାରତରେ ଜ୍ୟାମିତିରେ ଯଦିଓ ପ୍ରଗତି କରାଯାଇଥିଲା, ଏ ଦିଗରେ କିନ୍ତୁ ଗ୍ରୀସ୍ ଓ ଆଲେକ୍‌ଜାଣ୍ଡ୍ରିଆ ଅଗ୍ରଗାମୀ ଥିଲେ । ଭାରତ ନେତୃତ୍ୱ ଦେଇଥିଲା ପାଟୀଗଣିତ ଓ ବୀଜଗଣିତରେ । ଦଶମିକ ସ୍ଥାନ-ମୂଲ୍ୟ ପଦ୍ଧତି ଓ ଶୂନ ସଙ୍କେତ କିଏ ବା କେଉଁମାନେ ଆବିଷ୍କାର କରିଥିଲେ, ଆମେ ଜାଣୁନା । ଶୂନ ସଙ୍କେତର ସର୍ବାପେକ୍ଷା ପ୍ରାଥମିକ ପ୍ରୟୋଗ, ଯାହା ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇଛି, ଦେଖିବାକୁ ମିଳେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ଶାସ୍ତ୍ରଗ୍ରନ୍ଥମାନଙ୍କରେ । ଖ୍ରୀଷ୍ଟଯୁଗର ପ୍ରାରମ୍ଭରେ ସମ୍ଭବତଃ ସ୍ଥାନ-ମୂଲ୍ୟ ପଦ୍ଧତି ଉଦ୍ଭାବିତ ହୋଇଥିବା ଅନୁମାନ କରାଯାଏ । ଶୂନ ସଙ୍କେତ ଅର୍ଥାତ୍ 'ଶୂନ୍ୟ' ପ୍ରଥମତଃ ଥିଲା ଗୋଟାଏ ବିନ୍ଦୁ, ଏବଂ ପରେ ଏହା ଗୋଟାଏ କ୍ଷୁଦ୍ର ବୃତ୍ତରେ ପରିଣତ ହେଲା । ଅନ୍ୟାନ୍ୟ ସଂଖ୍ୟା ଭିତରେ ଏହା ଗଣ୍ୟ ଥିଲା । ଅଧ୍ୟାପକ ହାଲ୍‌ଷ୍ଟେନ୍ ଏହି ଉଦ୍ଭାବନର ବୈପ୍ଳବିକ ତାତ୍ପର୍ଯ୍ୟ ସମ୍ପର୍କରେ ଜୋର୍‌ଦେଇ କହନ୍ତି : "ଶୂନ ସଙ୍କେତ ସୃଷ୍ଟିର ଗୁରୁତ୍ୱ କେବେହେଲେ ଅତିରଞ୍ଜିତ ହୋଇ ନପାରେ । ଏହି କିଛି-ନାହିଁ ଶୂନ୍ୟକୁ ଗୋଟାଏ ସ୍ଥାନ ଓ ନାମ, ଗୋଟାଏ ଚିତ୍ର, ଗୋଟାଏ ସଙ୍କେତ କେବଳ ନୁହେଁ, ସହାୟକ ଶକ୍ତି ଅର୍ପଣ କରିବା ତାର ଉତ୍ପତ୍ତି ସଙ୍ଗେ ଜଡ଼ିତ ହିନ୍ଦୁଜାତିର ବିଶିଷ୍ଟ ବୈଶିଷ୍ଟ୍ୟ ସ୍ୱରୂପିକତା । ନିର୍ବାଣ ଧାରଣାକୁ ଏହା ଯେପରି ଡାଇନାମୋରେ ସାକାର କରିବା : ସାଧାରଣ ବୁଦ୍ଧି ଓ ସାମର୍ଥ୍ୟ ଦୃଷ୍ଟିରୁ କୌଣସି ଗାଣିତିକ ସୃଷ୍ଟି ଏତେ ଶକ୍ତିଶାଳୀ ହୋଇପାରିନି ।" (୧)

ଏହି ଐତିହାସିକ ଘଟଣା ସମ୍ପର୍କରେ ଆଉ ଜଣେ ଆଧୁନିକ ଗଣିତଶାସ୍ତ୍ରବିତ୍ ପ୍ରଶଂସାରେ ମୁଖର ହୋଇଉଠିଛନ୍ତି । ଡାନ୍‌ଜିଗ୍ ତାଙ୍କର 'ନାମ୍ବର୍'ରେ ଲେଖିଛନ୍ତି : "ପ୍ରାୟ ପାଞ୍ଚ ହଜାର ବର୍ଷର ଏହି ଦୀର୍ଘ କାଳ ବହୁ ସଭ୍ୟତାର ଉତ୍‌ଥାନ ଓ ପତନ ପ୍ରତ୍ୟକ୍ଷ କରିଛି । ପ୍ରତ୍ୟେକ ସଭ୍ୟତା ତାର ପଛରେ ଛାଡ଼ିଯାଇଛି ସାହିତ୍ୟ, କଳା, ଦର୍ଶନ ଓ ଧର୍ମର କିଛି ନା କିଛି ଐତିହ୍ୟ; କିନ୍ତୁ ମଣିଷ ସର୍ବପ୍ରଥମେ ଯେଉଁ କଳା ଅଭ୍ୟାସ କରିଛି, ସେହି ଗଣନା କ୍ଷେତ୍ରରେ ସବୁ କିଛି ମିଳାଇ ଦେଖିଲେ କି କୃତିତ୍ୱ ହାସଲ ହୋଇପାରିଛି ? ଗଣନା କରିବା ରୀତି ଏତେ ଅନମନୀୟ ଓ ଏତେ ଅମାର୍ଜିତ ଥିଲା ଯେ ସେ ଦିଗରେ ପ୍ରଗତିକରିବା ପ୍ରାୟ ଅସମ୍ଭବ ହୋଇପଡ଼ିଥିଲା ଏବଂ ଗଣନା କରିବା ଉପାୟର ପରିସର ଏତେ ସୀମିତ ଥିଲା ଯେ ପ୍ରାଥମିକ ଗଣନା ପାଇଁ ମଧ୍ୟ ବିଶେଷଜ୍ଞ ସାହାଯ୍ୟ ଦରକାର କରୁଥିଲା ·······। ଗୋଟିଏ ହେଲେ ଉଲ୍ଲେଖଯୋଗ୍ୟ ଉନ୍ନତି ନକରି, ଗଣନା ପ୍ରଣାଳୀକୁ ଗୋଟିଏ ହେଲେ ଗୁରୁତ୍ୱପୂର୍ଣ୍ଣ ଧାରଣା ଅର୍ପଣ ନକରି ହଜାର ହଜାର ବର୍ଷ ଧରି ମନୁଷ୍ୟ ଏହି ସବୁ ଉପାୟ ଅନୁସରଣ କରିଥିଲା········· । ଏପରିକି ଅନ୍ଧକାର ଯୁଗରେ ବିଚାର-ଧାରଣାର ମନ୍ଥର

(୧) ଜି. ବି. ହାଲ୍‌ଷ୍ଟେଡ୍, 'ଅନ୍ ଦ ଫାଉଣ୍ଡେସନ୍ ଏଣ୍ଡ୍ ଟେକ୍‌ନିକ୍ ଅଫ୍ ଏରିଥ୍‌ମେଟିକ' (ପୃ. ୨୦)ରୁ ବି· ଦତ୍ତ ଓ ଏ. ଏନ୍. ସିଂହ ତାଙ୍କର 'ହିଷ୍ଟ୍ରି ଅଫ୍ ହିନ୍ଦୁ ମେଥେମେଟିକ୍‌ସ'ରେ ଉଦ୍ଧାର କରିଛନ୍ତି ।

ଅଭିବୃଦ୍ଧି ତୁଳନା କରି ଦେଖିଲେ ଗଣନାକ୍ଷେତ୍ରର ଇତିହାସ ଶ୍ୱାସରୋଧକର ବନ୍ଧତାର ଗୋଟାଏ ବଚିତ୍ର ଚିତ୍ର ପ୍ରଦର୍ଶିତ କରେ । ଏହି ଦୃଷ୍ଟିରୁ ଦେଖିଲେ ସେହି ଅଜ୍ଞାତ କେଉଁ ହିନ୍ଦୁର କୃତିତ୍ୱ, ଯିଏ ଖ୍ରୀଷ୍ଟୀୟ ପ୍ରଥମ କେତେକ ଶତକ ଭିତରେ ସ୍ଥାନମୂଲ୍ୟ ନିର୍ଣ୍ଣୟ କଲା, ଗୋଟାଏ ଲୋକବ୍ୟାପୀ ଘଟଣାର ମହତ୍ତ୍ୱ ଧାରଣ କରେ ।'' (୧)

ଗ୍ରୀସ୍‌ର ମହାନ୍ ଗଣିତଜ୍ଞମାନେ ଏହି ଉଦ୍‌ଭାବନ କିପରି କରିନପାରିଲେ, ତାହାରି ବିସ୍ମିତ ଓ ଅବାକ୍ ହେଉଛନ୍ତି : "ଗ୍ରୀକ୍‌ମାନଙ୍କର ପ୍ରୟୋଗାତ୍ମକ ବିଜ୍ଞାନ ପ୍ରତି ଏତେ ବିଦ୍ୱେଷ କି ଥିଲା ଯେ ନିଜ ସନ୍ତାନଙ୍କ ଶିକ୍ଷାଭାର ସେମାନେ ଦାସମାନଙ୍କ ହାତରେ ଗୁଞ୍ଜି ଦେଉଥିଲେ ? ତାହା ଯଦି ନୁହେଁ, ଯେଉଁ ଜାତି ଆମକୁ ଜ୍ୟାମିତି ଦେଲା ଓ ଏହି ବିଜ୍ଞାନକୁ ବହୁଦୂର ପର୍ଯ୍ୟନ୍ତ ନେଇପାରିଲା, ବୀଜ-ଗଣିତର ଗୋଟାଏ ପ୍ରାଥମିକ ସୂତ୍ର ମଧ୍ୟ ସୃଷ୍ଟି କରିପାରିଲା ନାହିଁ ? ଠିକ୍ ସେହିଭଳି ମଧ୍ୟ ବିଚିତ୍ର ଯେ ଆଧୁନିକ ଗଣିତଶାସ୍ତ୍ରର ଭିତ୍ତି-ପ୍ରସ୍ତର ସେହି ବୀଜଗଣିତ ମଧ୍ୟ ଭାରତରେ ହିଁ, ସ୍ଥାନ-ମୂଲ୍ୟ ନିରୂପଣର ସମସାମୟିକ ଭାବରେ ଉଦ୍‌ଭୂତ ହେଲା ।

ଅଧ୍ୟାପକ ହଗ୍‌ବେନ୍ ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସୂଚିତ କରିଛନ୍ତି : "ହିନ୍ଦୁ-ମାନେ ହିଁ ଏ ଦିଗରେ କାହିଁକି ପଦକ୍ଷେପ କଲେ, ପ୍ରାଚୀନ କାଳର ଗଣିତଜ୍ଞମାନେ କାହିଁକି ଏପରି ନକଲେ, ବ୍ୟାବହାରିକ ବୁଦ୍ଧିର ମନୀଷ ଦ୍ୱାରା ଏହା କାହିଁକି ସମ୍ଭବ ହେଇପାରିଲା, ବୁଝିବାର ଦୁରୂହତା ଅଲଙ୍ଘନୀୟ ହେଇପଡ଼ିବ ଯଦି ମହତ୍ତମ ବ୍ୟକ୍ତି-ପ୍ରତିଭାକୁ ଯାହା ସୀମାବଦ୍ଧ କରେ ସେହି ସ୍ଥିତ-ମାତ୍ରର ସମଗ୍ର ସାମାଜିକ ସଙ୍ଗଠନ ବିଷୟ ବିଚାରକୁ ନ ନେଇ ମୁଷ୍ଟିମେୟ ପ୍ରତିଭାବାନ୍ ବ୍ୟକ୍ତିଙ୍କ ପ୍ରୟାସର ପରିଣତି ଭିତରେ ଆମେ ବୌଦ୍ଧିକ ପ୍ରଗତିର ବ୍ୟାଖ୍ୟା ଖୋଜିବସୁ । ଖ୍ରୀଷ୍ଟୀୟ ପ୍ରଥମ ଶତକ ବେଳକୁ ଭାରତରେ ଯାହା ଘଟିଲା, ପୂର୍ବେ ବି ଘଟିପାରିଥିଲା । ହୁଏତ, ଏହା ସୋଭିଏତ୍ ରୁଷିଆରେ ଆଜି ଘଟୁଛି...... । ଏହି ସତ୍ୟକୁ ଗ୍ରହଣ କରିବା ଅର୍ଥ ଏକଥା ବି ସ୍ୱୀକାର କରିବା ଯେ ଯେଉଁ ସଂସ୍କୃତି ମୁଷ୍ଟିମେୟ ପ୍ରତିଭାବାନ୍ ବ୍ୟକ୍ତିଙ୍କ ନିମନ୍ତେ ଯେତିକି ଦୃଷ୍ଟି ଦିଏ ସେତିକି ଦୃଷ୍ଟି ସାଧାରଣଙ୍କ ଶିକ୍ଷା ନିମନ୍ତେ ଯଦି ନଦିଏ, ତେବେ ବୁଝିବାକୁ ହେବ, ସେହି ସଂସ୍କୃତି ନିଜ ଗର୍ଭରେ ହିଁ ତାର ବିନାଶର ବୀଜ ଧାରଣ କରିଛି ।'' (୨)

ଅତଏବ, ଆମକୁ ମନେକରିନେବାକୁ ହେବ ଯେ ଏହିସବୁ ବିପୁଳ ଉଦ୍‌ଭାବନ, ସମକାଳୀନ ଅବସ୍ଥାର ପୃଷ୍ଠଭୂମିରେ ଅବସ୍ଥିତ, କୌଣସି ଅସାଧାରଣ ପ୍ରତିଭାର କ୍ଷଣିକ ଉନ୍ମେଷ ହେତୁରୁ କେବଳ ନୁହେଁ, ବରଂ ସେ ସବୁ ସାରତଃ ସାମାଜିକ ପରିବେଷ୍ଟନୀସମ୍ଭୂତ ଏବଂ ସମୟର କୌଣସି ଅପରିହାର୍ଯ୍ୟ ଦାବୀର ମୀମାଂସା । ଏହାର ସନ୍ଧାନ ନେବା ପାଇଁ ଓ ଦାବୀ ପୂର୍ଣ୍ଣକରିବାପାଇଁ ଉଚ୍ଚକୋଟୀ ପ୍ରତିଭାର ଆବଶ୍ୟକତା ଅବଶ୍ୟ ଥିଲା; କିନ୍ତୁ ଗ୍ରହିତା

(୧) ଏଲ୍. ହଗ୍‌ବେନ୍ 'ମେଥେମେଟିକ୍‌ସ ଫର୍ ଦି ମିଲିଅନ୍' (ଲଣ୍ଡନ, ୧୯୪୨)

(୨) ହଗ୍‌ବେନ୍, 'ମେଥେମେଟିକ୍‌ସ ଫର୍ ଦି ମିଲିଅନ୍' (ଲଣ୍ଡନ, ୧୯୪୨) ପୃ. ୨୮୫)

ଯଦି ନଥାନ୍ତା କିଛି ଗୋଟାଏ ପନ୍ଥା ଖୋଜି ବାହାର କରିବାର ପ୍ରେରଣା ବି ନଥାନ୍ତା ଏବଂ ଉଦ୍ଭାବନ କରାଯିବା ପରେ ମଧ୍ୟ ଏବେ ତାହା ବିସ୍ମୃତ ହୋଇଥାନ୍ତା କିମ୍ବା ତାର ବ୍ୟବହାର ନିମନ୍ତେ ଅବସ୍ଥା ଅନୁକୂଳ ହେବା ପର୍ଯ୍ୟନ୍ତ ଅବହେଳିତ ହୋଇ ରହିଥାନ୍ତା । ଆଦ୍ୟାବସ୍ଥାର ସଂସ୍କୃତରେ ରଚିତ ଗଣିତ ଗ୍ରନ୍ଥମାନଙ୍କରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ସେହି ଚାହିଦା ନିଶ୍ଚିତ ଭାବରେ ଥିଲା; କାରଣ ଏହିସବୁ ଗ୍ରନ୍ଥ ବାଣିଜ୍ୟ ତଥା ସାମାଜିକ ସମ୍ପର୍କଜନିତ ନାନା ଜଟିଳ ଗଣନାର ସମସ୍ୟାରେ ପୂର୍ଣ୍ଣ । ସେଥିରେ କର, ଋଣ ଓ କଲନ୍ତର ସମ୍ବନ୍ଧୀୟ ବହୁ ସମସ୍ୟା ରହିଚି; ଅଂଶୀଦାରୀ, ପଣ୍ୟ ବିନିମୟ, ସୁନାର ନିକଷ ପରୀକ୍ଷା ଓ ଓଜନ ବିଷୟ ବି ଅଛି । ସମାଜ ଧନ୍ଦାବହୁଳ ଥିଲା ଏବଂ ସରକାରୀ କର୍ମରେ ଓ ନାନାବିଧ ବ୍ୟବସାୟ-ବାଣିଜ୍ୟରେ ବହୁଲୋକ ନିଯୋଜିତ ଥିଲେ । ସରଳ ହିସାବ ପ୍ରଣାଳୀ ବିନା ଏ ସବୁ ଚଳାଇବା ଅସମ୍ଭବ ଥିଲା ।

ଭାରତରେ ଶୂନ ଓ ଦଶମିକ ସ୍ଥାନ-ମୂଲ୍ୟ ପ୍ରଣାଳୀର ଅବଲମ୍ବନ ପାଟୀଗଣିତ ଓ ବୀଜଗଣିତର ଦ୍ରୁତ ପ୍ରଗତି ନିମନ୍ତେ ମନର ଅଗଳ ଉନ୍ମୁକ୍ତ କଲା । ଭଗ୍ନାଂଶ, ତାର ଗୁଣନ ଓ ହରଣ, ପ୍ରଚଳିତ ହେଲା; ତ୍ରୟରାଶିକ ଆବିଷ୍କୃତ ହେଲା ଓ ତାର ପରୋତ୍କର୍ଷ ସାଧିତ ହେଲା । ବର୍ଗ ଓ ବର୍ଗମୂଳ , ସେଥି ସଙ୍ଗେ ବର୍ଗମୂଳ ଚିହ୍ନ ( √ ), ଘନ ଓ ଘନମୂଳ, ବିଯୋଗ ଚିହ୍ନ, ସାଇନ୍ ତାଲିକା ବ୍ୟବହାରକୁ ଆସିଲା । ବୃତ୍ତର ପରିଧି ତଥା ବ୍ୟାସର ଅନୁପାତ 11 ର ମୂଲ୍ୟ ୩.୧୪୧୬ ନିର୍ଣ୍ଣୟ କରାଗଲା । ବୀଜଗଣିତରେ ଅଜ୍ଞାତ ରାଶି ନିମନ୍ତେ ବର୍ଣ୍ଣମାଳାର ଅକ୍ଷର ବ୍ୟବହୃତ ହେଲା, ସରଳ ଓ ଦ୍ୱିଘାତ ସମୀକରଣ ବିବେଚିତ ହେଲା; ଶୂନ୍ୟାଙ୍କର ଗଣିତ ବାହାର କରାଗଲା; ଶୂନର ପରିଭାଷା ହେଲା : କ—କ = ୦; କ + ୦ = କ; କ − ୦ = କ; କ × ୦ = ୦; କ ÷ ୦ = ଅସୀମ; ଋଣରାଶିର ଅବଧାରଣା ମଧ୍ୟ କରାଗଲା : √୦ = ± ୨ ।

ଗଣିତରେ ଏହିସବୁ ଓ ଅନ୍ୟାନ୍ୟ ପ୍ରଗତି ବିଷୟ ଖ୍ରୀଷ୍ଟୀୟ ପଞ୍ଚମରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବହୁ ପ୍ରଖ୍ୟାତ ଗଣିତଜ୍ଞମାନଙ୍କ ଗ୍ରନ୍ଥମାନଙ୍କରେ ଲିପିବଦ୍ଧ ରହିଚି । ଇତିପୂର୍ବର ଗ୍ରନ୍ଥମାନଙ୍କରେ ମଧ୍ୟ (ବୌଧାୟନ—ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତକ; ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀର ଅପସ୍ତମ୍ବ ଓ କାତ୍ୟାୟନଙ୍କ ରଚନାରେ) ବହୁ ଜ୍ୟାମିତିକ ଉପାଦ୍ୟ, ବିଶେଷତଃ ତ୍ରିଭୁଜ, ଆୟତ ଓ ବର୍ଗକ୍ଷେତ୍ର ସମ୍ବନ୍ଧୀୟ ସମାଧ୍ୟମାନ ଆଲୋଚିତ ହୋଇଚି; କିନ୍ତୁ ବୀଜଗଣିତ ସମ୍ବନ୍ଧରେ ପ୍ରାପ୍ତବ୍ୟ ପ୍ରାଚୀନତମ ଗ୍ରନ୍ଥ ହେଉଚି ବିଖ୍ୟାତ ଜ୍ୟୋତିର୍ବିଜ୍ଞାନୀ ଆର୍ଯ୍ୟଭଟ୍ଟଙ୍କ ଦ୍ୱାରା ରଚିତ । ଖ୍ରୀଷ୍ଟୀୟ ୪୭୬ରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବୟସ ଯେବେ ମାତ୍ର ତେଇଶିବର୍ଷ, ଜ୍ୟୋତିର୍ବିଜ୍ଞାନ ଓ ଗଣିତ ଉପରେ ସେ ଏହି ଗ୍ରନ୍ଥ ପ୍ରଣୟନ କରିଥିଲେ । ଆର୍ଯ୍ୟଭଟ୍ଟ,ଯାହାକୁ ସମୟେ ସମୟେ ବୀଜଗଣିତର ଉଦ୍ଭାବକ ବୋଲି କୁହାଯାଇଥାଏ,କଥିତ ଗ୍ରନ୍ଥ ପ୍ରଣୟନ ନିମନ୍ତେ ଆଂଶିକ ଭାବରେ ଅନ୍ତତଃ, ତାଙ୍କର ପୂର୍ବସୂରୀମାନଙ୍କ କୃତି ଉପରେ ଅବଶ୍ୟ ନିର୍ଭର କରିଥିବେ । ଭାରତୀୟ ଗଣିତରେ ପରବର୍ତ୍ତୀ ବିଖ୍ୟାତ ନାମ ହେଉଚି ପ୍ରଥମ ଭାସ୍କର ( ଖ୍ରୀ: ୫୨୨ ) । ତାଙ୍କ ପରେ ଦେଖାଦେଲେ ବ୍ରହ୍ମଗୁପ୍ତ (ଖ୍ରୀ: ୬୨୮ ) । ସେ ମଧ୍ୟ

ଥିଲେ ଜଣେ ବିଖ୍ୟାତ ଜ୍ୟୋତିର୍ବିଦ୍ ଏବଂ ସେ ଶୂନ୍ୟାଙ୍କର ବିଭିନ୍ନ ନିୟମ ବିସ୍ତାର କଲେ ଓ ଏହି ବିଦ୍ୟାର ଆହୁରି ପ୍ରଗତି ସାଧନ କଲେ । ଏମାନଙ୍କ ପରେ ବହୁ ଗଣିତଜ୍ଞ କ୍ରମାଗତ ଭାବରେ ଦେଖାଦେଇ ପାଟୀଗଣିତ ଅବା ବୀଜଗଣିତ ଉପରେ ଗ୍ରନ୍ଥମାନ ଲେଖିଗଲେ । ଏହି ବିଦ୍ୟାର କ୍ଷେତ୍ରରେ ଶେଷ ତଥା ମହାନ୍ ନାମ ହେଉଚି ଦ୍ୱିତୀୟ ଭାସ୍କର, ଯିଏ ଖ୍ରୀ: ୧୧୧୪ରେ ଜନ୍ମଗ୍ରହଣ କରିଥିଲେ । ଜ୍ୟୋତିର୍ବିଜ୍ଞାନ, ବୀଜଗଣିତ ଓ ପାଟୀଗଣିତ ଉପରେ ସେ ତିନି-ଗୋଟି ଗ୍ରନ୍ଥ ପ୍ରଣୟନ କରିଚନ୍ତି । ପାଟୀଗଣିତ ଉପରେ ତାଙ୍କର ପୁସ୍ତକର ନାମ ହେଉଚି 'ଲୀଳାବତୀ' । ଗଣିତ ପୁସ୍ତକ ନିମନ୍ତେ ଏପରି ନାମକରଣ ବାସ୍ତବିକ ବିଚିତ୍ର; କାରଣ ଏହି ନାମ ନାରୀର । ଏହି ପୁସ୍ତକରେ ବାରମ୍ବାର ଜଣେ ବାଳିକାର ଉଲ୍ଲେଖ ଦେଖିବାକୁ ମିଳେ ଯାହାକୁ 'ଗୋ ଲୀଳାବତୀ !' ବୋଲି ସମ୍ବୋଧନ କରି ପ୍ରୋକ୍ତ କୌଣସି ସମାଧ୍ୟ ବୁଝାଇ ଦିଆଯାଇଚି । କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ନଥିଲେ ସୁଦ୍ଧା ଲୀଳାବତୀକୁ ଭାସ୍କରଙ୍କ କନ୍ୟା ବୋଲି ବିଶ୍ୱାସ କରାଯାଇଚି । ପୁସ୍ତକର ଶୈଳୀ ସରଳ ଓ ପ୍ରାଞ୍ଜଳ ଏବଂ ବାଳକ-ବାଳିକାଙ୍କ ନିମନ୍ତେ ବିଶେଷ ଉପଯୋଗୀ । ସଂସ୍କୃତ ସ୍କୁଲମାନଙ୍କରେ ଏହି ପୁସ୍ତକ, ଅଂଶତଃ ତାର ଶୈଳୀ ନିମନ୍ତେ, ଏବେ ବି ବ୍ୟବହୃତ ହେଉଚି ।

ଗଣିତ ଉପରେ ଗ୍ରନ୍ଥ ପରେ ଗ୍ରନ୍ଥ (ନାରାୟଣ ଖ୍ରୀ: ୧୧୫୦, ଗଣେଶ ଖ୍ରୀ: ୧୫୪୫) ଦେଖାଦିଏ; କିନ୍ତୁ ଏ ସବୁ ପୂର୍ବବର୍ତ୍ତୀ କୃତିଗୁଡ଼ିକର ପୁନରାବୃତ୍ତି କେବଳ । ଦ୍ୱାଦଶ ଶତାବ୍ଦୀ ପରେ ପୁନର୍ବାର ଆଧୁନିକ ଯୁଗରେ ପହୁଞ୍ଚିବା ପର୍ଯ୍ୟନ୍ତ ଭାରତରେ ଗଣିତ ଉପରେ ସେପରି କିଛି ମୌଳିକ ରଚନା ଦେଖାଦେଇନି ।

ଅଷ୍ଟମ ଶତାବ୍ଦୀରେ, ଖଲିଫା ଅଲ-ମନସୁରଙ୍କ ରାଜତ୍ୱକାଳରେ (ଖ୍ରୀ: ୭୫୩ରୁ ୭୭୪), କତିପୟ ଭାରତୀୟ ବିଦ୍ୱାନ୍ ବାଗ୍‌ଦାଦ ଯାତ୍ରାକଲେ ଏବଂ ସାଙ୍ଗରେ ସେମାନେ ଯେଉଁସବୁ ପୁସ୍ତକ ନେଇଥିଲେ ସେଥିରେ ଜ୍ୟୋତିର୍ବିଜ୍ଞାନ ଓ ଗଣିତ ସମ୍ବନ୍ଧୀୟ ପୁସ୍ତକ ମଧ୍ୟ ଥିଲା । ସମ୍ଭବତଃ ଏଥିପୂର୍ବରୁ ବି ଭାରତୀୟ ଗଣନାଙ୍କ ବାଗ୍‌ଦାଦ୍‌ରେ ପହୁଞ୍ଚିସାରିଥିଲା; କିନ୍ତୁ ଏହା ହିଁ ସର୍ବପ୍ରଥମ ଧାରାବାହିକ ପର୍ଯ୍ୟଟନ । ଆର୍ଯ୍ୟଭଟ୍ଟ ଓ ଅନ୍ୟମାନଙ୍କ ରଚିତ ପୁସ୍ତକମାନ ଆରବୀ ଭାଷାରେ ଅନୂଦିତ ହେଲା । ଆରବ ଦୁନିଆରେ ଗଣିତ ଓ ଜ୍ୟୋତିର୍ବିଜ୍ଞାନର ବିକାଶକୁ ଏସବୁ ପୁସ୍ତକ ପ୍ରଭାବିତ କଲା ଏବଂ ଭାରତୀୟ ସଂଖ୍ୟା ପ୍ରଚଳିତ ହେଲା । ସେହି ସମୟରେ ବାଗ୍‌ଦାଦ୍ ଥିଲା ଏକ ମହାନ୍ ବିଦ୍ୟାନଗରୀ ଏବଂ ଗ୍ରୀକ୍ ଓ ଇହୁଦି ବିଦ୍ୱାନ୍‌ମାନେ ଗ୍ରୀକ୍ ଦର୍ଶନ, ଜ୍ୟାମିତି ଓ ବିଜ୍ଞାନ ସଙ୍ଗେ ଘେନି ସେଠାରେ ସମବେତ ହୋଇଥିଲେ । ମଧ୍ୟଏସିଆରୁ ସ୍ପେନ୍ ପର୍ଯ୍ୟନ୍ତ ସମଗ୍ର ମୁସ୍‌ଲିମ୍ ଦୁନିଆରେ ବାଗ୍‌ଦାଦ୍‌ର ସାଂସ୍କୃତିକ ପ୍ରଭାବ ଅନୁଭୂତ ହେଉ-ଥିଲା ଏବଂ ଆରବୀ ଅନୁବାଦ ଜରିଆରେ ଭାରତୀୟ ଗଣିତଶାସ୍ତ୍ରଜ୍ଞାନ ଏହି ବିଶାଳ ଅଞ୍ଚଳରେ ବ୍ୟାପ୍ତ ହେଲା । ଭାରତୀୟ ସଂଖ୍ୟାଗୁଡ଼ିକୁ ଆରବମାନେ 'ହିଂଦ୍‌ସା' କହୁଥିଲେ ଏବଂ ଗୋଟିଏ ସଂଖ୍ୟା ପାଇଁ ଏବେ ବି ଆରବୀୟ ନାମ ହେଉଚି ହିଂଦ୍‌ସା; ଅର୍ଥାତ୍ ଯାହା ହିନ୍ଦ୍ ଅଥବା ହିନ୍ଦସ୍ଥାନରୁ ଆସିଚି ।

ଏହି ଆରବ ଦୁନିଆରୁ ନୂତନ ଗଣିତଶାସ୍ତ୍ର ସମ୍ଭବତଃ ସ୍ପେନ୍‌ର ମୁର୍ ବିଶ୍ୱବିଦ୍ୟାଳୟମାନ

ଜରିଆରେ ୟୁରୋପର ଦେଶମାନଙ୍କ ଯାତାୟାତ ଏବଂ ୟୁରୋପୀୟ ଗଣିତର ଭିତ୍ତି ହେଲା । ଏହିସବୁ ନବ 'ହିଂଦସା' ପ୍ରତି ୟୁରୋପରେ ପ୍ରତିରୋଧ ଦେଖାଦେଲା; କାରଣ ଏହି ସଙ୍କେତ-ଗୁଡ଼ିକୁ ବିଧର୍ମୀର ପ୍ରତୀକ ବୋଲି ମନେକରାଯାଇଥିଲା । ସର୍ବସାଧାରଣରେ ଏହିସବୁ ସଂଖ୍ୟା ବ୍ୟବହୃତ ହେବା ପୂର୍ବରୁ ବହୁ ଶତାବ୍ଦୀ ବିତିଗଲା । ଭାରତୀୟ ସଂଖ୍ୟାର ସର୍ବପ୍ରଥମ ପ୍ରୟୋଗ ଜାଣିବାକୁ ମିଳେ ଖ୍ରୀ: ୧୧୩୪ର ଗୋଟିଏ ସିସିଲିଅନ୍ ମୁଦ୍ରାରେ । ଇଂଲଣ୍ଡରେ ଏହାର ବ୍ୟବହାର ଚଳିଲା ଖ୍ରୀ: ୧୪୯୦ରେ ।

ସ୍ପଷ୍ଟ ମନେହେଉଚି ଯେ ଭାରତୀୟ ଗଣିତଶାସ୍ତ୍ରର କିଛି ଜ୍ଞାନ ବିଶେଷତଃ ରାଶିର ସ୍ଥାନ-ମୂଲ୍ୟ ପ୍ରଣାଳୀ, ବାଗ୍‌ଦାଦକୁ ଭାରତୀୟ ରାଜଦୂତ-ସଂସ୍ଥା ବିଧିବଦ୍ଧ ଭାବରେ ତତ୍ସଂପର୍କୀୟ ଗ୍ରନ୍ଥମାନ ବହନକରି ନେବା ପୂର୍ବରୁ, ପଶ୍ଚିମ-ଏସିଆ ଭିତରକୁ ପ୍ରବେଶ କରିସାରିଥିଲା । ସିରିଆର ଜନୈକ ଭିକ୍ଷୁ ଯିଏ ସିରିଆ ଲୋକଙ୍କୁ ହୀନଚକ୍ଷୁରେ ଦେଖିଥିବା କୌଣସି ଗ୍ରୀକ୍ ବିଦ୍ୱାନ୍‌ଙ୍କ ଔଦ୍ଧତ୍ୟରେ ଆହତ ହୋଇ ଯେଉଁ ଅଭିଯୋଗ ବାଢ଼ିଥିଲେ, ସେଥିର କିୟଦଂଶ ବଡ଼ କୌତୂହଳ ଉଦ୍ଦୀପକ । ଖ୍ରୀ: ୬୬୨ରେ ଲେଖିଲାବେଳେ ସେ ଦର୍ଶାଇବାକୁ ପ୍ରୟାସ କରିଚନ୍ତି ଯେ ସିରିଆ ଲୋକେ କୌଣସି ଭାବରେ ହେଲେ ଗ୍ରୀକ୍‌ମାନଙ୍କଠାରୁ ନ୍ୟୂନ ନୁହନ୍ତି । ତାଙ୍କର ନାମ ହେଉଚି ସେଭେରସ ସେବୋଖତ୍ ଏବଂ ୟୁଫ୍ରେଟ ନଦୀତୀରରେ ଅବସ୍ଥିତ ଗୋଟାଏ ବିହାରରେ ସେ ବାସକରୁଥିଲେ । ଉଦାହରଣ ସ୍ୱରୂପ, ଭାରତୀୟମାନଙ୍କ ବିଷୟ ଉଲ୍ଲେଖ କରି ସେ ଲେଖିଚନ୍ତି: "ହିନ୍ଦୁମାନଙ୍କ ବିଜ୍ଞାନଚର୍ଚ୍ଚା ବିଷୟ ମୁଁ ବର୍ଣ୍ଣନା କରିବାକୁ ଯାଉନି । ସେମାନେ ସିରିଆ ଲୋକଙ୍କ ଭଳି ନୁହନ୍ତି । ଜ୍ୟୋତିର୍ବିଜ୍ଞାନରେ ସେମାନଙ୍କର ସୂକ୍ଷ୍ମାତିସୂକ୍ଷ୍ମ ଅନ୍ୱେଷଣ ଯାହା ଗ୍ରୀକ୍ ଓ ବେବିଲୋନିଆ ଲୋକଙ୍କ କୃତି ଅପେକ୍ଷା ବହୁଗୁଣରେ ଉନ୍ନତତର, ସେ ବିଷୟ ମଧ୍ୟ ମୁଁ କହିବାକୁ ଯାଉନି । ସେମାନଙ୍କର ଗଣନାପଦ୍ଧତିପ୍ରକୃତରେ ବର୍ଣ୍ଣନାତୀତ । ମୁଁ ଏତିକି କେବଳ କହିବାକୁ ଚାହେଁ ଯେ ଏହି ଗଣନା 'ନଅ' ଗୋଟି ମାତ୍ର ସଙ୍କେତରେ କରାଯାଇଥାଏ । ଗ୍ରୀକ୍ ଭାଷା କହନ୍ତି ବୋଲି କେବଳ ଯେଉଁମାନେ ବିଶ୍ୱାସ-କରନ୍ତି ଯେ ବିଜ୍ଞାନ ସମ୍ପର୍କରେ ସେମାନଙ୍କର ଜାଣିବାର ଆଉ କିଛି ନାହିଁ, ସେମାନେ ଭାରତୀୟମାନଙ୍କ ଏହି ଗଣନାପଦ୍ଧତି ବିଷୟ ଜାଣିଲେ, ସେମାନଙ୍କର ହୃଦ୍‌ବୋଧ ହେବ ଯେ ପୃଥିବୀରେ ଆହୁରି ବି ଲୋକ ଅଛନ୍ତି, ଯେଉଁମାନେ ଅଜ୍ଞାନ ନୁହଁନ୍ତି ।"(୧)

ଭାରତରେ ଗଣିତଶାସ୍ତ୍ର ବିଷୟରେ ଚିନ୍ତାକଲେ ଅବଶ୍ୟମ୍ଭାବୀ ଭାବରେ ଆଧୁନିକ କାଳରେ ଏକ ଅସାଧାରଣ ବ୍ୟକ୍ତିତ୍ୱ ଦୃଷ୍ଟି ସମ୍ମୁଖକୁ ଆସେ । ସେ ହେଉଚନ୍ତି ଶ୍ରୀନିବାସ ରାମାନୁଜମ୍ । ଦକ୍ଷିଣ ଭାରତର ଗୋଟାଏ ଦରିଦ୍ର ବ୍ରାହ୍ମଣ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ଉଚ୍ଚଶିକ୍ଷା ନିମନ୍ତେ କୌଣସି ସୁଯୋଗ ସୁବିଧା ନପାଇ ପରିଶେଷରେ ମାନ୍ଦ୍ରାଜର ପୋର୍ଟଟ୍ରଷ୍ଟଅଧୀନରେ ସେ ଏକ କିରାଣି ଭାବରେ ନିଯୁକ୍ତ ହେଲେ; କିନ୍ତୁ ସହଜାତ ଅସାଧାରଣ ପ୍ରତିଭାର କୌଣସି

---

(୧) ବି. ଦତ୍ତ ଓ ଏ. ଏନ୍. ସିଂହ, 'ହିଷ୍ଟ୍ରି ଅଫ୍ ହିନ୍ଦୁ ମେଥେମେଟିକ୍ସ' । ଏହି ବିଷୟ ଉପରେ ବହୁତ କିଛି ତଥ୍ୟ ନିମନ୍ତେ ମୁଁ ଉକ୍ତ ପୁସ୍ତକ ନିକଟରେ ଋଣୀ ।

ଅଦମ୍ୟ ଆବେଗ ଲାଗି ତାଙ୍କର ଅନ୍ତର ସର୍ବଦା ଉଦ୍‌ବେଳିତ ହେଉଥିଲା । ସୌଭାଗ୍ୟବଶତଃ, ସେ ଜଣେ ଗଣିତଜ୍ଞଙ୍କ ଦୃଷ୍ଟି ଆକର୍ଷଣ କରି ପାରିଲେ ଏବଂ ତାଙ୍କର କେତେକ ଗବେଷଣା ଇଂଲଣ୍ଡର କେମ୍ବ୍ରିଜକୁ ପଠାଗଲା । ସେଠାର ଲୋକେ ରାମାନୁଜମ୍‌ଙ୍କ କାର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କ ପାଇଁ ବୃତ୍ତି ବ୍ୟବସ୍ଥା କଲେ । ମାନ୍ଦ୍ରାଜର କିରାଣି କର୍ମ ଛାଡ଼ି ସେ କେମ୍ବ୍ରିଜ ଯାତ୍ରାକଲେ ଏବଂ ସେଠାରେ ସ୍ୱଳ୍ପକାଳ ଭିତରେ ବିସ୍ମୟକର ଭାବରେ ମୌଳିକ ତଥା ମୂଲ୍ୟବାନ୍ କେତେକ ସିଦ୍ଧାନ୍ତ ପ୍ରକାଶକଲେ । ଇଂଲଣ୍ଡର ରୟେଲ ସୋସାଇଟି, ବାଛି ଗ୍ରହଣକରି, ତାଙ୍କୁ ଫେଲୋ ଉପାଧିରେ ଭୂଷିତ କଲେ; କିନ୍ତୁ ଦୁଇବର୍ଷ ପରେ, ସମ୍ଭବତଃ କ୍ଷୟରୋଗରେ, ମାତ୍ର ତେତିଶି ବର୍ଷ ବୟସରେ ଏହି ଅସାଧାରଣ ପ୍ରତିଭାର ଅକାଳ ଅବସାନ ଘଟିଲା । ଅଧ୍ୟାପକ ଜୁଲିଏନ୍ ହାକ୍‌ସଲେ, ମୋର ବିଶ୍ୱାସ, ରାମାନୁଜମଙ୍କୁ, କେଉଁଠି ଠିକ୍ ମନେପଡ଼ୁନି, ଏହି ଶତାବ୍ଦୀର ସର୍ବଶ୍ରେଷ୍ଠ ଗଣିତଜ୍ଞ ବୋଲି ଉଲ୍ଲେଖ କରିଚନ୍ତି ।

ରାମାନୁଜମ୍‌ଙ୍କ ଏହି ସ୍ୱଳ୍ପକାଳର ଜୀବନ ଓ ମୃତ୍ୟୁ ଭାରତୀୟ ଅବସ୍ଥାର ପ୍ରତୀକ ସ୍ୱରୂପ । ଆମର କୋଟି କୋଟି ଲୋକଙ୍କ ଭିତରୁ ନଗଣ୍ୟ ସଂଖ୍ୟକ ଲୋକ କେବଳ ଶିକ୍ଷାର ସୁଯୋଗ ପାଇଥାନ୍ତି ଏବଂ ଅଗଣିତ ଲୋକେ ପ୍ରାୟ ଅନାହାର ସୀମାରେ ଜୀବନ ଅତିବାହିତ କରନ୍ତି । ଯେଉଁ କେତେଜଣଙ୍କୁ ଶିକ୍ଷାର ସୁଯୋଗ ସାହା ମିଳେ, ସେମାନଙ୍କ ଭିତରୁ ଅଧିକାଂଶଙ୍କୁ ଆଖି ଆଗରେ ଦେଖିବାକୁ ମିଳେ କୌଣସି ଅଫିସର କିରାଣି ଭାବରେ ଏବଂ ସେଥିର ଦରମା ମଧ୍ୟ ଇଂଲଣ୍ଡର ବେକାର-ଭତ୍ତା ଅପେକ୍ଷା ବହୁଗୁଣରେ କମ୍ । ଏମାନଙ୍କ ପାଇଁ ଯଦି ଜୀବନ ତାର ଦ୍ୱାର ଉନ୍ମୁକ୍ତ କରି ଭଲ ଖାଦ୍ୟ, ସ୍ୱାସ୍ଥ୍ୟକର ପରିବେଶ, ଉପଯୁକ୍ତ ଶିକ୍ଷା ଓ ଅଭିବୃଦ୍ଧିର ସୁଯୋଗ ତୋଳିଧରନ୍ତା, ତାହାହେଲେ ଏହି କୋଟି କୋଟି ଲୋକଙ୍କ ଭିତରୁ କେତେ ଯେ ବୈଜ୍ଞାନିକ, ଶିକ୍ଷାବିତ୍, କାରିଗର, ଶିଳ୍ପପତି, ଲେଖକ ଓ କଳାକାର ଭାବରେ ଖ୍ୟାତି ଅର୍ଜନ କରି ଗୋଟାଏ ନୂତନ ଭାରତ ତଥା ନୂତନ ବିଶ୍ୱ ନିର୍ମାଣ କରିବାରେ ସହାୟକ ନ ହୁଅନ୍ତେ !

## ୨୧. ଉନ୍ନତି ଓ ଅବନତି

ଖ୍ରୀଷ୍ଟ-ଯୁଗର ପ୍ରଥମ ସହସ୍ର ବର୍ଷ ଭିତରେ ଭାରତରେ ବହିରାକ୍ରମଣ ଓ ଆଭ୍ୟନ୍ତରୀଣ ବିବାଦଜନିତ ବହୁ ସଂଘର୍ଷ, ବହୁ ଉତ୍‌ଥାନ ଓ ପତନ ଦୃଷ୍ଟି ଗୋଚର ହୁଏ । ତଥାପି ଏହା ଓଜସ୍ୱିତାରେ ଉଜ୍ଜ୍ୱଳ ଓ ସବୁ ଦିଗରେ ପ୍ରସାରଶୀଳ ଗୋଟିଏ ବଳିଷ୍ଠ ତଥା ସତେଜ ଜାତୀୟ ଜୀବନର ଯୁଗ । ଦର୍ଶନ, ସାହିତ୍ୟ, ନାଟ୍ୟକଳା, ବିଜ୍ଞାନ ଓ ଗଣିତରେ ପୁଷ୍ଟିତ ସଂସ୍କୃତି ଗୋଟାଏ ସମ୍ପ୍ରିମନ୍ତ ସଭ୍ୟତାରେ ବିକଶିତ ହୁଏ । ଭାରତର ଅର୍ଥନୀତି ବିସ୍ତୃତି ଲାଭକରେ, ଭାରତର ଦିଗନ୍ତ ଅଧିକତର ପ୍ରଶସ୍ତ ହୁଏ ଏବଂ ଅନ୍ୟାନ୍ୟ ବହୁ ଦେଶ ତାର ପରିସର ଭିତରକୁ ଆସନ୍ତି । ଇରାନ୍, ଚୀନ, ଗ୍ରୀକ୍ ଦୁନିଆ, ମଧ୍ୟ-ଏସିଆ ସଙ୍ଗେ ସମ୍ପର୍କ ବୃଦ୍ଧିଲାଭ କରେ ଏବଂ ପୂର୍ବୀୟ ସମୁଦ୍ରମାନଙ୍କ ପ୍ରତି ଜାଗ୍ରତ ଏକ ଶକ୍ତିଶାଳୀ ପ୍ରେରଣା, ଭାରତୀୟ ସୀମାନ୍ତର ବହୁଦୂରରେ, ଭାରତୀୟ ସଂସ୍କୃତିର ପ୍ରସାର ଘଟାଏ ଏବଂ ଭାରତୀୟ ଉପନିବେଶମାନ

ସ୍ଥାପିତ ହୁଏ । ଏହି ସହସ୍ର ବର୍ଷର ମଧ୍ୟଭାଗରେ ଚତୁର୍ଥ ଶତାବ୍ଦୀ ଆରମ୍ଭରୁ ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଗୁପ୍ତ ସାମ୍ରାଜ୍ୟ ଐଶ୍ୱର୍ଯ୍ୟ ଓ ଆଡ଼ମ୍ବରରେ ପୂର୍ଣ୍ଣ ହୁଏ ଏବଂ ଦୂରପ୍ରସାରୀ ବୌଦ୍ଧିକ ତଥା କଳାତ୍ମକ କର୍ମାନୁସରଣର ପୃଷ୍ଠପୋଷକ ତଥା ପ୍ରତୀକ ହୋଇଉଠେ । ଏହାକୁ ଭାରତର 'ସ୍ୱର୍ଣ୍ଣଯୁଗ' କୁହାଯାଇଥାଏ ଏବଂ ସେ ସମୟର ରଚନାବଳୀ ଯାହା ସଂସ୍କୃତ ସାହିତ୍ୟରେ ଉତ୍କୃଷ୍ଟ ବିବେଚିତ, ଗୋଟାଏ ପ୍ରକାର ପ୍ରଶାନ୍ତ, ଜନସାଧାରଣଙ୍କର ନୀରବ ଆତ୍ମବିଶ୍ୱାସ, ସଭ୍ୟତାର ମଧ୍ୟାହ୍ନକାଳରେ ଜୀବିତ ରହିପାରିବାର ସ୍ୱାଧିକାରଜନିତ ଗର୍ବ ଏବଂ ସେଥି ସଙ୍ଗେ ସେମାନଙ୍କର ସେହି ମହାନ୍ ବୌଦ୍ଧିକ ତଥା କଳାତ୍ମକ ଶକ୍ତିକୁ ଉତ୍କୃଷ୍ଟ ତଥା ସାର୍ଥକ ଭାବରେ ଉପଯୋଗୀ କରିବାର ପ୍ରେରଣା ପ୍ରକଟିତ କରେ ।

ତଥାପି ସେହି ସ୍ୱର୍ଣ୍ଣଯୁଗର ଅବସାନ ପୂର୍ବରୁ ଦୁର୍ବଳତା ଓ ଅବନତିର ବିବିଧ ସଙ୍କେତ ଦୃଷ୍ଟିଗୋଚର ହୁଏ । ତରଙ୍ଗାନୁକ୍ରମରେ ଉତ୍ତର-ପଶ୍ଚିମରୁ ଶ୍ୱେତ ହୂଣମାନେ ଆସନ୍ତି ଏବଂ ବାରମ୍ବାର ପରାହତ ହୁଅନ୍ତି; କିନ୍ତୁ ସେମାନଙ୍କର ଆକ୍ରମଣ ଅବିଚ୍ଛିନ୍ନ ରହେ ଏବଂ ଉତ୍ତର-ଭାରତରେ ସେମାନେ ନିଜ ପାଇଁ ଧୀରେ ଧୀରେ କ୍ଷେତ୍ର ପ୍ରସ୍ତୁତ କରିନିଅନ୍ତି । ସମଗ୍ର ଉତ୍ତରାଖଣ୍ଡରେ ପ୍ରାୟ ପଚିଶ ବର୍ଷ ପର୍ଯ୍ୟନ୍ତ ସେମାନେ ସେମାନଙ୍କର ରାଜତ୍ୱ ବି ପ୍ରତିଷ୍ଠା କରନ୍ତି । ପରିଶେଷରେ, କିନ୍ତୁ ପ୍ରବଳ ଏକ ଉଦ୍ୟମ ବଳରେ, ମହାନ୍ ଗୁପ୍ତବଂଶର ଶେଷ ସମ୍ରାଟ ମଧ୍ୟ-ଭାରତର ଅଧିପତି ଯଶୋବର୍ମଣଙ୍କ ସଙ୍ଗେ ମିଳିତ ହୋଇ ହୂଣମାନଙ୍କୁ ବିତାଡ଼ିତ କରନ୍ତି । ଦୀର୍ଘ ଦିନର ଏହି ସଙ୍ଘର୍ଷ ରାଜନୀତି ଓ ସାମରିକତା ଦିଗରୁ ଭାରତକୁ ଦୁର୍ବଳ କଲା ଏବଂ ସମଗ୍ର ଉତ୍ତର ଭାରତରେ ଅଗଣିତ ସଂଖ୍ୟାରେ ହୂଣମାନେ ବସବାସ କରିବା ଫଳରେ ସମ୍ଭବତଃ ଜନସାଧାରଣଙ୍କ ଭିତରେ କ୍ରମଶଃ ଗୋଟାଏ ଆଭ୍ୟନ୍ତରୀଣ ପରିବର୍ତ୍ତନ ଘଟିଲା । ପୂର୍ବରୁ ବିଦେଶୀମାନଙ୍କୁ ଭାରତ ଯେଉଁଭଳି ଆତ୍ମସାତ୍ କରିଥିଲା, ଏମାନଙ୍କ ବେଳକୁ ମଧ୍ୟ ତାହା ହିଁ ହେଲା; କିନ୍ତୁ ଏମାନଙ୍କର ଚିହ୍ନ ସମ୍ପୂର୍ଣ୍ଣ ଭାବରେ ଲିଭିଯାଇ ନଥିଲା । ଫଳତଃ, ଭାରତୀୟ ଆର୍ଯ୍ୟଜାତିମାନଙ୍କ ପୁରାତନ ଆଦର୍ଶ କ୍ଷୁଣ୍ଣ ହେଲା । ହୂଣ ସମ୍ବନ୍ଧୀୟ ପୁରାତନ ବିବରଣୀମାନଙ୍କରେ, ସେମାନଙ୍କର ଅମାନୁଷିକ କ୍ରୂରତା ଓ ବର୍ବରୋଚିତ ବ୍ୟବହାର, ଯାହା ଭାରତର ଯୁଦ୍ଧ ତଥା ଶାସନନୀତିଠାରୁ ସମ୍ପୂର୍ଣ୍ଣ ଭିନ୍ନ ଦେଖିବାକୁ ମିଳେ ।

ସପ୍ତମ ଶତାବ୍ଦୀରେ, ହର୍ଷଙ୍କ ରାଜତ୍ୱକାଳରେ, ରାଜନୀତି ଓ ସଂସ୍କୃତି ଉଭୟ ଦିଗରୁ ଭାରତରେ ଏକ ପୁନର୍ଜାଗରଣ ଦେଖାଦେଲା । ଗୁପ୍ତମାନଙ୍କର ଜାକ୍ଜ୍ୱଲ୍ୟମାନ ରାଜଧାନୀ ଉଜ୍ଜୟିନୀ ପୁନର୍ବାର କଳା ଓ ସଂସ୍କୃତିର କେନ୍ଦ୍ର ତଥା ଗୋଟାଏ ଶକ୍ତିଶାଳୀ ରାଜ୍ୟର ରାଜଧାନୀ ହୋଇଉଠିଲା; କିନ୍ତୁ ପରବର୍ତ୍ତୀ କେତେକ ଶତକରେ ଏହା ମଧ୍ୟ ଦୁର୍ବଳତା ଭିଜିଲା ଓ ମଉଳିଗଲା । ନବମ ଶତାବ୍ଦୀରେ ଗୁର୍ଜରରାଟର ମିହିର ଭୋଜ ଉତ୍ତର ଓ ମଧ୍ୟ-ଭାରତରେ ଗୋଟିଏ ଯୁକ୍ତରାଜ୍ୟ ପ୍ରତିଷ୍ଠା କଲେ । ଏହାର ରାଜଧାନୀ ହେଲା କାନ୍ୟକୁବ୍ଜ ବା ଆଧୁନିକ କନୌଜ । ପୁଣି ଏକ ସାହିତ୍ୟିକ ପୁନରୁତ୍ଥାନ ଦେଖାଦେଲା ଯାହାର କେନ୍ଦ୍ରରେ ଅଧିଷ୍ଠିତ ଥିଲେ ରାଜଶେଖର । ଏକାଦଶ ଶତାବ୍ଦୀର ପ୍ରାରମ୍ଭରେ ଆଉ ଜଣେ ଭୋଜ

ଶକ୍ତିଶାଳୀ ତଥା ଆକର୍ଷକ ବ୍ୟକ୍ତିତ୍ୱ ଯୋଗ ଉଭାହେଲେ ଏବଂ ପୁନର୍ବାର ଉଜ୍ଜୟିନୀ ଏକ ମହାନ୍ ରାଜଧାନୀ ହୋଇଉଠିଲା । ଏହି ଭୋଜ ଥିଲେ ଜଣେ ଅସାଧାରଣ ବ୍ୟକ୍ତି, ଯିଏ ବହୁ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ଏକାଧାରରେ ସେ ଥିଲେ ଜଣେ ବୈୟାକରଣ ଓ ଶବ୍ଦକୋଷ ସଙ୍କଳକ ଏବଂ ଭେଷଜ ଓ ଜ୍ୟୋତିର୍ବିଦ୍ୟାରେ ମଧ୍ୟ ତାଙ୍କର ପ୍ରବେଶ ଥିଲା । ସେ ଥିଲେ ଜଣେ ମହାନ୍ ନିର୍ମାତା ଓ କଳା-ସାହିତ୍ୟର ପୃଷ୍ଠପୋଷକ । ଜଣେ କବି ଓ ସାହିତ୍ୟିକ ଭାବରେ ମଧ୍ୟ ତାଙ୍କର ଖ୍ୟାତି ଥିଲା ଏବଂ ଏକାଧିକ ଗ୍ରନ୍ଥର ରଚୟିତା ଭାବରେ ତାଙ୍କର ନାମ ଦେଖିବାକୁ ମିଳେ । ମହାନତା, ବିଦ୍ୱତ୍ତା ଓ ଉଦାରତାର ପ୍ରତୀକ ଭାବରେ ତାଙ୍କର ନାମ ଜନସାଧାରଣଙ୍କ ଭିତରେ ନାନା ଊାରତ୍ୱର କାହାଣୀ ଓ କିଂବଦନ୍ତୀର ଅଂଶ ହୋଇ ରହିଛି ।

ତଥାପି, ଏ ପ୍ରକାର ଦୀପ୍ତି ସତ୍ତ୍ୱେ, ଗୋଟାଏ ଆନ୍ତର ଦୁର୍ବଳତା ଭାରତକୁ କବଳିତ କରିଥିଲାଭଳି ଅନୁମିତ ହୁଏ । ଏହାର ପ୍ରଭାବ ତାର ରାଜନୈତିକ ପ୍ରତିଷ୍ଠା ଉପରେ କେବଳ ନୁହେଁ, ତାର ସୃଜନାତ୍ମକ କ୍ରିୟାକଳାପରେ ମଧ୍ୟ ଗ୍ଳାୟାପାତ କଲା । ଏଥି ନିମନ୍ତେ କୌଣସି ନିର୍ଦ୍ଦିଷ୍ଟକାଳ ସୂଚିତ କରିବା ସମ୍ଭବ ନୁହେଁ; କାରଣ ଏହି ପ୍ରକ୍ରିୟା ଥିଲା ବଡ଼ ମନ୍ଥର ଓ ସହଜରେ ଦୃଷ୍ଟିରେ ପଡ଼ିବାଭଳି ନୁହେଁ ଏବଂ ଦକ୍ଷିଣ ଅପେକ୍ଷା ଉତ୍ତର-ଭାରତରେ ଏହାର ଲକ୍ଷଣ ଆଗୁ ଦେଖିବାକୁ ମିଳିଲା । ପ୍ରକୃତପକ୍ଷେ ଦକ୍ଷିଣ-ଭାରତ ରାଜନୀତି ଓ ସଂସ୍କୃତି ଉଭୟ ଦିଗରୁ ମହତ୍ତ୍ୱପୂର୍ଣ୍ଣ ହୋଇଉଠିଲା । ଏହାର କାରଣ ହୁଏତ ହୋଇପାରେ ଯେ ଦକ୍ଷିଣ-ଭାରତ କ୍ରମାଗତ ଆକ୍ରମଣର ଦୌରାତ୍ମ୍ୟରୁ ମୁକ୍ତ ଥିଲା; ଏପରି ବି ହୋଇପାରେ ଯେ ବହୁ କବି, ସାହିତ୍ୟିକ, କଳାକାର ଓ ସୁଦକ୍ଷ ନିର୍ମାତା ଉତ୍ତର-ଭାରତର ଅନିଶ୍ଚିତ ଅବସ୍ଥାରୁ ରକ୍ଷା ପାଇବାପାଇଁ ଦକ୍ଷିଣ-ଭାରତରେ ଆଶ୍ରୟ ଖୋଜିଥିଲେ । ଦକ୍ଷିଣର ଶକ୍ତିଶାଳୀ ତଥା ଗୌରବୋଜ୍ଜ୍ୱଳ ରାଜସଭାମାନ ଏମାନଙ୍କୁ ଆକର୍ଷିତ କରିଥିବେ ଏବଂ ସୃଜନାତ୍ମକ କର୍ମ ନିମନ୍ତେ ସେସବୁ ସୁଯୋଗ ଯୋଗାଇଥିବେ ଯାହା ଅନ୍ୟତ୍ର ସେମାନେ ପାଇନଥିବେ ।

କିନ୍ତୁ ଅତୀତରେ ବହୁବାର କରିଥିବା ଭଳି, ଉତ୍ତର-ଭାରତ ଯଦିଓ ସମଗ୍ର ଦେଶ ଉପରେ ଆଧିପତ୍ୟ କରି ନଥିଲା ଓ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇ ରହିଥିଲା, ତଥାପି ସେଠାର ଜୀବନରେ ସମୃଦ୍ଧି ଥିଲା ଏବଂ ସାଂସ୍କୃତିକ ତଥା ଦାର୍ଶନିକ କର୍ମାନୁଷ୍ଠାନ ନିମନ୍ତେ ବହୁତ କେନ୍ଦ୍ର ଥିଲା । ଚିରକାଳ ଭଳି ଆଧ୍ୟାତ୍ମିକ ତଥା ଦାର୍ଶନିକ ବିଚାର ନିମନ୍ତେ ବାରାଣସୀ ଥିଲା ହୃଦୟସ୍ୱରୂପ ଏବଂ ପ୍ରତ୍ୟେକ ବ୍ୟକ୍ତି ପକ୍ଷରେ ଯାହାର କୌଣସି ନୂତନ ତତ୍ତ୍ୱ ପ୍ରଚାର କରିବାର ଥାଏ କିମ୍ବା କୌଣସି ପୁରାତନ ତତ୍ତ୍ୱର ନୂତନ ବ୍ୟାଖ୍ୟା ପରିବେଷଣ କରିବାର ଥାଏ, ବାରାଣସୀର ସ୍ୱୀକୃତି ଲାଭକରିବା ଅନିବାର୍ଯ୍ୟ ଥିଲା । ବୌଦ୍ଧ ତଥା ବ୍ରାହ୍ମଣ୍ୟ ଶାସ୍ତ୍ର-ଚର୍ଚ୍ଚା ନିମନ୍ତେ ବହୁକାଳ ପର୍ଯ୍ୟନ୍ତ କାଶ୍ମୀର ଥିଲା ସଂସ୍କୃତ ଭାଷାର ଗୋଟାଏ ମହାନ୍ କେନ୍ଦ୍ର । ମହାନ୍ ବିଶ୍ୱବିଦ୍ୟାଳୟମାନ ଜ୍ଞାନର ଐଶ୍ୱର୍ଯ୍ୟରେ ଭାସ୍ୱର ଥିଲା । ଏଥିଭିତରୁ ବହୁ-ବିଖ୍ୟାତ ଥିଲା ନାଳନ୍ଦା ଏବଂ ତାର ବିଦ୍ୱାନ ସମଗ୍ର ଦେଶରେ ସମ୍ମାନିତ ହେଉଥିଲେ । ଶିକ୍ଷା ନିମନ୍ତେ ନାଳନ୍ଦାରେ ଯୋଗଦେବା ସାଂସ୍କୃତିକ ବିଶୁଦ୍ଧତାର ଚିହ୍ନ ମନେକରାଯାଉଥିଲା ।

ଏହି ବିଶ୍ୱବିଦ୍ୟାଳୟରେ ସ୍ଥାନ ପାଇବା କିଛି ସହଜ କଥା ନଥିଲା । ଶିକ୍ଷାର ଗୋଟାଏ ନିର୍ଦ୍ଦିଷ୍ଟ ସ୍ତରରେ ଉପନୀତ ହେବା ପରେ କେବଳ ଏଠାରେ ଯୋଗଦେବା ପ୍ରଶ୍ନ ଉଠୁଥିଲା । ସ୍ନାତକୋତ୍ତର ଅଧ୍ୟୟନ ଥିଲା ଏଠାର ବିଶିଷ୍ଟତା ଏବଂ ଚୀନ, ଜାପାନ, ତିବ୍ବତ ଓ ଏପରିକି କୋରିଆ, ମଙ୍ଗୋଲିଆ ଓ ବୋଖାରାରୁ ମଧ୍ୟ ଯୁବକ ଏଠାକୁ ଆସୁଥିଲେ । ବୌଦ୍ଧ ଓ ବ୍ରାହ୍ମଣ ଉଭୟର ଧର୍ମ ତଥା ଦର୍ଶନବିଷୟକ ଶିକ୍ଷା ବ୍ୟତୀତ ଐହିକ ତଥା ବ୍ୟାବହାରିକ ବିଷୟ ଉପରେ ମଧ୍ୟ ଏଠାରେ ଶିକ୍ଷା ଦିଆଯାଉଥିଲା । ଗୋଟାଏ କଳା-ବିଦ୍ୟାଳୟ ଏହାର ଅନ୍ତର୍ଭୁକ୍ତ ଥିଲା ଓ ସ୍ଥାପତ୍ୟ ନିମନ୍ତେ ଏକ ସ୍ୱତନ୍ତ୍ର ବିଭାଗ ତାର ଥିଲା । ଗୋଟାଏ ଚିକିତ୍ସା-ବିଦ୍ୟାଳୟ, ଗୋଟାଏ କୃଷି ବିଭାଗ ଓ ଗୋଧନ ବିଭାଗ ବି ଥିଲା । ଏଠାରେ ବୌଦ୍ଧିକ ଜୀବନ ସମ୍ପର୍କରେ କୁହାଯାଏ ଯେ ଏଠାରେ ଅନବରତ ବିଭିନ୍ନ ବିଷୟରେ ବିଚାର-ଆଲୋଚନା ଚାଲିଥାଏ । ବହିର୍ଭାରତରେ ଭାରତୀୟ ସଂସ୍କୃତିର ପ୍ରସାର ବିଶେଷ ଭାବରେ ନାଳନ୍ଦା ବିଦ୍ୱାନ୍‌ଙ୍କଦ୍ୱାରା ସାଧିତ ହୋଇଥିଲା ।

ଆଧୁନିକ ବିହାର ପ୍ରଦେଶ ଅନ୍ତର୍ଗତ ଭାଗଲପୁର ନିକଟରେ ଅବସ୍ଥିତ ଥିଲା ବିକ୍ରମଶୀଳା ବିଶ୍ୱବିଦ୍ୟାଳୟ ଏବଂ କାଥିଆବାଡ଼ର ବଲ୍ଲଭୀ । ଗୁପ୍ତ ରାଜତ୍ୱକାଳରେ ଉଜ୍ଜୟିନୀ ବିଶ୍ୱବିଦ୍ୟାଳୟ ଖ୍ୟାତିଲାଭ କରିଥିଲା । ଦକ୍ଷିଣରେ ଥିଲା ଅମରାବତୀ ବିଶ୍ୱବିଦ୍ୟାଳୟ ।

ତଥାପି ଖ୍ରୀଷ୍ଟଯୁଗର ପ୍ରଥମ ସହସ୍ର ବର୍ଷ ଶେଷହେବା ଆଡ଼କୁ ଏ ସମସ୍ତ ଗୋଟାଏ ସଭ୍ୟତାର ଅପରାହ୍ନ ଭଳି ପ୍ରତୀତ ହୁଏ । ପ୍ରଭାତର ଅରୁଣିମା ବହୁ ପୂର୍ବରୁ ମିଳାଇଯାଇଥିଲା; ମଧ୍ୟାହ୍ନର ପ୍ରଖରତା ଅତୀତ ହୋଇଥିଲା । ଦକ୍ଷିଣରେ ତେଜ ଓ ଓଜ କିଛି ଅବଶିଷ୍ଟ ରହିଥିଲା ଏବଂ ଆଉ କେତେ ଶତବର୍ଷ ପର୍ଯ୍ୟନ୍ତ ତାର ସ୍ପନ୍ଦନ ଅନୁଭୂତ ହେଉଥିଲା । ଖ୍ରୀଷ୍ଟଯୁଗର ଦ୍ୱିତୀୟ ସହସ୍ରାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଦରିଆପାରି ଭାରତର ଭାରତୀୟ ଉପନିବେଶ ଜୀବନରେ ଆକ୍ରମଣାତ୍ମକ ଅଧୀରତା ରହିଥିଲା; କିନ୍ତୁ ଯେପରି ମନେହୁଏ, ଏହି ସଭ୍ୟତାର ହୃଦୟ କ୍ରମଶଃ ପାଷାଣ ଭଳିଗଲା, ତାର ସ୍ପନ୍ଦନ ମନ୍ଥରହେବାକୁ ଲାଗିଲା ଏବଂ ଏହି ଶିଳାନ୍ତରୀକରଣ ଓ ଅବନତି ଅନ୍ୟାନ୍ୟ ଅଙ୍ଗ-ପ୍ରତ୍ୟଙ୍ଗକୁ ସଞ୍ଚାରିତ ହେଲା । ଅଷ୍ଟମ ଶତକର ଶଙ୍କରଙ୍କ ପରେ ଦର୍ଶନକ୍ଷେତ୍ରରେ ଆଉ କୌଣସି ମହାନ୍ ପ୍ରତିଭାର ସୂଚନା ମିଳେନାହିଁ; ଯଦିଓ, କ୍ରମାଗତ-ଭାବରେ ବହୁ ଟୀକାକାର ଓ ଭାଷ୍ୟକାର ଦେଖାଦେଇଚନ୍ତି । ଶଙ୍କର ମଧ୍ୟ ଦକ୍ଷିଣଦେଶୀୟ । କୌତୂହଳବୋଧ ଓ ମାନସିକ ଦୁଃସାହସିକତା ଏବଂ ଜିଜ୍ଞାସାର ସ୍ଥାନ ଅଧିକାର କରେ ନୀରସ ତର୍କ ଓ ନିଷ୍ଫଳ ଯୁକ୍ତିକୌଶଳ । ବ୍ରାହ୍ମଣ୍ୟ ଧର୍ମ ଓ ବୌଦ୍ଧଧର୍ମ ଉଭୟର ଅବନତି ପରିଲକ୍ଷିତ ହୁଏ ଏବଂ ନାନାବିଧ କୁସଂସ୍କାରଜଡ଼ିତ ପୂଜା ଉପାସନା ବ୍ୟବସ୍ଥା ବିଶେଷତଃ କେତେକ ପ୍ରକାର ତନ୍ତ୍ରସାଧନ ଓ ଯୋଗପଦ୍ଧତିର ବିକୃତି ଗଢ଼ିଉଠେ ।

ସାହିତ୍ୟରେ ଭବଭୂତି (ଅଷ୍ଟମ ଶତାବ୍ଦୀ) ହେଉଚନ୍ତି ଶେଷ ମହାନ ପ୍ରତିଭା । ବହୁ ଗ୍ରନ୍ଥ ପ୍ରଣୀତ ହୁଏ; କିନ୍ତୁ ସେସବୁର ଶୈଳୀ ବେଳକୁବେଳ ଜଟିଳ ଓ ଦୁର୍ବୋଧ ହୋଇଉଠେ । ସେଥିରେ ନଥିଲା ଚିନ୍ତା କିମ୍ବା ଅଭିବ୍ୟକ୍ତିର ପ୍ରସନ୍ନତା । ଗଣିତଶାସ୍ତ୍ରରେ ଦ୍ୱିତୀୟ ଭାସ୍କର (ଦ୍ୱାଦଶ ଶତାବ୍ଦୀ) ହେଉଚନ୍ତି ଶେଷ ମହାନ୍ ବ୍ୟକ୍ତି । କଳା ଦିଗରେ ଇ. ବି. ହାଭେଲ୍

ଆମକୁ ଏହି ସମୟର ଆଉ କିଛି ଆଗକୁ ନେଇଯାନ୍ତି । ସେ କହନ୍ତି ଯେ ପ୍ରାୟ ସପ୍ତମ ଓ ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ଯେବେ ଭାରତରେ ମହାନ୍ କେତେ ଚିନ୍ତା ଓ ଭାସ୍କର୍ଯ୍ୟ ସୃଷ୍ଟି ହୋଇ ପାରିଚି, କଳାକୌଶଳ ଦୃଷ୍ଟିରୁ ଅଭିବ୍ୟକ୍ତିର ଆଙ୍ଗିକ ପୂର୍ଣ୍ଣତା ଲାଭ କରିନଥିଲା । ତାଙ୍କ ମତରେ, ସପ୍ତମ ଅବା ଅଷ୍ଟମ ଶତାବ୍ଦୀରୁ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ହେଉଚି ଭାରତୀୟ କଳାର ମହାନ୍ ଯୁଗ, ଯେଉଁ ସମୟରେ ୟୁରୋପରେ ଗୋଥିକ୍ କଳା ବିକାଶର ଶୀର୍ଷରେ ଉପନୀତ ହୋଇପାରିଥିଲା । ସେ ଆହୁରି କହନ୍ତି ଯେ ଷୋଡ଼ଶ ଶତାବ୍ଦୀରେ ପୁରାତନ ଭାରତୀୟ କଳାର ସୃଜନାତ୍ମକ ଆବେଗ ଲକ୍ଷଣୀୟ ଭାବରେ ହ୍ରାସ ହେବାକୁ ଲାଗିଲା । ଏହି ବିବେଚନା କେତେଦୂର ଠିକ୍ ମୁଁ ଜାଣେନି; କିନ୍ତୁ ମୁଁ ମନେକରେ ଯେ କଳାକ୍ଷେତ୍ରରେ ମଧ୍ୟ ଦକ୍ଷିଣ-ଭାରତ ହିଁ ଉତ୍ତର-ଭାରତ ଅପେକ୍ଷା ଅଧିକ କାଳ ପର୍ଯ୍ୟନ୍ତ ପୁରାତନ ପରମ୍ପରା ବଜାୟ ରଖିପାରିଥିଲା ।

ବିଦେଶୀ ଉପନିବେଶ ସ୍ଥାପନ ନିମନ୍ତେ ଭାରତରୁ ଶେଷ ବାସ୍ତୁତ୍ୟାଗ ଘଟିଥିଲା ନବମ ଶତାବ୍ଦୀରେ; କିନ୍ତୁ ଦକ୍ଷିଣରେ ଚୋଳମାନେ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ସାମୁଦ୍ରିକ ଶକ୍ତି ଭାବରେ ପରାକ୍ରାନ୍ତ ଥିଲେ ଆଉ ଯେବେ ସେମାନେ ଶ୍ରୀବିଜୟ ଉପରେ ଆଧିପତ୍ୟ ବିସ୍ତାର କରିପାରିଲେ ।

ଏପରିଭାବରେ ଆମେ ଦେଖିବାକୁ ପାଉଁ ଯେ, ଭାରତର ସୃଜନାତ୍ମକ ପ୍ରତିଭା ଓ ତେଜସ୍ୱିତା କ୍ଷୀଣରୁ କ୍ଷୀଣତର ହୋଇଆସୁଥିଲା । ଏହି ପ୍ରକ୍ରିୟା ଥିଲା ବଡ଼ ମନ୍ଥର ଏବଂ ଉତ୍ତରରୁ ଆରମ୍ଭ କରି ଦକ୍ଷିଣକୁ ସ୍ପର୍ଶ କଲାବେଳକୁ ବହୁ ଶତାବ୍ଦୀ ଅତୀତ ହୋଇଥିଲା । ଏହି ରାଜନୈତିକ ଅବନତି ଓ ସାଂସ୍କୃତିକ ବନ୍ଧତାର କାରଣ କ'ଣ ? ଏହା କି କେବଳ ବୟସର ପ୍ରଭାବ ଯାହା ଜାତିବିଶେଷକୁ ଯେପରି ସଭ୍ୟତାକୁ ମଧ୍ୟ ସେପରି ଆକ୍ରମିତ କରେ କିମ୍ବା କୌଣସି ରକମର ଜୁଆର-ଭଟ୍ଟାର ତରଙ୍ଗ ଯାହା ଉଠାଣି ଆସି ପୁଣି ପଛକୁ ହଟିଯାଏ ? ରାଧାକୃଷ୍ଣନ୍ କହନ୍ତି ଯେ ରାଜନୈତିକ ସ୍ୱାଧୀନତା ହରାଇବା ସଙ୍ଗେ ଭାରତୀୟ ଦର୍ଶନ ତାର ଓଜ ହରାଇବସିଲା । ସିଲ୍ ଭାଁ ଲେଭି କହନ୍ତି : "ଭାରତର ସ୍ୱାଧୀନତା ସଙ୍ଗେ ସଂସ୍କୃତର ସୃଜନାତ୍ମକ ଯୁଗ ଶେଷ ହେଲା । ଆଜକାଲିର ବିଭିନ୍ନ ଭାଷା ଓ ସାହିତ୍ୟ ଆର୍ଯ୍ୟମାନଙ୍କ ଦେଶରେ ବିସ୍ତାର ଲାଭ କଲେ ଓ ସଂସ୍କୃତର ସ୍ଥାନ ଅଧିକାର କରିନେଲେ । ସଂସ୍କୃତକୁ ବର୍ତ୍ତମାନ ବିଦ୍ୟାଳୟ-ମାନଙ୍କରେ କେବଳ ଆଶ୍ରୟ ମିଳିଚି ଓ ସେଠାରେ ତାର ଦେହରେ 'ପଣ୍ଡିତିଆ' ଛାପ ବସିଯାଇଚି ।"

ଏ ସମସ୍ତ କିଛି ଯଥାର୍ଥ କାରଣ ରାଜନୈତିକ ସ୍ୱାଧୀନତା ହରାଇବା ସଙ୍ଗେ ସଙ୍ଗେ ଅବଶ୍ୟମ୍ଭାବୀ ଭାବରେ ସାଂସ୍କୃତିକ ଅବନତି ପାଇଁ ପଥ ମୁକ୍ତ ହୋଇଯାଏ । କିନ୍ତୁ ପୂର୍ବରୁ କୌଣସି ରକମର ଅବନତି ଆରମ୍ଭ ନହେଲେ ରାଜନୈତିକ ସ୍ୱାଧୀନତା ଚ୍ୟୁତ ହେବ କାହିଁକି ? ଗୋଟାଏ କ୍ଷୁଦ୍ର ଦେଶ ଅଧିକତର ଶକ୍ତିଶାଳୀ ଏକ ଦେଶଦ୍ୱାରା ସହଜରେ ପରାଜିତ ହୋଇପାରେ, କିନ୍ତୁ ଭାରତ ଭଳି ଗୋଟାଏ ବିଶାଳ, ସମୁନ୍ନତ ତଥ ସୁସଭ୍ୟ ଦେଶ ପକ୍ଷରେ ଆଭ୍ୟନ୍ତରୀଣ ଅବନତି ବିନା କିମ୍ବା ଆକ୍ରମଣକାରୀର ଅଧିକତର ଉନ୍ନତ ମାରଣାସ୍ତ୍ର ଓ

ରଣକୁଶଳତା ବିନା ବହିରାକ୍ରମଣ ସମ୍ମୁଖରେ ଆତ୍ମସମର୍ପଣ କରିବା ସମ୍ଭବ ନୁହେଁ । ଖ୍ରୀଷ୍ଟ ଯୁଗର ପ୍ରଥମ ସହସ୍ରାବ୍ଦ ଶେଷ ହେଲି ବେଳକୁ ଭାରତରେ ଏହି ଆଭ୍ୟନ୍ତରୀଣ ଅବନତି ସ୍ପଷ୍ଟ ଲକ୍ଷ୍ୟ କରିହୁଏ ।

ପ୍ରତ୍ୟେକ ସଭ୍ୟତାର ଜୀବନରେ ପୁନଃପୁନଃ ଅବନତି ଓ ବିଚ୍ଛିନ୍ନତାର ପର୍ଯ୍ୟାୟମାନ ଦେଖାଦେଇଥାଏ ଏବଂ ଭାରତର ଇତିହାସରେ ଏଥିପୂର୍ବେ ଏଭଳି କେତେ ପର୍ଯ୍ୟାୟ ବି ଦେଖାଦେଇଛି । କିନ୍ତୁ ଭାରତ ସେଥିଭିତରୁ ଉଠି ଆସି ପୁନର୍ବାର ନିଜକୁ ଶକ୍ତିମାନ୍ କରିପାରିଛି, କେବେ ବା ନିଜ ଭିତରେ ନିମଗ୍ନ, କିଛିକାଳ ବିତାଇବା ପରେ ନୂତନ ଶକ୍ତି ସଂଗ୍ରହକରି ପୁନର୍ବାର ମୈଦାନ ଉପରକୁ ଆସିଛି । ଭାରତ ଭିତରେ ସର୍ବଦା ଗୋଟାଏ ଗତିଶୀଳ ଅନ୍ତଃସ୍ଥଳ ରହିଛି ଯାହା ନବ ନବ ସମ୍ପର୍କ ସାହାଯ୍ୟରେ ନିଜକୁ ପୁଣି ସଂଜୀବିତ କରିଛି ଏବଂ ପୁନର୍ବାର ବିକାଶ କରିଛି; ତାହା ଅତୀତରୁ କେତେ ଭିନ୍ନ ହେଲେ ସୁଦ୍ଧା ସେଥି ସଙ୍ଗେ ଘନିଷ୍ଠ ସମ୍ପର୍କ ରକ୍ଷା କରିପାରିଛି । ନିଜକୁ ଅନୁକୂଳନ କରିବାର ସେହି ସାମର୍ଥ୍ୟ, ମନର ସେହି କମନୀୟତା ଅତୀତରେ ଯାହା ବାରମ୍ବାର ଭାରତକୁ ରକ୍ଷା କରିଛି ଆଜି କ'ଣ ତାହା ନାହିଁ ? ତାର କେତେକ ଧର୍ମବିଦ୍ଧା ମତବିଶ୍ୱାସ ଓ ତାର ସାମାଜିକ ସଂଗଠନର ବର୍ଦ୍ଧିଷ୍ଣୁ ନିର୍ମମ ଶୃଙ୍ଖଳା ତାର ମନକୁ କଣ ଏତେ ଉତ୍କଟ ଭାବରେ ରକ୍ଷଣଶୀଳ କରିଛି ? କାରଣ ଜୀବନର ଅଭିବୃଦ୍ଧି ଓ ବିବର୍ତ୍ତନ ଯଦି ଶେଷ ହୁଏ, ଚିନ୍ତାର ବିବର୍ତ୍ତନ ମଧ୍ୟ ବିଲୟ ଭଜେ । ଭାରତ ସବୁବେଳେ ଆଚରଣରେ ରକ୍ଷଣଶୀଳ ଓ ବିଚାରରେ ବିସ୍ଫୋରକ ଗୋଟାଏ ବିଚିତ୍ର ସମ୍ମିଶ୍ରଣ ଭାବରେ ଗତିକରିଆସିଛି । ଅବଶ୍ୟମ୍ଭାବୀ ଭାବରେ ତାର ବିଚାର ଆଚରଣକୁ ପ୍ରଭାବିତ କରିଛି, ଯଦିଓ ତାହା ସମ୍ଭବ ହୋଇଛି, ଅତୀତ ପ୍ରତି ସମ୍ଭ୍ରମ ରକ୍ଷାକରି, ତାର ନିଜସ୍ୱ ଧାରାରେ । ଲେଭି କହନ୍ତି : "ଯଦ୍ୟପି ତାର ଦୃଷ୍ଟି ପୁରାତନ ଜ୍ଞାନର ଦିଗକୁ ତାର ବୁଦ୍ଧି ଆଜିର ବିଚାରଧାରାକୁ ହୃଦୟଙ୍ଗମ କରେ । ନିଜ ଅଜ୍ଞାତରେ ହିଁ ଆଜି ଭାରତ ବଦଳି ଯାଇଛି ।' କିନ୍ତୁ ଚିନ୍ତା ଯେତେବେଳେ ତାର ବିସ୍ଫୋରକ ଭାବ ଓ ସୃଜନୀଶକ୍ତି ହରାଇବସିଲା ଏବଂ ଗୋଟାଏ ଅନାବଶ୍ୟକ ତଥା ଅର୍ଥହୀନ ଆଚରଣର ଦାସ ପାଲଟିଲା, ପୁରାତନ ପଦାବଳୀ ଆବୃତ୍ତିକରି ସବୁ କିଛି ନୂତନ ପ୍ରତି ଭୟଭୀତ ହେଲା, ଜୀବନ ପ୍ରବାହହୀନ ଓ ଆବଦ୍ଧ ହୋଇ ନିଜ ରଚିତ କାରାଗାରରେ ବନ୍ଦୀ ହେଲା ।

ଗୋଟାଏ ସଭ୍ୟତାର ବିନାଶ ସମ୍ପର୍କରେ ବହୁ ଦୃଷ୍ଟାନ୍ତ ଆମ ଆଗରେ ରହିଛି ଏବଂ ସେଥିଭିତରୁ ବିଶେଷ ଉଲ୍ଲେଖଯୋଗ୍ୟ ବୋଧହୁଏ ହେଉଛି ୟୁରୋପର ପ୍ରତିଷ୍ଠିତ ପୁରାତନ ସଭ୍ୟତା ଯାହା ରୋମର ପତନ ସଙ୍ଗେ ବିଲୟ ଲଭିଥିଲା । ଉତ୍ତରାଞ୍ଚଳର ଆକ୍ରମଣକାରୀଙ୍କ ସମ୍ମୁଖରେ ରୋମ୍ ନତମସ୍ତକ ହେବା ବହୁ ପୂର୍ବରୁ ନିଜର ଆଭ୍ୟନ୍ତରୀଣ ବହୁ ଦୁର୍ବଳତା ଯୋଗୁଁ ତାହା ପତନମୁଖୀ ହୋଇ ରହିଥିଲା । ବିଦକର ପ୍ରସାରଣୀଳ ଅର୍ଥନୀତି ସଙ୍କୁଚିତ ହୋଇଥିଲା ଏବଂ ପରିମାଣରେ ବହୁ ଅଭାବ ଅସୁବିଧା ସୃଷ୍ଟି କରିଥିଲା । ପୌରଶିଳ୍ପ ପତନଶୀଳ ହୋଇଥିଲା, ଐଶ୍ୱର୍ଯ୍ୟପୂର୍ଣ୍ଣ ଜନବହୁଳ ନଗରୀମାନ କ୍ରମଶଃ ଜନବିରଳ ଓ ଦରିଦ୍ର ହେଉଥିଲା ଏବଂ ଜମିର ଉର୍ବରତା ମଧ୍ୟ ଦ୍ରୁତଗତିରେ ହ୍ରାସ ପାଉଥିଲା । ସମ୍ରାଟମାନେ ପ୍ରତିଦିନ ବୁଦ୍ଧି

ପାଉଥିବା ସେମାନଙ୍କର ବହୁ ଅସୁବିଧା ଦୂରକରିବା ପାଇଁ ବହୁ ସାମୟିକ ବ୍ୟବସ୍ଥା ପ୍ରୟୋଗ କରିଥିଲେ । ବ୍ୟବସାୟୀ, କାରିଗର ଓ ଶ୍ରମିକମାନଙ୍କୁ ବାଧ୍ୟତାମୂଳକ ଭାବରେ ନିଜର ନିର୍ଦ୍ଦିଷ୍ଟ କର୍ମକ୍ଷେତ୍ରରେ ଏକ ପ୍ରକାର ଆବଦ୍ଧ କରାଗଲା । କେତେକ ନିର୍ଦ୍ଦିଷ୍ଟ ଶ୍ରମିକ ଗୋଷ୍ଠୀବହିର୍ଭୂତ ଲୋକଙ୍କୁ ଅନେକ ପ୍ରକାର କର୍ମରେ ନିଯୁକ୍ତ ମନା ହୋଇଥିଲା । ଅତଏବ, କେତେକ ବୃତ୍ତି ବସ୍ତୁତଃ ଜାତିରେ ପରିଣତ ହେଲା । କୃଷକମାନେ ଏକପ୍ରକାର ଗୋଲାମ ହୋଇପଡ଼ିଲେ; କିନ୍ତୁ ଅବନତିକୁ ବାଧା ଦେବାର ଏ ସମସ୍ତ ବାହ୍ୟ ଉଦ୍ୟମ ବିଫଳ ହେଲା । ଏପରିକି ଅବସ୍ଥା ଆହୁରି ଖରାପ ହେଲା ଏବଂ ରୋମାନ୍ ସାମ୍ରାଜ୍ୟର ପତନ ଘଟିଲା ।

ସେହି ସମୟରେ କିମ୍ବା ତାର ପରବର୍ତ୍ତୀ କୌଣସି ଯୁଗରେ ଭାରତୀୟ ସଭ୍ୟତାର ଏ ପ୍ରକାର ନାଟକୀୟ ପତନ କେବେହେଲେ ଘଟିନି ଏବଂ ଯାହା କିଛି ବା ଘଟିଚି ତା' ସତ୍ତ୍ୱେ ଭାରତ ବଡ଼ ବିସ୍ମୟକର ସ୍ଥୈର୍ଯ୍ୟ ପ୍ରଦର୍ଶନ କରିଚି; କିନ୍ତୁ ତାର କ୍ରମଅବନତି ସ୍ପଷ୍ଟ ହୋଇ ଉଠେ । ଖ୍ରୀଷ୍ଟ ପରବର୍ତ୍ତୀ ପ୍ରଥମ ସହସ୍ରାବ୍ଦ ଶେଷବେଳକୁ ଭାରତରେ ସାମାଜିକ ଅବସ୍ଥା କିଭଳି ଥିଲା ବିସ୍ତୃତ ଭାବରେ ବିବୃତକରିବା କଷ୍ଟକର; କିନ୍ତୁ ଏକରକମ ନିଶ୍ଚିତ ଭାବରେ ଏତିକି କୁହାଯାଇପାରେ, ଭାରତର ପ୍ରସାରଶୀଳ ଅର୍ଥନୀତିର ପରିସମାପ୍ତି ଘଟିଥିଲା ଏବଂ ସଙ୍କୋଚନ ଦିଗକୁ ଗୋଟାଏ ପ୍ରବଳ ପ୍ରବଣତା ପ୍ରକାଶ ପାଇଥିଲା । ସମ୍ଭବତଃ, ବର୍ଣ୍ଣ-ବ୍ୟବସ୍ଥାଜନିତ ଭାରତୀୟ ସାମାଜିକ ସଙ୍ଗଠନର ବର୍ଦ୍ଧିଷ୍ଣୁ କଠୋର ଶୃଙ୍ଖଳା ଓ ଅନନ୍ୟତାର ମୁଖ୍ୟତଃ ଏହା ଅବଶ୍ୟମ୍ଭାବୀ ପରିଣତି । ଦକ୍ଷିଣ-ପୂର୍ବ ଏସିଆ ଭଳି ଭାରତୀୟମାନେ ଭାରତ ବାହାରକୁ ଯେବେ ଯାଇଚନ୍ତି, ମନରେ କିମ୍ବା ପ୍ରଥା ଅନୁସରଣରେ କିମ୍ବା ସେମାନଙ୍କର ଅର୍ଥନୀତିରେ ଏତେଭଳି କଠୋର ଶୃଙ୍ଖଳା ଅନୁସରଣ କରିନାହାନ୍ତି ଏବଂ ସମ୍ପ୍ରସାରଣ ଓ ଅଭିବୃଦ୍ଧି ନିମନ୍ତେ ବହୁ ସୁଯୋଗ ପାଇଚନ୍ତି । ଆଉ ଘୁରି ପାଞ୍ଚଶହ ବର୍ଷ ପର୍ଯ୍ୟନ୍ତ ଏହି ସବୁ ଉପନିବେଶମାନଙ୍କରେ ଐଶ୍ୱର୍ଯ୍ୟପୂର୍ଣ୍ଣ ଜୀବନଯାପନ କରି ସେମାନେ ଶକ୍ତି ଓ ସୃଜନାତ୍ମକ ପ୍ରଫୁଲ୍ଲତା ପ୍ରଦର୍ଶିତ କରିଚନ୍ତି; କିନ୍ତୁ ଭାରତରେ ଅନନ୍ୟତାର ଏହି ଭାବ ସୃଜନାତ୍ମକ ପ୍ରତିଭାକୁ ନିର୍ଜୀବ କଲା ଏବଂ ଗୋଟାଏ ଅପ୍ରଶସ୍ତ, କ୍ଷୁଦ୍ର, ଗୋଷ୍ଠୀସର୍ବସ୍ୱ ତଥା ସଙ୍କୀର୍ଣ୍ଣ ଦୃଷ୍ଟିଭଙ୍ଗୀ ପ୍ରୋତ୍ସାହିତ କଲା । ଧରାବନ୍ଧା ନିୟମ ଭିତରେ ଜୀବନ ଖଣ୍ଡବିଖଣ୍ଡିତ ହେଲା, ଯେବେ ପ୍ରତ୍ୟେକ ଲୋକର କର୍ମ ନିର୍ଦ୍ଦିଷ୍ଟ ଓ ସ୍ଥାୟୀ ହୋଇପଡ଼ିଲା ଏବଂ ଜଣଙ୍କର ଅନ୍ୟ ସଙ୍ଗେ ସମ୍ପର୍କ ଶିଥିଳ ହୋଇଆସିଲା । ଦେଶର ପ୍ରତିରକ୍ଷା ନିମନ୍ତେ ଯୁଦ୍ଧ କରିବା ହେଲା କ୍ଷତ୍ରିୟର କେବଳ କର୍ତ୍ତବ୍ୟ ଏବଂ ଅନ୍ୟମାନେ ଏକେ ସେଥିପ୍ରତି ଆଗ୍ରହୀ ନଥିଲେ କିମ୍ବା ସେଥିରେ ଯୋଗ ଦେବାପାଇଁ ସୁବିଧା ପାଇ ନ ଥିଲେ । ବ୍ରାହ୍ମଣ ଓ କ୍ଷତ୍ରିୟ ବ୍ୟବସାୟ ଓ ବାଣିଜ୍ୟକୁ ହୀନଦୃଷ୍ଟିରେ ଦେଖୁଥିଲେ । ଶିକ୍ଷା ଓ ଅଭିବୃଦ୍ଧିର ସୁଯୋଗରୁ ନିମ୍ନଜାତିର ଲୋକେ ବଞ୍ଚିତ ହେଲେ । ଉପର ବର୍ଗର ଲୋକଙ୍କ ନିକଟରେ ନତମସ୍ତକ ହେବା ପାଇଁ ସେମାନଙ୍କୁ ଶିକ୍ଷା ଦିଆଯାଉଥିଲା । ଗୋଟାଏ ସମୁନ୍ନତ ପୌର ଅର୍ଥବ୍ୟବସ୍ଥା ଓ ଶିଳ୍ପପ୍ରସାର ସତ୍ତ୍ୱେ ରାଜ୍ୟର ସଙ୍ଗଠନ ନାନାଦିଗରୁ ଥିଲା ସାମନ୍ତବାଦୀ । ରଣ-କୌଶଳ ଦିଗରେ ମଧ୍ୟ ଭାରତ ସମ୍ଭବତଃ ପଛରେ ପଡ଼ିଥିଲା । ଏ ପ୍ରକାର ଅବସ୍ଥାରେ, ସାମାଜିକ ସଙ୍ଗଠନ ପରିବର୍ତ୍ତନ କରି ଶକ୍ତି ଓ ପ୍ରତିଭାର ନୂତନ ଉତ୍ସ ମୁକ୍ତ

ନକଲା ପର୍ଯ୍ୟନ୍ତ କୌଣସିପ୍ରକାର ଲକ୍ଷଣୀୟ ପ୍ରଗତି ସମ୍ଭବ ନଥିଲା । ଏ ପ୍ରକାର ପରିବର୍ତ୍ତନ ଦିଗରେ ପ୍ରଧାନ ଅନ୍ତରାୟ ଥିଲା ବର୍ଣ୍ଣ-ବ୍ୟବସ୍ଥା । ଭାରତୀୟ ସମାଜକୁ ଯେତେ କିଛି ସଦ୍‌ଗୁଣ ଓ ସ୍ଥାୟିତ୍ୱ ଦେଇ ଥାଉନା କାହିଁକି, ବର୍ଣ୍ଣ-ବ୍ୟବସ୍ଥା ନିଜ ଗର୍ଭରେ ଧରିଥିଲା ତାର ବିନାଶର ବୀଜ । ଭାରତର ସାମାଜିକ ସଙ୍ଗଠନ ( ପରେ ଏ ବିଷୟରେ ବିସ୍ତୃତ ଆଲୋଚନା କରିବି) ଭାରତୀୟ ସଭ୍ୟତାକୁ ବିସ୍ମୟକର ସ୍ଥାୟିତ୍ୱ ଦେଇଥିଲା । ଏହା ଗୋଷ୍ଠୀକୁ ବଳ ଓ ସଂହତି ଦେଇଥିଲା; କିନ୍ତୁ ସମ୍ପ୍ରସାରଣ ଓ ବୃହତ୍ତର ସଂହତି ପଥରେ ଅନ୍ତରାୟ ହେଲା । ହସ୍ତଶିଳ୍ପ, କାରିଗରି ନୈପୁଣ୍ୟ ଓ ବ୍ୟବସାୟ ବାଣିଜ୍ୟର ଉନ୍ନତି ହେଲା; କିନ୍ତୁ ସବୁବେଳେ ସ୍ୱତନ୍ତ୍ର ଗୋଷ୍ଠୀ ଭିତରେ ଏହା ଆବଦ୍ଧ ରହିଲା । ଏପରି ଭାବରେ, କେତେକ ଧରଣର ବୃତ୍ତି ବଂଶଗତ ହୋଇପଡ଼ିଲା ଏବଂ ନୂତନ କୌଣସି କାର୍ଯ୍ୟ ଅବା ଧନ୍ଦା ଏଡ଼ାଇ ପୁରାତନ ବଂଶଗତ ବୃତ୍ତି ଭିତରେ ଆବଦ୍ଧ ରହି, ନୂତନ ଉଦ୍ୟମ ତଥା ନବୀକରଣର ସବୁ କିଛି ଭାବ ନିରୋଧ କରିବାର ପ୍ରବଣତା ପ୍ରଚ୍ଛନ୍ନ ରହିଲା । ଗୋଟାଏ ସୀମିତ କ୍ଷେତ୍ର ଭିତରେ ଏହା କିୟଦଂଶରେ ସ୍ୱାଧୀନତା ଅବଶ୍ୟ ଦେଲା; କିନ୍ତୁ ଏହା ହୋଇପାରିଲା ଗୋଟାଏ ବୃହତ୍ତର ସ୍ୱାଧୀନତା ବ୍ୟାହତ କରି ଏବଂ ବହୁ ଲୋକଙ୍କୁ ସାମାଜିକ ସ୍ତରର ନିମ୍ନରେ ସ୍ଥାୟୀଭାବରେ ରଖି ଏବଂ ଅଭିବୃଦ୍ଧିର ସମସ୍ତ କିଛି ସୁଯୋଗରୁ ବଞ୍ଚିତ କରି । ଯେତେଦିନ ପର୍ଯ୍ୟନ୍ତ ସମାଜର ସେହି ବ୍ୟବସ୍ଥା ଅଭିବୃଦ୍ଧି ଓ ପ୍ରସାର ନିମନ୍ତେ ପନ୍ଥା ଯୋଗାଉଥିଲା, ସେ ପର୍ଯ୍ୟନ୍ତ ତାହା ପ୍ରଗତିଶୀଳ ଥିଲା; କିନ୍ତୁ ସମ୍ଭାବ୍ୟ ପ୍ରସାରଣର ଶେଷ ସୀମାରେ ପହଞ୍ଚିବା ପରେ ଏହା ଆବଦ୍ଧ ଅନଗ୍ରସର ଓ ପରବର୍ତ୍ତୀ ସମୟରେ ଅବଶ୍ୟମ୍ଭାବୀ ଭାବରେ ପଶ୍ଚାଦ୍‌ଗାମୀ ଓ ଅବନତିଶୀଳ ହୋଇପଡ଼ିଲା ।

ଏହି କାରଣରୁ ବୌଦ୍ଧିକ, ଦାର୍ଶନିକ, ରାଜନୈତିକ, ରଣକୌଶଳ ପଦ୍ଧତି, ବହିର୍ବିଶ୍ୱ ସମ୍ପର୍କରେ ଜ୍ଞାନ ଅନ୍ୱେଷଣ ଓ ସଂଯୋଗ ସ୍ଥାପନ ସବୁ ଦିଗରେ ଅବନତି ଘଟିଲା ଏବଂ ସ୍ଥାନୀୟତା ବିଚାର ବୃଦ୍ଧି ପାଇ ଭାରତକୁ ସାମଗ୍ରିକ ଭାବରେ ଧାରଣା କରିବା ବଦଳରେ ଗୋଟାଏ ସାମନ୍ତବାଦୀ କ୍ଷୁଦ୍ର ସାଂପ୍ରଦାୟିକ ଭାବ ପ୍ରବଳ ହେଲା । ଅର୍ଥ ଜଞ୍ଜାଳର ସଙ୍କୋଚନ ଘଟିଲା । ତଥାପି, ପରବର୍ତ୍ତୀ ଯୁଗମାନଙ୍କରେ ଯେଉଁଭଳି ପ୍ରମାଣିତ ହୋଇଛି, ଏହି ପୁରାତନ ବ୍ୟବସ୍ଥାରେ ତେବେ ବି ଜୀବନୀ-ଶକ୍ତି ରହିଥିଲା ଏବଂ ପ୍ରୟୋଜନାନୁରୂପ ଉପ-ଯୋଜନା ନିମନ୍ତେ ସାମର୍ଥ୍ୟ, ବିସ୍ମୟକର ଧାରଣାଶକ୍ତି ଓ କେତେକ ପରିମାଣରେ ନମନୀୟତା ବି ଥିଲା । ଏହି କାରଣରୁ ସେହି ବ୍ୟବସ୍ଥା ତିଷ୍ଠି ରହିପାରିଲା, ନବନବ ସମ୍ପର୍କ ଓ ଚିନ୍ତାର ପ୍ରବାହରୁ ଲାଭ ଉଠାଇପାରିଲା ଏବଂ ଏପରିକି କେତେକ ଦିଗରେ ପ୍ରଗତି ମଧ୍ୟ କଲା; କିନ୍ତୁ ସେହି ପ୍ରଗତି ସର୍ବଦା ଅତୀତର ବହୁତ କିଛି ଅଭିଜ୍ଞାନ ସଙ୍ଗେ ଜଡ଼ିତ ରହୁଥିଲା ଓ ସେଥିଦ୍ୱାରା ବାଧାପ୍ରାପ୍ତ ହେଉଥିଲା ।

□□□

# ଷଷ୍ଠ ପରିଚ୍ଛେଦ

# ନବ ନବ ସମସ୍ୟା

## ୧. ଆରବ ଓ ମଙ୍ଗୋଲ

ଉତ୍ତର-ଭାରତରେ, ଗୋଟାଏ ଶକ୍ତିଶାଳୀ ରାଜ୍ୟରେ, ହର୍ଷ ଯେବେ ରାଜତ୍ୱ କରୁଥିଲେ ଏବଂ ବିଖ୍ୟାତ ବିଦ୍ୱାନ ଚୀନା ପରିବ୍ରାଜକ ହୁଏନ୍ ସାଂ ଯେବେ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ, ଆରବ ଦେଶରେ ଇସ୍‌ଲାମ୍ ରୂପ ପରିଗ୍ରହ କରୁଥିଲା । ବହୁ ନୂତନ ସମସ୍ୟା ସୃଷ୍ଟିକରି ଗୋଟାଏ ଧାର୍ମିକ ତଥା ରାଜନୈତିକ ଶକ୍ତିଭାବରେ ଇସଲାମ୍ ଭାରତକୁ ଆସିବାକୁ ଥିଲା; କିନ୍ତୁ ଏକଥା ମନେ ରଖିବା ଉଚିତ ଯେ ଭାରତୀୟ ଜୀବନରେ ବିଶେଷ କିଛି ପରିବର୍ତ୍ତନ ଆଣିବା ପାଇଁ ତାକୁ ବହୁତ ସମୟ ଲାଗିଥିଲା । ଭାରତର କେନ୍ଦ୍ରସ୍ଥଳରେ ପହଞ୍ଚିବା ପାଇଁ ଇସ୍‌ଲାମ୍‌କୁ ବସ୍ତୁତଃ ଛ'ଶହ ବର୍ଷ ଲାଗିଥିଲା ଏବଂ ରାଜନୈତିକ ବିଜୟଯାତ୍ରାର ସହଯୋଗୀ ଭାବରେ ଆସିଲାବେଳକୁ ତାର ବହୁତ କିଛି ପରିବର୍ତ୍ତନ ଘଟିସାରିଥିଲା ଏବଂ ତାର ଧ୍ୱଜାବାହକମାନେ ଥିଲେ ଭିନ୍ନ । ଯେଉଁ ଆରବମାନେ ଅତ୍ୟୁଗ୍ର ଉତ୍ସାହ ତଥା ବିପୁଳ ଗତିଶୀଳ ଶକ୍ତିଧରି ସ୍ପେନଠାରୁ ମଙ୍ଗୋଲିଆ ପ୍ରାନ୍ତ ପର୍ଯ୍ୟନ୍ତ ଗୋଟାଏ ଉଜ୍ଜ୍ୱଳ ସଂସ୍କୃତି ବହନ କରି ବିସ୍ମୟକରଭାବରେ ବିଜୟ ହାସଲ କରିଥିଲେ, ଭାରତକୁ ସେମାନେ ଆସିନାହାନ୍ତି । ସେମାନେ ରହିଗଲେ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ନିକଟରେ । ଆରବ ସଭ୍ୟତା କ୍ରମଶଃ କ୍ଷୟିଷ୍ଣୁ ହେବାକୁ ଲାଗିଲା ଏବଂ ବିବିଧ ତୁର୍କୀ ଉପଜାତି ମଧ୍ୟ ଓ ପଶ୍ଚିମ-ଏସିଆରେ ପ୍ରବଳ ହୋଇ ଉଠିଲେ । ଭାରତୀୟ ସୀମାନ୍ତ ଅପର ପାର୍ଶ୍ୱର ଏହିସବୁ ତୁର୍କୀ ଓ ଆଫଗାନ-ମାନେ ଇସ୍‌ଲାମ୍‌କୁ ଗୋଟାଏ ରାଜନୈତିକ ଶକ୍ତିଭାବରେ ଭାରତଭୂମିକୁ ଆଣିଲେ ।

କେତେକ ତାରିଖ ଉଲ୍ଲେଖ କରିବା ଆମକୁ ଏ ଦିଗରେ ସହାୟକ ହୋଇପାରେ । ହିଜ୍‌ରତ୍ ଅର୍ଥାତ୍ ଖ୍ରୀ: ୬୨୨ରେ ପୈଗମ୍ବର ମହମ୍ମଦଙ୍କ ମକ୍‌କାରୁ ମଦିନା ଯାତ୍ରାଠାରୁ ଇସ୍‌ଲାମ୍ ଆରମ୍ଭ ହେଲା ବୋଲି କୁହାଯାଇ ପାରେ । ଏହାର ଦଶବର୍ଷ ପରେ ମହମ୍ମଦ ଦେହତ୍ୟାଗ କଲେ । ଆରବରେ ଅବସ୍ଥାକୁ ସମ୍ଭାଳି ରଖିବା ପାଇଁ କିଛିକାଳ ବିତିଗଲା ଏବଂ ତା'ପରେ କ୍ରମାଗତ ଭାବରେ ସେପରି ବହୁତ କିଛି ଆଶ୍ଚର୍ଯ୍ୟକର ଘଟଣାମାନ ଘଟିଲା, ଯାହା ଇସ୍‌ଲାମ୍‌ର ଧ୍ୱଜା ହସ୍ତରେ, ଆରବମାନଙ୍କୁ ପୂର୍ବରେ ମଧ୍ୟ-ଏସିଆ ଓ ସମଗ୍ର ଉତ୍ତର-ଆଫ୍ରିକା ଭିତରଦେଇ ପଶ୍ଚିମରେ ସ୍ପେନ୍ ଓ ଫ୍ରାନସରେ ଉପନୀତ କଲା । ସପ୍ତମ ଶତାବ୍ଦୀରେ ଓ ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭରେ ସେମାନେ ଇରାକ୍, ଇରାନ୍ ଓ ମଧ୍ୟ-ଏସିଆରେ ବ୍ୟାପ୍ତ ହେଲେ । ଖ୍ରୀ· ୭୧୨ରେ ଉତ୍ତର-ପଶ୍ଚିମ ଭାରତର ସିନ୍ଧୁ ପ୍ରଦେଶ ଅଧିକାର କରି ସେମାନେ ସେଠାରେ ଅଟକିଗଲେ । ବସ୍ତୁତ ଏକ ମରୁଭୂମି ଏହି ଅଞ୍ଚଳକୁ ଭାରତର ଅଧିକତର ଉର୍ବର

ଅଞ୍ଚଳଠାରୁ ବିଚ୍ଛିନ୍ନ କରିଥିଲା । ପଶ୍ଚିମରେ ଆଫ୍ରିକା ଓ ୟୁରୋପ ମଧ୍ୟସ୍ଥ ଅପ୍ରଶସ୍ତ ପ୍ରଣାଳୀ (ଜିବ୍ରାଲ୍‌ଟର ପ୍ରଣାଳୀ ନାମରେ କଥିତ) ଅତିକ୍ରମ କରି ଖ୍ରୀ: ୭୧୧ରେ ସ୍ପେନରେ ସେମାନେ ପ୍ରବେଶ କଲେ । ସମଗ୍ର ସ୍ପେନ ଦଖଲ କଲାପରେ ସେମାନେ ପିରେନିସ୍ ପର୍ବତମାଳା ଅତିକ୍ରମ କରି ଫ୍ରାନ୍ସରେ ଅବତରଣ କଲେ । ଖ୍ରୀ: ୭୩୨ରେ ଫ୍ରାନସର ଟୁରସଠାରେ ସେମାନେ ଚାର୍ଲେସ୍ ମାର୍ଟେଲଦ୍ୱାରା ପରାଜିତ ହେଲେ ଏବଂ ସେମାନଙ୍କର ଅଗ୍ରଗତି ବାଧାପ୍ରାପ୍ତ ହେଲା ।

ଗୋଟାଏ ଜାତିର ଏହି ବିଜୟ ଯାତ୍ରା, ଯାହାଙ୍କ ବାସସ୍ଥାନ ଆରବର ମରୁଭୂମି ଅନ୍ତର୍ଗତ ଏବଂ ଯେଉଁମାନେ ସେ ପର୍ଯ୍ୟନ୍ତ ଇତିହାସରେ କୌଣସି ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରି ନଥିଲେ, ବାସ୍ତବିକ ବଡ଼ ଅଦ୍‌ଭୁତ । ଏହି ବିପୁଳ ଶକ୍ତି ସେମାନେ ଲାଭକରିଥିବେ ସେମାନଙ୍କର ପୈଗମ୍ବରଙ୍କ ଗତିଶୀଳ ତଥା ବୈପ୍ଳବିକ ଚରିତ୍ରରୁ ଏବଂ ତାଙ୍କର ମାନବିକ ସୌଭ୍ରାତୃତ୍ୱର ବାଣୀରୁ । ତଥାପି ଏକଥା ମନେକରିବା ଭୁଲ୍ ହେବ ଯେ ଆରବ ସଭ୍ୟତା ଇସଲାମର ଅଭ୍ୟୁଦୟ ପରେ ଅଚାନକ ଯେପରି ଶୂନ୍ୟରୁ ଉପୁଜି ରୂପ ପରିଗ୍ରହ କଲା । ଆରବ ଲୋକଙ୍କ ପ୍ରାକ୍-ଇସ୍‌ଲାମୀୟ ଅତୀତକୁ ଅସ୍ୱୀକାର କରିବା ଓ ସେହି ସମୟକୁ 'ଜହିଲିୟାତ୍' ଅର୍ଥାତ୍ ଅଜ୍ଞତା ଓ କୁସଂସ୍କାରର ଗୋଟାଏ ପ୍ରକାର ଅନ୍ଧକାର ଯୁଗ କହି ଉଲ୍ଲେଖ କରିବାର ପ୍ରବଣତା ଇସଲାମୀ ଆଲିମ୍ ଅର୍ଥାତ୍ ବିଦ୍ୱାନମାନଙ୍କଠାରେ ଦେଖାଯାଉଚି । ଫୋଏନିସିଅନ୍, ଲଟିନ୍, ଯ୍ୟୁଇଡ଼ିଏନ ଓ ହିବ୍ରୁ ଆଦି ସେମିଟିକ୍ ଜାତିର ଉନ୍ନୟନ ସଙ୍ଗେ ଘନିଷ୍ଠଭାବରେ ସମ୍ପର୍କିତ, ଅନ୍ୟ ଯେତେ ଐତିହାସିକ,ଆରବ ସଭ୍ୟତାର ମଧ୍ୟ ଗୋଟାଏ ଦୀର୍ଘ ଅତୀତ ଥିଲା । ଇସ୍ରାଏଲମାନେ ବେଳକୁବେଳ ଅଧିକତର ଅନନ୍ୟ ହୋଇପଡ଼ିଲେ ଓ ଅଧିକତର ରକ୍ଷଣଶୀଳ ଯ୍ୟୁଇଡ଼ିଏନ୍ ତଥା ଅନ୍ୟମାନଙ୍କଠାରୁ ବିଚ୍ଛିନ୍ନ ହୋଇପଡ଼ିଲେ । ଇସ୍ରାଏଲ ଓ ଅନ୍ୟାନ୍ୟ ସେମିଟିକ୍ ଜାତିଙ୍କ ଭିତରେ ସଂଘର୍ଷ ଘଟିଥିଲା । ସେ ଯାହାହେଉ, ସମଗ୍ର ସେମିଟିକ୍ ଭୂଖଣ୍ଡରେ ପରସ୍ପର ଭିତରେ ଯୋଗାଯୋଗ ଓ ନାନାଭାବରେ ଆଦାନ ପ୍ରଦାନ ରହିଥିଲା ଏବଂ କେତେ ପର୍ଯ୍ୟନ୍ତ ଗୋଟାଏ ସାର୍ବଜନୀନ ପୃଷ୍ଠଭୂମି ମଧ୍ୟ ଥିଲା । ପ୍ରାକ୍-ଇସ୍‌ଲାମୀ ଆରବ ସଭ୍ୟତା ଗଢ଼ିଉଠିଲା ବିଶେଷକରି ୟେମେନ୍‌ରେ । ପୈଗମ୍ବରଙ୍କ ସମୟରେ ଆରବ୍ୟ ଭାଷା, ପାରସିକ ଶବ୍ଦ ଏପରିକି କେତେକ ଭାରତୀୟ ଶବ୍ଦ ସମ୍ବଳିତ ଗୋଟାଏ ସମୁନ୍ନତ ଭାଷା ଥିଲା । ଫୋଏନିସିଅନମାନଙ୍କ ଭଳି ଆରବମାନେ ବ୍ୟବସାୟ ବାଣିଜ୍ୟ ସନ୍ଧାନରେ ସମୁଦ୍ରପଥରେ ବହୁ ଦୂର ଦେଶମାନଙ୍କୁ ଯାତ୍ରା କରିଥିଲେ । ପ୍ରାକ୍-ଇସଲାମି ଯୁଗରେ, ଦକ୍ଷିଣ-ଚୀନର କେଣ୍ଟନ୍ ନିକଟରେ ଗୋଟାଏ ଆରବ ଉପନିବେଶ ଥିଲା ।

ତଥାପି, ଏକଥା ସତ୍ୟ ଯେ ପୈଗମ୍ବର ମହମ୍ମଦ ତାଙ୍କ ଲୋକଙ୍କ ଭିତରେ ନବଜୀବନ ସଞ୍ଚାର କରିଥିଲେ ଏବଂ ସେମାନଙ୍କର ପ୍ରାଣରେ ବିଶ୍ୱାସ ଓ ଉତ୍ସାହ ଭରି ପାରିଥିଲେ । ନିଜକୁ ଗୋଟାଏ ନୂତନ ମତବାଦର ଧ୍ୱଜାବାହକ ମନେକରି ସେମାନେ ସେହି ଉଗ୍ର ଉତ୍ସାହ ଓ ଆତ୍ମବିଶ୍ୱାସ ପ୍ରକାଶ କଲେ ଯାହା ସମୟେ ସମୟେ ଗୋଟାଏ ଜାତିକୁ ସାମୂହିକ ଭାବରେ ପ୍ରୋତ୍ସାହିତକରିଥାଏ ଏବଂ ଇତିହାସର ଗତିପଥ ବଦଳେଇବାରେ ସମର୍ଥ ହୁଏ । ଏ କଥା

ନିଃସନ୍ଦେହରେ କୁହାଯାଇପାରେ ଯେ ସେମାନଙ୍କର ସଫଳତାର ଅନ୍ୟତମ କାରଣ ମଧ୍ୟ ହେଉଛି ମଧ୍ୟ-ଏସିଆ ଓ ଉତ୍ତର-ଆଫ୍ରିକା ଅନ୍ତର୍ଗତ ରାଜ୍ୟମାନଙ୍କର କ୍ରମଅବନତି । ବିବାଦମାନ ଖ୍ରୀଷ୍ଟାନ ଗୋଷ୍ଠୀମାନଙ୍କର ପ୍ରଚଣ୍ଡ ସଙ୍ଘର୍ଷ ଏବଂ ପ୍ରଭୁତ୍ୱ ନିମନ୍ତେ ରକ୍ତାକ୍ତ ସଂଗ୍ରାମ ଉତ୍ତର-ଆଫ୍ରିକାକୁ କ୍ଷତବିକ୍ଷତ କରିଥିଲା । ସେହି ସମୟରେ, ସେଠାରେ ଆଚରିତ ଖ୍ରୀଷ୍ଟାନ ଧର୍ମ ବଡ଼ ସଙ୍କୀର୍ଣ୍ଣ ମନୋଭାବାପନ୍ନ ଓ ଅସହିଷ୍ଣୁ ଥିଲା; କିନ୍ତୁ ସେମାନଙ୍କର ମାନବିକ ସୌଭ୍ରାତୃତ୍ୱର ବାର୍ତ୍ତା ଘେନି,ମୁସ୍‌ଲିମ୍ ଆରବମାନେ ଅପେକ୍ଷାକୃତ ସହନଶୀଳ ଓ ଉଦାରମନା ଥିଲେ । ଏହି ପାର୍ଥକ୍ୟ ସ୍ପଷ୍ଟ ଲକ୍ଷ୍ୟକର ହେଉଥିଲା ଏବଂ ଖ୍ରୀଷ୍ଟଧର୍ମଜନିତ ସଂଘର୍ଷରେ କ୍ଲାନ୍ତ ଲୋକେ ବହୁସଂଖ୍ୟାରେ ଆରବମାନଙ୍କ ପ୍ରଦର୍ଶିତ ପନ୍ଥା ଅନୁସରଣ କଲେ ।

ଦୂରଦେଶମାନଙ୍କୁ ଆରବମାନେ ଯେଉଁ ସଂସ୍କୃତି ବହନ କରିନେଲେ ତାହା ସତତ ପରିବର୍ତ୍ତିତ ଓ ସମୁନ୍ନତ ହେଉଥିଲା । ଇସ୍‌ଲାମ୍‌ର ନବନବ ବିଚାର-ଧାରାରେ ତାହା ଯଦିଓ ସମୃଦ୍ଧ ଥିଲା, ତଥାପି ତାହାକୁ ଇସ୍‌ଲାମି ସଭ୍ୟତା କହିବା ଭ୍ରାନ୍ତିକର ଓ ସମ୍ଭବତଃ ଭୁଲ୍ ବି ହେବ । ଦମିସ୍କ (ଦମାସ୍କାସ୍)ରେ ରାଜଧାନୀ ସ୍ଥାପନ କରି ସେମାନେ ଅଳ୍ପକାଳ ମଧ୍ୟରେ ନିଜର ସରଳ ରହଣିସହଣି ତ୍ୟାଗକଲେ ଓ ଅଧିକତର ଜଟିଳ ଓ ରଙ୍ଗବିରଙ୍ଗ ଜୀବନର ଏକ ସଂସ୍କୃତି ଗଠନ କଲେ । ସେହି ଯୁଗକୁ ଅରବ-ସିରିଆ ମିଶ୍ରସଭ୍ୟତାର ଯୁଗ କୁହାଯାଇ ପାରେ । ବିବିଧ ବିଜେଣ୍ଟାଇନ୍ ପ୍ରଭାବ ଅର୍ଥାତ୍ କନ୍‌ଷ୍ଟାନ୍ତିନୋପଲ ସଂପର୍କୀୟ ପ୍ରଭାବ ସେମାନଙ୍କ ଉପରେ ପଡ଼ିଲା; କିନ୍ତୁ ସେମାନେ ଯେତେବେଳେ ବାଗ୍‌ଦାଦକୁ ଘୁଞ୍ଚିଗଲେ ପୁରାତନ ଇରାନର ପରମ୍ପରା ଓ ଐତିହ୍ୟ ସବିଶେଷ ଭାବରେ ସେମାନଙ୍କୁ ପ୍ରଭାବିତ କଲା ଏବଂ ସେମାନେ ସେହି ଆରବ-ପାରସିକ ମିଶ୍ରସଭ୍ୟତାର ବିକାଶ ସାଧନ କଲେ ଯାହା ସେମାନଙ୍କର ଅଧିକୃତ ବିଶାଳ ଭୂଖଣ୍ଡକୁ ଆପ୍ଲୁତ କଲା ।

ଆରବମାନେ ଦୂରଦେଶମାନଙ୍କରେ ଯଦିଓ ବିଜୟ ବୈଜୟନ୍ତୀ ଉଡ଼ାଇଥିଲେ ଓ ଯେପରି ଜଣାଯାଏ ତାହା କରିବା ପାଇଁ ସେମାନଙ୍କୁ ସେତେ କଷ୍ଟ ଉଠାଇବାକୁ ବି ପଡ଼ି-ନଥିଲା, ଭାରତରେ କିନ୍ତୁ ସେତେବେଳେ ଅବା ପରବର୍ତ୍ତୀ କେଉଁ ସମୟରେ ହେଲେ ସେମାନେ ସିନ୍ଧୁ ପ୍ରଦେଶ ଅତିକ୍ରମ କରି ଆଗକୁ ଯାଇପାରି ନଥିଲେ । ଏହାର କାରଣ କ'ଣ ହୋଇପାରେ ଯେ ଆକ୍ରମଣକାରୀକୁ ଫଳପ୍ରଦ ଭାବରେ ପ୍ରତିରୋଧ କରିବାର ଶକ୍ତି ଭାରତରେ ସେତେବେଳେ ବି ଯଥେଷ୍ଟ ପରିମାଣରେ ଥିଲା ? ହୁଏତ ତାହା ହିଁ ସମ୍ଭବ; କାରଣ ପ୍ରକୃତ-ପକ୍ଷେ ଗୋଟାଏ ଅଭିଯାନ ଚଳିବା ପୂର୍ବରୁ ବହୁଶତାବ୍ଦୀ ଯେ ବିତିଗଲା, ଅନ୍ୟଭାବରେ ତାହା ବୁଝାଇବା କଷ୍ଟକର । ଆଂଶିକ ଭାବରେ ଏହା ଆରବମାନଙ୍କ ଆଭ୍ୟନ୍ତରୀଣ ବିବାଦର ପରିଣାମ ହୋଇପାରେ । ଅଚିରେ ସିନ୍ଧୁ ପ୍ରଦେଶ ବାଗ୍‌ଦାଦର କେନ୍ଦ୍ର ପ୍ରଭୁତ୍ୱ କବଳରୁ ନିଜକୁ ମୁକ୍ତକରି ଗୋଟାଏ କ୍ଷୁଦ୍ର ସ୍ୱାଧୀନ ମୁସ୍‌ଲିମ୍ ରାଜ୍ୟରେ ପରିଣତ ହେଲା । ଆରବମାନଙ୍କ ପକ୍ଷରୁ କୌଣସି ଯୁଦ୍ଧାଭିଯାନ ଘଟି ନଥିଲେ ମଧ୍ୟ ଭାରତ ଓ ଆରବ-ଦୁନିଆଁ ମଧ୍ୟରେ ସମ୍ପର୍କ ବର୍ଦ୍ଧିତ ହେଲା । ପର୍ଯ୍ୟଟକ ଗମନାଗମନ ଆରମ୍ଭ ହେଲା; ଦୂତ-ସଂସ୍ଥା ବିନିମିତ ହେଲା ବିବିଧ ଭାରତୀୟ ଗ୍ରନ୍ଥ ବିଶେଷତଃ ଗଣିତ ତଥା ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ବହୁଗ୍ରନ୍ଥ

ବାଗ୍‌ଦାଦକୁ ନୀତ ହେଲା ଏବଂ ଆରବ ଭାଷାରେ ଅନୂଦିତ ହେଲା । ବହୁ ଭାରତୀୟ ଚିକିତ୍ସକ ବାଗ୍‌ଦାଦ ଯାତ୍ରାକଲେ । ଏହିସବୁ ବାଣିଜ୍ୟ ଓ ସାଂସ୍କୃତିକ ସମ୍ପର୍କ ଉତ୍ତର-ଭାରତ ଭିତରେ ଆବଦ୍ଧ ନଥିଲା । ଭାରତର ଦକ୍ଷିଣଖଣ୍ଡର ରାଜ୍ୟମାନେ ମଧ୍ୟ ବିଶେଷତଃ ଭାରତର ପଶ୍ଚିମୋ-କୂଳବାସୀ ରାଷ୍ଟ୍ରକୂଟମାନେ ବାଣିଜ୍ୟଉଦ୍ଦେଶ୍ୟରେ ଏଥିରେ ଅଂଶ ଗ୍ରହଣ କରିଥିଲେ ।

ପୌନଃପୌନିକ ଏହି ସମ୍ପର୍କ ଫଳରେ ଭାରତୀୟମାନେ ନୂତନ ଧର୍ମ ଇସ୍‌ଲାମ୍‌ ସମ୍ବନ୍ଧରେ ଅଜ୍ଞାତ ରହିପାରି ନଥାନ୍ତେ । ଏହି ନୂତନ ଧର୍ମ ପ୍ରଚାର ନିମନ୍ତେ ପ୍ରଚାରକମାନେ ମଧ୍ୟ ଭାରତକୁ ଆସିଲେ ଓ ସମାଦର ଲାଭକଲେ । ମସଜିଦ୍‌ମାନ ନିର୍ମିତ ହେଲା । ଶାସନ ପକ୍ଷରୁ ହେଉ କିମ୍ବା ଲୋକଙ୍କ ପକ୍ଷରୁ ହେଉ, ଏଥିପ୍ରତି ଆପତ୍ତି ଉଠିନଥିଲା କିମ୍ବା କୌଣସି ସାମ୍ପ୍ରଦାୟିକ ସଙ୍ଘର୍ଷ ଘଟିନଥିଲା । ସବୁପ୍ରକାର ମତବିଶ୍ୱାସ ଓ ଧର୍ମାଚରଣ ପ୍ରତି ସହିଷ୍ଣୁତା ପ୍ରକାଶ କରିବା ଥିଲା ଭାରତର ପ୍ରାଚୀନ ପରମ୍ପରା । ଏପରିଭାବରେ, ଗୋଟାଏ ରାଜନୈତିକ ଶକ୍ତି ହିସାବରେ ଆସିବାର ବହୁ ଶତାବ୍ଦୀ ପୂର୍ବରୁ ଧର୍ମ ରୂପରେ ଇସ୍‌ଲାମ୍ ଭାରତକୁ ଆସିଥିଲା ।

ଉମେୟିଆ ଖଲିଫାମାନଙ୍କ ନୂତନ ଆରବ ସାମ୍ରାଜ୍ୟର ରାଜଧାନୀ ଦମାସ୍କାସ ଗୋଟାଏ ଐଶ୍ୱର୍ଯ୍ୟପୂର୍ଣ୍ଣ ନଗରୀ ଭାବରେ ଗଢ଼ିଉଠିଲା, କିନ୍ତୁ ଅଳ୍ପକାଳ ମଧ୍ୟରେ ଖ୍ରୀ: ୭୫୦ ବେଳକୁ ଅବ୍‌ବାସୀୟ ଖଲିଫାମାନେ ରାଜଧାନୀ ବାଗ୍‌ଦାଦକୁ ସ୍ଥାନାନ୍ତରିତ କଲେ । ଆଭ୍ୟନ୍ତରୀଣ ସଙ୍ଘର୍ଷ ଲାଗିଲା ଓ କେନ୍ଦ୍ର ପ୍ରଭୁତ୍ୱରୁ ସ୍ପେନ୍ ମୁକ୍ତ ହେଲା ସିନା, ଗୋଟାଏ ସ୍ୱାଧୀନ ଆରବ ରାଜ ଭାବରେ ଦୀର୍ଘକାଳ ତିଷ୍ଠି ରହିଲା । କ୍ରମଶଃ ବାଗ୍‌ଦାଦ ସାମ୍ରାଜ୍ୟ ମଧ୍ୟ ଦୁର୍ବଳ ହୋଇପଡ଼ିଲା ଓ ବହୁ ସ୍ୱାଧୀନ ରାଜ୍ୟରେ ପର୍ଯ୍ୟବସିତ ହେଲା । ସେଲଜୁକ୍ ତୁର୍କୀମାନେ ମଧ୍ୟ-ଏସିଆରୁ ଆସି ବାଗ୍‌ଦାଦରେ ସର୍ବଶକ୍ତିମାନ ହୋଇ ଉଠିଲେ । ନାମକୁ କେବଳ, ସେମାନଙ୍କ ମର୍ଜି ଉପରେ, ଖଲିଫା ମୁଖ୍ୟ ହୋଇ ରହିଥିଲେ । ଗଜନୀର ସୁଲତାନ ମହମ୍ମଦ, ଯୋଦ୍ଧା ଓ ସେନାପତି ଭାବରେ ଅଦ୍ୱିତୀୟ, ଆଫଗାନିସ୍ଥାନରେ ପ୍ରତାପଶାଳୀ ହୋଇ ଉଠିଲେ ଏବଂ ଖଲିଫାଙ୍କୁ ଅବଜ୍ଞା, ନାନା ଭାବରେ ବିଦ୍ରୂପ ଓ ହଇରାଣ କରିବାକୁ ଲାଗିଲେ । ତଥାପି ଇସଲାମି ଦୁନିଆର ସାଂସ୍କୃତିକ କେନ୍ଦ୍ରଭାବରେ ବାଗ୍‌ଦାଦର ମହତ୍ତ୍ୱ ଅକ୍ଷୁଣ୍ଣ ରହିଥିଲା ଏବଂ ଏପରିକି ଦୂରବର୍ତ୍ତୀ ସ୍ପେନ୍ ମଧ୍ୟ ପ୍ରେରଣା ନିମନ୍ତେ ବାଗ୍‌ଦାଦ ଆଡ଼କୁ ଚାହୁଁଥିଲା । ବିଦ୍ୟାରେ କଳା ଓ ବିଜ୍ଞାନରେ, ଜୀବନରେ ସୁଖ-ସ୍ୱାଚ୍ଛନ୍ଦ୍ୟ ଦିଗରୁ ୟୁରୋପ ସେତେବେଳକୁ ବହୁତ ପଛରେ ପଡ଼ିଥିଲା । ଆରବଶାସିତ ସ୍ପେନ ଓ ବିଶେଷକରି କୋରଦୋବା ବିଶ୍ୱ-ବିଦ୍ୟାଳୟ କେବଳ ୟୁରୋପର ସେହି ଅନ୍ଧକାର- ଯୁଗରେ ଜ୍ଞାନ, ଓ ବୌଦ୍ଧିକ କୌତୂହଳର ପ୍ରଦୀପ ଜାଳିରଖିଥିଲା ଏବଂ ଏହି ଆଲୋକର କିଛିଅଂଶ ୟୁରୋପୀୟ ଅନ୍ଧକାର ଭେଦ କରିପାରିଲା ।

ମୁସଲମାନମାନଙ୍କ ବିରୁଦ୍ଧରେ ଖ୍ରୀଷ୍ଟିୟାନ୍‌ମାନଙ୍କ କ୍ରୁସେଡ୍ ବା ଧର୍ମଯୁଦ୍ଧ ଖ୍ରୀ: ୧୦୯୫ରେ ଆରମ୍ଭ ହୋଇ ଦେଢ଼ଶହ ବର୍ଷରୁ ଅଧିକ କାଳ ଚାଲିଲା । ଏହି ଦୀର୍ଘକାଳବ୍ୟାପୀ ସଂଗ୍ରାମ ଦୁଇଟି ଆକ୍ରମଣଶୀଳ ଧର୍ମର ସଙ୍ଘର୍ଷ 'କ୍ରୁଶ' ଓ 'ହିଲାଲ'ର ସଙ୍ଘାତ କେବଳ ନଥିଲା । ବିଖ୍ୟାତ ଐତିହାସିକ, ଅଧ୍ୟାପକ ଜି. ଏମ. ଟ୍ରେଭେଲିଆନ କହନ୍ତି, "ପୁନରୁଜ୍ଜୀବିତ ୟୁରୋପ

ପକ୍ଷରେ ଏହି ଧର୍ମ-ଯୁଦ୍ଧ ଥିଲା ପ୍ରାଚ୍ୟ ଭୂଖଣ୍ଡରେ ଉପନୀତ ହେବା ପାଇଁ ଏକ ସଚରାଚର ପ୍ରେରଣାର ସାମରିକ ଓ ଧାର୍ମିକ ବାହାନା ମାତ୍ର । କ୍ରୁସେଡରୁ ୟୁରୋପ ଯେଉଁ ପୁରସ୍କାର ଧରି ଫେରିଲା ତାହା ଖ୍ରୀଷ୍ଟାନ ଧର୍ମର ପ୍ରଣେତା ଯିଶୁଙ୍କ ପବିତ୍ର ସମାଧି ଭବନର ଉଦ୍ଧରଣ କିମ୍ବା ଖ୍ରୀଷ୍ଟାନ ଜଗତର ସମ୍ଭାବ୍ୟ ଏକତା ନୁହେଁ । ଏହି ଧର୍ମଯୁଦ୍ଧର ବୃତ୍ତାନ୍ତ ହିଁ ତାହା ଅସ୍ୱୀକାର କରେ । ପ୍ରକୃତରେ କହିବାକୁ ଗଲେ ୟୁରୋପ ଆଣିଲା ବିବିଧ ଲଳିତକଳା ଓ ହସ୍ତଶିଳ୍ପ, ବିଳାସ ସାଧନା, ବିଜ୍ଞାନ ଓ ବୌଦ୍ଧିକ କୌତୂହଳ—ସବୁ କିଛି ଯାହା ପିତର ଦୃଢ଼ ଅନ୍ତଃକରଣରେ ଘୃଣା କରିଥାନ୍ତେ ।”

ଏହି ଧର୍ମ-ଯୁଦ୍ଧର ଅନ୍ତିମ ଅଭିଯାନ ଅଗୌରବରେ ମିଳାଇଯିବା ପୂର୍ବରୁ ଏସିଆର ମଧ୍ୟଭାଗରେ ତୋଫାନ ଅବା ଖଣ୍ଡପ୍ରଳୟ ଭଳି କିଛି ଘଟି ସାରିଥିଲା । ଚେଙ୍ଗିଜ୍‌ଖାଁ ପଶ୍ଚିମ ଦିଗକୁ ତାଙ୍କର ଉତ୍ପାତକ ଅଭିଯାନ ଆରମ୍ଭ କରିସାରିଥିଲେ । ଖ୍ରୀଃ ୧୧୫୫ରେ ମଙ୍ଗୋଲିଆରେ ତାଙ୍କର ଜନ୍ମ । ତାଙ୍କର ଏହି ମହାନ୍ ଅଭିଯାନ ଖ୍ରୀଃ ୧୨୧୯ରେ ସମଗ୍ର ମଧ୍ୟ-ଏସିଆକୁ ଅଗ୍ନି-ଉଚ୍ଛିଷ୍ଟରେ ପରିଣତ କଲା । ସେତେବେଳେ ସେ ଅଳ୍ପବୟସ୍କ ନଥିଲେ । ବୋଖାରା, ସମରକନ୍ଦ, ହିରାଟ, ବଲ୍‌ଖ ଓ ସମସ୍ତ ମହାନ୍ ନଗରୀ ଯେଉଁଠି ପ୍ରତ୍ୟେକରେ ଦଶ ଲକ୍ଷରୁ ଅଧିକ ଲୋକ ବାସ କରୁଥିଲେ, ଭସ୍ମସ୍ତୂପରେ ପରିଣତ ହେଲା । ଚେଙ୍ଗିଜ୍ ରୁଷିଆର କିଏଭ୍ ପର୍ଯ୍ୟନ୍ତ ଯାଇ ପ୍ରତ୍ୟାବର୍ତ୍ତନ କରିଥିଲେ । ତାଙ୍କର ଆଗ୍ନେୟ ସାମ୍ରାଜ୍ୟରୁ ବାଗ୍‌ଦାଦ କୌଣସିମତେ ବର୍ତ୍ତିପାରିଲା; କାରଣ ତାହା ତାଙ୍କର ଗତିପଥରେ ଅବସ୍ଥିତ ନଥିଲା । ଖ୍ରୀଃ ୧୨୨୭ରେ ବାସ୍ତରି ବର୍ଷ ବୟସରେ ସେ ମୃତ୍ୟୁ ଲଭିଲେ । ତାଙ୍କର ଉତ୍ତରାଧିକାରୀମାନେ ୟୁରୋପର ଆହୁରି ଭିତରକୁ ପ୍ରବେଶ କଲେ ଏବଂ ଖ୍ରୀଃ ୧୨୫୮ ରେ ହୁଲାଗୁ ବାଗ୍‌ଦାଦ ଅଧିକାର କରି କଳା ଓ ବିଦ୍‌ବତ୍ତାର ସେହି ବିଖ୍ୟାତ କେନ୍ଦ୍ରକୁ,ଯେଉଁଠି ପାଞ୍ଚ ଶହ ବର୍ଷ ଧରି ପୃଥିବୀର ସବୁ ପ୍ରାନ୍ତରୁ ସମ୍ପଦ ଆଣି ଠୁଳ କରାଯାଇଥିଲା, ବିଧ୍ୱସ୍ତ କଲେ । ବାଗ୍‌ଦାଦ ଛାଡ଼ି ଦଳଦଳ ବିଦ୍ୱାନ୍ ସେମାନଙ୍କର କେତେ ଅମୂଲ୍ୟ ଗ୍ରନ୍ଥ ସଙ୍ଗେ ଘେନି କାଏରୋ ଓ ସ୍ପେନ୍‌କୁ ପଳାୟନ କଲେ । ଏମାନଙ୍କର ଉପସ୍ଥିତି ଫଳରେ କାଏରୋ ଓ ସ୍ପେନ୍‌ରେ କଳା ଓ ବିଦ୍‌ବତ୍ତାର ନବଜାଗରଣ ସୃଷ୍ଟି ହେଲା; କିନ୍ତୁ ଇତ୍ୟବସରରେ ସ୍ପେନ ଆରବ କବଳରୁ ଖସି ଯାଉଥିଲା ଏବଂ ଖ୍ରୀଃ ୧୨୩୬ ରେ କୋର୍‌ଦୋବାର ପତନ ଘଟି-ସାରିଥିଲା । ଆଉ ୨୫୦ ବର୍ଷ ପର୍ଯ୍ୟନ୍ତ ଗ୍ରନଡ଼ା ରାଜ୍ୟ ଆରବ ସଂସ୍କୃତିର ଗୋଟାଏ ଉଜ୍ଜ୍ୱଳ କେନ୍ଦ୍ର ଭାବରେ ଉଦ୍‌ଭାସିତ ରହିଲା । ଖ୍ରୀଃ ୧୪୯୨ ରେ ଗ୍ରନଡା ପଡ଼ିଲା ଫେରଡ଼ିନାଣ୍ଡ୍ ଓ ଇସାବେଲ୍ଲାଙ୍କ ହାତରେ ଏବଂ ସ୍ପେନ୍‌ରେ ଆରବ ଆଧିପତ୍ୟ ଲୋପ ହେଲା । ତଦନନ୍ତର, ତୁର୍କୀମାନେ ପ୍ରଭୁତ୍ୱକୁ ଆସିଥିଲେ ସୁଦ୍ଧା, କାଏରୋ ମୁଖ୍ୟ ଆରବ-କେନ୍ଦ୍ର ହେଲା । ଓଟୋମନ୍ ତୁର୍କୀମାନେ ଖ୍ରୀଃ ୧୪୫୩ ରେ କୁସ୍ତୁନ୍ତୁନିଆ (କାନ୍‌ଷ୍ଟାନ୍ଟିନୋପଲ୍) କବଳିତ କଲେ ଏବଂ ଏପରିଭାବରେ ସେଠାରୁ ଶକ୍ତି ମୁକ୍ତ କଲେ ଯାହା ପରବର୍ତ୍ତୀ ସମୟରେ ୟୁରୋପୀୟ ରାନେସାଁ ବା ନବଜାଗରଣକୁ ଜନ୍ମ ଦେଲା ।

ଏସିଆ ଓ ୟୁରୋପରେ ମଙ୍ଗୋଲମାନଙ୍କ ବିଜୟ ଯୁଦ୍ଧକଳାରେ ଗୋଟାଏ ନୂତନତା

ପ୍ରକଟ କଲା । ଲିଡ଼େଲ୍ ହାର୍ଟ କହନ୍ତି "ପରିମାଣ ଓ ପ୍ରକାରରେ, ଅତର୍କିତ ଆକ୍ରମଣ ଓ ଚଳନ୍ତିଶୀଳତାରେ, ବ୍ୟୂହ ରଚନା ଓ ଅପରୋକ୍ଷ ଆକ୍ରମଣ କୌଶଳରେ ସେମାନଙ୍କର ଏ ସବୁ ଅଭିଯାନ ଇତିହାସରେ ଅତୁଳନୀୟ ।" ପୃଥିବୀପୃଷ୍ଠରେ ଆବିର୍ଭୂତ ସାମରିକ ନେତାମାନଙ୍କ ଭିତରେ ଚେଙ୍ଗିଜ୍ ଖାଁ ସର୍ବଶ୍ରେଷ୍ଠ ନ ହେଲେ ମଧ୍ୟ ନିଃସନ୍ଦେହରେ ଅନ୍ୟତମ ଶ୍ରେଷ୍ଠ ନାୟକ । ଏସିଆ ଓ ୟୁରୋପର ଶୌର୍ଯ୍ୟ ତାଙ୍କର ଓ ତାଙ୍କର ପ୍ରତିଭାବାନ୍ ଉତ୍ତରାଧିକାରୀଙ୍କ ନିକଟରେ ଅତି ତୁଚ୍ଛ ଥିଲା ଏବଂ ସଂଯୋଗବଶରୁ କେବଳ ମଧ୍ୟ ଓ ପଶ୍ଚିମ-ୟୁରୋପ ମଙ୍ଗୋଲ ବିଜୟରୁ ବର୍ତ୍ତି ପାରିଲା । ମଙ୍ଗୋଲମାନଙ୍କଠାରୁ ୟୁରୋପ ଯୁଦ୍ଧକଳା ଓ ବ୍ୟୂହ ରଚନା କୌଶଳ ଶିକ୍ଷା କଲା ଏବଂ ସେମାନଙ୍କ ଜରିଆରେ ଚୀନରୁ ବାରୁଦ ବ୍ୟବହାର ମଧ୍ୟ ୟୁରୋପକୁ ଆସିଥିଲା ।

ମଙ୍ଗୋଲମାନେ ଭାରତକୁ ଆସିନାହାନ୍ତି । ସିନ୍ଧୁନଦୀ ନିକଟରେ ସେମାନେ ଅଟକିଗଲେ ଏବଂ ଅନ୍ୟତ୍ର ସେମାନଙ୍କର ବିଜୟଯାତ୍ରା ଚଳାଇଥିଲେ । ସେମାନଙ୍କର ବିଶାଳ ସାମ୍ରାଜ୍ୟ ଗୁଡ଼ିକ ଯେବେ ଭାଙ୍ଗି ପଡ଼ିଲା, ଏସିଆରେ ବହୁ କ୍ଷୁଦ୍ର ରାଜ୍ୟ ମୁଣ୍ଡ ଟେକି ଉଠିଲେ ଏବଂ ତା'ପରେ ଖ୍ରୀ: ୧୩୬୯ ରେ ତିମୁର ବା ତୈମୁର୍ ନାମକ ଜଣେ ତୁର୍କୀ, ନିଜର ମାତାଙ୍କ ଦିଗରୁ ଚେଙ୍ଗିଜ୍ ଖାଁଙ୍କ ଉତ୍ତର ପୁରୁଷ ବୋଲି ଦାବି କରି, ଚେଙ୍ଗିଜ୍‌ଙ୍କ କାର୍ଯ୍ୟକଳାପର ପୁନରାବୃତ୍ତି କରିବା ଉଦ୍ୟମ କରିଥିଲେ । ସ୍ୱଳ୍ପକାଳ ନିମନ୍ତେ ହେଲେ ସୁଦ୍ଧା ତାଙ୍କର ରାଜଧାନୀ ସମରକନ୍ଦ ପୁନର୍ବାର ସାମ୍ରାଜ୍ୟର କେନ୍ଦ୍ର ହେଲା । ତିମୁରଙ୍କ ମୃତ୍ୟୁ ପରେ, ତାଙ୍କର ଉତ୍ତରାଧିକାରୀମାନେ ସାମରିକ ବିଜୟ ଅପେକ୍ଷା ଶାନ୍ତିପୂର୍ଣ୍ଣ ଜୀବନ ଓ କଳାଚର୍ଚ୍ଚା ପ୍ରତି ବିଶେଷ ଆଗ୍ରହୀ ଥିଲେ । ମଧ୍ୟ-ଏସିଆରେ, ଯେପରି କହନ୍ତି, ଗୋଟାଏ 'ତିମୋରି' ପୁନଃ-ଜାଗରଣ ଦେଖାଦେଲା ଏବଂ ଏହି ପରିବେଷ୍ଟନୀରେ ତିମୁରଙ୍କ ଜଣେ ବଂଶଧର ବାବର ଜନ୍ମଗ୍ରହଣ କଲେ ଓ ପରିପାଳିତ ହେଲେ । ଭାରତରେ ମୋଗଲ ବଂଶର ପ୍ରତିଷ୍ଠାତା ଏହି ବାବର । ଭାରତର ପ୍ରସିଦ୍ଧ ମୋଗଲ ଶାସକମାନଙ୍କ ଭିତରେ ସେ ସର୍ବପ୍ରଥମ । ଖ୍ରୀ: ୧୫୨୬ ରେ ସେ ଦିଲ୍ଲୀ ଅଧିକାର କଲେ ।

ତାଙ୍କର ନାମ ଯୋଗୁଁ ଅନେକେ ଯଦିଓ ମନେ କରିଥାନ୍ତି, ଚେଙ୍ଗିଜ୍ ଖାଁ ମୁସଲମାନ ନଥିଲେ । ଅବଶ୍ୟ ଏହି ନାମ ବର୍ତ୍ତମାନ ମୁସ୍‌ଲିମ୍ ନାମକରଣର ପରିସରଭୁକ୍ତ । ଗୋଟାଏ ପ୍ରକାର ଆକାଶ-ଧର୍ମ 'ସାମାଇ ଧର୍ମ'ର ସେ ଅନୁଗାମୀ ଥିଲେ । ଏହା କି ପ୍ରକାର ଧର୍ମ ମୁଁ ଜାଣିନି; କିନ୍ତୁ ଏହି ଶବ୍ଦ, ଅନିବାର୍ଯ୍ୟ ଭାବରେ, 'ବୌଦ୍ଧ' ଶବ୍ଦର ଆରବ୍ୟ ପ୍ରତିଶବ୍ଦ 'ଶାମାନି' ସ୍ମରଣ କରାଏ । 'ଶାମାନି' ସଂସ୍କୃତ 'ଶ୍ରାମଣ' ଶବ୍ଦରୁ ଉତ୍ପନ୍ନ । ସେହି ସମୟରେ ମଙ୍ଗୋଲିଆ ସମେତ ଏସିଆର ବହୁ ଅଂଶରେ ବୌଦ୍ଧଧର୍ମର ନାନା ବିକୃତ ରୂପ ପ୍ରଚଳିତ ଥିଲା ଏବଂ ଖୁବ୍ ସମ୍ଭବ ସେ ସବୁର ପ୍ରଭାବରେ ଚେଙ୍ଗିଜ୍ ବଢ଼ିଥିଲେ । ଇତିହାସର ସର୍ବଶ୍ରେଷ୍ଠ ସାମରିକ ବିଜେତା, ଯେ କେଉଁ ଧରଣର ହେଉ, ଜଣେ ବୌଦ୍ଧ ଥିଲେ ବୋଲି ଭାବିଲେ ଅଦ୍ଭୁତ ଲାଗେ । (୧)

(୧) ସୁମେରୁ ଅନ୍ତର୍ଗତ ସାଇବେରିଆ, ମଙ୍ଗୋଲିଆ ଏବଂ ସୋଭିଏତ୍ ମଧ୍ୟ-ଏସିଆର

ମଧ୍ୟ-ଏସିଆର ଜନଶ୍ରୁତିରେ ଆଜି ବି ଚାରିଜଣ ମହାନ ବିଜେତାଙ୍କ ସ୍ମୃତି ଅକ୍ଷୁଣ୍ଣ ରହିଛି । ଏମାନେ ହେଉଛନ୍ତି ସିକନ୍ଦର, ସୁଲତାନ ମହମ୍ମଦ, ଚେଙ୍ଗିଜ୍ ଖାଁ ଓ ତିମୁର । ଏହି ଚାରିଜଣଙ୍କ ସଙ୍ଗେ ଆଉ ଜଣକର ନାମ ମଧ୍ୟ ବର୍ତ୍ତମାନ ଯୋଗ କରିବା ଅନିବାର୍ଯ୍ୟ । ସେ ଭିନ୍ନ ଧରଣର ବ୍ୟକ୍ତି, ସାମରିକ ଯୋଦ୍ଧା ସେ ନୁହନ୍ତି; କିନ୍ତୁ ଅନ୍ୟ ଢଙ୍ଗରେ ତାଙ୍କର ବିଜୟ ବିଶ୍ୱରେ ଆଲୋଡ଼ନ ସୃଷ୍ଟି କରିଛି । ତାଙ୍କ ନାମକୁ କେନ୍ଦ୍ର କରି ନାନା କିଂବଦନ୍ତୀ ଗଢ଼ି-ଉଠିଲଣି । ସେ ହେଉଛନ୍ତି ଲେନିନ୍ ।

## ୨. ଆରବ୍ୟ ସଂସ୍କୃତିର ସର୍ବାଙ୍ଗୀନ ବିକାଶ ଓ ଭାରତ ସଙ୍ଗେ ସମ୍ପର୍କ

ଏସିଆ ଓ ଆଫ୍ରିକାର ବହୁଭାଗ ଏବଂ ୟୁରୋପର କିୟଦଂଶ କ୍ଷିପ୍ରଗତିରେ ବିଜୟ କରି, ଅନ୍ୟାନ୍ୟ କ୍ଷେତ୍ରରେ ବିଜୟ ହାସଲ କ୍ରମରେ ଆରବମାନେ ମନୋନିବେଶ କଲେ । ସେମାନଙ୍କର ସାମ୍ରାଜ୍ୟ ସୁଦୃଢ଼ ହେଉଥିଲା । ବହୁ ନୂତନ ଦେଶ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇସାରିଥିଲା ଏବଂ ଏହି ବିଶ୍ୱ ଓ ତାର ଗତିବିଧିର ରହସ୍ୟ ଜାଣିବାପାଇଁ ସେମାନେ ଆତୁର ହୋଇ ଉଠିଥିଲେ । ଅଷ୍ଟମ ଓ ନବମ ଶତାବ୍ଦୀର ଆରବମାନଙ୍କ ଭିତରେ ବୌଦ୍ଧିକ ଜିଜ୍ଞାସା, ଯୁକ୍ତିବାଦୀ ଦୂରକଳ୍ପନା ବା ଚିନ୍ତନ ଓ ବୈଜ୍ଞାନିକ ଅନୁସନ୍ଧିତ୍ସା ବିଲକ୍ଷଣ ଭାବରେ ଦେଖିବାକୁ ମିଳେ । ସାଧାରଣତଃ, କୌଣସି ଧର୍ମର ପ୍ରାଥମିକ ଅବସ୍ଥାରେ, ଧରାବନ୍ଧା ସିଦ୍ଧାନ୍ତ ଓ ବିଶ୍ୱାସ ଯୋଗୁଁ ଯତ୍‌ସାମାନ୍ୟ ବିଚ୍ୟୁତି ସୁଦ୍ଧା ସମର୍ଥିତ ଅବା ପ୍ରୋତ୍ସାହିତ ହୋଇନଥାଏ । ସେହି ଅବିଚଳ ବିଶ୍ୱାସ ଆରବମାନଙ୍କୁ ବହୁଦୂର ପର୍ଯ୍ୟନ୍ତ ଟାଣିନେଇଥିଲା ଏବଂ ସେମାନଙ୍କର ବିପୁଳ ବିଜୟ ନିଶ୍ଚିତ ଭାବରେ ଏହି ଧର୍ମବିଶ୍ୱାସକୁ ଗଭୀର ଓ ଅଖଣ୍ଡ କରିଥିବ । ତଥାପି, ଆମେ ଦେଖିବାକୁ ପାଉ, ସେମାନେ ଧର୍ମାଚରଣର ଗଣ୍ଡି ଅତିକ୍ରମ କରି ଜଡ଼ବାଦ ସମ୍ପର୍କରେ ମଧ୍ୟ ବିଚାର-ଆଲୋଚନା କରିଚନ୍ତି ଓ ବହୁ ମାନସିକ ଦୁଃସାହସିକତାରେ ସେମାନଙ୍କର ଆବେଗମୟ ଆଗ୍ରହ ଓ ତେଜ ନିୟୋଜିତ କରିଚନ୍ତି । ପର୍ଯ୍ୟଟକମାନଙ୍କ ଭିତରେ ଶ୍ରେଷ୍ଠତମ,

---

ଛାନ୍ଦା-ରୁବାରେ ଗୋଟାଏ ପ୍ରକାର ଶାମାନି ମତ ବା ଶାମାଇ ମତ ଏବେ ବି ପ୍ରଚଳିତ ଅଛି । ଯେପରି ଜଣାଯାଏ, ଏକପ୍ରକାର ପ୍ରେତ-ତତ୍ତ୍ୱ ଉପରେ ଏହା ପ୍ରତିଷ୍ଠିତ ଏବଂ ବୌଦ୍ଧଧର୍ମ ସଙ୍ଗେ ଏହାର କୌଣସି ସମ୍ପର୍କ ନାହିଁ । କିନ୍ତୁ ଦୂର ଅତୀତରେ ବୌଦ୍ଧଧର୍ମର ନାନା ବିକୃତ ପନ୍ଥା ଦ୍ୱାରା ଏହା ହୁଏତ ପ୍ରଭାବିତ ହୋଇଥିବ । କାଳକ୍ରମେ ସେହି ସବୁ ପନ୍ଥା ନାନାବିଧ ସ୍ଥାନୀୟ କୁସଂସ୍କାରରେ ଲୀନ ହୋଇଛି । ମୂଳରୁ ବୌଦ୍ଧ, ତିବ୍ବତ ତା'ର ନିଜସ୍ୱ ଏକ ପଦ୍ଧତିର ବୌଦ୍ଧଧର୍ମ ବିକାଶ କଲା । ତାହା ହେଉଛି ଲାମା ମତ । ଶାମାନି ମତର ଅନୁଗାମୀ ହେଲେ ସୁଦ୍ଧା ମଙ୍ଗୋଲିଆରେ ବୌଦ୍ଧ ପରମ୍ପରା ଜୀବିତ ଅଛି । ଏପରି ଭାବରେ, ଉତ୍ତର ଓ ମଧ୍ୟ-ଏସିଆରେ ନାନା ରୂପରେ ପ୍ରଚଳିତ ବୌଦ୍ଧଧର୍ମ କ୍ରମଶଃ ନାନାବିଧ ଆଦିମ ବିଶ୍ୱାସ ଓ ଅଭ୍ୟାସରେ ବିଲୀନ ହେଉଛି ।

ଆରବ ପର୍ଯ୍ୟଟକମାନେ ଦୂର ଦେଶମାନଙ୍କୁ ଯାତ୍ରା କରି ଅନ୍ୟମାନଙ୍କ ଚିନ୍ତା ଓ କାର୍ଯ୍ୟ-କଳାପ ସମ୍ପର୍କରେ ଜ୍ଞାତ ହେବାର ଉତ୍ସୁକତା ପ୍ରକାଶ କରିଚନ୍ତି। ନିଜର ବିସ୍ତୃତ ଓ ଭାବୁକତାର ବିକାଶ ନିମନ୍ତେ ଅନ୍ୟାନ୍ୟ ଦେଶର ଦର୍ଶନ ଓ ବିଜ୍ଞାନ ଏବଂ ଜୀବନଯାପନର ପ୍ରଣାଳୀର ଅଧ୍ୟୟନ ଓ ହୃଦୟଙ୍ଗମ କରିଚନ୍ତି। ବିଭିନ୍ନଦେଶମାନଙ୍କରୁ ବିଦ୍ୱାନ ଆସି ପହଞ୍ଚିଲେ ଏବଂ ନାନାବିଧ ଗ୍ରନ୍ଥ ବାଗ୍‌ଦାଦରେ ଆଣି ଠୁଳ କରାଗଲା। ଆଲ୍‌ମନ୍‌ସୁର୍ ଖଲିଫା (ଅଷ୍ଟମ ଶତାବ୍ଦୀ ମଧ୍ୟଭାଗରେ) ଗବେଷଣା ଓ ଅନୁବାଦ ନିମନ୍ତେ ଏକ ସଂସ୍ଥା ପ୍ରତିଷ୍ଠା କଲେ ଯାହା ଜରିଆରେ ଗ୍ରୀକ୍, ସିରିଆନ୍, ଜେନ୍ଦ୍, ଲାଟିନ୍ ଓ ସଂସ୍କୃତର ଉପାଦେୟ ଗ୍ରନ୍ଥମାନ ଅନୂଦିତ ହେଲା। ସିରିଆ, ଏସିଆ ମାଇନର ଓ ଲେବାନ୍ତର ପୁରାତନ ବିଦ୍ୟାଳୟଗୁଡ଼ିକ ମୂଲ୍ୟବାନ୍ ପାଣ୍ଡୁଲିପି ନିମନ୍ତେ ତନ୍ନତନ୍ନ କରି ଖୋଜାଗଲା। ପୁରାତନ ଆଲେକ୍‌ଜାଣ୍ଡ୍ରିଆର ପାଠଶାଳାଗୁଡ଼ିକ ଖ୍ରୀଷ୍ଟିଆନ୍ ବିଶପ୍‌ମାନେ ବନ୍ଦକରି ଦେଇଥିଲେ ଏବଂ ସେ ସବୁର ପଣ୍ଡିତ ଓ ଶିକ୍ଷକମାନେ ତଡ଼ା ଖାଇଥିଲେ। ଏହି ନିର୍ବାସିତମାନଙ୍କ ଭିତରୁ ଅନେକେ ପାରସ୍ୟ ଓ ଅନ୍ୟାନ୍ୟ ସ୍ଥାନରେ ଆଶ୍ରୟ ଖୋଜିଥିଲେ। ସେମାନେ ବର୍ତ୍ତମାନ ବାଗ୍‌ଦାଦ୍‌ରେ ସମାଦର ଓ ନିରାପତ୍ତା ଲାଭକଲେ ଏବଂ ସାଙ୍ଗରେ ଆଣିଲେ ପ୍ଲେଟୋ, ଏରିଷ୍ଟୋଟଲ୍, ଟୋଲେମି ଓ ଇଉକ୍ଲିଡ଼ଙ୍କ ଗ୍ରୀକ୍‌ଦର୍ଶନ, ବିଜ୍ଞାନ ଓ ଗଣିତ। ସେହି ସମୟର ବାଗ୍‌ଦାଦ୍‌ରେ ନେଷ୍ଟୋରିଅନ୍ ଓ ଇହୁଦୀ ବିଦ୍ୱାନ୍‌ମାନେ ଏବଂ ଭାରତୀୟ ଚିକିତ୍ସାଶାସ୍ତ୍ରବିତ୍, ଦାର୍ଶନିକ ଓ ଗଣିତଜ୍ଞମାନେ ବି ଥିଲେ। ଏବଂବିଧ ବିକାଶଶୀଳ ପରିସ୍ଥିତି ହାରୁଁ-ଅଲ୍-ରସିଦ୍ ଓ ଅଲ୍ ମାମୁନ୍ (ଅଷ୍ଟମ ଓ ନବମ ଶତାବ୍ଦୀ) ଖଲିଫାମାନଙ୍କ ରାଜତ୍ୱକାଳ ପର୍ଯ୍ୟନ୍ତ ଜାରି ରହିଲା ଏବଂ ବାଗ୍‌ଦାଦ୍ ସଭ୍ୟ ଜଗତର ବୃହତ୍ତମ ଜ୍ଞାନ-କେନ୍ଦ୍ର ହୋଇଉଠିଲା।

ଏହି ପର୍ଯ୍ୟାୟରେ ଭାରତ ସଙ୍ଗେ ଆରବମାନଙ୍କର ନାନା ଭାବରେ ସମ୍ପର୍କ ରହିଥିଲା ଏବଂ ସେମାନେ ଭାରତୀୟ ଗଣିତ, ଜ୍ୟୋତିର୍ବିଜ୍ଞାନ ଓ ଚିକିତ୍ସାଶାସ୍ତ୍ରରୁ ବହୁତ କିଛି ଶିକ୍ଷା କରି ପାରିଥିଲେ। ତଥାପି, ଯେପରି ଅନୁମିତ ହୁଏ, ଏହିସବୁ ସମ୍ପର୍କ ନିମନ୍ତେ ଆରବମାନଙ୍କ ଦିଗରୁ ମୁଖ୍ୟତଃ ପ୍ରୟାସ ପ୍ରକାଶ ପାଇଥିଲା ଏବଂ ଆରବମାନେ ଭାରତରୁ ବହୁତ କିଛି ଶିକ୍ଷା କରିପାରିଥିଲେ ଯୁଦ୍ଧା ତଦନୁପାତରେ ସେମାନଙ୍କ ପାଖରୁ ଭାରତୀୟମାନେ ବିଶେଷ କିଛି ଶିକ୍ଷା କରିପାରି ନଥିଲେ। ଭାରତୀୟମାନେ ଆତ୍ମବଡ଼ିମା ଯୋଗୁଁ ଦୂରେଇ ରହିଲେ ଏବଂ ନିଜର ଗଣ୍ଡି ଅତିକ୍ରମ ନକରିବା ପାଇଁ ଯତ୍‌ପରୋନାସ୍ତି ଚେଷ୍ଟିତ ହେଲେ। ଏହା ବାସ୍ତବିକ ଦୁର୍ଭାଗ୍ୟକର; କାରଣ ବାଗ୍‌ଦାଦର ବୌଦ୍ଧିକ ଉଦ୍‌ବେଳନ ଓ ଆରବ୍ୟ ପୁନର୍ଜାଗରଣରେ, ବିପୁଳ ଆନ୍ଦୋଳନ ସୃଷ୍ଟି ତଥା ଅବସାଦଗ୍ରସ୍ତ ଭାରତୀୟ ମାନସରେ ଆଲୋଡ଼ନ ସୃଷ୍ଟି କରିପାରିଥାନ୍ତା। ଆରବମାନଙ୍କର ଏହି ଜ୍ଞାନପିପାସା ସଙ୍ଗେ ପ୍ରାଚୀନ ଭାରତୀୟମାନେ ଚିନ୍ତା କ୍ଷେତ୍ରରେ ଆତ୍ମୀୟତାର ଆବେଦନ ପାଇପାରିଥାନ୍ତେ।

ବାଗ୍‌ଦାଦରେ ଭାରତୀୟଜ୍ଞାନ ଓ ବିଜ୍ଞାନର ଏହି ଚର୍ଚ୍ଚା ଶକ୍ତିଶାଳୀ ବାର୍‌ମାକ୍ ବଂଶର ବିପୁଳ ପ୍ରୋତ୍ସାହନ ଲାଭ କରିଥିଲା। ହାରୁଁ-ଅଲ-ରସିଦ୍-ଙ୍କଳ। ଏହି ବଂଶରୁ ନିଜର ଏକାଧିକ ଉଜିର୍ ମନୋନୀତ କରିଥାନ୍ତି। ଏହି ବଂଶ ପ୍ରଥମେ ସମ୍ଭବତଃ ବୌଦ୍ଧଧର୍ମାବଲମ୍ବୀ ଥିଲେ

ଓ ପରେ ଇସ୍‌ଲାମ୍ ଅନୁଗାମୀ ହେଲେ । ଏକ ସମୟରେ ଖଲିଫା ହାରୁଁ-ଅଲ୍-ରସିଦଙ୍କ ଚିକିତ୍ସା ନିମନ୍ତେ 'ମଣକ' ନାମକ ଜଣେ ଭାରତୀୟ ବୈଦ୍ୟଙ୍କୁ ଭାରତରୁ ଅଣାଯାଇଥିଲା । ମଣକ ବାଗ୍‌ଦାଦ୍‌ରେ ସ୍ଥାୟୀ ଭାବରେ ବାସକଲେ ଏବଂ ଗୋଟାଏ ବଡ଼ ଚିକିତ୍ସାଳୟର ଦାୟିତ୍ୱରେ ରହିଲେ । ମଣକଙ୍କ ବ୍ୟତୀତ ଆହୁରି ଛ' ଜଣ ଭାରତୀୟ ବୈଦ୍ୟ ବାଗ୍‌ଦାଦରେ ସେହି ସମୟରେ ଅବସ୍ଥାନ କରିଥିବା ବିଷୟ ଆରବ ଐତିହାସିକମାନେ ଉଲ୍ଲେଖ କରନ୍ତି । ଜ୍ୟୋତିର୍ବିଜ୍ଞାନରେ ଆରବମାନେ ଭାରତୀୟ ଓ ଆଲେକ୍‌ଜାଣ୍ଡ୍ରିୟାନ୍ ଉଭୟଠାରୁ ଆଗରେ ଥିଲେ ଏବଂ ଏ କ୍ଷେତ୍ରରେ ଦୁଇଟି ବିଖ୍ୟାତ ନାମ ଇତିହାସର ପୃଷ୍ଠା ମଣ୍ଡନ କରିଚି । ଏମାନେ ହେଉଚନ୍ତି ନବମ ଶତାବ୍ଦୀର ଗଣିତଜ୍ଞ ଓ ଜ୍ୟୋତିର୍ବିଦ୍ ଅଲ୍ ଖ୍ୱାରିଜ୍ମି ଏବଂ ଦ୍ୱାଦଶ ଶତାବ୍ଦୀର କବି ଜ୍ୟୋତିର୍ବିଦ ଓମର୍ ଖୈୟାମ୍ । ଭେଷଜବିଦ୍ୟାରେ ଆରବୀ ଚିକିତ୍ସକ ଓ ଅସ୍ତ୍ରୋପଚାରକମାନେ ଏସିଆ ଓ ୟୁରୋପରେ ପ୍ରସିଦ୍ଧ ଥିଲେ । ଏମାନଙ୍କ ଭିତରେ ବହୁବିଶ୍ରୁତ ଥିଲେ ବୋଖାରାର ଇବନ୍ ସିନା ଯାହାଙ୍କୁ ବୈଦ୍ୟରାଜ କୁହାଯାଉ-ଥିଲା । ଖ୍ରୀ: ୧୦୩୭ରେ ତାଙ୍କର ମୃତ୍ୟୁ ଘଟିଲା । ଆରବୀ ଭାବୁକ ଓ ଦାର୍ଶନିକଙ୍କ ଭିତରେ ଆଉ ଏକ ମହାନ୍ ନାମ ହେଉଚି ଆବୁ ନାସର୍ ଫରାବୀ ।

ଆରବୀ ଦର୍ଶନ ଉପରେ ଭାରତୀୟ ପ୍ରଭାବ ସେପରି କିଛି ଲକ୍ଷଣୀୟ ନୁହେଁ । ବିଜ୍ଞାନ ଓ ଦର୍ଶନ ନିମନ୍ତେ ଆରବମାନେ ଗ୍ରୀସ୍ ଓ ପୁରାତନ ଆଲେକ୍‌ଜାଣ୍ଡ୍ରିଆର ବିବିଧ ମାର୍ଗ ଅନୁସରଣ କରିଥିଲେ । ଆରବମାନଙ୍କ ଉପରେ ପ୍ଲେଟୋ, ବିଶେଷତଃ ଏରିଷ୍ଟୋଟଲଙ୍କର ଶକ୍ତିଶାଳୀ ପ୍ରଭାବ ପଡ଼ିଥିଲା ଏବଂ ସେ କାଳରୁ ଆଜି ପର୍ଯ୍ୟନ୍ତ ଇସ୍‌ଲାମୀୟ ମଦରସାମାନଙ୍କର ସେମାନଙ୍କର ଦର୍ଶନ, ମୂଳପାଠ ଅପେକ୍ଷା ବହୁଧା ଆରବୀ ଟୀକା ମାଧ୍ୟମରେ, ଶିକ୍ଷା ଦିଆ-ଯାଉଚି । ଆଲେକ୍‌ଜାଣ୍ଡ୍ରିଆର ନବ୍ୟ-ପ୍ଲେଟୋବାଦ ମଧ୍ୟ ଆରବୀ ମନକୁ ପ୍ରଭାବିତ କରିଥିଲା । ଗ୍ରୀକ୍ ଦର୍ଶନର ବସ୍ତୁବାଦୀ ଭାବଧାରା ଆରବମାନଙ୍କ ନିକଟରେ ପହଞ୍ଚିବା ଫଳରେ ବସ୍ତୁବାଦ ଓ ଯୁକ୍ତିବାଦ ଗଢ଼ିଉଠିଲା । ଯୁକ୍ତିବାଦୀମାନେ ଧର୍ମର ବିବିଧ ସିଦ୍ଧାନ୍ତ ଓ ବିଧି-ନିଷେଧ ଯୁକ୍ତି ଦେଇ ବ୍ୟାଖ୍ୟା କରିବାର ପ୍ରୟାସ କଲେ । ଏଠାରେ ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା ଯେ ଏ ସମସ୍ତ ବିବାଦୀୟ ତଥା ଦ୍ୱନ୍ଦ୍ୱପୂର୍ଣ୍ଣ ତତ୍ତ୍ୱର ଆଲୋଚନା ନିମନ୍ତେ ବାଗ୍‌ଦାଦରେ ସମ୍ପୂର୍ଣ୍ଣ ସ୍ୱାଧୀନତା ଥିଲା । ବୁଦ୍ଧି ଓ ଯୁକ୍ତିଅନପେକ୍ଷ ବିଶ୍ୱାସର ଏହି ବିବାଦ ବାଗ୍‌ଦାଦରୁ ସମଗ୍ର ଆରବ ଦୁନିଆକୁ ପ୍ରସାରିତ ହୋଇ ସ୍ପେନ୍‌ରେ ପହଞ୍ଚିଲା । ଈଶ୍ୱରଙ୍କ ପ୍ରକୃତି ସମ୍ପର୍କରେ ଆଲୋଚନା କରି ବିବୃତ କରାଗଲା ଯେ, ସାଧାରଣତଃ ଯେଉଁଭଳି ଆରୋପ କରାଯାଇଥାଏ, ସେ ସେପରି ଗୁଣ-ଯୁକ୍ତ ନୁହନ୍ତି । ଈଶ୍ୱରଙ୍କର ସବୁକିଛି ଗୁଣ ମାନବସୁଲଭ । ଈଶ୍ୱରଙ୍କୁ ଉଦାର କିମ୍ବା ନ୍ୟାୟପରାୟଣ କହିବା ଯେପରି ଭ୍ରମାତ୍ମକ ସେପରି କହିବା ସେ ଦାଢ଼ିଯୁକ୍ତ ।

ବୁଦ୍ଧିବାଦରୁ ଭୌତିକବାଦ ଓ ସଂଶୟବାଦର ପଥ ଉନ୍ମୁକ୍ତ ହେଲା । କିନ୍ତୁ ବାଗ୍‌ଦାଦର ଅବନତି ଏବଂ ତୁର୍କୀ ଶକ୍ତିର ଉନ୍ନତି ସଙ୍ଗେ ବୁଦ୍ଧିବାଦୀ ଜିଜ୍ଞାସାର ଏହି ମହତ୍ତ୍ୱର ଭାବ କ୍ରମଶଃ ହ୍ରାସ ପାଇଲା; କିନ୍ତୁ ଆରବୀ ସ୍ପେନରେ ଏହି ଜିଜ୍ଞାସା ଅବ୍ୟାହତ ରହିଲା ଏବଂ ସ୍ପେନ୍‌ର ଅନ୍ୟତମ ବହୁବିଖ୍ୟାତ ଆରବ ଦାର୍ଶନିକ ଧର୍ମକୁ ଅସ୍ୱୀକାର କରିବା ସୀମା ପର୍ଯ୍ୟନ୍ତ ଯାଇ-

ପାରିଥିଲେ । ଏହି ଦାର୍ଶନିକ ହେଉଛନ୍ତି ଦ୍ୱାଦଶ ଶତାବ୍ଦୀର ଇବ୍ନ ରଶ୍‌ଦ । ତାଙ୍କର ସମସାମୟିକ ବିବିଧ ଧର୍ମ ସମ୍ପର୍କରେ ସେ ମନ୍ତବ୍ୟ କରିଥିବା ଜଣାଯାଏ ଯେ ସେସବୁ ଶିଶୁ ଅବା ନବୋଧଙ୍କ କାରବାର କିମ୍ବା କୌଣସି ଦିଗରୁ ତାହା ବାସ୍ତବୋପଯୋଗୀ ନୁହେଁ । ପ୍ରକୃତରେ ସେ ଏପରି କହିଥିଲେ କି ନାହିଁ, ସେଥିରେ ସନ୍ଦେହର ଅବକାଶ ଅଛି । କିନ୍ତୁ ସେ କି ପ୍ରକାର ଲୋକ ଥିଲେ ତାହା ପରମ୍ପରାରୁ ପ୍ରମାଣିତ ହେଉଛି ଏବଂ ନିଜର ମତାମତ ଲାଗି ସେ ବହୁ ଦୁଃଖଭୋଗ କରିଥିବା ଜଣାଯାଏ । ନାନା ଦିଗରୁ ସେ ଥିଲେ ଜଣେ ବିଚକ୍ଷଣ ବ୍ୟକ୍ତି । ସର୍ବସାଧାରଣ କର୍ମାନୁସରଣରେ ନାରୀମାନଙ୍କୁ ଭୂମିକା ଦେବାର ସୁଯୋଗ ସପକ୍ଷରେ ସେ ଖୁବ୍ ଶକ୍ତିଶାଳୀ ଭାବରେ ଲେଖିଥିଲେ ଏବଂ ସେ ଦୃଢ଼ଭାବରେ ବ୍ୟକ୍ତ କରୁଥିଲେ ଯେ ନାରୀମାନେ ସେମାନଙ୍କର ଯଥାର୍ଥତା ସମ୍ପାଦନ ନିମନ୍ତେ ସମ୍ପୂର୍ଣ୍ଣ ସମର୍ଥ । ସେ ଆହୁରି ମଧ୍ୟ ସୂଚିତ କରିଥିଲେ ଯେ ଦୁରାରୋଗ୍ୟ ବ୍ୟାଧିଗ୍ରସ୍ତ ଲୋକଙ୍କୁ, ଯେଉଁମାନେ ସମାଜ ପକ୍ଷରେ ଅଯଥା ବୋଝ ସ୍ୱରୂପ ରହିଛନ୍ତି, ମାରିଦେବା ଉଚିତ । ସେହି ସମୟରେ ୟୁରୋପୀୟ ଶିକ୍ଷାର ଅନ୍ୟାନ୍ୟ କେନ୍ଦ୍ର ଅପେକ୍ଷା ସ୍ପେନ୍ ପ୍ରତ୍ୟେକରେ ରହିଥିଲା ଏବଂ ଆରବ୍ୟ ଓ କୋର୍‌ଦୋବା ବିଶ୍ୱବିଦ୍ୟାଳୟର ଆରବ୍ୟ ଓ ଇହୁଦୀ ବିଦ୍ୱାନ୍‌ମାନେ ପେରିସ ଓ ଅନ୍ୟତ୍ର ବିଶେଷ ସମ୍ମାନଭାଜନ ଥିଲେ । ସ୍ପଷ୍ଟତଃ ଏହି ଆରବମାନଙ୍କର ଅନ୍ୟାନ୍ୟ ୟୁରୋପୀୟଙ୍କ ସମ୍ପର୍କରେ ଉଚ୍ଚ ଧାରଣା ନଥିଲା । ଟୋଲେଡ଼ୋର ସୈଦ୍ ନାମକ ଜଣେ ଆରବ୍ୟ ଲେଖକ ପିରେନିଜ୍ ପର୍ବତମାଳାର ଉତ୍ତର ଦିଗରେ ବାସକରୁଥିବା ୟୁରୋପୀୟଙ୍କ ବର୍ଣ୍ଣନା ଦେଇ କହିଛନ୍ତି : "ସେମାନେ ଗୋଟାଏ ପ୍ରକାର ଶୀତଳ ପ୍ରକୃତିର ଲୋକ ଏବଂ ସେମାନଙ୍କୁ ଯେଉଁ ବୟସରେ ହେଲେ ପ୍ରାପ୍ତବୟସ୍କ କୁହାଯାଇନପାରେ । ଦେଖିବାକୁ ସେମାନେ ଖୁବ୍ ଲମ୍ବା ଓ ଗୋରା; କିନ୍ତୁ ବୁଦ୍ଧି ଓ ବିଚକ୍ଷଣତା ଉଭୟର ଅଭାବ ସୁସ୍ପଷ୍ଟ ।"

ପଶ୍ଚିମ ଓ ମଧ୍ୟ-ଏସିଆର ଯେଉଁ ଆରବ ସଂସ୍କୃତି ଓ ସଭ୍ୟତା କୁସୁମିତ ହେଲା, ତାହା ପ୍ରଧାନତଃ ଦୁଇଟି ସୂତ୍ରରୁ ପ୍ରେରଣା ଲାଭ କରିଥିଲା । ତାହା ହେଉଛି ଆରବ ଓ ପାରସିକ । ଏ ଉଭୟର ମିଶ୍ରଣ ଉପରଶ୍ରେଣୀମାନଙ୍କ ପାଇଁ ଉଚ୍ଚ ଜୀବନଧାରଣର ମାନ ଓ ଚିନ୍ତାର ତେଜ ଯୋଗାଇଲା । ଆରବମାନଙ୍କ ପାଖରୁ ଆସିଲା ଜିଜ୍ଞାସାର ଉତ୍କଣ୍ଠା ଓ ସ୍ଫୂର୍ତ୍ତି; ପାରସିକମାନଙ୍କ ପାଖରୁ ଜୀବନର ବିବିଧ ସୌନ୍ଦର୍ଯ୍ୟ, କଳା ଓ ପ୍ରମୋଦ । ତୁର୍କୀ ଆଧିପତ୍ୟ ଫଳରେ ବାଗ୍‌ଦାଦର ପ୍ରତିଭା ମଉଳିବା ସଙ୍ଗେ ସଙ୍ଗେ ବୁଦ୍ଧିବାଦ ଓ ଜିଜ୍ଞାସାର ଭାବନା ମଧ୍ୟ ମଉଳିଗଲା । ଏ ସମସ୍ତର ଅବସାନ ଘଟାଇଲେ ଚେଙ୍ଗିଜ୍ ଖାଁ ଓ ମଙ୍ଗୋଲମାନେ । ଏହାର ଶତ ବର୍ଷ ପରେ ମଧ୍ୟ-ଏସିଆର ପୁଣି ନିଦ୍ରାଭଙ୍ଗ ହେଲା ଏବଂ ଆରବ-ପାରସିକ ସଭ୍ୟତାର ପୁରାତନ ପରମ୍ପରା କେତେକାଂଶରେ ପୁନରୁଦ୍ଧାର କରି ସମରକନ୍ଦ ଓ ହିରାଟ ଚିତ୍ରକଳା ଓ ସ୍ଥାପତ୍ୟର କେନ୍ଦ୍ର ହେଇ ଉଠିଲା । କିନ୍ତୁ ଆରବର ବୁଦ୍ଧିବାଦ ଓ ବିଜ୍ଞାନ ପ୍ରତି ଆଗ୍ରହ ଆଉ ଦେଖା ଦେଲା ନାହିଁ । ମନର ବିଜୟ ଅପେକ୍ଷା ସାମରିକ ବିଜୟ ପକ୍ଷରେ ଅଧିକତର ଅନୁକୂଳ ଭାବରେ ଇସଲାମ୍ ଗୋଟାଏ କଠୋର ଶୃଙ୍ଖଳାର ଧର୍ମବିଶ୍ୱାସ ହେଇ ଉଠିଥିଲା । ଏସିଆରେ ଏହାର ମୁଖ୍ୟ ପ୍ରତିନିଧି ଭାବରେ ଆରବମାନେ ଆଉ ଚିତ୍ରରେ ନଥିଲେ ।

ସେମାନଙ୍କର ସ୍ଥାନ ଅଧିକାର କଲେ ତୁର୍କୀ (୧) ଓ ମଙ୍ଗୋଲମାନେ (ପରେ ସେହିମାନେ ଭାରତରେ ମୋଗଲ ନାମରେ ଅଭିହିତ ହେଲେ) ଏବଂ କେତେ ପର୍ଯ୍ୟନ୍ତ ଆଫଗାନ୍‌ମାନେ ମଧ୍ୟ । ପଶ୍ଚିମ-ଏସିଆରେ ଏହି ମଙ୍ଗୋଳମାନେ ଇସ୍‌ଲମ୍ ଧର୍ମ ଗ୍ରହଣ କରିଥିଲେ; ଦୂର ପ୍ରାଚ୍ୟରେ ଏବଂ ମଧ୍ୟବର୍ତ୍ତୀ ଅଞ୍ଚଳମାନଙ୍କରେ ଅନେକେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ ।

## ୩ . ମହମ୍ମଦ ଘଜନୀ ଓ ଆଫଗାନମାନେ

ଅଷ୍ଟମ ଶତାବ୍ଦୀର ଆଦ୍ୟ ଭାଗରେ, ଖ୍ରୀ: ୭୧୨ରେ ଆରବମାନେ ସିନ୍ଧୁ ପ୍ରଦେଶରେ ପହଞ୍ଚିସାରିଥିଲେ ଓ ନିଜର ପ୍ରଭୁତ୍ୱ ବିସ୍ତାର କଲେ । ସେମାନେ ସେଠାରେ ହିଁ ଅଟକିଗଲେ । ପ୍ରାୟ ପଚାଶ ବର୍ଷ ଭିତରେ ଗୋଟାଏ କ୍ଷୁଦ୍ର ତଥା ସ୍ୱାଧୀନ ରାଜ୍ୟ ଭାବରେ ତିଷ୍ଠି ରହିଥିଲେ ମଧ୍ୟ ଆରବ ସାମ୍ରାଜ୍ୟରୁ ସିନ୍ଧୁ ବିଚ୍ଛିନ୍ନ ହୋଇପଡ଼ିଲା । ପ୍ରାୟ ତିନିଶତ ବର୍ଷ ପର୍ଯ୍ୟନ୍ତ ଭାରତ ଉପରେ ସଙ୍ଗଠିତ କିମ୍ବା କାଁ-ଭାଁ ଆକ୍ରମଣ ଆଉ ଘଟିନଥିଲା । ଖ୍ରୀ:୧୦୦୦ ବେଳକୁ ଆଫଗାନିସ୍ତାନର ତୁର୍କୀ ଅଧିପତି, ଯିଏ ମଧ୍ୟ-ଏସିଆରେ ଶକ୍ତିମାନ୍ ହୋଇଉଠିଥିଲେ, ସୁଲତାନ ମହମ୍ମଦ ଘଜନୀ ଭାରତ ଉପରେ ଆକ୍ରମଣ କଲେ । ମହମ୍ମଦ ଘଜନୀ ଏପରି ବାରମ୍ବାର ଆକ୍ରମଣ କରି ରକ୍ତପାତ ଓ ଅବିମୃଷ୍ୟକାରିତାର ବହୁ ନିଦର୍ଶନ ରଖି ପ୍ରତ୍ୟେକ ଥର ବହୁ ଧନ-ସମ୍ପଦ ଭାରତରୁ ଲୁଟି ନେଇଥିଲେ । ସମସାମୟିକ ଜଣେ ବିଦ୍ୱାନ୍, ଖିବା ଅଧିବାସୀ ଅଲ୍‌ବେରୁଣି ଏହିସବୁ ଧ୍ୱଂସ ଲୁଣ୍ଠନର ବର୍ଣ୍ଣନା ପ୍ରସଙ୍ଗରେ ଲେଖିଚନ୍ତି: "ହିନ୍ଦୁମାନେ ଧୂଳିକଣା ଭଳି ଚାରିଦିଗରେ ବିକ୍ଷିପ୍ତ ହୋଇପଡ଼ିଲେ ଏବଂ ଲୋକମୁଖରେ କୌଣସି ପୁରାତନ କାହାଣୀ ଭଳି ସେମାନଙ୍କର ସ୍ମୃତି ରହିଗଲା । ଇତସ୍ତତଃ ବିକ୍ଷିପ୍ତ ଭାବରେ ଯେଉଁମାନେ ବଞ୍ଚିଯାଇପାରିଲେ ମୁସଲମାନଙ୍କ ପ୍ରତି ସେମାନଙ୍କର ଘୃଣା ତୀବ୍ରତର ହୋଇଉଠିଲା ।" ଏହି କାବ୍ୟିକ ବର୍ଣ୍ଣନାରୁ ମହମ୍ମଦଙ୍କ ଧ୍ୱଂସ-ଲୀଳାର କିଛି ଧାରଣା ଆମକୁ ମିଳେ । ତଥାପି ଏକଥା ମନେରଖିବା ଉଚିତ ଯେ ମହମ୍ମଦ ଉତ୍ତର-ଭାରତର ଗୋଟାଏ ଅଂଶର କେବଳ, ମୁଖ୍ୟତଃ ତାଙ୍କର ଯାତାୟାତ ପଥର ଧାରେଧାରେ, ଏହି ବିପର୍ଯ୍ୟୟ ଘଟାଇଥିଲେ । ସମଗ୍ର ମଧ୍ୟ, ପୂର୍ବ ଓ ଦକ୍ଷିଣ-ଭାରତ ତାଙ୍କର ଆକ୍ରମଣରୁ ମୁକ୍ତ ଥିଲା ।

ସେହି ସମୟରେ ଓ ତା' ପରେ ମଧ୍ୟ ଦକ୍ଷିଣ-ଭାରତରେ ଶକ୍ତିଶାଳୀ ଚୋଳ ସାମ୍ରାଜ୍ୟର ଆଧିପତ୍ୟ ବିସ୍ତୃତ ଥିଲା । ଏହି ଚୋଳମାନେ ସମୁଦ୍ର ପଥ ନିୟନ୍ତ୍ରଣ କରି ଦୂର ପ୍ରାଚ୍ୟର ଜାଭା

(୧) 'ତୁର୍କ' ଅଥବା 'ତୁର୍କୀ' ଶବ୍ଦ ଦୁଇଟି ମୁଁ ବହୁଧା ବ୍ୟବହାର କରିଚି । ଏହା ବିଭ୍ରାନ୍ତିକର ହୋଇପାରେ କାରଣ 'ତୁର୍କୀ' ଆଜିର ତୁର୍କୀ ବା ତୁରସ୍କ ଦେଶର ଲୋକଙ୍କ ସଙ୍ଗେ ସମ୍ବନ୍ଧିତ । ଏମାନେ ଇସ୍‌ମାନୀ ଓ ଓଟୋମାନ୍ ତୁର୍କଙ୍କ ବଂଶଧର; କିନ୍ତୁ ଏମାନଙ୍କ ବ୍ୟତୀତ ଅନ୍ୟପ୍ରକାର ତୁର୍କ ବି ଥିଲେ, ଯେପରି ସେଲ୍‌ଜୁକ୍ ଇତ୍ୟାଦି । କେନ୍ଦ୍ର-ଏସିଆ, ଚୀନା, ତୁର୍କୀସ୍ତାନ ଇତ୍ୟାଦିର ତୁରାନିଅନ୍ ଜାତିମାନଙ୍କୁ 'ତୁର୍କୀ' କୁହାଯାଇପାରେ ।

ଅନ୍ତର୍ଗତ ଶ୍ରୀବିଜୟ ଓ ସୁମାତ୍ରା ପର୍ଯ୍ୟନ୍ତ ପହଞ୍ଚିପାରିଥିଲେ । ପୂର୍ବ-ସାଗର ଉପକୂଳବର୍ତ୍ତୀ ଭାରତୀୟ ଉପନିବେଶଗୁଡ଼ିକ ସେତେବେଳେ ଶକ୍ତି ଓ ସମୃଦ୍ଧି ଲାଭ କରି ପାରିଥିଲେ । ଏମାନେ ଓ ଦକ୍ଷିଣ-ଭାରତର ଚୋଳମାନେ ସାଗରାଧିପତ୍ୟ ନିଜ ନିଜ ଭିତରେ ବାଣ୍ଟି ନେଇଥିଲେ; କିନ୍ତୁ ଏହା ଉତ୍ତର-ଭାରତରୁ ସ୍ଥଳପଥର ଆକ୍ରମଣରୁ ରକ୍ଷାକରି ପାରିଲା ନାହିଁ ।

ମହମ୍ମଦ ପଞ୍ଜାବ ଓ ସିନ୍ଧୁ ପ୍ରଦେଶକୁ ନିଜ ରାଜ୍ୟରେ ସାମିଲ୍ କରିନେଲେ ଓ ପ୍ରତ୍ୟେକ ଆକ୍ରମଣ ପରେ ଘଜନୀ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରୁଥିଲେ । ସେ କାଶ୍ମୀର ଦଖଲ କରିପାରି ନଥିଲେ । ତାଙ୍କର ଆକ୍ରମଣ ପ୍ରତିରୋଧ କରିବାରେ ଓ ପଛକୁ ହଟାଇବାରେ ଏହି ପାର୍ବତ୍ୟ ଦେଶ ସଫଳତା ଲାଭ କରିଥିଲା । କାଥିଆବାଡ଼ରେ ସୋମନାଥ ମନ୍ଦିର ଧ୍ୱଂସକରି ଫେରିବା ବାଟରେ ରାଜପୁତାନାର ମରୁ ଅଞ୍ଚଳରେ ସେ ଶୋଚନୀୟ ଭାବରେ ପରାଜିତ ହେଲେ । ଭାରତ ଉପରେ ଏହା ତାଙ୍କର ଶେଷ ଆକ୍ରମଣ ଏବଂ ସେ ଆଉ ଭାରତ ଆଡ଼କୁ ମୁହଁ ଫେରାଇନାହାନ୍ତି । (୧)

ମହମ୍ମଦଙ୍କୁ ଧର୍ମ ସଂରକ୍ଷକ ଅପେକ୍ଷା ଯୋଦ୍ଧା କହିବା ଅଧିକତର ସମୀଚୀନ ହେବ; କାରଣ ଅନ୍ୟାନ୍ୟ ବହୁ ବିଜେତାଙ୍କ ଭଳି ସେ ତାଙ୍କର ରାଜ୍ୟଜୟ କାମରେ ଧର୍ମର ନାମ ବ୍ୟବହାର କରିଥିଲେ ଓ ସେଥିରୁ ଲାଭ ଉଠାଇଥିଲେ । ତାଙ୍କ ପକ୍ଷରେ ଭାରତ ଥିଲା ସେପରି

(୧) ଶ୍ରୀ ରଣଜିତ୍ଙ୍କ ଅମର୍ଜିଙ୍କ ଦ୍ୱାରା ଅନୂଦିତ ବମ୍ବେ, (୧୮୮୨) 'ତାରିଖେ ସୋରଠ୍' ନାମକ ଏକ ପୁରାତନ ପାରସିକ ଘଟଣାପଞ୍ଜୀ ବା ଇତିହାସରେ (ପୃ. ୧୧୨) ଏହି ପରାଜୟ ସମ୍ପର୍କରେ କେତେ ବିଚିତ୍ର କଥା ପଢ଼ିବାକୁ ମିଳେ । 'ଭୟବିହ୍ୱଳ ଶାହ ମହମ୍ମଦ ପୃଷ୍ଠଭଙ୍ଗ ଦେଇ ନିଜର ପ୍ରାଣରକ୍ଷା କଲେ; କିନ୍ତୁ ତାଙ୍କର ଅନୁଗାମୀ ବହୁ ନରନାରୀ ବନ୍ଦୀ ହେଲେ ।...ଅବିବାହିତ ତୁର୍କ, ଆଫଗାନ୍, ମୋଗଲ ବନ୍ଦିନୀମାନଙ୍କୁ ଭାରତୀୟ ସୈନିକମାନେ ପତ୍ନୀ ଭାବରେ ଗ୍ରହଣ କଲେ ।...ବିରେଚକ ଓ ବମନକାରକ ଔଷଧ ପ୍ରୟୋଗ କରି ଅନ୍ୟମାନଙ୍କର ଉଦର ସଂସ୍କାର କରାଗଲା ଏବଂ ସେମାନଙ୍କୁ ସମଶ୍ରେଣୀ ଲୋକଙ୍କ ସଙ୍ଗେ ବିବାହ ଦିଆଗଲା ।' ନିମ୍ନ ବର୍ଗର ନାରୀଙ୍କୁ ନିମ୍ନ ବର୍ଗର ପୁରୁଷଙ୍କ ସଙ୍ଗେ ଛନ୍ଦି ଦିଆଗଲା । ବାଧ୍ୟତାମୂଳକ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ଦାଢ଼ି ଖିଅର କରି ସେମାନଙ୍କୁ ରାଜପୁତ ଶେଖାବତ ଓ ବଢ଼ିଲ ସମାଜର ଅନ୍ତର୍ଭୁକ୍ତ କରାଗଲା । ନିମ୍ନବର୍ଗର ଲୋକଙ୍କୁ କୋଳି, ଝିନ୍ତ, ବାବରିଆ ଓ ମେର ଜାତିମାନଙ୍କରେ ସ୍ଥାନ ଦିଆଗଲା ।' 'ତାରିଖେ-ସୋରଠ୍' ମୋର ଦୃଷ୍ଟିରେ ପଡ଼ିନ । ସେଥିଲାଗି କହିପାରୁନି ଏହା କେତେଦୂର ପ୍ରାମାଣିକ ଓ ନିର୍ଭରଯୋଗ୍ୟ । ଉପରୋକ୍ତ ଉଦ୍ଧୃତି ମୁଁ କେ. ଏମ୍. ମୁନ୍ସୀଙ୍କ 'ଦି ଗ୍ଲୋରି ଦାଟ୍ ୱାଜ୍ ଗୁର୍ଜର ଦେଶ' (୩ୟ ଭାଗ, ପୃ. ୧୪୦)ରୁ ଗ୍ରହଣ କରିଚି । ଏଥିରେ କୌତୂହଳର କଥା ହେଉଚି ପରଦେଶୀମାନଙ୍କୁ ଯେପରି ଭାବରେ ରାଜପୁତ ବଂଶମାନଙ୍କରେ ଗ୍ରହଣ କରାଗଲା ଏବଂ ନାରୀମାନଙ୍କୁ ଯେପରି ବିବାହ ଦିଆଗଲା । ବିଚିତ୍ର ସଂସ୍କାର ବ୍ୟବସ୍ଥା ବାସ୍ତବିକ ଅଭିନବ ।

ଗୋଟିଏ ସ୍ଥାନ ଯେଉଁଠାରୁ ନିଜ ରାଜ୍ୟକୁ ସେ ଅକଳନା ଧନସମ୍ପଦ ଅନାୟାସରେ ବୋହି-ନେଇପାରିବେ । ଭାରତରେ ସେ ଏକ ସୈନ୍ୟବାହିନୀ ଗଢ଼ି ତାଙ୍କର ଜନୈକ ବିଖ୍ୟାତ ସେନାପତିଙ୍କ ପରିଚାଳନାରେ ଛାଡ଼ିଥିଲେ । ଏହି ସେନାପତି ଥିଲେ ଜଣେ ଭାରତୀୟ ଓ ହିନ୍ଦୁ ଏବଂ ତାଙ୍କର ନାମ ଥିଲା ତିଲକ । ଏହି ବାହିନୀକୁ ମଧ୍ୟ-ଏସିଆରେ ତାଙ୍କର ସମଧର୍ମୀଙ୍କ ବିରୁଦ୍ଧରେ ସେ ବ୍ୟବହାର କରିଥିଲେ । ନିଜର ରାଜଧାନୀ ଗଜନୀକୁ ମଧ୍ୟ ଓ ପଶ୍ଚିମ-ଏସିଆର ମହାନ୍ ନଗରୀମାନଙ୍କ ସମକକ୍ଷ କରିବା ଉଦ୍ଦେଶ୍ୟରେ ଭାରତରୁ ବହୁ ବିଚକ୍ଷଣ କାରିଗର ଓ ନିର୍ମାତା ସେ ସାଥିରେ ନେଇଥିଲେ । ନିର୍ମାଣ-କର୍ମରେ ସେ ବିଶେଷ ଆଗ୍ରହୀ ଥିଲେ ଏବଂ ଦିଲ୍ଲୀ ନିକଟସ୍ଥ ମଥୁରା ନଗରୀ ତାଙ୍କର ଖୁବ୍ ପସନ୍ଦ ହୋଇଥିଲା । ସେ ଲେଖିଚନ୍ତି : "ଏଠାରେ ସେପରି ସହସ୍ର ସଂଖ୍ୟକ ପ୍ରାସାଦ ଓ ଇମାରତମାନ ଅଛି ଯାହା ଧାର୍ମିକର ଧର୍ମବିଶ୍ୱାସ ଭଳି ଦୃଢ଼ ଓ ଅଟଳ । କୋଟି କୋଟି ଧନର ବ୍ୟୟ କରିବା ବିନା ଏହି ନଗରୀ ବର୍ତ୍ତମାନର ଅବସ୍ଥାରେ ଉପନୀତ ହୋଇପାରି ନଥାନ୍ତା । ଦୁଇଶହ ବର୍ଷରୁ କମ୍ ସମୟ ମଧ୍ୟରେ ଏପରି ଆଉ ଏକ ନଗରୀ ନିର୍ମାଣ କରାଯାଇ ନପାରେ ।"

ଯୁଦ୍ଧବିରତି କାଳରେ, ନିଜ ରାଜ୍ୟରେ ସାଂସ୍କୃତିକ କାର୍ଯ୍ୟକଳାପ ଉତ୍ସାହିତ କରିବା ଦିଗରେ ମହମ୍ମଦଙ୍କର ଯଥେଷ୍ଟ ଆଗ୍ରହ ଥିଲା ଏବଂ ନିଜର ଦରବାରରେ ସେ ବହୁ ବିଖ୍ୟାତ ବିଦ୍ୱାନଙ୍କୁ ଏକତ୍ର କରିଥିଲେ । ଏମାନଙ୍କ ଭିତରେ ଥିଲେ 'ଶାହନାମା'ର ରଚୟିତା ସୁବିଖ୍ୟାତ ପାରସିକ କବି ଫିରଦୌସି । ପରେ ଅବଶ୍ୟ ମହମ୍ମଦଙ୍କ ସଙ୍ଗେ ତାଙ୍କର ଅପଡ଼ ହୋଇଥିଲା । ବିଦ୍ୱାନ୍ ଓ ପର୍ଯ୍ୟଟକ ଅଲ୍‌ବେରୁଣି ଥିଲେ ଫିର୍‌ଦୌସିଙ୍କ ସମସାମୟିକ ଏବଂ ତାଙ୍କର ଏକାଧିକ ଗ୍ରନ୍ଥରେ ତାତ୍‌କାଳିକ ମଧ୍ୟ-ଏସିଆ ଜୀବନର ଅନ୍ୟାନ୍ୟ ବିଭବ ସମ୍ପର୍କରେ ସେ ସୂଚନା ଦେଇଚନ୍ତି । ଏହି ପାରସିକ ପଣ୍ଡିତ ଖିବା ନିକଟରେ ଜନ୍ମଗ୍ରହଣ କରିଥିଲେ । ଭାରତକୁ ଆସି ଦେଶର ନାନା ସ୍ଥାନ ସେ ପର୍ଯ୍ୟଟନ କଲେ । ଦକ୍ଷିଣ-ଭାରତରେ ଚୋଳ ରାଜ୍ୟର ଜଳସେଚନ ପ୍ରଣାଳୀ ସମ୍ପର୍କରେ ସେ ଖୁବ୍ ପ୍ରଶଂସା କରି ଲେଖିଚନ୍ତି । ତେବେ, ଏ ବ୍ୟବସ୍ଥା ଦକ୍ଷିଣ-ଭାରତ ପରିଭ୍ରମଣ କରି ସେ ନିଜେ ଦେଖିଥିଲେ କି ନାହିଁ, ସନ୍ଦେହ ରହିଚି । କାଶ୍ମୀରରେ ସଂସ୍କୃତ ଶିକ୍ଷା କରି ଭାରତର ଧର୍ମ, ଦର୍ଶନ, ବିଜ୍ଞାନ ଓ କଳା ସେ ଅଧ୍ୟୟନ କରିଥିଲେ । ଗ୍ରୀକ୍ ଦର୍ଶନ ଅଧ୍ୟୟନ କରିବା ଉଦ୍ଦେଶ୍ୟରେ ତତ୍‌ପୂର୍ବରୁ ଗ୍ରୀକ୍ ଭାଷା ମଧ୍ୟ ସେ ଶିକ୍ଷା କରିଥିଲେ । ତାଙ୍କର ଗ୍ରନ୍ଥଗୁଡ଼ିକ ନାନାବିଧ ତଥ୍ୟର ଗୋଟାଏ ଗନ୍ତାଘର କେବଳ ନୁହେଁ; ଅଧିକନ୍ତୁ ସେଥିରେ ଦେଖିବାକୁ ମିଳେ ଯେ ଯୁଦ୍ଧ, ଲୁଣ୍ଠନ ଓ ବ୍ୟାପକ ହତ୍ୟାକାଣ୍ଡ ପଛରେ ନୀରବରେ ବିଦ୍ୟାଚର୍ଚ୍ଚା କିଭଳି ଅବ୍ୟାହତ ହୋଇଥିଲା; ଏବଂ କ୍ରୋଧ ଆବେଗ ଦେଶ ଦେଶ ଭିତରେ ଧର୍ମର୍କ ଉକ୍ତ କରିଥିଲେ ସୁଦ୍ଧା ଗୋଟାଏ ଦେଶରେ ଲୋକେ ଅନ୍ୟ ଦେଶର ଲୋକଙ୍କୁ କିପରି ବୁଝିବାର ପ୍ରୟାସ କରିଥିଲେ । ଏଥିରେ ଅବଶ୍ୟ ସନ୍ଦେହ ନାହିଁ ଯେ ଉଭୟ ପାର୍ଶ୍ୱରେ ସେହି କ୍ରୋଧ ଓ ଆବେଗ ନିର୍ମଳ ବିବେଚନାର ଆକାଶକୁ ମେଘାବୃତ କରିଥିଲା ଏବଂ ଗୋଟାଏ ଦେଶର

ଲୋକେ ଅନ୍ୟ ଦେଶର ଲୋକଙ୍କଠାରୁ ନିଜକୁ ବଡ଼ ମଣୁଥିଲେ । ଭାରତୀୟଙ୍କ ସମ୍ପର୍କରେ ଅଲବେରୁଣି କହନ୍ତି ଯେ ସେମାନେ ବଡ଼ 'ଗର୍ବିତ, ନିର୍ବୋଧ ଭାବରେ ଦାମ୍ଭିକ, ସ୍ୱୟଂସମ୍ପୂର୍ଣ୍ଣ ଓ ଉଦାସୀନ' ଏବଂ ସେମାନେ ବିଶ୍ୱାସ କରନ୍ତି ଯେ 'ସେମାନଙ୍କ ଦେଶ ଭଳି ଦେଶ ଦୁନିଆରେ ଆଉ ନାହିଁ; ସେମାନଙ୍କ ଭଳି ଜାତି, ସେମାନଙ୍କର ରାଜା ଭଳି ରାଜା, ସେମାନଙ୍କର ବିଜ୍ଞାନ ଭଳି ବିଜ୍ଞାନ' ଅନ୍ୟତ୍ର ଅଲଭ୍ୟ । ଏହା ଭାରତୀୟଙ୍କ ମନୋଭାବର ପ୍ରାୟ ନିର୍ଭୁଲ ବର୍ଣ୍ଣନା ଭଳି ମନେହୁଏ ।

ରାଜନୀତି ଦୃଷ୍ଟିରୁ, ସାମରିକ ଭାବରେ, ଭାରତ ଉପରେ ଯଦିଓ ସେପରି ବଡ଼ କିଛି ପ୍ରଭାବ ପଡ଼ିନି ଏବଂ ଭାରତର ହୃଦୟ ବୋଲି ଯାହାକୁ କୁହାଯାଇପାରେ, ସେହି ଅଂଶ ସମ୍ପୂର୍ଣ୍ଣ ଅସ୍ପୃଷ୍ଟ ରହିପାରିଲା; ତଥାପି ମହମ୍ମଦଙ୍କ ଏକାଧିକ ବାର ଆକ୍ରମଣ ଭାରତୀୟ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ତାହା ପ୍ରଦର୍ଶିତ କଲା ଉତ୍ତର-ଭାରତର ଦୁର୍ବଳତା ଓ ଅବନତି ଏବଂ ଅଲବେରୁଣିଙ୍କ ବିବରଣୀ ଉତ୍ତର ଓ ପଶ୍ଚିମ ଭାରତର ରାଜନୈତିକ ବିଚ୍ଛିନ୍ନତା ଉପରେ ଆହୁରି ଅଧିକ ଆଲୋକପାତ କରେ । ଉତ୍ତର-ପଶ୍ଚିମରୁ ଉହାକୁ ଉହା ଆକ୍ରମଣ ଭାରତର ଅବରୁଦ୍ଧ ଚିନ୍ତା ଓ ଅର୍ଥନୀତି ଭିତରକୁ କେତେକ ନୂତନ ବିଚାର ଆନୟନ କଲା । ସର୍ବୋପରି ଦୀର୍ଘ ସାମରିକ ବିଜୟର ଆନୁଷଙ୍ଗିକ ଭାବରେ ପ୍ରଥମ ଥର ପାଇଁ ଭାରତରେ ଏହା ଇସଲାମକୁ ପରିଚିତ କଲା । ସେ ପର୍ଯ୍ୟନ୍ତ ତିନିଶହ ବର୍ଷରୁ ଅଧିକ କାଳ ଧରି ଇସଲାମ୍ ଶାନ୍ତିପୂର୍ଣ୍ଣ ଭାବରେ, ବିନା ବିବାଦ ଅବା ସଂଘାତରେ, ଭାରତରେ ପ୍ରଚଳିତ ବହୁ ଧର୍ମବିଶ୍ୱାସ ଭିତରେ ଅନ୍ୟତମ ଧର୍ମ ଭାବରେ ତାର ସ୍ଥାନ ପାଇସାରିଥିଲା । କିନ୍ତୁ ଏହି ନୂତନ ଅଭିମୁଖ୍ୟ ଲୋକଙ୍କ ଭିତରେ କେତେ ଶକ୍ତିଶାଳୀ ମନସ୍ତାତ୍ତ୍ୱିକ ପ୍ରତିକ୍ରିୟା ସୃଷ୍ଟିକଲା ଏବଂ ସେମାନଙ୍କ ମନରେ ତିକ୍ତତା ଭରିଦେଲା । ଗୋଟାଏ ନୂତନ ଧର୍ମ ପ୍ରତି କୌଣସି ଆପତ୍ତି ନଥିଲା; କିନ୍ତୁ ଆପତ୍ତି ଥିଲା ସେଥିପ୍ରତି ଯାହା ସେମାନଙ୍କର ଜୀବନଧାରାରେ ବଳପୂର୍ବକ ହସ୍ତକ୍ଷେପ କରେ ଆଉ ତାର ଶୃଙ୍ଖଳା ଭଙ୍ଗ କରେ ।

ଏକଥା ମନେରଖିବା ଉଚିତ ଯେ ନାନା ଆକାର ଓ ପ୍ରକାରରେ ହିନ୍ଦୁଧର୍ମର ପ୍ରାଧିକାର ସତ୍ତ୍ୱେ, ଭାରତ ହେଉଛି ବହୁ ଧର୍ମର ଦେଶ । ଜୈନଧର୍ମ ଓ ବୌଦ୍ଧଧର୍ମ ବ୍ୟତୀତ (ଯାହା ପ୍ରାୟ ଲୋପ ପାଇଯାଇଥିଲା ଓ ହିନ୍ଦୁଧର୍ମ ଉଭୟକୁ ଆତ୍ମସାତ୍ କରିନେଇଥିଲା ) ଭାରତରେ ଖ୍ରୀଷ୍ଟାନ୍ ଧର୍ମ ଓ ହିବ୍ରୁ ଧର୍ମ ବି ରହିଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତକରେ ସମ୍ଭବତଃ ଏଇ ଉଭୟ ଧର୍ମ ଭାରତରେ ପହଞ୍ଚିଥିଲା ଏବଂ ଏ ଦେଶରେ ସ୍ଥାନ ପାଇଥିଲା । ଦକ୍ଷିଣ-ଭାରତରେ ବହୁ ସଂଖ୍ୟକ ସିରିଅନ୍ ଖ୍ରୀଷ୍ଟାନ ଓ ନେଷ୍ଟୁରିଅନ୍ ଥିଲେ ଏବଂ ଅନ୍ୟମାନଙ୍କ ଭଳି ସେମାନେ ମଧ୍ୟ ଏ ଦେଶର ଲୋକ ଭାବରେ ବିବେଚିତ ହେଉଥିଲେ । ଏହି ଅବସ୍ଥା ମଧ୍ୟ ଥିଲା ଇହୁଦୀମାନଙ୍କର ଏବଂ ଜରଥୁଷ୍ଟ ମତାବଲମ୍ବୀ କ୍ଷୁଦ୍ର ସମ୍ପ୍ରଦାୟର, ଯେଉଁମାନେ ସପ୍ତମ ଶତାବ୍ଦୀରେ ଇରାନରୁ ଭାରତକୁ ଆସିଥିଲେ । ପଶ୍ଚିମ ଉପକୂଳବାସୀ ଓ ଉତ୍ତର-ପଶ୍ଚିମର ମୁସଲିମମାନେ ମଧ୍ୟ ଭାରତରେ ସମାନ ଆସନ ଲାଭ କରିଥିଲେ ।

ମହମ୍ମଦ ଆସିଥିଲେ ଜଣେ ବିଜେତା ଭାବରେ ଏବଂ ପଞ୍ଜାବ ରହିଲା ତାଙ୍କ ସାମ୍ରାଜ୍ୟର

ଗୋଟାଏ ଉପାନ୍ତ ପ୍ରଦେଶ ହିସାବରେ । ତଥାପି ଜଣେ ଶାସକ ରୂପେ ସେ ସେଠାରେ ନିଜକୁ ପ୍ରତିଷ୍ଠିତ କଲେ ଏବଂ ପଞ୍ଜାବବାସୀଙ୍କୁ ଆପଣାର କରିନେବାପାଇଁ ତାଙ୍କର ପୂର୍ବବର୍ତ୍ତୀ ଉପାୟମାନ ଅନେକାଂଶରେ ନରମ କରିବାର ଉଦ୍ୟମ ହେଲା । ଲୋକଙ୍କ ଜୀବନଧାରାରେ ଆଉ ସେତେ ଭାବରେ ହସ୍ତକ୍ଷେପ କରାଗଲା ନାହିଁ ଏବଂ ସାମରିକ ତଥା ପ୍ରଶାସନ କ୍ଷେତ୍ରରେ ହିନ୍ଦୁମାନଙ୍କୁ ଉଚ୍ଚ ପଦାଧିକାର ଅର୍ପଣ କରାଗଲା । ଏହି ପ୍ରକ୍ରିୟାର ପ୍ରାରମ୍ଭିକ ସୂଚନାମାନ କେବଳ ମହମ୍ମଦଙ୍କ ସମୟରେ ଦେଖିବାକୁ ମିଳେ; ପରବର୍ତ୍ତୀକାଳରେ ଏହା ବୃଦ୍ଧି ପାଇଥିଲା ।

ଖ୍ରୀ: ୧୦୩୦ରେ ମହମ୍ମଦଙ୍କ ମୃତ୍ୟୁ ହେଲା । ତାଙ୍କର ମୃତ୍ୟୁପରେ ଶହେ ଷାଠିଏ ବର୍ଷ ବିତିଗଲେ ମଧ୍ୟ ଭାରତ ଉପରେ ଆଉ ଆକ୍ରମଣ ଘଟିନଥିଲା କିମ୍ବା ପଞ୍ଜାବ ବାହାରକୁ ତୁର୍କୀ ଶାସନ ସମ୍ପ୍ରସାରିତ ହୋଇନଥିଲା । ତଦୁପରି ସାହାବୁଦ୍ଦିନ ଘୋରି ନାମକ ଜଣେ ଆଫଗାନ ଘଜନୀ ଅଧିକାର କରି ଘଜନୀ ସାମ୍ରାଜ୍ୟର ଅବସାନ ଘଟାଇଲେ । ଲାହୋର ପର୍ଯ୍ୟନ୍ତ ସେ ଅଭିଯାନ ଚଳାଇ ଆସିଲେ ଏବଂ ତା'ପରେ ଦିଲ୍ଲୀ ମଧ୍ୟ ଆକ୍ରମଣ କଲେ; କିନ୍ତୁ ଦିଲ୍ଲୀର ରାଜା ପୃଥ୍ୱୀରାଜ ଚୌହାନ ତାଙ୍କୁ ଶୋଚନୀୟ ଭାବରେ ପରାଜିତ କଲେ । ସାହାବୁଦ୍ଦିନ ଆଫଗାନିସ୍ତାନକୁ ହଟିଯାଇ ପରବର୍ଷ ଏକ ବିପୁଳ ସୈନ୍ୟବାହିନୀ ନେଇ ପୁଣି ଭାରତ ଆକ୍ରମଣ କଲେ । ଏଥର ସେ ବିଜୟୀ ହେଲେ ଏବଂ ଖ୍ରୀ: ୧୧୯୨ରେ ଦିଲ୍ଲୀ ସିଂହାସନରେ ଅଧିଷ୍ଠିତ ହେଲେ ।

କେତେ ଲୋକଗୀତ ଓ କିମ୍ବଦନ୍ତୀରେ ପୃଥ୍ୱୀରାଜ ଜଣେ ବୀର ଭାବରେ ଆଜି ସୁଦ୍ଧା ଜୀବିତ ଅଛନ୍ତି; କାରଣ ସବୁ ଦୁର୍ଦ୍ଧର୍ଷ ପ୍ରେମିକ ସବୁ କାଳରେ ଏଭଳି ଜନପ୍ରିୟ ହୋଇଥାନ୍ତି । କାନ୍ୟକୁବ୍ଜର ରାଜା ଜୟଚନ୍ଦ୍ରଙ୍କ କନ୍ୟା ଥିଲେ ତାଙ୍କର ଅନୁରାଗିଣୀ । କନ୍ୟା ନିମନ୍ତେ ଜୟଚନ୍ଦ୍ରଙ୍କର ଆୟୋଜିତ ସ୍ୱୟମ୍ବର ସଭାରୁ ସେ ତାଙ୍କର ପ୍ରିୟତମାଙ୍କୁ ବଳପୂର୍ବକ ନେଇ-ଯାଇଥିଲେ; ଫଳରେ ଅଳ୍ପକାଳ ମଧ୍ୟରେ ଏକ ତିକ୍ତ ସଂଘର୍ଷ ସୃଷ୍ଟି ହେଲା ଏବଂ ଉଭୟ-ପକ୍ଷରୁ ବହୁ ବୀର ଜୀବନ ହରାଇଲେ । ଦିଲ୍ଲୀ ଓ ମଧ୍ୟ-ଭାରତର ବୀରମାନେ ନିଜ ଭିତରେ ଲଢ଼ାଇରେ ଲିପ୍ତ ରହିଲେ ଓ ରକ୍ତର ସ୍ରୋତ ବହିଲା । ଅତଏବ, କେବଳ ଜଣେ ନାରୀ ନିମନ୍ତେ ପୃଥ୍ୱୀରାଜଙ୍କୁ ତାଙ୍କର ସିଂହାସନ ଓ ଜୀବନ ହରାଇବାକୁ ପଡ଼ିଲା ଏବଂ ତାଙ୍କର ରାଜଧାନୀ ଦିଲ୍ଲୀ ବହିର୍ଦେଶୀୟ ଜଣେ ଆକ୍ରମଣକାରୀ ହାତରେ ପଡ଼ିଲା । କିନ୍ତୁ ତାଙ୍କର ଏହି ପ୍ରେମ-କାହାଣୀ ଆଜି ବି ଗୀତ ହେଉଛି ଏବଂ ସେ ବୀରର ଆସନରେ ଅଧିଷ୍ଠିତ ଅଛନ୍ତି । ଆଉ ଜୟଚନ୍ଦ୍ର ଆଜି ବି ଜଣେ ଦେଶଦ୍ରୋହୀ ବିଶ୍ୱାସଘାତକ ଭାବରେ ପରିଚିତ ।

ଏହି ଦିଲ୍ଲୀ-ବିଜୟର ଅର୍ଥ ନୁହେଁ ଯେ ଭାରତ ପଦାନତ ହେଲା । ଦକ୍ଷିଣ-ଭାରତରେ ଚୋଳମାନେ ଶକ୍ତିଶାଳୀ ଥିଲେ ଏବଂ ଆହୁରି କେତେ ସ୍ୱାଧୀନ ରାଜ୍ୟ ବି ଥିଲା । ଦକ୍ଷିଣ ଭାରତର ବୃହତ୍ତର ଅଂଶରେ ଆଫଗାନ ଶାସନ ବିସ୍ତୃତ ହେବାପାଇଁ ଆହୁରି ପ୍ରାୟ ଦେଢ଼ଶହ ବର୍ଷ ଲାଗିଗଲା; କିନ୍ତୁ ଦିଲ୍ଲୀ ଥିଲା ଏହି ନୂତନ ହୁକୁମତ ନିମନ୍ତେ ତାତ୍ପର୍ଯ୍ୟପୂର୍ଣ୍ଣ ଓ ପ୍ରତୀକ ସ୍ୱରୂପ ।

# ୪ . ଇଣ୍ଡୋ-ଆଫଗାନ : ଦକ୍ଷିଣ ଭାରତ : ବିଜୟନଗର : ବାବର : ସାଗରିକ ଶକ୍ତି

ଇଂରେଜ ଓ କେତେ କେତେ ଭାରତୀୟ ଐତିହାସିକମାନେ ଭାରତୀୟ ଇତିହାସକୁ ତିନି-ଗୋଟି ମୁଖ୍ୟ ପର୍ଯ୍ୟାୟରେ ବିଭକ୍ତ କରିଥାନ୍ତି : ପ୍ରାଚୀନ ଅବା ହିନ୍ଦୁ, ମୁସଲିମ ଏବଂ ବ୍ରିଟିଶ । ଏହି ବିଭାଜନ ନିର୍ଭୁଲ ନୁହେଁ କିମ୍ବା ଏଥିରେ ବୁଦ୍ଧିର ପରିଚୟ ନାହିଁ; ଏହା ଭ୍ରମାତ୍ମକ ଏବଂ ପାଠକକୁ ଗୋଟାଏ ଭୁଲ ପରିପ୍ରେକ୍ଷୀ ଯୋଗାଇଥାଏ । ଏଥିରେ ଉପର ସ୍ତରର କେତେକ ତୁଚ୍ଛ ପରିବର୍ତ୍ତନ ଉପରେ ଯେତିକ ଗୁରୁତ୍ୱ ଦିଆଯାଇଛି, ରାଜନୈତିକ ଓ ଅର୍ଥନୈତିକ କ୍ଷେତ୍ରରେ ଅତ୍ୟାବଶ୍ୟକୀୟ ପରିବର୍ତ୍ତନମାନ ପ୍ରତି ଏବଂ ଭାରତୀୟ ଜନସାଧାରଣଙ୍କ ସାଂସ୍କୃତିକ ଉନ୍ନୟନ ପ୍ରତି ସେତେ ଦିଆଯାଇନାହିଁ । ଏହି ତଥାକଥିତ ପ୍ରାଚୀନ ଯୁଗର ବିସ୍ତୃତି ଅତି ବିଶାଳ ଏବଂ ଅଭିବୃଦ୍ଧି, ଅବନତି ଓ ପୁନରପି ଅଭିବୃଦ୍ଧିର ବହୁ ପରିବର୍ତ୍ତନରେ ପୂର୍ଣ୍ଣ । ଯାହାକୁ ମୁସଲିମ୍ ଯୁଗ ବା ମଧ୍ୟଯୁଗ କୁହାଯାଏ, ତାହା ଆଉ ଏକ ପରିବର୍ତ୍ତନ ଆଣିଲା; ଏ ପରିବର୍ତ୍ତନ ଅତି ଗୁରୁତ୍ୱପୂର୍ଣ୍ଣ ମଧ୍ୟ । ତଥାପି ଏହା ଉପର ସ୍ତରରେ ଊଣା ଅଧିକରେ ଆବଦ୍ଧ ରହିଲା ଏବଂ ଭାରତୀୟ ଜୀବନର ଧାରାବାହିକତାରେ ସାରତଃ କୌଣସି ପ୍ରଭାବ ପକାଇ ପାରିନଥିଲା । ଉତ୍ତର-ପଶ୍ଚିମରୁ ଯେଉଁ ଆକ୍ରମଣକାରୀମାନେ ଭାରତକୁ ଆସିଲେ, ପ୍ରାଚୀନ-କାଳରେ ଆସିଥିବା ବହୁ ଆକ୍ରମଣକାରୀଙ୍କ ଭଳି, ଭାରତରେ ଓ ତାର ଜୀବନଧାରାରେ ଲୀନ ହେଲେ । ସେମାନଙ୍କର ବଂଶ ଭାରତୀୟ ବଂଶରେ ପରିଣତ ହେଲା ଓ ପରସ୍ପର ଭିତରେ ବୈବାହିକ ସମ୍ପର୍କ ଫଳରେ ଜାତି ଜାତି ମଧ୍ୟରେ ବ୍ୟବଧାନ ବହୁ ପରିମାଣରେ ସଙ୍କୁଚିତ ହେଲା । ମାତ୍ର କେତେକ ବ୍ୟତିକ୍ରମକୁ ବାଦ୍ ଦେଲେ, ଲୋକଙ୍କ ଜୀବନଧାରା ଓ ପ୍ରଥା, ପରମ୍ପରାରେ ହସ୍ତକ୍ଷେପ ନ କରିବା ପାଇଁ ସୁଚିନ୍ତିତ ଉଦ୍ୟମ କରାଗଲା । ଭାରତକୁ ସେମାନେ ନିଜର ଦେଶ ଭାବରେ ମଣିଲେ ଏବଂ ଭାରତ ବାହାରେ ସେମାନଙ୍କର କୌଣସି ଆନୁଗତ୍ୟ ନଥିଲା । ଭାରତର ସ୍ୱାଧୀନତା ଅବ୍ୟାହତ ରହିଲା ।

ଇଂରେଜମାନଙ୍କ ଆଗମନରେ ଗୋଟାଏ ଗୁରୁତର ପାର୍ଥକ୍ୟ ଦେଖାଦେଲା ଏବଂ ନାନା ଦିଗରେ ପୁରାତନ ବ୍ୟବସ୍ଥା ମୂଳୋତ୍ପାଟିତ ହେଲା । ସେମାନେ ପଶ୍ଚିମରୁ ସମ୍ପୂର୍ଣ୍ଣରୂପେ ଭିନ୍ନ ଏକ ପ୍ରେରଣା ଧରି ଆସିଲେ ଯାହା ମୂଳରୂପରେ ରେନେସାଁ (ପୁନର୍ଜାଗୃତି) ରିଫରମେସନ୍ (ସଂସ୍କାର) ଓ ଇଂଲଣ୍ଡର ରାଜନୈତିକ ବିପ୍ଳବ କାଳରୁ ଧୀରେ ଧୀରେ ବଢ଼ିଉଠିଥିଲା ଓ ଶିଳ୍ପ-ବିପ୍ଳବର ପ୍ରାରମ୍ଭରେ ଯାହା ରୂପ ପରିଗ୍ରହ କରୁଥିଲା । ମାର୍କିନ୍ ଓ ଫରାସୀ ବିପ୍ଳବ ଏହାକୁ ଆହୁରି ବଳବନ୍ତ କଲା । ଇଂରେଜମାନେ ଭାରତରେ ପରଦେଶୀ, ଅନାତ୍ମୀୟ ଓ ଅଯୋଗ୍ୟ ହୋଇ ରହିଲେ । ଅନ୍ୟ ଭାବରେ ପରିଚିତ ହେବାପାଇଁ ସେମାନଙ୍କର ପ୍ରୟାସ ନଥିଲା । ସର୍ବୋପରି ଭାରତର ଇତିହାସରେ ପ୍ରଥମଥର ପାଇଁ ରାଜନୈତିକ ନିୟନ୍ତ୍ରଣ ବାହାରୁ ଜାରି ହେଲା ଏବଂ ତାର ଅର୍ଥନୈତିକ କେନ୍ଦ୍ର ରହିଲା ସୁଦୂର ଏକ ଦେଶରେ । ସେମାନେ ଭାରତକୁ ଆଧୁନିକ ଯୁଗର ଆଦର୍ଶ ଏକ ଉପନିବେଶରେ ପରିଣତ କଲେ । ତାର ଦୀର୍ଘ ଇତିହାସରେ ପ୍ରଥମଥର ପାଇଁ ଭାରତ ହେଲା ଗୋଟାଏ ପରାଧୀନ ଦେଶ ।

ମହମ୍ମଦ ଘଜନୀଙ୍କ ଭାରତ ଆକ୍ରମଣ ଅବଶ୍ୟ ଥିଲା ବିଦେଶାଗତ ତୁର୍କିମାନଙ୍କ ଆକ୍ରମଣ ଏବଂ ପରିଣାମରେ ପଞ୍ଜାବ କିଛୁକାଳପାଇଁ ଭାରତରୁ ବିଚ୍ଛିନ୍ନ ହେଲା । ଦ୍ୱାଦଶ ଶତାବ୍ଦୀ ଶେଷରେ ଆସିଥିବା ଆଫଗାନମାନେ ଭିନ୍ନ ଧରଣର ଥିଲେ । ଭାରତ ସଙ୍ଗେ ଘନିଷ୍ଠଭାବେ ସମ୍ପର୍କିତ, ସେମାନେ ଥିଲେ ଗୋଟାଏ ଇଣ୍ଡୋ-ଭାରତୀୟ ଜାତି । ପ୍ରକୃତପକ୍ଷେ, ଦୀର୍ଘକାଳ-ଧରି ଆଫଗାନିସ୍ତାନ ଭାରତର ଅଂଶବିଶେଷ ହୋଇ ରହିଥିଲା ଏବଂ ତାହା ଅନ୍ୟଥା ନ ହୋଇପାରି ନଥାନ୍ତା । ସେମାନଙ୍କର ଭାଷା ପୁସ୍ତୁ ମୂଳତଃ ସଂସ୍କୃତରୁ ଉତ୍ପନ୍ନ । ଭାରତ କିମ୍ବା ଭାରତ ବାହାରେ ଖୁବ୍ କମ୍ ସ୍ଥାନ ଏପରି ଅଛି ଯେଉଁଠି ଭାରତୀୟ ସଂସ୍କୃତିର ପୁରାତନ ସ୍ମୃତିଚିହ୍ନ ଓ ଧ୍ୱଂସାବଶେଷ, ମୁଖ୍ୟତଃ ବୌଦ୍ଧଯୁଗର, ଏତେ ବହୁଳଭାବରେ ରହିଛି, ଯେତେ ଅଛି ଆଫଗାନିସ୍ତାନରେ । ଆହୁରି ନିର୍ଭୁଲ ଭାବରେ କହିଲେ, ଆଫଗାନ୍‌ମାନଙ୍କୁ ଭାରତୀୟ ଅଫଗାନ କୁହାଯିବା ଉଚିତ । ଭାରତୀୟ ସମତଳଭୂମିର ଲୋକଙ୍କଠାରୁ ନାନା ଭାବରେ ସେମାନେ ଭିନ୍ନ, କାଶ୍ମୀରରେ ପାର୍ବତ୍ୟ ଉପତ୍ୟକାବାସୀ ଲୋକେ ନିମ୍ନଭୂମିର ଉତ୍ତପ୍ତତର ତଥା ସମତଳ ଅଞ୍ଚଳର ଲୋକଙ୍କଠାରୁ ଯେପରି ଭିନ୍ନ ଅଟନ୍ତି । କିନ୍ତୁ ଏହି ପାର୍ଥକ୍ୟ ସତ୍ତ୍ୱେ, କାଶ୍ମୀର ସବୁ ସମୟରେ ଭାରତୀୟ ବିଦ୍ୱତ୍ତା ଓ ସଂସ୍କୃତିର ଗୋଟିଏ ମହତ୍ତ୍ୱପୂର୍ଣ୍ଣ କ୍ଷେତ୍ର ରୂପେ ରହିଆସିଛି । ସଂସ୍କୃତି ତଥା ଚାଲିଚଳଣରେ ଅଧିକତର ଉନ୍ନତ ଆରବ ଓ ପାରସିକ-ମାନଙ୍କଠାରୁ ମଧ୍ୟ ଆଫଗାନମାନେ ଭିନ୍ନ ଥିଲେ । ସେମାନଙ୍କର ପାର୍ବତ୍ୟ ଦୁର୍ଗମାନଙ୍କ ଭଳି ସେମାନେ ଥିଲେ ନିର୍ମମ ଓ ହିଂସ୍ର, ଧର୍ମ ସମ୍ବନ୍ଧରେ କଠୋର ଶୃଙ୍ଖଳାରେ ଆବଦ୍ଧ, ମନର ଦୁଃସାହସିକତା ଅବା ବୌଦ୍ଧିକ କ୍ରିୟାକର୍ମ ପ୍ରତି ବିମୁଖ । ଦୁର୍ଦ୍ଧର୍ଷ ଏକ ବିଦ୍ରୋହୀ ଜାତିର ବିଜେତା ଭାବରେ ପ୍ରଥମାବସ୍ଥାରେ ସେମାନଙ୍କୁ ଆଚରଣ କରିବାକୁ ପଡ଼ୁଥିଲା । ସୁତରାଂ ସେମାନଙ୍କ କାର୍ଯ୍ୟରେ ନିର୍ମମତା ଓ କଠୋରତା ହିଁ ପ୍ରକାଶ ପାଉଥିଲା ।

କିନ୍ତୁ ଅନତିବିଳମ୍ବେ ସେମାନେ ଶାନ୍ତ ହୋଇ ପଡ଼ିଲେ । ଭାରତ ହେଲା ସେମାନଙ୍କର ଘର ଆଉ ଦିଲ୍ଲୀ ସେମାନଙ୍କର ଦେଶ; ମହମ୍ମଦଙ୍କ ସମୟ ପରି ଦୂରସ୍ଥିତ ଘଜନୀ ନୁହେଁ । ଯେଉଁ ଆଫଗାନିସ୍ତାନରୁ ସେମାନେ ଆସିଥିଲେ ତାହା ହୋଇପଡ଼ିଲା ସେମାନଙ୍କ ରାଜ୍ୟର ଗୋଟାଏ ଉପାନ୍ତ ଅଂଶ । ଭାରତୀୟକରଣ ବା ହିନ୍ଦୀ କରଣ ପ୍ରକ୍ରିୟା ଖୁବ୍ କ୍ଷିପ୍ର ଥିଲା ଏବଂ ସେମାନଙ୍କ ଭିତରୁ ଅନେକେ ଭାରତୀୟ ରମଣୀଙ୍କ ପାଣି ଗ୍ରହଣ କଲେ । ସେମାନଙ୍କର ଅନ୍ୟତମ ମହାନ୍ ଶାସକ ଆଲ୍ଲାଉଦ୍ଦିନ ଖିଲଜୀ ଓ ତାଙ୍କର ପୁତ୍ର ମଧ୍ୟ ହିନ୍ଦୁ ରମଣୀ ବିବାହ କରିଥିଲେ । ଜାତି ଦିଗରୁ ଦେଖିଲେ ପରବର୍ତ୍ତୀ କେତେକ ଶାସକ ଯଥା କୁତୁବୁଦ୍ଦିନ ଆଇବେକ୍, ସୁଲତାନା ରେଜିୟା ଓ ଇଲ୍‌ତୁତମିସ୍ ତୁର୍କ ଥିଲେ; କିନ୍ତୁ ଓମରାହ ଓ ସମ୍ଭ୍ରାନ୍ତ ଲୋକଙ୍କ ଭିତରେ ଏବଂ ସେନାବାହିନୀରେ ଆଫ୍‌ଗାନମାନେ ହିଁ ସଂଖ୍ୟାଧିକ ଥିଲେ । ଦିଲ୍ଲୀ ଗୋଟାଏ ସାମ୍ରାଜ୍ୟର କେନ୍ଦ୍ର ଭାବରେ ଐଶ୍ୱର୍ଯ୍ୟ ଓ ଆଡ଼ମ୍ବର ପ୍ରକାଶ କଲା । ମରୋକୋର ବିଖ୍ୟାତ ଆରବ ପରିବ୍ରାଜକ ଇବନବତୁତା ଯିଏ ବହୁ ଦେଶ ଭ୍ରମଣ କରି, କାଇରୋ ଓ କନ୍‌ଷ୍ଟାଣ୍ଟିନୋପଲରୁ ଚୀନ ପର୍ଯ୍ୟନ୍ତ, ବହୁ ନଗରୀ ଦେଖିଥିଲେ, ଚତୁର୍ଦ୍ଦଶ ଶତକରେ,

ହୁଏତ କିଛିଟା ଅତିରଞ୍ଜିତ କରି, ଦିଲ୍ଲୀକୁ 'ବିଶ୍ୱବ୍ରହ୍ମାଣ୍ଡର ଅନ୍ୟତମ ମହାନ୍ ନଗରୀ' ବୋଲି ବର୍ଣ୍ଣନା କରିଛନ୍ତି ।

ଦିଲ୍ଲୀର ସୁଲତାନୀଶାସନ ଦକ୍ଷିଣ ଆଡ଼କୁ ପ୍ରସୃତ ହେଲା । ଚୋଳ ରାଜ୍ୟ ଅବନତ ହୋଇ ଆସୁଥିଲା; କିନ୍ତୁ ତାର ସ୍ଥାନରେ ବଢ଼ି ଉଠୁଥିଲା ଗୋଟାଏ ନୂତନ ସାମୁଦ୍ରିକ ଶକ୍ତି । ଏହା ହେଉଛି ପାଣ୍ଡ୍ୟ ରାଜ୍ୟ । ଏହାର ରାଜଧାନୀ ଥିଲା ମଦୁରା ଓ ଏହାର ବନ୍ଦର ପୂର୍ବୋପକୂଳରେ ଅବସ୍ଥିତ କୟାଲ୍ । ଗୋଟାଏ କ୍ଷୁଦ୍ର ରାଜ୍ୟ ହେଲେ ସୁଦ୍ଧା ବାଣିଜ୍ୟର ଏହା ଏକ ମହାନ କେନ୍ଦ୍ର ଥିଲା । ଖ୍ରୀ: ୧୨୮୮ ଓ ୧୨୯୩ରେ, ଦୁଇଥର ଚୀନରୁ ଫେରିବା ବାଟରେ ମାର୍କୋପୋଲୋ ଏହି ବନ୍ଦରରେ ପାଦ ଦେଇଥିଲେ ଏବଂ ଏହାକୁ ସେ 'ଏକ ବିଶାଳ ତଥା ସମ୍ଭ୍ରାନ୍ତ ନଗରୀ' ଯେଉଁଠି ଆରବ ଓ ଚୀନରୁ ଆଗତ ଜାହାଜ ନଙ୍ଗର କରିଥାଏ ବୋଲି ବର୍ଣ୍ଣନା କରିଛନ୍ତି । ଭାରତର ପୂର୍ବୋପକୂଳରେ ବୁଣାଯାଉଥିବା 'ଊର୍ଣ୍ଣନାଭତନ୍ତୁ ଭଳି' ସୂକ୍ଷ୍ମ ବସନ ସମ୍ପର୍କରେ ମଧ୍ୟ ସେ ଉଲ୍ଲେଖ କରିଛନ୍ତି । ଆଉ ଏକ କୌତୂହଳର କଥା ମଧ୍ୟ ମାର୍କୋପୋଲୋଙ୍କ ପାଖରୁ ଜାଣିବାକୁ ମିଳେ । ସେ କହନ୍ତି ଯେ ସମୁଦ୍ରପଥରେ ଆରବ ଓ ପାରସ୍ୟରୁ ଦକ୍ଷିଣ-ଭାରତକୁ ବହୁତ ଘୋଡ଼ା ଆମଦାନୀ କରାଯାଉଥିଲା । ଅଶ୍ୱ ଅଭିଜନନ ନିମନ୍ତେ ଦକ୍ଷିଣ-ଭାରତର ଜଳବାୟୁ ଉପଯୁକ୍ତ ନଥିଲା । ଅନ୍ୟାନ୍ୟ ବ୍ୟବହାର ବ୍ୟତୀତ ସାମରିକ କାର୍ଯ୍ୟ ନିମନ୍ତେ ଅଶ୍ୱ ଆବଶ୍ୟକ ହେଉଥିଲା । ଅଶ୍ୱ ଅଭିଜନନର ପ୍ରକୃଷ୍ଟ କ୍ଷେତ୍ର ଥିଲା ମଧ୍ୟ ଓ ପଶ୍ଚିମ ଏସିଆରେ ଏବଂ ଏଥିରୁ କେତେ ପର୍ଯ୍ୟନ୍ତ ଯୁଦ୍ଧବିଦ୍ୟାରେ ମଧ୍ୟ-ଏସିଆର ଜାତିମାନଙ୍କ ଉତ୍କର୍ଷ ଭଲ ଭାବରେ ବୁଝି ହୁଏ । ଚେଙ୍ଗିଜ୍ ଖାଁଙ୍କ ମଙ୍ଗୋଲମାନେ ଉଚ୍ଚ-କୋଟୀର ଅଶ୍ୱାରୋହୀ ଥିଲେ ଏବଂ ଅଶ୍ୱ ପ୍ରତି ସେମାନଙ୍କର ଅନୁରକ୍ତି ପ୍ରବଳ ଥିଲା । ଅଶ୍ୱାରୋହୀ ଭାବରେ ତୁର୍କମାନଙ୍କର ମଧ୍ୟ କୁଶଳତା ଥିଲା ଏବଂ ଆରବ ଯୋଦ୍ଧାର ଅଶ୍ୱ ପ୍ରତି ଅନୁରକ୍ତି ସର୍ବଜନବିଦିତ । ଉତ୍ତର ଓ ପଶ୍ଚିମ-ଭାରତରେ, ବିଶେଷତଃ କାଥିଆବାଡ଼ରେ, ଅଶ୍ୱ ଅଭିଜନନର କେତେକ ଉତ୍ତମ କ୍ଷେତ୍ର ରହିଛି । ଆଉ ରାଜପୁତମାନେ ଅଶ୍ୱ ପ୍ରତି ଶ୍ରଦ୍ଧା ରଖିବା ତ ସମସ୍ତେ ଜାଣନ୍ତି । କୌଣସି ଏକ ବିଶିଷ୍ଟ ଅବା ବିଖ୍ୟାତ ଅଶ୍ୱ ନିମନ୍ତେ ଘୋରତର ଯୁଦ୍ଧ ବି ବେଳେବେଳେ ଘଟିଯାଇଛି । ଦିଲ୍ଲୀର ଜଣେ ସୁଲତାନ ଜଣେ ରାଜପୁତ ସର୍ଦ୍ଦାରଙ୍କ ଅଶ୍ୱଟିକୁ ପସନ୍ଦ କରି ତାହା ମାଗିଥିବା ବିଷୟରେ ଗୋଟିଏ କାହାଣୀ ଅଛି । ହାଡ଼ା ସର୍ଦ୍ଦାର ଲେଖି ସମ୍ରାଟଙ୍କୁ ଉତ୍ତର କଲେ, "ରାଜପୁତ ପାଖରୁ ତିନୋଟି ବସ୍ତୁ ଆପଣ କେବେହେଲେ ମାଗିବେନି : ତାର ଅଶ୍ୱ, ତାର ସ୍ତ୍ରୀ ଓ ତାର ଖଡ୍ଗ ।" ଏତିକି କହି ସେ ଅଶ୍ୱ ଛୁଟାଇ ଚାଲିଗଲେ । ଏହି ଘଟଣା ଲାଗି ପରେ ଜଟିଳତା ସୃଷ୍ଟି ହୋଇଥିଲା ।

ଚତୁର୍ଦ୍ଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ତୁର୍କ ଅବା ତୁର୍କ-ମଙ୍ଗୋଲ ତୈମୁର ଉତ୍ତର ଦିଗରୁ ଭାରତରେ ପ୍ରବେଶକରି ଦିଲ୍ଲୀର ସୁଲତାନୀ ଶାସନ ଧ୍ୱଂସ କଲେ । ସ୍ୱଳ୍ପ କେତେ ମାସ ପାଇଁ କେବଳ ସେ ଭାରତରେ ରହିଥିଲେ । ଦିଲ୍ଲୀ ଆସି ସେ ଫେରିଗଲେ; କିନ୍ତୁ ତାଙ୍କର ଫେରିବା ବାଟରେ ତାଙ୍କଦ୍ୱାରା ନିହତ ମଣିଷ ମୁଣ୍ଡରେ ରଚିତ ସ୍ତୂପବହୁଳ ଏକ ଜଙ୍ଗଲ ସୃଷ୍ଟି କରିଦେଇ ଗଲେ । ଏପରିକି ଦିଲ୍ଲୀ ମଧ୍ୟ ଗୋଟାଏ ଶବ-ନଗରୀରେ ପରିଣତ ହେଲା ।

ସୌଭାଗ୍ୟବଶତଃ ଭାରତର ଭିତରକୁ ସେ ପ୍ରବେଶ କରିନଥିଲେ । ପଞ୍ଜାବର କେତେକ ଅଂଶ ଓ ଦିଲ୍ଲୀକୁ କେବଳ ଏହି ଅଭୂତପୂର୍ବ ଦୁର୍ଦ୍ଦଶା ତାଙ୍କ ହାତରେ ଭୋଗିବାକୁ ପଡ଼ିଥିଲା ।

ମୃତ୍ୟୁର ଏହି ଘୋରନିଦ୍ରାରୁ ଜାଗରିତ ହେବା ପାଇଁ ଦିଲ୍ଲୀକୁ ବହୁବର୍ଷ ଲାଗିଥିଲା ଏବଂ ଚେତନାପ୍ରାପ୍ତ ହେବା ପରେ ମଧ୍ୟ ତାହା ଗୋଟାଏ ବିଶାଳ ସାମ୍ରାଜ୍ୟର ରାଜଧାନୀ ହୋଇ ଆଉ ନଥିଲା । ତୈମୁରଙ୍କ ରଣତାଣ୍ଡବ ସେହି ସାମ୍ରାଜ୍ୟକୁ ଖଣ୍ଡବିଖଣ୍ଡିତ କରିଥିଲା ଏବଂ ସେଥିରୁ ଦକ୍ଷିଣ-ଭାରତରେ କ୍ଷୁଦ୍ର କ୍ଷୁଦ୍ର ବହୁ ରାଜ୍ୟ ଗଢ଼ି ଉଠିଥିଲା । ଏହାର ବହୁ ପୂର୍ବରୁ, ଚତୁର୍ଦ୍ଦଶ ଶତକର ଆଦ୍ୟଭାଗରେ ବାହାମିନି ରାଜ୍ୟ (୧) ନାମରେ ଅଭିହିତ ଗୁଲବର୍ଗା ଓ ହିନ୍ଦୁ ରାଜ୍ୟ ବିଜୟନଗର ଦୁଇଟି ମହାନ୍ ରାଜ୍ୟ ଗଢ଼ି ଉଠିଥିଲା । ଗୁଲ୍‌ବର୍ଗା ପାଞ୍ଚଗୋଟି ରାଜ୍ୟରେ ବିଭକ୍ତ ହୋଇପଡ଼ିଲା । ଏଥିରୁ ଗୋଟିଏ ହେଉଛି ଅହମ୍ମଦନଗର । ଖ୍ରୀ: ୧୪୯୦ରେ ଅହମ୍ମଦନଗର ରାଜ୍ୟର ପ୍ରତିଷ୍ଠାତା ଅହମ୍ମଦ ନିଜାମ ଶାହ ବାହାମିନି ରାଜାଙ୍କ ଅନ୍ୟତମ ମନ୍ତ୍ରୀ ନିଜାମ-ଉଲ୍-ମୁଲ୍‌କ ଭୈରୀଙ୍କ ପୁତ୍ର ଥିଲେ । ଏହି ନିଜାମ-ଉଲ୍-ମୁଲ୍‌କ, ଭୈରୁ ନାମକ ଜଣେ ବ୍ରାହ୍ମଣ ହିସାବରକ୍ଷକଙ୍କ ପୁତ୍ର ଥିଲେ । 'ଭୈରୁ'ରୁ ଭୈରୀ ନାମର ସୃଷ୍ଟି । ଅତଏବ, ଅହମ୍ମଦନଗରର ରାଜବଂଶ ଥିଲା ଦେଶଜ । ଅହମ୍ମଦନଗରର ସୀରାଙ୍ଗନା ରାଣୀ ଚାନ୍ଦବିବିଙ୍କ ଧମନୀର ରକ୍ତ ବି ଥିଲା ମିଶ୍ରିତ । ପ୍ରକୃତ ପକ୍ଷେ, ଦକ୍ଷିଣରେ ସମସ୍ତ ମୁସଲମ୍ ରାଜ୍ୟ ଥିଲା ଦେଶଜ ଓ ଭାରତୀୟ ।

ତୈମୁରଙ୍କ ଦିଲ୍ଲୀଦଳନ ପରେ ଉତ୍ତର ଭାରତ ଦୁର୍ବଳ ଓ ବିଭକ୍ତ ହୋଇ ରହିଲା । ଦକ୍ଷିଣ-ଭାରତର ଅବସ୍ଥା ଭଲ ଥିଲା ଏବଂ ସେଠାର ରାଜ୍ୟମାନଙ୍କ ଭିତରେ ବୃହତ୍ତମ ଓ ଅତ୍ୟନ୍ତ ଶକ୍ତିଶାଳୀ ଥିଲା ବିଜୟନଗର । ଏହି ରାଜ୍ୟ ଓ ନଗରୀ ଉତ୍ତରାଖଣ୍ଡର ବହୁ ହିନ୍ଦୁ ବାସ୍ତୁହରାଙ୍କୁ ଆକର୍ଷିତ କଲା । ସମସାମୟିକ ବିବରଣୀରୁ ଜଣାଯାଏ ଯେ ସେହି ନଗରୀ ବିତ୍ତଶାଳୀ ଓ ସୌନ୍ଦର୍ଯ୍ୟରେ ଅନୁପମ ଥିଲା । ମଧ୍ୟ-ଏସିଆର ପର୍ଯ୍ୟଟକ ଅବଦୁର୍ ରଜକ୍ କହନ୍ତି : "ସମଗ୍ର ପୃଥିବୀରେ ଏହି ନଗରୀ (ବିଜୟନଗର)ରୂପୀ ଆଉ ସ୍ଥାନ ଅଛି ବୋଲି ଆଖି ଦେଖିନି କିମ୍ବା କାନ ଶୁଣିନି ।" ବଜାରମାନଙ୍କ ପାଇଁ ସୁଶୋଭିତ ବୀଥିକା ଓ ଖିଲାଣମାନ ନିର୍ମିତ ହୋଇଥିଲା ଏବଂ ଏହିପୁର ମଧ୍ୟଭାଗରେ ଥିଲା ରାଜାଙ୍କ ସୁବିଶାଳ ପ୍ରାସାଦ, 'ଯାହାକୁ ଘେରି ସମତଳ, ଚିକ୍‌କଣ କଟାପଥରନିର୍ମିତ ଜଳପୂର୍ଣ୍ଣ ପରିଖାମାନ ରହିଥିଲା ।' ସମଗ୍ର ନଗରୀ ଥିଲା ଉଦ୍ୟାନବହୁଳ ଏବଂ ସେଥିହେତୁରୁ କେବଳ ଖ୍ରୀ: ୧୪୨୦ରେ ଇଟାଲୀୟ ପର୍ଯ୍ୟଟକ ନିକୋଲେ କୋଣ୍ଟି ଏହାର ପରିଧି ଷାଠିଏ ମାଇଲ୍ ବୋଲି ଲେଖିଚନ୍ତି । ପରବର୍ତ୍ତୀ

(୧) ବାହାମିନି ରାଜ୍ୟର ଉତ୍ପତ୍ତି ଓ ନାମକରଣ ବଡ଼ ଚିତ୍ତାକର୍ଷକ । ଏହି ରାଜ୍ୟର ପ୍ରତିଷ୍ଠାତା ଥିଲେ ଜଣେ ପଠାଣ (ଅଫ୍‌ଗାନ) ଯାହାଙ୍କ ଆଦ୍ୟ ଜୀବନର ଅନୁପୃଷ୍ଠ ଥିଲେ ଗଙ୍ଗୁ ନାମକ ଜଣେ ବ୍ରାହ୍ମଣ । କୃତଜ୍ଞତା ସ୍ୱୀକାର ସ୍ୱରୂପ ସେ ତାଙ୍କର ବଂଶର ନାମ ରଖିଲେ 'ବ୍ରାହ୍ମଣୀ' ।

ସମୟର ପାଏସ୍ ନାମକ ଜଣେ ଓଲନ୍ଦାଜ (ପର୍ତ୍ତୁଗୀଜ) ପର୍ଯ୍ୟଟକ, ଖ୍ରୀ: ୧୫୨'ରେ ପୁନର୍ଜାଗରଣ କାଳର ଇଟାଲୀସ୍ଥ ନଗରୀମାନ ପରିଦର୍ଶନ ସାରି ଭାରତକୁ ଯିଏ ଆସିଥିଲେ, ଏହି ନଗରୀ ସମ୍ପର୍କରେ କହନ୍ତି : "ବିଜୟନଗର ନଗରୀ ରୋମ୍ ନଗରୀ ଭଳି ବିଶାଳ ଓ ନୟନାଭିରାମ"; ଅଗଣିତ ଜଳାଶୟ, ନାବ୍ୟ-ନାଳିକା ଓ ସୁମିଷ୍ଟ ଫଳୋଦ୍ୟାନମାନ ନଗରୀକୁ ସୌନ୍ଦର୍ଯ୍ୟ ଓ ସ୍ୱାସ୍ଥ୍ୟର ଆଧାର କରିଛି । 'ସର୍ବତୋଭାବେ ସୁବ୍ୟବସ୍ଥିତ, ବିଶ୍ୱରେ ଅଦ୍ୱିତୀୟ ଏହି ନଗରୀ' ଏବଂ ଏଠାରେ 'ସବୁ କିଛିର ପ୍ରାଚୁର୍ଯ୍ୟ' ଦୃଷ୍ଟିରେ ପଡ଼େ । ରାଜପ୍ରାସାଦର ପ୍ରକୋଷ୍ଠଗୁଡ଼ିକ ଗଜଦନ୍ତନିର୍ମିତ କାରୁକାର୍ଯ୍ୟରେ ପୂର୍ଣ୍ଣ । ଦ୍ୱାର ଓ ବାତାୟନ-ଶୀର୍ଷ ଗଜଦନ୍ତ-ନିର୍ମିତ ଓ ପଦ୍ମବିମଣ୍ଡିତ । 'ଏହା ଏତେ ସୁନ୍ଦର ଓ ସମୃଦ୍ଧ ଯେ, ଏଭଳି ଏକ ସ୍ଥାନ ଅନ୍ୟତ୍ର ବିରଳ ।' ବିଜୟନଗରର ଅଧିପତି ରାଜା କୃଷ୍ଣଦେବରାୟଙ୍କ ସମ୍ପର୍କରେ ପାଏସ୍ ଲେଖିଛନ୍ତି : "ଏହାଙ୍କ ଠାରୁ ବଳି ସଦ୍‌ଗୁଣାଧାର ଓ ପରାକ୍ରମଶାଳୀ ରାଜା ମୁଁ ଅନ୍ୟତ୍ର ଦେଖିନାହିଁ । ପ୍ରସନ୍ନବଦନ ରାଜା ବଡ଼ ବିନୋଦପ୍ରିୟ । ବିଦେଶାଗତ ଅତିଥି ଅଭ୍ୟାଗତମାନଙ୍କୁ, ସେମାନେ ଯେଉଁ ଅବସ୍ଥାର ହୋଇଥାନ୍ତୁ ନା କାହିଁକି, କୁଶଳ ପ୍ରଶ୍ନ କରି ସ୍ୱାଗତ କରନ୍ତି ଓ ଯଥୋଚିତ ସମ୍ମାନ ପ୍ରଦର୍ଶନ କରନ୍ତି ।"

ଦକ୍ଷିଣରେ ବିଜୟନଗରର ପ୍ରତିଷ୍ଠା ଓ ପରାକ୍ରମ ଅବ୍ୟାହତ ରହିଥିଲାବେଳେ, ଦିଲ୍ଲୀର କ୍ଷୁଦ୍ର ସୁଲତାନ ରାଜତ୍ୱକୁ ନୂତନ ଏକ ଶତ୍ରୁର ସମ୍ମୁଖୀନ ହେବାକୁ ପଡ଼ିଲା । ଉତ୍ତରସ୍ଥ ପର୍ବତଶ୍ରେଣୀ ଭିତରୁ ଆଉ ଏକ ଆକ୍ରମଣକାରୀ ଅବତରଣ କଲା ଏବଂ ଦିଲ୍ଲୀ ନିକଟସ୍ଥ ବିଖ୍ୟାତ ପାନିପଥ ଯୁଦ୍ଧକ୍ଷେତ୍ରରେ, ଭାରତର ଭାଗ୍ୟ ବହୁବାର ଯେଉଁଠି ନିର୍ଣ୍ଣୀତ ହୋଇଛି, ଖ୍ରୀ. ୧୫୨୬ରେ ଦିଲ୍ଲୀର ସିଂହାସନ ଜୟ କଲା । ଏହି ଆକ୍ରମଣକାରୀ ବିଜେତା ମଧ୍ୟ-ଏସିଆର ତୈମୁରୀୟ ବଂଶଜ ରାଜକୁମାର ତୁର୍କ-ମଙ୍ଗୋଲ ଜାତୀୟ ବାବର । ଏହି ବାବରଙ୍କ ଠାରୁ ଭାରତରେ ମୋଗଲ-ସାମ୍ରାଜ୍ୟର ଆରମ୍ଭ ।

ବାବରଙ୍କ ସଫଳତା ସମ୍ଭବତଃ ଦିଲ୍ଲୀ ସୁଲତାନଙ୍କ ବିବିଧ ଦୁର୍ବଳତା ଯୋଗୁଁ କେବଳ ନୁହେଁ, ବରଂ ତାଙ୍କ ହାତରେ ଥିବା ନୂତନ ଓ ଉନ୍ନତ ଧରଣର କମାଣ ଯୋଗୁଁ ଯାହା ସେ ସମୟରେ ଭାରତରେ ପ୍ରଚଳିତ ହୋଇ ନଥିଲା । ଏହି କାଳରୁ ବିକାଶଶୀଳ ସମର-ବିଜ୍ଞାନରେ ଭାରତ ପଛରେ ପଡ଼ିଯିବା ଅନୁମିତ ହୁଏ । ଏପରି କହିବା ଆହୁରି ନିର୍ଭୁଲ୍ ହେବ ଯେ ଏହି ବିଜ୍ଞାନରେ ୟୁରୋପ ଅଗ୍ରଗତି କଲାବେଳେ ସମଗ୍ର ଏସିଆ ଯଥାତଥା ଅବସ୍ଥାରେ ରହିଥିଲା । ଭାରତରେ ଦୁଇଶତ ବର୍ଷ ଧରି ଶକ୍ତିଶାଳୀ ରହିଥିଲେ ମଧ୍ୟ ମହାନ୍ ମୋଗଲ-ସାମ୍ରାଜ୍ୟ ସପ୍ତଦଶ ଶତକଠାରୁ ୟୁରୋପୀୟ ସେନାବାହିନୀ ସଙ୍ଗେ ସମକକ୍ଷ ଭାବରେ ପ୍ରତିଯୋଗିତା କରିପାରି ନାହିଁ । କିନ୍ତୁ ସମୁଦ୍ରପଥ ଉପରେ ନିୟନ୍ତ୍ରଣ ନ ଥିଲେ କୌଣସି ୟୁରୋପୀୟ ସାମରିକ ବାହିନୀ ଭାରତକୁ ଆସିପାରି ନଥାନ୍ତା । ଏହି କେତେକ ଶତକରେ ଯେଉଁ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟିଥିଲା; ତାହା ହେଉଛି ୟୁରୋପୀୟ ସମୁଦ୍ର-ଶକ୍ତିର ବିକାଶ । ପଞ୍ଚଦଶ ଶତକରେ ଦକ୍ଷିଣରେ ଚୋଳ ରାଜ୍ୟର ପତନ ସଙ୍ଗେ ଭାରତୀୟ ସମୁଦ୍ର-ଶକ୍ତି ଦ୍ରୁତ

ଅବନତି ଭଜିଲା । କ୍ଷୁଦ୍ର ପାଣ୍ଡ୍ୟ ରାଜ୍ୟ ସମୁଦ୍ର ସଙ୍ଗେ ଘନିଷ୍ଠ ଭାବରେ ସମ୍ପୃକ୍ତ ଥିଲେ ସୁଦ୍ଧା ଯଥେଷ୍ଟ ଭାବରେ ବଳଶାଳୀ ନଥିଲା । ସେ ଯାହାହେଉ, ଭାରତୀୟ ଉପନିବେଶଗୁଡ଼ିକ, ପଞ୍ଚଦଶ ଶତକରେ ଆରବମାନଙ୍କ ଦ୍ୱାରା ବିତାଡ଼ିତ ହେବା ପର୍ଯ୍ୟନ୍ତ, ଭାରତ ମହାସାଗର ଉପରେ କର୍ତ୍ତୃତ୍ୱ ରଖିଥିଲେ । ଆରବମାନଙ୍କ ପରେ ପରେ ଭାରତ ମହାସାଗରରେ ଦେଖାଦେଲେ ପର୍ତ୍ତୁଗୀଜମାନେ ।

## ୫. ମିଶ୍ର ସଂସ୍କୃତିର ସମନ୍ୱୟ ଓ ଅଭିବୃଦ୍ଧି
## ପର୍ଦ୍ଦାପ୍ରଥା : କବୀର : ଗୁରୁ ନାନକ : ଅମୀର ଖୁସ୍ରୁ

ଅତଏବ, ଭାରତ ଉପରେ ମୁସଲିମ୍ ଆକ୍ରମଣ ଅଥବା ଭାରତରେ ମୁସଲିମ୍ ଯୁଗ ବୋଲି କହିବା ଭୁଲ ଓ ଭ୍ରମାତ୍ମକ ହେବ । ସେହିପରି ଭାରତକୁ ଇଂରେଜମାନଙ୍କ ଆଗମନ ଗୋଟାଏ ଖ୍ରୀଷ୍ଟାନ ଅଭିଯାନ ବୋଲି ଉଲ୍ଲେଖ କରିବା କିମ୍ବା ଭାରତରେ ତାହା ବ୍ରିଟିଶ୍ ଯୁଗ ଅଥବା ଖ୍ରୀଷ୍ଟାନ ଯୁଗ କହିବା ମଧ୍ୟ ଭୁଲ୍ ହେବ । ଇସଲାମ୍ ଭାରତକୁ ଆକ୍ରମଣ କରି ନଥିଲା; ବହୁ ଶତାବ୍ଦୀ ପୂର୍ବରୁ ଭାରତକୁ ତାର ଆଗମନ ଘଟିଥିଲା । ଭାରତ ଉପରେ ତୁର୍କି (ମହମ୍ମଦଙ୍କ) ଆକ୍ରମଣ, ଆଫଗାନ୍ ଆକ୍ରମଣ ଏବଂ ପରେ ତୁର୍କି-ମଙ୍ଗୋଲ୍ ଅଥବା ମୋଗଲ ଆକ୍ରମଣ ଘଟିଲା । ଏଥିରୁ ଶେଷ ଦୁଇଟି ଆକ୍ରମଣ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଆଫଗାନ୍‌ମାନଙ୍କୁ ଭାରତୀୟ ସୀମାନ୍ତବର୍ତ୍ତୀ ଗୋଟାଏ ସମ୍ପ୍ରଦାୟ ବୋଲି ବିବେଚନା କରାଯାଇ ପାରେ । ଭାରତପକ୍ଷରେ ସେମାନେ ଅପରିଚିତ କିମ୍ବା ପରଦେଶୀ ନଥିଲେ କହିଲେ ଚଳେ ଏବଂ ସେମାନଙ୍କର ରାଜନୈତିକ ଆଧିପତ୍ୟ କାଳକୁ ଇଣ୍ଡୋ-ଆଫଗାନ୍ କାଳ କହିବା ଠିକ୍ ହେବ । ମୋଗଲମାନେ ଭାରତପକ୍ଷରେ ଅପରିଚିତ ଓ ବିଦେଶୀ ଥିଲେ । ତଥାପି ମଧ୍ୟ ଭାରତୀୟ ବ୍ୟବସ୍ଥା ସଙ୍ଗେ ଚମତ୍କାର କ୍ଷିପ୍ରତା ସହକାରେ ସେମାନେ ନିଜକୁ ଖାପଖୁଆଇ ନେଲେ ଏବଂ ଭାରତରେ ଇଣ୍ଡୋ-ମୋଗଲ କାଳ ଆରମ୍ଭ କଲେ ।

ନିଜର ଖୁସି ଅନୁସାରେ ହେଉ କିମ୍ବା ପରିସ୍ଥିତିର ବାଧ୍ୟତା ଫଳରେ ହେଉ, କିମ୍ବା ଉଭୟ କାରଣରୁ ହେଉ, ଆଫଗାନ୍ ଶାସକମାନେ ଓ ସେମାନଙ୍କ ସଙ୍ଗେ ଭାରତକୁ ଆସିଥିବା ଲୋକେ ଭାରତରେ ମିଶିଗଲେ । ସେମାନଙ୍କର ବଂଶ ସମ୍ପୂର୍ଣ୍ଣ ଭାବରେ ଭାରତୀୟ ବଂଶ-ବୃକ୍ଷରେ ପରିଣତ ହେଲା । ଭାରତକୁ ସେମାନେ ଦେଖିଲେ ନିଜର ଘର ଭାବରେ ଓ ଅବଶିଷ୍ଟ ଦୁନିଆଁ ସେମାନଙ୍କ ପକ୍ଷରେ ବିଦେଶ ହୋଇ ରହିଲା । ରାଜନୈତିକ ସଂଘାତ ସତ୍ତ୍ୱେ ସର୍ବସାଧାରଣରେ ସେମାନେ ଭାରତୀୟ ବିବେଚିତ ହେଉଥିଲେ ଏବଂ ଏପରିକି ରାଜପୁତ ରାଜାମାନଙ୍କ ଭିତରୁ ମଧ୍ୟ ଅନେକେ ସେମାନଙ୍କୁ ରାଜାଧିରାଜ ଭାବରେ ସ୍ୱୀକାର କଲେ; କିନ୍ତୁ ଅନ୍ୟ ରାଜପୁତ ସର୍ଦ୍ଦାରମାନେ ମଧ୍ୟ ଥିଲେ ଯେଉଁମାନେ ଆଫଗାନ ଶାସକଙ୍କ ପ୍ରଭୁତ୍ୱ ଅସ୍ୱୀକାର କରୁଥିଲେ ଏବଂ ସେଥିଲାଗି ପ୍ରବଳ ସଂଘର୍ଷ ବି ଘଟୁଥିଲା । ଦିଲ୍ଲୀର ଜଣେ ବହୁବନ୍ଦିତ ସୁଲତାନ ଫିରୋଜ ଶାହଙ୍କ ମାତା ଥିଲେ ହିନ୍ଦୁ । ଘିଆସୁଦ୍ଦୀନ ତୋଗଲକଙ୍କ

ମାତା ମଧ୍ୟ ହିନ୍ଦୁ ଥିଲେ । ଅଫଗାନ ଓ ତୁର୍କୀ ଓମରାହ ଏବଂ ହିନ୍ଦୁ ସର୍ଦ୍ଦାର ସାମନ୍ତଙ୍କ ମଧ୍ୟରେ ଏ ପ୍ରକାର ବୈବାହିକ ସମ୍ପର୍କ ଅଦ୍ଭୁତ ହେଉନଥିଲା । ତଥାପି ସ୍ଥାନେ ସ୍ଥାନେ ଏହା ଘଟୁଥିଲା । ଦକ୍ଷିଣ-ଭାରତରେ ଗୁଲ୍‌ବର୍ଗାର ମୁସଲମ୍ ଅଧିପତି ବିଜୟନଗରର ଜଣେ ହିନ୍ଦୁ ରାଜକନ୍ୟାଙ୍କୁ ଖୁବ୍ ଆଡ଼ମ୍ବର ସହକାରେ ବିବାହ କରିଥିଲେ ।

ଯେପରି ଅନୁମିତ ହୁଏ, ମଧ୍ୟ-ଏସିଆ ଓ ପଶ୍ଚିମ-ଏସିଆର ମୁସ୍‌ଲିମ୍ ଦେଶମାନଙ୍କରେ ଭାରତୀୟମାନଙ୍କର ଖୁବ୍ ସୁନାମ ଥିଲା । ଏକାଦଶ ଶତକ ସୁଦ୍ଧା ଅର୍ଥାତ୍ ଭାରତରେ ଆଫ୍‌ଗାନ ବିଜୟ ପୂର୍ବରୁ ଜଣେ ମୁସଲିମ୍ ଭୂଗୋଳବିତ୍ ଲେଖିଥିଲେ : "ଭାରତୀୟମାନେ ସ୍ୱଭାବତଃ ନ୍ୟାୟପରାୟଣ ଏବଂ ସେମାନଙ୍କର କାର୍ଯ୍ୟରେ ସେମାନେ ଏ କଥା ପ୍ରମାଣ କରିଥାନ୍ତି । ସେମାନଙ୍କର ବିଶ୍ୱସ୍ତତା, ସାଧୁତା ଏବଂ କୌଣସି ନିଯୋଗ ପ୍ରତି ସେମାନଙ୍କର ଏକୈକନିଷ୍ଠା ସର୍ବଜନବିଦିତ ଏବଂ ଏହିସବୁ ଗୁଣ ନିମନ୍ତେ ସେମାନେ ଏତେ ବିଖ୍ୟାତ ଯେ ସବୁ ଦେଶରୁ ଲୋକେ ଯାଇ ସେମାନଙ୍କ ଦେଶ ଭାରତରେ ରୁଣ୍ଡ ହୋଇଥାନ୍ତି । (୧)

କ୍ରମଶଃ, ଗୋଟାଏ ସୁଦକ୍ଷ ପ୍ରଶାସନ ବ୍ୟବସ୍ଥା ଗଢ଼ିଉଠିଲା ଏବଂ ରାସ୍ତାଘାଟ ଦିଗରେ ବିଶେଷ ଭାବରେ ଉନ୍ନତି ସାଧିତ ହେଲା । ଏହାର ପ୍ରଧାନ କାରଣ ଅବଶ୍ୟ ସାମରିକ । ସ୍ଥାନୀୟ ରୀତିନୀତିରେ ହସ୍ତକ୍ଷେପ ନ କରିବା ଦିଗରେ ସତର୍କତା ଅବଲମ୍ବନ କରିଥିଲେ ସୁଦ୍ଧା ଶାସନ ଅଧିକତର ଭାବରେ କେନ୍ଦ୍ରୀକୃତ ହେଉଉଠିଲା । ଅଫଗାନ ଶାସକମାନଙ୍କ ଭିତରେ ସର୍ବାପେକ୍ଷା ସୁଦକ୍ଷ ଥିଲେ ଶେର ଶାହ । ମୋଗଲ ରାଜୁତିକାଳ ଭିତରେ କେତେ ବର୍ଷ ପର୍ଯ୍ୟନ୍ତ ସେ ଦିଲ୍ଲୀ ଦଖଲ କରି ନେଇଥିଲେ । ରାଜସ୍ୱ ଆଦାୟ ନିମନ୍ତେ ସେ ଯେଉଁ ପ୍ରଣାଳୀର ଭିତ୍ତି ସ୍ଥାପନ କରିଥିଲେ ପରବର୍ତ୍ତୀ କାଳରେ ସମ୍ରାଟ ଆକବର ତାହା ସମ୍ପ୍ରସାରିତ କଲେ । ଆକବରଙ୍କ ବିଖ୍ୟାତ ରାଜସ୍ୱ ମନ୍ତ୍ରୀ ରାଜା ତୋଡର ମଲ୍ଲ ପ୍ରଥମେ ଶେର ଶାହଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ । ଅଫଗାନ ଶାସକମାନେ କ୍ରମବର୍ଦ୍ଧିତ ଭାବରେ ହିନ୍ଦୁ ପ୍ରତିଭା ବ୍ୟବହାର କରିବାକୁ ଲାଗିଥିଲେ ।

ଭାରତ ଓ ହିନ୍ଦୁଧର୍ମ ଉପରେ ଆଫଗାନ ବିଜୟର ପରିଣାମ ଥିଲା ଦ୍ୱିବିଧ ଏବଂ ପରସ୍ପର ଖଣ୍ଡନଶୀଳ । ଏହି ବିଜୟର ସଦ୍ୟ ପ୍ରତିକ୍ରିୟା ସ୍ୱରୂପ ଅଫଗାନ୍ ଅଧିକୃତ ଅଞ୍ଚଳର ବହୁ ଦୂରକୁ—ଦକ୍ଷିଣ-ଭାରତକୁ କେତେ ଲୋକ ପଳାଇଗଲେ । ଯେଉଁମାନେ ରହିଲେ ସେମାନେ ଅଧିକତର ଭାବରେ ସାମାଜିକ ନିୟମ-ଶୃଙ୍ଖଳାର ଦାସ ହୋଇ ପଡ଼ିଲେ । କଇଁଚ ଭଳି ନିଜ ଖୋଳପା ଭିତରକୁ ପଶିଯାଇ ସେମାନେ ବିଦେଶୀ ରୀତିରିବାଜ ଓ ପ୍ରଭାବ ମୁହଁରୁ ନିଜକୁ ନିରାପଦ କରିବା ଉଦ୍ୟମରେ ବର୍ଣ୍ଣ-ବ୍ୟବସ୍ଥାକୁ ଅଧିକତର ଦୃଢ଼ କରି ବସିଲେ । ଅନ୍ୟଦିଗରେ, ଜୀବନ ଓ ଚିନ୍ତାରେ ଏହିସବୁ ବୈଦେଶିକ ଧାରା ପ୍ରତି ଅଜ୍ଞାତରେ କ୍ରମଶଃ ଗୋଟାଏ ଅଭିମୁଖ୍ୟ ଗଢ଼ି ଉଠୁଥିଲା । ଫଳତଃ, ଗୋଟାଏ ସମନ୍ୱୟ ଦେଖାଦେଲା : ସ୍ଥାପତ୍ୟରେ ନବ

---

(୧) ସାର୍ ଏଇଚ୍. ଏମ୍. ଏଲିଅଟ୍, 'ହିଷ୍ଟ୍ରି ଅଫ ଇଣ୍ଡିଆ' ୧ମ ଭାଗ, ପୃ. ୮୮ ।

ନବ ଶୈଳୀ ପ୍ରକାଶ ପାଇଲା; ଖାଦ୍ୟ ଓ ପୋଷାକରେ ପରିବର୍ତ୍ତନ ଦେଖାଦେଲା; ଏବଂ ଅନ୍ୟାନ୍ୟ ବହୁ ଦିଗରେ, ଜୀବନ ଉପରେ ତାର ପ୍ରଭାବ ପଡ଼ିଲା । ଏହି ସମନ୍ୱୟ ସଙ୍ଗୀତରେ ବିଶେଷ ଭାବରେ ପରିଲକ୍ଷିତ ହେଲା । ପ୍ରାଚୀନ ଶାସ୍ତ୍ରୀୟ ଧାରା ଅନୁସରଣ କରି ଭାରତୀୟ ସଙ୍ଗୀତ ନାନା ଭାବରେ ବିକଶିତ ହେଲା । ପାରସିକ ଭାଷା ରାଜକୀୟ ଭାଷା ହେବା ଫଳରେ ବହୁ ପାରସିକ ଶବ୍ଦ ସାଧାରଣ ଭାଷାରେ ମିଶିଗଲା । ସେଥି ସଙ୍ଗେ ସଙ୍ଗେ ଭାରତୀୟ ବିଭିନ୍ନ ଭାଷାର ବିକାଶ ଘଟିଲା ।

ଦୁର୍ଭାଗ୍ୟଜନକ ପରିଣାମ ଭିତରୁ ଗୋଟାଏ ହେଉଛି ପରଦା-ପ୍ରଥା । ଏପରି କାହିଁକି ହେଲା, ସ୍ପଷ୍ଟ ଜଣାଯାଉନି; କିନ୍ତୁ ଯେପରି ହେଉନା କାହିଁକି, ଏହା ପୁରାତନ ଉପରେ ନୂତନର ପ୍ରତିକ୍ରିୟାର ପରିଣାମ । ଭାରତରେ ଏଥିପୂର୍ବେ ସମ୍ଭ୍ରାନ୍ତ ସମାଜରେ, ଅନ୍ୟାନ୍ୟ ଦେଶମାନଙ୍କ ଭଳି, ବିଶେଷତଃ ପ୍ରାଚୀନ ଗ୍ରୀସ୍ ଭଳି, ସ୍ତ୍ରୀ ଓ ପୁରୁଷ ମଧ୍ୟରେ ପୃଥକ୍ ଭାବରେ ଚଳପ୍ରଚଳ ହେବାର ରୀତି ଥିଲା । ଏପରି କିଛି ପୃଥକ୍ ବ୍ୟବସ୍ଥା ପ୍ରାଚୀନ ଇରାନ୍‌ରେ ଓ କେତେ ପର୍ଯ୍ୟନ୍ତ ସମଗ୍ର ପଶ୍ଚିମ-ଏସିଆରେ ବି ପ୍ରଚଳିତ ଥିଲା; କିନ୍ତୁ କେଉଁଠାରେ ହେଲେ ପରଦା ପଛରେ ନାରୀମାନଙ୍କୁ ଏପରି ବନ୍ଦୀ ଭଳି ରଖିବା ରୀତି ନଥିଲା । ସମ୍ଭବତଃ, ଏହା ଆରମ୍ଭ ହେଲା ବିଜେନ୍‌ଟାଇନ୍ ରାଜମହଲମାନଙ୍କରେ ଯେଉଁଠି ରାଣୀହଂସପୁର ପହରା ଦେବାପାଇଁ ଖୋଜା ବା ନପୁଂସକ ବ୍ୟକ୍ତିଙ୍କୁ ନିଯୁକ୍ତ କରାଯାଉଥିଲା । ଏହି ବିଜେନ୍‌ଟାଇନ୍ ପ୍ରଭାବ ଋଷିଆ ଦେଶ ପର୍ଯ୍ୟନ୍ତ ପ୍ରସୃତ ହୋଇଥିଲା । ସେଠାରେ ମହାନ୍ ପିଟର୍‌ଙ୍କ ରାଜୁତିକାଳ ଅବଧି ନାରୀମାନଙ୍କ ଉପରେ ଏହି ପରଦା ବ୍ୟବସ୍ଥା ଏକରକମ କଡ଼ାକଡ଼ି ଭାବରେ ପ୍ରୟୋଗ କରାଯାଇଥିଲା । କିନ୍ତୁ ତା ପରମାନେ ଏଥିରୁ ମୁକ୍ତ ଥିଲେ; କାରଣ ଯଥେଷ୍ଟ ପ୍ରମାଣ ରହିଛି ଯେ ସେମାନଙ୍କ ଭିତରେ ପରଦା ପ୍ରଥା ନଥିଲା । ବିଜେନ୍‌ଟାଇନ୍ ପ୍ରଥାମାନଙ୍କ ଦ୍ୱାରା ଆରବ-ପାରସିକ ସଭ୍ୟତା ନାନା ଭାବରେ ପ୍ରଭାବିତ ହୋଇଥିଲା ଏବଂ ସେଥିହେତୁରୁ ହୁଏତ ଉପର ବର୍ଗ ଭିତରେ କେତେ ପର୍ଯ୍ୟନ୍ତ ନାରୀମାନଙ୍କୁ ପୃଥକ୍ କରିବା ବ୍ୟବସ୍ଥା ଗଢ଼ି ଉଠିଲା । ତଥାପି ଆରବ୍ୟ ଦେଶ କିମ୍ବା ପଶ୍ଚିମ ଅବା ମଧ୍ୟ-ଏସିଆର ଅନ୍ୟାନ୍ୟ ଅଂଶରେ ସେପରି କିଛି ଧରାବନ୍ଧା ପରଦା-ପ୍ରଥା ନଥିଲା । ଦିଲ୍ଲୀ ଦଖଲ କରିବା ପରେ ଯେଉଁ ଆଫଗାନ୍‌ମାନେ ଉତ୍ତର-ଭାରତରେ ପ୍ରବେଶ କଲେ, ସେମାନଙ୍କ ଭିତରେ ମଧ୍ୟ କଠୋର ପରଦା ବ୍ୟବସ୍ଥା ନଥିଲା । ତୁର୍କ ଓ ଆଫଗାନ୍ ରାଜକନ୍ୟା ତଥା ସମ୍ଭ୍ରାନ୍ତ ମହିଳାମାନେ ପ୍ରାୟଶଃ ଶିକାର କରି ଯାଉଥିଲେ, ଅଶ୍ୱାରୋହଣ କରୁଥିଲେ ଏବଂ ବନ୍ଧୁବାନ୍ଧବ ଘରକୁ ଅବାରିତ ଭାବରେ ଯାଇ-ପାରୁଥିଲେ । ଗୋଟାଏ ପୁରାତନ ଇସଲାମୀ ପ୍ରଥା, ଯାହା ଏ ପର୍ଯ୍ୟନ୍ତ ପାଳନ କରାଯାଉଥାଏ, ହେଉଛି—ହାଜ୍ ଯାତ୍ରାରେ ମକ୍କା ଯିବାବେଳେ ନାରୀମାନଙ୍କ ବଦନ ଅନାବୃତ ରଖିବା । ଯେପରି ଅନୁମିତ ହୁଏ, ମୋଗଲ ରାଜତ୍ୱକାଳରେ ପରଦା ପ୍ରଥା ପ୍ରଚଳିତ ହେଲା; ହିନ୍ଦୁ ଓ ମୁସ୍‌ଲିମ୍ ଉଭୟ ସମ୍ପ୍ରଦାୟ ଭିତରେ ଏହା ଯେବେ ସମ୍ମାନ ଓ ପଦମର୍ଯ୍ୟାଦାର ଚିହ୍ନ ବିବେଚିତ ହେଲା । ସେହିସବୁ ଅଞ୍ଚଳରେ ଯେଉଁଠି ମୁସଲିମ୍ ପ୍ରଭାବର ଆଧିପତ୍ୟ ରହିଥିଲା, ଏହି ପ୍ରଥା ମୁଖ୍ୟତଃ ଉପର ବର୍ଗମାନଙ୍କ ଭିତରେ ପରିବ୍ୟାପ୍ତ ହେଲା । ସେସବୁ ଅଞ୍ଚଳ ହେଉଛି

ଦିଲ୍ଲୀ, ଯୁକ୍ତ ପ୍ରଦେଶ (ଆଜିର ଉତ୍ତର ପ୍ରଦେଶ), ରାଜପୁତାନା, ବିହାର ଓ ବଙ୍ଗ ସମେତ ମଧ୍ୟ ଓ ପୂର୍ବୀୟ ଭୂଖଣ୍ଡ । ତଥାପି ବଡ଼ ଆଚମ୍ବିତ କଥା ଯେ ପଞ୍ଜାବ ଓ ସୀମାନ୍ତ ପ୍ରଦେଶ ଯେଉଁଠି ମୁସଲମାନମାନେ ସଂଖ୍ୟାଗରିଷ୍ଠ, ପରଦା-ପ୍ରଥା ପଛରେ ସେପରି କିଛି ଧରାବନ୍ଧା ନିୟମ ନାହିଁ । ପଶ୍ଚିମ ଓ ଦକ୍ଷିଣ-ଭାରତରେ ସେପରି କିଛି ପରଦାପ୍ରଥା ନାହିଁ; ଯାହା ଅଛି କେତେକପର୍ଯ୍ୟନ୍ତ ମୁସଲମାନଙ୍କ ଭିତରେ କେବଳ ।

ମୋର କୌଣସି ସନ୍ଦେହ ନାହିଁ ଯେ ଅଧୁନାତନ କେତେକ ଶତକରେ ଭାରତର ଅବନତି ନିମନ୍ତେ ଯେଉଁସବୁ କାରଣ ଦାୟୀ ସେଥିଭିତରୁ ପ୍ରଧାନ ଏକ କାରଣ ହେଉଛି ଏହି ପରଦାପ୍ରଥା । ଏହା ମଧ୍ୟ ମୋର ଭଲଭାବରେ ହୃଦ୍‌ବୋଧ ହୋଇଛି ଯେ ଗୋଟାଏ ପ୍ରଗତିଶୀଳ ସାମାଜିକ ଜୀବନର ଅସ୍ୱମାରମ୍ଭ ପୂର୍ବରୁ ଭାରତରେ ଏହି ବର୍ବର ପ୍ରଥାର ସମ୍ପୂର୍ଣ୍ଣ ଉଚ୍ଛେଦ ସାଧନ ନିତାନ୍ତ ଆବଶ୍ୟକ । ଏଥିଦ୍ୱାରା ନାରୀସମାଜର ଯେ କ୍ଷତି ହେଉଛି, କହିବା ବାହୁଲ୍ୟ ମାତ୍ର । କିନ୍ତୁ ପୁରୁଷମାନଙ୍କର ଓ ପରଦା ଅନ୍ତରାଳରେ ନାରୀମାନଙ୍କ ମେଳରେ ବଢ଼ୁଥିବା ସନ୍ତାନଙ୍କର ଏବଂ ସାଧାରଣତଃ ସାମାଜିକ ଜୀବନର ଯେଉଁ କ୍ଷତି ହେଉଛି, କିଛି କମ୍ ନୁହେଁ । ସୌଭାଗ୍ୟତଃ, ଏହି ଅନିଷ୍ଟକର ପ୍ରଥା ହିନ୍ଦୁମାନଙ୍କ ଭିତରୁ ଖୁବ୍ ଚଞ୍ଚଳ ଲୋପ ପାଇଯାଉଛି; ମୁସଲମାନଙ୍କ ଭିତରେ ଏହାର ଅପସାରଣ ଗତି କିଛି ମନ୍ଥର । ପରଦାପ୍ରଥାର ଉଚ୍ଛେଦ ସାଧନରେ ସର୍ବାପେକ୍ଷା ଶକ୍ତିଶାଳୀ କାରଣ ହେଉଛି କଂଗ୍ରେସର ରାଜନୈତିକ ଓ ବିବିଧ ସାମାଜିକ ଆନ୍ଦୋଳନ ଯାହାର କର୍ମପରିସର ଭିତରକୁ ମଧ୍ୟବର୍ଗର ନାରୀମାନେ ଶତ ସହସ୍ର ସଂଖ୍ୟାରେ ଟାଣି ହୋଇ ଆସିଛନ୍ତି । ଗାନ୍ଧିଜୀ ସର୍ବଦା ପରଦାପ୍ରଥାର ତୀବ୍ର ବିରୋଧ କରି ଆସିଛନ୍ତି ଏବଂ ସେ ଏହାକୁ ଗୋଟିଏ 'ଦୂଷିତ ତଥା ବର୍ବର ପ୍ରଥା' ବୋଲି ଅଭିହିତ କରିଛନ୍ତି ଯାହା ନାରୀମାନଙ୍କୁ ଅନଗ୍ରସର ଓ ଅନୁନ୍ନତ କରି ରଖିଛି । 'ପ୍ରଥମେ ପ୍ରଚଳିତ ହେଲାବେଳେ ଏହାର ଯାହା କିଛି ଉପଯୋଗିତା ଥାଉନା କାହିଁକି, ବର୍ତ୍ତମାନ ଯେ ଏହା ସମ୍ପୂର୍ଣ୍ଣ ଅନୁପଯୋଗୀ ହୋଇପଡ଼ିଛି ଏବଂ ଦେଶର ବହୁ କ୍ଷତି କରୁଛି ଜାଣି ସୁଦ୍ଧା ଏପରି ଏକ ବର୍ବର ପ୍ରଥାକୁ ଜାବୁଡ଼ି ଧରି ଭାରତରେ ପୁରୁଷମାନେ ନାରୀମାନଙ୍କ ପ୍ରତି ଯେଉଁ ଅନ୍ୟାୟ କରୁଛନ୍ତି ମୁଁ ସେ ସମ୍ପର୍କରେ ବିଶେଷ ଚିନ୍ତିତ ।'' ପୁରୁଷ ଭଳି ନାରୀର ମଧ୍ୟ ଆତ୍ମୋନ୍ନତି ନିମନ୍ତେ ସମାନ ସ୍ୱତନ୍ତ୍ରତା ଓ ସୁଯୋଗ ରହିବା ଦରକାର ବୋଲି ଗାନ୍ଧିଜୀ ସନିର୍ବନ୍ଧ ଭାବରେ ଅନୁଯୋଗ କରିଛନ୍ତି : ''ସ୍ତ୍ରୀ ପୁରୁଷର ସମ୍ପର୍କ ଶୁଭେଚ୍ଛାପ୍ରଣୋଦିତ ହେବା ଆବଶ୍ୟକ । ଉଭୟ ଭିତରେ କୌଣସି ପ୍ରତିବନ୍ଧକ ଗଢ଼ି ତୋଳିବା ଉଚିତ ନୁହେଁ । ପରସ୍ପର ପ୍ରତି ସେମାନଙ୍କର ଆଚରଣ ସ୍ୱାଭାବିକ ଓ ସ୍ୱତଃସ୍ଫୂର୍ତ୍ତି ହେବା ଉଚିତ ।'' ପ୍ରକୃତ ପକ୍ଷେ, ଗାନ୍ଧିଜୀ ନାରୀମାନଙ୍କ ନିମନ୍ତେ, ସାମ୍ୟ ଓ ମୁକ୍ତି ସପକ୍ଷରେ, ଉତ୍କଣ୍ଠିତ ଭାବରେ ବହୁତ କିଛି କହିଛନ୍ତି ଓ ଲେଖିଛନ୍ତି ଏବଂ ନାରୀମାନଙ୍କର ଏହି ପାରିବାରିକ ଦାସତ୍ୱକୁ ତିକ୍ତ କଣ୍ଠରେ ଧିକ୍କାର କରିଛନ୍ତି ।

ମୂଳ ପ୍ରସଙ୍ଗରୁ ବାଟଭାଙ୍ଗି ମୁଁ ଆଧୁନିକ କାଳକୁ ହଠାତ୍ ଲମ୍ଫଦେଇଛି । ଅତଏବ, ମତେ ପୁଣି ସେହି ମଧ୍ୟଯୁଗକୁ ଫେରିଯିବାକୁ ହେବ ଯେବେ ଆଫଗାନ୍‌ମାନେ ଦିଲ୍ଲୀରେ ନିଜକୁ

ପ୍ରତିଷ୍ଠିତ କରି ଯାଇଥିଲେ ଏବଂ ପୁରାତନ ଓ ନୂତନ-ଆଗ୍ରହ ଭିତର ଭିତରେ ଗୋଟାଏ ସମନ୍ୱୟ ଆପେ ଆପେ ଗଢ଼ି ଉଠୁଥିଲା । ଏହିସବୁ ପରିବର୍ତ୍ତନ ଉପର ସ୍ତରରେ ଅର୍ଥାତ୍ ଉଚ୍ଚବର୍ଗ ଓ ସମ୍ଭ୍ରାନ୍ତ ଶ୍ରେଣୀ ଭିତରେ ଘଟୁଥିଲା ଏବଂ ସର୍ବସାଧାରଣ ବିଶେଷତଃ ଗ୍ରାମ୍ୟ ଜନତା ଉପରେ ଏହାର ପ୍ରଭାବ ପଡ଼ି ନ ଥିଲା । ରାଜୋଡ଼ା ପରିସର ଭିତରେ ଆରମ୍ଭ ହୋଇ ଏହା ନଗରୀ ଓ ପୌର ଅଞ୍ଚଳମାନଙ୍କୁ ପ୍ରସାରିତ ହୋଉଥିଲା । ଏପରି ଭାବରେ, ଗୋଟାଏ ପ୍ରକ୍ରିୟା ଆରମ୍ଭ ହେଲା ଯାହା ବହୁ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍ତର-ଭାରତରେ ଗୋଟାଏ ମିଶ୍ରିତ ସଂସ୍କୃତିର ବିକାଶ ଅବ୍ୟାହତ ରଖିଲା । ଦିଲ୍ଲୀ ଓ ଆଜି ଯେଉଁ ଅଞ୍ଚଳକୁ ଉତ୍ତରପ୍ରଦେଶ କୁହାଯାଉଛି ଏହା ତାର କେନ୍ଦ୍ର ହୋଇଉଠିଲା, ଯେପରି ଅତୀତରେ ଥିଲା ଏବଂ ଆଜି ବି ରହିଛି ପୁରାତନ ଆର୍ଯ୍ୟ ସଂସ୍କୃତିର କେନ୍ଦ୍ର ଭାବରେ । କିନ୍ତୁ ଏହି ଆର୍ଯ୍ୟ ସଂସ୍କୃତିର ବହୁତ କିଛି ଦକ୍ଷିଣ-ଭାରତକୁ ସ୍ଥାନାନ୍ତରିତ ହେଲା ଏବଂ ଦକ୍ଷିଣ-ଭାରତ ହିନ୍ଦୁ ରକ୍ଷଣଶୀଳତାର ଗୋଟାଏ ଦୁର୍ଗ ହୋଇଉଠିଲା ।

ତୈମୁରଙ୍କ ଆକ୍ରମଣ ଯୋଗୁଁ ଦିଲ୍ଲୀର ସୁଲତାନ ଶାସନ ଦୁର୍ବଳ ହୋଇଯିବାପରେ ଜୌନପୁରରେ (ଉତ୍ତର ପ୍ରଦେଶରେ) ଗୋଟାଏ କ୍ଷୁଦ୍ର ମୁସଲମ୍ ରାଜ୍ୟ ଗଢ଼ିଉଠିଲା । ପଞ୍ଚଦଶ ଶତକ ସାରା ଧର୍ମସହିଷ୍ଣୁତା, କଳା ଓ ସଂସ୍କୃତିର ଏହା ଗୋଟାଏ କେନ୍ଦ୍ର ଥିଲା । ବର୍ଦ୍ଧିଷ୍ଣୁ ଲୋକଭାଷା ହିନ୍ଦୀକୁ ଉତ୍ସାହିତ କରାଗଲା ଏବଂ ହିନ୍ଦୁ ଓ ମୁସଲମାନ ଉଭୟର ଧର୍ମବିଶ୍ୱାସ ଭିତରେ ସମନ୍ୱୟ ରଚନା କରିବାର ଉଦ୍ୟମ ହେଲା । ପ୍ରାୟ ଏହି ସମୟରେ, ଉତ୍ତରରେ, ଦୂର କାଶ୍ମୀରରେ ଜଣେ ସ୍ୱାଧୀନ ମୁସଲମ୍ ରାଜା ଜୈନୁଲ୍ଲାବ୍ଦିନ୍ ମଧ୍ୟ ତାଙ୍କର ଧର୍ମସହିଷ୍ଣୁତା ଏବଂ ସଂସ୍କୃତ-ଚର୍ଚ୍ଚା ଓ ପୁରାତନ ସଂସ୍କୃତିର ପୃଷ୍ଠପୋଷକତା ନିମନ୍ତେ ବିଖ୍ୟାତ ହୋଇଉଠିଥିଲେ ।

ଦେଶସାରା ଏହି ନୂତନ ଉଦ୍‌ବେଳନ ଚାଲିଥିଲା ଓ ଲୋକେ ନୂତନ କେତେ ଭାବର ଜଞ୍ଜାଳରେ ଲିପ୍ତ ଥିଲେ । ପୂର୍ବଭଳି ଭାରତର ମଗ୍ନଚେତନରେ ଏହି ନୂତନ ଅବସ୍ଥା ପ୍ରତି ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ଏବଂ ଏହିସବୁ ଯେତେ ନୂତନ ଭାବ ନିଜ ଭିତରେ ଲୀନ କରିନେବା ପ୍ରକ୍ରିୟାରେ ସେ ନିଜେ ବି କେତେକାଂଶରେ ପରିବର୍ତ୍ତିତ ହୋଇଯାଉଥିଲା । ଏହି ଉଦ୍‌ବେଳନରୁ ନୂତନ ଧରଣର ସଂସ୍କାରକମାନେ ଦେଖାଦେଲେ, ଯେଉଁମାନେ ଏହି ସମନ୍ୱୟର ଭାବ ପ୍ରଚାର କରିବା ସଙ୍ଗେ ସଙ୍ଗେ ବର୍ଣ୍ଣ-ବ୍ୟବସ୍ଥାକୁ ନିନ୍ଦିତ ଅବା ଅବଜ୍ଞା କଲେ । ପଞ୍ଚଦଶ ଶତକରେ ଦକ୍ଷିଣ-ଭାରତରେ ଦେଖାଦେଲେ ହିନ୍ଦୁ ରାମାନନ୍ଦ ଏବଂ ତାଙ୍କଠାରୁ ଆହୁରି ବିଖ୍ୟାତ (ସେତେବେଳେ ପରି ଏବେ ମଧ୍ୟ) ତାଙ୍କର ଶିଷ୍ୟ, ବନାରସର ଜଣେ ମୁସ୍‌ଲିମ ତନ୍ତୀ, କବୀର । କବୀରଙ୍କ ରଚିତ ଭଜନ ଖୁବ୍ ଜନପ୍ରିୟ ହୋଇଉଠିଲା । ଆଜି ସୁଦ୍ଧା ତାହା ଅକ୍ଷୁଣ୍ଣ ରହିଛି । ଶିଖ ଧର୍ମର ପ୍ରତିଷ୍ଠାତା ଗୁରୁ ନାନକଙ୍କ ଆବିର୍ଭାବ ଘଟିଲା ଉତ୍ତରାଖଣ୍ଡରେ । ଏହି ସଂସ୍କାରକମାନଙ୍କ ପ୍ରଭାବ ସେମାନଙ୍କ ପରେ ଗଢ଼ି ଉଠିଥିବା ନିର୍ଦ୍ଦିଷ୍ଟ ସଂପ୍ରଦାୟର ସୀମା ଅତିକ୍ରମ କରି ଜନସାଧାରଣଙ୍କ ଭିତରେ ବ୍ୟାପ୍ତ ହେଲା । ନୂତନ ଭାବଧାରାର ପ୍ରଭାବ ହିନ୍ଦୁଧର୍ମରେ ଅନୁଭୂତ ହେଲା ଏବଂ ଭାରତର ଇସ୍‌ଲାମ୍ ଧର୍ମ ମଧ୍ୟ ଅନ୍ୟ

ସ୍ଥାନର ଇସ୍‌ଲାମ୍ ଧର୍ମ ଅପେକ୍ଷା କେତେକ ପରିମାଣରେ ଭିନ୍ନ ହୋଇଉଠିଲା । ଇସ୍‌ଲାମ୍‌ର ତୀବ୍ର ଅଦ୍ୱୈତବାଦ ହିନ୍ଦୁଧର୍ମକୁ ପ୍ରଭାବିତ କଲା ଏବଂ ହିନ୍ଦୁର ଅସ୍ପଷ୍ଟ ବହୁ ଈଶ୍ୱରବାଦୀ ପ୍ରତିନ୍ୟାସର ପ୍ରଭାବ ଭାରତୀୟ ମୁସଲମାନ ଉପରେ ମଧ୍ୟ ପଡ଼ିଲା । ଭାରତୀୟ ମୁସଲମାନଙ୍କ ଭିତରୁ ଅଧିକାଂଶ ଥିଲେ, ଯେଉଁମାନେ ହିନ୍ଦୁଧର୍ମ ତ୍ୟାଗ କରି ମୁସଲିମ ଧର୍ମ ଗ୍ରହଣ କରିଥିଲେ ଏବଂ ହିନ୍ଦୁଧର୍ମର ବହୁ ପୁରାତନ ପରମ୍ପରାରେ ପରିପାଳିତ ଓ ପରିବେଷ୍ଟିତ ଥିଲେ । ଅପେକ୍ଷାକୃତ ସ୍ୱଳ୍ପ ସଂଖ୍ୟକ ମୁସଲମାନ କେବଳ ବାହାରୁ ଆସିଥିଲେ । ମୁସ୍‌ଲିମ୍ ଅତୀନ୍ଦ୍ରିୟବାଦ ଓ ସୁଫିବାଦ, ଯାହାର ଉତ୍ପତ୍ତି ସମ୍ଭବତଃ ନବପ୍ଲାଟୋବାଦରୁ ଘଟିଥିଲା, ଭାରତରେ ବର୍ଦ୍ଧିତ ହେଲା ।

ବିଦେଶରୁ ଆସିଥିବା ଲୋକେ ଭାରତରେ ଯେ କ୍ରମଶଃ ମିଶିଯାଉଥିଲେ ତାର ପ୍ରଧାନ ତାତ୍ପର୍ଯ୍ୟପୂର୍ଣ୍ଣ ସୂଚନା ହୁଏତ ଏହା ହୋଇପାରେ ଯେ ପାରସିକ ଭାଷା ରାଜକୀୟ ଭାଷା ହୋଇ ରହିଥିଲେ ମଧ୍ୟ ସେମାନେ ଦେଶର ଲୋକଭାଷା ବ୍ୟବହାର କରୁଥିଲେ । ପ୍ରଥମ-କାଳୀନ ମୁସ୍‌ଲିମ୍‌ମାନଙ୍କ ଭିତରୁ ଅନେକେ ହିନ୍ଦୀଭାଷାରେ ବହୁ ବିଶିଷ୍ଟ ଗ୍ରନ୍ଥ ପ୍ରଣୟନ କରିଚନ୍ତି । ଏହି ରଚୟିତାମାନଙ୍କ ଭିତରେ ବହୁ ବିଖ୍ୟାତ ହୋଇଚନ୍ତି ଅମୀର ଖୁସ୍ରୁ । ସେ ଥିଲେ ତୁର୍କ ବଂଶଜ ଏବଂ ଆଫଗାନ ସୁଲତାନମାନଙ୍କ ରାଜତ୍ୱକାଳରେ, ଚତୁର୍ଦ୍ଦଶ ଶତକରେ, ସେ ଜୀବିତ ଥିଲେ । ଦୁଇ ତିନ ପୁରୁଷ ଆଗରୁ ତାଙ୍କର ପରିବାର ସ୍ଥାୟୀ ଭାବରେ ଉତ୍ତର ପ୍ରଦେଶରେ ବସବାସ କରିସାରିଥିଲେ । ପାରସିକ ଭାଷାରେ ସେ ଥିଲେ ଜଣେ ଉଚ୍ଚକୋଟୀର କବି ଏବଂ ତାଙ୍କର ପ୍ରବେଶ ସଂସ୍କୃତଭାଷାରେ ମଧ୍ୟ କିଛି କମ୍ ନଥିଲା । ସଙ୍ଗୀତଶାସ୍ତ୍ରରେ ସେ ଥିଲେ ଧୁରନ୍ଧର ଏବଂ ଭାରତୀୟ ସଙ୍ଗୀତରେ ସେ କେତେକ ନୂତନ ଶୈଳୀ ପ୍ରଚଳନ କରିଥିଲେ । ବାଦ୍ୟଯନ୍ତ୍ର 'ସେତାର' ତାଙ୍କର ଉଦ୍‌ଭାବନ ବୋଲି ମଧ୍ୟ କେହି କେହି କହନ୍ତି । ତାଙ୍କର ପ୍ରତିଭା ଥିଲା ବହୁମୁଖୀ ଏବଂ ନାନା ବିଷୟରେ ସେ ଲେଖିଚନ୍ତି । ଭାରତର ବୈଶିଷ୍ଟ୍ୟ ସୂଚକ ଏକାଧିକ ଗ୍ରନ୍ଥର ସେ ରଚୟିତା । ତାଙ୍କର ଲିଖିତ ବିଷୟବସ୍ତୁ ଭିତରେ ଥିଲା ଧର୍ମ, ଦର୍ଶନ, ତର୍କବିଦ୍ୟା, ଭାଷା, ବ୍ୟାକରଣ (ସଂସ୍କୃତ), ସଙ୍ଗୀତ, ଗଣିତ, ବିଜ୍ଞାନ ଓ ପରିଶେଷରେ ଭାରତର ବିଶିଷ୍ଟ ଫଳ ଆମ୍ବ ମଧ୍ୟ !

କିନ୍ତୁ ଭାରତରେ ତାଙ୍କର ଖ୍ୟାତି ସର୍ବୋପରି ତାଙ୍କ ରଚିତ ଜନପ୍ରିୟ ସଙ୍ଗୀତଗୁଡ଼ିକ ଲାଗି, ଯାହା ସେ ଲେଖିଚନ୍ତି କଥିତ ହିନ୍ଦୀଭାଷାରେ । ସାଧାରଣ ସାହିତ୍ୟିକ ମାଧ୍ୟମରେ ସେ ଯଦି ଲେଖିଥାନ୍ତେ ତାହା ମୁଷ୍ଟିମେୟ ଲୋକଙ୍କ ଭିତରେ ଆବଦ୍ଧ ହୋଇଥା'ନ୍ତା । ବୁଦ୍ଧିମତ୍ତାର ପରିଚୟ ଦେଇ ସେ ତାହା କରିନାହାନ୍ତି । ଗ୍ରାମବାସୀ ସଙ୍ଗେ ସେ ସମ୍ପର୍କ ସ୍ଥାପନ କରିଥିଲେ ତା'ର ଭାଷାପାଇଁ କେବଳ ନୁହେଁ; ବରଂ ତାର ଆଚାର-ଆଚରଣ ଓ ବିବିଧ ପ୍ରଥା ଜାଣିବା ପାଇଁ । ବିଭିନ୍ନ ଋତୁ ସଂପର୍କରେ ସେ ସଙ୍ଗୀତ ରଚନା କରିଚନ୍ତି ଏବଂ ଭାରତର ସଙ୍ଗୀତଶାସ୍ତ୍ରସମ୍ମତ ଶୈଳୀ ଅନୁସାରେ ପ୍ରତ୍ୟେକ ଋତୁର ସଙ୍ଗୀତରେ ବିହିତ ରାଗ ଓ କଥା ଯୋଜନା କରିଚନ୍ତି । ସେ ଗାଇଚନ୍ତି ଜୀବନର ବିଭିନ୍ନ ଅବସ୍ଥା ନେଇ : କେବେ ନବ ବଧୂର ଆଗମନ, କେବେ ପ୍ରିୟ-ବିଚ୍ଛେଦ ଏବଂ କେବେ ବା ବର୍ଷାର ଆଗମନ ଫଳରେ ଶୁଷ୍କ ଭୂମିରୁ

ଯେବେ ନୂତନ ଜୀବନର ସୂଚନା ମିଳିଚି । ସେସବୁ ସଙ୍ଗୀତ ଆଜି ବି ବ୍ୟାପକ ଭାବରେ ଗୀତହେଉଚି ଏବଂ ଉତ୍ତର ଓ ମଧ୍ୟ-ଭାରତର ଯେ କେଉଁ ଗ୍ରାମ ଅବା ନଗରରେ, ବିଶେଷ-କରି ବର୍ଷାଋତୁ ଆରମ୍ଭରେ, ସାଧାରଣ କଣ୍ଠରେ ତାର ଝଙ୍କାର ଶୁଣିବାକୁ ମିଳେ । ପ୍ରତ୍ୟେକ ଗ୍ରାମରେ ଆମ୍ବ କମ୍ବା ଶାଳ ବୃକ୍ଷଶାଖାରେ ବଡ଼ ବଡ଼ ଦୋଳି ଝୁଲାଇ ଗ୍ରାମର ବାଳକ ବାଳିକା ଏକତ୍ର ହୋଇ ଦୋଳି ଝୁଲନ୍ତି ଓ ବର୍ଷା-ମଙ୍ଗଳ ଉତ୍ସବ ପାଳନ କରନ୍ତି ।

ଅମୀର ଖୁସ୍ରୁ ଅପର୍ଯ୍ୟାପ୍ତ ଛଗଡ଼ମାଳ ଓ ପହେଳି ବି ରଚନା କରିଚନ୍ତି ଯାହା ସମସ୍ତେ ଆଜି ସୁଦ୍ଧା ଉପଭୋଗ କରନ୍ତି । ତାଙ୍କର ଦୀର୍ଘ ଜୀବନକାଳ ଭିତରେ ମଧ୍ୟ ତାଙ୍କ ରଚିତ ସଙ୍ଗୀତ ଓ ପହେଳି ଖୁସ୍ରୁଙ୍କୁ ଅଶେଷ ଖ୍ୟାତି ଅର୍ପଣ କରିଥିଲା । ସେହି ଖ୍ୟାତି ଅବ୍ୟାହତ ଭାବରେ ବର୍ଦ୍ଧିତ ହୋଇଚି । ଛ' ଶହ ବର୍ଷ ତଳେ ରଚିତ ସଙ୍ଗୀତ ଅବିଚ୍ଛିନ୍ନ ଭାବରେ ଏଭଳି ଆଦୃତ ଯେ ହୋଇପାରେ ଏବଂ ଗୋଟିଏ ସୁଦ୍ଧା ଶବ୍ଦର ପରିବର୍ତ୍ତନ ବିନା ଗୀତ-ହୋଇପାରେ—ଏପରି ଦୃଷ୍ଟାନ୍ତ ଅନ୍ୟତ୍ର କେଉଁଠି ଅଛି ବୋଲି ମୁଁ ଅନ୍ତତଃ ଏପର୍ଯ୍ୟନ୍ତ ଜାଣିନି ।

## ୭. ଭାରତର ସାମାଜିକ ସଂଗଠନ : ବର୍ଗର ମହତ୍ତ୍ୱ

ଯିଏ କେଉଁ ବ୍ୟକ୍ତି, ଭାରତ ବିଷୟରେ ଯାହା କିଛି ଜାଣିଥାଉନା କାହିଁକି, ଭାରତର ବର୍ଣ୍ଣ-ବ୍ୟବସ୍ଥା ସମ୍ପର୍କରେ ଅବଶ୍ୟ ଶୁଣିଥିବ । ପ୍ରାୟ ପ୍ରତ୍ୟେକ ପରଦେଶୀ ଓ ଭାରତର ବହୁଲୋକ ଏହାକୁ ସାମଗ୍ରିକ ଭାବରେ ସମାଲୋଚନା ଅବା ନିନ୍ଦା କରିଥାନ୍ତି । ଏକଥା ଯଦିଓ ନିଃସନ୍ଦେହ ଯେ ବହୁ ଲୋକ ଆଜି ବି ଏହାର ମୌଳିକ ତତ୍ତ୍ୱକୁ ଗ୍ରହଣ କରନ୍ତି ଏବଂ ବହୁ ହିନ୍ଦୁ ଜୀବନରେ ତାର ଅନୁଶାସନ ଅନୁସରଣ କରନ୍ତି, ତଥାପି ଆଜିର ଭାରତରେ ସେପରି କୌଣସି ଲୋକ ହୁଏତ ନାହିଁ, ଯିଏ ଏହି ବ୍ୟବସ୍ଥାର ସାମ୍ପ୍ରତିକ ବିକାଶ ଅଥବା ଶାଖାପ୍ରଶାଖାର ବିସ୍ତୃତିକୁ ଅକୁଣ୍ଠ ଭାବରେ ସମର୍ଥନ ଜଣାଇବ । 'ବର୍ଣ୍ଣ ଅବା ଜାତି' ଶବ୍ଦର ପ୍ରୟୋଗରେ କେତେକ ପରିମାଣରେ ଭ୍ରାନ୍ତି ପରିଲକ୍ଷିତ ହୋଇଥାଏ; କାରଣ ବିଭିନ୍ନ ଲୋକେ ତାକୁ ବିଭିନ୍ନ ଅର୍ଥରେ ବ୍ୟବହାର କରନ୍ତି । ସାଧାରଣ ୟୁରୋପୀୟ ମାନେ କିମ୍ବା ତା'ର ଆଚାର-ବିଚାର ସଙ୍ଗେ ସହମତ ଯେ କେଉଁ ଭାରତୀୟ ଏହାକୁ ଶ୍ରେଣୀର ଅଟଳ ପ୍ରସ୍ତରୀ-କରଣ ମନେକରିଥାନ୍ତି । ଉପରବର୍ଗର ଲୋକଙ୍କୁ ସବୁବେଳେ ଉପରେ ରଖିବା ଓ ନିମ୍ନବର୍ଗର ଲୋକଙ୍କୁ ସବୁବେଳେ ନିମ୍ନରେ ରଖିବା ପାଇଁ ଏହା ଏକ ଅଦ୍‌ଭୁତ ପ୍ରଣାଳୀ ବୋଲି ସେମାନେ ମନେକରନ୍ତି । ଏଥିରେ କିଛି ସତ୍ୟ ନାହିଁ ବୋଲି ନୁହେଁ; କାରଣ ପ୍ରଥମାବସ୍ଥାରେ ଆର୍ଯ୍ୟ ବିଜେତାମାନଙ୍କୁ ବିଜିତ ଲୋକଙ୍କ ପାଖରୁ ପୃଥକ୍ ରଖିବା ପାଇଁ ଏହା ଏକ ବ୍ୟବସ୍ଥା ହୁଏତ ହୋଇଥିବ । ଆହୁରି ମଧ୍ୟ, ପ୍ରଥମତଃ ଏ ବ୍ୟବସ୍ଥାରେ ସେପରି କିଛି ଧରାବନ୍ଧା ନୀତି ପାଳିତ ହୋଇ ନଥିଲେ ମଧ୍ୟ କ୍ରମଶଃ ଏହାର ବିକାଶରେ ନିଃସନ୍ଦେହରେ କଠିନତା ପ୍ରକାଶ ପାଇଚି । ତଥାପି ଏହା ଆଂଶିକ ଭାବରେ କେବଳ ସତ୍ୟ ଏବଂ ଯେଉଁ ଶକ୍ତି ଓ ଯଦ୍ଦ୍ଧ ଏହା

ଲାଭ କଲା ଓ ଯେପରି ଭାବରେ ଏପର୍ଯ୍ୟନ୍ତ ଏହା ତିଷ୍ଠି ଆସିଲା, ତାର କୌଣସି ସନ୍ତୋଷ-ଜନକ ବ୍ୟାଖ୍ୟା ଏପର୍ଯ୍ୟନ୍ତ ଏଥିରୁ ମିଳେ ନାହିଁ । ଏହି ବ୍ୟବସ୍ଥା ବୌଦ୍ଧଧର୍ମର ଶକ୍ତିଶାଳୀ ପ୍ରଭାବ ସମ୍ଭାଳି ପାରିଲା କେବଳ ନୁହେଁ, ଶତ ଶତ ବର୍ଷ ଧରି ଆଫଗାନ ଓ ମୋଗଲ ଶାସନ ଏବଂ ଇସଲାମ ଧର୍ମର ବ୍ୟାପ୍ତିକୁ ସାମନା କରିପାରିଲା କେବଳ ନୁହେଁ, ଏହାର ବିରୁଦ୍ଧରେ ସଂକଳ୍ପବଦ୍ଧ, ଉତ୍କଣ୍ଠ ବହୁ ହିନ୍ଦୁ ସଂସ୍କାରକଙ୍କ ଅକ୍ଳାନ୍ତ ଉଦ୍ୟମକୁ ମଧ୍ୟ ଅନେକାଂଶରେ ଦୁର୍ବଳ କରି ପାରିଲା । ଆଜି କେବଳ ଏହା ସଙ୍କଟାପନ୍ନ ହୋଇଛି; କାରଣ ଆଜି ଏହି ବ୍ୟବସ୍ଥାର ମୂଳଭିତ୍ତି ଉପରେ ଆକ୍ରମଣ ଚାଲିଛି । ହିନ୍ଦୁ ସମାଜରେ ସଂସ୍କାର ନିମନ୍ତେ କୌଣସି ଶକ୍ତିଶାଳୀ ଅନୁଯୋଗ ଏହାର ମୁଖ୍ୟ କାରଣ ନୁହେଁ ଯଦିଓ, ନିଃସନ୍ଦେହରେ ସେପରି ଏକ ଅନୁଯୋଗ ରହିଛି; କିମ୍ବା ପାଶ୍ଚାତ୍ୟର କୌଣସି ଭାବଧାରା ଯୋଗୁଁ ନୁହେଁ ଯଦିଓ, ସେପରି ଭାବ ଅବଶ୍ୟ ତାର ପ୍ରଭାବ ପକାଇଛି । ଆମ ଆଖି ଆଗରେ ଯେଉଁ ପରିବର୍ତ୍ତନ ଘଟିଯାଇଛି ତାହା ସାରତଃ ସେହିସବୁ ମୌଳିକ ଅର୍ଥନୈତିକ ପରିବର୍ତ୍ତନ ଲାଗି, ଯାହା ଭାରତୀୟ ସମାଜର ସମଗ୍ର ସଂଗଠନକୁ ଦୋହଲାଇ ଦେଇଛି ଏବଂ ତାକୁ ସମ୍ପୂର୍ଣ୍ଣ ରୂପରେ ଓଲଟପାଲଟ କରିଦେବାର ସମ୍ଭାବନା ବି ରହିଛି । ଜୀବନର ଅବସ୍ଥା ପରିବର୍ତ୍ତିତ ହୋଇଛି ଏବଂ ଚିନ୍ତାର ଧାରା ଏତେ ଭାବରେ ପରିବର୍ତ୍ତିତ ହୋଇଛି ଯେ ବର୍ଣ୍ଣ-ବ୍ୟବସ୍ଥା ଆଉ ଚାଲୁରହିବା ଅସମ୍ଭବ ମନେହେଉଛି । ତା'ର ସ୍ଥାନ ଆଉ କ'ଣ ଅଧିକାର କରିବ ମୁଁ କହି-ପାରୁନି; କାରଣ ବର୍ଣ୍ଣ-ବ୍ୟବସ୍ଥାଠାରୁ ଆହୁରି ବଡ଼ ଓ ବହୁତ କିଛି ଉପରେ ପଣ ବସିଛି । ପରସ୍ପରର ବିପରୀତ, ସମାଜ ସଙ୍ଗଠନ ସମସ୍ୟା ପ୍ରତି ଦୁଇଟି ଆଭିମୁଖ୍ୟ ଭିତରେ ସଂଘାତ ଦେଖାଦେଇଛି; ଗୋଟାଏ ଦିଗରେ ପ୍ରାଚୀନ ହିନ୍ଦୁ ଅବଧାରଣର ବର୍ଗ ସଙ୍ଗଠନ ଓ ତା'ର ମୌଳିକ ଏକକ ବିଚାର; ଅନ୍ୟ ଦିଗରେ ପାଶ୍ଚାତ୍ୟର ଉଗ୍ର ବ୍ୟକ୍ତିବାଦ ଯାହା ବ୍ୟକ୍ତିର ସ୍ଥାନ ବର୍ଗ ଉପରେ ବୋଲି ଜୋର୍ ଦିଏ ।

ଏହି ସଂଘାତ ଭାରତରେ କେବଳ ଯେ ଦେଖାଦେଇଛି ନୁହେଁ, ପାଶ୍ଚାତ୍ୟ ଜଗତରେ ଏପରିକି ସମଗ୍ର ବିଶ୍ୱରେ ମଧ୍ୟ ଦେଖାଦେଇଛି । ଅବଶ୍ୟ ସ୍ଥାନ ଓ ଅବସ୍ଥା ଭେଦରେ ଏହା ଭିନ୍ନ ରୂପ ଧରିଛି । ଊନବିଂଶ ଶତକର ୟୁରୋପୀୟ ସଭ୍ୟତା ଗଣତାନ୍ତ୍ରିକ ଉଦାରଚେତନା ଏବଂ ଅର୍ଥନୈତିକ ତଥା ସାମାଜିକ କ୍ଷେତ୍ରରେ ତା'ର ସମ୍ପ୍ରସାରଣ ଭିତରୁ ରୂପ ପରିଗ୍ରହ କରି ସେହି ବ୍ୟକ୍ତିବାଦର ଚୂଡ଼ାନ୍ତ ପ୍ରତିନିଧିତ୍ୱ କଲା । ତା'ର ସାମାଜିକ ଓ ରାଜନୈତିକ ସଙ୍ଗଠନ ସମେତ ଊନବିଂଶ ଶତକର ସେହି ମତାଦର୍ଶ ବିଂଶ ଶତାବ୍ଦୀ ଭିତରକୁ ସଂପ୍ରସାରିତ ଓ ପ୍ରବାହିତ ହେଲା । କିନ୍ତୁ ଆଜିର ପ୍ରକରଣରେ ଏହା ସମ୍ପୂର୍ଣ୍ଣ ଅପ୍ରଚଳିତ ପ୍ରତୀକ ହେଉଛି ଏବଂ ବିବିଧ ସଙ୍କଟ ଓ ଯୁଦ୍ଧ ହେତୁରୁ ଏହା ଭାଙ୍ଗିପଡ଼ିବାର ଉପକ୍ରମ କରୁଛି । ବର୍ଗ ଓ ସମ୍ପ୍ରଦାୟର ମହତ୍ତ୍ୱ ଉପରେ ଆଜି ବିଶେଷ ଜୋର୍ ଦିଆଯାଉଛି ଏବଂ ବ୍ୟକ୍ତି ଓ ବର୍ଗ ଉଭୟର ଦାବୀ ଭିତରେ ଗୋଟାଏ ସମାଧାନ ଆଣିବା ହେଉଛି ଆଜିର ସମସ୍ୟା । ଏହି ସମସ୍ୟାର ସମାଧାନ ଦେଶଭେଦରେ ଭିନ୍ନ ରୂପ ଗ୍ରହଣ କରିପାରେ; କିନ୍ତୁ ସାର୍ବଜନୀନ ହେବାଭଳି ଗୋଟିଏ ମୌଳିକ ସମାଧାନ ନିମନ୍ତେ ବେଳକୁ ବେଳ ବର୍ଦ୍ଧିତ ଭାବରେ

ମନୋଭାବ ଅବଶ୍ୟ ପ୍ରକାଶ ପାଇବ ।

ବର୍ଣ୍ଣ-ବ୍ୟବସ୍ଥା କିଛି ସ୍ୱତନ୍ତ୍ର ବିଷୟ ନୁହେଁ; ଏହା ଗୋଟାଏ ବୃହତ୍ତର ସାମାଜିକ ସଙ୍ଗଠନ ଯୋଜନାର ଗୁରୁତ୍ୱପୂର୍ଣ୍ଣ ଅଂଶବିଶେଷ । ଏହି ବ୍ୟବସ୍ଥାର କେତେକ ସ୍ପଷ୍ଟ ପ୍ରତୀୟମାନ ଦୂଷଣ ଦୂର କରି, କଠୋର ଶୃଙ୍ଖଳା ଲାଘବ କରି, ଏହି ବ୍ୟବସ୍ଥାକୁ ଚାଲୁରଖିବା ହୁଏତ ସମ୍ଭବ ହୋଇପାରେ; କିନ୍ତୁ ସେପରି ହେବାର ଅବକାଶ ହୁଏତ ନାହିଁ; କାରଣ ଆଜିର ସାମାଜିକ ଓ ଅର୍ଥନୈତିକ ବିଶ୍ୱର ବର୍ଣ୍ଣ-ବ୍ୟବସ୍ଥା ସଙ୍ଗେ ସେପରି କିଛି ସମ୍ପୃକ୍ତ ନୁହେଁ । ସୁତରାଂ, ଏହାର ଭିତ୍ତି ଉପରେ ଓ ଏହାକୁ ଟେକାଇ ଧରିଥିବା ସମସ୍ତ କିଛି ଅବଲମ୍ବନ ଉପରେ ଆଜି ଆକ୍ରମଣ ଚାଲିଛି । ପ୍ରକୃତ ପକ୍ଷେ, ଏହାର ବହୁତ କିଛି ଅଂଶ ଭାଙ୍ଗିପଡ଼ିଲାଣି କିମ୍ବା ଚଞ୍ଚଳ ଭାଙ୍ଗିପଡ଼ୁଛି ଏବଂ ବେଳକୁ ବେଳ ଯେପରି ଦେଖାଯାଉଛି, ବର୍ଣ୍ଣ-ବ୍ୟବସ୍ଥାକୁ ନିଃସଙ୍ଗ କରି ସବୁ ଅବଲମ୍ବନ ଅପସରିଯାଉଛନ୍ତି । ଜାତିଆଣ ପ୍ରଥାକୁ ଆମେ ପସନ୍ଦ କରୁ କି ନାହିଁ, ଆଜିର ପ୍ରଶ୍ନ ନୁହେଁ । ଆମର ପସନ୍ଦ ଓ ଅପସନ୍ଦ ସତ୍ତ୍ୱେ ପରିବର୍ତ୍ତନ ଘଟିଚାଲିଛି; କିନ୍ତୁ ଏହିସବୁ ପରିବର୍ତ୍ତନକୁ ଆମ ଇଚ୍ଛା ଅନୁରୂପ ପନ୍ଥାରେ ପକାଇ ପରିଚାଳିତ କରିବାର ଶକ୍ତି ଆମ ଭିତରେ ଅବଶ୍ୟ ଅଛି । ତାହାହେଲେ ଆମେ ସାର୍ବିକ ଭାବରେ ଭାରତୀୟ ଜନତାର ଚରିତ୍ର ଓ ପ୍ରତିଭାର ପୂର୍ଣ୍ଣ ସୁଯୋଗ ଆହରଣ କରିପାରିବା । ଏହି ଚରିତ୍ର ଓ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ରହିଛି, ସେମାନେ ନିର୍ମାଣ କରିଥିବା ସାମାଜିକ ସଙ୍ଗଠନର ସଫଳତା ଓ ସ୍ଥାୟିତ୍ୱରେ ।

ସାର୍ ଜର୍ଜ ବାର୍ଡ୍‌ଉଡ୍ କୌଣସି ଏକ ସ୍ଥାନରେ କହିଛନ୍ତି : "ହିନ୍ଦୁମାନେ ବର୍ଣ୍ଣବ୍ୟବସ୍ଥା ଅବଲମ୍ବନ କରିଥିବା ପର୍ଯ୍ୟନ୍ତ ଭାରତ ଭାରତ ହୋଇ ରହିବ; କିନ୍ତୁ ଯେଉଁଦିନ ସେମାନେ ସେଥିରୁ ବିଚ୍ଛିନ୍ନ ହୋଇଯିବେ, ଭାରତ ବୋଲି ଆଉ କିଛି ରହିବ ନାହିଁ । ସେହି ଗୌରବୋଜ୍ଜ୍ୱଳ ଉପଦ୍ୱୀପ ଏଙ୍ଗ୍ଲୋ ସାକ୍ସନ୍ ସାମ୍ରାଜ୍ୟର ହିନ୍ଦୁ 'ପୂର୍ବୋପାନ୍ତ' (ଇଷ୍ଟ ଏଣ୍ଡ୍) (୧) ଅବସ୍ଥାକୁ ଖସିଆସିବ ।" ଜାତିଆଣ ପ୍ରଥା ଲାଗି ହେଉ କି ନହେଉ ବ୍ରିଟିଶ୍ ସାମ୍ରାଜ୍ୟରେ ଆମେ ସେହି ଅବସ୍ଥାକୁ ଅନେକ ଦିନରୁ ଖସିଯାଇଛୁ । ତଥାପି, ଯେବେ ହେଲେ ମଧ୍ୟ, ଆମର ଭବିଷ୍ୟତର ସ୍ଥିତି ଯାହା ହେଉନା କାହିଁକି, ଭାରତ ଏହି ସାମ୍ରାଜ୍ୟର ସରହଦ ଭିତରେ ଆବଦ୍ଧ ରହିବ ନାହିଁ; କିନ୍ତୁ ସାର୍ ଜର୍ଜ ବାର୍ଡ୍‌ଉଡ୍ ଯାହା କହିଛନ୍ତି ସେଥିରେ କିଛି ସତ୍ୟତା ଅଛି ଯଦିଓ, ସେ ଏହି ଦୃଷ୍ଟିକୋଣରୁ ସମ୍ଭବତଃ ଦେଖି ନାହାନ୍ତି । ଗୋଟାଏ ବିଶାଳ ତଥା ପ୍ରତିଷ୍ଠିତ ସାମାଜିକ ସଙ୍ଗଠନ ଭାଙ୍ଗିଯିବା ପରେ ସାମାଜିକ ଜୀବନ ସମ୍ପୂର୍ଣ୍ଣରୂପେ ଭେଦଗ୍ରସ୍ତ ହୋଇଯାଇପାରେ ଏବଂ ପରିଣାମ ସ୍ୱରୂପ ସହିତର ଅଭାବ, ସାର୍ବଜନୀନ ଦୁଃଖ-ଦୁର୍ଦ୍ଦଶା ଓ ବ୍ୟକ୍ତିଗତ ବ୍ୟବହାରରେ ନାନାବିଧ ଅସ୍ୱାଭାବିକତା ଓ ବିକୃତି ଅତି ବ୍ୟାପକ ଭାବରେ ଦେଖାଦେଇପାରେ । ଏହା ନିରୋଧ କରିପାରେ ସେଭଳି

(୧) ଇଷ୍ଟ୍ ଏଣ୍ଡ୍ ବା ପୂର୍ବୋପାନ୍ତ ଲଣ୍ଡନ ନଗରୀର ସେହି ଅଂଶ ଯେଉଁଠି ଗରିବ ଲୋକେ ବସବାସ କରିଥାନ୍ତି ।

ଅନ୍ୟ ଏକ ସାମାଜିକ ବ୍ୟବସ୍ଥା କେବଳ, ଯାହା ଜନସାଧାରଣଙ୍କ ପ୍ରତିଭା ଓ ଯୁଗ ପ୍ରତି ଅଧିକତର ଉପଯୋଗୀ ହୋଇଥାଏ । ପରିବର୍ତ୍ତନ କାଳରେ ସାମାଜିକ ଜୀବନ ଭେଦଗ୍ରସ୍ତ ହେବା ହୁଏତ ଅବଶ୍ୟମ୍ଭାବୀ; ପୃଥିବୀରେ ସର୍ବତ୍ର ଆଜି ଏହାର ପ୍ରମାଣ ଯଥେଷ୍ଟ ଭାବରେ ଦେଖିବାକୁ ମିଳେ । ହୁଏତ ଏପରି ଏକ କାଳର ଯାତନା ଓ ଯନ୍ତ୍ରଣା ଭିତର ଦେଇ ଲୋକେ ଚେତନାପ୍ରାପ୍ତ ହୁଅନ୍ତି, ଜୀବନର ବାସ୍ତବତା ସମ୍ପର୍କରେ ଶିକ୍ଷାଲାଭ କରନ୍ତି ଏବଂ ପରିବର୍ତ୍ତନଶୀଳ ଅବସ୍ଥା ସଙ୍ଗେ ଗତି କରିବା ପାଇଁ ନୂତନ ଭାବରେ ପାଦ ପକାଇବା ଶିକ୍ଷା କରନ୍ତି ।

ସେ ଯାହାହେଉ, ଯେଉଁ ଭବିଷ୍ୟତ ପାଇଁ ଆମ୍ଭେମାନେ କାର୍ଯ୍ୟ କରୁଥାଉଁ, କେତେ ଅସ୍ପଷ୍ଟ ହେଲେ ମଧ୍ୟ, ତାର ଏକ ଚିତ୍ର ଆଖି ଆଗରେ ନରଖି ଆମେ ଯଦି ସାମ୍ପ୍ରତିକ ଅବସ୍ଥାକୁ ଭାଙ୍ଗିଦେଉ, ତାହାହେଲେ ଅଧିକା କିଛି ଭଲ ପାଇଁ ଆଶା କରିବା ବୃଥା ହୋଇପଡ଼ିବ । ଆମେ କେବଳ ଗୋଟାଏ ଶୂନ୍ୟାବସ୍ଥା ସୃଷ୍ଟି କରି ଉଦ୍ଧାର ପାଇ ନପାରୁଁ; କାରଣ ସେହି ଶୂନ୍ୟତା ପୁଣି ସେପରି ଭାବରେ ପୂର୍ଣ୍ଣ ହୋଇ ଉଠିପାରେ, ଯେଉଁଥି ପାଇଁ ଆମକୁ ପରିତାପରେ ଦଗ୍ଧ ହେବାକୁ ପଡ଼ିବ । ଆମେ ଯେଉଁସବୁ ରଚନାତ୍ମକ ଯୋଜନା ପ୍ରସ୍ତୁତ କରିବାକୁ ଯିବା, ଯାହାଙ୍କ ପାଇଁ ସେସବୁ ଉଦ୍ଦିଷ୍ଟ ଓ ଯାହାଙ୍କୁ ନେଇ ଆମକୁ ସେସବୁ କାର୍ଯ୍ୟକାରୀ କରିବାକୁ ପଡ଼ିବ, ସେହି ସମୂଳ ଅର୍ଥାତ୍ ଭାରତୀୟ ଜନତା ପ୍ରତି ଆମକୁ ଧ୍ୟାନ ଦେବାକୁ ପଡ଼ିବ । ଜନତାର ବିଚାର ଓ ପ୍ରେରଣାର ପୃଷ୍ଠଭୂମି ଏବଂ ଆମର କର୍ମ-ପରିସର ଯେଉଁ ପରିବେଷ୍ଟନୀ ଭିତରେ ସୃଷ୍ଟି ହେବ, ସେଥିପ୍ରତି ମଧ୍ୟ ଆମକୁ ଧ୍ୟାନ ଦେବାକୁ ପଡ଼ିବ । ଏ ସମସ୍ତ କଥାକୁ ଅବଜ୍ଞା କରି, କେବଳ ଆଦର୍ଶବାଦୀ ଭାବରେ ଆମେ ଯଦି କିଛି ଆକାଶୀ-ପରିକଳ୍ପନା ଗଢ଼ି-ବସୁ କିମ୍ବା ଅନ୍ୟମାନେ ଅନ୍ୟତ୍ର ଯାହା କରିଚନ୍ତି ତାହା କେବଳ ଅନୁକରଣ କରିବା ଚିନ୍ତା କରୁଁ, ତାହାହେଲେ ଆମେ ମସ୍ତବଡ଼ ଭୁଲ କରି ବସିବା । ଅତଏବ, ଭାରତର ଯେଉଁ ପୁରାତନ ସାମାଜିକ ସଙ୍ଗଠନ ଏତେ ଶକ୍ତିଶାଳୀ ଭାବରେ ଓ ଏତେକାଳଧରି ଭାରତର ଲୋକଙ୍କୁ ପ୍ରଭାବିତ କରି ଆସିଚି ତାହା ଭଲ ଭାବରେ ଅନୁଶୀଳନ କରି ବୁଝିବା ବାଞ୍ଛନୀୟ ।

ଏହି ସଙ୍ଗଠନ ତ୍ରିବିଧ ବିଚାର ଉପରେ ପ୍ରତିଷ୍ଠିତ ଥିଲା : ସ୍ୱଶାସିତ ଗ୍ରାମଗୋଷ୍ଠୀ, ବର୍ଣ୍ଣ ଓ ଏକାନ୍ନବର୍ତ୍ତୀ ପରିବାର । ଏ ସବୁଥିରେ ସମଷ୍ଟିର ହିଁ ପ୍ରାଧାନ୍ୟ; ବ୍ୟକ୍ତିର ସ୍ଥାନ ସମଷ୍ଟିପରେ । ଅଲଗା ଅଲଗା କରି ଦେଖିଲେ ଏଥିରେ ସେପରି କିଛି ବିଶେଷତ୍ୱ ନାହିଁ ଏବଂ ଏଥିରୁ ଯେ କୌଣସିଟି ସଙ୍ଗେ ସମାନ ହେବା ଭଳି ଅନ୍ୟାନ୍ୟ ଦେଶମାନଙ୍କରେ ବିଶେଷତଃ ମଧ୍ୟଯୁଗରେ ଦୃଷ୍ଟାନ୍ତ ଖୋଜିବା ଆୟାସକର ନୁହେଁ । ପ୍ରାଚୀନ ଭାରତର ପ୍ରଜା-ରାଜ୍ୟ ଭଳି ଅନ୍ୟତ୍ର ମଧ୍ୟ ଆଦିମ ରୂପରେ ଗଣତନ୍ତ୍ର ବ୍ୟବସ୍ଥାର ପ୍ରମାଣ ମିଳେ । ଗୋଟାଏ ପ୍ରକାର ଆଦିମ ସାମ୍ୟବାଦ ବି ଅତୀତରେ ଥିଲା । ପ୍ରାଚୀନ ରୁଷିଆର 'ମିର' ସଙ୍ଗେ ଭାରତୀୟ ଗ୍ରାମଗୋଷ୍ଠୀର ତୁଳନା କେତେକାଂଶରେ କରାଯାଇପାରେ । ବର୍ଣ୍ଣ ଅବା ଜାତି ସାରତଃ ବୃତ୍ତିପ୍ରଧାନ ଥିଲା ଏବଂ ଏହି ପ୍ରଥା ମଧ୍ୟଯୁଗୀୟ ୟୁରୋପର ବ୍ୟାବସାୟିକ ସଙ୍ଘ ଅବା ଭାରତୀୟ ବୌଦ୍ଧଯୁଗର 'ପୂଗ' ସଙ୍ଗେ

ସମାନ । ହିନ୍ଦୁ ଏକାନ୍ନବର୍ତ୍ତୀ ପରିବାର ସଙ୍ଗେ ଚୀନା ପରିବାର ବ୍ୟବସ୍ଥାର ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ତୁଳନାତ୍ମକ ଅନୁଶୀଳନ ନିମନ୍ତେ ମୋର ଏସବୁ ସମ୍ପର୍କରେ ଯଥେଷ୍ଟ ଜ୍ଞାନ ନାହିଁ ଏବଂ ଏଠାରେ ମୁଁ ଯେଉଁ ଉଦ୍ଦେଶ୍ୟ ଅନୁଧାବନ କରୁଛି ସେଥି ନିମନ୍ତେ ତାର ଗୁରୁତ୍ୱ ବା ମହତ୍ତ୍ୱ ବି ନାହିଁ । ସାମଗ୍ରିକ ଭାବରେ ନେଲେ ଭାରତର ସାମାଜିକ ବ୍ୟବସ୍ଥା ବାସ୍ତବିକ୍ ଅନନ୍ୟସାଧାରଣ ଥିଲା ଏବଂ ତାର ବିକାଶ ସଙ୍ଗେ ସେ ଦିଗରେ ମହତ୍ତ୍ୱପୂର୍ଣ୍ଣ ବି ହୋଇ ଉଠିଥିଲା ।

## ୭ . ଗ୍ରାମ-ସ୍ୱରାଜ : ଶୁକ୍ରନୀତିସାର

ଦଶମ ଶତକର ଏକ ପୁରାତନ ଗ୍ରନ୍ଥରୁ ତୁର୍କ ଓ ଆଫଗାନ୍ ଆକ୍ରମଣ ପୂର୍ବବର୍ତ୍ତୀ ଭାରତର ଅବଧାରିତ ନୀତି ସମ୍ପର୍କରେ କିଞ୍ଚିତ୍ ଆଭାସ ମିଳେ । ଏହି ଗ୍ରନ୍ଥ ହେଉଛି ଶୁକ୍ରାଚାର୍ଯ୍ୟଙ୍କ ପ୍ରଣୀତ 'ନୀତିସାର' । ଏଥିରେ କେନ୍ଦ୍ରୀୟ ଶାସନ ଏବଂ ସହର ଓ ଗ୍ରାମ୍ୟ ଜୀବନର ସଙ୍ଗଠନ ସମ୍ପର୍କରେ, ରାଜାଙ୍କ ପରିଷଦ ଓ ଶାସନର ବିଭିନ୍ନ ବିଭାଗ ସମ୍ପର୍କରେ ଆଲୋଚନା କରାଯାଇଛି । ଏଥିରୁ ଜଣାଯାଏ ଯେ ଗ୍ରାମପଞ୍ଚାୟତ ଅର୍ଥାତ୍ ନିର୍ବାଚିତ ଗ୍ରାମ ସଭାର ପ୍ରବନ୍ଧକ ତଥା ନ୍ୟାୟିକ ବା ଜୁଡ଼ିସିଆଲ୍ କ୍ଷମତା ବହୁତ ପରିମାଣରେ ଥିଲା ଏବଂ ସେଥିର ସଭ୍ୟମାନଙ୍କୁ ରାଜକର୍ମଚାରୀମାନେ ବିଶେଷ ସମ୍ମାନ ପ୍ରଦର୍ଶନ କରୁଥିଲେ । ଏହି ପଞ୍ଚାୟତ ଜମି ବଣ୍ଟନ କରିଥାଏ । ଫସଲରୁ କର ଆଦାୟ କରେ ଓ ଗ୍ରାମ ପକ୍ଷରୁ ରାଜସ୍ୱ ଦେଇଥାଏ । କେତେକ ଗ୍ରାମପଞ୍ଚାୟତ ଉପରେ ଆଉ ଏକ ବୃହତ୍ତର ପଞ୍ଚାୟତ ବା ପରିଷଦ ଥିଲା, ଯାହା ପଞ୍ଚାୟତମାନଙ୍କର 'କାର୍ଯ୍ୟ' ସମୀକ୍ଷା କରିବା ସଙ୍ଗେ ସଙ୍ଗେ ଆବଶ୍ୟକ ବେଳେ ବିହିତ ହସ୍ତକ୍ଷେପ ବି କରୁଥିଲା ।

କେତେକ ପୁରାତନ ଶିଳାଲେଖରୁ ଆହୁରି ଜଣାଯାଉଛି ଗ୍ରାମ-ପରିଷଦର ସଭ୍ୟମାନେ କିଭଳି ନିର୍ବାଚିତ ହେଉଥିଲେ ଏବଂ ସେଥିନିମନ୍ତେ କି ଯୋଗ୍ୟତା ଆବଶ୍ୟକ ହେଉଥିଲା ଏବଂ କି ଦୋଷ-ତ୍ରୁଟି ଥିଲେ ଜଣେ ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତାରୁ ବଞ୍ଚିତ ହେଉଥିଲା । ପ୍ରତ୍ୟେକ ବର୍ଷ ନିର୍ବାଚନରେ ନିର୍ବାଚିତ ବିବିଧ କମିଟି ଗଢ଼ାଯାଉଥିଲା ଓ ନାରୀମାନେ ମଧ୍ୟ ସେଥିରେ ଯୋଗଦେବାର ସୁଯୋଗ ପାଉଥିଲେ । ଦୁର୍ବ୍ୟବହାର କରିବା ପ୍ରମାଣିତ ହେଲେ ସଭ୍ୟ-ପଦରୁ ବିତାଡ଼ିତ ହେବାର ବ୍ୟବସ୍ଥା ଥିଲା । ସର୍ବସାଧାରଣ କୌଣସି ପାଣ୍ଠିର ହିସାବ ଠିକ୍ ଦେଇ ନପାରିବା ଏକ ଗୁରୁତର ଦୋଷ ଓ ନିର୍ବାଚନ ନିମନ୍ତେ ଅଯୋଗ୍ୟତା ବିବେଚିତ ହେଉଥିଲା । ପ୍ରିୟାପ୍ରୀତି ତୋଷଣ ନିରୋଧ କରିବା ଦିଗରେ ଗୋଟିଏ ଚମତ୍କାରିକ ନିୟମର ଉଲ୍ଲେଖ ଦେଖିବାକୁ ମିଳେ; କୌଣସି ସଭ୍ୟଙ୍କ ଆତ୍ମୀୟସ୍ୱଜନ କୌଣସି ସର୍ବସାଧାରଣ ଦାୟିତ୍ୱପୂର୍ଣ୍ଣ ପଦରେ ନିଯୁକ୍ତ ହୋଇପାରିବେ ନାହିଁ ।

ଏହି ଗ୍ରାମପଞ୍ଚାୟତ ଅବା ସଭାଗୁଡ଼ିକ ନିଜ ନିଜ ସ୍ୱତନ୍ତ୍ରତା ଓ ଅଧିକାର ସମ୍ପର୍କରେ ଖୁବ୍ ସଚେତନ ଥିଲେ ଏବଂ କୌଣସି ସୈନିକ ରାଜକୀୟ ଅନୁଜ୍ଞାପତ୍ର ବିନା ଗ୍ରାମ ଭିତରକୁ

ପରିପାଳିବ ନାହିଁ ବୋଲି ନିୟମ କରାଯାଇଥିଲା । ଲୋକେ ଯଦି କୌଣସି ରାଜକର୍ମଚାରୀ ବିରୁଦ୍ଧରେ ଅଭିଯୋଗ କରନ୍ତି, ନୀତିସାରରେ କୁହାଯାଇଛି,"ରାଜା କର୍ମଚାରୀଙ୍କ ପକ୍ଷ ନନେଇ ପ୍ରଜାଙ୍କ ପକ୍ଷ ନେବେ ।" ଯଦି ବହୁଲୋକ କୌଣସି କର୍ମଚାରୀ ବିରୁଦ୍ଧରେ ଅଭିଯୋଗ କରନ୍ତି, ତାହାହେଲେ ତାଙ୍କୁ ତୁରନ୍ତ କର୍ମରୁ ଅନ୍ତର କରିଦେବା ବିଧେୟ; "କାରଣ ପଦାଧିକାର ମଦରେ କିଏ ମତ୍ତ ନହୁଏ ?" ସଂଖ୍ୟାଗରିଷ୍ଠ ଲୋକଙ୍କ ମତ ନେଇ ରାଜା କାର୍ଯ୍ୟ କରିବା ଉଚିତ । "ବହୁ ତନ୍ତୁରେ ତିଆରି ହୋଇଥିବା ଦଉଡ଼ି ଯେପରି ଗୋଟାଏ ସିଂହକୁ ବାନ୍ଧି ଟାଣି ନେଇପାରେ, ସେହିପରି ଜନମତ ରାଜା ଅପେକ୍ଷା ଅଧିକ ଶକ୍ତିଶାଳୀ । "କାହାକୁ ରାଜକୀୟ କର୍ମରେ ନିଯୁକ୍ତ କଲାବେଳେ ତାର ଚରିତ୍ର, ଯୋଗ୍ୟତା ଓ କର୍ମପଟୁତା ବିଚାରକୁ ନେବା ଉଚିତ; ବର୍ଣ୍ଣ ଅବା ପରିବାର ନୁହେଁ" ଏବଂ "ବର୍ଣ୍ଣ ଅବା ବଂଶ କେବେହେଲେ ବ୍ରାହ୍ମଣୋଚିତ ମନୋଭାବ ଜାଗ୍ରତ କରିପାରେ ନାହିଁ ।"

ବଡ଼ ବଡ଼ ସହରମାନଙ୍କରେ ବହୁ କାରିଗର ଓ ସୌଦାଗର ବାସକରୁଥିଲେ ଏବଂ ସେମାନଙ୍କର ସଂଘ ଅଥବା ସମିତି ଅବା ପୂଗ ଓ ବଣିକ ସଂଗଠନମାନ ଥିଲା । ପ୍ରତ୍ୟେକେ ନିଜ ନିଜ କ୍ଷେତ୍ରର ବ୍ୟବସ୍ଥା ସ୍ୱତନ୍ତ୍ର ଭାବରେ ନିୟନ୍ତ୍ରଣ କରିଥାନ୍ତି ।

ଏ ସମସ୍ତ ତଥ୍ୟ ଓ ସୂଚନା ସମ୍ପୂର୍ଣ୍ଣ ନ ହେଲେ ମଧ୍ୟ ଏ ସବୁଥିରୁ ଓ ଅନ୍ୟାନ୍ୟ ବହୁ ସୂତ୍ରରୁ ଜଣାଯାଏ ଯେ ଗ୍ରାମ ଓ ସହରମାନଙ୍କରେ ବ୍ୟାପକ ଭାବରେ ସ୍ୱଶାସନ ପ୍ରଣାଳୀ ଚାଲୁ-ହୋଇଥିଲା ଏବଂ ଯେତେକାଳପର୍ଯ୍ୟନ୍ତ ରାଜସ୍ୱ ସଂଗ୍ରହରେ କୌଣସି ବାଧା ବା ପ୍ରତିବନ୍ଧକ ଉପୁଜି ନାହିଁ, କେନ୍ଦ୍ର ସରକାର ଗ୍ରାମ ଅବା ସହର ବ୍ୟାପାରରେ ହସ୍ତକ୍ଷେପ କରୁ ନଥିଲେ । ପ୍ରଥାସମ୍ମତ ଆଇନ ଖୁବ୍ ଶକ୍ତିଶାଳୀ ଥିଲା ଏବଂ ପ୍ରଥା ଅବା ରୀତି ଉପରେ ପ୍ରତିଷ୍ଠିତ କୌଣସି ଅଧିକାରରେ ରାଜନୈତିକ ଅବା ସାମରିକ ଶକ୍ତି ହସ୍ତକ୍ଷେପ କରୁ ନଥିଲା । ମୂଳତଃ କୃଷିପ୍ରଣାଳୀ ସମବାୟ ଅବା ଗ୍ରାମ କୋଠ ଉପରେ ଭିତ୍ତି କରିଥିଲା । ବ୍ୟକ୍ତି ଓ ପରିବାର ଉଭୟର କେତେକ ଅଧିକାର ସଙ୍ଗେ ଉପକୃତ ବି ଥିଲା ଏବଂ ପ୍ରଥାସମ୍ମତ ଆଇନ ଏଥିର ନିର୍ଦ୍ଧାରଣ ଓ ସୁରକ୍ଷାଭାର ବହନ କରିଥିଲା ।

ଭାରତରେ ଧର୍ମତନ୍ତ୍ର ଉପରେ ପ୍ରତିଷ୍ଠିତ ରାଜ୍ୟ ନଥିଲା । ରାଜା ଅତ୍ୟାଚାରୀ ଓ ଅନ୍ୟାୟ କର୍ମରେ ଲିପ୍ତ ହେଲେ ତାଙ୍କ ବିରୁଦ୍ଧରେ ବିଦ୍ରୋହ କରିବା ଅଧିକାର ଭାରତୀୟ ଦଣ୍ଡ-ନୀତିରେ ସ୍ୱୀକୃତ ହୋଇଛି । ଦୁଇ ହଜାର ବର୍ଷ ପୂର୍ବେ ଚୀନା ଦାର୍ଶନିକ ମେନ୍‌ସିଏସ୍ ଯାହା କହିଥିଲେ, ଭାରତ ପ୍ରତି ପ୍ରଯୁଜ୍ୟ ହୋଇପାରେ :"ରାଜା ଯେବେ ତାର ପ୍ରଜାବର୍ଗଙ୍କୁ ତୃଣ ଅବା ଧୂଳି ଭଳି ତୁଚ୍ଛ ଜ୍ଞାନ କରେ, ପ୍ରଜାମାନେ ତାଙ୍କୁ ଶତ୍ରୁ ଓ ଦସ୍ୟୁ ବିବେଚନା କରିବା ଉଚିତ ।" ରାଜକୀୟ ଶକ୍ତିର ଏହି ସମଗ୍ର ଅବଧାରଣା ୟୁରୋପୀୟ ସାମନ୍ତବାଦଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସେଠାରେ ରାଜ୍ୟର ସମସ୍ତ ବ୍ୟକ୍ତି ଓ ବସ୍ତୁ ଉପରେ ରାଜାର ଅଖଣ୍ଡ କର୍ତ୍ତୃତ୍ୱ ରହିଥିଲା । ରାଜାନୁରକ୍ତି ନିମନ୍ତେ ଶପଥବଦ୍ଧ, ବନସାମନ୍ତ ଓ ବଡ଼ ବଡ଼ ଭୂମ୍ୟାଧିକାରୀମାନଙ୍କୁ ରାଜା ଆବଶ୍ୟକ ପରିମାଣରେ ଏହି କର୍ତ୍ତୃତ୍ୱ ହସ୍ତାନ୍ତର କରିଥିଲେ । ଏପରି ଭାବରେ କର୍ତ୍ତୃତ୍ୱର ଏକ ସିଡ଼ି ନିର୍ମିତ ହୋଇଥିଲା । ଏଥି ସଙ୍ଗେ ସଂପୃକ୍ତ ଜମି ଓ ଭୃତ୍ୟ ଉଭୟ ସାମନ୍ତ ବା 'ଲର୍ଡ଼'ଙ୍କର ଓ ତାଙ୍କ

ଜରିଆରେ ରାଜାଙ୍କ ପ୍ରଜା ଥିଲେ । ରୋମନ୍ ରାଜ୍ୟ ପରିକଳ୍ପନାର ଏହା ଥିଲ ସମ୍ପ୍ରସାରଣ । ଭାରତରେ କେବେହେଲେ ଏପରି କିଛି ବ୍ୟବସ୍ଥା ନଥିଲ । ରାଜସ୍ୱ ସଂଗ୍ରହ କରିବା ଅଧିକାର ରାଜାର ଥିଲ ଏବଂ ଏହି ଅଧିକାର କେବଳ ସେ ଅନ୍ୟମାନଙ୍କୁ ହସ୍ତାନ୍ତର କରିପାରୁଥିଲେ । ଭାରତରେ କୃଷି କେବେହେଲେ ସାମନ୍ତ ଅବା ଜମିଦାରର ଗୋଲାମ ନଥିଲା । ପ୍ରଚୁର ପରିମାଣରେ ଜମି ପଡ଼ିଥିଲ ଏବଂ କୃଷିଙ୍କୁ ତାର ଜମିରୁ ବେଦଖଲ କରିବାରେ କୌଣସି ସ୍ୱତନ୍ତ୍ର ସୁବିଧା ମିଳିବାର ନଥିଲ । ଅତଏବ ଭାରତରେ ଜମିଦାରୀ ବ୍ୟବସ୍ଥା ନଥିଲ, ପାଶ୍ଚାତ୍ୟ ଜଗତରେ ଯେପରି ହୋଇଥିବା ଜଣାଯାଏ, କିମ୍ବା କୃଷି ବ୍ୟକ୍ତିଗତ ଭାବରେ ତା'ର ଜମିର ସମ୍ପୂର୍ଣ୍ଣ ଭାବରେ ମାଲିକ ନଥିଲ । ଏହି ଉଭୟ ଧାରଣା ବହୁକାଳ ପରେ ଇଂରେଜମାନେ ପ୍ରୟୋଗ କଲେ ଓ ତା'ର ପରିଣାମ ଭୟଙ୍କର ହେଲ ।

ବୈଦେଶିକ ବିଜୟ ଆନୟନ କଲା ଯୁଦ୍ଧ ଓ ଧ୍ୱଂସଲୀଳା; ପ୍ରଜା-ବିଦ୍ରୋହ ଦେଖାଦେଲ ଓ ନିର୍ମମ ଭାବରେ ତାହା ଦମନ କରାଗଲ ଏବଂ ଏହି ନୂତନ ଶାସକଶ୍ରେଣୀ ମୁଖ୍ୟତଃ ସୈନ୍ୟ-ବଳ ଉପରେ ନିର୍ଭର କଲେ । ଏହି ଶାସକବର୍ଗ ବହୁଧା ଦେଶର ପ୍ରଥାସମ୍ମତ ଆଇନ, ବହୁ ସାଂବିଧାନିକ ସଂଯମ ଅଥବା ନିୟନ୍ତ୍ରଣ ଅବଜ୍ଞା ଅବା ଲଙ୍ଘନ କରୁଥିଲେ । ଏଥିହେତୁରୁ ପରିଣାମ ଗୁରୁତର ହେଲ; ସ୍ୱଶାସିତ ଗ୍ରାମଗୋଷ୍ଠୀର କ୍ଷମତା ସଙ୍କୁଚିତ ହେଲ ଏବଂ ପରବର୍ତ୍ତୀ ସମୟରେ ଭୂରାଜସ୍ୱ ପ୍ରଣାଳୀରେ ବିବିଧ ପରିବର୍ତ୍ତନ ଅଣାଗଲ । ସେ ଯାହା ହେଉ, ଆଫଗାନ୍ ଓ ମୋଗଲ ଶାସକମାନେ ପୁରାତନ ପ୍ରଥା ଓ ପରମ୍ପରାରେ ହସ୍ତକ୍ଷେପ ନ କରିବାପାଇଁ ବିଶେଷ ସତର୍କତା ଅବଲମ୍ବନ କରି କୌଣସି ମୌଳିକ ପରିବର୍ତ୍ତନ ପ୍ରୟୋଗ କରି ନଥିଲେ । ଭାରତୀୟ ଜୀବନର ଅର୍ଥନୈତିକ ଓ ସାମାଜିକ ସଙ୍ଗଠନ ପୂର୍ବଭଳି ଅବ୍ୟାହତ ରହିଲ । ପ୍ରଥାସମ୍ମତ ଆଇନର ସଂରକ୍ଷଣ ଏବଂ ପ୍ରଜାର ବ୍ୟକ୍ତିଗତ ଧର୍ମ-ବିଶ୍ୱାସ ବାହାରେ ରାଜ୍ୟ ଶାସନ ବ୍ୟାପାର ଅଲଗା ରଖିବା ନିମନ୍ତେ ଘିଆସୁଦ୍ଦିନ୍ ତୋଗଲକ୍ ତାଙ୍କର କର୍ମଚାରୀମାନଙ୍କ ଉଦ୍ଦେଶ୍ୟରେ ନିର୍ଦ୍ଦିଷ୍ଟ ଆଦେଶନାମା ଜାରି କରିଥିଲେ; କିନ୍ତୁ ପରିବର୍ତ୍ତନଶୀଳ କାଳ ଓ ସଂଘାତ ଏବଂ କ୍ଷମତାର କ୍ରମବର୍ଦ୍ଧିତ କେନ୍ଦ୍ରୀକରଣ, ପ୍ରଥାସମ୍ମତ ଆଇନ ପ୍ରତି ଅର୍ପିତ ମର୍ଯ୍ୟାଦାକୁ କ୍ରମଶଃ କ୍ଷୁଣ୍ଣ କଲା । ତଥାପି ଗ୍ରାମ ସ୍ୱଶାସନ କୌଣସିମତେ ଚାଲୁରହିଲ । ଏହା ଭାଙ୍ଗିବାକୁ ଆରମ୍ଭ କଲ କେବଳ ବ୍ରିଟିଶ୍ ରାଜତ୍ୱରେ ।

## ୮. ବର୍ଣ୍ଣବ୍ୟବସ୍ଥାର ତତ୍ତ୍ୱ ଓ ଅଭ୍ୟାସ : ଏକାନ୍ନବର୍ତ୍ତୀ ପରିବାର

"ଭାରତରେ ଧର୍ମ", ହାଭେଲ୍ କହନ୍ତି, ମତବାଦ ନୁହେଁ; ବରଂ ଜୀବନର ବିଭିନ୍ନ ଅବସ୍ଥା ଏବଂ ବିଭିନ୍ନ ଆତ୍ମିକ ଉନ୍ନତ ପ୍ରତି ଉପଯୋଗୀ ମାନବିକ ଆଚରଣର ଗୋଟିଏ କାର୍ଯ୍ୟକାରୀ ପ୍ରକଳ୍ପ ।" ପ୍ରାଚୀନ କାଳରେ, ଇଣ୍ଡୋ-ଆର୍ଯ୍ୟ ସଂସ୍କୃତ ଯେବେ ପ୍ରଥମ କରି ରୂପ-ପରିଗ୍ରହ କଲ, ସଭ୍ୟତା, ବୁଦ୍ଧି ଓ ଆତ୍ମିକ ବିକାଶ ଦିଗରେ, ଯେତେଦୂର ଧାରଣା କରାଯାଇପାରେ, ପରସ୍ପରଠାରୁ ଭିନ୍ନ ମଣିଷଙ୍କ ଆବଶ୍ୟକତା ନିମନ୍ତେ ଧର୍ମକୁ ହିଁ ବ୍ୟବସ୍ଥା କରିବାକୁ ପଡ଼ିଥିଲ । ସେତେବେଳେ ଆଦିମ ଆରଣ୍ୟକ ଲୋକ ଥିଲେ, ଇନ୍ଦ୍ରଜାଲ ଓ ପ୍ରେତଲୋକରେ ବିଶ୍ୱାସ

କରୁଥିବା ଲୋକ ଥିଲେ, ପ୍ରତୀକ ପୂଜକ ଥିଲେ ଓ ନାନାବିଧ ଅନ୍ଧବିଶ୍ୱାସର ଅନୁଗାମୀ ଲୋକ ଥିଲେ; ଆହୁରି ମଧ୍ୟ ସେପରି ଲୋକ ଥିଲେ, ଯେଉଁମାନେ ଆଧ୍ୟାତ୍ମିକ ବିଚାରର ସର୍ବୋଚ୍ଚ ସ୍ତରରେ ପହଞ୍ଚିପାରିଥିଲେ । ଏହି ଉଭୟ ଶ୍ରେଣୀ ମଧ୍ୟରେ ବିଶ୍ୱାସ ଓ ଆଚାରର ଅନେକ ବର୍ଗ ରହିଥିଲା । କେତେ ଚିନ୍ତାର ଉଚ୍ଚତମ ଶୀର୍ଷ ଉଦ୍ଦେଶ୍ୟରେ ଗତିକଲାବେଳେ ଅନେକଙ୍କ ପକ୍ଷରେ ତା'ର ସୀମା ସ୍ପର୍ଶ କରିବା ମଧ୍ୟ ସମ୍ଭବ ନଥିଲା । ସାମାଜିକ ଜୀବନର ଅଭିବୃଦ୍ଧି ସଙ୍ଗେ ମତବିଶ୍ୱାସରେ କିଛି କିଛି ସମାନତା ସୃଷ୍ଟି ହେଲା; ତଥାପି ସଂସ୍କୃତି ଓ ମତଗତଭେଦରୁ ବହୁକିଛି ପାର୍ଥକ୍ୟ ରହିଗଲା । କୌଣସି ଦାବୀକୁ ଖଣ୍ଡନ କରିବା କିମ୍ବା କୌଣସି ବିଶ୍ୱାସକୁ ବଳପୂର୍ବକ ଦମନ କରିବା ଇଣ୍ଡୋ-ଆର୍ଯ୍ୟ ଅଭିମୁଖ୍ୟ ନଥିଲା । ନିଜର ଆଦର୍ଶ, ନିଜର ବୋଧ ତଥା ମାନସିକ ସ୍ତର ଅନୁସାରେ କାର୍ଯ୍ୟ କରିବାର ସ୍ୱାତନ୍ତ୍ର୍ୟ ପ୍ରତ୍ୟେକ ବର୍ଗର ଥିଲା । ସମନ୍ୱୟର ଉଦ୍ୟମ କରାଯାଇଛି; କିନ୍ତୁ କୌଣସି ବିଶ୍ୱାସକୁ ଅସ୍ୱୀକାର ଅଥବା ଦମନ କରାଯାଇ ନାହିଁ ।

ଏହିଭଳି ଏବଂ ଏହାଠାରୁ ଅଧିକତର ଜଟିଳ ଏକ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଲା ସାମାଜିକ ସଂଗଠନରେ । ଏ ସବୁ ଭିନ୍ନ ଭିନ୍ନ ଗୋଷ୍ଠୀ, ପ୍ରତ୍ୟେକେ ନିଜ ନିଜ ସ୍ୱାଧୀନତା ରକ୍ଷାକରି, ନିଜସ୍ୱ ଭାବରେ ଜୀବନ ଗଢ଼ିବା ଓ ବିକାଶ କରିବା ସଙ୍ଗେ ସଙ୍ଗେ ସମଗ୍ର ସମାଜ ସହିତ ଏକ ସାମାଜିକ ପଦ୍ଧତିରେ କିପରି ସହଯୋଗ କରିପାରିବେ, ଥିଲା ସମସ୍ୟା । କେତେ ଅସ୍ୱାଭାବିକ ହେଲେ ସୁଦ୍ଧା, ଗୋଟାଏ ଅର୍ଥରେ, ସେହି ସ୍ଥିତି ସଙ୍ଗେ ଆଜିକାଲିର ସଂଖ୍ୟାଲଘୁଙ୍କ ବିବିଧ ସମସ୍ୟା ତୁଳନା କରାଯାଇପାରେ, ଯାହା ଏ କାଳରେ ବହୁ ଦେଶରେ ରହିଛି ଏବଂ ଯାହାର ସମାଧାନ ମନେହୁଏ ସୁଦୂରପରାହତ । ପ୍ରତ୍ୟେକ ନାଗରିକକୁ ଭାବମତ ମାର୍କିନ୍ କରିବା ଉଦ୍ୟମ କରିଥାରେ ଯୁକ୍ତରାଷ୍ଟ୍ର ଆମେରିକା ତାର ବିବିଧ ସଂଖ୍ୟାଲଘୁ ସମସ୍ୟା, କମ୍ ବହୁତରେ ସମାଧାନ କରିଥାଏ । ସମସ୍ତେ ଯେପରି ଗୋଟାଏ ନିର୍ଦ୍ଦିଷ୍ଟ ଆଦର୍ଶ ରକ୍ଷାକରିପାରିବେ ସେ ଦିଗରେ ବିହିତ ବ୍ୟବସ୍ଥା କରାଯାଏ । ଅନ୍ୟ ସବୁ ଦେଶ ଯେଉଁମାନଙ୍କର ଅତୀତ ଅତି ଦୀର୍ଘ ଓ ଅଧିକତର ଜଟିଳ, ସେଠାରେ ଏ ପ୍ରକାର ପ୍ରତିକ୍ରିୟାର ସଫଳତା ସହଜ ହୁଏ ନାହିଁ । ଏପରିକି କାନାଡ଼ାରେ ମଧ୍ୟ ଜାତି, ଧର୍ମ ଓ ଭାଷା-ସଚେତନ ଗୋଟାଏ ଫରାସୀ ଗୋଷ୍ଠୀ ଅଛି । ୟୁରୋପରେ ଏ ପ୍ରକାର ପ୍ରତିବନ୍ଧକ ଆହୁରି ଉଚ୍ଚତର ଓ ଗମ୍ଭୀରତର । ତଥାପି, ଏ ସବୁ ୟୁରୋପୀୟଙ୍କ ପାଇଁ କିମ୍ବା ଯେଉଁମାନେ ୟୁରୋପରୁ ଯାଇ ଅନ୍ୟାନ୍ୟ ଦେଶରେ ବସବାସ କରିଚନ୍ତି, ଯେଉଁମାନଙ୍କର ପୃଷ୍ଠଭୂମି ଓ ସଂସ୍କୃତିରେ ସାଦୃଶ୍ୟ ରହିଛି, ସେମାନଙ୍କ ପ୍ରତି କେବଳ ପ୍ରଯୁଜ୍ୟ । ଏ ବ୍ୟବସ୍ଥାରେ ଅଣ-ୟୁରୋପୀୟଙ୍କ ସ୍ଥାନ ନାହିଁ । ଯୁକ୍ତରାଷ୍ଟ୍ର ଆମେରିକାରେ ନିଗ୍ରୋମାନେ ଶତକଡ଼ା ଶହେ ମାର୍କିନ୍ ନାଗରିକ ହେଲେ ମଧ୍ୟ ଗୋଟାଏ ଜାତି ଭାବରେ ସେମାନେ ପୃଥକ୍ ଏବଂ ବହୁତ କିଛି ସୁଯୋଗ ଓ ସ୍ୱାଧିକାରରୁ ବଂଚିତ ଯାହା ୟୁରୋପୀୟମାନେ ଅନାୟାସରେ ପାଇଥାନ୍ତି । ଅନ୍ୟତ୍ର ଏହାଠାରୁ ବଳି କଦର୍ଯ୍ୟ ବହୁ ଦୃଷ୍ଟାନ୍ତ ରହିଛି । ଗୋଟାଏ ବହୁ-ଜାତିକ ରାଷ୍ଟ୍ର ଗଠନ କରି ସୋଭିଏତ୍ ରୁଷିଆ କେବଳ ତାର ଜାତି ଓ ସଂଖ୍ୟାଲଘୁ ସମସ୍ୟାମାନ ସମାଧାନ କରିପାରିଛି ବୋଲି କହନ୍ତି ।

ଆଜି ଆମର ସମସ୍ତ ଜ୍ଞାନ ଓ ପ୍ରଗତି ସତ୍ତ୍ୱେ, ଏହିସବୁ ଅସୁବିଧା ଓ ସମସ୍ୟା ଯଦି ଆମକୁ

ଏତେଭଳି ବିବ୍ରତ କରୁଛି, ପ୍ରାଚୀନ କାଳରେ, ନାନାବିଧ ଲୋକଙ୍କର ବିଶାଳ ଏକ ଦେଶରେ, ଇଣ୍ଡୋ-ଆର୍ଯ୍ୟମାନେ ଯେବେ ସେମାନଙ୍କର ସଭ୍ୟତା ଓ ସାମାଜିକ ବ୍ୟବସ୍ଥା ଗଢ଼ିଥିଲେ, କେତେ ଜଟିଳ ପରିସ୍ଥିତିର ସମ୍ମୁଖୀନ ହୋଇ ନଥିବେ ! ସେହି ସମୟରେ ଓ ତାର ପରବର୍ତ୍ତୀକାଳରେ ମଧ୍ୟ ଏହି ସବୁ ସମସ୍ୟା ସମାଧାନ କରିବାର ସହଜ-ସରଳ ପନ୍ଥା ଥିଲା ବିଜିତ ଜାତିମାନଙ୍କୁ ଏକେ ନିଶ୍ଚିହ୍ନ କରିଦେବା କିମ୍ବା ଦାସ କରିନେବା । ଏହି ପନ୍ଥା ଭାରତରେ ଅନୁସୃତ ହୋଇ ନଥିଲା; କିନ୍ତୁ ଏ କଥା ସ୍ପଷ୍ଟ ଯେ ଉପର ବର୍ଗର ପ୍ରାଧାନ୍ୟ ବଜାୟ ରଖିବା ପାଇଁ ସବୁପ୍ରକାର ସତର୍କତା ଅବଲମ୍ବନ କରାଯାଇଥିଲା । ସେହି ପ୍ରାଧାନ୍ୟ ନିଶ୍ଚିତ କରିଯାଇ ଗୋଟିଏ ପ୍ରକାର ବହୁଗୋଷ୍ଠୀସମ୍ବଳିତ ରାଷ୍ଟ୍ର ନିର୍ମାଣ କରାଗଲା ଯେଉଁଥିରେ କେତେକ ସୀମା ବନ୍ଧନ ଭିତରେ ଓ କେତେକ ସାଧାରଣ ନିୟମର ବଶବର୍ତ୍ତୀ ଭାବରେ ପ୍ରତ୍ୟେକ ଗୋଷ୍ଠୀକୁ ତାର ନିଜସ୍ୱ ପ୍ରଥା ଅବା ଅଭିଳାଷ ଅନୁସାରେ ଜୀବନ ଓ ଜୀବିକା କରିବାର ସ୍ୱାଧୀନତା ଦିଆଯାଇଥିଲା । ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ଯେଭଳି ଅଯଥା ହସ୍ତକ୍ଷେପ କିମ୍ବା ସଂଘର୍ଷ ନଘଟେ, ସେଥିକି କେବଳ ଥିଲା ପ୍ରକୃତ ନିବନ୍ଧନ । ଏହି ପ୍ରଣାଳୀ ଥିଲା ଯଥେଷ୍ଟ ନମନୀୟ ଓ ପ୍ରସାରଶୀଳ; କାରଣ ନବାଗତ ଲୋକେ କିମ୍ବା ପୁରାତନ କୌଣସି ଗୋଷ୍ଠୀର ଅସନ୍ତୁଷ୍ଟ ଅବା ଭିନ୍ନ ମତପୋଷକ ଲୋକେ, ଯଥେଷ୍ଟ ସଂଖ୍ୟକ ହୋଇଥିଲେ, ନୂଆ ଗୋଷ୍ଠୀ ଗଢ଼ିପାରୁଥିଲେ । ପ୍ରତ୍ୟେକ ଗୋଷ୍ଠୀ ଭିତରେ ସମାନତା ଓ ଗଣତାନ୍ତ୍ରିକତା ବିରାଜିତ ଥିଲା ଏବଂ ନିର୍ବାଚିତ ନେତାମାନେ ଗୋଷ୍ଠୀର ପଥପ୍ରଦର୍ଶକ ଥିଲେ । ଯେତେବେଳେ କୌଣସି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉଠିଛି, ନେତାମାନେ ଗୋଷ୍ଠୀର ସମସ୍ତଙ୍କ ସଙ୍ଗେ ପରାମର୍ଶ କରିଚନ୍ତି ।

ଏହିସବୁ ଗୋଷ୍ଠୀ ଅବା ବର୍ଗ ସବୁ ସମୟରେ ପ୍ରାୟଶଃ ବୃତ୍ତିପ୍ରଧାନ ଥିଲା ଏବଂ ପ୍ରତ୍ୟେକ ବୃତ୍ତି ଥିଲା ନିର୍ଦ୍ଦିଷ୍ଟ । ଏହି ଭାବରେ ପ୍ରତ୍ୟେକ ବର୍ଗ ଗୋଟିଏ ପ୍ରକାର ବ୍ୟବସାୟ-ସଙ୍ଘ ଅବା ଶିଳ୍ପ-ସଙ୍ଘରେ ପରିଣତ ହୋଇଥିଲା । ପ୍ରତ୍ୟେକ ଗୋଷ୍ଠୀରେ ସହୃଦବୋଧ ଖୁବ୍ ପ୍ରବଳ ଭାବରେ ଥିଲା, ଯାହା ଗୋଷ୍ଠୀକୁ ସଂରକ୍ଷିତ କରୁଥିଲା କେବଳ ନୁହେଁ ତାର କୌଣସି ସଭ୍ୟ ମଧ୍ୟ ଯଦି କେବେ କେଉଁ ଭାବରେ ବିପନ୍ନ ହୁଏ, ଆଶ୍ରୟ ଓ ସାହାଯ୍ୟ ଲାଭ କରି ପାରୁଥିଲା । ପ୍ରତ୍ୟେକ ଗୋଷ୍ଠୀ ଅବା ଜାତିର କର୍ମ ଅନ୍ୟ ଜାତିର କର୍ମ ସଙ୍ଗେ ସମ୍ପର୍କିତ ଥିଲା ଏବଂ ଏହା ପଛର ଭାବ ଏପରି ଥିଲା ଯେ ପ୍ରତ୍ୟେକ ଗୋଷ୍ଠୀ ଯଦି ନିଜର ପରିସୀମା ଭିତରେ ସଫଳ ଭାବରେ କାର୍ଯ୍ୟକାରୀ ହୁଏ, ତାହାହେଲେ ସମଗ୍ର ସମାଜ ସୁସଙ୍ଗତ ଭାବରେ କାର୍ଯ୍ୟକାରୀ ହେବ । ସର୍ବୋପରି, ଏହି ସମସ୍ତ ଗୋଷ୍ଠୀକୁ ସମ୍ମିଳିତ କରି ଧରିରଖିବା ପାଇଁ ଗୋଟାଏ ସର୍ବସାଧାରଣ ଜାତୀୟଭାବ ସୃଷ୍ଟି କରିବା ଦିଗରେ ଉଦ୍ୟମ କରାଯାଇଥିଲା ଓ ସେ ଦିଗରେ ବିଶେଷ ସଫଳତା ବି ମିଳିଥିଲା । ଲୋକେ ବୋଧ କରିପାରୁଥିଲେ ଯେ ସେମାନେ ସମସ୍ତେ ଗୋଟାଏ ସଂସ୍କୃତି ଓ ଗୋଟାଏ ପରମ୍ପରାର ସୃଷ୍ଟି; ସେମାନେ ଗୋଟାଏ ଦେଶର ଅଧିବାସୀ ଓ ସେ ଦେଶର ଯେତେ ସାଧୁ, ସନ୍ଥ, ବୀର ପୁରୁଷ ସମସ୍ତେ ସେମାନଙ୍କର । ଏହି ଏକତ୍ୱବୋଧ ଯୋଗୁଁ ଲୋକେ ଦେଶର ସବୁ ଅଞ୍ଚଳକୁ ତୀର୍ଥଯାତ୍ରା କରୁଥିଲେ । ଏହି ଜାତୀୟଭାବ ଆଜିର

ଜାତୀୟବାଦଠାରୁ ଅବଶ୍ୟ ଭିନ୍ନ ଥିଲା । ରାଜନୀତି ଦୃଷ୍ଟିରୁ ତାହା ଦୁର୍ବଳ ହୋଇଥିଲେ ମଧ୍ୟ ସାମାଜିକ ଓ ସାଂସ୍କୃତିକ ଦିଗରେ ଖୁବ୍ ବଳଶାଳୀ ଥିଲା । ରାଜନୈତିକ ସଂହତି ଅଭାବରେ ବୈଦେଶିକ ବିଜୟ ସହଜ ହୋଇଥିଲା; କିନ୍ତୁ ତାର ସାମାଜିକ ଶାନ୍ତିଯୋଗୁ ପୁନରୁଦ୍ଧାର କାର୍ଯ୍ୟ ଓ ନବାଗତମାନଙ୍କୁ ନିଜର ସାମାଜିକ ସଙ୍ଗଠନରେ ମିଶାଇ ନେବା ସହଜ ହେଉଥିଲା । ଏ ବ୍ୟବସ୍ଥାର ଏତେଭଲି ମସ୍ତକ ଥିଲା ଯେ ସବୁ ମସ୍ତକ ଏକସମୟରେ ଛିନ୍ନ ହେବା ସମ୍ଭବ ନଥିଲା । ସେଥି ହେତୁରୁ ବିଜେତାର କବଳରୁ ଓ ବିପର୍ଯ୍ୟୟ ଭିତରୁ ସେମାନେ ଉଧୁରି ପାରୁଥିଲେ ।

ଏହି ବର୍ଣ୍ଣ-ବ୍ୟବସ୍ଥା ଥିଲା ସେବା ଓ ଧର୍ମ ଉପରେ ପ୍ରତିଷ୍ଠିତ ଏକ ଗୋଷ୍ଠୀଗତ ପ୍ରଣାଳୀ । କୌଣସି ସାଧାରଣ ନିୟମର ବନ୍ଧନ କଠୋର ଭାବରେ ଲାଗୁକରିବା ପରିବର୍ତ୍ତେ ପ୍ରତ୍ୟେକ ବର୍ଗକୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଦେଇ ସବୁ ବର୍ଗକୁ ଗୋଟାଏ ସଂଗଠନରେ ସମ୍ମିଳିତ କରିଲେ ଉଦ୍ଦେଶ୍ୟ ଏହା ପଛରେ ଥିଲା । ଏହାର ବିସ୍ତୃତ ପରିସର ଭିତରେ ଏକ ନାରୀ ଗ୍ରହଣ, ବହୁ ନାରୀ ଗ୍ରହଣ ଓ ବ୍ରହ୍ମଚର୍ଯ୍ୟ ସାଧନ ବି ଥିଲା । ଅନ୍ୟାନ୍ୟ ପ୍ରଥା, ବିଶ୍ୱାସ ଓ ଅଭ୍ୟାସ ଭଳି ଏସବୁ ମଧ୍ୟ ସହଜ କରାଯାଉଥିଲା । ସବୁ ସ୍ତରରେ ଜୀବନ ଥିଲା ପ୍ରତିଷ୍ଠିତ । କୌଣସି ସଂଖ୍ୟାଲଘୁ ସଂଖ୍ୟାଗରିଷ୍ଠ ନିକଟରେ ପଦାନତ ହେବାର ଆବଶ୍ୟକତା ନଥିଲା; କାରଣ ସେହି ସଂଖ୍ୟାଲଘୁ ଗୋଟାଏ ସ୍ୱଶାସିତ ଗୋଷ୍ଠୀ ଭାବରେ ରହିବାର ସୁବିଧା ସବୁ ସମୟରେ ଥିଲା । ଏକମାତ୍ର ଦେଖିବାର କଥା ଥିଲା ଯେ ସ୍ୱଶାସିତ ଭାବରେ ଚଳିବାପାଇଁ ସଂଖ୍ୟା ଆଦି ଦିଗରୁ ତାହା ସମ୍ବଳବାନ କି ନୁହେଁ । ଦୁଇଟି ଗୋଷ୍ଠୀ ଅବା ବର୍ଗ ଭିତରେ ଜାତି, ଧର୍ମ, ସଂସ୍କୃତି ଓ ବୌଦ୍ଧିକ ବିକାଶର ପରିମାଣ ବା ଭେଦ ଧର୍ତ୍ତବ୍ୟ ନ ଥିଲା ।

ବ୍ୟକ୍ତିବିଶେଷ ଗୋଟାଏ ବର୍ଗର ଜନୈକ ସଭ୍ୟ ଭାବରେ କେବଳ ବିବେଚିତ ହେଉଥିଲା । ବର୍ଗର କାର୍ଯ୍ୟକାରିତାରେ ବାଧା ନ ପହଞ୍ଚାଇବା ପର୍ଯ୍ୟନ୍ତ ନିଜର ପସନ୍ଦ ଅନୁସାରେ କାର୍ଯ୍ୟ କରିବାର ସ୍ୱତନ୍ତ୍ରତା ବ୍ୟକ୍ତିର ଥିଲା । ବର୍ଗର କାର୍ଯ୍ୟ ବ୍ୟାହତ କରିବାର ଅଧିକାର ବ୍ୟକ୍ତିର ନଥିଲା; କିନ୍ତୁ କୌଣସି ବ୍ୟକ୍ତି ଯଦି ଯଥେଷ୍ଟ ପରିମାଣରେ ସମର୍ଥକ ସଂଗ୍ରହ କରିବାର ଶକ୍ତି ଧରି ପାରୁଥିଲା, ପୁରାତନ ବର୍ଗ ପରିତ୍ୟାଗ କରି ନୂତନ ଏକ ବର୍ଗ ଗଢ଼ିବା ଦିଗରେ ତା'ର ଆଗରେ କୌଣସି ପ୍ରତିବନ୍ଧକ ନଥିଲା । କୌଣସି ଗୋଷ୍ଠୀରେ ହେଲେ ମିଳିମିଶି ଚଳିବା ତା'ଦେଇ ସିଦ୍ଧ ହୋଇପାରୁ ନଥିଲା, ସାମାଜିକ କ୍ଷେତ୍ର ପାଇଁ ଅଥବା ବ୍ୟାବହାରିକ ଦୁନିଆ ପାଇଁ ତା'ର ଯୋଗ୍ୟତା ନାହିଁ ବୋଲି ଧରାଯାଉଥିଲା । ସେପରି ଅବସ୍ଥାରେ ଜାତି, ବର୍ଗ ଓ ସାଂସାରିକତାକୁ ଜଳାଞ୍ଜଳି ଦେଇ ସନ୍ନ୍ୟାସ ନେଇ ଯତ୍ରତତ୍ର ବିଚରଣ ଓ ଯଥେଚ୍ଛା କର୍ମ କରିବାପାଇଁ ତା'ର ସୁଯୋଗ ଥିଲା ।

ଏକଥା ମନେରଖିବାକୁ ପଡ଼ିବ ଯେ ଭାରତୀୟ ସାମାଜିକ ପ୍ରବଣତା ବର୍ଗ ଓ ସମାଜର ଦାବୀ ନିକଟରେ ବ୍ୟକ୍ତିକୁ ଯଦିଓ ମୁଣ୍ଡ ନୁଆଁଇବା ନିର୍ଦ୍ଦେଶ ଦେଇଥାଏ, ଧର୍ମ, ଚିନ୍ତା ଓ ଆଧ୍ୟାତ୍ମିକ ସାଧନାରେ କିନ୍ତୁ ବ୍ୟକ୍ତି ଉପରେ ସର୍ବଦା ଜୋର୍ ଦିଆଯାଇଛି । ପରମଜ୍ଞାନ ଓ ମୁକ୍ତି ଅନ୍ୱେଷଣର ମାର୍ଗ ଉଚ୍ଚ ଅବା ନୀଚ ପ୍ରତ୍ୟେକ ଜାତିର ମଣିଷ ପାଇଁ ମୁକ୍ତ

ଥିଲା । ଏହି ମୁକ୍ତି ଅଥବା ଜ୍ଞାନ ସାଧକ ଭାବରେ ଗୋଟାଏ ବର୍ଗ ନିମନ୍ତେ ହୋଇ ନପାରେ; ଏହା ବ୍ୟକ୍ତି ପକ୍ଷରେ ହିଁ ପ୍ରାପ୍ତବ୍ୟ । ଏହି ମୁକ୍ତିର ସନ୍ଧାନ ଦିଗରେ କୌଣସି ଧରାବନ୍ଧା ନିୟମ ନଥିଲା ଏବଂ ସବୁ ଦ୍ୱାରଦେଇ ମୁକ୍ତିମନ୍ଦିରରେ ପ୍ରବେଶ କରିବା ସମ୍ଭବ ବୋଲି ବିଶ୍ୱାସ କରାଯାଉଥିଲା ।

ସାମାଜିକ ସଙ୍ଗଠନରେ ବର୍ଗ ବ୍ୟବସ୍ଥାର ପ୍ରାଧାନ୍ୟ ଯଦିଓ ଥିଲା, ଆଉ ସେଇଥିରୁ ଜାତି ସୃଷ୍ଟି ହେଲା, ତଥାପି, ସବୁ ସମୟରେ ଗୋଟାଏ ବ୍ୟକ୍ତିବାଦୀ ପ୍ରବଣତା ଭାରତରେ ଥିଲା । ଦୁଇଟି ଅଭିମୁଖ୍ୟ ଭିତରେ ବହୁଧା ସଂଘାତ ଘଟିବାର ପ୍ରମାଣ ଦେଖିବାକୁ ମିଳେ । ଆଂଶିକ ଭାବରେ, ସେହି ବ୍ୟକ୍ତିବାଦ ଧାର୍ମିକ ସିଦ୍ଧାନ୍ତର ପରିଣାମ, ଯାହା ବ୍ୟକ୍ତି ଉପରେ ବିଶେଷ ଜୋର୍ ଦେଇଥାଏ । ବର୍ଣ୍ଣବ୍ୟବସ୍ଥାର ସମାଲୋଚନା ଅଥବା ନିନ୍ଦନ କରି ଯେଉଁମାନେ ସମାଜରେ ସଂସ୍କାର ଆଣିବା ଚାହିଁଛନ୍ତି ସେମାନେ ପ୍ରାୟଶଃ ଧାର୍ମିକ ସଂସ୍କାରକ ଏବଂ ସେମାନଙ୍କର ପ୍ରଧାନ ଯୁକ୍ତି ଥିଲା ଯେ ଜାତିଭେଦ, ଆତ୍ମୋନ୍ନତିର ଓ ସେହି ଗହନ ବ୍ୟକ୍ତି-ବାଦର ବିସ୍ତାରରେ ବାଧକ ହୋଇଥାଏ, ଯେଉଁ ଦିଗକୁ ଧର୍ମ ସଙ୍କେତ କରେ । ବୌଦ୍ଧଧର୍ମ ଏହି ଜାତି-ବର୍ଗ ଆଦର୍ଶରୁ ବିଚ୍ଛିନ୍ନ ଗୋଟାଏ ପ୍ରକାର ବ୍ୟକ୍ତିବାଦ ଓ ସାର୍ବଭୌମିକତାର ଦିଗ ସୂଚିତ କରିଥିଲା । କିନ୍ତୁ ଏହି ବ୍ୟକ୍ତିବାଦ ସବୁ ପ୍ରକାର ସାମାଜିକ କର୍ମରୁ ନିବୃତ୍ତି ସଙ୍ଗେ ଜଡ଼ିତ ହୋଇପଡ଼ିଲା । ଜାତିଭେଦ ସ୍ଥାନରେ କୌଣସି ଫଳପ୍ରଦ ସାମାଜିକ ବ୍ୟବସ୍ଥା ଏହା ନିବେଦନ କରିପାରି ନଥିଲା । ଅତଏବ ବୌଦ୍ଧ-ଯୁଗରେ ଯେପରି ତାର ପରବର୍ତ୍ତୀ କାଳରେ ମଧ୍ୟ ଜାତିଭେଦ ପ୍ରଥା ତିଷ୍ଠି ରହିଲା । କେଉଁ କେଉଁ ବର୍ଣ୍ଣର ପ୍ରାଧାନ୍ୟ ଥିଲା ? ଆମେ ଯଦି କ୍ଷଣକେ ପାଇଁ ସେହି ଲୋକଙ୍କୁ ଛାଡ଼ିଦେଉ, ଯେଉଁମାନେ ବର୍ଣ୍ଣ-ବହିର୍ଭୂତ ଅର୍ଥାତ୍ ଅସ୍ପୃଶ୍ୟ ଥିଲେ, ତାହାହେଲେ ଚାରିଗୋଟି ମୁଖ୍ୟ ବର୍ଣ୍ଣ ଆମ ଆଗକୁ ଆସେ : ପ୍ରଥମରେ ବ୍ରାହ୍ମଣ, ଯେଉଁମାନଙ୍କ ଭିତରେ ଥିଲେ ପୁରୋହିତ, ଗୁରୁ ଓ ଜ୍ଞାନୀ; ଦ୍ୱିତୀୟରେ କ୍ଷତ୍ରିୟ, ଯେଉଁମାନେ ଥିଲେ ଯୋଦ୍ଧା ଓ ଶାସକ; ତୃତୀୟରେ ବୈଶ୍ୟ । ଏ ବର୍ଣ୍ଣର ଅନ୍ତର୍ଭୁକ୍ତ ଥିଲେ ବଣିକ, ସୌଦାଗର, ମହାଜନ ଇତ୍ୟାଦି; ଶେଷରେ ଶୂଦ୍ର, ଯେଉଁଥିରେ କୃଷି ଓ ଅନ୍ୟାନ୍ୟ କର୍ମର ଲୋକେ ଅନ୍ତର୍ଭୁକ୍ତ ଥିଲେ । ଏଥିଭିତରୁ ଗୋଟିଏ ବର୍ଣ୍ଣ କେବଳ ସମ୍ଭବତଃ ଖୁବ୍ ସଂଗଠିତ ଓ ବୈଶିଷ୍ଟ୍ୟତାପୂର୍ଣ୍ଣ ଥିଲା । ତାହା ହେଉଛି ବ୍ରାହ୍ମଣ । କ୍ଷତ୍ରିୟ ବର୍ଣ୍ଣରେ ନିୟମର ବନ୍ଧନ ଅପେକ୍ଷାକୃତ ଶିଥିଳ ଥିଲା; କାରଣ ଏଥିରେ ବହିରାଗତ ଯୋଦ୍ଧୃ ସମ୍ପ୍ରଦାୟର ଲୋକେ ଏବଂ ଦେଶ ଭିତରେ ଶକ୍ତି ଓ କ୍ଷମତାକୁ ଉଠିଥିବା ଲୋକେ ବହୁଧା ଯୋଗ ଦେଇ ପାରୁଥିଲେ । ବୈଶ୍ୟମାନେ ମୁଖ୍ୟତଃ ଥିଲେ ବଣିକ ଓ ମହାଜନ ଏବଂ ଅନ୍ୟାନ୍ୟ ବହୁ ଜୀବିକା ସେମାନଙ୍କ ପାଇଁ ମୁକ୍ତ ଥିଲା । ଶୂଦ୍ରଙ୍କର ପ୍ରଧାନ ଧନ୍ଦା ଥିଲା କୃଷି ଓ ଘରୁଆଳି ସେବାକର୍ମ । ନବ ନବ ଧନ୍ଦାର ବୃଦ୍ଧି ସଙ୍ଗେ ନବ ନବ ବର୍ଗ ଗଢ଼ାହେବାର ପ୍ରକ୍ରିୟା ବରାବର ଚାଲିଥିଲା ଏବଂ ଅନ୍ୟାନ୍ୟ ବହୁ କାରଣରୁ ପୁରାତନ ବର୍ଗମାନେ ସବୁବେଳେ ସମାଜର ଉପର ସ୍ତରମାନଙ୍କୁ ଉଠିବା ଉଦ୍ୟମ କରୁଥିଲେ । ଏହି ସବୁ ପ୍ରକ୍ରିୟା ଆଜି ପର୍ଯ୍ୟନ୍ତ ଚାଲିଆସିଛି । କେତେକ ନିମ୍ନ ଜାତି ହଠାତ୍ ଉପବୀତ ଧାରଣ କରିବସିଲେ

ଯାହା ଉଚ୍ଚ ଜାତିଙ୍କ ବ୍ୟବହାର ନିମନ୍ତେ କେବଳ ସଂରକ୍ଷିତ ଥିଲା । ପ୍ରକୃତରେ ବିଶେଷ କିଛି ପରିବର୍ତ୍ତନ ଦେଖାଦେଉନି କାରଣ ପ୍ରତ୍ୟେକ ଜାତି ନିଜ ନିଜ ପରିସର ଭିତରେ ରହି ନିଜ ନିଜ ଧନ୍ଦା କରିଚାଲନ୍ତି । ଏହା ଥିଲା କେବଳ ସମ୍ମାନର ପ୍ରଶ୍ନ । କେବେକେବେ ତଳ ଶ୍ରେଣୀର ଲୋକେ ନିଜ ସାମର୍ଥ୍ୟ ବଳରେ କ୍ଷମତା ଓ ଅଧିକାର କ୍ଷେତ୍ରକୁ ଉଠିପାରିଚାନ୍ତି; କିନ୍ତୁ ଅତ୍ୟନ୍ତ ବିରଳ ସେ ପ୍ରକାର ଦୃଷ୍ଟାନ୍ତ ।

ସମାଜର ସଙ୍ଗଠନରେ ସାଧାରଣତଃ ପ୍ରତିଯୋଗିତା ଓ ଶୋଷଣପ୍ରବଣତା ଯେହେତୁ ଉତ୍ସାହିତ କରାଯାଇ ନଥିଲା, ଏହି ସବୁ ଜାତିଭେଦ, ଅନ୍ୟ ଭାବରେ ହେଲେ ଯେତେ ପରିମାଣରେ ବ୍ୟବଧାନ ସୃଷ୍ଟି କରିପାରିଥାନ୍ତା, ସେତେଭଳି କରିପାରିଲା ନାହିଁ । ନିଜର ବିଦ୍ୟା ଓ ବୁଦ୍ଧି ଯେତିକି ଗର୍ବିତ ଓ ଅନ୍ୟମାନଙ୍କ ଦ୍ୱାରା ସମ୍ମାନିତ ବ୍ରାହ୍ମଣ ଥିଲା ଶୀର୍ଷରେ; କିନ୍ତୁ ବିଷୟ ହିସାବି କହିଲେ ଯାହା ବୁଝାଏ ସେପରି କିଛି ତାର ନଥିଲା । ବଣିକ ଧନ-ସମ୍ପଦ ଦିଗରୁ ଯଥେଷ୍ଟ ସମ୍ବଳବାନ ଥିଲା; କିନ୍ତୁ ସମାଜ ଭିତରେ ତାର ଆସନ ମହତ୍ତ୍ୱପୂର୍ଣ୍ଣ ନଥିଲା ।

ଜନସାଧାରଣଙ୍କ ଭିତରୁ ଅଧିକାଂଶ ଥିଲେ କୃଷିଜୀବୀ । ସେ ସମୟରେ ନା ଥିଲା ଜମିଦାରୀ-ପ୍ରଥା ନା କୃଷକ ଥିଲା ଜମିର ମାଲିକ । ଆଇନ ଦୃଷ୍ଟିରୁ ଜମିର ମାଲିକ କିଏ ଥିଲା କହିବା କଠିନ । ଅଜି ଯେଉଁ ସ୍ୱତ୍ୱାଧିକାର ତତ୍ତ୍ୱ କଥା ଉଠୁଚି, ସେ ସମୟରେ ସେପରି କିଛି ନଥିଲା । ତାର ଜମି ଚାଷ କରିବା ପାଇଁ ଚାଷୀର ଅଧିକାର ଥିଲା ଏବଂ ଜମିର ଉତ୍ପାଦନ ବଣ୍ଟନ କରିବା ହିଁ ଥିଲା ପ୍ରକୃତ ପ୍ରଶ୍ନ । ଉତ୍ପାଦନର ଅର୍ଦ୍ଧାଧିକ ଅଂଶ ଥିଲା ଚାଷୀର । ରାଜା ହେଉ କି ରାଷ୍ଟ୍ର ହେଉ ଉତ୍ପାଦନର ଏକ-ଷଷ୍ଠାଂଶ କେବଳ ରାଜସ୍ୱ ଭାବରେ ନେବା ପାଇଁ ହକ୍‌ଦାର ଥିଲେ । ଏହା ବାଦେ ଗ୍ରାମର ସେବାକାରୀମାନଙ୍କର ମଧ୍ୟ ଉତ୍ପାଦନରେ ଅଂଶ ଥିଲା । ସେମାନେ ହେଉଛନ୍ତି ଗୁରୁ ଓ ପୁରୋହିତ ବ୍ରାହ୍ମଣ, ବଣିକ, କମାର, ବଢ଼େଇ, ଚମାର, କୁମ୍ଭାର, ମିସ୍ତ୍ରୀ, ଭଣ୍ଡାରି, ମେହେନ୍ତର ଇତ୍ୟାଦି । ଅତଏବ, ଗୋଟାଏ ଦିଗରୁ ଦେଖିଲେ ରାଜାଠାରୁ ମେହେନ୍ତର ପର୍ଯ୍ୟନ୍ତ ସମସ୍ତେ ଗ୍ରାମ୍ୟ ଉତ୍ପାଦନର ଅଂଶୀଦାର ଥିଲେ ।

ଦଳିତ ଜାତି ବା ଅସ୍ପୃଶ୍ୟମାନେ କିଏ ? ଏହି ନୂତନ ନାମକରଣ 'ଦଳିତଜାତି' ସମାଜ ତଳର କେତେକ ଜାତି ପ୍ରତି ଏକପ୍ରକାର ଅନିର୍ଦ୍ଦିଷ୍ଟ ଭାବରେ ପ୍ରୟୋଗ କରାଯାଇଥାଏ । ଅନ୍ୟମାନଙ୍କଠାରୁ ଏମାନଙ୍କୁ ପୃଥକ୍ କରିବା ପାଇଁ ସେଭଳି ଧରାବନ୍ଧା ସୀମାରେଖା କିଛି ନାହିଁ । କିନ୍ତୁ ଅସ୍ପୃଶ୍ୟ ଜାତି କହିଲେ ସେଥିରେ କିଛି ନିର୍ଦ୍ଦିଷ୍ଟତା ରହୁଚି । ଉତ୍ତର-ଭାରତରେ ମୁଷ୍ଟିମେୟ ଲୋକ, ଯେଉଁମାନେ ମେହେନ୍ତର କାର୍ଯ୍ୟ କରନ୍ତି, ଅଛିବ ବା ଅସ୍ପୃଶ୍ୟ ବିବେଚିତ ହୁଅନ୍ତି । ଫାହିୟାନ୍ କହନ୍ତି ଯେ ସେ ଭାରତ ଆସିଥିଲାବେଳେ ଯେଉଁମାନେ ମଣିଷର ମଳମୂତ୍ର ସଫା କରିଥାନ୍ତି, ସେମାନେ ଥିଲେ ଅସ୍ପୃଶ୍ୟ । ଦକ୍ଷିଣ-ଭାରତରେ ଏମାନଙ୍କର ସଂଖ୍ୟା ଆହୁରି ଅଧିକ । ଏ ଜାତିର ଆରମ୍ଭ କିପରି ହେଲା ଓ ଏତେ ସଂଖ୍ୟାର କିପରି ବୃଦ୍ଧି ପାଇଲା କହିବା କଠିନ । ଖୁବ୍ ସମ୍ଭବ, ଯେଉଁମାନେ ଏ ପ୍ରକାର ତଥାକଥିତ 'ଅନିର୍ମଳ କର୍ମ'ରେ ନିୟୋଜିତ ହେଉଥିଲେ ସେମାନଙ୍କୁ ଅସ୍ପୃଶ୍ୟ କରି ନିଆଯାଇଥିଲା । ପରବର୍ତ୍ତୀ କାଳରେ

ଜମିହୀନ କୃଷି-ଶ୍ରମିକଙ୍କୁ ମଧ୍ୟ ଏହି ଶ୍ରେଣୀରେ ହୁଏତ ଯୋଗ କରାଯାଇଥିବ ।

ହିନ୍ଦୁମାନଙ୍କ ଭିତରେ ଶୁଦ୍ଧାଚାର ଉପରେ ଅତିମାତ୍ରାରେ ଗୁରୁତ୍ୱ ଦିଆଯାଇଛି । ପରିଣାମରେ ଏଥିରୁ ଗୋଟିଏ ସୁଫଳ ଫଳିଲା ଯଦିଓ, ଅନ୍ୟ ଦିଗରେ ତାର ବିପରୀତ ହିଁ ଘଟିଲା । ଭଲ ଫଳଟି ହେଉଛି ଶାରୀରିକ ପରିଚ୍ଛନ୍ନତା । ହିନ୍ଦୁ ଜୀବନରେ, ଦଳିତ ଜାତି ସମେତ, ପ୍ରତିଦିନ ସ୍ନାନ କରିବା ଗୋଟାଏ ଅତ୍ୟାବଶ୍ୟକ କର୍ମ । ଭାରତରୁ ହିଁ ଏହି ଅଭ୍ୟାସ ଇଂଲଣ୍ଡ ଓ ଅନ୍ୟାନ୍ୟ ସ୍ଥାନକୁ ପ୍ରସାରିତ ହେଲା । ହିନ୍ଦୁମାନେ ଏପରିକି ଦୀନାତିଦୀନ ସ୍ତ୍ରୀ ମଧ୍ୟ ତାର ଘରର ଧାତୁ ନିର୍ମିତ ବାସନ ଉଜ୍ଜ୍ୱଳ କରି ଘଷିମାଜି ରଖିବାରେ ଆନନ୍ଦ ପାଇ-ଥାଏ । ଏହି ପରିଚ୍ଛନ୍ନତାବୋଧ ପଛରେ ସେପରି କିଛି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ନାହିଁ; କାରଣ ଯେଉଁ ଲୋକ ଦିନରେ ଦୁଇ ବେଳା ସ୍ନାନ କରେ ଅନିର୍ମଳ ତଥା ଜୀବାଣୁପୂର୍ଣ୍ଣ ଜଳ ପାନ କରିବାରେ ଦ୍ୱିଧାବୋଧ କରେନାହିଁ । ଏହି ବିଷୟ ସାର୍ବଜନୀନ ନୁହେଁ; ବର୍ତ୍ତମାନ ଅନ୍ତତଃ ନୁହେଁ । ଗୃହସ୍ଥ ତାର କୁଡ଼ିଆଟିକୁ ନିର୍ମଳ କରି ରଖିଲା ବେଳେ ଘରର ସବୁକିଛି ଆବର୍ଜନା ପଡ଼ୋଶୀ ଘର ମୁହଁରେ, ରାସ୍ତା ଦାଣ୍ଡରେ ଗଦା କରିଥାଏ । ସାଧାରଣତଃ, ଗାଁ ଅନିର୍ମଳ ରହେ ଓ ଯତ୍ରତତ୍ର ଆବର୍ଜନା ଗଦା ହୋଇଥାଏ । ଏକଥା ସହଜରେ ଲକ୍ଷ୍ୟ କରି ହୁଏ ଯେ ନିର୍ମଳତାକୁ ନିର୍ମଳତା ପାଇଁ ବୋଲି ଗ୍ରହଣ କରାଯାଇନି; କରାଯାଇଛି ଧର୍ମାଚରଣ ଭାବରେ । ସେହି ଧର୍ମାଚରଣ ଭାବ ଯେବେ ଅପସରିଯାଏ, ପରିଚ୍ଛନ୍ନତାର ମାନ ଲକ୍ଷଣୀୟ ଭାବରେ ପତିତ ହୁଏ ।

ଏଇ ଆଚାର-ଶୁଦ୍ଧତାର କୁପରିଣାମ ହେଲା ଅନନ୍ୟମନ୍ୟତା, 'ମତେ ଛୁଅନା' ବିଷୟର ବୃଦ୍ଧି ଏବଂ ଅନ୍ୟ ଜାତିର ଲୋକଙ୍କ ସଙ୍ଗେ ପାନ ଭୋଜନରୁ ନିବୃତ୍ତି । ଏହା ଭାରତରେ ଯେପରି ଭାବରେ ବୃଦ୍ଧି ପାଇଲା, ପୃଥିବୀର ଅନ୍ୟ କୌଣସିଠାରେ ସେପରି ଦେଖିବାକୁ ମିଳେ ନାହିଁ । ଏହା ହିଁ କେତେକ ଶ୍ରେଣୀର ଲୋକଙ୍କୁ ଅସ୍ପୃଶ୍ୟ ବିବେଚନା କଲା; କାରଣ ସେମାନଙ୍କର ଦୁର୍ଭାଗ୍ୟ ଯେ ସେମାନେ ସେପରି କେତେକ ଅତ୍ୟାବଶ୍ୟକ କାର୍ଯ୍ୟ କରୁଥିଲେ; ଯାହା ଅନିର୍ମଳ ଅଥବା ଅପବିତ୍ର କାର୍ଯ୍ୟ ବୋଲି ବିବେଚିତ ହେଉଥିଲା । ସାଧାରଣତଃ ନିଜ ଜାତିର ଲୋକଙ୍କ ସଙ୍ଗେ ପଙ୍‌କ୍ତି କରିବା ଅଭ୍ୟାସ ସବୁ ଜାତିରେ ପ୍ରଚଳିତ ହେଲା । ଏହି ଅଭ୍ୟାସ ସାମାଜିକ ମର୍ଯ୍ୟାଦାର ଚିହ୍ନ ବୋଲି ଧରାଗଲା ଏବଂ ଉପରବର୍ଗ ଅପେକ୍ଷା ତଳ-ବର୍ଗର ଲୋକେ ଖୁବ୍ କଠୋର ନିୟମ ସହକାରେ ତାହା ପାଳନ କରିବାକୁ ଲାଗିଲେ । ଉପର ବର୍ଗମାନଙ୍କରେ ଏହି ଅଭ୍ୟାସ ବର୍ତ୍ତମାନ ଗୌଣ ହୋଇପଡ଼ିଲାଣି; କିନ୍ତୁ ଦଳିତ ଜାତି ସମେତ ନିମ୍ନ ଜାତିଙ୍କ ମଧ୍ୟରେ ଏହା ଅଦ୍ୟାପି ଗୁରୁତ୍ୱପୂର୍ଣ୍ଣ ହୋଇ ରହିଛି ।

ଜାତି ଜାତି ଭିତରେ ପାନ-ଭୋଜନ ଉପରେ ଧର୍ମଗତ ନିଷେଧ ଯେତେ ଭାବରେ ଥିଲା, ତଦପେକ୍ଷା ଆହୁରି ଅଧିକ ପରିମାଣରେ ଲାଗୁ ହେଉଥିଲା ଅସବର୍ଣ୍ଣ ବିବାହ ଉପରେ । ଅସବର୍ଣ୍ଣ ବିବାହ ଅବଶ୍ୟ ଘଟିନି ବୋଲି ନୁହେଁ; କିନ୍ତୁ ପ୍ରତ୍ୟେକ ଜାତି ନିଜର ଗଣ୍ଡି ମଧ୍ୟରେ ଆବଦ୍ଧ ରହି ସ୍ୱଜାତି ପ୍ରଜନନ କରି ଆସିବା ବାସ୍ତବିକ ଅସାଧାରଣ । ଯୁଗ ଯୁଗ ଧରି ଜାତି-ବିଶୁଦ୍ଧତା ଅବ୍ୟାହତ ରଖିବା ଏକ ପ୍ରକାର ଭ୍ରାନ୍ତି ମାତ୍ର; ତଥାପି ଭାରତରେ ବର୍ଣ୍ଣ-ବ୍ୟବସ୍ଥା କେତେ

ପର୍ଯ୍ୟନ୍ତ, ବିଶେଷତଃ ଉଚ୍ଚ ଜାତିମାନଙ୍କ ଭିତରେ, ଏହାର ସଂରକ୍ଷଣ କରିପାରିଛି ।

ଦକ୍ଷିଣ ଭାରତର କେତେକ ଜାତି ସମ୍ପର୍କରେ କେବେ କେବେ ଉଲ୍ଲେଖ କରାଯାଇଥାଏ ଯେ ଏମାନେ ବର୍ଣ୍ଣ-ବ୍ୟବସ୍ଥାର ବହିର୍ଭୁକ୍ତ । ବସ୍ତୁତଃ କୌଣସି ଜାତି, ଏପରିକି ଅସ୍ପୃଶ୍ୟମାନେ ମଧ୍ୟ, ବର୍ଣ୍ଣ-ବ୍ୟବସ୍ଥା ବହିର୍ଭୁକ୍ତ ନୁହନ୍ତି । ଅସ୍ପୃଶ୍ୟ ଓ ଦଳିତ ଜାତିର ଲୋକେ ନିଜ ନିଜ ଜାତି ରଖିଛନ୍ତି ଏବଂ ନିଜ ନିଜ ବ୍ୟବସ୍ଥା ତୁଲାଇବାପାଇଁ ସେମାନଙ୍କର ପଞ୍ଚାୟତ ଅବା କୁଳସଭାମାନ ଅଛି; କିନ୍ତୁ ଗ୍ରାମର ସର୍ବସାଧାରଣ ଜୀବନରୁ ବଞ୍ଚିତ ହୋଇ ସେମାନଙ୍କ ଭିତରୁ ଅନେକଙ୍କୁ ନାନାବିଧ ପୀଡ଼ା ଭୋଗିବାକୁ ପଡ଼ୁଛି ।

ଏପରି ଭାବରେ, ସ୍ୱଶାସିତ ଗ୍ରାମ୍ୟଗୋଷ୍ଠୀ ଓ ବର୍ଣ୍ଣ-ବ୍ୟବସ୍ଥା ଥିଲା ପ୍ରାଚୀନ ଭାରତୀୟ ସାମାଜିକ ସଙ୍ଗଠନର ଦୁଇଟି ବିଶେଷ ଦିଗ । ତୃତୀୟଟି ହେଲା ଏକାନ୍ନବର୍ତ୍ତୀ ପରିବାର ଯେଉଁଠି ପ୍ରତ୍ୟେକ ଲୋକର ପାରିବାରିକ ସମ୍ପତ୍ତିରେ ଅଂଶ ଥିଲା ଓ ଉତ୍ତରାଧିକାର ଉତ୍ତରଜୀବୀ ସୂତ୍ରରେ ଚାଲୁଥିଲା । ପିତା କିମ୍ବା ଅନ୍ୟ କେଉଁ ଗୁରୁଜନ ପରିବାରର ମୁଖ୍ୟ ଥିଲେ କିନ୍ତୁ ସେ ଥିଲେ ପ୍ରବନ୍ଧକର୍ତ୍ତା ମାତ୍ର । ପ୍ରାଚୀନ ରୋମ୍‌ର 'ପେଟେର୍ ଫେମିଲିଅସ୍'; ଅର୍ଥାତ୍ ପିତୃ-ପ୍ରଧାନ ପରିବାର ଭାରତରେ ନଥିଲା । ସମ୍ପତ୍ତିର ବିଭାଜନ କେତେକ ଅବସ୍ଥାରେ ଏବଂ ସମ୍ପୃକ୍ତ ଲୋକେ ଯେପରି ଇଚ୍ଛା କଲେ, ହୋଇପାରୁଥିଲା । ସେ ଉପାର୍ଜ୍ଜନ କରୁଥାଉ କି ଅକର୍ମୀ ହୋଇ ବସିଥାଉ, ପରିବାରର ସମସ୍ତଙ୍କ ଆବଶ୍ୟକତା ତୁଲାଇବାପାଇଁ ପରିବାରର ସମ୍ପତ୍ତି ଉଦ୍ଦିଷ୍ଟ ଥିଲା । ଏଥିରୁ ବୁଝି ହୁଏ, କେତେ ଜଣ ଅଧିକତର ସୁବିଧା ଭୋଗକରି ଅନ୍ୟମାନେ ଏକପ୍ରକାର ବଞ୍ଚିତ ହେବା ବଦଳରେ ଏହି ବ୍ୟବସ୍ଥା ଦ୍ୱାରା ସମସ୍ତଙ୍କ ନିମନ୍ତେ କିଛି ନା କିଛି ନିଶ୍ଚିତ ଭାବରେ ପାଇବାର ସୁଯୋଗ ରହିଥିଲା । ସମସ୍ତଙ୍କ ପକ୍ଷରେ ଏହା ଥିଲା ଏକ ପ୍ରକାର ଜୀବନବୀମା; ସେ ନିର୍ବୋଧ ହେଉ କି ଶାରୀରିକ ଅବା ମାନସିକ ବୁଦ୍ଧି-ବୃତ୍ତିରେ କେତେ ଦୁର୍ବଳ ହେଉ, ଯେ ସେହି ବୀମା ବ୍ୟବସ୍ଥାର ଅନ୍ତର୍ଭୁକ୍ତ ଥିଲା । ଏପରି ଭାବରେ, ଗୋଟାଏ ଦିଗରେ ସମସ୍ତଙ୍କ ପାଇଁ ନିରାପତ୍ତା ରହିଥିଲା ବେଳେ ଅନ୍ୟ ଦିଗରେ ପରିଚର୍ଯ୍ୟା ଓ ତା'ର ପୁରସ୍କାରର ମାନ ଅବା ଆଦର୍ଶର ସମନ୍ୱୟସାଧନ ଦାବି ହୋଇଥିଲା । ବ୍ୟକ୍ତିଗତ ସୁବିଧା ଅବା ଉଚ୍ଚାଭିଳାଷ ଉପରେ ଜୋର୍ ଦିଆ ନଯାଇ, ଦିଆଯାଉଥିଲା ଗୋଷ୍ଠୀ ଅର୍ଥାତ୍ ପରିବାର ଉପରେ । ବଡ଼ ଏକ ପରିବାର ଭିତରେ ବଢ଼ିବା ଦ୍ୱାରା ଶିଶୁର ମନୋଭାବ ଅହଂକେନ୍ଦ୍ରିକ ହେବାର ବିଶେଷ ଅବକାଶ ନଥିଲା; ବରଂ ତାର ଭିତରେ ସାମାଜିକରଣ ନିମନ୍ତେ ସ୍ୱାଭାବିକ ପ୍ରବୃତ୍ତି ବିକାଶ ଲାଭ କରିବାର ସୁଯୋଗ ଥିଲା ।

ୟୁରୋପ, ବିଶେଷତଃ ଆମେରିକାର ତୀବ୍ର ବ୍ୟକ୍ତିବାଦୀ ସଭ୍ୟତାରେ ଯାହା ଘଟିଥାଏ, ଏସବୁ ତାର ସମ୍ପୂର୍ଣ୍ଣ ବିପରୀତ । ସେଠାରେ ବ୍ୟକ୍ତିଗତ ଉଚ୍ଚାଭିଳାଷକୁ ଉତ୍ସାହିତ କରାଯାଇଥାଏ ଏବଂ ବ୍ୟକ୍ତିଗତ ସୁଖ ସ୍ୱଚ୍ଛନ୍ଦ୍ୟ ହିଁ ସାର୍ବଜନୀନ ଲକ୍ଷ୍ୟ ହୁଏ ଯେଉଁଠି ସମସ୍ତ ପୁରସ୍କାର ହସ୍ତଗତ ହୁଏ ଚତୁର ଓ ଉଦ୍ୟୋଗୀର ଏବଂ ଦୁର୍ବଳ, ନିରୀହ ଓ କମ୍ ପ୍ରତିଭାବାନ୍ ଲୋକ ଅସୁବିଧା ଭୋଗ କରେ । ଭାରତରେ ଏହି ଏକାନ୍ନବର୍ତ୍ତୀ ପରିବାର ବ୍ୟବସ୍ଥା ଖୁବ୍ ଦ୍ରୁତ ଭାଙ୍ଗି ପଡ଼ୁଛି ଏବଂ ବ୍ୟକ୍ତିବାଦୀ ଆଗ୍ରହ ବିସ୍ତର ବୃଦ୍ଧି ପାଉଛି । ଏହା ଜୀବନର ଅର୍ଥନୈତିକ ପୃଷ୍ଠଭୂମିରେ

ଦୂରପ୍ରସାରୀ ପରିବର୍ତ୍ତନମାନ ଯେ ଆଣୁଛି କେବଳ ନୁହେଁ, ଆଚରଣର ନୂଆ ନୂଆ ସମସ୍ୟା ମଧ୍ୟ ସୃଷ୍ଟି କରୁଛି ।

ଆମେ ଦେଖିଲେ, ଏପରି ଭାବରେ ଭାରତୀୟ ସାମାଜିକ ସଂଗଠନରୀତିର ରାଜନୈତିକ ସ୍ତମ୍ଭ ଭିତ୍ତି କରିଥିଲା ଗୋଷ୍ଠୀ ବା କୁଳ ଉପରେ; ବ୍ୟକ୍ତି ଉପରେ ନୁହେଁ । ଲକ୍ଷ୍ୟ ଥିଲା ସାମାଜିକ ନିରାପତ୍ତା, କୁଳର ସ୍ଥାୟୀତ୍ୱ ଓ ବର୍ଦ୍ଧନ ଅର୍ଥାତ୍ ସମାଜର । ପ୍ରଗତି କରିବା ଯେହେତୁ ଲକ୍ଷ୍ୟ ନଥିଲା, ତାହା ବାଧାପ୍ରାପ୍ତ ହେଲା । ପ୍ରତ୍ୟେକ ଗୋଷ୍ଠୀରେ, ତାହା ଗ୍ରାମଗୋଷ୍ଠୀ ହେଉ, କୌଣସି ନିର୍ଦ୍ଦିଷ୍ଟ ଜାତି ହେଉ କିମ୍ବା ମିଳିତ ବଡ଼ ପରିବାର ହେଉ ଗୋଟାଏ ସମ୍ମିଳିତ ଜୀବନରେ ଭାଗନେବା ସୁଯୋଗ ଥିଲା; ସମାନତାବୋଧ ଓ ଗଣତାନ୍ତ୍ରିକ ପଦ୍ଧତି ବି ଥିଲା । ଏବେ ସୁଦ୍ଧା କୁଳସଭାମାନ ଗଣତାନ୍ତ୍ରିକ ରୀତିରେ କାର୍ଯ୍ୟକାରୀ ହେଉଥାଏ ଗୋଟାଏ ସମୟରେ ଜଣେ ଗ୍ରାମବାସୀ, କେବେକେବେ ନିରକ୍ଷର, ରାଜନୈତିକ କିମ୍ବା ଅନ୍ୟବିଧ ଉଦ୍ଦେଶ୍ୟ ସାଧନ ନିମନ୍ତେ ଏ ପ୍ରକାର ନିର୍ବାଚିତ କମିଟିମାନଙ୍କରେ ସ୍ଥାନ ପାଇବାପାଇଁ ଆତୁର ହେବା ଦେଖି ମୁଁ ବିସ୍ମିତ ହେଉଥାଏ । ଖୁବ୍ ଚଞ୍ଚଳ ସେ ଏହି ଧାରା ଅନୁସରଣ କରି ପାରିଲା ଏବଂ ତାର ଜୀବନ ସମ୍ପର୍କରେ ଯେବେ କୌଣସି ପ୍ରଶ୍ନ ଉଠେ ତାର ମୀମାଂସା ଦିଗରେ ସେ ସହାୟକ ହୋଇ ପାରିଥିଲା । ସହଜରେ ଦବିଯିବାର ପାତ୍ର ମଧ୍ୟ ସେ ନୁହେଁ । କିନ୍ତୁ ଦୁର୍ଭାଗ୍ୟର କଥା, କ୍ଷୁଦ୍ର ଗୋଷ୍ଠୀମାନ ଭାଙ୍ଗିପଡ଼ୁଥିଲା ଏବଂ ଲୋକେ ନିଜ ନିଜ ଭିତରେ କଳହ କରୁଥିଲେ ।

ଗଣତାନ୍ତ୍ରିକ ପନ୍ଥା ଯେ ସୁବିଦିତ ଥିଲା କେବଳ ନୁହେଁ, ବରଂ ସାମାଜିକ ଜୀବନରେ, ସ୍ଥାନୀୟ ପ୍ରଶାସନରେ ବଣିକ ସଂଘ ଓ ଧର୍ମସଭା ଇତ୍ୟାଦିରେ ଏହା ଥିଲା ସାଧାରଣ କାର୍ଯ୍ୟ-ପ୍ରଣାଳୀ । ତା' ଲାଗି ଯେତେ ଅକଲ୍ୟାଣ ଘଟିଥାଉନା କାହିଁକି, ଜାତିଆଣ ପ୍ରଥା ପ୍ରତ୍ୟେକ ଗୋଷ୍ଠୀରେ ଏହି ଗଣତାନ୍ତ୍ରିକ ଆଚରଣ ରଖି ପାରିଥିଲା । କାର୍ଯ୍ୟପ୍ରଣାଳୀ, ନିର୍ବାଚନ ଓ ବିତର୍କ ବିଷୟରେ ନାନାପ୍ରକାର ନୀତି ନିୟମ ରହିଥିଲା । ପ୍ରଥମକାଳୀନ ବୌଦ୍ଧ ସଭାମାନଙ୍କ ବିଷୟରେ ଉଲ୍ଲେଖ କରିବାକୁ ଯାଇ ମାରକୁଇସ୍ ଅଫ୍ ଜେଟ୍‌ଲେଣ୍ଡ୍ କହିଛନ୍ତି : "ଯିଏ ଶୁଣିବ ସେ ଅବଶ୍ୟ ଆଚମ୍ବିତ ହେବ ଯେ ଦୁଇ ହଜାର କିମ୍ବା ତତୋଽଧିକ ବର୍ଷ ପୂର୍ବେ ବୌଦ୍ଧ ସଭାମାନଙ୍କରେ ଆମର ଆଜିର ପାର୍ଲାମେଣ୍ଟାରୀ ଆଚରଣର ବୀଜ ରହିଥିଲା । ଜଣେ କର୍ମଚାରୀ ବିଶେଷଭାବରେ ନିଯୁକ୍ତ ହେଉଥିଲେ ଏହି ସଭା ବା ଆସେମ୍ବ୍ଲିର ମର୍ଯ୍ୟାଦା ରକ୍ଷା କରିବାପାଇଁ । ସେହି କର୍ମଚାରୀ ଭିତରେ ରହିଥିଲା ଆଜିର ହାଉସ୍ ଅଫ୍ କମନ୍‌ସ ବା ବ୍ରିଟିଶ ପାର୍ଲାମେଣ୍ଟର ବାଚସ୍ପତି ବା 'ମିଷ୍ଟର ସ୍ପିକର' । ଆଉ ଜଣେ କର୍ମଚାରୀ ନିଯୁକ୍ତ ଥିଲେ ସଭାର ଆବଶ୍ୟକୀୟ କୋରମ ସଂଗ୍ରହ କରିବାପାଇଁ । ଏହା ଠିକ୍ ଆମର ଆଜିର ପାର୍ଲାମେଣ୍ଟାରୀ ବ୍ୟବସ୍ଥାର ମୁଖ୍ୟ କାରପଟ୍‌ଦାରଙ୍କ କର୍ତ୍ତବ୍ୟର ଅନୁରୂପ । ସଭାର କୌଣସି ସଭ୍ୟ ଗୃହର କାର୍ଯ୍ୟରେ ଅଂଶ ଗ୍ରହଣ କରିବାକୁ ଚାହିଁଲେ ଗୋଟାଏ ପ୍ରସ୍ତାବ ଉପସ୍ଥାପିତ କରିବା ଆକାରରେ ତାର ସୂତ୍ରପାତ କରୁଥିଲେ ଏବଂ ସେଥି ଉପରେ ଖୋଲାଖୋଲି ଭାବରେ ଆଲୋଚନା ହେଉଥିଲା । କେତେକ କ୍ଷେତ୍ରରେ ଏପରି ଥରେ ମାତ୍ର କରାଯାଉଥିଲା, କେବେ

କେବେ ଉନ୍ନଅର ମଧ୍ୟ । ଆଇନରେ ପରିଣତ ହେବା ପୂର୍ବରୁ କୌଣସି ବିଲ୍ ଗୃହରେ ତିନି ଥର ଆଜି ଯେପରି ପାଠ କରାଯାଇଥାଏ, ଏହା ଥିଲି ତାର ଅଙ୍କୁରାବସ୍ଥା ମାତ୍ର । ଆଲୋଚନାରେ ଯଦି ମତଭେଦ ପ୍ରକାଶ ପାଇଲା, ସେଥି ଉପରେ ଭୋଟ୍ ନିଆଯାଇ ସଂଖ୍ୟା-ଗରିଷ୍ଠତା ଜରିଆରେ ତାର ମୀମାଂସା କରାଯାଉଥିଲା । ଏ ପ୍ରକାର ଭୋଟ ଗୋପନରେ ଗ୍ରହଣ କରାଯାଇଥାଏ । (୧)

ଅତଏବ, ପ୍ରାଚୀନ ଭାରତର ସମାଜ ସଂଗଠନଭିତରେ ନୈତିକ ଉତ୍କର୍ଷ ଅବଶ୍ୟ କିଛି ଥିଲା ଏବଂ ପ୍ରକୃତରେ କହିବାକୁ ଗଲେ ତାହା ବିନା ଏପ୍ରକାର ସଙ୍ଗଠନ ଏତେକାଳ ଧରି ତିଷ୍ଠିପାରି ନଥାନ୍ତା । ଏହା ପଛରେ ରହିଥିଲା ଭାରତୀୟ ସଂସ୍କୃତିର ଦାର୍ଶନିକ ଆଦର୍ଶ— ମଣିଷର ଚରିତ୍ରର ଅଖଣ୍ଡତା ଏବଂ ଆହରଣଶୀଳତା ପରିବର୍ତ୍ତେ ସତ୍ୟ, ଶିବ ଓ ସୁନ୍ଦରର ସାଧନା । ଧନ, ସମ୍ମାନ ଓ କ୍ଷମତା ଯେପରି ସମ୍ମିଳିତ ହୋଇ ଶକ୍ତିଶାଳୀ ନହୁଏ ସେ ଦିଗରେ ଉଦ୍ୟମ କରାଯାଇଥିଲା । ବ୍ୟକ୍ତି ଓ ବର୍ଗ ଉଭୟର କର୍ତ୍ତବ୍ୟ ନିର୍ଦ୍ଦିଷ୍ଟ କରି ତାହା ପାଳନ କରିବା ଦିଗରେ ଜୋର୍ ଦିଆଯାଉଥିଲା; କାହାର ଅଧିକାର ସମ୍ପର୍କରେ ନୁହେଁ । ସ୍ମୃତି-ଶାସ୍ତ୍ରରେ ବିଭିନ୍ନ ଜାତିର ଧର୍ମ, କର୍ତ୍ତବ୍ୟ ଇତ୍ୟାଦି ସମ୍ପର୍କରେ ବିସ୍ତୃତ ଭାବରେ ଉଲ୍ଲେଖ କରାଯାଇଛି; କିନ୍ତୁ କେଉଁଠାରେ ହେଲେ କାହାର ଅଧିକାର ବିଷୟରେ ଚର୍ଚ୍ଚା କରାଯାଇନି । ବର୍ଗର ବିଶେଷତଃ ଗ୍ରାମର ଓ ଅନ୍ୟ ଭାବରେ କହିଲେ ଜାତିର ସ୍ୱାବଲମ୍ବନଶୀଳତା ପ୍ରତି ଲକ୍ଷ୍ୟ ରଖାଯାଉଥିଲା । ବର୍ଣ୍ଣ-ବ୍ୟବସ୍ଥା ଥିଲା ଗୋଟାଏ ରୁଦ୍ଧଦ୍ୱାର ବ୍ୟବସ୍ଥା ଏବଂ ତାର ଚଉହଦି ଭିତରେ ପରିବର୍ତ୍ତିନ ସ୍ୱାଧୀନତା ଓ ଅଭିଯୋଜନୀୟତା କେତେକ ଅଂଶରେ ଯଦିଓ ରହିଥିଲା, ତଥାପି ଏହା ଅବଶ୍ୟମ୍ଭାବୀ ଭାବରେ ବେଳକୁ ବେଳ ଅନନ୍ୟ ଓ କଠୋର ଶୃଙ୍ଖଳାରେ ଆବଦ୍ଧ ହେଲା । କ୍ରମଶଃ, ଏହା ସଂପ୍ରସାରିତ ହେବାର ଶକ୍ତି ଓ ନୂତନ ପ୍ରତିଭା ଗ୍ରହଣ କରିବାର ସାମର୍ଥ୍ୟ ହରାଇବାକୁ ଲାଗିଲା । ଶକ୍ତିଶାଳୀ ବିବିଧ ନ୍ୟସ୍ତସ୍ୱାର୍ଥ ଯେକୌଣସି ମୌଳିକ ପରିବର୍ତ୍ତନର ପଥରୋଧକରି ବସିବା ସଙ୍ଗେ ସଙ୍ଗେ ସବୁ ଶ୍ରେଣୀରେ ଶିକ୍ଷାର ପ୍ରସାର ମଧ୍ୟ ନିରୋଧ କଲା । ଯେତେ ସବୁ ପୁରାତନ କୁସଂସ୍କାର, ଯାହା ଅର୍ଥହୀନ ଓ ଅନାବଶ୍ୟକ ବୋଲି ଉଚ୍ଚ ଜାତି ଭିତରୁ ଅନେକେ ଜାଣିଥିଲେ, ସଂରକ୍ଷିତ କରାଗଲା ଓ ସେଥିରେ ନୂଆ ନୂଆ କୁସଂସ୍କାର ଯୋଗ କରାଯାଉଥିଲା । ଜାତୀୟ ଅର୍ଥନୀତି କେବଳ ନୁହେଁ ବରଂ ଚିନ୍ତା ମଧ୍ୟ ପ୍ରବାହହୀନ, ପାରମ୍ପରିକ, କଠୋର ଶୃଙ୍ଖଳାରେ ଆବଦ୍ଧ, ପ୍ରସାରଣଅସମର୍ଥ ଓ ପ୍ରଗତିବିମୁଖ ହୋଇଉଠିଲା ।

ବର୍ଣ୍ଣଭେଦର କଳ୍ପନା ଓ ଅଭ୍ୟାସରେ ଆଭିଜାତ୍ୟର ଆଦର୍ଶ ନିହିତ ଥିଲା ଏବଂ ସ୍ପଷ୍ଟତଃ ଏହା ଥିଲା ଗଣତାନ୍ତ୍ରିକ ବିଷୟର ବିରୋଧୀ । ଏଥିରେ ତାର ଉଦାର କର୍ତ୍ତବ୍ୟବୋଧ ପ୍ରବଳ ଭାବରେ ଥିଲା; କିନ୍ତୁ ସେ ପର୍ଯ୍ୟନ୍ତ କେବଳ, ଯେ ପର୍ଯ୍ୟନ୍ତ ଲୋକେ ନିଜ ନିଜ ବଂଶଗତ ସ୍ଥାନ ଛାଡ଼ିନାହାନ୍ତି କିମ୍ବା ଏହି ପ୍ରତିଷ୍ଠିତ ବ୍ୟବସ୍ଥାର ବିରୋଧ କରି ନାହାନ୍ତି । ଭାରତର ସବୁକିଛି

(୧) ଜି. ଟି. ଗାରେଟଙ୍କ 'ଦି ଲିଗେସି ଅଫ୍ ଇଣ୍ଡିଆ' ବହିରେ ଉଦ୍ଧାର କରାଯାଇଛି ।

ସଫଳତା ଓ କୃତି, ମୋଟାମୋଟି ଭାବରେ, ଉପର ବର୍ଗଙ୍କ ଭିତରେ କେବଳ ଆବଦ୍ଧ ଥିଲା। ଯେଉଁମାନେ ତଳେ ରହିଥିଲେ ସେମାନଙ୍କର ସୁବିଧା ସେପରି କିଛି ନଥିଲା ଏବଂ ସୁଯୋଗ ମଧ୍ୟ ଅତିମାତ୍ରାରେ ସୀମିତ ଥିଲା। ଏହି ସବୁ ଉପରଶ୍ରେଣୀ କ୍ଷୁଦ୍ର କ୍ଷୁଦ୍ର ସୀମିତ ଗୋଷ୍ଠୀ ହୋଇ ନଥିଲା; ଏ ସବୁର ସଂଖ୍ୟା ଥିଲା ଖୁବ୍ ବେଶି ଏବଂ ଏମାନଙ୍କ ଭିତରେ ଶକ୍ତି, କ୍ଷମତା ଓ ପ୍ରଭାବ ବିକ୍ଷିପ୍ତ ରହିଥିଲା। ସେଥିହେତୁରୁ, ଦୀର୍ଘକାଳ ଧରି ଏହି ବ୍ୟବସ୍ଥାକୁ ସେମାନେ ସଫଳ ଭାବରେ ଚଳାଇନେଇ ପାରିଲେ; କିନ୍ତୁ ଭାରତୀୟ ସମାଜ ସଂଗଠନରୀତି ଓ ଜାତିପ୍ରଥାର ଚରମ ଦୁର୍ବଳତା ଓ ତ୍ରୁଟି ହେଉଛି ଯେ ତାହା ବହୁ ସଂଖ୍ୟକ ଲୋକଙ୍କୁ ପତିତ କରି ରଖିଲା ଏବଂ ଶିକ୍ଷା, ସଂସ୍କୃତି କିମ୍ବା ଧନସମ୍ପତ୍ତି କରିଆରେ ସେହି ଅବସ୍ଥାରୁ ଉଦ୍ଧାର ହେବାପାଇଁ ସୁଯୋଗ ଦେଲାନାହିଁ। ସେହି ଅବନୟନ ସମଗ୍ର ବ୍ୟବସ୍ଥାକୁ କାଳକ୍ରମେ ତାର ପରିସରଭୁକ୍ତ କରି ବସିଲା ଏବଂ ଉପର ଶ୍ରେଣୀ ମଧ୍ୟ ସେଥିରୁ ରକ୍ଷା ପାଇପାରିଲାନାହିଁ। ଫଳରେ ଏହା ଏକ ପ୍ରକାର ପ୍ରସ୍ତରୀଭୂତ ହୋଇପଡ଼ିଲା; ଯାହା ଭାରତୀୟ ଜୀବନ ଓ ଅର୍ଥନୀତି ଉପରେ ପ୍ରବଳ ପ୍ରଭାବ ବିସ୍ତାର କଲା। ତୁଳନା କରି ଦେଖିଲେ, ଏହି ସମାଜ ସଂଗଠନରୀତି ଓ ସେ ସମୟରେ ଅନ୍ୟାନ୍ୟ ସ୍ଥାନରେ ଯେପରି ଯାହା କିଛି ଥିଲା, ଉଭୟ ଭିତରେ ସେପରି ବିଶେଷ କିଛି ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ। କିନ୍ତୁ ଗତ କେତେକ ପୁରୁଷ ଭିତରେ ପୃଥିବୀରେ ସର୍ବତ୍ର ଯେଉଁ ସବୁ ପରିବର୍ତ୍ତନ ଘଟିଯାଇଛି ସେଥି ସଙ୍ଗେ ଭାରତୀୟ ବର୍ଣ୍ଣ-ବ୍ୟବସ୍ଥାକୁ ତୁଳନା କରି ଦେଖିଲେ ବିଶେଷ ପାର୍ଥକ୍ୟ ଜଣାଯାଉଛି। ଆଜିର ସମାଜରେ ବର୍ଣ୍ଣ-ବ୍ୟବସ୍ଥା ଓ ତାର ସବୁକିଛି ଆନୁଷଙ୍ଗିକ ରୀତିନୀତି ସମ୍ପୂର୍ଣ୍ଣ ଭାବେ ଅସଙ୍ଗତ, ପ୍ରତିକ୍ରିୟାଶୀଳ ନିରୋଧନପ୍ରବଣ ଓ ପ୍ରଗତିର ପ୍ରତିବନ୍ଧକ ହୋଇ ଉଠିଛି। ଏହାର ଗଣ୍ଡି ମଧ୍ୟରେ ମର୍ଯ୍ୟାଦା ଓ ସୁଯୋଗର ସମାନତା ରହି ନପାରେ। ଏଥିରେ ରାଜନୈତିକ ହେଉ କି ଅର୍ଥନୈତିକ ହେଉ କୌଣସି ଗଣତାନ୍ତ୍ରିକତାର ସ୍ଥାନ ନାହିଁ। ଏହି ବିବିଧ ବିଷୟର ଭିତରେ ସଂଘର୍ଷ ଚାଲିଛି ଏବଂ ଏଥି ଭିତରୁ ଗୋଟିଏ କେବଳ ତିଷ୍ଠି ରହି ପାରିବ।

## ୯. ବାବର ଓ ଆକ୍‌ବର : ହିନ୍ଦୀକରଣ ପ୍ରକ୍ରିୟା

ବର୍ତ୍ତମାନ ପୁଣି ପଛକୁ ଯିବା। ଆଫଗାନ୍‌ମାନେ ଭାରତରେ ବସବାସ କରି ଭାରତୀୟ ହୋଇ ସାରିଥିଲେ। ଜନସାଧାରଣଙ୍କ ବିରୋଧିତା ହ୍ରାସ କରି ସେମାନଙ୍କୁ ନିଜ ପକ୍ଷକୁ ଆଣିବାର ସମସ୍ୟା ପ୍ରଥମେ ହାତକୁ ନେବାକୁ ହୋଇଥିଲା ଆଫଗାନ୍‌ମାନଙ୍କୁ। ଅତଏବ, ଏକ ନିର୍ଦ୍ଦିଷ୍ଟ ନୀତି ଅନୁସାରେ ସେମାନେ ସେମାନଙ୍କର ପ୍ରଥମାବସ୍ଥାର ଯେତେ ସବୁ ନିର୍ମମ ଉପାୟ କୋହଳ କଲେ, ଅଧିକ ସହିଷ୍ଣୁ ହେଲେ, ଲୋକଙ୍କ ସହଯୋଗ ଚାହିଁଲେ ଏବଂ ବହିରାଗତ ବିଜେତା ଭାବରେ ନୁହେଁ; ବରଂ ଭାରତରେ ଲାଳିତପାଳିତ ଭାରତୀୟ ଭାବରେ କାର୍ଯ୍ୟକାରୀ ହେବାର ଉଦ୍ୟମ କଲେ। ପ୍ରଥମେ ଶାସନର ନୀତି ଭାବରେ ଯାହା ଅନୁସୃତ ହେଉଥିଲା କ୍ରମଶଃ ଗୋଟାଏ ଅବଶ୍ୟମ୍ଭାବୀ ପନ୍ଥା ହୋଇପଡ଼ିଲା; କାରଣ ଉତ୍ତର-ପଶ୍ଚିମର

ଏହି ଲୋକଙ୍କ ଉପରେ ଭାରତୀୟ ପରିବେଷ୍ଟନୀର ପ୍ରଭାବ ପ୍ରବଳଭାବରେ ପଡ଼ିଲା ଏବଂ ପରିଶେଷରେ ସେମାନଙ୍କୁ ତାହା ନିଜ ଭିତରେ ଲୀନ କରିନେଲା । ଶୀର୍ଷରେ ଏହି ପ୍ରକ୍ରିୟା ଚାଲିଥିଲାବେଳେ ବିଚାର ଓ ଜୀବନଧାରାରେ ଗୋଟାଏ ସମନ୍ୱୟ ଆଣିବା ଉପରେ ଲକ୍ଷ୍ୟ ରଖି ଜନସାଧାରଣଙ୍କ ଭିତରେ ସ୍ୱତଃସ୍ଫୂର୍ତ୍ତି ଭାବରେ ଅଧିକତର ଶକ୍ତିଶାଳୀ ପ୍ରବାହମାନ ଦେଖାଦେଲା । ଏହା ଥିଲା ମିଳିତ ସଂସ୍କୃତିର ଅଗ୍ରମାରମ୍ଭ ଏବଂ ଏହି ଯେଉଁ ଭିତ୍ତି ପଡ଼ିଲା ପରବର୍ତ୍ତୀ ସମୟରେ ଅକ୍‌ବର ତା' ଉପରେ ସୌଧ ନିର୍ମାଣ କରିଥିଲେ ।

ଭାରତରେ ମୋଗଲ ରାଜବଂଶର ତୃତୀୟ ବାଦଶାହ ଥିଲେ ଅକ୍‌ବର । ତଥାପି ତାଙ୍କ ସମୟରେ ହିଁ ବସ୍ତୁତଃ ମୋଗଲ ସାମ୍ରାଜ୍ୟ ସୁପ୍ରତିଷ୍ଠିତ ହେଲା । ଖ୍ରୀ: ୧୫୨୬ରେ ତାଙ୍କର ପିତାମହ ବାବର ଦିଲ୍ଲୀ ସିଂହାସନ ଅଧିକାର କରିଥିଲେ; କିନ୍ତୁ ଭାରତ ପକ୍ଷରେ ସେ ଥିଲେ ଜଣେ ବିଦେଶାଗତ ଅପରିଚିତ ବ୍ୟକ୍ତି ଏବଂ ସେ ନିଜେ ମଧ୍ୟ ସେହିଭଳି ଅନୁଭବ କରୁଥିଲେ । ସେ ଆସିଥିଲେ ଉତ୍ତର ଦେଶରୁ, ଯେଉଁଠି ତାଙ୍କର ଜନ୍ମଭୂମି ମଧ୍ୟ-ଏସିଆରେ ତୈମୁରୀ ପୁନର୍ଜାଗରଣ ବା ରେନେସାଁ ଖୁବ୍ ସମୃଦ୍ଧିଶାଳୀ ଥିଲା ଏବଂ ଯାହାର ଉପରେ ପାରସିକ କଳା ଓ ସଂସ୍କୃତିର ପ୍ରବଳ ପ୍ରଭାବ ପଡ଼ିଥିଲା । ସେଠାକାର ବନ୍ଧୁତ୍ୱପୂର୍ଣ୍ଣ ସମାଜ, ସୁଖାଳାପର ଆମୋଦ ଏବଂ ବାଗ୍‌ଦାଦ୍‌ଠାରୁ ଇରାନ ପର୍ଯ୍ୟନ୍ତ ପରିବ୍ୟାପ୍ତ ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ଶିଷ୍ଟାଚାର ଭାରତରେ ତାଙ୍କୁ ମିଳିନଥିଲା । ଉତ୍ତରୀୟ ମାଳଭୂମିର ବରଫାବୃତ ପରିବେଶ ଏବଂ ଫେର୍‌ଘାନାର ସ୍ୱାଦିଷ୍ଟ ମତ୍ସ୍ୟ ଓ ଫଳ, ସୁବାସିତ ନାନାବିଧ ଫୁଲ ସକାଶେ ସେ ଆକୁଳ ହେଉଥିଲେ । ତଥାପି ଏ ସମସ୍ତ ଅଭାବ, ଅସୁବିଧା ଓ ନୈରାଶ୍ୟ ସତ୍ତ୍ୱେ ସେ ଭାରତକୁ ଗୋଟାଏ ଅଦ୍‌ଭୁତ ଦେଶ ବୋଲି କହିଛନ୍ତି । ଭାରତରେ ପଦାର୍ପଣ କରିବାର ଚାରିଟି ମାତ୍ର ବର୍ଷ ଭିତରେ ବାବରଙ୍କ ମୃତ୍ୟୁ ଘଟିଲା ଏବଂ ଏଥିର ଅଧିକାଂଶ ସମୟ ତାଙ୍କର ଯୁଦ୍ଧ କରିବାରେ ଓ ଆଗ୍ରାରେ ଏକ ସୁରମ୍ୟ ରାଜଧାନୀ ନିର୍ମାଣ କରିବାରେ ବିତିଥିଲା । ସେହି ନିର୍ମାଣକାର୍ଯ୍ୟ ନିମନ୍ତେ କନ୍‌ଷ୍ଟାଣ୍ଟିନୋପଲ୍‌ର ଜଣେ ବିଖ୍ୟାତ ସ୍ଥପତିଙ୍କୁ ସେ ନିଯୁକ୍ତ କରିଥିଲେ । କନ୍‌ଷ୍ଟାଣ୍ଟିନୋପଲ୍‌ରେ ସେତେବେଳେ ଥିଲା ମହାନ୍ ସୁଲେମାନଙ୍କ ରାଜତ୍ୱକାଳ ଯେବେ ସେହି ନଗରୀରେ ନୟନାଭିରାମ ପ୍ରାସାଦମାନ ମୁଣ୍ଡଟେକି ଉଠିଥିଲା ।

ବାବର ଭାରତ ବିଷୟରେ ବିଶେଷ କିଛି ଜାଣି ପାରିନଥିଲେ । ଶତ୍ରୁଭାବାପନ୍ନ ଲୋକଙ୍କ ଦ୍ୱାରା ସତତ ପରିବେଷ୍ଟିତ ରହିଥିବା ଫଳରେ ସେ ସୁଯୋଗ ମଧ୍ୟ ତାଙ୍କର ନଥିଲା । ତଥାପି ଉତ୍ତର-ଭାରତକୁ ସେ ସମୟରେ ଯେଉଁ ସାଂସ୍କୃତିକ ଦାରିଦ୍ର୍ୟ ଘୋଟି ରହିଥିଲା, ସେ ବିଷୟରେ ତାଙ୍କର ବିବରଣୀରୁ ଦେଖିବାକୁ ମିଳେ । ଏହା ଦୁଇଟି କାରଣରୁ ଘଟିଥିଲା । ପ୍ରଥମତଃ, ଏହା ଥିଲା ତୈମୁରଙ୍କ ଧ୍ୱଂସଲୀଳାର ପରିଣତି ଏବଂ ଦ୍ୱିତୀୟତଃ ଉତ୍ତର-ଭାରତ ଆକ୍ରମିତ ହେବା ପରେ ବହୁ ବିଦ୍ୱାନ, କଳାକାର ଓ ବିଖ୍ୟାତ କାରୁଶିଳ୍ପୀ ଦକ୍ଷିଣ-ଭାରତକୁ ପଳାୟନ କରିଥିଲେ । ଆହୁରି ମଧ୍ୟ ଗୋଟିଏ କାରଣ ହେଉଚି ଭାରତୀୟଙ୍କ ରଚନାତ୍ମକ ପ୍ରତିଭାର ଅଭାବ ଯାହା ବିଶୁଷ୍କ ହୋଇପଡ଼ିଥିଲା । ବାବର କହନ୍ତି ସେ ସୁଦକ୍ଷ କାରିଗରମାନଙ୍କର ଅଭାବ ନଥିଲା; କିନ୍ତୁ ସେମାନଙ୍କ ଭିତରେ ନୂତନ କିଛି ଉଦ୍ଭାବନ କରିବାର କୌଶଳ ଅବା

ପ୍ରତି ଆଉ ନଥିଲା । ଆହୁରି ମଧ୍ୟ ଅନୁମିତ ହେବା ସମ୍ଭବ ଯେ ଜୀବନକୁ ସୁଖ, ସ୍ୱାଚ୍ଛନ୍ଦ୍ୟ, ବିଳାସ ଓ ବିନୋଦନ ଯୋଗାଇବାରେ ଭାରତ ପାରସ୍ୟର ବହୁ ପଛରେ ପଡ଼ିଥିଲା । ଏହା ଜୀବନର ଏ ପ୍ରକାର ବିଭବ ପ୍ରତି ଭାରତୀୟ ମନର ସ୍ୱାଭାବିକ ଅନାଗ୍ରହ କିମ୍ବା ପରବର୍ତ୍ତୀ ଘଟଣାବଳୀ ଯୋଗୁଁ ଘଟିଲା, ମୁଁ ଜାଣେନା । ହୁଏତ ଏପରି ହୋଇପାରେ ଯେ ସେ କାଳର ଭାରତୀୟମାନେ ଏ ପ୍ରକାର ବିଳାସବିନୋଦ ଓ ଶିଷ୍ଟାଚାର ପ୍ରତି ପାରସିକମାନଙ୍କ ଭଳି ଆକୃଷ୍ଟ ନଥିଲେ । ଏସବୁ ପ୍ରତି ଯଦି ସେମାନଙ୍କର ଆଗ୍ରହ ରହିଥାନ୍ତା, ତାହାହେଲେ ଭାରତ ଓ ପାରସ୍ୟ ଭିତରେ ବାଣିଜ୍ୟ ତଥା ଅନ୍ୟବିଧ ସମ୍ପର୍କ ଯେହେତୁ ରହିଥିଲା ସେମାନେ ଅନାୟାସରେ ସେସବୁ ସାମଗ୍ରୀ ପାରସ୍ୟରୁ ଭାରତକୁ ଆଣିପାରିଥାନ୍ତେ । କିନ୍ତୁ ଖୁବ୍ ସମ୍ଭବ ଏହା ଥିଲା ପରବର୍ତ୍ତୀକାଳରେ ଭାରତର ଅବନତି ଓ ସାଂସ୍କୃତିକ ବଦ୍ଧତାର ଚିହ୍ନ । ପୂର୍ବଯୁଗ-ମାନଙ୍କରେ, ପ୍ରାଚୀନ ସାହିତ୍ୟ ଓ ଚିତ୍ରକଳାରୁ ଯେଭଳି ଜଣାଯାଏ, ଲୋକରୁଚି ଯଥେଷ୍ଟ ପରିମାଣରେ ପରିମାର୍ଜିତ ଥିଲା ଏବଂ ସେହି ସମୟକୁ ଆଖିରେ ରଖି ଦେଖିଲେ ଭାରତୀୟ ଜୀବନର ମାନ ଉଚ୍ଚ ଓ ଆଡ଼ମ୍ବରପୂର୍ଣ୍ଣ ଥିଲା । ଏପରିକି ବାବର ଉତ୍ତର-ଭାରତରେ ପଦାର୍ପଣ କଲା ସମୟରେ ମଧ୍ୟ ଦକ୍ଷିଣରେ ବିଜୟନଗର ଉଚ୍ଚକୋଟୀର କଳା ଓ ସଂସ୍କୃତି, ଶିଷ୍ଟାଚାର ଓ ପରିମାର୍ଜିତ ରୁଚିର ପ୍ରତିନିଧିତ୍ୱ କରୁଥିଲା ବୋଲି ବହୁ ୟୁରୋପୀୟ ପରିବ୍ରାଜକ ସ୍ୱୀକାର କରନ୍ତି ।

କିନ୍ତୁ ଉତ୍ତର-ଭାରତରେ ସାଂସ୍କୃତିକ ଅବନତି ସ୍ପଷ୍ଟ ଭାବରେ ଲକ୍ଷ୍ୟ କରିହେଉଥିଲା । କେତେକ ଧର୍ମାନ୍ଧ ବିଶ୍ୱାସ ଓ ଅନମନୀୟ ସାମାଜିକ ସଙ୍ଗଠନରୀତି, ସାମାଜିକ ଉଦ୍ୟମ ଓ ଅଗ୍ରଗତି ନିରୋଧ କରିଥିଲା । ଇସ୍‌ଲାମ୍ ଓ ସେଥିସଙ୍ଗେ ଭିନ୍ନ ଚିନ୍ତା ଓ ଭିନ୍ନ ଧରଣର ଜୀବନ କରୁଥିବା ବହିର୍ଦ୍ଦେଶୀୟ ଲୋକଙ୍କର ଭାରତକୁ ଆଗମନ, ପ୍ରଚଳିତ ବିଶ୍ୱାସ ଓ ସାମାଜିକ ବ୍ୟବସ୍ଥାକୁ ପ୍ରଭାବିତ କଲା । ବୈଦେଶିକଙ୍କ ବିଜୟରେ, ତାର ସବୁ କିଛି ଅମଙ୍ଗଳ ସତ୍ତ୍ୱେ, ଗୋଟିଏ ଦିଗରେ କିନ୍ତୁ କଲ୍ୟାଣର ସୂଚନା ଦେଇଥାଏ ଯାହା ଜନସାଧାରଣଙ୍କର ମାନସିକ ଦିଗନ୍ତ ପ୍ରସାରିତ କରେ ଏବଂ ନିଜ ଗଣ୍ଡି ମଧ୍ୟରୁ ବାହାରି ବାହାର ଦୁନିଆଁକୁ ଦେଖିବାକୁ ବାଧ୍ୟ କରେ । ସେମାନେ ଉପଲବ୍ଧି କରନ୍ତି ଯେ, ସେମାନଙ୍କର କଳ୍ପନା ଅପେକ୍ଷା ଏହି ବିଶ୍ୱ ବହୁପରିମାଣରେ ବଡ଼ ଓ ବିଚିତ୍ର । ଅତଏବ, ଆଫ୍‌ଗାନ୍ ବିଜୟ ଭାରତକୁ ପ୍ରଭାବିତ କରିଥିଲା ଓ ବହୁ ପରିବର୍ତ୍ତନ ମଧ୍ୟ ଘଟିଥିଲା । ଆଫ୍‌ଗାନ୍‌ମାନଙ୍କ ଅପେକ୍ଷା ଅଧିକତର ମାର୍ଜିତ ଓ ଅଗ୍ରଗାମୀ, ମୋଗଲମାନେ ସେମାନଙ୍କ ସମୟରେ ବହୁତ କିଛି ପରିବର୍ତ୍ତନ ଘଟାଇଲେ । ନିର୍ଦ୍ଦିଷ୍ଟ ଭାବରେ କହିବାକୁ ଗଲେ, ସେମାନେ ସେହିସବୁ ପରିମାର୍ଜିତ ରୁଚି ଭାରତରେ ପ୍ରଚଳିତ କଲେ ଯେଉଁଥିପାଇଁ ପାରସ୍ୟ ସେ ଯୁଗରେ ବିଖ୍ୟାତ ଥିଲା । ଏପରିକି ସେଠିକାର ଦରବାରୀ ଜୀବନର ବହୁତ କିଛି କୃତ୍ରିମ ଶିଷ୍ଟାଚାର ବି ଭାରତରେ ସମ୍ଭ୍ରାନ୍ତ ସମାଜର ଜୀବନଧାରାକୁ ପ୍ରଭାବିତ କଲା । ଦକ୍ଷିଣ-ଭାରତର ବାହାମିନି ରାଜ୍ୟ ପାରସ୍ୟ ସଙ୍ଗେ କାଳିକଟ ଦେଇ ସିଧାସଳଖ ସଂଯୋଗ ସ୍ଥାପନ କରିଥିଲା ।

ଭାରତରେ ବହୁତ କିଛି ପରିବର୍ତ୍ତନ ଘଟୁଥିଲା ଏବଂ ନବନବ ଆବେଗ କଳା, ସ୍ଥାପତ୍ୟ ଓ

ଅନ୍ୟାନ୍ୟ ସାଂସ୍କୃତିକ ଆଦର୍ଶକୁ ସଚେତ ଓ ଜୀବନ୍ତ କଲା । ତଥାପି ଏସବୁ ଥିଲା ଦୁଇଟି ପୁରାତନ ବର୍ଣ୍ଣ-ଆଦର୍ଶର ସଂଯୋଗର ପରିଣାମ, ଯେଉଁଥିରୁ ପ୍ରାରମ୍ଭିକ ଜୀବନୀଶକ୍ତି ଓ ରଚନାତ୍ମକ ଉତ୍ସାହ ଲୋପ ପାଇସାରିଥିଲା ଏବଂ ଏକ ପ୍ରକାର ସ୍ଥବିରତା ବିରାଜିତ ଥିଲା । ଭାରତୀୟ ସଂସ୍କୃତି ଥିଲା ଅତିଶୟ ପୁରାତନ ଓ କ୍ଲାନ୍ତ; ଆରବ ପାରସ୍ୟ ସଂସ୍କୃତି ମଧ୍ୟ ବହୁ ପୂର୍ବରୁ ତାର ଶୀର୍ଷବିନ୍ଦୁ ଅତିକ୍ରମ କରି ସାରିଥିଲା ଏବଂ ଯେଉଁ ପୁରାତନ କୌତୂହଳ ଓ ମାନସିକ ଦୁଃସାହସିକତାର ବୋଧ ଆରବମାନଙ୍କୁ ସ୍ୱତନ୍ତ୍ର ପ୍ରତିଷ୍ଠା ଅର୍ପଣ କରିଥିଲା, ତା'ର କୌଣସି ସୂଚନା ଆଉ ନଥିଲା ।

ସାହସୀ ଓ ବାହାଦୁର୍, କଳା, ସାହିତ୍ୟ ଓ ଉନ୍ନତଜୀବନର ପ୍ରେମୀ । ବାବର ଥିଲେ ଜଣେ ଅବିକଳ ପୁନର୍ଜାଗୃତି ଅଥବା ରେନେସାଁ। ପ୍ରସୂତ ରାଜକୁମାର ଯାହାଙ୍କୁ ଏଡ଼ାଇଯିବା ସମ୍ଭବ ନଥିଲା । ତାଙ୍କର ପୌତ୍ର ଆକ୍‌ବର ଥିଲେ ଆହୁରି ଅଧିକ ଜଣେ ଆକର୍ଷକ ବ୍ୟକ୍ତି ଓ ବହୁ ସୁଗୁଣର ଆଧାର । ଦୁର୍ଦ୍ଦମନୀୟ ଓ ପରିଣାମ-ଉଦାସୀନ ଜଣେ ଦକ୍ଷ ସେନାପତି, ସୁଶୀଳ ଓ କରୁଣାର ଭଣ୍ଡାର, ଆଦର୍ଶବାଦୀ ଓ କଳ୍ପନାବିଳାସୀ, ଆକ୍‌ବର ଥିଲେ ଜଣେ ମହାନ୍ କର୍ମପ୍ରବଣ ବ୍ୟକ୍ତି ଓ ଜନନାୟକ; ଯିଏ ତାଙ୍କର ଅନୁଗାମୀମାନଙ୍କ ପ୍ରାଣରେ ଅବିଚଳିତ ରାଜାନୁଗତ୍ୟ ଜାଗ୍ରତ କରିପାରିଥିଲେ । ଜଣେ ଯୋଦ୍ଧା ଭାବରେ ଭାରତର ବହୁ ଅଂଶ ଉପରେ ସେ ଆଧିପତ୍ୟ ବିସ୍ତାର କରିଥିଲେ; କିନ୍ତୁ ତାଙ୍କର ଦୃଷ୍ଟି ଥିଲା ଅନ୍ୟ ଦିଗରେ—ସେପରି ଏକ ବିଜୟ ଉପରେ ଯାହା କେବେହେଲେ ଅନ୍ୟଥା ହୋଇନପାରେ । ତାହା ହେଉଛି ଜନସାଧାରଣଙ୍କ ମନ ଓ ହୃଦୟ ଜୟକରିବା । ତାଙ୍କର ରାଜସଭାର ଜଣେ ପର୍ତ୍ତୁଗୀଜ୍ ଖ୍ରୀଷ୍ଟାନ କହିଛନ୍ତି ଯେ ତାଙ୍କର ଦୁଇଟି ଅଦ୍ଭୁତକର ନୟନ 'ସୂର୍ଯ୍ୟକିରଣରେ ଉଦ୍‌ଭାସିତ ସମୁଦ୍ର ଭଳି ସ୍ପନ୍ଦନଶୀଳ' ଥିଲା । ତାଙ୍କ ଭିତରେ ଗୋଟାଏ ଅଖଣ୍ଡଭାରତର ପୁରାତନ ସ୍ୱପ୍ନ ପୁନର୍ବାର ରୂପ ଧରୁଥିଲା । ଏହି ଏକତା ଓ ଅଖଣ୍ଡତା ରାଜନୈତିକ ଦୃଷ୍ଟିକୋଣରୁ କେବଳ ନୁହେଁ, ପରନ୍ତୁ ଗୋଟାଏ ଜାତି ଭାବରେ ସମଗ୍ର ଭାରତକୁ ଏକତ୍ର ଅର୍ପଣ କରିବାର ପ୍ରବଳ ଉତ୍କଣ୍ଠା । ଖ୍ରୀ: ୧୫୫୬ରୁ ପ୍ରାୟ ପଚାଶ ବର୍ଷ ଧରି ତାଙ୍କର ଦୀର୍ଘ ରାଜତ୍ୱ କାଳରେ ସେ ଏହି ଉଦ୍ଦେଶ୍ୟ ସାଧନରେ ବ୍ରତୀ ଥିଲେ । ବହୁ ଗର୍ବିତ ରାଜପୁତ ଅଧିପତି ଯେଉଁମାନେ ଅନ୍ୟ କୌଣସି ବ୍ୟକ୍ତି ସମ୍ମୁଖରେ ମସ୍ତକ ଅବନତ କରିନଥାନ୍ତେ, ଆକ୍‌ବରଙ୍କ ନିକଟରେ ଶ୍ରଦ୍ଧା ଓ ସମ୍ମାନ ଲାଭକରିଥିଲେ । ଜଣେ ରାଜପୁତ ରାଜକନ୍ୟାଙ୍କୁ ସେ ବିବାହ କରିଥିଲେ ଏବଂ ତାଙ୍କର ପୁତ୍ର ଓ ମୋଗଲ ସାମ୍ରାଜ୍ୟର ଉତ୍ତରାଧିକାରୀ ଜାହାଙ୍ଗିର୍‌ଙ୍କ ଧମନୀରେ ଯେଉଁ ରକ୍ତ ପ୍ରବାହିତ ହେଉଥିଲା, ତାହା ଥିଲା ମୋଗଲ ରକ୍ତ ଓ ରାଜପୁତ ହିନ୍ଦୁରକ୍ତ । ଜାହାଙ୍ଗିରଙ୍କ ପୁତ୍ର ଶାଜାହାନ୍ ମଧ୍ୟ ଜଣେ ରାଜପୁତ ମହିଷୀଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିଲେ । ଅତଏବ, ଏହି ତୁର୍କି-ମଙ୍ଗୋଲ ବଂଶ ଭାରତରେ ତୁର୍କି ଅଥବା ମଙ୍ଗୋଲ ଅପେକ୍ଷା ଅଧିକତର ଭାବରେ ଭାରତୀୟ ହୋଇପଡ଼ିଥିଲା । ଆକ୍‌ବର ଯେ ରାଜପୁତମାନଙ୍କର ପ୍ରଶଂସକ କେବଳ ଥିଲେ ତାହା ନୁହେଁ, ସେମାନଙ୍କ ପ୍ରତି ତାଙ୍କର ଏକ ପ୍ରକାର ଜ୍ଞାତିବୋଧ ବି ରହିଥିଲା । ବୈବାହିକ ସମ୍ବନ୍ଧ ଓ ଅନ୍ୟାନ୍ୟ ନୀତି ଜରିଆରେ ସେ ରାଜପୁତ ଶାସକଶ୍ରେଣୀ ସଙ୍ଗେ ଯେଉଁ ସମ୍ବନ୍ଧ ସ୍ଥାପନ

କଲେ, ତାହା ତାଙ୍କର ସାମ୍ରାଜ୍ୟକୁ ପ୍ରବଳ ଶକ୍ତି ଯୋଗାଇଲା । ଏହି ମୋଗଲ-ରାଜପୁତ୍ ସହଯୋଗ, ଯାହା ପରବର୍ତ୍ତୀ ରାଜତ୍ୱକାଳମାନଙ୍କରେ ମଧ୍ୟ ଅବ୍ୟାହତ ରହିଥିଲା, ମୋଗଲ ପ୍ରଶାସନ ଓ ସାମରିକ ବାହିନୀ ଉପରେ କେବଳ ନୁହେଁ; ବରଂ କଳା, ସଂସ୍କୃତି ଓ ଜୀବନ-ଧାରା ଉପରେ ମଧ୍ୟ ପ୍ରଭାବ ପକାଇଲା । ମୋଗଲ୍ ରାଜସାମନ୍ତ ଓ ସମ୍ଭ୍ରାନ୍ତ ଶ୍ରେଣୀସ୍ଥ କେତେ କ୍ରମଶଃ ଭାରତୀୟତାର ପରିସରଭୁକ୍ତ ହୋଇଉଠିଲେ ଏବଂ ରାଜପୁତ୍ ଓ ଅନ୍ୟମାନେ ପାରସିକ ସଂସ୍କୃତିଦ୍ୱାରା ପ୍ରଭାବିତ ହେଲେ ।

ଆକବର ବହୁ ଲୋକଙ୍କୁ ନିଜ ପକ୍ଷକୁ ନେଇପାରିଲେ ଓ ରଖିପାରିଲେ; କିନ୍ତୁ ସେ ରାଜପୁତାନା ଅନ୍ତର୍ଗତ ମେବାଡ଼ର ରାଣା ପ୍ରତାପଙ୍କ ସ୍ୱାଭିମାନ ଓ ଅଦମ୍ୟ ପ୍ରେରଣାକୁ ଦମନ କରିପାରିନଥିଲେ । ରାଣା ପ୍ରତାପ, ତାଙ୍କର ବିବେଚନାରେ, ଜଣେ ବିଦେଶାଗତ ବିଜୟୀଙ୍କ ପ୍ରତି ଆନୁଗତ୍ୟ ଜଣାଇବା ଅପେକ୍ଷା ଶତ୍ରୁପକ୍ଷଦ୍ୱାରା ବାରମ୍ବାର ବିତାଡ଼ିତ ହୋଇ ସୁଦ୍ଧା ଜଙ୍ଗଲ ଭିତରେ ଜୀବନ ବିତାଇବା ପସନ୍ଦ କରିଥିଲେ ।

ତାଙ୍କ ପ୍ରତି ଓ ତାଙ୍କର ଆଦର୍ଶ ପ୍ରତି ଅନୁଗତ, ଆକବର ଦଳେ ବିଚକ୍ଷଣ ବ୍ୟକ୍ତିଙ୍କୁ ନିଜ ଦରବାରରେ ସମବେତ କରିପାରିଥିଲେ । ଏମାନଙ୍କ ଭିତରେ ଥିଲେ ଫୈଜି ଓ ଅବୁଲ୍ ଫଜଲ୍ (ଦୁଇଭାଇ), ବୀରବଲ୍, ରାଜା ମାନସିଂହ ଓ ଅବଦୁଲ୍ ରହିମ ଖାନ୍‌ଖାନା । ଏମାନଙ୍କର ଖ୍ୟାତି ମୋଗଲ ସାମ୍ରାଜ୍ୟରେ ଓ ବାହାରେ ମଧ୍ୟ ବିସ୍ତୃତ ଥିଲା । ସବୁ ଧର୍ମ, ସବୁକିଛି ନୂତନ ବିଚାର ଓ ଉଦ୍‌ଭାବନର ଲୋକଙ୍କ ନିମନ୍ତେ ତାଙ୍କର ରାଜସଭା ଏକ ମିଳିତ ମଣ୍ଡପ ଥିଲା । ବିଭିନ୍ନ ଦୃଷ୍ଟିକୋଣ ପ୍ରତି ସହିଷ୍ଣୁତା ଓ ସବୁ ପ୍ରକାର ବିଶ୍ୱାସ ଓ ମତାମତ ପ୍ରତି ତାଙ୍କର ମନୋଭାବ ଏତେ ଉଦାର ଥିଲା ଯେ ରକ୍ଷଣଶୀଳ ମୁସଲମାନମାନେ ତାଙ୍କ ପ୍ରତି କ୍ରୁଦ୍ଧ ହୋଇଉଠିଥିଲେ । ଏତିକି କେବଳ ନୁହେଁ, ହିନ୍ଦୁ ଓ ଇସ୍‌ଲାମ ଉଭୟ ଧର୍ମ ପ୍ରତି ସୁହାଇବା ଭଳି ସେ ଏକ ନୂତନ ସମନ୍ୱିତ ଧର୍ମ ପ୍ରଚାର କରିବା ଉଦ୍ୟମ କରିଥିଲେ । ତାଙ୍କ ରାଜତ୍ୱକାଳରେ ଉତ୍ତର-ଭାରତରେ ହିନ୍ଦୁ ଓ ମୁସଲମାନ ଉଭୟ ସଂସ୍କୃତିର ମିଶ୍ରଣ ଦୀର୍ଘ ପଦକ୍ଷେପ କରିଥିଲା । ଆକବର ନିଜେ ଉଭୟ ସମ୍ପ୍ରଦାୟ ଭିତରେ ଖୁବ୍ ଜନପ୍ରିୟ ଥିଲେ । ଭାରତର ନିଜସ୍ୱ ଭାବରେ ମୋଗଲବଂଶ ଦୃଢ଼ଭାବରେ ପ୍ରତିଷ୍ଠିତ ହେଲା ।

## ୧୦. ଯାନ୍ତ୍ରିକ ଅଗ୍ରଗତି ଓ ସୃଜନାତ୍ମକ ଶକ୍ତି ଏସିଆ ଓ ୟୁରୋପର ପାର୍ଥକ୍ୟ

ଆଧ୍ୟାତ୍ମିକ ଓ ଆଧିଭୌତିକ ଉଭୟ ବିଷୟରେ ଜ୍ଞାନ ଆହରଣ କରିବା ନିମନ୍ତେ ଆକବରଙ୍କର କୌତୂହଳ ଓ ଆକୁଳତା ଯଥେଷ୍ଟ ଭାବରେ ଥିଲା । ଯୁଦ୍ଧବିଦ୍ୟା ଓ ନାନାବିଧ ଯାନ୍ତ୍ରିକ ଉଦ୍ଭାବନ ପ୍ରତି ସେ ଆଗ୍ରହୀ ଥିଲେ । ସେ ଯୁଦ୍ଧହସ୍ତୀ ଖୁବ୍ ପସନ୍ଦ କରୁଥିଲେ ଓ ତାଙ୍କର ସାମରିକବାହିନୀରେ ଯୁଦ୍ଧହସ୍ତୀ-ବିଭାଗ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲା । ତାଙ୍କର ରାଜସଭାର ଜେସୁଇଟ୍ (ପର୍ତ୍ତୁଗାଲ ଅଧିକାରୀ) ସମ୍ପ୍ରଦାୟଭୁକ୍ତ ଖ୍ରୀଷ୍ଟାନ ପଣ୍ଡିତମାନେ କହନ୍ତି ଯେ "ନାନା ବିଷୟରେ ଜାଣିବା ପାଇଁ ତାଙ୍କର କୌତୂହଳ ଓ ଆଗ୍ରହ ଥିଲା ଏବଂ

ସାମରିକ ଓ ରାଜନୈତିକ ବିଷୟ କେବଳ ନୁହେଁ, ବିବିଧ ଯନ୍ତ୍ରପାତି ବିଷୟରେ ମଧ୍ୟ ତାଙ୍କର ଧ୍ୟାନ ଗଭୀର ଥିଲା । ଜ୍ଞାନ ଆହରଣରେ ଆକୁଳତା-ଯୋଗୁଁ ସେ ସବୁ କିଛି ଏକାବେଳକେ ଶିକ୍ଷା କରିପକାଇବା ପାଇଁ ପ୍ରୟାସ କରୁଥିଲେ; ଜଣେ ଭୋକିଲା ଲୋକ ଗୋଟାଏ ଗ୍ରାସରେ ସମସ୍ତ ଖାଦ୍ୟ ଗଳାଧଃକରଣ ପ୍ରୟାସ ଯେପରି କରିଥାଏ ।''

ତଥାପି ଆଚମ୍ବିତ ଲାଗେ, ତାଙ୍କର କୌତୂହଳ ଉପରି ତାଙ୍କ ସାମନାରେ ମୁକ୍ତ ଥିବା କେତେକ ବିଷୟରେ ଜାଣିବାପାଇଁ ଅଗ୍ରଗତି ନକରି ଗୋଟାଏ ଅବସ୍ଥାରେ ସମ୍ପୂର୍ଣ୍ଣ ନିର୍ବାପିତ ହୋଇପଡ଼ିଲା । ମହାନ୍ ମୋଗଲ ସମ୍ରାଟ ଭାବରେ ତାଙ୍କର ପ୍ରତିଷ୍ଠା ଓ ସ୍ଥଳ-ଶକ୍ତି ଭାବରେ ତାଙ୍କର ସାମ୍ରାଜ୍ୟର ସାମର୍ଥ୍ୟ ସତ୍ତ୍ୱେ ସାମୁଦ୍ରିକ ବ୍ୟାପାରରେ ସେ ସମ୍ପୂର୍ଣ୍ଣ ଶକ୍ତିହୀନ ଥିଲେ । ଖ୍ରୀ: ୧୪୯୮ ରେ ଉତ୍ତମାଶା-ଅନ୍ତରୀପ ଦେଇ ଭାସ୍କୋ-ଡା-ଗାମା କାଲିକଟ୍‌ରେ ଉପନୀତ ହୋଇସାରିଥିଲେ । ଖ୍ରୀ: ୧୫୧୧ରେ ମାଲକା ଅଧିକାର କରି ଆଲବୁକେରେକ୍ ଭାରତୀୟ ମହାସାଗରରେ ପର୍ତ୍ତୁଗାଲର ଶକ୍ତି ପ୍ରତିଷ୍ଠା କରିସାରିଥିଲେ । ଭାରତର ପଶ୍ଚିମ ଉପକୂଳରେ ଗୋଆ ପର୍ତ୍ତୁଗୀଜ୍ ଉପନିବେଶରେ ପରିଣତ ହୋଇସାରିଥିଲା । ଏସବୁ ସତ୍ତ୍ୱେ ଆକବର ଓ ପର୍ତ୍ତୁଗୀଜ୍‌ମାନଙ୍କ ଭିତରେ ପ୍ରତ୍ୟକ୍ଷ ସଂଘାତ ଘଟିନଥିଲା । କିନ୍ତୁ ଭାରତୀୟ ତୀର୍ଥଯାତ୍ରୀମାନେ ଯେଉଁମାନଙ୍କ ଭିତରେ ସମ୍ରାଟଙ୍କ ଜ୍ଞାତି ଓ କୁଟୁମ୍ବ ଲୋକେ କମ୍ବା ସମ୍ଭ୍ରାନ୍ତ ପରିବାରର ଲୋକେ ଅନ୍ତର୍ଭୁକ୍ତ ଥିଲେ, ସମୁଦ୍ରପଥରେ ମକ୍କା ଯାତ୍ରାକଲାବେଳେ ବହୁ ଅବସରରେ ପର୍ତ୍ତୁଗୀଜ୍‌ମାନେ ମୁକ୍ତିପଣ ନିମନ୍ତେ ସେମାନଙ୍କୁ ଅଟକାଇ ରଖୁଥିଲେ । ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ସ୍ଥଳଭାଗରେ ଆକବର କେତେ ପରାକ୍ରମଶାଳୀ ଥିଲେ ମଧ୍ୟ ସମୁଦ୍ର ଉପରେ ପ୍ରଭୁତ୍ୱ କରୁଥିଲେ ପର୍ତ୍ତୁଗୀଜ୍‌ମାନେ । ଗୋଟାଏ ସ୍ଥଳ-ଶକ୍ତି ସମୁଦ୍ର ଉପରେ ବିଶେଷ ଗୁରୁତ୍ୱ ଅର୍ପଣ ନ କରିବା ସ୍ୱାଭାବିକରେ ବୁଝିହୁଏ; କିନ୍ତୁ ଦେଖିବାକୁ ଗଲେ ଅତୀତରେ ଭାରତର ମହତ୍ତ୍ୱ ଓ ଗୁରୁତ୍ୱ ଅଂଶିକ ଭାବରେ ସମୁଦ୍ରପଥ ଉପରେ ତାର ନିୟନ୍ତ୍ରଣ ପ୍ରତିଷ୍ଠା ହେତୁରୁ ସମ୍ଭବ ହୋଇପାରିଥିଲା । ଗୋଟାଏ ବିଶାଳ ମହାଦେଶ ଜୟ କରିବାପାଇଁ ଆକବରଙ୍କ ହାତରେ ଜଞ୍ଜାଳ କମ୍ ନଥିଲା । ପର୍ତ୍ତୁଗୀଜ୍‌ମାନଙ୍କୁ ମୁକାବିଲା କରିବାପାଇଁ ତାଙ୍କ ପାଖରେ ଅବସର ପ୍ରାପ୍ତ ନଥିଲା କହିଲେ ଚଳେ ଏବଂ ବେଳେବେଳେ ସେମାନେ ତାଙ୍କୁ ବିଚଳିତ କରିବା ଉଦ୍ୟମ କରୁଥିଲେ ମଧ୍ୟ ସେଥିପ୍ରତି ସେ କୌଣସି ଗୁରୁତ୍ୱ ଆରୋପ କରି ନଥିଲେ । ଥରେ ଜାହାଜ ନିର୍ମାଣ କରିବା ଚିନ୍ତା ତାଙ୍କ ମନରେ ଯଦିଓ ଉଦିତ ହୋଇଥିଲା, ତଥାପି ସେ ଜାହାଜ ନିର୍ମାଣ କରିବା ଗୋଟାଏ ପ୍ରକାର ଅବସର-ବିନୋଦନ ଭାବରେ ଗ୍ରହଣ କରିଥିଲେ ସିନା, ସାମୁଦ୍ରିକ-ଶକ୍ତି ଗଢ଼ି ତୋଳିବାପାଇଁ ନୁହେଁ ।

ଆହୁରି ମଧ୍ୟ ତୋପ, କମାଣ ସଂକ୍ରାନ୍ତରେ ମୋଗଲ ସେନାବାହିନୀ ଓ ତାତ୍କାଳିକ ଭାରତର ଅନ୍ୟାନ୍ୟ ରାଜ୍ୟ ମୁଖ୍ୟତଃ ବିଦେଶୀ ବିଶେଷଜ୍ଞ –ଓଟୋମନ୍ ସାମ୍ରାଜ୍ୟର ତୁର୍କ-ମାନଙ୍କ ଉପରେ ନିର୍ଭର କରୁଥିଲେ । ତୋପଖାନାର ସର୍ବମୟ କର୍ତ୍ତା ରୁମି ଖାଁ ନାମରେ ଅଭିହିତ ହେଉଥିଲେ । ରୁମି ଅର୍ଥାତ୍ ପୂର୍ବାଞ୍ଚଳ ରୋମ ଓ ତାହା ହେଉଚି କନ୍‌ଷ୍ଟାଣ୍ଟିନୋପଲ୍ । ଏହି ବୈଦେଶିକ ବିଶେଷଜ୍ଞମାନେ ସ୍ଥାନୀୟ ଲୋକଙ୍କୁ ତାଲିମ ଦେବା ନିମନ୍ତେ ନିଯୁକ୍ତ ଥିଲେ;

କିନ୍ତୁ ଆକ୍‌ବର କିମ୍ବା ଅନ୍ୟ କେହି ହେଲେ କାହିଁକି ଯେ ତାଙ୍କ ଲୋକଙ୍କୁ ଏ ଦିଗରେ ତାଲିମ ନେବାପାଇଁ ବିଦେଶକୁ ନପଠାଇଲେ କିମ୍ବା ଏ ଦିଗରେ ଉନ୍ନତିକଳ୍ପେ ଭାରତରେ ଗବେଷଣା ପାଇଁ ମନ ନବଳାଇଲେ, ବାସ୍ତବିକ ବିସ୍ମୟକର ।

ଆହୁରି ଏକ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ହେଉଛି, ଜେସୁଇଟ୍‌ମାନେ ଆକବରଙ୍କୁ ଗୋଟାଏ ଛପା ବାଇବେଲ, ଆଉ ଗୋଟାଏ ଦୁଇଟା ଛପା ବହି ବି ହୁଏତ ଉପହାର ଦେଇଥିଲେ । ଏହା ଦେଖି ଆକ୍‌ବର ମୁଦ୍ରଯନ୍ତ୍ର ପ୍ରତି କୌତୂହଳୀ କାହିଁକି ନହେଲେ ? ମୁଦ୍ରାଯନ୍ତ୍ରର ପ୍ରଚଳନ ତାଙ୍କର ରାଜକର୍ମ ଓ ଅନ୍ୟାନ୍ୟ ଉଦ୍ୟୋଗ ନିମନ୍ତେ ଖୁବ୍ ସହାୟକ ହୋଇଥାନ୍ତା ।

ଘଣ୍ଟା । ମୋଗଲ୍ ଅମୀରମାନଙ୍କ ଭିତରେ ଏହା ଖୁବ୍ ଜନପ୍ରିୟ ଥିଲା ଏବଂ ୟୁରୋପରୁ ପ୍ରଥମେ ପର୍ତ୍ତୁଗୀଜ୍ ଓ ପରେ ଇଂରେଜମାନେ ଏହା ଭାରତକୁ ଆଣିଥିଲେ । ଏହି ବୈଦେଶିକ ଘଣ୍ଟା ଧନବାନ୍ ଲୋକଙ୍କ ବିଳାସ ବୋଲି ଧରାଯାଉଥିଲା; ସାଧାରଣ ଲୋକେ ସୂର୍ଯ୍ୟ-ଘଡ଼ି, ଜଳ-ଘଡ଼ି ଓ ବାଲୁକା-ଘଡ଼ି ନେଇ ସନ୍ତୁଷ୍ଟ ଥିଲେ । ବିଦେଶରୁ ଆନୀତ ସେହି ସ୍ପ୍ରିଙ୍ଗ୍‌ଦିଆ ଘଣ୍ଟା କିପରି ତିଆରି ହୁଏ ଓ ଭାରତରେ କିପରି ତିଆରି କରାଯାଇପାରନ୍ତା, ସେ ଦିଗରେ କୌଣସି ଉଦ୍ୟମ ହୋଇଥିବା ଜଣାଯାଏନା । ଭାରତରେ ସେହି ସମୟରେ ବହୁ କୁଶଳ କାରିଗର ଓ ଶିଳ୍ପୀ ଥିଲେ । ସୁତରାଂ, ଯନ୍ତ୍ର ପ୍ରତି ଏହି ଉଦାସୀନ ମନୋଭାବ ବଡ଼ ବିଚିତ୍ର ମନେହୁଏ ।

ସେହି ସମୟରେ କେବଳ ଭାରତର ରଚନାତ୍ମକ ଶକ୍ତି ଯେ ପକ୍ଷାଘାତଗ୍ରସ୍ତ ହୋଇଥିଲା ନୁହେଁ, ସେହି ସମୟରେ ସମଗ୍ର ପଶ୍ଚିମ ଓ ମଧ୍ୟ-ଏସିଆ ଭାରତ ଅପେକ୍ଷା ଆହୁରି ଅଧିକ ପୀଡ଼ିତ ଥିଲା କହିଲେ ଚଳେ । ଚୀନ ସମ୍ପର୍କରେ ମୁଁ ଅବଶ୍ୟ ଜାଣେନା; କିନ୍ତୁ ମୋର ମନେହୁଏ, ସେଠାରେ ମଧ୍ୟ ଏପରି କିଛି ଏକ ବନ୍ଧ ଅବସ୍ଥା ଘୋଟିରହିଥିଲା । ଏକଥା ଭୁଲିଲେ ଚଳିବ ନାହିଁ ଯେ ଭାରତ ଓ ଚୀନ ଉଭୟ ଦେଶରେ ତତ୍ପୂର୍ବରୁ ବିଜ୍ଞାନର ବିଭିନ୍ନ ବିଭାଗରେ ବିଶେଷ ପ୍ରଗତି ସାଧିତ ହୋଇଥିଲା । ପୋତନିର୍ମାଣ ଓ ବିପୁଳ ସାମୁଦ୍ରିକ ବାଣିଜ୍ୟ-ଯନ୍ତ୍ରପାତିର ଉନ୍ନତି ସାଧନ ଦିଗରେ ବରାବର ପ୍ରେରଣା ଯୋଗାଇଥିଲା । ଏକଥା ଅବଶ୍ୟ ସତ୍ୟ ଯେ ସେହି ସମୟର ଭାରତ ଅବା ଚୀନ କିମ୍ବା ଅନ୍ୟ କୌଣସି ଦେଶରେ ସେପରି କିଛି ବୃହତ୍ ଯାନ୍ତ୍ରିକ ବିକାଶ ସାଧିତ ହୋଇନ । ଏହି ଦୃଷ୍ଟିକୋଣରୁ ଦେଖିଲେ, ପଞ୍ଚଦଶ ଶତକର ବିଶ୍ୱ ଓ ତତ୍‌ପୂର୍ବବର୍ତ୍ତୀ ହଜାରେ, ଦୁଇ ହଜାର ବର୍ଷର ବିଶ୍ୱ ଭିତରେ ବିଶେଷ କିଛି ପାର୍ଥକ୍ୟ ଦେଖାଯାଏନା ।

ୟୁରୋପର ମଧ୍ୟଯୁଗୀୟ ଅନ୍ଧକାର କାଳରେ ଯେଉଁ ଆରବ ଜାତି ନାନା ଦିଗରେ ଜ୍ଞାନର ଅଗ୍ରଗତି କରିଥିଲେ ଓ କେତେ ପର୍ଯ୍ୟନ୍ତ ଆଦ୍ୟକାଳୀନ ବ୍ୟାବହାରିକ ବିଜ୍ଞାନର ବିକାଶ କରିଥିଲେ, କାଳକ୍ରମେ ଅନଗ୍ରସର ଓ ମହତ୍ତ୍ୱହୀନ ହୋଇପଡ଼ିଲେ । ସପ୍ତଦଶ ଶତାବ୍ଦୀରେ ଆରବମାନେ ପ୍ରଥମାବସ୍ଥାର ଘଣ୍ଟା ନିର୍ମାଣ କରିଥିବା ଜଣାଯାଏ । ଦାମାସ୍କସ୍ ଓ ହାରୁନ୍-ଅଲ୍-ରସିଦଙ୍କ କାଳର ବାଗ୍‌ଦାଦ୍ ଘଣ୍ଟା ବିଖ୍ୟାତ ଥିଲା; କିନ୍ତୁ ଆରବମାନଙ୍କ ଅବନତି ସଙ୍ଗେ ସଙ୍ଗେ ଏହିସବୁ ଦେଶରୁ ଘଣ୍ଟା ତିଆରି କରିବାର କୌଶଳ ମଧ୍ୟ ଲୋପପାଇଲା ।

ତେବେ, କେତେକ ୟୁରୋପୀୟ ଦେଶରେ, ଯେଉଁଠି ଘଣ୍ଟା କୌଣସି ବିରଳ ବସ୍ତୁ ନଥିଲା, ତାର ନିର୍ମାଣ କୌଶଳ ପ୍ରଗତି କରୁଥିଲା ।

ଜେନ୍‌ବର୍ଗଙ୍କ ବହୁ ପୂର୍ବରୁ ସ୍ପେନ୍‌ର ମୁର୍ ଆରବମାନେ କାଠ ବ୍ଲକ୍ ସାହାଯ୍ୟରେ ମୁଦ୍ରଣ କରୁଥିଲେ । (୧) ସରକାରୀ ଆଦେଶନାମା ଇତ୍ୟାଦି ନକଲ କରିବା ନିମନ୍ତେ ଏହା ବ୍ୟବହୃତ ହେଉଥିଲା । ମୁଦ୍ରଣ କୌଶଳ ଏହି କାଠ ବ୍ଲକ୍ ଅବସ୍ଥାରୁ ଆଗେଇ ପାରିନଥିବା ଭଳି ମନେହୁଏ ଏବଂ ପରବର୍ତ୍ତୀ ସମୟରେ ସେତକ ମଧ୍ୟ ଲୋପପାଇଲା । ଓଟୋମନ୍ ତୁର୍କମାନେ ୟୁରୋପ ଓ ପଶ୍ଚିମ-ଏସିଆରେ ବହୁକାଳଧରି ଗୋଟାଏ ମୁସ୍‌ଲିମ୍ ଶକ୍ତି ଭାବରେ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ସେମାନଙ୍କ ସାମ୍ରାଜ୍ୟର ଦ୍ୱାରଦେଶରେ, ୟୁରୋପରେ, ବିପୁଳ ଭାବରେ ପୁସ୍ତକ ମୁଦ୍ରଣ ଚାଲିଥିଲେ ସୁଦ୍ଧା ସେମାନେ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ଏହାକୁ ସମ୍ପୂର୍ଣ୍ଣଭାବରେ ଅବଜ୍ଞା କରିଥିଲେ । ମୁଦ୍ରାଯନ୍ତ୍ର ସମ୍ପର୍କରେ ସେମାନେ ନିଶ୍ଚୟ ଅବହିତ ଥିବେ; କିନ୍ତୁ ଏହି ମହାନ ଉଦ୍‌ଭାବନର ସୁଯୋଗ ନେବାପାଇଁ ସେମାନଙ୍କଠାରେ ସେପରି କୌଣସି ପ୍ରେରଣା ନଥିଲା । ଏଥିଲାଗି ଧାର୍ମିକ ମନୋଭାବର ବିରୋଧିତା କେତେକାଂଶରେ ଅବଶ୍ୟ ଦାୟୀ; କାରଣ ସେମାନଙ୍କର ପବିତ୍ର ଗ୍ରନ୍ଥ କୋରାନ୍ ମୁଦ୍ରିତ ହେଲେ ଅପବିତ୍ର ହୋଇ-ପଡ଼ିବ ବୋଲି ବିବେଚନା କରାଯାଉଥିଲା । କିଏ ଜାଣେ, ମୁଦ୍ରିତ ଫର୍ଦ୍ଦ ପ୍ରତି କିଏ ହୁଏତ ଅଶୋଭନୀୟ ବ୍ୟବହାର କରିବ, ପାଦରେ ଚକଟିବ କିମ୍ବା ଅଳିଆଗଦାରେ ନେଇ ଫିଙ୍ଗିବ ! ନେପୋଲିଅନ୍ ହିଁ ସର୍ବପ୍ରଥମେ ମିଶରରେ ମୁଦ୍ରାଯନ୍ତ୍ର ପ୍ରବର୍ତ୍ତିତ କଲେ ଓ ସେଠାରୁ କ୍ରମଶଃ ତାହା ଅନ୍ୟାନ୍ୟ ଆରବ ଦେଶମାନଙ୍କୁ ପ୍ରସାରିତ ହେଲା ।

ଏସିଆ ଯେତେବେଳେ ଅବସନ୍ନ ଓ ସୁପ୍ତ, ସତେ ଅବା ଏହା ଯେପରି ଅତୀତରେ ତାର ଅତିଶୟ ପ୍ରୟାସର ପରିଣାମ, ନାନା ଦିଗରୁ ଅଗ୍ରସର ୟୁରୋପ ବିପୁଳ ପରିବର୍ତ୍ତନର ତୋରଣ ସମ୍ମୁଖରେ ଉପସ୍ଥିତ ହୋଇଥିଲା । ଗୋଟାଏ ନୂତନ ଚେତନା, ନୂତନ ଉଦ୍‌ବେଳନ ତାର କାର୍ଯ୍ୟ କରୁଥିଲା ଓ ବହୁ ଅଦ୍‌ଭୁତକର୍ମୀ ବ୍ୟକ୍ତି କେତେ ମହାସମୁଦ୍ର ଅତିକ୍ରମ କରି ଯାତ୍ରୀକମାନଙ୍କୁ ନୂତନ ଦିଗକୁ ଆକର୍ଷିତ କରୁଥିଲେ । 'ନବ ଜାଗରଣ' ବିଜ୍ଞାନର ଅଗ୍ରଗତି ନିମନ୍ତେ ବିଶେଷ କିଛି କରିନଥିଲା । ପ୍ରକୃତରେ କହିବାକୁ ଗଲେ, କେତେ ପର୍ଯ୍ୟନ୍ତ, ଏହା ଲୋକଙ୍କୁ ବିଜ୍ଞାନ-ବିମୁଖ କରିଥିଲା ଏବଂ ବିଶ୍ୱବିଦ୍ୟାଳୟମାନଙ୍କରେ ଏହା ଯେଉଁ ମାନବବାଦୀ ରକ୍ଷଣଶୀଳ ଶିକ୍ଷାପ୍ରଣାଳୀ ପ୍ରବର୍ତ୍ତିତ କଲା, ସେଥିଦ୍ୱାରା ସୁବିଦିତ ବୈଜ୍ଞାନିକ ବିଚାରଧାରାର

---

(୧) ଏ ପ୍ରକାର ମୁଦ୍ରଣ-ପ୍ରଣାଳୀ ସ୍ପେନ୍‌ର ଆରବମାନଙ୍କ ନିକଟରେ କିପରି ପହଞ୍ଚିଥିଲା ମୁଁ ଜାଣେନା । ଉତ୍ତର ଓ ପଶ୍ଚିମ-ୟୁରୋପରେ ପହଞ୍ଚିବାର ବହୁ ପୂର୍ବରୁ ସମ୍ଭବତଃ ଚୀନର ମଙ୍ଗୋଲମାନଙ୍କ ଜରିଆରେ ଏହା ସେମାନଙ୍କ ହସ୍ତଗତ ହୋଇଥିଲା । ମଙ୍ଗୋଲମାନେ ଦେଖାଦେବା ପୂର୍ବରୁ ସୁଦ୍ଧା କୋରଦୋବାରୁ, କାଏରୋ, ଦମାସ୍କସ ଓ ବାଗ୍‌ଦାଦ୍ ପର୍ଯ୍ୟନ୍ତ ବିସ୍ତୃତ ସମଗ୍ର ଆରବ ଦୁନିଆର ବହୁଧା ସମ୍ପର୍କ ରହିଥିଲା ଚୀନ ସଙ୍ଗେ ।

ପ୍ରସାର ନିରୁଦ୍ଧ ହୋଇପଡ଼ିଲା । କୁହାଯାଏ ଯେ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଶିକ୍ଷିତ ଇଂରେଜମାନଙ୍କ ମଧ୍ୟରୁ ଅଧିକାଂଶ ପୃଥିବୀ ନିଜ କକ୍ଷରେ ଘୂରୁଛି କିମ୍ବା ସୂର୍ଯ୍ୟର କକ୍ଷପଥରେ ଘୂରୁଛି ବୋଲି ବିଶ୍ୱାସ କରିବାକୁ ପ୍ରସ୍ତୁତ ନଥିଲେ; ଯଦିଓ ସେତେବେଳକୁ କୋପର୍ନିକାସ୍, ଗାଲିଲିଓ ଓ ନ୍ୟୁଟନଙ୍କ ଅଭ୍ୟୁଦୟ ଘଟିସାରିଲାଣି ଓ ଖୁବ୍ ଉନ୍ନତ ଦୂରବୀକ୍ଷଣ ଯନ୍ତ୍ରମାନ ଉଦ୍ଭାବନ କରାଗଲାଣି । ଗ୍ରୀକ୍ ଓ ଲାଟିନ୍ ସାହିତ୍ୟ-ସଂସ୍କୃତିରେ ପରିପାଳିତ, ସେମାନେ ପୋଲେମିଙ୍କ ପୃଥିବୀ-କେନ୍ଦ୍ରିକ ବ୍ରହ୍ମାଣ୍ଡତତ୍ତ୍ୱକୁ ଜାବୁଡ଼ି ଧରିଥିଲେ । ଊନବିଂଶ ଶତାବ୍ଦୀର ପ୍ରଖ୍ୟାତ ଇଂରେଜ ରାଷ୍ଟ୍ରନୀତିଜ୍ଞ ଡବ୍ଲ୍ୟୁ. ଇ. ଗ୍ଲାଡ୍‌ଷ୍ଟୋନ୍ ତାଙ୍କର ଗଭୀର ବିଦ୍ୱତ୍ତା ସତ୍ତ୍ୱେ ବିଜ୍ଞାନ ପ୍ରତି ଆକୃଷ୍ଟ ହୋଇନଥିଲେ କିମ୍ବା ସେ ବିଷୟରେ କିଛି ବୁଝିନଥିଲେ । ଏପରିକି ଆଜି ମଧ୍ୟ ସେପରି ବହୁ ରାଷ୍ଟ୍ରନୀତି ଓ ନେତୃସ୍ଥାନୀୟ ବ୍ୟକ୍ତି ଅଛନ୍ତି (ଭାରତରେ କେବଳ ନୁହେଁ) ଯେଉଁମାନେ ବିଜ୍ଞାନ କିମ୍ବା ବୈଜ୍ଞାନିକ ପ୍ରଣାଳୀ ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ କହିଲେ ଚଳେ; ଯଦିଓ ସେମାନେ ଯେଉଁ ଦୁନିଆରେ ରହିଛନ୍ତି ତାହା ବିଜ୍ଞାନଦ୍ୱାରା ପରିଚାଳିତ ଓ ସେମାନେ ବି ସେହି ବିଜ୍ଞାନକୁ ବ୍ୟାପକ ହତ୍ୟାକାଣ୍ଡ ଓ ଧ୍ୱଂସଲୀଳାରେ ପ୍ରୟୋଗ କରିଥାନ୍ତି ।

'ରେନେସାଁ' ଯାହାହେଉ ୟୁରୋପର ମାନବକୁ ତାର ବହୁ ପୁରାତନ ବନ୍ଧନରୁ ମୁକ୍ତକଲା ଏବଂ ତାର ବହୁତ କିଛି ପ୍ରିୟ ଆଦର୍ଶ ବିନଷ୍ଟ କଲା । ଏହା ଅପ୍ରତ୍ୟକ୍ଷ ଭାବରେ ବା ଆଂଶିକ ଭାବରେ ରେନେସାଁ ହେତୁ ହେଲା କିମ୍ବା ତାହା ସତ୍ତ୍ୱେ ଘଟିଲା, ସେ ଯାହାହେଉ କି ନା, ଗୋଟାଏ ନୂତନ ବିଷୟମୁଖୀ ଜିଜ୍ଞାସାର ଚେତନା; କିନ୍ତୁ ନିଜକୁ ଅନୁଭୂତ କରାଇ ଉଠୁଥିଲା ଏବଂ ସେହି ଚେତନା ପୁରାତନ ପ୍ରତିଷ୍ଠିତ ପ୍ରଭୁତ୍ୱକୁ ଯେ କେବଳ ଆହ୍ୱାନ ଜଣାଇଲା ନୁହେଁ, ସବୁପ୍ରକାର ବିମୂର୍ତ୍ତି ଓ ଅସ୍ପଷ୍ଟ ମନୋଜ୍ଞତାକୁ ମଧ୍ୟ । ଫ୍ରାନସିସ୍ ବେକନ୍ ଲେଖିଛନ୍ତି, "ମାନବୀୟ ଶକ୍ତି ଓ ମାନବୀୟ ଜ୍ଞାନ ଉଭୟ ମାର୍ଗ ଅତି ନିକଟବର୍ତ୍ତୀ ଭାବରେ ସନ୍ନିହିତ ଓ ପ୍ରାୟ ସମାନ କହିଲେ ଚଳେ; ତଥାପି ବସ୍ତୁନିରପେକ୍ଷତା ଅଥବା ବିମୂର୍ତ୍ତିନ ଉପରେ ନିର୍ଭର କରିବାର ବଦ୍ଧମୂଳ ତଥା ଅକଲ୍ୟାଣକର ଅଭ୍ୟାସ ଯୋଗୁଁ, ବିଜ୍ଞାନକୁ ଯେଉଁସବୁ ଭିତ୍ତି ଉପରୁ ଆରମ୍ଭ କରିବା ଓ ତାର ଊର୍ଦ୍ଧ୍ୱକୁ ତୋଳି ରଖିବା ଅଧିକତର ନିରାପଦ ଯେଉଁ ଭିତ୍ତି ଅଭ୍ୟାସ ସଙ୍ଗେ ସମ୍ପର୍କିତ ଏବଂ ତାର ସକ୍ରିୟ ଅଂଶ ସେପରି ଏକ ମୋହର ହେଉ ଯାହା ତାର କଳ୍ପନାତ୍ମକ ଅଂଶକୁ ନିର୍ଣ୍ଣୟ କରେ ।" ପରବର୍ତ୍ତୀକାଳରେ, ସପ୍ତଦଶ ଶତକରେ, ସାର୍ ଥୋମାସ୍ ବ୍ରାଉନ୍ କହିଛନ୍ତି : "ଜ୍ଞାନର ସର୍ବାପେକ୍ଷା ବଡ଼ଶତ୍ରୁ, ଯାହା ସତ୍ୟକୁ ସର୍ବଥା ହତ୍ୟା କରିଛି, ତାହା ହେଉଛି ପ୍ରାମାଣିକତାର ଅନ୍ଧବିଶ୍ୱାସ; ବିଶେଷତଃ, ପ୍ରାଚୀନ ଆଦର୍ଶ ଉପରେ ଆମର ବିଶ୍ୱାସ ପ୍ରତିଷ୍ଠା କରିବା । କାରଣ (ଯେପରିକି ସମସ୍ତେ ଲକ୍ଷ୍ୟକରିପାରନ୍ତି) ଆଜିର ଯୁଗର ବହୁଲୋକ ଅତୀତକୁ ଏପରି ଅନ୍ଧବିଶ୍ୱାସର ଆଖିରେ ଦେଖନ୍ତି ଯେ ଗୋଟାଏ ଯୁଗର ପ୍ରମାଣ ଅନ୍ୟ ଯୁଗର ବିଚାରକୁ ଅତିକ୍ରମିଯାଇଥାଏ । ଯେଉଁମାନେ ପ୍ରକୃତପକ୍ଷେ ଆମ ଯୁଗର ବହୁ ଦୂରରେ ଅବସ୍ଥିତ, ସେମାନଙ୍କର ରଚନାବଳୀ, ଯାହା ସମ୍ଭବତଃ ସମକାଳୀନ ଅଥବା ପରବର୍ତ୍ତୀକାଳୀନ ଲୋକଙ୍କ ଟୀକା ଟିପ୍ପଣୀରୁ ଉଦ୍ଧାର କରାଯାଇଥାଇପାରେ । ବର୍ତ୍ତମାନ ଏପରି ହୋଇଯାଇଛି, ଯେପରି ଆମ ନିୟନ୍ତ୍ରଣରେ ତାହା ଆଉ ନାହିଁ ଏବଂ

ସେସବୁ ଯେତେ ପୁରାତନ୍, ସେତେ ପରମ ସତ୍ୟର ନିକଟତମ ବୋଲି ଧାରଣା କରାଯାଇଛି । ଏଥିହେତୁରୁ ମୁଁ ମନେକରେ, ଆମେ ସ୍ପଷ୍ଟଭାବରେ ନିଜକୁ ପ୍ରତାରଣା କରୁଁ ଓ ସତ୍ୟପଥରୁ ବହୁତ ଦୂରକୁ ଚାଲିଯାଉଁ ।"

ଅକବର ଥିଲେ ଷୋଡ଼ଶ ଶତାବ୍ଦୀର ଲୋକ, ଯେବେ ୟୁରୋପରେ ମାନବଜୀବନର ବୈପ୍ଳବିକ ଅଗ୍ରଗତିସୂଚକ ବିଜ୍ଞାନର ଅଭ୍ୟୁଦୟ ଘଟିଲା । ସେହି ଆବିଷ୍କାର ବଳରେ ୟୁରୋପ ପ୍ରଥମେ ଧୀରେ ଧୀରେ, ପରେ କ୍ରମ ବର୍ଦ୍ଧିତ ଗତି ସହକାରେ ଅଗ୍ରଗତି କରି ଚାଲିଲା ଏବଂ ଊନବିଂଶ ଶତାବ୍ଦୀରେ ଗୋଟିଏ ନୂତନ ଦୁନିଆ ନିର୍ମାଣ କରିପାରିଲା । ପ୍ରାକୃତିକ ବିବିଧ ଶକ୍ତିର ସୁଯୋଗ ୟୁରୋପ ଗ୍ରହଣ କରୁଥିଲାବେଳେ ସୁପ୍ତ ଓ ମୂର୍ଚ୍ଛିତ ଏସିଆ ମଣିଷର କାୟିକ ଶ୍ରମ ଉପରେ ନିର୍ଭର କରି ଗତାନୁଗତିକ ଗତିରେ ଚାଲିଥିଲା ।

ଏହାର କାରଣ କଣ ? ଏସିଆ ଏପରି ଏକ ବିଶାଳ ତଥା ବିଚିତ୍ର ଭୂଖଣ୍ଡ ଯେ ଗୋଟିଏ କଥାରେ ଏହାର ଉତ୍ତର ଯୋଗାଇବା ସମ୍ଭବ ନୁହେଁ । ପ୍ରତ୍ୟେକ ଦେଶକୁ ବିଶେଷତଃ ଚୀନ ଓ ଭାରତ ଭଳି ବିଶାଳ ଦେଶକୁ ସ୍ୱତନ୍ତ୍ର ଭାବରେ ବିବେଚନା କରିବାକୁ ପଡ଼ିବ । ଏକଥା ନିଶ୍ଚିତ ଯେ ଚୀନ ସେହି ସମୟରେ ଓ ପରବର୍ତ୍ତୀ କାଳରେ ମଧ୍ୟ ଅଧିକତର ସଂସ୍କୃତିସମ୍ପନ୍ନ ଥିଲା ଏବଂ ସେ ଦେଶର ଲୋକେ ୟୁରୋପର ଯେଉଁ ଦେଶର ଲୋକଙ୍କ ଅପେକ୍ଷା ଅଧିକତର ସଭ୍ୟ ଜୀବନ-ଯାପନ କରୁଥିଲେ । ବାହ୍ୟ ଦୃଷ୍ଟିରୁ ଦେଖିଲେ ଭାରତ ମଧ୍ୟ ଗୋଟାଏ ସମୃଦ୍ଧ ଜୀବନର ଚିତ୍ର ପରିବେଷଣ କରୁଥିଲା । ତାର ଦରବାର ଐଶ୍ୱର୍ଯ୍ୟରେ କେବଳ ଏହା ସୀମିତ ନଥିଲା । ବ୍ୟବସାୟ, ବାଣିଜ୍ୟ, ଉତ୍ପାଦନ ଓ କାରୁଶିଳ୍ପରେ ତାର ବିକାଶ ଘଟିଥିଲା । ସେହି ସମୟରେ ଯେ କେଉଁ ଭାରତୀୟ ପରିଦର୍ଶକ ଦୃଷ୍ଟିରେ ୟୁରୋପର ଦେଶମାନ ନାନା ଦିଗରୁ ଅନଗ୍ରସର ଓ ଅମାର୍ଜିତ ଦେଖାଦେଇଥାନ୍ତେ । ତଥାପି ଯେଉଁ ଗତିଶୀଳତାର ଲକ୍ଷଣ ୟୁରୋପରେ କ୍ରମଶଃ ସ୍ପଷ୍ଟ ହୋଇଉଠୁଥିଲା, ଭାରତରେ ତାର କ୍ଷୀଣ ସୂଚନା ସୁଦ୍ଧା ନଥିଲା କହିଲେ ଚଳେ ।

ବାହ୍ୟ ଆକ୍ରମଣ ଅପେକ୍ଷା ଆଭ୍ୟନ୍ତରୀଣ ବିଫଳତାରୁ ମୁଖ୍ୟତଃ ସଭ୍ୟତାର ଅବନତି ଘଟିଥାଏ । ଏହି ବିଫଳତାର କାରଣ, ଗୋଟାଏ ଦୃଷ୍ଟିରୁ ଦେଖିଲେ, ହୋଇପାରେ ଯେ ସେହି ସଭ୍ୟତା ଜୀର୍ଣ୍ଣ ହୋଇଯାଇଥାଏ ଏବଂ ଗୋଟିଏ ପରିବର୍ତ୍ତିତ ଦୁନିଆକୁ ଦେବାପାଇଁ ତାର କିଛି ନଥାଏ; କିମ୍ବା ଏପରି ମଧ୍ୟ ହୋଇପାରେ ଯେ ସେହି ସଭ୍ୟତାର ଅନୁଗାମୀ ଜନସାଧାରଣଙ୍କର ଗୁଣାତ୍ମକ ଅବନତି ଘଟିଛି ଓ ତାର ବାହକ ହେବାର ଯୋଗ୍ୟତା ସେମାନେ ହରାଇବସିଛନ୍ତି । ହୋଇପାରେ, ସାମାଜିକ ସଂସ୍କୃତି କୌଣସି ଏକ ନିର୍ଦ୍ଦିଷ୍ଟ ଅବସ୍ଥାକୁ ଅତିକ୍ରମ କରିଯିବା ଦିଗରେ ପ୍ରତିବନ୍ଧକ ସୃଷ୍ଟି କରିଛି ଏବଂ ସେହି ପ୍ରତିବନ୍ଧକ ଦୂର କରିବାରେ କିମ୍ବା ସେହି ସଂସ୍କୃତିରେ କେତେକ ଅତ୍ୟାବଶ୍ୟକୀୟ ତଥା ଗୁଣାତ୍ମକ ପରିବର୍ତ୍ତନ ଆଣିବାରେ ହିଁ ଅଗ୍ରଗତି କରାଯାଇପାରନ୍ତା । ତୁର୍କ ଓ ଆଫଗାନ୍‌ମାନଙ୍କ ଭାରତ ଅଭିଯାନ ପୂର୍ବରୁ ଭାରତୀୟ ସଭ୍ୟତାର ଅବନତି ପରିଲକ୍ଷିତ ହୁଏ । ଏହି ଆକ୍ରମଣକାରୀମାନେ ଓ ପୁରାତନ ଭାରତ ଉପରେ ସେମାନଙ୍କର ନୂତନ ଭାବଧାରାର ପ୍ରଭାବ ଓ ପ୍ରବଳ ଚାପ,

ତେବେ କି'ଣ ଗୋଟାଏ ନୂତନ ସାମାଜିକ ପ୍ରକରଣ ସୃଷ୍ଟି କରି ବୁଦ୍ଧିର ବନ୍ଧନ ମୁକ୍ତ କଲା ଓ ନୂତନ ଶକ୍ତି ସଞ୍ଚାର କଲା ?

କେତେକାଂଶରେ ଏହା ସତ୍ୟ ଏବଂ କଳା ଓ ସ୍ଥାପତ୍ୟ, ଚିତ୍ରକଳା ଓ ସଙ୍ଗୀତ ତଥା ଜୀବନର ଧାରା ଉପରେ ତାର ପ୍ରଭାବ ଅବଶ୍ୟ ପଡ଼ିଲା । କିନ୍ତୁ ସେହି ସବୁ ପ୍ରଭାବ ଭାରତୀୟ ସଭ୍ୟତାର ଗଭୀରତର ପ୍ରଦେଶକୁ ସ୍ପର୍ଶ କରିପାରି ନଥିଲା । ସେସବୁ ଥିଲା, କେବଳ ବାହ୍ୟ ଏବଂ ସାମାଜିକ ସଂସ୍କୃତି ପୂର୍ବଭଳି ଅକ୍ଷୁଣ୍ଣ ରହିଲା । ପ୍ରକୃତ ପକ୍ଷେ, କେତେକ ଦିଗରେ ତାହା ଆହୁରି ରକ୍ଷଣଶୀଳ ହୋଇପଡ଼ିଲା । ଆଫ୍‌ଗାନମାନେ ପ୍ରଗତିର କୌଣସି ନୂତନ ବିଗ୍ରହ ଆଣିନଥିଲେ । ସେମାନେ ଥିଲେ ଗୋଟାଏ ଅନଗ୍ରସର, ସାମନ୍ତବାଦୀ ତଥା ଉପଜାତି ଶ୍ରେଣୀର ଲୋକ । ୟୁରୋପୀୟ ଦୃଷ୍ଟିରୁ ବିଚାର କଲେ ଭାରତ ସାମନ୍ତବାଦୀ ନଥିଲା ସତ୍ୟ; କିନ୍ତୁ ଭାରତୀୟ ପ୍ରତିରକ୍ଷାର ମେରୁଦଣ୍ଡ ରାଜପୁତ୍ରମାନେ ଗୋଟାଏ ପ୍ରକାର ସାମନ୍ତବାଦୀ ଧାରାରେ ସଙ୍ଗଠିତ ହୋଇଥିଲେ । ମୋଗଲମାନଙ୍କ ଭିତରେ ମଧ୍ୟ କିଛି କିଛି ସାମନ୍ତବାଦୀ ଢଙ୍ଗ ଥିଲା; କିନ୍ତୁ ସେମାନଙ୍କ ଭିତରେ ରାଜତନ୍ତ୍ରର ଧାରଣା ଥିଲା ବଳିଷ୍ଠ । ରାଜପୁତାନାର ଅନିର୍ଦ୍ଦିଷ୍ଟ ସାମନ୍ତବାଦ ଉପରେ ରାଜତନ୍ତ୍ର ବିଜୟ ହାସଲ କଲା ।

ଭାରତରେ ଆକ୍‌ବର ସାମାଜିକ ପରିବର୍ତ୍ତନର ଭିତ୍ତି ସ୍ଥାପନ କରିପାରିଥାନ୍ତେ ଯଦି ତାଙ୍କର ଆତୁର ଓ ଜିଜ୍ଞାସୁ ମନ ସେ ଦିଗରେ ଧାବିତ ହୋଇ ପୃଥିବୀର ଅନ୍ୟାନ୍ୟ ଅଂଶରେ କି'ଣ ଘଟୁଛି ଜାଣିବାକୁ ଚାହିଁଥାନ୍ତା । କିନ୍ତୁ ସାମ୍ରାଜ୍ୟ ପ୍ରତିଷ୍ଠାରେ ସେ ଅତିମାତ୍ରାରେ ବ୍ୟସ୍ତ ରହୁଥିଲେ ଏବଂ ସେ ଯେଉଁ ବଡ଼ ସମସ୍ୟାର ସମ୍ମୁଖୀନ ହୋଇଥିଲେ ତାହା ହେଉଛି ଗୋଟାଏ ଦିଗରେ ଜନସାଧାରଣଙ୍କ ପ୍ରଥା-ପରମ୍ପରା ଓ ଜାତୀୟଧର୍ମ, ଅନ୍ୟ ଦିଗରେ ଧର୍ମାନ୍ତରୀକରଣପିପାସୁ ଇସ୍‌ଲାମ ଭଳି ଏକ ଧର୍ମ ଭିତରେ ବୁଝାମଣା କରି ଜାତୀୟ ଐକ୍ୟ ନିର୍ମାଣ କରିବା । ଯୁକ୍ତିସଙ୍ଗତ ଭାବରେ ଧର୍ମର ବ୍ୟାଖ୍ୟା କରିବା ଉଦ୍ୟମ ସେ କରିଥିଲେ ଏବଂ ଯେପରି ଜଣାଯାଏ, ଗୋଟାଏ ସମୟରେ ଭାରତୀୟ ଚରିତ୍ରରେ ଏକ ଅପୂର୍ବ ରୂପାନ୍ତର ଘଟାଇବାରେ ସେ ଏକରକମ ସଫଳ ବି ହୋଇଥିଲେ । କିନ୍ତୁ ଏହି ସିଧାସଳଖ ଆଭିମୁଖ୍ୟ ଫଳପ୍ରସୂ ହୋଇପାରିନଥିଲା । ପୃଥିବୀର ଅନ୍ୟ କେଉଁ ସ୍ଥାନରେ ମଧ୍ୟ ଏ ପ୍ରକାର ଅଭିମୁଖ୍ୟ ସଫଳ ହେବାର ଦୃଷ୍ଟାନ୍ତ ନାହିଁ ।

ଅତଏବ, ଅକ୍‌ବରଙ୍କ ଚିନ୍ତା ଓ ପ୍ରୟାସ ଭାରତର ସାମାଜିକ ପ୍ରକରଣରେ କୌଣସି ମୌଳିକ ପରିବର୍ତ୍ତନ ଘଟାଇ ପାରିନଥିଲା । ତାଙ୍କ ପରେ ତାଙ୍କଦ୍ୱାରା ପ୍ରବର୍ତ୍ତିତ ପରିବର୍ତ୍ତନର ବାତାବରଣ ଓ ଉଚ୍ଚ ମାନସ-ବିହାର ଶିଥିଳ ହୋଇପଡ଼ିଲା ଏବଂ ଭାରତ ପୁଣି ନିମଜ୍ଜିତ ହେଲା ତାର ପରିବର୍ତ୍ତନହୀନ, ସ୍ଥାଣୁ ଜୀବନ ଭିତରେ ।(୧)

---

(୧) ଆବୁଲ୍ ଫଜଲ୍ କହନ୍ତି, କୋଲମ୍ବସଙ୍କ ଆମେରିକା ଆବିଷ୍କାର ବିଷୟ ଆକ୍‌ବର ଶୁଣିଥିଲେ । ତାଙ୍କ ପରେ, ଜାହାଙ୍ଗୀରଙ୍କ ରାଜତ୍ୱ କାଳରେ ଆମେରିକାରେ ଉତ୍ପନ୍ନ ଧୂଆଁପତ୍ର ୟୁରୋପ ଦେଇ ଭାରତରେ ପହଞ୍ଚିଲା । ଏହା ନିବାରଣ କରିବା ଦିଗରେ

# ୧୧. ମିଳିତ ସଂସ୍କୃତିର ବିକାଶ

ଅକବର ଏତେ ମଜବୁତ ଭାବରେ ଇମାରତ ଗଢ଼ିଥିଲେ ଯେ ତାହା ତାଙ୍କର ଉତ୍ତରାଧିକାରୀଙ୍କର ସବୁକିଛି ଦୋଷ ତ୍ରୁଟି ସତ୍ତ୍ୱେ ଆଉ ଶହେବର୍ଷ ପର୍ଯ୍ୟନ୍ତ ତିଷ୍ଠି ରହିପାରିଲା । ପ୍ରାୟ ପ୍ରତ୍ୟେକ ମୋଗଲ ବାଦଶାହଙ୍କ ରାଜତ୍ୱ ଶେଷରେ ସିଂହାସନ ନିମନ୍ତେ ଶାହଜାଦା-ମାନଙ୍କ ଭିତରେ ଯୁଦ୍ଧ ହେଉଥିଲା । ଏହା ଫଳରେ କେନ୍ଦ୍ରର ଶକ୍ତି କ୍ରମଶଃ ଦୁର୍ବଳ ହୋଇ ପଡ଼ୁଥିଲା । କିନ୍ତୁ ମୋଗଲ ଦରବାରର ଐଶ୍ୱର୍ଯ୍ୟ ଓ ଆଡ଼ମ୍ବର ଅକ୍ଷୁଣ୍ଣ ରହିଥିଲା ଏବଂ ମୋଗଲ ଶାହନଶାହାଙ୍କ ଖ୍ୟାତି ସମଗ୍ର ଏସିଆ ଓ ୟୁରୋପରେ ବିସ୍ତୃତ ହୋଇଥିଲା । ସ୍ଥାପତ୍ୟରେ ପୁରାତନ ଭାରତୀୟ ଆଦର୍ଶ ସଙ୍ଗେ ନୂତନ ଏକ ସରଳତା ଓ ରେଖାର ଆଭିଜାତ୍ୟ ଯେଉଁ କମନୀୟ ପ୍ରାସାଦମାନ ଆଗ୍ରା ଓ ଦିଲ୍ଲୀରେ ମୁଣ୍ଡ ଟେକି ଉଠିଲା । ଏହି ଇଣ୍ଡୋ-ମୋଗଲ କଳା ଉତ୍ତର ଓ ଦକ୍ଷିଣ-ଭାରତର ମନ୍ଦିରମାନଙ୍କର ତଥା ଅନ୍ୟାନ୍ୟ ପ୍ରାସାଦାବଳୀର କ୍ଷୟଶୀଳ, ଅତିମାତ୍ରାରେ ଅଳଙ୍କୃତ କଳା ଅପେକ୍ଷା ସମ୍ପୂର୍ଣ୍ଣ ଭିନ୍ନ । ଉଦ୍‌ବୁଦ୍ଧ ସ୍ଥପତି ଓ ନିର୍ମାଣଶିଳ୍ପୀମାନେ ପ୍ରୀତିଭରା ହସ୍ତରେ ଆଗ୍ରାରେ ତାଜମହଲ ନିର୍ମାଣ କଲେ ।

ଏହି ତଥାକଥିତ 'ମହାନ୍ ମୋଗଲ' ମାନଙ୍କର ଶେଷ ସମ୍ରାଟ ଔରଙ୍ଗଜେବ ବିପରୀତ ପନ୍ଥାରେ ସାମ୍ରାଜ୍ୟ ପରିଚାଳନା କରିବାକୁ ଯାଇ ତାର ଗତି ଓ ଜୀବନର ଅବସାନ

---

ଜାହାଙ୍ଗୀରଙ୍କ ସମସ୍ତ ପ୍ରୟାସ ବ୍ୟର୍ଥ ହେଲା । ଅତି ବିସ୍ମୟକର ଭାବରେ ଓ ଅତି ଚଞ୍ଚଳ ଏହା ଆବିର୍ଭୂତ ହୋଇଉଠିଲା । ମୋଗଲ ରାଜତ୍ୱ କାଳରେ ମଧ୍ୟ-ଏସିଆ ସଙ୍ଗେ ଭାରତର ଘନିଷ୍ଠ ସମ୍ପର୍କ ବରାବର ରହିଥିଲା । ଏ ପ୍ରକାର ସମ୍ପର୍କ ରୁଷିଆ ପର୍ଯ୍ୟନ୍ତ ପ୍ରସାରିତ ହୋଇଥିଲା ଏବଂ ଏ ସମ୍ବନ୍ଧରେ ବାଣିଜ୍ୟ ତଥା କୂଟନୈତିକ ଦୌତ୍ୟ ବିଷୟରେ ଉଲ୍ଲେଖ ରହିଛି । ରୁଷ୍ ଦେଶୀୟ ଘଟଣା-ପଞ୍ଜି ବା ପୁରାବୃତ୍ତମାନଙ୍କରେ ଏ ପ୍ରକାର ଉଲ୍ଲେଖ ପ୍ରତି ଜଣେ ଋଷିୟାନ୍ ବନ୍ଧୁ ମୋର ଦୃଷ୍ଟି ଆକର୍ଷଣ କରିଥିଲେ । ଖ୍ରୀ: ୧୫୩୨ରେ ଖୋଜା ହୁସେନ୍ ନାମକ ସମ୍ରାଟ ବାବରଙ୍କ ଜଣେକ ଦୂତ ମିତ୍ରତା-ଚୁକ୍ତି ସମ୍ପାଦନ ନିମନ୍ତେ ମସ୍କୋରେ ପହଞ୍ଚିଥିଲେ । ଜାର୍ ମାଇକେଲ ଫେଡ଼ୋରୋଭିକ୍ (ଖ୍ରୀ: ୧୬୧୩-୧୬୪୫)ଙ୍କ ରାଜତ୍ୱ କାଳରେ ଭାରତୀୟ ସୌଦାଗରମାନେ ଭଲଗା ନଦୀ ତୀରରେ ବସତି କରିଥିଲେ । ଖ୍ରୀ: ୧୬୨୫ରେ ଅସ୍ତ୍ରାଖାନର ସାମରିକ ରାଜ୍ୟପାଳଙ୍କ ଆଦେଶକ୍ରମେ ସେଠାରେ ଏକ ଭାରତୀୟ ସରାଇ ବା ପାନ୍ଥଶାଳା ନିର୍ମିତ ହୋଇଥିଲା । ଭାରତୀୟ କାରିଗର ବିଶେଷତଃ ବସ୍ତ୍ର-କାରିଗରମାନେ ମସ୍କୋକୁ ନିମନ୍ତ୍ରିତ ହୋଇଥିଲେ । ଖ୍ରୀ: ୧୬୯୫ରେ ସିମିୟାନ ମେଲେଙ୍କି ନାମକ ଋଷିୟାନ ବାଣିଜ୍ୟ ପ୍ରତିନିଧି ଦିଲ୍ଲୀରେ ପହଞ୍ଚି ସମ୍ରାଟ ଔରଙ୍ଗଜେବଙ୍କ ସମାଦର ଲାଭ କରିଥିଲେ । ଖ୍ରୀ: ୧୭୨୨ରେ ମହାନ୍ ପୀଟର ଅସ୍ତ୍ରାଖାନ ପରିଦର୍ଶନ କାଳରେ ଭାରତୀୟ ବଣିକମାନଙ୍କୁ ତାଙ୍କ ସଙ୍ଗେ ସାକ୍ଷାତ କରିବାର ସୁଯୋଗ ଦେଇଥିଲେ । ଖ୍ରୀ: ୧୬୩୪ରେ, ଫକୀର ଭାବରେ ବର୍ଣ୍ଣିତ, ଦଳେ ଭାରତୀୟ ସାଧୁ ଅସ୍ତ୍ରାଖାନରେ ଉପନୀତ ହେଲେ । ସେମାନଙ୍କ ଭିତରୁ ଦୁଇଜଣ ସ୍ଥାୟୀ ଭାବରେ ରୁଷିଆରେ ରହିଗଲେ ଓ ରୁଷ୍ ପ୍ରକାରେ ପରିଣତ ହେଲେ ।

ଘଟାଇଲେ । ମୋଗଲ ଶାସକମାନେ ଯେ ପର୍ଯ୍ୟନ୍ତ ଶକ୍ତିଶାଳୀ ଥିଲେ ସେପର୍ଯ୍ୟନ୍ତ ସେମାନେ ଜାତିର ପ୍ରତିଭା ସଙ୍ଗେ ଶ୍ରେଣୀବଦ୍ଧ ଭାବରେ ଗୋଟାଏ ସର୍ବଜନଗ୍ରାହ୍ୟ ଜାତୀୟତା ଓ ଦେଶର ବିଭିନ୍ନ ଚିନ୍ତାଧାରାର ସମନ୍ୱୟ ସାଧନରେ ବ୍ରତୀ ଥିଲେ । ଔରଙ୍ଗଜେବ୍ ଏହି ଆନ୍ଦୋଳନର ବିରୋଧ କରି ଓ ତାକୁ ଦମନ କରି, ଜଣେ ଭାରତୀୟ ଶାସକ ଅପେକ୍ଷା ଅଧିକତର ଭାବରେ ଜଣେ ମୁସଲିମ୍ ଶାସକ ଭାବରେ ଯେବେ କାର୍ଯ୍ୟ କରିବାକୁ ଲାଗିଲେ, ମୋଗଲ ସାମ୍ରାଜ୍ୟ କ୍ରମଶଃ ଭାଙ୍ଗିବାକୁ ଲାଗିଲା । ଆକ୍‌ବର ଓ କେତେ ପର୍ଯ୍ୟନ୍ତ ତାଙ୍କର ଉତ୍ତରପୁରୁଷଙ୍କ ସ୍ୱପ୍ନ ଓ ଶ୍ରମ ଔରଙ୍ଗଜେବଙ୍କ ଦୃଷ୍ଟିରେ ତୁଚ୍ଛ ପ୍ରତୀତ ହେଲା ଏବଂ ସେଥିପାଇଁ ସିଂହ ଆକ୍‌ବରଙ୍କ ନୀତିଦ୍ୱାରା ବାଧାପ୍ରାପ୍ତ ଓ ନିୟନ୍ତ୍ରିତ ରହିଥିଲେ, ଔରଙ୍ଗଜେବଙ୍କ ନୀତି ଫଳରେ ହୁଙ୍କାର ଛାଡ଼ି ସାମ୍ରାଜ୍ୟର ବିନାଶ ସାଧନ ଦିଗରେ କାର୍ଯ୍ୟକାରୀ ହେଲେ । ଦୃଷ୍ଟିଭଙ୍ଗୀ ଦିଗରୁ କେତେ ସଙ୍କୀର୍ଣ୍ଣ ହେଲେ ସୁଦ୍ଧା ଜାଗ୍ରତ ଜାତୀୟତାବାଦର ପ୍ରତିନିଧି ଭାବରେ ନବ ନବ ଆନ୍ଦୋଳନମାନ ମୁଣ୍ଡଟେକି ଉଠିଲା ଏବଂ ସ୍ଥାୟୀଭାବରେ କିଛି ଗଢ଼ି ତୋଳିବା ନିମନ୍ତେ ଯଥେଷ୍ଟ ଶକ୍ତି ନଥିଲେ ସୁଦ୍ଧା, ପରସ୍ପରର ବିରୋଧରେ ରହିଥିଲେ ସୁଦ୍ଧା, ମୋଗଲମାନଙ୍କର ସଯତ୍ନନିର୍ମିତ ସାମ୍ରାଜ୍ୟ ଭାଙ୍ଗିପକାଇବା ପାଇଁ ସେ ଜାତୀୟତାବାଦ ସମର୍ଥ ହୋଇପାରିଥିଲା ।

ଉତ୍ତର-ପଶ୍ଚିମ ଦିଗରୁ ଆଗତ ଆକ୍ରମଣକାରୀ ଓ ଇସ୍‌ଲାମ୍ ଧର୍ମର ଛାପ ଭାରତ ଉପରେ ପ୍ରଭୂତ ପରିମାଣରେ ପଡ଼ିଲା । ହିନ୍ଦୁସମାଜରେ ଯେଉଁସବୁ ଦୋଷ ଦୁର୍ବଳତା ପ୍ରବେଶ କରିଥିଲା; ଯଥା—ପ୍ରସ୍ତରୀଭୂତ ବର୍ଣ୍ଣ-ବ୍ୟବସ୍ଥା, ଅସ୍ପୃଶ୍ୟତା ଓ ଉତ୍କଟ ଅନନ୍ୟଭାବନା ଲୋକ ଚକ୍ଷୁରେ ପଡ଼ିଲା । ଇସ୍‌ଲାମ୍‌ର ସୌଭ୍ରାତୃତ୍ୱ ଧାରଣା ଓ ତତ୍ତ୍ୱ ଦିଗରୁ ତାର ଅନୁଗାମୀ-ମାନଙ୍କର ସମାନତା, ହିନ୍ଦୁ ସମ୍ପ୍ରଦାୟ ଭିତରେ ଯେଉଁମାନେ ଏ ପ୍ରକାର ଦେଖାଣିଆ ସମାନ ବ୍ୟବହାରରୁ ମଧ୍ୟ ବଞ୍ଚିତ ଥିଲେ, ବିଶେଷକରି ସେମାନଙ୍କ ଉପରେ ତାର ଶକ୍ତିଶାଳୀ ପ୍ରଭାବ ପଡ଼ିଲା । ଏହି ମତାଦର୍ଶଗତ ଛାପ ଫଳରେ ଧାର୍ମିକ ସମନ୍ୱୟ ଲକ୍ଷ୍ୟ ଘେନି ବିବିଧ ଆନ୍ଦୋଳନ ଗଢ଼ିଉଠିଲା । ଲୋକେ ବହୁ ସଂଖ୍ୟାରେ ଧର୍ମାନ୍ତର ଗ୍ରହଣ କଲେ; କିନ୍ତୁ ଏମାନଙ୍କ ଭିତରୁ ବହୁତ ହେଉଚନ୍ତି ନିମ୍ନ ବର୍ଗର, ବିଶେଷତଃ ବଙ୍ଗ ପ୍ରଦେଶର ନିମ୍ନବର୍ଗର ଲୋକ । ଉଚ୍ଚ-ବର୍ଣ୍ଣମାନଙ୍କ ଭିତରୁ କେହି କେହି ପ୍ରକୃତ ମତ ପରିବର୍ତ୍ତନ କରି ଏହି ନୂତନ ଧର୍ମର ଆଶ୍ରୟ ଗ୍ରହଣ କଲେ; କିନ୍ତୁ ବହୁଧା ଏହା ଘଟିଥିଲା ରାଜନୈତିକ ଓ ଅର୍ଥନୈତିକ କାରଣମାନଙ୍କରୁ । ରାଜଶକ୍ତିର ଧର୍ମ ଗ୍ରହଣ କରିବାରେ ବହୁଳ ସୁବିଧା ସୁଯୋଗ ହସ୍ତଗତ ହେଉଥିଲା ।

ଏ ପ୍ରକାର ବ୍ୟାପକ ଧର୍ମାନ୍ତରୀକରଣ ସତ୍ତ୍ୱେ ତାର ସମସ୍ତ ବିବିଧତା ଘେନି ହିନ୍ଦୁଧର୍ମ ଦୃଢ଼, ଅନନ୍ୟ, ସ୍ୱୟଂ-ସମ୍ପୂର୍ଣ୍ଣ ଓ ନିଜ ସମ୍ପର୍କରେ ନିଶ୍ଚିତ, ଭାରତର ପ୍ରଧାନ ଧର୍ମ ଭାବରେ ଅବ୍ୟାହତ ରହିଲା । ଉପରବର୍ଗମାନଙ୍କର ଭାବନା ଭିତ୍ତିକ ତାର ପ୍ରଦେଶରେ ସେମାନଙ୍କର ପ୍ରାଧାନ୍ୟ ସମ୍ପର୍କରେ ସେମାନେ ନିଃସନ୍ଦେହ ଥିଲେ ଏବଂ ଦର୍ଶନ ଓ ଅଧିବିଦ୍ୟାର ସମସ୍ୟା-ମାନଙ୍କ ପ୍ରତି ଇସ୍‌ଲାମ୍‌ର ଆଭିମୁଖ୍ୟ ଏକ ପ୍ରକାର ଅମାର୍ଜିତ ମନେକରୁଥିଲେ । ଇସ୍‌ଲାମ୍‌ର ଏକେଶ୍ୱରବାଦ ସେମାନଙ୍କର ଧର୍ମରେ ଥିଲା ଏବଂ ଅଦ୍ୱୈତବାଦ ସଙ୍ଗେ ଏହା ଥିଲା ସେମାନଙ୍କର ଅଧିକାଂଶ ଦର୍ଶନର ମୂଳଭିତ୍ତି । ଏଥିଭିତରୁ କିମ୍ବା ଅନ୍ୟାନ୍ୟ ସରଳତର

ପୂଜାପଦ୍ଧତି ଭିତରୁ ନିଜର ମନୋମତ ବିଶ୍ୱାସ ବାଛିନେବାର ଅଧିକାର ପ୍ରତ୍ୟେକ ବ୍ୟକ୍ତିର ଥିଲା । ସେ ବୈଷ୍ଣବ ହୋଇପାରେ ଏବଂ ନିଜର ଇଷ୍ଟଦେବତା ନିକଟରେ ତାର ପ୍ରାଣର ବିଶ୍ୱାସ ନିବେଦନ କରିପାରେ; କିମ୍ବା ଦାର୍ଶନିକତା ପ୍ରତି ଯଦି ତାର ଆକର୍ଷଣ ରହିଲା, ତେବେ ଉଚ୍ଚାଙ୍ଗ ଦର୍ଶନ ଓ ଅଧିବିଦ୍ୟାର ସୂକ୍ଷ୍ମତମ ପ୍ରଦେଶରେ ବିଚରଣ କରିପାରେ । ସେମାନଙ୍କର ସବୁକିଛି ସାମାଜିକ ବ୍ୟବସ୍ଥା ଗୋଷ୍ଠୀ ଉପରେ ଭିତ୍ତି କରିଥିଲେ ସୁଦ୍ଧା ଧର୍ମ ବିଷୟରେ ସେମାନେ ଥିଲେ ଅତିଶୟ ବ୍ୟକ୍ତିକେନ୍ଦ୍ରିକ ଏବଂ ନିଜର ଧର୍ମବିଶ୍ୱାସ ପରିବର୍ତ୍ତନ କରିବା ବିଷୟର ସେମାନଙ୍କର ନଥିଲା କିମ୍ବା ଅନ୍ୟ କେଉଁ ଲୋକ ଧର୍ମମତ ପରିବର୍ତ୍ତନ କଲେ ସେଥିପ୍ରତି ସେମାନଙ୍କର ଭ୍ରୂକ୍ଷେପ ନଥିଲା । ମନରେ ସେମାନଙ୍କର ବିରୋଧୀଭାବ ସେତେବେଳେ ଉଦିତ ହୁଏ; ଯେବେ ସେମାନଙ୍କର ସାମାଜିକ ବ୍ୟବସ୍ଥା ଓ ଜୀବନଯାପନ ପ୍ରଣାଳୀରେ କିଏ ହସ୍ତକ୍ଷେପ କରି ବସେ । ଅନ୍ୟ କେଉଁ ଗୋଷ୍ଠୀ ଯଦି ନିଜସ୍ୱଗତିରେ ପରିଚାଳିତ ହେବାକୁ ଚାହେଁ ସେ ସ୍ୱାତନ୍ତ୍ର୍ୟ ତାର ଥିଲା । ଏଠାରେ ଲକ୍ଷ୍ୟ କରିବାର କଥା ଯେ ହିନ୍ଦୁଧର୍ମ ଛାଡ଼ି ଇସ୍‌ଲାମ୍ ଧର୍ମ ଗ୍ରହଣକରିବା ଗୋଷ୍ଠୀଭାବରେ କେବଳ ସମ୍ଭବ ହୋଇଛି । ବ୍ୟକ୍ତିଜୀବନ ଉପରେ ଏତେ ଶକ୍ତିଶାଳୀ ଥିଲା ଗୋଷ୍ଠୀର ପ୍ରଭାବ । ଉଚ୍ଚବର୍ଗମାନଙ୍କରେ ବ୍ୟକ୍ତିବିଶେଷ ଭାବରେ କେହି କେହି ଧର୍ମମତ ବଦଳାଇ ପାରିଥାନ୍ତି; କିନ୍ତୁ ସିଡ଼ିର ତଳକୁ ଓହ୍ଲାଇ ଆସିଲେ ଦେଖାଯିବ ଯେ କୌଣସି ଏକ ଅଞ୍ଚଳର ଗୋଟାଏ ନିର୍ଦ୍ଦିଷ୍ଟ ଜାତି କିମ୍ବା ସାମୂହିକ ଭାବରେ ଗୋଟାଏ ଗ୍ରାମ ଧର୍ମାନ୍ତରିତ ହୋଇଯାଇଛି । ଏପରିଭାବରେ ସେମାନଙ୍କର ଗୋଷ୍ଠୀ-ଜୀବନ ଓ ସେମାନଙ୍କର କର୍ମପନ୍ଥା ପୂର୍ବଭଳି ଅବ୍ୟାହତ ରହିଲା ଏବଂ ପୂଜାବିଧି ଆଦିରେ ସାମାନ୍ୟ କିଛି ପରିବର୍ତ୍ତନ କେବଳ ଯାହା ଘଟିଲା । ଏହି କାରଣରୁ ଆଜି ଆମକୁ ଦେଖିବାକୁ ମିଳେ ଯେ ନିର୍ଦ୍ଦିଷ୍ଟ କେତେକ ବୃତ୍ତି ଓ କାରୁକର୍ମ ମୁସଲମାନମାନେ ଏକଚାଟିଆକରି ରଖିଚନ୍ତି । ଏପରିଭାବରେ ବୁଣାକାର ଶ୍ରେଣୀର ଲୋକେ ପ୍ରଧାନତଃ ମୁସଲମ ଓ ବଡ଼ ବଡ଼ କେତେକ ଅଞ୍ଚଳରେ ଏମାନେ ହିଁ ସେହି କାର୍ଯ୍ୟ କରିଥାନ୍ତି । ଏମାନଙ୍କ ସଙ୍ଗେ ଚର୍ମକାର ଓ କଂସେଇମାନେ ମଧ୍ୟ ମୁସଲମ ଥିଲେ । ପ୍ରାୟ ସବୁସମୟରେ ଦରଜୀମାନେ ଥିଲେ ମୁସଲମ୍ । ନାନାବିଧ କାରିଗର ଓ ହସ୍ତଶିଳ୍ପ କର୍ମୀ ଥିଲେ ମୁସଲମାନ । ଗୋଷ୍ଠୀ-ବ୍ୟବସ୍ଥା ଭାଙ୍ଗିପଡ଼ିବା ଫଳରେ ବହୁଲୋକ ଅନ୍ୟାନ୍ୟ ବୃତ୍ତି ଅବଲମ୍ବନ କଲେ ଏବଂ ଏହା ଫଳରେ ଭିନ୍ନ ଭିନ୍ନ ବୃତ୍ତିମୂଳକ ଗୋଷ୍ଠୀର ଅନନ୍ୟତା ଲୋପପାଇଛି । ବିବିଧ ଗ୍ରାମୋଦ୍ୟୋଗ ଓ କାରୁଶିଳ୍ପ ଭାଙ୍ଗିପଡ଼ିବା ଫଳରେ ବହୁ-ସଂଖ୍ୟକ କାରିଗର ବିଶେଷତଃ ବୁଣାକାରମାନେ ସେମାନଙ୍କର ବୃତ୍ତି ଓ ଜୀବିକା ଅର୍ଜନର ପନ୍ଥାରୁ ବଞ୍ଚିତ ହେଉଚନ୍ତି । ମୂଳତଃ, ବ୍ରିଟିଶ ରାଜତ୍ୱକାଳରେ ଗ୍ରାମାଞ୍ଚଳର ସମସ୍ତ କିଛି ଉଦ୍ୟୋଗ ଉଦ୍ଦେଶ୍ୟମୂଳକ ଭାବରେ ଭାଙ୍ଗିବାର ବ୍ୟବସ୍ଥା ଗ୍ରହଣ କରାଗଲା ଏବଂ ପରବର୍ତ୍ତୀ କାଳରେ ଗୋଟାଏ ନୂତନ ଔପନିବେଶିକ ଅର୍ଥନୀତିର ବିକାଶର ପରିଣାମସ୍ୱରୂପ ତାହା ସହଜ ହୋଇପଡ଼ିଲା । ଏହି ବିପର୍ଯ୍ୟୟରୁ ଯେଉଁମାନେ ଉଦ୍ଧାର ହୋଇପାରିଲେ ସେମାନଙ୍କୁ କୃଷି ଉପରେ ନିର୍ଭର କରିବାକୁ ପଡ଼ିଲା । ଏମାନଙ୍କ ଭିତରୁ ଅଧିକାଂଶ ହେଲେ କ୍ଷେତ ମଜୁରିଆ । କାହାକୁ କାହାକୁ ହୁଏତ ନିଜର ଆତ୍ମୀୟସ୍ୱଜନଙ୍କ ଭାଗଚାଷୀ ଭାବରେ ଚାଷ

କରିବାପାଇଁ ସାମାନ୍ୟ କିଛି କମି ମିଳିଲା ।

ସେ କାଳରେ, ବ୍ୟକ୍ତିଗତ ଭାବରେ ହେଉ କି ଗୋଷ୍ଠୀଗତ ଭାବରେ ହେଉ, ହିନ୍ଦୁଧର୍ମ ଛାଡ଼ି ଇସ୍‌ଲାମ୍ ଧର୍ମ ଗ୍ରହଣ କରିବା ପ୍ରତି, ବାଧବାଧକତା କିମ୍ବା ବଳ ପ୍ରୟୋଗ ନକଲେ, ହୁଏତ ସେପରି କିଛି ବିଧିବଦ୍ଧ ବିରୋଧିତା ଦେଖା ଦେଉନଥିଲା । ବନ୍ଧୁ-ବାନ୍ଧବ, ଆତ୍ମୀୟ ସ୍ଵଜନ କିମ୍ବା ସାହି-ପଡ଼ିଶା ଲୋକେ ଏ ପ୍ରକାର କାର୍ଯ୍ୟକୁ ପସନ୍ଦ ହୁଏତ କରିନଥିବେ; କିନ୍ତୁ ହିନ୍ଦୁ ସମ୍ପ୍ରଦାୟ ଆପାତଦୃଷ୍ଟିରେ ଏଥିପ୍ରତି ସେତେଭଳି ଗୁରୁତ୍ଵ ଆରୋପ କରୁନଥିଲା । ଏହି ଉଦାସୀନ ମନୋଭାବ ଆଜି ନାହିଁ; କାରଣ ଇସ୍‌ଲାମ୍ ହେଉ କି ଖ୍ରୀଷ୍ଟାନଧର୍ମ ହେଉ ଯେକୌଣସି ଧର୍ମକୁ ପରିବର୍ତ୍ତିତ ହେଲେ ଏହା ବ୍ୟାପକଭାବରେ ଲୋକଙ୍କର ଦୃଷ୍ଟି ଆକର୍ଷଣ କରୁଛି ଓ ବିରକ୍ତି ପ୍ରକାଶପାଉଛି । ଏହାର ପ୍ରଧାନ କାରଣ ରାଜନୈତିକ ଏବଂ ବିଶେଷତଃ ଧର୍ମ ଉପରେ ପ୍ରତିଷ୍ଠିତ ସ୍ଵତନ୍ତ୍ର ନିର୍ବାଚନମଣ୍ଡଳୀ ବ୍ୟବସ୍ଥାର ପରିଣାମ । ପ୍ରତ୍ୟେକ ଧର୍ମାନ୍ତରିତ ବ୍ୟକ୍ତି ତାର ନୂତନ ସମ୍ପ୍ରଦାୟର ସଂଖ୍ୟା ବୃଦ୍ଧି କରେ ଏବଂ ସେଥି ହେତୁରୁ ବୃଦ୍ଧି ହେଉଛି ଅଧିକ ସଂଖ୍ୟକ ପ୍ରତିନିଧି ପ୍ରେରଣ ଓ ଅଧିକତର ରାଜନୈତିକ ଶକ୍ତି ଲାଭକରିବା ପ୍ରତି । ଏହି ଉଦ୍ଦେଶ୍ୟରେ ଜନସମୂହରେ ଅଭିସନ୍ଧି ପ୍ରୟୋଗ କରିବା ଉଦ୍ୟମ ବି ହେଉଛି । ଏହିସବୁ ରାଜନୈତିକ ହେତୁ ବ୍ୟତୀତ ହିନ୍ଦୁଧର୍ମ ଭିତରେ ମଧ୍ୟ ଅଣହିନ୍ଦୁମାନଙ୍କୁ ହିନ୍ଦୁ କରିବା ମନୋଭାବ କ୍ରମଶଃ ବୃଦ୍ଧିପାଉଛି । ହିନ୍ଦୁଧର୍ମ ଉପରେ ଇସ୍‌ଲାମର ଏହା ଅନ୍ୟତମ ପ୍ରତ୍ୟକ୍ଷ ପ୍ରଭାବ ଯଦିଓ, ଏଥିଲାଗି କିନ୍ତୁ ଆଚରଣରେ ଉଭୟ ଭିତରେ ଆମ ଦେଶରେ ସଂଘର୍ଷ ଘଟୁଛି । ରକ୍ଷଣଶୀଳ ହିନ୍ଦୁମାନେ ହିନ୍ଦୁଧର୍ମର ଏହି ଅଧୁନାତନ ମନୋଭାବକୁ ଆଦୌ ପସନ୍ଦ କରିନାହାନ୍ତି ।

କାଶ୍ମୀରରେ ଧର୍ମାନ୍ତରୀକରଣର ଏହି ଦୀର୍ଘ ତଥା ଅବିଚ୍ଛିନ୍ନ ପ୍ରକ୍ରିୟା ସେଠାର ଜନସଂଖ୍ୟାର ଶତକରା ପଞ୍ଚାନବେ ଭାଗ ଲୋକଙ୍କୁ ମୁସଲମାନ କରିଛି । ଏମାନଙ୍କ ଭିତରେ ପୂର୍ବର ବହୁତ କିଛି ହିନ୍ଦୁପ୍ରଥା ପ୍ରଚଳିତ ଅଛି । ଊନବିଂଶ ଶତକର ମଧ୍ୟଭାଗରେ ସେହି ରାଜ୍ୟର ହିନ୍ଦୁ ଶାସକ ବୁଝିବାକୁ ପାଇଲେ ଯେ ଏମାନଙ୍କ ଭିତରୁ ବହୁ ସଂଖ୍ୟକ ଲୋକ ସାମୂହିକ ଭାବରେ ହିନ୍ଦୁଧର୍ମକୁ ଫେରିଆସିବା ପାଇଁ ଇଚ୍ଛୁକ କେବଳ ନୁହନ୍ତି ଏକପ୍ରକାର ବ୍ୟାକୁଳ ମଧ୍ୟ । ହିନ୍ଦୁଧର୍ମ ସେମାନଙ୍କୁ ପୁନର୍ବାର ଗ୍ରହଣ କରିପାରିବ କି ନାହିଁ ଜାଣିବାପାଇଁ ରାଜା କେତେ ଜଣ ପଣ୍ଡିତଙ୍କୁ ବାରାଣସୀ ପ୍ରେରଣ କଲେ । ବାରାଣସୀର ପଣ୍ଡିତମାନେ ସମ୍ମତ ନ ହେବାରୁ ସେକଥା ସେତିକିରେ ଶେଷ ହେଲା ।

ଯେଉଁ ମୁସଲମାନମାନେ ବାହାରୁ ଭାରତକୁ ଆସିଲେ, ସାଥିରେ କୌଣସି ନୂତନ ରାଜନୈତିକ ତଥା ଅର୍ଥନୈତିକ ବ୍ୟବସ୍ଥା ଅବା ପ୍ରୟୋଗ-କୌଶଳ ଆଣି ନଥିଲେ । ଇସ୍‌ଲାମ୍‌ର ସୌଭ୍ରାତୃତ୍ଵ ଉପରେ ଗଭୀର ଧର୍ମଗତ ବିଶ୍ଵାସ ସତ୍ତ୍ୱେ ସେମାନେ ଥିଲେ ଶ୍ରେଣୀନିଷ୍ଠ ଓ ସେମାନଙ୍କର ଦୃଷ୍ଟିଭଙ୍ଗୀ ଥିଲା ସାମନ୍ତବାଦୀ । ଉତ୍ପାଦନ ପ୍ରଣାଳୀ ଓ ପ୍ରୟୋଗ କୌଶଳରେ ଏବଂ ଔଦ୍ୟୋଗିକ ସଙ୍ଗଠନରେ ସେମାନେ ସେ ସମୟର ଭାରତୀୟ ସ୍ତର ସଙ୍ଗେ ସମାନ ନ ଥିଲେ । ଅତଏବ, ଭାରତର ସାମାଜିକ ବ୍ୟବସ୍ଥା ଓ ଅର୍ଥନୈତିକ ଜୀବନ ଉପରେ

ସେମାନଙ୍କର ପ୍ରଭାବ ଅତି ନଗଣ୍ୟ ଥିଲା କହିଲେ ଚଳେ । ଏହି ଜୀବନଧାରା ପୂର୍ବଭଳି ଅବ୍ୟାହତ ରହିଲା ଏବଂ ହିନ୍ଦୁ, ମୁସଲମାନ କିମ୍ବା ଅନ୍ୟମାନେ—ସମସ୍ତେ ସେଥି ସଙ୍ଗେ ବିନା ଅସୁବିଧାରେ ଚାଲିପାରୁଥିଲେ ।

ନାରୀମାନଙ୍କ ଅବସ୍ଥାର ଅବନତି ଘଟିଲା । ଉତ୍ତରାଧିକାର ଏବଂ ପରିବାର ଭିତରେ ସେମାନଙ୍କର ସ୍ଥାନ ବିଷୟରେ ପ୍ରାଚୀନ ଅନୁଶାସନ ସେମାନଙ୍କ ପ୍ରତି ନ୍ୟାୟ ବିଚାର କରିନଥିଲା । ତେବେ ଏ ବିଷୟରେ ଊନବିଂଶ ଶତକର ଇଂରେଜୀ ଆଇନ କାନୁନ ଏହା ଅପେକ୍ଷା ଅବଶ୍ୟ ଅନୁଦାର ଥିଲା । ହିନ୍ଦୁ ଏକାନ୍ନବର୍ତ୍ତୀ ପରିବାର ପଦ୍ଧତିର ସେହିସବୁ ଉତ୍ତରାଧିକାର ନୀତି ନିୟମର ଉଦ୍ଦେଶ୍ୟ ଥିଲା ପରିବାରର ମିଳିତ ସମ୍ପତ୍ତି ଯେପରି ଅପର କୌଣସି ପରିବାରର ହସ୍ତଗତ ନ ହୁଏ, ସେଥି ନିମନ୍ତେ ଉପଯୁକ୍ତ ବ୍ୟବସ୍ଥା ଯୋଗାଇବା । ଜଣେ ନାରୀ ବିବାହ କରିବା ଫଳରେ ତାର ପରିବାର ପରିବର୍ତ୍ତନ କରେ । ଅର୍ଥନୈତିକ ଦୃଷ୍ଟିରୁ ଦେଖିଲେ ସେ ଥିଲା ବାପା, ସ୍ୱାମୀ କିମ୍ବା ପୁତ୍ରର ଅନୁଗ୍ରହ ପ୍ରାର୍ଥିନୀ । ତଥାପି ନିଜ ଅଧିକାର ବଳରେ ସମ୍ପତ୍ତି ଲାଭକରିବା ବ୍ୟବସ୍ଥା ତା' ପାଇଁ ଥିଲା ଏବଂ ସେ ପ୍ରକାର ସେ ଲାଭକରିଚି ମଧ୍ୟ । ନାନା ଭାବରେ ସେ ସମ୍ମାନିତ ହେଉଥିଲା ଏବଂ ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣକରିବା ନିମନ୍ତେ ତାର ସ୍ୱାଧୀନତା କମ୍ ନଥିଲା । ଭାରତୀୟ ଇତିହାସର ବହୁ ପୃଷ୍ଠାରେ ବିଖ୍ୟାତ ମହିଳାମାନଙ୍କ ନାମ ଉଜ୍ଜ୍ୱଳ ଅକ୍ଷରରେ ଲିପିବଦ୍ଧ ରହିଚି । ଏମାନଙ୍କ ଭିତରେ ଅଛନ୍ତି ଶାସକ, ଦାର୍ଶନିକ, ରାଜ୍ଞୀ ଓ ବୀରାଙ୍ଗନାମାନେ । ଏହି ସ୍ୱାତନ୍ତ୍ର୍ୟ କ୍ରମଶଃ ସଙ୍କୁଚିତ ହୋଇଆସିଲା । ଇସଲାମର ଉତ୍ତରାଧିକାର ବିଧାନ ଅପେକ୍ଷାକୃତ ଉଦାର ହୋଇଥିଲେ ମଧ୍ୟ ହିନ୍ଦୁ ନାରୀମାନଙ୍କ ପାଇଁ ସେଥିରୁ ଲାଭକରିବାର କିଛି ନଥିଲା । ଇସ୍‌ଲାମର ଯଦି କିଛି ପ୍ରଭାବ ହିନ୍ଦୁ ନାରୀ-ସମାଜ ଉପରେ ପଡ଼ିଲା, ସେଥିଦ୍ୱାରା ସେମାନେ ଉପକୃତ ହେବା ପରିବର୍ତ୍ତେ ଅସୁବିଧାର ସମ୍ମୁଖୀନ ହେଲେ କେବଳ । ନାରୀକୁ ଅସୂର୍ଯ୍ୟଂପଶ୍ୟା କରିବାର ପ୍ରଥା ଅଧିକ ଦୃଢ଼ତର ହେଲା । ଏ ଦିଗରେ ହିନ୍ଦୁ ନାରୀମାନଙ୍କ ଅପେକ୍ଷା ମୁସ୍‌ଲିମ ନାରୀମାନେ ଅଧିକତର ବିପନ୍ନା ହେଲେ । ଏହି ପ୍ରଥା ଉତ୍ତର-ଭାରତ ଓ ବଙ୍ଗରେ ଉଚ୍ଚବର୍ଗମାନଙ୍କରେ ପ୍ରସାରଲାଭ କଲା; କିନ୍ତୁ ଦକ୍ଷିଣ ଓ ପଶ୍ଚିମ-ଭାରତ ଏହି ହୀନ ପ୍ରଥାର କବଳରୁ ରକ୍ଷା ପାଇପାରିଥିଲା । ଉତ୍ତର-ଭାରତରେ ଉଚ୍ଚବର୍ଗର ଲୋକେ ଏଥିରେ ଜଡ଼ିତ ଥିଲେ ସୁଦ୍ଧା ସାଧାରଣ ଲୋକେ, ସୁଖର ବିଷୟ, ଏଥିରୁ ମୁକ୍ତ ଥିଲେ । ଏହି କାରଣରୁ ଶିକ୍ଷାଲାଭକରିବା ଦିଗରେ ନାରୀମାନଙ୍କ ସୁଯୋଗ ସଙ୍କୁଚିତ ହେଲା ଏବଂ ସେମାନଙ୍କର ସବୁ କିଛି କାର୍ଯ୍ୟକଳାପ ଘରର ପରିସର ଭିତରେ କେବଳ ଆବଦ୍ଧ ହେଲା । (୧) ନିଜକୁ କୌଣସି କ୍ଷେତ୍ରରେ ହେଲେ ବିଶିଷ୍ଟ ପ୍ରତିପାଦିତ କରିବାର ବହୁତ କିଛି ଦିଗ ହରାଇ,

(୧) ତଥାପି ଏହି ସମୟରେ ଓ ପରେ ବି ଶାସନ ଓ ବିଦ୍ୱତ୍ତା ଉଭୟ କ୍ଷେତ୍ରରେ ବହୁ ମହୀୟସୀ ମହିଳାଙ୍କ ନାମ ଜାଣିବାକୁ ମିଳେ । ଅଷ୍ଟାଦଶ ଶତକରେ, ଲକ୍ଷ୍ମୀ ଦେବୀ ମଧ୍ୟ-ଯୁଗର ବିଖ୍ୟାତ ସଂହିତା 'ମିତାକ୍ଷର' ଉପରେ ଏକ ବିରାଟ ଟୀକା ପ୍ରଣୟନ କରିଥିଲେ ।

ଗୋଷ୍ଠୀଏ ଆବଦ୍ଧ ତଥା ନିୟନ୍ତ୍ରିତ ଜୀବନ ଯାପନ କରୁଥିବାବେଳେ ସେମାନଙ୍କୁ ବୁଝାଗଲା ଯେ ସେମାନଙ୍କ ପକ୍ଷରେ ଜୀବନର ପରାକାଷ୍ଠା ଉଚିତ ନିଜର ସତୀତ୍ୱ ରକ୍ଷା-କରିବାରେ ଏବଂ ତାହା ହରାଇବା ଭଳି ଗୁରୁତର ପାପ ଜଗତରେ ଆଉ କିଛି ନାହିଁ । ପୁରୁଷକୃତ ଏହି ନୀତ୍ୟାଦର୍ଶ କିନ୍ତୁ ପୁରୁଷ ପ୍ରତି ପ୍ରଯୁଜ୍ୟ ନଥିଲା । ମୋଗଲ ସମ୍ରାଟ ଜାହାଙ୍ଗୀରଙ୍କ ସମୟରେ ରଚିତ ତୁଳସୀଦାସଙ୍କ ବିଖ୍ୟାତ ହିନ୍ଦୀ ରାମାୟଣରେ ନାରୀର ଚିତ୍ର ଯେଭଳି ଭାବରେ ସେ ଲେଖିଛନ୍ତି, ତାକୁ ବିଦ୍ୱେଷମୂଳକ ବିଶେଷଭାବରେ ଅନୁଦାର ହିଁ ବୁଝାଯାଇ ପାରିବ ।

ଭାରତରେ ଅଧିକାଂଶ ମୁସଲମାନ ହିନ୍ଦୁ ସମ୍ପ୍ରଦାୟରୁ ଧର୍ମାନ୍ତରିତ ହୋଇଥିବାରୁ ଓ ଦୀର୍ଘକାଳର ସମ୍ପର୍କ ହେତୁରୁ, ହିନ୍ଦୁ ଓ ମୁସଲମାନ ଉଭୟ ଭିତରେ କିଛି ସାଧାରଣ ଲକ୍ଷଣ ରହିଥିଲା : ଯଥା—ଚାଲି-ଚଳନ, କଳା-ରୁଚି ଓ ଜୀବନ-ଯାପନର ପନ୍ଥା । ଉତ୍ତର-ଭାରତରେ ବିଶେଷକରି ସଙ୍ଗୀତ, ଚିତ୍ରକଳା, ସ୍ଥାପତ୍ୟ, ଖାଦ୍ୟ, ପରିଚ୍ଛଦ ଓ ଅନ୍ୟାନ୍ୟ ସାଧାରଣ ପରମ୍ପରାରେ ଧର୍ମଗତ ଭେଦ କିଛି ନଥିଲା । ଶାନ୍ତିପୂର୍ଣ୍ଣ ଭାବରେ ଉଭୟେ ମିଳିମିଶି ରହୁଥିଲେ, ପରସ୍ପରର ପର୍ବପର୍ବାଣି, ମେଳା ମହୋତ୍ସବରେ ଯୋଗଦେଉଥିଲେ, ଏକା ପ୍ରକାର ଭାଷା କହୁଥିଲେ, ପ୍ରାୟ ଏକା ରୀତିରେ ଜୀବନ-ଯାପନ କରୁଥିଲେ ଏବଂ ଏକା ରକମର ଅର୍ଥନୈତିକ ସମସ୍ୟାମାନଙ୍କର ସମ୍ମୁଖୀନ ଥିଲେ । ସମ୍ଭ୍ରାନ୍ତ ଶ୍ରେଣୀର ଲୋକେ, ଜମିଦାରମାନେ ଓ ସେମାନଙ୍କର ପାର୍ଶ୍ୱଚର ଓ ଗଳଗ୍ରହମାନେ ରାଜସଭାର ଆଶ୍ରିତ ଥିଲେ । (ଏମାନେ ଭୂସ୍ୱାମୀ ନଥିଲେ କିମ୍ବା କୌଣସି ଜମି ଏମାନଙ୍କ ସ୍ୱତ୍ୱାଧିକାରରେ ନଥିଲା । କର ଆଦାୟ କରିବା ଅଧିକାର ମଧ୍ୟ ଏମାନଙ୍କର ନଥିଲା । ନିର୍ଦ୍ଦିଷ୍ଟ ଏକ ଅଞ୍ଚଳରେ ରାଜସ୍ୱ ଆଦାୟକରି ନେବାପାଇଁ ଏମାନଙ୍କୁ ଗ୍ରାଣ୍ଟ ଦିଆଯାଇଥିଲା । ଏହିସବୁ ଦାନ ସାଧାରଣତଃ ଥିଲା ଜୀବନକାଳ ବ୍ୟାପୀ ।) ଅତି ମାତ୍ରାରେ ଜଟିଳ ଓ କୃତ୍ରିମ, ଏକ ସମସଂସ୍କୃତିର ବିକାଶ ଏମାନେ ସାଧନ କଲେ । ଏମାନଙ୍କର ଖାଦ୍ୟ ଓ ପରିଚ୍ଛଦ ଏକା ଧରଣର ଥିଲା; କଳାକର୍ମ, ସାମରିକ ପ୍ରମୋଦ, ଶିକାର, ବୀରଧର୍ମ ଓ କ୍ରୀଡ଼ା—ସବୁ ସମାନ ଥିଲା । 'ପୋଲୋ' (୧) କ୍ରୀଡ଼ା ଏମାନେ ଖୁବ୍ ପସନ୍ଦ କରିଥାନ୍ତି । ହସ୍ତୀଯୁଦ୍ଧ ଜନପ୍ରିୟ ଥିଲା ।

ସମ୍ମିଶ୍ରଣ ବିରୋଧୀ ବର୍ଣ୍ଣ-ବ୍ୟବସ୍ଥା ସତ୍ତ୍ୱେ ଏ ସମସ୍ତ ମିଳାମିଶା ଓ ସମ୍ପର୍କ ଚାଲିଥିଲା । ଅସବର୍ଣ୍ଣ ବିବାହ ବିରଳ ଥିଲା ଏବଂ ଯଦି କେଉଁଠି ସେ ପ୍ରକାର ବିବାହ ଘଟିଚି; ତାହା ପୂର୍ଣ୍ଣ ମିଳନ ହୋଇନି; ସାଧାରଣତଃ କୌଣସି ହିନ୍ଦୁ ନାରୀ ମୁସଲମାନ ସମ୍ପ୍ରଦାୟଭୁକ୍ତ ହୋଇଚି ମାତ୍ର । ହିନ୍ଦୁ ଓ ମୁସଲମାନ ଭିତରେ ଏକତ୍ର ପାନ-ଭୋଜନର ପ୍ରଥା ନଥିଲା; କିନ୍ତୁ ସେଥି ଉପରେ ସେପରି କଠୋର ଶୃଙ୍ଖଳା ଆରୋପ କରାଯାଉନଥିଲା । ନାରୀମାନଙ୍କୁ ଘର-କୋଣରେ ଆବଦ୍ଧକରି ରଖିବାଯୋଗୁଁ ସାମାଜିକ ଜୀବନର ବିକାଶ ସହଜ ହୋଇନଥିଲା ।

---

(୧) ଘୋଡ଼ାରେ ଚଢ଼ି, ଲମ୍ବା ବାଡ଼ି ସାହାଯ୍ୟରେ କାଠ ପେଣ୍ଡୁ ଗଡ଼ାଇ ଗୋଲ କରିବାର ଖେଳ— ।

ଏଥିରେ ମୁସଲମାନମାନେ ଅଧିକତର ଅସୁବିଧା ଭୋଗୁଥିଲେ; କାରଣ ସେମାନଙ୍କ ଭିତରେ ପରଦାପ୍ରଥା ଅତି କଦାରୁଣ ଥିଲା । ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ପୁରୁଷମାନେ ପରସ୍ପର ସଙ୍ଗେ ମିଳିତ ହେବାର ସୁଯୋଗ ବହୁବାର ଘଟୁଥିଲା; କିନ୍ତୁ ଉଭୟ ସମ୍ପ୍ରଦାୟର ନାରୀମାନେ ସେ ପ୍ରକାର ସୁଯୋଗ ପାଉନଥିଲେ । ସମ୍ଭ୍ରାନ୍ତ ଶ୍ରେଣୀ ଓ ଉପରବର୍ଗର ଏହି ନାରୀମାନେ ଏପରିଭାବରେ ପରସ୍ପରଠାରୁ ଅଲଗା ଜୀବନ ଯାପନ କରୁଥିଲେ ଏବଂ ପରସ୍ପର ଭିତରେ ଯୋଗାଯୋଗ ରହୁନଥିବାରୁ ପରସ୍ପରର ବିଶ୍ୱାସ ଓ ବିଶ୍ୱାସ ସମ୍ପର୍କରେ ମଧ୍ୟ ସେମାନେ ଅବହିତ ନଥିଲେ ।

ଗ୍ରାମାଞ୍ଚଳରେ ସାଧାରଣ ଲୋକଙ୍କ ଭିତରେ ଅର୍ଥାତ୍ ଜନସଂଖ୍ୟାର ବୃହତ୍ତର ଭାଗରେ ଜୀବନର ଗୋଟାଏ ମିଳିତ ଭିତ୍ତି ଥିଲା । ଗ୍ରାମର ସୀମିତ ପରିସର ଭିତରେ ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ଲୋକଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ରହିଥିଲା । ବର୍ଣ୍ଣ-ବ୍ୟବସ୍ଥା ଏଥିରେ ପ୍ରତିବନ୍ଧକ ସୃଷ୍ଟି କରି ପାରିନଥିଲା ଏବଂ ହିନ୍ଦୁମାନେ ମୁସଲମାନମାନଙ୍କୁ ଅନ୍ୟ ଏକ ବର୍ଣ୍ଣର ଲୋକ ବୋଲି ମଣୁଥିଲେ । ଅଧିକାଂଶ ମୁସଲମାନ ଥିଲେ ଧର୍ମାନ୍ତରିତ, ଯାହାଙ୍କ ମଧ୍ୟରେ ପୁରାତନ ପ୍ରଥା ଓ ପରମ୍ପରା ପୂର୍ଣ୍ଣ ମାତ୍ରାରେ ଥିଲା । ହିନ୍ଦୁର ପୁରାଣ, ଅତିକଥା ଓ ପୃଷ୍ଠଭୂମି ସଙ୍ଗେ ସେମାନେ ଭଲଭାବରେ ପରିଚିତ ଥିଲେ । ହିନ୍ଦୁମାନଙ୍କ ଭଳି ସେମାନଙ୍କର କର୍ମ, ଜୀବନଯାତ୍ରା, ପରିଚ୍ଛେଦ ଓ ଭାଷା ସବୁ କିଛି ସମାନ ଥିଲା । ଉଭୟେ ଉଭୟର ଉତ୍ସବମାନଙ୍କରେ ଯୋଗଦେଉଥିଲେ ଏବଂ ସେପରି କେତେ ଧର୍ମ ସମ୍ବନ୍ଧୀୟ ଉତ୍ସବ ଥିଲା, ଯାହା ଉଭୟେ ପାଳନ କରୁଥିଲେ । ଉଭୟଙ୍କର ଲୋକ-ଗୀତ ସମାନ ଥିଲା । ଏମାନେ ପ୍ରାୟଶଃ କୃଷୀ, କାରିଗର ଓ ହସ୍ତଶିଳ୍ପୀ । ସମ୍ଭ୍ରାନ୍ତଶ୍ରେଣୀ ଏବଂ କୃଷୀ ହସ୍ତଶିଳ୍ପୀଙ୍କ ମଧ୍ୟରେ ଆଉ ଗୋଟାଏ ବଡ଼ ଗୋଷ୍ଠୀ ଥିଲା ବ୍ୟବସାୟୀ ଓ ବଣିକମାନଙ୍କର । ଏହି ଗୋଷ୍ଠୀ ଥିଲା ହିନ୍ଦୁ-ପ୍ରଧାନ ଏବଂ ଏମାନଙ୍କ ହାତରେ ରାଜନୈତିକ କ୍ଷମତା ନଥିଲେ ମଧ୍ୟ ଅର୍ଥନୈତିକ ବିନ୍ୟାସ ମୁଖ୍ୟତଃ ଏମାନଙ୍କର ନିୟନ୍ତ୍ରଣାଧୀନ ଥିଲା । ଏମାନଙ୍କର ତଳ ଓ ଉପର ଉଭୟ ଶ୍ରେଣୀ ତୁଳନାରେ ମୁସଲମାନମାନଙ୍କ ସଙ୍ଗେ ଏହି ଶ୍ରେଣୀର ସମ୍ପର୍କ ଅପେକ୍ଷାକୃତ କମ୍ ସହଜ ଥିଲା । ଯେଉଁ ମୁସଲମାନମାନେ ଭାରତ ବାହାରୁ ଆସିଥିଲେ, ସେମାନଙ୍କ ଦୃଷ୍ଟିଭଙ୍ଗୀ ଥିଲା ସାମନ୍ତବାଦୀ ଓ ବ୍ୟବସାୟ ବାଣିଜ୍ୟ ପ୍ରତି ସେମାନେ ଆଗ୍ରହିତ ନଥିଲେ । ଋଣ ଦେଇ ସେଥିର ସୁଧ ଗ୍ରହଣକରିବା ଇସ୍‌ଲାମ ଧର୍ମାଚରଣର ବିରୋଧ ଥିଲା ଏବଂ ସେଥିଲାଗି ବେପାର ବଣିଜ ପକ୍ଷରେ ପ୍ରଧାନ ଅନ୍ତରାୟ ହୋଇଥିଲା । ବହିରାଗତ ଏହି ମୁସଲମାନମାନେ ନିଜକୁ ଶାସକବର୍ଗୀୟ ଓ ସମ୍ଭ୍ରାନ୍ତ ମଣୁଥିଲେ ଏବଂ ରାଜକାର୍ଯ୍ୟରେ ନିଯୁକ୍ତ ରହିବା, ସାମରିକ ବିଭାଗରେ ନେତୃତ୍ୱ ଦେବା ଓ ଦାନସୂତ୍ରରେ ଭୂସମ୍ପତ୍ତି ଲାଭକରିବା ଏମାନେ ଗୌରବ ମଣୁଥିଲେ । ଏମାନଙ୍କ ଭିତରେ ବହୁ ବିଦ୍ୱାନ ବି ଥିଲେ ଯେଉଁମାନେ ଏକେ ରାଜସଭା ମଣ୍ଡନ କରୁଥିଲେ କିମ୍ବା ଧର୍ମଗ୍ରନ୍ଥ ଅଧ୍ୟାପନା ଏବଂ ବିଶେଷ ଜ୍ଞାନ ବିତରଣ ବିଦ୍ୟାୟତନମାନଙ୍କ ଦାୟିତ୍ୱରେ ଥିଲେ ।

ମୋଗଲରାଜତ୍ୱ କାଳରେ ରାଜଭାଷା ଫାର୍ସୀ ଭାଷାରେ ବହୁ ହିନ୍ଦୁଗ୍ରନ୍ଥମାନ ଲେଖା ହୋଇ

ଥିଲା । ସେଥି ଭିତରୁ କେତେ ଗ୍ରନ୍ଥ, ଆଲୋଚିତ ବିଷୟବସ୍ତୁ ଉପରେ; ଆଜି ସର୍ବଜନସମ୍ମତ ଭାବରେ ଉତ୍କୃଷ୍ଟ ବିବେଚିତ ହେଉଛି । ଅନ୍ତୁରି ମଧ୍ୟ ମୁସ୍‌ଲିମ ବିଦ୍ୱାନମାନେ ସଂସ୍କୃତ ଗ୍ରନ୍ଥମାନ ଫାର୍ସୀ ଭାଷାରେ ଅନୁବାଦ କରୁଥିଲେ ଓ ହିନ୍ଦୀଭାଷାରେ ମଧ୍ୟ ଲେଖୁଥିଲେ । ଏମାନଙ୍କ ଭିତରୁ ଦୁଇଜଣ ସୁପରିଚିତ ହିନ୍ଦୀ କବି ହେଉଚନ୍ତି ମାଲିକ୍ ମହମ୍ମଦ ଜୈସୀ ଯିଏ 'ପଦ୍ମାବତି' ରଚନା କରିଚନ୍ତି ଓ ଅନ୍ୟ ଜଣକ ହେଉଚନ୍ତି ଅବଦୁଲ୍ ରହିମ ଖାନ୍‌ଖାନା ଯିଏ ଆକ୍‌ବରଙ୍କ ଦରବାରରେ ଜଣେ ପ୍ରଧାନ ଅମୀର ଥିଲେ ଓ ସମ୍ରାଟଙ୍କ ପୁତ୍ରର ଅଭିଭାବକ ବି ଥିଲେ ଏବଂ ତାଙ୍କର ହିନ୍ଦୀ କବିତାବଳୀ ଉଚ୍ଚକୋଟୀର । ଏକ ସମୟରେ ସମ୍ରାଟଙ୍କ ସେନାବାହିନୀର ସେ ପ୍ରଧାନ ସେନାପତି ମଧ୍ୟ ଥିଲେ । ତଥାପି ମେବାଡ଼ର ରାଣା ପ୍ରତାପଙ୍କ ସମ୍ପର୍କରେ ତାଙ୍କର ରଚନା ପ୍ରଶଂସାରେ ମୁଖରିତ ହୋଇଉଠିଚି । ରାଣାପ୍ରତାପ ତାଙ୍କର ସମଗ୍ର ଜୀବନକାଳ ଆକ୍‌ବରଙ୍କ ବିରୁଦ୍ଧରେ ଲଢ଼ିଥିଲେ ଓ କେବେହେଲେ ତାଙ୍କର ବଶତା ସ୍ୱୀକାର କରି-ନଥିଲେ । ରଣରଙ୍ଗରେ ତାଙ୍କର ଶତ୍ରୁର ଦେଶଭକ୍ତି, ଆତ୍ମସମ୍ମାନବୋଧ ଓ କ୍ଷାତ୍ରଧର୍ମ ପ୍ରତି ଖାନ୍‌ଖାନା ମୁକ୍ତକଣ୍ଠରେ ପ୍ରଶଂସା ଜ୍ଞାପନ କରିଚନ୍ତି ଏବଂ ସେ ଆଦର୍ଶ ସର୍ବଥା ଅନୁସରଣୀୟ ବୋଲି କହିଚନ୍ତି ।

ଏହି ସାରେଚିତ ତଥା ବିଜ୍ଞ ଦୂରଦୃଷ୍ଟି ଆଭିମୁଖ୍ୟ ଉପରେ ହିଁ ଆକ୍‌ବର ତାଙ୍କର ଶାସନନୀତି ପ୍ରତିଷ୍ଠା କରିଥିଲେ ଏବଂ ତାଙ୍କର ବହୁ ପାର୍ଷଦ ଓ ସଚିବ ଏହା ତାଙ୍କ ପାଖରୁ ଶିକ୍ଷା-କରିଥିଲେ । ରାଜପୁତମାନଙ୍କ ପ୍ରତି ସେ ବିଶେଷ ପରିମାଣରେ ଅନୁରକ୍ତ ଥିଲେ; କାରଣ ସେମାନଙ୍କଠାରେ ସେ ତାଙ୍କର ନିଜର ଗୁଣାବଳୀ ଦେଖିବାକୁ ପାଉଥିଲେ । ତାହା ହେଉଛି ଉଦାସୀନ ପରିଣାମ, ସାହସିକତା, ଅମିତ ଶୌର୍ଯ୍ୟ, ଉଚ୍ଚସମ୍ମାନବୋଧ ଓ ପ୍ରତିଶ୍ରୁତି ପାଳନ । ରାଜପୁତମାନଙ୍କୁ ଆକ୍‌ବର ଆପଣାର କରିନେଇଥିଲେ ସତ୍ୟ; କିନ୍ତୁ ସେମାନଙ୍କର ସମସ୍ତ କିଛି ସୁଗୁଣ ସତ୍ତ୍ୱେ ସେମାନେ ଥିଲେ ଗୋଟାଏ ମଧ୍ୟଯୁଗୀୟ ସମାଜରେ ଆବଦ୍ଧ, ଯାହା ନୂତନ ଶକ୍ତିମାନଙ୍କ ଅଭ୍ୟୁଦୟ କାଳରେ ଅନୁପଯୋଗୀ ହୋଇଉଠିଥିଲା । ଏହି ନୂତନ ଶକ୍ତିମାନଙ୍କ ସମ୍ପର୍କରେ ଆକ୍‌ବର ସଚେତନ ନଥିଲେ; କାରଣ ସେ ନିଜେ ଥିଲେ ତାଙ୍କର ସାମାଜିକ ଉତ୍ତରାଧିକାରର ବନ୍ଦୀ ।

ଆକ୍‌ବରଙ୍କ ସଫଳତା ବାସ୍ତବିକ ବିସ୍ମୟକର; କାରଣ ଉତ୍ତର ଓ ମଧ୍ୟ-ଭାରତର ନାନାବିଧ ଲୋକଙ୍କ ଭିତରେ ଗୋଟାଏ ଐକ୍ୟବୋଧ ସେ ସୃଷ୍ଟି କରିପାରିଥିଲେ । ଗୋଟାଏ ଦିଗରେ ଶାସକବର୍ଗ, ଯେଉଁମାନଙ୍କର ମୂଳ ଥିଲା ଭାରତ ବାହାରେ; ଧର୍ମ ଓ ବର୍ଣ୍ଣ; ଗୋଟାଏ ଧର୍ମାନ୍ତରଣପିପାସୁ ଧର୍ମ ଓ ତାର ପରିପନ୍ଥୀ ଗୋଟାଏ ସ୍ଥାଣୁ ଅଥଚ ପ୍ରବଳ ପ୍ରତିରୋଧଶୀଳ ବର୍ଣ୍ଣ-ବ୍ୟବସ୍ଥା । ଏ ସମସ୍ତ ଦୁର୍ବାର ଅନ୍ତରାୟ ସତ୍ତ୍ୱେ ସେ ଲୋକଙ୍କ ଭିତରେ ଐକ୍ୟବୋଧ ଜାଗ୍ରତ କରିବାପାଇଁ ସକ୍ଷମ ହୋଇପାରିଥିଲେ । ଏ ସମସ୍ତ ଅନ୍ତରାୟ ଉଭାଇ ଯାଇନଥିଲା; ତଥାପି ସୂକ୍ଷ୍ମ ଐକ୍ୟଭାବନା ବିକାଶ ଲଭିଥିଲା । ଏହି ଭାବନା ପଛର ଆସକ୍ତି ତାଙ୍କର ବ୍ୟକ୍ତିତ୍ୱକୁ କେବଳ କେନ୍ଦ୍ରକରି ନଥିଲା; ପରନ୍ତୁ ସେ ଯେଉଁ ଶାସନ ବ୍ୟବସ୍ଥା ଗଢ଼ିଥିଲେ, ତାହା ହିଁ ଥିଲା ତାର କେନ୍ଦ୍ର । ତାଙ୍କର ପୁତ୍ର ଓ ପୌତ୍ର ଜାହାଙ୍ଗୀର ଓ ସାଜାହାନ୍ ସେହି

ବ୍ୟବସ୍ଥାକୁ ଗ୍ରହଣ କରି ତାର ଗଣ୍ଡି ମଧ୍ୟରେ ନିଜକୁ କାର୍ଯ୍ୟକାରୀ କରିଥିଲେ । ସେମାନଙ୍କର ସେପରି କିଛି ଅସାଧାରଣ ଦକ୍ଷତା ନଥିଲା । ତଥାପି ସେମାନଙ୍କର ରାଜତ୍ୱ ସାଫଲ୍ୟମଣ୍ଡିତ ହୋଇଥିଲା; କାରଣ ଆକବର ଯେଉଁ ଦୃଢ଼ ବ୍ୟବସ୍ଥା ଗଢ଼ିଯାଇଥିଲେ, ସେମାନେ ତାହା ବିଶ୍ୱସ୍ତଭାବରେ ଅନୁସରଣ କରିଥିଲେ । ସେମାନଙ୍କ ପରେ ଯିଏ ସମ୍ରାଟ ହେଲେ ତାଙ୍କର ଖୁବ୍ ଦକ୍ଷତା ଥିଲା; କିନ୍ତୁ ସେ ଥିଲେ ଭିନ୍ନ ଧାତୁର ବ୍ୟକ୍ତି । ସେ ହେଉଛନ୍ତି ଔରଙ୍ଗଜେବ । ଔରଙ୍ଗଜେବ ଆକବରଙ୍କ ନିର୍ଦ୍ଦେଶିତ ପଥ ବର୍ଜନ କଲେ । ଆକବର ଯାହା ଯାହା କରିଯାଇଥିଲେ ଔରଙ୍ଗଜେବ ସେସବୁ ଭାଙ୍ଗିବାରେ ଲାଗିଲେ । ତଥାପି ଔରଙ୍ଗଜେବଙ୍କ ବିଦ୍ୱେଷାଚରଣ ସତ୍ତ୍ୱେ ଏବଂ ତାଙ୍କର ଉତ୍ତରାଧିକାରୀ ତଥା ଦସ୍ୟୁ ନୀତିର ଉତ୍ତରାଧିକାରୀମାନଙ୍କ ସତ୍ତ୍ୱେ ଆକବରଙ୍କ ବ୍ୟବସ୍ଥା ପ୍ରତି ଗୋଟାଏ ସମ୍ମାନଭାବ କିପରି ଅବିଚ୍ଛିନ୍ନ ରହିପାରିଲା, ବାସ୍ତବିକ ବିସ୍ମୟକର । ଏହି ସମ୍ମାନଭାବ ଉତ୍ତର ଓ ମଧ୍ୟ-ଭାରତ ଭିତରେ ସୀମିତ ଥିଲା । ଦକ୍ଷିଣ କିମ୍ବା ପଶ୍ଚିମ-ଭାରତ ଆଡ଼କୁ ଏହା ବଢ଼ିପାରିନଥିଲା । ଅତଏବ, ପଶ୍ଚିମ-ଭାରତରୁ ଆହ୍ୱାନ ଆସିଲା ମୋଗଲ ପ୍ରତିଷ୍ଠା ପ୍ରତି ।

## ୧୨. ଔରଙ୍ଗଜେବଙ୍କ ବିପରୀତ ଗତି : ହିନ୍ଦୁ ଜାତୀୟତାବାଦର ଅଭିବୃଦ୍ଧି : ଶିବାଜୀ

ସାଜାହାନ ଥିଲେ ଫରାସୀ ଦେଶର 'ମହାନ୍ ସମ୍ରାଟ' ଚତୁର୍ଦ୍ଦଶ ଲୁଇଙ୍କ ସମକାଳୀନ ଏବଂ ସେ ସମୟରେ ମଧ୍ୟ-ୟୁରୋପ ତିରିଶି ବର୍ଷ ଧରି ଯୁଦ୍ଧରେ ବିଧ୍ୱସ୍ତ ହେଉଥିଲା । ଯେତେବେଳେ ଭର୍ସେଲସ୍ ରୂପ ପରିଗ୍ରହ କରିବେଲକୁ ଏଣେ ଆଗ୍ରାରେ ତାଜମହଲ ଓ ମୋତି ମସଜିଦ୍, ଦିଲ୍ଲୀରେ ଜୁମା ମସ୍‌ଜିଦ ଓ ଶାହାମହଲର ଦିୱାନେ-ଆମ୍ ଓ ଦିୱାନେ-ଖାସ୍ ନିର୍ମିତ ହୋଇଥିଲା । ପରି ରାଜ୍ୟର ସୌନ୍ଦର୍ଯ୍ୟବିଶିଷ୍ଟ ଏହିସବୁ କମନୀୟ ପ୍ରାସାଦାବଳୀ ମୋଗଲ ଐଶ୍ୱର୍ଯ୍ୟର ଚରମ ପରାକାଷ୍ଠା ପ୍ରତିପାଦନ କରେ । ମୟୂର-ସିଂହାସନ ବିଶୋଭିତ ଦିଲ୍ଲୀ ଦରବାର ଭର୍‌ସେଲସ୍ ଅପେକ୍ଷା ଅଧିକତର ଐଶ୍ୱର୍ଯ୍ୟ, ଆଡ଼ମ୍ବର ଓ ବିଳାସରେ ପୂର୍ଣ୍ଣ ଥିଲା । କିନ୍ତୁ ଭର୍‌ସେଲସ୍ ଭଳି ଗୋଟାଏ ଦରିଦ୍ର ତାଗ୍ରସ୍ତ ତଥା ଶୋଷିତ ଜନତା ଉପରେ ଏହା ଆଶ୍ରୟ କରିଥିଲା । ଗୁଜରାଟ ଓ ଦକ୍ଷିଣାପଥ ଭୟଙ୍କର ଦୁର୍ଭିକ୍ଷ କବଳରେ ପଡ଼ିଥିଲା ।

ଇତିମଧ୍ୟରେ, ଇଂଲଣ୍ଡର ନୌଶକ୍ତି ବଢ଼ୁଥିଲା ଓ ବିସ୍ତାରଲାଭ କରୁଥିଲା । ଓଲନ୍ଦାଜମାନଙ୍କ ଛଡ଼ା ଅନ୍ୟ କୌଣସି ୟୁରୋପୀୟଙ୍କୁ ଆକବର ଜାଣିନଥିଲେ । ତାଙ୍କର ପୁତ୍ର ଜାହାଙ୍ଗୀରଙ୍କ ରାଜତ୍ୱ କାଳରେ ବ୍ରିଟିଶ ନୌବାହିନୀ ଭାରତୀୟ ସମୁଦ୍ରବକ୍ଷରେ ଓଲନ୍ଦାଜମାନଙ୍କୁ ପରାସ୍ତ କଲେ ଏବଂ ଇଂଲଣ୍ଡର ରାଜା ପ୍ରଥମ ଜେମ୍ସଙ୍କ ଜଣେକ ଦୂତ ଖ୍ରୀ: ୧୬୧୫ ରେ ଜାହାଙ୍ଗୀରଙ୍କ ଦରବାରରେ ଉପସ୍ଥିତ ହେଲେ । କେତେକ କାରଖାନା ନିର୍ମାଣ କରିବାପାଇଁ ସେ ଜାହାଙ୍ଗୀରଙ୍କ ପାଖରୁ ଅନୁମତି ପାଇଲେ । ସୁରଟରେ କାରଖାନା ଆରମ୍ଭ ହେଲା ଓ ଖ୍ରୀ: ୧୬୩୯ ରେ ମାଡ୍ରାଜର ଭିତ୍ତି ପଡ଼ିଲା ।

ଶହେ ବର୍ଷ ପର୍ଯ୍ୟନ୍ତ ଭାରତରେ କେହି ହେଲେ ଇଂରେଜମାନଙ୍କ ଉପରେ ଗୁରୁତ୍ୱ ଦେଉ-
ନଥିଲେ । ଇଂରେଜମାନେ ଯେ ସମୁଦ୍ରପଥମାନଙ୍କ ଉପରେ ବର୍ତ୍ତମାନ ନିଜର ନିୟନ୍ତ୍ରଣ
ଜାରି କରିପାରିଚନ୍ତି ଓ ଉପକୂଳମାନଙ୍କୁ ବସ୍ତୁତଃ ଘେରାଉ କରିପାରିଚନ୍ତି, ଏହାର କୌଣସି
ତାତ୍ପର୍ଯ୍ୟ ମୋଗଲ ସମ୍ରାଟ କିମ୍ବା ସେମାନଙ୍କର ପରାମର୍ଶଦାତାମାନଙ୍କ ପାଖରେ ନଥିଲା ।
ଔରଙ୍ଗଜେବଙ୍କ ରାଜତ୍ୱକାଳରେ ମୋଗଲ ସାମ୍ରାଜ୍ୟ ଯେବେ ଦୁର୍ବଳ ହୋଇପଡ଼ିବା ସ୍ପଷ୍ଟ
ଲକ୍ଷ୍ୟ କରିହେଉଥିଲା, ଇଂରେଜମାନେ ଯୁଦ୍ଧକରି ସେମାନଙ୍କର ଅଧିକୃତ ଅଞ୍ଚଳ ବୃଦ୍ଧି
କରିବା ଉଦ୍ଦେଶ୍ୟରେ ଏକ ସଙ୍ଗଠିତ ଉଦ୍ୟମ କରିଥିଲେ । ଏହା ଖ୍ରୀ: ୧୬୮୫ର କଥା ।
ଦୁର୍ବଳ ହୋଇ ପଡ଼ିଥିଲେ ସୁଦ୍ଧା ଓ ଚାରିଆଡ଼େ ଶତ୍ରୁମାନଙ୍କଦ୍ୱାରା ଆକ୍ରାନ୍ତ ହୋଇଥିଲେ
ସୁଦ୍ଧା ଔରଙ୍ଗଜେବ ଇଂରେଜମାନଙ୍କୁ ପରାସ୍ତ କରିପାରିଥିଲେ । ଏଥିପୂର୍ବରୁ ଫରାସୀମାନେ
ଭାରତ ମାଟିରେ ପାଦ ରଖିବାର ଦାଗା କରିନେଇଥିଲେ । ଭାରତର ରାଜନୈତିକ ତଥା
ଅର୍ଥନୈତିକ ଅବସ୍ଥା ଯେତେ ଦ୍ରୁତ ପଡ଼ିଆସୁଥିଲା, ୟୁରୋପର ଉଚ୍ଛଳ ପ୍ରାଣପ୍ରବାହ ଭାରତ
ଓ ପୂର୍ବ-ଏସିଆରେ ପ୍ଲାବନ ସୃଷ୍ଟି କରୁଥିଲା ।

ଆଗାମୀ ଦିନର ବିପ୍ଲବ-ବୀଜ ବପନକରି ଚତୁର୍ଦ୍ଦଶ ଲୁଇ ଫ୍ରାନ୍ସ ଦେଶରେ ଦୀର୍ଘକାଳ
ଧରି ରାଜତ୍ୱ କରୁଥିଲେ । ଇଂଲଣ୍ଡରେ ଜାଗ୍ରତ ମଧ୍ୟବିତ୍ତ ଶ୍ରେଣୀ ରାଜାଙ୍କ ଶିରଚ୍ଛେଦନ
କରିଥିଲେ । କ୍ରମ୍‌ୱେଲଙ୍କ ସ୍ୱଳ୍ପକାଳସ୍ଥାୟୀ ପ୍ରଜାତନ୍ତ୍ର ଶାସନ ପୂରାଦମ୍‌ରେ ଚାଲିଥିଲା;
ଦ୍ୱିତୀୟ ଚାର୍ଲସ୍‌ଙ୍କ ଆସିବା ଓ ଯିବା ସରିଥିଲା ଏବଂ ଦ୍ୱିତୀୟ ଜେମସ୍ ପଳାୟନ କରି-
ସାରିଥିଲେ । ବହୁଳ ଭାବରେ, ଗୋଟାଏ ନୂତନ ବ୍ୟବସାୟୀ ଶ୍ରେଣୀର ପ୍ରତିନିଧି ଭାବରେ,
ପାର୍ଲାମେଣ୍ଟ ରାଜାର କ୍ଷମତା ଖର୍ବକରି ନିଜର ଆଧିପତ୍ୟ ପ୍ରତିଷ୍ଠା କରିସାରିଥିଲା ।

ଏପରି ଏକ ସମୟରେ, ଗୋଟାଏ ଗୃହଯୁଦ୍ଧ ପରେ, ନିଜର ପିତା ସାହାଜାହାନଙ୍କୁ ବନ୍ଦୀ
କରି ଔରଙ୍ଗଜେବ ମୋଗଲ ସିଂହାସନ ଆରୋହଣ କଲେ । ଜଣେ ଆକ୍‌ବର କେବଳ
ପରିସ୍ଥିତିର ପ୍ରକୃତି ବୁଝିପାରି ମୁଣ୍ଡ ଟେକି ଉଠୁଥିବା ନୂତନ ଶକ୍ତିମାନଙ୍କୁ ଆୟତ୍ତ କରି
ପାରିଥାନ୍ତେ । ହୁଏତ ସେ ମଧ୍ୟ ତାଙ୍କର ସାମ୍ରାଜ୍ୟର ବିନାଶ ସାଧନ କିଛିକାଳ ନିମନ୍ତେ
କେବଳ ସ୍ଥଗିତ ରଖିପାରିଥାନ୍ତେ ଯଦି ତାଙ୍କର କୌତୂହଳ ଓ ଜ୍ଞାନପିପାସା ଯେଉଁସବୁ
ନୂତନ ଶକ୍ତି ଗଢ଼ି ଉଠୁଥିଲେ, ତାର ତାତ୍ପର୍ଯ୍ୟ ଏବଂ ଅର୍ଥନୈତିକ ଅବସ୍ଥାର ପରିବର୍ତ୍ତନ
ଉପଲବ୍ଧି କରିବାପାଇଁ ଧାବିତ ହେଉନଥାନ୍ତା । ବର୍ତ୍ତମାନକୁ ବୁଝିବା ତ ଦୂରର କଥା,
ଔରଙ୍ଗଜେବ ନିକଟ ଅତୀତର ମହତ୍ତ୍ୱ ଗ୍ରହଣକରିବା ପାଇଁ ମଧ୍ୟ ଆଗ୍ରହୀ ନଥିଲେ । ତାଙ୍କର
ସମସ୍ତ ସାମର୍ଥ୍ୟ ଓ ନିଷ୍ଠା ସତ୍ତ୍ୱେ ସେ ଥିଲେ ଜଣେ ପ୍ରଗତିବିରୋଧୀ ପଛୁଆ ବ୍ୟକ୍ତି ଏବଂ ତାଙ୍କର
ପୂର୍ବଜମାନେ ଯାହା ସବୁ କରିଯାଇଥିଲେ, ସେ ସେସବୁ ଭାଙ୍ଗିବାର ଉଦ୍ୟମ କେବଳ
କଲେ । ସେ ଥିଲେ ଜଣେ ଧର୍ମାନ୍ଧ ଓ ନୀରସ ବ୍ୟକ୍ତି ଏବଂ କଳା ଅବା ସାହିତ୍ୟ ପ୍ରତି ତାଙ୍କର
ପ୍ରୀତି ନଥିଲା । ହିନ୍ଦୁମାନଙ୍କର ବହୁ ମନ୍ଦିର ଧ୍ୱଂସକରି ଏବଂ ସେମାନଙ୍କ ଉପରେ ଅତୀତର
ସେହି ଘୃଣ୍ୟ ଜିଜିଆ କର ବସାଇ ସେ ତାଙ୍କର ପ୍ରଜାମାନଙ୍କ ଭିତରୁ ଏକ ବୃହତ୍ତମ ଅଂଶକୁ
କ୍ରୋଧିତ କଲେ । ଯିଏ ଯେଉଁମାନେ ମୋଗଲ ସାମ୍ରାଜ୍ୟର ସ୍ତମ୍ଭ ସ୍ୱରୂପ ଥିଲେ, ସେହି ଦୃପ୍ତ

ରାଜପୁତମାନଙ୍କୁ ସେ ବିରକ୍ତ କଲେ । ଉତ୍ତରରେ ଶିଖମାନଙ୍କୁ ସେ ଉତ୍ତ୍ୟକ୍ତ କଲେ । ସେଇ ଶିଖମାନେ ହିନ୍ଦୁ ଓ ଇସ୍‌ଲାମୀୟ ଚିନ୍ତାଧାରାର ଏକ ପ୍ରକାର ସମନ୍ୱୟ ସାଧନକରି ଗୋଟାଏ ଶାନ୍ତିପୂର୍ଣ୍ଣ ସମ୍ପ୍ରଦାୟ ଭାବରେ ପରିଚିତ ଥିଲେ, ଔରଙ୍ଗଜେବଙ୍କ ଦମନଲୀଳା ଓ ନିର୍ଯାତନ ଫଳରେ ଗୋଟାଏ ଯୋଦ୍ଧୃଜାତିରେ ପରିଣତ ହେଲେ । ଭାରତର ପଶ୍ଚିମ ଉପକୂଳ ଅଞ୍ଚଳରେ, ପ୍ରାଚୀନ ରାଷ୍ଟ୍ରକୂଟମାନଙ୍କ ବଂଶଧର ଯୁଦ୍ଧପ୍ରିୟ ମରାଠାମାନଙ୍କୁ ସେ ରାଗାନ୍ୱିତ କଲେ ଏବଂ ତାହା ମଧ୍ୟ ଠିକ୍ ସେତିକବେଳେ, ଯେବେ ସେମାନଙ୍କ ଭିତରେ ଜଣେ ବିଚକ୍ଷଣ ନାୟକର ଅଭ୍ୟୁଦୟ ଘଟିଥିଲା ।

ବିଶାଳ ମୋଗଲ-ସାମ୍ରାଜ୍ୟର ସର୍ବତ୍ର ଆନ୍ଦୋଳନ ଏବଂ ଧର୍ମ ଓ ଜାତୀୟବାଦ ମିଶ୍ରିତ ଗୋଟାଏ ପୁନରୁତ୍ଥାନ ମନୋଭାବ ଗଢ଼ିଉଠୁଥିଲା । ସେହି ଜାତୀୟବାଦ ଆଧୁନିକକାଳର ଧର୍ମନିରପେକ୍ଷ ଜାତୀୟବାଦ ନଥିଲା କିମ୍ବା ତାର ପରିସର ଭିତରକୁ ସାଧାରଣତଃ ସମଗ୍ର ଭାରତ ଆସିପାରି ନଥିଲା । ସେଥିରେ ସାମନ୍ତବାଦୀ ମନୋଭାବ, ସ୍ଥାନୀୟ ତଥା ଗୋଷ୍ଠୀ-ଭାବନା ମିଶ୍ରିତ ଥିଲା । ଅନ୍ୟମାନଙ୍କ ଅପେକ୍ଷା ମନୋବୃତ୍ତିରେ ଅଧିକତର ସାମନ୍ତବାଦୀ, ରାଜପୁତମାନେ ସେମାନଙ୍କର ବଂଶ ଆନୁଗତ୍ୟ ପ୍ରତି ବିଶେଷ ଦୃଷ୍ଟି ରଖୁଥିଲେ । ପଞ୍ଜାବରେ, ଅପେକ୍ଷାକୃତ ଏକ କ୍ଷୁଦ୍ର ଗୋଷ୍ଠୀ, ଶିଖମାନେ ନିଜର ଆତ୍ମରକ୍ଷାରେ ବ୍ୟସ୍ତ ଥିଲେ ଏବଂ ପଞ୍ଜାବ ବାହାରକୁ ଦେଖିପାରୁନଥିଲେ । ତଥାପି ଧର୍ମର ଗୋଟାଏ ବଳିଷ୍ଠ ଜାତୀୟ ପୃଷ୍ଠଭୂମି ଥିଲା ଏବଂ ତାର ସମସ୍ତ କିଛି ଐତିହ୍ୟ ଭାରତ ସଙ୍ଗେ ଯୁକ୍ତ ଥିଲା । ଅଧ୍ୟାପକ ମେକ୍‌ଡୋନେଲ୍ ଲେଖିଚନ୍ତି, "ଇଣ୍ଡୋ-ୟୁରୋପୀୟ ପରିବାରର ଏକମାତ୍ର ଶାଖା; ଅର୍ଥାତ୍ ଭାରତୀୟମାନେ କେବଳ ଏକ ମହାନ୍ ଜାତୀୟ ଧର୍ମ—ବ୍ରାହ୍ମଣ୍ୟ ଧର୍ମ ଓ ଏକ ମହାନ୍ ବିଶ୍ୱଧର୍ମ—ବୌଦ୍ଧଧର୍ମ ସୃଷ୍ଟି କରିପାରିଲେ । ଅନ୍ୟ ସମସ୍ତେ ଏହି କ୍ଷେତ୍ରରେ କୌଣସି ମୌଳିକତା ପ୍ରକାଶ କରିବା ତ ଦୂରର କଥା, ଅଧିକନ୍ତୁ ବହୁଦିନାବଧି ଗୋଟାଏ ବିଜାତୀୟ ଧର୍ମ ଅବଲମ୍ବନ କରିଚନ୍ତି ।" ଧର୍ମ ଓ ଜାତୀୟବାଦର ଏହି ସମ୍ମେଳନ ଉଭୟ ପାଖରୁ ଶକ୍ତି ଓ ସମର୍ଥନ ଯେପରି ଲାଭ କଲା, ସେହିପରି ତାର ଚରମ ଦୁର୍ବଳତା ଓ ଅସମ୍ପୂର୍ଣ୍ଣତା ମଧ୍ୟ ସେଥିରୁ ଆହରିତ ହେଇଥିଲା; କାରଣ ଏହି ଜାତୀୟବାଦ ଧର୍ମର କ୍ଷେତ୍ର ବାହାରେ ରହିଥିବା ଅନ୍ୟାନ୍ୟ ବହୁଶକ୍ତିଙ୍କୁ ନିଜ ଭିତରକୁ ଆଣିନପାରି କେବଳ ଏକ ଆଂଶିକ ତଥା ଶ୍ରେଣୀସଂରକ୍ଷିତ ଜାତୀୟବାଦ ହେଇ ରହିଲା । ଭାରତୀୟ ମାଟିରେ ହିନ୍ଦୁ ଜାତୀୟବାଦ ଗୋଟାଏ ସ୍ୱାଭାବିକ ଅଭ୍ୟୁଦୟ; କିନ୍ତୁ ସେଇ ଜାତୀୟବାଦ ଧର୍ମ ଅବା ଅନ୍ୟ ମତବିଶ୍ୱାସର ଊର୍ଦ୍ଧ୍ୱକୁ ଉଠିବା ଉଦ୍ୟମ କରେ, ହିନ୍ଦୁ ଜାତୀୟବାଦ ଅବଶ୍ୟମ୍ଭାବୀ ଭାବରେ ଏକ ପ୍ରବଳ ଅନ୍ତରାୟରୂପେ ଦେଖାଦିଏ ।

ଏକଥା ସତ୍ୟ ଯେ, ସେହି ସମୟରେ ବିଶାଳ ଏକ ସାମ୍ରାଜ୍ୟ ଯେବେ ଖଣ୍ଡ ବିଖଣ୍ଡିତ ହେଉଥିଲା ଏବଂ ଭାରତୀୟ ଓ ବୈଦେଶିକ ବହୁ ଦୁଃସାହସିକ ବ୍ୟକ୍ତି ନିଜ ନିମନ୍ତେ ରାଜ୍ୟ ଗଢ଼ିବାର ଉଦ୍ୟମ କରୁଥିଲେ, ଜାତୀୟବାଦ କହିଲେ ଆଜ ଯାହା ବୁଝାଏ, ସେ ସମୟରେ ତାର ସୂଚନା ସୁଦ୍ଧା ନଥିଲା । ପ୍ରତ୍ୟେକ ଦୁଃସାହସିକ ଉଚ୍ଚାଭିଳାଷୀ ବ୍ୟକ୍ତି ନିଜ ଶକ୍ତିର ପ୍ରତିଷ୍ଠା ନିମନ୍ତେ ଏବଂ ପ୍ରତ୍ୟେକ ଗୋଷ୍ଠୀ ନିଜର ସ୍ୱତନ୍ତ୍ରରକ୍ଷା ନିମନ୍ତେ ବ୍ୟାକୁଳ ଥିଲେ । ଅମ

ପାଖରେ ଯେଉଁ ଇତିହାସ ରହିଛି, ସେଥିରୁ ଏହିପରି ବ୍ୟକ୍ତିମାନଙ୍କ ବିଷୟରେ କେବଳ ଜାଣିବାକୁ ମିଳୁଛି ଏବଂ ବାହ୍ୟତଃ କୌଣସି ବଡ଼ ଘଟଣାର ଅନ୍ତରାଳ ତଳେ ଯେଉଁସବୁ ଅଧିକତର ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣାମାନ ଘଟିଛି, ସେ ସବୁ ଅବଜ୍ଞା କରି ଏହି ତଥାକଥିତ ବ୍ୟକ୍ତି-ବିଶେଷମାନଙ୍କ ଉପରେ କେବଳ ଅଧିକତର ଗୁରୁତ୍ୱ ଦିଆଯାଉଛି । ତଥାପି ଗୋଟାଏ ଗୋଟାଏ ଝଲକରୁ ଯାହା ଦେଖାଯାଉଛି, ସେ ସମୟର ଉଦ୍‌ବେଳନ କେବଳ ଦୁଃସାହସିକତାର ଆଦର୍ଶକୁ ଆଶ୍ରୟ କରିନଥିଲା, ଯଦିଓ ବହୁ ଅଦ୍ଭୁତକର୍ମା କ୍ଷେତ୍ରଉପରେ ଆଧିପତ୍ୟ କରୁଥିଲେ । ଜାତୀୟବାଦ ସମ୍ପର୍କରେ ମରାଠାମାନଙ୍କର ବିଶେଷତଃ ଅବଧାରଣା ଅଧିକତର ପ୍ରଶସ୍ତ ଥିଲା ଏବଂ ସେମାନଙ୍କର ଶକ୍ତିବୃଦ୍ଧି ସଙ୍ଗେ ସେହି ଅବଧାରଣା ମଧ୍ୟ ପ୍ରସାରଶୀଳ ହେଲା । ଖ୍ରୀ: ୧୭୮୪ରେ ୱାରେନ୍ ହେଷ୍ଟିଙ୍ଗସ୍ ଲେଖିଥିଲେ : "ହିନ୍ଦୁସ୍ଥାନ ଓ ଦକ୍ଷିଣାପଥର ଲୋକଙ୍କ ଭିତରେ ମରାଠାମାନଙ୍କର କେବଳ ଜାତୀୟ ଅନୁରକ୍ତିର ଗୋଟାଏ ନୀତି ଅଛି, ଯାହା ଜାତିର ପ୍ରତ୍ୟେକ ବ୍ୟକ୍ତିର ମନରେ ଗଭୀର ରେଖାପାତ କରିଛି ଏବଂ କେବେ ଯଦି କୌଣସି ବିପଦର ଆଶଙ୍କା ସାଧାରଣ ଅବସ୍ଥାକୁ ଆଶଙ୍କିତ କରେ, ତାହାହେଲେ ସେହି ନୀତିକୁ ଆଶ୍ରୟ କରି ଗୋଟାଏ ସର୍ବସାଧାରଣ ପ୍ରଶ୍ନର ସମ୍ମୁଖୀନ ହେଲାଭଳି ସେମାନଙ୍କର ନାୟକମାନଙ୍କୁ ହୁଏତ ଐକ୍ୟବଦ୍ଧ କରିବ ।" ମରାଠାମାନଙ୍କର ଏହି ଜାତୀୟ ମନୋଭାବ ମରାଠାଭାଷୀ ଅଞ୍ଚଳ ଭିତରେ ହୁଏତ ସୀମିତ ଥିଲା । ସେ ଯାହାହେଉ, ମରାଠାମାନେ ସେମାନଙ୍କର ରାଜନୈତିକ ଓ ସାମରିକ ବ୍ୟବସ୍ଥାରେ ଏବଂ ଆଚରଣରେ ଏକପ୍ରକାର ସାର୍ବଜନୀନ ଔଦାର୍ଯ୍ୟ ଅଭ୍ୟାସ କରୁଥିଲେ ଏବଂ ସେମାନଙ୍କ ଭିତରେ ଗୋଟାଏ ପ୍ରକାର ଗଣତାନ୍ତ୍ରିକତା ମଧ୍ୟ ଥିଲା । ଏସବୁ ଲାଗି ସେମାନେ ବଳଶାଳୀ ଥିଲେ । ଔରଙ୍ଗଜେବଙ୍କ ସଙ୍ଗେ ଲଢ଼ୁଥିଲେ ମଧ୍ୟ ଶିବାଜୀ ନିଜ ଅଧୀନରେ ଅକୁଣ୍ଠଭାବରେ ମୁସଲମାନଙ୍କୁ ନିଯୁକ୍ତ କରୁଥିଲେ ।

ମୋଗଲ ସାମ୍ରାଜ୍ୟ ଭାଙ୍ଗିପଡ଼ିବାର ଆଉ ଏକ ପ୍ରଧାନ କାରଣ ହେଉଛି ଅର୍ଥନୈତିକ ବ୍ୟବସ୍ଥାରେ ଫାଟ ଧରିବା । ଶ୍ରେଷ୍ଠ ବଡ଼ କୃଷୀ-ବିଦ୍ରୋହ ବାରମ୍ବାର ଘଟିଛି । ଖ୍ରୀ: ୧୬୬୯ରୁ ବରାବର ଜାଠ କୃଷୀମାନେ ରାଜଧାନୀର ଅଳ୍ପ ଦୂରରେ, ଦିଲ୍ଲୀ ସରକାର ବିରୁଦ୍ଧରେ ଥରକୁ ଥର ବିଦ୍ରୋହ କରିଉଠିଛନ୍ତି । ବସ୍ତିମାନଙ୍କର ଆଉ ଏକ ବିଦ୍ରୋହ ହେଉଛି 'ଶତନମି' ବିଦ୍ରୋହ । ଏହାକୁ ଜଣେ ମୋଗଲ ଅମୀର କହିଛନ୍ତି, "ସ୍ୱର୍ଣ୍ଣକାର, ବଢ଼େଇ, ମେହେନ୍ତର, ମୋଚି ଓ ଅନ୍ୟାନ୍ୟ ହୀନମନ୍ୟ ଲୋକଙ୍କର ଏହା ଏକ ଦଳ ।" ଏଥିପୂର୍ବରୁ ବିଦ୍ରୋହ ସୀମିତ ଥିଲା ରାଜକୁମାର, ଅମୀର ଓ ଉଚ୍ଚପଦାଧିକାରୀମାନଙ୍କ ଭିତରେ । ସମ୍ପୂର୍ଣ୍ଣ ନୂଆ ଏକ ଶ୍ରେଣୀ ବିପ୍ଳବର ପ୍ରୟୋଗ-ପରୀକ୍ଷା ଆରମ୍ଭ କରିଦେଇଥିଲେ ।

ବିଦ୍ରୋହ ଓ ସଂଘର୍ଷରେ ମୋଗଲ ସାମ୍ରାଜ୍ୟ ବିଦୀର୍ଣ୍ଣ ହେଉଥିବାବେଳେ ନୂତନ ମରାଠା-ଶକ୍ତି ବଢ଼ୁଥିଲା ଓ ପଶ୍ଚିମ-ଭାରତରେ ନିଜ ଆସ୍ଥାନ ଦୃଢ଼ କରୁଥିଲା । ଖ୍ରୀ: ୧୬୨୭ ରେ ଶିବାଜୀଙ୍କ ଜନ୍ମ । ପାର୍ବତ୍ୟ ଅଞ୍ଚଳର ଗରିଲା ଯୋଦ୍ଧାମାନଙ୍କର ସେ ଥିଲେ ଜଣେ ଆଦର୍ଶ ନେତା ଓ ତାଙ୍କର ଅଶ୍ୱାରୋହୀମାନେ ବହୁଦୂର ପର୍ଯ୍ୟନ୍ତ ଧାପ ଦେଉଥିଲେ । ଏପରିକି ସେ

ସୁରଟ ବନ୍ଦର, ଯେଉଁଠି ଇଂରେଜମାନଙ୍କର କୋଠି ରହିଥିଲା, ଲୁଣ୍ଠନ କରିଥିଲେ ଓ ମୋଗଲ ସାମ୍ରାଜ୍ୟର ଦୂରନ୍ତ ଅଞ୍ଚଳମାନଙ୍କ ଉପରେ ବଳପୂର୍ବକ 'ଚୌଥ' କର ବସାଇଥିଲେ । ଶିବାଜୀ ଥିଲେ ପୁନରୁତ୍ଥିତ ହିନ୍ଦୁ ଜାତୀୟବାଦର ପ୍ରତୀକ । ହିନ୍ଦୁ ପୁରାଣ ଶାସ୍ତ୍ରରୁ ସେ ଉଦ୍ଦୀପନା ଲାଭ କରିଥିଲେ, ସେ ସାହସୀ ଥିଲେ ଓ ନେତୃତ୍ୱ ଦେବାର ସବୁ କିଛି ସଦ୍‌ଗୁଣ ତାଙ୍କର ଥିଲା । ମରାଠାମାନଙ୍କୁ ଗୋଟାଏ ଶକ୍ତିଶାଳୀ, ଐକ୍ୟବଦ୍ଧ ସଂଗ୍ରାମୀ ଜାତି ଭାବରେ ସେ ଗଠନ କଲେ, ସେମାନଙ୍କୁ ଗୋଟାଏ ଜାତୀୟତାବାଦୀ ପୃଷ୍ଠଭୂମି ଯୋଗାଇଲେ ଏବଂ ଏଭଳି ଏକ ଅନମନୀୟ ଶକ୍ତି ସେମାନଙ୍କୁ ଦେଲେ, ଯାହା ମୋଗଲ ସାମ୍ରାଜ୍ୟକୁ ବିଧ୍ୱସ୍ତ କଲା । ଖ୍ରୀ: ୧୬୮୦ରେ ସେ ଇହଲୀଳା ସାଙ୍ଗ କଲେ; କିନ୍ତୁ ସମଗ୍ର ଭାରତ ଉପରେ ଆଧିପତ୍ୟ ବିସ୍ତାର କଲା ପର୍ଯ୍ୟନ୍ତ ମରାଠା ଶକ୍ତି ଅବ୍ୟାହତ ଭାବରେ ବର୍ଦ୍ଧିତ ହେଲା ।

## ୧୩. ଆଧିପତ୍ୟ ନିମନ୍ତେ ଇଂରେଜ ଓ ମରାଠାମାନଙ୍କ ମଧ୍ୟରେ ବିବାଦ : ଇଂରେଜମାନଙ୍କ ବିଜୟ

ଖ୍ରୀ : ୧୭୦୭ରେ ଔରଙ୍ଗଜେବଙ୍କ ମୃତ୍ୟୁ ଘଟିଲା । ପରବର୍ତ୍ତୀ ଶହେ ବର୍ଷ ପର୍ଯ୍ୟନ୍ତ ଭାରତ ଉପରେ ପ୍ରଭୁତ୍ୱ କରିବାପାଇଁ ନାନାବିଧ ଜଟିଳ ସଙ୍ଘର୍ଷ ଚାଲିଲା । ମୋଗଲ-ସାମ୍ରାଜ୍ୟ ଅତି କ୍ଷିପ୍ର ଭାବରେ ଖଣ୍ଡବିଖଣ୍ଡିତ ହେଲା ଏବଂ ଶାହି ସୁବେଦାର ଓ ରାଜ୍ୟପାଳମାନେ ସ୍ୱାଧୀନତା ଘୋଷଣା କରିବସିଲେ । ତଥାପି, ଦିଲ୍ଲୀରେ ମୋଗଲ ବଂଶଧରଙ୍କ ସମ୍ମାନ ଏତେ ଉଚ୍ଚ ଥିଲା ଯେ ସେ କ୍ଷମତାହୀନ ଓ ଅନ୍ୟମାନଙ୍କ ହାତରେ ବନ୍ଦୀ ଥିଲେ ମଧ୍ୟ ନାମକୁମାତ୍ର ପଛେ ହେଉ, ତାଙ୍କ ପ୍ରତି ଆନୁଗତ୍ୟ ସ୍ୱୀକାର କରାଯାଉଥିଲା । କ୍ଷମତା ନିମନ୍ତେ ଲାଳାୟିତ ମୁଖ୍ୟ ପ୍ରତିଯୋଗୀମାନଙ୍କୁ କେଉଁଠି ସାହାଯ୍ୟ ଦେବା, କେଉଁଠି ବା ସେମାନଙ୍କ ପଥରେ ଅନ୍ତରାୟ ସୃଷ୍ଟି କରିବା ବ୍ୟତୀତ ଏହିସବୁ ନବାବ ବା ପାରସିକ ଅମୀରମାନଙ୍କର ପ୍ରକୃତ କ୍ଷମତା ଅବା ମହତ୍ତ୍ୱ କିଛି ନଥିଲା । ଦକ୍ଷିଣରେ ହାଇଦ୍ରାବାଦର ନିଜାମ, ତାଙ୍କର ରାଜ୍ୟର ଭୌଗୋଳିକ ସ୍ଥିତି ଦୃଷ୍ଟିରୁ, ପ୍ରଥମେ କିଛି ମହତ୍ତ୍ୱର ଅଧିକାରୀ ଥିଲେ; କିନ୍ତୁ ଖୁବ୍ ଚଞ୍ଚଳ ଜଣାଗଲା ଯେ ଏ ମହତ୍ତ୍ୱ ସମ୍ପୂର୍ଣ୍ଣ କାଳ୍ପନିକ ଏବଂ ରଜା କହିଲେ, ତାହାର ଶକ୍ତିମାନେ 'ପାଲକୁଟା ଉପରେ ଗୋଟାଏ କୁକୁଡ଼ା କେବଳ ଠେକି ଧରିଚନ୍ତି । ଦୋମୁହାଁ ନୀତି ଧରି ଓ ପ୍ରତାରଣା କରି ଏବଂ ସବୁ କିଛି ବିପଦର ଦୂରରେ ରହି ଅନ୍ୟର ଦୁର୍ଭାଗ୍ୟରୁ ଲାଭ ଉଠାଇବାରେ ଏହା ଏକ ଅଦ୍ଭୁତ ସାମର୍ଥ୍ୟ ପ୍ରଦର୍ଶିତ କରିଛି ।' ସାର୍ ଜନ୍ ସୋର୍ ଏହାକୁ "ଅସଂଶୋଧନୀୟ ଭାବରେ ନୀତିଭ୍ରଷ୍ଟ, ଅନ୍ତଃସାରଶୂନ୍ୟ ‥ପରିଣାମରେ ସାମନ୍ତଦଶା ଭୋଗିବା ହେବ ଏହାର ଗତି" ବୋଲି ବର୍ଣ୍ଣନା କରିଛନ୍ତି । ମରାଠାମାନେ ନିଜାମଙ୍କୁ ସେମାନଙ୍କର ଜଣେ ଅଧୀନସ୍ଥ ସାମନ୍ତ ମଣୁଥିଲେ । ଏ ଅବସ୍ଥାରୁ ଉଦ୍ଧାର ନିଜର ସ୍ୱାଧୀନତା ଘୋଷଣା କରିବାକୁ ଯାଇ ନିଜାମ ବଡ଼ ଦୁର୍ଦ୍ଦଶା ଭୋଗିଲେ । ମରାଠାମାନେ ଅବିଲମ୍ବେ ଆକ୍ରମଣ କରି ତାଙ୍କର ଦୁର୍ବଳ ତଥା ସାହସହୀନ ସେନାବାହିନୀକୁ ପରାଜିତ କଲେ । ନିଜାମ ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀର ପକ୍ଷତଳେ ଆଶ୍ରୟ ନେଲେ ଏବଂ କମ୍ପାନୀର ଏକ ସାମନ୍ତ ରାଜା ଭାବରେ ରହିଲେ । ପ୍ରକୃତ-

ପକ୍ଷେ, ମହୀଶୂରର ସୁଲତାନ ଟିପୁ ଇଂରେଜମାନଙ୍କଦ୍ୱାରା ପରାଜିତ ହେବା ପରେ, କୌଣସି ଲକ୍ଷଣୀୟ ଉଦ୍ୟମ ନକରି, ନିଜାମ ତାଙ୍କ ରାଜ୍ୟର ଆସ୍ଥିତ୍ୱ ରକ୍ଷା କରିଥିଲେ ।

ଖ୍ରୀ: ୧୭୮୪ରେ ଓ୍ୱାରେନ୍ ହେଷ୍ଟିଙ୍ଗସ୍ ନିଜାମଙ୍କ ବିଷୟ ଉଲ୍ଲେଖକରି କହିଥିଲେ; "ତାଙ୍କର ଏକ କ୍ଷୁଦ୍ର ରାଜ୍ୟ ଓ ରାଜସ୍ୱ ସ୍ୱଳ୍ପ; ତାଙ୍କର ସାମରିକ ଶକ୍ତି ଅତି ତୁଚ୍ଛ, ବ୍ୟକ୍ତିଗତ ସାହସ କିମ୍ବା ଅଦମ୍ୟ ପ୍ରୟାସ ପାଇଁ ତାଙ୍କର ଜୀବନର କୌଣସି କାଳରେ ହେଲେ ସେ ବିଶିଷ୍ଟତା ପ୍ରଦର୍ଶିତ କରିନାହାନ୍ତି । ପ୍ରକାରାନ୍ତରେ, ଯେପରି ଜଣାଯାଏ, ତାଙ୍କର ଶାସନର ଅପରିବର୍ତ୍ତିତ ନୀତି ହେଉଛି ପଡ଼ୋଶୀ ରାଜ୍ୟମାନଙ୍କୁ ଯୁଦ୍ଧ ନିମନ୍ତେ ପ୍ରରୋଚିତକରି, କୌଣସି ବିବାଦରେ ନିଜେ ପକ୍ଷଭୁକ୍ତ ନହୋଇ, ସେମାନଙ୍କର ଦୁର୍ବଳତା ଓ ଅଡ଼ୁଆ ଅସୁବିଧାରୁ ଲାଭ ଉଠାଇବା ଏବଂ କେତେକ ଲାଞ୍ଛନା ଓ ଅପମାନ ମିଳୁ ପଛେ ଫଳଲାଭ ନିମନ୍ତେ, ନିଜ ପରାଜୟର ଅନିଶ୍ଚୟତା ଭିତରେ ଯୁଦ୍ଧରେ ଯୋଗଦେବା ସେ ଚାହାନ୍ତିନି ।" (୧)

ଅଷ୍ଟାଦଶ ଶତକରେ, ଭାରତରେ ପ୍ରଭୁତ୍ୱ ନିମନ୍ତେ ଯେଉଁ ଚତୁଷ୍ପକ୍ଷ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ। ସେମାନଙ୍କ ଭିତରୁ ଦୁଇଟି ପକ୍ଷ ହେଉଛନ୍ତି ଭାରତୀୟ ଓ ଅପର ଦୁଇଟି ବିଦେଶୀ । ଭାରତୀୟଙ୍କ ଭିତରେ ଦକ୍ଷିଣ ଭାରତରେ ପ୍ରମୁଖ ଥିଲେ ମରାଠାମାନେ ଏବଂ ହାଇଦର ଅଲି ଓ ତାଙ୍କର ପୁତ୍ର ଟିପୁ ସୁଲତାନ । ବିଦେଶୀମାନେ ହେଉଛନ୍ତି ଇଂରେଜ ଓ ଫରାସୀ । କଥିତ ଶତକର ପ୍ରଥମାର୍ଦ୍ଧରେ ଏମାନଙ୍କ ଭିତରୁ ମରାଠାମାନେ ମୋଗଲ ସାମ୍ରାଜ୍ୟର ଉତ୍ତରାଧିକାରୀ ଭାବରେ ସମଗ୍ର ଭାରତରେ ସେମାନଙ୍କର ଆଧିପତ୍ୟ ପ୍ରତିଷ୍ଠା କରିବା ପ୍ରାୟ ଅବଶ୍ୟମ୍ଭାବୀ ଜଣାଯାଇଥିଲା । ଖ୍ରୀ: ୧୭୩୭ ବେଳକୁ ସେମାନଙ୍କର ସେନାବାହିନୀ ଦିଲ୍ଲୀର ଦ୍ୱାରଦେଶରେ ଏକରକମ ପହଞ୍ଚିଯାଇଥିଲେ କହିଲେ ଚଳେ ଏବଂ ଦିଲ୍ଲୀରେ ସେମାନଙ୍କୁ ପ୍ରତିରୋଧ କରିବାପାଇଁ ସେଭଳି ପରାକ୍ରାନ୍ତ ଶକ୍ତି କିଛି ନଥିଲା ।

ଠିକ୍ ସେହି ସମୟରେ (ଖ୍ରୀ: ୧୭୩୯) ଉତ୍ତର-ପଶ୍ଚିମ ଭାରତରେ ଏକ ନୂତନ ଉତ୍ପାତ ସୃଷ୍ଟି ହେଲା ଏବଂ ପାରସ୍ୟର ନାଦୀର ଶାହ ଦିଲ୍ଲୀ ଉପରେ ଚଢ଼ାଉକରି, ହତ୍ୟା ଓ ଲୁଣ୍ଠତରାଜ ଭିଆଇ, ବିଖ୍ୟାତ ମୟୂର-ସିଂହାସନ ସମେତ ଅକଳନ ସମ୍ପଦ ଧରି ଚାଲିଗଲେ । ଆକ୍ରମଣକରିବା ତାଙ୍କ ପକ୍ଷରେ ସହଜ ହୋଇଥିଲା; କାରଣ ଦିଲ୍ଲୀର ତତ୍କାଳୀନ ଶାସକମାନେ ଅତିମାତ୍ରାରେ ଇନ୍ଦ୍ରିୟପରାୟଣ ଓ ଭୀରୁ ଥିଲେ, ଯୁଦ୍ଧ କରିବାରେ ଅଭ୍ୟସ୍ତ ନଥିଲେ ଏବଂ ଚତୁର ନାଦୀର ଶାହ ମରାଠାମାନଙ୍କ ସଙ୍ଗେ ସଂଘର୍ଷ ଏଡ଼ାଇ ପାରିଥିଲେ । ଗୋଟାଏ ଦିଗରୁ ଦେଖିଲେ, ନାଦୀର ଶାହଙ୍କ ଆକ୍ରମଣ ମରାଠାମାନଙ୍କ ପାଇଁ ସୁବିଧା କରିଦେଇଥିଲା ଏବଂ ପରବର୍ତ୍ତୀ କେତେକ ବର୍ଷ ଭିତରେ ସେମାନେ ପଞ୍ଜାବ ପର୍ଯ୍ୟନ୍ତ ମାଡ଼ି ଯାଇଥିଲେ । ମରାଠାମାନେ ଯେ ଭାରତରେ ଆଧିପତ୍ୟ କରିବେ, ପୁନର୍ବାର ତାହା ଆଖି ଆଗରେ ଜଳ-ଜଳ ହୋଇ ଉଠିଥିଲା ।

ନାଦୀର ଶାହଙ୍କ ଆକ୍ରମଣରୁ ଦୁଇଟି ପରିଣାମ ଉପୁଜିଲା । ପ୍ରଥମତଃ, ସନ୍ଦେହ ତୁଟାଇ ସେ ଏକଥା ସ୍ପଷ୍ଟ କରିଦେଇଗଲେ ଯେ ଦିଲ୍ଲୀର ମୋଗଲ ବାଦଶାହମାନଙ୍କର ନା ଅଛି ଶକ୍ତି

(୧) ଏଡ୍‌ଓ୍ୱାର୍ଡ ଥମ୍‌ସନ୍, 'ଦ ମେକିଂ ଅଫ୍ ଦ ଇଣ୍ଡିଆନ ପ୍ରିନ୍‌ସେସ୍'(୧୯୪୩ପୃ. ୧) ।

ନା ସାମ୍ରାଜ୍ୟ । ତଦନନ୍ତର, ସେମାନେ ଅସ୍ପଷ୍ଟ ଛାୟାଭଳି, ନାମମାତ୍ର ପ୍ରଭୁତ୍ୱ-ପ୍ରତୀକ ହୋଇ ରହିଲେ ଏବଂ ଯାହାର ବଳ ପାଇଲା ସେମାନେ ତାର ହାତର କଣ୍ଢେଇ ହୋଇ ରହିଲେ । ଆଗମନ ପୂର୍ବରୁ ମଧ୍ୟ ସେମାନେ ପ୍ରାୟ ଏହି ଅବସ୍ଥାକୁ ଖସି ଯାଇଥିଲେ ନାଦୀର ଶାହ ଅବଲୁପ୍ତିର ଏହି ପ୍ରକ୍ରିୟାକୁ ପୂର୍ଣ୍ଣ କରିଥିଲେ ମାତ୍ର । ତଥାପି ପରମ୍ପରା ଓ ଦୀର୍ଘକାଳ ଧରି ପ୍ରଚଳିତ ପ୍ରଥାମାନଙ୍କର ପ୍ରଭାବ ଏତେ ବେଶି ଯେ ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀ ଓ ଅନ୍ୟମାନେ ପଲାଶୀ ଯୁଦ୍ଧର ପ୍ରାକ୍‌କାଳ ପର୍ଯ୍ୟନ୍ତ ଆନୁଗତ୍ୟର ନିଦର୍ଶନ ସ୍ୱରୂପ ସେମାନଙ୍କୁ ଭେଟି ଅର୍ପଣ କରୁଥିଲେ । ତା'ପରେ ବି ବହୁ ଦିନ ପର୍ଯ୍ୟନ୍ତ କମ୍ପାନୀ ନିଜକୁ ଦିଲ୍ଲୀ ସମ୍ରାଟଙ୍କ ଏଜେଣ୍ଟ ମଣି କାର୍ଯ୍ୟ କରିଥିଲେ ଏବଂ ଖ୍ରୀ: ୧୮୩୫ ପର୍ଯ୍ୟନ୍ତ ସମ୍ରାଟଙ୍କ ମୁଦ୍ରା ଚାଲିଥିଲା ।

ନାଦୀର ଶାହଙ୍କ ଆକ୍ରମଣର ଦ୍ୱିତୀୟ ପରିଣାମ ହେଉଛି ଭାରତରୁ ଆଫଗାନିସ୍ଥାନର ବିଚ୍ଛିନ୍ନତା । କେଉଁ ଦୂରଅତୀତରୁ ଆଫଗାନିସ୍ତାନ ଭାରତର ଅଙ୍ଗ ଥିଲା; କିନ୍ତୁ ବର୍ତ୍ତମାନ ତାହା ଛିନ୍ନ କରିନେଇ ନାଦୀର ଶାହ ନିଜ ରାଜ୍ୟର ଅନ୍ତର୍ଭୁକ୍ତ କଲେ । କେତେ କାଳ ପରେ, ଏକ ସ୍ଥାନୀୟ ବିଦ୍ରୋହବେଳେ ନାଦୀର ଶାହଙ୍କ କେତେଜଣ କର୍ମଚାରୀ ତାଙ୍କୁ ହତ୍ୟା କଲେ ଏବଂ ଆଫଗାନିସ୍ତାନ ଗୋଟାଏ ସ୍ୱାଧୀନ ରାଜ୍ୟରେ ପରିଣତ ହେଲା ।

ନାଦୀର ଶାହଙ୍କ ହେତୁରୁ ମରାଠାମାନେ ତିଳେମାତ୍ର ଦୁର୍ବଳ ହୋଇନଥିଲେ ଏବଂ ସେମାନେ ପଞ୍ଜାବ ଭିତରକୁ ପଶିବାକୁ ଲାଗିଲେ; କିନ୍ତୁ ଖ୍ରୀ: ୧୭୬୧ ରେ ଆଫଗାନିସ୍ତାନର ତତ୍କାଳୀନ ଶାସକ ଅହମ୍ମଦ ଶାହ ଦୁରାନୀ ଭାରତ ଆକ୍ରମଣ କଲେ ଏବଂ ପାନିପଥଠାରେ ମରାଠାମାନଙ୍କୁ ଶୋଚନୀୟ ଭାବରେ ପରାସ୍ତ କଲେ । ଏହି ଦୁର୍ବିପାକରେ ମରାଠାବାହିନୀର ଶ୍ରେଷ୍ଠ ବୀରମାନେ ଯୁଦ୍ଧକ୍ଷେତ୍ରରେ ଢଳିପଡ଼ିଲେ ଏବଂ କିଛିକାଳ ପାଇଁ ସେମାନଙ୍କର ସାମ୍ରାଜ୍ୟ ଗଠନ ସ୍ୱପ୍ନ ମିଳାଇଗଲା । କ୍ରମେ ସେମାନେ ପୁଣି ବଳ ସଞ୍ଚୟ କଲେ ଏବଂ ସେମାନଙ୍କ-ଦ୍ୱାରା ଅଧିକୃତ ଅଞ୍ଚଳ ଗୁଡ଼ାଏ କ୍ଷୁଦ୍ର ରାଜ୍ୟରେ ପରିଣତ ହୋଇଥିଲେ ମଧ୍ୟ, ପେଶୱାଙ୍କ ନାୟକତ୍ୱରେ ଏକପ୍ରକାର ମିଳିତ ରାଜ୍ୟସଂଘ ଭାବରେ ଚଳୁଥିଲେ । ପେଶୱାଙ୍କ ରାଜଧାନୀ ଥିଲା ପୁନା । ଅପେକ୍ଷାକୃତ ବଡ଼ ରାଜ୍ୟଗୁଡ଼ିକର ରାଜା ଥିଲେ ଗୋଆଲିଅରର ସିନ୍ଧିଆ, ଇନ୍ଦୋରର ହୋଲକାର୍ ଓ ବରୋଦାର ଗାଏକୋଆଡ଼ । ଏହି ସଂଘ ପଶ୍ଚିମ ଓ ମଧ୍ୟ ଭାରତର ଏକ ବିଶାଳ ଅଞ୍ଚଳ ଉପରେ ଆଧିପତ୍ୟ କରିଥିଲା; କିନ୍ତୁ ଅହମ୍ମଦ ଶାହଙ୍କଦ୍ୱାରା ପାନିପଥ ଯୁଦ୍ଧରେ ପରାଜିତ ହେବାପରେ ମରାଠାମାନେ ଦୁର୍ବଳ ହୋଇପଡ଼ିଥିଲେ । ଆଉ ତାହା ମଧ୍ୟ ଠିକ୍ ସେତିକିବେଳେ ଯେବେ ଇଂରେଜ କମ୍ପାନୀ ଭାରତରେ ଗୋଟାଏ ପ୍ରଧାନ ରାଷ୍ଟ୍ର-ଶକ୍ତି ଭାବରେ ବଢ଼ି ଉଠୁଥିଲା ।

ବଙ୍ଗଳାରେ କ୍ଲାଇଭ ଦ୍ରୋହ ଓ ଜାଲିଆତି କରି ଏବଂ ନାମକୁ ମାତ୍ର ସଂଘର୍ଷ କରି ଖ୍ରୀ: ୧୭୫୭ ରେ ପଲାଶୀ ଯୁଦ୍ଧରେ ଜୟଲାଭ କଲେ । ଏହାକୁ ଭାରତରେ ବ୍ରିଟିଶ ସାମ୍ରାଜ୍ୟର ଅଶୁଭାରମ୍ଭ ସମ୍ବତ୍ ବୋଲି କେବେ କେବେ କୁହାଯାଇଥାଏ । ଏହି ଆରମ୍ଭ ରୁଚିକର ନଥିଲା ଏବଂ ତାର କଥିତ ତିକ୍ତତା ସେହି ଦିନାବଧି ସେଥି ସଙ୍ଗେ ଯୁକ୍ତ ରହିଛି । ଅଳ୍ପକାଳ ମଧ୍ୟରେ ଇଂରେଜମାନେ ବଙ୍ଗ ଓ ବିହାର ସମ୍ପୂର୍ଣ୍ଣରୂପେ ଅଧିକାର କରିନେଲେ ଏବଂ

ସେମାନଙ୍କର ଶାସନର ପ୍ରଥମ ପରିଣାମ ହେଉଛି ଖ୍ରୀ: ୧୭୭୦ର ଘୋର ଦୁର୍ଭିକ୍ଷ, ଯେଉଁଥିରେ ଏହି ବିଶାଳ ବିତ୍ତଶାଳୀ ତଥା ଜନବହୁଳ ପ୍ରଦେଶ ଦୁଇଟିର ଏକ-ତୃତୀୟାଂଶ ଲୋକ ମୃତ୍ୟୁର ଗ୍ରାସରେ ପଡ଼ିଲେ ।

ଦକ୍ଷିଣ-ଭାରତରେ, ଇଂରେଜ ଓ ଫରାସୀମାନଙ୍କର ବିବାଦ, ଯାହା ପୃଥିବୀର ଅନ୍ୟାନ୍ୟ ସ୍ଥାନରେ ଉଭୟ ଦେଶ ମଧ୍ୟରେ ଚାଲିଥିବା ବିବାଦର ଏକ ଅଂଶ ଥିଲା, ଇଂରେଜମାନଙ୍କ ବିଜୟରେ ଶେଷହେଲା ଏବଂ ଭାରତରୁ ଫରାସୀମାନେ ପ୍ରାୟ ପୋଛି ହୋଇଗଲେ କହିଲେ ଚଳେ ।

ଫରାସୀ-ଶକ୍ତି ଭାରତରୁ ଅପସାରିତ ହେବାପରେ ପ୍ରଭୁତ୍ୱ ଆକାଙ୍କ୍ଷା ଘେନି ଆଉ ତିନୋଟି ପ୍ରତିଯୋଗୀ ରହିଲେ : ମରାଠା ରାଜ୍ୟସଂଘ, ଦକ୍ଷିଣରେ ହାଇଦର ଅଲ୍ଲି ଓ ଇଂରେଜ । ପଲାସୀରେ ସେମାନଙ୍କର ବିଜୟ ଏବଂ ବଙ୍ଗ ଓ ବିହାରରେ ସେମାନଙ୍କ ଆଧିପତ୍ୟ ସତ୍ତ୍ୱେ ଦିନେ ଇଂରେଜମାନେ ସମଗ୍ର ଭାରତକୁ ଶାସନ କରିବେ ବୋଲି ସେମାନଙ୍କୁ କେହି କେବେହେଲେ ସେତେ ବଡ଼ ଶକ୍ତି ଭାବରେ ଭାବି ନଥିବେ । ଅବସ୍ଥା ଉପରେ ଦୃଷ୍ଟି ବୁଲାଇ ଯେ କେହିଲୋକ ମରାଠାମାନଙ୍କୁ ହିଁ ଏ କ୍ଷେତ୍ରରେ ପ୍ରଥମ ସ୍ଥାନ ଦେଇଥାନ୍ତା । ସମଗ୍ର ପଶ୍ଚିମ ଓ ମଧ୍ୟ-ଭାରତରେ ଏପରି କି ଦିଲ୍ଲୀ ପର୍ଯ୍ୟନ୍ତ ମରାଠାମାନେ ମାଡ଼ିଯାଇଥିଲେ ଏବଂ ସେମାନଙ୍କର ସାହସିକତା ଓ ବୀରତ୍ୱ ଥିଲା ସର୍ବଜନବିଦିତ । ହାଇଦର ଅଲ୍ଲି ଓ ଟିପୁ ସୁଲତାନ୍ ଇଂରେଜମାନଙ୍କର ପ୍ରବଳ ପ୍ରତିଦ୍ୱନ୍ଦ୍ୱୀ ଥିଲେ ଏବଂ ଇଂରେଜମାନଙ୍କୁ ଯେଉଁଭଳି ଭାବରେ ପରାଜିତ କଲେ, ସେଥିରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଶକ୍ତି ପ୍ରାୟ ଭାଙ୍ଗି-ପଡ଼ିଥିଲା କହିଲେ ଚଳେ; କିନ୍ତୁ ହାଇଦର୍ ଓ ଟିପୁଙ୍କ ପରିସର ଦକ୍ଷିଣ ଖଣ୍ଡରେ ସୀମିତ ଥିଲା ଏବଂ ସମଗ୍ର ଭାରତର ଭାଗ୍ୟକୁ ପ୍ରତ୍ୟକ୍ଷ ଭାବରେ ପ୍ରଭାବିତ କଲାଭଳି ସେମାନଙ୍କର କିଛି କରିବାର ନଥିଲା । ହାଇଦର ଅଲ୍ଲୀ ଥିଲେ ଜଣେ ବିଚକ୍ଷଣ ବ୍ୟକ୍ତି ଏବଂ ଭାରତର ଇତିହାସରେ ତାଙ୍କର ସ୍ଥାନ ମହାନ୍ ବ୍ୟକ୍ତିମାନଙ୍କ ଗହଣରେ ରହିଛି । ତାଙ୍କର ଗୋଟାଏ ପ୍ରକାର ଜାତୀୟ ଆଦର୍ଶ ଥିଲା ଏବଂ ଜଣେ ରଚନାତ୍ମକ ନେତାର ବହୁକିଛି ଗୁଣ ତାଙ୍କ ପାଖରେ ଥିଲା । ସର୍ବଦା ଏକ ଯନ୍ତ୍ରଣାଦାୟକ ବ୍ୟାଧିରେ ପୀଡ଼ିତ ଥିଲେ ସୁଦ୍ଧା ତାଙ୍କର ଆତ୍ମସଂଯମ ଓ କଠିନ ପରିଶ୍ରମ କରିବାର ସାମର୍ଥ୍ୟ ପ୍ରକୃତରେ ଥିଲା ବିସ୍ମୟକର । ଅନ୍ୟମାନେ ଉପଲବ୍ଧି କରିବାର ବହୁ ପୂର୍ବରୁ ହାଇଦର ସମୁଦ୍ର-ଶକ୍ତିର ମହତ୍ତ୍ୱ ଏବଂ ସେଥି ଉପରେ ଭିତ୍ତିକରି ଇଂରେଜ-ଆପଦ କିପରି ବଢ଼ୁଛି ଉପଲବ୍ଧି କରିପାରିଥିଲେ । ଇଂରେଜମାନଙ୍କୁ ଭାରତରୁ ତଡ଼ିବାପାଇଁ ସେ ଏକ ମିଳିତ ଶକ୍ତି ସଂଗଠିତ କରିବାର ଉଦ୍ୟମ କରିଥିଲେ ଏବଂ ସେହି ଉଦ୍ଦେଶ୍ୟରେ ପେଶବା, ନିଜାମ ଓ ଆଉଦ୍‌ର ସୁଜା-ଉଦ୍-ଦୌଲାଙ୍କ ନିକଟକୁ ଦୂତ ପଠାଇଥିଲେ; କିନ୍ତୁ ଫଳ କିଛି ହେଲାନାହିଁ । ସେ ତାଙ୍କର ନିଜର ନୌବାହିନୀ ଗଢ଼ିବା ଆରମ୍ଭକଲେ ଓ ମାଲଡିଭ୍ (ମାଲଦ୍ୱୀପ) ଦ୍ୱୀପପୁଞ୍ଜ କବଳିତ କରି ସେଠାରେ ଜାହାଜ ନିର୍ମାଣ ଓ ଅନ୍ୟାନ୍ୟ ସାମୁଦ୍ରିକ କାର୍ଯ୍ୟକଳାପର କେନ୍ଦ୍ର ସ୍ଥାପନକଲେ । ନିଜର ସୈନ୍ୟବାହିନୀ ସଙ୍ଗେ ଅଭିଯାନ କରି ଗଲାବେଳେ ରାସ୍ତାରେ ତାଙ୍କର ମୃତ୍ୟୁ ଘଟିଥିଲା । ତାଙ୍କର ପୁତ୍ର ଟିପୁ ନୌବାହିନୀ ବଳିଷ୍ଠ

କରିବାରେ ଅବହେଳା କରିନଥିଲେ । ସେ ମଧ୍ୟ ଇଂରେଜମାନଙ୍କୁ ଭାରତରୁ ତଡ଼ିବା ଉଦ୍ଦେଶ୍ୟରେ, ନେପୋଲିଅନ୍ ଓ କନ୍‌ଷ୍ଟାଣ୍ଟିନୋପଲ୍‌ର ସୁଲତାନ୍‌ଙ୍କ ନିକଟକୁ ବାର୍ତ୍ତା ପଠାଇଥିଲେ ।

ଉତ୍ତର-ଭାରତର ପଞ୍ଜାବରେ ରଣଜିତ୍ ସିଂହଙ୍କ ନେତୃତ୍ୱରେ ଶିଖରାଜ୍ୟ ବଳଶାଳୀ ହୋଇଥିଲା ଏବଂ ପରବର୍ତ୍ତୀକାଳରେ ଏହା କାଶ୍ମୀର ଓ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ତଥାପି ଏହା ମଧ୍ୟ ଥିଲା ଗୋଟାଏ ସୀମାନ୍ତ ରାଜ୍ୟ ଏବଂ ଭାରତର ପ୍ରଭୁତ୍ୱ ନିମନ୍ତେ ଯେଉଁ ସଂଗ୍ରାମ ଚାଲିଥିଲା, ସେଥି ଉପରେ ଏହାର ପ୍ରଭାବ ବିଶେଷ କିଛି ନଥିଲା । ଅଷ୍ଟାଦଶ ଶତକର ଶେଷଆଡ଼କୁ ସ୍ପଷ୍ଟ ଜଣାପଡ଼ିଥିଲା ଯେ ଭାରତର ପ୍ରଭୁତ୍ୱ-ପାଇଁ ଦୁଇଟି ଶକ୍ତି କେବଳ ସମର୍ଥ ଏବଂ ସେମାନେ ହେଉଛନ୍ତି ମରାଠା ଓ ଇଂରେଜ । ଅନ୍ୟସବୁ ରାଜ୍ୟ ଏହି ଦୁଇ ଶକ୍ତିର ଅଧୀନ ଥିଲେ ପ୍ରତ୍ୟକ୍ଷ ଅବା ପରୋକ୍ଷ ଭାବରେ ।

ଖ୍ରୀ: ୧୭୯୯ରେ ମହୀଶୂରର ଟିପୁ ସୁଲତାନ ଇଂରେଜମାନଙ୍କଦ୍ୱାରା ସମ୍ପୂର୍ଣ୍ଣ ଭାବରେ ପରାସ୍ତ ହେଲେ ଏବଂ ଏହା ଫଳରେ ପ୍ରଭୁତ୍ୱର ଶେଷ ଲଢ଼େଇ ଲଢ଼ିବାପାଇଁ କ୍ଷେତ୍ରରେ ରହିଲେ ମରାଠାମାନେ ଓ ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀ । ଭାରତରେ କମ୍ପାନୀର ସୁଦକ୍ଷ କର୍ମଚାରୀମାନଙ୍କ ଭିତରେ ଅନ୍ୟତମ, ଚାର୍ଲସ୍ ମେଟ୍‌କାଫ୍ ଖ୍ରୀ: ୧୮୦୬ରେ ଲେଖିଛନ୍ତି: "ଭାରତରେ ଦୁଇଟି ବଡ଼ ଶକ୍ତି ବ୍ରିଟିଶ୍ ଓ ମରାଠା ବ୍ୟତୀତ ଆଉ ତୃତୀୟ ବଡ଼ ଶକ୍ତି ନାହିଁ । ଅନ୍ୟସବୁ ରାଜ୍ୟ ଏ ଉଭୟ ଭିତରୁ କାହାର ହେଲେ ପ୍ରଭାବର ପରିସର ଅନ୍ତର୍ଭୁକ୍ତ । ଆମେ ଯଦି ଗୋଟାଏ ଇଞ୍ଚ ଜାଗା ଛାଡ଼ି ଆସୁ, ତାହା ମରାଠାମାନେ ହିଁ ଦଖଲ କରିବେ ।" କିନ୍ତୁ ମରାଠା ସର୍ଦ୍ଦାରମାନଙ୍କ ମଧ୍ୟରେ ବିବାଦ ଲାଗିରହିଥିଲା, ପରସ୍ପର ଭିତରେ ସେମାନେ ଯୁଦ୍ଧରତ ଥିଲେ ଏବଂ ପ୍ରତ୍ୟେକକୁ ଇଂରେଜମାନେ ଅଲଗା ଅଲଗାରେ ପରାଜିତ କଲେ । ଅବଶ୍ୟ ମରାଠାମାନେ ବି କେତେକ କ୍ଷେତ୍ରରେ ବିଜୟୀ ହୋଇଥିଲେ; ବିଶେଷତଃ ଖ୍ରୀ:୧୮୦୪ରେ ଆଗ୍ରା ନିକଟରେ ଇଂରେଜମାନେ କରୁଣଭାବରେ ପରାସ୍ତ ହୋଇଥିଲେ; କିନ୍ତୁ ଖ୍ରୀ: ୧୮୧୮ ବେଳକୁ ମରାଠା-ଶକ୍ତି ଚୂଡ଼ାନ୍ତ ଭାବରେ ପରାଭୂତ ହେଲା ଏବଂ ମଧ୍ୟ-ଭାରତର ମହାନ ସର୍ଦ୍ଦାରମାନେ ଇଷ୍ଟ-ଇଣ୍ଡିଆ କମ୍ପାନୀର ସର୍ବମୟ ପ୍ରଭୁତ୍ୱ ସ୍ୱୀକାର କଲେ । ଏହାପରେ ପ୍ରତ୍ୟକ୍ଷ ଭାବରେ କିମ୍ବା ନିଜର କଣ୍ଢେଇ ରାଜାମାନଙ୍କ ଜରିଆରେ ଶାସନ ଚଳାଇ, ଇଂରେଜମାନେ ଭାରତର ଏକ ବୃହତ୍ତର ଅଂଶରେ ଅପ୍ରତିଦ୍ୱନ୍ଦ୍ୱୀ ସାର୍ବଭୌମତ୍ୱ ପ୍ରତିଷ୍ଠା କଲେ । ପଞ୍ଜାବ ଓ ଅନ୍ୟ କେତେକ ଦୂରବର୍ତ୍ତୀ ସୀମାନ୍ତ ଅଞ୍ଚଳ ତଥାପି ସେମାନଙ୍କର କର୍ତ୍ତୃତ୍ୱାଧୀନ ନଥିଲା; କିନ୍ତୁ ଭାରତରେ ବ୍ରିଟିଶ ସାମ୍ରାଜ୍ୟ ଏକ ପ୍ରତିଷ୍ଠିତ ବାସ୍ତବତାରେ ପରିଣତ ହୋଇ ସାରିଥିଲା ଏବଂ ଶିଖ ଓ ଗୁର୍ଖାଙ୍କ ସଙ୍ଗେ କିମ୍ବା ବର୍ମାରେ ପରବର୍ତ୍ତୀ ସମୟରେ ଯେଉଁସବୁ ଯୁଦ୍ଧ ଘଟିଲା, ତାହା ମାନଚିତ୍ରରୁ କେତେଗୋଟି ରେଖା ଲିଭାଇଥିଲା ମାତ୍ର ।

# ଭାରତର ଅନଗ୍ରସରତା : ସଙ୍ଗଠନ ତଥା ପ୍ରୟୋଗ କୌଶଳରେ ଇଂରେଜମାନଙ୍କ ପ୍ରାଧାନ୍ୟ

ଏହି ସମସ୍ତ ଉପରେ ବର୍ତ୍ତମାନ ଦୃଷ୍ଟି ଫେରାଇଲେ ଯେପରି ଜଣାଯାଉଚି, ଇଂରେଜମାନେ କ୍ରମାଗତ ଭାବରେ କେତେକ ଆକସ୍ମିକ ଅବସ୍ଥା ଓ ସୌଭାଗ୍ୟପ୍ରଦ ଘଟଣାର ସୁଯୋଗ ନେଇ ଭାରତ ଉପରେ ପ୍ରଭୁତ୍ୱ ବିସ୍ତାର କଲେ । ବିଶାଳ ଏକ ସାମ୍ରାଜ୍ୟ ଓ ପ୍ରଚୁର ଧନ-ସମ୍ପଦ ସେମାନେ ଅନାୟାସରେ ଲାଭକଲେ କହିଲେ ଚଳେ । ଏହା ସେମାନଙ୍କୁ ପୃଥିବୀର ସର୍ବଶ୍ରେଷ୍ଠ ଶକ୍ତି ଭାବରେ ଠିଆହେବାପାଇଁ ସାହାଯ୍ୟ କଲା । କେଉଁଠି ଯଦି କୌଣସି ଏକ କ୍ଷୁଦ୍ର ଘଟଣା ଟିକିଏ ବିଚ୍ଚ ହୋଇପଡ଼ିଥାନ୍ତା; ଆଜି ଖୁବ୍ ସହଜ ମନେହେଉଚି, ସେମାନଙ୍କର ସମସ୍ତ ଆଶା ଧୂଳିସାତ୍ ହୋଇଥାନ୍ତା ଓ ଉଚ୍ଚାଭିଳାଷର ପରିସମାପ୍ତି ଘଟିଥାନ୍ତା । ହାଇଦର୍ ଅଲ୍ଲି ଓ ଟିପୁଙ୍କ ଦ୍ୱାରା, ମରାଠା, ଶିଖ ଓ ଗୁର୍ଖାଙ୍କ ଦ୍ୱାରା ସେମାନେ ବହୁବାର ପରାସ୍ତ ହୋଇଚନ୍ତି । ଟିକିଏ ମନ୍ଦଭାଗ୍ୟ କିମ୍ବା ବୁଦ୍ଧି ବାମ ହୋଇଥିଲେ ସେମାନେ ଭାରତରେ ପାଦ ରଖିବାର ସ୍ଥାନ ହରାଇ ବସିଥାନ୍ତେ କିମ୍ବା ବଡ଼ ହେଲେ କେତେକ ଉପକୂଳବର୍ତ୍ତୀ ଅଞ୍ଚଳରେ କେବଳ ଆବଦ୍ଧ ହୋଇଥାନ୍ତେ ।

ତଥାପି ଟିକିଏ ସୂକ୍ଷ୍ମଭାବରେ ଅନୁଧ୍ୟାନ କଲେ ଜଣାଯିବ, ସେ ସମୟର ଅବସ୍ଥାକୁ ଦେଖିଲେ, ଯାହା ଘଟିଲା ତାହା ଏକ ପ୍ରକାର ଅବଶ୍ୟମ୍ଭାବୀ । ତେବେ ସୌଭାଗ୍ୟ ଅବଶ୍ୟ ସେମାନଙ୍କ ପକ୍ଷରେ ଥିଲା; କିନ୍ତୁ ସେଥିରୁ ଲାଭ ଉଠାଇବା ପାଇଁ ଦକ୍ଷତା ମଧ୍ୟ ଦରକାର । ମୋଗଲ ସାମ୍ରାଜ୍ୟ ଭାଙ୍ଗିପଡ଼ିବା ପରେ ଭାରତ ସେ ସମୟରେ ଗୋଟାଏ ପ୍ରକାର ତରଳ ତଥା ବିଶୃଙ୍ଖଳ ଅବସ୍ଥାରେ ଥିଲା । ବହୁ ଶତାବ୍ଦୀ ଧରି ଭାରତ ଏତେ ଭଲି ଦୁର୍ବଳ ଓ ଅସହାୟ କେବେ ହୋଇନଥିଲା । ଶୃଙ୍ଖଳା ଓ ସଙ୍ଗଠନ ଭାଙ୍ଗିପଡ଼ିବା ଫଳରେ ବହୁ ଅଦ୍ଭୁତକର୍ମୀ ଓ ନବ ନବ କ୍ଷମତାଖୋରଙ୍କ ପାଇଁ କ୍ଷେତ୍ର ଉନ୍ମୁକ୍ତ ହେଲା । ଏମାନଙ୍କ ଭିତରୁ ସେ ସମୟରେ ଇଂରେଜମାନଙ୍କର, ଭଲଭାବରେ ଦେଖିଲେ ଇଂରେଜମାନଙ୍କର କେବଳ, ବିଜୟ ହାସଲ କରିବାର ବହୁତ କିଛି ଗୁଣ ଥିଲା । ସେମାନେ ଯେଉଁ ବଡ଼ ଅସୁବିଧାର ସମ୍ମୁଖୀନ ହୋଇଥିଲେ ତାହା ହେଉଚି ଯେ ସେମାନେ ବହୁଦୂରଦେଶାଗତ ବିଦେଶୀ । ତଥାପି, ସେହି ଅସୁବିଧା ହିଁ ସେମାନଙ୍କ ସପକ୍ଷରେ ଗଲା; କାରଣ ସେମାନଙ୍କର କାର୍ଯ୍ୟକଳାପ ଉପରେ କେହିହେଲେ ବିଶେଷ ଗୁରୁତ୍ୱ ଦେଉନଥିଲେ କିମ୍ବା ଭାରତର ପ୍ରଭୁ ହେବାପାଇଁ ସେମାନେ ପ୍ରତିଯୋଗୀମାନଙ୍କ ଭିତରୁ ଜଣେ ବୋଲି ମଣୁନଥିଲେ । ବଡ଼ ଆଶ୍ଚର୍ଯ୍ୟର କଥା, ପଲାସୀଯୁଦ୍ଧ ପରେ ମଧ୍ୟ ବହୁକାଳ ପର୍ଯ୍ୟନ୍ତ ଏହି ଭ୍ରାନ୍ତି କିପରି ରହିଲା ? ଦିଲ୍ଲୀର ଗ୍ରୁପ୍ତା-ସମ୍ରାଟଙ୍କ ନିଯୁକ୍ତିକ ଅଥବା ଏଜେଣ୍ଟ ଭାବରେ ଦସ୍ତୁରମତ ସେମାନେ କାର୍ଯ୍ୟ କରିବା ଏହି ଭ୍ରାନ୍ତ ଧାରଣାକୁ ବଳିଷ୍ଠ କଲା । ବଙ୍ଗଳାରୁ ସେମାନେ ଯେପରି ଭାବରେ ସମ୍ପଦ ଲୁଟିନେଲେ ଏବଂ ବାଣିଜ୍ୟରେ ସେମାନଙ୍କର ବିଚିତ୍ର ପ୍ରଣାଳୀ ଲକ୍ଷ୍ୟ କରି ସମସ୍ତେ ଏହି ବିଶ୍ୱାସରେ ଥିଲେ ଯେ ଏହି ବିଦେଶୀମାନେ ଧନ-ସମ୍ପଦର ସନ୍ଧାନରେ ଅଛନ୍ତି ସିନା; ରାଜ୍ୟଜୟ କାମନା ଏମାନଙ୍କର ସେପରି ନାହିଁ । ତୈମୁର ଅବା ନାଦିର ଶାହ ଯେପରି ଭାରତକୁ ଆସି ଧନସମ୍ପଦ ଲୁଟିକରି ନିଜ ଦେଶକୁ ଫେରିଯାଇଥିଲେ, ସେହିପରି ଏମାନେ

ମଧ୍ୟ ଏକ ସାମୟିକ ଯନ୍ତ୍ରଣା କେବଳ ।

ଇଷ୍ଟ ଇଣ୍ଡିଆ କମ୍ପାନୀ ମୂଳତଃ ବାଣିଜ୍ୟ ନିମନ୍ତେ ପ୍ରତିଷ୍ଠିତ ହୋଇଥିଲା ଓ ଏହାର ଯାହା କିଛି ସାମରିକ ସଂସ୍ଥା ସେହି ବାଣିଜ୍ୟକୁ ରକ୍ଷାକରିବା ନିମନ୍ତେ ଉଦ୍ଦିଷ୍ଟ ଥିଲା । କ୍ରମଶଃ, ଅନ୍ୟମାନଙ୍କ ଅଲକ୍ଷ୍ୟରେ, ସ୍ଥାନୀୟ ବିବାଦରେ ମୁଖ୍ୟତଃ ପକ୍ଷ ନେଇ, ଜଣେ ପ୍ରତିଦ୍ୱନ୍ଦ୍ୱୀ ବିରୁଦ୍ଧରେ ଅନ୍ୟଜଣକୁ ସାହାଯ୍ୟ ଯୋଗାଇ, କମ୍ପାନୀ ତାର ଅଧିକୃତ ଅଞ୍ଚଳ ବିସ୍ତୃତ କରିବାରେ ଲାଗିଲା । କମ୍ପାନୀର ସୈନିକମାନେ ଅପେକ୍ଷାକୃତ ଉନ୍ନତ ତାଲିମପ୍ରାପ୍ତ ଥିଲେ, ଯେ କେଉଁ ପକ୍ଷ ପାଇଁ ସେମାନେ ପ୍ରଧାନ ଭରସା ବିବେଚିତ ହେଉଥିଲେ ଏବଂ ଏ ପ୍ରକାର ସାହାଯ୍ୟ ପାଇଁ କମ୍ପାନୀ ମୋଟା ପଇସା ବି ଆଦାୟ କରୁଥିଲେ । ଏହି ଧାରାରେ କମ୍ପାନୀର କ୍ଷମତା ଓ ତାର ସାମରିକ ସଂସ୍ଥାମାନ ବୃଦ୍ଧି ଲାଭକଲା । କମ୍ପାନୀର ଏହି ସୈନ୍ୟମାନଙ୍କୁ ଲୋକେ ଭଡ଼ାଟିଆ ଭାବରେ ଦେଖୁଥିଲେ । କିନ୍ତୁ ଇଂରେଜମାନେ ଅନ୍ୟ କାହା ଖେଳରେ ଭାଗ ନନେଇ କୌଶଳରେ ନିଜ ଖେଳ ଯେ ଖେଳୁଥିଲେ, ଆଉ ଭାରତର ପ୍ରଭୁ ହେବା ଉଦ୍ଦେଶ୍ୟ ରଖିଥିଲେ, ଏକଥା ଉପଲବ୍‌ଧି କଲାବେଳକୁ ସେମାନେ ସେମାନଙ୍କର ଆସ୍ଥାନ ଭଲଭାବରେ ଜମେଇ ସାରିଲେଣି ।

ବିଜାତି ପ୍ରତି ଘୃଣା ସେ ସମୟରେ ନିଃସନ୍ଦେହରେ ଥିଲା ଏବଂ ପରବର୍ତ୍ତୀ କାଳରେ ତାହା ବଢ଼ିଲା ମଧ୍ୟ; କିନ୍ତୁ ଏ ପ୍ରକାର ବିଦ୍ୱେଷଭାବନା ପଛରେ ସର୍ବସାଧାରଣ କିମ୍ବା ସୁପରିବ୍ୟାପ୍ତ ଜାତୀୟତାର ପ୍ରେରଣା ନଥିଲା । ଏହାର ପୃଷ୍ଠଭୂମି ଥିଲା ସାମନ୍ତବାଦୀ ଓ ଆନୁଗତ୍ୟ ଥିଲା ଆଞ୍ଚଳିକ ସରଦାର ପ୍ରତି । ସାମରିକ ଅଧିନାୟକଙ୍କ ପ୍ରାଧିକାର କାଳରେ ଚୀନରେ ଯେପରି ହୋଇଥିଲା, ସେହିପରି ଏଠାରେ ମଧ୍ୟ ବ୍ୟାପକ ଦୁର୍ଦ୍ଦଶା ଲୋକଙ୍କୁ ବାଧ୍ୟ କରୁଥିଲା ସେପରି ସାମରିକ ନେତା ସଙ୍ଗେ ଯୋଗଦେବାପାଇଁ, ଯିଏ ନିୟମିତ ଦରମା ଓ ଲୁଟି କରିବାର ସୁଯୋଗ ଦେଇପାରୁଥିଲା । ଇଷ୍ଟ ଇଣ୍ଡିଆ କମ୍ପାନୀର ବାହିନୀରେ ଭାରତୀୟ ସିପାହି ବହୁଳ ସଂଖ୍ୟାରେ ଥିଲେ । କେବଳ ମରାଠାଙ୍କ ଭିତରେ ଯଥାର୍ଥରେ ଜାତୀୟଭାବ ଥିଲା, ଯାହା କୌଣସି ଜଣେ ନେତା ପ୍ରତି ଆନୁଗତ୍ୟ ଅପେକ୍ଷା ବହୁଗୁଣରେ ଅଧିକ ଥିଲା । ତଥାପି ସୁଦ୍ଧା ଏହା ଥିଲା ସଙ୍କୀର୍ଣ୍ଣ ଓ ସୀମିତ । ମରାଠାମାନଙ୍କ ଆଚରଣରେ ଦୁର୍ଦ୍ଦଶ ରାଜପୁତମାନେ ବିରକ୍ତ ହୋଇ ଉଠିଥିଲେ । ସେମାନଙ୍କୁ ମିତ୍ର ଭାବରେ ନିଜର ପକ୍ଷଭୁକ୍ତ କରିବା ପରିବର୍ତ୍ତେ ପ୍ରତିପକ୍ଷ ଭାବରେ କିମ୍ବା ଅସନ୍ତୁଷ୍ଟ ସାମନ୍ତ ଭାବରେ ସେମାନଙ୍କୁ ମରାଠାମାନେ ଦେଖୁଥିଲେ । ପେଶବାଙ୍କ ଅଧିନାୟକତ୍ୱରେ ଗୋଟାଏ ଅସ୍ପଷ୍ଟ ଚୁକ୍ତି ସମସ୍ତଙ୍କୁ ଆବଦ୍ଧ କରିଥିଲେ ସୁଦ୍ଧା ମରାଠା ମୁଖ୍ୟମାନଙ୍କ ଭିତରେ ତିକ୍ତ ପ୍ରତିଦ୍ୱନ୍ଦ୍ୱିତା ଓ କେବେ କେବେ ଗୃହଯୁଦ୍ଧ ବି ଲାଗି ରହୁଥିଲା । ସଙ୍କଟ ସମୟରେ ପରସ୍ପରକୁ ସାହାଯ୍ୟ କରିବା ସଫଳ ହୋଇପାରୁନଥିଲା ଏବଂ ଜଣେ ଜଣେ, ଅଲଗା ଅଲଗା ଭାବରେ, ସେମାନେ ପରାସ୍ତ ହୋଇଥିଲେ ।

ଏହା ସତ୍ତ୍ୱେ ମରାଠାମାନଙ୍କ ଭିତରୁ ବହୁ ଦକ୍ଷ ଯୋଦ୍ଧା ଓ ରାଷ୍ଟ୍ରନୀତିଜ୍ଞଙ୍କ ସନ୍ଧାନ ପାଉଥିଲେ । ସେମାନେ ହେଉଛନ୍ତି ନାନା ଫର୍ଣ୍ଣାଭିସ୍, ପେଶବା ପ୍ରଥମ ବାଜିରାଓ, ଗୋଆଲିଅର୍‌ର ମହାଦାଜୀ ସିନ୍ଧିଆ ଓ ଇନ୍ଦୋରର ଯଶୋବନ୍ତ ରାଓ ହୋଲ୍‌କାର୍ ଏବଂ ନାରୀମାନଙ୍କ ଭିତରେ

ଇନ୍ଦୋର୍‌ର ରାଣୀ ଅହଲ୍ୟାବାଈଙ୍କ ନାମ ଉଲ୍ଲେଖଯୋଗ୍ୟ । ସେମାନଙ୍କର ସୈନିକମାନେ ନିର୍ଭୀକ ଥିଲେ ଓ ବୀର ଭାବରେ ମରଣ ବରଣ କରିବା ପସନ୍ଦ କରୁଥିଲେ ସିନା ନିଜ କର୍ତ୍ତବ୍ୟର ସ୍ଥାନ ଛାଡ଼ି ପଳାଉନଥିଲେ; କିନ୍ତୁ ଏ ସମସ୍ତ ବାହାଦୁରୀ ପଛରେ, ଯୁଦ୍ଧ ବେଳରେ ହେଉ କି ଶାନ୍ତି ସମୟରେ ହେଉ, ବଡ଼ ଆଶ୍ଚର୍ଯ୍ୟର କଥା ଯେ ବହୁଧା ଗୋଟାଏ ପ୍ରକାର ଦୁଃସାହସିକତା ତଥା ସୌଖୀନ ଯୁଦ୍ଧବୃତ୍ତିର ମନୋଭାବ ରହୁଥିଲା । ବିଶ୍ୱ ସମ୍ପର୍କରେ ସେମାନେ ସମ୍ପୂର୍ଣ୍ଣ ଅଜ୍ଞ ଥିଲେ କହିଲେ ଚଳେ । ଏପରିକି ଭାରତର ଭୂଗୋଳଜ୍ଞାନ ମଧ୍ୟ ସେମାନଙ୍କର ଅଳ୍ପମାତ୍ରାରେ ସୀମିତ ଥିଲା । ଏସବୁ ଅପେକ୍ଷା ଆହୁରି ବଡ଼ ଦୁର୍ଭାଗ୍ୟର କଥା ଯେ ଅନ୍ୟତ୍ର କ'ଣ ଘଟୁଛି ଜାଣିବାପାଇଁ ଓ ଶତ୍ରୁର କର୍ମଯୋଜନା ବୁଝିବାପାଇଁ ସେମାନେ ମୋଟେ ତତ୍ପର ନଥିଲେ । ଏ ପ୍ରକାର ସୀମାବଦ୍ଧ ଅବସ୍ଥାରେ ଦୂରଦୃଷ୍ଟିସମ୍ପନ୍ନ ରଣକୌଶଳ ପ୍ରୟୋଗ କରିବା ସମ୍ଭବ ହୋଇନଥାଏ । ଯୁଦ୍ଧକ୍ଷେତ୍ରରେ ସେମାନଙ୍କର ଚଳନ ଓ ଚଞ୍ଚଳତା ଶତ୍ରୁକୁ ବିସ୍ମିତ ଓ ହତୋତ୍ସାହ କରିଥାଏ; କିନ୍ତୁ ଯୁଦ୍ଧ କହିଲେ ସାରତଃ ସେମାନେ ବୁଝୁଥିଲେ ନିର୍ଭୀକ ତଥା ସାହସିକ ଆକ୍ରମଣ ଓ ସେପରି ଆଉ କିଛି ଛକାପଞ୍ଝା ଲଢ଼େଇରେ ସେମାନେ ପୋଖତ ଥିଲେ । ପରବର୍ତ୍ତୀ ସମୟରେ ସେମାନେ ଶାସ୍ତ୍ରସମ୍ମତ ନିଷ୍ଠା ସହକାରେ ସେମାନଙ୍କର ସେନାବାହିନୀଗୁଡ଼ିକର ପୁନର୍ଗଠନ କରିଥିଲେ । ଫଳତଃ, ଅସ୍ତ୍ରଶସ୍ତ୍ର ଦିଗରେ ସେମାନଙ୍କର ଯାହା ଲାଭ ହେଲା, ବେଗ ଓ ଚଳନଶୀଳତାରେ ତାହା ହରାଇ ବସିଲେ ଏବଂ ସେହିସବୁ ନୂତନ ଅବସ୍ଥା ସଙ୍ଗେ ପାଦ ମିଳାଇ ଚାଲିବା ସେମାନଙ୍କ ପକ୍ଷରେ ସହଜ ହୋଇନଥିଲା । ନିଜକୁ ସେମାନେ ଚତୁର ମଣୁଥିଲେ । ଚତୁର ସେମାନେ ଅବଶ୍ୟ ଥିଲେ; କିନ୍ତୁ ଯୁଦ୍ଧ ସମୟରେ ହେଉ କି ଶାନ୍ତି ସମୟରେ ହେଉ ସେମାନଙ୍କୁ ବୋକା ବନେଇବା କଷ୍ଟକର ହେଉନଥିଲା । କାରଣ ସେମାନଙ୍କର ଚିନ୍ତା ଗୋଟାଏ ପୁରାତନ ତଥା ଯୁଗ ପକ୍ଷରେ ଅନୁପଯୋଗୀ ଗୋଟାଏ ଗଣ୍ଡି ଭିତରେ ବନ୍ଦୀହୋଇ ରହିଥିଲା, ଆଉ ସେଥିଭିତରୁ ସେମାନେ ବାହାରି ପାରୁନଥିଲେ ।

ଶୃଙ୍ଖଳା ଓ କୌଶଳରେ ବିଦେଶରେ ତାଲିମପ୍ରାପ୍ତ ସେନାବାହିନୀର ଉତ୍କର୍ଷ ପ୍ରଥମରୁ ହିଁ ଭାରତୀୟ ଶାସକମାନେ ଅବଶ୍ୟ ଲକ୍ଷ୍ୟ କରିଥିଲେ । ସେମାନେ ଫରାସୀ ଓ ଇଂରେଜ ଅଫିସରମାନଙ୍କୁ ନିଯୁକ୍ତ କରି ନିଜ ନିଜ ସେନାବାହିନୀକୁ ତାଲିମ କରାଇଲେ ଏବଂ ଏ ଉଭୟ ମଧ୍ୟରେ ବିବାଦ ଭାରତୀୟ ବାହିନୀଗୁଡ଼ିକୁ ଗଢ଼ିବା ଦିଗରେ ସହାୟକ ହେଲା । ସମୁଦ୍ରଶକ୍ତିର ଗୁରୁତ୍ୱ ସମ୍ପର୍କରେ ହାଇଦର ଅଲ୍ଲି ଓ ଟିପୁ ମଧ୍ୟ କିଛିଟା ଧାରଣା କରିପାରିଥିଲେ ଯଦିଓ, ସମୁଦ୍ରବକ୍ଷରେ ଇଂରେଜମାନଙ୍କୁ ସାମନା କରିବାପାଇଁ ନୌବାହିନୀ ଗଢ଼ିବା ଦିଗରେ ସେମାନଙ୍କର ଉଦ୍ୟମ ବିଳମ୍ବରେ ହେବା ହେତୁରୁ ବିଫଳ ହେଲା । ଏ ଦିଗରେ ମରାଠାମାନେ ବି ସାମାନ୍ୟ କିଛି ଉଦ୍ୟମ କରିଥିଲେ । ଭାରତ ସେ ସମୟରେ ଜାହାଜ ନିର୍ମାଣ କରି ଜାଣୁଥିଲା; କିନ୍ତୁ ଅଳ୍ପ ସମୟ ମଧ୍ୟରେ ଓ ପ୍ରତିକୂଳ ପ୍ରତିରୋଧ ସମ୍ମୁଖରେ ଗୋଟାଏ ନୌବାହିନୀ ଗଢ଼ି ତୋଳିବା ସହଜ ନଥିଲା । ଭାରତରୁ ଫରାସୀଶକ୍ତି ହଟିଯିବା ସଙ୍ଗେ ସଙ୍ଗେ ଭାରତୀୟ ରାଜ୍ୟମାନଙ୍କ ସାମରିକ ବାହିନୀରେ ନିଯୁକ୍ତ ଥିବା ବହୁ ଫରାସୀ କର୍ମଚାରୀଙ୍କୁ

ଭାରତ ଛାଡ଼ି ଯିବାକୁ ପଡ଼ିଲା । ଯେଉଁମାନେ ରହିଲେ, ମୁଖ୍ୟତଃ ଇଂରେଜମାନେ, ସଙ୍କଟ ସମୟରେ ସେମାନଙ୍କ ଅନ୍ନଦାତାଙ୍କୁ ଛାଡ଼ି ପଳାଉଥିଲେ ଏବଂ କେତେକ ଅବସରରେ ଏପରି ମଧ୍ୟ ଦେଖାଯାଇଛି ଯେ ନିଜର ଭାରତୀୟ ପ୍ରଭୁ ପ୍ରତି ବିଶ୍ୱାସଘାତକତା କରି ଏହି ଇଂରେଜ ଅଫିସରମାନେ ନିଜ ଅଧୀନରେ ଥିବା ସୈନ୍ୟ ଓ ଧନସମ୍ପଦ ଧରି ପ୍ରତିପକ୍ଷ ଇଂରେଜ-ବାହିନୀ ନିକଟରେ ଆତ୍ମସମର୍ପଣ କରିଚନ୍ତି । ବିଦେଶୀ ଅଫିସରମାନଙ୍କ ଉପରେ ଭରସା କରି ରହିବା ଭାରତୀୟ ଶକ୍ତିମାନଙ୍କର ସାମରିକ ସଙ୍ଗଠନର ଅନଗ୍ରସର ଅବସ୍ଥା ସୂଚିତ କରେ ବୋଲି କେବଳ ନୁହେଁ, ସେମାନଙ୍କର ବିଶ୍ୱସ୍ତତା ଏତେ ଭଙ୍ଗୁର ଥିଲା ଯେ ତାହା ଗୋଟାଏ ବିପଦର ଆଧାର ଭାବରେ ସବୁବେଳେ ରହୁଥିଲା । ଭାରତୀୟ ଶାସକମାନଙ୍କର ଶାସନକଳ ଓ ସେନାବାହିନୀମାନଙ୍କରେ ଇଂରେଜମାନେ ପ୍ରାୟଶଃ ଗୋଟାଏ ଶକ୍ତିଶାଳୀ ପଞ୍ଚମବାହିନୀ ଖଟାଇ ରଖିଥିଲେ ।

ଦମକାଜାତୀୟତା ଓ ଗୋଷ୍ଠୀପ୍ରୀତି ଧରି ମରାଠାମାନେ ଯଦି ସାମରିକ ଓ ବେସାମରିକ ସଙ୍ଗଠନରେ ଅନଗ୍ରସର ଥିଲେ, ଅନ୍ୟ ଭାରତୀୟ ଶକ୍ତିମାନଙ୍କ ଅବସ୍ଥା ତତୋଽଧିକ ଶୋଚନୀୟ ଥିଲା । ରାଜପୁତମାନେ ସେମାନଙ୍କର ସମସ୍ତ କିଛି ସାହସିକତା ସତ୍ତ୍ୱେ, ଆବେଗପ୍ରବଣ ଓ ପୂର୍ଣ୍ଣମାତ୍ରାରେ ଅନୁପଯୋଗୀ ସେହି ପୁରାତନ ସାମନ୍ତବାଦୀ ରୀତିରେ ପରିଚାଳିତ ହେଉଥିଲେ । ପ୍ରଭୁ ପ୍ରତି ଗୋଟାଏ ପ୍ରକାର ସାମନ୍ତବାଦୀ ଆନୁଗତ୍ୟ ହେତୁରୁ ଓ କେତେକାଂଶରେ ଅତୀତରେ ଆକ୍‌ବରଙ୍କ ଅନୁସୃତ ନୀତିର ଫଳସ୍ୱରୂପ ସେମାନଙ୍କ ଭିତରୁ ଅନେକେ ଦିଲ୍ଲୀର ବର୍ତ୍ତମାନ ଶକ୍ତିର ପକ୍ଷ ଗ୍ରହଣ କରିଥିଲେ, କିନ୍ତୁ ଦିଲ୍ଲୀ ଏତେ ନିସ୍ତେଜ ହୋଇପଡ଼ିଥିଲା ଯେ ରାଜପୁତମାନଙ୍କ ଏହି ଆନୁଗତ୍ୟରୁ ଲାଭ ଉଠାଇବାପାଇଁ ତାର କୌଣସି ବ୍ୟବସ୍ଥା ନଥିଲା ରାଜପୁତମାନେ ଅବନତିର ସିଡ଼ି ତଳକୁ ଖସି ଖସି ଅନ୍ୟମାନଙ୍କ ହାତର କଣ୍ଢେଇ ହୋଇପଡ଼ିଲେ ଏବଂ ପରିଶେଷରେ ମରାଠା ଅଧିନାୟକ ସିନ୍ଧିଆଙ୍କ କକ୍ଷରେ ପତିତ ହେଲେ । କେତେକ ରାଜପୁତ୍‌-ମୁଖ୍ୟ ନିଜର ଅସ୍ତିତ୍ୱ ରକ୍ଷାକରିବା ନିମନ୍ତେ ବଡ଼ ହୁସିଆର ଭାବରେ ଭାରସାମ୍ୟ ରକ୍ଷାକରି ଚଳିବା ଉଦ୍ୟମରେ ରହିଲେ । ଉତ୍ତର ଓ ମଧ୍ୟ-ଭାରତର ନାନାବିଧ ମୁସଲିମ୍ ଶାସକ ଓ ସରଦାରମାନେ ନିଜ ନିଜ ଧାରଣାରେ ଓ ବିଚାରରେ ରାଜପୁତମାନଙ୍କ ଅପେକ୍ଷା କିଛି କମ୍ ସାମନ୍ତବାଦୀ ଓ ଅନଗ୍ରସର ନଥିଲେ । ଚଳିତ ବିଶୃଙ୍ଖଳା ଓ ଜନସାଧାରଣଙ୍କ ଦୁର୍ଦ୍ଦଶା ବୃଦ୍ଧିକରିବା ବ୍ୟତୀତ ସେମାନଙ୍କର ସ୍ଥିତି ପ୍ରକୃତରେ ଆଉ କିଛି ପାର୍ଥକ୍ୟ ଘଟାଇ ପାରିନଥିଲା । ଏମାନଙ୍କ ଭିତରୁ ଅନେକେ ମରାଠାମାନଙ୍କ ପ୍ରଭୁତ୍ୱ ସ୍ୱୀକାର କରିନେଇଥିଲେ ।

ଇଷ୍ଟ ଇଣ୍ଡିଆ କମ୍ପାନୀର ସୈନ୍ୟମାନଙ୍କଠାରୁ ଅଧିକତର ଉନ୍ନତ ନହେଲେ କ'ଣ ହେଲା, ନେପାଳର ଗୁର୍ଖାମାନେ ଶୃଙ୍ଖଳା ଓ ସମରପଟୁତାରେ ସେମାନଙ୍କର ସମକକ୍ଷ ଥିଲେ । ସେମାନଙ୍କର ସଙ୍ଗଠନରୀତି ସମ୍ପୂର୍ଣ୍ଣ ରୂପରେ ସାମନ୍ତବାଦୀ ଥିଲେ ସୁଦ୍ଧା ମାତୃଭୂମି ପ୍ରତି ସେମାନଙ୍କର ଅନୁରକ୍ତି ଅତି ପ୍ରବଳ ଥିଲା ଏବଂ ଏହି ମନୋଭାବ ମାତୃଭୂମିର ପ୍ରତିରକ୍ଷାରେ ପ୍ରାଣପାତ କରିବାପାଇଁ ତିଳେମାତ୍ର କୁଣ୍ଠିତ କରୁନଥିଲା । ଗୋଟାଏ ସମୟରେ ଇଂରେଜମାନଙ୍କ

ସେମାନେ ଖୁବ୍ ଭଲଭାବରେ ଉପସ୍ଥାପିତ କରି ପାରିଥିଲେ; କିନ୍ତୁ ଭାରତରେ ଯେଉଁ ଉଦ୍ଦେଶ୍ୟ ନେଇ ସଂଗ୍ରାମ ଚାଲିଥିଲା, ସେ ଦିଗରେ ସେମାନଙ୍କର ବିଶେଷ କିଛି ଅବଦାନ ରହିପାରି-ନଥିଲା ।

ଉତ୍ତର ଓ ମଧ୍ୟ-ଭାରତର ଯେଉଁସବୁ ବିଶାଳ ଅଞ୍ଚଳକୁ ମରାଠାମାନେ ମାଡ଼ିଯାଇଥିଲେ, ସେଠାରେ ନିଜର ଆସ୍ଥାନ ଭଲଭାବରେ ଜମାଇ ପାରିନଥିଲେ । ଯିବା ଓ ଆସିବା ସେମାନଙ୍କର ଲାଗିଥିଲା ଯଦିଓ, ପାଦ ସ୍ଥିର ହୋଇପାରିନଥିଲା । ସେ ସମୟର ଯୁଦ୍ଧନିରତ ଶକ୍ତିମାନଙ୍କର ଭାଗ୍ୟ ଏତେଭଳି ଅସ୍ଥିର ଥିଲା ଯେ ହୁଏତ କେହିହେଲେ କୌଣସି ଭୂମି ଉପରେ ପାଦ ସ୍ଥିର କରିପାରିନଥାନ୍ତେ । ପ୍ରକୃତପକ୍ଷେ, ଇଂରେଜମାନଙ୍କ ଆୟତ୍ତାଧୀନ କିମ୍ବା ଇଂରେଜମାନଙ୍କ ପ୍ରଭୁପଣକୁ ସ୍ୱୀକାର କରୁଥିବା ବହୁ ଅଞ୍ଚଳର ଅବସ୍ଥା ଆହୁରି ଶୋଚନୀୟ ଥିଲା ଏବଂ ଇଂରେଜମାନେ କିମ୍ବା ସେମାନଙ୍କର ଶାସନ-ବ୍ୟବସ୍ଥା ସେଠାରେ ଆସ୍ଥାନ ଜମାଇ ପାରିନଥିଲା ।

ମରାଠାମାନେ (ଅନ୍ୟାନ୍ୟ ଭାରତୀୟ ଶକ୍ତିମାନେ ବି କମ୍ ନୁହନ୍ତି) ଯଦି ସେମାନଙ୍କର ଅନୁସୃତ ବିବିଧ ଉପାୟରେ ଏକରକମ ସୌଖୀନତା ତଥା ଦୁଃସାହସିକତାପ୍ରଣୋଦିତ ଥିଲେ, ଭାରତର ଇଂରେଜମାନେ ଥିଲେ ଯଥାମତ ପେଶାଦାର । ଇଂରେଜ ନେତୃବର୍ଗଙ୍କ ଭିତରୁ ଅନେକେ ଅଭୂତକର୍ମା ଅବଶ୍ୟ ଥିଲେ; କିନ୍ତୁ ଯେଉଁ ନୀତି ନିମନ୍ତେ ସେମାନେ ଭିନ୍ନ ଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରୁଥିଲେ, ସେଥିରେ ଅନିଶ୍ଚୟତା ଅଥବା ପରିଣାମ-ଉଦାସୀନତା ସୂଚନା ସୁଦ୍ଧା ନଥିଲା । ଏଡ଼ଓ୍ବାର୍ଡ଼ ଥମ୍ପସନ୍ ଲେଖିଚନ୍ତି: "ଦେଶୀୟ ରାଜ୍ୟ ଦରବାରରେ, ଇଷ୍ଟ ଇଣ୍ଡିଆ କମ୍ପାନୀ ପ୍ରତିନିଧିସଂସ୍ଥାର ସେବାରେ କ୍ରମାଗତ ଭାବରେ ଯେତେ ସୁଦକ୍ଷ ବ୍ୟକ୍ତି ନିଯୋଜିତ ଥିଲେ, ବ୍ରିଟିଶ ସାମ୍ରାଜ୍ୟରେ କୌଣସି ସମୟରେ ହେଲେ ଏତେ ସଂଖ୍ୟାରେ ସେଭଳି ଗୁଣବାନ୍ ବ୍ୟକ୍ତି ନଥିଲେ ।" ଏହି ଦରବାରମାନଙ୍କରେ ବ୍ରିଟିଶ 'ରେସିଡେଣ୍ଟ' ବା ରାଜନୈତିକ ପ୍ରତିନିଧିର ଅନ୍ୟତମ ମୁଖ୍ୟ କର୍ତ୍ତବ୍ୟ ଥିଲା ମନ୍ତ୍ରୀ ଓ ଅନ୍ୟାନ୍ୟ ଉଚ୍ଚପଦସ୍ଥ କର୍ମଚାରୀମାନଙ୍କୁ ଦୁର୍ନୀତିଗ୍ରସ୍ତ କରିବା । ସେମାନଙ୍କ ଗୁପ୍ତଚର ବ୍ୟବସ୍ଥାରେ ତିଳେମାତ୍ର ତ୍ରୁଟି ନଥିଲା ବୋଲି ଜଣେ ଐତିହାସିକ କହନ୍ତି । ସେମାନଙ୍କ ଶତ୍ରୁ ଶିବିରରେ ଓ ଦରବାରର ଅନ୍ତରାଳରେ କ'ଣ ଘଟୁଚି ସେ ସମ୍ପର୍କରେ ସମସ୍ତ ତଥ୍ୟ ସେମାନଙ୍କ ପାଖରେ ପହଞ୍ଚୁଥିଲା । ସେମାନଙ୍କର ପ୍ରତିପକ୍ଷୀ ଅର୍ଥାତ୍ ଭାରତୀୟ ଶକ୍ତିମାନେ ଇଂରେଜମାନଙ୍କର ଚଳିତ ଓ ପରିକଳ୍ପିତ କାର୍ଯ୍ୟକଳାପ ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲେ । ଇଂରେଜ ପଞ୍ଚମବାହିନୀ ବରାବର କାର୍ଯ୍ୟ କରୁଥିଲା ଏବଂ ସଙ୍କଟ ସମୟରେ ତଥା ଯୁଦ୍ଧର ନିଷ୍ପତ୍ତିମୂଳକ ଅବସ୍ଥାରେ ଦେଶୀୟ ସୈନ୍ୟମାନେ ଇଂରେଜ ପକ୍ଷକୁ ପଳାଇଯିବା ଫଳରେ ଯୁଦ୍ଧର ନିଷ୍ପତ୍ତି ଆକସ୍ମିକ ଭାବରେ ଅପ୍ରତ୍ୟାଶିତ ରୂପ ନେଉଥିଲା । ଅନେକ କ୍ଷେତ୍ରରେ ଅସ୍ତ୍ରଚାଳନା ପୂର୍ବରୁ ହିଁ ଇଂରେଜମାନେ ଜୟଲାଭ କରୁଥିଲେ । ପଲାସୀ ଯୁଦ୍ଧରେ ଏହା ହିଁ ଘଟିଥିଲା ଏବଂ ଶିଖମାନଙ୍କ ଯୁଦ୍ଧ ପର୍ଯ୍ୟନ୍ତ ଏହାର ପୁନରାବୃତ୍ତି ବ୍ୟାହତ ହୋଇନଥିଲା । ଏ ସମ୍ବନ୍ଧରେ ଗୋଟାଏ ଉଲ୍ଲେଖଯୋଗ୍ୟ ଦୃଷ୍ଟାନ୍ତ ହେଉଚି ଯେ ଗୋଆଲିଅରର ସିନ୍ଧିଆଙ୍କ ସେନାବାହିନୀରେ ନିଯୁକ୍ତ ଜଣେ ଉଚ୍ଚପଦସ୍ଥ ଇଂରେଜ ସାମରିକ ଅଫିସର ଗୋପନରେ ଇଂରେଜମାନଙ୍କ ସଙ୍ଗେ ଚୁକ୍ତି କରି

ନେଇଥିଲେ ଏବଂ ଯୁଦ୍ଧ ଆରମ୍ଭରେ ହିଁ ସମଗ୍ର ସେନାବାହିନୀ ନେଇ ଇଂରେଜ ପକ୍ଷକୁ ଲେଉଟି ଯାଇଥିଲେ । ପରବର୍ତ୍ତୀ ସମୟରେ ଯେଉଁ ପିଣ୍ଡାରୀଙ୍କ ପ୍ରତି ସେ ବିଶ୍ୱାସଘାତକତା କରିଥିଲେ, ତାଙ୍କର ଶାସିତ ଅଞ୍ଚଳ ଭିତରୁ ଗୋଟାଏ ନୂଆ ରାଜ୍ୟ ସୃଷ୍ଟିକରି ତାଙ୍କୁ ସେଥିର ଶାସକ ଭାବରେ ନିଯୁକ୍ତ କରି ତାଙ୍କର ମହତ୍ତ୍ୱପୂର୍ଣ୍ଣ ସାହାଯ୍ୟର ପୁରସ୍କାର ଦିଆଯାଇଥିଲା । ଏବେ ବି ସେ ରାଜ୍ୟ ରହିଛି; କିନ୍ତୁ ସେହି ବ୍ୟକ୍ତିର ନାମ ଦେଶଦ୍ରୋହି ଓ ବିଶ୍ୱାସଘାତକତା ନିମନ୍ତେ ଏକ ପ୍ରବାଦ ଭାବରେ ବ୍ୟବହୃତ ହେଉଛି—ଆଧୁନିକ କାଳରେ 'କ୍ୱିସ୍ଲିଂ' ନାମକୁ ଗୃହଶତ୍ରୁ ଅର୍ଥରେ ଯେଉଁଭଳି ବ୍ୟବହାର କରାଯାଇଥାଏ ।

ଏପରି ଭାବରେ, ଭଲ ଭାବରେ ବ୍ୟବସ୍ଥିତ ଓ ଦକ୍ଷ ନେତାମାନଙ୍କଦ୍ୱାରା ପରିଚାଳିତ ଇଂରେଜମାନେ ଗୋଟାଏ ଉଚ୍ଚତର ରାଜନୈତିକ ତଥା ସାମରିକ ସଙ୍ଗଠନର ପ୍ରତିନିଧିତ୍ୱ କରିଥିଲେ । ସେମାନଙ୍କର ପ୍ରତିପକ୍ଷ ଅପେକ୍ଷା ନାନା ବିଷୟରେ ସେମାନେ ଭଲଭାବରେ ଜ୍ଞାତ ଥିଲେ ଏବଂ ଭାରତୀୟ ଶକ୍ତିମାନଙ୍କର ବିଭେଦ ଓ ବିବାଦର ପୂର୍ଣ୍ଣ ସୁଯୋଗ ନେଇ-ପାରିଥିଲେ । ସମୁଦ୍ର ଉପରେ ସେମାନଙ୍କର ଆଧିପତ୍ୟ ସମ୍ବଳ ବୃଦ୍ଧି ଦିଗରେ ସେମାନଙ୍କୁ ନିରାପଦ ଘାଟି ଓ ସୁଯୋଗ ଯୋଗାଇଥିଲା । ସାମୟିକ ଭାବରେ ପରାଜିତ ହେଲେ ସୁଦ୍ଧା ସେମାନେ ସେ ଅବସ୍ଥାରୁ ଉଦ୍ଧାର ପୁନର୍ବାର ଆକ୍ରମଣ କରିବାପାଇଁ ପ୍ରସ୍ତୁତ ହୋଇ ପାରୁଥିଲେ । ପଲାସୀ ଯୁଦ୍ଧ ପରେ ବଙ୍ଗ ଯେବେ ସେମାନଙ୍କର ଦଖଲକୁ ଆସିଲା, ମରାଠା ଓ ଅନ୍ୟମାନଙ୍କ ସଙ୍ଗେ ଯୁଦ୍ଧ ଚାଲୁରଖିବାପାଇଁ ସେମାନଙ୍କୁ ଅପ୍ରମିତ ଧନ ଓ ସମ୍ବଳ ମିଳିଲା ଏବଂ ପ୍ରତ୍ୟେକ ବିଜୟ ସେହି ସମ୍ବଳ ବୃଦ୍ଧିକଲା । ଭାରତୀୟ ଶକ୍ତିମାନଙ୍କ ପକ୍ଷରେ ପରାଜୟ କହିଲେ ପ୍ରାୟ ବିପର୍ଯ୍ୟୟ ବୁଝାଯାଉଥିଲା ଏବଂ ସେଥିରୁ ସୁସ୍ଥ ହୋଇ ଉଠିବା ସେମାନଙ୍କ ପକ୍ଷରେ ସମ୍ଭବ ହେଉନଥିଲା ।

ଯୁଦ୍ଧ, ବିଜୟ ଓ ଲୁଣ୍ଠନର ଏହି ପର୍ଯ୍ୟାୟ ମଧ୍ୟ-ଭାରତ, ରାଜପୁତାନା ତଥା ଦକ୍ଷିଣ ଓ ପଶ୍ଚିମର କେତେକ ଅଂଶକୁ ହିଂସା, ଅଶାନ୍ତି ଓ ଦୁର୍ବିପାକରେ ପୂର୍ଣ୍ଣ, ପରିତ୍ୟକ୍ତ ଅଞ୍ଚଳରେ ପରିଣତ କଲା । ଦଳ ଦଳ ସୈନ୍ୟ ଏହିସବୁ ଅଞ୍ଚଳ ଦେଇ ଗଲା ପରେ ପରେ ଆସି ପହଞ୍ଚୁ ଥିଲେ ଚୋର ଓ ଡକାୟତମାନେ । ଏହି ସବୁ ଅଞ୍ଚଳରେ ଯେଉଁ ଦୁଃଖୀ ଲୋକେ ବାସ କରୁଥିଲେ, ସେମାନଙ୍କ ପ୍ରତି କାହାର ନଜର ପଡୁନଥିଲା; ଯଦି ପଡ଼ିଲା, ସେମାନଙ୍କର ଧନ ଓ ଅନ୍ୟାନ୍ୟ ପଦାର୍ଥ ଅପହରଣ କରିବାପାଇଁ କେବଳ । ଭାରତର କେତେକ ଅଞ୍ଚଳ ଠିକ୍ ସେହି ଦଶା ଭୋଗିଲା ଯେପରି ମଧ୍ୟ-ୟୁରୋପ 'ତିରିଶି ବର୍ଷର ଯୁଦ୍ଧ' କାଳରେ ଭୋଗିଥିଲା । ସର୍ବତ୍ର ଅବସ୍ଥା ଖରାପ ଥିଲା; କିନ୍ତୁ ଯେଉଁସବୁ ଅଞ୍ଚଳ ଇଂରେଜମାନଙ୍କ ନିୟନ୍ତ୍ରଣ ଓ କର୍ତ୍ତୃତ୍ୱର ଅଧୀନ ଥିଲା, ସେହିସବୁ ଅଞ୍ଚଳର ଶୋଚନୀୟ ଅବସ୍ଥା କହିବାର ନୁହେଁ । "ମାନ୍ଦ୍ରାଜ କମ୍ପାନୀ ଅବଧ (ଆଉଦ୍) ଓ ହାଇଦ୍ରାବାଦ ଭଳି ସାମନ୍ତ ରାଜ୍ୟ ଯେଉଁ ଚଜ ଆଖି ଆଗରେ ରଖେ, ତାହାଠାରୁ ଅଧିକ କିଛି ଦୟନୀୟ ଓ ଶୋଚନୀୟ କଳ୍ପନା କରାଯାଇ ପାରେନା । ଏହା ଯେପରି ଦୁର୍ଦ୍ଦୈବର ଗୋଟାଏ ବିକ୍ଷୁବ୍ଧ ପ୍ରଳାପ । ତୁଳନା କରି ଦେଖିଲେ, ଯେଉଁସବୁ ଅଞ୍ଚଳ ନାନା (ମରାଠା ରାଷ୍ଟ୍ରନୀତିଜ୍ଞ ନାନା ଫଡ୍ନାଭିସ୍)ଙ୍କ ଶାସନାଧୀନ ଥିଲା, ତାହାକୁ ଶାନ୍ତ

ନଗରପଲ୍ଲୀର ମରୁଦ୍ୟାନ ଦେଖାଯାଇପାରେ ।” ଏପରି ଭାବରେ ବର୍ଣ୍ଣନା କରିଛନ୍ତି ଏଡ୍‌ୱାର୍ଡ ଥମ୍ପସନ୍ ।

ଠିକ୍ ଏହି ପର୍ଯ୍ୟାୟ ପୂର୍ବରୁ, ମୋଗଲ ସାମ୍ରାଜ୍ୟର ବିଚ୍ଛିନ୍ନତା ସତ୍ତ୍ୱେ, ଭାରତର କେତେକ ସୁବିସ୍ତୃତ ଅଞ୍ଚଳ ଅସାଧାରଣ ଭାବରେ ବିଶୃଙ୍ଖଳାରୁ ମୁକ୍ତ ଥିଲା । ବଙ୍ଗଳାରେ ସ୍ୱାଧୀନ ମୋଗଲ ସୁବେଦାର ଆଲିବର୍ଦ୍ଦିଙ୍କ ଦୀର୍ଘ ରାଜତ୍ୱକାଳରେ ଶାନ୍ତିପୂର୍ଣ୍ଣ ସୁବ୍ୟବସ୍ଥିତ ଶାସନ ପ୍ରାପ୍ତ ହୋଇଥିଲା ଏବଂ ବ୍ୟବସାୟ ବାଣିଜ୍ୟର ଅଭିବୃଦ୍ଧି ଫଳରେ ବଙ୍ଗ ପ୍ରଦେଶ ଧନସମ୍ପଦରେ ପୂର୍ଣ୍ଣ ଥିଲା । ଆଲିବର୍ଦ୍ଦିଙ୍କ ମୃତ୍ୟୁର ଅଳ୍ପକାଳ ପରେ ପଲାସୀ ଯୁଦ୍ଧ (ଖ୍ରୀ: ୧୭୫୭) ଘଟିଲା ଏବଂ ଇଷ୍ଟ ଇଣ୍ଡିଆ କମ୍ପାନୀ ନିଜକୁ ଦିଲ୍ଲୀ ସମ୍ରାଟଙ୍କ ଏଜେଣ୍ଟ ବୋଲି ଦେଖାଇ ସେଠାରେ ଦଖଲ ଅମଳ ଚଳାଇଲେ; କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ସମ୍ରାଟଙ୍କ ଏଜେଣ୍ଟ ନ ବୋଲି ମଧ୍ୟ ଯାହା ଇଚ୍ଛା ତାହା କରିବାପାଇଁ ସେମାନେ ସମ୍ପୂର୍ଣ୍ଣ ସ୍ୱାଧୀନ ଥିଲେ । ଏହାପରେ କମ୍ପାନୀ ଓ ତାର ଏଜେଣ୍ଟ ତଥା ଗୁମାସ୍ତାମାନଙ୍କ ତରଫରୁ ବଙ୍ଗରେ ଲୁଣ୍ଠନ ଚାଲିଲା । ପଲାସୀ ଯୁଦ୍ଧର କେତେ ବର୍ଷ ପରେ ମଧ୍ୟ-ଭାରତର ଇନ୍ଦୋରରେ ରାଣୀ ଅହଲ୍ୟାବାଈଙ୍କ ରାଜତ୍ୱ ଆରମ୍ଭ ହେଲା । ସେ ତିରିଶି ବର୍ଷ (ଖ୍ରୀ: ୧୭୬୫ ରୁ ୧୭୯୫) ରାଜତ୍ୱ କରିଥିଲେ । ରାଣୀଙ୍କ ରାଜତ୍ୱକାଳରେ ରାଜ୍ୟର ଶୃଙ୍ଖଳା ଓ ସୁଶାସନ ଶୀର୍ଷ ସୀମାରେ ପହଞ୍ଚି ପାରିଥିଲା ଓ ଲୋକେ ସୁଖ-ସମୃଦ୍ଧି ଭିତରେ କାଳ କଟାଇଥିଲେ । ନାନା କିମ୍ବଦନ୍ତୀ ଆକାରରେ ସେ ସମୟର କାହାଣୀମାନ ଆଜି ବି ଶୁଣିବାକୁ ମିଳେ । ଶାସନ ଓ ସଙ୍ଗଠନରେ ତାଙ୍କର ଦକ୍ଷତା ଥିଲା ଅପୂର୍ବ । ଜୀବିତାବସ୍ଥାରେ ସେ ଉଚ୍ଚ ସମ୍ମାନର ଅଧିକାରିଣୀ ଥିଲେ ଏବଂ ମୃତ୍ୟୁ ପରେ କୃତଜ୍ଞ ପ୍ରଜା ତାଙ୍କୁ ପବିତ୍ରତାର ପ୍ରତୀକ ଜଣେ ସିଦ୍ଧା ଭାବରେ ଦେଖିଲେ । ଇଷ୍ଟ ଇଣ୍ଡିଆ କମ୍ପାନୀର ଶାସନତନ୍ତ୍ର ତଳେ ଯେଉଁ ସମୟରେ ବଙ୍ଗ ଓ ବିହାରରେ ସଙ୍ଗଠିତ ଭାବରେ ଲୁଣ୍ଠନ ଚାଲିଥିଲା ଓ ରାଜନୈତିକ ତଥା ଅର୍ଥନୈତିକ ବିପ୍ଳବ ଫଳରେ ଘୋର ଦୁର୍ଭିକ୍ଷ ଘଟିଥିଲା, ଠିକ୍ ସେହି ସମୟରେ ମଧ୍ୟ-ଭାରତ ଓ ଦେଶର ଅନ୍ୟ ବହୁ ଅଞ୍ଚଳରେ ସୁଖ ଓ ସମୃଦ୍ଧି ବିରାଜିତ ଥିଲା ।

ଇଂରେଜମାନଙ୍କ ହାତରେ କ୍ଷମତା ଥିଲା ଓ ପ୍ରଚୁର ପରିମାଣରେ ଧନସମ୍ପଦ ବି ଥିଲା; କିନ୍ତୁ ଲୋକଙ୍କୁ ସୁଶାସନ ଦେବାପାଇଁ ଏପରି କି ସାଧାରଣ ଭାବରେ କୌଣସି ଶାସନ ବ୍ୟବସ୍ଥା କରିବାର ଦାୟିତ୍ୱ ସେମାନେ ଅନୁଭବ କରିନଥିଲେ । ଇଷ୍ଟ ଇଣ୍ଡିଆ କମ୍ପାନୀର ବଣିକମାନେ ଲାଭାଂଶ ଓ ସମ୍ପଦ ଆହରଣ କରିବାରେ ଆଗ୍ରହିତ ଥିଲେ ସିନା, ସେମାନଙ୍କ ଶାସନକବଳକୁ ଆସିଥିବା ପ୍ରଜାଙ୍କର ଉନ୍ନତି କିମ୍ବା ସୁରକ୍ଷା ପ୍ରତି ସେମାନଙ୍କର ଦୃଷ୍ଟି ନଥିଲା । ବିଶେଷତଃ କରଦ ରାଜ୍ୟମାନଙ୍କରେ କ୍ଷମତା ଓ ଦାୟିତ୍ୱ ଭିତରେ କୌଣସି ସମ୍ପର୍କ ନଥିଲା । ମରାଠାମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ପରାଜିତ କରିସାରି, ବିଜିତ ଅଞ୍ଚଳମାନଙ୍କରେ ନିଜର ଆସ୍ଥାନ ନିରାପଦ କରି ଇଂରେଜମାନେ ବେସାମରିକ ଶାସନ ପ୍ରତି ମନଦେଲେ ଏବଂ କୌଣସି ପ୍ରକାରେ ଏକ ଶାସନ-ବ୍ୟବସ୍ଥା ଚାଲୁକରାଗଲା । କରଦ ରାଜ୍ୟମାନଙ୍କରେ କିନ୍ତୁ ଏହି ପରିବର୍ତ୍ତନର ଗତି ଥିଲା ବଡ଼ ମନ୍ଥର; କାରଣ ସେହି ସବୁ ତଥାକଥିତ ସୁରକ୍ଷିତ ଅଞ୍ଚଳମାନଙ୍କରେ କ୍ଷମତା ଓ ଦାୟିତ୍ୱ ଭିତରେ ଥିବା ସମ୍ପର୍କ ଚିରଦିନ ପାଇଁ ଛିନ୍ନ-

ଯାଇଥିଲି । କାଳେ ହୁଏତ ଭୁଲିଯାଇପାରୁଁ ବୋଲି ଆମକୁ ବାରମ୍ବାର ସ୍ମରଣ କରାଇ ଦିଆଯାଇଥାଏ ଯେ, ଇଂରେଜମାନେ ଭାରତକୁ ବିଶୃଙ୍ଖଳା ଓ ଅରାଜକତାରୁ ଉଦ୍ଧାର କଲେ । ଏହା ସେ ସମୟ ପାଇଁ ଅବଶ୍ୟ ସତ୍ୟ, ଯେବେ ସେମାନେ ଶୃଙ୍ଖଳାର ଶାସନ ପ୍ରତିଷ୍ଠା କଲେ; କିନ୍ତୁ ତା' ପୂର୍ବରୁ ଯେଉଁ ସମୟକୁ ମହରଠାମାନେ 'ଆତଙ୍କରାଜର କାଳ' ବୋଲି ଅଭିହିତ କରିଚନ୍ତି, ସେଥିପାଇଁ ନୁହେଁ । ଯେଉଁ ବିଶୃଙ୍ଖଳା ଓ ଅରାଜକତା କଥା କୁହାଯାଉଚି, ସେଥିପାଇଁ ଆଂଶିକ ଭାବରେ ଅନ୍ତତଃ ଇଷ୍ଟ ଇଣ୍ଡିଆ କମ୍ପାନୀର ଅନୁସୃତ ନୀତି ଓ ଭାରତରେ ତାର ପ୍ରତିନିଧିମାନେ ଅବଶ୍ୟ ଦାୟୀ । ଏହା ମଧ୍ୟ ଧାରଣା କରାଯାଇପାରେ ଯେ ଇଂରେଜମାନଙ୍କର ଏହି ସାହାଯ୍ୟ ଓ ସହାନୁଭୂତି ବିନା, ଯାହା ଦେବାପାଇଁ ସେମାନେ ଏତେ ଆତୁର ହୋଇଉଠିଥିଲେ, ଆଧିପତ୍ୟ ନିମନ୍ତେ ସଂଗ୍ରାମର ଅବସାନ ପରେ, ଶାନ୍ତି ଓ ଶୃଙ୍ଖଳାର ଶାସନ ଭାରତରେ ପ୍ରତିଷ୍ଠିତ ହୋଇ ପାରିଥାନ୍ତା । ଅନ୍ୟ ଦେଶମାନଙ୍କରେ ଏପରି ଘଟିଚି ଏବଂ ତାର ପାଞ୍ଚ ହଜାର ବର୍ଷର ଇତିହାସରେ ଭାରତରେ ଏପରି ଘଟିଥିବା ବିରଳ ନୁହେଁ ।

## ୧୪. ରଣଜିତ ସିଂହ ଓ ଜୟ ସିଂହ

ବର୍ତ୍ତମାନ ସ୍ପଷ୍ଟ ବୁଝିହେଉଚି ଯେ ଭାରତ ବିଦେଶୀଙ୍କ ବିଜୟର ଶିକାର ହୋଇପଡ଼ିବାର କାରଣ ହେଉଚି, ତାର ଲୋକଙ୍କର କେତେକ ସାମାଜିକ ଓ ଶାସନତାନ୍ତ୍ରିକ ଅଭାବ ଓ ଅସୁବିଧା ଏବଂ ଇଂରେଜମାନଙ୍କର ଉନ୍ନତ ତଥା ଅଗ୍ରଗାମୀ ସାମାଜିକ ବ୍ୟବସ୍ଥା । ଉଭୟ ପକ୍ଷର ନେତାମାନଙ୍କ ମଧ୍ୟରେ ପାର୍ଥକ୍ୟ ସ୍ପଷ୍ଟ ଲକ୍ଷ୍ୟ କରିହୁଏ ଭାରତୀୟମାନେ ସେମାନଙ୍କର ସମସ୍ତ କିଛି କର୍ମନୈପୁଣ୍ୟ ସତ୍ତ୍ୱେ, ଚିନ୍ତା ଓ କାର୍ଯ୍ୟରେ ଗୋଟାଏ ସଙ୍କୀର୍ଣ୍ଣ ତଥା ସୀମିତ କ୍ଷେତ୍ର ଭିତରେ କାର୍ଯ୍ୟକାରୀ ହେଉଥିଲେ ଏବଂ ଅନ୍ୟତ୍ର କ'ଣ ଘଟୁଚି ଯେହେତୁ ଜାଣିପାରୁ ନଥିଲେ ପରିବର୍ତ୍ତିତ ପରିସ୍ଥିତି ସଙ୍ଗେ ନିଜକୁ ମନାଇ ଚଳିବାପାଇଁ ସେଥି ହେତୁରୁ ପାରୁନଥିଲେ । କେତେକ ବ୍ୟକ୍ତିବିଶେଷଙ୍କର କୌତୂହଳ ଯଦିଓ ଜାଗ୍ରତ ହେଉଥିଲା, ସେମାନଙ୍କୁ ଓ ଜନସାଧାରଣଙ୍କୁ ବନ୍ଦୀକରି ରଖିଥିବା ସେହି ଗାରଦ ଭିତରୁ ସେମାନେ ବାହାରକୁ ଆସିପାରୁନଥିଲେ । ଅପର ପକ୍ଷରେ, ଇଂରେଜ ଲୋକେ କିନ୍ତୁ ଅଧିକତର ସାଂସାରିକ ପ୍ରଜ୍ଞାବାନ୍ ଥିଲେ ଏବଂ ସେମାନଙ୍କ ଦେଶରେ ତଥା ଫ୍ରାନ୍ସରେ ଓ ଆମେରିକାରେ ଯେଉଁସବୁ ଯୁଗାନ୍ତକାରୀ ଘଟଣାମାନ ଘଟିଯାଉଥିଲା, ସେଥିରେ ବିଚଳିତ ହୋଇ ସେମାନେ ଚିନ୍ତା କରିବାକୁ ବାଧ୍ୟ ହେଉଥିଲେ । ଦୁଇଟି ମହାନ୍ ବିପ୍ଳବ ଘଟିସାରିଥିଲା । ଫରାସୀ ବିପ୍ଳବବାହିନୀ ତଥା ନେପୋଲିୟନଙ୍କ ଯୁଦ୍ଧ ଅଭିଯାନ ରଣନୀତିର ରୂପାନ୍ତର ଘଟାଇସାରିଥିଲା । ଭାରତକୁ ଆସିବା ବାଟରେ, ସେ କେତେ ଅଜ୍ଞାନ ହେଉ-ପଛେ ଜଣେ ଇଂରେଜ ପୃଥିବୀର ବିଭିନ୍ନ ଅଂଶ ଦେଖିବାର ସୁଯୋଗ ପାଉଥିଲା । ଇଂଲଣ୍ଡରେ ମଧ୍ୟ ସେ ସମୟରେ ଯଦିଓ ତାର ଦୂରପ୍ରସାରୀ ତାତ୍ପର୍ଯ୍ୟ ଖୁବ୍ କମ୍ ଲୋକ ଉପଲବ୍ଧି କରିପାରିଥିଲେ, ଯୁଗାନ୍ତକାରୀ ଶିଳ୍ପ-ବିପ୍ଳବର ଅଭ୍ୟୁତ୍ଥାନ ଘୋଷଣା କରି, ମହାନ୍ ଆବିଷ୍କାରମାନ କରାଯାଉଥିଲା; କିନ୍ତୁ

ପରିବର୍ତ୍ତନ ପଛର ସେହି ତତ୍ତ୍ୱ ଶକ୍ତିଶାଳୀ ଭାବରେ କାର୍ଯ୍ୟ କରି ଲୋକଙ୍କୁ ପ୍ରଭାବିତ କରୁଥିଲା । ଏ ସବୁ ପଛରେ ଥିଲା ଗୋଟାଏ ପ୍ରସାରଶୀଳ ପ୍ରାଣଶକ୍ତି, ଯାହା ଇଂରେଜମାନଙ୍କୁ ଦୂର ଦେଶମାନଙ୍କୁ ପ୍ରେରଣ କଲା ।

ଯେଉଁମାନେ ଭାରତର ଇତିହାସ ଲିପିବଦ୍ଧ କରିଥିଲେ, ସେମାନେ ସେଥିରେ ଏତେ ବହୁଳ ଭାବରେ ଯୁଦ୍ଧ ଓ ବିଶୃଙ୍ଖଳା ଏବଂ ସେ ସମୟର ରାଜନୈତିକ ତଥା ସାମରିକ ନାୟକ-ମାନଙ୍କ ସମ୍ପର୍କରେ ଲେଖିଚନ୍ତି ଯେ, ସେ ସମୟରେ ଭାରତର ମନରେ କି ପ୍ରକାର ପ୍ରତିକ୍ରିୟା ହେଉଥିଲା, ସାମାଜିକ ଓ ଅର୍ଥନୈତିକ ପ୍ରକ୍ରିୟା କିପରି ଚାଲୁଥିଲା, ସେ ବିଷୟରେ ଆମକୁ କିଛି କହିନାହାନ୍ତି କହିଲେ ଚଳେ । ଏହି ପୀନ ଦଲିଲରୁ କେବେ କେଉଁଠି କେତେଟା ଆକସ୍ମିକ ଝଲକ କେବଳ ଆଖି ଆଗରେ ପଡ଼େ । ଯେପରି ଜଣାଯାଏ, ଆତଙ୍କର ସେହି କାଳରେ ଲୋକେ ଦଳିତ ଓ ଅବସାଦଗ୍ରସ୍ତ ହୋଇପଡ଼ିଥିଲେ ଏବଂ ହତବୁଦ୍ଧି ଓ କୌତୂହଳହୀନ, ଗୋଟାଏ ନିଦାରୁଣ ତଥା ହିଂସାପର ବିଧିର ନିର୍ବନ୍ଧ ନିକଟରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ସମର୍ପିତ କରିଦେଇଥିଲେ । ସେତେବେଳେ ବି ବହୁ ବ୍ୟକ୍ତି ଅବଶ୍ୟ ଥିବେ, ଯେଉଁମାନେ ନୂତନ ଶକ୍ତିର କାର୍ଯ୍ୟ ସମ୍ପର୍କରେ ଜାଣିବାପାଇଁ କୌତୂହଳୀ ହୋଇଥିଲେ ଓ ଉଦ୍ୟମ ବି କରିଥିଲେ; କିନ୍ତୁ ଘଟଣାବଳୀର ଜୁଆରରେ ସେମାନେ ଅଭିଭୂତ ହୋଇ ପଡ଼ିଥିଲେ ଓ ପ୍ରଭାବିତ କରିବା ଅବସ୍ଥାରେ ନଥିଲେ ।

ସେମାନଙ୍କ ଭିତରୁ ଜଣେ, କୌତୂହଳ ଯାହାଙ୍କର ପୂର୍ଣ୍ଣମାତ୍ରାରେ ଥିଲା, ହେଉଚନ୍ତି ମହାରାଜା ରଣଜିତ୍ ସିଂହ—ଜଣେ ଜାଠ ଶିଖ୍, ଯିଏ ପଞ୍ଜାବରେ ଗୋଟାଏ ରାଜ୍ୟ ନିର୍ମାଣ କରିପାରିଥିଲେ ଏବଂ ପରବର୍ତ୍ତୀ କାଳରେ ତାହା କାଶ୍ମୀର ଓ ସୀମାନ୍ତ ପ୍ରଦେଶ ପର୍ଯ୍ୟନ୍ତ ବିସ୍ତୃତ ହୋଇପାରିଥିଲା । ତାଙ୍କର ଭୁଲଭ୍ରାନ୍ତି ଓ କେତେ ଦୁର୍ଗୁଣ ବି ଥିଲା; ତଥାପି ସେ ଜଣେ ଅଦ୍‌ଭୁତ ଧରଣର ଲୋକ ଥିଲେ । ଯେକୋମୋଁ ନାମକ ଜଣେ ଫରାସୀ ବ୍ୟକ୍ତି ତାଙ୍କୁ 'ଉଗ୍ର ପରାକ୍ରମଶାଳୀ' ବୋଲି ଅଭିହିତ କରିଚନ୍ତି ଏବଂ କହିଚନ୍ତି ଯେ "ସେ ହେଉଚନ୍ତି ପ୍ରାୟ ଏକମାତ୍ର ଭାରତୀୟ ଯାହାଙ୍କ ଭିତରେ ମୁଁ ଜିଜ୍ଞାସାର ଆଲୋଡ଼ନ ଦେଖିବାକୁ ପାଇଲି ଏବଂ ସେହି ଜିଜ୍ଞାସା ସମଗ୍ର ଜାତିର ଉଦାସୀନତା ଓ ଅବସାଦକୁ ଆବୃତକରି ରହିଚି ।" "ତାଙ୍କର ଆଳାପ ଗୋଟାଏ ଦୁଃସ୍ୱପ୍ନ ଭଳି ।"(୧) ଏକଥା ମନେ ରଖିବାକୁ ପଡ଼ିବ ଯେ ସ୍ୱଭାବତଃ ଭାରତୀୟମାନେ ବଡ଼ ଗମ୍ଭୀର । ସେମାନଙ୍କ ଭିତରେ ଯେଉଁମାନେ ବୁଦ୍ଧିଜୀବୀ, ଏହି ଗାମ୍ଭୀର୍ଯ୍ୟ ସେମାନଙ୍କଠାରେ ବେଶି ମାତ୍ରାରେ ଦେଖାଯାଏ । ଅତଏବ ଏହି ବୁଦ୍ଧିଜୀବୀଙ୍କ ଭିତରୁ କେହିହେଲେ ଭାରତରେ ଯେଉଁ ସାମରିକ ନେତା ଓ ଅଦ୍‌ଭୁତକର୍ମୀ ବ୍ୟକ୍ତିମାନଙ୍କ କାର୍ଯ୍ୟ-କଳାପ ସେମାନଙ୍କ ମନରେ ଉତ୍କଟ ଘୃଣାଭାବ ଜାଗ୍ରତ କରୁଥିଲା, ସେମାନଙ୍କ ସଙ୍ଗେ ସମ୍ମିଳିତ ହେବାପାଇଁ କେବେହେଲେ ଚାହିଁନଥାନ୍ତେ । ସୁତରାଂ ବୈଦେଶିକମାନଙ୍କ ନିକଟରୁ ସମ୍ମାନଜନକ ଦୂରତାରେ ରହି ଏହି ବୁଦ୍ଧିଜୀବୀମାନେ ନିଜର ଆତ୍ମସମ୍ମାନ

(୧) "ଦି ମେକିଂ ଅଫ୍ ଇଣ୍ଡିଆନ୍ ପ୍ରିନ୍‌ସେସ୍"—ଏଡ଼ୱାର୍ଡ଼୍ ଥମ୍ପସନ୍, ପୃ. ୧୬୮

ରକ୍ଷା କରିବାର ପ୍ରୟାସ କରିଥିଲେ ଏବଂ ପରିସ୍ଥିତିର ବାଧ୍ୟବାଧକତାରେ କେବଳ ସେମାନଙ୍କ ସଙ୍ଗେ ଦେଖାସାକ୍ଷାତ କରୁଥିଲେ । ଯେଉଁ ଭାରତୀୟମାନଙ୍କୁ ଇଂରେଜମାନେ ଓ ଅନ୍ୟାନ୍ୟ ବିଦେଶୀମାନେ ସାଧାରଣତଃ ଭେଟୁଥିଲେ, ସେମାନେ ହେଉଚନ୍ତି ଦାସମନୋଭାବାପନ୍ନ ଓ ସୁବିଧାବାଦୀ ଶ୍ରେଣୀର ଲୋକ । ଏମାନେ ଦେଶୀୟ ଦରବାରରେ, ଷଡ଼ଯନ୍ତ୍ରକାରୀ ଓ ଦୁର୍ନୀତିପରାୟଣ ମନ୍ତ୍ରୀ ତଥା ବିଦେଶୀଙ୍କୁ ଘେରିରହୁଥିଲେ ।

ରଣଜିତ୍ ସିଂହ ଜ୍ଞାନାଲୋକପ୍ରାପ୍ତି ଦୃଷ୍ଟିରୁ କେବଳ ଯେ କୌତୂହଳପ୍ରବଣ ଓ ଜିଜ୍ଞାସୁ ଥିଲେ ତାହା ନୁହେଁ ବରଂ ତାଙ୍କର ଅନ୍ତର ଅପୂର୍ବ ମାନବପ୍ରୀତିରେ ପୂର୍ଣ୍ଣ ଥିଲା ଏବଂ ତାହା ମଧ୍ୟ ସେପରି ଏକ ସମୟରେ ଯେବେ ଭାରତ ତଥା ସମଗ୍ର ବିଶ୍ୱ ଅମାନୁଷିକତା ଓ କ୍ରୂରତାରେ ବିକ୍ଷୁବ୍ଧ ହୋଇଉଠିଥିଲା । ଗୋଟାଏ ରାଜ୍ୟ ଓ ଗୋଟାଏ ଶକ୍ତିଶାଳୀ ସେନାବାହିନୀ ଗଢ଼ି-ପାରିଥିଲେ ମଧ୍ୟ ସେ ରକ୍ତପାତକୁ ଘୃଣା କରୁଥିଲେ । ପ୍ରିନ୍‌ସେପ୍ କହନ୍ତି,"ଏତେ କମ୍ ଲୋକ କ୍ଷୟରେ ଏତେବଡ଼ ଏକ ସାମ୍ରାଜ୍ୟ ଜଣେ ବ୍ୟକ୍ତିଦ୍ୱାରା ପ୍ରତିଷ୍ଠିତ ହୋଇଥିବାର ଦୃଷ୍ଟାନ୍ତ ଆଉ ନାହିଁ କହିଲେ ଚଳେ ।" ଯେଉଁ ସମୟରେ ଇଂଲଣ୍ଡରେ ସାଧାରଣ ଚୌର୍ଯ୍ୟ ଅପରାଧ ପାଇଁ ମୃତ୍ୟୁଦଣ୍ଡବିଧାନ ଥିଲା, ରଣଜିତ୍ ସିଂହ ତାଙ୍କ ରାଜ୍ୟରେ ମୃତ୍ୟୁଦଣ୍ଡ ଉଠାଇ ଦେଇଥିଲେ । କୌଣସି ନାରକୀୟ ଅପରାଧ ପ୍ରତି ମଧ୍ୟ ତାହା ପ୍ରଯୁଜ୍ୟ ହେଉନଥିଲା । ରଣଜିତ୍ ସିଂହଙ୍କ ସଙ୍ଗେ ସାକ୍ଷାତ କରିସାରି ଅସ୍‌ବୋର୍ଣ୍ଣ ଲେଖିଚନ୍ତି,"ପ୍ରକୃତ ଯୁଦ୍ଧକ୍ଷେତ୍ର ବିନା ଅନ୍ୟ କେଉଁଠି ସେ କାହାର ଜୀବନ ହରଣ କରିଥିବା ଶୁଣାଯାଇନି ଯଦିଓ, ତାଙ୍କର ଜୀବନ ନେବାପାଇଁ ଏକାଧିକବାର ଉଦ୍ୟମ ହୋଇଚି । ଅଧିକତର ସଭ୍ୟ ବାଦଶାହମାନଙ୍କ ରାଜ୍ୟ ସଙ୍ଗେ ତୁଳନା କରି ଦେଖିଲେ ନିର୍ଦ୍ଦୟତା ଓ ଦମନଲୀଳା ଦିଗରୁ ରଣଜିତ୍ ସିଂହଙ୍କ ରାଜ୍ୟ ଅଧିକତର ମୁକ୍ତ ଓ ଶାନ୍ତିପୂର୍ଣ୍ଣ ବୋଧ ହେବ ।"(୧)

ଆଉ ଜଣେ ଭାରତୀୟ ରାଜନୀତିଜ୍ଞ, ଭିନ୍ନ କାଟର ଲୋକ ଅବଶ୍ୟ, ହେଉଚନ୍ତି ଜୟପୁରର (ରାଜପୁତାନା) ସବାଇ ଜୟସିଂହ । ଯେଉଁ ସମୟର ଚର୍ଚ୍ଚା ଆମେ କରୁଥାଉଁ ସେ ତାର ସାମାନ୍ୟ ପୂର୍ବର ଲୋକ ଓ ଖ୍ରୀ: ୧୭୪୩ରେ ତାଙ୍କର ମୃତ୍ୟୁ ଘଟିଥିଲା । ଔରଙ୍ଗଜେବଙ୍କ ମୃତ୍ୟୁ ପରେ ମୋଗଲ ସାମ୍ରାଜ୍ୟରେ ଯେଉଁ ବିଚ୍ଛିନ୍ନତା ଦେଖାଦେଲା, ସେହି ସମୟରେ ସେ ଜୀବିତ ଥିଲେ । ଗୋଟାଏ ପରେ ଗୋଟାଏ, ଅଣନିଃଶ୍ୱାସୀ ଭାବରେ, ଯେଉଁସବୁ ପରିବର୍ତ୍ତନ ଘଟିଗଲା, ସେଥିରୁ ଉଦ୍ଧରିବା ପାଇଁ ତାଙ୍କଠାରେ ଚତୁରତା ଓ ସୁଯୋଗ-ସୁବିଧାରୁ ଲାଭ ଉଠାଇବାର ଯୋଗ୍ୟତା ଯଥେଷ୍ଟ ପରିମାଣରେ ଥିଲା । ଦିଲ୍ଲୀ ସମ୍ରାଟଙ୍କ ସାର୍ବଭୌମତ୍ୱ ସେ ସ୍ୱୀକାର କରିଥିଲେ; କିନ୍ତୁ ଯେତେବେଳେ ସେ ଦେଖିଲେ ଯେ ମରାଠାମାନେ ମାଡ଼ିଆସୁଚନ୍ତି, ଆଉ ପ୍ରତିରୋଧ କରିବାପାଇଁ ଆବଶ୍ୟକୀୟ ଶକ୍ତି ତାଙ୍କ ପାଖରେ ନାହିଁ, ସମ୍ରାଟଙ୍କ ପକ୍ଷରୁ ସେ ସେମାନଙ୍କ ସଙ୍ଗେ ଚୁକ୍ତିକରି ନେଲେ । କିନ୍ତୁ ଏଠାରେ ତାଙ୍କର ସାମରିକ କିମ୍ବା ରାଜନୈତିକ ଜୀବନ ବିଷୟରେ ଚର୍ଚ୍ଚା କରିବାର ଆଗ୍ରହ ମୋର ନାହିଁ । ସେ ଥିଲେ ଜଣେ ଦୁଃସାହସିକ

(୧) ଏଡ୍‌ୱାର୍ଡ୍ ଥମ୍ପସନ, 'ଦ ମେକିଂ ଅଫ୍ ଇଣ୍ଡିଆନ୍ ପ୍ରିନ୍‌ସେସ୍', ପୃ. ୧୫୭-୧୫୮

ଯୋଦ୍ଧା ଓ ମାର୍ଜିତ ରୁଚିସମ୍ପନ୍ନ କୂଟନୀତିଜ୍ଞ; କିନ୍ତୁ ଏ ସମସ୍ତ କିଛି ଅପେକ୍ଷା ସେ ଅଧିକ ବଡ଼ ଥିଲେ । ସେ ଥିଲେ ଏକାଧାରରେ ଜଣେ ଗଣିତଜ୍ଞ, ଜ୍ୟୋତିର୍ବିଜ୍ଞାନବିତ୍, ବୈଜ୍ଞାନିକ ଓ ନଗରଯୋଜନାକାରୀ । ଇତିହାସ ଅଧ୍ୟୟନରେ ମଧ୍ୟ ତାଙ୍କର ବିଶେଷ ଆଗ୍ରହ ଥିଲା ।

ଜୟପୁର, ଦିଲ୍ଲୀ, ଉଜ୍ଜୟିନୀ, ବାରାଣସୀ ଓ ମଥୁରାରେ ଜୟସିଂହ ଖୁବ୍ ବଡ଼ ବଡ଼ ମାନମନ୍ଦିର ନିର୍ମାଣ କରିଥିଲେ । ପର୍ତ୍ତୁଗାଲରେ ଜ୍ୟୋତିର୍ବିଦ୍ୟାରେ ଉନ୍ନତି କରାଯାଇଛି ବୋଲି ପର୍ତ୍ତୁଗୀଜ ପାଦ୍ରୀମାନଙ୍କଠାରୁ ଜାଣିବାକୁ ପାଇ, ସେମାନଙ୍କ ଭିତରୁ ଜଣକ ସଙ୍ଗେ ନିଜର କେତେ ଲୋକଙ୍କୁ ପର୍ତ୍ତୁଗାଲ ରାଜା ଇମାନୁଏଲଙ୍କ ଦରବାରକୁ ସେ ପଠାଇଥିଲେ । ଇମାନୁଏଲ୍ ତାଙ୍କର ଦୂତ ଜେଭିଅର୍ ଡି ସିଲ୍‌ଭାଙ୍କ ହାତରେ ଡି. ଲା. ହାୟରଙ୍କ ସାରଣୀ ଜୟସିଂହଙ୍କ ନିକଟକୁ ପଠାଇଥିଲେ । ତାଙ୍କର ନିଜର ଓ ହାୟରଙ୍କ ସାରଣୀ ତୁଳନା କରି ଦେଖି ଜୟସିଂହ ଜାଣିପାରିଲେ ଯେ ପର୍ତ୍ତୁଗୀଜ୍ ସାରଣୀ କେତେକ ଭୁଲତ୍ରୁଟି ଯୋଗୁଁ ପ୍ରାମାଣିକ ନୁହେଁ । ସେଥିଲାଗି ପର୍ତ୍ତୁଗାଲରେ ବ୍ୟବହୃତ ଯନ୍ତ୍ରର 'ନିକୃଷ୍ଟ ବ୍ୟାସ' ଦାୟୀ ବୋଲି ସେ ଦର୍ଶାଇଥିଲେ ।

ଭାରତୀୟ ଗଣିତଶାସ୍ତ୍ରରେ ଜୟସିଂହ ବ୍ୟୁତ୍ପତ୍ତି ଲାଭ କରିଥିଲେ । ଏ ସମ୍ପର୍କରେ ଗ୍ରୀସ୍‌ର ପୁରାତନ ନିବନ୍ଧାବଳୀ ସେ ଅଧ୍ୟୟନ କରିଥିଲେ ଓ ୟୁରୋପରେ ସେ ଦିଗରେ ଘଟିଥିବା ଉନ୍ନତି ସମ୍ପର୍କରେ ମଧ୍ୟ ଭଲଭାବରେ ଜ୍ଞାନ ଥିଲେ । ଇକ୍ଲିଡ୍ ପ୍ରମୁଖ ଗ୍ରୀକ୍ ବିଦ୍ୱାନମାନଙ୍କ କେତେକ ଗ୍ରନ୍ଥ ଏବଂ ସମ ଓ ଗୋଲୀୟ ତ୍ରିକୋଣମିତି, ସମବର୍ଗମାନଙ୍କର ନିର୍ମାଣ ଓ ବ୍ୟବହାର ଉପରେ ୟୁରୋପରେ ପ୍ରଣୀତ ଗ୍ରନ୍ଥମାନ ସେ ସଂସ୍କୃତଭାଷାରେ ଅନୁବାଦ କରାଇ-ଥିଲେ । ଏ ସବୁ ବ୍ୟତୀତ ଜ୍ୟୋତିର୍ବିଦ୍ୟା ଉପରେ କେତେକ ଆରବୀୟ ଗ୍ରନ୍ଥ ମଧ୍ୟ ସେ ଅନୁବାଦ କରାଇଥିଲେ ।

ଜୟପୁର ନଗରୀ ତାଙ୍କଦ୍ୱାରା ସ୍ଥାପିତ ହୋଇଥିଲା । ନଗରନିର୍ମାଣ ଯୋଜନାରେ ବିଶେଷ ଆଗ୍ରହୀ, ସେ ସମସାମୟିକ ବହୁ ୟୁରୋପୀୟ ନଗରୀର ନକ୍ସା ସଂଗ୍ରହ କରିଥିଲେ ଓ ତାର ପରେ ତାଙ୍କର ନିଜର ନକ୍ସା ତିଆରି କରିଥିଲେ । ଜୟସିଂହ ସଂଗ୍ରହ କରିଥିବା ୟୁରୋପୀୟ ନଗରୀମାନଙ୍କ ନକ୍ସାସବୁ ଜୟପୁର ଯାଦୁଘରେ ସଂରକ୍ଷଣ କରାଯାଇଛି । ଜୟପୁର ନଗରୀ ଏତେ ସୁନ୍ଦର ଭାବରେ ଓ ବିବେଚନା ସହକାରେ ନିର୍ମାଣ କରାଯାଇଛି ଯେ ଆଜି ବି ତାହା ନଗରନିର୍ମାଣର ଆଦର୍ଶ ବିବେଚିତ ହେଉଛି ।

ଅପେକ୍ଷାକୃତ ଏକ ସ୍ୱଳ୍ପ ଜୀବନକାଳ ମଧ୍ୟରେ ଏବଂ ବିରାମହୀନ ଯୁଦ୍ଧ ତଥା ନାନାବିଧ ଷଡ଼ଯନ୍ତ୍ର ମଧ୍ୟରେ, ଯେଉଁଥିରେ ବହୁବାର ସେ ନିଜେ ବି ଜଡ଼ିତ ହୋଇପଡ଼ିଥିଲେ, ଜୟସିଂହ ବହୁତ କିଛି କରି ଆମକୁ ଦେଇଯାଇଛନ୍ତି । ଜୟସିଂହଙ୍କ ମୃତ୍ୟୁର ମାତ୍ର ଚାରିବର୍ଷ ପୂର୍ବରୁ ନାଦିର ଶାହ ଭାରତ ଆକ୍ରମଣ କରିଥିଲେ । ଯେକୌଣସି ସ୍ଥାନରେ ଓ ଯେକୌଣସି ସମୟରେ ହୋଇଲେ ଜୟସିଂହଙ୍କ ଅସାଧାରଣ ବ୍ୟକ୍ତିତ୍ୱ ଅପ୍ରକାଶ୍ୟ ରହିପାରିନଥାନ୍ତା । ରାଜପୁତାନାର ଗୀବ୍ର ସାମନ୍ତବାଦୀ ବାତାବରଣ ଭିତରେ ଏବଂ ଭାରତୀୟ ଇତିହାସର ଅନ୍ୟତମ ଅନ୍ଧକାର ପର୍ଯ୍ୟାୟରେ, ଯେବେ ବିଚ୍ଛିନ୍ନତା, ସଂଗ୍ରାମ ଓ ଉଦ୍‌ବେଳନ ସର୍ବତ୍ର ପୂରିରହିଥିଲା; ଜୟସିଂହ

ସେ ଜଣେ ବୈଜ୍ଞାନିକ ଭାବରେ ନିଜକୁ କାର୍ଯ୍ୟକାରୀ କରିପାରିଥିଲେ ବାସ୍ତବିକ୍ ତାତ୍ପର୍ଯ୍ୟ-ପୂର୍ଣ୍ଣ । ଏଥିରୁ ପ୍ରମାଣିତ ହେଉଛି ଯେ ଭାରତରେ ବୈଜ୍ଞାନିକ ଜିଜ୍ଞାସାର ଉତ୍ସ ଶୁଷ୍କ ହୋଇନଥିଲା ଏବଂ ଗୋଟାଏ କିଛି କିଣ୍ବ ଅବଶ୍ୟ କାର୍ଯ୍ୟ କରୁଥିଲା; ସୁଯୋଗ ପାଇଥିଲେ ଯାହା ନିଶ୍ଚିତ ଭାବରେ ଅଭିଳଷିତ ଫଳପ୍ରଦାନ କରିଥାନ୍ତା । ଜୟସିଂହ ଗୋଟାଏ ପ୍ରତିକୂଳ ତଥା ଅବୋଧ ପରିବେଷ୍ଟନୀର ଜଣେ ନିଃସଙ୍ଗ ଭାବୁକ କିମ୍ବା ଯୁଗ ସଙ୍ଗେ ସାମଞ୍ଜସ୍ୟହୀନ କୌଣସି ବିଚିତ୍ର ବ୍ୟକ୍ତି ନଥିଲେ । ସେ ଥିଲେ ତାଙ୍କର ଯୁଗର ସୃଷ୍ଟି ଏବଂ ତାଙ୍କ ସଙ୍ଗେ କାର୍ଯ୍ୟ କରିବା ପାଇଁ ସେ ବହୁ ବୈଜ୍ଞାନିକ କର୍ମୀଙ୍କୁ ଏକତ୍ର କରିଥିଲେ । ସେମାନଙ୍କ ଭିତରୁ କେତେଜଣଙ୍କୁ ପର୍ତ୍ତୁଗାଲକୁ ଭାରତୀୟ ଦୂତ କରି ପଠାଇଥିଲେ । ସାମାଜିକ ସ୍ଥିତିଶୀଳତା କିମ୍ବା ଆନ୍ତର-ବାହ୍ୟର ତାଙ୍କୁ ଏ ପ୍ରକାର କାର୍ଯ୍ୟରୁ ବିରତ କରିପାରିନଥିଲା । ଯେପରି ଜଣାଯାଉଛି, ତାତ୍ତ୍ୱିକ ଓ ବ୍ୟାବହାରିକ ଉଭୟ ଦିଗରୁ ସେ ସମୟର ଭାରତରେ ବୈଜ୍ଞାନିକ କର୍ମ ନିମନ୍ତେ ପ୍ରଚୁର ସମ୍ବଳ ରହିଥିଲା; କିନ୍ତୁ ସେସବୁର ବିକାଶ ପାଇଁ ଅବସର ମିଳିନଥିଲା । ସେହି ଅବସର ବା ସୁଯୋଗ ବହୁକାଳ ପର୍ଯ୍ୟନ୍ତ ଆସିନଥିଲା । ଗଣ୍ଡଗୋଳ ଓ ବିଶୃଙ୍ଖଳା ଶାନ୍ତହେବା ପରେ ମଧ୍ୟ ଅଧିକାର ବା କ୍ଷମତାରେ ଥିବା ଲୋକେ ଦେଶରେ ବୈଜ୍ଞାନିକ କର୍ମକୁ ଉତ୍ସାହିତ କରିନଥିଲେ ।

## ୧୬. ଭାରତର ଆର୍ଥିକ ପୃଷ୍ଠଭୂମି : ଦୁଇଟି ଇଂଲଣ୍ଡ

ଭାରତରେ ଏହିଭଳି ସୁଦୂରପ୍ରସାରୀ ରାଜନୈତିକ ପରିବର୍ତ୍ତନ ଘଟୁଥିଲାବେଳେ ତାର ଆର୍ଥିକ ପୃଷ୍ଠଭୂମି କଅଣ ଥିଲା ? ଡ. ଅନ୍‌ଷ୍ଟେ ଲେଖିଛନ୍ତି, "ଅଷ୍ଟାଦଶ ଶତକ ପର୍ଯ୍ୟନ୍ତ ଭାରତର ଉତ୍ପାଦନ ପ୍ରଣାଳୀ ତଥା ଔଦ୍ୟୋଗିକ ଓ ସୌଦାଗରୀ ସଙ୍ଗଠନ ସେ ସମୟର ବିଶ୍ୱରେ, ଯେକୌଣସି ଦେଶରେ ପ୍ରଚଳିତ ବ୍ୟବସ୍ଥା ସଙ୍ଗେ ତୁଳନାରେ ସମ୍ମୁଖୀନ ହୋଇ-ପାରେ ।" ଗୋଟାଏ ସମୁନ୍ନତ ଉତ୍ପାଦନକାରୀ ଦେଶ ଭାବରେ ୟୁରୋପ ତଥା ଅନ୍ୟାନ୍ୟ ଦେଶମାନଙ୍କୁ ଭାରତ ତାର ତିଆରି ମାଲ ରପ୍ତାନୀ କରୁଥିଲା । ତାର ମହାଜନୀ ବ୍ୟବସ୍ଥା ଥିଲା ଦେଶସାରା ସୁସଙ୍ଗଠିତ ଓ ସୁପରିଚାଳିତ ଏବଂ ବଡ଼ ବଡ଼ ବ୍ୟବସାୟ ପ୍ରତିଷ୍ଠାନ ପକ୍ଷରୁ ଦିଆଯିବା ହୁଣ୍ଡି ଭାରତରେ ସବୁଠି କେବଳ ନୁହେଁ ଇରାନ୍, କାବୁଲ୍, ହୀରାଟ, ତାସ୍‌କେଣ୍ଟ ଓ ମଧ୍ୟ-ଏସିଆର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ସମ୍ମାନିତ ହେଉଥିଲା । ବ୍ୟାବସାୟିକ ମୂଳଧନର ଅଭ୍ୟୁଦୟ ଘଟିସାରିଥିଲା ଏବଂ ଗୁମାସ୍ତା, ମାଲ ପହଞ୍ଚାଇବା ଲୋକ, ଦଲାଲ ଓ ମଧ୍ୟବର୍ତ୍ତୀ ବେପାରୀଙ୍କୁ ନେଇ ଗୋଟାଏ ସୁବିସ୍ତୃତ ବ୍ୟବସ୍ଥା ଚାଲିଥିଲା । ଜାହାଜ-ନିର୍ମାଣ ଶିଳ୍ପ ଥିଲା ଖୁବ୍ ସମୃଦ୍ଧ ଏବଂ ନେପୋଲିୟନଙ୍କ ଅଭିଯାନର ଯୁଗରେ ଜଣେ ଇଂରେଜ ଏଡ୍‌ମିରାଲ୍‌ଙ୍କ ଫ୍ଲାଗ୍‌ସିପ୍ ଭାରତର ଏକ ସଂସ୍ଥାଦ୍ୱାରା ନିର୍ମିତ ହୋଇଥିଲା । ଶିଳ୍ପ, ବାଣିଜ୍ୟ ଓ ମହାଜନୀ କାରବାରରେ ଭାରତ ଶିଳ୍ପ-ବିପ୍ଳବ ପୂର୍ବବର୍ତ୍ତୀ ଯେକୌଣସି ଦେଶ ଭଳି ବସ୍ତୁତଃ ଅଗ୍ରଗତି କରିଥିଲା । ଦୀର୍ଘକାଳ ଧରି ସ୍ଥାୟୀ ତଥା ଶାନ୍ତିପୂର୍ଣ୍ଣ ଶାସନ ଚାଲି ନଥିଲେ ଏବଂ ଯାତାୟାତ ଓ ମାଲ ସରବରାହ ନିମନ୍ତେ ରାଜପଥଗୁଡ଼ିକ ନିରାପଦ ହୋଇନଥିଲେ ଏ ପ୍ରକାର ବିକାଶ

ସାଧିତ ହୋଇପାରି ନଥାନ୍ତା ।

ବିଦେଶୀ ଅଦ୍‌ଭୁତକର୍ମୀମାନେ ମୂଳତଃ ଭାରତକୁ ଆସିଲେ ତାର ତିଆରି ମାଲର ଉତ୍କୃଷ୍ଟତା ଲାଗି । ୟୁରୋପୀୟ ବଜାରରେ ଭାରତୀୟ ମାଲର ବିଶେଷ ଚାହିଦା ଥିଲା । ପ୍ରଥମାବସ୍ଥାରେ ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀର ପ୍ରଧାନ ବ୍ୟବସାୟ ଥିଲା ଭାରତୀୟ ମାଲ ନେଇ ୟୁରୋପରେ ବଜାର କରିବା ଏବଂ ସେଥିରୁ ସେମାନେ ପ୍ରଚୁର ଲାଭ ପାଉଥିଲେ । ଭାରତର ଉତ୍ପାଦନ-ପ୍ରଣାଳୀ ଏତେ ସୁବ୍ୟବସ୍ଥିତ ଓ ସୁସଙ୍ଗଠିତ ଥିଲା ଏବଂ ତାର କାରିଗର ଓ ହସ୍ତଶିଳ୍ପୀମାନେ ଏତେ ନିପୁଣ ଥିଲେ ଯେ ଇଂଲଣ୍ଡରେ ନୂତନ କରି ଚାଲୁହୋଇଥିବା ଅଧିକତର ଉନ୍ନତ ଉତ୍ପାଦନକୌଶଳ ସଙ୍ଗେ ମଧ୍ୟ ଖୁବ୍ ସଫଳ ଭାବରେ ପ୍ରତିଯୋଗିତା କରିପାରିଥିଲା । ଇଂଲଣ୍ଡରେ ବଡ଼ ବଡ଼ ଯନ୍ତ୍ରର ଯୁଗ ଆରମ୍ଭ ହୋଇଥିଲେ ମଧ୍ୟ ଭାରତୀୟ ମାଲ ବରାବର ଇଂଲଣ୍ଡ ବଜାରରେ ଭର୍ତ୍ତି ହେଉଥିଲା ଏବଂ ଖୁବ୍ ଚଢ଼ା ମାସୁଲ ଓ କେତେକ କ୍ଷେତ୍ରରେ ସମ୍ପୂର୍ଣ୍ଣ ନିବାରଣ ଆଦେଶଦ୍ୱାରା କେବଳ ତାହା ବନ୍ଦ କରାଗଲା ।

ପଲାସୀ ଯୁଦ୍ଧ ଘଟିଥିବା ବର୍ଷରେ ( ଖ୍ରୀ: ୧୭୫୭ ) ବଙ୍ଗଳାର ଅନ୍ୟତମ ସହର ମୁର୍ଶିଦାବାଦର ବର୍ଣ୍ଣନା ପ୍ରସଙ୍ଗରେ କ୍ଲାଇବ୍ କହିଥିଲେ : "ଏହି ସହର ଲଣ୍ଡନ ସହର ଭଳି ସମାନ ଭାବରେ ବିଶାଳ, ଜନବହୁଳ ଓ ବିତ୍ତଶାଳୀ । ପ୍ରଭେଦ କେବଳ ଏତିକି ଯେ ମୁର୍ଶିଦାବାଦରେ କେତେକ ବ୍ୟକ୍ତି ଅଛନ୍ତି, ଯେଉଁମାନେ ଅକଳନ ଧନସମ୍ପଦର ଅଧିକାରୀ । ଏମାନଙ୍କ ସଙ୍ଗେ ଲଣ୍ଡନର କୌଣସି ଧନବାନ୍ ଲୋକର ତୁଳନା ହୋଇନପାରେ ।" ପୂର୍ବବଙ୍ଗର ଢାକା ସହର ମୁସ୍‌ଲିନ୍ ଅର୍ଥାତ୍ ସୂକ୍ଷ୍ମ ବସନ ନିମନ୍ତେ ପ୍ରସିଦ୍ଧ ଥିଲା । ଏହି ଦୁଇଟି ମହତ୍ତ୍ୱପୂର୍ଣ୍ଣ ସହର ଭାରତୀୟ ପରିଧିର ନିକଟରେ ଅବସ୍ଥିତ ଥିଲା । ଏହି ବିଶାଳ ଦେଶର ସବୁଆଡ଼େ ବଡ଼ ବଡ଼ ନଗରୀ, ବହୁସଂଖ୍ୟକ ଉତ୍ପାଦନ କ୍ଷେତ୍ର ଓ ବାଣିଜ୍ୟ କେନ୍ଦ୍ରମାନ ରହିଥିଲା ଏବଂ ଖବର ଓ ବଜାର ଦର ଗୋଟାଏ ସ୍ଥାନରୁ ଆଉ ଗୋଟାଏ ସ୍ଥାନକୁ ତୁରନ୍ତ ପହଞ୍ଚିବା ପାଇଁ ଏକ ନିପୁଣ ବ୍ୟବସ୍ଥା କାର୍ଯ୍ୟକାରୀ ହେଉଥିଲା । ବଡ଼ ବଡ଼ ବ୍ୟବସାୟୀମାନେ ବଜାରଗତିର ଖବର ଏପରିକି ସେ ସମୟରେ ଲାଗିଥିବା ଏକାଧିକ ସ୍ଥାନର ଲଢ଼େଇ ଖବର, ଇଷ୍ଟ-ଇଣ୍ଡିଆ କମ୍ପାନୀର ଦପ୍ତରରେ ପହଞ୍ଚିବା ବହୁ ପୂର୍ବରୁ ପାଇପାରୁଥିଲେ, ଶିଳ୍ପ-ବିପ୍ଳବ ପୂର୍ବରୁ ଭାରତର ଅର୍ଥନୀତି ପାରୁପର୍ଯ୍ୟନ୍ତ ଅଗ୍ରଗତି କରିପାରିଥିଲା । ଅଧିକତର ପ୍ରଗତିର ବୀଜ ତାର ଭିତରେ ଥିଲା କମ୍ବା ସାମାଜିକ ବ୍ୟବସ୍ଥାର କଠୋର ଶୃଙ୍ଖଳାରେ ଅତିମାତ୍ରାରେ ଜଡ଼ିତ ହୋଇପଡ଼ିଥିଲା କହିବା କଠିନ । ତେବେ ଏତିକି ଅବଶ୍ୟ ସମ୍ଭବ ଜଣାଯାଉଚି ଯେ ସାଧାରଣ ଅବସ୍ଥା ରହିଥିଲେ ଏଥିରେ ମଧ୍ୟ ସେହି ପରିବର୍ତ୍ତନ ଘଟିଥାନ୍ତା ଓ ନିଜସ୍ୱ ଶୈଳୀରେ ଭାରତର ଅର୍ଥନୀତି ନୂତନ ଔଦ୍ୟୋଗିକ ଅବସ୍ଥା ସଙ୍ଗେ ନିଜକୁ ଖାପଖୁଆଇ ଚାଲିପାରିଥାନ୍ତା । ତଥାପି, ପରିବର୍ତ୍ତନ ନିମନ୍ତେ କେତେକ ଉପଯୁକ୍ତ ହୋଇଥିଲେ ସୁଦ୍ଧା ନିଜର ଗଣ୍ଡି ଭିତରେ ସେହି ପରିବର୍ତ୍ତନ ପାଇଁ ଗୋଟାଏ ବିପ୍ଳବର ଆବଶ୍ୟକତା ଥିଲା । ସେହି ପରିବର୍ତ୍ତନ ଘଟାଇବା ପାଇଁ ଗୋଟାଏ କିଛି ଅନୁଘଟକର ଆବଶ୍ୟକତା ଥିଲା । ଏ କଥା ସ୍ପଷ୍ଟ ଯେ ଭାରତର ପ୍ରାକ୍-ଔଦ୍ୟୋଗିକ ଅର୍ଥନୀତି କେତେ ସମୁନ୍ନତ ଓ ସୁସଙ୍ଗଠିତ

ହୋଇଥିଲେ ସୁଦ୍ଧା ଅନ୍ୟାନ୍ୟ ଦେଶର କଳକାରଖାନା ଉତ୍ପାଦିତ ମାଲ ସଙ୍ଗେ ବହୁକାଳ ପ୍ରତିଯୋଗିତା କରିପାରିନଥାନ୍ତା । ତାର ଆଗରେ ଦୁଇଟି ମାତ୍ର ପଥ ଥିଲା : ନିଜର କଳକାରଖାନା ଗଢ଼ିବା କିମ୍ବା ରାଜନୈତିକ ହସ୍ତକ୍ଷେପ ନିମନ୍ତେ ପଥ ମୁକ୍ତକରି, ବିଦେଶୀ ଅର୍ଥନୈତିକ ଅନୁପ୍ରବେଶ ମୁହଁରେ ଆତ୍ମସମର୍ପଣ କରିବା । କିନ୍ତୁ ଏଠାରେ ଘଟିଲା ଅନ୍ୟ ରକମ । ବିଦେଶୀ ରାଜନୈତିକ ଆଧିପତ୍ୟ ପ୍ରଥମେ କ୍ଷେତ୍ର ଦଖଲ କଲା ଏବଂ ଖୁବ୍ ଦ୍ରୁତ ଗତିରେ ଭାରତୀୟ ଅର୍ଥନୀତିର ବିନାଶ ସାଧନ କଲା । ତାର ସ୍ଥାନରେ ନିଶ୍ଚିତ ଅବା ରଚନାତ୍ମକ କିଛି ଗଢ଼ିଉଠିପାରିନଥିଲା । ଇଷ୍ଟ ଇଣ୍ଡିଆ କମ୍ପାନୀ ଇଂରେଜ ଜାତିର ରାଜନୈତିକ କ୍ଷମତା, ନ୍ୟସ୍ତସ୍ୱାର୍ଥ ଓ ଅର୍ଥନୈତିକ ଶକ୍ତିର ପ୍ରତିନିଧିତ୍ୱ କରିଥିଲା । ଏହାର ଉପରେ ଅଧିକାର ଖଟାଇବା ପାଇଁ କିଏ ନଥିଲା ଏବଂ ଏହା ବ୍ୟବସାୟୀମାନଙ୍କର ଗୋଟାଏ କମ୍ପାନୀ ହୋଇଥିବାରୁ ଧନସଂଗ୍ରହ କରିବା କେବଳ ଥିଲା ଏହାର ଅଭିପ୍ରାୟ । ଠିକ୍ ସେତେବେଳେ ଏହି କମ୍ପାନୀ ବିସ୍ମୟକର କ୍ଷିପ୍ରଗତିରେ ଓ କଳ୍ପନାତୀତ ଭାବରେ ଧନସଂଗ୍ରହ କରିବାରେ ଏକାଗ୍ରଚିତ୍ତ ଥିଲା, ଏଡ଼ମ୍ ସ୍ମିଥ୍ ଖ୍ରୀ: ୧୭୭୬ରେ ତାଙ୍କର 'ଦ ୱେଲ୍‌ଥ୍ ଅଫ୍ ନେସନ୍‌ସ' ବହିରେ ଏହି ସମ୍ପର୍କରେ ମନ୍ତବ୍ୟ କରି ଲେଖିଥିଲେ : "କେବଳ ମାତ୍ର ବ୍ୟବସାୟୀମାନଙ୍କର ଗୋଟାଏ କମ୍ପାନୀର ଶାସନ ଯେକୌଣସି ଦେଶପାଇଁ, ଯେକୌଣସି ପ୍ରକାର ଶାସନ ବ୍ୟବସ୍ଥା ଭିତରେ ସମ୍ଭବତଃ ହୀନତମ ।"

ଭାରତୀୟ ବଣିକଶ୍ରେଣୀ ଓ ଉତ୍ପାଦନକାରୀଶ୍ରେଣୀ ଯଦିଓ ଖୁବ୍ ସମୃଦ୍ଧ ଓ ଦେଶସାରା ବ୍ୟାପ୍ତ ଥିଲେ ଏବଂ ଏପରିକି ଅର୍ଥନୈତିକ ବ୍ୟବସ୍ଥାକୁ ମଧ୍ୟ ନିୟନ୍ତ୍ରିତ କରୁଥିଲେ, ତଥାପି ସେମାନଙ୍କ ହାତରେ ରାଜନୈତିକ କ୍ଷମତା ନଥିଲା । ସରକାର ଥିଲା ସ୍ୱେଚ୍ଛାଚାରୀ ଓ ଦୃଷ୍ଟିଭଙ୍ଗୀରେ ସାମନ୍ତବାଦୀ । ବସ୍ତୁତଃ, ଭାରତୀୟ ଇତିହାସର ପୂର୍ବବର୍ତ୍ତୀ ଯେକୌଣସି ପର୍ଯ୍ୟାୟ ଅପେକ୍ଷା ଏହା ଥିଲା ଅଧିକତର ସାମନ୍ତବାଦୀ । ଅତଏବ, ସେତେବେଳେ ଯଥେଷ୍ଟ ଭାବରେ ବଳିଷ୍ଠ କୌଣସି ମଧ୍ୟବିତ୍ତଶ୍ରେଣୀ ନଥିଲା କିମ୍ବା କେତେକ ପାଶ୍ଚାତ୍ୟ ଦେଶରେ ମଧ୍ୟବିତ୍ତ-ଶ୍ରେଣୀ ଯେଉଁଭଳି କ୍ଷମତା ନିଜ ହାତକୁ ନେଇଥିଲା, ଏଠାରେ କ୍ଷମତା ହାତକୁ ନେବାପାଇଁ ସେପରି ନିର୍ଦ୍ଦିଷ୍ଟ ତଥା ସଚେତନ ଚିନ୍ତାର ସୂଚନା ସୁଦ୍ଧା ନଥିଲା । ଲୋକେ ସାଧାରଣତଃ ଉଦାସୀନ ଓ ଦାସମନୋଭାବାପନ୍ନ ହୋଇପଡ଼ିଥିଲେ । ଏପରିଭାବରେ ଗୋଟାଏ ବ୍ୟବଧାନ ରହିଯାଇଥିଲା ଏବଂ କୌଣସି ବୈପ୍ଳବିକ ପରିବର୍ତ୍ତନ ଘଟିବା ପୂର୍ବରୁ ତାହା ଦୂର କରିବା ଦରକାର କରୁଥିଲା । ଏହି ବ୍ୟବଧାନ ସୃଷ୍ଟି ହେବାର କାରଣ ହୋଇପାରେ ଗୋଟାଏ ପରିବର୍ତ୍ତନଶୀଳ ଦୁନିଆରେ ପରିବର୍ତ୍ତନବିମୁଖ ଭାରତୀୟ ସମାଜର ସଞ୍ଚାରହୀନ ପ୍ରକୃତି । କାରଣ ଯେଉଁ ସଭ୍ୟତା ପରିବର୍ତ୍ତନର ପ୍ରତିରୋଧ କରେ, କ୍ରମଶଃ ଅବନତି ଭିତରକୁ ଓହ୍ଲାଇଯାଏ, ସେହି ସମାଜର ଗଠନରେ କୌଣସି ରଚନାତ୍ମକ ଭୂମିକା ଗ୍ରହଣ କରିବାର ଶକ୍ତି ନଥିଲା । ପରିବର୍ତ୍ତନ ଘଟିବାର ନିର୍ଧାରିତ ସମୟ ଅତୀତ ହୋଇସାରିଥିଲା ।

ଇଂରେଜମାନେ ସେହି ସମୟରେ ରାଜନୈତିକ ଦିଗରେ ଖୁବ୍ ଅଗ୍ରଗତି କରିଥିଲେ । ସେମାନଙ୍କର ରାଜନୈତିକ ବିପ୍ଳବ ଘଟିସାରିଥିଲା ଏବଂ ରାଜାର କ୍ଷମତା ଉପରେ

ପାର୍ଲାମେଣ୍ଟର କ୍ଷମତା ପ୍ରତିଷ୍ଠିତ ହୋଇଥିଲା । ନୂତନ କ୍ଷମତା ପ୍ରତି ସଚେତନ, ସେମାନଙ୍କର ମଧ୍ୟବିତ୍ତଶ୍ରେଣୀ ପ୍ରସାରଶୀଳତାର ଆବେଗରେ ପୂର୍ଣ୍ଣ ଥିଲା । ସେହି ଜୀବନୀଶକ୍ତି ଓ ସ୍ଫୂର୍ତ୍ତି, ଯାହା ଗୋଟାଏ ବର୍ଦ୍ଧମାନ ତଥା ପ୍ରଗତିଶୀଳ ସମାଜର ଲକ୍ଷଣ, ବାସ୍ତବିକ ଇଂଲଣ୍ଡରେ ସୁସ୍ପଷ୍ଟଭାବରେ ପ୍ରକାଶିତ ହୋଇଥିଲା । ନାନା ଭାବରେ, ସର୍ବୋପରି ଶିଳ୍ପ-ବିପ୍ଳବର ପୂର୍ବଭାଗରେ ବିବିଧ ଆବିଷ୍କାର ଓ ଉଦ୍‌ଭାବନ ଜରିଆରେ ସେ ଶକ୍ତି ପ୍ରକଟିତ ହେଉଥିଲା ।

ତଥାପି ମଧ୍ୟ, ସେ ସମୟର ଇଂରେଜ ଶାସକ-ବର୍ଗ କିପରି ଥିଲା ? ମାର୍କିନ୍ ବିପ୍ଳବର ସଫଳତା ଆମେରିକାର ବ୍ରିଟିଶ ଶାସିତ ପ୍ରଦେଶମାନଙ୍କରୁ ତାର ଶାସକବର୍ଗଙ୍କୁ କିପରି ଆକସ୍ମିକ ଭାବରେ ଅପସାରିତ କଲା, ଚାର୍ଲେସ୍ ଓ ମେରୀ ବିଏର୍ଡ଼ ନାମକ ଦୁଇଜଣ ବିଖ୍ୟାତ ମାର୍କିନ୍ ଐତିହାସିକ ତାର ବର୍ଣ୍ଣନା ଦେଇଚନ୍ତି । ବ୍ରିଟିଶ ଶାସକବର୍ଗ ସମ୍ପର୍କରେ ସେମାନେ କହିଚନ୍ତି : "ଗୋଟାଏ ବଂଶର ଫୌଜଦାରୀ ଦଣ୍ଡବିଧି ଓ ଗୋଟାଏ ସଙ୍କୀର୍ଣ୍ଣ ତଥା ଅସହିଷ୍ଣୁ ଶିକ୍ଷାପଦ୍ଧତି ପ୍ରତି ଏହି ବର୍ଗ ଅଭ୍ୟସ୍ତ ଥିଲା । ଅଭ୍ୟସ୍ତ ଥିଲା କେତେ ଚାକିରି ଓ ସ୍ୱାଧିକାରର ସମଷ୍ଟିକୁ ସରକାର ମଣିବାରେ; କଲମାଲରେ, ହାଟ ଓ ବଜାରରେ ପରିଶ୍ରମ କରୁଥିବା ନରନାରୀଙ୍କ ପ୍ରତି ଘୃଣାଭାବ ପୋଷଣ କରିବାରେ, ଆଉ ଲୋକଶିକ୍ଷା ନିରୋଧ କରିବାରେ, କେଥଲିକ୍ ଓ ଡିସେଣ୍ଟର୍ (ଭିନ୍ନମତାବଲମ୍ବୀ) ଉଭୟ ଉପରେ ଶାସନବର୍ଗର ଧର୍ମମତକୁ ଲଦି ଦେବାରେ, ଗ୍ରାମ ଓ ତାଲୁକାରେ ଗ୍ରାମ୍ୟ ଜମିଦାର ଓ ଇଶାଇ ଧର୍ମଯାଜକଙ୍କ ରାଜତ୍ୱ ପ୍ରତିଷ୍ଠିତ କରିବାରେ, ଜଳ ଓ ସ୍ଥଳ ଉଭୟ ବାହିନୀର ଲୋକଙ୍କ ପ୍ରତି ପଶୁଭଳି ଆଚରଣ କରିବାରେ, ଜ୍ୟେଷ୍ଠାଧିକାର ପ୍ରଥା ଜରିଆରେ ଜମିଦାରୀ ଶାସନ କାଏମ୍ ରଖିବାରେ, ରାଜକର୍ମ, କର୍ମହୀନ-ଆୟ ଓ ଅବସର-ଭତ୍ତା ଲୋଭରେ ଗୋଟାଏ ଗୋଷ୍ଠୀ ଲୋକଙ୍କ ବେକାରଙ୍କ ଚାଟୁବାଦ ଶୁଣିବାରେ ଏବଂ ଅହଙ୍କାର ଓ ଲୁଣ୍ଠନର ଏହି ପ୍ରକାଣ୍ଡ ବୋଝ ଲଦିବା ପାଇଁ ପ୍ରଶସ୍ତ—ଧର୍ମ ଓ ଶାସନର ସମ୍ମିଧାନ ସୁଚାରୁରୂପେ କାର୍ଯ୍ୟକାରୀ କରିବାରେ । ମାର୍କିନ୍ ବିପ୍ଳବୀମାନେ ବ୍ରିଟିଶ୍ ରାଜାର ଔପନିବେଶିକ ପ୍ରଜାଙ୍କ ଉପରୁ ଏହି ପର୍ବତର ଭାର ଓହ୍ଲାଇଦେଲେ । ଦାସତ୍ୱମୋଚନର ତିନି କୋଡ଼ିଏ ବର୍ଷ ଭିତରେ ସେମାନେ ଆଇନ ଓ ନୀତିରେ ଯେଉଁ ସଂସ୍କାର ଆଣିପାରିଲେ, ଇଂଲଣ୍ଡରେ ସେତିକ ପାଇଁ ଶହେ ବର୍ଷରୁ ଅଧିକ କାଳ ଅବିଚ୍ଛିନ୍ନ ଭାବରେ ଆନ୍ଦୋଳନ କରିବାକୁ ପଡ଼ିଥିଲା । ସେହି ସଂସ୍କାର ଦାବି କରି ଯେଉଁ ରାଜନୀତିଜ୍ଞମାନେ ଆନ୍ଦୋଳନର ନେତୃତ୍ୱ ନେଇଥିଲେ, ସେମାନେ ଇଂଲଣ୍ଡର ଇତିହାସରେ ଅମରତ୍ୱ ଲାଭ କରିଚନ୍ତି ।"(୧)

ସ୍ୱାଧୀନତାର ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଘଟଣା—ମାର୍କିନ୍ ସ୍ୱାଧୀନତା ଘୋଷଣାପତ୍ର ଖ୍ରୀ: ୧୭୭୬ରେ ସ୍ୱାକ୍ଷରିତ ହେଲା । ଏହାର ଛଅଟି ବର୍ଷ ପରେ ଆମେରିକା, ଏକଦା ଇଂଲଣ୍ଡର ଉପନିବେଶ, ତାର ମାନସିକ, ଅର୍ଥନୈତିକ ଓ ସାମାଜିକ ବିପ୍ଳବର ସୂତ୍ରପାତ କଲା । ଇଂଲଣ୍ଡରେ ପ୍ରଚଳିତ ବ୍ୟବସ୍ଥା ଅନୁସାରେ, ଉପନିବେଶରେ ଚାଲୁଥିବା

(୧) 'ଦି ରାଇଜ୍ ଅଫ୍ ଆମେରିକାନ୍ ସିଭିଲିଜେସନ୍' (୧୯୨୮) ୧ମ ଖଣ୍ଡ, ପୃ. ୨୯୨

ଜମିଜମା ବ୍ୟବସ୍ଥାର ସମ୍ପୂର୍ଣ୍ଣ ରୂପାନ୍ତର ଘଟିଲା । ବନ୍ଧୁ ସ୍ୱାଧିକାର ଉଚ୍ଛେଦ କରାଗଲା ଓ ବଡ଼ ବଡ଼ ଜମିଦାରୀ ବାଜ୍ୟାପ୍ତ କରି ପ୍ରଜାଙ୍କ ଭିତରେ ବାଣ୍ଟି ଦିଆଗଲା । ଚାଲୁହେଲା ଜାଗୃତିର— ବୌଦ୍ଧିକ ତଥା ଅର୍ଥନୈତିକ କର୍ମାନୁସରଣର ଏକ ଉଦ୍ଦୀପନାପୂର୍ଣ୍ଣ ପର୍ଯ୍ୟାୟ । ସମସ୍ତ ସାମନ୍ତବାଦୀ ସମ୍ପର୍କ ଓ ବିଦେଶୀ ନିୟନ୍ତ୍ରଣରୁ ମୁକ୍ତ, ନବଜାଗରଣର ଆମେରିକା ଦୀର୍ଘ ପଦକ୍ଷେପ କରି ଭବିଷ୍ୟ ଭିତରକୁ ଆଗେଇଗଲା ।

ଫ୍ରାନ୍ସରେ, ପୁରାତନ ବ୍ୟବସ୍ଥାର ପ୍ରତୀକ, ବେଷ୍ଟିଲ କାରାଗାରକୁ ସେ ଦେଶର ମହାନ୍ ବିପ୍ଲବ ବିଦୀର୍ଣ୍ଣ କଲା ଏବଂ ରାଜା ଓ ସାମନ୍ତବାଦ ଉଭୟଙ୍କୁ ଲୋପ କରି ବିଶ୍ୱରେ ଘୋଷଣା କଲା ମଣିଷର ଅଧିକାର ।

ଇଂଲଣ୍ଡରେ କଅଣ ହେଲା ? ଆମେରିକା ଓ ଫ୍ରାନ୍ସର ଏହି ଦୁଇ ବୈପ୍ଳବିକ ପରିବର୍ତ୍ତନରେ ଆତଙ୍କଗ୍ରସ୍ତ, ଇଂଲଣ୍ଡ ଆହୁରି ଅଧିକ ପ୍ରତିକ୍ରିୟାଶୀଳ ହୋଇପଡ଼ିଲା ଏବଂ ତାର ହିଂସ୍ର ତଥା ବର୍ବର ଦଣ୍ଡ-ବିଧିର ରକ୍ତପିପାସା ବଳବତୀ ହୋଇଉଠିଲା । ୧୭୬୦ ଖ୍ରୀଷ୍ଟାବ୍ଦରେ ତୃତୀୟ ଜର୍ଜ ଇଂଲଣ୍ଡର ସିଂହାସନ ଆରୋହଣ କଲାବେଳକୁ ଶହେ ଷାଠିଏ ପ୍ରକାର ଅପରାଧ ପାଇଁ ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କୁ ମୃତ୍ୟୁଦଣ୍ଡ ଦିଆଯାଉଥାଏ । ଖ୍ରୀ: ୧୮୨୦ରେ ତାଙ୍କର ଦୀର୍ଘ ରାଜତ୍ୱକାଳ ଶେଷ ହେଲାବେଳକୁ ଏହି ଘୃଣ୍ୟ ତାଲିକାରେ ପ୍ରାଣଦଣ୍ଡ ପାଇଁ ଆହୁ ପ୍ରାୟ ଶହେଟି ଅପରାଧ ଯୋଡ଼ି ଦିଆଯାଇଥିଲା । ବଳମାଳର ପଶୁଠାରୁ ଆହୁରି ହୀନ ଭାବରେ ବ୍ରିଟିଶ୍ ବାହିନୀର ସାଧାରଣ ସୈନିକ ପ୍ରତି ଆଚରଣ କରାଯାଉଥିଲା । ସେ ପାଶବିକତା, ସେ ଅମାନୁଷିକତା ବଡ଼ ଭୟଙ୍କର । ମୃତ୍ୟୁଦଣ୍ଡରେ ଦଣ୍ଡିତ କରିବା ଥିଲା ଅତି ମାମୁଲି କଥା ଓ ତା'ଠାରୁ ଆହୁରି ତୁଚ୍ଛ ଥିଲା କଥାକଥାକେ ସର୍ବସାଧାରଣରେ ଲୋକଙ୍କ ପିଠରେ ଚାବୁକ ମାରିବା । ନିର୍ବିଘ୍ନରେ ଚାବୁକମାଡ଼ ଚାଲିଥିଲାବେଳେ ମୃତ୍ୟୁ ଆସି କେବେ ହସ୍ତକ୍ଷେପ କରେ କମ୍ବା କିଏ ଯଦି ସୌଭାଗ୍ୟକ୍ରମେ ବିକ୍ଷତ, ମୃତପ୍ରାୟ ଦେହ ଘେନି ଉଦ୍ଧାର ପାଇ ଆସେ, ମୃତ୍ୟୁ ପର୍ଯ୍ୟନ୍ତ ସେଇ ଦେହରେ ଦଣ୍ଡର ସ୍ମାରକୀ ମୁଖର ହୋଇଉଠିଥାଏ ।

ଏହି ବିଷୟରେ ଓ ଅନ୍ୟାନ୍ୟ ବହୁ ବିଷୟରେ, ଯେଉଁଥିରେ ମାନବତା ପ୍ରତି ଓ ବ୍ୟକ୍ତି ତଥା ଗୋଷ୍ଠୀ ପ୍ରତି ସମ୍ମାନର କଥା ଜଡ଼ିତ, ଭାରତ ଖୁବ୍ ଉନ୍ନତ ଥିଲା ଓ ତାର ସଭ୍ୟତା ବି ଥିଲା ଉଚ୍ଚକୋଟୀର । ସେ ସମୟରେ, ଇଂଲଣ୍ଡ କମ୍ବା ୟୁରୋପର ଅନ୍ୟାନ୍ୟ ଦେଶ ଅପେକ୍ଷା ଭାରତରେ ଶିକ୍ଷାର ପ୍ରସାର ଅଧିକ ଭାବରେ ଘଟିଥିଲା । ଅବଶ୍ୟ ସେ ଶିକ୍ଷା ପାରମ୍ପରିକ ଭାବରେ ଆବଦ୍ଧ ଥିଲା । ତୁଳନା କରି ଦେଖିଲେ ନାଗରିକ ସୁଖ-ସ୍ୱାଚ୍ଛନ୍ଦ୍ୟ ବି ଭାରତରେ, ସମ୍ଭବତଃ, ବେଶି ଥିଲା । ୟୁରୋପରେ ଜନତାର ସାଧାରଣ ଅବସ୍ଥା ଥିଲା ଅତି ଅନୁନ୍ନତ ଓ ଦୟନୀୟ । ଭାରତର ଅବସ୍ଥା ସଙ୍ଗେ ତାର ତୁଳନା କରାଯାଇ ନପାରେ; କିନ୍ତୁ ଗୋଟାଏ ପ୍ରଧାନ ପାର୍ଥକ୍ୟ ଅବଶ୍ୟ ରହିଥିଲା । ତାହା ହେଉଚି, ପଶ୍ଚିମ-ୟୁରୋପରେ ନାନା ନୂତନ ଶକ୍ତି ଓ ଚେତନାର ପ୍ରବାହ ଅଦୃଶ୍ୟ ଭାବରେ କାର୍ଯ୍ୟ କରୁଥିଲା ଏବଂ ତାର ଫଳରେ ନାନା ପରିବର୍ତ୍ତନ ଘଟୁଥିଲା । ଭାରତରେ ସେ ପ୍ରକାର ସଞ୍ଚାରପ୍ରବଣତା ନଥିଲା ।

ଇଂଲଣ୍ଡ ଆସିଲା ଭାରତକୁ । ଖ୍ରୀ: ୧୬୦୦ରେ ରାଣୀ ଏଲିଜାବେଥ୍ ଇଷ୍ଟ-ଇଣ୍ଡିଆ

ଜମାମାନଙ୍କୁ ଯେବେ ପରଓ୍ୱାନା ଦେଲେ ସେତେବେଳେ ସେକ୍ସପିଅର ଜୀବିତ ଥିଲେ ଓ ତାଙ୍କର ସାହିତ୍ୟକର୍ମ ଚାଲିଥିଲା । ଖ୍ରୀ: ୧୬୧୧ରେ ବାଇବେଲ୍‌ର ପ୍ରାଧିକୃତ ଇଂରେଜୀ ଅନୁବାଦ ପ୍ରକାଶ ପାଇଲା । ଖ୍ରୀ: ୧୬୦୮ରେ ମିଲ୍‌ଟନ୍ ଜନ୍ମଗ୍ରହଣ କରିଥିଲେ । ତା'ପରେ ହେମ୍ପଡେନ୍, କ୍ରମ୍‌ଓ୍ୱେଲ୍ ଓ ରାଜନୈତିକ ବିପ୍ଳବ । ପରବର୍ତ୍ତୀ କାଳରେ ବିଜ୍ଞାନ ପ୍ରଗତି ଦିଗରେ ଯାହା ବହୁତ କିଛି କରିଚି, ଇଂଲଣ୍ଡର ସେହି 'ରୟେଲ ସୋସାଇଟି' ଖ୍ରୀ: ୧୬୬୦ରେ ସଙ୍ଗଠିତ ହୋଇଥିଲା । ଠିକ୍ ଶହେ ବର୍ଷ ପରେ ଖ୍ରୀ: ୧୭୬୦ରେ ତନ୍ତୁବାୟର 'ଉଡ଼ନ୍ତା କଣ୍ଢା' ଉଦ୍‌ଭାବନ କରାଗଲା ଏବଂ ପରେ ପରେ, ଗୋଟାଏ ପରେ ଗୋଟାଏ ସୂତାକଟା ଯନ୍ତ୍ର, ବାଷ୍ପଚାଳିତ ଇଞ୍ଜିନ୍ ଓ ଯନ୍ତ୍ରଚାଳିତ ତନ୍ତର ଉଦ୍‌ଭାବନ ଘଟିଲା ।

ଏହି ଦୁଇ ଇଂଲଣ୍ଡରୁ କେଉଁ ଇଂଲଣ୍ଡ ଭାରତକୁ ଆସିଲା ? ସେକ୍ସପିଅର ଓ ମିଲ୍‌ଟନ୍, ମହାନ୍ ସାହିତ୍ୟ ଓ ସାହସିକ କର୍ମ, ରାଜନୈତିକ ବିପ୍ଳବ ଓ ମୁକ୍ତିର ସଂଗ୍ରାମ, ବିଜ୍ଞାନ ଓ କାରିଗରୀ ପ୍ରଗତି— ଏଥିର ଇଂଲଣ୍ଡ ନା ବନ୍ୟ ଦଣ୍ଡବିଧି ଓ ପାଶବିକ ଆଚରଣ, ପ୍ରତିରକ୍ଷା ବ୍ୟବସ୍ଥାରେ ସୁଦୃଢ଼ ସାମନ୍ତବାଦ ଓ ପ୍ରତିକ୍ରିୟା—ଏଥିର ଇଂଲଣ୍ଡ ଆସିଲା ? କାରଣ ପ୍ରତ୍ୟେକ ଦେଶରେ ଯେପରି ଜାତୀୟ ଚରିତ୍ର ଓ ସଭ୍ୟତାର ଦୁଇଟି ବିଭାବ ଥାଏ, ସେହିପରି ସେତେବେଳେ ଦୁଇଟି ଇଂଲଣ୍ଡ ବି ଥିଲା । ଏଡ୍‌ଓ୍ୱାର୍ଡ ଥମସନ୍ ଲେଖିଚନ୍ତି : "ଇଂଲଣ୍ଡରେ ଆମ ସଭ୍ୟତାର ଉଚ୍ଚତମ ସ୍ତର ଓ ସାଧାରଣ ସ୍ତରଭିତରେ ଥିବା ପାର୍ଥକ୍ୟ ସାମାନ୍ୟ ନୁହେଁ । ଆମର ଏ ଅବସ୍ଥା ସଙ୍ଗେ ତୁଳନା କରିବାପାଇଁ ମୋର ଆଶଙ୍କା ହୁଏ, ଅନ୍ୟ କେଉଁ ଦେଶରେ ଏପରି କିଛି ନାହିଁ । ଆହୁରି ମଧ୍ୟ ଏହି ପାର୍ଥକ୍ୟ ତଥା ଅସଙ୍ଗତି ଏତେ ମନ୍ଥର ଭାବରେ ସଙ୍କୁଚିତ ହେଉଚି ଯେ ଅନେକ ସମୟରେ ମନେହୁଏ ସତେ ଯେପରି କିଛି ହେଉନି । (୧)

ଦୁଇଟି ଇଂଲଣ୍ଡ ପାର୍ଶ୍ୱବର୍ତ୍ତୀ ଭାବରେ ରହିଚନ୍ତି, ପରସ୍ପର ଉପରେ ପ୍ରଭାବ ପକାଉଚନ୍ତି, ପରସ୍ପର ବିଚ୍ଛିନ୍ନ ହେବାର ବାଟ ନାହିଁ । ଏଥିରୁ ଗୋଟିକୁ ଭୁଲି ଅପରଟି କେବଳ ଭାରତକୁ ଆସିପାରି ନଥାନ୍ତା । କିନ୍ତୁ ଯେପରି ଦେଖାଯାଇଚି, ପ୍ରତ୍ୟେକ ଗୁରୁତ୍ୱପୂର୍ଣ୍ଣ କର୍ମରେ ଗୋଟିଏ ଅନ୍ୟଟିକୁ ଜାବୁଡ଼ି ନେତୃତ୍ୱ କରିଚି । ସେହି ନେତୃତ୍ୱର ଭୂମିକା ବାଞ୍ଛିତ ବଦଳରେ ଅବାଞ୍ଛିତ ଇଂଲଣ୍ଡ ଯେ ଭାରତରେ କରିବ ଓ ଭାରତରେ ସେ ପ୍ରକାର ଅବାଞ୍ଛିତ ଶକ୍ତିମାନଙ୍କ ସମ୍ପର୍କରେ ଆସି ସେହି ପ୍ରକ୍ରିୟାକୁ ଉତ୍ସାହିତ କରିବ, ଏକ ରକମ ଅବଶ୍ୟମ୍ଭାବୀ ଥିଲା କହିଲେ ଚଳେ ।

ଭାରତ ତାର ସ୍ୱାଧୀନତା ହରାଇବା ଓ ଯୁକ୍ତରାଷ୍ଟ୍ର ଆମେରିକା ତାର ସ୍ୱାଧୀନତା ହାସଲ କରିବା ପ୍ରାୟ ଏକା ସମୟର କଥା । ଗତ ଦେଢ଼ଶହ ବର୍ଷ ଉପରେ ଦୃଷ୍ଟି ଫେରାଇ ଜଣେ ଭାରତୀୟ ସନ୍ତୁଷ୍ଟ ତଥା ଆକାଙ୍କ୍ଷିତ ଭାବରେ ସେହି ସମୟ ଭିତରେ ଆମେରିକାର ପ୍ରଗତି

(୧) "ଦି ମେକିଂ ଅଫ୍ ଇଣ୍ଡିଆନ୍ ପ୍ରିନ୍‌ସେସ୍", ପୃ. ୬୬୪

ଲକ୍ଷ୍ୟକରୁ ଏବଂ ତାର ଦେଶରେ କଅଣ ହୋଇଚ ଓ କଅଣ ନହୋଇଚ ତୁଳନାକରି ଦେଖୁ । ଏ କଥା ଅବଶ୍ୟ ସତ୍ୟ ଯେ ମାର୍କିନ୍‌ମାନଙ୍କର ବହୁତ ସଦ୍‌ଗୁଣ ଅଛି ଆଉ ଆମେ ନାନା ତ୍ରୁଟିବିଚ୍ୟୁତି ପୂର୍ଣ୍ଣ ରହିଚୁ; ଆମେରିକା, ପ୍ରକୃତ ପକ୍ଷେ କୁମାରୀଭୂମିରେ ତାର କୃଷି ଆରମ୍ଭ କଲା; ଲେଖିବା ଆରମ୍ଭ କଲାବେଳକୁ ତାର ସିଲଟରେ ଗୋଟାଏ ଦାଗ ସୁଦ୍ଧା ପଡ଼ି ନଥିଲା । ଆମେ ଅସମ୍ଭବ ଭାବରେ ଜଡ଼ିତଥିଲୁ ବହୁ ପ୍ରାଚୀନ ସ୍ମୃତି ଓ ପରମ୍ପରାର ଜଟିଳତାରେ । ତଥାପି ମଧ୍ୟ, ଇଂଲଣ୍ଡ ଯଦି ଭାରତରେ ଏହି ଗୁରୁ ଦାୟିତ୍ୱ ବହନ କରିନଥାନ୍ତା, ଆଉ ଇଂରେଜମାନେ କହିବା ପରି, ସ୍ୱାୟତ୍ତଶାସନର ଜଟିଳ ଦାୟିତ୍ୱ ଯାହା ସମ୍ପର୍କରେ ଆମେ ସମ୍ପୂର୍ଣ୍ଣ ଅଜ୍ଞ ଥିଲୁ ବୋଲି ସେମାନଙ୍କର ମତ, ଏତେ ଦୀର୍ଘକାଳ ଧରି ଆମକୁ ଶିକ୍ଷା ଦେବାର ବ୍ୟବସ୍ଥା କରି ନଥାନ୍ତା, ମୁକ୍ତ ଓ ସମୃଦ୍ଧିରେ କେବଳ ନୁହେଁ । ବିଜ୍ଞାନ ଓ କଳାରେ ଓ ଅନ୍ୟାନ୍ୟ ବିଷୟରେ ଯାହା ଜୀବନକୁ ବଞ୍ଚିବା ଯୋଗ୍ୟ କରେ, ଆମେ ଅଦ୍‌ଭୁତ ପ୍ରଗତି କରିଥାନ୍ତେ ।

□□□

# ସପ୍ତମ ପରିଚ୍ଛେଦ

# ଅନ୍ତିମ ପର୍ବ (ଏକ)

## ଇଂରେଜ ରାଜତ୍ୱ ସୁପ୍ରତିଷ୍ଠିତ ହେଲା
## ଜାତୀୟବାଦୀ ଆନ୍ଦୋଳନର ଅଭ୍ୟୁଦୟ

### ୧. ସାମ୍ରାଜ୍ୟର ମତାଦର୍ଶ ନୂତନ ବର୍ଣ୍ଣ

ଭାରତ ଓ ତାର ଇତିହାସ ସଙ୍ଗେ ଭଲ ଭାବରେ ପରିଚିତ ଜଣେ ଇଂରେଜ ଲେଖିଚନ୍ତି: "ଭାରତରେ ଆମେ ଯାହା ସବୁ କରିଚୁ, ସେଥିଭିତରୁ ସମ୍ଭବତଃ ଆମେ ଲେଖିବା ଭାରତର ଇତିହାସ ପ୍ରତି ବିଶେଷ ବିରକ୍ତି ପ୍ରକାଶ ପାଉଚି ।"

ଭାରତରେ ଇଂରେଜ ରାଜତ୍ୱର ଏହି ଦୀର୍ଘକାଳ ଭିତରେ ସେମାନଙ୍କର କେଉଁ ନିର୍ଦ୍ଦିଷ୍ଟ କାର୍ଯ୍ୟ ପ୍ରତି ଭାରତୀୟମାନେ ଅତିମାତ୍ରାରେ ବିରକ୍ତ, କହିବା କଠିନ । ସେ ତାଲିକା ଦୀର୍ଘ ଓ ନାନା ବିଷୟ ତାର ଅନ୍ତର୍ଭୁକ୍ତ; କିନ୍ତୁ ଏ କଥା ସତ୍ୟ ଯେ ଇଂରେଜମାନଙ୍କ ଦ୍ୱାରା ଲିଖିତ ଭାରତର ଇତିହାସ, ବିଶେଷତଃ ସେହି ସମୟର ଇତିହାସ ଯାହାକୁ ବ୍ରିଟିଶ ଯୁଗ ବୋଲି କୁହାଯାଏ, ସେଥିପ୍ରତି ବଡ଼ ତିକ୍ତ ବିରକ୍ତି ପ୍ରକାଶ ପାଉଚି । ଇତିହାସ ପ୍ରାୟ ସର୍ବଦା ଲେଖାଯାଇଥାଏ ବିଜୟୀମାନଙ୍କଦ୍ୱାରା ଏବଂ ସେଥିରେ ପ୍ରକାଶ ପାଇଥାଏ ସେମାନଙ୍କର ଦୃଷ୍ଟିଭଙ୍ଗୀ । ଅନ୍ୟ ଭାବରେ ହେଲେ ମଧ୍ୟ, ବିଜୟୀର ଲିଖିତ ବିବରଣୀକୁ ପ୍ରାଧାନ୍ୟ ଦିଆଯାଇଥାଏ ଏବଂ ତାହା ହିଁ ପ୍ରାମାଣିକ ବିବେଚିତ ହୋଇଥାଏ । ଭାରତରେ ଆର୍ଯ୍ୟମାନଙ୍କ ସମ୍ପର୍କରେ ଯେଉଁସବୁ ଆଦ୍ୟକାଳୀନ ଦଲିଲ ଆମ ପାଖରେ ଅଛି, ଅର୍ଥାତ୍ ପୁରାଣ ସଂହିତା ଇତ୍ୟାଦି, ସେ ସବୁଥିରେ ଖୁବ୍ ସମ୍ଭବ ଆର୍ଯ୍ୟମାନଙ୍କୁ ଗୌରବାନ୍ୱିତ କରାଯାଇଚି ଏବଂ ଯେଉଁ ଦେଶର ଲୋକଙ୍କୁ ସେମାନେ ପରାଜିତ କଲେ ସେମାନଙ୍କୁ ଉଚିତ ଭାବରେ ସ୍ଥାନ ଦିଆଯାଇନି । କୌଣସି ବ୍ୟକ୍ତି ସମ୍ପୂର୍ଣ୍ଣ ଭାବରେ ତାର ଜାତୀୟ ଦୃଷ୍ଟିଭଙ୍ଗୀ ଓ ସାଂସ୍କୃତିକ ବନ୍ଧନରୁ ମୁକ୍ତହୋଇ ପାରେନି ଏବଂ ଯେବେ ଜାତି ଜାତି ଭିତରେ ଓ ଦେଶ ଦେଶ ଭିତରେ ସଂଘର୍ଷ ଉପୁଜେ, ନିରପେକ୍ଷ ରହିବାର ଉଦ୍ୟମ ମଧ୍ୟ ତାର ନିଜ ଲୋକଙ୍କ ପ୍ରତି ବିଶ୍ୱାସଘାତକତା ବୋଲି ବିବେଚିତ ହୋଇଥାଏ । ଏ ପ୍ରକାର ବିବାଦର ଚରମ ପରିଣତି ହେଉଚି ଯୁଦ୍ଧ । ସେହି ସମୟରେ ଶତ୍ରୁଜାତି ସମ୍ପର୍କରେ ସମସ୍ତ କିଛି ନ୍ୟାୟ ବିଚାର, ସମଦର୍ଶିତା ଓ ମାନବିକତାବୋଧ ସୁଚିନ୍ତିତ ଭାବରେ ବାଦ ଦିଆଯାଏ । ମଣିଷର ମନ ସଂକୀର୍ଣ୍ଣ ଓ ରୁକ୍ଷ ହୋଇଉଠେ ଏବଂ ଗୋଟିଏ ମାର୍ଗ ଛଡ଼ା ମନର ଅନ୍ୟ ସବୁ ମାର୍ଗ ରୁଦ୍ଧ ହୋଇଯାଏ । ସେହି ମୁହୂର୍ତ୍ତର ସର୍ବାଧିକ ଆବଶ୍ୟକତା ହୋଇ ଉଠେ ନିଜର କାର୍ଯ୍ୟକୁ

ଯଥାର୍ଥ ପ୍ରମାଣିତ କରିବା ଏବଂ ଶତ୍ରୁର କାର୍ଯ୍ୟକୁ ନିନ୍ଦିତ ଓ ଘୃଣ୍ୟକରି ଥୋଇବା । କେଉଁ ଗମ୍ଭୀରତମ କୂପର ନିମ୍ନତମ ପ୍ରଦେଶରେ ସତ୍ୟ ଆତ୍ମଗୋପନ କରେ ଏବଂ ମିଥ୍ୟା, ନଗ୍ନ ଓ ନିର୍ଲଜତା ତାର ପ୍ରଭୁତ୍ୱ ବିସ୍ତାର କରେ ।

ଖୋଲଖୋଲି ଭାବରେ ଯୁଦ୍ଧ ଲାଗିନଥିଲେ ମଧ୍ୟ ପ୍ରତିଦ୍ୱନ୍ଦ୍ୱୀ ଦେଶମାନଙ୍କ ଭିତରେ ଓ ସ୍ୱାର୍ଥ ଭିତରେ ପ୍ରାୟଶଃ ଅପ୍ରକାଶ୍ୟ ଯୁଦ୍ଧ ଓ ସଂଘର୍ଷ ଲାଗିଥାଏ । ଗୋଟାଏ ବିଦେଶୀଶକ୍ତି ଦ୍ୱାରା କଠୋର ହସ୍ତରେ ଶାସିତ ଦେଶରେ ସେହି ସଂଘର୍ଷ ସ୍ୱାଭାବିକ ଓ ଅବ୍ୟାହତ ଭାବରେ ଲାଗିରହେ ଏବଂ ତାହା ଲୋକଙ୍କ ଚିନ୍ତା ଓ କାର୍ଯ୍ୟକୁ ପ୍ରଭାବିତକରେ । ଯୁଦ୍ଧ ମନୋଭାବ କେବେହେଲେ ସମ୍ପୂର୍ଣ୍ଣ ଭାବରେ ଲୁପ୍ତ ହୋଇନି । ପୂର୍ବକାଳରେ ଯେବେ ଯୁଦ୍ଧ ଓ ତାର ପରିଣାମ —ପାଶବିକତା, ବିଜୟ ଓ ଲୋକଙ୍କ ପାଦରେ ଦାସତ୍ୱର ବେଡ଼ି ପିନ୍ଧାଇବା ଘଟଣାକ୍ରମର ସ୍ୱାଭାବିକତା ବୋଲି ଗୃହୀତ ହୋଇଥାଏ, ତାକୁ ଅନ୍ୟ କୌଣସି ଦୃଷ୍ଟିକୋଣରୁ ଯଥାର୍ଥ ପ୍ରତିପାଦନ କରିବାକୁ କିମ୍ବା ତା'ର ଉପରେ ଗୋଟାଏ ଆବରଣ ପକାଇଦେବାର ନିର୍ଦ୍ଦିଷ୍ଟ କୌଣସି ଆବଶ୍ୟକତା ଦେଖା ଦେଇନଥିଲା । ଉଚ୍ଚତର ମାନଦଣ୍ଡର ଅଭିବୃଦ୍ଧି ସଙ୍ଗେ ଯଥାର୍ଥତାର ଆବଶ୍ୟକତା ଦେଖାଦେଇଛି ଏବଂ ଏହା କେବେ ସଜ୍ଞାନରେ ପ୍ରାୟଶଃ ଅଜ୍ଞାନରେ, ସତ୍ୟକୁ ବିକୃତ ହିଁ କରିଥାଏ । ଏପରିଭାବରେ ଭଣ୍ଡାମି ସଦ୍‌ଗୁଣ ନିକଟରେ ତାର ଶ୍ରଦ୍ଧା ଜ୍ଞାପନ କରେ ଓ ଗୋଟାଏ ପ୍ରବଞ୍ଚକ ତଥା ତୁଚ୍ଛ ସଦାଚାରର ଦୁଷ୍କର୍ମ ସଙ୍ଗେ ମିତ୍ରତା କରେ ।

ଯେ କେଉଁ ଦେଶରେ, ବିଶେଷତଃ ଭାରତ ଭଳି ଏକ ବିଶାଳ ଦେଶରେ, ଯାହାର ଇତିହାସ ଅତିଶୟ ଦୀର୍ଘ ଓ ଜଟିଳ, ସଂସ୍କୃତି ମିଶ୍ରିତ, ନିର୍ଦ୍ଦିଷ୍ଟ ଏକ ତତ୍ତ୍ୱକୁ ଯଥାର୍ଥ ପ୍ରତିପାଦନ କରିବା ନିମନ୍ତେ ତଥ୍ୟ ଓ ମନୋଭାବ ଖୋଜି ବାହାରକରିବା ସର୍ବଦା ସମ୍ଭବ ହୋଇଥାଏ ଏବଂ ତାହା ହିଁ ଗୋଟାଏ ନୂତନ ଯୁକ୍ତି ନିମନ୍ତେ ଗୃହୀତ ଭିତ୍ତି ହୋଇପଡ଼େ । କେହି କେହି କହନ୍ତି, ଆମେରିକା ତାର ନିର୍ଦ୍ଧାରିତ ମାନଦଣ୍ଡ ଓ ସମରୂପତା ସତ୍ତ୍ୱେ ଗୋଟାଏ ପ୍ରକାର ଅସଙ୍ଗତିର ଦେଶ । ଏସବୁ ବିରୋଧାତ୍ମକ ବିଚାର ଓ ବିଷମତା ଭାରତରେ ଆମେରିକା ଅପେକ୍ଷା ନିଶ୍ଚିତ ଭାବରେ ଅଧିକ ଥିବ । ଅନ୍ୟତ୍ର ଭଳି ଏଠାରେ ମଧ୍ୟ ଆମେ ଯାହା ଖୋଜିବା ପାଇବା ଏବଂ ଗୋଟାଏ ପୂର୍ବକଳ୍ପିତ ଭିତ୍ତି ଉପରେ ଆମର ବିଶ୍ୱାସ ଓ ମତାମତର ଗୋଟାଏ ଇମାରତ ଗଢ଼ିଦେଇ ପାରିବା; କିନ୍ତୁ ସେହି ଇମାରତର ଭିତ୍ତି ଦୃଢ଼ ହେବନି ଏବଂ ତାହା ପ୍ରକାଶ କରିବା ବାସ୍ତବତାର ଗୋଟାଏ ମିଥ୍ୟା ଛବି କେବଳ ।

ଆଧୁନିକ ଭାରତର ଇତିହାସ ଅର୍ଥାତ୍ ବ୍ରିଟିଶ ଯୁଗର ଇତିହାସ ଆଜିକାଲିର ଘଟଣାବଳୀ ସଙ୍ଗେ ଏପରିଭାବେ ସମ୍ପର୍କିତ ଯେ, ତାର ବ୍ୟାଖ୍ୟା କଲାବେଳେ ଆଜିର ମନର ଉତ୍ତେଜନା ଓ ବିଦ୍ୱେଷ ପ୍ରବଳଭାବରେ ପ୍ରଭାବ ପକାଇଥାଏ । ଇଂରେଜ ଓ ଭାରତୀୟ ଉଭୟେ ଭୁଲ କରିବାରେ କିଛି ବୈଚିତ୍ର୍ୟ ନାହିଁ; କିନ୍ତୁ ସେମାନଙ୍କର ଭୁଲ୍ ପରସ୍ପରର ବିପରୀତ ଦିଗରେ କେବଳ ଦେଖାଯାଇପାରେ । ସେହିରୁ ନଥିପତ୍ରରୁ ଯେଉଁଥିରୁ ଇତିହାସ ରୂପ ଧରେ ଓ ଯାହା ସବୁ ଲେଖାଯାଇଛି, ଇଂରେଜ ଦିଗରୁ ପ୍ରାପ୍ତ ଏବଂ ଅବଶ୍ୟମ୍ଭାବୀ ଭାବରେ ଇଂରେଜ

ଦୃଷ୍ଟିକୋଣ ହିଁ ସେଥିରେ ପ୍ରକାଶ ପାଇଛି । ପତ୍ରିକାସ୍ତୁ ଓ ବିଶୃଙ୍ଖଳାର ପରିସ୍ଥିତି, ଭାରତୀୟ ଦୃଷ୍ଟିକୋଣରୁ ବିବରଣୀ ଲିପିବଦ୍ଧ କରିବା ସମ୍ଭବ କରିନଥିଲି ଓ ଯାହାକିଛି ନଥିପତ୍ର ବା ରହିଥିଲି ଖ୍ରୀ. ୧୮୫୭ର ବିଦ୍ରୋହ ବେଳେ ନଷ୍ଟ ହୋଇଗଲା । ଯାହା ବି ଉଦ୍ଧାର କରାଯାଇ ପାରିଲା, ପାରିବାରିକ କାଗଜପତ୍ର ସହିତ ଲୁଚିଗଲା ଏବଂ ପ୍ରତିକୂଳ ପରିଣତି ଆଶଙ୍କାରେ ସେସବୁ ପ୍ରକାଶିତ ହୋଇପାରିଲାନାହିଁ । ସେସବୁ କେଉଁଠି ଓ କିପରି ଭାବରେ ପଡ଼ିରହିଲା କେହି ଜାଣିବାକୁ ପାଇଲେନି ଓ ସେଥିଭିତରୁ ଅଧିକ ଭାଗ ଉଇ ଆଦି କୀଟ ଖାଇଗଲେ । ଆମ ଦେଶ ସେପରି କୀଟାଣୁହୀନ ଦେଶ ନୁହେଁ । ପରବର୍ତ୍ତୀ ସମୟରେ ସେହିସବୁ ନଥିପତ୍ରର କିୟଦଂଶ ଯେବେ ଆବିଷ୍କୃତ ହେଲା, ଐତିହାସିକ ଘଟଣାବଳୀ ଉପରେ ଏକ ନୂତନ ଆଲୋକପାତ ଘଟିଲା । ଏପରିକି ଇଂରେଜଲିଖିତ ଭାରତ ଇତିହାସର ମଧ୍ୟ କିୟଦଂଶ ପରିବର୍ତ୍ତିତ ହେଲା । ଅତୀତର ଇତିହାସ ସମ୍ପର୍କରେ ଭାରତୀୟ ଅବଧାରଣା ପ୍ରାୟଶଃ ବ୍ରିଟିଶ-ଠାରୁ ଭିନ୍ନ ରୂପ ନେଇଛି । ଏହି ଅବଧାରଣା ପଛରେ ରହିଥିଲା ବହୁ ପରମ୍ପରା ଓ ସ୍ମୃତି, ଆଉ ତାହା ମଧ୍ୟ କୌଣସି ଦୂର ଅତୀତର ନୁହେଁ; ସେପରି ଏକ କାଳର ଯେବେ ଆମର ପିତାମହ ଓ ପ୍ରପିତାମହମାନେ ସେ ସମସ୍ତ ଘଟଣାର ଜୀବନ୍ତ ସାକ୍ଷୀ ଥିଲେ ଓ ବହୁଧା ତାର ଶିକାର ବି ହୋଇଥିଲେ । ଇତିହାସ ହିସବରେ ଏହି ପରମ୍ପରାର ବିଶେଷ ମୂଲ୍ୟ ନଥାଇପାରେ; କିନ୍ତୁ ଏହାର ଗୁରୁତ୍ୱ ଅସ୍ୱୀକାର କରାଯାଇ ପାରେନା । କାରଣ ଭାରତୀୟ ମନର ପୃଷ୍ଠଭୂମି ବୁଝିବାପାଇଁ ଏହା ଆଜି ଆମକୁ ସମର୍ଥ କରିଛି । ଭାରତରେ ଇଂରେଜ ଦୃଷ୍ଟିରେ ଯିଏ ଦୁରାତ୍ମା; ଭାରତୀୟଙ୍କ ଦୃଷ୍ଟିରେ ସେ ପ୍ରାୟଶଃ ବୀର ଭାବରେ ପରିଚିତ ଏବଂ ଯେଉଁମାନଙ୍କୁ ଇଂରେଜମାନେ ସମ୍ମାନିତ ଓ ପୁରସ୍କୃତ କରି ଆନନ୍ଦିତ ହୋଇଛନ୍ତି, ଅଧିକାଂଶ ଭାରତୀୟଙ୍କ ଦୃଷ୍ଟିରେ ସେମାନେ ବିଶ୍ୱାସଘାତକ ଓ ଗୃହଶତ୍ରୁ ଭାବରେ ପରିଚିତ । ସେହି କଳଙ୍କ ସେମାନଙ୍କର ବଂଶଧରଙ୍କ ଦେହରୁ ମଧ୍ୟ ଦୂର ହୋଇନି ।

ଇଂରେଜ ଓ ମାର୍କିନ ଉଭୟ ଜାତିର ଐତିହାସିକମାନେ ମାର୍କିନ୍ ବିପ୍ଳବର ଇତିହାସ ଭିନ୍ନ ଭିନ୍ନ ଭାବରେ ଲେଖିଛନ୍ତି ଏବଂ ଆଜି ବି ଯେବେ ପୁରାତନ ଉତ୍ତେଜନା ଓ ଆବେଗ ସବୁ ଶାନ୍ତ ହୋଇଯାଇଛି ଓ ଦୁଇ ଜାତି ମଧ୍ୟରେ ମିତ୍ରତା ପ୍ରତିଷ୍ଠିତ ହୋଇଛି, ଉଭୟେ ପରସ୍ପରର ଦୃଷ୍ଟିକୋଣ ପ୍ରତି ବିରକ୍ତି ପ୍ରକାଶ କରିଥାନ୍ତି । ଆମ ସମୟରେ ମଧ୍ୟ ବହୁ ବିଖ୍ୟାତ ଇଂରେଜ ରାଜନୀତିଜ୍ଞଙ୍କ ଦୃଷ୍ଟିରେ ଲେନିନ୍ ଜଣେ ରାକ୍ଷସ ଓ ଡକାୟତ ମାତ୍ର । ତଥାପି କୋଟି କୋଟି ଲୋକ ତାଙ୍କୁ ଜଣେ ତ୍ରାଣକର୍ତ୍ତା ଓ ଏ ଯୁଗର ଶ୍ରେଷ୍ଠ ପୁରୁଷ ବୋଲି ଗ୍ରହଣ କରିଛନ୍ତି । ଭାରତର ଇତିହାସକୁ ପ୍ରତ୍ୟେକ ଦିଗରେ ବିକଳାଙ୍ଗ କରିଥିବା, ଯେଉଁମାନଙ୍କର ସ୍ମୃତି ଭାରତୀୟଙ୍କ ପକ୍ଷରେ ପବିତ୍ର, ସେମାନଙ୍କର ଦୁର୍ନାମ ରଟିଥିବା ଏବଂ ଭାରତରେ ବ୍ରିଟିଶ ରାଜତ୍ୱକାଳକୁ ସମ୍ମାନିତ ଓ ଗୌରବାନ୍ୱିତ କରିଥିବା ତଥାକଥିତ ଇତିହାସ ଗ୍ରନ୍ଥ ଭାରତୀୟ ବିଦ୍ୟାଳୟମାନଙ୍କରେ ପାଠ୍ୟ ରୂପେ ପ୍ରଚଳନ ବାଧ୍ୟ କରାଯିବାରେ ଭାରତୀୟ ମନର ପ୍ରତିକ୍ରିୟା ଏହି ସବୁ ତୁଳନାଦ୍ୱାରା, କ୍ଷୀଣଭାବରେ ହେଲେ ସୁଦ୍ଧା, ଅନୁମାନ କରାଯାଇ-ପାରେ ।

ଗୋପାଳକୃଷ୍ଣ ଗୋଖଲେ ତାଙ୍କର ମୃଦୁ ଶ୍ଲେଷପୂର୍ଣ୍ଣ ଶୈଳୀରେ ଭାରତ ସଙ୍ଗେ ବ୍ରିଟିଶ ସମ୍ପର୍କ ନିୟୋଜିତ କରିଥିବା ପରମପିତାଙ୍କ ଦୁର୍ଜ୍ଞେୟ ପ୍ରଜ୍ଞା ବିଷୟରେ ଥରେ ଲେଖିଥିଲେ । ଏହି ଦୁର୍ଜ୍ଞେୟ ପ୍ରଜ୍ଞାର କାରଣରୁ ହେଉ କିମ୍ବା ଐତିହାସିକ ଅଦୃଷ୍ଟର କୌଣସି ପ୍ରକ୍ରିୟାରୁ ହେଉ ଅଥବା କେବଳ ଗୋଟାଏ ଅପ୍ରତ୍ୟାଶିତ ଘଟଣାରୁ ହେଉ, ଭାରତକୁ ଇଂରେଜମାନଙ୍କ ଆଗମନ ଦୁଇଟି ସମ୍ପୂର୍ଣ୍ଣ ଭିନ୍ନ ଜାତିକୁ ଆଣିଲା; କିମ୍ବା ଯଦିବା ସେମାନଙ୍କୁ ଏକାସଙ୍ଗେ ଆଣିଥିବ, ଯେପରି ଦେଖାଗଲା, ଉଭୟ ପରସ୍ପର ଅଭିମୁଖୀ ହୋଇନାହାନ୍ତି ଏବଂ ସେମାନଙ୍କର ଯାହା କିଛି ସମ୍ପର୍କ ପରୋକ୍ଷ ହିଁ ରହିଗଲା । ଇଂରେଜୀ ସାହିତ୍ୟ ଓ ଇଂରେଜ ରାଜନୈତିକ ଚିନ୍ତା ଇଂରେଜୀ ଶିକ୍ଷିତ ମୁଷ୍ଟିମେୟ କେତେକଙ୍କୁ ପ୍ରଭାବିତ କଲା; କିନ୍ତୁ ଏହି ରାଜନୈତିକ ଚିନ୍ତା ତାର ପ୍ରକରଣରେ ଗତିଶୀଳ ହେଲେ ସୁଦ୍ଧା ସେ ସମୟର ଭାରତରେ ତାର କୌଣସି ବାସ୍ତବ-ମୂଲ୍ୟ ନଥିଲା । ଯେଉଁ ଇଂରେଜମାନେ ଭାରତକୁ ଆସିଥିଲେ, ସେମାନେ ରାଜନୈତିକ-ସାମାଜିକ ବିପ୍ଳବୀ ନୁହନ୍ତି; ଇଂଲଣ୍ଡର ଅତି ପ୍ରତିକ୍ରିୟାଶୀଳ ସାମାଜିକବର୍ଗର ପ୍ରତିନିଧି ଭାବରେ ସେମାନେ ଥିଲେ ବଡ଼ ରକ୍ଷଣଶୀଳ ଏବଂ କେତେକ ଭାବରେ ୟୁରୋପରେ ଇଂଲଣ୍ଡ ଥିଲା ସବୁଠାରୁ ବଡ଼ ରକ୍ଷଣଶୀଳ ଦେଶ ।

ଭାରତ ଉପରେ ପାଶ୍ଚାତ୍ୟ ସଂସ୍କୃତିର ପ୍ରଭାବ ଥିଲା, ମଧ୍ୟ-ଯୁଗୀୟ ବିଚାରଧାରା ସଙ୍ଗେ ଅଭ୍ୟସ୍ତ, ଗୋଟାଏ ଗତିହୀନ ସମାଜ ଉପରେ, ଯାହା ନିଜସ୍ୱ ସ୍ଥିତିରେ କେତେ ଭବ୍ୟ ଓ ଅଗ୍ରଗାମୀ ହୋଇଥିଲେ ସୁଦ୍ଧା ଅନ୍ତର୍ନିହିତ କେତେକ ତ୍ରୁଟି ବିଚ୍ୟୁତିଯୋଗୁଁ ପ୍ରଗତିଶୀଳ ହୋଇପାରି ନଥିଲା, ତାର ଉପରେ ଗୋଟାଏ ଗତିଶୀଳ ସମାଜ, ଗୋଟାଏ 'ଆଧୁନିକ' ଚେତନାର ପ୍ରଭାବ । ତଥାପି ବଡ଼ ବିଚିତ୍ର କଥା ଯେ ଏହି ଐତିହାସିକ ପ୍ରକ୍ରିୟାର ବାହକ-ମାନେ ଭାରତରେ ସେମାନଙ୍କର ପବିତ୍ର କର୍ତ୍ତବ୍ୟ ସମ୍ପର୍କରେ ସମ୍ପୂର୍ଣ୍ଣ ଭାବରେ ଅଚେତନ ଥିଲେ କେବଳ ନୁହେଁ, ଗୋଟାଏ ଶ୍ରେଣୀ ଭାବରେ, ପ୍ରକୃତ ପକ୍ଷେ ସେମାନେ ଏପରି କୌଣସି ପ୍ରକ୍ରିୟାର ପ୍ରତିନିଧିତ୍ୱ କରିନଥିଲେ । ଇଂଲଣ୍ଡରେ ସେମାନଙ୍କର ଶ୍ରେଣୀ ଏହି ଐତିହାସିକ ପ୍ରକ୍ରିୟା ବିରୁଦ୍ଧରେ ସଂଗ୍ରାମ କରିଥିଲା; କିନ୍ତୁ ସେମାନଙ୍କର ବିରୋଧଶକ୍ତି ଏତେ ପ୍ରବଳ ଥିଲା ଯେ ସେମାନଙ୍କୁ ବାଧା ଦେଇ ଅଟକାଇ ରଖିବା ସମ୍ଭବ ହୋଇନଥିଲା । ଭାରତରେ କିନ୍ତୁ ସେମାନଙ୍କୁ ମିଳିଲା ଗୋଟାଏ ମୁକ୍ତକ୍ଷେତ୍ର, ଯେଉଁଠି ସେମାନେ ଏକ ବୃହତ୍ତର ପ୍ରକରଣରେ ପ୍ରତିନିଧିତ୍ୱ କରୁଥିବା ପରିବର୍ତ୍ତନ ଓ ପ୍ରଗତି ମୁହଁରେ ପ୍ରତିବନ୍ଧକ ସୃଷ୍ଟି କରିବାରେ ସଫଳ ହୋଇପାରିଲେ । ଭାରତୀୟ ସମାଜର ପ୍ରତିକ୍ରିୟାଶୀଳ ଗୋଷ୍ଠୀମାନଙ୍କ କାର୍ଯ୍ୟକଳାପକୁ ସେମାନେ ପ୍ରୋତ୍ସାହିତ କଲେ ଏବଂ ରକ୍ଷଣଶୀଳତାର ଆସ୍ଥାନ ସୁଦୃଢ଼ କଲେ । ଯେଉଁମାନେ ସାମାଜିକ ଓ ରାଜନୈତିକ ପରିବର୍ତ୍ତନ ନିମନ୍ତେ କାର୍ଯ୍ୟ କରୁଥିଲେ, ସେମାନଙ୍କୁ ପ୍ରତିରୋଧ କଲେ । ଏହି ପରିସ୍ଥିତିରେ ଯଦି ପରିବର୍ତ୍ତନ ଆସିଲା, ତାହାହେଲେ ସେମାନଙ୍କ ସତ୍ତ୍ୱେ ବି ଆସିଲା କିମ୍ବା ଆସିଲା ସେମାନଙ୍କର କାର୍ଯ୍ୟକଳାପର ଗୋଟାଏ ଆନୁଷଙ୍ଗିକ ତଥା ଅପ୍ରତ୍ୟାଶିତ ପରିଣାମ ଭାବରେ । ବାଷ୍ପଚାଳିତ ଇଞ୍ଜିନ ଓ ରେଳପଥର ପ୍ରବର୍ତ୍ତନ ମଧ୍ୟଯୁଗୀୟ ସଙ୍ଗଠନ ସ୍ଥିତିରେ ପରିବର୍ତ୍ତନ ଆଣିବା ଦିଗରେ ଥିଲା ଗୋଟାଏ ବଡ଼

ପଦକ୍ଷେପ; କିନ୍ତୁ ଏହା ପଛରେ ଉଦ୍ଦେଶ୍ୟ ଥିଲା ସେମାନଙ୍କ ରାଜତ୍ୱକୁ ସୁଦୃଢ଼ କରିବା ଏବଂ ସେମାନଙ୍କର ନିଜର ଲାଭପାଇଁ ଦେଶର ଭିତର ଅଞ୍ଚଳଗୁଡ଼ିକର ଶୋଷଣ ସହଜ କରିବା । ଭାରତରେ ଇଂରେଜ ଅଧିକର୍ତ୍ତାମାନଙ୍କର ଉଦ୍ଦେଶ୍ୟପ୍ରଣୋଦିତ ନୀତି ଏବଂ ତାର କେତେକ ଅନଭିପ୍ରେତ ପରିଣାମ ମଧ୍ୟରେ ଏହି ଅସଙ୍ଗତି ଏକ ପ୍ରକାର ବିଭ୍ରାଟ ସୃଷ୍ଟିକରି ପ୍ରକୃତ ନୀତି ମୁହଁରେ ମୁଖା ପିନ୍ଧାଇଦିଏ । ପରିବର୍ତ୍ତନ ଭାରତରେ ଘଟିଲା ପାଶ୍ଚାତ୍ୟର ଏହି ସ୍ପଯୋଗୁଁ; କିନ୍ତୁ ଏହା ଘଟିଲା ଭାରତରେ ଇଂରେଜମାନଙ୍କ କର୍ତ୍ତବ୍ୟ ସଚେତନ ଉପସ୍ଥିତି ସତ୍ତ୍ୱେ । ଏହି ପରିବର୍ତ୍ତନର ଗତି ଏତେ ସଫଳ ଭାବରେ ସେମାନେ ମନ୍ଥର କରିଦେଇ ପାରିଥିଲେ ଯେ ଆଜି ବି ଦେଶର ଅବସ୍ଥାନ୍ତର ସଙ୍ଗଠନ କରିବା ସମ୍ପୂର୍ଣ୍ଣ ହୋଇପାରୁନି ।

ଭାରତରେ ରାଜତ୍ୱ କରିବାପାଇଁ ଇଂଲଣ୍ଡରୁ ଯେଉଁ ସାମନ୍ତବାଦୀ ଭୂସ୍ୱାମୀ ଓ ସେମାନଙ୍କର ସ୍ୱଜାତି ଆସିଲେ, ସେମାନେ ବିଶ୍ୱକୁ ଦେଖୁଥିଲେ ଜଣେ ଜମିଦାରର ଆଖିରେ । ଭାରତ ଥିଲା ସେମାନଙ୍କ ପକ୍ଷରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଗୋଟାଏ ବିଶାଳ ଜମିଦାରୀ ଏବଂ ଜମିଦାର ଥିଲା ତାର ଜମିଦାରୀ ଓ ଜମିଦାରୀ ପ୍ରଜାମାନଙ୍କର ଶ୍ରେଷ୍ଠ ତଥା ସ୍ୱାଭାବିକ ପ୍ରତିନିଧି । ବ୍ରିଟିଶ ମୁକୁଟ ହାତରେ ଇଷ୍ଟ ଇଣ୍ଡିଆ କମ୍ପାନୀ ତାର ଏହି ଭାରତ ଜମିଦାରୀ ସମର୍ପଣ କରିଦେବା ପରେ ମଧ୍ୟ ଏହି ଦୃଷ୍ଟିଭଙ୍ଗୀ ଅପରିବର୍ତ୍ତିତ ରହିଲା; କାରଣ କମ୍ପାନୀର ଜମିଦାରମାନଙ୍କୁ ଭାରତର ରାଜକୋଷରୁ ମୋଟା କ୍ଷତି ପୂରଣ ଦିଆଯାଉଥିଲା । (ଏପରିଭାବରେ ଭାରତର ଜାତୀୟ ଋଣ ଆରମ୍ଭ ହେଲା । ଏହା ଥିଲା ଭାରତ ଦେଉଥିବା ତାର ମୁକ୍ତି-ମୂଲ୍ୟ ।) ଏହାପରେ ଭାରତର ବ୍ରିଟିଶ ସରକାର ହେଲେ ପ୍ରକୃତ ଜମିଦାର (କମ୍ପାନୀ ଜମିଦାରଙ୍କ ପ୍ରତିନିଧିବର୍ଗ) । ବସ୍ତୁତଃ, ସେମାନେ ନିଜକୁ 'ଭାରତ' ବୋଲି ବିବେଚନା କରୁଥିଲେ; ଯେପରିକି ଲର୍ଡ୍ ସଭାର ସଭ୍ୟମାନେ ଡେଭନ୍‌ସାଇରର ଡିଉକଙ୍କୁ (ଯୁବରାଜଙ୍କ ଅବ୍ୟବହିତ ନିମ୍ନପଦ) 'ଡେଭନ୍‌ସାଇର୍' ବିବେଚନା କରିପାରନ୍ତି । ଭାରତ ଅଧିବାସୀ କୋଟି କୋଟି ଲୋକ ଥିଲେ ଏକପ୍ରକାର ଜମିଦାରୀ ପ୍ରଜା କେବଳ ଏବଂ ସେହି ସ୍ୱାଭାବିକ ସାମନ୍ତବାଦୀ ବ୍ୟବସ୍ଥାରେ ନିଜର ରକ୍ଷଣ ନିମନ୍ତେ ସେମାନଙ୍କୁ ନାନାବିଧ କର ଓ ଟିକସ ଦେବାକୁ ପଡ଼ୁଥିଲା । ଏହି ବ୍ୟବସ୍ଥାକୁ ଆହ୍ୱାନ ଜଣାଇବା ଭାରତର ବ୍ରିଟିଶ ସରକାର ପକ୍ଷରେ ଥିଲା ବ୍ରହ୍ମାଣ୍ଡର ନୈତିକ ଭିତ୍ତି ବିରୁଦ୍ଧରେ ଦ୍ରୋହାଚରଣ ଓ ଗୋଟାଏ ନୈସର୍ଗିକ ବିଧାନର ଗୁରୁ ପ୍ରତିବାଦ ।

ବର୍ତ୍ତମାନ ଯଦିଓ ଭିନ୍ନ ଭାବରେ ତାର ଅଭିବ୍ୟକ୍ତି ଘଟିଛି, ଭାରତରେ ବ୍ରିଟିଶ ଶାସନର ଏହି ଆଧିଭୌତିକ ଅବଧାରଣା ମୌଳିକ ଭାବରେ ପରିବର୍ତ୍ତିତ ହୋଇନି । ବିରବାଦକର ରାଜସ୍ୱ ଆଦାୟ ପ୍ରଥାର ପୁରାତନ ପଦ୍ଧତି ସ୍ଥାନରେ ଅଧିକତର ଚତୁର ଓ ଅସତ୍ ଉପାୟମାନ ପ୍ରୟୋଗ କରାଯାଇଛି । ଜମିଦାର ତାର ପ୍ରଜାଙ୍କ ପ୍ରତି ଉଦାର ଓ ସେମାନଙ୍କର ସ୍ୱାର୍ଥ ସଂରକ୍ଷଣ ଦିଗରେ ଦୃଷ୍ଟି ରଖିବା ଉଚିତ ବୋଲି ସ୍ୱୀକାର କରାଯାଇଛି । ଏକଥା ମଧ୍ୟ ସ୍ୱୀକୃତ ହୋଇଛି ଯେ ପ୍ରଜାଙ୍କ ଭିତରୁ ଅଧିକତର ବିଶ୍ୱସ୍ତ ଓ ଅନୁଗତ ଲୋକଙ୍କୁ ପଦମର୍ଯ୍ୟାଦାରେ ଉନ୍ନୀତ କରି, ଶାସନକଳରେ, ଅଧୀନସ୍ଥ ଭାବରେ ସେମାନଙ୍କୁ ଅଂଶଗ୍ରହଣ କରିବାକୁ

ଦିଆଯାଉ; କିନ୍ତୁ ଜମିଦାରୀ ପ୍ରଥା ପ୍ରତି କୌଣସି ଆହ୍ୱାନ କିମ୍ବା ବିରୋଧ ସହ୍ୟ କରାଯାଇ ନପାରେ । କ୍ଷମତା ହସ୍ତାନ୍ତରିତ ହେଉଥିଲେ ସୁଦ୍ଧା ଜମିଦାରୀ କାର୍ଯ୍ୟ ପୂର୍ବେ ଯେପରି ଚାଲୁଥିଲା, ସେଇଭଳି ହିଁ ଚାଲିବ । ବିବିଧ ଘଟଣାର ଚାପ ଫଳରେ କୌଣସି ପରିବର୍ତ୍ତନ ଯଦି ଅବଶ୍ୟମ୍ଭାବୀ ହୋଇପଡ଼ିଲା, ତେବେ ସ୍ଥିର କରି ଦିଆଗଲା ଯେ ଜମିଦାରୀ ଅଫିସରେ ସମସ୍ତ ବରିଷ୍ଠ କର୍ମଚାରୀ ନିଯୁକ୍ତ ରହିବେ, ଜମିଦାରଙ୍କ ସମସ୍ତ ନୂତନ ଓ ପୁରାତନ ବନ୍ଧୁ, ଅନୁଗାମୀ ଓ ଆଶ୍ରିତଙ୍କ ପାଇଁ ବ୍ୟବସ୍ଥା କରାଯିବ, ବାର୍ଦ୍ଧକ୍ୟ ଯୋଗୁଁ ଯେଉଁମାନେ ଅବସର ଗ୍ରହଣ କରିଛନ୍ତି, ସେମାନେ ବର୍ଦ୍ଧିତ ଭତ୍ତା ପାଇବେ, ପୁରାତନ ଜମିଦାର ମଧ୍ୟ ଜମିଦାରୀର ଜଣେ ଉଦାର ପୃଷ୍ଠପୋଷକ ଓ ଉପଦେଷ୍ଟା ହୋଇ ରହିବେ । ଏପରିଭାବରେ ଅତ୍ୟାବଶ୍ୟକୀୟ ପରିବର୍ତ୍ତନ ଆଣିବାର ସମସ୍ତ ଉଦ୍ୟମ ବିଫଳ ହେବ ।

ସେମାନଙ୍କର ନିଜ ସ୍ୱାର୍ଥ ସଙ୍ଗେ ଭାରତକୁ ସମ୍ମିଳିତ କରିବାର ଏହି ବୋଧ ପ୍ରଶାସନର ଉଚ୍ଚତର ସ୍ତରରେ, ଯେଉଁଠି ଇଂରେଜମାନେ ହିଁ ସବୁ ପଦ ଅଧିକାର କରିଥାନ୍ତି, ଖୁବ୍ ପ୍ରବଳ ଥିଲା । ପରବର୍ତ୍ତୀ କାଳରେ ଏହି ସ୍ତର ଏକ ନିବିଡ଼ ତଥା ସୁସଙ୍ଗତ ଗୋଷ୍ଠୀରେ ପରିଣତ ହେଲା । ଏହାର ନାମ ହେଉଛି ଇଣ୍ଡିଆନ୍ ସିଭିଲ୍ ସର୍ଭିସ୍ । 'ପୃଥିବୀର ସର୍ବଶ୍ରେଷ୍ଠ ଟ୍ରେଡ଼ ୟୁନିଅନ' ନାମରେ ଜଣେ ଇଂରେଜ ଲେଖକ ଏହାକୁ ଅଭିହିତ କରିଛନ୍ତି । ସେମାନେ ଭାରତର ଶାସନ ଚଳାଉଥିଲେ, ସେମାନେ ହିଁ ଥିଲେ ଭାରତ ଏବଂ ଯାହା କିଛି ସେମାନଙ୍କର ସ୍ୱାର୍ଥ ପକ୍ଷରେ କ୍ଷତିକାରକ ଭାରତ ପକ୍ଷରେ ତାହା ନିଶ୍ଚିତ ଭାବରେ ଅନିଷ୍ଟକର । ଇଣ୍ଡିଆନ୍ ସିଭିଲ୍ ସର୍ଭିସ୍ ଜରିଆରେ ଏବଂ ଚଳିତ ଘଟଣାବଳୀର ବିବରଣୀ ଓ ଇତିହାସରୁ ଏହି ଅବଧାରଣା ଇଂରେଜ ଜାତିର ବିଭିନ୍ନ ସ୍ତରରେ ପରିବର୍ତ୍ତିତ ମାତ୍ରାରେ ବିସ୍ତାର ଲାଭକଲା । ଇଂଲଣ୍ଡର ଶାସକବର୍ଗ ଏହି ଅବଧାରଣାକୁ ପୂର୍ଣ୍ଣ ପ୍ରାଣରେ ଗ୍ରହଣ କରୁଥିଲେ ଏବଂ ସେ ଦେଶର ଶ୍ରମିକ ଓ ଚାଷୀ ମଧ୍ୟ ସାମାନ୍ୟ ଭାବରେ ପ୍ରଭାବିତ ହୋଇଥିଲେ । ଅର୍ଥାତ୍ ନିଜ ଦେଶରେ ସେମାନଙ୍କର ଅଧୀନ ଓ ଅପ୍ରଧାନ ଅବସ୍ଥା ସତ୍ତ୍ୱେ ସାମ୍ରାଜ୍ୟର ଅଧିକାରୀ ଭାବରେ ସେମାନେ ଗର୍ବ ଅନୁଭବ କରୁଥିଲେ । ସେହି ଶ୍ରମିକ କିମ୍ବା କୃଷକ ଭାରତକୁ ଆସିଲେ ଅବଶ୍ୟମ୍ଭାବୀ ଭାବରେ ଏଠାର ଶାସକବର୍ଗଙ୍କ ସଙ୍ଗେ ସମ୍ମିଳିତ ହେଉଥିଲା । ଭାରତର ଇତିହାସ ଓ ସଂସ୍କୃତି ବିଷୟରେ ସେ ଥିଲା ସମ୍ପୂର୍ଣ୍ଣ ଅଜ୍ଞ ଏବଂ ଭାରତରେ ପ୍ରଚଳିତ ଇଂରେଜମତାଦର୍ଶ ସେ ଗ୍ରହଣ କରିନେଉଥିଲା; କାରଣ ବିବେଚନା ଅବା ପ୍ରୟୋଗ ନିମନ୍ତେ ଅନ୍ୟ କୌଣସି ମାନଦଣ୍ଡ ବିଷୟରେ ସେ ଅବହିତ ନଥିଲା । ବଡ଼ ହେଲେ ଗୋଟାଏ ପ୍ରକାର ଅସ୍ପଷ୍ଟ ହିତୈଷିତା ତାର ମନରେ ଜାଗ୍ରତ ହେଉଥିଲା; କିନ୍ତୁ ତାହା ମଧ୍ୟ ପ୍ରଶାସନର ସୀମା ଭିତରେ ଥିଲା କଠୋର ଭାବରେ ନିୟନ୍ତ୍ରିତ । ଶହେବର୍ଷ ପର୍ଯ୍ୟନ୍ତ ଏହି ମତାଦର୍ଶ ଇଂରେଜ ଜାତିର ସବୁ ସ୍ତରରେ ପ୍ରସାରିତ ରହିଥିଲା ଏବଂ ତାହା ଗୋଟାଏ ଜାତୀୟ ଐତିହ୍ୟ, ଗୋଟାଏ ଦୃଢ଼ ତଥା ଅପରିବର୍ତ୍ତନୀୟ ଧାରଣାରେ ପର୍ଯ୍ୟବସିତ ହୋଇଥିଲା । ଏହା ଭାରତ ସମ୍ପର୍କରେ ସେମାନଙ୍କ ଦୃଷ୍ଟିଭଙ୍ଗୀକୁ ପରିଚାଳିତ କରୁଥିଲା ଏବଂ ସେମାନଙ୍କ ଜାତୀୟ ଦୃଷ୍ଟିଭଙ୍ଗୀ ମଧ୍ୟ ଅଦୃଶ୍ୟ ଭାବରେ ପ୍ରଭାବିତ ହୋଇଥିଲା । ଆମ ସମୟରେ, ସେହି

ବିଚାର ଗୋଷ୍ଠୀ ଯାହାର କୌଣସି ନିଶ୍ଚିତ ମାନଦଣ୍ଡ ଅବା ନୀତି କିମ୍ବା ବାହାର ଦୁନିଆଁ ସମ୍ପର୍କରେ ବିଶେଷ ଜ୍ଞାନ ନାହିଁ—ବ୍ରିଟିଶ୍ ଲେବର ପାର୍ଟି ବା ଶ୍ରମିକଦଳର ଏହି ନେତାମାନେ ସଚରାଚର ଭାରତରେ ପ୍ରଚଳିତ ବ୍ୟବସ୍ଥାର ବଡ଼ ଅନୁଗତ ସମର୍ଥକର ପରିଚୟ ଦେଇଥାନ୍ତି । ବେଳେବେଳେ ସେମାନଙ୍କର ଜାତୀୟ ନୀତି ଓ ଔପନିବେଶିକ ନୀତି, ଆଦର୍ଶ ଓ ଆଚରଣ ଭିତରେ ପରିଦୃଷ୍ଟ ପାର୍ଥକ୍ୟ ଏକ ଅସ୍ପଷ୍ଟ ଅସ୍ୱସ୍ତି ଭାବ ସେମାନଙ୍କ ମନରେ ଜାଗ୍ରତ କରାଏ; କିନ୍ତୁ ସର୍ବୋପରି ନିଜକୁ କାଣ୍ଡଜ୍ଞାନବିଶିଷ୍ଟ ଅଭିଜ୍ଞବ୍ୟକ୍ତି ବିବେଚନା କରି ବିବେକର ଏବଂ ବିଧି ଦଂଶନ ସେମାନେ ଅବଜ୍ଞା କରି ବସନ୍ତି । ଅଭିଜ୍ଞ ତଥା ବ୍ୟାବହାରିକ ବୁଦ୍ଧିସମ୍ପନ୍ନ ବ୍ୟକ୍ତି ସୁପ୍ରତିଷ୍ଠିତ ତଥା ପରିଜ୍ଞାତ ଅଭ୍ୟାସ, ପ୍ରଚଳିତ ଅବସ୍ଥା ଉପରେ ହିଁ ତାର କାର୍ଯ୍ୟ-କଳାପର ଭିତ୍ତି ଗଢ଼ିଥାଏ । କୌଣସି ନୀତି ଅବା ପରୀକ୍ଷିତ ହୋଇନଥିବା ତତ୍ତ୍ୱକୁ ଆଶ୍ରୟ କରି କୌଣସି କାଣ୍ଡଜ୍ଞାନସମ୍ପନ୍ନ ବ୍ୟକ୍ତି ଅନାବିଷ୍କୃତ ଅନ୍ଧକାର ଭିତରକୁ ଲମ୍ଫ ପ୍ରଦାନ କରେନାହିଁ ।

ଇଂଲଣ୍ଡରୁ ସିଧାସଳଖ ଭାରତକୁ ଆସୁଥିବା ବଡ଼ଲାଟମାନଙ୍କୁ ଭାରତୀୟ ସିଭିଲ୍ ସର୍ଭିସ୍‌ର ସଙ୍ଗଠନ ସାଧି ସଙ୍ଗେ ଅଭ୍ୟସ୍ତ ଓ ସେଥି ଉପରେ ନିର୍ଭର ରହିବାକୁ ପଡ଼ୁଥିଲା । ଇଂଲଣ୍ଡର ସମ୍ଭ୍ରାନ୍ତ ତଥା ଶାସକବର୍ଗର ଲୋକ ହିସାବରେ ଆଇ. ସି. ଏସ୍.ର ପ୍ରଚଳିତ ଦୃଷ୍ଟିଭଙ୍ଗୀ ଗ୍ରହଣ କରିଯିବାରେ ସେମାନଙ୍କର ବିଶେଷ କିଛି ଅସୁବିଧା ହେଉନଥିଲା । ସେମାନଙ୍କର ଅନିୟନ୍ତ୍ରିତ ପ୍ରଭୁତ୍ୱର ଅଦ୍ୱିତୀୟ ଅବସ୍ଥା, ଯାହାର ତୁଳନା ଅନ୍ୟତ୍ର ନାହିଁ, ସେମାନଙ୍କର ଅଭିବ୍ୟକ୍ତିର ଧାରା ଓ ପ୍ରଣାଳୀରେ କେତେକ ସୂଚରୁର ପରିବର୍ତ୍ତନ ଘଟାଉଥିଲା । ପ୍ରଭୁତ୍ୱ ମଣିଷକୁ ଦୁର୍ନୀତିପରାୟଣ କରେ ଏବଂ ଅନିୟନ୍ତ୍ରିତ ପ୍ରଭୁତ୍ୱ ଅନିୟନ୍ତ୍ରିତ ଭାବରେ ଦୁର୍ନୀତିପରାୟଣ କରେ । ଆଜିର ବିଶ୍ୱରେ ଭାରତର ବ୍ରିଟିଶ ବଡ଼ଲାଟଙ୍କ ଭଳି ଏତେ ଲୋକଙ୍କ ଉପରେ ପ୍ରତିଷ୍ଠିତ ଏ ପ୍ରକାର ଚରମ ଅଧିକାର କୌଣସି ବ୍ୟକ୍ତିର ନଥିଲା ବା ନାହିଁ । ବଡ଼ଲାଟ ଯେପରି ଭାବରେ କହନ୍ତି, ଇଂଲଣ୍ଡର ପ୍ରଧାନମନ୍ତ୍ରୀ କିମ୍ବା ଆମେରିକାର ପ୍ରେସିଡେଣ୍ଟ ସେ ପ୍ରକାର କରିବାପାଇଁ ଭାଜନ ନୁହନ୍ତି । ବଡ଼ଲାଟଙ୍କ ସଙ୍ଗେ କେବଳ ଜଣେ ଲୋକର ତୁଳନା ହୋଇପାରେ ଏବଂ ସେ ହେଉଚନ୍ତି ହିଟଲର । ବଡ଼ଲାଟ କେବଳ ନୁହନ୍ତି, ତାଙ୍କର ପରିଷଦର ଇଂରେଜ ସଭ୍ୟମାନେ ପ୍ରାଦେଶିକ ଲାଟମାନେ, ଏପରିକି ବିଭିନ୍ନ ବିଭାଗର ସେକ୍ରେଟାରୀ କିମ୍ବା ମାଜିଷ୍ଟ୍ରେଟ ଭଳି ତଳିଆ କର୍ମଚାରୀ ମଧ୍ୟ ବଡ଼ଲାଟଙ୍କ ଧରଣ ଅନୁକରଣ କରିଥାନ୍ତି । ସେମାନେ କଥା କହିଥାନ୍ତି ସୁମହାନ୍ ଏକ ଅଲଙ୍ଘ୍ୟ ଶୀର୍ଷରୁ ଏବଂ ସେମାନେ ଯାହା କହନ୍ତି ବା କରନ୍ତି ତାହା ସମ୍ପୂର୍ଣ୍ଣ ରୂପେ ଯଥାର୍ଥ—ଏ ବିଶ୍ୱାସ କେବଳ ସେମାନଙ୍କର ଦୃଢ଼ ଥାଏ ବୋଲି ନୁହେଁ, ଅଧସ୍ତନ ଓ ଅକିଞ୍ଚନ ଲୋକେ ଯାହା ଭାବୁଥାନ୍ତୁ ନା କାହିଁକି ସେମାନଙ୍କର କଥା ଆଉ କାର୍ଯ୍ୟକୁ ଯଥାର୍ଥ ଭାବରେ ହିଁ ଗ୍ରହଣ କରିବାକୁ ପଡ଼ିବ; କାରଣ ସେମାନେ ହେଉଚନ୍ତି କ୍ଷମତା ଓ ଗୌରବରେ ଅଧିକାରୀ ।

ବଡ଼ଲାଟଙ୍କ ପରିଷଦର କେତେକ ସଭ୍ୟ ସିଧାସଳଖ ଇଂଲଣ୍ଡରୁ ନିଯୁକ୍ତି ପାଉଥାନ୍ତି ।

ଇଣ୍ଡିଆନ୍ ସିଭିଲ୍ ସର୍ଭିସ ସଙ୍ଗେ ସେମାନଙ୍କର ସମ୍ପର୍କ ନଥାଏ । ସେମାନଙ୍କ ଭାଷା ଓ ଆଚରଣରେ ସିଭିଲ୍ ସର୍ଭିସ୍‌ର ଲୋକଙ୍କଠାରୁ ବିଶେଷ ପାର୍ଥକ୍ୟ ଲକ୍ଷ୍ୟକରି ହୁଏ । ଶାସନ-କଳର ଗଣ୍ଡି ଭିତରେ ସେମାନେ ସହଜରେ କାର୍ଯ୍ୟକାରୀ ହୋଇଥାନ୍ତି; କିନ୍ତୁ ସୁନିଶ୍ଚିତ ଅଧିକାରର ସେହି ହାମ୍‌ବଡ଼ା ତଥା ଆତ୍ମସନ୍ତୋଷର ଭାବ ସେମାନଙ୍କଠି ପ୍ରାୟଶଃ ଦେଖିବାକୁ ମିଳେନି । ପରିଷଦର ଭାରତୀୟ ସଭ୍ୟମାନଙ୍କ ଭିତରେ ଅଧୁନା ଯେଉଁମାନଙ୍କୁ ନିଆଯାଇଛି, ବଡ଼ ଲୋକ ତ ସେମାନେ ଅବଶ୍ୟ, ସେମାନଙ୍କର ସଂଖ୍ୟା ଅବା ବୃଦ୍ଧି ପାଉଥାଉ, ଏହି ହାମ୍‌ବଡ଼ା ଭାବ ଆଉରି କମ୍ ଥାଏ । ସିଭିଲ୍ ସର୍ଭିସ୍‌ର ଭାରତୀୟ ସଭ୍ୟମାନେ, ପ୍ରଶାସନର ସଂଗଠନରେ ସେମାନଙ୍କର ସ୍ଥାନ ଯାହାହେଉନା କାହିଁକି, କଥିତ ସମ୍ଭ୍ରାନ୍ତିକାର ନୁହନ୍ତି । ସେମାନଙ୍କ ଭିତରୁ ଥୋକେ ଇଂରେଜ ସହକର୍ମୀମାନଙ୍କ ଢଙ୍ଗଢାଙ୍ଗ ପ୍ରାୟ ବିଫଳ ଭାବରେ ଅନୁକରଣ କରିଥାନ୍ତି । ଫଳତଃ, ସେମାନେ ଆତ୍ମମ୍ଭରି ଓ ଉପହାସର ପାତ୍ର ହୋଇପଡ଼ନ୍ତି ।

ଭାରତୀୟ ସିଭିଲ୍ ସର୍ଭିସ୍ ନୂତନ ପୁରୁଷର ବ୍ରିଟିଶ୍ ସଭ୍ୟମାନେ ବିଚାର ଓ ଆଚରଣରେ ସେମାନଙ୍କର ପୂର୍ବପୁରୁଷ ଅପେକ୍ଷା କେତେକାଂଶରେ ଭିନ୍ନ ବୋଲି ମୋର ବିଶ୍ୱାସ । ପୁରାତନ ବ୍ୟବସ୍ଥା ସଙ୍ଗେ ସେମାନେ ସହଜରେ ନିଜକୁ ଖାପଖୁଆଇ ପାରନ୍ତିନି; କିନ୍ତୁ ପ୍ରଭୁତ୍ୱ ଓ ନୀତିର ଧାରା ବୟୋଜ୍ୟେଷ୍ଠ ସଭ୍ୟମାନେ ଯେହେତୁ ନିର୍ଣ୍ଣୟ କରନ୍ତି, ନବାଗତ-ମାନଙ୍କ ଉପସ୍ଥିତି ବିଶେଷ କିଛି ପାର୍ଥକ୍ୟର କାରଣ ହୁଏନାହିଁ । ସେମାନଙ୍କ ପାଇଁ ଦୁଇଟି ମାତ୍ର ମାର୍ଗ ଉନ୍ମୁକ୍ତ ଥାଏ : ପ୍ରତିଷ୍ଠିତ ବ୍ୟବସ୍ଥାକୁ ଗ୍ରହଣକରି ଚାଲିବା କିମ୍ବା ବେଳେବେଳେ ଯେପରି ଘଟିଥାଏ, କାର୍ଯ୍ୟରୁ ଇସ୍ତଫା ଦେଇ ସ୍ୱଦେଶକୁ ଫେରିଯିବା ।

ମୋର ବାଲ୍ୟ ବୟସରେ, ମନେଅଛି ବ୍ରିଟିଶ୍ ସ୍ୱତ୍ତ୍ୱ ଓ ତତ୍ତ୍ୱାବଧାନରେ ଭାରତରେ ପ୍ରକାଶିତ ସମ୍ବାଦପତ୍ରମାନଙ୍କରେ ସର୍ଭିସ୍ ଖବର, ବଦଳି ଓ ପଦୋନ୍ନତି; ଇଂରେଜ ସମାଜର କାର୍ଯ୍ୟକଳାପ, ପୋଲୋ, ଘୋଡ଼ା ଦୌଡ଼, ନୃତ୍ୟ, ସୌଖୀନ ରଙ୍ଗମଞ୍ଚ ଇତ୍ୟାଦି ନାନାବିଧ ସମ୍ବାଦ ସମ୍ବାଦପତ୍ରର ସ୍ତମ୍ଭଗୁଡ଼ିକରେ ଭରିରହିଥାଏ । ଭାରତର ଜନସାଧାରଣ, ସେମାନଙ୍କର ରାଜନୈତିକ, ସାଂସ୍କୃତିକ, ସାମାଜିକ କିମ୍ବା ଅର୍ଥନୈତିକ ଜୀବନ ସମ୍ପର୍କରେ ଧାଡ଼ିଏ ସୁଦ୍ଧା କେଉଁଠି ଦେଖିବାକୁ ନଥାଏ । ସେଥିରୁ ସମ୍ବାଦପତ୍ର ପଢ଼ିଲେ ଭାରତରେ ଭାରତୀୟମାନେ ଅଛନ୍ତି—ଏ ସନ୍ଦେହ ସୁଦ୍ଧା କାହା ମନରେ ଜାଗ୍ରତ ହେବନି ।

ବମ୍ବେରେ ଚାରିଗୋଟି ଟୀମ୍‌କୁ ନେଇ ଚତୁରଙ୍ଗୀ କ୍ରିକେଟ ମ୍ୟାଚ୍ ହେଉଥାଏ । ସେହି ଚାରିଟି ଟୀମ୍ ହେଲା ଯଥାକ୍ରମେ ହିନ୍ଦୁ, ମୁସ୍‌ଲିମ୍, ପାର୍ଶୀ ଓ ୟୁରୋପୀୟ । ୟୁରୋପୀୟ ଟୀମ୍‌କୁ 'ବମ୍ବେ ପ୍ରଦେଶ' ନାମରେ ନାମିତ କରାଯାଇଥାଏ । ଅନ୍ୟ ଟୀମ୍‌ମାନେ କେବଳ ହିନ୍ଦୁ, ମୁସ୍‌ଲିମ୍ ଓ ପାର୍ଶୀ ନାମରେ ପରିଚିତ ହୋଇଥାନ୍ତି । ଏପରିଭାବରେ ବମ୍ବେର ପ୍ରତିନିଧିତ୍ୱ କରୁଥିଲେ ସାରତଃ ୟୁରୋପୀୟମାନେ ଆଉ ଅନ୍ୟମାନେ, ଯିଏ କେହି ମନେ କରିବା ସ୍ୱାଭାବିକ, ବିଦେଶାଗତ ଏବଂ ମ୍ୟାଚ୍‌ପାଇଁ କେବଳ ସ୍ୱୀକୃତିଲାଭ କରିଚନ୍ତି । ଏହିସବୁ ଚତୁରଙ୍ଗୀ ମ୍ୟାଚ୍ ଏବେ ବି ହେଉଛି; କିନ୍ତୁ ସେ ସମ୍ପର୍କରେ ବହୁ ବିତର୍କ ଦେଖାଦେଇଛି

ଏବଂ ଧର୍ମ ଭିତ୍ତିରେ ଟୀମ୍ ବଛା ନଯିବା ପାଇଁ ଦାବି ବି ହେଉଛି । ମୋର ବିଶ୍ୱାସ, 'ବମ୍ବେ ପ୍ରଦେଶ' ଟୀମ୍‌କୁ ବର୍ତ୍ତମାନ 'ୟୁରୋପୀୟ ଟୀମ୍' କୁହାଯାଉଛି ।

ଭାରତରେ ଇଂରେଜମାନଙ୍କ କ୍ଲବ୍‌ଗୁଡ଼ିକୁ ସଚରାଚର ଆଞ୍ଚଳିକ ନାମ ଦିଆଯାଇଥାଏ । ଯଥା—ବେଙ୍ଗଲ୍ କ୍ଲବ୍, ଆଲ୍ଲାହାବାଦ କ୍ଲବ୍ ଇତ୍ୟାଦି । ଏହି ସବୁ କ୍ଲବ୍, ବ୍ରିଟିଶ କିମ୍ବା ବଡ଼ ହେଲେ ୟୁରୋପୀୟମାନଙ୍କ ପାଇଁ କେବଳ ଉଦ୍ଦିଷ୍ଟ । କୌଣସି କ୍ଲବ୍‌କୁ ଆଞ୍ଚଳିକ ନାମ ଦେବା କିମ୍ବା ଥୋକେ ଲୋକ ନିଜ ପାଇଁ କେବଳ ଗୋଟିଏ କ୍ଲବ୍ ଗଢ଼ି ବାହାରଲୋକଙ୍କୁ ସେଥିରେ ଯୋଗଦେବାର ଅଧିକାର ନ ଦେବାରେ ବିଶେଷ କିଛି ବାଧା ନରହୁ; କିନ୍ତୁ ଏହି ନାମକରଣର ଢଙ୍ଗ ସେହି ପୁରାତନ ବ୍ରିଟିଶ ରୀତିରୁ ଆହରିତ ଯାହା ସେମାନଙ୍କୁ ସେମାନେ ହିଁ ପ୍ରକୃତରେ ଭାରତ, ପ୍ରକୃତରେ ବଙ୍ଗ କିମ୍ବା ଆଲ୍ଲାହାବାଦ ବୋଲି ମଣାଇଥାଏ । ଆଉ ସମସ୍ତେ କେବଳ ତୁଚ୍ଛ ଲୋକ, ନିଜ ସ୍ଥାନ ବିଷୟରେ ସଚେତନ ଥିଲେ ତ କିଛି ମୂଲ୍ୟ ପାଇଲେ, ଅନ୍ୟଥା କେବଳ ବିରକ୍ତିର କାରଣ । ୟୁରୋପୀୟ କ୍ଲବ୍‌ମାନଙ୍କରୁ ଅଣୟୁରୋପୀୟଙ୍କୁ ବାଦ୍‌ଦେବା ଗୋଟାଏ ଉତ୍କଟ ଜାତିଗତ ବ୍ୟାପାର । ସମସ୍ତରର ଲୋକେ ଏକତ୍ର ମିଳିତ ହୋଇ, ହାତରେ କିଛି କାମ ନଥିବା ସମୟରେ, ଖେଳିବା ଓ ଅନ୍ୟାନ୍ୟ ସାମାଜିକ ଆଦାନ ପ୍ରଦାନରେ ଭାଗନେବା ଓ ସେଥିପାଇଁ ବାହାର ଲୋକଙ୍କୁ ବାଦ୍‌ଦେବା ପଛରେ କିଛି ଯଥାର୍ଥତା ଥାଇପାରେ । ମୋର ମତରେ କେବଳ ଇଂରେଜ କିମ୍ବା ୟୁରୋପୀୟମାନଙ୍କ ପାଇଁ ଉଦ୍ଦିଷ୍ଟ କ୍ଲବ୍ ରହିବାରେ କିଛି ବାଧା ନାହିଁ । ଖୁବ୍ କମ୍ ଭାରତୀୟ ସେଥିରେ ଯୋଗ-ଦେବାପାଇଁ ବି ଆଗ୍ରହିତ ହେବେ; କିନ୍ତୁ ଏହି ସାମାଜିକ ଅନନ୍ୟତା ଯେବେ ସ୍ପଷ୍ଟତଃ ଜାତିଗତ ବିଗ୍ରହର ଏବଂ ନିଜର ଶ୍ରେଷ୍ଠତ୍ୱ ତଥା ଦୁରଧିଗମ୍ୟତାର ପ୍ରକାଶକ ଗୋଟାଏ ଶାସକ-ବର୍ଗ ଉପରେ ଭିତ୍ତିକରେ, ତାହାହେଲେ ସେଥିରୁ ଅନ୍ୟ ଏକ ଅର୍ଥ ବାହାରେ । ବମ୍ବେରେ ଗୋଟାଏ ସୁପରିଚିତ କ୍ଲବ୍ ଅଛି, ଯାହାର ପରିଦର୍ଶକ ପ୍ରକୋଷ୍ଠ ପର୍ଯ୍ୟନ୍ତ ବି ଅତୀତରେ କେବେହେଲେ ଏବଂ ମୁଁ ଯେତେଦୂର ଜାଣେ ଏବେ ବି ସେ କୌଣସି ଦେଶୀୟ ରାଜ୍ୟର ଶାସକ ହୋଉ କିମ୍ବା ଯେତେ ବଡ଼ ଶିଳ୍ପପତି ହେଉ, ସେ ଯଦି ଭାରତୀୟ, କ୍ଲବ୍‌ର ଭାରତୀୟ ଚାକର ବ୍ୟତୀତ କିଏ ଯାଇପାରିନି ।

ଭାରତରେ ଜାତିଗତ ଭେଦଭାବ ଇଂରେଜ ବନାମ ଭାରତୀୟ ରୂପରେ ଯେତେ ନାହିଁ, ତା'ଠାରୁ ଅଧିକ ଭାବରେ ଅଛି ୟୁରୋପୀୟ ବନାମ ଏସୀୟ ରୂପରେ । ସେ ଜର୍ମାନ ହେଉ, ପୋଲ୍ ହୋଉ କିମ୍ବା ରୁମାନିଅନ୍ ହେଉ, ଭାରତରେ ପ୍ରତ୍ୟେକ ୟୁରୋପୀୟ ସ୍ୱତଃ ଶାସକ ଜାତିର ଲୋକ ହୋଇଉଠେ । ରେଳଗାଡ଼ି କମରା, ରେଳଷ୍ଟେସନ, ବିଶ୍ରାମାଗାର, ପାର୍କର ବେଞ୍ଚ ଇତ୍ୟାଦିରେ ଲେଖାଯାଇଥାଏ 'ୟୁରୋପୀୟମାନଙ୍କ ପାଇଁ କେବଳ' । ଦକ୍ଷିଣ ଆଫ୍ରିକା କିମ୍ବା ଅନ୍ୟତ୍ର ଏ ବ୍ୟବସ୍ଥା ଆହୁରି ଉତ୍କଟ; କିନ୍ତୁ ନିଜ ଦେଶରେ ଏହା ବରଦାସ୍ତ କରିବା ଆମ ଦାସତ୍ୱ ଅବସ୍ଥାର ଗୋଟାଏ ଅପମାନଜନକ ତଥା ଉତ୍ତେଜନାପ୍ରବଣ ସ୍ମାରକ-ଭଳି ମତେ ମନେ ହୋଇଥାଏ ।

ଏକଥା ସତ୍ୟ ଯେ ଜାତିଗତ ପ୍ରାଧାନ୍ୟ ଓ ବାଦଶାହୀ ଔଦ୍ଧତ୍ୟର ଏହିସବୁ ବହିଃପ୍ରକାଶରେ

କ୍ରମଶଃ ପରିବର୍ତ୍ତିତ ଘଟିଆସୁଛି; କିନ୍ତୁ ଏହି ପ୍ରକ୍ରିୟାର ଗତି ବଡ଼ ମନ୍ଥର ଏବଂ ବାରମ୍ବାର ସେପରି ସବୁ ଘଟଣା ଘଟିଯାଉଛି, ଯାହା ପ୍ରମାଣକରୁଛି ଯେ ଏହା ଲୋକଦେଖାଣିଆ କେବଳ । ରାଜନୈତିକ ଗ୍ରୁପ ଓ ସଂଗ୍ରାମକାମୀ ଜାତୀୟତାବାଦର ଅଭ୍ୟୁଦୟ ପରିବର୍ତ୍ତନ ପାଇଁ ଏବଂ ପୂର୍ବର ଜାତିଗତ ଭେଦଭାବ ଓ ଉଗ୍ରତା ଶାନ୍ତକରିବା ଦିଗରେ ସଚେତନ ଭାବରେ ପ୍ରୟାସ କରିବାପାଇଁ ସେମାନଙ୍କୁ ବାଧ୍ୟ କରୁଛି; କିନ୍ତୁ ସେହି ରାଜନୈତିକ ଆନ୍ଦୋଳନ ଯେବେ ଗୋଟାଏ ସଙ୍କଟ ଅବସ୍ଥାରେ ଉପନୀତ ହେଉଛି ଏବଂ ତାହା ଦମନ କରିବା କଥା ଉଠୁଛି, ସେହି ପୁରାତନ ସାମ୍ରାଜ୍ୟବାଦୀ ତଥା ଜାତିଗତ ଔଦ୍ଧତ୍ୟ ଉତ୍କଟ ରୂପରେ ଆତ୍ମପ୍ରକାଶ କରୁଛି ।

ଜାତି ଭାବରେ ଇଂରେଜମାନେ ବଡ଼ ସୁବେଦୀ । ତଥାପି ସେମାନେ ଯେବେ ବିଦେଶ ଯାଆନ୍ତି, ସେମାନଙ୍କଠାରେ ବିଚିତ୍ର ଭାବରେ ପରିବେଶ ଜ୍ଞାନର ଅଭାବ ପରିଲକ୍ଷିତ ହୁଏ । ଭାରତରେ ଯେଉଁଠି ଶାସକ ଓ ଶାସିତର ସମ୍ବନ୍ଧ ପରସ୍ପରର ବୁଝାମଣାକୁ ଜଟିଳ କରେ, ସେଠାରେ ଏହି ସତର୍କତାର ଅଭାବ ବିଚିତ୍ର ଭାବରେ ସ୍ପଷ୍ଟ ହୋଇଉଠେ । ଦେଖି ମନେହୁଏ, ଏ ଭାବ ଯେପରି ସୁପରିକଳ୍ପିତ, କାରଣ ତାହାହେଲେ କେବଳ ଅନ୍ୟ ସବୁକିଛି ପ୍ରତି ଅନ୍ଧ ହୋଇ ସେ ଯାହା ଦେଖିବାକୁ ଚାହୁଁଛି, ତାହା ହିଁ କେବଳ ଦେଖି ପାରିବ; କିନ୍ତୁ ଅବଜ୍ଞା କରି ବସିଲେ ଯାହା ବାସ୍ତବ ଉଭାଇଯାଏନି ଏବଂ ନାନା ତଥ୍ୟ ଯେବେ ବାଧ୍ୟତାମୂଳକ ଭାବରେ ସେମାନଙ୍କର ଦୃଷ୍ଟି ଆକର୍ଷଣ କରାଏ, ଏ ପ୍ରକାର ଅପ୍ରତ୍ୟାଶିତ ଘଟଣା ଫଳରେ ସତେ ଯେପରି କିଏ ଏକ କୌଶଳ ପ୍ରୟୋଗ କରିଦେଇଛି, ଶାସକବର୍ଗ ମୁହଁରେ ବିରକ୍ତି ଓ ବିଦ୍ୱେଷ ଫୁଟି ଉଠେ ।

ବର୍ଣ୍ଣ-ବ୍ୟବସ୍ଥାର ଏହି ଦେଶରେ ଇଂରେଜମାନେ ବିଶେଷତଃ ଇଣ୍ଡିଆନ୍ ସିଭିଲ୍ ସର୍ଭିସ୍‌ର ସଭ୍ୟମାନେ ଗୋଟାଏ ନୂତନ ବର୍ଣ୍ଣ ଗଠନ କରିଚନ୍ତି, ଯାହା କଠୋର ଶୃଙ୍ଖଳାରେ ଆବଦ୍ଧ ଓ ଅନନ୍ୟ । ଇଣ୍ଡିଆନ୍ ସିଭିଲ୍ ସର୍ଭିସ୍‌ର ଭାରତୀୟ ସଭ୍ୟମାନେ ମଧ୍ୟ ଯଦିଓ ତାର ପରିଚ୍ଛଦ ଧାରଣ କରନ୍ତି ଓ ତାର ନିୟମ ମାନି ଚଳନ୍ତି, ସେହି ବର୍ଣ୍ଣର ଅନ୍ତର୍ଗତ ନୁହନ୍ତି । ନିଜର ଅଦ୍ୱିତୀୟ ପ୍ରାଧାନ୍ୟରେ ଆପ୍ଲୁତ, ଗୋଟାଏ ପ୍ରକାର ଧର୍ମଗତ ବିଶ୍ୱାସ ଭାବରେ ସେହି ବର୍ଣ୍ଣ ବିକାଶ ଲାଭକରିଛି ଏବଂ ସେହି ବିଶ୍ୱାସକୁ କେନ୍ଦ୍ରକରି ଗୋଟାଏ ସମୁଚିତ ପୁରାଣ ବି ଗଢ଼ି ଉଠିଛି, ଯାହା ତାକୁ ପ୍ରତିଷ୍ଠିତ ରଖିବାରେ ସାହାଯ୍ୟ କରୁଛି । ଗଭୀର ବିଶ୍ୱାସ ଓ ନ୍ୟସ୍ତସ୍ୱାର୍ଥର ସଂଯୋଗ ବଡ଼ ଶକ୍ତିଶାଳୀ ଏବଂ ସେଥିପ୍ରତି କୌଣସି ଆହ୍ୱାନ ସୁତୀବ୍ର ଭାବାବେଗ, ହିଂସ୍ର ରୋଷ ଓ ଘୃଣା ଉଦ୍ରେକକରେ ।

## ୧୦. ବଙ୍ଗ ଲୁଣ୍ଠନ ଇଂଲଣ୍ଡରେ ଶିଳ୍ପବିପ୍ଳବକୁ ସାହାଯ୍ୟ କଲା

ସପ୍ତଦଶ ଶତକର ଆରମ୍ଭରେ ସୁରଟଠାରେ ଗୋଟାଏ ଫାକ୍ଟରୀ ବସାଇବାପାଇଁ ଇଷ୍ଟ ଇଣ୍ଡିଆ କମ୍ପାନୀ ମୋଗଲ ସମ୍ରାଟଙ୍କ ପାଖରୁ ଅନୁମତି ପାଇଥିଲେ । କେତେ ବର୍ଷ ପରେ ଦକ୍ଷିଣ-ଭାରତରେ ଖଣ୍ଡିଏ ଜମି କିଣି ସେମାନେ ମାନ୍ଦ୍ରାଜର ଭିତ୍ତି ସ୍ଥାପନ କଲେ ।

ଖ୍ରୀ: ୧୬୬୨ରେ ପର୍ତ୍ତୁଗାଲରୁ ଯୌତୁକ ସ୍ୱରୂପ ଇଂଲଣ୍ଡର ଦ୍ୱିତୀୟ ଚାର୍ଲସ୍ ବମ୍ବେର ଟାପୁ ଖଣ୍ଡକ ପାଇଥିଲେ ଏବଂ ତାହା ସେ କମ୍ପାନୀକୁ ହସ୍ତାନ୍ତର କରିଦେଲେ । ଖ୍ରୀ: ୧୬୯୦ରେ କଲିକତା ନଗରୀର ଭିତ୍ତି ପଡ଼ିଲା । ଏପରିଭାବରେ, ସପ୍ତଦଶ ଶତକର ଶେଷ ସୁଦ୍ଧା ଇଂରେଜମାନେ ପାଦ ରଖିବାପାଇଁ ଏକାଧିକ ସ୍ଥାନ ଲାଭ କରିସାରିଥିଲେ ଏବଂ ଭାରତୀୟ ଉପକୂଳରେ କେତେକ ସେତୁମୁଖ ସ୍ଥାପନ କଲେ । ଧୀରେ ଧୀରେ ଉପକୂଳ ଛାଡ଼ି ସେମାନେ ଭିତରକୁ ପ୍ରବେଶ କରିବାକୁ ଲାଗିଲେ । ଖ୍ରୀ: ୧୭୫୭ର ପଲାସୀ-ଯୁଦ୍ଧ ଏକ ବିଶାଳ ଅଞ୍ଚଳ ସେମାନଙ୍କ ଦଖଲକୁ ଆଣିଦେଲା ଏବଂ ଅଳ୍ପ କେତେକ ବର୍ଷ ଭିତରେ ବଙ୍ଗ, ବିହାର, ଓଡ଼ିଶା ଓ ପୂର୍ବୋପକୂଳ ସେମାନଙ୍କର ଅଧୀନ ହେଲା । ସେମାନଙ୍କର ପରବର୍ତ୍ତୀ ବଡ଼ ପଦକ୍ଷେପ ଘଟିଲା ପ୍ରାୟ ଚାଳିଶ ବର୍ଷ ପରେ, ଊନବିଂଶ ଶତକର ପ୍ରାରମ୍ଭରେ । ଏହା ସେମାନଙ୍କୁ ଦିଲ୍ଲୀର ଫାଟକ ମୁହଁରେ ପହଞ୍ଚାଇଦେଲା । ଖ୍ରୀ: ୧୮୧୮ରେ ମରାଠାମାନେ ଶେଷଥର ପାଇଁ ପରାଜିତ ହେବାର ତୃତୀୟ ପଦକ୍ଷେପରେ ଇଂରେଜମାନେ ଆହୁରି ଆଗେଇଗଲେ । ଚତୁର୍ଥରେ, ଖ୍ରୀ: ୧୮୪୯ରେ, ଶିଖ ଯୁଦ୍ଧ ପରେ ସେମାନଙ୍କ ସମ୍ମୁଖରେ ପ୍ରତିବନ୍ଧକ ଆଉ କିଛି ନଥିଲା ।

ଏପରିଭାବରେ ଇଂରେଜମାନେ ତିନିଶହ ବର୍ଷରୁ କିଛି ଅଧିକ କାଳ ମାନ୍ଦ୍ରାଜରେ ରହିଚନ୍ତି; ୧୮୭ ବର୍ଷ ଧରି ବଙ୍ଗ, ବିହାର ଓ ଓଡ଼ିଶାକୁ ଶାସନ କରିଚନ୍ତି; ଦକ୍ଷିଣକୁ ୧୪୫ ବର୍ଷ ତଳୁ ରାଜ୍ୟ ବିସ୍ତାର କରିଚନ୍ତି; ୧୨୫ ବର୍ଷ ଧରି ଯୁକ୍ତ ପ୍ରଦେଶ, ପଶ୍ଚିମ ଓ ମଧ୍ୟ-ଭାରତରେ ସୁପ୍ରତିଷ୍ଠିତ ହୋଇଚନ୍ତି ଏବଂ ୯୫ ବର୍ଷ ତଳେ ପଞ୍ଜାବ ଭିତରକୁ ପଶି ଆସିଚନ୍ତି । ଏ ହିସାବ ମୁଁ ଦେଉଚି ଖ୍ରୀ: ୧୯୪୪ ଜୁନ୍ ମାସରେ । କ୍ଷୁଦ୍ର ଏକ ଅଞ୍ଚଳ ଭାବରେ ମାନ୍ଦ୍ରାଜ ନଗରୀକୁ ବାଦ୍ ଦେଲେ, ସେମାନେ ବଙ୍ଗ ଓ ପଞ୍ଜାବ ଦଖଲ କରିବା ଭିତରେ ପ୍ରାୟ ଶହେ ବର୍ଷର ବ୍ୟବଧାନ କେବଳ ଦେଖାଯାଏ । ଏହି ସମସ୍ତ ଭିତରେ ବ୍ରିଟିଶ ଶାସନ ନୀତି ଓ ପ୍ରଶାସନିକ ପ୍ରଣାଳୀ ପୁନଃ ପୁନଃ ପରିବର୍ତ୍ତିତ ହୋଇଚି । ଇଂଲଣ୍ଡରେ ନବ ନବ ଅବସ୍ଥା ଯୋଗୁଁ ଓ ଭାରତରେ ଇଂରେଜ ରାଜତ୍ୱ ସୁପ୍ରତିଷ୍ଠିତ ହେବାଦ୍ୱାରା ଏହି ସବୁ ପରିବର୍ତ୍ତନ ଘଟିଚି ପରିସ୍ଥିତିର ଚାପରେ । ଏହିସବୁ ପରିବର୍ତ୍ତନ ଅନୁସାରେ; ନୂତନ ଭାବରେ ଆହରିତ ପ୍ରତ୍ୟେକ ଅଞ୍ଚଳର ଶାସନ ବ୍ୟବସ୍ଥାରେ ପ୍ରଭେଦ ଦେଖା ଦେଇଚି ଏବଂ ଆହୁରି ମଧ୍ୟ ତାହା ନିର୍ଭର କରିଚି ଇଂରେଜମାନଙ୍କଦ୍ୱାରା ପରାଜିତ ଭାରତୀୟ ଶାସକଗୋଷ୍ଠୀର ଚରିତ୍ର ଉପରେ । ଅତଏବ ବଙ୍ଗରେ, ଯେଉଁଠି ବିଜୟ ଲାଭକରିବା ଖୁବ୍ ସହଜ ହୋଇଥିଲା, ମୁସଲମ୍ ଜମିଦାରମାନଙ୍କୁ ସେଠାର ଶାସକବର୍ଗ ଭାବରେ ଗ୍ରହଣ କରି ସେମାନଙ୍କର ବଳ ଭାଙ୍ଗିବା ଦିଗରେ ସମୁଚିତ ନୀତି ଅନୁସରଣ କରାଗଲା । ଅପର ପକ୍ଷରେ, ପଞ୍ଜାବରେ ଇଂରେଜମାନେ ଶିଖ୍‌ମାନଙ୍କ ହାତରୁ କ୍ଷମତା ଛଡ଼ାଇନେଲେ ଏବଂ ମୁସଲମାନମାନଙ୍କ ସଙ୍ଗେ ଆରମ୍ଭରେ ସେମାନଙ୍କର କିଛି ବିବାଦ ନଥିଲା । ଭାରତର ଅଧିକାଂଶ ଅଞ୍ଚଳରେ ମରାଠାମାନେ କେବଳ ଥିଲେ ଇଂରେଜମାନଙ୍କର ପ୍ରତିପକ୍ଷ ।

ଭାରତର ଯେଉଁସବୁ ଅଂଶରେ ଦୀର୍ଘକାଳ ଧରି ଇଂରେଜ ରାଜତ୍ୱ ପ୍ରତିଷ୍ଠିତ ହୋଇଚି,

ସେସବୁ ଅଂଶ ଆଜି ସର୍ବାଧିକ ଭାବରେ ଦରିଦ୍ର । ଏ ତାତ୍ପର୍ଯ୍ୟ ଲକ୍ଷ୍ୟ କରିବାର କଥା । ପ୍ରକୃତ ପକ୍ଷେ, ବ୍ରିଟିଶ ଶାସନକାଳ ଓ କ୍ରମଦରିଦ୍ରତାର ଘନିଷ୍ଠ ସମ୍ପର୍କ ସୂଚିତ କରିବାପାଇଁ ଏକ ନକ୍ସା ବି ଟଣାଯାଇ ପାରେ । ଏହି ନକ୍ସାରେ କେତେକ ବଡ଼ ନଗରୀ ଓ ନୂତନ କେତେ ଶିଳ୍ପାଞ୍ଚଳ ସାରତଃ କୌଣସି ପାର୍ଥକ୍ୟ ସୃଷ୍ଟି କରିନପାରେ । ଉଲ୍ଲେଖଯୋଗ୍ୟ ବିଷୟ ହେଉଛି, ସାମଗ୍ରିକ ଭାବରେ ଜନସାଧାରଣଙ୍କ ଅବସ୍ଥା ଏବଂ ଏଥିରେ କୌଣସି ସନ୍ଦେହ ନାହିଁ ଯେ ଭାରତର ଦରିଦ୍ରତମ ଅଞ୍ଚଳଗୁଡ଼ିକ ହେଉଛି ବଙ୍ଗ, ବିହାର, ଓଡ଼ିଶା ଓ ମାଡ୍ରାଜ ପ୍ରଦେଶର କିୟଦଂଶ । ଜନସାଧାରଣଙ୍କ ଜୀବନ ଧାରଣର ମାନ ପଞ୍ଜାବରେ ଉଚ୍ଚତମ । ବଙ୍ଗ ଅବଶ୍ୟ ଇଂରେଜମାନଙ୍କ ପ୍ରବେଶ ପୂର୍ବରୁ ଗୋଟାଏ ସମୃଦ୍ଧିଶାଳୀ ପ୍ରଦେଶ ଥିଲା । ଏହି ସବୁ ପାର୍ଥକ୍ୟର ନାନା କାରଣ ଥାଇପାରେ; କିନ୍ତୁ ଏକଥା ଭୁଲି ହେଉନାହିଁ ଯେ ଦିନେ ଯାହା ଥିଲା ବିତ୍ତ ଓ ଐଶ୍ୱର୍ଯ୍ୟର ଭଣ୍ଡାର, ସେହି ବଙ୍ଗ ୧୮୭ ବର୍ଷର ଇଂରେଜ ଶାସନ ପରେ ଏବଂ ଆମକୁ ଯେପରି କୁହାଯାଉଛି, ତାର ଅବସ୍ଥାର ଉନ୍ନତି ନିମନ୍ତେ ଓ ତାର ଲୋକଙ୍କୁ ସ୍ୱାୟତ୍ତ ଶାସନର ପ୍ରଣାଳୀ ଶିକ୍ଷାଦେବାର ଅବିଶ୍ରାନ୍ତ ପ୍ରୟାସ ସତ୍ତ୍ୱେ ଆଜି ଦରିଦ୍ରତାଗ୍ରସ୍ତ, ଅନାହାରକ୍ଲିଷ୍ଟ ତଥା ମୁମୂର୍ଷୁ, ଗୋଟାଏ ଜନସମାହାର ମାତ୍ର ।

ଭାରତରେ ଇଂରେଜ ରାଜତ୍ୱର ପ୍ରଥମ ତଥା ପୂର୍ଣ୍ଣ ଅଭିଜ୍ଞତା ଲାଭକଲା ବଙ୍ଗ । ସେହି ଶାସନ ଆରମ୍ଭ ହେଲା ଲୁଣ୍ଠନରୁ ଏବଂ ଯେଉଁ ରାଜସ୍ୱ ଆଦାୟ ପ୍ରଣାଳୀ ଚାଲୁ କରାଗଲା ସେଥିରେ ଜୀବିତ ବ୍ୟକ୍ତିଠାରୁ କେବଳ ନୁହେଁ, ମୃତ ଚାଷୀଠାରୁ ମଧ୍ୟ ତାର ଶେଷ ପାହୁଲା ଛଡ଼ାଇ ନିଆଗଲା । ଭାରତର ଇତିହାସ ଲେଖକ ଦୁଇଜଣ ଇଂରେଜ ଏଡ୍‌ୱାର୍ଡ଼ ଥମ୍ପସନ୍ ଓ ଜି. ଟି. ଗାରେଟ୍ କହନ୍ତି ଯେ "ଇଂରେଜଙ୍କ ମନରେ ଦଉଲତ ନିମନ୍ତେ ଏତେ ବିପୁଳ ଲାଲସା ଭରିରହିଥିଲା ଯେ କୋର୍ଟେଜ୍ ଓ ପିଜାରୋଙ୍କ ଯୁଗର ସ୍ପେନବାସୀଙ୍କ ସମୟରୁ ଆଜି ପର୍ଯ୍ୟନ୍ତ ତାର ତୁଳନା କୁଆପି ଦୃଷ୍ଟିଗୋଚର ହୁଏ ନାହିଁ । ସମ୍ପୂର୍ଣ୍ଣ ରକ୍ତଶୂନ୍ୟ ହେବା ପର୍ଯ୍ୟନ୍ତ ବଙ୍ଗ ଶାନ୍ତି କ'ଣ ଜାଣିନଥିଲା ।" "ଏହା ପରେ ଅନେକ ବର୍ଷ ପର୍ଯ୍ୟନ୍ତ ଇଂରେଜମାନଙ୍କ ଆଚରଣର ବୀଭତ୍ସ ଆର୍ଥିକ ଅନୈତିକତା ନିମନ୍ତେ କ୍ଲାଇଭ୍, ପ୍ରଧାନତଃ ଦାୟୀ ।" (୧) ଏ ହେଉଛନ୍ତି ମହାନ୍ ସାମ୍ରାଜ୍ୟ ନିର୍ମାତା କ୍ଲାଇଭ୍ ଯାହାଙ୍କ ପ୍ରତିମୂର୍ତ୍ତି ଲଣ୍ଡନରେ ଆଜି ଇଣ୍ଡିଆ ଅଫିସ୍‌କୁ ଚାହିଁ ଦଣ୍ଡାୟମାନ ରହିଛି । ତାକୁ କେବଳ ଲୁଣ୍ଠନ ଛଡ଼ା ଆଉ କିଛି କୁହାଯାଇ ନପାରେ । ବଙ୍ଗ ବାରମ୍ବାର କରାଳ ଦୁର୍ଭିକ୍ଷ କବଳରେ ପଡ଼ିବା ପର୍ଯ୍ୟନ୍ତ ଇଂରେଜମାନେ 'ପାଗୋଡ଼ା' ବୃକ୍ଷକୁ ବରାବର ଝାଙ୍କିବାରେ ଲାଗିଲେ । ଏହି ପ୍ରକ୍ରିୟାକୁ ପରବର୍ତ୍ତୀ ସମୟରେ ବାଣିଜ୍ୟ ଆଖ୍ୟା ଦିଆଗଲା; କିନ୍ତୁ ଯେତେ ଭାବରେ ନାମିତ କଲେ ସୁଦ୍ଧା ଲୁଣ୍ଠନ ଓ ଦୁର୍ଭିକ୍ଷର ଚରିତ୍ର ବଦଳି ଯାଏନାହିଁ । ଏହି ତଥାକଥିତ ବାଣିଜ୍ୟ ହିଁ ଥିଲା ସରକାର ଏବଂ ବାଣିଜ୍ୟ ଥିଲା ବିଶୁଦ୍ଧ ଲୁଣ୍ଠନ । ଏ ପ୍ରକାର ଦୃଷ୍ଟାନ୍ତ ଇତିହାସରେ ବିରଳ

---

(୧) ଏଡ୍‌ୱାର୍ଡ଼ ଥମ୍ପସନ୍ ଓ ଜି. ଟି. ଗାରେଟ୍ : 'ରାଇଜ୍ ଏଣ୍ଡ୍ ଫୁଲ୍‌ଫିଲ୍‌ମେଣ୍ଟ୍ ଅଫ୍ ବ୍ରିଟିଶ୍ ରୁଲ୍ ଇନ୍ ଇଣ୍ଡିଆ'

ଏବଂ ଏକଥା ମନେ ରଖିବାକୁ ହେବ ଯେ ଭିନ୍ନ ଭିନ୍ନ ନାମରେ ଓ ଆକାରରେ କେତେକ ବର୍ଷପାଇଁ ନୁହେଁ, ପୁରୁଷ ପୁରୁଷ ଧରି ତାହା ଅବ୍ୟାହତ ରହିଲା । ସିଧାସଳଖ ଲୁଣ୍ଠନ କ୍ରମଶଃ ବିଧାନାନୁମୋଦିତ ଶୋଷଣରେ ରୂପ ପରିଗ୍ରହ କଲା, ଯାହା ପୂର୍ବଭଳି ସ୍ପଷ୍ଟ ପ୍ରତୀୟମାନ ହୋଇ ନଥିଲେ ସୁଦ୍ଧା ବାସ୍ତବରେ ତା'ଠାରୁ ଊଣା ହେଲେ ଭିନ୍ନ ନଥିଲା । ଭାରତରେ ଇଂରେଜ ଶାସନର ପ୍ରଥମ କେତେ ପୁରୁଷ ଦୁର୍ନୀତି, ଅସଦାଚରଣ, ସ୍ୱଜନ ତୋଷଣ, ହିଂସା ଓ ସମ୍ପଦ-ଲାଳସା ସମ୍ପର୍କରେ କଳନା କରିବା ଦୁରୂହ । ଗୋଟିଏ ଭାରତୀୟ ଶବ୍ଦ ଯାହା ଇଂରେଜୀ ଭାଷାରେ ମିଶିଯାଇଛି, ତାହା ହେଉଛି 'ଲୁଟ୍' । ଏକଥା ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ଏଡ୍‌ୱାର୍ଡ଼ ଥମ୍ପସନ୍ କହନ୍ତି, ଆଉ ତାହା ବଙ୍ଗ ପ୍ରତି କେବଳ ପ୍ରଯୁଜ୍ୟ ନୁହେଁ ଯେ "ବ୍ରିଟିଶ ଭାରତର ପ୍ରଥମକାଳୀନ ଇତିହାସ ସ୍ମରଣ କଲେ ମନେହୁଏ, ବିଶ୍ୱରେ ଏହାଠାରୁ ବଳି ରାଜନୈତିକ ଛଳନାର ଦୃଷ୍ଟାନ୍ତ ହୁଏତ ଆଉ ନାହିଁ ।"

ଏ ସବୁର ପରିଣାମ ତାର ପ୍ରଥମାବସ୍ଥାରେ ମଧ୍ୟ, ହେଲା ଖ୍ରୀ: ୧୭୭୦ର ଘୋର ଦୁର୍ଭିକ୍ଷ, ଯେଉଁଥିରେ ବଙ୍ଗ ଓ ବିହାର ଉଭୟ ପ୍ରଦେଶର ଜନସଂଖ୍ୟାର ଏକତୃତୀୟାଂଶ ପୃଥିବୀରୁ ବିଦାୟ ନେଲେ; କିନ୍ତୁ ଏ ତ୍ୟାଗ ପ୍ରଗତି ନିମନ୍ତେ ସ୍ୱୀକାର କରାଯାଇଥିଲା ଏବଂ ବଙ୍ଗ ବସ୍ତୁତଃ ଗର୍ବ ଅନୁଭବ କରିପାରେ ଯେ ଇଂଲଣ୍ଡରେ ଶିଳ୍ପବିପ୍ଳବର ଅଭ୍ୟୁଦୟ ନିମନ୍ତେ ତାର ଅବଦାନ ପ୍ରକୃତରେ ଅସାମାନ୍ୟ । ଏହା ଠିକ୍ ଯେଉଁଭଳି ଭାବରେ ଘଟିଥିଲା ମାର୍କିନ୍ ଲେଖକ ବ୍ରୁକ୍ ଏଡ଼ମ୍‌ସ ସେ ବିଷୟରେ କହିଛନ୍ତି : "ଭାରତୀୟ ସମ୍ପଦର ସମାଗମ ଜାତୀୟ ନଗଦ ମୂଳଧନ ପ୍ରଭୂତ ପରିମାଣରେ ବୃଦ୍ଧି କରିବା ଫଳରେ କାହିଁର ଶକ୍ତି ବର୍ଦ୍ଧିତ ହେଲା କେବଳ ନୁହେଁ, ତାର ନମନୀୟତା ଓ ତାର ଗତିର କ୍ଷିପ୍ରତା ମଧ୍ୟ । ପଲାସୀ ଯୁଦ୍ଧ ପରେ ପରେ ବଙ୍ଗରୁ ଲୁଣ୍ଠିତ ସମ୍ପଦ ଲଣ୍ଡନରେ ପହଞ୍ଚିବାକୁ ଲାଗିଲା ଏବଂ ତାର ଫଳ ଅବିଳମ୍ବେ ମିଳିଲା ଭଳି ପ୍ରତୀତ ହୁଏ; କାରଣ ସମସ୍ତେ ଏକମତ ହୁଅନ୍ତି ଯେ ଖ୍ରୀ: ୧୭୭୦ରେ 'ଶିଳ୍ପ ବିପ୍ଳବ' ଆରମ୍ଭ ହେଲା ଓ ପଲାସୀ ଯୁଦ୍ଧ ଘଟିଥିଲା ଖ୍ରୀ: ୧୭୫୭ ରେ ଏବଂ ତା'ର ପରେ ଯେପରି ଦ୍ରୁତ ପରିବର୍ତ୍ତନ ସାଧିତ ହେଲା, ତାର ଦୃଷ୍ଟାନ୍ତ ଅନ୍ୟତ୍ର ହୁଏତ ନାହିଁ । ଖ୍ରୀ: ୧୭୬୦ 'ଫ୍ଲାଇଙ୍ଗ୍ ସାଟଲ୍' ଦେଖାଦେଲା ଏବଂ ଅପରିଷ୍କାର ଧାତୁ ଗଳନର ଜାଳେଣି ହିସାବରେ କାଠର ସ୍ଥାନ ଅଧିକାର କଲା କୋଇଲା । ଖ୍ରୀ: ୧୭୬୪ରେ ହାର୍ ଗ୍ରୀଭ୍‌ସ 'ସ୍ପିନିଂ ଜେନ୍ନି' ଏବଂ ଖ୍ରୀ: ୧୭୭୬ ରେ କ୍ରମ୍‌ଟନ୍ 'ମ୍ୟୁଲ୍' ବା ସୂତାକଟା ଯନ୍ତ୍ର ଉଦ୍‌ଭାବନ କଲେ । ଖ୍ରୀ: ୧୭୮୫ରେ କାର୍ଟ୍‌ରାଇଟ୍ ତାଙ୍କର ଯନ୍ତ୍ରଚାଳିତ ତନ୍ତ ପେଟେଣ୍ଟ୍ କଲେ । ଖ୍ରୀ: ୧୭୬୮ରେ ଓ୍ୱାଟ୍ ବାଷ୍ପଚାଳିତ ଇଞ୍ଜିନ୍ ନିର୍ମାଣ କଲେ···ସମସ୍ତର ଗତିଶୀଳ ଆନ୍ଦୋଳନ ନିମନ୍ତେ ଯଦିଓ ଏହିସବୁ ଯନ୍ତ୍ର ନିର୍ଗମନ ଭାବରେ କାର୍ଯ୍ୟ କଲା, ତ୍ୱରଣ ସୃଷ୍ଟି କରିବାରେ ସେସବୁର ହାତ ନଥିଲା । ଯେକୌଣସି ଉଦ୍‌ଭାବନ ସ୍ୱଭାବତଃ ଗତିହୀନ···ସେସବୁ କାର୍ଯ୍ୟକାରୀ ହେବା ପାଇଁ ପ୍ରଚୁର ଶକ୍ତି ଭଣ୍ଡାର ଠୁଳହେବାର ଅପେକ୍ଷା ରହେ । ସେହି ଭଣ୍ଡାର ସର୍ବଦା ପଇସାର ଆକାର ଧରିଥାଏ ଏବଂ ସେ ପଇସା ମଧ୍ୟ ଗଚ୍ଛିତ ନୁହେଁ, ଚଳମାନ । ଭାରତୀୟ ସମ୍ପଦର ସମାଗମ ପୂର୍ବରୁ ଏବଂ ତାର ସ୍ତରରେ ଦେଣା-ପାଉଣାର ସମ୍ପ୍ରସାର ଯେଉଁଭଳି ଘଟିଲା,

ସେଥିପାଇଁ ଯଥେଷ୍ଟ ବଳ ସଞ୍ଚିତ ନଥିଲା · ·ପୃଥିବୀର ଆରମ୍ଭ କାଳରୁ ସମ୍ଭବତଃ, ଭାରତର ଲୁଣ୍ଠିତ ଧନରୁ ଯେଉଁ ଲାଭ ମିଳିଲା, କେବେ କେଉଁଠି ହେଲେ କୌଣସି ପୁଞ୍ଜି ସେଭଳି ଲାଭ ଦେଇନଥିବ; କାରଣ ପ୍ରାୟ ପଚାଶ ବର୍ଷ ପର୍ଯ୍ୟନ୍ତ ଇଂଲଣ୍ଡ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ କାହାର ସାମର୍ଥ୍ୟ ନଥିଲା ।'' (୧)

## ଭାରତୀୟ ଶିଳ୍ପ ଉଦ୍ୟୋଗର ବିନାଶ ସାଧନ
## କୃଷିର ଅବନତି

ପ୍ରଥମାବସ୍ଥାରେ ଇଷ୍ଟ୍ ଇଣ୍ଡିଆ କମ୍ପାନୀର ମୁଖ୍ୟ ବ୍ୟବସାୟ ଥିଲା ଓ ଯେଉଁ ଉଦ୍ଦେଶ୍ୟ ନେଇ ତାହା ସ୍ଥାପିତ ହୋଇଥିଲା, ଭାରତରେ ଉତ୍ପାଦିତ ମାଲ; ଯଥା—ଲୁଗା ଇତ୍ୟାଦି ଓ ମସଲାଦ୍ରବ୍ୟ ପ୍ରାଚ୍ୟ ଭୂଖଣ୍ଡରୁ ୟୁରୋପକୁ ନେଇ ବିକ୍ରି କରିବା, ଯେଉଁଠି ସେ ସବୁ ଦ୍ରବ୍ୟର ବିଶେଷ ଚାହିଦା ଥିଲା । ଇଂଲଣ୍ଡରେ, ଶିଳ୍ପ କ୍ଷେତ୍ରରେ ଯନ୍ତ୍ର କୌଶଳର ବିକାଶ ସଙ୍ଗେ, ଶିଳ୍ପକ୍ଷେତ୍ରର ପୁଞ୍ଜିପତି ଭାବରେ ଗୋଟାଏ ନୂତନ ଶ୍ରେଣୀ ଗଢ଼ି ଉଠିଲା ଏବଂ ତାର ଦାବି ହେଲା ଏହି ନୀତିର ପରିବର୍ତ୍ତନ । ତାହା ହେଉଛି ଭାରତୀୟ ମାଲ ନିମନ୍ତେ ଇଂଲଣ୍ଡର ବଜାର ବନ୍ଦ କରାଯାଉ ଓ ଇଂଲଣ୍ଡର ଉତ୍ପାଦିତ ଦ୍ରବ୍ୟ ନିମନ୍ତେ ଭାରତରେ ବଜାର ଖୋଲା-ଯାଉ । ଏହି ନୂତନ ଶ୍ରେଣୀଦ୍ୱାରା ପ୍ରଭାବିତ ବ୍ରିଟିଶ୍ ପାର୍ଲାମେଣ୍ଟ ଭାରତ ଓ ଇଷ୍ଟ୍ ଇଣ୍ଡିଆ କମ୍ପାନୀର କାର୍ଯ୍ୟକଳାପରେ ଅଧିକତର ଆଗ୍ରହ ପ୍ରକାଶ କରିବାକୁ ଲାଗିଲେ । ପ୍ରଥମତଃ, ଆଇନଦ୍ୱାରା ଇଂଲଣ୍ଡର ବଜାରରୁ ଭାରତୀୟ ଦ୍ରବ୍ୟ ବାଦ୍ ଦିଆଗଲା ଏବଂ ଭାରତୀୟ ରପ୍ତାନୀ ବ୍ୟବସାୟ ଇଷ୍ଟ ଇଣ୍ଡିଆ କମ୍ପାନୀର ଏକଚାଟିଆ ହୋଇଥିବାରୁ ଏହାର ପ୍ରଭାବ ଅନ୍ୟାନ୍ୟ ବିଦେଶୀ ବଜାର ଉପରେ ମଧ୍ୟ ପଡ଼ିଲା । ଏହା ପରେ ପରେ ନାନାବିଧ ନିୟମ କାନୁନ ଓ ଆଭ୍ୟନ୍ତରୀଣ ଶୁଳ୍କ ଲଦି ଭାରତୀୟ ଉତ୍ପାଦନକୁ ନିୟନ୍ତ୍ରିତ ଓ ନିର୍ମୂଳ କରିବାପାଇଁ ଏପରି ପ୍ରବଳ ଉଦ୍ୟମ ଚାଲିଲା ଯେ ଭାରତ ଭିତରେ ସୁଦ୍ଧା ଭାରତୀୟ ଦ୍ରବ୍ୟର ଚଳାଚଳ ଗୁରୁତର ଭାବରେ ବାଧାପ୍ରାପ୍ତ ହେଲା । ଇତ୍ୟବସରରେ, ବିଲାତି ମାଲପାଇଁ କୌଣସି ବାଧା ପ୍ରତିବନ୍ଧକ ନଥିଲା । ଭାରତୀୟ ବୟନ ଶିଳ୍ପ ଭାଙ୍ଗିପଡ଼ିଲା, ଅଗଣିତ ବୁଣାଳି ଓ ହସ୍ତ-ଶିଳ୍ପୀ କର୍ମଚ୍ୟୁତ ହେଲେ । ବଙ୍ଗ ଓ ବିହାରରେ ଏହି ପ୍ରକ୍ରିୟାର ଗତି ଥିଲା ଖୁବ୍ କ୍ଷିପ୍ର । ଅନ୍ୟତ୍ର ଇଂରେଜୀ ଶାସନର ପ୍ରସାର ଓ ରେଳପଥ ନିର୍ମାଣ ସଙ୍ଗେ ଏହା କ୍ରମଶଃ ବିସ୍ତାର ଲାଭକଲା । ଊନବିଂଶ ଶତକ ସାରା ଏହି ପ୍ରକ୍ରିୟା ଚାଲୁ ରହିଲା ଓ କେତେକ ପୁରାତନ ଧନ୍ଦାର ଅବସାନ ଘଟିଲା । ସେଥିରେ ଥିଲା ଜାହାଜ ନିର୍ମାଣ, ବିବିଧ ଧାତୁନେଇ କାମ କରିବା ଲୋକଙ୍କ ଧନ୍ଦା ଏବଂ କାଚ, କାଗଜ ଓ ଅନ୍ୟ କେତେ ହସ୍ତଶିଳ୍ପ ।

ନୂତନ ଶିଳ୍ପ ପ୍ରକ୍ରିୟା ସଙ୍ଗେ ପୁରାତନ ଉତ୍ପାଦନ ପ୍ରଣାଳୀର ସଂଘାତ ଯୋଗୁଁ ଏହା କେତେ ପର୍ଯ୍ୟନ୍ତ ଅବଶ୍ୟମ୍ଭାବୀ ଥିଲା; କିନ୍ତୁ ରାଜନୈତିକ ଓ ଅର୍ଥନୈତିକ ଚାପଦ୍ୱାରା ତାହା

(୧) ବ୍ରୁକ୍ ଏଡ଼ମ୍ସ, 'ଦି ଅଲ୍ ଅଫ୍ ସିଭିଲିଜେସନ୍ ଏଣ୍ଡ୍ ଡାକେ' ପୃ. ୨୫୯-୬୦

ହୃଦୟଙ୍ଗମ ହୋଇପଡ଼ିଲା ଏବଂ ଏହି ନୂତନ ପ୍ରକ୍ରିୟା ଭାରତରେ ପ୍ରୟୋଗ କରିବାର ଉଦ୍ୟମ କରାଯାଇନଥିଲା । ପ୍ରକୃତପକ୍ଷେ, ଭାରତରେ ସେ କଥା ନ ହେଉ ବୋଲି ସବୁ ପ୍ରକାର ଉଦ୍ୟମ କରାଯାଇଥିଲା ଏବଂ ଏପରିଭାବରେ ଭାରତର ଅର୍ଥନୈତିକ ବିକାଶ ବାଧାପ୍ରାପ୍ତ ହେଲା; ନୂତନ ଶିଳ୍ପର ଅଭିବୃଦ୍ଧି ରୋକ ଦିଆଗଲା । ଭାରତକୁ ଯନ୍ତ୍ରପାତି ଆମଦାନୀ କରିବା ହୋଇ-ପାରିନଥିଲା । ଗୋଟାଏ ଶୂନ୍ୟତା ସୃଷ୍ଟି କରାଗଲା, ଯାହା କେବଳ ବିଳାତି ଦ୍ରବ୍ୟଦ୍ୱାରା ପୂର୍ଣ୍ଣ ହୋଇପାରନ୍ତା ଏବଂ ତାର ଫଳରେ ବେକାରି ଓ ଦରିଦ୍ରତା ଦ୍ରୁତ ବୃଦ୍ଧିଲାଭ କଲା । ଠିକ୍ ସ୍ୱାଭାବିକ ଭାବରେ ଆଧୁନିକ ଔପନିବେଶିକ ଅର୍ଥନୀତି ନିର୍ମାଣ କରାଗଲା । ଭାରତ ହେଲା ଔଦ୍ୟୋଗିକ ଇଂଲଣ୍ଡର ଗୋଟାଏ କୃଷିପ୍ରଧାନ ଉପନିବେଶ । ତାର କାମ ହେଲା ଇଂଲଣ୍ଡକୁ କଞ୍ଚାମାଲ ଯୋଗାଇବା ଓ ଇଂଲଣ୍ଡର ଶିଳ୍ପଜାତ ଦ୍ରବ୍ୟ ନିମନ୍ତେ ଭାରତରେ ବଜାର ଖୋଲିବା ।

କାରିଗରୀ ପେଶାର ଲୋକେ କର୍ମଚ୍ୟୁତ ହେବା ଫଳରେ ଅତି ବିସ୍ମୟକର ପରିମାଣରେ ବେକାରି ଦେଖାଦେଲା । ଏହି ଶ୍ରେଣୀର କୋଟି କୋଟି ଲୋକ ଯେଉଁମାନେ ନାନାବିଧ ଜିନିଷ ତିଆରିକରିବା କାମରେ ଓ ଭିନ୍ନ ଭିନ୍ନ ଧନ୍ଦାରେ ନିଯୁକ୍ତ ଥିଲେ, ବର୍ତ୍ତମାନ କ'ଣ କରିବେ ? କେଉଁଠିକୁ ସେମାନେ ଯିବେ ? ସେମାନଙ୍କର ପାରମ୍ପରିକ ବୃତ୍ତି ଆଉ ସେମାନଙ୍କ ପାଇଁ ମୁକ୍ତ ନୁହେଁ । କୌଣସି ନୂତନ ଧନ୍ଦାରେ ପ୍ରବେଶ କରିବାର ବାଟ ନାହିଁ । ଅବଶ୍ୟ ମରଣକୁ ସେମାନେ ବରଣ କରିପାରିବେ; କୌଣସି ଅସହନୀୟ ପରିସ୍ଥିତିରୁ ରକ୍ଷା କରିବାପାଇଁ ସେ ପଥ ଅବଶ୍ୟ ସର୍ବଦା ମୁକ୍ତ ରହିଛି । ଲକ୍ଷ ଲକ୍ଷ ସଂଖ୍ୟାରେ ସେମାନେ ମୃତ୍ୟୁମୁଖରେ ପଡ଼ିଲେ । ତାତ୍କାଳିକ ଭାରତର ଇଂରେଜ ବଡ଼ଲାଟ ଲର୍ଡ଼ ବେଣ୍ଟିଙ୍କ୍ ଖ୍ରୀ: ୧୮୩୪ରେ ଇଂଲଣ୍ଡକୁ ଲେଖିଥିଲେ : "ବାଣିଜ୍ୟର ଇତିହାସରେ ଏ ଦୁର୍ବିପାକର ଦୃଷ୍ଟାନ୍ତ ପୃଥିବୀରେ ନାହିଁ । ତନ୍ତୁବାୟଙ୍କ ଅସ୍ଥି ଭାରତର ପ୍ରାନ୍ତରମାନଙ୍କୁ ଧଳେଇ କରୁଛି ।"

ତଥାପି ସେମାନଙ୍କ ଭିତରୁ ବହୁସଂଖ୍ୟକ ଲୋକ ବଞ୍ଚି ରହିଲେ ଏବଂ ବ୍ରିଟିଶ୍ ନୀତି ଦୂରଦୂରାନ୍ତ ଅଞ୍ଚଳକୁ ଯେତେ ପ୍ରସାରିତ ହେଲା, ବର୍ଷ ପରେ ବର୍ଷ ସେମାନଙ୍କ ସଂଖ୍ୟା ବୃଦ୍ଧି ପାଇଲା ଓ ସେଥି ସଙ୍ଗେ ବେକାରି ମଧ୍ୟ । କୋଟି ସଂଖ୍ୟକ ଏହିସବୁ ହସ୍ତଶିଳ୍ପୀ ଓ କାରିଗରମାନଙ୍କର ଜୀବିକା ନଥିଲା, କାର୍ଯ୍ୟ ନଥିଲା ଏବଂ ସେମାନଙ୍କର ସମସ୍ତ କିଛି ପୁରାତନ ନିପୁଣତା ବ୍ୟର୍ଥ ହୋଇପଡ଼ିଥିଲା । ସେମାନେ ସମସ୍ତେ ଯାଇ ପଡ଼ିଲେ ଜମି ଉପରେ; କାରଣ କୃଷି କେବଳ ଏକମାତ୍ର କ୍ଷେତ୍ର ସେମାନଙ୍କୁ ତଡ଼ି ଦେଇପାରିନଥାନ୍ତା; କିନ୍ତୁ କୃଷି ନିମନ୍ତେ ଯେତେ ଲୋକ ଦରକାର, ସେଥିରେ ନିଯୁକ୍ତ ଥିଲେ ଏବଂ ଅନ୍ୟାନ୍ୟ ଧନ୍ଦାର ଏହିସବୁ ଲୋକେ ଲାଭପ୍ରଦ ଭାବରେ ସେଥିରେ ପରିଶ୍ରମ କରିବାପାଇଁ କିଛି ନଥିଲା । ଅତଏବ, ଜମି ଉପରେ ସେମାନେ ଏକ ବୋଝ ହୋଇପଡ଼ିଲେ ଏବଂ ସେ ଓଜନ କ୍ରମଶଃ ବଢ଼ିବାକୁ ଲାଗିଲା, ଆଉ ସେଥି ସଙ୍ଗେ ବଢ଼ିଲା ଦେଶର ଦରିଦ୍ରତା । ଜୀବନଧାରଣର ମାନ ଅବିଶ୍ୱାସ୍ୟ ଭାବରେ ନିମ୍ନସ୍ତରକୁ ଖସିଆସିଲା । କାରିଗର ଓ ହସ୍ତଶିଳ୍ପୀମାନଙ୍କର ଜମି ଉପରକୁ ଏହି ବାଧ୍ୟତା-ମୂଳକ ବାହୁଡ଼ା କୃଷି ଓ ଶିଳ୍ପ ଭିତରେ କ୍ରମଶଃ ବର୍ଦ୍ଧିତ ଭାବରେ ଅସଙ୍ଗତି ସୃଷ୍ଟିକଲା ।

ଲୋକଙ୍କର ଏକମାତ୍ର ଧନ୍ଦା ହୋଇପଡ଼ିଲା କୃଷି, କାରଣ ସେମାନଙ୍କ ପାଇଁ ଅନ୍ୟ କୌଣସି ବୃତ୍ତି ଓ ଧନ ଉପାର୍ଜନର କ୍ଷେତ୍ର ନଥିଲା ।

ଭାରତ କ୍ରମଶଃ କୃଷି ଓ ଗ୍ରାମ୍ୟଜୀବନସମ୍ବଳ ହୋଇପଡ଼ିଲା । ପ୍ରତ୍ୟେକ ପ୍ରଗତିଶୀଳ ଦେଶରେ ଗତ ଶତାବ୍ଦୀରେ କୃଷିରୁ ଶିଳ୍ପକୁ, ଗ୍ରାମରୁ ସହରକୁ ଲୋକେ ସ୍ଥାନାନ୍ତରିତ ହେବା ଦେଖାଯାଇଛି । ଭାରତରେ ବ୍ରିଟିଶ ନୀତି ଫଳରେ ଏହି ପ୍ରକ୍ରିୟା ବିପରୀତ ଭାବରେ କାର୍ଯ୍ୟ କଲା । ଏ ସଂକ୍ରାନ୍ତୀୟ ହିସାବ ବଡ଼ ଶିକ୍ଷାପ୍ରଦ ଓ ତାତ୍ପର୍ଯ୍ୟପୂର୍ଣ୍ଣ । ଊନବିଂଶ ଶତକର ମଧ୍ୟ-ଭାଗରେ ଭାରତର ଜନସଂଖ୍ୟାର ଶତକଡ଼ା ପ୍ରାୟ ୫୫ ଭାଗ କୃଷି ଉପରେ ନିର୍ଭର କରିଥିବା ଜଣାଯାଏ । ଅଧୁନାତନ ତାହା ଶତକଡ଼ା ୭୪ ବୋଲି ପ୍ରାକ୍‌କଳନ କରାଯାଇଛି । ଅବଶ୍ୟ ଏ ହିସାବ ଯୁଦ୍ଧ ପୂର୍ବର । ଯୁଦ୍ଧ ସମୟରେ ଶିଳ୍ପକ୍ଷେତ୍ରରେ ନିଯୁକ୍ତି ଖୁବ୍ ଭଲଭାବରେ ବଢ଼ି ଥିଲେ ମଧ୍ୟ ଖ୍ରୀ: ୧୯୪୧ର ଜନସୁମାରିରେ, ଜନସଂଖ୍ୟା ବୃଦ୍ଧିଯୋଗୁଁ, କୃଷି ଉପରେ ନିର୍ଭର କରୁଥିବା ଲୋକଙ୍କ ସଂଖ୍ୟା ପ୍ରକୃତରେ ବୃଦ୍ଧି ପାଇଛି । ମାତ୍ର କେତେଗୋଟି ବଡ଼ ନଗରୀର ଅଭିବୃଦ୍ଧି ଦେଖି ଯେ କେହି ଉପର ଠାଉରିଆ ପର୍ଯ୍ୟବେକ୍ଷକ ଭାରତୀୟ ଅବସ୍ଥା ସମ୍ପର୍କରେ ଯଥାଯଥ ଧାରଣା କରିପାରିବ ନାହିଁ । ଏହି ନଗରୀ କେତୋଟି ମଧ୍ୟ ସମୃଦ୍ଧ ହୋଇଛି ଛୋଟ ସହରମାନଙ୍କର ସମ୍ବଳ ଅପହରଣ କରି ।

ଏହା ହେଉଛି ମୂଳତଃ ଭାରତୀୟ ଜନସାଧାରଣଙ୍କ ଅବିଶ୍ୱାସ୍ୟ ଦରିଦ୍ରତାର କାରଣ ଏବଂ ଏହା ଅତି ପ୍ରାଚୀନ ମଧ୍ୟ ନୁହେଁ । ଅନ୍ୟ ଯେଉଁସବୁ କାରଣ ଏହି ଦରିଦ୍ରତାକୁ ସାହାଯ୍ୟ କରିଛି, ସେ ସବୁ ଏହି ଦରିଦ୍ରତା, ବହୁ ଦିନର ଅନାହାର ଓ ପୁଷ୍ଟିକର ଖାଦ୍ୟାଭାବର ହିଁ ଫଳ । ରୋଗ ଓ ନିରକ୍ଷରତା ମୂଳତଃ ଦରିଦ୍ରତାର ହିଁ ପରିଣାମ । ଅତ୍ୟଧିକ ଜନସଂଖ୍ୟା ବାସ୍ତବିକ ଦୁର୍ଭାଗ୍ୟକର ଏବଂ ଆବଶ୍ୟକୀୟ ଭାବରେ ଏଥିର ବୃଦ୍ଧି ଖର୍ବ କରିବାପାଇଁ ବ୍ୟବସ୍ଥା କରାଯିବା ଦରକାର । ତଥାପି ମଧ୍ୟ ବହୁ ଶିଳ୍ପ-ବିସ୍ତୃତ ଦେଶର ଜନସଂଖ୍ୟାର ଘନତା ସଙ୍ଗେ ଏହାର ତୁଳନା କରାଯାଇପାରେ । ଗୋଟାଏ କୃଷିପ୍ରଧାନ ଦେଶ ପକ୍ଷରେ ଏହା ଅଧିକ ବୋଲି ଧରାଯାଇପାରେ; କିନ୍ତୁ ଗୋଟାଏ ବିହିତ ଅର୍ଥନୈତିକ ପ୍ରଣାଳୀ ଜରିଆରେ ସମଗ୍ର ଜନସଂଖ୍ୟାକୁ ଉତ୍ପାଦନକ୍ଷମ କରାଯାଇପାରିବ ଏବଂ ସେଥିଦ୍ୱାରା ଦେଶର ସମ୍ପଦ ମଧ୍ୟ ବୃଦ୍ଧିଲାଭ କରିବ । ବସ୍ତୁତଃ ବୃହତ୍ତର ଜନ-ଘନତା କେତେକ ବିଶେଷ ଅଞ୍ଚଳରେ କେବଳ, ଯଥା—ବଙ୍ଗ ଓ ଗାଙ୍ଗେୟ ଉପତ୍ୟକାରେ ଦେଖିବାକୁ ମିଳେ । ଭାରତରେ ଏବେ ବି ବହୁ ବିଶାଳ ଅଞ୍ଚଳ ରହିଛି, ଯାହା ଜନବହୁଳ ନୁହେଁ । ଏକଥା ମନେରଖିବା ଯୋଗ୍ୟ ଯେ ଭାରତ ତୁଳନାରେ ଇଂଲଣ୍ଡର ଜନ-ଘନତା ଦୁଇ ଗୁଣରୁ ଅଧିକ ।

ଶିଳ୍ପକ୍ଷେତ୍ରର ସଙ୍କଟ ଦ୍ରୁତଗତିରେ କୃଷିକ୍ଷେତ୍ରକୁ ପ୍ରସାରିତ ହେଲା ଓ ସେଠାରେ ଗୋଟାଏ ସ୍ଥାୟୀ ସଙ୍କଟ ହୋଇ ରହିଲା । ଭାଗ ଭାଗ ହେବା ଫଳରେ ବିଲମାଳରେ ହିଡ଼ ସଂଖ୍ୟା ଯେଭଳି ବଢ଼ି ଚାଲିଲା, ତାହା କଳ୍ପନା କରାଯାଇନପାରେ । କୃଷି-ଋଣର ଭାର ବେଲକୁବେଲ ଗୁରୁ ହେଲା ଏବଂ ଜମିର ସ୍ୱତ୍ୱ ବହୁଧା ମହାଜନ ହାତକୁ ଗଲା । ଜମିହୀନ କୃଷି ମଜୁରିଆଙ୍କ ସଂଖ୍ୟା ଲକ୍ଷ ହିସାବରେ ବଢ଼ିଚାଲିଲା । ଭାରତ ଗୋଟାଏ ଶିଳ୍ପ ପୁଞ୍ଜିବାଦୀ

ଶାସନାଧୀନ ଥିଲା; କିନ୍ତୁ ତାର ଅର୍ଥନୀତି ଥିଲା ପ୍ରଧାନତଃ ପ୍ରାକ୍‌ପୁଞ୍ଜିବାଦ ଯୁଗର; ଆଉ ତାହା ମଧ୍ୟ ପ୍ରାକ୍‌ପୁଞ୍ଜିବାଦୀ ଅର୍ଥନୀତିର ଧନ ଉତ୍ପାଦକ ବ୍ୟବସ୍ଥାବିହୀନ । ଭାରତ ଆଧୁନିକ ଔଦ୍ୟୋଗିକ ପୁଞ୍ଜିବାଦର ଗୋଟାଏ ଅସହାୟ ମାଧ୍ୟମ ହୋଇପଡ଼ିଲା, ଯାହାର ସବୁ କିଛି ଦୁର୍ଦ୍ଦଶା ଭୋଗିବା ବ୍ୟତୀତ ଅନ୍ୟ କୌଣସି ସୁବିଧା ସୁଯୋଗ ନେବାର ଉପାୟ ନଥିଲା ।

ଗୋଟିଏ ପ୍ରାକ୍ ଔଦ୍ୟୋଗିକ ଅର୍ଥନୀତିରୁ ପୁଞ୍ଜିବାଦୀ ଶିଳ୍ପବାଦର ଅର୍ଥନୀତିକୁ ପରିବର୍ତ୍ତିତ ହେବା ପ୍ରକ୍ରିୟାରେ ବହୁତ ଦୁଃଖ ଭୋଗିବାକୁ ପଡ଼େ ଏବଂ ସେଥିରେ ଜନସାଧାରଣଙ୍କ ଭିତର ବହୁ ଅଂଶ ଜଡ଼ିତ ହୋଇପଡ଼ନ୍ତି । ବିଶେଷକରି ପ୍ରଥମାବସ୍ଥାରେ ଏପରି ଏକ ପ୍ରକ୍ରିୟାର ପରିକଳ୍ପନା କିମ୍ବା ତା'ର କୁଫଳ ହ୍ରାସକରିବା ଦିଗରେ କୌଣସି ଉଦ୍ୟମ କରାଯାଇ ନଥାଏ ଏବଂ ସବୁ କିଛି ବ୍ୟକ୍ତିଗତ ଉଦ୍ୟୋଗ ଉପରେ ଛାଡ଼ିଦିଆଯାଇଥାଏ । ପରିବର୍ତ୍ତନର ପ୍ରକ୍ରିୟା କାଳରେ ଇଂଲଣ୍ଡରେ ଏ ପ୍ରକାର ଦୁଃଖ କଷ୍ଟ ଭୋଗିବାକୁ ପଡ଼ିଥିଲା; କିନ୍ତୁ ସାମଗ୍ରିକ ଭାବରେ ଦେଖିଲେ ଏହା ସେପରି କିଛି ଦୁରୂହ ନଥିଲା; କାରଣ ପ୍ରକ୍ରିୟାର ଗତି ଥିଲା ଖୁବ୍ କ୍ଷିପ୍ର ଏବଂ ଯେଉଁ ବେକାର ସମସ୍ୟା ଉପୁଜିଲା ଅବିଲମ୍ବେ ନୂଆ ନୂଆ ଶିଳ୍ପ ସଂସ୍ଥା ଗଢ଼ିଆରେ, ତାର ସମାଧାନ ହୋଇପାରିଲା । ଏହାର ଅର୍ଥ କିନ୍ତୁ ନୁହେଁ ଦୁଃଖ-ଯନ୍ତ୍ରଣା ଭିତରେ ଲୋକେ ସଡ଼ିନାହାନ୍ତି କିମ୍ବା ଜୀବନ ଦେଇନାହାନ୍ତି । ଲୋକେ ସଢ଼ିଛନ୍ତି, ସମ୍ପୂର୍ଣ୍ଣ ଭାବରେ ତାର ପ୍ରାପ୍ୟ ଦେଇଛନ୍ତି । ବିଶେଷକରି ଭାରତର ଲୋକେ ଦୁର୍ଭିକ୍ଷ ଓ ମୃତ୍ୟୁ ଏବଂ ଅକଥନୀୟ ବେକାରୀଦ୍ୱାରା ସର୍ବାଧିକ ମୂଲ୍ୟ ଦେଇଛନ୍ତି । ଏକଥା ନିଃସନ୍ଦେହରେ କୁହାଯାଇ-ପାରେ ଯେ, ପଶ୍ଚିମ ୟୁରୋପର ଶିଳ୍ପୀକରଣ ନିମନ୍ତେ ଭାରତ, ଚୀନ୍ ଓ ଅନ୍ୟାନ୍ୟ ଔପନିବେଶିକ ଦେଶ, ଯା'ର ଅର୍ଥନୀତି ୟୁରୋପୀୟ ଶକ୍ତିମାନଙ୍କଦ୍ୱାରା ନିୟନ୍ତ୍ରିତ ଥିଲା, ଦୁଃଖ-ଦୁର୍ଦ୍ଦଶାର ଅଧିକ ଭାଗ ବହନ କରିଛନ୍ତି ।

ଏ କଥା ସ୍ପଷ୍ଟ ଯେ ଶୈଳ୍ପିକ ବିକାଶ ନିମନ୍ତେ ଭାରତରେ ସବୁ ସମୟରେ ପ୍ରଚୁର ପରିମାଣରେ ଆବଶ୍ୟକୀୟ ସବୁ କିଛି ଥିଲା । ସଂଗଠନ ଓ କାରିଗରୀ ଯୋଗ୍ୟତା, ଉପଯୁକ୍ତ ଶିକ୍ଷାପ୍ରାପ୍ତ ଶ୍ରମଜୀବୀ, ଏପରିକି ଅବିଚ୍ଛିନ୍ନ ଶୋଷଣ ସତ୍ତ୍ୱେ ମୂଳଧନ ବି ଥିଲା । ମଣ୍ଟଗୋମେରି ମାର୍ଟିନ ନାମକ ଜଣେ ଐତିହାସିକ ବ୍ରିଟିଶ ପାର୍ଲାମେଣ୍ଟର ଗୋଟାଏ ଯାଞ୍ଚ କମିଟି ନିକଟରେ ଖ୍ରୀଃ ୧୮୪୦ ରେ ସାକ୍ଷ୍ୟ ଦେବାକୁ ଯାଇ କହିଥିଲେ : "ଭାରତର ଔଦ୍ୟୋଗିକ ସାମର୍ଥ୍ୟ ତାର କୃଷି ସାମର୍ଥ୍ୟଠାରୁ କିଛି କମ୍ ନୁହେଁ । ଯଦି କିଏ ତାକୁ ଗୋଟାଏ କୃଷିଜୀବିକାର ଦେଶ କହି ନ୍ୟୂନ କରିବାକୁ ଚାହେଁ, ସଭ୍ୟତାର ମାପକାଠିରେ ତାକୁ ନ୍ୟୂନ କରିବା ସଙ୍ଗେ ସମାନ ହେବ ।" ଅବିଚ୍ଛିନ୍ନ ଓ ଦୃଢ଼ଭାବରେ ଇଂରେଜମାନେ ଭାରତରେ ଠିକ୍ ଏହା ହିଁ କରିବାକୁ ଚାହିଁଥିଲେ ଏବଂ ସେମାନଙ୍କର ସଫଳତାର ପରିମାପ ହେଉଚି ଦେଢ଼ଶହ ବର୍ଷର ସ୍ୱେଚ୍ଛାଚାରୀ ଶାସନ ପରେ ଭାରତର ସାମ୍ପ୍ରତିକ ଅବସ୍ଥା । ଯେଉଁ ଦିନରୁ ଏବଂ ମୋର ମନେହୁଏ ପ୍ରାୟ ଶହେବର୍ଷ ତଳୁ ଆଧୁନିକ ଶିଳ୍ପର ବିକାଶ ନିମନ୍ତେ ଭାରତରେ ସ୍ୱର ଉଠିଚି, ଆମକୁ ବରାବର କୁହାଯାଇଚି ଯେ ଭାରତ ଏକ କୃଷି-ପ୍ରଧାନ ଦେଶ ଏବଂ ତା'ର ସ୍ୱାର୍ଥ ଦୃଷ୍ଟିରୁ କୃଷିରେ ହିଁ ନିୟୋଜିତ ରହିବା ଭଲ । ଶୈଳ୍ପିକ ବିକାଶ ତାର

ଅର୍ଥନୀତିର ଭାରସାମ୍ୟ ନଷ୍ଟ କରିଦେଇ ପାରେ ଏବଂ ତାର ପ୍ରଧାନ ବୃତ୍ତି କୃଷି ପକ୍ଷରେ ଅନିଷ୍ଟକର ହୋଇପାରେ । ଇଂଲଣ୍ଡର ଶିଳ୍ପପତି ଓ ଅର୍ଥନୀତିଜ୍ଞମାନେ ଭାରତୀୟ କୃଷକ ପାଇଁ ଯେଉଁ ଉଦ୍‌ବେଗ ପ୍ରକାଶ କରିଚନ୍ତି, ତାହା ପ୍ରକୃତରେ ଆହ୍ଲାଦକର । ଏହି ଦୃଷ୍ଟିରୁ ଏବଂ ଭାରତର ବ୍ରିଟିଶ ସରକାର ତାର ଯେଉଁଳି ଯତ୍ନ ନେଇଚନ୍ତି, ତାହା ବିଚାରକୁ ନେଲେ କୌଣସି ସର୍ବଶକ୍ତିମାନ ଅନିଷ୍ଟକର ନିୟତି, କୌଣସି ଅପ୍ରାକୃତ ଶକ୍ତି ଇଂରେଜମାନଙ୍କ ଉଦ୍ଦେଶ୍ୟ ଓ ବ୍ୟବସ୍ଥାକୁ ପଣ୍ଡ କରି ସେମାନଙ୍କର ଶ୍ରଦ୍ଧେୟ ଭାରତୀୟ କୃଷକକୁ ପୃଥିବୀରେ ଗୋଟାଏ ଦାରିଦ୍ର୍ୟନୀସ୍ତ ତଥା ଦରିଦ୍ରତମ ମଣିଷ କରି ରଖିଚ ବୋଲି କେବଳ ନିଷ୍ପତ୍ତି କରିବାକୁ ହେବ ।

ଭାରତରେ ଶିଳ୍ପ ବିକାଶର ବିରୋଧ କରିବା ବର୍ତ୍ତମାନ ଯେ କାହାପକ୍ଷରେ କଷ୍ଟକର; କିନ୍ତୁ ଏବେ ସୁଦ୍ଧା ଯେବେ କୌଣସି ବ୍ୟାପକ ତଥା ଦୂରପ୍ରସାରୀ ଯୋଜନା ଶିଳ୍ପ ସମ୍ପର୍କରେ କରାଯାଏ, ଆମକୁ ଯେଉଁମାନେ କେବେହେଲେ ଉପଦେଶ ଦେବାରେ ହେଳା କରିନାହାନ୍ତି, ଆମର ସେହି ବ୍ରିଟିଶ୍ ବନ୍ଧୁମାନେ ଆମକୁ ଚେତାଇ ଦେଉଚନ୍ତି ଯେ କୃଷିକୁ ଅବହେଳା କରିବା ଉଚିତ ହେବନି ଏବଂ ଯେ କୌଣସି ବିକାଶ ଯୋଜନାରେ ତାର ସ୍ଥାନ ପ୍ରଥମ ହେବା ଦରକାର । ଭାରତୀୟ ମାତ୍ରେ ତିଳେହେଲେ ଯାହାର ବୁଦ୍ଧି ଥିବ, କେବେହେଲେ କୃଷିକୁ ଅବହେଳା ବା ଅବଜ୍ଞା କରିବନି କିମ୍ବା କୃଷକକୁ ଭୁଲିଯିବନି । ବ୍ରିଟିଶ ବନ୍ଧୁମାନଙ୍କ ଏ ଉକ୍ତିଗୁଡ଼ାର କିଛି ଅର୍ଥ ନାହିଁ । ଭାରତରେ ଅନ୍ୟ କାହା ଅପେକ୍ଷା ଭାରତୀୟ କୃଷକର ପ୍ରଗତି ଓ ଉନ୍ନତି ଉପରେ କେବଳ ଭାରତର ପ୍ରଗତି ନିର୍ଭର କରିବ । କିନ୍ତୁ ଆମର କୃଷିକ୍ଷେତ୍ରରେ ଉପୁଜିଥିବା ଗୁରୁତର ସଙ୍କଟ ଶିଳ୍ପକ୍ଷେତ୍ରର ସଙ୍କଟ ସଙ୍ଗେ ଜଡ଼ିତ; କାରଣ ସେଥିରୁ ହିଁ ତା'ର ଉତ୍ପତ୍ତି । ଉଭୟକୁ ବିଚ୍ଛିନ୍ନ କରି କୌଣସି ବ୍ୟବସ୍ଥା ଗ୍ରହଣ କରାଯାଇନପାରେ ଏବଂ ଉଭୟ ମଧ୍ୟରେ ଥିବା ବୈଷମ୍ୟ ଦୂରକରିବା ନିତାନ୍ତ ପ୍ରୟୋଜନ ।

ଶିଳ୍ପ ବିକାଶ କାର୍ଯ୍ୟରେ ଯେବେ ସୁଯୋଗ ମିଳିଚ, ଆଉ ଯେଉଁ ସଫଳତା ଅର୍ଜନ କରାଯାଇଚ ସେଥିରୁ ଲକ୍ଷ୍ୟ କରିହେବ ଆଧୁନିକ ଶିଳ୍ପର ବିକାଶ ନିମନ୍ତେ ଭାରତର ସାମର୍ଥ୍ୟ । ପ୍ରକୃତପକ୍ଷେ, ଏ ପ୍ରକାର ସଫଳତା ଅର୍ଜନ କରାଯାଇଚ ଭାରତର ବ୍ରିଟିଶ ସରକାର ଓ ଇଂଲଣ୍ଡର ନ୍ୟସ୍ତସ୍ୱାର୍ଥର ପ୍ରବଳ ପ୍ରତିରୋଧ ସତ୍ତ୍ୱେ । ଭାରତ ଏ ଦିଗରେ ତାର ପ୍ରଥମ ସୁଯୋଗ ପାଇଲା ପ୍ରଥମ ମହାଯୁଦ୍ଧ (ଖ୍ରୀ: ୧୯୧୪-୧୯୧୮) କାଳରେ ଇଂଲଣ୍ଡରୁ ପଣ୍ୟଦ୍ରବ୍ୟ ଆସିବା ଯେବେ ବ୍ୟାହତ ହେଲା । ବ୍ରିଟିଶ ନୀତିଯୋଗୁଁ ଅପେକ୍ଷାକୃତ ଭାବରେ ଯେତେ ସାମାନ୍ୟ ହେଲେ ମଧ୍ୟ ଭାରତ ସେଥିରୁ ଲାଭ ଉଠାଇଚ । ସେହି ଦିନାବଧି, ଭାରତୀୟ ଶିଳ୍ପର ଅଭିବୃଦ୍ଧି ସହଜ କରିବା ନିମନ୍ତେ ତାର ମାର୍ଗର ନାନାବିଧ ପ୍ରତିବନ୍ଧକ ଓ ବିଶେଷ ସ୍ୱାର୍ଥର ବାଧା ଅପସାରିତ କରିବାପାଇଁ ସରକାର ଉପରେ ବରାବର ଚାପ ଦିଆଯାଇଚ । ବାହ୍ୟତଃ, ଏହାକୁ ନୀତି ଭାବରେ ଗ୍ରହଣ କରିଥିଲେ ମଧ୍ୟ ସରକାର ଶିଳ୍ପର, ବିଶେଷତଃ ମୌଳିକ ଶିଳ୍ପର ପ୍ରକୃତ ଅଭିବୃଦ୍ଧି ଦିଗରେ ନାନା ପ୍ରତିବନ୍ଧକ ସୃଷ୍ଟି କରିଚନ୍ତି । ଏପରିକି ଖ୍ରୀ: ୧୯୩୫ର କନ୍‌ଷ୍ଟିଚିଉସନ୍ ଏକ୍‌ଟରେ ବିଶେଷ ରୂପରେ ଧାର୍ଯ୍ୟ କରାଯାଇଚ ଯେ

ଭାରତୀୟ ବ୍ୟବସ୍ଥାପକମାନେ ଭାରତରେ ବ୍ରିଟିଶ ସଙ୍ଗଠିତ ଶିଳ୍ପର ନ୍ୟସ୍ତସ୍ୱାର୍ଥରେ ହସ୍ତକ୍ଷେପ କରିପାରିବେ ନାହିଁ । ଯୁଦ୍ଧ ପୂର୍ବବର୍ତ୍ତୀ ବର୍ଷମାନଙ୍କରେ ମୌଳିକ ତଥା ଭାରିଶିଳ୍ପ ନିର୍ମାଣ ଦିଗରେ ଥରକୁଥର ଯେଉଁ ପ୍ରବଳ ଉଦ୍ୟମ ହୋଇଛି, ସରକାରୀ ନୀତି ସେ ଉଦ୍ୟମ ପଣ୍ଡ କରିଛି । ସର୍ବୋପରି ସରକାର ଦିଗରୁ ପ୍ରତିବନ୍ଧକ ସୃଷ୍ଟି କରିବାରେ ଅତି ବିସ୍ମୟକର ଦୃଷ୍ଟାନ୍ତମାନ ବର୍ତ୍ତମାନର ଯୁଦ୍ଧକାଳରେ ଦେଖାଯାଇଛି, ଯେବେ ଯୁଦ୍ଧର ଆବଶ୍ୟକତା ତୁଲାଇବା ନିମନ୍ତେ ଉତ୍ପାଦନ ପ୍ରଥମ ଓ ପ୍ରଧାନ ବିବେଚିତ ହେଉଛି । ସେ ସବୁ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ସୁଦ୍ଧା ଭାରତୀୟ ଶିଳ୍ପ ପ୍ରତି ଇଂରେଜମାନଙ୍କ ଘୃଣା ଦୂରକରିବା ନିମନ୍ତେ ଯଥେଷ୍ଟ ହୋଇନି । ସେହି ଶିଳ୍ପ ଯେ ଗଢ଼ିଉଠିଛି କେବଳ ଘଟଣାକ୍ରମର ଗୁପ ହେଉଛି; କିନ୍ତୁ ସ୍ୱାଭାବିକ ଭାବରେ ବଢ଼ିଥିଲେ ତାହା ଯେଉଁ ଆକାର ଧରିଥା'ନ୍ତା, ସେଥି ସଙ୍ଗେ କିମ୍ବା ଅନ୍ୟ ବହୁ ଦେଶରେ ଶିଳ୍ପର ଅଭିବୃଦ୍ଧି ସଙ୍ଗେ ତୁଳନାକରି ଦେଖିଲେ, ଏହା ନଗଣ୍ୟ କହିଲେ ଚଳେ ।

ଭାରତୀୟ ଶିଳ୍ପର ଅଭିବୃଦ୍ଧି ପ୍ରତି ପ୍ରଥମେ ପ୍ରଥମେ ଯେଉଁ ପ୍ରତ୍ୟକ୍ଷ ପ୍ରତିରୋଧ ଦେଖା-ଦେଇଥିଲା ଏବଂ ପରେ ପରେ ପରୋକ୍ଷ ଉପାୟରେ ଯାହା ସବୁ କରାଗଲା, ତାହା ମଧ୍ୟ ସମାନ ଭାବରେ ଫଳପ୍ରଦ ହେଲା । ଉଦାହରଣ ସ୍ୱରୂପ, ପ୍ରତ୍ୟକ୍ଷ ରାଜସ୍ୱ ଆଦାୟ ସ୍ଥାନରେ ରପ୍ତାନି ଶୁଳ୍କ ଓ ଅବକାରୀ ଶୁଳ୍କ, ଆର୍ଥିକ ଓ ମୁଦ୍ରାନୀତି ଦକ୍ଷତା ସହକାରେ ପ୍ରୟୋଗ କରାଗଲା ଏବଂ ଭାରତର ଧନରେ ଇଂଲଣ୍ଡ ଲାଭବାନ୍ ହେଲା ।

ଦୀର୍ଘକାଳର ଦାସତ୍ୱ ଓ ସ୍ୱତନ୍ତ୍ରତାର ଅଭାବ ଗୋଟାଏ ଜାତି ଭିତରେ ନାନାବିଧ ଅବନତି ପ୍ରକଟ କରେ ଏବଂ ଏ ଦିଗରେ ସର୍ବାପେକ୍ଷା ବଡ଼ ମନ୍ଦଫଳ ପରିଲକ୍ଷିତ ହୁଏ ମାନସିକ କ୍ଷେତ୍ରରେ । ତାହା ହେଉଛି ନୈତିକ ଅଧଃପତନ ଓ ଜନସାଧାରଣଙ୍କ ଉତ୍ସାହ ହାନି । ଏହା ଠିକ୍ ମାପି ଦେଖିବା କଷ୍ଟକର ଯଦିଓ, ଦୃଷ୍ଟି ସମ୍ମୁଖରେ ତାହା ସ୍ପଷ୍ଟହୋଇ ଉଠିଥାଏ । ଗୋଟାଏ ଜାତିର ଅର୍ଥନୈତିକ ଅବନତି ଅନୁସନ୍ଧାନ କରିବା ଓ ପରିମାପ କରିବା ଅପେକ୍ଷାକୃତ ସହଜ ଏବଂ ଆମେ ଯେବେ ଭାରତରେ ବ୍ରିଟିଶ ଅର୍ଥନୈତିକ କାର୍ଯ୍ୟଧାରା ଉପରେ ଦୃଷ୍ଟିପାତ କରୁଁ, ପ୍ରତୀତ ହୁଏ, ଭାରତୀୟ ଜନସାଧାରଣଙ୍କ ବର୍ତ୍ତମାନର ଦରିଦ୍ରତା ତାର ଏପରି ଏକ ପରିଣାମ ଯେଉଁଥିରୁ ରକ୍ଷା ପାଇବାର କୌଣସି ଉପାୟ ଆଉ ନାହିଁ । ଏହି ଦରିଦ୍ରତା ରହସ୍ୟାବୃତ ନୁହେଁ । ବର୍ତ୍ତମାନର ଅବସ୍ଥା ପାଇଁ ଦାୟୀ ଯେତେ ସବୁ କାରଣ ଆମ ଦୃଷ୍ଟିରେ ପଡ଼େ ଏବଂ ଯେପରି ଭାବରେ ସବୁ ଘଟିଲା, ତାହା ବୁଝିବା ମଧ୍ୟ କଷ୍ଟକର ନୁହେଁ ।

## ୪. ଭାରତ ପ୍ରଥମ ଥର ପାଇଁ ଅନ୍ୟ ଏକ ଦେଶର ରାଜନୈତିକ ଓ ଅର୍ଥନୈତିକ ଉପାଙ୍ଗରେ ପରିଣତ ହେଲା

ଭାରତରେ ବ୍ରିଟିଶ ଶାସନର ପ୍ରତିଷ୍ଠା ତା ପକ୍ଷରେ ଥିଲା ସମ୍ପୂର୍ଣ୍ଣ ଏକ ଅଭିନବ ବ୍ୟାପାର, ଯାହାର ତୁଳନା ଅନ୍ୟ କୌଣସି ଅଭିଯାନ କିମ୍ବା ରାଜନୈତିକ ଅବା ଅର୍ଥନୈତିକ ପରିବର୍ତ୍ତନ ସଙ୍ଗେ ତୁଳନା କରାଯାଇନପାରେ "ପୂର୍ବେ ଭାରତକୁ ଜୟ କରାଯାଇଛି; କିନ୍ତୁ ସେଭଳି ଆକ୍ରମଣକାରୀଙ୍କଦ୍ୱାରା ସେଉଁମାନେ ତାର ସୀମାନ୍ତ ଭିତରେ ବସବାସ କରି ନିଜକୁ ସବୁମନ୍ତେ ଭାରତୀୟ ଜୀବନର ଅଂଶ କରି ନେଲେ" (ଇଂଲଣ୍ଡର ନର୍ମନ୍‌ମାନେ କିମ୍ବା ଚୀନରେ ମାଞ୍ଚୁମାନଙ୍କ ଭଳି) ସେ ତାର ସ୍ୱାଧୀନତା କେବେ ହରାଇ ନଥିଲା, ତାହିଁ କରିନଥିଲା। ଅର୍ଥାତ୍ ପୂର୍ବେ କେବେହେଲେ ଗୋଟାଏ ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥା ଭିତରକୁ ଟାଣିହୋଇ ନଥିଲା, ଯାହାର ମାଧ୍ୟାକର୍ଷଣ କେନ୍ଦ୍ର ତାର ଭୂଖଣ୍ଡ ବାହାରେ ନିହିତ ଏବଂ ସେ କେବେହେଲେ ସେପରି କୌଣସି ଶାସକବର୍ଗର ପଦାନତ ହୋଇ ନଥିଲା, ଯାହା ମୌଳିକ ଭାବରେ ଓ ଚରିତ୍ର ଦୃଷ୍ଟିରୁ ଥିଲା ବିଦେଶୀ ଏବଂ ସବୁକାଳ ପାଇଁ ସେପରି ହିଁ ରହିଲା।" ୧

ଏଥିପୂର୍ବେ ପ୍ରତ୍ୟେକ ଶାସକବର୍ଗ, ସେ ଦେଶ ବାହାରୁ ଆସିଥାନ୍ତୁ କି ଦେଶୀୟ ହୁଅନ୍ତୁ, ଭାରତର ସାମାଜିକ ଓ ଅର୍ଥନୈତିକ ଜୀବନର ଗଠନଗତ ଏକତାକୁ ସ୍ୱୀକାର କରିଥିଲେ ଓ ସେଥି ସଙ୍ଗେ ନିଜକୁ ଖାପଖୁଆଇବାକୁ ଚେଷ୍ଟା କରିଥିଲେ। ସେହି ଶାସକବର୍ଗରେ ଭାରତୀୟତା ପ୍ରବେଶ କରିଥିଲା ଓ ଭାରତ ମାଟିରେ ତା'ର ଚେର ଲାଗିଯାଇଥିଲା। ନୂତନ ଶାସକ ଥିଲେ ସମ୍ପୂର୍ଣ୍ଣ ଭିନ୍ନ ଧରଣର। ସେମାନଙ୍କର ଭିଟାମାଟି ଥିଲା ଅନ୍ୟତ୍ର ଏବଂ ଜଣେ ସାଧାରଣ ଭାରତୀୟ ଓ ସେମାନଙ୍କ ଭିତରେ ପରମ୍ପରା ଓ ଦୃଷ୍ଟିଭଙ୍ଗୀ, ଆୟ ଓ ଜୀବନର ଧାରାରେ ଯେଉଁ ବିଶାଳ ବ୍ୟବଧାନ ରହିଥିଲା, ତା'ର ଉପରେ କେବେ ସେତୁ ପଡ଼ିପାରି ନଥା'ନ୍ତା। ଭାରତର ପ୍ରଥମ ଇଂରେଜମାନେ, ଇଂଲଣ୍ଡରୁ ଏକପ୍ରକାର ବିଚ୍ଛିନ୍ନ ରହି, ଭାରତୀୟ ଜୀବନର ବହୁ ଢଙ୍ଗଢାଙ୍ଗ ଗ୍ରହଣ କରାଯାଇଥିଲେ; କିନ୍ତୁ ସେ ଆତ୍ମମୁଖ୍ୟ ପଛକେ କୌଣସି ଗୁରୁତ୍ୱ ନଥିଲା ଏବଂ ତାହା ମଧ୍ୟ ଭାରତ ଓ ଇଂଲଣ୍ଡ ମଧ୍ୟରେ ଯାତାୟାତ ବ୍ୟବସ୍ଥା ଉନ୍ନତି କରିବା ପରେ ଶୁଖିଗଲା। ଇଂରେଜ ଶାସକବର୍ଗ ପୃଥକ୍ ଭାବରେ, ନିଜ ବେଷ୍ଟନୀ ଭିତରେ ଆବଦ୍ଧ, ଭାରତୀୟଙ୍କଠାରୁ ବିଚ୍ଛିନ୍ନ, ନିଜର ଶ୍ରେଷ୍ଠତ୍ୱର ଦୁନିଆ ଭିତରେ ରହି ଜାଣିଲେ, କେବଳ ଭାରତରେ ସେମାନଙ୍କର ସମ୍ମାନ ବଜାୟ ରଖିପାରିବେ ବୋଲି ଅନୁଭବ କରାଯାଇଥିଲା। ଭାରତରେ ସେତେବେଳେ ଦୁଇଟି ଦୁନିଆ ଥିଲା : ଗୋଟିଏ ହେଉଛି ଇଂରେଜ କର୍ମଚାରୀଙ୍କର ଓ ଅନ୍ୟଟି ଭାରତୀୟ ଜନସାଧାରଣଙ୍କର। ଉଭୟ ଦୁନିଆ ଭିତରେ ପରସ୍ପରକୁ ସମାନ ଭାବରେ ଘୃଣା କରିବା ବ୍ୟତୀତ ଅନ୍ୟ କୌଣସି କଥାରେ ମେଳ ନଥିଲା। ପୂର୍ବେ ଜାତି ଜାତି ଭିତରେ ଗୋଟାଏ ପ୍ରକାର ସ୍ୱଜନଭାବ ଓ ଆତ୍ମୀୟତା ଗଢ଼ି ଉଠିଥିଲା

---

(୧) କେ. ଏମ. ପେନିକରଙ୍କର 'ଦ ପ୍ରବଲେମ୍ ଅଫ୍ ଇଣ୍ଡିଆ' (ପେନଗୁଇନ୍ ସ୍ପେସିଆଲ, ଲଣ୍ଡନ, ୧୯୪୦)

କିମ୍ବା ଗୋଟାଏ ପରସ୍ପର ନିର୍ଭରଶୀଳ ବ୍ୟବସ୍ଥା ଭିତରେ ସେମାନେ ନିଜକୁ ମନାଇ ଚଳି-ପାରିଥିଲେ । ବର୍ତ୍ତମାନ କିନ୍ତୁ ସ୍ୱଜାତି ଅନୁରାଗ ଗୋଟାଏ ସ୍ୱୀକୃତ ଧର୍ମମତ ହୋଇ ଉଠିଲା ଏବଂ ତାହା ଏଥିହେତୁରୁ ତୀବ୍ରତର ଭାବରେ ଆତ୍ମପ୍ରକାଶ କଲା ଯେ ଶାସକଗୋଷ୍ଠୀ ହାତରେ ରାଜନୈତିକ ଓ ଅର୍ଥନୈତିକ କ୍ଷମତା ରହିଛି ଏବଂ ତାହା କୌଣସି ଭାବରେ ହେଲେ ଖର୍ବ କରିବାର ଶକ୍ତି କାହାର ନାହିଁ ।

ନୂତନ ପୁଞ୍ଜିବାଦ ବିଶ୍ୱରେ ଯେଉଁ ବଜାର ନିର୍ମାଣ କରୁଥିଲା, କେତେବେଳେ ଅବଶ୍ୟ ଭାରତର ଅର୍ଥନୈତିକ ବ୍ୟବସ୍ଥା ଉପରେ ପ୍ରଭାବ ନ ପକାଇ ରହିପାରି ନଥାନ୍ତା । ଭାରତର ସ୍ୱୟଂସମ୍ପୂର୍ଣ୍ଣ ଗ୍ରାମଗୋଷ୍ଠୀ ତାର ପାରମ୍ପରିକ ବୃତ୍ତି ଯେନ ସେହି ପୁରାତନ ଢଙ୍ଗରେ ଚାଲି ପାରି ନଥାନ୍ତା; କିନ୍ତୁ ଯେଉଁ ପରିବର୍ତ୍ତନ ଘଟିଲା, ତାହା ସ୍ୱାଭାବିକ ଉନ୍ନୟନର ପରିବର୍ତ୍ତନ ନୁହେଁ ଏବଂ ତାର ଫଳରେ ଭାରତୀୟ ସମାଜର ସମଗ୍ର ଅର୍ଥନୈତିକ ଓ ସାଙ୍ଗଠନିକ ଭିତ୍ତି ବିଚ୍ଛିନ୍ନ ହୋଇ ପଡ଼ିଲା । ଗୋଟାଏ ବ୍ୟବସ୍ଥା ଯାହା ପଛରେ ରହିଥିଲା ବିବିଧ ସାମାଜିକ ଅନୁଶାସନ ଓ ନିୟନ୍ତ୍ରଣ ଏବଂ ଯାହା ଥିଲା ଭାରତୀୟ ଜନସାଧାରଣଙ୍କ ସାଂସ୍କୃତିକ ଐତିହ୍ୟର ଗୋଟାଏ ଅଂଶ ଅଚାନକ ଓ ବଳ ପ୍ରୟୋଗଦ୍ୱାରା ତା'ର ପରିବର୍ତ୍ତନ କରାଗଲା ଏବଂ ବାହାରୁ ପରିଚାଳିତ ଅନ୍ୟ ଏକ ବ୍ୟବସ୍ଥା ତା'ର ଉପରେ ଲଦିଦିଆଗଲା । ବିଶ୍ୱ-ବଜାରକୁ ଭାରତ ଆସିବା ଦୂରେଥାଉ, ବ୍ରିଟିଶ ବ୍ୟବସ୍ଥାର ଗୋଟାଏ ଔପନିବେଶିକ ତଥା କୃଷି-ସମ୍ବଳ ଉପାଙ୍ଗ ହୋଇପଡ଼ିଲା ।

ଯାହା ଏପର୍ଯ୍ୟନ୍ତ ଥିଲା ଭାରତୀୟ ଅର୍ଥନୀତିର ଭିତ୍ତି ସ୍ୱରୂପ, ସେହି ଗ୍ରାମଗୋଷ୍ଠୀ ତା'ର ଅର୍ଥନୈତିକ ତଥା ପ୍ରଶାସନିକ କର୍ମପନ୍ଥା ହରାଇ ବିଚ୍ଛିନ୍ନ ହୋଇପଡ଼ିଲା । ଖ୍ରୀ: ୧୮୩୦ରେ ଭାରତର ବ୍ରିଟିଶ କର୍ମଚାରୀମାନଙ୍କ ଭିତରେ ଅନ୍ୟତମ ସୁଦକ୍ଷ ବ୍ୟକ୍ତି ସାର୍ ଚାର୍ଲସ୍ ମେଟକାଫ୍ ଏହିସବୁ ଗୋଷ୍ଠୀର ବର୍ଣ୍ଣନା ଯେପରି ଭାବରେ କରିଚନ୍ତି, ତାହା ବହୁ ଅବସରରେ ଉଦ୍ଧାର କରାଯାଇଥାଏ : "ଗ୍ରାମଗୋଷ୍ଠୀଗୁଡ଼ିକ ପ୍ରତ୍ୟେକେ ଗୋଟିଏ ଗୋଟିଏ କ୍ଷୁଦ୍ର ଗଣରାଜ୍ୟ ଭଳି ଏବଂ ସେମାନଙ୍କର ଯାହା ଆବଶ୍ୟକ ନିଜର ପରିସର ଭିତରୁ ହିଁ ପ୍ରାପ୍ତ ପାଇଥାନ୍ତି । କୌଣସି ବାହାର ସମ୍ପର୍କ ଉପରେ ନିର୍ଭର କରିବା ସେମାନଙ୍କର ଦରକାର ହୋଇ ନ ଥାଏ ଏବଂ ଯେଉଁଠି ଅନ୍ୟ କୌଣସି ଜିଆର ସ୍ଥାୟିତ୍ୱ ରହେନି, ତାର ବ୍ୟତିକ୍ରମ କେବଳ ଏହି ଗ୍ରାମଗୋଷ୍ଠୀ । ସ୍ୱତନ୍ତ୍ର ସତ୍ତ୍ୱବିଶିଷ୍ଟ ଗ୍ରାମ୍ୟ ଜାତିମାନଙ୍କ ଏହି ସଙ୍ଘ ସେମାନଙ୍କର ଉଚ୍ଚତର ସୁଖ ଓ ସ୍ୱାଚ୍ଛନ୍ଦ୍ୟ ନିମନ୍ତେ ଏବଂ ବହୁ ଅଂଶରେ ସ୍ୱାଧୀନତା ଓ ସ୍ୱାବଲମ୍ବନଶୀଳତା ଉପଭୋଗ କରିବା ପକ୍ଷରେ ଅନୁକୂଳ ହୋଇଥାଏ ।"

ଗ୍ରାମ୍ୟ-ଶିଳ୍ପ ବରବାଦ ହେବା ଫଳରେ ଗ୍ରାମ୍ୟ ଜାତିମାନେ ବଡ଼ ଏକ ଧକ୍କା ପାଇଲେ । ଶିଳ୍ପ ଓ କୃଷି ଭିତର ଭାରସାମ୍ୟ ବିପର୍ଯ୍ୟସ୍ତ ହେଲା । ପାରମ୍ପରିକ କର୍ମବଣ୍ଟନ ବ୍ୟବସ୍ଥା ଭାଙ୍ଗି ପଡ଼ିଲା । ଅଗଣିତ କର୍ମହୀନ ବ୍ୟକ୍ତି କୌଣସି ଗୋଷ୍ଠୀର କାର୍ଯ୍ୟକଳାପରେ ନିଜକୁ ସହଜରେ ଲଗାଇପାରୁ ନଥିଲେ । ଅଉ ଏକ ପ୍ରବଳ ତଥା ପ୍ରତ୍ୟକ୍ଷ ଧକ୍କା ବାଜିଲା ଜମିଦାରୀ ପ୍ରଥା ପ୍ରବର୍ତ୍ତିତ ହେବା ଫଳରେ । ଜମିର ସ୍ୱତ୍ୱ ନେଇ ଯେଉଁ ଅବଧାରଣା କେଉଁ ଦୂର ଅତୀତରୁ

ସୃଷ୍ଟିଅସିଥିଲା, ତାହା ସମ୍ପୂର୍ଣ୍ଣ ରୂପରେ ପରିବର୍ତ୍ତିତ ହେଲା । ଜମି ସମ୍ପର୍କରେ ଏ ପର୍ଯ୍ୟନ୍ତ ଯେଉଁ ଧାରଣା ଥିଲା, ସେଥିରେ ଜମି ଉପରେ ଯେତେ ନାହିଁ ବରଂ ଜମିର ଫସଲ ଉପରେ ଗୋଷ୍ଠୀ ବା ବର୍ଗର ସାମୂହିକ ସ୍ୱତ୍ୱ ଥିଲା । ସମ୍ଭବତଃ ଇଂରେଜ ଗଭର୍ଣ୍ଣର ଏହା ଭଲଭାବରେ ବୁଝିପାରି ନଥିଲେ କିମ୍ବା ସେମାନେ ଯେହେତୁ ଥିଲେ ଇଂଲଣ୍ଡର ଭୂସ୍ୱାମୀ ଶ୍ରେଣୀୟ, ସେଠିକା ବ୍ୟବସ୍ଥା ଭଳି ଭାରତରେ ଏକ ବ୍ୟବସ୍ଥା ସୃଷ୍ଟିକରିବା ଉଦ୍ଦେଶ୍ୟରେ ବୁଝି ବିଚାରି ଭାରତରେ ଜମିଦାରୀ ପ୍ରଥା ପ୍ରବର୍ତ୍ତନ କଲେ । ପ୍ରଥମେ ସେମାନେ ଅସ୍ଥାୟୀ ଭାବରେ ସେଭଳି କେତେକ କୃଷକଙ୍କୁ ନିଯୁକ୍ତ କରୁଥିଲେ, ଯାହାଙ୍କର ଦାୟିତ୍ୱ ଥିଲା ଅନ୍ୟାନ୍ୟ କୃଷକଙ୍କଠାରୁ ରାଜସ୍ୱ ଆଦାୟ କରି ସରକାରଙ୍କୁ ଦେବା । ପରେ ଏହି ରାଜସ୍ୱ ଆଦାୟକାରୀ କୃଷକମାନେ ଜମିଦାର ବୋଲାଇଲେ । ଜମି ଓ ତା'ର ଫସଲ ଉପରୁ ଗ୍ରାମ୍ୟ ସମ୍ପ୍ରଦାୟର ସମସ୍ତ ଅଧିକାର ତୁଟିଗଲା । ଯାହା ସବୁସମୟରେ ଗ୍ରାମ୍ୟ ସମ୍ପ୍ରଦାୟର ମୁଖ୍ୟ ସ୍ୱାର୍ଥ ବୋଲି ବିବେଚିତ ହେଉଥିଲା, ବର୍ତ୍ତମାନ ନୂତନ ଭାବରେ ସୃଷ୍ଟ ଜମିଦାରର ବ୍ୟକ୍ତିଗତ ସମ୍ପତ୍ତିରେ ପରିଣତ ହେଲା । ଏହା ଫଳରେ ଗ୍ରାମ୍ୟ ସମ୍ପ୍ରଦାୟର ମିଳିତ ଜୀବନ ଓ ସହଯୋଗମୂଳକ ଚରିତ୍ର ଭାଙ୍ଗିପଡ଼ିଲା ଏବଂ ଧୀରେ ଧୀରେ ବିଭିନ୍ନ କାର୍ଯ୍ୟ ଭିତରେ ଥିବା ସମବାୟ ବ୍ୟବସ୍ଥା ଲୋପ ପାଇଲା ।

ଜମିକୁ ଏପରି ଭାବରେ ସମ୍ପତ୍ତିରେ ପରିଣତ କରିବା ଗୋଟାଏ ବଡ଼ ଅର୍ଥନୈତିକ ପରିବର୍ତ୍ତନ କେବଳ ନୁହେଁ; ବରଂ ଏହାର ପ୍ରଭାବ ଥିଲା ଆହୁରି ଗଭୀରତର ଏବଂ ତାହା ସହଯୋଗପୂର୍ଣ୍ଣ ସାମୁଦାୟିକ ସାମାଜିକ ବ୍ୟବସ୍ଥାର ଭାରତୀୟ ଧାରଣା ଉପରେ ଗୁରୁ ଆଘାତ ହାଣିଲା । ଗୋଟାଏ ନୂତନ ଶ୍ରେଣୀ, ଜମିଦାରମାନେ ଦେଖାଦେଲେ । ଇଂରେଜ ସରକାରଦ୍ୱାରା ଏହି ଶ୍ରେଣୀ ସୃଷ୍ଟ ହୋଇଥିବା ଫଳରେ ପ୍ରାୟ ସବୁ ବିଷୟରେ ଏହା ଇଂରେଜ ସରକାର ପକ୍ଷ ଗ୍ରହଣ କଲା । ପୁରାତନ ବ୍ୟବସ୍ଥା ଭାଙ୍ଗିପଡ଼ିବା ଫଳରେ ନୂଆ ନୂଆ ସମସ୍ୟାମାନ ସୃଷ୍ଟି ହେଲା ଏବଂ ଆଜିର ହିନ୍ଦୁ-ମୁସଲମାନ ସମସ୍ୟାର ଆରମ୍ଭ ସେହିଦିନରୁ ହୋଇଥିଲା ବୋଲି କହିଲେ ହୁଏତ ଚଳିବ । ଏହି ଜମିଦାରୀ ପ୍ରଥା ସର୍ବପ୍ରଥମେ ବଙ୍ଗ ଓ ବିହାରରେ ପ୍ରବର୍ତ୍ତିତ ହେଲା, ଯେଉଁଠି ସ୍ଥାୟୀ ବନ୍ଦୋବସ୍ତ ବ୍ୟବସ୍ଥା ଅନୁସାରେ ବଡ଼ ବଡ଼ ଜମିଦାରମାନଙ୍କୁ ସୃଷ୍ଟି କରାଗଲା । ସରକାର ପକ୍ଷରେ ଏହା ଲାଭଜନକ ନୁହେଁ ବୋଲି ପରେ ଅବଶ୍ୟ ଅନୁଭବ କରାଗଲା; କାରଣ ଏହି ବ୍ୟବସ୍ଥାଦ୍ୱାରା ରାଜସ୍ୱ ବୃଦ୍ଧି କରିବାର ଉପାୟ ନଥିଲା । ଅତଏବ, ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଗୋଟାଏ ନିର୍ଦ୍ଦିଷ୍ଟ କାଳ ପାଇଁ କେବଳ ବନ୍ଦୋବସ୍ତ କରାଗଲା ଏବଂ କର ନିୟମିତ ସମୟାନୁକ୍ରମେ ବୃଦ୍ଧି କରାଗଲା । କେତେକ ପ୍ରଦେଶରେ ଗୋଟାଏ ପ୍ରକାର ରୟତି ସ୍ୱତ୍ୱ ବି ପ୍ରତିଷ୍ଠା କରାଗଲା । ରାଜସ୍ୱ ଅସୁଲ କରିବାରେ କଠୋରତା ଅବଲମ୍ବନ କରିବା ଫଳରେ ସର୍ବତ୍ର, ବିଶେଷକରି ବଙ୍ଗ ପ୍ରଦେଶରେ, ଏପରି ହେଲା ଯେ ପୁରାତନ ଭୂସ୍ୱାମୀମାନେ ଦେଉଳିଆ ହୋଇପଡ଼ିଲେ ଏବଂ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରର ବିତ୍ତବାନ୍ ଲୋକେ ସେମାନଙ୍କର ସ୍ଥାନ ଅଧିକାର କଲେ । ଏପରି ଭାବରେ ବଙ୍ଗ ପ୍ରଧାନତଃ ହିନ୍ଦୁ ଜମିଦାରମାନଙ୍କର ଗୋଟାଏ ପ୍ରଦେଶରେ ପରିଣତ ହେଲା । ଜମିଦାରୀ ପ୍ରଜାଙ୍କ ଭିତରୁ କିନ୍ତୁ ଅଧିକାଂଶ ଥିଲେ ମୁସଲମାନ ।

ସେମାନଙ୍କ ଦେଶର ଭୂସ୍ୱାମୀ ଶ୍ରେଣୀର ଗ୍ରାଞ୍ଚରେ ଇଂରେଜମାନେ ବଡ଼ ବଡ଼ ଜମିଦାର-ମାନଙ୍କୁ ସୃଷ୍ଟି କରିବାର ପ୍ରଧାନ କାରଣ ହେଉଛି ଯେ ବିଶାଳ ଏକ ପ୍ରଜାଯାଟକ ଅପେକ୍ଷା ମୁଷ୍ଟିମେୟ କେତେ ଜଣଙ୍କ ସଙ୍ଗେ ରାଜସ୍ୱ କାରବାର ନେଇ ସମ୍ପର୍କ ରଖିବା ସହଜ ହେବ । ଉଦ୍ଦେଶ୍ୟ ଥିଲା, ଯେତେଦୂର କରାଯାଇପାରେ ଓ ଯେତେ ଚଞ୍ଚଳ ହୋଇପାରେ, ରାଜସ୍ୱ ଅସୁଲ କରିବା । କୌଣସି ଜମିଦାର ଯଥା ସମୟରେ ତାର କର୍ତ୍ତବ୍ୟ ଯଦି ସମ୍ପାଦନ ନକଲା, ଅବିଲମ୍ବେ ତାକୁ ବାହାର କରିଦେଇ ଅନ୍ୟ ଜଣକୁ ସେ ସ୍ଥାନ ଦିଆଯାଉଥିଲା । ଏକଥା ମଧ୍ୟ ଆବଶ୍ୟକ ବିବେଚିତ ହୋଇଥିଲା ଯେ ସେପରି ଏକ ଶ୍ରେଣୀ ସୃଷ୍ଟି କରିବାକୁ ପଡ଼ିବ, ଯା'ର ସ୍ୱାର୍ଥ ସର୍ବଦା ବ୍ରିଟିଶ ସ୍ୱାର୍ଥ ସଙ୍ଗେ ଜଡ଼ିତ ରହିବ । ଗଣବିଦ୍ରୋହର ଭୟ ଭାରତର ବ୍ରିଟିଶ କର୍ମଚାରୀଙ୍କ ମନରେ ସବୁବେଳେ ଭରିରହିଥିଲା ଏବଂ ଲିଖିତ ଭାବରେ ସେମାନେ ଏ ବିଷୟରେ ବାରବାର ଉଲ୍ଲେଖ କରିଛନ୍ତି । ଭାରତର ବଡ଼ଲାଟ ଲର୍ଡ଼ ଉଇଲିଏମ୍ ବେଣ୍ଟିଙ୍କ୍ ଖ୍ରୀ. ୧୮୨୯ରେ ଲେଖିଥିଲେ : "ବ୍ୟାପକ ଗଣବିଦ୍ରୋହ କିମ୍ବା ବିପ୍ଳବ ବିରୁଦ୍ଧରେ ଆବଶ୍ୟକୀୟ ନିରାପତ୍ତାର ଯେଉଁ ଅଭାବ ରହିଥିଲା, ମୋର ମତରେ ସ୍ଥାୟୀ ବନ୍ଦୋବସ୍ତ, ଅନ୍ୟ ଯେତେ ବିଷୟରେ ବିଫଳ ହୋଇଥିଲେ ମଧ୍ୟ, ଏପରି ଏକ ବିଶାଳ ଜମିଦାରଦଳ ସୃଷ୍ଟି କରିପାରିଛି, ଯେଉଁମାନେ ଭାରତରେ ଇଂରେଜ ଶାସନ ରହୁ ବୋଲି ଗଭୀର ଭାବରେ ଆଗ୍ରହୀ ଏବଂ ପ୍ରଜାଙ୍କ ଉପରେ ସେମାନଙ୍କର ସମ୍ପୂର୍ଣ୍ଣ ଆୟତ୍ତ ଥିବାରୁ ସେ ଅଭାବ ଅନେକାଂଶରେ ପୂରଣ ହୋଇପାରିଛି ।"

ଏପରିଭାବରେ, କେତେ ନୂତନ ଶ୍ରେଣୀ ଓ ନ୍ୟସ୍ତସ୍ୱାର୍ଥ, ଯାହା ତାର ଶାସନ ଓ ପ୍ରଦତ୍ତ ସ୍ୱାଧିକାର ସଙ୍ଗେ ଜଡ଼ିତ ଏବଂ ସେହି ଶାସନ ଅବ୍ୟାହତ ରହିବା ଉପରେ ନିର୍ଭରଶୀଳ, ସୃଷ୍ଟି କରି ବ୍ରିଟିଶ ଶାସନ ନିଜକୁ ସୁପ୍ରତିଷ୍ଠିତ କଲା । ଜମିଦାର ଥିଲେ ଓ ରାଜା, ନବାବ ଥିଲେ ଏବଂ ସରକାରଙ୍କ ବିଭିନ୍ନ ମହକୁମାମାନଙ୍କରେ ଗ୍ରାମ୍ୟମୁଖ୍ୟଙ୍କଠାରୁ ଆରମ୍ଭ କରି ବିଭିନ୍ନ ସରକାରୀ ବିଭାଗରେ ନିମ୍ନବର୍ଗର ବହୁ କର୍ମଚାରୀ ରହିଥିଲେ । ଶାସନର ଦୁଇଟି ଅପରିହାର୍ଯ୍ୟ ଶାଖା ଥିଲା ରାଜସ୍ୱ ଓ ପୁଲିସ ବିଭାଗ । ପ୍ରତ୍ୟେକ ଜିଲ୍ଲାରେ ଏହି ଉଭୟ ବିଭାଗର ଶୀର୍ଷରେ ଥିଲେ କଲେକ୍ଟର ଅବା ଜିଲ୍ଲା ମାଜିଷ୍ଟ୍ରେଟ, ଯିଏ ଶାସନକଳ ପକ୍ଷରେ ସେପରି ଗୁରୁତ୍ୱପୂର୍ଣ୍ଣ ଥିଲେ ଯେପରି ଶଗଡ଼ ପକ୍ଷରେ ତାର କାନଗଳି । ନିଜ ଜିଲ୍ଲାର ରାଜସ୍ୱ, ବିଚାର, ପୁଲିସ ଓ ପ୍ରଶାସନର ଅନ୍ୟ ସବୁ ବିଭାଗର ନିରଙ୍କୁଶ ସର୍ବମୟ କର୍ତ୍ତା-ଭାବରେ ସେ କାର୍ଯ୍ୟ କରୁଥିଲେ । କଲେକ୍ଟରଙ୍କ ଜିଲ୍ଲାକୁ ଲାଗି ଯଦି କୌଣସି କ୍ଷୁଦ୍ର ଦେଶୀୟ ରାଜ୍ୟ ରହିଥିଲା, ସେଠାରେ ମଧ୍ୟ ସେ ବ୍ରିଟିଶ୍ ସରକାରଙ୍କର କ୍ଷମତାପ୍ରାପ୍ତ ପ୍ରତିନିଧି ଭାବରେ କାର୍ଯ୍ୟ କରୁଥିଲେ ।

ଏହାପରେ ଥିଲା ଭାରତୀୟ ସେନାବାହିନୀ । ଏଥିରେ ଇଂରେଜ ଓ ଭାରତୀୟ ଉଭୟ ଜାତିର ସୈନ୍ୟ ଥିଲେ; କିନ୍ତୁ ଅଫିସରମାନେ ସମସ୍ତେ ଥିଲେ ଇଂରେଜ । ଏହି ସୈନ୍ୟ-ବାହିନୀର ସଙ୍ଗଠନ ଥରକୁଥର ବଦଳୁଥିଲା । ବିଶେଷ କରି ଖ୍ରୀ: ୧୮୫୭ର ବିଦ୍ରୋହ ପରେ ଏବଂ ପରିଶେଷରେ ସାଙ୍ଗଠନିକ ଭାବରେ ଥିବା ବ୍ରିଟିଶ ସେନାବାହିନୀ ସଙ୍ଗେ ଯୁକ୍ତ

ହେଲା । ବ୍ୟବସ୍ଥା ଏପରି ଭାବରେ କରାଯାଇଥିଲା ଯେ ସମସ୍ତ ଘାଟିସ୍ଥାନମାନଙ୍କରେ ବ୍ରିଟିଶସୈନ୍ୟ ମୁତୟନ ରହୁଥିଲେ । "ସମବଳ ରକ୍ଷା କରିବା ଦୃଷ୍ଟିରୁ ଗୋଟାଏ ଦିଗରେ ଯଥେଷ୍ଟ ସଂଖ୍ୟକ ୟୁରୋପୀୟ ସୈନ୍ୟ ଏବଂ ଅନ୍ୟ ଦିଗରେ ଦେଶୀୟ ଲୋକେ ପରସ୍ପର ବିରୋଧରେ ଦଳବାନ୍ଧି ଠିଆହୋଇଥିଲେ"—୧୮୫୮ର ସୈନ୍ୟବାହିନୀ ପୁନଃସଙ୍ଗଠନ ବିଷୟକ ସରକାରୀ ରିପୋର୍ଟରେ ଏକଥା କୁହାଯାଇଛି । ଏହି ସୈନ୍ୟ-ମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା କୌଣସି ଅଞ୍ଚଳକୁ ବଳପୂର୍ବକ ଦଖଲ କରିବା । ଏହାର ନାମ ଥିଲା 'ଆଭ୍ୟନ୍ତରୀଣ ନିରାପତ୍ତା ବାହିନୀ' ଏବଂ ଏହାର ଅଧିକାଂଶ ଲୋକ ଥିଲେ ଇଂରେଜ । ଭାରତର ଖର୍ଚ୍ଚରେ ବ୍ରିଟିଶ୍ ସୈନ୍ୟମାନଙ୍କୁ ତାଲିମ ଦିଆଯାଉଥିଲା ସୀମାନ୍ତ ପ୍ରଦେଶରେ । 'ଫିଲ୍ଡ ଆର୍ମି', ଯେଉଁଥିରେ ଅଧିକାଂଶ ଥିଲେ ଭାରତୀୟ, ବିଦେଶରେ ଲଢ଼ିବା ପାଇଁ ଥିଲା ଉଦ୍ଦିଷ୍ଟ ଏବଂ ବହୁ ବ୍ରିଟିଶ୍ ସାମ୍ରାଜ୍ୟବାଦୀ ଯୁଦ୍ଧ ଓ ଅଭିଯାନରେ ଏହି ବାହିନୀ ଅଂଶ ଗ୍ରହଣ କରିଥିଲା; କିନ୍ତୁ ତାର ବ୍ୟୟଭାର ବହନ କରିଥିଲା ଭାରତ । ଭାରତୀୟ ଜନସାଧାରଣଙ୍କଠାରୁ ଭାରତୀୟ ସୈନ୍ୟମାନେ ଯେପରି ସମ୍ପୂର୍ଣ୍ଣ ଭାବେ ବିଚ୍ଛିନ୍ନ ରହିବେ, ସେ ଦିଗରେ ସବୁ କିଛି ବ୍ୟବସ୍ଥା ଗ୍ରହଣ କରାଯାଇଥିଲା ।

ଏହିଭାବରେ, ତାକୁ ଜୟ କରିବାର ଖରଚ ଏବଂ ପରେ ଇଷ୍ଟଇଣ୍ଡିଆ କମ୍ପାନୀ ହାତରୁ ବ୍ରିଟିଶ ରାଜାଙ୍କ ରାଜତ୍ୱ ହସ୍ତାନ୍ତରିତ (କମ୍ପାନୀ ବିକ୍ରି) ହେବା ଖରଚ, ବର୍ମା ଓ ଅନ୍ୟାନ୍ୟ ଅଞ୍ଚଳକୁ ବ୍ରିଟିଶ ସାମ୍ରାଜ୍ୟ ସମ୍ପ୍ରସାରିତ ହେବାର ଖରଚ, ଆଫ୍ରିକା, ପାରସ୍ୟ ଆଦିରେ ଅଭିଯାନର ଖରଚ, ସର୍ବୋପରି ଭାରତୀୟଙ୍କ ବିରୁଦ୍ଧରେ ଭାରତର ପ୍ରତିରକ୍ଷା ବାବଦ ଖରଚ ଭାରତ ବହନ କଲା । ସାମ୍ରାଜ୍ୟର ସ୍ୱାର୍ଥରକ୍ଷା ଦିଗରେ ଭାରତ ଗୋଟାଏ ଘାଟି ଭାବରେ ଯେ ବ୍ୟବହୃତ ହେଲା, କେବଳ ନୁହେଁ, ଅଧିକନ୍ତୁ ଇଂଲଣ୍ଡରେ ବ୍ରିଟିଶ୍ ସେନାବାହିନୀର ଗୋଟାଏ ଅଂଶର ତାଲିମ ବାବଦ ଖରଚ ମଧ୍ୟ ତାକୁ ବହନ କରିବାକୁ ପଡ଼ିଲା । ସେ ଧନ ପରିଶୋଧ ହେବାର ପ୍ରଶ୍ନ ନଥିଲା । ଏହି ବାବଦର ଖରଚକୁ 'କେପିଟେସନ୍' ଅର୍ଥାତ୍ ମୁଣ୍ଡପିଛା ଖରଚ ନାମ ଦିଆଯାଇଥିଲା । ପ୍ରକୃତପକ୍ଷେ, ଇଂଲଣ୍ଡ ଦ୍ୱାରା ପ୍ରଯୋଜିତ ସବୁ କିଛି ବାବଦ ପାଇଁ ଟଙ୍କା ଦେବାକୁ ପଡ଼ୁଥିଲା ଭାରତକୁ; ଯଥା—ଚୀନ ଓ ପାରସ୍ୟରେ ଇଂଲଣ୍ଡର କୂଟନୈତିକ ସଂସ୍ଥା ଚଳାଇବା ଖରଚ, ଇଂଲଣ୍ଡରୁ ଭାରତକୁ ତାର-ଲାଇନ ଦେବାର ସମ୍ପୂର୍ଣ୍ଣ ଖରଚ, ଭୂମଧ୍ୟସାଗରରେ ବ୍ରିଟିଶ ନୌବାହିନୀ ନିମନ୍ତେ ବ୍ୟୟିତ ଧନର ଏକ ଅଂଶ ଆହୁରି ମଧ୍ୟ ଲଣ୍ଡନରେ ତୁର୍କୀର ସୁଲତାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରିବା ବାବଦ ଖରଚ ।

ଭାରତରେ ରେଳପଥ ନିର୍ମାଣକରିବା ଥିଲା ନିଃସନ୍ଦେହରେ ବାଞ୍ଛନୀୟ ଓ ଅତ୍ୟାବଶ୍ୟକ; କିନ୍ତୁ ଏଥିରେ ଯେଉଁ ଧନ ବରବାଦ କରାଗଲା, ତାର ତୁଳନା ବାସ୍ତବିକ ନାହିଁ । ଏଥିରେ ଖଟାଯାଇଥିବା ସମସ୍ତ ମୂଳଧନ ଉପରେ ଭାରତ ସରକାର ୫% ସୁଧ ଗ୍ୟାରେଣ୍ଟି କରି ଦେଲେ ଓ ଯାହା ଆବଶ୍ୟକ ତାର ଅଟକଳ କିମ୍ବା ଯାଞ୍ଚ କରିବା ପ୍ରୟୋଜନ ହେଉ ନଥିଲା । ମାଲପତ୍ର ସବୁ ଇଂଲଣ୍ଡରୁ ଖରିଦ କରାଗଲା ।

ସରକାରଙ୍କ ବୈଷୟିକ ସଂସ୍ଥାଗୁଡ଼ିକରେ ମଧ୍ୟ ଅଧିଶିକ୍ଷା ଭରତି କରାଗଲା । ଯେତେ ସବୁ ମୋଟା ଦରମାର ସ୍ଥାନ ୟୁରୋପୀୟଙ୍କ ପାଇଁ ଥିଲା ସଂରକ୍ଷିତ । ଶାସନ-କାଳରେ ଅଧିକରୁ ଅଧିକ ଭାବରେ ଭାରତୀୟଙ୍କୁ ଦାୟିତ୍ୱ ଅର୍ପଣ କରିବା ପ୍ରକ୍ରିୟାର ଗତି ଥିଲା ବଡ଼ ମନ୍ଥର ଏବଂ ଏହି ପ୍ରକ୍ରିୟା ଯେ ଚାଲିଚ, ଦୃଷ୍ଟିରେ ପଡ଼ିଲା କେବଳ ବିଂଶ ଶତକରେ । ଏହି ପ୍ରକ୍ରିୟା ଭାରତୀୟଙ୍କ ହାତକୁ କ୍ଷମତା ହସ୍ତାନ୍ତରିତ କରିବା ଦୂରେ ଥାଉ, ବରଂ ଅନ୍ୟ ଭାବରେ ବ୍ରିଟିଶ ଶାସନକୁ ସୁଦୃଢ଼ କରିବା ପ୍ରମାଣିତ କଲା । ପ୍ରଶାସନର ଯେତେ ସବୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହିଲା ଇଂରେଜମାନଙ୍କ ହାତରେ ଏବଂ ଯେଉଁଠି ବା ଭାରତୀୟମାନେ ରହିଲେ, ବ୍ରିଟିଶ ଶାସନର ଏଜେଣ୍ଟ ଭାବରେ କେବଳ କାର୍ଯ୍ୟ କଲେ ।

ଏହି ସବୁ ଉପାୟ ସଙ୍ଗେ ସମଗ୍ର ବ୍ରିଟିଶ ରାଜତ୍ୱ କାଳରେ ଅନୁସୃତ ହେଉଥିବା ଅଭିପ୍ରାୟମୂଳକ ନୀତିକୁ ମଧ୍ୟ ଯୋଗକରିବାକୁ ପଡ଼ିବ । ତାହା ହେଉଚି, ଭାରତୀୟମାନଙ୍କ ଭିତରେ ବିଭେଦ ସୃଷ୍ଟି କରିବା, ଗୋଟାଏ ସମ୍ପ୍ରଦାୟର କ୍ଷତି କରିବା ଉଦ୍ଦେଶ୍ୟରେ ଅନ୍ୟ ଏକ ସମ୍ପ୍ରଦାୟକୁ ତାର ବିରୁଦ୍ଧରେ ଲଗାଇବା । ବ୍ରିଟିଶ ଶାସନର ପ୍ରଥମାବସ୍ଥାରେ ଏହି ନୀତି ଖୋଲାଖୋଲି ଭାବରେ ସେମାନେ ପ୍ରୟୋଗ କରିଥିଲେ ଏବଂ ପ୍ରକୃତପକ୍ଷେ ଗୋଟାଏ ସାମ୍ରାଜ୍ୟବାଦୀ ଶକ୍ତି କ୍ଷମତାରେ ଏହା ଥିଲା ସ୍ୱାଭାବିକ । ଜାତୀୟ ଆନ୍ଦୋଳନର ପ୍ରସାର ସଙ୍ଗେ ଏହି ନୀତି ସୂକ୍ଷ୍ମତର ଅଥଚ ଅଧିକତର ବିପଜ୍ଜନକ ଏବଂ ଅଧିକତର ନିବିଷ୍ଟ ଭାବରେ କାର୍ଯ୍ୟକାରୀ ହେଲା । ଜାଣିବା କଥା, ଭାରତର ବ୍ରିଟିଶ ସରକାର ଏହା ସ୍ୱୀକାର କରିନଥାନ୍ତି ।

ଆମର ଆଜିର ଯେତେ ସବୁ ବଡ଼ ବଡ଼ ସମସ୍ୟା ବ୍ରିଟିଶ ରାଜତ୍ୱ କାଳରେ ଏବଂ ବ୍ରିଟିଶ ନୀତିର ପ୍ରତ୍ୟକ୍ଷ ପରିଣାମ ଭାବରେ ଗଢ଼ିଉଠିଚି । ଯଥା : ଦେଶୀୟ ରାଜ୍ୟ ସମସ୍ୟା, ସଂଖ୍ୟାଲଘୁ ସମସ୍ୟା, ଭାରତୀୟ ଓ ବୈଦେଶିକ ବିବିଧ ନ୍ୟସ୍ତସ୍ୱାର୍ଥର ସମସ୍ୟା, ଶିଳ୍ପର ଅଭାବ ଓ କୃଷିର ଅବହେଳା, ସାମାଜିକ ସେବା କ୍ଷେତ୍ରରେ ଦାରୁଣ ଅନଗ୍ରସର ମନୋଭାବର ସମସ୍ୟା ଏବଂ ସର୍ବୋପରି ଜନସାଧାରଣଙ୍କ ଦୁର୍ବିସହ ଦରିଦ୍ରତାର ସମସ୍ୟା । ଶିକ୍ଷା ଦିଗରେ କିଛି କରାଯାଇନ କହିଲେ ଚଳେ । କେ. ରଚିତ 'ମେଟ୍‌କାଫ୍ ଜୀବନୀ' ଗ୍ରନ୍ଥରେ ବିବୃତ କରାଯାଇଚି ଯେ "ମୁକ୍ତଭାବରେ ଜ୍ଞାନ ବିତରଣ କରିବାର ଏହି ଭୟ ଗୋଟାଏ ଦୁରାରୋଗ୍ୟ ବ୍ୟାଧି ହୋଇପଡ଼ିଲା ଏବଂ ସରକାରଙ୍କ ଲୋକେ ସର୍ବଦା ନାନା ପ୍ରକାର ଚିତ୍ତୋନ୍ମାଦଗ୍ରସ୍ତ ଦିବାସ୍ୱପ୍ନ ଓ ଦୁଃସ୍ୱପ୍ନରେ ପୀଡ଼ିତ ହେଉଥିଲେ, ଯେଉଁଥିରେ ମୁଦ୍ରାଯନ୍ତ୍ର ଓ ବାଇବଲ୍‌ର ଅବାସ୍ତବ କେତେ ଦୃଶ୍ୟ ସେମାନଙ୍କୁ ଭୟରେ ଜର୍ଜରିତ କରୁଥିଲା, ସେମାନଙ୍କର ଲୋମ ଟାଙ୍କୁରି ଉଠୁଥିଲା ଓ ଶରୀର ଅସାଡ଼ ହୋଇପଡ଼ୁଥିଲା । ସେ କାଳରେ ଆମର ନୀତି ଥିଲା ଭାରତୀୟମାନଙ୍କୁ ଅଜ୍ଞାନର ଅନ୍ଧକାର ଓ ବୁଦ୍ଧିଭ୍ରାନ୍ତ ବର୍ବରତାର ଅବସ୍ଥାରେ ରଖିବା ଏବଂ ଆମର ଶାସନାଧୀନ ଲୋକଙ୍କ ଭିତରେ କିମ୍ବା ସ୍ୱାଧୀନ ରାଜ୍ୟମାନଙ୍କରେ ଜ୍ଞାନର ଆଲୋକ ବିକିରଣ କରିବାର ସବୁ କିଛି ଉଦ୍ୟମ ପ୍ରତି

ପ୍ରବଳ ପ୍ରତିରୋଧ ଓ ବିରକ୍ତି ପ୍ରକାଶ ପାଉଥିଲା । (୧)

ସାମ୍ରାଜ୍ୟବାଦ ଯଦି ଏହି ଧାରାରେ କାର୍ଯ୍ୟ ନକରେ, ତାହାହେଲେ ତାହା ସାମ୍ରାଜ୍ୟବାଦ ପଦବାଚ୍ୟ ନୁହେଁ । ଆଧୁନିକ ଧରଣର ଆର୍ଥିକ-ସାମ୍ରାଜ୍ୟବାଦ କେତେକ ନୂତନ ଧରଣର ଅର୍ଥନୈତିକ ଶୋଷଣର ପନ୍ଥା ଉନ୍ମୁକ୍ତ କଲା, ଯାହା ପୂର୍ବେ ଅଜ୍ଞାତ ଥିଲା । ଊନବିଂଶ ଶତକ ସାରା ଭାରତରେ ବ୍ରିଟିଶ ରାଜତ୍ୱର କାର୍ଯ୍ୟକଳାପ ଭାରତୀୟଙ୍କୁ ନ୍ୟାୟତଃ ବିକ୍ଷୁବ୍ଧ ଓ କ୍ରୁଦ୍ଧ କରିବାର କଥା । ତଥାପି ବହୁ କ୍ଷେତ୍ରରେ, ଆମର ଦୁର୍ବଳତା ଓ ବିଭେଦରୁ ଲାଭ ଉଠାଇବାର ସାମର୍ଥ୍ୟ ଦେଇ କେବଳ ନୁହେଁ, ଇଂରେଜମାନେ ସେମାନଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଚନ୍ତି । ଯେଉଁ ଜାତି ଦୁର୍ବଳ, ଯେଉଁ ଜାତି ସମୟର ଗତି ସଙ୍ଗେ ପାଦ ମିଳାଇ ଚାଲିପାରେନି, ଦୁଃଖକଷ୍ଟ କରିଣ କରି ଆଣେ ଓ ପରିଶେଷରେ ନିଜକୁ ନିନ୍ଦିବା ଛଡ଼ା ଆଉ ତାର କିଛୁ କରିବାର ନଥାଏ । ବ୍ରିଟିଶ ସାମ୍ରାଜ୍ୟବାଦ ତାର ସମସ୍ତ ପ୍ରଭାବ ଘେନି, ଅବସ୍ଥାଚକ୍ରରେ, ଘଟଣାବଳୀର ସ୍ୱାଭାବିକଧାରାରେ ଆସିବା ଯଦି ଥିଲା ପ୍ରତ୍ୟାଶିତ, ସେଥି ପ୍ରତି ପ୍ରତିରୋଧ ଗଢ଼ିବା ମଧ୍ୟ ଥିଲା ଅବଶ୍ୟମ୍ଭାବୀ ଏବଂ ଉଭୟ ମଧ୍ୟରେ ଏକ ନିଷ୍ପତ୍ତିମୂଳକ ସଙ୍ଘର୍ଷ ଦିନେ ସୃଷ୍ଟିହେବା ମଧ୍ୟ ସ୍ୱାଭାବିକ ।

## ୪. ଦେଶୀୟ ରାଜ୍ୟ

ଆଜି ଭାରତରେ ଅମର ଗୋଟାଏ ବଡ଼ ସମସ୍ୟା ହେଉଚି ଦେଶୀୟ ରାଜ୍ୟଗୁଡ଼ିକର ରାଜନ୍ୟବର୍ଗଙ୍କୁ ନେଇ । ବିଶ୍ୱରେ ଏହି ରାଜ୍ୟଗୁଡ଼ିକର ପଟାନ୍ତର ନାହିଁ ଏବଂ ଆୟତନ ତଥା ରାଜନୈତିକ ଓ ସାମାଜିକ ଅବସ୍ଥାରେ ଏଗୁଡ଼ିକ ପରସ୍ପରଠାରୁ ଭିନ୍ନ । ଏହି ରାଜ୍ୟ-ଗୁଡ଼ିକର ସଂଖ୍ୟା ହେଉଚି ୬୦୧ । ଏଥିଭିତରୁ ୧୫ ଗୋଟି ରାଜ୍ୟ ବଡ଼ ଶ୍ରେଣୀର ଏବଂ ସେଥିଭିତରୁ ବୃହତ୍ତମ ରାଜ୍ୟଗୁଡ଼ିକ ହେଉଚି ହାଇଦ୍ରାବାଦ, କାଶ୍ମୀର, ମହୀଶୂର, ଟ୍ରାଭାନ୍‌କୋର, ବରୋଦା, ଗୋଆଲିଅର, ଇନ୍ଦୋର, କୋଚିନ, ଜୟପୁର, ଯୋଧପୁର, ବିକାନୀର, ଭୂପାଳ ଓ ପାତିଆଲା । ଏ ସବୁ ପରେ ଗୁଡ଼ାଏ ମଧ୍ୟମ ଶ୍ରେଣୀର ରାଜ୍ୟ । ଶେଷରେ କେତେ ଶତ ଅତି କ୍ଷୁଦ୍ର ରାଜ୍ୟ ଓ ସେଥିଭିତରୁ କେତେ ଏତେ କ୍ଷୁଦ୍ର ଯେ ମାନଚିତ୍ରରେ ଦେଖାଇବାକୁ ଗଲେ ଗୋଟିଏ ପିନ୍‌କଣ୍ଟାର ଅଗ୍ରଭାଗଠାରୁ ବଡ଼ ହେବନି । କାଥିଆବାଡ଼, ପଶ୍ଚିମ-ଭାରତ ଓ ପଞ୍ଜାବରେ ଅଧିକାଂଶ ଏହି ସବୁ କ୍ଷୁଦ୍ର ରାଜ୍ୟ ଅବସ୍ଥିତ ।

ଏହି ରାଜ୍ୟଗୁଡ଼ିକରୁ କେଉଁଟି ଆକାରରେ ଯଦି ଫ୍ରାନ୍‌ସ ଦେଶ ଭଳି, ଅନ୍ୟଟି ହୁଏତ ଜଣେ ସାଧାରଣ କୃଷକର କେତେ ଏକର ଜମିର ଆୟତନ ଭଳି । ସେତିକି କେବଳ ନୁହେଁ, ଏଗୁଡ଼ିକ ପରସ୍ପରଠାରୁ ଅନ୍ୟ ସବୁ ଦିଗରେ ଭିନ୍ନ କହିଲେ ଚଳେ । ମହୀଶୂର ଶିଳ୍ପ ଦିଗରେ ସର୍ବାଧିକ ପ୍ରଗତି କରିଚି । ବ୍ରିଟିଶ ଭାରତ ଅପେକ୍ଷା ଶିକ୍ଷା ଦିଗରେ ମହୀଶୂର,

(୧) 'ଦି ଲାଇଫ୍ ଅଫ୍ ଲର୍ଡ଼ ମେଟକାଫ୍' ଗ୍ରନ୍ଥରୁ ଏଡ଼ୱାର୍ଡ଼ ଥମ୍ପସନ୍‌ଙ୍କଦ୍ୱାରା ଉଦ୍ଧୃତ ।

ତ୍ରାଭାନ୍‌କୋର ଓ କୋଚିନ ଆଶାତୀତ ଭାବରେ ଉନ୍ନତ । (୧) ତେବେ ଅଧିକାଂଶ ରାଜ୍ୟ ଅତିମାତ୍ରାରେ ଅନଗ୍ରସର ଓ କେତେକ ରାଜ୍ୟ ସମ୍ପୂର୍ଣ୍ଣ ଭାବରେ ସାମନ୍ତବାଦୀ ରୀତିରେ ଶାସିତ । ଏ ସବୁ ରାଜ୍ୟ ନିରଙ୍କୁଶ ଶାସକମାନଙ୍କଦ୍ୱାରା ଶାସିତ । ଯଦିଓ କେତେକ ରାଜ୍ୟରେ ନିର୍ବାଚିତ ପରିଷଦମାନ କାର୍ଯ୍ୟକାରୀ ହେଉଛନ୍ତି, ତଥାପି ସେସବୁର କ୍ଷମତା ବିକଳ୍ପ-ଭାବରେ ସୀମିତ । ଦେଶୀୟ ରାଜ୍ୟମାନଙ୍କ ଭିତରେ ଅଗ୍ରଣୀ ହାଇଦ୍ରାବାଦରେ ଏବେ ବି ଏକ ବିଚିତ୍ର ଧରଣର ଶାସନ ଚାଲିଛି, ଯେଉଁଠି ନାଗରିକ ଅଧିକାର ମୋଟେ ନାହିଁ କହିଲେ ଚଳେ । ସେହିପରି ମଧ୍ୟ ରାଜପୁତାନା ଓ ପଞ୍ଜାବର ଅଧିକାଂଶ ରାଜ୍ୟର ଅବସ୍ଥା । ସବୁ ରାଜ୍ୟରେ ନାଗରିକ ଅଧିକାରରୁ ପ୍ରଜାଙ୍କୁ ବଞ୍ଚିତ ରଖିବା ଏକ ସାଧାରଣ କଥା ।

ଏ ସବୁ ରାଜ୍ୟ ସଲଗ୍ନ ଭାବରେ ଅବସ୍ଥିତ ନୁହେଁ । ଭାରତସାରା ଏଗୁଡ଼ିକ ପରିବ୍ୟାପ୍ତ—ଯେପରି ବ୍ରିଟିଶଶାସିତ ଅଞ୍ଚଳ ଭିତରେ ଗୋଟିଏ ଗୋଟିଏ ଦ୍ୱୀପ ସ୍ୱରୂପ । ମାତ୍ର କେତୋଟି ରାଜ୍ୟକୁ ବାଦ୍ ଦେଲେ ସ୍ୱାଧୀନ ଭାବରେ ନିଜର ଅର୍ଥନୀତି ପରିଚାଳିତ କରିବା ପାଇଁ ଅନ୍ୟ ସବୁ ରାଜ୍ୟ ସମ୍ପୂର୍ଣ୍ଣ ଭାବରେ ଅସମର୍ଥ; ଏପରିକି ଏଥିଭିତରୁ ଯେଉଁ ରାଜ୍ୟ-ଗୁଡ଼ିକ ବୃହତ୍ତମ, ସେଗୁଡ଼ିକ ଯେଉଁଭଳି ଭାବରେ ଅବସ୍ଥିତ, ପାର୍ଶ୍ୱବର୍ତ୍ତୀ ଅଞ୍ଚଳମାନଙ୍କର ପୂର୍ଣ୍ଣ ସହଯୋଗ ବିନା ନିଜର ଅର୍ଥନୀତିକୁ ଜୀବିତ ରଖିବା କାଠିକର ପାଠ । କେବେ ଯଦି କୌଣସି ଦେଶୀୟ ରାଜ୍ୟ ଓ ବ୍ରିଟିଶଶାସିତ ଭାରତ ଭିତରେ ଅର୍ଥନୈତିକ ସଙ୍ଘର୍ଷ ଦେଖାଦେଇଛି, ନାନାବିଧ ଶୁଳ୍କ ପ୍ରତିବନ୍ଧକ ଓ ଅନ୍ୟାନ୍ୟ ଅର୍ଥନୈତିକ ବାସନ୍ଧ ଫଳରେ ଦେଶୀୟ ରାଜ୍ୟ ପଦାନତ ହେବାକୁ ବାଧ୍ୟହୋଇଛି । ଏଥିରୁ ପ୍ରମାଣିତ ହେଉଛି ଯେ ରାଜନୈତିକ ଓ ଅର୍ଥନୈତିକ ଉଭୟ ଦିଗରୁ ଏହି ସବୁ ରାଜ୍ୟ, ବଡ଼ ହେଉ କି ଛୋଟ ହେଉ, ଭାରତରୁ ବିଚ୍ଛିନ୍ନଭାବରେ ସ୍ୱାଧୀନ ରାଜ୍ୟ ହିସାବରେ ଚଳିବା ଅସମ୍ଭବ । ଯେଉଁଭଳି ଅବସ୍ଥିତ, ଏ ସବୁ ରାଜ୍ୟର ସ୍ଥିତି ସମ୍ପୂର୍ଣ୍ଣ ଅଳୀକ ଏବଂ ସେଥିଲାଗି ଅବଶିଷ୍ଟ ଭାରତ କ୍ଷତି ସହିବା ହିଁ ସାର ହେବ । ସମଗ୍ର ଭାରତରେ ଏହି ରାଜନ୍ୟବର୍ଗ ଜଣେ ଜଣେ ଶତ୍ରୁ ଦୁର୍ଗର ଅଧିପତି ଭଳି କାର୍ଯ୍ୟ କରିବେ ଏବଂ ଆତ୍ମରକ୍ଷା ନିମନ୍ତେ ଯଦି କୌଣସି ବାହାର ଶକ୍ତି ଉପରେ ଏମାନେ ନିର୍ଭର କରନ୍ତି । ତାହାହେଲେ ଗୋଟାଏ ସ୍ୱାଧୀନ ଭାରତ ପକ୍ଷରେ

---

(୧) ଶିକ୍ଷା ଦୃଷ୍ଟିରୁ ତୁଳନା କରି ଦେଖିଲେ ତ୍ରାଭାଙ୍କୋର, କୋଚିନ୍, ମହୀଶୂର ଓ ବରୋଦା ବ୍ରିଟିଶ-ଭାରତ ଅପେକ୍ଷା ଅଧିକତର ଉନ୍ନତ ଓ ଅଗ୍ରଗାମୀ । ଖ୍ରୀଃ ୧୮୦୧ରେ ତ୍ରାଭାଙ୍କୋରରେ ଗଣଶିକ୍ଷା ପ୍ରବର୍ତ୍ତିତ ହେବା ବାସ୍ତବିକ ଉଲ୍ଲେଖଯୋଗ୍ୟ । ଇଂଲଣ୍ଡରେ ତାହା କରାଯାଇ ଥିଲା ଖ୍ରୀଃ ୧୮୭୦ ରେ । ତ୍ରାଭାଙ୍କୋରରେ ସ୍ତ୍ରୀ ଓ ପୁରୁଷଙ୍କ ଭିତରେ ସାକ୍ଷରତାର ଯଥାକ୍ରମେ ଶତକଡ଼ା ୫୮ ଓ ୪୧; ବ୍ରିଟିଶ୍-ଭାରତର ଶତକଡ଼ା ଅପେକ୍ଷା ଏହା ଢେର ଗୁଣରେ ଅଧିକ । ସର୍ବସାଧାରଣ ସ୍ୱାସ୍ଥ୍ୟ ବ୍ୟବସ୍ଥା ମଧ୍ୟ ତ୍ରାଭାଙ୍କୋରରେ ସୁସଙ୍ଗଠିତ । ସର୍ବସାଧାରଣ ସେବାକ୍ଷେତ୍ରରେ ତ୍ରାଭାଙ୍କୋର ରାଜ୍ୟର ନାରୀମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଚନ୍ତି ।

ଏମାନେ ସବୁବେଳେ ବିପଦ ହୋଇ ରହିବେ । ପ୍ରକୃତରେ ଏମାନେ ଆଜି ପର୍ଯ୍ୟନ୍ତ ତିଷ୍ଠି ନଥାନ୍ତେ; ଯଦି ରାଜନୀତି ଓ ଅର୍ଥନୀତି ଉଭୟ ଦିଗରୁ ଦେଶୀୟ ରାଜ୍ୟ ସମେତ ଭାରତ ଏକ ଶାସନାଧୀନ ହୋଇ ନଥାନ୍ତା ଏବଂ ସେହି ଶାସନ ଏମାନଙ୍କୁ ଘଣ୍ଟା ଘୋଡ଼ାଇ ରଖିନଥାନ୍ତା । ଗୋଟାଏ ଦେଶୀୟ ରାଜ୍ୟ ଓ ଭାରତ ମଧ୍ୟରେ ସମ୍ଭାବ୍ୟ ସଙ୍ଘର୍ଷର ବିଷୟ ନ ଦେଖି ଏକଥା ମନେରଖିବାକୁ ହେବ ଯେ ଦେଶୀୟ ରାଜ୍ୟର ଲୋକେ ଗଣତାନ୍ତ୍ରିକ ବ୍ୟବସ୍ଥା ଦାବି କରି ସ୍ୱେଚ୍ଛାଚାରୀ ଶାସନ ଉପରେ ଅବ୍ୟାହତ ଭାବରେ ଚାପ ପକାଇ ଆସୁଚନ୍ତି । ଏହି ଦାବି ହାସଲ କରିବା ଦିଗରେ ଦେଶୀୟରାଜ୍ୟ ପ୍ରଜାଙ୍କ ଉଦ୍ୟମକୁ ବ୍ରିଟିଶ ଶକ୍ତି ସାହାଯ୍ୟରେ ରାଜା ଦମନ କରି ରଖିଚି ।

ଊନବିଂଶ ଶତକରେ ମଧ୍ୟ ଏହି ରାଜ୍ୟଗୁଡ଼ିକ ଯେପରି ଭାବରେ ସଙ୍ଗଠିତ, ଯୁଗ ସଙ୍ଗେ ସାମଞ୍ଜସ୍ୟ ହରାଇ ବସିଥିଲେ । ଆଧୁନିକ କାଳରେ ଭାରତ ଶତଶତ ସ୍ୱତନ୍ତ୍ର ସତ୍ତାରେ ଭାଗ ଭାଗ ହେବା କଳ୍ପନାରେ ସୁଦ୍ଧା ଅସମ୍ଭବ । ସବୁବେଳେ ସେ ସଙ୍ଘର୍ଷ ଲାଗିରହିବ କେବଳ ନୁହେଁ ଅଧିକନ୍ତୁ ଅର୍ଥନୀତି ଓ ସଂସ୍କୃତିର ପ୍ରଗତିଜନିତ ସବୁ କିଛି ଯୋଜନା କାର୍ଯ୍ୟକାରୀ କରିବା ଅସମ୍ଭବ ହୋଇପଡ଼ିବ । ଆମେ ମନେ ରଖିବା ଉଚିତ ଯେ ଏହି ରାଜ୍ୟଗୁଡ଼ିକ ଯେବେ ଗଠିତ ହେଲା ଓ ଏମାନେ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ସଙ୍ଗେ ଯେବେ ଚୁକ୍ତି କଲେ, ତାହା ଊନବିଂଶ ଶତକ ପ୍ରାରମ୍ଭର କଥା । ୟୁରୋପ ସେତେବେଳେ ବହୁ ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟରେ ବିଭକ୍ତ ଥିଲା । ବହୁ ଯୁଦ୍ଧ ଓ ବିପ୍ଳବ ସେହି ସମୟର ୟୁରୋପର ରୂପ ବଦଳାଇ ଦେଇଚି ଏବଂ ସେ ପରିବର୍ତ୍ତନର ଧାରା ଆଜି ସୁଦ୍ଧା ପ୍ରବାହିତ ହେଉଚି; କିନ୍ତୁ ବାହାର ଚାପ ଦ୍ୱାରା ଭାରତରେ ସବୁ କିଛି ପରିବର୍ତ୍ତନର ପଥ ରୁଦ୍ଧ କରିଦିଆଗଲା ଏବଂ ଭାରତ ଗୋଟାଏ ଶିଳା-ମୂର୍ତ୍ତି ହୋଇ କେବଳ ରହିଚି । ୧୪୦ ବର୍ଷ ତଳେ ସାଧାରଣତଃ ଯୁଦ୍ଧକ୍ଷେତ୍ରରେ କମ୍ପାନୀ ପରେ ପରେ ଦୁଇ ଜଣ ଯୁଦ୍ଧରତ ସେନାପତି ଅଥବା ସେମାନଙ୍କ ପ୍ରଭୁମାନେ କରିଥିବା କୌଣସି ସାମୟିକ ବନ୍ଦୋବସ୍ତକୁ ଯାବଚ୍ଚନ୍ଦ୍ରାର୍କେ ଅପରିବର୍ତ୍ତିତ ରହିବୁ ବୋଲି ମନେ କରିବା ବାସ୍ତବିକ ଏକ ଉଦ୍ଭଟ କଥା । ସେହି ଚୁକ୍ତି ବା ସନ୍ଧିରେ ରାଜ୍ୟବାସୀଙ୍କ ମତ ନିଆଯାଇ ନଥିଲା ଏବଂ ଅନ୍ୟ ପକ୍ଷରେ ଥିଲା ଗୋଟାଏ ବାଣିଜ୍ୟ ସଂସ୍ଥା, ଯାହାର ଏକମାତ୍ର ଆଦର୍ଶ ଓ ଆଚରଣ ଥିଲା ବ୍ୟବସାୟରେ ଲାଭବାନ ହେବା । ଏହି ବାଣିଜ୍ୟ ସଂସ୍ଥା ବା ଇଷ୍ଟ ଇଣ୍ଡିଆ କମ୍ପାନୀ ଇଂଲଣ୍ଡର ମୁକୁଟ କିମ୍ବା ପାର୍ଲାମେଣ୍ଟର ପ୍ରତିନିଧି ଭାବରେ କାର୍ଯ୍ୟ କରିନଥିଲା । ବରଂ ସିଦ୍ଧାନ୍ତ ରୂପରେ କମ୍ପାନୀ ଦିଲ୍ଲୀ ସମ୍ରାଟଙ୍କ ଏଜେଣ୍ଟ ଭାବରେ କାର୍ଯ୍ୟ କରିଥିଲା, ଯାହାଙ୍କୁ ଶକ୍ତି ଓ ଅଧିକାରର ଉତ୍ସ ମନେକରାଯାଉଥିଲା । ସମ୍ରାଟ ଅବଶ୍ୟ କୌଣସି ଶକ୍ତିର ଆଧାର ନଥିଲେ । ଏହି ସବୁ ସନ୍ଧି ଓ ଚୁକ୍ତି ସଙ୍ଗେ ବ୍ରିଟିଶ ମୁକୁଟ କିମ୍ବା ପାର୍ଲାମେଣ୍ଟର କିଛି ସମ୍ପର୍କ ନଥିଲା । ମଝିରେ ମଝିରେ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଦିଆ-ଯାଇଥିବା ସନନ୍ଦ ପୁଣି ନୂତନକରିବାପାଇଁ ଯେବେ ଆଲୋଚନାକୁ ଆସୁଥିଲା, ସେତେବେଳେ କେବଳ ଭାରତ ବିଷୟ ପାର୍ଲାମେଣ୍ଟ ବିସ୍ତୃତ-ଆଲୋଚନା କରୁଥିଲା । ପ୍ରକୃତ କଥା ହେଉଚି ଯେ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଭାରତରେ ସେହି ଅଧିକାର ବଳରେ କାର୍ଯ୍ୟ କରୁଥିଲା, ଯାହା

ହିବାଣୀ ରୂପରେ ମୋଗଲ ସମ୍ରାଟ ତାକୁ ଦେଇଥିଲେ; କମ୍ପାନୀ ବ୍ରିଟିଶ ମୁକୁଟ କମ୍ବା ପାର୍ଲାମେଣ୍ଟର ପ୍ରତ୍ୟକ୍ଷ ହସ୍ତକ୍ଷେପରୁ ମୁକ୍ତ ଥିଲା । ଅନ୍ୟ ବାଟରେ ଅବଶ୍ୟ ପାର୍ଲାମେଣ୍ଟ ସେପରି ଗ୍ରହିଥିଲେ କମ୍ପାନୀର ଗ୍ରଣ୍ଟର୍ ବା ସନନ୍ଦ ରଦ୍ଦ କରିଦେଇ ପାରନ୍ତେ କମ୍ବା ପୁନର୍ବାର ତାହା ଜାରି କରିବା ସମୟରେ ସେଥି ସଙ୍ଗେ ନୂଆ ନୂଆ ସର୍ତ୍ତ ଯୋଡ଼ିଦେଇ ପାରନ୍ତେ । କେବଳ ତାତ୍ତ୍ୱିକ ବିଚାରରେ ପଛେ ହେଉ, ଇଂରେଜମାନଙ୍କ ରାଜା କମ୍ବା ପାର୍ଲାମେଣ୍ଟ ହିଲ୍ଲୀର ଗ୍ରାସ୍ଥ୍ୟ-ସମ୍ରାଟଙ୍କ ଏଜେଣ୍ଟ ଭାବରେ କାର୍ଯ୍ୟ କରିବେ ଓ ସେଥି ହେତୁରୁ ତାଙ୍କର ଅଧୀନସ୍ଥ ବିବେଚିତ ହେବେ, ଏହି ଧାରଣାକୁ ଇଂଲଣ୍ଡରେ କେହି ପସନ୍ଦ କରୁନଥିଲେ । ଅତଏବ, ରାଜା ଓ ପାର୍ଲାମେଣ୍ଟ ଉଭୟେ ଇଷ୍ଟ ଇଣ୍ଡିଆ କମ୍ପାନୀର କାର୍ଯ୍ୟକଳାପ ସଙ୍ଗେ ମୋଟେ ଜଡ଼ିତ ହେବାକୁ ଗ୍ରହୁଁ ନଥିଲେ । ଭାରତୀୟ ଯୁଦ୍ଧମାନଙ୍କର ଯେଉଁ ଧନ ବ୍ୟୟିତ ହେଉଥିଲା, ତାହା ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତରୁ ଉଠାଉଥିଲେ ଓ ନିଜେ ହିଁ ତାର ବ୍ୟୟ ବ୍ୟବସ୍ଥା କରୁଥିଲେ ।

ପରେ ପରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଅଧିକୃତ ଅଞ୍ଚଳ ଆୟତନରେ ଯେବେ ବଢ଼ିବାକୁ ଲାଗିଲା ଏବଂ ତାର ଶାସନ ସୁଦୃଢ଼ ହେଲା, ବ୍ରିଟିଶ ପାର୍ଲାମେଣ୍ଟ ଭାରତୀୟ ବ୍ୟାପାରରେ ଅଧିକରୁ ଅଧିକ ଆଗ୍ରହ ପ୍ରକାଶ କରିବାକୁ ଲାଗିଲେ । ଖ୍ରୀ: ୧୮୫୮ରେ ଭାରତୀୟ ସିପାହି ଓ ଜନତାର ବିଦ୍ରୋହ ଧକ୍କାରେ ବିଚଳିତ, ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତରେ ଗଢ଼ିଥିବା ତାର ରାଜ୍ୟ ( ଯେଉଁଥି ପାଇଁ ଭାରତ ହିଁ ଧନ ବ୍ୟୟ କରିଥିଲା ) ବ୍ରିଟିଶ ମୁକୁଟକୁ ସମର୍ପଣ କଲା । ଏହି ହସ୍ତାନ୍ତରରେ ଭାରତଠାରୁ ଅଲଗା ଭାବରେ ଭାରତର ଦେଶୀୟ ରାଜ୍ୟଗୁଡ଼ିକ ନିମନ୍ତେ କୌଣସି ସ୍ୱତନ୍ତ୍ର ହସ୍ତାନ୍ତର ବ୍ୟବସ୍ଥା କରାଯାଇନଥିଲା । ସମଗ୍ର ଭାରତକୁ ଏକ ଓ ଅଖଣ୍ଡ ଭାବରେ ଗ୍ରହଣ କରାଯାଇଥିଲା ଏବଂ ବ୍ରିଟିଶ ପାର୍ଲାମେଣ୍ଟ ଭାରତରେ ନିଜକୁ କାର୍ଯ୍ୟକାରୀ କରୁଥିଲେ ଭାରତ ସରକାରଙ୍କ ଜରିଆରେ । ଦେଶୀୟ ରାଜ୍ୟଗୁଡ଼ିକ ଉପରେ ଭାରତ ସରକାରଙ୍କ ସାର୍ବଭୌମତ୍ୱ ବିସ୍ତୃତ ଥିଲା । ବ୍ରିଟିଶ୍ ମୁକୁଟ କମ୍ବା ପାର୍ଲାମେଣ୍ଟ ସଙ୍ଗେ ଦେଶୀୟ ରାଜ୍ୟଗୁଡ଼ିକର ଅଲଗା ସମ୍ପର୍କ କିଛି ନଥିଲା । ପ୍ରତ୍ୟକ୍ଷ ଓ ପରୋକ୍ଷ ଉଭୟ ଭାବରେ ଭାରତ ସରକାରଙ୍କ ଦ୍ୱାରା ପରିଚାଳିତ ଶାସନ-ପଦ୍ଧତିର ସେମାନେ ସବୁ ଢଙ୍ଗରେ ଅଂଶବିଶେଷ ଥିଲେ । ଏହି ଭାରତ ସରକାର ପରବର୍ତ୍ତୀ ସମୟମାନଙ୍କରେ ତାଙ୍କର ପରିବର୍ତ୍ତିତ ନୀତିକୁ ସୁହାଇବା ଭଳି ସେହି ସବୁ ପୁରାତନ ଚୁକ୍ତିକୁ ଅବଜ୍ଞା କରିଚନ୍ତି ଓ ଖୁବ୍ ଫଳପ୍ରଦ ଭାବରେ ନିଜର ସାର୍ବଭୌମତ୍ୱ ଦେଶୀୟ ରାଜ୍ୟଗୁଡ଼ିକ ଉପରେ ବିସ୍ତୃତ କରିଚନ୍ତି ।

ଅତଏବ, ଭାରତର ଦେଶୀୟ ରାଜ୍ୟଗୁଡ଼ିକ ସମ୍ପର୍କରେ ବିଚାରକଲେ, ବ୍ରିଟିଶ୍ ମୁକୁଟ ଆରମ୍ଭରୁ ହିଁ ଏହି ଚିତ୍ରଭିତରେ ନାହାନ୍ତି । ଅଳ୍ପ କେତେ ବର୍ଷ ହେଲା କେବଳ ଦେଶୀୟ ରାଜ୍ୟମାନଙ୍କ ପକ୍ଷରୁ ସେମାନେ ସ୍ୱାଧୀନ ବୋଲି ଦାବି ଉଠୁଚି ଓ ଅଧିକନ୍ତୁ ଏ ଦାବୀ ଉଠୁଚି ଯେ ଭାରତ ସରକାରଠାରୁ ଅଲଗା ଭାବରେ ବ୍ରିଟିଶ ମୁକୁଟ ସଙ୍ଗେ ସେମାନଙ୍କର ବିଶେଷ ଧରଣର ସମ୍ପର୍କ ରହିଚି । ଏହି ସବୁ ଚୁକ୍ତି ବିଷୟରେ ବିଚାର କଲାବେଳେ ମନେ ରଖିବା ଉଚିତ ଯେ ଶତ ଶତ ଦେଶୀୟ ରାଜ୍ୟ ଭିତରୁ ମାତ୍ର ଚାଳିଶି ଗୋଟି ରାଜ୍ୟ ସଙ୍ଗେ

ଏ ପ୍ରକାର ଚୁକ୍ତି କରାଯାଇଥିଲା । ଅବଶିଷ୍ଟ ସବୁ ରାଜ୍ୟ କେବଳ ସନନ୍ଦଦ୍ୱାରା ସ୍ୱୀକୃତ ଲଭିଚନ୍ତି । ଏହି ଚାଳିଶି ଗୋଟି ରାଜ୍ୟରେ ଦେଶୀୟ ରାଜ୍ୟ ଜନସଂଖ୍ୟାର ଚାରି ଭାଗରୁ ତିନିଭାଗ ବାସ କରନ୍ତି ଏବଂ ସେଥିରୁ ଛଅଟି ରାଜ୍ୟରେ ସମଗ୍ର ଜନସଂଖ୍ୟାର ଏକ ତୃତୀୟାଂଶରୁ ଅଧିକ ବାସ କରନ୍ତି । (୧)

ଖ୍ରୀ: ୧୯୩୫ର ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଏକ୍ଟରେ ପ୍ରଥମଥର ପାଇଁ ବ୍ରିଟିଶ ପାର୍ଲାମେଣ୍ଟ ସଙ୍ଗେ ଦେଶୀୟ ରାଜ୍ୟ ଓ ବ୍ରିଟିଶ-ଶାସିତ ଭାରତର ସମ୍ପର୍କ ବିଷୟରେ କଥିତ ପ୍ରଭେଦ ସୂଚିତ କରାଗଲା । ଭାରତ ସରକାରଙ୍କ ପର୍ଯ୍ୟବେକ୍ଷଣ ଓ ନିର୍ଦ୍ଦେଶନ ଅଧିକାରରୁ ନେଇ ଦେଶୀୟ ରାଜ୍ୟଗୁଡ଼ିକୁ ଭାଇସରାୟ ବା ବଡ଼ଲାଟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରଖାଗଲା । ଏଥି ଉଦ୍ଦେଶ୍ୟରେ ବଡ଼ଲାଟ ହେଲେ ଇଂରେଜ ରାଜାଙ୍କ ପ୍ରତିନିଧି । ବଡ଼ଲାଟ ଭାରତ ସରକାରଙ୍କ ପ୍ରମୁଖ ହେଇ ମଧ୍ୟ ରହିଲେ । ଭାରତ ସରକାରଙ୍କ ରାଜନୈତିକ ବିଭାଗ ଯାହା ଏପର୍ଯ୍ୟନ୍ତ ଦେଶୀୟ ରାଜ୍ୟ ଦାୟିତ୍ୱରେ ଥିଲା ବଡ଼ଲାଟଙ୍କ ପ୍ରତ୍ୟକ୍ଷ କର୍ତ୍ତୃତ୍ୱାଧୀନ ହେଲା । ମନ୍ତ୍ରିପରିଷଦର କୌଣସି ନିୟନ୍ତ୍ରଣ ତାର ଉପରେ ଆଉ ଲାଗୁହେଲା ନାହିଁ ।

ଏହି ସବୁ ରାଜ୍ୟ ସୃଷ୍ଟି ହେଲା କପରି ? ଏଥିରୁ କେତେକ ସମ୍ପୂର୍ଣ୍ଣ ନୂତନ—ଇଂରେଜମାନଙ୍କ ସୃଷ୍ଟି; ଅନ୍ୟ ସବୁ ଥିଲା ମୋଗଲ ସମ୍ରାଟଙ୍କ ସୁବେଦାର ଏବଂ ତାର ଶାସକମାନଙ୍କୁ ସାମନ୍ତ ରାଜା ଭାବରେ ରହିବାପାଇଁ ଇଂରେଜମାନେ ଅନୁମତି ଦେଇଥିଲେ; ଆଉରି କେତେ, ବିଶେଷତଃ ମରାଠା ସର୍ଦ୍ଦାରମାନେ, ବ୍ରିଟିଶ ବାହିନୀକର୍ତ୍ତୃକ ପରାଜିତ ହେବା ପରେ ସେମାନଙ୍କୁ ସାମନ୍ତ ପଦ ଦିଆଗଲା । ଏ ସମସ୍ତଙ୍କର ଉଦ୍‌ଭବ ବ୍ରିଟିଶ ରାଜତ୍ୱର ଆଦିକାଳର ଘଟଣା । ତାର ପୂର୍ବରୁ ଏମାନଙ୍କର କୌଣସି ଇତିହାସ ନଥିଲା । ଏମାନଙ୍କ ଭିତରୁ କେହି କେହି ଯଦି କିଛି କାଳ ସ୍ୱାଧୀନ ରହିପାରିଥିଲେ, ସେହି ସ୍ୱାଧୀନତା ଥିଲା ଅତି ସ୍ୱଳ୍ପ କାଳସ୍ଥାୟୀ ଓ ତାହା ଯୁଦ୍ଧକ୍ଷେତ୍ରରେ ଅବା ଯୁଦ୍ଧର ଧମକରେ ଶେଷ ହୋଇଥିଲା; ମାତ୍ର କେତେଗୋଟି ରାଜ୍ୟ, କେବଳ ଯେଉଁଗୁଡ଼ିକ ମୁଖ୍ୟତଃ ରାଜପୁତାନାରେ ଅବସ୍ଥିତ, ଥିଲା ପ୍ରାକ୍ ମୋଗଲକାଳର । ତ୍ରିବାଙ୍କୋରର ଇତିହାସ ଏକ ହଜାର ବର୍ଷର । କେତେକ ରାଜପୁତ ବଂଶର ଇତିହାସ ପ୍ରାକ୍-ଐତିହାସିକ କାଳ ପର୍ଯ୍ୟନ୍ତ ବିସ୍ତୃତ । ଉଦୟପୁରର ମହାରାଣା ସୂର୍ଯ୍ୟବଂଶୀୟ ଏବଂ ତାଙ୍କର ବଂଶବୃକ୍ଷର ତୁଳନା ଜାପାନର ମିକାଡ଼ୋ (ସମ୍ରାଟ) ଙ୍କ ସଙ୍ଗେ କରାଯାଇପାରେ; କିନ୍ତୁ ଏହି ରାଜପୁତ୍ ସର୍ଦ୍ଦାରମାନେ ପ୍ରଥମେ ମୋଗଲ ସମ୍ରାଟଙ୍କ ସାମନ୍ତ ହେଲେ, ପରେ ମରାଠାଙ୍କ ଅଧୀନ ହେଲେ ଓ ପରିଶେଷରେ ଇଂରେଜ-ମାନଙ୍କ ସାମନ୍ତରେ ପରିଣତ ହେଲେ । ଏଡ଼ୱାର୍ଡ଼ ଥମ୍ପସନ୍ ଲେଖିଚନ୍ତି : "ଇଷ୍ଟ ଇଣ୍ଡିଆ

---

(୧) ଏହି ଛଅଟି ରାଜ୍ୟ ହେଲା : ହାଇଦ୍ରାବାଦ ୧୬୦୦୦୦୦୦ ରୁ ୧୩୦୦୦୦୦୦; ମହୀଶୂର—୭୫୦୦୦୦୦; ତ୍ରିବାଙ୍କୋର—୬୨୫୦୦୦୦; ବରୋଦା—୪୦୦୦୦୦୦; କାଶ୍ମୀର—୩୦୦୦୦୦୦, ଗୁଆଲିଅର—୩୦୦୦୦୦୦; ସବମୋଟ—୩୬୦୦୦୦୦୦ ସମସ୍ତ ଦେଶୀୟ ରାଜ୍ୟର ଜନସଂଖ୍ୟା ୯୦୦୦୦୦୦୦ ।

କମ୍ପାନୀର ପ୍ରତିନିଧିମାନେ "ବର୍ତ୍ତମାନ ଏହି ରାଜନ୍ୟବର୍ଗଙ୍କୁ ଘୋର ଅବ୍ୟବସ୍ଥା ଭିତରୁ ଉଠାଇ ଆଣି ସ୍ୱ ସ୍ୱ ସ୍ଥାନରେ ଅଧିଷ୍ଠିତ କରାଇଲେ । ଏପରିଭାବରେ ଉତ୍ତୋଳିତ, ପୁନଃ ପ୍ରତିଷ୍ଠିତ ହେବାବେଳେ ଏହି 'ରାଜନ୍ୟବର୍ଗ' ଏତେ ଅସହାୟ ଓ ପରିତ୍ୟକ୍ତ ଅବସ୍ଥାରେ ଥିଲେ ଯେ, ସେପରି ଅବସ୍ଥା ପୃଥିବୀର ଆରମ୍ଭରୁ କୌଣସି ଶାସକର କେବେ ଘଟିନଥିବ । ବ୍ରିଟିଶ୍ ସରକାର ହସ୍ତକ୍ଷେପ କରି ନଥିଲେ ରାଜପୁତ୍ ରାଜ୍ୟଗୁଡ଼ିକ ଲୁପ୍ତ ହୋଇଯାଇଥାନ୍ତା ଓ ମରାଠା ରାଜ୍ୟଗୁଡ଼ିକ ଚୂର୍ ମାର୍ ହେଇଯାଇଥାନ୍ତା । ଅଉଦ ଓ ନିଜାମ ରାଜ୍ୟ କଥା କହିଲେ, ଏମାନଙ୍କର କୌଣସି ଅସ୍ତିତ୍ୱ ହିଁ ନ ଥିଲା; ରକ୍ଷକ-ଶକ୍ତି ନାକବାଟେ ଫୁଙ୍କି ସେମାନଙ୍କ ଦେହରେ ଜୀବନ ସଞ୍ଚାର କରିଥିଲା ।" (୧)

ଆଜିର ବୃହତ୍ତମ ଦେଶୀୟ ରାଜ୍ୟ ହାଇଦ୍ରାବାଦ ଆରମ୍ଭରେ ପ୍ରଥମେ କ୍ଷୁଦ୍ର ଥିଲା । ଏହାର ଇତିହାସରେ ଏହାର ସୀମାନ୍ତ ଦୁଇ ଥର ପ୍ରସାରିତ ହୋଇଛି । ପ୍ରଥମେ ଇଂରେଜମାନଙ୍କଦ୍ୱାରା ଟିପୁ ସୁଲତାନ ପରାଜିତ ହେବାପରେ ଏବଂ ଦ୍ୱିତୀୟରେ ମରାଠା ଯୁଦ୍ଧ ପରେ । ଏହି ସବୁ ନୂତନ ଅଞ୍ଚଳ ଇଂରେଜମାନଙ୍କ ଇଚ୍ଛାକ୍ରମେ ମିଳି ଥିଲା ଓ ସେଥି ସଙ୍ଗେ ଏହି ସର୍ତ୍ତ ଦିଆଯାଇଥିଲା ଯେ ନିଜାମ ସେମାନଙ୍କ ଅଧୀନରେ ଓ ସେମାନଙ୍କ ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟକାରୀ ହେବେ । ପ୍ରକୃତପକ୍ଷେ, ଟିପୁଙ୍କ ପରାଜୟ ପରେ ତାଙ୍କ ରାଜ୍ୟର ଏକ ଅଂଶ ଦେବାକୁ ମରାଠାମାନଙ୍କ ନେତା ପେଶବାଙ୍କୁ ନିବେଦନ କରାଯାଇଥିଲା; କିନ୍ତୁ ଇଂରେଜମାନଙ୍କ ସର୍ତ୍ତ ଅନୁସାରେ ତାହା ଗ୍ରହଣ କରିବାପାଇଁ ସେ ପ୍ରସ୍ତୁତ ନଥିଲେ ।

ଦେଶୀୟ ରାଜ୍ୟମାନଙ୍କ ଭିତରେ ଦ୍ୱିତୀୟ ବୃହତ୍ତମ ରାଜ୍ୟ କାଶ୍ମୀରକୁ ଶିଖ ଯୁଦ୍ଧ ପରେ ଇଷ୍ଟ ଇଣ୍ଡିଆ କମ୍ପାନୀ ବର୍ତ୍ତମାନର ଶାସକଙ୍କ ପ୍ରପିତାମହଙ୍କୁ ବିକ୍ରି କରିଦେଇଥିଲେ । ପରେ ଭ୍ରଷ୍ଟାଚାରୀ ଶାସନର ଦୋହାଇ ଦେଇ ଇଂରେଜମାନେ କାଶ୍ମୀର ଉପରେ ପ୍ରତ୍ୟକ୍ଷ ନିୟନ୍ତ୍ରଣ ଜାରି କରିଥିଲେ । ପରେ ଅବଶ୍ୟ ମହାରାଜାଙ୍କ ସମସ୍ତ ଅଧିକାର ତାଙ୍କୁ ଫେରାଇ ଦିଆଯାଇଥିଲା । ଟିପୁ ସୁଲତାନ ସଙ୍ଗେ ଲଢ଼ାଇ ପରେ ବର୍ତ୍ତମାନର ମହୀଶୂର ରାଜ୍ୟ ଇଂରେଜମାନେ

(୧) 'ଦ ମେକିଂ ଅଫ୍ ଇଣ୍ଡିଆନ୍ ପ୍ରିନ୍‌ସେସ୍'—ଏଡୱାର୍ଡ୍ ଥମ୍ପସନ୍ । ଏହି ବହିରେ ଏବଂ 'ଲାଇଫ୍ ଅଫ୍ ଲର୍ଡ ମେଟ୍‌କାଫ୍' ନାମକ ଅନ୍ୟ ଏକ ଥମ୍ପସନ୍ ବହିରେ ହାଇଦ୍ରାବାଦ ଓ ତାର ଉପରେ ବ୍ରିଟିଶ୍ କର୍ତ୍ତୃତ୍ୱ ତଥା ଇଂରେଜୀ ଅସାଧୁତାର ବହୁ ଜୀବନ୍ତ ଚିତ୍ର ଦେଖିବାକୁ ମିଳେ । ଦିଲ୍ଲୀ ଓ ରଣଜିତ୍ ସିଂହଙ୍କ ପଞ୍ଜାବ ସମ୍ପର୍କରେ ବି ସେପରି । ଦେଶୀୟ ରାଜ୍ୟ ସମସ୍ୟା ସମ୍ପର୍କରେ ବିଚାର କରିବାପାଇଁ ବ୍ରିଟିଶ ସରକାରଙ୍କ ଦ୍ୱାରା ନିଯୁକ୍ତ ବାଟ୍‌ଲର୍ କମିଟି (ଖ୍ରୀ: ୧୯୨୮—୨୯) ତାଙ୍କର ରିପୋର୍ଟରେ କହିଛନ୍ତି : 'ବ୍ରିଟିଶ୍ ପ୍ରଭୁତ୍ୱ ସମ୍ପର୍କରେ ଆସିଲାବେଳକୁ ଦେଶୀୟ ରାଜ୍ୟଗୁଡ଼ିକର ସ୍ୱତନ୍ତ୍ରତା ଥିଲା ବୋଲି ଐତିହାସିକ ତଥ୍ୟ ଦେଇ ପ୍ରମାଣ କରାଯାଇ ନ ପାରେ । ପ୍ରକୃତ କଥା ହେଉଛି, କେତେକଙ୍କୁ ଇଂରେଜମାନେ ଅନ୍ୟ ଶକ୍ତି କବଳରୁ ଉଦ୍ଧାର କଲେ ଏବଂ ଆଉ ସମସ୍ତେ ବ୍ରିଟିଶ ସରକାରଙ୍କ ସୃଷ୍ଟି ।'

ସୃଷ୍ଟି କରିଥିଲେ । ଏହି ରାଜ୍ୟ ମଧ୍ୟ ଦୀର୍ଘକାଳ ପର୍ଯ୍ୟନ୍ତ ଇଂରେଜମାନଙ୍କ ପ୍ରତ୍ୟକ୍ଷ ଶାସନାଧୀନ ଥିଲା ।

ଭାରତରେ ପ୍ରକୃତରେ ଯଦି କୌଣସି ସ୍ୱାଧୀନ ରାଜ୍ୟ ଥାଏ, ତାହା ହେଉଛି ଭାରତର ଉତ୍ତର-ପୂର୍ବ ସୀମାନ୍ତରେ ଅବସ୍ଥିତ ନେପାଳ ଓ ଏହା ଏକପ୍ରକାର ଭାରତରୁ ବିଚ୍ଛିନ୍ନ ହେଲେ ସୁଦ୍ଧା ଏହାର ସ୍ଥିତି ଆଫଗାନିସ୍ତାନ ସଙ୍ଗେ ତୁଳନୀୟ । ଅନ୍ୟ ସବୁ ରାଜ୍ୟ ସେହି ପରିସରଭୁକ୍ତ ହୋଇପଡ଼ିଲେ; ଯାହାକୁ 'ସହାୟକ ସନ୍ଧି' ନାମରେ ଅଭିହିତ କରାଯାଇ-ଥାଏ । ଏହି ଅନୁସାରେ ପ୍ରକୃତ କ୍ଷମତା ବ୍ରିଟିଶ ସରକାର ହାତରେ ନିହିତ ରହିଲା ଓ ତାହା ସେ ବ୍ୟବହାର କରୁଥିଲେ ରେସିଡେଣ୍ଟ କିମ୍ବା ଏଜେଣ୍ଟ ଜରିଆରେ । ଅନେକ ସମୟରେ କଥିତ ରାଜାମାନଙ୍କ ମନ୍ତ୍ରୀ ବି ଥିଲେ ଭାରତ ସରକାରଙ୍କ ଇଂରେଜ କର୍ମଚାରୀ ଏବଂ ଭାରତ ସରକାରଙ୍କ ଦ୍ୱାରା ଏମାନଙ୍କ ଜବରଦସ୍ତ ନିଯୁକ୍ତିକୁ ଅନ୍ୟଥା କରିବାର ଅଧିକାର ଦେଶୀୟ ରାଜ୍ୟ ଶାସକର ନଥିଲା । କିନ୍ତୁ ସୁଶାସନ ଓ ପ୍ରୟୋଜନୀୟ ସଂସ୍କାର ବ୍ୟବସ୍ଥାର ସମ୍ପୂର୍ଣ୍ଣ ଦାୟିତ୍ୱ ଶାସକ ହସ୍ତରେ ନିହିତ ଥିଲା, ଯିଏ ସେହି ପରିସ୍ଥିତିରେ କେତେ ଦୃଢ଼ପରିକର ହେଲେ ସୁଦ୍ଧା କିଛି କରିପାରିନଥାନ୍ତା । ସାଧାରଣତଃ କିନ୍ତୁ ଦେଶୀୟ ରାଜ୍ୟଶାସକଠାରେ ନା ଥିଲା ସେହି ଦୃଢ଼ତା, ନା ଯୋଗ୍ୟତା । ଦେଶୀୟ ରାଜ୍ୟ ବ୍ୟବସ୍ଥା ସମ୍ପର୍କରେ ଖ୍ରୀ. ୧୮୪୬ ରେ ହେନ୍‌ରି ଲରେନ୍‌ସ୍ ଲେଖିଥିଲେ : "କୁଶାସନ ନିଶ୍ଚିତ କରିବାର ଯଦି କିଛି ଉପାୟ ଥାଏ ତାହା ହେଉଛି ଗଡ଼ଜାତ ରାଜା ଓ ତାର ମନ୍ତ୍ରୀର ଶାସନ । ଏ ଉଭୟେ ବିଦେଶୀ ବନ୍ଧୁଙ୍କ ଉପରେ ନିର୍ଭର କରିଥାନ୍ତି ଏବଂ ଜଣେ ବ୍ରିଟିଶ୍ ରେସିଡେଣ୍ଟ ଦ୍ୱାରା ପରିଚାଳିତ ହୋଇଥାନ୍ତି । ଏମାନେ ସମସ୍ତେ ଦକ୍ଷ, ସଦାଚାରୀ ଓ ବିଚାରବନ୍ତ ହୋଇଥିଲେ ମଧ୍ୟ ସହଜ ସରଳ ଭାବରେ ଏମାନଙ୍କ ରାଜ୍ୟରେ ଶାସନ ଚଳିପାରିନଥାନ୍ତା । ୟୁରୋପୀୟ ହେଉ କି ଭାରତୀୟ ହେଉ, ଯାହା ପାଖରେ ଜଣେ ନ୍ୟାୟପରାୟଣ ଶାସକର ସବୁ କିଛି ସଦ୍‌ଗୁଣ ଠୁଳ ହୋଇଥିବ, ସେପରି ଜଣେ ଲୋକକୁ ବାଛିବା ଯଦି କଷ୍ଟକର, ସେପରି ତିନି ଜଣଙ୍କୁ, ଯେଉଁମାନେ ଏକାଠି ମିଳିମିଶି କାର୍ଯ୍ୟ କରିବେ, ଖୋଜି ବାହାର କରିବା କି ସମ୍ଭବ ? ଏହି ତିନିଜଣ, ଅର୍ଥାତ୍ ଗଡ଼ଜାତ ରାଜା, ତାର ମନ୍ତ୍ରୀ ଓ ବ୍ରିଟିଶ୍ ରେସିଡେଣ୍ଟ, ପ୍ରତ୍ୟେକେ ଅନିଷ୍ଟ କରିବାରେ ଖୁବ୍ ପାରଙ୍ଗମ; କିନ୍ତୁ ଏମାନଙ୍କ ଭିତରୁ ଜଣେ କେବେହେଲେ ଭଲ କରିନପାରେ ଯଦି ଅନ୍ୟ ଆଡ଼ୁ ବାଧା ପଡ଼ିଯାଏ ।"

ଏଥିପୂର୍ବରୁ ମଧ୍ୟ ଖ୍ରୀ: ୧୮୧୭ରେ ସାର୍ ଥୋମାସ୍ ମୁନ୍ରୋ ଗଭର୍ଣ୍ଣର୍ ଜେନେରାଲଙ୍କ୍ ପାଖକୁ ଲେଖିଥିଲେ. "ସହାୟକ ସେନାବାହିନୀକୁ ନିୟୋଜିତ କରିବା ବିଷୟରେ ବହୁତ ଆପତ୍ତି ରହିଛି । ଯେଉଁ ରାଜ୍ୟରେ ଏହା ଅବସ୍ଥାପିତ ରହିବ, ସେହି ରାଜ୍ୟର ସରକାରକୁ ଦୁର୍ବଳ ଓ ଅତ୍ୟାଚାରୀ କରିବା, ସମାଜର ଉଚ୍ଚ ବର୍ଗର ଲୋକଙ୍କ ଭିତରୁ ମାନସମ୍ମାନବୋଧ ଲୋପ କରିବା ଏବଂ ଜନସାଧାରଣଙ୍କୁ ଦରିଦ୍ର ଓ ନୈତିକତା ଦିଗରୁ ଅଧଃପତିତ କରିବା ହେବ ଏହାର ସ୍ୱାଭାବିକ ମନୋବୃତ୍ତି । ଭାରତରେ ସାଧାରଣତଃ ରାଜପ୍ରାସାଦ ଭିତରେ

ସଙ୍ଗଠିତ ନୀରବ ବିପ୍ଳବ ଦ୍ୱାରା କିମ୍ବା ହିଂସାତ୍ମକ ବିଦ୍ରୋହ ଦ୍ୱାରା ଅଥବା ବିଦେଶୀ ଆଧିପତ୍ୟ ଦ୍ୱାରା କୁଶାସନର ଅବସାନ ଘଟାଯାଇଥାଏ, କିନ୍ତୁ ଗୋଟାଏ ବ୍ରିଟିଶ୍ ବାହିନୀ ଉପସ୍ଥିତି ରହି ଘର ଓ ବାହାର ଉଭୟ ଦିଗର ଶତ୍ରୁଙ୍କ ବିରୁଦ୍ଧରେ ଗଡ଼ଜାତ ରାଜାଙ୍କୁ ସାହାଯ୍ୟ କରିବା ଫଳରେ କୁଶାସନ ଦୂରହେବାର ସବୁ କିଛି ସୁଯୋଗର ବାଟ ବନ୍ଦ କରି ଦିଆଯାଇଚି । ତାର ନିରାପତ୍ତା ନିମନ୍ତେ ଅପରିଚିତ ବିଦେଶୀଙ୍କ ଉପରେ ଆସ୍ଥା ରଖିବାପାଇଁ ଶିକ୍ଷା ଦେଇ ଏହି ବ୍ରିଟିଶ୍ ବାହିନୀ ରାଜାଙ୍କୁ ଆଳସ୍ୟପରାୟଣ ଓ ନିର୍ବୀର୍ଯ୍ୟ କରେ; ତାର ପ୍ରଜାଙ୍କ ଘୃଣା ଓ ବିଦ୍ୱେଷରୁ ଯେ ତାର ଭୟ କରିବାର କିଛି ନାହିଁ, ପ୍ରଦର୍ଶିତ କରି ଏହି ସହାୟକ-ବାହିନୀ ରାଜାଙ୍କୁ ନିର୍ମମ ଓ ଅର୍ଥଲିପ୍ସୁ କରେ । ଏହି ସହାୟକ ବାହିନୀ ବ୍ୟବସ୍ଥା ଯେଉଁଠି ପ୍ରବର୍ତ୍ତିତ ହୋଇଛି, ସେଠାର ରାଜା ଯଦି ଜଣେ ସୁଦକ୍ଷ ବ୍ୟକ୍ତି ହୋଇ ନଥାଏ ତାହାହେଲେ ଏହି ବ୍ୟବସ୍ଥାର ସ୍ପଷ୍ଟ ସୂଚନା ଅବିଳମ୍ବେ ଦେଖାଯିବ ନଷ୍ଟଭ୍ରଷ୍ଟ ଗ୍ରାମାଞ୍ଚଳରେ ଓ ଅସହିଷ୍ଣୁ ଜନସଂଖ୍ୟାରେ ।···ଯଦିବା ରାଜା ଏହି ସହାୟକ ଫୌଜ ବ୍ୟବସ୍ଥାର ସନ୍ଧି ସର୍ତ୍ତକୁ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ଚାହେଁ, ତଥାପି ମଧ୍ୟ ତାର ପ୍ରଧାନ କର୍ମଚାରୀଙ୍କ ଭିତରେ ସବୁବେଳେ କେହି ନା କେହି ଜଣେ ଥିବ, ଯିଏ ଏହି ଚୁକ୍ତି ଭାଙ୍ଗିବା ପାଇଁ ରାଜାଙ୍କୁ ଉଦ୍‌ବୋଧିତ କରିବ । ଯେତେ କାଳ ପର୍ଯ୍ୟନ୍ତ କେଉଁଠି ନା କେଉଁଠି ଉଚ୍ଚମନୋଭାବାପନ୍ନ ସ୍ୱାଧୀନତାର ସୂଚନା ସୁଦ୍ଧା ଥିବ ଆଉ ଯା'ର ଉଦ୍ଦେଶ୍ୟ ହେଉଛି ବିଦେଶୀ ନିୟନ୍ତ୍ରଣ ଲୋପ କରିବା, ଏଭଳି ପାର୍ଷଦ ବରାବର ମିଳିଯିବେ । ଭାରତୀୟଙ୍କ ସମ୍ପର୍କରେ ମତ ଦେବାକୁ ଗଲେ ମୁଁ ଅବଶ୍ୟ କହିବ ଯେ ଏହି ସ୍ୱାଧୀନଚେତନା ସେମାନଙ୍କ ଭିତରୁ କେବେହେଲେ ସମ୍ପୂର୍ଣ୍ଣ ଭାବରେ ଲୋପ ପାଇଯିବନି; ସୁତରାଂ ମୋର କୌଣସି ସନ୍ଦେହ ନାହିଁ ଯେ ସହାୟକ ଫୌଜ ବ୍ୟବସ୍ଥା ସବନ୍ଧ ନିଜର ପୂରା ପ୍ରଭାବ ବିସ୍ତାର କରିବ ଓ ପ୍ରତ୍ୟେକ ରାଜ୍ୟକୁ, ଯାହାକୁ ରକ୍ଷା କରିବାର ଦାୟିତ୍ୱ ସେ ଗ୍ରହଣ କରିଚି, ବରବାଦ କରି ବସିବ ।"(୧)

ଏସବୁ ପ୍ରତିବାଦ ସତ୍ତ୍ୱେ ଦେଶୀୟ ରାଜ୍ୟ ବ୍ୟାପାରରେ ଏହି ନୀତି ଚାଲୁରହିଲା ଏବଂ ଏହାର ଅବଶ୍ୟମ୍ଭାବୀ ପରିଣାମ ହେଲା ଦୁର୍ନୀତି ଓ ପ୍ରଜାପୀଡ଼ନ । ଏହି ସବୁ ଦେଶୀୟ ରାଜ୍ୟର ଶାସନତନ୍ତ୍ର ଥିଲା ପ୍ରାୟଶଃ ଅଧମ ଧରଣର; କିନ୍ତୁ ସେହି ଶାସନର କୌଣସି ଶକ୍ତି ନଥିଲା । ଏହି ସବୁ ରାଜ୍ୟର ବ୍ରିଟିଶ୍ ରେସିଡେଣ୍ଟ୍ କିମ୍ବା ଏଜେଣ୍ଟ୍‌ମାନଙ୍କ ଭିତରୁ ମେଟ୍‌କାଫ୍‌ଙ୍କ ଭଳି ମୁଷ୍ଟିମେୟ କେତେ ଜଣ କେବଳ ବିବେକବାନ୍ ଓ ସାଧୁଚରିତ୍ର ଥିଲେ; କିନ୍ତୁ ଅନ୍ୟମାନଙ୍କ ଭିତରେ ଏହି ଦୁଇଟି ଗୁଣର ସୂଚନା ସୁଦ୍ଧା ନଥିଲା ଏବଂ ସେମାନେ କୌଣସି ଦାୟିତ୍ୱବୋଧ ନ ରଖି ନିର୍ବିଚାର ଭାବରେ ଏହି ବିଶେଷାଧିକାର ପ୍ରୟୋଗ କରିଥିଲେ । ସେହି ସବୁ ଇଂରେଜ ବେପରବାୟ ବ୍ୟକ୍ତି, ଯେଉଁମାନେ ସେମାନଙ୍କର ଜାତିଚେତନା ଓ ସରକାରୀ ପୃଷ୍ଠପୋଷକତା ଯୋଗୁଁ ନିଜକୁ ସର୍ବେସର୍ବା ମଣୁଥିଲେ; ରାଜକୋଷ ନାନା ଭାବରେ ଲୁଣ୍ଠନ କରିବା ଥିଲା ସେମାନଙ୍କର ପ୍ରଧାନ କାର୍ଯ୍ୟ । ଊନବିଂଶ ଶତକର ପ୍ରଥମାର୍ଦ୍ଧରେ, ଏହି ସବୁ

(୧) ଏଡ୍‌ୱାର୍ଡ୍ ଥମ୍ପସନ୍ 'ଦି ମେକିଂ ଅଫ୍ ଇଣ୍ଡିଆନ୍ ପ୍ରିନ୍‌ସେସ୍',ପୃ ୨୨-୨୩

ଦେଶୀୟ ରାଜ୍ୟରେ, ବିଶେଷତଃ ଆଉଦ୍ ଓ ହାଇଦେରାବାଦରେ ଯାହା ସବୁ ଘଟିଗଲା, କଳନା କରିବା କଠିନ । ଖ୍ରୀ: ୧୮୫୭ ବିଦ୍ରୋହର କିଛି କାଳ ପୂର୍ବରୁ ଆଉଦ୍‌କୁ ବ୍ରିଟିଶ୍-ଭାରତ ସଙ୍ଗେ ସାମିଲ୍ କରିନିଆଯାଇଥିଲା ।

ଅନ୍ୟର ରାଜ୍ୟ ଏପରି ଭାବରେ ଦଖଲ କରିଯିବା ସପକ୍ଷରେ ଥିଲା ସେ ସମୟର ବ୍ରିଟିଶ୍ ନୀତି ଏବଂ ସେଥି ନିମନ୍ତେ ବ୍ରିଟିଶ୍ ପ୍ରଭୁତ୍ୱ ସବୁ କିଛି ଆଳର ସୁଯୋଗ ନେଉଥିଲା; କିନ୍ତୁ ଖ୍ରୀ: ୧୮୫୭ର ମହାନ୍ ବିଦ୍ରୋହ ବ୍ରିଟିଶ୍ ସରକାରଙ୍କ ଆଗରେ ସହାୟକ ଫୌଜ ବ୍ୟବସ୍ଥାର ମହତ୍ତ୍ୱ ପ୍ରକଟିତ କଲା । କେତେକ ସାମାନ୍ୟ ବ୍ୟତିକ୍ରମ ବ୍ୟତୀତ ଦେଶୀୟ ରାଜନ୍ୟବର୍ଗ ବିଦ୍ରୋହରୁ ଦୂରରେ ରହିବେ ବୋଲି କେବଳ ନୁହେଁ, କେତେକ କ୍ଷେତ୍ରରେ ବିଦ୍ରୋହ ଦମନ ନିମନ୍ତେ ପ୍ରକୃତ ସାହାଯ୍ୟ ବି ଯୋଗାଇଲେ । ଏହାଫଳରେ ସେମାନଙ୍କ ପ୍ରତି ବ୍ରିଟିଶ୍ ନୀତିର ପରିବର୍ତ୍ତନ ଘଟିଲା ଏବଂ ସେମାନଙ୍କୁ କାଏମ ରଖିବା ଓ ଏପରି କି ସେମାନଙ୍କ ସ୍ଥିତି ଦୃଢ଼ କରିବାପାଇଁ ନିଷ୍ପତ୍ତି ଗ୍ରହଣ କରାଗଲା ।

ବ୍ରିଟିଶ 'ସାର୍ବଭୌମ' ସିଦ୍ଧାନ୍ତ ଘୋଷଣା କରାଗଲା ଏବଂ ଦେଶୀୟ ରାଜ୍ୟମାନଙ୍କ ଉପରେ ଭାରତ ସରକାରଙ୍କ ରାଜନୈତିକ ବିଭାଗର ଆଧିପତ୍ୟ କାର୍ଯ୍ୟତଃ ଅପରିବର୍ତ୍ତନୀୟ ଭାବରେ ଅବ୍ୟାହତ ରହିଆସିଛି । ଶାସକମାନଙ୍କୁ କେବେ ଗାଦିଚ୍ୟୁତ କରାଯାଇଛି, କେବେ ବା କ୍ଷମତାଚ୍ୟୁତ କରାଯାଇଛି; ବ୍ରିଟିଶ୍ କର୍ମଚାରୀଙ୍କ ଭିତରୁ ଲୋକ ନେଇ ମନ୍ତ୍ରୀ ଭାବରେ ସେମାନଙ୍କ ଉପରେ ଲଦିଦିଆଯାଇଛି । ବର୍ତ୍ତମାନ ଦେଶୀୟ ରାଜ୍ୟମାନଙ୍କରେ ଏପରି ବହୁ ମନ୍ତ୍ରୀ ନିଯୁକ୍ତ ଅଛନ୍ତି ଏବଂ ପ୍ରତ୍ୟେକ କଥାରେ ନାମମାତ୍ର ଶାସକ, ରାଜା ଅପେକ୍ଷା ବ୍ରିଟିଶ୍ ପ୍ରଭୁତ୍ୱକୁ କୈଫିୟତ ଦେବା ସେମାନେ ଉଚିତ ମନେକରନ୍ତି ।

ରାଜନ୍ୟବର୍ଗଙ୍କ ଭିତରେ କେତେ ଭଲ ଅଛନ୍ତି, କେତେ ମନ୍ଦ ବି ଅଛନ୍ତି; ଭଲମାନଙ୍କର କାର୍ଯ୍ୟରେ ମଧ୍ୟ ପ୍ରତ୍ୟେକ ପଦରେ ବାଧା ପ୍ରତିବନ୍ଧକ ପକାଇଦିଆଯାଏ । ଗୋଟାଏ ଶ୍ରେଣୀ ଭାବରେ ସେମାନେ ଅନଗ୍ରସର, ଦୃଷ୍ଟିଭଙ୍ଗିରେ ସାମନ୍ତବାଦୀ ଏବଂ ବ୍ରିଟିଶ୍ ସରକାର ବ୍ୟତୀତ ଅନ୍ୟ ସବୁ କିଛି ସମ୍ବନ୍ଧରେ ସେମାନେ ସ୍ୱେଚ୍ଛାଚାରିତାର ବିବିଧ ଉପାୟ ଅବଲମ୍ବନ କରିଥାନ୍ତି । ବ୍ରିଟିଶ ସରକାର ନିକଟରେ, ସେମାନଙ୍କ ପ୍ରତ୍ୟେକ କାର୍ଯ୍ୟରେ ରାଜୋଚିତ ଦୀନତା ପ୍ରକାଶ ପାଇଥାଏ । ସେଲ୍‌ଭିଙ୍କର ଯଥାର୍ଥ ଭାବରେ ଦେଶୀୟ ରାଜ୍ୟମାନଙ୍କୁ 'ଭାରତରେ ଇଂଲଣ୍ଡର ପଞ୍ଚମ ବାହିନୀ' ବୋଲି ଅଭିହିତ କରିଛନ୍ତି ।

## ଭାରତରେ ବ୍ରିଟିଶ୍ ଶାସନର ବିରୋଧାଭାସ
## ରାମମୋହନ ରାୟ : ସମ୍ବାଦପତ୍ର
## ସାର୍ ଉଇଲିୟମ୍ ଜୋନ୍‌ସ୍ : ବଙ୍ଗରେ ଇଂରେଜୀ ଶିକ୍ଷା

ଭାରତରେ ବ୍ରିଟିଶ୍ ଶାସନର କାର୍ଯ୍ୟକଳାପ ବିବେଚନା କରିବାକୁ ଗଲେ ପ୍ରଥମ ପଦରେ ଗୋଟାଏ ଅଦ୍ଭୁତ ବିରୋଧାଭାସ ଦୃଷ୍ଟିରେ ପଡ଼େ । ଇଂରେଜମାନେ ଭାରତରେ ଯେ

ଆଧିପତ୍ୟ କରିପାରିଲେ ଏବଂ ପୃଥିବୀରେ ସର୍ବୋତ୍ତମ ଶକ୍ତି ହୋଇଉଠିଲେ, ତା'ର କାରଣ ସେମାନେ ଥିଲେ ନୂତନ ଶିଳ୍ପଯନ୍ତ୍ର-ଶିଳ୍ପ-ସଭ୍ୟତାର ଅଗ୍ରଦୂତ । ସେମାନେ ଗୋଟାଏ ନୂତନ ଐତିହାସିକ ଶକ୍ତିର ପ୍ରତିନିଧିତ୍ୱ କରୁଥିଲେ, ଯାହା ବିଶ୍ୱର ରୂପାନ୍ତର ଘଟାଇବାର ଶକ୍ତି ଧରିଥିଲି ଏବଂ ଏପରି ଭାବରେ, ନିଜ ଅଜ୍ଞାତରେ, ସେମାନେ ଥିଲେ ପରିବର୍ତ୍ତନ ଓ ବିପ୍ଲବର ଅଗ୍ରଗାମୀ ପ୍ରତିନିଧି । ତଥାପି, ସେମାନଙ୍କର ଆସ୍ଥାନ ସୁଦୃଢ଼ କରିବାପାଇଁ ଏବଂ ସେମାନଙ୍କର ଲାଭଦୃଷ୍ଟିରୁ ଭାରତ ଓ ତାର ଜନସାଧାରଣଙ୍କୁ ଶୋଷଣ କରିବାପାଇଁ ଯେତିକି ପରିବର୍ତ୍ତନ ଆବଶ୍ୟକ, ସେତିକି ବ୍ୟତୀତ ସେମାନେ ଥିଲେ ଅନ୍ୟ ସବୁ ପ୍ରକାର ପରିବର୍ତ୍ତନର ଘୋର ବିରୋଧୀ ଏବଂ ପରିବର୍ତ୍ତନର ପଥରୋଧ କରିବାପାଇଁ ସବୁ ପ୍ରକାର ଉଦ୍ୟମ ବି କରୁଥିଲେ । ସେମାନଙ୍କର ଦୃଷ୍ଟିଭଙ୍ଗୀ ଓ ଲକ୍ଷ୍ୟ ଥିଲି ପ୍ରତିକ୍ରିୟାଶୀଳ । ଆଂଶିକ ଭାବରେ ଏହାର କାରଣ, ଯେଉଁ ସାମାଜିକ ବର୍ଗର ଲୋକେ ଏଠାକୁ ଆସିଥିଲେ ତାର ପୃଷ୍ଠଭୂମି; କିନ୍ତୁ ମୁଖ୍ୟତଃ, ପ୍ରଗତି ଦିଗରେ ସବୁ ପ୍ରକାର ପରିବର୍ତ୍ତନ ମୁହଁରେ ପ୍ରତିବନ୍ଧକ ସୃଷ୍ଟି କରିବା ଥିଲି ସେମାନଙ୍କର ସୁଚିନ୍ତିତ ଅଭିଳାଷ; କାରଣ ସେମାନେ ମନେକରୁଥିଲେ ଯେ ପରିବର୍ତ୍ତନ ଫଳରେ ଭାରତୀୟମାନେ ବଳ ଲାଭ କରି ପରିଶେଷରେ ଭାରତ ଉପରେ ଇଂରେଜ କବଳକୁ ଦୁର୍ବଳ କରିପାରିବେ । ସେମାନଙ୍କର ସମସ୍ତ ବିଷୟ ଓ ନୀତିରେ ଏହି ଜନିତଙ୍କ ବରାବର ରହିଥିଲି; କାରଣ ସେମାନେ ଭାରତୀୟଙ୍କ ଭିତରେ ମିଶିପାରୁନଥିଲେ ବୋଲି କେବଳ ନୁହେଁ, ସେ ପ୍ରକାର ଇଚ୍ଛା ବି ସେମାନଙ୍କର ନଥିଲି । ନିଜଠାରୁ ସମ୍ପୂର୍ଣ୍ଣ ଭିନ୍ନ ଓ ବିରୋଧଭାବାପନ୍ନ ଲୋକଙ୍କ ଦ୍ୱାରା ପରିବୃତ, ଗୋଟାଏ ସ୍ୱତନ୍ତ୍ର ବିଦେଶୀ ଶାସକବର୍ଗ ଭାବରେ ରହିବା ଥିଲି ସେମାନଙ୍କର ବିଧିନିର୍ବନ୍ଧ । ପ୍ରଗତି ଦିଗରେ କେତେକ ପରିବର୍ତ୍ତନ ଅବଶ୍ୟ ଘଟିଛି; କିନ୍ତୁ ସେ ସବୁ ଘଟିଲି ବ୍ରିଟିଶ୍ ନୀତି ସତ୍ତ୍ୱେ । ଅବଶ୍ୟ ଏକଥା ସତ୍ୟ ଯେ ସେଥିପାଇଁ ପ୍ରେରଣା ଆସିଥିଲି ନୂତନ ପାଶ୍ଚାତ୍ୟ ଜଗତରୁ, ଆଉ ତାହା ମଧ୍ୟ ଇଂରେଜମାନଙ୍କ ଜରିଆରେ ।

ବ୍ୟକ୍ତିଗତ ଭାବରେ ବହୁ ଇଂରେଜ-ଶିକ୍ଷାବିତ୍, ପ୍ରାଚ୍ୟବିଦ୍ୟାବିତ୍, ସାମ୍ବାଦିକ, ଧର୍ମଯାଜକ ଓ ଅନ୍ୟମାନେ ଭାରତକୁ ପାଶ୍ଚାତ୍ୟ ସଂସ୍କୃତି ପ୍ରବାହିତ କରିବାରେ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିଛନ୍ତି ଏବଂ ଏହି ଉଦ୍ୟମରେ ବାରମ୍ବାର ନିଜ ସରକାର ସଙ୍ଗେ ସେମାନଙ୍କର ସଙ୍ଘର୍ଷ ବି ଘଟିଛି । ସେହି ସରକାର ପ୍ରସାରଶୀଳ ଆଧୁନିକ ଶିକ୍ଷାର ପ୍ରଭାବ ପ୍ରତି ଭୟ କରି ସେହି ପଥରେ ବହୁ ପ୍ରତିବନ୍ଧକ ସୃଷ୍ଟି କଲି । ତଥାପି, କେତେକ ସୁଦକ୍ଷ ତଥା ସ୍ଥିରସଙ୍କଳ୍ପ ଇଂରେଜମାନଙ୍କ ପଥିକୃତ୍ ଉଦ୍ୟମ ଯୋଗୁଁ ଇଂଲଣ୍ଡର ବିଷୟଧାରା, ସାହିତ୍ୟ ଓ ରାଜନୈତିକ ପରମ୍ପରା ଭାରତରେ ପ୍ରବର୍ତ୍ତିତ ହେଲି । ଏହି କାର୍ଯ୍ୟ ନିମନ୍ତେ ଏମାନେ ଦଳଦଳ ଉତ୍ସାହୀ ଭାରତୀୟ ଛାତ୍ରମାନଙ୍କୁ ପ୍ରସ୍ତୁତ କରିଥିଲେ । (ଇଂରେଜ ବୋଲି ମୁଁ ଯେବେ ଉଲ୍ଲେଖ କରେ, ସେଥିରେ ମୁଁ ସମଗ୍ର ଗ୍ରେଟ୍-ବ୍ରିଟେନ୍ ଓ ଆୟର୍‌ଲେଣ୍ଡ୍‌ର ଲୋକଙ୍କୁ ମିଶାଇଥାଏ । ମୁଁ ଜାଣେ, ଏପରି କରିବା ଅସମୀଚୀନ ଓ ଭ୍ରମାତ୍ମକ; କିନ୍ତୁ ମୁଁ 'ବ୍ରିଟିଶ୍' ଶବ୍ଦଟିକୁ ଭଲ ପାଏନି । ତାହା କଲେ ମଧ୍ୟ ସେଥିରେ ହୁଏତ ଆଇରିସ୍ ଲୋକେ ମିଶିବା

ବୁଝାଇବନି । ଏଥିଲାଗି ଆଇରସ୍, ସ୍କଟ୍ ଓ ଓ୍ୱେଲ୍ସ୍ ଲୋକଙ୍କ ନିକଟରେ ମୁଁ କ୍ଷମାପ୍ରାର୍ଥୀ । ଭାରତରେ ଏମାନେ ସମସ୍ତେ ଏକ ପ୍ରକାର ଆଚରଣ କରନ୍ତି ଏବଂ ଭାରତୀୟମାନେ ଏମାନଙ୍କୁ ଏକ ଓ ଅଭିନ୍ନ ଗୋଷ୍ଠୀ ବୋଲି ମଣନ୍ତି ।) ଶିକ୍ଷା ପ୍ରସାର ପ୍ରତି ବିଦ୍ୱେଷ ଭାବ ସତ୍ତ୍ୱେ ଅବସ୍ଥାଚକ୍ରରେ ପଡ଼ି ବ୍ରିଟିଶ୍ ସରକାର ତାଙ୍କର ବର୍ଦ୍ଧିଷ୍ଣୁ ସରକାରୀ ସଂସ୍ଥା ନିମନ୍ତେ ଅମଲା ତିଆରି କରିବାର ବ୍ୟବସ୍ଥା ଗ୍ରହଣ କରିବାକୁ ବାଧ୍ୟ ହେଲେ । ଶ୍ରେଷ୍ଠ ଅମଲାବର୍ଗ ପାଇଁ ଏତେ ସଂଖ୍ୟାରେ ଲୋକ ଇଂଲଣ୍ଡରୁ ଆମଦାନୀ କରିବା ଭାରତ ସରକାର ପକ୍ଷରେ ସମ୍ଭବ ନଥିଲା । ଅତଏବ, ମନ୍ଥର ହେଲେ ବି ଶିକ୍ଷା ପ୍ରସାର ଲାଭ କଲା ଏବଂ ଯଦିଓ ସେହି ଶିକ୍ଷା ଥିଲା ସୀମିତ ଓ ବିପଥଗାମୀ, ତଥାପି ତାହା ନୂତନ ଭାବ ଓ ଗତିଶୀଳ ଚିନ୍ତାର ପ୍ରବେଶ ନିମନ୍ତେ ମନର ଦ୍ୱାର, ଝରକା ମୁକ୍ତ କଲା ।

ମୁଦ୍ରାଯନ୍ତ୍ର, ପ୍ରକୃତ ପକ୍ଷେ, ଅନ୍ୟ ସବୁ କିଛି ଯନ୍ତ୍ର ଭାରତୀୟ ମାନସ ପକ୍ଷରେ ବିପଜ୍ଜନକ ଓ ବିସ୍ଫୋରକ ବିବେଚିତ ହୋଇଥିଲା । ସେ ଦିଗରେ ଭାରତୀୟଙ୍କୁ ଉତ୍ସାହିତ ନକରିବା ଥିଲା ସରକାରଙ୍କ ନିର୍ଦ୍ଦିଷ୍ଟ ନୀତି; କାରଣ ତଦ୍ଦ୍ୱାରା ଭାରତରେ ଶିଳ୍ପିକ ବିକାଶ ଓ ରାଜଦ୍ରୋହର ପ୍ରସାର ଘଟିବ ବୋଲି ଶାସକବର୍ଗ ଆତଙ୍କିତ ଥିଲେ । ଗୋଟାଏ କାହାଣୀ ପ୍ରଚଳିତ ଅଛି ଯେ, ହାଇଦେରାବାଦର ନିଜାମ ଥରେ ଗୋଟାଏ କିଛି ୟୁରୋପୀୟ ଯନ୍ତ୍ର ଦେଖିବାର ଇଚ୍ଛା ପ୍ରକାଶ କଲେ । ତଦନ୍ତର ହାଇଦେରାବାଦର ବ୍ରିଟିଶ୍ ରେସିଡେଣ୍ଟ୍ ଗୋଟିଏ ମୁଦ୍ରାଯନ୍ତ୍ର ଓ ଗୋଟିଏ ବାଷ୍ପ ଭରିବାର ପମ୍ପ୍ ମଗାଇ ନିଜାମଙ୍କୁ ଦେଖାଇଲେ । ନିଜାମଙ୍କର କ୍ଷଣିକ କୌତୂହଳ ଶାନ୍ତ ହେଲା ପରେ ସେ ଦୁଇଟିକୁ ଅନ୍ୟାନ୍ୟ ଭେଟିବସ୍ତୁ ସଙ୍ଗେ ଗନ୍ତାଘରେ ରଖି ଦିଆଗଲା; କିନ୍ତୁ କଲିକତାର ସରକାର ଯେବେ ଏକଥା ଶୁଣିବାକୁ ପାଇଲେ, ରେସିଡେଣ୍ଟ୍‌ଙ୍କ ନିକଟରେ ବିରକ୍ତି ବ୍ୟକ୍ତ କଲେ ଏବଂ ଭାରତର ଏକ ଦେଶୀୟ ରାଜ୍ୟକୁ ମୁଦ୍ରାଯନ୍ତ୍ର ଆଣିଥିବାରୁ ତାଙ୍କୁ ବିଶେଷଭାବରେ ଭର୍ତ୍ସନା କରିଥିଲେ । ବିପନ୍ନ ରେସିଡେଣ୍ଟ୍, ସରକାର ଚାହିଁଲେ, ମୁଦ୍ରାଯନ୍ତ୍ରଟିକୁ ଗୋପନରେ ଭାଙ୍ଗିଦେବେ ବୋଲି ଆବେଦନ ଜଣାଇଥିଲେ ।

ବେସରକାରୀ ଭାବରେ ମୁଦ୍ରାଯନ୍ତ୍ରର ବ୍ୟବହାର ଉତ୍ସାହିତ କରାନଗଲେ ମଧ୍ୟ ମୁଦ୍ରଣ ବିନା ସରକାରୀ କର୍ମ ଚଳାଇବା ଏକରକମ ଅସମ୍ଭବ ହୋଇପଡ଼ିଲା । ଅତଏବ, ସରକାରୀ କର୍ମ ନିମନ୍ତେ କଲିକତା, ମାନ୍ଦ୍ରାଜ ଓ ଅନ୍ୟତ୍ର ମୁଦ୍ରାଯନ୍ତ୍ର ସ୍ଥାପନ କରାଗଲା । ପ୍ରଥମ ବେସରକାରୀ ମୁଦ୍ରାଯନ୍ତ୍ର ବେପ୍‌ଟିଷ୍ଟ୍ ମିଶନ୍ ପକ୍ଷରୁ ସେରାମ ପୁରରେ ସ୍ଥାପିତ ହେଲା ଏବଂ ଖ୍ରୀ: ୧୭୮୦ରେ ଜଣେ ଇଂରେଜ ପ୍ରଥମ ସମ୍ବାଦପତ୍ର କଲିକତାରୁ ପ୍ରକାଶ କଲେ ।

ଏ ପ୍ରକାର ବହୁ ପରିବର୍ତ୍ତନ କ୍ରମଶଃ ଦେଖାଦେଲା ଏବଂ ଭାରତୀୟମାନଙ୍କୁ ପ୍ରଭାବିତ କରି 'ଆଧୁନିକ' ଚେତନା ଉଦ୍ରେକ କଲା । ୟୁରୋପୀୟ ବିଶ୍ୱର ଭାବନାରେ ପ୍ରତ୍ୟକ୍ଷ ଭାବରେ ଗୋଟାଏ କ୍ଷୁଦ୍ର ଗୋଷ୍ଠୀ କେବଳ ପ୍ରଭାବିତ ହୋଇଥିଲେ; କାରଣ ନିଜକୁ ପାଶ୍ଚାତ୍ୟ ଜଗତ ଅପେକ୍ଷା ଉନ୍ନତ ବିବେଚନା କରି, ଭାରତ ତାର ନିଜସ୍ୱ ଦାର୍ଶନିକ ପୃଷ୍ଠଭୂମିକୁ ଜାବୁଡ଼ି ରହିଥିଲା । ପାଶ୍ଚାତ୍ୟର ପ୍ରକୃତ ପ୍ରଭାବ ଓ ଛାପ ପଡ଼ିଥିଲା ଜୀବନର ବାସ୍ତବ ପାର୍ଶ୍ୱରେ; କାରଣ ତାହା ସ୍ପଷ୍ଟତଃ ପ୍ରାଚ୍ୟର ଧାରା ଅପେକ୍ଷା ଥିଲା

ଉନ୍ନତ ଧରଣର । ରେଲଗାଡ଼ି, ମୁଦ୍ରାଯନ୍ତ୍ର ଓ ଅନ୍ୟାନ୍ୟ ଯନ୍ତ୍ରପାତି ଆଦି ନବନବ ପ୍ରୟୋଗ-କୌଶଳ, ଯୁଦ୍ଧକଳାର ନବନବ ବିକାଶ ଅବଜ୍ଞା କରିବାର ଉପାୟ ନଥିଲା । ଚିନ୍ତାର ପୁରାତନ ପଦ୍ଧତି ବିରୁଦ୍ଧରେ ଏ ସବୁ ଅକସ୍ମାତ ଆସି ଉପନୀତ ହେଲା ନାନା ପରୋକ୍ଷ ଉପାୟରେ । ଭାରତୀୟ ମାନସରେ ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ଏଥିର ସ୍ପଷ୍ଟତମ ତଥା ଦୂରପ୍ରସାରୀ ପରିବର୍ତ୍ତନ ହେଉଛି ପୂର୍ବର ପ୍ରଚଳିତ କୃଷି-ବ୍ୟବସ୍ଥାକୁ ଭାଙ୍ଗି ତାର ସ୍ଥାନରେ ବ୍ୟକ୍ତିଗତ ସମ୍ପତ୍ତି ଓ ଭୂସ୍ୱାମିତ୍ୱ ବିଶ୍ୱରଧାରାର ପ୍ରବର୍ତ୍ତନ । ଅର୍ଥ-ବ୍ୟବସ୍ଥାରେ ଟଙ୍କାର ଲାଳସା ପ୍ରବେଶ କଲା ଏବଂ ଜମି କ୍ରୟ-ବିକ୍ରୟଯୋଗ୍ୟ ବସ୍ତୁରେ ପରିଣତ ହେଲା । ପୂର୍ବେ ଯାହା ପ୍ରଥା-ପରମ୍ପରାର କଠୋର ଶୃଙ୍ଖଳାରେ ଆବଦ୍ଧ ଥିଲା, ତାର ଅବସାନ ଘଟାଇଲା ଟଙ୍କା ।

ଭାରତର ଅନ୍ୟ କୌଣସି ଅଞ୍ଚଳ ଅପେକ୍ଷା ବଙ୍ଗ ବହୁ ପୂର୍ବରୁ କୃଷି, ବୈଷୟିକ ବିଦ୍ୟା, ଶିକ୍ଷା ଓ ଚିନ୍ତା ଜଗତର ଏସବୁ ପରିବର୍ତ୍ତନର ଅଭିଜ୍ଞତା ଲାଭ କରିପାରିଲା; କାରଣ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ବିସ୍ତୃତ ହେବା ପୂର୍ବରୁ ବଙ୍ଗରେ ପଚାଶ ବର୍ଷ ଧରି ବ୍ରିଟିଶ୍ ଶାସନ ଚାଲିଥିଲା । ଅତଏବ, ଅଷ୍ଟାଦଶ ଶତକର ଦ୍ୱିତୀୟାର୍ଦ୍ଧ ଓ ଊନବିଂଶ ଶତକର ପ୍ରଥମାର୍ଦ୍ଧରେ ବଙ୍ଗ ବ୍ରିଟିଶ୍ ଶାସିତ ଭାରତୀୟ ଜୀବନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣକଲା । ବଙ୍ଗ ବ୍ରିଟିଶ୍ ଶାସନତନ୍ତ୍ରର କେନ୍ଦ୍ର ଓ ହୃତ୍‌ପିଣ୍ଡ ସ୍ୱରୂପ ଥିଲା କେବଳ ନୁହେଁ, ସେଠାରୁ ପ୍ରଥମ କରି ଦଳଦଳ ଇଂରେଜୀ ଶିକ୍ଷିତ ଭାରତୀୟ ବାହାରି ବ୍ରିଟିଶ୍ ଶକ୍ତିର ଛତ୍ରଚ୍ଛାୟା ତଳେ ଭାରତର ଅନ୍ୟାନ୍ୟ ଅଞ୍ଚଳକୁ ଭେଦିଯାଇଥିଲେ । ଊନବିଂଶ ଶତକରେ ସେପରି ବହୁ ବିଚକ୍ଷଣ ବ୍ୟକ୍ତିଙ୍କ ଅଭ୍ୟୁଦୟ ବଙ୍ଗରେ ଘଟିଲା, ଯେଉଁମାନେ ସାଂସ୍କୃତିକ ଓ ରାଜନୈତିକ ବ୍ୟାପାରରେ ଅବଶିଷ୍ଟ ଭାରତକୁ ନେତୃତ୍ୱ ଦେଲେ ଏବଂ ଯେଉଁମାନଙ୍କ ଉଦ୍ୟମ ଫଳରେ ନୂତନ ଜାତୀୟବାଦୀ ଆନ୍ଦୋଳନ ପରିଶେଷରେ ରୂପ ପରିଗ୍ରହ କଲା । ବହୁ ଦିନାବଧି ବ୍ରିଟିଶ୍ ଶାସନ ସଙ୍ଗେ ବଙ୍ଗ ଯେ ଜଡ଼ିତ ଥିଲା କେବଳ ନୁହେଁ, ପ୍ରଥମାବସ୍ଥାରେ ସେହି ଶାସନ ଯେବେ ଅଧିକତର କର୍କଶ, ଉଚ୍ଛୃସିତ, ନିର୍ଦ୍ଦିଷ୍ଟ ଆକାରହୀନ ଓ କଠୋର ଶୃଙ୍ଖଳାରେ ଆବଦ୍ଧ ନଥିଲା—ତାର ଅଭିଜ୍ଞତା ମଧ୍ୟ ଲାଭ କରିଥିଲା । ଉତ୍ତର ଓ ମଧ୍ୟ-ଭାରତ ଆତ୍ମସମର୍ପଣ କରିବା ବହୁ ପୂର୍ବରୁ ବଙ୍ଗ ବ୍ରିଟିଶ-ଶାସନକୁ ଗ୍ରହଣ କରିସାରିଥିଲା ଓ ସେଥି ସଙ୍ଗେ ନିଜକୁ ଖାପଖୁଆଇ ଚଳିବା ବି ଶିକ୍ଷା କରିଥିଲା । ସଂଯୋଗବଶତଃ, କଲିକତା ନିକଟବର୍ତ୍ତୀ ଦମ୍‌ଦମ୍‌ରେ ଖ୍ରୀ: ୧୮୫୭ରେ ମହାନ୍ ବିପ୍ଳବର ପ୍ରଥମ ସ୍ଫୁଲିଙ୍ଗ ଦେଖାଦେଇଥିଲା ଯଦିଓ ତା'ର ପ୍ରଭାବ କିନ୍ତୁ ବଙ୍ଗ ଉପରେ ପ୍ରାୟ ପଡ଼ିନଥିଲା କହିଲେ ଚଳେ ।

ବ୍ରିଟିଶ୍ ରାଜତ୍ୱ ପୂର୍ବରୁ ବଙ୍ଗ ଥିଲା ମୋଗଲ ସାମ୍ରାଜ୍ୟର ଏକ ଦୂରବର୍ତ୍ତୀ ପ୍ରଦେଶ ଏବଂ କେତେ ଗୁରୁତ୍ୱପୂର୍ଣ୍ଣ ହେଲେ ବି ତାହା କେନ୍ଦ୍ରରୁ ବିଚ୍ଛିନ୍ନ ଥିଲା କହିଲେ ଚଳେ । ମଧ୍ୟ-ଯୁଗର ପ୍ରଥମାବସ୍ଥାରେ ନାନା ପ୍ରକାର ବିକୃତ ପୂଜାବିଧି ତଥା ତାନ୍ତ୍ରିକ ଦର୍ଶନ ଓ ଅଭ୍ୟାସ ପଦ୍ଧତି ବଙ୍ଗର ହିନ୍ଦୁ ସମ୍ପ୍ରଦାୟ ଭିତରେ ପ୍ରଚଳିତ ଥିଲା । ଏହାପରେ ଏକାଧିକ ସଂସ୍କାର ଆନ୍ଦୋଳନ ଗଢ଼ିଉଠି ହିନ୍ଦୁ ସାମାଜିକ ପ୍ରଥା ଓ ବିଧିବିଧାନରେ ପରିବର୍ତ୍ତନ ଆଣିଲା । ଏପରିକି ବଙ୍ଗ ବାହାରେ ମଧ୍ୟ କେଉଁ ଦୂର ଅତୀତରୁ ସ୍ୱୀକୃତ ଉତ୍ତରାଧିକାର ନିୟମ କେତେକାଂଶରେ

ପରିବର୍ତ୍ତିତ ହେଲା । ମହାନ୍ ବିଦ୍ୱାନ୍, ଭାବମୂର୍ତ୍ତି ଶ୍ରୀଚୈତନ୍ୟ ପ୍ରେମ ଉପରେ ପ୍ରତିଷ୍ଠିତ ଏକ ନୂତନ ଧରଣର ବୈଷ୍ଣବଧର୍ମ ପ୍ରବର୍ତ୍ତିତ କରି ବଙ୍ଗବାସୀଙ୍କୁ ପ୍ରଭୂତ ପରିମାଣରେ ପ୍ରଭାବିତ କଲେ । ବଙ୍ଗାଳୀଙ୍କ ଭିତରେ ଉଚ୍ଚ ବୌଦ୍ଧିକ ପ୍ରତିଭା ଓ ତଦ୍ରୂପ ଭାବୁକତାର ଏକ ବିଚିତ୍ର ସମ୍ମିଶ୍ରଣ ବିକାଶ ଲାଭକଲା । ପ୍ରେମ ଓ ମାନବସେବାର ଏହି ପରମ୍ପରା ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ବଙ୍ଗରେ ଅନ୍ୟ ଏକ ମହାପୁରୁଷଙ୍କ ଜୀବନରେ ଉଦ୍‌ଭାସିତ ହୋଇଉଠିଲା । ସେ ହେଉଛନ୍ତି ଶ୍ରୀ ରାମକୃଷ୍ଣ ପରମହଂସ । ତାଙ୍କର ନାମରେ ଯେଉଁ ରାମକୃଷ୍ଣ ମିଶନ୍ ସ୍ଥାପିତ ହେଲା, ମାନବସେବା ଓ ଅନ୍ୟାନ୍ୟ ସାମାଜିକ କର୍ମରେ ତାର କାର୍ଯ୍ୟକଲାପ ଅତୁଳନୀୟ । ପ୍ରାଚୀନ ଫ୍ରାନ୍‌ସିସ୍କନ୍‌ମାନଙ୍କ ଅବିଚଳ ପ୍ରେମପୂର୍ଣ୍ଣ ସେବାର ଆଦର୍ଶରେ ଅନୁପ୍ରାଣିତ, ନୀରବ ଓ ନିରାଡ଼ମ୍ବର, ସୁଦକ୍ଷ ଓ ଅନେକାଂଶରେ 'କ୍ୱେକର'ମାନଙ୍କ ସଦୃଶ, ରାମକୃଷ୍ଣ ମିଶନ୍‌ର ସଦସ୍ୟମାନେ ସେମାନଙ୍କର ଚିକିତ୍ସାଳୟ ଓ ଶିକ୍ଷାନୁଷ୍ଠାନଗୁଡ଼ିକୁ ଚଳାଇ ନେଇଥାନ୍ତି ଏବଂ ଯେବେ କୌଣସି ଦୁର୍ଦ୍ଦୈବ ଘଟେ, ଭାରତରେ କେବଳ ନୁହେଁ ବାହାରେ ମଧ୍ୟ ସେବା ଓ ସାନ୍ତ୍ୱନା ଦେଇ ଦୁଃସ୍ଥ ଜନତାର ପୀଡ଼ା ଦୂର କରିବା ଦିଗରେ ନିଜକୁ ନିୟୋଜିତ କରନ୍ତି ।

ଶ୍ରୀ ରାମକୃଷ୍ଣ ଥିଲେ ପ୍ରାଚୀନ ଭାରତୀୟ ପରମ୍ପରାର ପ୍ରତିନିଧି । ତାଙ୍କ ପୂର୍ବରୁ, ଅଷ୍ଟାଦଶ ଶତକରେ, ବଙ୍ଗରେ ଅନ୍ୟ ଜଣେ ମହାନ୍ ବ୍ୟକ୍ତିଙ୍କ ପ୍ରକାଶ ଘଟିଥିଲା । ସେ ହେଉଛନ୍ତି ରାଜା ରାମମୋହନ ରାୟ । ରାମମୋହନଙ୍କ ଭିତରେ ପୁରାତନ ଓ ନୂତନ ବିଦ୍ୟାବତ୍ତାର ଏକ ଅଭିନବ ସମ୍ମିଶ୍ରଣ ଘଟିଥିଲା । ଭାରତୀୟ ଭାବୁକତା ଓ ଦର୍ଶନରେ ପ୍ରବୀଣ, ସଂସ୍କୃତ, ପାରସିକ ଓ ଆରବ୍ୟ ଭାଷାରେ ପଣ୍ଡିତ, ସେ ଥିଲେ ହିନ୍ଦୁ-ମୁସଲିମ୍ ମିଳିତ ସଂସ୍କୃତିର ସୃଷ୍ଟି, ଯେଉଁ ସଂସ୍କୃତି ଭାରତରେ ସେ ସମୟର ସଭ୍ୟଭବ୍ୟ ଶ୍ରେଣୀମାନଙ୍କରେ ଥିଲା ପ୍ରଚଳିତ । ଭାରତକୁ ଇଂରେଜମାନଙ୍କର ଆଗମନ ଓ ନାନା ଦିଗରେ ସେମାନଙ୍କର ଶ୍ରେଷ୍ଠତ୍ୱ ଲକ୍ଷ୍ୟ କରି ସେମାନଙ୍କର ସଂସ୍କୃତିର ମୂଳ ଅନ୍ୱେଷଣ କରିବା ଉଦ୍ଦେଶ୍ୟରେ ରାମମୋହନଙ୍କ ଜିଜ୍ଞାସୁ ତଥା ଅଦ୍‌ଭୁତ କର୍ମପ୍ରବଣ ମନ ଧାବିତ ହେଲା । ସେ ଇଂରେଜୀ ଶିକ୍ଷା କଲେ; କିନ୍ତୁ ସେତିକରେ କେବଳ ସନ୍ତୁଷ୍ଟ ନହୋଇ ପାଶ୍ଚାତ୍ୟ ଜଗତର ଧର୍ମ ଓ ସଂସ୍କୃତିର ମୂଳ ଉତ୍ସ ଖୋଜି ବାହାର-କରିବା ଉଦ୍ଦେଶ୍ୟରେ ଗ୍ରୀକ୍, ଲାଟିନ୍ ଓ ହିବ୍ରୁ ଭାଷା ମଧ୍ୟ ଶିକ୍ଷା କଲେ । ବିଜ୍ଞାନ ଓ ପାଶ୍ଚାତ୍ୟ ସଭ୍ୟତାର କାରୁକୌଶଳ ବିଭବ ପ୍ରତି ମଧ୍ୟ ସେ ଆକୃଷ୍ଟ ହୋଇଥିଲେ; ଯଦିଓ ତାଙ୍କ ସମୟରେ ଏହି ସବୁ ଯାନ୍ତ୍ରିକ ପରିବର୍ତ୍ତନ ପରବର୍ତ୍ତୀ କାଳ ଭଳି ସେତେ ସ୍ପଷ୍ଟ ହୋଇ ଉଠି-ନଥିଲା । ସାରତଃ, ଜଣେ ଦାର୍ଶନିକ ଓ ପଣ୍ଡିତ, ରାମମୋହନ ରାୟ ପ୍ରାଚୀନ ସାହିତ୍ୟ-ମାନଙ୍କରେ ମନୋନିବେଶ କରିଥିଲେ । ପ୍ରାଚ୍ୟ-ବିଦ୍ୟାବିତ୍ ମୋନିଏର୍ ଉଇଲିଏମ୍‌ସ୍ ରାମମୋହନ ରାୟଙ୍କ ବର୍ଣ୍ଣନା ପ୍ରସଙ୍ଗରେ କହିଚନ୍ତି "ସେ ହେଉଚନ୍ତି ସମ୍ଭବତଃ ବିଶ୍ୱର ସର୍ବପ୍ରଥମ ତୁଳନାତ୍ମକ ଧର୍ମ-ବିଜ୍ଞାନର ସ୍ଥିରଚିତ୍ତ ଗବେଷକ ।" ତଥାପି ଶିକ୍ଷା ପ୍ରଣାଳୀକୁ ମଧ୍ୟ-ଯୁଗୀୟ ପଦ୍ଧତିର କବଳରୁ ମୁକ୍ତ କରି ଆଧୁନିକ ଢଙ୍ଗରେ ଚଳାଇବା ପାଇଁ ସେ ଉତ୍କଣ୍ଠିତ ଥିଲେ । ବିଜ୍ଞାନର ସେହି ଅରୁଣ ପ୍ରଭାତରେ ମଧ୍ୟ ସେ ଥିଲେ ବୈଜ୍ଞାନିକ ପ୍ରଣାଳୀର ପକ୍ଷପାତୀ ଏବଂ ଗଣିତ, ଭୌତିକ-ବିଜ୍ଞାନ, ରସାୟନଶାସ୍ତ୍ର, ଜୀବ-ବିଜ୍ଞାନ ତଥା

ଅନ୍ୟାନ୍ୟ ଉପଯୋଗୀ ବିଜ୍ଞାନଗୁଡ଼ିକ" ଶିକ୍ଷା ଦେବାର ଆବଶ୍ୟକତା ଉପରେ ଜୋର୍ ଦେଇ ସେ ଗଭର୍ଣ୍ଣର ଜେନେରାଲ୍‌ଙ୍କ ନିକଟକୁ ପତ୍ର ଲେଖିଥିଲେ ।

ରାଜା ରାମମୋହନ ଜଣେ ବିଦ୍ୱାନ୍ ଓ ଅନ୍ୱେଷକ କେବଳ ନ ଥିଲେ; ସର୍ବୋପରି ସେ ଥିଲେ ଜଣେ ସଂସ୍କାରକ । ଜୀବନର ପ୍ରଥମାବସ୍ଥାରେ ଇସ୍‌ଲାମ ଦ୍ୱାରା ଓ ପରବର୍ତ୍ତୀ କାଳରେ କେତେ ପର୍ଯ୍ୟନ୍ତ ଖ୍ରୀଷ୍ଟଧର୍ମ ଦ୍ୱାରା ପ୍ରଭାବିତ ହୋଇଥିଲେ ସୁଦ୍ଧା ସେ ନିଜ ଧର୍ମରେ ହିଁ ଦୃଢ଼ ରହିଥିଲେ ଏବଂ ତାର ସଂସ୍କାର ଉଦ୍ୟମ କରିଥିଲେ । ହିନ୍ଦୁଧର୍ମ ସଙ୍ଗେ ଜଡ଼ିତ ନାନାବିଧ କୁସଂସ୍କାର ଓ ବିକୃତ ଅଭ୍ୟାସ ଦୂର କରିବା ଥିଲା ତାଙ୍କ ଉଦ୍ଦେଶ୍ୟ । ତାଙ୍କର ଆନ୍ଦୋଳନ ଫଳରେ ବ୍ରିଟିଶ ସରକାର ସତୀଦାହ ପ୍ରଥାର ଉଚ୍ଛେଦ ଘଟାଇଥିଲେ । ସତୀଦାହ ଅର୍ଥାତ୍ ମୃତସ୍ୱାମୀ ସଙ୍ଗେ ସ୍ତ୍ରୀର ଚିତାଦହନ ବା ସହଗମନ ଭାରତରେ କେବେହେଲେ ବ୍ୟାପକ ଭାବରେ ପ୍ରଚଳିତ ନଥିଲା । ଉପର ବର୍ଗମାନଙ୍କରେ କେବଳ ଏହା କେବେ କେଉଁଠି ଘଟିଥାଏ । ଏହି ପ୍ରଥା ଭାରତକୁ ଖୁବ୍ ସମ୍ଭବ ତାତାରମାନେ ଆଣିଥିଲେ । ପ୍ରଭୁର ମୃତ୍ୟୁରେ ଭୃତ୍ୟ ଓ ଅନୁଗୃହୀତ ବ୍ୟକ୍ତିମାନେ ନିଜର ଜୀବନ ଦେବାର ପ୍ରଥା ସେମାନଙ୍କ ଭିତରେ ପ୍ରଚଳିତ ଥିଲା । ସଂସ୍କୃତ ସାହିତ୍ୟର ଆଦି ପର୍ବରେ ସତୀଦାହ ପ୍ରଥାର ନିନ୍ଦା କରାଯାଇଛି । ଏହା ବନ୍ଦ କରିବାପାଇଁ ଆକ୍‌ବର ବିଶେଷଭାବରେ ଉଦ୍ୟମ କରିଥିଲେ ଏବଂ ମରାଠାମାନେ ମଧ୍ୟ ଏହାର ବିରୋଧୀ ଥିଲେ ।

ରାଜା ରାମମୋହନ ରାୟ ଥିଲେ ଭାରତୀୟ ସମ୍ବାଦପତ୍ରର ଅନ୍ୟତମ ପ୍ରତିଷ୍ଠାତା । ଖ୍ରୀ: ୧୭୮୦ରୁ ଭାରତରେ ଇଂରେଜମାନେ ଏକାଧିକ ସମ୍ବାଦପତ୍ର ପ୍ରକାଶ କରିଥିଲେ । ଏସବୁ ସମ୍ବାଦପତ୍ରରେ ସରକାରଙ୍କ କାର୍ଯ୍ୟକଳାପର ସମାଲୋଚନା ପ୍ରକାଶ ପାଇବା ଫଳରେ ଉଭୟ ପକ୍ଷ ମଧ୍ୟରେ ସଂଘାତ ଘଟିଲା ଓ ସରକାରଙ୍କ ପକ୍ଷରୁ କଠୋର ପ୍ରାକ୍‌ପ୍ରକାଶନ ସମୀକ୍ଷା ବା ସେନ୍‌ସର୍ ଜାରି କରାଗଲା । ସମ୍ବାଦପତ୍ରର ସ୍ୱାଧୀନତା ନିମନ୍ତେ ପ୍ରଥମାବସ୍ଥାରେ ଯେଉଁମାନେ ସ୍ୱର ଉତ୍ତୋଳନ କରିଥିଲେ, ସେମାନେ ସମସ୍ତେ ଥିଲେ ଇଂରେଜ ଏବଂ ସେମାନଙ୍କ ଭିତରୁ ଜଣେ,ଯାହାଙ୍କୁ ଆଜି ବି ସ୍ମରଣ କରାଯାଏ, ଜେମ୍‌ସ ସିଲ୍‌କ୍ ବାକିଂହାମ୍‌ଙ୍କୁ ଭାରତ ଛାଡ଼ି ଯିବା ପାଇଁ ବାଧ୍ୟ କରାଯାଇଥିଲା । ଖ୍ରୀ: ୧୮୧୮ ରେ ପ୍ରଥମ କରି ଭାରତୀୟ ସ୍ୱତ୍ୱ ଉପରେ ପ୍ରତିଷ୍ଠିତ, ଭାରତୀୟଙ୍କଦ୍ୱାରା ସମ୍ପାଦିତ, ସମ୍ବାଦପତ୍ର ଇଂରେଜୀ ଭାଷାରେ ପ୍ରକାଶିତ ହେଲା । ସେହି ବର୍ଷରେ ହିଁ ସେରାମପୁର ବାପ୍‌ଟିଷ୍ଟ ଧର୍ମଯାଜକମାନେ ବଙ୍ଗ ଭାଷାରେ ଏକ ମାସିକ ଓ ସାପ୍ତାହିକପତ୍ର ପ୍ରକାଶ କଲେ । ଭାରତୀୟ ଭାଷାରେ ଏ ଦୁଇଟି ପତ୍ରିକା ହେଉଛି ସର୍ବପ୍ରଥମେ ପ୍ରକାଶିତ ସାମୟିକ ପତ୍ର । ଏହା ପରେ ପରେ କଲିକତା, ମାନ୍ଦ୍ରାଜ ଓ ବମ୍ବେରୁ ଦୈନିକ ସମ୍ବାଦପତ୍ର ଓ ସାମୟିକ ପତ୍ରିକାମାନ ଇଂରେଜୀ ଓ ଭାରତୀୟ ଭାଷାମାନଙ୍କରେ ପ୍ରକାଶ ପାଇଲା ।

ଇତିମଧ୍ୟରେ ସମ୍ବାଦପତ୍ରର ସ୍ୱାଧୀନତା ନିମନ୍ତେ ସଂଗ୍ରାମ ଆରମ୍ଭ ହୋଇ ସାରିଥିଲା ଏବଂ ଆଜି ପର୍ଯ୍ୟନ୍ତ ବହୁ ଉତ୍ଥାନ ପତନ ଭିତରଦେଇ ସେ ସଂଗ୍ରାମ ଅବ୍ୟାହତ ରହିଛି । ଖ୍ରୀ: ୧୮୧୮ ରେ ହିଁ ବିଖ୍ୟାତ ୩ ନମ୍ବର ରେଗୁଲେସନ୍ ଜନ୍ମଲାଭ କଲା । ବିନା ବିଚାରରେ

ଅଟକବନ୍ଧ କରି ରଖିବା ଥିଲା ଏହି ରେଗୁଲେସନ୍‌ର ଉଦ୍ଦେଶ୍ୟ । ଆଜି ସୁଦ୍ଧା ଏହା ବଳବତ୍ତର ଅଛି ଏବଂ ଶହେ ଛବିଶ ବର୍ଷ ତଳର ଏହି ବିଧାନ ଫଳରେ ଆଜି ବି ବହୁ ଲୋକ କାରାଗାରରେ ସଢ଼ୁଚନ୍ତି ।

ରାମମୋହନ ରାୟ ବହୁ ସମ୍ବାଦପତ୍ର ସଙ୍ଗେ ସମ୍ପୃକ୍ତ ଥିଲେ । ବଙ୍ଗଳା ଓ ଇଂରେଜୀର ଏକ ଦ୍ୱିଭାଷୀ ପତ୍ରିକା ସେ ପ୍ରକାଶ କଲେ ଏବଂ ପରେ ସମଗ୍ର ଭାରତରେ ପ୍ରସାରିତ କରିବା ଉଦ୍ଦେଶ୍ୟରେ ପାରସିକ ଭାଷାରେ ଏକ ସାପ୍ତାହିକ ପ୍ରକାଶ କରିଥିଲେ । ସେ ସମୟର ଭାରତରେ ପାରସିକ ଭାଷା ସଂସ୍କୃତିସମ୍ପନ୍ନ ଶ୍ରେଣୀମାନଙ୍କର ଭାଷା ଭାବରେ ସ୍ୱୀକୃତ ଥିଲା । କିନ୍ତୁ ଖ୍ରୀ: ୧୮୨୩ ରେ ସମ୍ବାଦପତ୍ର ଉପରେ ନୂତନ ଭାବରେ କେତେକ ନିୟନ୍ତ୍ରଣ ଜାରି କରିବା ଉଦ୍ଦେଶ୍ୟରେ ଯେଉଁ ଆଇନ କରାଗଲା, ସେଥିରେ ଏହି ସାପ୍ତାହିକର ପ୍ରକାଶନ ବନ୍ଦ ହେଲା । ରାମମୋହନ ଓ ଅନ୍ୟମାନେ ଏହି ସବୁ ନିୟନ୍ତ୍ରଣ ବିରୁଦ୍ଧରେ ଦୃଢ଼ ପ୍ରତିବାଦ ଜଣାଇଥିଲେ ଏବଂ ଏ ସମ୍ପର୍କରେ ଇଂଲଣ୍ଡର ମନ୍ତ୍ରିମଣ୍ଡଳ ପାଖକୁ ମଧ୍ୟ ଏକ ଅର୍ଜି ପଠାଇଥିଲେ ।

ରାମମୋହନଙ୍କ ସମସ୍ତ କିଛି ସାମ୍ବାଦିକ କାର୍ଯ୍ୟକଳାପ ପରିଶେଷରେ ତାଙ୍କର ଏକାଧିକ ସଂସ୍କାର ଆନ୍ଦୋଳନ ସଙ୍ଗେ ଜଡ଼ିତ ହୋଇପଡ଼ିଲା । ତାଙ୍କର ସମନ୍ୱୟଧର୍ମୀ ତଥା ସାଂସ୍କୃତିକ ... ଜନକ ଦୃଷ୍ଟିଭଙ୍ଗୀ ନୈଷ୍ଠିକ ହିନ୍ଦୁମାନଙ୍କ ବିରାଗର କାରଣ ହେଲା । ସେମାନେ ରାମମୋହନଙ୍କ ବହୁତ କିଛି ସଂସ୍କାର ବିଚାରର ବିରୋଧୀ ଥିଲେ; କିନ୍ତୁ ରାମମୋହନଙ୍କର ବହୁ ଦୃଢ଼ ସମର୍ଥକ ବି ଥିଲେ । ସେମାନଙ୍କ ଭିତରୁ ଠାକୁର ପରିବାର ପରବର୍ତ୍ତୀ ସମୟରେ ବଙ୍ଗଳାର ନବଜାଗରଣରେ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ରାମମୋହନରାୟ ଦିଲ୍ଲୀ ସମ୍ରାଟଙ୍କ ପକ୍ଷରୁ ଇଂଲଣ୍ଡ ଯାଇଥିଲେ ଏବଂ ଊନବିଂଶ ଶତକ ତୃତୀୟ ଦଶକର ଆଦ୍ୟ ଭାଗରେ ବ୍ରିଷ୍ଟଲ୍‌ରେ ତାଙ୍କର କର୍ମମୟ ଜୀବନର ଅବସାନ ଘଟିଲା ।

ରାମମୋହନ ରାୟ ଓ ଠାକୁର ପରିବାରର ଲୋକେ ଘରେ ଇଂରେଜୀ ଶିକ୍ଷା କରିଥିଲେ । ଇଂରେଜୀ ଶିକ୍ଷା ଦେବାପାଇଁ ସେତେବେଳେ ସ୍କୁଲ କଲେଜ ନଥିଲା ଏବଂ ସରକାରଙ୍କ ନୀତି ଥିଲା, ଭାରତୀୟମାନଙ୍କୁ ଇଂରେଜୀ ଶିକ୍ଷା ଦେବାର ଘୋର ବିରୋଧୀ । ଖ୍ରୀ: ୧୭୮୧ରେ କଲିକତାରେ ସରକାର ସଂସ୍କୃତ ଶିକ୍ଷା ଦେବା ନିମନ୍ତେ ହିନ୍ଦୁ କଲେଜ ଓ ଆରବୀ ଭାଷା ଶିକ୍ଷା ଦେବା ନିମନ୍ତେ କଲିକତା ମଦ୍ରାସା ନାମକ ଦୁଇଟି ବିଦ୍ୟାଳୟ ସ୍ଥାପନ କଲେ । ଖ୍ରୀ: ୧୭୯୧ରେ ବାରାଣସୀରେ ଏକ ସଂସ୍କୃତ କଲେଜ ସ୍ଥାପିତ ହେଲା । ଊନବିଂଶ ଶତକର ଦ୍ୱିତୀୟ ଦଶକରେ କେତେକ ମିଶନ୍ ସ୍କୁଲରେ ସମ୍ଭବତଃ ଇଂରେଜୀ ଶିକ୍ଷା ଦିଆଯାଉଥିଲା । ତୃତୀୟ ଦଶକରେ ସରକାରୀ ମହଲର ଏକ ଅଂଶ ଇଂରେଜୀ ଶିକ୍ଷା ଦେବା ସପକ୍ଷରେ ଥିଲେ; କିନ୍ତୁ ତାର ବିରୋଧ କରାଗଲା । ସେ ଯାହାହେଉ, ପରୀକ୍ଷାମୂଳକ ଭାବରେ ଦିଲ୍ଲୀର ଆରବୀ ବିଦ୍ୟାଳୟ ଓ କଲିକତାର କେତେକ ବିଦ୍ୟାପୀଠରେ କେତେଗୋଟି ଇଂରେଜୀ ଶ୍ରେଣୀ ଖୋଲାଗଲା । ଇଂରେଜୀ ଶିକ୍ଷା ଦେବା ସପକ୍ଷରେ ଚୂଡ଼ାନ୍ତ ନିଷ୍ପତ୍ତି ଖ୍ରୀ: ୧୮୩୫ ଫେବୃୟାରୀ ମାସରେ ମେକଲେଙ୍କ 'ମିନିଟ ଅନ୍ ଏଡ଼ୁକେସନ୍' ପତ୍ରରେ

ରହିଚ । ପରେ କଲିକତାରେ ପ୍ରେସିଡେନ୍‌ସି କଲେଜ ସ୍ଥାପିତ ହେଲା । ଖ୍ରୀ: ୧୮୫୭ରେ କଲିକତା, ମାନ୍ଦ୍ରାଜ ଓ ବମ୍ବେ ବିଶ୍ୱବିଦ୍ୟାଳୟମାନ କାର୍ଯ୍ୟକାରୀ ହେଲା ।

ଭାରତୀୟମାନଙ୍କୁ ଇଂରେଜୀ ଶିକ୍ଷା ଦେବା ପାଇଁ ବ୍ରିଟିଶ ସରକାର ଯଦି ଅନିଚ୍ଛୁକ ଥିଲେ ଅନ୍ୟ କେତେକ କାରଣ ଲାଗି ବ୍ରାହ୍ମଣ ପଣ୍ଡିତମାନେ ଇଂରେଜମାନଙ୍କୁ ସଂସ୍କୃତ ଶିକ୍ଷା ଦେବା-ପାଇଁ ଆହୁରି ପ୍ରବଳ ଭାବରେ ଆପତ୍ତି ଉଠାଇଥିଲେ । ଭାଷାବିତ୍‌ପଣ୍ଡିତ ସାର୍ ଉଇଲିୟମ୍ ଜୋନ୍‌ସ ଯେବେ ସୁପ୍ରିମ୍ କୋର୍ଟର ଜଣେ ବିଚାରପତି ଭାବରେ ଭାରତକୁ ଆସିଲେ, ସଂସ୍କୃତ ଶିକ୍ଷା କରିବାପାଇଁ ତାଙ୍କର ଅଭିଳାଷ ବ୍ୟକ୍ତ କଲେ । କିନ୍ତୁ ପୁରସ୍କାରର ପ୍ରଲୋଭନ ସତ୍ତ୍ୱେ କୌଣସି ବ୍ରାହ୍ମଣ ପଣ୍ଡିତ ଜଣେ ବିଦେଶୀକୁ ପବିତ୍ର ସଂସ୍କୃତ ଭାଷା ଶିକ୍ଷା ଦେବା ପାଇଁ ରାଜି ହେଲେ ନାହିଁ । ପରିଶେଷରେ ବହୁତ କଷ୍ଟରେ ଜୋନ୍‌ସ୍ ଜଣେ ଅବ୍ରାହ୍ମଣ ବୈଦ୍ୟଙ୍କୁ ସଂସ୍କୃତ ଶିକ୍ଷା ଦେବା ଲାଗି ସମ୍ମତ କରାଇପାରିଲେ । ବୈଦ୍ୟ ଜଣକ ଯେଉଁସବୁ ବିଚିତ୍ର ସର୍ତ୍ତ ରଖିଲେ ଜୋନ୍‌ସ୍ ସେ ସବୁରେ ରାଜି ହେଇଥିଲେ; କାରଣ ଭାରତର ଏହି ପ୍ରାଚୀନ ଭାଷା ଶିକ୍ଷା କରିବାପାଇଁ ତାଙ୍କର ପ୍ରବଳ ଆଗ୍ରହ ଜନ୍ମି ଥିଲା । ସଂସ୍କୃତ, ବିଶେଷତଃ ପ୍ରାଚୀନ ଭାରତୀୟ ନାଟକ ପ୍ରତି ସେ ଆକର୍ଷିତ ହେଇଥିଲେ । ତାଙ୍କର ଲେଖା ଓ ଅନୁବାଦ ଜରିଆରେ କେବଳ ୟୁରୋପ ପ୍ରଥମ ଥର ପାଇଁ ମହାନ୍ ସଂସ୍କୃତ ସାହିତ୍ୟର ସାମାନ୍ୟ ଆଭାସ ପାଇଲା । ଖ୍ରୀ. ୧୭୮୪ରେ ସାର୍ ଉଇଲିୟମ ଜୋନ୍‌ସ 'ବେଙ୍ଗଲ୍ ଏସିଆଟିକ୍ ସୋସାଇଟି' ସ୍ଥାପନ କଲେ; ଯାହା ପରବର୍ତ୍ତୀ କାଳରେ 'ରୟାଲ୍ ଏସିଆଟିକ୍ ସୋସାଇଟି'ରେ ପରିଣତ ହେଲା । ତାର ପ୍ରାଚୀନ ସାହିତ୍ୟର ପୁନରୁଦ୍ଧାର ଲାଗି ଜୋନ୍‌ସ ଓ ଅନ୍ୟାନ୍ୟ ୟୁରୋପୀୟ ପଣ୍ଡିତ-ମାନଙ୍କ ନିକଟରେ ଭାରତ ବଡ଼ କୃତଜ୍ଞ ଓ ଋଣୀ । ଏହି ପ୍ରାଚୀନ ସାହିତ୍ୟର ବହୁତ କିଛି ପ୍ରତ୍ୟେକ ଯୁଗରେ ଅବଶ୍ୟ ବିଦିତ ଥିଲା; କିନ୍ତୁ କାଳକ୍ରମେ ସେହି ଜ୍ଞାନ କେତେ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଭିତରେ ଆବଦ୍ଧ ହେଇ ପଡ଼ିଥିଲା ଏବଂ ସଂସ୍କୃତର ଭଳି ଭାଷା ଭାବରେ ପାରସିକ ଭାଷାର ପ୍ରାଧାନ୍ୟ ଲୋକଙ୍କ ମନକୁ ସଂସ୍କୃତ ଉପରୁ ଛଡ଼ାଇନେଇଥିଲା । ପାଣ୍ଡୁଲିପି ସନ୍ଧାନରେ ଲାଗିବା ଫଳରେ ବହୁ ଉପାଦେୟ ଗ୍ରନ୍ଥ ଆଲୋକକୁ ଆସିଲା ଏବଂ ବିଦ୍‌ବର୍ଗର ଆଧୁନିକ ସମାଲୋଚନାମୂଳକ ପଦ୍ଧତିର ପ୍ରୟୋଗ, ପ୍ରକାଶିତ ଏହି ବିପୁଳ ସାହିତ୍ୟକୁ ଏକ ନୂତନ ପୃଷ୍ଠଭୂମି ଅର୍ପଣ କଲା ।

ମୁଦ୍ରାଯନ୍ତ୍ରର ପ୍ରଚଳନ ଓ ବ୍ୟବହାର ଭାରତୀୟ ଲୋକ-ଭାଷା ଗୁଡ଼ିକର ବିକାଶ ଦିଗରେ ଖୁବ୍ ସହାୟକ ହେଲା । ହିନ୍ଦୀ, ବଙ୍ଗଳା, ଗୁଜରାଟୀ, ମରାଠୀ, ଉର୍ଦ୍ଦୁ, ତାମିଲ ଓ ତେଲୁଗୁ ଭଳି ଭାଷାମାନ ବହୁକାଳରୁ ବ୍ୟବହୃତ ହୋଇଥିଲା କେବଳ ନୁହେଁ, ପ୍ରତ୍ୟେକର ସାହିତ୍ୟ ମଧ୍ୟ ଗଢ଼ିଉଠିଥିଲା । ଏହି ସବୁ ଭାଷାର ଅନେକ ଗ୍ରନ୍ଥ ଜନସାଧାରଣଙ୍କ ଭିତରେ ବ୍ୟାପକ ଭାବରେ ଜ୍ଞାତ ଥିଲା । ପ୍ରାୟଶଃ ଏହିସବୁ ରଚନା ମହାକାବ୍ୟ ଆକାରରେ କିମ୍ବା କବିତା ଅବା ସଙ୍ଗୀତ ଓ ଭଜନ ଆକାରରେ ପ୍ରଚଳିତ ଥିଲା; ଯାହାକୁ ଲୋକେ ସହଜରେ ମନେରଖି ପାରୁଥିଲେ । ବସ୍ତୁତଃ ସେହି ସମୟର ଗଦ୍ୟ-ସାହିତ୍ୟ କିଛି ନଥିଲା । ସବୁ କିଛି ଗମ୍ଭୀର ରଚନା ପାଇଁ ସଂସ୍କୃତ ଓ ଫାର୍ସୀ ଥିଲା ମାଧ୍ୟମ ଏବଂ ପ୍ରତ୍ୟେକ ସୁଶିକ୍ଷିତ ବ୍ୟକ୍ତି ପକ୍ଷରେ ଏହି

ଉଭୟ ଭାଷାକୁ ଗୋଟିଏ ଅନ୍ତତଃ ଜାଣିବା ଥିଲା ଅନିବାର୍ଯ୍ୟ । ଏହି ଦୁଇଟି ପ୍ରାଚୀନ ଭାଷାର ପ୍ରାଧାନ୍ୟ ଫଳରେ ପ୍ରାକୃତ ଭାଷା ଗୁଡ଼ିକର ଅଭିବୃଦ୍ଧି ଘଟିପାରି ନଥିଲା । ଛାପା ବହି ଓ ସମ୍ବାଦପତ୍ର ସଂସ୍କୃତ ଓ ଫାର୍ଶୀର ପ୍ରାଧାନ୍ୟ ଭଙ୍ଗ କଲା ଏବଂ ଅନତିବିଳମ୍ବେ ପ୍ରାନ୍ତୀୟ ଭାଷାମାନଙ୍କରେ ଗଦ୍ୟ ସାହିତ୍ୟର ବିକାଶ ଘଟିଲା । ଆଦ୍ୟ ଖ୍ରୀଷ୍ଟିୟାନ ଧର୍ମଯାଜକମାନେ, ବିଶେଷତଃ ସେରାମପୁର ବାପ୍ଟିଷ୍ଟ ମିଶନର ଲୋକେ ଏହି ପ୍ରକ୍ରିୟା ପକ୍ଷରେ ବିଶେଷ ସହାୟକ ହୋଇଥିଲେ । ଏମାନେ ହିଁ ବେସରକାରୀ ଭାବରେ ପ୍ରଥମେ ମୁଦ୍ରାଯନ୍ତ୍ରର ସ୍ଥାପନ କଲେ ଓ ଭାରତୀୟ ଭାଷାମାନଙ୍କରେ ବାଇବଲ୍‌ର ଗଦ୍ୟାନୁବାଦ ଦିଗରେ ଏମାନଙ୍କର ଉଦ୍ୟମ ଫଳପ୍ରସୂ ହେଲା ।

ସୁବିଦିତ ଓ ପ୍ରତିଷ୍ଠିତ ଭାଷାମାନଙ୍କ ଲାଗି ସେପରି କିଛି ଅସୁବିଧା ନଥିଲା; କିନ୍ତୁ ଏହି ଧର୍ମଯାଜକମାନେ ଆଉ ଟିକିଏ ଶ୍ରମ ସ୍ୱୀକାର କରି କେତେକ କ୍ଷୁଦ୍ର ତଥା ଅନୁନ୍ନତ ଭାଷା ହାତକୁ ନେଇ ସେସବୁ ନିମନ୍ତେ ବ୍ୟାକରଣ ଓ ଅଭିଧାନ ତିଆରି କରି ସେ ଗୁଡ଼ିକୁ ଚଳନୀୟ ରୂପ ଓ ଆକୃତି ପ୍ରଦାନ କଲେ । ଆଦିବାସୀ ତଥା ଅନ୍ୟାନ୍ୟ ବନ୍ୟ ଉପଜାତିମାନଙ୍କର କଥିତ ଭାଷା ପାଇଁ ମଧ୍ୟ ସେମାନେ ବର୍ଣ୍ଣମାଳା ତିଆରି କଲେ । ଯେତେ ଭାଷାରେ ସମ୍ଭବ ହୋଇପାରିଲା ବାଇବଲ୍ ଅନୁବାଦ କରିବାପାଇଁ ଖ୍ରୀଷ୍ଟିୟାନ ଧର୍ମଯାଜକମାନଙ୍କର ଅଭିଳାଷ ବହୁ ଭାରତୀୟ ଭାଷାର ବିକାଶ ଦିଗରେ ସହାୟକ ହେଲା । ଭାରତରେ ଖ୍ରୀଷ୍ଟିୟାନ ମିଶନ୍‌କର୍ମ ସବୁ ସମୟରେ ପ୍ରଶଂସାଯୋଗ୍ୟ ହୋଇ ପାରିନି; କିନ୍ତୁ ଏ ଦିଗରେ ଲୋକଗୀତ ସଂଗ୍ରହ କରିବା ଦିଗରେ ଭାରତ ପ୍ରତି ସେମାନଙ୍କର ଅବଦାନ ସାମାନ୍ୟ ନୁହେଁ ।

ଶିକ୍ଷାର ପ୍ରସାର ନିମନ୍ତେ ଇଷ୍ଟଇଣ୍ଡିଆ କମ୍ପାନୀ ବିମୁଖ ହେବାର ଯଥାର୍ଥତା ଥିଲା; କାରଣ ଖ୍ରୀ: ୧୮୩୦ ବେଳକୁ ବି କଲିକତା ହିନ୍ଦୁ କଲେଜ (ଯେଉଁଠି ସଂସ୍କୃତ କେବଳ ଶିକ୍ଷା ଦିଆଯାଉଥାଏ : ଇଂରେଜୀ ନୁହେଁ )ର ଦଳେ ଛାତ୍ର କେତେ ସଂସ୍କାର ଦାବି କରିଥିଲେ । ସେମାନଙ୍କର ଦାବି ଥିଲା, କମ୍ପାନୀର ରାଜନୈତିକ ଅଧିକାର ସୀମାବଦ୍ଧ କରିବା ଏବଂ ବିନା ଖର୍ଚ୍ଚରେ ଓ ବାଧ୍ୟତାମୂଳକ ଭାବରେ ଶିକ୍ଷାର ପ୍ରସାର ଘଟାଇବା । କେଉଁ ପ୍ରାଚୀନ କାଳରୁ ବିନା ବ୍ୟୟରେ ଶିକ୍ଷା ଲାଭ କରିବା ଭାରତରେ ସୁବିଦିତ ଥିଲା । ସେହି ଶିକ୍ଷା ଯଦିଓ ଥିଲା ପାରମ୍ପରିକ ଓ ଲାଭକର ବି ନଥିଲା, ତଥାପି ଗୁରୁସେବା ଅଂଶତଃ ବାଦ ଦେଲେ ସମ୍ବଳହୀନ ଛାତ୍ରମାନଙ୍କୁ ବିନା ବ୍ୟୟରେ ଶିକ୍ଷା ମିଳି ପାରୁଥିଲା । ଏ କ୍ଷେତ୍ରରେ ହିନ୍ଦୁ ଓ ମୁସଲମାନ ଉଭୟର ପରମ୍ପରା ଥିଲା ସମାନ ।

ନୂତନ ଶିକ୍ଷାର ପ୍ରସାର ତ ସହଜେ ନିରୋଧିତ ହୋଇଥିଲା, ପୁରାତନ ଶିକ୍ଷା ବ୍ୟବସ୍ଥା ମଧ୍ୟ ବଙ୍ଗରେ ପ୍ରାୟ ଲୋପ ପାଇଥିଲା କହିଲେ ଚଳେ । ଇଂରେଜମାନେ ବଙ୍ଗ ଅଧିକାର କଲାବେଳକୁ ସେଠାରେ ବହୁ ପରିମାଣରେ 'ମୁଆଫି' ଅର୍ଥାତ୍ କରମୁକ୍ତ ଦାନ ଜମି ରହିଥିଲା । ଏଥିର କେତେକ ଅଂଶ ବ୍ୟକ୍ତିଗତ ସମ୍ପତ୍ତି ହୋଇ ସାରିଥିଲେ ମଧ୍ୟ ଅଧିକାଂଶ ଭାଗ ଶିକ୍ଷାନୁଷ୍ଠାନମାନଙ୍କୁ ଦାନ ସୂତ୍ରରେ ଦିଆଯାଇଥିଲା । ପୁରାତନ ଶୈଳୀର ଅଗଣିତ ପ୍ରାଥମିକ ବିଦ୍ୟାଳୟ ଓ କେତେକ ଉଚ୍ଚ ଶିକ୍ଷାନୁଷ୍ଠାନ ଯେଉଁଠି ଫାର୍ଶୀ ଶିକ୍ଷା ଦିଆଯାଉଥାଏ ଏହି

ଦାନ ଉପରେ ନିର୍ଭର କରୁଥିଲା । ଇଷ୍ଟଇଣ୍ଡିଆ କମ୍ପାନୀ ଇଂଲଣ୍ଡରେ ତାର ଅଂଶୀଦାର-ମାନଙ୍କୁ ଲଭ୍ୟାଂଶ ଦେବା ନିମନ୍ତେ ସତ୍ୱର ପଇସା କରିବାକୁ ଉତ୍କଣ୍ଠିତ ଥିଲା ଏବଂ ସେଥି-ନିମନ୍ତେ ତାର ପରିଚାଳକମାନେ ଅବ୍ୟାହତ ଭାବରେ ତାଗିଦ କରୁଥିଲେ । ଅତଏବ, ମୁଆଫି ଜମି ବାଜ୍ୟାପ୍ତ କରିବା ଉଦ୍ଦେଶ୍ୟରେ ସୁଚିନ୍ତିତ ନୀତି ଗ୍ରହଣ କରାଗଲା । କୁହାଗଲା, ଦାନସନ୍ଦକର ପ୍ରମାଣ ଉପସ୍ଥାପିତ କର । କିନ୍ତୁ ସେସବୁ ପୁରାତନ ସନନ୍ଦ ଏକେ ହଜି-ଯାଇଥିଲା କିମ୍ବା ଉଈ ଖାଇବାରେ ନଷ୍ଟ ହୋଇଯାଇଥିଲା । ଏପରି ଭାବରେ ମୁଆଫି ଜମି ବାଜ୍ୟାପ୍ତ କରି କମ୍ପାନୀ ପୁରାତନ ସ୍ୱତ୍ୱାଧିକାରୀମାନଙ୍କୁ ଅନ୍ତର କଲା । ବିଦ୍ୟାୟତନଗୁଡ଼ିକ ମଧ୍ୟ ସେଥିରୁ ବଞ୍ଚିତ ହେଲେ । ବହୁ ପୁରାତନ ପରିବାରର ସର୍ବନାଶ ଘଟିଲା । ଯେଉଁସବୁ ଶିକ୍ଷାନୁଷ୍ଠାନ ଗୁଡ଼ିକ ମୁଆଫି ଦାନରେ ଚଳୁଥିଲା, ସେଗୁଡ଼ିକ ବନ୍ଦ ହେଲା ଏବଂ ସେଥି ସଙ୍ଗେ ସମ୍ପୃକ୍ତ ବହୁ ଶିକ୍ଷକ ଓ ଅନ୍ୟ ଲୋକେ ବେକାର ହେଲେ ।

ବଙ୍ଗର ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ପୁରାତନ ସାମନ୍ତବର୍ଗ ଓ ସେମାନଙ୍କ ଉପରେ ନିର୍ଭରଶୀଳ ଶ୍ରେଣୀମାନଙ୍କର ବିନାଶ ସାଧନ ଦିଗରେ ଏହି ପ୍ରକ୍ରିୟା ସହାୟକ ହେଲା । ଏଥି ଦ୍ୱାରା ମୁସ୍‌ଲିମ୍‌ମାନେ ବିଶେଷ କ୍ଷତିଗ୍ରସ୍ତ ହେଲେ; କାରଣ ସମ୍ପ୍ରଦାୟ ଭାବରେ ସେମାନେ ଥିଲେ ହିନ୍ଦୁମାନଙ୍କ ଅପେକ୍ଷା ଅଧିକତର ସାମନ୍ତବାଦୀ ଓ ମୁଆଫି ଦାନ ପ୍ରଧାନତଃ ସେମାନଙ୍କ ଭାଗରେ ପଡ଼ିଥିଲା । ହିନ୍ଦୁମାନଙ୍କ ଭିତରୁ ମଧ୍ୟବିତ୍ତ ଶ୍ରେଣୀର ଲୋକେ ବ୍ୟବସାୟ, ବାଣିଜ୍ୟ ଓ ଅନ୍ୟାନ୍ୟ ବୃତ୍ତିରେ ନିୟୋଜିତ ଥିଲେ । ଏମାନେ ଯୁଗକୁ ଧରି ଅକୁଣ୍ଠିତ ଭାବରେ ଇଂରେଜୀ ଶିକ୍ଷା କରିବାରେ ଆଗ୍ରହୀ ହେଲେ । ଶାସନ ବ୍ୟବସ୍ଥାର ନିମ୍ନ ଶ୍ରେଣୀସ୍ଥ କର୍ମ ନିମନ୍ତେ ଇଂରେଜମାନଙ୍କ ପାଇଁ ଏମାନେ ଉପଯୋଗୀ ହେଲେ । ମୁସ୍‌ଲିମ୍‌ମାନେ ଇଂରେଜୀ ଶିକ୍ଷା କରୁନଥିଲେ ଏବଂ ବଙ୍ଗରେ ଶାସକବର୍ଗଙ୍କ ଶୁଭଦୃଷ୍ଟି ସେମାନଙ୍କ ଉପରେ ନଥିଲା । କାରଣ ପୁରାତନ ଶାସକବର୍ଗର ସେହି ଅବଶେଷ କାଳେ ଗଣ୍ଡଗୋଳ ଉଠାଇବ ବୋଲି ଇଂରେଜମାନେ ସର୍ବଦା ଶଙ୍କିତ ଥିଲେ । ଏପରି ଭାବରେ, ବଙ୍ଗାଳୀ ହିନ୍ଦୁମାନେ ପ୍ରଥମାବସ୍ଥାରେ ଅମଲାଶ୍ରେଣୀସ୍ଥ କର୍ମ ଏକ ପ୍ରକାର ଏକଚାଟିଆ କରି-ନେଇଥିଲେ । ଉତ୍ତରାଞ୍ଚଳ ପ୍ରଦେଶମାନଙ୍କୁ ମଧ୍ୟ ଏମାନେ ପ୍ରେରିତ ହେଲେ । ପୁରାତନ ପରିବାରମାନଙ୍କର ସ୍ୱଳ୍ପସଂଖ୍ୟକ ମୁସଲ୍‌ମାନ କେବଳ ପରେ ଇଂରେଜଙ୍କ ଅଧୀନରେ ନିମ୍ନ ଶ୍ରେଣୀର କର୍ମ ଗ୍ରହଣ କରିଥିଲେ ।

ଇଂରେଜୀ ଶିକ୍ଷା ଭାରତୀୟ ଦିଗନ୍ତକୁ ପ୍ରସାରିତ କଲା । ଫଳତଃ ଇଂରେଜୀ ସାହିତ୍ୟ ଓ ଇଂରେଜଙ୍କ ବିବିଧ ଲୋକସଂସ୍ଥା ପ୍ରତି ଭାରତୀୟମାନେ ପ୍ରଶଂସନୀୟ ହେଲେ, ଭାରତୀୟ ଜୀବନର କେତେକ ବିଶ୍ୱାସ ଓ ପ୍ରଥା ପ୍ରତି ବିଦ୍ରୋହ ଭାବ ଜାଗ୍ରତ ହେଲା ଏବଂ ରାଜନୈତିକ ସଂସ୍କାର ନିମନ୍ତେ ଦାବି କ୍ରମଶଃ ବୃଦ୍ଧି ଲାଭକଲା । ନୂତନ ପେଶାଦାରୀ ଶ୍ରେଣୀମାନେ ରାଜନୈତିକ ଆନ୍ଦୋଳନର ନେତୃତ୍ୱ ନେଲେ । ଏହି ଆନ୍ଦୋଳନର ପ୍ରଧାନ ଆଭିମୁଖ୍ୟ ଥିଲା ସରକାରଙ୍କ ନିକଟରେ ଲିଖିତ ଭାବରେ ନିଜର ଦାବି ଉପସ୍ଥାପିତ କରିବା । ବିଭିନ୍ନ ପେଶା ଓ ସରକାରୀ ଚାକିରିର ଇଂରେଜୀ ଶିକ୍ଷିତ ଲୋକେ ବସ୍ତୁତଃ ଗୋଟାଏ ନୂତନ ବର୍ଗରେ ପରିଣତ ହେଲେ ।

ପାଶ୍ଚାତ୍ୟ ବିଚାରଧାରା ଓ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରଭାବିତ ଏବଂ ଜନସାଧାରଣଙ୍କଠାରୁ ଏକରକମ ବିଚ୍ଛିନ୍ନ, ସମଗ୍ର ଭାରତରେ କାଳକ୍ରମେ ଏହି ନୂତନ ବର୍ଗର ଅଭିବୃଦ୍ଧି ଘଟିଲା । ଖ୍ରୀ:୧୮୫୧-ରେ କଲିକତାରେ 'ବ୍ରିଟିଶଇଣ୍ଡିଆନ୍ ଆସୋସିଏସନ୍' ଆରମ୍ଭ ହେଲା । ଭାରତୀୟ ଜାତୀୟ କଂଗ୍ରେସର ଏହା ଥିଲା ଅନ୍ୟତମ ଅଗ୍ରଦୂତ । ତଥାପି ଖ୍ରୀ ୧୮୮୫ରେ କଂଗ୍ରେସ ସ୍ଥାପିତ ହେଲା ବେଳକୁ ଗୋଟାଏ ପୁରୁଷ ବିତିଗଲା କହିଲେ ଚଳେ । ସମୟର ଏହି ବ୍ୟବଧାନ ଭିତରେ ଥିଲା ଖ୍ରୀ: ୧୮୫୭-୫୮ର ବିଦ୍ରୋହ ତାର ଦମନ ତଥା ପରିଣାମ । ଊନବିଂଶ ଶତକର ମଧ୍ୟଭାଗରେ ବଙ୍ଗ ଏବଂ ଉତ୍ତର ଓ ମଧ୍ୟ-ଭାରତ ଭିତରେ ବଡ଼ ଏକ ପାର୍ଥକ୍ୟ ରହିଯାଇଥିଲା । ତାହା ହେଉଛି ଇଂରେଜୀ ବିଚାରଧାରା ଓ ସାହିତ୍ୟ ଦ୍ୱାରା ପ୍ରଭାବିତ ବଙ୍ଗର ନୂତନ ବୁଦ୍ଧିଜୀବୀ ଶ୍ରେଣୀ ( ମୁଖ୍ୟତଃ ହିନ୍ଦୁ ) ରାଜନୈତିକ ତଥା ସାଂବିଧାନିକ ସଂସ୍କାର ନିମନ୍ତେ ଯେବେ ଇଂଲଣ୍ଡ ଆଡ଼କୁ ଦୃଷ୍ଟି ଫେରାଉଥିଲେ, ଭାରତର ଅନ୍ୟାନ୍ୟ ଅଞ୍ଚଳ ଥିଲି ବିଦ୍ରୋହ ଭାବନାରେ ବିକ୍ଷୁବ୍ଧ ।

ଭାରତର ଅନ୍ୟ ଯେକୌଣସି ଅଞ୍ଚଳ ଅପେକ୍ଷା ବଙ୍ଗରେ ବ୍ରିଟିଶ ରାଜତ୍ୱ ଓ ପାଶ୍ଚାତ୍ୟ ପ୍ରଭାବର ପ୍ରାରମ୍ଭିକ ଫଳ ଅଧିକରେ ସ୍ପଷ୍ଟ ଭାବରେ ଦେଖିବାକୁ ମିଳେ । କୃଷି-ଅର୍ଥନୀତିର ଉଚ୍ଛେଦ ସଙ୍ଗେ ପୁରାତନ ସାମନ୍ତଶ୍ରେଣୀ ପ୍ରାୟ ଲୁପ୍ତ ହୋଇଥିଲେ । ସେମାନଙ୍କ ସ୍ଥାନରେ ଯେଉଁ ନୂତନ ଭୂସ୍ୱାମୀମାନେ ଦେଖାଦେଲେ ଜମି ସଙ୍ଗେ ସେମାନଙ୍କର ପାରମ୍ପରିକ ସମ୍ପର୍କ ପ୍ରାୟ ନଥିଲା କହିଲେ ଚଳେ ଏବଂ ସେମାନଙ୍କ ଠାରେ ପୁରାତନ ସାମନ୍ତବାଦୀ ଜମିଦାରମାନଙ୍କର ଗୁଣ ଓ ବିଚ୍ୟୁତି ଯେତେ ଭାବରେ ଥିଲା, ସଦ୍‌ଗୁଣ ଥିଲା ଅପେକ୍ଷାକୃତ କମ୍ । ନାନାବିଧ ଲୁଣ୍ଠନ ଓ ଦୁର୍ଭିକ୍ଷ ହେତୁରୁ କୃଷକମାନଙ୍କର ଦାରିଦ୍ର୍ୟ ଅକଥନୀୟ ହୋଇ ପଡ଼ିଥିଲା । ଗ୍ରାମ୍ୟ ଶିଳ୍ପୀ-ଶ୍ରେଣୀ ପ୍ରାୟ ଲୁପ୍ତ ହୋଇସାରିଥିଲା । ଏହି ସବୁ ଅସଂଲଗ୍ନ ତଥା ଜୀର୍ଣ୍ଣ ଭିତ୍ତି ଉପରେ ବ୍ରିଟିଶ ରାଜତ୍ୱର ସୃଷ୍ଟି ଓ ସେଥି ସଙ୍ଗେ ନାନା ଭାବରେ ସମ୍ପର୍କିତ, ନୂତନ କେତେକ ଶ୍ରେଣୀ ଓ ଗୋଷ୍ଠୀ ଗଢ଼ି ଉଠିଲେ । ଏଥି ସଙ୍ଗେ ଥିଲେ ସୌଦାଗର, ଯେଉଁମାନେ ବ୍ରିଟିଶ ବ୍ୟବସାୟ ବାଣିଜ୍ୟର ବସ୍ତୁତଃ ଦଲାଲି କରି ସେହି ଶିଳ୍ପର ଉଚ୍ଛିଷ୍ଟରୁ ଲାଭ ଉଠାଉଥିଲେ । ଆହୁରି ମଧ୍ୟ ଥିଲେ ନିମ୍ନଶ୍ରେଣୀୟ ସରକାରୀ କର୍ମ ଓ ଉଚ୍ଚତର ପେଶାର ଇଂରେଜୀ ଶିକ୍ଷିତ ଶ୍ରେଣୀ; ଯେଉଁମାନେ ନିଜର ଉନ୍ନତି ନିମନ୍ତେ ବ୍ରିଟିଶଶକ୍ତି ଉପରେ ନିବେଦକ-ଦୃଷ୍ଟି ଡାଳୁଥିଲେ ଏବଂ ପାଶ୍ଚାତ୍ୟ ବିଚାରଧାରା ଦ୍ୱାରା ପ୍ରଭାବିତ ହୋଇ ସାରିଥିଲେ । ଏମାନଙ୍କ ଭିତରେ ହିନ୍ଦୁ ସମାଜର ବର୍ଣ୍ଣ-ବ୍ୟବସ୍ଥା ଓ ତାର କଠୋର ଅନୁଶାସନ ପ୍ରତି ତୀବ୍ର ବିଦ୍ରୋହ ଭାବନା ଜାଗ୍ରତ ହେଲା । ପ୍ରେରଣା ନିମନ୍ତେ ଏମାନେ ଇଂଲଣ୍ଡର ଉଦାରନୀତି ଓ ବିଭିନ୍ନ ସଂସ୍ଥା ପ୍ରତି ଉନ୍ମୁଖ ହେଲେ ।

ଏହି ପ୍ରଭାବ ବଙ୍ଗଳାର ହିନ୍ଦୁମାନଙ୍କ ଉପରବର୍ଗରେ କେବଳ ସୀମିତ ଥିଲା । ସେଠାର ହିନ୍ଦୁ ଜନସାଧାରଣ ପ୍ରତ୍ୟକ୍ଷ ଭାବରେ ପ୍ରଭାବିତ ହୋଇ ନଥିଲେ ଏବଂ ହିନ୍ଦୁ ନେତାମାନେ ମଧ୍ୟ ସମ୍ଭବତଃ ସେମାନଙ୍କୁ ନେଇ ଭାବୁନଥିଲେ । କେତେକ ବ୍ୟକ୍ତିବିଶେଷଙ୍କୁ ବାଦ ଦେଲେ ମୁସଲମାନମାନଙ୍କ ଉପରେ କୌଣସି ପ୍ରଭାବ ପଡ଼ିନଥିଲା ଏବଂ ସେମାନେ ସୁଚିନ୍ତିତ

ଭାବରେ ନୂତନ ଶିକ୍ଷାର ସୀମା ମାଡ଼ିନଥିଲେ । ପୂର୍ବରୁ ଅର୍ଥନୀତି ଦୃଷ୍ଟିରୁ ସେମାନେ ଥିଲେ ଅନଗ୍ରସର ଏବଂ ବର୍ତ୍ତମାନ ଆହୁରି ପଛକୁ ପଡ଼ିଗଲେ । ଊନବିଂଶ ଶତକରେ, ବଙ୍ଗରେ ବହୁ ବିଚକ୍ଷଣ ହିନ୍ଦୁଙ୍କ ଅଭ୍ୟୁଦୟ ଘଟିଲା । ଏହି ସମୟରେ ସେଭଳି ପ୍ରତିଭାଶାଳୀ ଜଣେ ସୁଦ୍ଧା ବଙ୍ଗାଳୀ ମୁସଲମାନ ନେତା ଦୃଷ୍ଟିରେ ପଡ଼ୁନ । ଜନସାଧାରଣ ସ୍ତରକୁ ଗଲେ ହିନ୍ଦୁ ଓ ମୁସଲମାନମାନଙ୍କ ଭିତରେ ସେପରି କିଛି ପ୍ରଭେଦ ନଥିଲା । ଚାଲି ଚଳଣି, ଅଭ୍ୟାସ ଆଚରଣ, ଭାଷା, ଦୈନ୍ୟ ଓ ଦୁରବସ୍ଥାରେ ସେମାନେ ଥିଲେ ସମାନ । ପ୍ରକୃତ ପକ୍ଷେ, ସବୁ ଶ୍ରେଣୀର ହିନ୍ଦୁ ଓ ମୁସଲମାନ ଭିତରେ ସମଗ୍ର ଭାରତରେ ଧର୍ମଗତ ତଥା ଅନ୍ୟାନ୍ୟ ଯାହା ପାର୍ଥକ୍ୟ ପରିଲକ୍ଷିତ ହେଉଥାଏ, ବଙ୍ଗରେ ସେପରି କିଛି ନାହିଁ । ବଙ୍ଗର ମୁସଲମାନମାନଙ୍କ ମଧ୍ୟରୁ ଶତକଡ଼ା ୯୮ ଭାଗ ସମ୍ଭବତଃ ଏକ ସମୟରେ ହିନ୍ଦୁଧର୍ମ ଛାଡ଼ି ଇସଲାମ୍ ଧର୍ମ ଗ୍ରହଣ କରିଥିଲେ ଏବଂ ତାହା ମଧ୍ୟ ଘଟିଥିଲା ସାଧାରଣତଃ ସମାଜର ନିମ୍ନତମ ସ୍ତରରେ । ଜନସୁମାରିରେ ବଙ୍ଗରେ ହିନ୍ଦୁମାନଙ୍କ ଅପେକ୍ଷା ମୁସଲମାନ ସାମାନ୍ୟମାତ୍ର ସଂଖ୍ୟାଗରିଷ୍ଠ । ( ଆଜି ବଙ୍ଗର ଅନୁପାତ ଶତକଡ଼ା ୫୩ ଭାଗ ମୁସଲମାନ, ୪୬ ଭାଗ ହିନ୍ଦୁ, ୧ ଭାଗ ଅନ୍ୟାନ୍ୟ ) ।

ବ୍ରିଟିଶ ସମ୍ପର୍କରେ ଏହିସବୁ ପ୍ରଥମକାଳୀନ ପରିଣାମ ଯୋଗୁଁ ଏବଂ ଯେଉଁ ବିବିଧ ଅର୍ଥନୈତିକ, ସାମାଜିକ, ବୌଦ୍ଧିକ ଓ ରାଜନୈତିକ ଆନ୍ଦୋଳନ ବଙ୍ଗରେ ଗଢ଼ି ଉଠିଲା, କମ୍ ବେଶୀ ଭାବରେ ଭାରତରେ ଅନ୍ୟତ୍ର ମଧ୍ୟ ଦେଖିବାକୁ ମିଳେ । ଅନ୍ୟତ୍ର ପୁରାତନ ସାମନ୍ତବାଦୀ ବ୍ୟବସ୍ଥା ଓ ଅର୍ଥନୀତି କ୍ରମଶଃ ଯଦିଓ ଭାଙ୍ଗିଲା, ସମ୍ପୂର୍ଣ୍ଣରୂପେ ଭାଙ୍ଗିନଥିଲା । ବସ୍ତୁତଃ ସେହି ଜନ ବିଦ୍ରୋହ କରିଉଠିଲା ଏବଂ ବିଦ୍ରୋହ ଦମନ କରାଯିବା ପରେ ମଧ୍ୟ ତାହା କେତେ ପର୍ଯ୍ୟନ୍ତ ତିଷ୍ଠି ରହିଲା । ଉତ୍ତର-ଭାରତର ମୁସଲମାନମାନେ ସଂସ୍କୃତି ଓ ଅର୍ଥନୀତି ଦିଗରୁ ବଙ୍ଗର ମୁସଲମାନମାନଙ୍କଠାରୁ ଉନ୍ନତ ଥିଲେ ସୁଦ୍ଧା ସେମାନେ ବି ପାଶ୍ଚାତ୍ୟ ଶିକ୍ଷାରୁ ଦୂରରେ ରହିଲେ । ହିନ୍ଦୁମାନେ ଏହି ଶିକ୍ଷା ସହଜରେ ଗ୍ରହଣ କରିଗଲେ ଏବଂ ପାଶ୍ଚାତ୍ୟ ଭାବଧାରା ଦ୍ୱାରା ଅଧିକତର ଭାବରେ ପ୍ରଭାବିତ ଥିଲେ । ନିମ୍ନ ସ୍ତରର ସରକାରୀ କର୍ମଚାରୀଙ୍କ ଭିତରେ ଏବଂ ଅନ୍ୟାନ୍ୟ ପେଶାରେ ମୁସଲମାନମାନଙ୍କ ଅପେକ୍ଷା ହିନ୍ଦୁଙ୍କ ସଂଖ୍ୟା ବହୁଗୁଣରେ ଅଧିକ ଥିଲା । ପଞ୍ଜାବରେ କେବଳ ଏହି ବ୍ୟବଧାନ ଏତେ ବେଶି ନଥିଲା ।

ଖ୍ରୀ: ୧୮୫୭-୫୮ର ବିଦ୍ରୋହ ଯେପରି ଜଳି ଉଠିଲା ସେପରି ନିର୍ବାପିତ ବି ହେଲା; କିନ୍ତୁ ତାହା ବଙ୍ଗକୁ ସ୍ପର୍ଶ କରିନଥିଲା । ଊନବିଂଶ ଶତକସାରା ବଙ୍ଗର ନୂତନ ଇଂରେଜୀ ଶିକ୍ଷିତ ଶ୍ରେଣୀ, ମୁଖ୍ୟତଃ ହିନ୍ଦୁ, ଇଂଲଣ୍ଡ ଆଡ଼କୁ ସପ୍ରଶଂସ ଦୃଷ୍ଟି ଢାଳିଥିଲେ ଏବଂ ତାର ସାହାଯ୍ୟରେ ଓ ତା' ସଙ୍ଗେ ସହଯୋଗ କରି ଅଗ୍ରଗତି କରିବାର ଆଶା ପୋଷଣ କରୁଥିଲେ । ବଙ୍ଗରେ ଏକ ସାଂସ୍କୃତିକ ନବଜାଗରଣ ଘଟିଲା, ବଙ୍ଗ ଭାଷା ଅପୂର୍ବ ଭାବରେ ଅଭିବୃଦ୍ଧି ଲାଭକଲା ଏବଂ ବଙ୍ଗର ନେତୃବର୍ଗ ରାଜନୈତିକ ଭାରତର ନେତା ଭାବରେ ସମ୍ମୁଖରେ ଉଭା ହେଲେ ।

ସେହି କାଳରେ ବଙ୍ଗର ମନକୁ ଇଂଲଣ୍ଡ ପ୍ରତି ଏହି ଶ୍ରଦ୍ଧା ଓ ଆସ୍ଥା ଯେପରି ଆଚ୍ଛନ୍ନ କରି

ରଖିଥିଲା ଏବଂ ସୁପ୍ରତିଷ୍ଠିତ ସାମାଜିକ ବିଧିବିଧାନ ପ୍ରତି ଯେଉଁ ବିଦ୍ରୋହ ଭାବନା ଜାଗ୍ରତ ହୋଇଥିଲା, ତାର କିଛି ଝଲକ ତାଙ୍କର ୮°ତମ ଜନ୍ମତିଥିରେ (ମଇ, ୧୯୪୧), ମୃତ୍ୟୁର କେତେ ମାସ ପୂର୍ବରୁ ଶ୍ରୀ ରବୀନ୍ଦ୍ରନାଥ ଠାକୁର ଦେଇଥିବା ହୃଦୟସ୍ପର୍ଶୀ ସନ୍ଦେଶରୁ ପଢ଼ିବାକୁ ମିଳେ । ସେ କହିଥିଲେ, "ମୋର ପଛରେ ପଡ଼ିରହିଥିବା ଦୀର୍ଘକାଳ ଉପରେ ମୁଁ ଯେବେ ଦୃଷ୍ଟି ଫେରାଏ ଏବଂ ମୋର ବାଲ୍ୟଜୀବନର ବିକାଶର ଇତିହାସକୁ ଏକ ସ୍ପଷ୍ଟ ପରିପ୍ରେକ୍ଷୀରେ ଦେଖେ, ମୋର ନିଜର ମନୋଭାବ ଏବଂ ମୋର ଦେଶବାସୀଙ୍କ ମାନସରେ ଯେଉଁ ପରିବର୍ତ୍ତନ ଘଟିଯାଇଛି, ସେଥିରେ ମୁଁ ଆଚମ୍ବିତ ହୁଏ । ଏହି ପରିବର୍ତ୍ତନ ଗର୍ଭରେ ଧରିଛି ପ୍ରଗାଢ଼ ଏକ ବିୟୋଗାତ୍ମକତାର ହେତୁ ।

"ସେହି ପ୍ରାରମ୍ଭିକ କାଳରେ, ଯାହାଙ୍କ ପରିଚୟ ଆମେ ଜାଣିବାକୁ ପାଇଥିଲୁ ସେହି ଇଂରେଜ ଜାତିର ସମସାମୟିକ ଇତିହାସ ସଙ୍ଗେ ଜଡ଼ିତ ଥିଲା ମାନବର ବୃହତ୍ତର ସଂସାର ସଙ୍ଗେ ଆମର ପ୍ରତ୍ୟକ୍ଷ ସମ୍ପର୍କର କଥା । ଆମର ସାଗର ତୀରରେ ଏହି ଯେଉଁ ନବାଗତମାନେ ଅବତରଣ କଲେ, ସେମାନଙ୍କ ସମ୍ପର୍କରେ ଆମର ଧାରଣା ସୃଷ୍ଟି ହୋଇଥିଲା ମୁଖ୍ୟତଃ ସେମାନଙ୍କର ମହାନ୍ ସାହିତ୍ୟ ମାଧ୍ୟମରେ । ସେହି କାଳରେ ଯେଉଁ ଶିକ୍ଷା ଆମ୍ଭମାନଙ୍କୁ ଦିଆଯାଉଥିଲା ତାହା ଯଥେଷ୍ଟ ନ ଥିଲା, ସେଥିରେ ବିବିଧତା ନଥିଲା କିମ୍ବା ବୈଜ୍ଞାନିକ ଜିଜ୍ଞାସାର ଭାବନା ବି ନଥିଲା । ଏପରିଭାବରେ; ସେହି ଶିକ୍ଷାର ପରିସର ଖୁବ୍ ସୀମିତ ହୋଇଥିବାରୁ ସେକାଳର ଶିକ୍ଷିତ ଲୋକେ ଇଂରେଜୀ ଭାଷା ଓ ସାହିତ୍ୟ ପ୍ରତି ଆଗ୍ରହୀତ ହେଉଥିଲେ । ବାର୍କଙ୍କ ଓଜସ୍ୱିନୀ ବକ୍ତୃତା, ମେକଲେଙ୍କ ଦୀର୍ଘ ବାକ୍ୟ, ସେକ୍ସପିଅରଙ୍କ ନାଟକ ଓ ବାଇରନଙ୍କ କବିତାକୁ କେନ୍ଦ୍ର କରି ଆଲୋଚନା ଓ ସର୍ବୋପରି ଊନବିଂଶ ଶତକର ଇଂରେଜୀ ରାଜନୀତିର ଉଦାରପନ୍ଥା ଯେନି ସେମାନଙ୍କର ଦିବସ ରଜନୀ ମୁଖରିତ ହେଉଥିଲା ।

"ସେହି ସମୟରେ ଜାତୀୟ ସ୍ୱାଧୀନତା ହାସଲ ନିମନ୍ତେ କେତେକ ପରୀକ୍ଷାମୂଳକ ଉଦ୍ୟମ କରାଯାଉଥିଲେ ସୁଦ୍ଧା ଅନ୍ତର ଭିତରେ ଇଂରେଜ ଜାତିର ଉଦାରତା ଉପରେ ଆମେ ଆସ୍ଥା ହରାଇନଥିଲୁ । ଆମ ନେତାମାନଙ୍କ ହୃଦୟରେ ଏହି ବିଶ୍ୱାସ ଏତେଭଳି ପ୍ରତିଷ୍ଠିତ ଥିଲା ଯେ ବିଜେତା ପରାଜିତ ନିମନ୍ତେ ଅନୁଗ୍ରହ କରି ସ୍ୱାଧୀନତାର ପଥ ଉନ୍ମୁକ୍ତ କରିଦେବ ବୋଲି ସେମାନେ ଆଶା ପୋଷଣ କରୁଥିଲେ । ସେମାନଙ୍କର ଏହି ବିଶ୍ୱାସ ଅହେତୁକ ନଥିଲା । ସେହି ସମୟରେ ସେ କେଉଁ ଦେଶର ଉତ୍ପୀଡ଼ିତ ପଳାତକ ପାଇଁ ଇଂଲଣ୍ଡ ଥିଲା ଗୋଟାଏ ବଡ଼ ଆଶ୍ରୟ । ନିଜ ଜାତିର ସମ୍ମାନ ରକ୍ଷା ନିମନ୍ତେ ଯେଉଁ ରାଜନୈତିକ ଶହୀଦମାନେ ଦୁଃଖ ଯନ୍ତ୍ରଣା ଭୋଗିଥିଲେ, ସେମାନଙ୍କୁ ଇଂରେଜ ଜାତି ଅକୁଣ୍ଠିତ ଭାବରେ ସ୍ୱାଗତ କରୁଥିଲା । ଇଂରେଜ ଚରିତ୍ରରେ ଉଦାର ମାନବତାର ଚିହ୍ନ ଲକ୍ଷ୍ୟକରି ମୁଁ ମୁଗ୍ଧ ହୋଇଥିଲି ଏବଂ ସେମାନଙ୍କୁ ମୁଁ ମୋର ଚରମ ସମ୍ମାନର ପାତ୍ର ମଣୁଥିଲି । ସେମାନଙ୍କର ଜାତୀୟ ଚରିତ୍ରର ଏହି ଉଦାରତା ସାମ୍ରାଜ୍ୟବାଦୀ ଅହଂକାର ଦ୍ୱାରା ଦୂଷିତ ହୋଇଯାଇନଥିଲା । ଏହିଭଳି ସମୟରେ, ବାଲ୍ୟ ବୟସରେ, ଇଂଲଣ୍ଡରେ ପାର୍ଲାମେଣ୍ଟ

ଭିତରେ ଓ ବାହାରେ ଜନ୍ ବ୍ରାଇଟଙ୍କ ବକ୍ତୃତା ଶୁଣିବାର ସୁଯୋଗ ମୁଁ ପାଇଥିଲି । ସେହି-ସବୁ ବକ୍ତୃତାର ବଦାନ୍ୟ ମୌଳିକ ଉଦାର ନୀତି ସମସ୍ତ ପ୍ରକାର ସଙ୍କୀର୍ଣ୍ଣ ଜାତୀୟ ବନ୍ଧ ପ୍ଲାବିତ କରି ମୋର ମନରେ ଏପରି ଗମ୍ଭୀର ଭାବରେ ରେଖାପାତ କରିଥିଲା ଯେ, ତାର କିୟଦଂଶ ଆଜିଯାଏ ଏହି ନିର୍ଦୟ ମୋହମୁକ୍ତ ଦିନରେ ଲୁଚି ରହିଯାଇଛି ।

"ଆମର ଶାସକମାନଙ୍କ ଦୟା ଉପରେ ଏଭଳି ଘୃଣ୍ୟ ନିର୍ଭରଶୀଳତାର ଭାବନା ଆମ ପକ୍ଷରେ କିଛି ଗର୍ବର ବସ୍ତୁ ନଥିଲା । ସେ ଯାହାହେଉ, କୌଣସି ପରଦେଶୀଠାରେ ଲୁଚି ମାନବିକ ମହତ୍ତ୍ୱ ପ୍ରକଟିତ ହେଲେ ଆମେ ପୂର୍ଣ୍ଣପ୍ରାଣରେ ଆମର ସ୍ୱୀକୃତି ଯେପରି ଦେଇଥାଉ ତାହା ହିଁ ଲକ୍ଷ୍ୟ କରିବାର କଥା । ମାନବତାର ଯାହାକିଛି ସର୍ବଶ୍ରେଷ୍ଠ ଓ ମହତ୍ତମ ଦାନ କୌଣସି ନିର୍ଦ୍ଦିଷ୍ଟ ଏକ ଜାତି ବା ଦେଶର ଏକାଧିପତ୍ୟଭୁକ୍ତ ହୋଇନପାରେ । ତାର ପରିସର ସୀମିତ ହୋଇନପାରେ କିମ୍ବା କୌଣସି କୃପଣର ଗୁପ୍ତଧନ ହୋଇନପାରେ । ସେଥିଲାଗି ଅତୀତରେ ଇଂରେଜୀ ସାହିତ୍ୟ ଯେପରି ଆମକୁ ମାନସିକ ଖାଦ୍ୟ ଯୋଗାଉଥିଲା, ଆଜି ବି ଆମର ଅନ୍ତରତମ ପ୍ରଦେଶରେ ତାର ଧ୍ୱନି ଗୁଞ୍ଜରିତ ହେଉଛି ।"

ଜାତିର ପରମ୍ପରା ଦ୍ୱାରା ବ୍ୟବସ୍ଥିତ, ଉଚିତ ଆଚରଣରେ ଭାରତୀୟ ଆଦର୍ଶ ବିଷୟରେ ଉଲ୍ଲେଖ କରିବାକୁଯାଇ ରବୀନ୍ଦ୍ରନାଥ କହିଛନ୍ତି : "ସ୍ୱୟଂସଙ୍କୀର୍ଣ୍ଣ ଓ ଦୀର୍ଘକାଳ ଧରି ସମ୍ମାନିତ ଏହିସବୁ ସାମାଜିକ ରୀତିର ଜନ୍ମ ସେହି ସୀମିତ ଭୌଗୋଳିକ ପ୍ରଦେଶରେ ଘଟିଲା ଓ ସେଠାରେ ହିଁ ପ୍ରଚଳିତ ହେଲା, ଯାହାକୁ ବ୍ରହ୍ମାବର୍ତ୍ତ ନାମରେ ଅଭିହିତ କରାଯାଇଥାଏ ଓ ଯାହାର ଉଭୟ ପାର୍ଶ୍ୱରେ ସରସ୍ୱତୀ ଓ ଦୃଷଦବତୀ ନଦୀମାନ ପ୍ରବାହିତ । ଏପରି ଭାବରେ ଆଡ଼ମ୍ବରପୂର୍ଣ୍ଣ ରୀତିବାଦ ଧୀରେ ଧୀରେ ମୁକ୍ତ ବିଶ୍ୱକୁ ପରାଭୂତ କଲା ଓ ସଦାଚରଣର ସେହି ବିଶ୍ୱର ଯାହା ମନୁ ବ୍ରହ୍ମାବର୍ତ୍ତରେ ସୁପ୍ରତିଷ୍ଠିତ ଦେଖିଥିଲେ ଧୀରେ ଧୀରେ ସାମାଜିକ ଅତ୍ୟାଚାରରେ ପରିଣତ ହେଲା ।

"ମୋର ବାଲ୍ୟବୟସରେ, ଇଂରେଜୀ ଶିକ୍ଷାରେ ପାଳିତ ବଙ୍ଗର ଶିକ୍ଷିତ ତଥା ମାର୍ଜିତ ଲୋକଙ୍କ ମନୋଭାବ ସମାଜର ଏହିସବୁ କଠୋର ବିଧିବିଧାନ ବିରୁଦ୍ଧରେ ବିଦ୍ରୋହ ଭାବନାରେ ପୂର୍ଣ୍ଣ ଥିଲା···ଆଚରଣର ଏହିସବୁ ଧରାବନ୍ଧା ନୀତିନିୟମ ସ୍ଥାନରେ ଆମେ ଇଂରେଜୀ ଭାଷାରେ 'ସିଭିଲିଜେସନ' କହିଲେ ଯାହା ବୁଝାଏ ତାର ଆଦର୍ଶ ଗ୍ରହଣ କରିନେଇଥିଲୁ ।"

"ଆମ ପରିବାରରେ ଏହି ପରିବର୍ତ୍ତନର ଭାବନା ତାର ନିଛକ ଯୁକ୍ତିଯୁକ୍ତ ତଥା ନୈତିକ ବଳ ଦୃଷ୍ଟିରୁ ସ୍ୱାଗତ ଲଭିଥିଲା ଏବଂ ଆମ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ତାର ପ୍ରଭାବ ଅନୁଭୂତ ହୋଇଥିଲା । ସେହି ବାତାବରଣରେ ଜନ୍ମଲାଭ କରିଥିବା ହେତୁରୁ ଓ ସାହିତ୍ୟ ପ୍ରତି ଆମର ଗୋଟାଏ ସ୍ୱଜ୍ଞାତପ୍ରବଣତା ରହିଥିବା ହେତୁରୁ ମୁଁ ଇଂଲଣ୍ଡକୁ ମୋର ହୃଦୟ ସିଂହାସନରେ ଅଧିଷ୍ଠିତ କରିଥିଲି । ଏପରି ଭାବରେ, ମୋର ଜୀବନର ପ୍ରଥମ କେତୋଟି ଅଧ୍ୟାୟ ଶେଷ ହେଲା । ତା'ପରେ ଆସିଲା ମୋହମୁକ୍ତିର କ୍ଲେଶକର ଅନୁଭୂତି ସଙ୍ଗେ ବିଚ୍ଛେଦର ଲଗ୍ନ ଯେବେ କ୍ରମଶଃ ମୁଁ ଉପଲବ୍ଧି କଲି ଯେ ଯେଉଁମାନେ ସଭ୍ୟତାର ସର୍ବୋଚ୍ଚ ସତ୍ୟକୁ

ସ୍ୱୀକାର କରନ୍ତି, ଜାତୀୟ ସ୍ୱାର୍ଥ ସଙ୍ଗେ ଜଡ଼ିତ ହେବା ପ୍ରଶ୍ନ ଦେଖାଦେଲେ, କେତେ ସହଜରେ ପୁଣି ସେ ସବୁ ଅସ୍ୱୀକାର କରିଦେଇ ନପାରନ୍ତି !''

## ୭. ୧୮୫୭ର ମହାନ୍ ବିଦ୍ରୋହ : ଜାତିବାଦ

ପ୍ରାୟ ଶହେ ବର୍ଷର ବ୍ରିଟିଶ ରାଜତ୍ୱ ପରେ, ବଙ୍ଗ ସେଥିପ୍ରତି ଏକରକମ ସହଜ ହୋଇ ଯାଇଥିଲା । କୃଷୀମାନେ ଦୁର୍ଭିକ୍ଷ ତଥା ବିବିଧ ନୂତନ ଅର୍ଥନୈତିକ ବୋଝଦ୍ୱାରା ବିଧ୍ୱସ୍ତ ହୋଇ ପଡ଼ିଥିଲେ । ନୂତନ ବୁର୍ଜୁଆ ଶ୍ରେଣୀ ପ୍ରେରଣା ପାଇଁ ଚାହୁଁଥିଲେ ପଶ୍ଚିମକୁ, ଆଉ ଆଶା କରୁଥିଲେ ଯେ ଇଂରେଜର ଉଦାରନୀତି ଜରିଆରେ ହିଁ ପ୍ରଗତି ସାଧିତ ହେବ । କିନ୍ତୁ ବସ୍ତୁତଃରେ ଏ ପ୍ରକାର ଭାବ ହିଁ ଥିଲା ଦକ୍ଷିଣ ଓ ପଶ୍ଚିମ ଭାରତରେ, ମାନ୍ଦ୍ରାଜ ଓ ବମ୍ବେରେ; କିନ୍ତୁ ଉତ୍ତରାଞ୍ଚଳର ପ୍ରଦେଶମାନଙ୍କରେ ଏ ପ୍ରକାର ଆତ୍ମସମର୍ପଣ କରିବା କିମ୍ବା ଶାସନ ବ୍ୟବସ୍ଥା ସଙ୍ଗେ ବଙ୍ଗ ଭଳି ସହଜରେ ଚଳିଯିବାର ଭାବ ନଥିଲା ଏବଂ ବିଦ୍ରୋହର ଭାବନା, ବିଶେଷ ପରିମାଣରେ ସାମନ୍ତବାଦୀ ସର୍ଦ୍ଦାର ଓ ସେମାନଙ୍କର ଅନୁଗାମୀଙ୍କ ଭିତରେ, କ୍ରମଶଃ ବର୍ଦ୍ଧିତ ହେଉଥିଲା । ଜନସାଧାରଣଙ୍କ ଭିତରେ ମଧ୍ୟ ଗୁରୁ ଅସନ୍ତୋଷ ଓ ସୁତୀବ୍ର ଏକ ବ୍ରିଟିଶ ବିରୋଧୀ ଭାବ ବ୍ୟାପକ ଥିଲା । ଉପରବର୍ଗମାନେ ପରଦେଶୀର ଅପମାନକର ତଥା ଉଦ୍ଧତ ଆଚରଣ ଲାଗି ଅତ୍ୟନ୍ତ ବିରକ୍ତ ଓ କ୍ଷୁବ୍ଧ ହେଉଥିଲେ । ସାଧାରଣ ଲୋକେ ଇଷ୍ଟ ଇଣ୍ଡିଆ କମ୍ପାନୀ କର୍ମଚାରୀମାନଙ୍କର ପ୍ରବଳ ଲାଳସା ଓ ଅଜ୍ଞତା ଲାଗି ଦୁଃଖ ଭୋଗୁଥିଲେ । ଦେଶର ଲୋକଙ୍କ ବିଚାର ପ୍ରତି ତିଳେମାତ୍ର ଧ୍ୟାନ ନଦେଇ ଏହି କର୍ମଚାରୀମାନେ ବହୁକାଳରୁ ସମ୍ମାନିତ ଲୋକପ୍ରଥାମାନଙ୍କ ପ୍ରତି ଅବଜ୍ଞା ପ୍ରଦର୍ଶନ କରୁଥିଲେ । ଏପରିକି ନୂତନ କରି ଯେଉଁ ନ୍ୟାୟ-ପ୍ରଣାଳୀ ସେମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ହେଲା, ସେଥିରେ ନାନାବିଧ ଜଟିଳତା ଏବଂ ଦେଶର ଭାଷା ଓ ପ୍ରଥା ସମ୍ପର୍କରେ ବିଚାରକମାନଙ୍କର ସମ୍ପୂର୍ଣ୍ଣ ଅଜ୍ଞତା ଲୋକଙ୍କ ପକ୍ଷରେ ଏକ ଆତଙ୍କର କାରଣ ହୋଇଥିଲା ।

ଖ୍ରୀ: ୧୮୧୭ ମସିହା ସାର୍ ଥୋମାସ୍ ମୁନ୍‌ରୋ, ବ୍ରିଟିଶ ଶାସନର ସୁଯୋଗ ସୁବିଧା ଦର୍ଶାଇବା ସଙ୍ଗେ ସଙ୍ଗେ, ଗଭର୍ଣ୍ଣର ଜେନେରାଲ ଲର୍ଡ୍ ହେଷ୍ଟିଂସ୍‌ଙ୍କ ନିକଟକୁ ଲେଖିଥିଲେ: ''ଏହିସବୁ ସୁବିଧା ସୁଯୋଗ କିଛି ଶସ୍ତାରେ ଦିଆଯାଇନି । ସ୍ୱାଧୀନତା, ଜାତୀୟ ଚରିତ୍ର ଏବଂ ଆଉ ଯାହା କିଛି ଗୋଟାଏ ଜାତିକୁ ସମ୍ମାନିତ କରେ ସେସବୁ ବଳିଦାନ କରି ଦିଆଯାଇଛି··· ଅତଏବ, ବ୍ରିଟିଶ ଅସ୍ତ୍ର ଦ୍ୱାରା ଭାରତ ଉପରେ ବିଜୟ ହାସଲ କରିବାର ଯାହା ପରିଣତି ହୋଇଛି; ତାହା ଭାରତୀୟଙ୍କ ଉନ୍ନତି ନୁହେଁ, ସେମାନଙ୍କୁ ପତିତ କରିବାର ଏକ ପ୍ରକ୍ରିୟା । ବିଶ୍ୱରେ ଏପରି କୌଣସି ବିଜୟର ଦୃଷ୍ଟାନ୍ତ ହୁଏତ ନାହିଁ ଯେଉଁଠି ବିଜିତମାନଙ୍କୁ, ବ୍ରିଟିଶ ଶାସିତ ଭାରତରେ କରାଗଲା ଭଳି, ସେମାନଙ୍କ ଦେଶର ଶାସନରେ ଅଂଶଗ୍ରହଣ କରିବାର ସୁଯୋଗରୁ ସମ୍ପୂର୍ଣ୍ଣ ଭାବରେ ବଞ୍ଚିତ କରାଯାଇଛି ।''

ଶାସନକାଳରେ ଭାରତୀୟମାନଙ୍କୁ ନିଯୁକ୍ତ ଦେବା ଲାଗି ମୁନ୍‌ରୋ ଯୁକ୍ତି ବାଢ଼ିଥିଲେ । ବର୍ଷକ ପରେ ସେ ପୁଣି ଲେଖିଥିଲେ: ''ବିଦେଶୀ ବିଜେତାମାନେ ପରାଜିତ ଲୋକଙ୍କ ପ୍ରତି

ହିଂସାଚରଣ କରିଚନ୍ତି; ତାହା ମଧ୍ୟ ବହୁଧା ଅବିଶ୍ୱାସ ନିଷ୍ଠୁରତାରେ ପରିଣତ ହୋଇଚି; କିନ୍ତୁ ଆମେ ଭାରତୀୟଙ୍କୁ ଯେପରି ଘୃଣା କରୁଥାଉଁ, ସେପରି କୌଣସି ବିଜେତା ବିଜିତ ପ୍ରତି କେବେହେଲେ କରିନାହିଁ । ସମଗ୍ର ଏକ ଜାତିକୁ ବିଶ୍ୱାସ ନିମନ୍ତେ ଅଯୋଗ୍ୟ, ସାଧୁତା ନିମନ୍ତେ ଅସମର୍ଥ ଏବଂ ଯେପରି ସ୍ଥଳେ ସେମାନେ କେବଳ ନିଯୁକ୍ତି ନିମନ୍ତେ ଯୋଗ୍ୟ, ଯେଉଁଠି ସେମାନଙ୍କୁ ବାଦ ଦିଆଯାଇ ପାରିବନି ବୋଲି କେହି କେବେ କଳଙ୍କ ରଟନା କରିନି । ଆମ ଛିଦ୍ରଗ୍ରସ୍ତ୍ୱାଭଲେ ଆଶ୍ରିତ, ଗୋଟାଏ ଜାତିର ଚରିତ୍ରକୁ ଏଭଳି ନ୍ୟୂନ କରିବା ଅନୁଦାରତା କେବଳ ନୁହେଁ, ଅବିଜ୍ଞତା ଭଳି ପ୍ରତୀତ ହୁଏ ।'' (୧)

ଦୁଇଟି ଶିଖ୍ ଯୁଦ୍ଧ ପରେ ଖ୍ରୀ: ୧୮୫୦ ବେଳକୁ ବ୍ରିଟିଶ୍ ଆଧିପତ୍ୟ ପଞ୍ଜାବ ଉପରେ ବିସ୍ତୃତ ହେଲା । ମହାରାଜା ରଣଜିତ୍ ସିଂହ, ଯିଏ ପଞ୍ଜାବରେ ଶିଖ୍ ରାଜ୍ୟକୁ ପ୍ରତିଷ୍ଠିତ ଓ ବିସ୍ତୃତ କରିଥିଲେ, ଖ୍ରୀ: ୧୮୩୯ରେ ସଂସାରରୁ ବିଦାୟ ନେଲେ । ଖ୍ରୀ: ୧୮୫୬ରେ ଆଉଧ୍ ରାଜ୍ୟ ଅପହୃତ ହେଲା । କାର୍ଯ୍ୟତଃ ପଚିଶ ବର୍ଷ ଧରି ଆଉଧ୍, କରଦ ରାଜ୍ୟ ହେଉଥିବାରୁ, ବ୍ରିଟିଶ ଶାସନାଧୀନ ଥିଲା ଏବଂ ତାର ନାମମାତ୍ର ଶାସକ ଥିଲା ଅସହାୟ ଓ ଅଧଃପତିତ । ବ୍ରିଟିଶ ରେସିଡେଣ୍ଟ୍ କେବଳ ଥିଲା ସର୍ବଶକ୍ତିମାନ୍ । ଆଉଧ୍‌ରେ ଦୁର୍ବିପାକର ଅନ୍ତ ନଥିଲା ଓ ତାହା ପ୍ରଦର୍ଶିତ କରୁଥିଲା ସହାୟକ ସନ୍ଧି ବ୍ୟବସ୍ଥାର ସମସ୍ତ କିଛି ଅବଗୁଣ ।

ଖ୍ରୀ: ୧୮୫୭ ମଇ ମାସରେ ମିରଟ୍‌ରେ ଭାରତୀୟ ସିପାହି ବିଦ୍ରୋହୀ ହେଲେ । ଏହି ବିଦ୍ରୋହକୁ ଗୋପନରେ ଖୁବ୍ ଭଲ ଭାବରେ ସଙ୍ଗଠିତ କରାଯାଇଥିଲା; କିନ୍ତୁ ଯଥା ସମୟ ପୂର୍ବରୁ ତାର ବହିଃପ୍ରକାଶ ବିଦ୍ରୋହର ନେତାମାନଙ୍କ ଯୋଜନା ବିଗାଡ଼ି ଦେଲା । ସାଧାରଣ ସାମରିକ ବିଦ୍ରୋହ ଅପେକ୍ଷା ଏହା ପଛରେ ଅଧିକ କିଛି ଗୁରୁତ୍ୱ ଥିଲା ଏବଂ ଅତି କ୍ଷିପ୍ର ଗତିରେ ଭାରତର ଅନ୍ୟାନ୍ୟ ଅଞ୍ଚଳକୁ ବ୍ୟାପ୍ତ ହୋଇ ଏହା ଗୋଟାଏ ଗଣବିଦ୍ରୋହ ଓ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଚରିତ୍ର ଆହରଣ କଲା । ଏହି ଗଣବିଦ୍ରୋହ ଦିଲ୍ଲୀ, ଯୁକ୍ତ-ପ୍ରଦେଶ (ଉତ୍ତର ପ୍ରଦେଶ), ମଧ୍ୟ ଭାରତ ଓ ବିହାରର କେତେକ ଅଞ୍ଚଳରେ ସୀମିତ ଥିଲା । ସାମନ୍ତବାଦୀ ସର୍ଦ୍ଦାର ଓ ସେମାନଙ୍କ ସମର୍ଥକମାନଙ୍କ ଦ୍ୱାରା ପରିଚାଳିତ ଓ ସୁପରିବ୍ୟାପ୍ତ ବିଦେଶୀ ବିରୋଧୀ ମନୋଭାବ ଦ୍ୱାରା ପରିପୁଷ୍ଟ, ସାରତଃ ଏହା ଥିଲା [illegible]ବାଦୀ ବିକ୍ଷୋଭ । ବୃଦ୍ଧ ଓ ଶକ୍ତିହୀନ, ଦିଲ୍ଲୀ ଲାଲକିଲ୍ଲାରେ ଉପବିଷ୍ଟ, ମୋଗଲ[illegible] ପ୍ରତି ଅନୁରକ୍ତ ଦୃଷ୍ଟିରେ ଦେଖିବା ବିଦ୍ରୋହୀ ନେତାମାନଙ୍କ ପକ୍ଷରେ ଥିଲା ଅବଶ୍ୟମ୍ଭାବୀ । ବିଦ୍ରୋହରେ ହିନ୍ଦୁ ଓ ମୁସଲମାନ ଉଭୟେ ପୂର୍ଣ୍ଣ ଅଂଶଗ୍ରହଣ କରିଥିଲେ ।

ଏହି ବିଦ୍ରୋହରେ ବ୍ରିଟିଶ ଶାସନକୁ ନିଜର ସମସ୍ତ ଶକ୍ତି ଖଟାଇବାକୁ ପଡ଼ିଲା ଓ ପରି-ଶେଷରେ ଭାରତୀୟଙ୍କ ସାହାଯ୍ୟରେ ହିଁ ତାହା ଦମନ କରାଗଲା । ବିଦେଶୀ ଶାସନ ଦୂର କରିବାପାଇଁ ଶେଷ ତଥା ପ୍ରାଣାନ୍ତ ଉଦ୍ୟମ କରୁଥିବା ପୁରାତନ ଶାସନର ସମସ୍ତ କିଛି

(୧) ଥମ୍ପସନ୍ ଉଦ୍ଧାର କରିଚନ୍ତି ତାଙ୍କର 'ଦି ମେକିଂ ଅଫ୍ ଦି ଇଣ୍ଡିଆନ୍ ପ୍ରିନ୍‌ସେସ୍' ବହିରେ ପୃ. ୨୭୩-୨୭୪ ।

ଅନ୍ତର୍ନିହିତ ଦୁର୍ବଳତା ଏହା ପ୍ରକଟିତ କଲା । ବହୁ ଅଞ୍ଚଳରେ ଏହି ସାମନ୍ତବାଦୀ ସର୍ଦ୍ଦାର-ମାନଙ୍କ ପ୍ରତି ଜନସାଧାରଣଙ୍କ ସହାନୁଭୂତି ଅବଶ୍ୟ ଥିଲା; କିନ୍ତୁ ସେମାନେ ଥିଲେ ସମ୍ପୂର୍ଣ୍ଣ ଅସମର୍ଥ, ଅସଙ୍ଗଠିତ ଏବଂ ସେମାନଙ୍କର କୌଣସି ରଚନାତ୍ମକ ଆଦର୍ଶ କିମ୍ବା ସାମୂହିକ କଲ୍ୟାଣ ପରିକଳ୍ପନା ନଥିଲା । ଇତିହାସରେ ସେମାନେ ସେମାନଙ୍କର ଭୂମିକାରେ ଅଭିନୟ କରିସାରିଥିଲେ ଏବଂ ଭବିଷ୍ୟତ ଭିତରେ ସେମାନଙ୍କପାଇଁ ସ୍ଥାନ ନଥିଲା । ସେମାନଙ୍କର ଅନେକ ସମର୍ଥକ ସାଧାରଣ ସହାନୁଭୂତି ସତ୍ତ୍ୱେ, ପରିଣାମଦର୍ଶିତା ବିକ୍ରମ ଅପେକ୍ଷା ଯୁକ୍ତିଯୁକ୍ତ ମଣି, ଦ୍ରଷ୍ଟା ଭାବରେ ରହି କେଉଁ ପକ୍ଷ ଜୟଲାଭ କରିବ ସେ ଅପେକ୍ଷାରେ ଥିଲେ । ଅନେକେ ଗୃହଶତ୍ରୁର ଭୂମିକା ନେଲେ । ସମଗ୍ର ଦେଶୀୟ ରାଜ୍ୟର ରାଜାମାନେ ଏବେ ଏ ବିବାଦର ଦୂରରେ ରହିଥିଲେ କିମ୍ବା ବ୍ରିଟିଶଙ୍କୁ ସାହାଯ୍ୟ କରିଥିଲେ; କାରଣ ସେମାନେ ଯାହା ଆହରଣ କରିଥିଲେ କିମ୍ବା ଯାହା କୌଣସିମତେ ରଖିପାରିଥିଲେ ସେତକଙ୍କୁ ଅନିଶ୍ଚିତତା ଭିତରେ ଛାଡ଼ିଦେବା ପାଇଁ ଆତଙ୍କିତ ଥିଲେ । ବିଦ୍ରୋହର ନେତାମାନଙ୍କ ଭିତରେ ଜାତୀୟଭାବ ତଥା ଐକ୍ୟବୋଧ ପ୍ରାୟ ନଥିଲା । ସେମାନଙ୍କର ଯେତେ ସବୁ ସାମନ୍ତବାଦୀ ବିଶେଷାଧିକାର ବଜାୟ ରଖିବାର ଅଭିଳାଷ ସଙ୍ଗେ ମିଶିଥିଲା ଗୋଟାଏ ବିଦେଶୀ ବିରୋଧୀ ମନୋଭାବ । ତାହା ଲୋକଙ୍କୁ ଜାତୀୟତାର ଆଦର୍ଶରେ ଅନୁପ୍ରାଣିତ କରିପାରି ନଥାନ୍ତା ।

ଇଂରେଜମାନେ ଗୁର୍ଖାଙ୍କ ସାହାଯ୍ୟ ପାଇଲେ ଏବଂ ଆଶ୍ଚର୍ଯ୍ୟର କଥା, ଯେଉଁ ଶିଖମାନେ ସେମାନଙ୍କର ଶତ୍ରୁ ଥିଲେ ଓ ମାତ୍ର କେତେ ବର୍ଷ ପୂର୍ବେ ପରାଜିତ ହୋଇଥିଲେ, ସେମାନେ ମଧ୍ୟ ଇଂରେଜଙ୍କୁ ସାହାଯ୍ୟ କଲେ । ଶିଖମାନଙ୍କୁ ଏପରି ଭାବରେ ନିଜ ପକ୍ଷଭୁକ୍ତ କରି ନେବା ବାସ୍ତବିକ ଇଂରେଜ ବୁଦ୍ଧିମତ୍ତାର ପରିଚାୟକ । ତେବେ ସେ ଦଳର ଶିଖମାନଙ୍କ ପକ୍ଷରେ ଏହା ପ୍ରଶଂସା କିମ୍ବା ନିନ୍ଦାର କାରଣ ନିଜ ନିଜ ଦୃଷ୍ଟିଭଙ୍ଗୀ ଉପରେ ନିର୍ଭର କରେ । ସେ ଯାହାହେଉ, ଏଥିରେ ଆଉ ସନ୍ଦେହ ନାହିଁ ଯେ ବିଦ୍ରୋହରେ ସେହି ଜାତୀୟ ଭାବର ଅଭାବ ଥିଲା; ଯାହା ଭାରତର ଜନସାଧାରଣଙ୍କୁ ଗୋଟିଏ ବନ୍ଧନରେ ବାନ୍ଧି ପାରିଥା'ନ୍ତା । ଆଧୁନିକ ଜାତୀୟତାବାଦର ଚେତନା ସେତେବେଳେ ଆହୁରି ଜାଗ୍ରତ ହୋଇନଥିଲା । ଯେଉଁ ଶକ୍ତି ବଳରେ ପ୍ରକୃତ ସ୍ୱାଧୀନତା ସେ ହାସଲ କରିବ, ସେଥିପାଇଁ ଭାରତକୁ ଆହୁରି ବହୁ ଦୁଃଖ ଦୁର୍ଦ୍ଦଶା ଭିତର ଦେଇ ଗତି କରିବାକୁ ଥିଲା । କୌଣସି ପରାଜିତ ଆଦର୍ଶ ନିମନ୍ତେ, ଅର୍ଥାତ୍ ସାମନ୍ତବାଦୀ ବ୍ୟବସ୍ଥା ନିମନ୍ତେ ଲଢ଼ାଇ କଲେ ସ୍ୱାଧୀନତା ହାସଲ ହୋଇପାରି-ନଥାନ୍ତା ।

ଛକାପଞ୍ଝା ଲଢ଼ାଇ ବା ଗରିଲା ଯୁଦ୍ଧର ଯେଉଁ କେତେଜଣ ନାୟକଙ୍କୁ ବିଦ୍ରୋହ ଲୋକ-ଲୋଚନକୁ ଆଣିଥିଲା, ବାହାଦୁର ଶାହଙ୍କ ଅନ୍ୟତମ ଆତ୍ମୀୟ ଫିରୋଜଶାହ ଥିଲେ ସେମାନଙ୍କ ଭିତରୁ ଜଣେ; କିନ୍ତୁ ସେମାନଙ୍କ ଭିତରେ ସର୍ବାପେକ୍ଷା ପ୍ରତିଭାବାନ୍ ନେତା ଥିଲେ ତାନ୍ତିଆ ଟୋପି, ଯିଏ ପରାଜୟକୁ ଆଖି ଆଗରେ ଦେଖି ସୁଦ୍ଧା କେତେ ମାସ ପର୍ଯ୍ୟନ୍ତ ଇଂରେଜମାନଙ୍କୁ ପ୍ରବଳ ଭାବରେ ହଇରାଣ କରିଥିଲେ । ପରିଶେଷରେ, ନିଜ ଲୋକଙ୍କ

ପାଖରୁ ସାହାଯ୍ୟ ଓ ସ୍ୱାଗତ ଆଶାକରି ସେ ଯେବେ ନର୍ମଦା ନଦୀ ପାରି ହୋଇ ମରାଠା ଅଞ୍ଚଳରେ ପ୍ରବେଶ କଲେ, ସ୍ୱାଗତ ତ ଦୂରର କଥା, ଶିକାର ହେଲେ ବିଶ୍ୱାସଘାତକତାର । ବିଦ୍ରୋହର ନେତାମାନଙ୍କ ଭିତରୁ ଜଣକର ନାମ ଯାହା ଆଜି ବି ଜନଶ୍ରୁତିରେ ସମ୍ମାନିତ ରହିଛି, ସେ ଥିଲେ ଝାନ୍‌ସିର କୋଡ଼ିଏ ବର୍ଷ ବୟସ୍କା ରାଣୀ ଲକ୍ଷ୍ମୀବାଈ । ଏହି ବୀରାଙ୍ଗନା ଯୁଦ୍ଧ-କ୍ଷେତ୍ରରେ ହିଁ ପ୍ରାଣତ୍ୟାଗ କରିଥିଲେ । ତାଙ୍କ ବିରୁଦ୍ଧରେ ଲଢ଼ିଥିବା ଇଂରେଜ ସେନାପତି ବିଦ୍ରୋହର ନେତାମାନଙ୍କ ମଧ୍ୟରେ ଲକ୍ଷ୍ମୀବାଈଙ୍କୁ 'ସର୍ବଶ୍ରେଷ୍ଠ ଓ ସାହସିକତାରେ ଅତୁଳନୀୟ' ବୋଲି ଅଭିହିତ କରିଛନ୍ତି ।

କାନପୁର ଓ ଅନ୍ୟତ୍ର ଇଂରେଜଙ୍କ ପକ୍ଷରୁ ବିଦ୍ରୋହରେ ଜୀବନ ହରାଇଥିବା ଇଂରେଜ ସୈନ୍ୟମାନଙ୍କ ନିମନ୍ତେ ଏକାଧିକ ସ୍ମାରକ ଉତ୍ତୋଳିତ ହୋଇଛି । ଭାରତୀୟଙ୍କ ଭିତରୁ ଯେଉଁମାନେ ଜୀବନଦାନ କଲେ ସେମାନଙ୍କର କୌଣସି ସ୍ମାରକ ନାହିଁ । ବିଦ୍ରୋହୀ ଭାରତୀୟମାନେ କେବେକେବେ ନିଷ୍ଠୁର ତଥା ବର୍ବର ଆଚରଣ କରିଛନ୍ତି । ସେମାନେ ଥିଲେ ଅସଙ୍ଗଠିତ, ସମ୍ପୂର୍ଣ୍ଣ ଆତ୍ମପ୍ରକାଶ ନିମନ୍ତେ ଅସମର୍ଥ ଏବଂ ବ୍ରିଟିଶ ଅତ୍ୟାଚାରର ସମ୍ବାଦ ପାଇ ବହୁଧା କ୍ରୁଦ୍ଧ ରହୁଥିଲେ; କିନ୍ତୁ ସେହି ଚିତ୍ରର ଆଉ ଏକ ପାର୍ଶ୍ୱ ମଧ୍ୟ ଥିଲି ଯାହା ଭାରତୀୟ ମନରେ ଅଙ୍କିତ ରହିଗଲି । ମୋର ନିଜ ପ୍ରଦେଶରେ ବିଶେଷକରି ତାର ସ୍ମୃତି ଆଜି ବି ସହର ଓ ଗ୍ରାମରେ ଜୀବିତ ଅଛି । ସେ ସବୁ ଭୁଲିଯିବା ପାଇଁ ଯେ କେହି ଅବଶ୍ୟ ଚାହିଁବ; କାରଣ ତାହା ଏକ ଭୟଙ୍କର ଓ ବିକଟ ଚିତ୍ର, ଯେଉଁଥିରେ ମନୁଷ୍ୟ ହିଂସ୍ର ପଶୁ ଭଳି ବ୍ୟବହାର କରିଛି । ନାଜିବାଦ ଓ ଆଧୁନିକ ଯୁଦ୍ଧକଳାପ୍ରଯୋଜିତ ବର୍ବରତାର ନୂତନ ମାନ ଅନୁସାରେ ଦେଖିଲେ ମଧ୍ୟ ତାହା ଅସାମାନ୍ୟ ମନେ ହେବ; କିନ୍ତୁ ତାହା ଭୁଲି ହେବ କିମ୍ବା ଗୋଟାଏ ଅନାସକ୍ତ ଅବୈକ୍ତିକ ଧାରାରେ କେବଳ ମନେ ରଖିହେବ, ଯେବେ ତାହା ପ୍ରକୃତରେ ଅତୀତରେ ପରିଣତ ହେବ ଓ ବର୍ତ୍ତମାନ ସଙ୍ଗେ ସଂଯୁକ୍ତ କରିବାପାଇଁ କିଛି ସୂତ୍ର ନଥିବ । ଯେତେଦିନ ପର୍ଯ୍ୟନ୍ତ ଯୋଗସୂତ୍ର ଓ ସ୍ମୃତି ରହିଥିବ ଏବଂ ସେହି ସବୁ ଘଟଣା ପଛରେ ଭାବନା ନିଜକୁ ପ୍ରକାଶ କରିବାର ଉଦ୍ୟମ କରୁଥିବ, ସେହି ସ୍ମୃତି ମଧ୍ୟ ରହିବ ଓ ଆମ ଲୋକଙ୍କୁ ପ୍ରଭାବିତ କରିବ । ସେପରି ଚିତ୍ରକୁ ଘୋଡ଼ାଇ ରଖିବାର ଚେଷ୍ଟାକଲେ ତାହା ନଷ୍ଟ ହୋଇଯାଏ ନାହିଁ; ବରଂ ମନରେ ତାହା ଗଭୀର ହୋଇ ରହେ । ସାଧାରଣ ଭାବରେ ଯାହା ଭୁଲିଯିବାର କଥା ସେପରି କଲେ କେବଳ ତାର ପ୍ରଭାବ କମ୍ ହୋଇ ପାରେ ।

ବିଦ୍ରୋହ ଓ ତାର ଦମନ ସମ୍ପର୍କରେ ବହୁତ କିଛି ମିଥ୍ୟା ଓ ବିକୃତ ଇତିହାସ ଲେଖା-ଯାଇଛି । ବିଦ୍ରୋହ ସମ୍ବନ୍ଧରେ ଭାରତୀୟମାନେ କଅଣ ମନେ କରନ୍ତି, ତାହା ମୁଦ୍ରିତ ପୃଷ୍ଠାକୁ ପ୍ରାୟ ଆସି ନାହିଁ । ଆନୁମାନିକ ତିରିଶ ବର୍ଷ ତଳେ ସଭରକର୍ 'ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇତିହାସ' ଲେଖିଥିଲେ; କିନ୍ତୁ ଅବିଳମ୍ବେ-ଏହି ପୁସ୍ତକଟି ଜବତ କରି ନିଆଗଲି ଓ ଏବେ ବି ସେଥି ଉପରୁ କଟକଣା ଉଠିନି । କେତେକ ସ୍ପଷ୍ଟବାଦୀ ତଥା ସମ୍ମାନିତ ଇଂରେଜ ଐତିହାସିକ କେବେ କେବେ ପରଦା ଉତ୍ତୋଳନ କରି, ଯେଉଁ ଜାତି ଅହଂକାର ଓ ହତ୍ୟାମନୋବୃତ୍ତି ଅତି ବ୍ୟାପକ ଓ ପ୍ରବଳ ହୋଇଥିଲି, ତାର ଏଇ ଝଲକ ଆଖି ଆଗରେ

ପଢ଼ିବାର ସୁଯୋଗ ବଢ଼ାଇଚାଲି । କେ. ଓ. ମାଲେସନ୍‌ଙ୍କ 'ହିଷ୍ଟ୍ରି ଅଫ୍ ଦି ମ୍ୟୁଟିନି' ଏବଂ ଥମ୍ପ୍‌ସନ୍ ଓ ଗାରେଟଙ୍କ 'ରାଇଜ୍ ଏଣ୍ଡ ଫୁଲ୍‌ଫିଲ୍‌ମେଣ୍ଟ ଅଫ୍ ବ୍ରିଟିଶ୍ ରୁଲ୍ ଇନ୍ ଇଣ୍ଡିଆ' ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ, ବିଦ୍ରୋହର ଭୟାବହ ଚିତ୍ର ପାଠ କଲେ ସ୍ତମ୍ଭିତ ହେବାକୁ ହୁଏ । ''ପ୍ରତ୍ୟେକ ଭାରତୀୟ ଯିଏ ପ୍ରତ୍ୟକ୍ଷ ଭାବରେ ଇଂରେଜମାନଙ୍କ ପାଇଁ ଯୁଦ୍ଧ ନ କରିଚି 'ନାରୀ ଓ ଶିଶୁ ହତ୍ୟାକାରୀ' ଭାବରେ ବିବେଚିତ ହେଲେ । ଦିଲ୍ଲୀ ଅଧିବାସୀଙ୍କୁ (ଯାହାଙ୍କ ଭିତରେ ସେପରି ଲୋକ ବି ଥିଲେ ଯେଉଁମାନେ ଆମ୍ଭେ ସଫଳ ହେଉଁ—ଏ ଇଚ୍ଛା ମୁକ୍ତ ଭାବରେ ପ୍ରକାଶ କରୁଥିଲେ) ସାମୂହିକ ଭାବରେ ହତ୍ୟା କରିବାର ଆଦେଶ ଘୋଷଣା କରାଗଲା ।'' ତୈମୁର ଓ ନାଦିର ଶାହଙ୍କ ଆକ୍ରମଣକାଳର ସ୍ମୃତି ଭାରତୀୟ ମନରେ ଜାଗରୂକ ହେଲା; କିନ୍ତୁ ସମୟ ଓ ସୀମା ଉଭୟ ଦୃଷ୍ଟିରୁ ଏହି ନୂତନ ଆତଙ୍କର ଅବିମୃଷ୍ୟକାରିତା ସେମାନଙ୍କ ଧ୍ୱଂସଲୀଳାକୁ ତୁଚ୍ଛ କଲା । ଗୋଟାଏ ସପ୍ତାହ ପର୍ଯ୍ୟନ୍ତ ଲୁଣ୍ଠନ କରିବା ପାଇଁ ସରକାରୀ ଅନୁମତି ଦିଆଯାଇଥିଲା; କିନ୍ତୁ ପ୍ରକୃତରେ ଏକମାସ ପର୍ଯ୍ୟନ୍ତ ତାହା ଅବ୍ୟାହତ ରହିଲା ଏବଂ ସେଥି ସଙ୍ଗେ ସଙ୍ଗେ ଚାଲିଥିଲା ସାମୂହିକ ହତ୍ୟାର ବିଭୀଷିକା ।

ମୋର ଜନ୍ମସ୍ଥାନ ଆଲହାବାଦ ନଗରୀ ଓ ଜିଲ୍ଲାରେ, ତାର ଆଖପାଖ ଅଞ୍ଚଳରେ ଜେନେରାଲ ନେଇଲ୍ ସାମରିକ ଅଦାଲତ କାର୍ଯ୍ୟକାରୀ କଲେ । 'ସୈନିକ ଓ ସାଧାରଣ ନାଗରିକ ସମସ୍ତେ ଏପ୍ରକାର ଅଦାଲତ କାର୍ଯ୍ୟକାରୀ କରି ରକ୍ତଲୋଲୁପତା ପ୍ରକଟ କରୁଥିଲେ କିମ୍ବା ନିର୍ବିଚାର ଭାବରେ ବୟସ ଅବା ଲିଙ୍ଗର ବିଚାର ନରଖି ଭାରତୀୟମାନଙ୍କୁ ହତ୍ୟା କରୁଥିଲେ । ଆମ ବ୍ରିଟିଶ ପାର୍ଲାମେଣ୍ଟର ନଥିପତ୍ରରେ ଏବଂ ଭାରତର ଗଭର୍ଣ୍ଣର ଜେନେରାଲ ଇଂଲଣ୍ଡ ସରକାର ନିକଟକୁ ଲେଖିଥିବା କାଗଜପତ୍ରରେ ରହିଚି ଯେ, 'ବିଦ୍ରୋହ ଅପରାଧରେ ଅଭିଯୁକ୍ତ ଲୋକଙ୍କ ସଙ୍ଗେ ଆବାଳବୃଦ୍ଧବନିତା ସମସ୍ତଙ୍କୁ ବଳି ଦିଆଗଲା ।' ସେମାନଙ୍କୁ ଫାଶୀ ଦିଆଯାଇ ନଥିଲା । କେବେ କେଉଁଠି କାହାକୁ ଗୁଳି କରି ମାରିବା ବ୍ୟତୀତ ଗ୍ରାମସମେତ ସମସ୍ତଙ୍କୁ ପୋଡ଼ି ଦିଆଗଲା ।' ଲୋକଙ୍କୁ ଫାଶୀଦେବା ଉଦ୍ଦେଶ୍ୟରେ ସ୍ୱେଚ୍ଛାସେବୀ ଘାତକମାନେ ଦଳଦଳ ହୋଇ ଜିଲ୍ଲାମାନଙ୍କରେ ବୁଲୁଥିଲେ । ସୌଖୀନ ଘାତକମାନଙ୍କର ଅଭାବ ମଧ୍ୟ ନଥିଲା । ଏକ ପ୍ରକାର 'କଳାତ୍ମକ ରୀତିରେ' ଜଣେ ଇଂରେଜ କିପରି ଭାରତୀୟଙ୍କୁ ହତ୍ୟା କରିଥିଲା, ତାହା ସେ ନିଜେ ବର୍ଣ୍ଣିତ କରିଚି । ଆମ୍ବ ଗଛରୁ ଝୁଲାଇ ସେ କେତେ ଲୋକଙ୍କୁ ଫାଶୀ ଦେଇଥିଲା; କେତେକଙ୍କୁ ହାତୀ ଉପରୁ ତଳକୁ ଫିଙ୍ଗି ମାରିଥିଲା ଏବଂ ଏହି ବନ୍ୟ ନ୍ୟାୟର ଶିକାର, ଲୋକଙ୍କୁ କୌତୁକ ପାଇଁ ଆଠ (ଇଂରେଜୀ) ଅଙ୍କ ଆକାରରେ ଏକାସଙ୍ଗେ ବାନ୍ଧିଥିଲା ।' ଏପରି ଘଟିଥିଲା କାନ୍‌ପୁରରେ, ଲକ୍ଷ୍ନୌରେ ଓ ଅନ୍ୟାନ୍ୟ ବହୁ ସ୍ଥାନରେ ।

ତାଙ୍କର କୃତଜ୍ଞ ଦେଶବାସୀଙ୍କଦ୍ୱାରା ସ୍ଥାପିତ, ଭାରତର ଧନରେ ଅବଶ୍ୟ, ଜେନେରାଲ୍ ନେଇଲ୍‌ଙ୍କ ଏକ ପ୍ରତିମୂର୍ତ୍ତି, ଭାରତରେ ବ୍ରିଟିଶ୍ ଶାସନ ଯାହା ଥିଲା ଓ ଯେପରି ଚାଲି ଆସିଚି ତାର ପ୍ରକୃତ ପ୍ରତୀକ, ଏବେ ବି ଆମକୁ ଅଗ୍ନିଦୃଷ୍ଟିରେ ଚାହିଁଚି । କରବାଳହସ୍ତ ନିକୋଲ୍‌ସନଙ୍କ ପ୍ରତିମୂର୍ତ୍ତି ଆଜି ବି ପୁରୁଣା ଦିଲ୍ଲୀର ଲୋକଙ୍କୁ ଭୟଭୀତ କରୁଚି ।

ଏହି ଅତୀତ ଇତିହାସର ଉଲ୍ଲେଖ କରିବା ପ୍ରୀତିକର ନୁହେଁ; କିନ୍ତୁ ସେହିସବୁ ଘଟଣା ପଛର ଭାବନା ସେଥି ସଙ୍ଗେ ଶେଷ ହୋଇ ଗଲାନି । ତାହା କାଏମ୍ ରହିଲା ଓ ଯେବେ କୌଣସି ସଙ୍କଟ ଦେଖା ଦେଇଚି କିମ୍ବା ମନର ଭାରସାମ୍ୟ ବ୍ୟାହତ ହୋଇଚି, ତାହା ପୁଣି କାର୍ଯ୍ୟକାରୀ ହୋଇଚି । ଅମୃତସର ଓ ଜାଲିଆନାବାଲା ବାଗ୍ ବିଷୟରେ ଦୁନିଆ ଜାଣେ, କିନ୍ତୁ ସିପାହିବିଦ୍ରୋହ କାଳରୁ ଯାହାସବୁ ଘଟି ଆସିଚି ଏବଂ ଆମ ସମୟରେ ମଧ୍ୟ ଗତ କେତେ ବର୍ଷଧରି ଯାହା ସବୁ ଘଟି ଆସୁଚି ଏବଂ ଯାହା ଏହି ପୁରୁଷକୁ ଚିକ୍କିକରି ତୋଳିଚି, ସେ ବିଷୟରେ ଦୁନିଆ ବିଶେଷ କିଛି ଜ୍ଞାତ ନୁହେଁ । ସାମ୍ରାଜ୍ୟବାଦ ଓ ଗୋଟାଏ ଜାତି ଉପରେ ଅନ୍ୟ ଏକ ଜାତିର ଆଧିପତ୍ୟ ଭଲ ନୁହେଁ; ସେପରି ମଧ୍ୟ ଜାତି ଅହଂକାର; କିନ୍ତୁ ସାମ୍ରାଜ୍ୟବାଦ ସଙ୍ଗେ ଜାତି ଅହଂକାର ଯୁକ୍ତହେଲେ ତାହା ଭୟାବହ ହୋଇଉଠେ ଏବଂ ପରିଶେଷରେ ସେଥି ସଙ୍ଗେ ସଂପୃକ୍ତ ସମସ୍ତଙ୍କର ପତନର କାରଣ ହୋଇଥାଏ । ସାମ୍ରାଜ୍ୟବାଦ ଓ ଜାତି-ଅହଂକାର ଯାହା ତାର ସର୍ବସାଧାରଣ ଜୀବନକୁ କଳୁଷିତ କଲା ଏବଂ ନିଜ ଇତିହାସ ଓ ସାହିତ୍ୟର ଶିକ୍ଷା ବିସ୍ମୃତ କଲା, ସେଥିଲାଗି ଇଂଲଣ୍ଡ ଯେଉଁ ମର୍ଯ୍ୟାଦାର ଅଧିକାରୀ ହୋଇଥିଲା, ସେଥିରୁ କେତେ ଭାବରେ ପତିତ ହେଉଚି, ଇଂଲଣ୍ଡର ଆଗାମୀ ଦିନର ଐତିହାସିକମାନଙ୍କ ପକ୍ଷରେ ବିଚାର୍ଯ୍ୟ ।

କେଉଁ ଅଖ୍ୟାତ ଅବସ୍ଥାରୁ ଉଠିଆସି ହିଟ୍ଲର ଯେବେ ଜର୍ମାନୀର ଫ୍ୟୁରେର୍ ଅର୍ଥାତ୍ ଏକଛତ୍ର ଶାସକ ହେଲେ, ସେହି ଦିନରୁ ଜାତି-ଅହଂକାର ଓ ନାଜିମାନଙ୍କ 'ହେରେନ୍ ଭୋକ୍' ତତ୍ତ୍ୱ ସମ୍ପର୍କରେ ଆମେ ବହୁତ କିଛି ଶୁଣିବାକୁ ପାଇଲେ । ସେହି ତତ୍ତ୍ୱ ସେତେବେଳେ ନିନ୍ଦିତ ହୋଇଥିଲା ଏବଂ ଆଜି ବି ଜାତିସଂଘର ନେତାମାନେ ତାର ନିନ୍ଦା କରୁଚନ୍ତି । ଜୀବବିଦ୍ୟାବିତ୍‌ମାନେ କହନ୍ତି ଜାତି-ଅହଂ ଏକ ନିପଟ କାଳ୍ପନିକ କଥା ଏବଂ ପ୍ରଭୁ-ଜାତି ବୋଲି ସେପରି କିଛି ନାହିଁ; କିନ୍ତୁ ଭାରତରେ ଆମେ ବ୍ରିଟିଶ୍ ଶାସନର ପ୍ରାରମ୍ଭରୁ ଜାତିଅହଂକୁ ତାର ସବୁପ୍ରକାର ସମ୍ଭାବ୍ୟ ରୂପରେ ଦେଖିବାକୁ ପାଇଚୁ । ଏହି ଶାସନର ଏକ ଅନନ୍ୟ ଆଦର୍ଶ ହେଲା ହେରେନ୍ ଭୋକ୍ ଓ ପ୍ରଭୁଜାତିର ଆଦର୍ଶ ଏବଂ ତାର ଉପରେ ଶାସନର ସଂଗଠନ ଭିତ୍ତି କଲା । ପ୍ରକୃତ ପକ୍ଷେ, ପ୍ରଭୁ ଜାତିର ଏହି ଧାରଣା ସାମ୍ରାଜ୍ୟବାଦ ସଙ୍ଗେ ସହଜାତ । ସେଥିରେ କୌଣସି ବ୍ୟପଦେଶ ନଥିଲା । ଅଧିକାରରେ ଥିବା ଲୋକେ ସ୍ପଷ୍ଟ ଭାଷାରେ ତାହା ଘୋଷଣା କରୁଥିଲେ । ଭାଷା ଅପେକ୍ଷା ତଦନୁରୂପ କର୍ମ ଥିଲା ଅଧିକ ଶକ୍ତିଶାଳୀ ଏବଂ ପୁରୁଷ ପରେ ପୁରୁଷ, ବର୍ଷ ପରେ ବର୍ଷ, ଭାରତ ଏକ ମହାଜାତି ଭାବରେ ଓ ଭାରତୀୟମାନେ ବ୍ୟକ୍ତିଗତ ଭାବରେ ଅପମାନ, ଅବମାନନା ଓ ଅବଜ୍ଞାସୂଚକ ଆଚରଣର ଶିକାର ହୋଇ ଆସିଚନ୍ତି । ଆମକୁ କୁହାଯାଉଥିଲା ଯେ ଇଂରେଜମାନେ ଗୋଟାଏ ଅଧୀଶ୍ୱର ଜାତି, ଆଉ ଆମକୁ ପଦାନତ ରଖି ଶାସନ କରିବା ଅଧିକାର ସେମାନଙ୍କର ବିଭୂତିଦତ୍ତ । ଆମେ ଯଦି ପ୍ରତିବାଦ କରିଚୁ 'ଗୋଟାଏ ଅଧୀଶ୍ୱର ଜାତିର ସିଂହସୁଲଭ ଗୁଣ' ସମ୍ପର୍କରେ ଆମକୁ ସ୍ମରଣ କରାଇଦିଆଯାଇଚି । ଜଣେ ଭାରତୀୟ ଭାବରେ ଏସବୁ ଲେଖିବାବେଳେ ମୁଁ ବାସ୍ତବିକ୍ ଲଜ୍ଜିତ; କାରଣ ଏହାର ସ୍ମୃତିମାନ

ମନରେ ଆଘାତ ପହଞ୍ଚାଏ ଏବଂ ଆହୁରି ଆଘାତ ଲାଗେ ଯେବେ ଅନୁଭବ କରିବାକୁ ପଡ଼େ ଯେ ଏତେ ଦୀର୍ଘକାଳ ଧରି ଆମେ ଏହାକୁ ପ୍ରଶ୍ରୟ ଦେଇ ଆସିଚୁ । ଏ ପ୍ରକାର ବ୍ୟବହାର ବରଦାସ୍ତ କରିବା ଅପେକ୍ଷା ପରିଣାମ ଯାହା ହେଉନା କାହିଁକି, ଆମ ଲୋକେ ଯେ କୌଣସି ଭାବରେ ହେଉ ଏହାର ପ୍ରତିରୋଧ କରିବା ମୁଁ ପସନ୍ଦ କରିଥା'ନ୍ତି । ତଥାପି ଭାରତୀୟ ଓ ଇଂରେଜ ଉଭୟେ, ଏକଥା ଜାଣିଥିବା ଭଲ; କାରଣ ତାହା ହେଉଚି ଭାରତ ସଙ୍ଗେ ଇଂଲଣ୍ଡର ସମ୍ବନ୍ଧର ମନସ୍ତାତ୍ତ୍ୱିକ ପୃଷ୍ଠଭୂମି ଏବଂ ମନସ୍ତତ୍ତ୍ୱର ମୂଲ୍ୟ ଅଛି, ଆଉ ଜାତିଅହଂର ସ୍ମୃତି ସହଜରେ ପାଶୋରି ଯାଏନାହିଁ ।

ଉଦାହରଣ ସ୍ୱରୂପ, ଗୋଟିଏ ଉଦ୍ଧୃତିରୁ ଆମେ ଉପଲବ୍ଧି କରିପାରିବା ଭାରତରେ ଅଧିକାଂଶ ଇଂରେଜ କିପରି ଭାବୁଥିଲେ ଓ କାର୍ଯ୍ୟ କରୁଥିଲେ । ଖ୍ରୀ: ୧୮୮୩ର ଇଲ୍‌ବେର୍ଟ ବିଲ୍ ଆନ୍ଦୋଳନ କାଳରେ ଭାରତ ସରକାରଙ୍କ ବୈଦେଶିକ ବିଭାଗ ସେକ୍ରେଟେରୀ ସେଟନ୍ କେର୍ ଘୋଷଣା କରିଥିଲେ ଯେ ଏହି ବିଲ୍ 'ସେହି ସଶ୍ରଦ୍ଧ ବିଶ୍ୱାସ ବିରୁଦ୍ଧରେ ଯାଉଚି, ଯାହା ଭାରତରେ ପ୍ରତ୍ୟେକ ଇଂରେଜ ପ୍ରାଣରେ ପ୍ରତିଷ୍ଠିତ । ବଡ଼ ହେଉ ବା ଶ୍ରେଷ୍ଠ ହେଉ, ସେ କମିଶନର ହେଉ ବା ଭାଇସ୍‌ରୟ ହେଉ କିମ୍ବା ଗୃହା ବଗିଚ୍ଚ ମାଲିକର ସହକାରୀ ପଛେ ହେଉ, ସେ ଯେଉଁ ପଦବୀର ଲୋକ ହେଉନା କାହିଁକି, ସେ ହେଉଚି ସେହି ଜାତିର ଲୋକ ଯାହାକୁ ଭଗବାନ ଅନ୍ୟ ଜାତିମାନଙ୍କୁ ପଦାନତ କରି ଶାସନ କରିବା ଲାଗି ସୃଷ୍ଟି କରିଚନ୍ତି ।" (୧)

## ୮. ବ୍ରିଟିଶ ଶାସନର ପ୍ରୟୋଗ-କୌଶଳ : ବଳସାମ୍ୟ

ଜାତୀୟବାଦୀ ମନୋଭାବ କେତେକାଂଶରେ ମିଶ୍ରିତ ଥିଲେ ସୁଦ୍ଧା ଖ୍ରୀ: ୧୮୫୭-୫୮ର ବିଦ୍ରୋହ ଥିଲା ସାରତଃ ଗୋଟାଏ ସାମନ୍ତବାଦୀ ଜାଗରଣ । ତଥାପି ମଧ୍ୟ-ଦେଶୀୟ ରାଜନ୍ୟବର୍ଗ ଓ ଅନ୍ୟାନ୍ୟ ସାମନ୍ତବାଦୀ ସର୍ଦ୍ଦାରମାନଙ୍କ ସହଯୋଗ ବଳରେ ହିଁ ଇଂରେଜ-ମାନେ ତାହା ଦମନ କରିବାରେ ସଫଳ ହେଲେ । ଯେଉଁମାନେ ବିଦ୍ରୋହରେ ଯୋଗ ଦେଇଥିଲେ, ସାଧାରଣତଃ ସେମାନେ ଥିଲେ ରାଜ୍ୟଚ୍ୟୁତ ଏବଂ ଶାସକ ଇଂରେଜ ଯାହାଙ୍କର କ୍ଷମତା ଓ ବିଭିନ୍ନ ସ୍ୱାଧିକାର ହରଣ କରି ନେଇଥିଲେ । ଏମାନଙ୍କ ସଙ୍ଗେ ସେମାନେ ବି ଥିଲେ, ଯେଉଁମାନେ ସେମାନଙ୍କ ଭାଗ୍ୟରେ ଅନ୍ୟମାନଙ୍କ ଭଳି ସେପରି କିଛି ଦୁର୍ଦ୍ଦଶା ଆଗକୁ ଭୋଗିବାକୁ ଅଛି ବୋଲି ଆଶଙ୍କା କରୁଥିଲେ । କିଛିକାଳ ଦୋ-ଦୋପାଞ୍ଚ ହେବା ପରେ ବ୍ରିଟିଶ ନୀତି ଥିଲା ଦେଶୀୟ ରାଜ୍ୟମାନଙ୍କୁ କ୍ଷମତାଚ୍ୟୁତ କରି ପ୍ରତ୍ୟକ୍ଷ ବ୍ରିଟିଶ ଶାସନ ପ୍ରତିଷ୍ଠା କରିବା । ସିପାହିବିଦ୍ରୋହ ଦେଶୀୟ ରାଜାମାନଙ୍କ ସପକ୍ଷରେ କେବଳ ନୁହେଁ, ତାଲୁକ୍‌ଦାର ଓ ଜମିଦାରମାନଙ୍କ ସପକ୍ଷରେ ମଧ୍ୟ ଏହି ନୀତିର ପରିବର୍ତ୍ତନ ଘଟାଇଲା । ଇଂରେଜମାନେ

(୧) ଥମ୍ପସନ୍ ଓ ଗାରେଟ୍—'ରାଇଜ୍ ଏଣ୍ଡ୍ ଫୁଲ୍‌ଫିଲ୍‌ମେଣ୍ଟ ଅଫ୍ ବ୍ରିଟିଶ ରୁଲ ଇନ୍ ଇଣ୍ଡିଆ' ।

ଉପଲବ୍ଧି କଲେ ଯେ ଏହି ସବୁ ସାମନ୍ତବାଦୀ ଅଥବା ଅର୍ଦ୍ଧସାମନ୍ତବାଦୀ ସର୍ଦ୍ଦାରମାନଙ୍କ ଜରିଆରେ ଜନସାଧାରଣଙ୍କୁ ଜବତ କରି ରଖିବା ଅଧିକତର ସହଜ । ଆଉଦ୍‌ର ଏହି ତାଲୁକଦାରମାନେ ମୋଗଲ ଶାସନକାଳରେ ଥିଲେ ମାଲଗୁଜାରି କୃଷକ ମାତ୍ର; କିନ୍ତୁ କେନ୍ଦ୍ର ପ୍ରଭୁତ୍ୱର ଦୁର୍ବଳତା ଯୋଗୁଁ ସେମାନେ ସାମନ୍ତବାଦୀ ଜମିଦାର ଭାବରେ ବଢ଼ି ଉଠିଥିଲେ । ସେମାନଙ୍କ ଭିତରୁ ମାତ୍ର କେତେଜଣ ସୁବିଧା ଦେଖି ଖସିଯିବାର ଉପାୟ ରଖିଥିଲେ ସୁଦ୍ଧା ପ୍ରାୟ ସମସ୍ତେ ବିଦ୍ରୋହରେ ଯୋଗଦେଇଥିଲେ । ସେମାନଙ୍କର ଏବଂବିଧ ଆଚରଣ ସତ୍ତ୍ୱେ ବ୍ରିଟିଶ ସରକାର ସେମାନଙ୍କୁ (ମୁଷ୍ଟିମେୟ କେତେକଙ୍କୁ ବାଦ ଦେଇ) ନିଜ ନିଜ ପଦରେ ପୁନର୍ବାର ଅଧିଷ୍ଠିତ କରିବାକୁ ଚାହିଁଲେ ଓ ଉତ୍ତମ ସେବା ତଥା ଆନୁଗତ୍ୟର ସର୍ତ୍ତ ଉପରେ ସେମାନଙ୍କୁ ସେମାନଙ୍କର ଜମିଦାରୀ ଫେରସ୍ତ ଦେବା ନିଷ୍ପତ୍ତି କଲେ । ଏପରି ଭାବରେ, ଏହି ତାଲୁକଦାରମାନେ, ଯେଉଁମାନେ 'ଆଉଦ୍‌ର ସାମନ୍ତ' ବୋଲି ନିଜକୁ ଅଭିହିତ କରିବାରେ ଗର୍ବ ଅନୁଭବ କରନ୍ତି, ବ୍ରିଟିଶ ଶାସନର ଅନ୍ୟତମ ସ୍ତମ୍ଭ ଭାବରେ ରହିଲେ ।

ବିଦ୍ରୋହ ପ୍ରତ୍ୟକ୍ଷ ଭାବରେ ଦେଶର କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳରେ କେବଳ ସୀମିତ ହୋଇଥିଲେ ସୁଦ୍ଧା ସମଗ୍ର ଭାରତକୁ, ବିଶେଷତଃ ବ୍ରିଟିଶ ପ୍ରଶାସନକୁ ଦୋହଲାଇ ଦେଇଥିଲା । ଶାସନର ସମଗ୍ର ପ୍ରଣାଳୀ ପୁନଃସଙ୍ଗଠିତ କରିବାରେ କର୍ତ୍ତାମାନେ ଲାଗିପଡ଼ିଲେ । ବ୍ରିଟିଶ ମୁକୁଟ ଅର୍ଥାତ୍ ଇଂଲଣ୍ଡର ପାର୍ଲାମେଣ୍ଟ ଭାରତକୁ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ହାତରୁ ଛଡ଼ାଇନେଲେ । ଭାରତୀୟ ସେନାବାହିନୀକୁ ପୁନର୍ବାର ସଙ୍ଗଠିତ କରାଗଲା; କାରଣ ସେଥିଭିତରୁ ହିଁ ବିଦ୍ରୋହର ପ୍ରଥମ ଗୁଳି ଫୁଟିଥିଲା । ବହୁଦିନାବଧି ସୁପ୍ରତିଷ୍ଠିତ ବ୍ରିଟିଶ ଶାସନର ପ୍ରୟୋଗ କୌଶଳ-ଗୁଡ଼ିକୁ ବର୍ତ୍ତମାନ ସ୍ପଷ୍ଟ ଭାବରେ ବ୍ୟାଖ୍ୟା କରାଗଲା, ନିର୍ଦ୍ଦିଷ୍ଟ ରୂପ ଦିଆଗଲା ଓ ସୁଚିନ୍ତିତ ଭାବରେ ସେସବୁ କାର୍ଯ୍ୟକାରୀ କରାଗଲା । ମୁଖ୍ୟତଃ ଏଗୁଡ଼ିକ ହେଉଛି—ବ୍ରିଟିଶ ଶାସନ ସଙ୍ଗେ ଜଡ଼ିତ ବିବିଧ ନ୍ୟସ୍ତସ୍ୱାର୍ଥର ସୃଷ୍ଟି ଓ ସୁରକ୍ଷା; ବିଭିନ୍ନ ଶକ୍ତି ଭିତରେ ସମତୁଲନ ଜାରି ରଖିବାର ନୀତି ଏବଂ ସେମାନଙ୍କ ଭିତରେ ବିଭେଦକ ମନୋବୃତ୍ତି ଉତ୍ସାହିତ କରିବା ଏବଂ ସେମାନଙ୍କୁ ବିଭକ୍ତ କରି ରଖିବା ।

ଏପରିଭାବରେ ସୃଷ୍ଟ ଓ ଉତ୍ସାହିତ ଦେଶୀୟ ରାଜନ୍ୟବର୍ଗ ଓ ବଡ଼ ଜମିଦାରମାନେ ଥିଲେ ବ୍ରିଟିଶ ଶାସନର ମୌଳିକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ । ବର୍ତ୍ତମାନ କିନ୍ତୁ ନୂତନ ଏକ ଶ୍ରେଣୀ, ବ୍ରିଟିଶ ଶାସନ ସଙ୍ଗେ ଅଧିକତର ଭାବେ ଜଡ଼ିତ, ଗୁରୁତ୍ୱ ଦେଇ ଗଢ଼ି ଉଠିଲା । ଏମାନେ ହେଉଛନ୍ତି ବ୍ରିଟିଶ ଭାରତୀୟ ପ୍ରଶାସନର ନିମ୍ନବର୍ଗ କର୍ମଚାରୀ । ପୂର୍ବେ ଅନ୍ୟ ଉପାୟ ନଥିଲେ ଓ ନିତାନ୍ତ ଆବଶ୍ୟକ ବେଳେ କେବଳ ଭାରତୀୟମାନଙ୍କୁ ସରକାରୀ କର୍ମରେ ନିଯୁକ୍ତ କରାଯାଉଥିଲା ଏବଂ ମୁନ୍‌ରୋ ଏ ପ୍ରକାର ନିଯୁକ୍ତି ପାଇଁ ବହୁ ଯୁକ୍ତି ବାଢ଼ିଥିଲେ । ଅଭିଜ୍ଞତା ବର୍ତ୍ତମାନ ପ୍ରଦର୍ଶିତ କଲା ଯେ ଶାସନକଳରେ ନିଯୁକ୍ତ ଭାରତୀୟମାନେ ବ୍ରିଟିଶ ଶାସନ ଉପରେ ଏତେଭଳି ନିର୍ଭରଶୀଳ ଯେ ସେମାନଙ୍କ ଉପରେ ଆସ୍ଥା ସ୍ଥାପନ କରାଯାଇ ପାରେ ଏବଂ ଶାସନର ଏଜେଣ୍ଟ ଭାବରେ ସେମାନଙ୍କ ପ୍ରତି ଆଚରଣ କରାଯାଇପାରେ ।

ପ୍ରାକ୍-ବିଦ୍ରୋହ କାଳରେ ନିମ୍ନବର୍ଗର ସରକାରୀ କର୍ମଚାରୀମାନେ ଥିଲେ ମୁଖ୍ୟତଃ ବଙ୍ଗାଳୀ । ବ୍ରିଟିଶ ପ୍ରଶାସନ ତଥା ତଦ୍ରୂପ ସାମରିକ କିମ୍ବା ବେସାମରିକ ସଂସ୍ଥା ନିମନ୍ତେ ଯେବେ ଗୁମାସ୍ତା ଆବଶ୍ୟକ ହୋଇଚି, ବଙ୍ଗାଳୀମାନେ ଭାରତର ଉତ୍ତରାଞ୍ଚଳକୁ ଯାଇଚନ୍ତି । ଏପରି ଭାବରେ ଯୁକ୍ତପ୍ରଦେଶ, ଦିଲ୍ଲୀ, ଏପରିକି ପଞ୍ଜାବରେ ମଧ୍ୟ ପ୍ରଶାସନିକ କିମ୍ବା ସାମରିକ କେନ୍ଦ୍ରମାନଙ୍କରେ ବଙ୍ଗାଳୀପଡ଼ାମାନ ଗଢ଼ିଉଠିଲା । ଏହି ବଙ୍ଗାଳୀମାନେ ବ୍ରିଟିଶ ସେନାବାହିନୀ ସଙ୍ଗେ ଯାଇ ସେମାନଙ୍କ ନିକଟରେ ବିଶ୍ୱସ୍ତତାର ପ୍ରମାଣ ଦେଲେ । ବିଦ୍ରୋହୀମାନଙ୍କ ବିଚାରରେ ଏମାନେ ଥିଲେ ବ୍ରିଟିଶ-ଶକ୍ତିଠାରୁ ଅଭିନ୍ନ । ସୁତରାଂ ଏମାନଙ୍କୁ ବିଦ୍ରୋହୀମାନେ ଅତିଶୟ ଘୃଣାଚକ୍ଷୁରେ ଦେଖୁଥିଲେ ଏବଂ ଯେଉଁ ସବୁ ଉପାଧି ଦେଉଥିଲେ ତାହା ଏମାନଙ୍କ ପକ୍ଷରେ ପ୍ରଶଂସାସୂଚକ ନଥିଲା ।

ଏପରି ଭାବରେ ଶାସନକଳର ନିମ୍ନସ୍ତରରେ, ଅଧିକରୁ ଅଧିକ ମାତ୍ରାରେ ଭାରତୀୟମାନେ ଗୃହୀତ ହେବାର ପ୍ରକ୍ରିୟା ଆରମ୍ଭ ହେଲା । ପ୍ରକୃତ କ୍ଷମତା ଓ ନେତୃତ୍ୱ ପୁଞ୍ଜିଭୂତ ରହିଲା ଶାସନକଳରେ ନିଯୁକ୍ତ ଇଂରେଜମାନଙ୍କ ହାତରେ । ଇଂରେଜୀ ଶିକ୍ଷାର ପ୍ରସାର ସଙ୍ଗେ ନିମ୍ନ ଚାକରମାନଙ୍କରେ ବଙ୍ଗାଳୀଙ୍କ ଏକାଧିପତ୍ୟ ଭାଙ୍ଗିପଡ଼ିଲା ଏବଂ ପ୍ରଶାସନର ଉଭୟ ପକ୍ଷକୁ ଇତର ଭାରତୀୟମାନେ ଆସିଗଲେ । ଏହି ଭାରତୀୟକରଣ ବ୍ରିଟିଶ ଶାସନକୁ ବଳଶାଳୀ କରିବାରେ ଉତ୍କୃଷ୍ଟ ଫଳପ୍ରଦ ପ୍ରଣାଳୀରେ ପରିଣତ ହେଲା । ଏହି ଉପାୟରେ ପ୍ରତ୍ୟେକ ସ୍ଥାନରେ ଏକ ବେସାମରିକ ଫଉଜ ଗଢ଼ିଉଠିଲା, ଯାହା ସାମରିକ ଫଉଜ ଅପେକ୍ଷା ଥିଲା ଅଧିକ ଗୁରୁତ୍ୱପୂର୍ଣ୍ଣ । ଏହି ବେସାମରିକ ଫଉଜ ଭିତରେ ଲୋକ ଥିଲେ ଯେଉଁମାନଙ୍କର ଦକ୍ଷତା, ସ୍ୱଦେଶପ୍ରୀତି ଓ ଜାତୀୟତାବାଦୀ ମନୋଭାବ ଥିଲା । କିନ୍ତୁ ସୈନିକ ଭଳି, ଯିଏ ବ୍ୟକ୍ତିଗତ ଭାବରେ ଦେଶପ୍ରେମୀ ହୁଏତ ହୋଇପାରେ, ସେମାନେ ସାମରିକ ଅନୁଶାସନ ଓ ଶୃଙ୍ଖଳା ଦ୍ୱାରା ଆବଦ୍ଧ ଥିଲେ ଏବଂ ଅବାଧ୍ୟତା, ବିଶ୍ୱାସଘାତକତା ଓ ବିଦ୍ରୋହ ପାଇଁ ସେମାନଙ୍କୁ ଗୁରୁତର ଶାସ୍ତି ଭୋଗିବାକୁ ପଡ଼ୁଥିଲା । ବେସାମରିକ ଫଉଜ କେବଳ ନୁହେଁ; ବରଂ ସେଥିରେ ଭରତି ହେବାର ଆଶା ଅନ୍ୟମାନଙ୍କୁ ପ୍ରଭାବିତ କଲା । ଏ ପ୍ରକାର ଚାକିରେ କିଛିଟା ସମ୍ମାନ ଓ ନିରାପତ୍ତା ନିହିତ ଥିଲା, ଅବସର ନେବା ପରେ ଭତ୍ତା ବ୍ୟବସ୍ଥା ଥିଲା ଏବଂ ଉପରିସ୍ଥ କର୍ମଚାରୀ ପ୍ରତି ଯଥେଷ୍ଟ ଆନୁଗତ୍ୟ ଥିଲେ ଅନ୍ୟସବୁ ଦୋଷତ୍ରୁଟି ଧର୍ତ୍ତବ୍ୟ ନଥିଲା । ଏହି ବେସାମରିକ ବା ସିଭିଲ୍ କର୍ମଚାରୀମାନେ ଥିଲେ ବ୍ରିଟିଶ ପ୍ରଭୁ ଓ ଭାରତୀୟ ଜନସାଧାରଣଙ୍କ ଭିତରେ ଯୋଗସୂତ୍ର ଏବଂ ନିଜ ନିଜ ଉପରିସ୍ଥ କର୍ମଚାରୀଙ୍କ ନିକଟରେ ସେମାନେ ହୀନଭାବେ ଅନୁଗତ ବୋଲି ଯଦି ପ୍ରତିପନ୍ନ କରୁଥିଲେ, ସେମାନଙ୍କ ତଳର କର୍ମଚାରୀଙ୍କ ପାଖରୁ ଓ ଜନସାଧାରଣଙ୍କଠାରୁ ଠିକ୍ ସେଭଳି ବ୍ୟବହାର ଦାବି କରୁଥିଲେ ଓ ସେମାନଙ୍କ ପ୍ରତି ଉଦ୍ଧତ ଆଚରଣ କରୁଥିଲେ ।

ନିଯୁକ୍ତିର ଅନ୍ୟାନ୍ୟ ପନ୍ଥା ଓ ଜୀବିକା ଅର୍ଜିବାର ଅନ୍ୟାନ୍ୟ ଧନ୍ଦା ଅଭାବରୁ ସରକାରୀ ଚାକିରିରେ ନିଯୁକ୍ତି ଅଧିକ ଗୁରୁତ୍ୱହୀନଭାବରେ କରିଥିଲା । ଥୋକେ ଲୋକ ହୁଏତ ଓକିଲ କିମ୍ବା ଡାକ୍ତର ହୋଇ ପାରନ୍ତି; କିନ୍ତୁ ସେଥିରେ ସଫଳ ହେବାର କୌଣସି ନିଶ୍ଚୟତା ନଥିଲା । ଶିଳ୍ପ-

କ୍ଷେତ୍ର ତ ନଥିଲା କହିଲେ ଚଳେ । ବ୍ୟବସାୟବାଣିଜ୍ୟ ମୁଖ୍ୟତଃ ସେପରି ଲୋକଙ୍କ ହାତରେ ଥିଲା, ଯେଉଁମାନେ ପୁରୁଷାନୁକ୍ରମରେ ସେହି କାର୍ଯ୍ୟ କରିଆସୁଥିଲେ । ସେଥିପ୍ରତି ସେମାନଙ୍କର ଏକପ୍ରକାର ଆଗ୍ରହ ମଧ୍ୟ ଥିଲା ଏବଂ ସେମାନେ ପରସ୍ପର ପ୍ରତି ସହାୟକ ହେଉଥିଲେ । ନୂତନ ଶିକ୍ଷା, ବାଣିଜ୍ୟ କିମ୍ବା ଶିଳ୍ପକ୍ଷେତ୍ରରେ ନିଯୁକ୍ତି ନିମନ୍ତେ ଉପଯୁକ୍ତ ନଥିଲା । ଏହାର ମୁଖ୍ୟ ଲକ୍ଷ୍ୟ ହେଲା ସରକାରୀ ଚାକିରି । ଶିକ୍ଷାର ପରିସର ମଧ୍ୟ ଏତେ ସୀମିତ ଥିଲା ଯେ କୌଣସି ପେଶାଦାରୀ ଜୀବିକା ନିମନ୍ତେ ତାର ଦାନ ବିଶେଷ ନଥିଲା । ଅନ୍ୟବିଧ ଅର୍ଥକରୀ ସାମାଜିକସେବା ପ୍ରଚଳିତ ନଥିଲା । ଅତଏବ, କଲେଜରୁ ଉପାଧି ନେଇ ଯେଉଁମାନେ ଆସିଲେ ସରକାରୀ ଚାକିରି ଥିଲା ସେମାନଙ୍କର ଏକମାତ୍ର ଭରସା ଏବଂ ସରକାରୀ ସଂସ୍ଥାମାନଙ୍କରେ ଗୁମାସ୍ତା ଶ୍ରେଣୀସ୍ଥ ଚାକିରିର ଆବଶ୍ୟକତା ବେଳକୁ ବେଳ ବଢ଼ିଥିଲେ ସୁଦ୍ଧା ଏ ସମସ୍ତଙ୍କୁ ସେଥି ଭିତରେ ଗ୍ରହଣ କରିବା ସମ୍ଭବ ନଥିଲା । ଫଳତଃ, ସୃଷ୍ଟି ହେଲା ତୀବ୍ର ପ୍ରତିଯୋଗିତା । ବେକାର ଗ୍ରାଜୁଏଟ ଓ ଅନ୍ୟମାନେ ଗୋଟାଏ ସମାଜ ଗଢ଼ିଥିଲେ, ଯେଉଁଥିରୁ ଆବଶ୍ୟକ ବେଳେ ସରକାର ଲୋକ ବାଛି ନେଉଥିଲେ । ବେକାରଙ୍କ ଏହି ଆଖଡ଼ା ସରକାରୀ କର୍ମରେ ନିଯୁକ୍ତ ଲୋକଙ୍କ ପକ୍ଷରେ ମଧ୍ୟ ଭୟ ଓ ବିପଦର କାରଣ ଥିଲା । ଏପରି ଭାବରେ, ବ୍ରିଟିଶ ସରକାର ଭାରତରେ ସର୍ବଶ୍ରେଷ୍ଠ କର୍ମସଂସ୍ଥାପକ ହୋଇଉଠିଲେ କେବଳ ନୁହେଁ, ବସ୍ତୁତଃ ଥିଲେ ଏକମାତ୍ର ସଂସ୍ଥାପକ; କାରଣ ରେଲବାଇ ଇତ୍ୟାଦି ସଂସ୍ଥାର ନିଯୁକ୍ତି ଅଧିକାର ସରକାରଙ୍କ ହାତରେ ହିଁ ଥିଲା । ଉପରେ କଠୋର ଶୃଙ୍ଖଳାଦ୍ୱାରା ପରିଚାଳିତ ଓ ନିୟନ୍ତ୍ରିତ, ଭାରତରେ ବିଶାଳ ଏକ ଅମଲାତାନ୍ତ୍ରିକ କଳ ନିର୍ମିତ ହେଲା । ଦେଶ ଉପରେ ବ୍ରିଟିଶ କବଳ ପ୍ରବଳ କରିବାପାଇଁ, ବିରୋଧଭାବାପନ୍ନ ଲୋକଙ୍କୁ ତଳିତଳାନ୍ତ କରିବାପାଇଁ ଏବଂ ସରକାରୀ କର୍ମ ଲାଭ ନିମନ୍ତେ ଉତ୍କଣ୍ଠିତ, ବିଭିନ୍ନ ଗୋଷ୍ଠୀ ଭିତରେ ବିବାଦ ଓ ମତଭେଦର ବୀଜ ବୁଣିବା ପାଇଁ ଏହି ବିପୁଳ ସରକାରୀ ପୃଷ୍ଠପୋଷକତା ପ୍ରୟୋଗ କରାଗଲା । ଫଳରେ ଲୋକଙ୍କ ଭିତରେ ସଂଘାତ ବଢ଼ିଲା, ଲୋକଙ୍କର ନୈତିକ ମାନଦଣ୍ଡ ହ୍ରାସ ପାଇଲା ଏବଂ ଉପରେ ବସି ବ୍ରିଟିଶ ସରକାର ଗୋଟିଏ ଗୋଷ୍ଠୀ ବିରୁଦ୍ଧରେ ଅନ୍ୟ ଗୋଷ୍ଠୀକୁ ଲଗାଇ ଖେଳ ଚାଲୁରଖିଲେ ।

ଭାରତୀୟ ସେନାବାହିନୀରେ ଏହି ସମତୁଳନ ଓ ପ୍ରତିତୁଳନ ନୀତିକୁ ସୁଚିନ୍ତିତ ଭାବରେ କାର୍ଯ୍ୟକାରୀ କରାଗଲା । ସେମାନଙ୍କ ଭିତରେ ଜାତୀୟ ଏକତାର ଭାବ ଯେପରି ମୋଟେ ପଶିନପାରେ, ସେଇ ଦୃଷ୍ଟିରୁ ବିଭିନ୍ନ ଗୋଷ୍ଠୀକୁ ବ୍ୟବସ୍ଥିତ କରାଗଲା ଏବଂ ସାମ୍ପ୍ରଦାୟିକ ତଥା ଉପଜାତୀୟ ଆନୁଗତ୍ୟ ଓ ସ୍ଲୋଗାନ୍‌କୁ ଉତ୍ସାହିତ କରାଗଲା । ଜନସାଧାରଣଙ୍କ ପାଖରୁ ସାମରିକ ଲୋକେ ଯେପରି ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ରହନ୍ତି, ସେ ଦିଗରେ ସବୁକିଛି ଉଦ୍ୟମ କରାଗଲା ଏବଂ ସାଧାରଣ ସମ୍ବାଦପତ୍ର ମଧ୍ୟ ସେମାନଙ୍କ ପାଖରେ ପହଞ୍ଚିପାରୁନଥିଲା । ଯେତେ ସବୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଥିଲା ଇଂରେଜମାନଙ୍କ କର୍ତ୍ତୃତ୍ୱରେ ଏବଂ କୌଣସି ଭାରତୀୟ 'କିଙ୍ଗ୍‌ସ କମିଶନ୍' ବା ଶାହି-କମିଶନ ପାଇଁ ଯୋଗ୍ୟ ବିବେଚିତ ହେଉନଥିଲା । ଜଣେ ସଦ୍ୟ ତାଲିମପ୍ରାପ୍ତ ଇଂରେଜ ଲେଫ୍‌ଟନେଣ୍ଟ୍ ଭାରତୀୟ ସେନାବାହିନୀର ବୟସ୍କ ତଥା ଉତ୍ତମ

ଭାବରେ ଅଭିଜ୍ଞ କମିଶନପ୍ରାପ୍ତ ଅଫିସର କିମ୍ବା ତଥାକଥିତ ଭାଇସ୍‌ରୟ୍ସ ବା 'ବଡ଼ଲାଟଙ୍କ କମିଶନ'ଧାରୀ ଅଫିସର ଅପେକ୍ଷା ଉଚ୍ଚପଦସ୍ଥ ଥିଲା । ସାମରିକ ହେଡ଼କ୍ୱାର୍ଟରରେ ହିସାବ ବିଭାଗ ଅମଲ ହେବା ବ୍ୟତୀତ ଅନ୍ୟ କୌଣସି ଆସନରେ ଜଣେ ଭାରତୀୟ ନିଯୁକ୍ତ ଲଭିବାର ପ୍ରଶ୍ନ ନଥିଲା । ଅତିରିକ୍ତ ସୁରକ୍ଷା ବ୍ୟବସ୍ଥା ସ୍ୱରୂପ ଯୁଦ୍ଧରେ ବ୍ୟବହୃତ ଅଧିକତର ଫଳପ୍ରଦ ଅସ୍ତ୍ରଶସ୍ତ୍ର ଭାରତୀୟ ସୈନ୍ୟଙ୍କୁ ଦିଆଯାଇନଥିଲା । ଭାରତରେ ଅବସ୍ଥିତ ଇଂରେଜ ସୈନ୍ୟଙ୍କ ପାଇଁ ତାହା ସଂରକ୍ଷିତ ଥିଲା । ଏହି ସବୁ ବ୍ରିଟିଶ ସୈନ୍ୟଙ୍କୁ, ଭାରତୀୟ ବାହିନୀମାନଙ୍କ ସଙ୍ଗେ, ସାମରିକ ଦୃଷ୍ଟିରୁ ପ୍ରାଣକେନ୍ଦ୍ର ବିବେଚିତ, ଭାରତର ବିଭିନ୍ନ ସ୍ଥାନରେ 'ଆଭ୍ୟନ୍ତରୀଣ ନିରାପତ୍ତା ବାହିନୀ'ଭାବରେ ବିଶୃଙ୍ଖଳା ଦୂରକରିବା ପାଇଁ ଓ ଜନସାଧାରଣଙ୍କୁ ଭୟଭୀତ କରିବା ପାଇଁ ଅବସ୍ଥାପିତ କରାଯାଉଥିଲା । ଇଂରେଜ ସଂଖ୍ୟାଗରିଷ୍ଠ ଓ ଆଧିପତ୍ୟବିଶିଷ୍ଟ ଏହି ଆଭ୍ୟନ୍ତରୀଣ ନିରାପତ୍ତାବାହିନୀ ଭାରତରେ ରିଜର୍ଭବାହିନୀ ଭାବରେ ଅବସ୍ଥାପିତ ଥିଲାବେଳେ ଭାରତୀୟ ବାହିନୀର ଅଧିକ ଭାଗ ଭାରତ ବାହାରେ 'ଫିଲ୍ଡ଼ ଅର୍ମି' ଭାବରେ ଲଢ଼ାଇ କରିବା ଉଦ୍ଦେଶ୍ୟରେ ସଙ୍ଗଠିତ କରାଯାଇଥିଲା । ଭାରତୀୟବାହିନୀର ସୈନ୍ୟମାନଙ୍କୁ ବିଶିଷ୍ଟ କେତେକ ଶ୍ରେଣୀରୁ କେବଳ ଗ୍ରହଣ କରାଯାଇଥିଲା । ଉତ୍ତର-ଭାରତରେ ମୁଖ୍ୟତଃ ଏମାନଙ୍କୁ ଯୋଦ୍ଧୃଶ୍ରେଣୀ ନାମରେ ଅଭିହିତ କରାଯାଇଥାଏ ।

ଭାରତରେ ବ୍ରିଟିଶ ଶାସନର ସେହି ସହଜାତ ବିରୋଧାଭାସ ପୁନର୍ବାର ଆମ ଦୃଷ୍ଟିରେ ପଡ଼େ । ଦେଶର ରାଜନୈତିକ ଏକତା ପ୍ରତିଷ୍ଠା କରିସାରିଲା ପରେ ଯେଉଁସବୁ ନୂତନ ଗତିଶୀଳ ଶକ୍ତି ଆତ୍ମପ୍ରକାଶ କରି, ଏକତା ପାଇଁ କେବଳ ନୁହେଁ, ଭାରତର ସ୍ୱାଧୀନତା ଲକ୍ଷ୍ୟ ଭାବରେ ଗ୍ରହଣ କରି କାର୍ଯ୍ୟକାରୀ ହେଲେ, ବ୍ରିଟିଶ ସରକାର ଯେଉଁ ଏକତା ସୃଷ୍ଟି କରିବା ପାଇଁ ସାହାଯ୍ୟ କରିଥିଲେ, ପୁଣି ସେହି ଏକତାକୁ ବିଭେଦଗ୍ରସ୍ତ କରିବା ଦିଗରେ ଉଦ୍ୟମ କଲେ । ସେତେବେଳେ ଏହି ବିଭେଦ ସୃଷ୍ଟି କରିବା ବିଷୟର ପଛରେ ଭାରତକୁ ବିଭକ୍ତ କରିବାର ରାଜନୈତିକ ଚିନ୍ତା ନଥିଲା । କେବଳ ସମଗ୍ର ଦେଶରେ ବ୍ରିଟିଶ ଶାସନ ଅବ୍ୟାହତ ରଖିବା ନିମନ୍ତେ ଜାତୀୟତାବାଦୀ ଶକ୍ତିମାନଙ୍କୁ ଦୁର୍ବଳ କରିବା ଥିଲା ତାର ପଛର ଉଦ୍ଦେଶ୍ୟ । କିନ୍ତୁ ଯେତେ ଯାହାହେଲେ ସୁଦ୍ଧା ଏହାକୁ ବିଭେଦକାରୀ ଉଦ୍ୟମ ହିଁ କୁହାଯିବ; କାରଣ ପୂର୍ବାପେକ୍ଷା ଦେଶୀୟ ରାଜ୍ୟମାନଙ୍କୁ ଅଧିକତର ଗୁରୁତ୍ୱ ଦିଆଗଲା; ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କୁ ଉତ୍ସାହିତ କରାଗଲା ଓ ସେମାନଙ୍କର ସମର୍ଥନ କାମନା କରାଗଲା; ଗୋଟାଏ ଗୋଷ୍ଠୀ ବିରୁଦ୍ଧରେ ଆଉ ଏକ ଗୋଷ୍ଠୀକୁ ଉତ୍ସାହିତ କରାଗଲା; ଧର୍ମ ଅବା ପ୍ରାଦେଶିକତା ଭିତ୍ତିରେ ବିଭାଜନ ମନୋଭାବ ପ୍ରୋତ୍ସାହିତ କରାଗଲା; ଏବଂ ଏପରି ସବୁ ଗୃହଶତ୍ରୁ ଶ୍ରେଣୀମାନଙ୍କୁ ସଙ୍ଗଠିତ କରାଗଲା, ଯେଉଁମାନେ ପରିବର୍ତ୍ତିତ ଶାସନରେ ବିଲୀନ ହୋଇଯିବା ଭୟରେ ସତତ ଆତଙ୍କିତ ଥିଲେ । ଭାରତୀୟ ଜାତୀୟତାବାଦୀ ଦୃଷ୍ଟିକୋଣରୁ କ୍ଷତିକାରକ ବିବେଚିତ ହେଲେ ସୁଦ୍ଧା ଏଥିରେ ବିସ୍ମିତ ହେବାର କିଛି ନାହିଁ, ଗୋଟାଏ ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତି ପକ୍ଷରେ ଏସବୁ ଥିଲା ଗୋଟାଏ ସ୍ୱାଭାବିକ ବୋଧଗମ୍ୟ ନୀତି; କିନ୍ତୁ ପରବର୍ତ୍ତୀ ଘଟଣାମାନଙ୍କର ବିକାଶ ବୁଝିବାକୁ ଚାହିଁଲେ ଏହି ନୀତି ସମ୍ପର୍କରେ ଆମକୁ ସଚେତନ ରହିବାକୁ ପଡ଼ିବ ।

ଏହି ମାତ୍ରରୁ ହିଁ ଗଢ଼ିଉଠିଲେ 'ଭାରତର ଜାତୀୟ ଜୀବନର ସେହି ସବୁ ମହତ୍ତ୍ୱପୂର୍ଣ୍ଣ ଶକ୍ତି' ଯାହା ସମ୍ପର୍କରେ ଆଜ ଆମକୁ ବାରମ୍ବାର ସ୍ମରଣ କରାଇ ଦିଆଯାଉଛି । ଏକମତ ନହେବା ପାଇଁ ଓ ବିଭେଦ ଘଟାଇବା ପାଇଁ ସେସବୁ ସୃଷ୍ଟି କରାଯାଇଥିଲା ଓ ତାର କାର୍ଯ୍ୟକଳାପକୁ ଉତ୍ସାହିତ କରାଯାଇଥିଲା । ବର୍ତ୍ତମାନ ପରସ୍ପର ଭିତରେ ବୁଝାମଣା କରି ଏକମତ ହେବା ପାଇଁ ସେମାନଙ୍କୁ କୁହାଯାଉଛି ।

ଭାରତର ପ୍ରତିକ୍ରିୟା ସଙ୍ଗେ ବ୍ରିଟିଶ-ଶକ୍ତିର ଏହି ସ୍ୱାଭାବିକ ମିତ୍ରତା ଫଳରେ ଏହି ଶକ୍ତି ବହୁତ କିଛି ଅହିତକର ପ୍ରଥା ଓ ଅଭ୍ୟାସର ଅଭିଭାବକ ଓ ରକ୍ଷକ ହେଇପଡ଼ିଲା, ଯାହାକୁ ଅନ୍ୟଥା ସେ ନିନ୍ଦିତ କରିଥାନ୍ତା । ଇଂରେଜମାନେ ଆସିବାବେଳକୁ ଭାରତ ପ୍ରଥା-ପରମ୍ପରାର ଦାସୀ ଥିଲା ଏବଂ ପୁରାତନ ପ୍ରଥାର ଅତ୍ୟାଚାର ଅତି ଭୟଙ୍କର । ତଥାପି ପ୍ରଥା ପରିବର୍ତ୍ତିତ ହୁଏ ଓ ଗୋଟାଏ ପରିବର୍ତ୍ତନଶୀଳ ପରିବେଷ୍ଟନୀ ସଙ୍ଗେ କେତେ ପର୍ଯ୍ୟନ୍ତ ଖାପଖୁଆଇ ଚଳିବାପାଇଁ ବାଧ୍ୟହୁଏ । ହିନ୍ଦୁ ଅନୁଶାସନ ଅଧିକତଃ ପ୍ରଥାବହୁଳ ଏବଂ ପ୍ରଥାର ପରିବର୍ତ୍ତନ ସଙ୍ଗେ ସେହି ଅନୁଶାସନ ମଧ୍ୟ ଭିନ୍ନ ଭାବରେ ପ୍ରଯୁକ୍ତ ହେଲା । ପ୍ରକୃତପକ୍ଷେ, ହିନ୍ଦୁ ଆଇନରେ ସେଭଳି କିଛି ଧାରା ନଥିଲା, ଯାହା ପ୍ରଥା ଦ୍ୱାରା ପରିବର୍ତ୍ତନ କରାଯାଇନପାରେ । ଇଂରେଜମାନେ ହିନ୍ଦୁ ଶାସ୍ତ୍ର ଉପରେ ପ୍ରତିଷ୍ଠିତ ନ୍ୟାୟସିଦ୍ଧାନ୍ତଦ୍ୱାରା ଏହି ସ୍ଥିତିସ୍ଥାପକ ପ୍ରଥାନୁମୋଦିତ ଆଇନର ପରିବର୍ତ୍ତନ ଘଟାଇଲେ ଏବଂ ଏହିସବୁ ସିଦ୍ଧାନ୍ତ ପୂର୍ବାନୁବର୍ତ୍ତୀ କଠୋର ଶୃଙ୍ଖଳା ସହକାରେ ଅନୁସରଣ କରାଗଲା । ଗୋଟାଏ ସିଦ୍ଧାନ୍ତ ଭାବରେ ତାହା ସୁବିଧାଜନକ ହେଲା; କାରଣ ଏହା ଫଳରେ ଅଧିକତର ସମାନତା ଓ ନିଶ୍ଚୟତା ସାଧିତ ହେଲା । କିନ୍ତୁ ଯେପରି ଭାବରେ ଏହା କରାଗଲା, ତାର ଫଳରେ ପରବର୍ତ୍ତୀ ପ୍ରାର୍ଥୀମାନଙ୍କଦ୍ୱାରା ଅନୁମୋଦିତ ହେବା ବ୍ୟତୀତ ପ୍ରାଚୀନ ଆଇନ ହିଁ କାଏମ୍ ରହିଲା । ଏପରିଭାବରେ, ଯେଉଁ ପ୍ରାଚୀନ ବିଧାନ ବହୁ ସ୍ଥାନରେ କେତେ ପର୍ଯ୍ୟନ୍ତ ପ୍ରଥାଦ୍ୱାରା ପରିବର୍ତ୍ତନ ହେବା ଫଳରେ ଚଳନ୍ତି ମୂଲ୍ୟ ହରାଇସାରିଥିଲା, ପ୍ରତ୍ୟାଭୂତ ହେଇପଡ଼ିଲା ଏବଂ ସୁବିଦିତ ତଥା ଚିରାଚରିତ ଧାରାରେ ପରିବର୍ତ୍ତନ ନିମନ୍ତେ ସବୁ କିଛି ପ୍ରବଣତାକୁ ଦବାଇ ଦିଆଗଲା । ଆଇନ ଅପେକ୍ଷା ଗୋଟାଏ ପ୍ରଥା ଗୁରୁତ୍ୱପୂର୍ଣ୍ଣ ବୋଲି ଯେ କେଉଁ ଗୋଷ୍ଠୀ ପ୍ରମାଣ କରିବା ଦିଗରେ କୌଣସି ବାଧା ଯଦିଓ ନଥିଲା, ଅଦାଲତରେ ସେ ପ୍ରକାର ପ୍ରମାଣ ଦେବା ଅସାଧାରଣ ଭାବରେ କଷ୍ଟକର ଥିଲା । ନୂତନ ଆଇନକାନୁନ ଦ୍ୱାରା ହିଁ ପରିବର୍ତ୍ତନ ସମ୍ଭବ; କିନ୍ତୁ ଆଇନକାନୁନ ତିଆରି କରିବାର ଅଧିକାର ଧରି ବ୍ରିଟିଶ ସରକାର ସେହିସବୁ ରକ୍ଷଣଶୀଳ ଶକ୍ତିମାନଙ୍କର ବିରୋଧିତା ଲାଭ କରିବାପାଇଁ ବ୍ୟାକୁଳ ନଥିଲେ, ଯାହାଙ୍କର ସମର୍ଥନ ଉପରେ ସରକାରଙ୍କର ପୂର୍ଣ୍ଣ ଭରସା ଥିଲା । ପରବର୍ତ୍ତୀ କାଳରେ, ଆଂଶିକ ଭାବରେ ନିର୍ବାଚିତ, ବ୍ୟବସ୍ଥାପକ ସଭ୍ୟମାନଙ୍କୁ ଆଇନକାନୁନ ତିଆରି କରିବା ପାଇଁ କିଛି କ୍ଷମତା ଯେବେ ଦିଆଗଲା, ସମାଜ-ସଂସ୍କାର ଉଦ୍ଦେଶ୍ୟରେ ବିଧାନ ତିଆରି କରିବା ଦିଗରେ ପ୍ରତ୍ୟେକ ଉଦ୍ୟମ ପ୍ରତି କର୍ତ୍ତୃପକ୍ଷ ବିରକ୍ତି ପ୍ରକାଶ କରୁଥିଲେ ଓ ତାହା ନିରୁତ୍ସାହିତ କରିଥିଲେ ।

## ୯. ଶିଳ୍ପର ଅଭିବୃଦ୍ଧି : ପ୍ରାନ୍ତୀୟ ପାର୍ଥକ୍ୟ

ଧୀରେ ଧୀରେ ୧୮୫୭ ବିଦ୍ରୋହର ପରବର୍ତ୍ତୀ ବିପର୍ଯ୍ୟରୁ ଭାରତ ମୁକ୍ତିଲାଭ କଲା । ବ୍ରିଟିଶ ନୀତି ସତ୍ତ୍ୱେ ବହୁ ପ୍ରଭାବଶାଳୀ ଶକ୍ତି କାର୍ଯ୍ୟ କରୁଥିଲା ଓ ଭାରତରେ ପରିବର୍ତ୍ତନ ଘଟୁଥିଲା । ଏକ ନୂତନ ସାମାଜିକ ଚେତନା ମୁଣ୍ଡଟେକି ଉଠୁଥିଲା । ଭାରତର ରାଜନୈତିକ ଏକତା, ପଶ୍ଚିମ ସଙ୍ଗେ ଯୋଗାଯୋଗ, ପ୍ରଯୁକ୍ତିବିଦ୍ୟାରେ ଅଗ୍ରଗତି, ଏପରିକି ଏକ ସର୍ବସାଧାରଣ ବିପତ୍ତିର ଦୁର୍ଭାଗ୍ୟ ସୁଦ୍ଧା ନୂତନ ଚିନ୍ତାର ଧାରା ପ୍ରବାହିତ କଲା । ଗତି କେତେ ମନ୍ଥର ହେଲେ ବି ଶିଳ୍ପକ୍ଷେତ୍ରରେ ଉନ୍ନତି ଘଟିଲା ଏବଂ ଜାତୀୟ ସ୍ୱାଧୀନତା ନିମନ୍ତେ ଏକ ନୂତନ ଆନ୍ଦୋଳନ ଗଢ଼ିଉଠିଲା । ଭାରତର ଏହି ଜାଗରଣ ଥିଲା ଦ୍ୱିବିଧ : ସେ ପଶ୍ଚିମ ଜଗତକୁ ଅବଶ୍ୟ ଗ୍ରହୁଁଥିଲା; କିନ୍ତୁ ସେଥିସଙ୍ଗେ ସେ ଦେଖୁଥିଲା ନିଜକୁ ଓ ନିଜର ଅତୀତକୁ । ରେଳପଥ ଭାରତକୁ ଶିଳ୍ପଯୁଗର ଅଗ୍ରିମ ବିଭାବ ଆନୟନ କଲା । ତଦବଧି ତାର ନେତି-ବିଭାବ କେବଳ ବ୍ରିଟେନ୍‌ରୁ ଆନୀତ-ଉତ୍ପାଦିତ ଦ୍ରବ୍ୟ ଆକାରରେ, ଦୃଷ୍ଟିରେ ପଡ଼ୁଥିଲା । ଭାରତରେ ଶିଳ୍ପୀକରଣ ନିରୁଦ୍ଧ କରିବାପାଇଁ ଆମଦାନୀ ଯନ୍ତ୍ରପାତି ଉପରେ ଯେଉଁ ଶୁଳ୍କ ବସାଯାଇଥିଲା, ଖ୍ରୀ: ୧୮୬୦ରେ ତାହା ଉଠାଇ ନିଆଗଲା ଏବଂ ମୁଖ୍ୟତଃ ବ୍ରିଟିଶ ମୂଳଧନରେ ବଡ଼ ବଡ଼ ଶିଳ୍ପସଂସ୍ଥା ଗଢ଼ିଉଠିଲା । ପ୍ରଥମେ ଦେଖାଦେଲା ବଙ୍ଗର ଝୋଟଶିଳ୍ପ, ଯାହାର ସ୍ନାୟୁକେନ୍ଦ୍ର ଥିଲା ସ୍କଟ୍‌ଲଣ୍ଡର ଡାଣ୍ଡୀରେ । ବହୁତ ପରେ ଅହମଦାବାଦ ଓ ବମ୍ବେରେ ଲୁଗାକଲମାନ ଗଢ଼ିଉଠିଲା, ତା'ପରେ ଖଣିଜ ପଦାର୍ଥର ସନ୍ଧାନ । ଏସବୁ ଦିଗରେ ଭାରତର ବ୍ରିଟିଶ ସରକାର ପକ୍ଷରୁ ବାଧା ପ୍ରତିବନ୍ଧକ ସୃଷ୍ଟିକରିବା ଅବ୍ୟାହତ ରହିଲା ଏବଂ ଭାରତରେ ସୁଦ୍ଧା ଭାରତୀୟ କାର୍ପାସ ଦ୍ରବ୍ୟ ଲଙ୍କାସାୟରରେ ଉତ୍ପାଦିତ ମାଲ ସଙ୍ଗେ ପ୍ରତିଯୋଗିତା କରିବାକୁ ସମର୍ଥ ଯେଉଁଲା ନହୁଏ, ସେଥିଲାଗି ତା ଉପରେ ଅବକାରୀ ଶୁଳ୍କ ଲଦି ଦିଆଗଲା । ଭାରତରେ ଭାରତ ସରକାର କିପରି ଏକ ପୋଲିସ ରାଷ୍ଟ୍ରର ନୀତି କାର୍ଯ୍ୟକାରୀ କରୁଥିଲେ, ତାର ପ୍ରକୃଷ୍ଟ ପ୍ରମାଣ ହେଉଛି ଯେ ବିଂଶ ଶତାବ୍ଦୀର ପ୍ରଭାତ ପର୍ଯ୍ୟନ୍ତ କୃଷି ଓ ଶିଳ୍ପ-ବାଣିଜ୍ୟ ନିମନ୍ତେ ସରକାରଙ୍କର କୌଣସି ବିଭାଗ ନଥିଲା । ମୋର ବିଶ୍ୱାସ, ଭାରତରେ କୃଷିର ଉନ୍ନତି ନିମନ୍ତେ ଜଣେ ମାର୍କିନ୍ ପରିଦର୍ଶକଙ୍କ ଦାନ ଯୋଗୁଁ ମୁଖ୍ୟତଃ କେନ୍ଦ୍ର ସରକାରରେ ଏକ କୃଷି ବିଭାଗ ଆରମ୍ଭ କରାଗଲା । ଏବେ ମଧ୍ୟ ଏହି ବିଭାଗର ବ୍ୟାପାର ଅତି ସାମାନ୍ୟ । ପରେ ପରେ ଖ୍ରୀ: ୧୯୦୫ ରେ ଶିଳ୍ପ ଓ ବାଣିଜ୍ୟ ପାଇଁ ଏକ ବିଭାଗ ଖୋଲିଲା । ତଥାପି ମଧ୍ୟ ଏହି ବିଭାଗମାନଙ୍କରେ ବିଶେଷ କିଛି କାମ ନଥିଲା । ଶିଳ୍ପର ଅଭିବୃଦ୍ଧି କୃତ୍ରିମ ଭାବରେ ସୀମିତ କରାଗଲା ଏବଂ ଭାରତର ସ୍ୱାଭାବିକ ଅର୍ଥନୈତିକ ଉନ୍ନୟନ ବାଧାପ୍ରାପ୍ତ ହେଲା ।

ଭାରତର ଜନସାଧାରଣ ଯଦିଓ ଥିଲେ ନିତାନ୍ତ ଦରିଦ୍ର ଓ ସେମାନଙ୍କର ଦରିଦ୍ରତା ବଢ଼ି-ଚାଲିଥିଲା, ନୂତନ ଅବସ୍ଥାର ସୁଯୋଗ ନେଇ ଉପର ମୁଣ୍ଡରେ କେତେକ ଲୋକ ଖୁବ୍ ସମୃଦ୍ଧି କରୁଥିଲେ ଓ ଧନ ଜମାଉଥିଲେ । ଏହିମାନେ ହିଁ ଦାବି କରୁଥିଲେ ରାଜନୈତିକ ସଂସ୍କାର ଓ ମୂଳଧନ ଖଟାଇବାର ସୁଯୋଗ । ରାଜନୈତିକ ପାର୍ଶ୍ୱରେ, ଭାରତୀୟ ଜାତୀୟ କଂଗ୍ରେସ ଆରମ୍ଭ ହେଲା ଖ୍ରୀ: ୧୮୮୫ରେ । ଶିଳ୍ପ ଓ ବାଣିଜ୍ୟ ଧୀରେ ଧୀରେ ବର୍ଦ୍ଧିତ ହେଲା ଏବଂ

ଏଠାରେ ଲକ୍ଷ୍ୟ କରିବାର କଥା ଯେ ଯେଉଁସବୁ ଶ୍ରେଣୀ ଏହି ସମୟରେ ଶିଳ୍ପ-ବାଣିଜ୍ୟ କ୍ଷେତ୍ରରେ ଆଗୁସାର ହେଉଥିଲେ, ସେମାନେ ମୁଖ୍ୟତଃ ଥିଲେ ସେହି ବର୍ଗର, ଶହ ଶହ ବର୍ଷ ଧରି ବ୍ୟବସାୟ ଓ ବାଣିଜ୍ୟ ଥିଲା ଯାହାଙ୍କର ବଂଶଗତ ବୃତ୍ତି । ବସ୍ତ୍ର ଉତ୍ପାଦନର ନୂତନ କେନ୍ଦ୍ର, ଅହମଦାବାଦ ମୋଗଲକାଳରୁ ଏପରିକି ପୂର୍ବରୁ ମଧ୍ୟ ଉତ୍ପାଦନ ଓ ବାଣିଜ୍ୟର ଥିଲା ଏକ ବିଖ୍ୟାତ କେନ୍ଦ୍ର; ଯେଉଁଠାରୁ ବିଦେଶକୁ ପଣ୍ୟ ଦ୍ରବ୍ୟ ରପ୍ତାନି କରାଯାଉଥିଲା । ଅହମଦାବାଦର ବଡ଼ ବଡ଼ ସୌଦାଗରମାନଙ୍କର ନିଜର ଜାହାଜ ଥିଲା ଏବଂ ଆଫ୍ରିକା ଓ ପାରସ୍ୟ ଉପସାଗର ତୀରକୁ ସେମାନେ ମାଲ ପଠାଉଥିଲେ । ଅହମଦାବାଦ ନିକଟରେ ଭରୋଚ ନାମକ ବନ୍ଦର ଯବନ ଓ ରୋମାନ୍ ସମୟରୁ ପ୍ରସିଦ୍ଧ ଥିଲା ।

ପ୍ରାଚୀନକାଳରୁ ଗୁଜରାଟ, କାଥିଆବାଡ଼ ଓ କଚ୍ଛର ଲୋକ ଥିଲେ ବଣିକ, ଉତ୍ପାଦକ, ସୌଦାଗର ଏବଂ ସମୁଦ୍ରପଥରେ ହିଁ ସେମାନଙ୍କର କାରବାର ଚାଲୁଥିଲା । ଭାରତରେ ବହୁତ କିଛି ପରିବର୍ତ୍ତନ ଘଟିଥିଲେ ସୁଦ୍ଧା ନୂତନ ଅବସ୍ଥା ସଙ୍ଗେ ମେଳ ଖୁଆଇ ସେମାନେ ସେମାନଙ୍କ ପୁରାତନ ଧନ୍ଦା ଚଳାଇ ନେଉଥିଲେ । ଶିଳ୍ପ ଓ ବାଣିଜ୍ୟ କ୍ଷେତ୍ରରେ ବର୍ତ୍ତମାନ ସେମାନେ ହେଉଛନ୍ତି ପ୍ରଧାନ ନେତା । ଧର୍ମ କିମ୍ବା ଧର୍ମମତର ପରିବର୍ତ୍ତନ କୌଣସି ପାର୍ଥକ୍ୟ ଘଟାଇନଥିଲା । ପାର୍ଶୀମାନଙ୍କୁ, ତେର ଶହ ବର୍ଷ ପୂର୍ବେ ଯେଉଁମାନେ ପ୍ରଥମେ ଗୁଜରାଟରେ ବସତି କରିଥିଲେ, ଏ ଦିଗରେ ଗୁଜରାଟୀ ଭାବରେ ନେବା ହିଁ ଠିକ୍ ହେବ । ବହୁ ଦିନରୁ ସେମାନେ ଗୁଜରାଟୀ ଭାଷା ହିଁ ବ୍ୟବହାର କରିଆସୁଛନ୍ତି । ମୁସଲମମାନଙ୍କ ଭିତରୁ ଶିଳ୍ପ-ବାଣିଜ୍ୟ କ୍ଷେତ୍ରରେ ଯେଉଁମାନେ ବଡ଼ ହୋଇଛନ୍ତି, ସେମାନେ ଖୋଜା, ମେମନ୍ ଓ ବୋହରା ବର୍ଗର ଲୋକ । ଏମାନେ ସମସ୍ତେ ଗୋଟାଏ ସମୟରେ ହିନ୍ଦୁ ଧର୍ମ ଛାଡ଼ି ଇସଲାମ ଧର୍ମ ଗ୍ରହଣ କରିଥିଲେ ଏବଂ ସମସ୍ତେ ଗୁଜରାଟ, କାଥିଆବାଡ଼ କିମ୍ବା କଚ୍ଛର ଲୋକ । ଏହି ଗୁଜରାଟୀ-ମାନେ ଭାରତର ଶିଳ୍ପ-ବାଣିଜ୍ୟ କ୍ଷେତ୍ରରେ ଆଧିପତ୍ୟ ଜମାଇ ବସିଛନ୍ତି କେବଳ ନୁହେଁ; ବର୍ମା, ସିଂହଳ, ପୂର୍ବ-ଆଫ୍ରିକା, ଦକ୍ଷିଣ-ଆଫ୍ରିକା ଓ ଅନ୍ୟାନ୍ୟ ଦେଶକୁ ମଧ୍ୟ ପ୍ରସରି-ଯାଇଛନ୍ତି ।

ରାଜପୁତାନାର ମାଡ଼ୋୟାରୀମାନେ ଦେଶର ଆଭ୍ୟନ୍ତରୀଣ ବାଣିଜ୍ୟ ଓ ଅର୍ଥ-ବ୍ୟବସ୍ଥା ଉପରେ ନିୟନ୍ତ୍ରଣ ରଖିଥିଲେ ଏବଂ ଭାରତର ପ୍ରତ୍ୟେକ ନଗରକେନ୍ଦ୍ରରେ ସେମାନେ ଦୃଷ୍ଟିରେ ପଡ଼ନ୍ତି । ବଡ଼ ପୁଞ୍ଜିପତି ଭାବରେ ଓ ଗ୍ରାମ୍ୟ ସାହୁକାର ଭାବରେ ମଧ୍ୟ ସେମାନେ ପରିଚିତ । ଭାରତରେ କେବଳ ନୁହେଁ, ଭାରତ ବାହାରେ ବି ପ୍ରଖ୍ୟାତ ଯେକୌଣସି ମାଡ଼ୋୟାରୀ କୋଠିର ଲିଖିତ ନୋଟ୍ ସମ୍ମାନିତ ହେଉଥିଲା । ମାଡ଼ୋୟାରୀମାନେ ଆଜି ବି ଭାରତୀୟ ପୁଞ୍ଜିର ପ୍ରତିନିଧିତ୍ୱ କରନ୍ତି । ଇତିମଧ୍ୟରେ ସେମାନେ ସେଥି ସଙ୍ଗେ ଶିଳ୍ପକ୍ଷେତ୍ର ମଧ୍ୟ ଯୋଗ କରି ନେଇଛନ୍ତି ।

ଉତ୍ତର-ପଶ୍ଚିମରେ ସିନ୍ଧିମାନଙ୍କର ମଧ୍ୟ ପ୍ରାଚୀନ ବ୍ୟାବସାୟିକ ପରମ୍ପରା ରହିଛି । ଶିକାରପୁର ଅଥବା ହାଇଦରାବାଦ ଥିଲା ସେମାନଙ୍କର ପ୍ରଧାନ କେନ୍ଦ୍ର, ଓ ସେଠାରୁ ମଧ୍ୟ ଓ ପଶ୍ଚିମ-ଏସିଆ ତଥା ଅନ୍ୟତ୍ର ସେମାନେ ବ୍ୟବସାୟ ବଢ଼ାଇଯାଉଥିଲେ । ଆଜି (ଅର୍ଥାତ୍

ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ) ପୃଥିବୀରେ ଏପରି କୌଣସି ବନ୍ଦର ନ୍ଥିଏତ ନାହିଁ, ଯେଉଁଠି ଏକ ଅବା ତତୋଽଧିକ ସିନ୍ଧି ଦୋକାନ ଦେଖିବାକୁ ନମିଳେ । ପଞ୍ଜାବୀମାନଙ୍କ ଭିତରୁ ମଧ୍ୟ କେତେ ପରମ୍ପରାକ୍ରମେ ବ୍ୟବସାୟ କ୍ଷେତ୍ରରେ ରହିଆସିଚନ୍ତି ।

ମାନ୍ଦ୍ରାଜରେ ଚେଟ୍ଟିମାନେ ପ୍ରାଚୀନ କାଳରୁ ବ୍ୟବସାୟ କ୍ଷେତ୍ରରେ ବିଶେଷତଃ ସାହୁକାରୀ କାରବାରରେ ପ୍ରାଧାନ୍ୟ ବଜାୟ ରଖିଆସିଚନ୍ତି । 'ଚେଟ୍ଟି' ଶବ୍ଦ ସଂସ୍କୃତ 'ଶ୍ରେଷ୍ଠୀ' ଶବ୍ଦରୁ ଉତ୍ପନ୍ନ, ଯାହାର ଅର୍ଥ ହେଉଚି ସୌଦାଗରୀ ସମ୍ପ୍ରଦାୟର ପ୍ରମୁଖ । ପ୍ରଚଳିତ 'ଶେଠ' ଶବ୍ଦ ମଧ୍ୟ 'ଶ୍ରେଷ୍ଠୀ' ଶବ୍ଦରୁ ଉତ୍ପନ୍ନ । ମାନ୍ଦ୍ରାଜର ଚେଟ୍ଟିମାନେ ଦକ୍ଷିଣ-ଭାରତରେ କେବଳ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ବୋଲି ନୁହେଁ; ବରଂ ସମଗ୍ର ବ୍ରହ୍ମଦେଶରେ ଏପରିକି ସେ ଦେଶର ଦୂର ପଲ୍ଲୀ ଅଞ୍ଚଳରେ ମଧ୍ୟ ସେମାନେ ସାହୁକାର ଭାବରେ ଚର୍ଚ୍ଚିତ ଥିଲେ ।

ପ୍ରତ୍ୟେକ ପ୍ରଦେଶ ଭିତରେ ମଧ୍ୟ ବ୍ୟବସାୟ ବାଣିଜ୍ୟ ପ୍ରଧାନତଃ ପୁରାତନ ବୈଶ୍ୟବର୍ଗର ଲୋକଙ୍କ ହାତରେ ଥିଲା, ଯେଉଁମାନେ ଅଗଣିତ ପୁରୁଷ ଧରି ବ୍ୟବସାୟ କରିଆସିଚନ୍ତି । ପାଇକାରୀ, ଖୁଚୁରା ଓ ସାହୁକାରୀ କାରବାର ସେମାନଙ୍କ ହାତରେ ଥିଲା । ପ୍ରତ୍ୟେକ ଗ୍ରାମରେ ଗୋଟିଏ ବଣିଆ ଦୋକାନ ଥାଏ, ଯେଉଁଠି ଗ୍ରାମ୍ୟ ଜୀବନର ଆବଶ୍ୟକୀୟ ଦ୍ରବ୍ୟ କିଣିବାକୁ ମିଳେ ଓ ମହାଜନ ଦରକାର ବେଳେ ଗ୍ରାମବାସୀଙ୍କୁ ଚଢ଼ା ସୁଧରେ ଋଣ ଦେଇଥାଏ । ଗ୍ରାମାଞ୍ଚଳର ମହାଜନୀ କାରବାର ବ୍ୟବସ୍ଥା ପ୍ରାୟ ଏହି ବଣିଆଙ୍କ ଆୟତ୍ତରେ ଥିଲା । ସେମାନେ ଉତ୍ତର-ପଶ୍ଚିମାଞ୍ଚଳର ଉପଜାତି-ଅଧ୍ୟୁଷିତ ତଥା ସ୍ୱାଧୀନ ରାଜ୍ୟମାନଙ୍କ ଭିତରେ ବସବାସ କରି ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କରିଚନ୍ତି । ଦରିଦ୍ରତା ବୃଦ୍ଧି ସଙ୍ଗେ କୃଷି-ଋଣ ମଧ୍ୟ କ୍ଷିପ୍ରଭାବରେ ବଢ଼ି ଚାଲିଲା ଏବଂ ସାହୁକାରମାନେ ଜମି ବନ୍ଧକ ରଖି ଋଣ ଦେଇ ପରେ ସେଥିରେ ଅଧିକ ଭାଗ ନିଜ ଦଖଲକୁ ଆଣିପାରୁଥିଲେ । ଏପରି ଭାବରେ, ଗ୍ରାମର ସାହୁକାର ହାତରେ ଗ୍ରାମର ଅଧିକାଂଶ ଜମି ପଡ଼ିଲା ଓ ସେ ଜମିଦାର ବୋଲାଇଲା ।

ନୂଆ ଲୋକେ ବିଭିନ୍ନ ବ୍ୟବସାୟ ଧନ୍ଦାରେ କ୍ରମଶଃ ଭର୍ତ୍ତିହେବା ଫଳରେ 'ବ୍ୟବସାୟ-ବାଣିଜ୍ୟ ଓ ସାହୁକାରୀ କାରବାର କରୁଥିବା ବର୍ଗର ଓ ଅନ୍ୟ ବର୍ଗ ଭିତରେ ଥିବା ସୀମାରେଖା ଆଉ ସେତେ ନିର୍ଦ୍ଦିଷ୍ଟ ରହିଲାନାହିଁ; କିନ୍ତୁ ସେହିସବୁ ବର୍ଗୀୟ ବୃତ୍ତି ଚାଲୁ-ରହିଲା ଓ ଆଜି ବି ଲକ୍ଷଣୀୟ ଭାବରେ ରହିଚି । ଏହାର କାରଣ ବର୍ଣ୍ଣ-ବ୍ୟବସ୍ଥା, କି ପରମ୍ପରାର ବନ୍ଧନ, କି ବଂଶଗତ ସାମର୍ଥ୍ୟ କିମ୍ବା ଏ ସବୁର ମିଶ୍ରଣ କହିବା କଠିନ । ଏଥିରେ କିନ୍ତୁ ସନ୍ଦେହ ନାହିଁ ଯେ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ବ୍ୟବସାୟ ଓ ଧନ ସଞ୍ଚୟ କାର୍ଯ୍ୟକୁ ହୀନଚକ୍ଷୁରେ ଦେଖୁଥିଲେ । ଧନ ସଞ୍ଚୟ ସେତେ ଅପ୍ରୀତିକର ବୋଧ ନହେଲେ ସୁଦ୍ଧା ସମାଜରେ ବ୍ରାହ୍ମଣ ଅବା କ୍ଷତ୍ରିୟର ସମ୍ମାନହାନିର ଉପଯୁକ୍ତ କ୍ଷତିପୂରଣ ନଥିଲା । ସାମନ୍ତବାଦୀ ଯୁଗର ଚଳଣି ଭଳି ଜମି ଥିଲା ସାମାଜିକ ପଦମର୍ଯ୍ୟାଦାର ପ୍ରତୀକ ଏବଂ ଜମି ଅବା ଧନ ସମ୍ପଦ ଥାଉ ବା ନଥାଉ ବିଦ୍ୱାନ୍ ସର୍ବତ୍ର ପୂଜା ପାଉଥିଲା । ବ୍ରିଟିଶ ରାଜତ୍ୱରେ ସରକାରୀ ସ୍ୱୀକୃତି ସମ୍ମାନ, ନିରାପତ୍ତା ଓ ପ୍ରତିଷ୍ଠା ଅର୍ପଣ କଲା ଏବଂ ପରେ ଭାରତୀୟମାନେ

ଯେବେ ଇଣ୍ଡିୟାନ୍ ସିଭିଲ ସର୍ଭିସ୍‌ରେ ପ୍ରବେଶ କଲେ, ଯେଉଁ ସର୍ଭିସ୍‌କୁ 'ସ୍ୱର୍ଗଜାତ' ସର୍ଭିସ୍ ବୋଲି ଅଭିହିତ କରାଯାଇଥାଏ, ଆଉ ଯେଉଁ ସ୍ୱର୍ଗ ଥିଲା ଇଂଲଣ୍ଡର ହ୍ୱାଇଟ୍‌ହଲ୍‌ର ଗୋଟାଏ ପ୍ରକାର ପାଣ୍ଡୁର ଛାୟା, ଇଂରେଜୀଶିକ୍ଷିତ ଶ୍ରେଣୀ ନିମନ୍ତେ ଇନ୍ଦ୍ରଲୋକ ବିବେଚିତ ହେଲା । ପେଶାଦାର ଶ୍ରେଣୀର ଲୋକେ, ବିଶେଷତଃ ଓକିଲମାନଙ୍କ ଭିତରୁ ଅନେକେ ନୂତନ ଅଦାଲତମାନଙ୍କରେ ରହି ଖୁବ୍ ଭଲ ଭାବରେ ଧନ ଅର୍ଜନ କଲେ । ସମାଜରେ ସେମାନଙ୍କର ସମ୍ମାନ ଓ ପ୍ରତିଷ୍ଠା ଥିଲା ଏବଂ ବହୁ ତରୁଣ ସେହି ପେଶା ପ୍ରତି ଆକୃଷ୍ଟ ହେଉଥିଲେ । କହିବା ବାହୁଲ୍ୟ, ଏହି ଓକିଲମାନେ ଅବଶ୍ୟମ୍ଭାବୀ ଭାବରେ ରାଜନୈତିକ ଓ ସାମାଜିକ ସଂସ୍କାର ଆନ୍ଦୋଳନମାନଙ୍କର ନେତୃତ୍ୱ ନେଲେ ।

ଓକିଲତି ପେଶାରେ ପ୍ରଥମେ ପ୍ରବେଶ କଲେ ବଙ୍ଗାଳୀମାନେ ଓ ସେମାନଙ୍କ ଭିତରୁ କେତେକ ଏତେ ଭଲଭାବରେ ସଫଳ ଓ ସମୃଦ୍ଧ ହେଲେ ଯେ ଓକିଲତି ପେଶା ଅନେକଙ୍କ ଆଖିରେ ଗୋଟାଏ ଇନ୍ଦ୍ରଜାଲ ଭଳି ପ୍ରତୀତ ହେଉଥିଲା । ସେହି ଓକିଲମାନେ ରାଜନୈତିକ ନେତା ମଧ୍ୟ ଥିଲେ । ଆଗ୍ରହ ଅଭାବରୁ କିମ୍ବା ଅନ୍ୟାନ୍ୟ କାରଣରୁ ସେମାନେ ଦେଶର ବର୍ଦ୍ଧିଷ୍ଣୁ ଶିଳ୍ପ ପ୍ରତି ଦୃଷ୍ଟି ଦେଉନଥିଲେ । ଫଳତଃ ଦେଶର ଜୀବନରେ ଶିଳ୍ପ ଯେବେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେବା ଆରମ୍ଭ କଲା ଓ ସେଥି ହେତୁରୁ ରାଜନୀତିକୁ ପ୍ରଭାବିତ କଲା, ବଙ୍ଗ ରାଜନୈତିକ କ୍ଷେତ୍ରରେ ତାର ପୂର୍ବର ଖ୍ୟାତି ହରାଇବସିଲା । ପୂର୍ବର ସେଇ ଧାରା, ଯେବେ ସରକାରୀ କର୍ମଚାରୀ ଭାବରେ ଓ ଅନ୍ୟାନ୍ୟ ପଦାଧିକାର ବଳରେ ବଙ୍ଗାଳୀ ବଙ୍ଗରୁ ଅନ୍ୟାନ୍ୟ ପ୍ରଦେଶକୁ ଉଜାଣି ଯାଉଥିଲେ, ତାର ମୁଖ ପରିବର୍ତ୍ତିତ ହେଲା ଏବଂ ଅନ୍ୟାନ୍ୟ ପ୍ରଦେଶର ଲୋକେ ବଙ୍ଗ ଭିତରକୁ ବିଶେଷକରି କଲିକତାକୁ ଆସି ବାଣିଜ୍ୟ ଓ ଶିଳ୍ପ କ୍ଷେତ୍ରରେ ଏକରକମ ଦଖଲ ଜମାଇ ବସିଲେ । ପୂର୍ବେ ଯେପରି ଥିଲା, ଏବେ ବି କଲିକତା ବ୍ରିଟିଶ ପୁଞ୍ଜି ଓ ଶିଳ୍ପର ପ୍ରଧାନ କେନ୍ଦ୍ର ହୋଇ ରହିଛି ଏବଂ ଇଂରେଜ ଓ ସ୍କଚ୍‌ମାନେ ତାର ବ୍ୟବସାୟ ଉପରେ କର୍ତ୍ତୃତ୍ୱ କରୁଛନ୍ତି । ତଥାପି ମାଡ଼ୋୟାରୀ ଓ ଗୁଜରାଟୀମାନେ ବିଶେଷ ପଛରେ ପଡ଼ିନାହାନ୍ତି । କଲିକତାର ଶ୍ରେଷ୍ଠ ଶ୍ରେଷ୍ଠ କାରବାର ସୁଦ୍ଧା ପ୍ରାୟ ଅଣବଙ୍ଗାଳୀଙ୍କ ହାତରେ ରହିଛି । କଲିକତାର ହଜାର ହଜାର ଟାକ୍‌ସିଡ୍ରାଇଭର ଅର୍ଥାତ୍ ନଗରୀର ଭଡ଼ା ମଟରଗାଡ଼ିଚାଳକ ସମସ୍ତେ ପଞ୍ଜାବର ଶିଖ୍ ।

ଭାରତୀୟ ମାଲିକାନାର ଶିଳ୍ପ, ବାଣିଜ୍ୟ, ବେଙ୍କ୍ କାରବାର ଓ ଜୀବନବୀମା ଇତ୍ୟାଦିର କେନ୍ଦ୍ର ଓ ପ୍ରଧାନ କର୍ମସ୍ଥଳ ହୋଇଉଠିଲା ବମ୍ବେ । ଏହି କର୍ମାନୁସରଣରେ ପାର୍ଶୀ, ଗୁଜରାଟୀ ଓ ମାଡ଼ୋୟାରୀମାନେ ଥିଲେ ଅଗ୍ରଣୀ ଏବଂ ତାତ୍ପର୍ଯ୍ୟର ସହ ଲକ୍ଷ୍ୟ କରିବାର କଥା ଯେ ମରାଠାମାନେ ଏଥିରେ କିଛି ଭୂମିକା ନେଇନାହାନ୍ତି କହିଲେ ଚଳେ । ବମ୍ବେ ବର୍ତ୍ତମାନ ଏକ ବିଶାଳ ସାର୍ବଭୌମିକ, ଜାତୀୟ ସଂସ୍କାରମୁକ୍ତ ନଗରୀରେ ପରିଣତ ହେଉଛି; କିନ୍ତୁ ଏଠାର ଅଧିବାସୀ ପ୍ରଧାନତଃ ମରାଠୀ ଓ ଗୁଜରାଟୀ । ବିଦ୍ୱତ୍ତାରେ ଓ ଅନ୍ୟାନ୍ୟ ପେଶାରେ ମରାଠାମାନେ ନିଜର ପ୍ରତିଭା ପ୍ରଦର୍ଶିତ କରିଛନ୍ତି । ସୈନିକ ଭାବରେ ସେମାନଙ୍କର ସୁନାମ ଅଛି । ସେମାନଙ୍କ ଭିତରୁ ବହୁ ଲୋକ ଲୁଗାକଳମାନଙ୍କର ଶ୍ରମିକ ଭାବରେ ମଧ୍ୟ କାର୍ଯ୍ୟ

ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ) ପୃଥିବୀରେ ଏପରି କୌଣସି ବନ୍ଦର ହୁଏତ ନାହିଁ, ଯେଉଁଠି ଏକ ଅବା ତତୋଽଧିକ ସିନ୍ଧି ଦୋକାନ ଦେଖିବାକୁ ନମିଳେ । ପଞ୍ଜାବୀମାନଙ୍କ ଭିତରୁ ମଧ୍ୟ କେତେ ପରମ୍ପରାକ୍ରମେ ବ୍ୟବସାୟ କ୍ଷେତ୍ରରେ ରହିଆସିଛନ୍ତି ।

ମାନ୍ଦ୍ରାଜରେ ଚେଟ୍ଟିମାନେ ପ୍ରାଚୀନ କାଳରୁ ବ୍ୟବସାୟ କ୍ଷେତ୍ରରେ ବିଶେଷତଃ ସାହୁକାରୀ କାରବାରରେ ପ୍ରାଧାନ୍ୟ ବଜାୟ ରଖିଆସିଛନ୍ତି । 'ଚେଟ୍ଟି' ଶବ୍ଦ ସଂସ୍କୃତ 'ଶ୍ରେଷ୍ଠୀ' ଶବ୍ଦରୁ ଉତ୍ପନ୍ନ, ଯାହାର ଅର୍ଥ ହେଉଛି ସୌଦାଗରୀ ସମ୍ପ୍ରଦାୟର ପ୍ରମୁଖ । ପ୍ରଚଳିତ 'ଶେଠ' ଶବ୍ଦ ମଧ୍ୟ 'ଶ୍ରେଷ୍ଠୀ' ଶବ୍ଦରୁ ଉତ୍ପନ୍ନ । ମାନ୍ଦ୍ରାଜର ଚେଟ୍ଟିମାନେ ଦକ୍ଷିଣ-ଭାରତରେ କେବଳ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ବୋଲି ନୁହେଁ; ବରଂ ସମଗ୍ର ବ୍ରହ୍ମଦେଶରେ ଏପରିକି ସେ ଦେଶର ଦୂର ପଲ୍ଲୀ ଅଞ୍ଚଳରେ ମଧ୍ୟ ସେମାନେ ସାହୁକାର ଭାବରେ ଚହ୍ଲିତ ଥିଲେ ।

ପ୍ରତ୍ୟେକ ପ୍ରଦେଶ ଭିତରେ ମଧ୍ୟ ବ୍ୟବସାୟ ବାଣିଜ୍ୟ ପ୍ରଧାନତଃ ପୁରାତନ ବୈଶ୍ୟବର୍ଗର ଲୋକଙ୍କ ହାତରେ ଥିଲା, ଯେଉଁମାନେ ଅଗଣିତ ପୁରୁଷ ଧରି ବ୍ୟବସାୟ କରିଆସିଛନ୍ତି । ପାଇକାରୀ, ଖୁଚୁରା ଓ ସାହୁକାରୀ କାରବାର ସେମାନଙ୍କ ହାତରେ ଥିଲା । ପ୍ରତ୍ୟେକ ଗ୍ରାମରେ ଗୋଟିଏ ବଣିଆ ଦୋକାନ ଥାଏ, ଯେଉଁଠି ଗ୍ରାମ୍ୟ ଜୀବନର ଆବଶ୍ୟକୀୟ ଦ୍ରବ୍ୟ କିଣିବାକୁ ମିଳେ ଓ ମହାଜନ ଦରକାର ବେଳେ ଗ୍ରାମବାସୀଙ୍କୁ ଚଢ଼ା ସୁଧରେ ଋଣ ଦେଇଥାଏ । ଗ୍ରାମାଞ୍ଚଳର ମହାଜନୀ କାରବାର ବ୍ୟବସ୍ଥା ପ୍ରାୟ ଏହି ବଣିଆଙ୍କ ଆୟତ୍ତରେ ଥିଲା । ସେମାନେ ଉତ୍ତର-ପଶ୍ଚିମାଞ୍ଚଳର ଉପଜାତି-ଅଧ୍ୟୁଷିତ ତଥା ସ୍ୱାଧୀନ ରାଜ୍ୟମାନଙ୍କ ଭିତରେ ବସବାସ କରି ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କରିଚନ୍ତି । ଦରିଦ୍ରତା ବୃଦ୍ଧି ସଙ୍ଗେ କୃଷି-ଋଣ ମଧ୍ୟ କ୍ଷିପ୍ରଭାବରେ ବଢ଼ିଚାଲିଲା ଏବଂ ସାହୁକାରମାନେ ଜମି ବନ୍ଧକ ରଖି ଋଣ ଦେଇ ପରେ ସେଥିରେ ଅଧିକ ଭାଗ ନିଜ ଦଖଲକୁ ଆଣିପାରୁଥିଲେ । ଏପରି ଭାବରେ, ଗ୍ରାମର ସାହୁକାର ହାତରେ ଗ୍ରାମର ଅଧିକାଂଶ ଜମି ପଡ଼ିଲା ଓ ସେ ଜମିଦାର ବୋଲାଇଲା ।

ନୂଆ ଲୋକେ ବିଭିନ୍ନ ବ୍ୟବସାୟ ଧନ୍ଦାରେ କ୍ରମଶଃ ଭର୍ତ୍ତିହେବା ଫଳରେ 'ବ୍ୟବସାୟ-ବାଣିଜ୍ୟ ଓ ସାହୁକାରୀ କାରବାର କରୁଥିବା ବର୍ଗର ଓ ଅନ୍ୟ ବର୍ଗ ଭିତରେ ଥିବା ସୀମାରେଖା ଆଉ ସେତେ ନିର୍ଦ୍ଦିଷ୍ଟ ରହିଲାନାହିଁ; କିନ୍ତୁ ସେହିସବୁ ବର୍ଗୀୟ ବୃତ୍ତି ଚାଲୁ-ରହିଲା ଓ ଆଜି ବି ଲକ୍ଷଣୀୟ ଭାବରେ ରହିଛି । ଏହାର କାରଣ ବର୍ଣ୍ଣ-ବ୍ୟବସ୍ଥା, କି ପରମ୍ପରାର ବନ୍ଧନ, କି ବଂଶଗତ ସାମର୍ଥ୍ୟ କିମ୍ବା ଏ ସବୁର ମିଶ୍ରଣ କହିବା କଠିନ । ଏଥିରେ କିନ୍ତୁ ସନ୍ଦେହ ନାହିଁ ଯେ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ବ୍ୟବସାୟ ଓ ଧନ ସଂଚୟ କାର୍ଯ୍ୟକୁ ହୀନଚକ୍ଷୁରେ ଦେଖୁଥିଲେ । ଧନ ସଂଚୟ ସେତେ ଅପ୍ରୀତିକର ବୋଧ ନହେଲେ ସୁଦ୍ଧା ସମାଜରେ ବ୍ରାହ୍ମଣ ଅବା କ୍ଷତ୍ରିୟର ସମ୍ମାନହାନିର ଉପଯୁକ୍ତ କ୍ଷତିପୂରଣ ନଥିଲା । ସାମନ୍ତବାଦୀ ଯୁଗର ଚଳଣି ଭଳି ଜମି ଥିଲା ସାମାଜିକ ପଦମର୍ଯ୍ୟାଦାର ପ୍ରତୀକ ଏବଂ ଜମି ଅବା ଧନ ସମ୍ପଦ ଥାଉ ବା ନଥାଉ ବିଦ୍ୱାନ୍ ସବୁବେଳେ ପୂଜା ପାଉଥିଲା । ବ୍ରିଟିଶ ରାଜତ୍ୱରେ ସରକାରୀ ଚାକିରି ସମ୍ମାନ, ନିରାପତ୍ତା ଓ ପ୍ରତିଷ୍ଠା ଅର୍ପଣ କଲା ଏବଂ ପରେ ଭାରତୀୟମାନେ

ଯେବେ ଇଣ୍ଡିଆନ୍ ସିଭିଲ ସର୍ଭିସ୍‌ରେ ପ୍ରବେଶ କଲେ, ଯେଉଁ ସର୍ଭିସ୍‌କୁ 'ସ୍ୱର୍ଗଜାତ' ସର୍ଭିସ୍ ବୋଲି ଅଭିହିତ କରାଯାଇଥାଏ, ଆଉ ଯେଉଁ ସ୍ୱର୍ଗ ଥିଲା ଇଂଲଣ୍ଡର ହ୍ୱାଇଟ୍‌ହଲ୍‌ର ଗୋଟାଏ ପ୍ରକାର ପାଣ୍ଡୁର ଛାୟା, ଇଂରେଜୀଶିକ୍ଷିତ ଶ୍ରେଣୀ କ୍ରମଶଃ ଇନ୍ଦ୍ରଲୋକ ବିବେଚିତ ହେଲା । ପେଶାଦାର ଶ୍ରେଣୀର ଲୋକେ, ବିଶେଷତଃ ଓକିଲମାନଙ୍କ ଭିତରୁ ଯୋକେ ନୂତନ ଅଦାଲତମାନଙ୍କରେ ରହି ଖୁବ୍ ଭଲ ଭାବରେ ଧନ ଅର୍ଜନ କଲେ । ସମାଜରେ ସେମାନଙ୍କର ସମ୍ମାନ ଓ ପ୍ରତିଷ୍ଠା ଥିଲା ଏବଂ ବହୁ ତରୁଣ ସେହି ପେଶା ପ୍ରତି ଆକୃଷ୍ଟ ହେଉଥିଲେ । କହିବା ବାହୁଲ୍ୟ, ଏହି ଓକିଲମାନେ ଅବଶ୍ୟମ୍ଭାବୀ ଭାବରେ ରାଜନୈତିକ ଓ ସାମାଜିକ ସଂସ୍କାର ଆନ୍ଦୋଳନମାନଙ୍କର ନେତୃତ୍ୱ ନେଲେ ।

ଓକିଲତି ପେଶାରେ ପ୍ରଥମେ ପ୍ରବେଶ କଲେ ବଙ୍ଗାଳୀମାନେ ଓ ସେମାନଙ୍କ ଭିତରୁ କେତେକ ଏତେ ଭଲଭାବରେ ସଫଳ ଓ ସମୃଦ୍ଧ ହେଲେ ଯେ ଓକିଲତି ପେଶା ଅନେକଙ୍କ ଆଖିରେ ଗୋଟାଏ ଇନ୍ଦ୍ରଜାଲ ଭଳି ପ୍ରତୀତ ହୋଇଥିଲା । ସେହି ଓକିଲମାନେ ରାଜନୈତିକ ନେତା ମଧ୍ୟ ଥିଲେ । ଆଗ୍ରହ ଅଭାବରୁ କିମ୍ବା ଅନ୍ୟାନ୍ୟ କାରଣରୁ ସେମାନେ ଦେଶର ବର୍ଦ୍ଧିଷ୍ଣୁ ଶିଳ୍ପ ପ୍ରତି ଦୃଷ୍ଟି ଦେଇନଥିଲେ । ଫଳତଃ ଦେଶର ଜୀବନରେ ଶିଳ୍ପ ଯେବେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେବା ଆରମ୍ଭ କଲା ଓ ସେଥି ହେତୁରୁ ରାଜନୀତିକୁ ପ୍ରଭାବିତ କଲା, ବଙ୍ଗ ରାଜନୈତିକ କ୍ଷେତ୍ରରେ ତାର ପୂର୍ବର ଖ୍ୟାତି ହରାଇବସିଲା । ପୂର୍ବର ସେଇ ଧାରା, ଯେବେ ସରକାରୀ କର୍ମଚାରୀ ଭାବରେ ଓ ଅନ୍ୟାନ୍ୟ ପଦାଧିକାର ବଳରେ ବଙ୍ଗାଳୀ ବଙ୍ଗରୁ ଅନ୍ୟାନ୍ୟ ପ୍ରଦେଶକୁ ଉଜାଣି ଯାଇଥିଲେ, ତାର ମୁଖ ପରିବର୍ତ୍ତିତ ହେଲା ଏବଂ ଅନ୍ୟାନ୍ୟ ପ୍ରଦେଶର ଲୋକେ ବଙ୍ଗ ଭିତରକୁ ବିଶେଷକରି କଲିକତାକୁ ଆସି ବାଣିଜ୍ୟ ଓ ଶିଳ୍ପ କ୍ଷେତ୍ରରେ ଏକରକମ ଦଖଲ ଜମାଇ ବସିଲେ । ପୂର୍ବେ ଯେପରି ଥିଲା, ଏବେ ବି କଲିକତା ବ୍ରିଟିଶ ପୁଞ୍ଜି ଓ ଶିଳ୍ପର ପ୍ରଧାନ କେନ୍ଦ୍ର ହୋଇ ରହିଛି ଏବଂ ଇଂରେଜ ଓ ସ୍କଟ୍‌ମାନେ ତାର ବ୍ୟବସାୟ ଉପରେ କର୍ତ୍ତୃତ୍ୱ କରୁଛନ୍ତି । ତଥାପି ମାଡ଼ୋୟାରୀ ଓ ଗୁଜରାଟୀମାନେ ବିଶେଷ ପଛରେ ପଡ଼ିନାହାନ୍ତି । କଲିକତାର ଛୋଟ ଛୋଟ କାରବାର ସୁଦ୍ଧା ପ୍ରାୟ ଅଣବଙ୍ଗାଳୀଙ୍କ ହାତରେ ରହିଛି । କଲିକତାର ହଜାର ହଜାର ଟାକ୍‌ସିଡ୍ରାଇଭର ଅର୍ଥାତ୍ ନଗରୀର ଭଡ଼ା ମଟରଗାଡ଼ିଚାଳକ ସମସ୍ତେ ପଞ୍ଜାବର ଶିଖ୍ ।

ଭାରତୀୟ ମାଲିକାନାର ଶିଳ୍ପ, ବାଣିଜ୍ୟ, ବେଙ୍କ୍ କାରବାର ଓ ଜୀବନବୀମା ଇତ୍ୟାଦିର କେନ୍ଦ୍ର ଓ ପ୍ରଧାନ କର୍ମସ୍ଥଳ ହୋଇଉଠିଲା ବମ୍ବେ । ଏହି କର୍ମାନୁସରଣରେ ପାର୍ଶୀ, ଗୁଜରାଟୀ ଓ ମାଡ଼ୋୟାରୀମାନେ ଥିଲେ ଅଗ୍ରଣୀ ଏବଂ ତାତ୍ପର୍ଯ୍ୟର ସହ ଲକ୍ଷ୍ୟ କରିବାର କଥା ଯେ ମରାଠାମାନେ ଏଥିରେ କିଛି ଭୂମିକା ନେଇନାହାନ୍ତି କହିଲେ ଚଳେ । ବମ୍ବେ ବର୍ତ୍ତମାନ ଏକ ବିଶାଳ ସାର୍ବଭୌମିକ, ଜାତୀୟ ସଂସ୍କାରମୁକ୍ତ ନଗରୀରେ ପରିଣତ ହୋଇଛି; କିନ୍ତୁ ଏଠାର ଅଧିବାସୀ ପ୍ରଧାନତଃ ମରାଠୀ ଓ ଗୁଜରାଟୀ । ଶିକ୍ଷାଦାନ ଓ ଅନ୍ୟାନ୍ୟ ପେଶାରେ ମରାଠାମାନେ ନିଜର ପ୍ରତିଭା ପ୍ରଦର୍ଶିତ କରିଛନ୍ତି । ସୈନିକ ଭାବରେ ସେମାନଙ୍କର ସୁନାମ ଅଛି । ସେମାନଙ୍କ ଭିତରୁ ବହୁ ଲୋକ ଲୁଗାକଳମାନଙ୍କରେ ଶ୍ରମିକ ଭାବରେ ମଧ୍ୟ କାର୍ଯ୍ୟ

କରନ୍ତି । ମରାଠୀମାନେ ଖୁବ୍ ପରିଶ୍ରମୀ ଓ ବଳବାନ୍; କଳୁ ପ୍ରଦେଶକୁ ନେଇ ବିଗ୍ଭର କଲେ, ସେମାନେ ଦରିଦ୍ର । ସେମାନଙ୍କର ପୂର୍ବଜମାନଙ୍କର ବିଭିନ୍ନ କୀର୍ତ୍ତି ଓ ଶିବାଜୀ ପରମ୍ପରା ଯୋଗ ସେମାନେ ଗର୍ବିତ । ଗୁଜରାଟୀମାନେ କୋମଳ-ଶରୀର, ଅପେକ୍ଷାକୃତ ଶିଷ୍ଟ ଓ ବିତ୍ତଶାଳୀ ଏବଂ ବ୍ୟବସାୟ-ବାଣିଜ୍ୟରେ କୁଶଳ । ଏହି ପାର୍ଥକ୍ୟ ପଛର କାରଣ ହୁଏତ ପ୍ରଧାନତଃ ଭୌଗୋଳିକ । ମରାଠା ପ୍ରଦେଶ ପର୍ବତବହୁଳ ଓ ଅନାବାଦୀ ପ୍ରାନ୍ତରରେ ପୂର୍ଣ୍ଣ ଥିଲାବେଳେ ଗୁଜରାଟ ଏକ ଉର୍ବର ଓ ସମୃଦ୍ଧ ପ୍ରଦେଶ ।

କୌତୂହଳସହକାରେ ଲକ୍ଷ୍ୟ କରିବାର କଥା ଯେ ଭାରତର ବିଭିନ୍ନ ଅଂଶରେ ଏହିସବୁ ଓ ଅନ୍ୟାନ୍ୟ ଯାହା ସବୁ ବ୍ୟବଧାନ ଜାରି ରହିଛି, ତାହା କ୍ରମଶଃ ସଙ୍କୁଚିତ ହେବାର ସୂଚନା ମିଳୁଛି । ବୌଦ୍ଧିକତାର ଶୀର୍ଷରେ ଅଧିଷ୍ଠିତ ମାନ୍ଦ୍ରାଜ, ଅତୀତରେ ଯେପରି ଏ ଯୁଗରେ ବି ବହୁ ଖ୍ୟାତନାମା ଦାର୍ଶନିକ, ଗଣିତଜ୍ଞ ଓ ବୈଜ୍ଞାନିକଙ୍କୁ ଜନ୍ମଦେଇଛି । ବମ୍ବେ ତାର ସମସ୍ତ ସୁବିଧା ଓ ଅସୁବିଧା ଯୋଗ ବର୍ତ୍ତମାନ ସମ୍ପୂର୍ଣ୍ଣ ଭାବରେ ବ୍ୟବସାୟ-କନ୍ଦ୍ରିକ ହୋଇ ଉଠିଛି । ବଙ୍ଗ ଶିଳ୍ପ ଓ ବ୍ୟବସାୟ କ୍ଷେତ୍ରରେ ଏକପ୍ରକାର ଅନଗ୍ରସର ହେଲେ ସୁଦ୍ଧା କେତେକ ଉଚ୍ଚକୋଟୀର ବୈଜ୍ଞାନିକଙ୍କୁ ଜନ୍ମଦେଇଛି ଏବଂ କଳା ଓ ସାହିତ୍ୟକ୍ଷେତ୍ରରେ ବିଶେଷ ପ୍ରତିଷ୍ଠା ଅର୍ଜନ କରିଛି । ପଞ୍ଜାବ ସେପରି କୌଣସି ବିଖ୍ୟାତ ବ୍ୟକ୍ତିତ୍ୱ ସୃଷ୍ଟି କରିପାରି ନଥିଲେ ସୁଦ୍ଧା ଏହା ଏକ ଗତିଶୀଳ ପ୍ରଦେଶ ଓ ବହୁ କ୍ଷେତ୍ରରେ ତାର ଅଗ୍ରଗତି ସାଧିତ ହେଉଛି । ଏଠାର ଲୋକ ସୁଚତୁର, ଯାନ୍ତ୍ରିକ କର୍ମକୁଶଳ ଏବଂ ଶ୍ରେଷ୍ଠ ବ୍ୟବସାୟ ଓ ଶିଳ୍ପରେ ଏମାନେ ସଫଳ ହୋଇଛନ୍ତି । ଦିଲ୍ଲୀ ସମେତ ଯୁକ୍ତପ୍ରଦେଶ ଏକ ବିଚିତ୍ର ସମ୍ମିଶ୍ରଣ ଏବଂ କେତେକ ଭାବରେ ଭାରତର ସଂକ୍ଷିପ୍ତ ସାର ସଦୃଶ । ଏହା ପୁରାତନ ହିନ୍ଦୁ ସଂସ୍କୃତିର ଏବଂ ଆଫଗାନ୍ ଓ ମୋଗଲ କାଳରେ ଆଗତ ପାରସିକ ସଂସ୍କୃତିର ପୀଠ । ଅତଏବ, ଏହି ଉଭୟର ସମ୍ମିଶ୍ରଣ ସଙ୍ଗେ ପାଶ୍ଚାତ୍ୟ ସଂସ୍କୃତିର ସଂଯୋଗ ଏଠାରେ ଘଟିଛି । ଭାରତର ଅନ୍ୟାନ୍ୟ ଅଂଶ ଅପେକ୍ଷା ପ୍ରାଦେଶିକତା ଏଠାରେ କିଛି କମ୍ । ବହୁ ପୂର୍ବରୁ ଯୁକ୍ତପ୍ରଦେଶ ଭାରତର ହୃତ୍‌ପିଣ୍ଡ ସ୍ୱରୂପ ବିବେଚିତ ହୋଇ ଆସିଛି । ପ୍ରକୃତ ପକ୍ଷେ, ସାଧାରଣ ଲୋକେ ଏହାକୁ ହିନ୍ଦୁସ୍ତାନ କହିଥାନ୍ତି ।

ଏ କଥା ମନେରଖିବା ଉଚିତ ଯେ ଏହିସବୁ ପାର୍ଥକ୍ୟ ଭୌଗୋଳିକ ସିନା, ଧର୍ମଗତ ନୁହେଁ । ଜଣେ ବଙ୍ଗାଳୀ ମୁସଲମାନ, ଜଣେ ପଞ୍ଜାବୀ ମୁସଲମାନ ଅପେକ୍ଷା ଜଣେ ବଙ୍ଗାଳୀ ହିନ୍ଦୁର ନିଶ୍ଚିତ ଭାବରେ ନିକଟତର । ଯଦି ବଙ୍ଗଳାର ଦଳେ ହିନ୍ଦୁ ଓ ମୁସଲମାନ, ଭାରତରେ ହେଉ କି ବାହାରେ ହେଉ କେଉଁଠି ମିଶନ୍ତି, ଅବିଳମ୍ବେ ସେମାନେ ଏକତ୍ର ଭାବରେ ପରସ୍ପର ସଙ୍ଗେ ଘରୋଇ ମନେକରନ୍ତି । ଶିଖ୍ ହୁଅନ୍ତୁ କିମ୍ବା ହିନ୍ଦୁ କି ମୁସଲମାନ ହୁଅନ୍ତୁ; ପଞ୍ଜାବୀମାନେ ବି ଠିକ୍ ସେପରି କରିବେ । ବମ୍ବେ ପ୍ରଦେଶ ମୁସଲମାନଙ୍କର (ଖୋଜା, ମେମନ୍, ବୋହରା) ଅଦ୍ୟାବଧି ବହୁ ହିନ୍ଦୁ ପ୍ରଥା ରହିଛି । ଉତ୍ତର-ଭାରତର ମୁସ୍‌ଲମ୍‌ମାନେ ଖୋଜା (ଏମାନେ ଆଗା ଖାଁଙ୍କ ଅନୁଗାମୀ) ଓ ବୋହରାମାନଙ୍କୁ ନୈଷ୍ଠିକ ମନେକରନ୍ତି ନାହିଁ ।

ଗୋଟାଏ ସମ୍ପ୍ରଦାୟ ଭାବରେ ମୁସଲମାନମାନେ, ବିଶେଷକରି ବଙ୍ଗ ଓ ଉତ୍ତର-ଭାରତର ମୁସଲମାନମାନେ, ବହୁକାଳ ପର୍ଯ୍ୟନ୍ତ ଇଂରେଜୀ ଶିକ୍ଷାରୁ ଦୂରେଇ ରହିଲେ କେବଳ ନୁହେଁ, ଶିଳ୍ପବିକାଶରେ ସେମାନଙ୍କର ଭୂମିକା ମଧ୍ୟ ନଗଣ୍ୟ । ଏହାର କାରଣ ସାମନ୍ତବାଦୀ ଢଙ୍ଗର ବିଚାରଧାରା ଓ ରୋମନ୍ କ୍ୟାଥଲିକ୍‌ମାନଙ୍କ ଭିତରେ ଯେଭଳି ପ୍ରଚଳିତ, ଅବୈଧ ସୁଧ ଓ ଟଙ୍କା କାରବାର ଉପରେ ଇସ୍‌ଲାମ୍‌ର ନିଷେଧାଜ୍ଞା । କିନ୍ତୁ ବଡ଼ ବିଚିତ୍ର କଥା, ଭାରତରେ ଋଣଦାତା ବା ମହାଜନ ଭାବରେ ଯେଉଁମାନେ ବିଖ୍ୟାତ, ସେମାନଙ୍କ ଭିତରେ ପଠାଣମାନଙ୍କର ଏକ ନିର୍ଦ୍ଦିଷ୍ଟ ଉପଜାତି ଅଛନ୍ତି, ଯେଉଁମାନେ ଉତ୍ତର-ପଶ୍ଚିମ ସୀମାନ୍ତ ନିକଟରୁ ଆସିଥାନ୍ତି । ଏପରି ଭାବରେ, ଊନବିଂଶ ଶତକର ଦ୍ୱିତୀୟ ଭାଗ ସୁଦ୍ଧା ମୁସଲମାନମାନେ ଇଂରେଜୀ ଶିକ୍ଷାରେ ପଛରେ ପଡ଼ିଥିଲେ ଓ ସେଥି ହେତୁରୁ ପାଶ୍ଚାତ୍ୟ ବିଚାରଧାରା ସଙ୍ଗେ ସେମାନଙ୍କର ଯୋଗାଯୋଗ ନଥିଲା ଏବଂ ସରକାରୀ କର୍ମ ଓ ଶିଳ୍ପ କ୍ଷେତ୍ରରେ ମଧ୍ୟ ସେମାନେ ଅଗ୍ରସର ହୋଇ ନଥିଲେ ।

ଗତି ତାର କେତେ ମନ୍ଥର ଓ ବାରମ୍ବାର ବାଧାପ୍ରାପ୍ତ ହେଲେ ସୁଦ୍ଧା ଭାରତରେ ଶିଳ୍ପର ଅଭିବୃଦ୍ଧି ପ୍ରଗତିର ଧାରଣା ଜନ୍ମାଇଲା ଓ ଦୃଷ୍ଟି ଆକର୍ଷଣ କଲା । ତଥାପି ଜନସାଧାରଣଙ୍କ ଦରିଦ୍ରତାର ସମସ୍ୟା ଓ ଅତିରିକ୍ତ ଭାବରେ ଭାରଗ୍ରସ୍ତ ଜମି ସମସ୍ୟାର ସମାଧାନ ଦିଗରେ ବସ୍ତୁତଃ ଏହାର କୌଣସି ଅବଦାନ ନଥିଲା । କୋଟି ସଂଖ୍ୟକ ବେକାର ଓ ଅର୍ଦ୍ଧବେକାରଙ୍କ ମଧ୍ୟରୁ ମାତ୍ର କେତେ ଲକ୍ଷ କେବଳ ଜମିରୁ ଯାଇ କଲକାରଖାନାରେ ଯୋଗଦେଇଥିଲେ । ଏହି ପରିବର୍ତ୍ତନ ଏତେ ନଗଣ୍ୟ ଥିଲା ଯେ ଦେଶର ବର୍ଦ୍ଧିଷ୍ଣୁ ଦେହାତୀକରଣ ଉପରେ ଏହାର କୌଣସି ପ୍ରଭାବ ପଡ଼ିନଥିଲା । ବ୍ୟାପକ ବେକାରୀ ଓ ଜମି ଉପରେ ଚାପ ଫଳରେ ବହୁ-ସଂଖ୍ୟାରେ ଶ୍ରମିକ ଭାରତର ବାହାରକୁ ବହୁଧା, ଅପମାନଜନକ ସର୍ତ୍ତରେ ସୁଦ୍ଧା କର୍ମ ଆଶାରେ ଗଲେ । ସେମାନଙ୍କର ଗନ୍ତବ୍ୟ ହେଲା ଦକ୍ଷିଣ-ଆଫ୍ରିକା, ଫିଜି, ତ୍ରିନିଡାଡ଼, ଜମାଇକା, ଗିନି, ମୋରସସ୍, ଲଙ୍କା, ବ୍ରହ୍ମଦେଶ ଓ ମାଳୟ । ଜନସାଧାରଣଙ୍କ ଅବସ୍ଥା ଦିନକୁଦିନ ଖରାପ ଆଡ଼କୁ ଗତି କରୁଥିଲା ଏବଂ ଯେଉଁ କେତେକ କ୍ଷୁଦ୍ର ଗୋଷ୍ଠୀ ଅବା ବ୍ୟକ୍ତିବିଶେଷ ବିଦେଶୀ-ଶାସନ ତଳେ ଉନ୍ନତିର ସୁଯୋଗ ପାଇଥିଲେ, ଜନସାଧାରଣଙ୍କଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇପଡ଼ିଲେ । ଏହିସବୁ ଗୋଷ୍ଠୀ ହାତରେ କିଛି ପୁଞ୍ଜି ଜମିଲା ଓ ତା'ର ବଢ଼ିବା ପାଇଁ କ୍ରମଶଃ ଅବସ୍ଥା ସୃଷ୍ଟି କରାଗଲା; କିନ୍ତୁ ଦରିଦ୍ରତା ଓ ବେକାରୀ ଭଳି ମୌଳିକ ସମସ୍ୟାମାନ ରହିଲା ଯେପରି ସେପରି ।

## ୧୦. ହିନ୍ଦୁ ଓ ମୁସଲମାନଙ୍କ ଭିତରେ ସଂସ୍କାର ତଥା ଅନ୍ୟବିଧ ଆନ୍ଦୋଳନର ସୂତ୍ରପାତ

ଊନବିଂଶ ଶତକରେ ପାଶ୍ଚାତ୍ୟ ଜଗତର ପ୍ରକୃତ ପ୍ରଭାବ ଭାରତ ଉପରେ ପଡ଼ିଲା ପ୍ରାଯୁକ୍ତିଗିକ ପରିବର୍ତ୍ତନ ଓ ତାର ଗତିଶୀଳ ପରିଣାମ ଜରିଆରେ । ଚିନ୍ତାଜଗତରେ ମଧ୍ୟ ପରିବର୍ତ୍ତନ ଲାଗିବା ଫଳରେ ଯାହା ଦୀର୍ଘକାଳଧରି ସଂକୀର୍ଣ୍ଣତା ଭିତରେ ଛପି ରହିଥିଲା,

ତାର ବିଗନ୍ତ ପ୍ରସାରିତ ହେଲା । ସ୍ୱଳ୍ପ ସଂଖ୍ୟକ ଇଂରେଜୀଶିକ୍ଷିତ ଲୋକଙ୍କ ମନର ପ୍ରଥମ ପ୍ରତିକ୍ରିୟା ହେଲା, ଯାହା କିଛି ପଶ୍ଚିମ-ଜଗତର ତାକୁ ଅଭିନନ୍ଦିତ କରିବା ଓ ସ୍ୱୀକାର କରିବା । ହିନ୍ଦୁଧର୍ମର କେତେକ ସାମାଜିକ ପ୍ରଥା ଓ ଅଭ୍ୟାସ ଲାଗି ବିମୁଖ ବହୁ ହିନ୍ଦୁ ଖ୍ରୀଷ୍ଟଧର୍ମ ଆଡ଼କୁ ଆକୃଷ୍ଟ ହେଉଥିଲେ ଏବଂ ବଙ୍ଗରେ କେତେକ ଖ୍ୟାତନାମା ବ୍ୟକ୍ତି ମଧ୍ୟ ଧର୍ମାନ୍ତର ଗ୍ରହଣ କଲେ । ଅତଏବ, ହିନ୍ଦୁଧର୍ମକୁ ଏହି ନୂତନ ପରିବେଷ୍ଟନୀର ଅନୁରୂପ କରିବା ଉଦ୍ଦେଶ୍ୟରେ ରାଜା ରାମମୋହନ ରାୟ ବ୍ରାହ୍ମସମାଜ ସ୍ଥାପନ କଲେ, ଯାହାର ଭିତ୍ତି ଥିଲା ସମାଜ-ସଂସ୍କାର ଓ କମ୍ ବହୁତରେ ଯାହା ଯୁକ୍ତି ଦେଇ ବୃଦ୍ଧି ହେଉଥିଲା । ତାଙ୍କର ଉତ୍ତରାଧିକାରୀ କେଶବଚନ୍ଦ୍ର ସେନ ଏଥିରେ ଖ୍ରୀଷ୍ଟାନ ଦୃଷ୍ଟିକୋଣ ବୃଦ୍ଧି କଲେ । ବଙ୍ଗର ଜାଗରଣଶୀଳ ମଧ୍ୟବିତ୍ତଶ୍ରେଣୀଙ୍କୁ ବ୍ରାହ୍ମସମାଜ ପ୍ରଭାବିତ କଲା; କିନ୍ତୁ ଗୋଟାଏ ଧର୍ମମତ ଭାବରେ ଏହା ମୁଷ୍ଟିମେୟ କେତେକଙ୍କ ଭିତରେ କେବଳ ଆବଦ୍ଧ ରହିଲା । ସେମାନଙ୍କ ଭିତରେ କିନ୍ତୁ ଥିଲେ ବହୁ ଖ୍ୟାତନାମା ବ୍ୟକ୍ତି ଓ ପ୍ରତିଷ୍ଠାବାନ୍ ପରିବାର । କିନ୍ତୁ ଏହିସବୁ ପରିବାର ମଧ୍ୟ ସାମାଜିକ ଓ ଧାର୍ମିକ ସଂସ୍କାର ପ୍ରତି ଯେତେ ଗଭୀର ଭାବରେ ଆଗ୍ରହିତ ହୁଅନ୍ତୁ ନା କାହିଁକି, ବେଦାନ୍ତର ପ୍ରାଚୀନ ଦାର୍ଶନିକ ଆଦର୍ଶ ଆଡ଼କୁ ଫେରିଯିବା ଥିଲା ସେମାନଙ୍କର ସ୍ୱାଭାବିକ ପ୍ରବଣତା ।

ଭାରତର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଏ ପ୍ରକାର ମନୋଭାବ କାର୍ଯ୍ୟ କରୁଥିଲା ଏବଂ କଠୋର ଶୃଙ୍ଖଳାରେ ଆବଦ୍ଧ ସାମାଜିକ ପ୍ରଥା-ପରମ୍ପରା ଓ ହିନ୍ଦୁଧର୍ମର ବହୁରୂପୀ ଚରିତ୍ର ପ୍ରତି ଅସନ୍ତୋଷ ବୃଦ୍ଧି ପାଇଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ, ଆଉ ଏକ ବିଖ୍ୟାତ ସଂସ୍କାର ଆନ୍ଦୋଳନ ଜଣେ ଗୁଜରାଟୀ ହିନ୍ଦୁଙ୍କ ଦ୍ୱାରା ପ୍ରବର୍ତ୍ତିତ ହେଲା ଏବଂ ପଞ୍ଜାବୀ ହିନ୍ଦୁଙ୍କ ଭିତରେ ତାହା ପ୍ରସାର ଲାଭ କଲା । ସେହି ମହାନ୍ ହିନ୍ଦୁ ହେଉଛନ୍ତି ସ୍ୱାମୀ ଦୟାନନ୍ଦ ସରସ୍ୱତୀ । 'ଆର୍ଯ୍ୟ ସମାଜ' ସ୍ଥାପିତ ହେଲା ଓ ତା'ର ଡାକ ଥିଲା 'ବେଦକୁ ଫେରିଯାଅ' । ଏହି ଆହ୍ୱାନର ପ୍ରକୃତ ଅର୍ଥ ଥିଲା ବେଦ ପରେ ଆର୍ଯ୍ୟଧର୍ମର ଯେଉଁସବୁ ବ୍ୟାଖ୍ୟା ଓ ବିକାଶ ଘଟିଛି ତାହା ପ୍ରତ୍ୟାଖାନ କରିବା । ପରବର୍ତ୍ତୀ ସମୟରେ ବେଦାନ୍ତ ଦର୍ଶନ ଯେପରି ଭାବରେ ବିକଶିତ ହେଲା, ଅଦ୍ୱୈତବାଦର ମୂଳ ଅବଧାରଣା, 'ସର୍ବଂ ବ୍ରହ୍ମମୟଂ ଜଗତ୍' ଦୃଷ୍ଟିକୋଣ ଏବଂ ଯେତେସବୁ ଲୋକ-ଆଙ୍ଗିକ ବଢ଼ିଉଠିଥିଲା, ସବୁକିଛିର ଘୋର ନିନ୍ଦାବାଦ କରାଗଲା । ଏପରିକି ବେଦଗୁଡ଼ିକର ବ୍ୟାଖ୍ୟା ମଧ୍ୟ କରାଗଲା ଗୋଟାଏ ନିର୍ଦ୍ଦିଷ୍ଟ ଧାରାରେ କେବଳ । ଇସ୍‌ଲାମ୍ ଓ ଈଶାଇ ଧର୍ମର ପ୍ରଭାବ ବିଶେଷତଃ ଇସଲାମ୍‌ର ପ୍ରଭାବ ପ୍ରତି ଆର୍ଯ୍ୟ-ସମାଜ ଥିଲା ଏକ ପ୍ରତିକ୍ରିୟା । ହିନ୍ଦୁଧର୍ମର ସଂସ୍କାର କରିବା ଓ ସେଥି ଉପରେ ଘଟୁଥିବା ବାହାର ଆକ୍ରମଣରେ ପ୍ରତିରୋଧ କରିବା ଥିଲା ଆର୍ଯ୍ୟସମାଜର ଉଦ୍ଦେଶ୍ୟ । ହିନ୍ଦୁଧର୍ମରେ ଅନ୍ୟାନ୍ୟ ଧର୍ମର ଲୋକେ ସେମାନଙ୍କ ଧର୍ମବିଶ୍ୱାସ ତ୍ୟାଗକଲେ ପ୍ରବେଶ କରିପାରିବେ ବୋଲି ଆର୍ଯ୍ୟସମାଜ ଘୋଷଣା କଲା ଓ ଧର୍ମାନ୍ତରଣ ସ୍ୱୀକାର କରୁଥିବା ଅନ୍ୟ ଧର୍ମମାନଙ୍କ ସଙ୍ଗେ ତାର ସଂଘର୍ଷର ସମ୍ଭାବନା ରହିଥିଲା । ଆର୍ଯ୍ୟସମାଜ, ଯାହାର ବହୁତ କିଛି ବିଶ୍ୱର ଆଚରଣ ଇସ୍‌ଲାମ୍ ସଙ୍ଗେ ମିଳୁଥିଲା, ହିନ୍ଦୁଧର୍ମ ଉପରେ ଅନ୍ୟାନ୍ୟ ଧର୍ମର ଆକ୍ରମଣ ବିରୁଦ୍ଧରେ

ଓ ଯାହାକିଛି ହିନ୍ଦୁ ତାର ପ୍ରତିରକ୍ଷା ନିମନ୍ତେ ଦଣ୍ଡାୟମାନ ହେଲା । ଏକଥା ବଡ଼ ତାତ୍ପର୍ଯ୍ୟ-ପୂର୍ଣ୍ଣ ଯେ ଆର୍ଯ୍ୟସମାଜ ପଞ୍ଜାବ ଓ ଯୁକ୍ତପ୍ରଦେଶର ମଧ୍ୟବିତ୍ତଶ୍ରେଣୀ ହିନ୍ଦୁଙ୍କ ଭିତରେ ମୁଖ୍ୟତଃ ପ୍ରସାରଲାଭ କଲା । ଏହାକୁ ରାଜନୀତି ପ୍ରଣୋଦିତ ଏକ ବୈପ୍ଲବିକ ଆନ୍ଦୋଳନ ବୋଲି ଗୋଟାଏ ସମୟରେ ସରକାର ମନେକରୁଥିଲେ; କିନ୍ତୁ ବହୁସଂଖ୍ୟାରେ ସରକାରୀ କର୍ମଚାରୀ ତା'ର ସଭ୍ୟ ଥିବାରୁ ସରକାରଙ୍କର ସେ ସନ୍ଦେହ ଦୂର ହେଲା । ବାଳକ ଓ ବାଳିକା ଉଭୟର ଶିକ୍ଷାଲାଗି, ନାରୀମାନଙ୍କ ଅବସ୍ଥାର ଉନ୍ନତିଲାଗି ଓ ଦଳିତ ଜାତିମାନଙ୍କର ମାନ ଓ ସାମାଜିକ ସ୍ତର ଉନ୍ନୀତ କରିବାରେ ଆର୍ଯ୍ୟସମାଜ ଚମତ୍କାର କାର୍ଯ୍ୟ କରିଛି ।

ସ୍ୱାମୀ ଦୟାନନ୍ଦଙ୍କ ସମସାମୟିକ ଭାବରେ ଏକ ଭିନ୍ନ ଧରଣର ବ୍ୟକ୍ତି ବଙ୍ଗରେ ତତ୍ତ୍ୱ ପ୍ରଚ୍ଚାର କରୁଥିଲେ ଓ ତାଙ୍କ ଜୀବନର ଶିକ୍ଷା ନୂତନ ଇଂରେଜୀଶିକ୍ଷିତ ଶ୍ରେଣୀମାନଙ୍କର ବହୁ ଲୋକଙ୍କୁ ପ୍ରଭାବିତ କଲା । ଜଣେ ସରଳ ନିରାଡମ୍ବର ବ୍ୟକ୍ତି ପଣ୍ଡିତ ନୁହନ୍ତି; କିନ୍ତୁ ବିଶ୍ୱାସର ଜୀବନ୍ତ ପ୍ରତୀକ, ସେ ହେଉଛନ୍ତି ଶ୍ରୀ ରାମକୃଷ୍ଣ ପରମହଂସ । ସମାଜ-ସଂସ୍କାର ଅନ୍ୟମାନେ ଯେଉଁଭଳି କରୁଥିଲେ ସେଥିପ୍ରତି ତାଙ୍କର ଆଗ୍ରହ ନଥିଲା । ସେ ଥିଲେ ଶ୍ରୀଚୈତନ୍ୟ ଓ ଭାରତର ଅନ୍ୟାନ୍ୟ ସନ୍ଥମାନଙ୍କ ଭଳି ଜଣେ ଈଶ୍ୱରକୋଟୀ ସାଧକ । ସାରତଃ ଧାର୍ମିକ ହେଲେ ସୁଦ୍ଧା ସେ ଥିଲେ ଜଣେ ଉଦାରଚେତା ବ୍ୟକ୍ତି ଏବଂ ଆତ୍ମୋପଲବ୍ଧିର ପଥରେ ସେ ମୁସ୍‌ଲିମ୍ ଓ ଖ୍ରୀଷ୍ଟିୟାନ୍ ଅତୀନ୍ଦ୍ରିୟ ମରମୀ ବ୍ୟକ୍ତିଙ୍କ ସଙ୍ଗେ ବହୁ ବର୍ଷଧରି ସେମାନଙ୍କ ଅଭ୍ୟାସ ପଦ୍ଧତି ମାନ ଚାଲିଥିଲେ । କଲିକତା ନିକଟବର୍ତ୍ତୀ ଦକ୍ଷିଣେଶ୍ୱର କାଳୀ ମନ୍ଦିରରେ ସେ ଅବସ୍ଥାନ କରୁଥିଲେ ଏବଂ ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ଓ ଚରିତ୍ର କ୍ରମଶଃ ଲୋକଦୃଷ୍ଟି ଆକର୍ଷଣ କଲା । ଯେଉଁମାନେ ତାଙ୍କର ଦର୍ଶନ ନିମନ୍ତେ ଯାଉଥିଲେ ଏବଂ ଯେଉଁମାନେ ବା ସେହି ବାଳକସୁଲଭ ଈଶ୍ୱରକୋଟୀ ଲୋକଟିକୁ ପରିହାସ କରିବା ଉଦ୍ଦେଶ୍ୟ ବି ରଖିଥିଲେ, ପ୍ରବଳ ଭାବରେ ପ୍ରଭାବିତ ହୋଇଥିଲେ । ଯେଉଁମାନେ ସମ୍ପୂର୍ଣ୍ଣ ଭିନ୍ନ ଢଙ୍ଗରେ ନିଜକୁ ଗଢ଼ି ନେଇଥିଲେ, ଅନୁଭବ କରିଥିଲେ ଯେ ସେ ଲୋକ ପାଖରେ ପ୍ରକୃତରେ କିଛି ଥିଲା, ଯାହା ସେମାନେ ପାଇପାରିଲେ ନାହିଁ । ଧର୍ମବିଶ୍ୱାସର ସାରବସ୍ତୁ ଉପରେ ଜୋର୍ ଦେଇ ସେ ହିନ୍ଦୁଧର୍ମ ଓ ଦର୍ଶନର ବିବିଧ ବିଭାଗକୁ ସଂଯୁକ୍ତ କରି ତାର ଅପୂର୍ବ ପ୍ରକାଶ ନିଜ ଜୀବନରେ ଘଟାଇଥିଲେ । ପ୍ରକୃତ ପକ୍ଷେ, ତାଙ୍କର ଭକ୍ତମାନଙ୍କ ଭିତରେ ସେ ସର୍ବଧର୍ମ-ସମନ୍ୱୟ ରଚନା କରିଥିଲେ । ସଙ୍କୀର୍ଣ୍ଣ ସାମ୍ପ୍ରଦାୟିକ ଭାବ ତାଙ୍କୁ ବ୍ୟଥିତ କରୁଥିଲା ଏବଂ ତାଙ୍କର ତତ୍ତ୍ୱ ଥିଲା, 'ଯେତେ ମତ ସେତେ ପଥ'; ଅର୍ଥାତ୍ ସବୁ ପଥ ବିଳମ୍ବିତ ସେହି ଅଦ୍ୱିତୀୟ ସତ୍ୟ ପର୍ଯ୍ୟନ୍ତ । ସେ ସେହି ଧରଣର ସାଧୁସନ୍ଥଙ୍କ ଭିତରୁ ଥିଲେ ଜଣେ, ଯେଉଁମାନଙ୍କ ବିଷୟରେ ଆମେ ଏସିଆ ଓ ୟୁରୋପର ପ୍ରାଚୀନ ଇତିହାସରୁ ପଢ଼ିବାକୁ ପାଉଥାଉଁ । ଆଧୁନିକ ଜୀବନର ପ୍ରକରଣରେ ତାଙ୍କୁ ବୁଝିବା ଦୁଷ୍କର ହେଲେ ସୁଦ୍ଧା ଭାରତର ବିବିଧତା ଭିତରେ ତାଙ୍କର ସ୍ଥିତିର କୌଣସି ଅସ୍ୱାଭାବିକତା ନଥିଲା ଏବଂ ଦିବ୍ୟ ଜ୍ୟୋତିରେ ଉଦ୍‌ଭାସିତ ଏହି ମହାପୁରୁଷ ଭାରତରେ ବହୁ ମୁମୁକ୍ଷୁ ନରନାରୀଙ୍କର ଭକ୍ତିର ଆଧାର ଓ ଆଶ୍ରୟ ଥିଲେ । ତାଙ୍କୁ ଯେଉଁମାନେ ଦେଖିଥିଲେ ସେମାନଙ୍କ ପ୍ରାଣରେ ତାଙ୍କର ସରଳ ଐଶ୍ୱରିକ

ମୂର୍ତ୍ତି ଅଙ୍କିତ ହୋଇଥିଲା ଏବଂ ତାଙ୍କୁ ଦେଖି ନଥିବା ଲୋକଙ୍କୁ ମଧ୍ୟ ତାଙ୍କର ଜୀବନଚରିତ ପ୍ରବଳ ଭାବରେ ପ୍ରଭାବିତ କରିଥିଲା । ତାଙ୍କର ସ୍ୱରୂପ ଦର୍ଶନ ଯେଉଁମାନଙ୍କର ଘଟି-ନଥିଲା, ସେମାନଙ୍କ ଭିତରେ ଥିଲେ ଫ୍ରାନ୍‌ସର ବିଶ୍ୱବିଖ୍ୟାତ ଲେଖକ ରୋମାଁ ରୋଲାଁ, ଯିଏ ପରମପୁରୁଷ ଶ୍ରୀ ରାମକୃଷ୍ଣଙ୍କର ଓ ତାଙ୍କର ପ୍ରଧାନ ଶିଷ୍ୟ ସ୍ୱାମୀ ବିବେକାନନ୍ଦଙ୍କର ଜୀବନ-ଚରିତ ଲେଖିଛନ୍ତି ।

ବିବେକାନନ୍ଦ ତାଙ୍କର ଗୁରୁଭ୍ରାତାମାନଙ୍କ ସାହଚର୍ଯ୍ୟରେ ଲୋକସେବା ନିମନ୍ତେ ସାମ୍ପ୍ରଦାୟିକ ସଙ୍କୀର୍ଣ୍ଣତାହୀନ ରାମକୃଷ୍ଣ ମିଶନ୍ ସ୍ଥାପନ କଲେ । ଅତୀତର ଜ୍ଞାନରେ ଗମ୍ଭୀର ଓ ଭାରତର ପ୍ରତିପତ୍ତିରେ ଅଭିମାନୀ, ବିବେକାନନ୍ଦଙ୍କ ଜୀବନର ସମସ୍ୟାମାନ ପ୍ରତି ତାଙ୍କର ଆଭିମୁଖ୍ୟରେ ତଥାପି ଥିଲେ ସଂପୂର୍ଣ୍ଣ ଆଧୁନିକ ଏବଂ ଭାରତର ଅତୀତ ଓ ବର୍ତ୍ତମାନ ଭିତରେ ଥିଲେ ଏକପ୍ରକାର ସେତୁ ସ୍ୱରୂପ । ବଙ୍ଗଳା ଓ ଇଂରାଜୀ ଉଭୟ ଭାଷାରେ ସେ ଥିଲେ ଜଣେ ଓଜସ୍ୱୀ ବକ୍ତା ଏବଂ ତାଙ୍କ ରଚିତ ବଙ୍ଗଳା ଗଦ୍ୟ ଓ ପଦ୍ୟରେ ଗୋଟାଏ ସ୍ୱାଭାବିକ ସୌନ୍ଦର୍ଯ୍ୟ ନିହିତ ଥିଲା । ନିଜ ଧର୍ମରେ ଓ ନିଜର ଐତିହ୍ୟରେ ନିଷ୍ଠିତ ଏବଂ ଭାରତକୁ ଆଗେଇ-ନେବାପାଇଁ ଗୋଟାଏ ଗତିଶୀଳ ତଥା ଅନିର୍ବାଣ ତେଜ ଓ ଉତ୍କଣ୍ଠାରେ ପୂର୍ଣ୍ଣ, ଗାମ୍ଭୀର୍ଯ୍ୟ ଓ ମର୍ଯ୍ୟାଦାର ଆଧାର, ସେ ଥିଲେ ଜଣେ ତେଜୋଦୀପ୍ତ ଚିତ୍ତାକର୍ଷକ ବ୍ୟକ୍ତି । ନିର୍ଯ୍ୟାତିତ ଓ ନୈରାଶ୍ୟପୀଡ଼ିତ ହିନ୍ଦୁ-ମାନସ ପ୍ରତି ସେ ଥିଲେ ଏକ ବାଜୀକରଣ ଏବଂ ସେହି ମାନସକୁ ସେ ଅର୍ପଣ କଲେ ଆତ୍ମନିର୍ଭରଶୀଳତା ଓ ଅତୀତର ପୁଞ୍ଜୀଭୂତ ଜ୍ଞାନ । ଖ୍ରୀ: ୧୮୯୩ରେ ଆମେରିକାର ଚିକାଗୋ ସହରରେ ଅନୁଷ୍ଠିତ 'ପାର୍ଲାମେଣ୍ଟ ଅଫ୍ ରେଲିଜେନ୍‌ସ' ଅର୍ଥାତ୍ ବିଶ୍ୱଧର୍ମ-ମହାସଭାରେ ଯୋଗଦେଇ, ବର୍ଷାଧିକ କାଳ ଆମେରିକାରେ ଅତିବାହିତ କରି, ୟୁରୋପ ଭ୍ରମଣରେ ଏଥେନ୍‌ସ ଓ କନଷ୍ଟାଣ୍ଟିନୋପଲ ପର୍ଯ୍ୟନ୍ତ ଯାଇ ମିଶର, ଚୀନ ଓ ଜାପାନ ପରିଦର୍ଶନ କରି ସେ ଭାରତକୁ ଫେରିଥିଲେ । ସେ ଯେଉଁଠାକୁ ଯାଇଚନ୍ତି, କେବଳ ତାଙ୍କର ଉପସ୍ଥିତି ଲାଗି ନୁହେଁ, ସେ ଯାହା କହିଚନ୍ତି ଓ ତାହା ଯେପରି ଭାବରେ କହିଚନ୍ତି, ସେଥିଲାଗି ଆଲୋଡ଼ନ ସୃଷ୍ଟି ହୋଇଚି । ଥରେ ଏହି ହିନ୍ଦୁ ସନ୍ନ୍ୟାସୀଙ୍କ ଉପରେ ଦୃଷ୍ଟି ପଡ଼ିଲେ ତାଙ୍କୁ କିମ୍ବା ତାଙ୍କର ବାଣୀ ଭୁଲିବା ସହଜ ନଥିଲା । ମାର୍କିନ୍‌ମାନେ ତାଙ୍କୁ 'ତୋଫାନ ହିନ୍ଦୁ' ଆଖ୍ୟାରେ ଅଭିହିତ କରିଥିଲେ । ପାଶ୍ଚାତ୍ୟ ଦେଶସମୂହ ଭ୍ରମଣ କରି ସେ ନିଜେ ମଧ୍ୟ ଖୁବ ପ୍ରଭାବିତ ହୋଇଥିଲେ । ଇଂରେଜମାନଙ୍କର ଐକାନ୍ତିକତା ଓ ମାର୍କିନମାନଙ୍କର କର୍ମପ୍ରବଣତା ଓ ସମଭାବନାର ସେ ଥିଲେ ପ୍ରଶଂସକ । ଆମେରିକାରୁ ଭାରତର ଜଣେ ବନ୍ଧୁଙ୍କ ନିକଟକୁ ପତ୍ର ଲେଖି ସେ ଜଣାଇଥିଲେ, "ଯେ କୌଣସି ନୂତନ ବିଚାରର ପ୍ରସାର ନିମନ୍ତେ ବିଶ୍ୱରେ ଆମେରିକା ସର୍ବୋତ୍କୃଷ୍ଟ କ୍ଷେତ୍ର ।" କିନ୍ତୁ ପାଶ୍ଚାତ୍ୟ ଜଗତରେ ଧର୍ମରେ ଯେଉଁ ବହିଃପ୍ରକାଶ ସେ ଦେଖିବାକୁ ପାଇଲେ ସେଥିରେ ସେ ସନ୍ତୁଷ୍ଟ ହୋଇ ନଥିଲେ ଏବଂ ଭାରତର ଦାର୍ଶନିକ ତଥା ଆଧ୍ୟାତ୍ମିକ ପୃଷ୍ଠଭୂମି ଉପରେ ତାଙ୍କର ଆସ୍ଥା ସୁଦୃଢ଼ ହେଲା । କେତେ ଅବନତ ହେଲେ ସୁଦ୍ଧା ତାଙ୍କ ପକ୍ଷରେ ଭାରତ ହେଲା ଆଲୋକର ପ୍ରତିନିଧି ।

ବେଦାନ୍ତ ଦର୍ଶନର ଅଦ୍ୱୈତବାଦ ସେ ପ୍ରଚାର କଲେ ଓ ତାଙ୍କର ହୃଦ୍‌ବୋଧ ହୋଇଥିଲା ଯେ ଭବିଷ୍ୟତରେ ବିଚାରଶୀଳ ମାନବଜାତିର ଏହାହିଁ କେବଳ ଧର୍ମ ହୋଇପାରିବ । କାରଣ ବେଦାନ୍ତ ଆଧ୍ୟାତ୍ମିକ କେବଳ ନୁହେଁ; ବରଂ ଯୁକ୍ତିସଙ୍ଗତ ଓ ବାହ୍ୟ ପ୍ରକୃତିର ବୈଜ୍ଞାନିକ ଅନ୍ୱେଷଣ ସଙ୍ଗେ ତାର ସଙ୍ଗତି ରହିଛି । 'ଏହି ବ୍ରହ୍ମାଣ୍ଡ ମହାକାଶଠାକ ଚେତନାର ଊର୍ଦ୍ଧ୍ୱରେ ଅବସ୍ଥିତ । କୌଣସି ପରମେଶ୍ୱର ଦ୍ୱାରା ସୃଷ୍ଟି ନୁହେଁ କିମ୍ବା କୌଣସି ବହିଃରଙ୍ଗ ଅଭିନବ ପ୍ରତିଭାର କାର୍ଯ୍ୟ ନୁହେଁ । ଏହା ସ୍ୱୟଂ-ସୃଷ୍ଟ, ସ୍ୱୟଂ-ସଂହାରକ, ସ୍ୱୟଂ-ପ୍ରକାଶ୍ୟ ଏକ ଅନନ୍ତ ଅସ୍ତିତ୍ୱ—ବ୍ରହ୍ମ ।' ବେଦାନ୍ତର ଆଦର୍ଶ ଥିଲା ମଣିଷର ସଂହତି ଓ ତାର ସହଜାତ ଦିବ୍ୟ ପ୍ରକୃତି; ମଣିଷ ଭିତରେ ଦେବତ୍ୱ ପ୍ରତ୍ୟକ୍ଷ କରିବା ହିଁ ପ୍ରକୃତ ଈଶ୍ୱର-ସାକ୍ଷାତ୍କାର; ପ୍ରାଣି-ଜଗତରେ ମଣିଷ ହିଁ ସର୍ବଶ୍ରେଷ୍ଠ । 'ଜଟିଳ ପୌରାଣିକ ଗାଥା ଭିତରୁ ମୂର୍ତ୍ତି ନୈତିକ ସ୍ୱରୂପ ଘେନି ରହସ୍ୟମୟ ଯୋଗ-ଜୀବନରୁ ଏକ ବୈଜ୍ଞାନିକ ତଥା ବାସ୍ତବ ମନସ୍ତତ୍ତ୍ୱ ଆହରଣ କରି ବିମୂର୍ତ୍ତି ବେଦାନ୍ତ ଦୈନନ୍ଦିନ ଜୀବନ ନିମନ୍ତେ ଜୀବନ୍ତ ଓ କାବ୍ୟମୟ ହେବା ଆବଶ୍ୟକ ।' ଭାରତ ଅବନତ ହେବାର କାରଣ ହେଉଛି, ସେ ସଂକୀର୍ଣ୍ଣତାର ଶିକାର ହୋଇପଡ଼ିଲା, ନିଜର ଖୋଳପା ଭିତରେ ଆତ୍ମଗୋପନ କରି ବାହାର ଦୁନିଆ ସଙ୍ଗେ ସମ୍ପର୍କ ହରାଇବସିଲା ଏବଂ ଏପରିଭାବରେ ତାର ଅବସ୍ଥା ଏକ ଜଡ଼ ସଭ୍ୟତାରେ ପର୍ଯ୍ୟବସିତ ହେଲା । ପ୍ରଥମା-ବସ୍ଥାରେ ଯାହା ଆବଶ୍ୟକ ଓ ବାଞ୍ଛନୀୟ ଥିଲା, ଯାହାର ଉଦ୍ଦେଶ୍ୟ ଥିଲା ବ୍ୟକ୍ତିତ୍ୱ ଓ ମୁକ୍ତିର ବିକାଶସାଧନ, ସେହି ବର୍ଣ୍ଣ-ବ୍ୟବସ୍ଥା ମର୍ଯ୍ୟାଦା ହରାଇବସିଲା ଓ ତାର ଉଦ୍ଦେଶ୍ୟ ବିପରୀତ କାର୍ଯ୍ୟ କରି ଜନଜୀବନକୁ ପୀଡ଼ିତ କଲା । ବର୍ଣ୍ଣ-ବ୍ୟବସ୍ଥା ଥିଲା ଏକପ୍ରକାର ସାମାଜିକ ସଙ୍ଗଠନ, ଯାହା ଧର୍ମଠାରୁ ଥିଲା ପୃଥକ୍ ଓ ପୃଥକ୍ ରହିବା ହିଁ ଉଚିତ । ସମୟର ପରିବର୍ତ୍ତନ ସଙ୍ଗେ ସାମାଜିକ ସଙ୍ଗଠନ ପରିବର୍ତ୍ତିତ ହେବା ପାଇଁ ବାଧ୍ୟ । ପ୍ରବଳ ଭାବାବେଗ ସହକାରେ ବିବେକାନନ୍ଦ ଉପରବର୍ଗର ସ୍ପୃଶ୍ୟାସ୍ପୃଶ୍ୟ ଭାବ, କର୍ମକାଣ୍ଡ ଉପରେ ଅର୍ଥହୀନ ଆଧିଭୌତିକ ବାଦବିସମ୍ବାଦର ନିନ୍ଦା କରିଥିଲେ । ''ଆମ ଧର୍ମ ଅଛି ରନ୍ଧନଶାଳାରେ । ଆମର ଈଶ୍ୱର ହେଉଛନ୍ତି ରନ୍ଧନପାତ୍ର ଏବଂ ଆମର ଧର୍ମ ହେଉଛି : 'ମତେ ସ୍ପର୍ଶ କରନା' ମୁଁ ପବିତ୍ର ।''

ସେ ରାଜନୀତିରୁ ଦୂରରେ ରହୁଥିଲେ ଓ ତାଙ୍କ ସମୟର ରାଜନୀତିଜ୍ଞମାନଙ୍କୁ ସେ ପସନ୍ଦ କରୁନଥିଲେ । କିନ୍ତୁ ସ୍ୱାଧୀନତା ଓ ସମାନତାର ଆବଶ୍ୟକତା ଉପରେ ଓ ଜନସାଧାରଣଙ୍କ ଉନ୍ନତି ଉପରେ ସେ ବାରମ୍ବାର ଜୋର୍ ଦେଇ କହୁଥିଲେ : 'ଚିନ୍ତାର ଓ କର୍ମର ସ୍ୱାଧୀନତା ହିଁ ଜୀବନ—ତାର ବିକାଶ ଓ କଲ୍ୟାଣ । ଯେଉଁଠି ଏହା ନାହିଁ, ସେଠାରେ ମଣିଷଜାତିକୁ ଅବା ଦେଶକୁ ଜୀବିତ ରଖାଯାଇପାରେନା ।' 'ଭାରତର ଏକମାତ୍ର ଆଶା ହେଉଛି ତାର ଜନସାଧାରଣ । ଉପର ଶ୍ରେଣୀର ଲୋକେ ଭୌତିକ ଓ ନୈତିକ ଉଭୟ ଦିଗରୁ ମୃତ୍ୟୁ ଲଭିଛନ୍ତି ।' ଭାରତର ଆଧ୍ୟାତ୍ମିକ ପୃଷ୍ଠଭୂମି ସଙ୍ଗେ ପାଶ୍ଚାତ୍ୟ ଜଗତର ପ୍ରଗତି ସମ୍ମିଳିତ କରିବା ସେ ଚାହୁଁଥିଲେ ! 'ଭାରତର ଧର୍ମ ଉପରେ ପ୍ରତିଷ୍ଠିତ ଏକ ୟୁରୋପୀୟ ସମାଜ ରଚନା କର ।' 'ତୁମର ସମାନତା, ସ୍ୱତନ୍ତ୍ରତା, କର୍ମ ଓ ଶକ୍ତି ଭାବନାରେ ଅଧିକରୁ ଅଧିକ

ଭାବରେ ପଶ୍ଚିମକୁ ଗ୍ରହଣ କର ଏବଂ ସେଥି ସଙ୍ଗେ ସଙ୍ଗେ ଧାର୍ମିକ ସଂସ୍କୃତି ଓ ସଂସ୍କାରରେ ତୁମର ଶିରା-ପ୍ରଶିରାରେ ହିନ୍ଦୁତ୍ୱ ପ୍ରବାହିତ ହେଉ ।' ବେଳକୁବେଳ ବିବେକାନନ୍ଦଙ୍କ ଦୃଷ୍ଟି-ଭଙ୍ଗୀରେ ଆନ୍ତର୍ଜାତୀୟତାର ବିକାଶ ଘଟିଲି : ରାଜନୀତି ଓ ସମାଜବିଜ୍ଞାନରେ ମଧ୍ୟ କୋଡ଼ିଏ ବର୍ଷ ତଳେ ଯେଉଁସବୁ ସମସ୍ୟା ଗୋଟାଏ ଦେଶ ଭିତରେ କେବଳ ସୀମିତ ଥିଲି, ବର୍ତ୍ତମାନ ଜାତୀୟ ଆଧାର ଉପରେ କେବଳ ସେସବୁର ସମାଧାନ ସମ୍ଭବ ନୁହେଁ । ପରିମାଣ ଓ ପ୍ରକୃତିରେ ସେସବୁ ଜାତୀୟ ସୀମା ଲଙ୍ଘି ଯାଉଛି । ଗୋଟାଏ ବିସ୍ତୀର୍ଣ୍ଣ ଆନ୍ତର୍ଜାତିକ ଦୃଷ୍ଟିକୋଣରୁ ଦେଖିଲେ କେବଳ ସେସବୁର ସମାଧାନ କରାଯାଇପାରେ । ଏ କାଳର ଦାବି ହେଉଛି ଆନ୍ତର୍ଜାତିକ ସଙ୍ଗଠନ, ଆନ୍ତର୍ଜାତିକ ସହଯୋଗ, ଆନ୍ତର୍ଜାତିକ ଆଇନ । ଏହାର ଅର୍ଥ ସଂହତି । ବିଜ୍ଞାନରେ ପ୍ରତିଦିନ ବସ୍ତୁକୁ ନେଇ ଏପରି ଏକ ବିସ୍ତୃତ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଉଛି ।' ପୁନରପି : 'ସମସ୍ତ ବିଶ୍ୱ ଜାଗରିତ ନ ହେଲେ ପ୍ରଗତି କରାଯାଇପାରେନା ଏବଂ ଏକଥା ଦିନକୁଦିନ ସ୍ପଷ୍ଟତର ହୋଇଉଠୁଛି ଯେ କୌଣସି ସମସ୍ୟାର ସମାଧାନ ଜାତି ଦେଶ କିମ୍ବା ଅନ୍ୟ କୌଣସି ସଂକୀର୍ଣ୍ଣ ଭିତ୍ତି ଉପରେ କରାଯାଇ ନପାରେ ।' ପ୍ରତ୍ୟେକ ବିଚାର ସମଗ୍ର ବିଶ୍ୱକୁ ଆବୃତ କଲାଭଳି ବ୍ୟାପକ ହେବା ଦରକାର । 'ସମଗ୍ର ଜୀବନ ଜାତିକୁ ସମଗ୍ର ଜୀବନକୁ ତାର ପରିସରଭୁକ୍ତ କଲା ପର୍ଯ୍ୟନ୍ତ ପ୍ରତ୍ୟେକ ଉଚ୍ଚାକାଙ୍କ୍ଷା ବର୍ଦ୍ଧିତ ହେବା ଦରକାର ।' ବେଦାନ୍ତ ଦର୍ଶନକୁ ବିବେକାନନ୍ଦ ଯେଉଁ ଦୃଷ୍ଟିରୁ ଦେଖୁଥିଲେ ସେଥି ସଙ୍ଗେ ଏ ସବୁର ସଙ୍ଗତି ରହିଥିଲା ଏବଂ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ସମଗ୍ର ଦେଶରେ ସେ ଏହା ପ୍ରଚାର କରିଥିଲେ : 'ମୋର ସମ୍ପୂର୍ଣ୍ଣ ହୃଦ୍‌ବୋଧ ହେଉଛି ଯେ କୌଣସି ବ୍ୟକ୍ତି ଅବା ଜାତି ଅନ୍ୟମାନଙ୍କ ସଂସର୍ଗରୁ ଦୂରରେ ରହି ବଞ୍ଚି ନପାରେ ଏବଂ ଯେଉଁଠି ମହାନତା, ନୀତି ଅବା ପବିତ୍ରତାର ମିଥ୍ୟା ଧାରଣାର ବଶବର୍ତ୍ତୀ ହୋଇ ଏପରି ଉଦ୍ୟମ କରାଯାଇଛି, ଏହାର ପରିଣାମ ବିଚ୍ଛିନ୍ନତାକାମୀ ପକ୍ଷରେ ସର୍ବଦା ଭୟାବହ ହୋଇଛି ।' 'ପୃଥିବୀର ଅନ୍ୟାନ୍ୟ ଜାତିଙ୍କଠାରୁ ବିଚ୍ଛିନ୍ନ ରହିବା ହିଁ ଆମ ଦୁର୍ଗତିର କାରଣ ଏବଂ ଏହାର ବିଶ୍ୱର ପ୍ରବାହ ସଙ୍ଗେ ସମ୍ମିଳିତ ହେବାରେ ହିଁ ଏଥିରୁ ମୁକ୍ତ ହେବାର ପନ୍ଥା ନିହିତ । ଗତି ହିଁ ଜୀବନର ଚିହ୍ନ ।'

ପରେ ସେ ଲେଖିଥିଲେ : 'ମୁଁ ଯେ ନିଜକୁ ଜଣେ ସମାଜବାଦୀ ବୋଲି କହେ, ତାର କାରଣ ନୁହେଁ ଯେ ସମାଜବାଦ ଏକ ପୂର୍ଣ୍ଣାଙ୍ଗ ବ୍ୟବସ୍ଥା; କିନ୍ତୁ ଗୋଟାଏ ରୁଟିର ଫାଳେ ନାହିଁ – ରୁଟିଠାରୁ ଅବଶ୍ୟ ଭଲ । ଅନ୍ୟାନ୍ୟ ବ୍ୟବସ୍ଥାଗୁଡ଼ିକର ପରୀକ୍ଷା ସରିଛି ଓ ସେଥିରେ ବହୁତ ଅଭାବ ରହିଯାଇଥିବା ପ୍ରମାଣିତ ହୋଇଛି । ଅନ୍ୟ କେଉଁଥି ପାଇଁ ନହେଲେ ମଧ୍ୟ, ନୂତନତ୍ୱ ଦୃଷ୍ଟିରୁ କେବଳ ଏହାକୁ ନେଇ ଥରେ ପରୀକ୍ଷା କରାଯାଉ ।'

ବିବେକାନନ୍ଦ ନାନା ବିଷୟରେ କହିଛନ୍ତି; କିନ୍ତୁ ଗୋଟିଏ ବିଷୟ ଯାହା ତାଙ୍କର ଲେଖା ଓ ବ୍ୟାଖ୍ୟାନରେ ବରାବର କହିଥାନ୍ତି, ତାହା ହେଉଛି 'ଅଭୟ'—ନିର୍ଭୀକ ହୁଅ, ବଳବାନ୍ ହୁଅ । ତାଙ୍କର ଦୃଷ୍ଟିରେ ମଣିଷ ପାପୀ ନୁହେଁ; ସେ ଦେବତ୍ୱର ଅଂଶ, ଅମୃତର ସନ୍ତାନ । କୌଣସି କଥାରେ ହେଲେ ସେ ଭୀତ ହେବ କାହିଁକି ? 'ପୃଥିବୀରେ ଯଦି ପାପ ବୋଲି କିଛି ଅଛି, ତାହା ହେଉଛି ଦୁର୍ବଳତା; ସବୁକିଛି ଦୁର୍ବଳତାଠାରୁ ଦୂରରେ ରହ; ଦୁର୍ବଳତା ହିଁ ପାପ,

ଦୁର୍ବଳତା ହିଁ ମୃତ୍ୟୁ ।' ଏହା ହିଁ ଉପନିଷଦମାନଙ୍କର ମହାନ ଶିକ୍ଷା । ଭୟରୁ ଅସତ୍ୟର ଉତ୍ପତ୍ତି ଓ ସେଥିରୁ ଆସେ ଦୁଃଖ ଓ ଅନୁଶୋଚନା । ଏସବୁ ଯଥେଷ୍ଟ ହେଲଣି, ଆମେ ଯଥେଷ୍ଟ ଭାବରେ ଦୁର୍ବଳ ହେଲେଣି । 'ଆମ ଦେଶ ବର୍ତ୍ତମାନ ଲୋଡ଼ୁଛି ଲୁହାର ମାଂସପେଶୀ ଓ ଇସ୍ପାତର ସ୍ନାୟୁ, ପ୍ରବଳ ଅପ୍ରତିରୋଧ୍ୟ ଇଚ୍ଛାଶକ୍ତି; ଯାହା ବ୍ରହ୍ମାଣ୍ଡର ବିବିଧ ରହସ୍ୟ ଓ ଗୂଢ଼ତ୍ୱ ଭିତରେ ପ୍ରବେଶ କରି ଯେକୌଣସି ଭାବରେ ହେଲେ ଏପରିକି ଆବଶ୍ୟକ ହେଲେ ସମୁଦ୍ରର ଅତଳରେ ସୁଦ୍ଧା ମୃତ୍ୟୁର ସମ୍ମୁଖୀନ ହୋଇ ତାର ଉଦ୍ଦେଶ୍ୟ ସାଧନ କରିବ ।' ଯାଦୁବିଦ୍ୟା ଓ ଅଲୌକିକତ୍ୱବାଦର ନିନ୍ଦା କରି ସେ କହିଥିଲେ, 'ଏହିସବୁ ରୋମାଞ୍ଚକର ବସ୍ତୁରେ ବହୁ ମହାନ୍ ସତ୍ୟ ହୁଏତ ନିହିତ ଥାଇପାରେ; କିନ୍ତୁ ତଦ୍ଦ୍ୱାରା ଆମେ ପ୍ରାୟ ଧ୍ୱଂସ ହୋଇ ଯାଇଛୁ... ସତ୍ୟର ପ୍ରକୃତ ପରୀକ୍ଷା ହେଉଛି—ଯାହା ତୁମକୁ ଭୌତିକ, ବୌଦ୍ଧିକ ଓ ଆଧ୍ୟାତ୍ମିକ ଦିଗରୁ ଦୁର୍ବଳ କରେ, ତାହା ବିଷଭଳି ପରିହାର କର । ସେଥିରେ ଜୀବନ ନାହିଁ, ତାହା ସତ୍ୟ ହୋଇ ନପାରେ । ସତ୍ୟ ଶକ୍ତିମନ୍ତ କରେ, ସତ୍ୟ ହିଁ ଶୁଦ୍ଧତା, ସତ୍ୟ ହିଁ ପୂର୍ଣ୍ଣଜ୍ଞାନ··· ସେଥିରେ କେତେକାଂଶରେ ସତ୍ୟ ନିହିତ ଥିଲେ ସୁଦ୍ଧା ଏହିସବୁ ଅଲୌକିକତା ସାଧାରଣତଃ ମାରାତ୍ମକ···ଉପନିଷଦ ଉପରେ ଧ୍ୟାନ ରଖ । ସେଥିରେ ତେଜ ଅଛି, ତାହା ବଳପ୍ରଦ ଓ ତାର ଦର୍ଶନ ଉଜ୍ଜ୍ୱଳ; ଏହିସବୁ ରହସ୍ୟମୟ ବିଷୟରୁ, ଏହିସବୁ ଦୁର୍ବଳକର ବିଷୟରୁ ବିଚ୍ଛିନ୍ନ ହୁଅ । ଏହି ଦର୍ଶନକୁ ଗ୍ରହଣ କର; ବିଶ୍ୱର ସେ ଯେତେ ବଡ଼ ସତ୍ୟ ହେଉ,ଅତିଶୟ ସରଳ,ତୁମ ଅସ୍ତିତ୍ୱ ଭଳି ସରଳ ।' ଅନ୍ଧବିଶ୍ୱାସ ପ୍ରତି ସାବଧାନ ! "ତୁମମାନଙ୍କ ଭିତରୁ ପ୍ରତ୍ୟେକକୁ ମୁଁ ଜଣେ ଜଣେ ନିରୀଶ୍ୱରବାଦୀ ଭାବରେ ଦେଖିବାକୁ ଚାହିଁବି ସିନା, ଅନ୍ଧବିଶ୍ୱାସୀ ନିର୍ବୋଧ ଭାବରେ ନୁହେଁ । କାରଣ ନିରୀଶ୍ୱରବାଦୀର ଜୀବନ ଅଛି ଏବଂ ତାକୁ ନେଇ କିଛି କରିଯାଇ ପାରେ; କିନ୍ତୁ ଅନ୍ଧବିଶ୍ୱାସ ଯଦି ଭର୍ତ୍ତି ହେଲା, ବୁଦ୍ଧିର ସବୁକିଛି ମହତ୍ତ୍ୱ ତୁଟିଲା ଜାଣ ; ଫଳତଃ ମସ୍ତିଷ୍କ ଦୁର୍ବଳ ହୋଇ ପଡ଼େ, ଅବନତି ଜୀବନକୁ ଗ୍ରାସ କରେ...ରହସ୍ୟ କାରବାର ଓ ଅନ୍ଧବିଶ୍ୱାସ ସର୍ବଦା ଦୁର୍ବଳତାର ଚିହ୍ନ ।" (୧)

(୧) ଉଲ୍ଲିଖିତ ଅଧିକାଂଶ ଉଦ୍ଧୃତି ସ୍ୱାମୀ ବିବେକାନନ୍ଦଙ୍କ'ଲେକ୍‌ଚର୍ସ ଫ୍ରମ୍ କୋଲମ୍ବୋ ଟୁ ଅଲମୋରା' (ଖ୍ରୀ.୧୯୧୩)ଓ'ଲେଟର୍ସ ଅଫ୍ ସ୍ୱାମୀ ବିବେକାନନ୍ଦ' (ଖ୍ରୀ.୧୯୪୨) ରୁ ଗ୍ରହଣ କରାଯାଇଛି । ଉଭୟ ପୁସ୍ତକ ଅଦ୍ୱୈତ ଆଶ୍ରମ (ମାୟାବତୀ, ଆଲମୋରା, ହିମାଳୟ) ଦ୍ୱାରା ପ୍ରକାଶିତ । କଥିତ ଦ୍ୱିତୀୟ ପୁସ୍ତକରେ (ପୃ.୩୯୦) ଜଣେ ମୁସଲିମ୍ ବନ୍ଧୁ ନିକଟକୁ ବିବେକାନନ୍ଦଙ୍କଦ୍ୱାରା ଲିଖିତ ଏକ ଚମତ୍କାର ପତ୍ର ସ୍ଥାନ ପାଇଛି । ସେ ଲେଖୁଛନ୍ତି, 'ଆମେ ତାକୁ ବେଦାନ୍ତ କହୁଁ ବା ଅନ୍ୟ କୌଣସି ବାଦ କହୁଁ, ସତ୍ୟ ହେଉଛି, ଧର୍ମ ଓ ଚିନ୍ତନ କ୍ଷେତ୍ରରେ ଅଦ୍ୱୈତବାଦ ହିଁ ଅନ୍ତିମ ଉତ୍ତର ଏବଂ ଏକମାତ୍ର ଅବସ୍ଥା; ଯେଉଁଠାରୁ ବିଶ୍ୱର ସବୁ ଧର୍ମ ଓ ମତବାଦକୁ ଜଣେ ସପ୍ରେମ ଦୃଷ୍ଟିରେ ଦେଖିପାରେ । ଏହା ଭବିଷ୍ୟତର ଆଲୋକପ୍ରାପ୍ତ ମାନବଜାତିର ଧର୍ମ ବୋଲି ଆମର ବିଶ୍ୱାସ । ଇତର ଧର୍ମାବଲମ୍ବୀମାନଙ୍କ ତୁଳନାରେ ହିନ୍ଦୁମାନେ ଏହି ସତ୍ୟରେ ଆଗରୁ ଉପନୀତ ହେବାର ଗୌରବ ନେଇ ପାରନ୍ତି, ନେବାର କଥା ମଧ୍ୟ ।

କୁମାରୀକାଠାରୁ ହିମାଳୟ ପର୍ଯ୍ୟନ୍ତ ବଜ୍ରଗମ୍ଭୀର କଣ୍ଠରେ ଏହିସବୁ ବାଣୀ ପ୍ରଚ୍ଛର କରି, ଅତିଶୟ ପରିଶ୍ରମ ହେତୁରୁ ଅବସନ୍ନ, ଖ୍ରୀ. ୧୯୦୨ରେ ୩୯ବର୍ଷ ବୟସରେ ସ୍ୱାମୀ ବିବେକାନନ୍ଦଙ୍କ କର୍ମଯୋଗୀ ଜୀବନର ଅବସାନ ଘଟିଲା ।

ସ୍ୱାମୀ ବିବେକାନନ୍ଦଙ୍କ ସମସାମୟିକ ଥିଲେ ରବୀନ୍ଦ୍ରନାଥ ଠାକୁର । ତେବେ ସେ ଥିଲେ ପରବର୍ତ୍ତୀ ପୁରୁଷର । ଊନବିଂଶ ଶତକର ବଙ୍ଗରେ ନାନାବିଧ ସଂସ୍କାର ଆନ୍ଦୋଳନରେ ଠାକୁର ପରିବାର ପ୍ରଧାନ ଅଂଶ ଗ୍ରହଣ କରିଥିଲେ । ଏହି ପରିବାରରେ ଆଧ୍ୟାତ୍ମ ଜୀବନରେ ଅଧିଷ୍ଠିତ ଋଷିପ୍ରତିମ ବ୍ୟକ୍ତି ଯେପରି ଥିଲେ,ସେପରି ଥିଲେ ସୁଲେଖକ ଓ ସାର୍ଥକ ଚିତ୍ରଶିଳ୍ପୀ; କିନ୍ତୁ ଏ ସମସ୍ତଙ୍କ ଶୀର୍ଷକୁ ଉଠିପାରିଥିଲେ ରବୀନ୍ଦ୍ରନାଥ ଏବଂ ପ୍ରକୃତ ପକ୍ଷେ, ସମଗ୍ର ଭାରତରେ ତାଙ୍କର ସାର୍ବଭୌମତ୍ୱ କ୍ରମଶଃ ଅପ୍ରତିଦ୍ୱନ୍ଦ୍ୱୀ ହୋଇଉଠିଲା । ତାଙ୍କର ରଚନାତ୍ମକ କାର୍ଯ୍ୟକଳାପର ଦୀର୍ଘ ଜୀବନ ଦୁଇଟି ପୁରୁଷକୁ ସମ୍ପୂର୍ଣ୍ଣ ଭାବରେ ଆପ୍ଲୁତ କଲା ଯଦିଓ, ମନେହୋଇଥାଏ ସେ ଯେପରି ଆମର ଏ ଯୁଗର ହିଁ ଲୋକ । ସେ ରାଜନୀତିଜ୍ଞ ନଥିଲେ; କିନ୍ତୁ ଏତେ ମାତ୍ରାରେ ସମ୍ବେଦନଶୀଳ ଓ ଭାରତୀୟ ଜନସାଧାରଣଙ୍କ ସ୍ୱାଧୀନତା ପ୍ରତି ଏତେ ଭକ୍ତି ଅନୁରକ୍ତ ଥିଲେ ଯେ କାବ୍ୟ ଓ ସଙ୍ଗୀତର ପଦ୍ମାଳୟରେ ସେ ସର୍ବଦା ଆବଦ୍ଧ ରହି-ପାରୁନଥିଲେ । କୌଣସି ସମୟରେ କୌଣସି ଘଟଣାକ୍ରମେ ଯଦି ତାଙ୍କ ପକ୍ଷରେ ଅସହନୀୟ ହୋଇ ଉଠେ, ସେ ତାଙ୍କର ସ୍ୱତନ୍ତ୍ର ନିଳୟରୁ ବାହାରି ଅସିଚାନ୍ତି ଓ ଦୈବବାଣୀ ଭାଷାରେ ବ୍ରିଟିଶ ସରକାରଙ୍କୁ ଅଥବା ନିଜ ଦେଶବାସୀଙ୍କୁ ସାବଧାନ କରନ୍ତି । ବିଂଶ ଶତକର ପ୍ରଥମ ଦଶକରେ ଯେଉଁ ସ୍ୱଦେଶୀ ଆନ୍ଦୋଳନ ସମଗ୍ର ବଙ୍ଗଭୂମିକୁ ପ୍ଲାବିତ କଲା, ସେଥିରେ ସେ ଏକ ପ୍ରଧାନ ଭୂମିକା ଗ୍ରହଣ କରିଥିଲେ ଓ ପୁନର୍ବାର ଅମୃତସର ହତ୍ୟାକାଣ୍ଡବେଳେ ତାଙ୍କର 'ସାର୍' ଉପାଧି ତ୍ୟାଗ କରିଥିଲେ । ଶିକ୍ଷା କ୍ଷେତ୍ରରେ ସେ ଯେଉଁ ନୀରବ ଗଠନ

କାରଣ ହିନ୍ଦୁ କିମ୍ବା ଆରବମାନଙ୍କ ଅପେକ୍ଷା ଅବଶ୍ୟ ହିନ୍ଦୁମାନେ ବୟସରେ ବଡ଼ ଏକ ଜାତି । ତଥାପି, ବ୍ୟାବହାରିକ ଅଦ୍ୱୈତବାଦ, ଯାହା ସମଗ୍ର ମାନବ ଆତ୍ମବତ୍ ଦେଖେ ଓ ସେପରି ଆଚରଣ କରେ, ସାର୍ବଜନୀନ ଭାବରେ, ହିନ୍ଦୁମାନଙ୍କ ମଧ୍ୟରେ ଆଦୌ ବିକଶିତ ହୋଇପାରିନାହିଁ । 'ଅନ୍ୟ ଦିଗରେ ଆମର ଅଭିଜ୍ଞତାର କଥା, କୌଣସି ଧର୍ମାନୁଗାମୀ ଦୈନନ୍ଦିନ ଜୀବନରେ ଏ ପ୍ରକାର ସମଦର୍ଶିତା ଅବା-ଧାରଣୀୟ ଭାବରେ ଯଦି ଅର୍ଜନ କରି ପାରିଛି, ତାର ମର୍ମାର୍ଥ ଓ ତାର ପଛର ଆଚରଣ ବିଧି ସମ୍ପର୍କରେ ସେ ଅଜ୍ଞାତ ପଛେ ରହୁ (ଯାହା ହିନ୍ଦୁମାନେ ପ୍ରାଞ୍ଜଳ ବୁଝି ପାରନ୍ତି), ସେ ହେଉଛି କେବଳ ଇସ୍‌ଲାମ ଅନୁଗାମୀ ।

ହିନ୍ଦୁଧର୍ମ ଓ ଇସ୍‌ଲାମ ଭଳି ଦୁଇଟି ମହାନ୍ ପନ୍ଥାର ସଂଯୋଗ—ବେଦାନ୍ତ ବୁଦ୍ଧି ଓ ଇସ୍‌ଲାମ୍ ଶରୀର—ଆମ ମାତୃଭୂମିର ଏକମାତ୍ର ଆଶା । ବେଦାନ୍ତ ବୁଦ୍ଧି ଓ ଇସ୍‌ଲାମ୍ ଶରୀରେ ମହିମାମୟ ଓ ଅଜେୟ, ଭବିଷ୍ୟତର ନିଷ୍କଳଙ୍କ ଭାରତ ଆଜିର ଏହି ସଙ୍ଘାତ ଓ ବିଭ୍ରାଟ ଭିତରୁ ଉଠି ଆସିବା ମୁଁ ମୋର ମାନସ ନେତ୍ରରେ ଦେଖି-ପାରୁଛି ।' (ଅଲ୍‌ମୋରା), ୧୦. ୬. ୧୮୯୮ ।

ମୂଳକ କାର୍ଯ୍ୟ ଆରମ୍ଭ କରିଥିଲେ; ତାହା 'ଶାନ୍ତି ନିକେତନ'ରେ ଭାରତୀୟ ସଂସ୍କୃତିର ଅନ୍ୟତମ କେନ୍ଦ୍ର ଭାବରେ ଆତ୍ମପ୍ରକାଶ କଲା । ଭାରତୀୟ ମାନସ ଉପରେ ବିଶେଷତଃ ପରବର୍ତ୍ତୀ ପୁରୁଷମାନଙ୍କ ଉପରେ ତାଙ୍କର ପ୍ରଭାବ ଅପରିସୀମ । ବଙ୍ଗ ଭାଷା କେବଳ ନୁହେଁ, ଯେଉଁଥିରେ ସେ ଲେଖୁଥିଲେ, ଅଧିକନ୍ତୁ ଭାରତର ସମସ୍ତ ଆଧୁନିକ ଭାଷା ତାଙ୍କର ରଚନାବଳୀ ଦ୍ୱାରା ଆଂଶିକ ଭାବରେ ହେଲେ ରୂପାୟିତ ହୋଇଛି । ପ୍ରାଚ୍ୟ ପାଶ୍ଚାତ୍ୟ ଉଭୟର ଆଦର୍ଶ ଭିତରେ ସହଜ ପ୍ରତିଷ୍ଠା ଦିଗରେ ତାଙ୍କର ଅବଦାନ ସଙ୍ଗେ ଏବଂ ଭାରତୀୟ ଜାତୀୟବାଦର ଭିତ୍ତି ପ୍ରଶସ୍ତ କରିବା ଦିଗରେ କୌଣସି ଭାରତୀୟ ତାଙ୍କର ସମକକ୍ଷ ନୁହନ୍ତି । ସେ ଥିଲେ ଭାରତର ସର୍ବୋତ୍କୃଷ୍ଟ ଆନ୍ତର୍ଜାତିକବାଦୀ । ଆନ୍ତର୍ଜାତିକ ସହଯୋଗ ଉପରେ ତାଙ୍କର ବିଶ୍ୱାସ ଥିଲା ଓ ସେ ଦିଗରେ କାର୍ଯ୍ୟ କରିବାକୁ ଯାଇ ସେ ଭାରତର ସନ୍ଦେଶ ଅନ୍ୟାନ୍ୟ ଦେଶରେ ପହଞ୍ଚାଇ ଥିଲେ ଓ ସେ ସବୁ ଦେଶର ସନ୍ଦେଶ ନିଜ ଲୋକଙ୍କ ପାଖରେ ଆଣି ପହଞ୍ଚାଇଥିଲେ । ତଥାପି ତାଙ୍କର ସବୁ କିଛି ଆନ୍ତର୍ଜାତୀୟବାଦ ସତ୍ତ୍ୱେ ଭାରତୀୟ ମାଟି ଉପରେ ତାଙ୍କ ପାଦ ଦୃଢ଼ ରହିଥିଲା ଓ ତାଙ୍କର ମାନସ ଉପନିଷଦର ଜ୍ଞାନରେ ଥିଲା ଓତପ୍ରୋତ । ସର୍ବସାଧାରଣ ବିକାଶନିୟମର ବିପରୀତ ଭାବରେ ବୟସ ବୃଦ୍ଧି ସଙ୍ଗେ ତାଙ୍କର ବିଚାର ଓ ଦୃଷ୍ଟିଭଙ୍ଗୀରେ ସେ ଅଧିକତର ବିପ୍ଳବବାଦୀ ହୋଇଉଠଲେ । ଜୀବନସାରା ବ୍ୟକ୍ତିବାଦର ପୂଜାରୀ ଥିଲେ ସୁଦ୍ଧା ରୁଷବିପ୍ଳବର ମହାନ୍ ସଫଳତା, ବିଶେଷତଃ ଶିକ୍ଷା ଓ ସଂସ୍କୃତିର ପ୍ରସାର କ୍ଷେତ୍ରରେ ସ୍ୱାସ୍ଥ୍ୟର ଉନ୍ନତି ସାଧନରେ ଓ ସମତ୍ୱବିଧାନରେ ରୁଷର ବିଭିନ୍ନ କୃତିର ସେ ଜଣେ ବଡ଼ ପ୍ରଶଂସକ ହୋଇଉଠିଥିଲେ । ଜାତୀୟବାଦ ଚିନ୍ତାର ପରିସର ସଂକୀର୍ଣ୍ଣ କରେ ଏବଂ ପ୍ରବଳ ଏକ ସାମ୍ରାଜ୍ୟବାଦ ସଙ୍ଗେ ଯେବେ ଜାତୀୟବାଦ ସଙ୍ଘର୍ଷରେ ନିୟୋଜିତ ହୁଏ, ସମସ୍ତ ପ୍ରକାର ନୈରାଶ୍ୟ ଓ ଗୂଢ଼େଷା ଅର୍ଥାତ୍ ମାନସିକ ଜଟିଳତା ସୃଷ୍ଟି କରି ବସେ । ଗାନ୍ଧିଜୀ ଯେପରି ଭିନ୍ନ ଏକ କ୍ଷେତ୍ରରେ ଦେଶର ସେବା କରିଥିଲେ, ରବି ଠାକୁର ସେପରି ଭାରତର ଯେଉଁ ସେବା କଲେ, ତାହା ହେଉଛି ସେ କେତେ ପର୍ଯ୍ୟନ୍ତ ଚିନ୍ତାର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରୁ ମୁକ୍ତ ହେବାପାଇଁ ସେ ଲୋକଙ୍କୁ ବାଧ୍ୟ କଲେ ଏବଂ ସମଗ୍ର ମାନବଜାତି ସଙ୍ଗେ ସମ୍ପର୍କିତ ବୃହତ୍ତର ପ୍ରଶ୍ନମାନଙ୍କ ଉପରେ ଧ୍ୟାନ ଦେବାର ଶିକ୍ଷା ଦେଲେ । ରବୀନ୍ଦ୍ରନାଥ ଥିଲେ ଭାରତର ମହାନ୍ ମାନବତାବାଦୀ ।

ଏଥିରେ ସନ୍ଦେହ ନାହିଁ, ବିଂଶ ଶତକର ପ୍ରଥମାର୍ଦ୍ଧରେ ଯେଉଁ ଦୁଇଟି ମହାନ୍ ବ୍ୟକ୍ତିତ୍ୱ ଭାରତୀୟ ଜୀବନ ଓ ଚିନ୍ତାକୁ ପ୍ରବଳ ଭାବରେ ପ୍ରଭାବିତ କଲେ, ସେମାନେ ହେଉଛନ୍ତି କବିଗୁରୁ ରବୀନ୍ଦ୍ରନାଥ ଓ ମହାତ୍ମା ଗାନ୍ଧି । ଏହି ଦୁଇ ବ୍ୟକ୍ତିତ୍ୱର ତୁଳନା କରିବା ପ୍ରକୃତରେ ଶିକ୍ଷାପ୍ରଦ । ଦୁଇଜଣ ବ୍ୟକ୍ତି, ଦେହ ଓ ମନରେ, ଚିନ୍ତା ଓ ଆଚରଣରେ, ଏତେଭଳି ଭିନ୍ନ ହୋଇନପାରନ୍ତି । ଜଣେ ଅଭିଜାତ୍ୟସମ୍ପନ୍ନ ଶିଳ୍ପୀ, ସର୍ବହରା ପ୍ରତି ସହାନୁଭୂତି ଯୋଗୁ ଗଣତାନ୍ତ୍ରିକ, ରବୀନ୍ଦ୍ରନାଥ ସାରତଃ ଭାରତର ଯେଉଁ ସାଂସ୍କୃତିକ ପରମ୍ପରାର ପ୍ରତିନିଧିତ୍ୱ କରିଥିଲେ, ସେହି ପରମ୍ପରା ହେଉଛି ଜୀବନକୁ ସମ୍ପୂର୍ଣ୍ଣ ଭାବରେ ସ୍ୱୀକାର କରିବା ଓ ନୃତ୍ୟ ଭିତରଦେଇ ସେହି ଜୀବନ ଅତିବାହିତ କରିବା । ଗାନ୍ଧି ଥିଲେ ସାଧାରଣ ଲୋକଙ୍କ ଭିତରୁ

ଜଣେ, ଭାରତୀୟ ଋଷିର ପ୍ରତୀକ କହିଲେ ଅତ୍ୟୁକ୍ତି ହେବନି । ଭାରତର ଅନ୍ୟତମ ପ୍ରାଚୀନ ଯେଉଁ ପରମ୍ପରାର ପ୍ରତିନିଧିତ୍ୱ ସେ କରୁଥିଲେ, ତାହା ଥିଲା ତ୍ୟାଗ ଓ ବୈରାଗ୍ୟର ପରମ୍ପରା । ତଥାପି ରବୀନ୍ଦ୍ରନାଥ ମୁଖ୍ୟତଃ ଥିଲେ ଚିନ୍ତା-ଜଗତର ଲୋକ, ଆଉ ଗାନ୍ଧି ଥିଲେ ନିରବଚ୍ଛିନ୍ନ ତଥା ନିରବଚ୍ଛିନ୍ନ କର୍ମଜଗତର ଲୋକ । ଉଭୟେ ନିଜସ୍ୱ ଧାରାରେ ଏକ ବିଶ୍ୱ ଦୃଷ୍ଟି-ଭଙ୍ଗୀର ବିକାଶ ସାଧନ କରିଚନ୍ତି ଏବଂ ଏ କଥା ଭୁଲିବାର ନୁହେଁ ଯେ ଉଭୟେ ସମ୍ପୂର୍ଣ୍ଣତଃ ଭାରତୀୟ । ବାହ୍ୟତଃ ଭିନ୍ନ ପ୍ରତୀତ ହେଲେ ସୁଦ୍ଧା ସେମାନେ ଭାରତୀୟ ଜୀବନର ଦୁଇଟି ସଙ୍ଗତିସମ୍ପନ୍ନ ବିଭାବର ପ୍ରତିନିଧିତ୍ୱ କରୁଚନ୍ତି ଏବଂ ଉଭୟେ ଉଭୟର ପରିପୂରକ ।

ରବୀନ୍ଦ୍ରନାଥ ଓ ଗାନ୍ଧି ଆମକୁ ବର୍ତ୍ତମାନର ଯୁଗକୁ ନେଇ ଆସିଚନ୍ତି; କିନ୍ତୁ ଆମେ ଏହି ପୂର୍ବବର୍ତ୍ତୀ ସମୟର ଓ ଜନସାଧାରଣଙ୍କ ଉପରେ ବିଶେଷତଃ ହିନ୍ଦୁମାନଙ୍କ ଉପରେ ତାର ପ୍ରଭାବ ନେଇ ବିଚାର କରୁଥିଲେ, ଆଉ ବିବେକାନନ୍ଦ ଓ ଅନ୍ୟମାନେ ଭାରତର ସେହି ଅତୀତ ମହତ୍ତ୍ୱ ନେଇ ଯେଉଁ ଅଭିମାନ ରଖିଥିଲେ, ତାହା ମଧ୍ୟ ଆମର ବିଚାରଭୁକ୍ତ ଥିଲା । ଅତୀତ ଉପରେ ଅତିମାତ୍ରାରେ ନିର୍ଭର ନକରି ଭବିଷ୍ୟତ ଭିତରକୁ ଚାହିଁବା ପାଇଁ ବିବେକାନନ୍ଦ ଖୁବ୍ ସତର୍କତା ସହକାରେ ତାଙ୍କର ଅନୁଗାମୀମାନଙ୍କୁ ସାବଧାନ କରାଇଥିଲେ । ସେ ଲେଖିଥିଲେ, 'ହେ ପ୍ରଭୁ, କେବେ ଆମର ଦେଶ ଅତୀତର ଏହି ଚିରନ୍ତନ ବନ୍ଧନରୁ ମୁକ୍ତ ହେବ ?' ତଥାପି ସେ ଓ ଅନ୍ୟମାନେ ସେହି ଅତୀତର ଆବାହନୀ ଗାଇଥିଲେ । ସେଥିରେ ଥିଲା ମନୋହାରିତା, ଇନ୍ଦ୍ରଜାଲ ଓ ସେଥିରୁ ମୁକ୍ତ ହେବାର ଉପାୟ ନ ଥିଲା ।

ଅତୀତକୁ ଏପରି ଚାହିଁ ଓ ସେଥିରୁ ସାନ୍ତ୍ୱନା ଓ ଉପଜୀବ୍ୟ ପାଇବା କାର୍ଯ୍ୟରେ ପ୍ରାଚୀନ ସାହିତ୍ୟ ଓ ଇତିହାସର ପୁନରଧ୍ୟୟନ ଓ ପରେ ପୂର୍ବୀୟ ସମୁଦ୍ରରେ ଭାରତୀୟ ଉପନିବେଶ-ମାନଙ୍କର ନାନା କାହାଣୀ ସହାୟକ ହେଲା । ସେମାନଙ୍କର ଆଧ୍ୟାତ୍ମିକ ଓ ଜାତୀୟ ଐତିହ୍ୟରେ ଆସ୍ଥା ରଖିବାରେ ହିନ୍ଦୁ ମଧ୍ୟବିତ୍ତ ଶ୍ରେଣୀ ଉପରେ ଶ୍ରୀମତୀ ଆନି ବେସାନ୍ତଙ୍କ ପ୍ରଭାବ ଥିଲା ଅପ୍ରତିରୋଧ୍ୟ । ଏ ସବୁରେ ଗୋଟାଏ ଆଧ୍ୟାତ୍ମିକ ତଥା ଧାର୍ମିକ ସ୍ପୃହା ଅବଶ୍ୟ ଥିଲା; ତଥାପି ଗୋଟାଏ ଦୃଢ଼ ରାଜନୈତିକ ପୃଷ୍ଠଭୂମି ବି ଥିଲା । ବିକାଶଶୀଳ ମଧ୍ୟବିତ୍ତ ଶ୍ରେଣୀରେ ରାଜନୀତି ପ୍ରତି ଅନୁରାଗ ଥିଲା; କିନ୍ତୁ ସେପରି କିଛି ଧର୍ମପିପାସା ସେମାନଙ୍କର ନ ଥିଲା । ତଥାପି ସେମାନେ ଧରି ହେବା ପାଇଁ ଚାହୁଁଥିଲେ କିଛି ସାଂସ୍କୃତିକ ଅବଲମ୍ବନ; ଯାହା ସେମାନଙ୍କର ଯୋଗ୍ୟତା ସମ୍ପର୍କରେ ସେମାନଙ୍କୁ ନିଶ୍ଚିତ କରନ୍ତା; ଯାହା ବୈଦେଶିକ ବିଜୟଜନିତ ଶାସନର ପରିଣାମ—ନୈରାଶ୍ୟବୋଧ ଓ ଅବମାନନା ହ୍ରାସ କରନ୍ତା । ବର୍ଦ୍ଧିତ ଜାତୀୟବାଦର ପ୍ରତ୍ୟେକ ଦେଶରେ ଧର୍ମଠାରୁ ସ୍ୱତନ୍ତ୍ର ଭାବରେ ଏହି ଅନ୍ୱେଷଣ, ଅତୀତକୁ ଚାହିଁବାର ଏହି ପ୍ରବଣତା ଲାଗିରହିଥାଏ । ଧର୍ମବିଶ୍ୱାସକୁ ଦୁର୍ବଳ ନକରି ଇରାନ୍ ସୁଚିନ୍ତିତ ଭାବରେ ତାର ପ୍ରାକ୍ ଇସ୍‌ଲାମୀୟ କାଳର ମହାନତାକୁ ଫେରିଯାଇ ତାର ଆଜିର ଜାତୀୟବାଦକୁ ଶକ୍ତିଶାଳୀ କରିବା ଉଦ୍ଦେଶ୍ୟରେ ସେହି ସ୍ମୃତି ବ୍ୟବହାର କରିଚି । ଅନ୍ୟାନ୍ୟ ଦେଶରେ ମଧ୍ୟ ଏପରି ଘଟିଚି । ଭାରତର ଅତୀତ ତାର ସମସ୍ତ ସାଂସ୍କୃତିକ ବିବିଧତା ଓ ମହାନତା ସମେତ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ଓ ଅନ୍ୟମାନଙ୍କର—

ସାମୂହିକ ଭାବରେ ସବୁ ଭାରତୀୟଙ୍କର ଥିଲା ଏକମାତ୍ର ଐତିହ୍ୟ ଏବଂ ସେମାନଙ୍କର ପୂର୍ବପୁରୁଷ ଏହାର ନିର୍ମାଣରେ ଅଂଶ ଗ୍ରହଣ କରିଥିଲେ । ପରବର୍ତ୍ତୀ ସମୟରେ ଧର୍ମାନ୍ତରଣ ସୁଦ୍ଧା ସେମାନଙ୍କୁ ଏହି ଐତିହ୍ୟରୁ ବଞ୍ଚିତ କରିନି; ଯେପରି ଗ୍ରୀକ୍‌ମାନେ ଖ୍ରୀଷ୍ଟଧର୍ମ ଗ୍ରହଣ କଲାପରେ ସେମାନଙ୍କର ପୂର୍ବପୁରୁଷଙ୍କ କେତେ ବିପୁଳ ସଫଳତାର ଅଭିମାନ ହରାଇ ନଥିଲେ କିମ୍ବା ଯେପରି ଇଟାଲୀୟମାନେ ଧର୍ମମତ ପରିବର୍ତ୍ତନ ପରେ, ରୋମାନ୍ ଗଣରାଜ୍ୟ ଓ ସାମ୍ରାଜ୍ୟ ସ୍ଥାପନ କଥା ଭୁଲିନଥିଲେ । ଭାରତର ସମସ୍ତେ ଯଦି ଇସ୍‌ଲାମ୍ କିମ୍ବା ଇଶାଇ ଧର୍ମ ଗ୍ରହଣ କରିଥାନ୍ତେ, ତଥାପି ସୁଦ୍ଧା ଭାରତର ସାଂସ୍କୃତିକ ଐତିହ୍ୟ ରହିଥାନ୍ତା ସେମାନଙ୍କୁ ଅନୁପ୍ରାଣିତ କରିବାପାଇଁ ଓ ସେମାନଙ୍କୁ ସେହି ଗାମ୍ଭୀର୍ଯ୍ୟ ଓ ମର୍ଯ୍ୟାଦା ଅର୍ପଣ କରନ୍ତା, ଯାହା ସଭ୍ୟ ଅସ୍ତିତ୍ୱର ଏକ ଦୀର୍ଘ ଇତିହାସ; ଜୀବନର ବିବିଧ ସମସ୍ୟା ସଙ୍ଗେ ତାର ସମସ୍ତ ମାନସିକ ସଙ୍ଘର୍ଷ ସତ୍ତ୍ୱେ ଗୋଟାଏ ଜାତିକୁ ଦାନ କରିଥାଏ ।

ଆମେ ଯଦି ସ୍ୱାଧୀନ ହୋଇଥାନ୍ତୁ, ଆମେ ସମସ୍ତେ ଏ ଦେଶରେ ଗୋଟାଏ ସାର୍ବଜନୀନ ଭବିଷ୍ୟତ ନିମନ୍ତେ ମିଳିମିଶି ବର୍ତ୍ତମାନ କାର୍ଯ୍ୟ କଲାବେଳେ ନିଃସନ୍ଦେହରେ ଓ ଗର୍ବିତ ଭାବରେ ଆମର ଅତୀତକୁ ଦୃଷ୍ଟି ଫେରାଇଥାନ୍ତୁ । ପ୍ରକୃତ ପକ୍ଷେ, ମୋଗଲ ରାଜତ୍ୱ କାଳରେ ସମ୍ରାଟମାନେ ଓ ତାଙ୍କର ମୁଖ୍ୟ ପାର୍ଷଦମାନେ ନବାଗତ ହେତୁରୁ ସେମାନଙ୍କ ଅତୀତ ସଙ୍ଗେ ଅଖଣ୍ଡତା ରକ୍ଷା କରିବାପାଇଁ ଚାହୁଁଥିଲେ ଓ ଅନ୍ୟମାନଙ୍କ ଭଳି ସେଥିପ୍ରତି ସେମାନଙ୍କର ଅଭିମାନ ଥିଲା; କିନ୍ତୁ ମଣିଷର ନୀତି ଓ ଦୁର୍ବଳତାଦ୍ୱାରା ସାହାଯ୍ୟପ୍ରାପ୍ତ ଇତିହାସର ବିଭିନ୍ନ ଘଟଣା ଓ ପ୍ରକ୍ରିୟା ଭିନ୍ନ ଭାବରେ କାର୍ଯ୍ୟ କଲା ଏବଂ ଯେଉଁ ପରିବର୍ତ୍ତନ ଆସିଲା, ତାହା ସ୍ୱାଭାବିକ ପ୍ରଗତିର ପଥ ରୁଦ୍ଧକଲା । ଯେକେହି ଆଶା କରିବାର କଥା ଯେ ଏହି ନୂତନ ମଧ୍ୟବିତ୍ତ ଶ୍ରେଣୀ ଯାହା ପଶ୍ଚିମର ପ୍ରବଳ ପ୍ରଭାବ ଓ ବିବିଧ ବୈଜ୍ଞାନିକ ତଥା ଅର୍ଥନୈତିକ ପରିବର୍ତ୍ତନ ଫଳରେ ସୃଷ୍ଟି ହୋଇଥିଲା, ସେଥିରେ ହିନ୍ଦୁ ଓ ମୁସଲମାନ ଉଭୟର ଗୋଟାଏ ସର୍ବସାଧାରଣ ପୃଷ୍ଠଭୂମି ରହିବ । କେତେ ପର୍ଯ୍ୟନ୍ତ ତାହା ଥିଲା ମଧ୍ୟ; କିନ୍ତୁ ଯେଉଁସବୁ ପାର୍ଥକ୍ୟ ଗଢ଼ିଉଠିଲା ତାହା ସାମନ୍ତବାଦୀ ଓ ଅର୍ଦ୍ଧସାମନ୍ତବାଦୀ ଶ୍ରେଣୀମାନଙ୍କ ଭିତରେ, ତଥା ଜନସାଧାରଣଙ୍କ ଭିତରେ ନଥିଲା କିମ୍ବା ଯଦି ଥିଲା ଅତି ନଗଣ୍ୟ ଭାବରେ । ଜନସାଧାରଣଙ୍କ ଭିତରେ ହିନ୍ଦୁ ଓ ମୁସଲମାନ ବାରିବା ଥିଲା କଠିନ ଓ ପୁରାତନ ସମ୍ଭ୍ରାନ୍ତବର୍ଗର ଲୋକେ, ହିନ୍ଦୁ ଓ ମୁସଲମାନ ଚାଲିଚଳଣରେ ସମାନ ଏକ ଜୀବନ ପ୍ରତି ଅଭ୍ୟସ୍ତ ଥିଲେ । ସେମାନଙ୍କର ସଂସ୍କୃତି, ପ୍ରଥା, ପର୍ବ ଓ ଉତ୍ସବ ଏକ ପ୍ରକାର ଥିଲା । ପ୍ରଥମେ ମାନସିକ ସ୍ତରରେ ମଧ୍ୟବିତ୍ତ ଶ୍ରେଣୀ ବିଚ୍ଛିନ୍ନ ହେବା ଆରମ୍ଭ କଲେ ଓ ପରେ ଅନ୍ୟାନ୍ୟ ଭାବରେ ତାହା ବର୍ଦ୍ଧିତ ହେଲା ।

ପ୍ରଥମେ ମୁସଲମାନମାନଙ୍କ ଭିତରେ ଏହି ନୂତନ ମଧ୍ୟବର୍ଗ ପ୍ରାୟ ନଥିଲା କହିଲେ ଚଳେ । ପାଶ୍ଚାତ୍ୟ ଶିକ୍ଷା ଓ ବ୍ୟବସାୟ ବାଣିଜ୍ୟରୁ ଦୂରେଇ ରହି ସେମାନେ ପୁରାତନ ସାମନ୍ତବାଦୀ ଜୀବନକୁ ଯାବୁଡ଼ି ରହିବା ଫଳରେ ହିନ୍ଦୁମାନେ ସେଥିର ସୁଯୋଗ ନେଇ ଲାଭବାନ ହେଲେ ଓ ତାହା ଚାଲୁ ରଖିଲେ । ବ୍ରିଟିଶ ନୀତି ଥିଲା ହିନ୍ଦୁଙ୍କ ପ୍ରତି ଅନୁକୂଳ ଓ ମୁସଲମାନ

ପରିପନ୍ଥୀ । ଏହାର ବ୍ୟତିକ୍ରମ ଘଟିଥିଲା କେବଳ ପଞ୍ଜାବରେ; ଯେଉଁଠି ମୁସଲମାନମାନେ ଅପେକ୍ଷାକୃତ ଭାବରେ ପାଶ୍ଚାତ୍ୟ ଶିକ୍ଷା ପ୍ରତି ସହଜ ହୋଇପାରିଥିଲେ; କିନ୍ତୁ ଇଂରେଜମାନେ ପଞ୍ଜାବ ଦଖଲ କରିବା ବହୁ ପୂର୍ବରୁ ହିନ୍ଦୁମାନେ ଖୁବ୍ ଭଲ ଭାବରେ ଆଗେଇ ଯାଇଥିଲେ । ଏପରିକି ପଞ୍ଜାବରେ ମଧ୍ୟ ଯେଉଁଠି ହିନ୍ଦୁ ଓ ମୁସଲମାନ ଉଭୟଙ୍କ ପାଇଁ ଅବସ୍ଥା ଥିଲା ପ୍ରାୟ ସମାନ, ସେଠାରେ ଅର୍ଥନୀତି ଦିଗରୁ କିନ୍ତୁ ହିନ୍ଦୁମାନେ ଗୋଟାଏ ସୁବିଧାଜନକ ଅବସ୍ଥାରେ ଥିଲେ । ହିନ୍ଦୁ ଓ ମୁସଲିମ୍ ସମ୍ଭ୍ରାନ୍ତଶ୍ରେଣୀ ତଥା ଜନସାଧାରଣଙ୍କ ଭିତରେ ବିଦେଶୀ ବିରୋଧୀ ମନୋଭାବ ବରାବର ରହିଥିଲା । ଖ୍ରୀ: ୧୮୫୭ ର ବିଦ୍ରୋହ ଥିଲା ଏକ ମିଳିତ ବ୍ୟାପାର; କିନ୍ତୁ ତାହା ଯେବେ ଦମନ କରାଗଲା, ମୁସ୍‌ଲିମ୍‌ମାନେ ପ୍ରବଳ ଭାବରେ, କେତେ ପର୍ଯ୍ୟନ୍ତ ଯଥାର୍ଥ ଭାବରେ ମଧ୍ୟ ଅନୁଭବ କରିଥିଲେ ଯେ ହିନ୍ଦୁମାନଙ୍କ ଅପେକ୍ଷା ସେମାନେ ହିଁ ଅଧିକ ଭାବରେ କ୍ଷତିଗ୍ରସ୍ତ ହୋଇଚନ୍ତି । ଦିଲ୍ଲୀ ପ୍ରଭୁତ୍ୱ ପୁନର୍ବାର ଯେ ପ୍ରତିଷ୍ଠିତ ହେବ, ଏହି ରକମର ସବୁକିଛି କଳ୍ପନା ଜଳ୍ପନାକୁ ମଧ୍ୟ ଏହି ବିଦ୍ରୋହ ସରୁଦନ ପାଇଁ ଭାଙ୍ଗିଦେଲା । ରଙ୍ଗମଞ୍ଚ ଉପରେ ଇଂରେଜମାନେ ଦେଖା ଦେବାର ବହୁ ପୂର୍ବରୁ ସେହି ସାମ୍ରାଜ୍ୟ ଭାଙ୍ଗି ସାରିଥିଲା । ମରାଠାମାନେ ତାହା ଚୂର୍ଣ୍ଣ କରିଦେଇଥିଲେ ଓ ଦିଲ୍ଲୀ ନଗରୀ ଉପରେ ଆଧିପତ୍ୟ ଚଳାଇଥିଲେ । ପଞ୍ଜାବ ଥିଲା ରଣଜିତ୍ ସିଂହଙ୍କ ପ୍ରଭୁତ୍ୱାଧୀନ । ଭାରତର ଉତ୍ତରାଖଣ୍ଡରେ ଇଂରେଜମାନଙ୍କ ବିନା ହସ୍ତକ୍ଷେପରେ ମୋଗଲ ଶାସନର ସମାପ୍ତି ଘଟିଥିଲା । ଓ ଦକ୍ଷିଣଖଣ୍ଡରେ ମଧ୍ୟ ଏହାର ଅଖଣ୍ଡତା ଭାଙ୍ଗିପଡ଼ିଥିଲା । ତଥାପି, ପ୍ରଥମେ ମରାଠା ଓ ପରେ ଇଂରେଜମାନଙ୍କ ଉପରେ ନିର୍ଭରଶୀଳ ଥିଲେ ସୁଦ୍ଧା ଏକ ବିଖ୍ୟାତ ବଂଶର ପ୍ରତୀକ ଭାବରେ ଦିଲ୍ଲୀ ରାଜପ୍ରାସାଦରେ ଛାୟା-ବାଦଶାହ ଅବସ୍ଥାନ କରୁଥିଲେ । ବିଦ୍ରୋହ କାଳରେ ବିଦ୍ରୋହୀମାନେ ବାଦଶାହଙ୍କ ଦୁର୍ବଳତା ଓ ଅନିଚ୍ଛାସତ୍ତ୍ୱେ ଏହି ପ୍ରତୀକର ସୁବିଧା ନେବା ପ୍ରୟାସ କରିଥିଲେ । ବିଦ୍ରୋହ ଶେଷ ହେଲା ଅର୍ଥ ଏହି ପ୍ରତୀକ ମଧ୍ୟ ଧୂଳିସାତ୍ ହେଲା ।

ଲୋକେ ବିଦ୍ରୋହକାଳର ବିଭୀଷିକାରୁ କ୍ରମଶଃ ଉଦ୍ଧାର ଆସିଲାବେଳକୁ ସେମାନଙ୍କ ମନରେ ଏକ ପ୍ରକାର ଭାବହୀନତା ଓ ଔଦାସ୍ୟ ବିରାଜିତ ଥିଲା ଏବଂ ଫଳତଃ ମାନସିକ ସ୍ତରରେ ଯେଉଁ ଶୂନ୍ୟତା ସୃଷ୍ଟି ହେଲା, ତାହା ଯାହା କିଛି ଦେଇ ହେଉ ପୂର୍ଣ୍ଣହେବାକୁ ଖୋଜୁଥିଲା । ଆବଶ୍ୟକତା ଦୃଷ୍ଟିରୁ ବ୍ରିଟିଶ ଶାସନ ଗ୍ରହଣ କରିବା ଛଡ଼ା ଅନ୍ୟ ପନ୍ଥା ନଥିଲା, କିନ୍ତୁ ଅତୀତ ସଙ୍ଗେ ଏ ଯେଉଁ ବିଚ୍ଛିନ୍ନତା ଘଟିଥିଲା, ତାହା ଗୋଟାଏ ନୂତନ ସରକାର ଅପେକ୍ଷା ଅନେକ ଅଧିକ କିଛି ଆଣିଥିଲା । ଲୋକଙ୍କ ଭିତରେ ଏହା ସନ୍ଦେହ ଓ ଭ୍ରାନ୍ତି ପ୍ରସାରିତ କଲା ଓ ସେମାନଙ୍କର ଆତ୍ମବିଶ୍ୱାସ ଦୁର୍ବଳ କଲା । ପ୍ରକୃତପକ୍ଷେ, ବିଦ୍ରୋହର ବହୁ ପୂର୍ବରୁ ସେହି ବିଚ୍ଛିନ୍ନତା ଘଟିସାରିଥିଲା ଓ ତାର ଫଳରେ ବଙ୍ଗ ଓ ଅନ୍ୟତ୍ର ଚିନ୍ତା-ଜଗତରେ ବହୁ ଆଲୋଡ଼ନ ସୃଷ୍ଟି ହୋଇଥିଲା, ଯାହା ସମ୍ପର୍କରେ ମୁଁ ଏଥିପୂର୍ବେ ଉଲ୍ଲେଖ କରିଚି; କିନ୍ତୁ ସାଧାରଣତଃ ମୁସଲମାନମାନେ ସେତେବେଳେ ହିନ୍ଦୁମାନଙ୍କ ଅପେକ୍ଷା ଅଧିକତର ଭାବରେ କଚ୍ଛପ ଭଳି ସେମାନଙ୍କର ଖୋଳପା ଭିତରେ ଅବସର ଯାପୁଥିଲେ,

ପାଶ୍ଚାତ୍ୟ ଶିକ୍ଷାର ସୀମା ମାଡ଼ିନଥିଲେ ଓ ପ୍ରାଚୀନ ବ୍ୟବସ୍ଥାର ପୁନଃପ୍ରତିଷ୍ଠାଜନିତ ଦିବା-ସ୍ୱପ୍ନରେ ସମସ୍ତ ଅତିବାହିତ କରୁଥିଲେ । ସ୍ୱପ୍ନ ଦେଖିବାର ଅବକାଶ ଅବଶ୍ୟ ନଥିଲା; କିନ୍ତୁ ଆଶ୍ରୟ ସ୍ୱରୂପ କିଛି ଗୋଟାଏ ଦରକାର କରୁଥିଲା,ଯାହାକୁ ଧରି ସେମାନେ ରହିପାରନ୍ତେ । ତଥାପି ସୁଦ୍ଧା ନୂତନ ଶିକ୍ଷା ପ୍ରତି ସେମାନେ ଆଗ୍ରହୀ ନଥିଲେ । କ୍ରମଶଃ ବହୁ ତର୍କ ବିତର୍କ ଓ ସାଧ୍ୟସାଧନା ପରେ ସାର୍ ସୟଦ୍ ଅହମ୍ମଦ ଖାଁ ଇଂରେଜୀ ଶିକ୍ଷା ସମ୍ପର୍କରେ ସେମାନଙ୍କର ମତ ପରିବର୍ତ୍ତନ କଲେ ଓ ଅଲିଗଡ଼ କଲେଜ ସ୍ଥାପନ କଲେ । ସରକାରୀ ନିଯୁକ୍ତି ନିମନ୍ତେ ତାହା ହିଁ ଥିଲା ଏକମାତ୍ର ମାର୍ଗ ଓ ତାର ପ୍ରଲୋଭନ ପୁରାତନ ଯେତେ ସବୁ ବିରକ୍ତି ଓ ବିଦ୍ୱେଷ ଅପେକ୍ଷା ଯଥେଷ୍ଟ ଶକ୍ତିଶାଳୀ ପ୍ରମାଣିତ ହେଲା । ହିନ୍ଦୁମାନେ ଶିକ୍ଷା ଓ ସରକାରୀ କର୍ମରେ ସେମାନଙ୍କ ଅପେକ୍ଷା ବହୁତ ଆଗରେ ଯେ ଅଛନ୍ତି, ଏହା ମୁସଲମାନଙ୍କ ଗାତ୍ରଦାହ ସୃଷ୍ଟିକରିଥିଲା ଓ ସେହିଭଳି ଆଗେଇଯିବା ପାଇଁ ସେମାନେ ବ୍ୟାକୁଳ ହୋଇ ଉଠିଥିଲେ । ପାର୍ଶୀ ଓ ହିନ୍ଦୁମାନେ ଶିଳ୍ପକ୍ଷେତ୍ରରେ ମଧ୍ୟ ଅଗ୍ରଗତି କରୁଥିଲେ; କିନ୍ତୁ ମୁସ୍‌ଲିମ୍ ଦୃଷ୍ଟି ସରକାରୀ ନିଯୁକ୍ତି ଦିଗରେ ହିଁ ନିବଦ୍ଧ ରହିଲା ।

କିନ୍ତୁ ସେମାନଙ୍କର କାର୍ଯ୍ୟକଳାପ ନିମନ୍ତେ ଏହି ନୂତନ ଦିଗ ମଧ୍ୟ; ଯାହା ବସ୍ତୁତଃ ସ୍ୱଳ୍ପ କେତେକଙ୍କ ଭିତରେ ଥିଲା ଆବଦ୍ଧ, ସେମାନଙ୍କ ମନର ସନ୍ଦେହ ଓ ଭ୍ରାନ୍ତି ଦୂର କରିପାରିଲା ନାହିଁ । ଠିକ୍ ଏପରି ଅବସ୍ଥାରେ ହିନ୍ଦୁମାନେ ପଛକୁ ଚାହିଁ ପ୍ରାଚୀନତା କୋଳରେ ସାନ୍ତ୍ୱନା ଖୋଜିଥିଲେ । ପ୍ରାଚୀନ ଦର୍ଶନ ଓ ସାହିତ୍ୟ, କଳା ଓ ଇତିହାସ କିଛି ସାନ୍ତ୍ୱନା ଅବଶ୍ୟ ଆଣିଦେଇଥିଲା । ରାମମୋହନ ରାୟ, ଦୟାନନ୍ଦ, ବିବେକାନନ୍ଦ ଓ ଅନ୍ୟାନ୍ୟ ଚିନ୍ତାନାୟକ-ମାନେ ଚିନ୍ତାକ୍ଷେତ୍ରରେ ନୂତନ କେତେ ଆନ୍ଦୋଳନର ସୂତ୍ରପାତ କରିଥିଲେ । ଇଂରେଜୀ ସାହିତ୍ୟର ରସ ପାନକଲାବେଳେ ସୁଦ୍ଧା ସେମାନଙ୍କର ମନ ଭାରତର ପ୍ରାଚୀନ ମୁନି ଋଷି ଓ ବୀରପୁରୁଷ ସେମାନଙ୍କର ଚରିତ୍ର ଓ ବିରୋଚିତ କର୍ମ ଏବଂ ବାଲ୍ୟ ବୟସରୁ ସଞ୍ଚିତ ବିବିଧ ପୁରାଣ କଥା ଓ ଐତିହ୍ୟରେ ପୂର୍ଣ୍ଣ ଥିଲା ।

ଏଥିର ବହୁତ କିଛି ମୁସ୍‌ଲିମ୍ ଜନସାଧାରଣଙ୍କ ଭିତରେ ବି ପ୍ରଚଳିତ ଥିଲା; କାରଣ ସେମାନେ ବି ଏହିସବୁ ପରମ୍ପରା ସଙ୍ଗେ ପରିଚିତ ଥିଲେ; କିନ୍ତୁ କାଳକ୍ରମେ, ମୁସ୍‌ଲିମ୍ ଉଚ୍ଚବର୍ଗ ଭିତରେ ମୁଖ୍ୟତଃ ଏକଥା ଅନୁଭୂତ ହେବାକୁ ଲାଗିଲା ଯେ ଏହିସବୁ ଧର୍ମମିଶ୍ରିତ ପରମ୍ପରା ସଙ୍ଗେ ଜଡ଼ିତ ହେବା ସେମାନଙ୍କ ପକ୍ଷରେ ଉଚିତ ହେଉନି ଏବଂ ସେସବୁ ଉତ୍ସାହିତ କରିବା ମଧ୍ୟ ଇସ୍‌ଲାମୀୟ ଆଦର୍ଶର ବିରୋଧୀ । ଜାତୀୟ ଭିତ୍ତି ନିମନ୍ତେ ସେମାନେ ଅନ୍ୟତ୍ର ଦୃଷ୍ଟି ସଞ୍ଚାଳନ କଲେ । କେତେ ପରିମାଣରେ ସେମାନେ ଏହା ପାଇପାରିଲେ ଭାରତରେ ଆଫଗାନ୍ ଓ ମୋଗଲ ରାଜତ୍ୱର ପର୍ଯ୍ୟାୟ ଭିତରୁ; କିନ୍ତୁ ସେମାନଙ୍କର ମନର ଶୂନ୍ୟତା ପୂର୍ଣ୍ଣ କରିବାପାଇଁ ଏହା ଯଥେଷ୍ଟ ନଥିଲା । ଏହି ଉଭୟ ପର୍ଯ୍ୟାୟ ହିନ୍ଦୁ ଓ ମୁସଲିମ ଉଭୟଙ୍କ ପାଇଁ ସମାନ ଥିଲା ଏବଂ ହିନ୍ଦୁ ମନରୁ ବୈଦେଶିକ ଆକ୍ରମଣର ଚିନ୍ତା ଲିଭିଇ ସାରିଥିଲା । ମୋଗଲ ଶାସକମାନେ ଭାରତର ଜାତୀୟ ଶାସକ ଭାବରେ ପରିଗଣିତ ହୋଇଥିଲେ । କେବଳ ଆଓରଙ୍ଗଜେବଙ୍କ ବିଷୟରେ ଯାହା କିଛି ଭିନ୍ନମତ ରହିଥିଲା, ଏ କଥା

ବିତ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଯେ ହିନ୍ଦୁମାନଙ୍କ ବିଶେଷ ପ୍ରଶଂସାର ପାତ୍ର ଆକ୍‌ବରଙ୍କ କାର୍ଯ୍ୟକଳାପକୁ ଅଧୁନା କେତେକ ମୁସଲମାନ ପସନ୍ଦ କରୁନାହାନ୍ତି । ଗତବର୍ଷ ତାଙ୍କର ୪୦୦ ତମ ଜନ୍ମତିଥି ଭାରତରେ ପାଳିତ ହେଲା । ବହୁ ମୁସଲମାନ ସମେତ ସବୁ ଶ୍ରେଣୀର ଲୋକେ ଏଥିରେ ଯୋଗ ଦେଇଥିଲେ; କିନ୍ତୁ ମୁସ୍‌ଲିମ୍ ଲିଗ୍ ଏଥିରୁ କରଛଡ଼ା ଦେଇ ରହିଲା; କାରଣ ଆକ୍‌ବର ଥିଲେ ଭାରତର ଏକତାର ପ୍ରତୀକ ।

ସାଂସ୍କୃତିକ ଉତ୍ସବ ନିମନ୍ତେ ଏହି ଅନ୍ୱେଷଣ ଭାରତୀୟ ମୁସଲମାନଙ୍କୁ (କେତେକ ମଧ୍ୟବିତ୍ତ ଶ୍ରେଣୀର ଲୋକ ସମେତ) ଇସଲାମୀୟ ଇତିହାସ ତଥା ସେହିସବୁ ପର୍ଯ୍ୟାୟ ଆଡ଼କୁ ଆକର୍ଷିତ କଲା, ଯେବେ ବାଗ୍‌ଦାଦ୍, ସ୍ପେନ୍, କନ୍‌ଷ୍ଟାଣ୍ଟିନୋପଲ୍, ମଧ୍ୟ-ଏସିଆ ଓ ଅନ୍ୟତ୍ର ଇସ୍‌ଲାମ୍ ଥିଲା ଏକ ବିଜୟମଣ୍ଡିତ ସୃଜନାତ୍ମକ ଶକ୍ତି । ଏହି ଇତିହାସରେ ସର୍ବଦା ଆଗ୍ରହ ରହିଥିଲା ଏବଂ ପଡ଼ୋଶୀ ଇସ୍‌ଲାମୀୟ ଦେଶମାନଙ୍କ ସଙ୍ଗେ ଯୋଗାଯୋଗ ବି ଥିଲା । ଅଧିକନ୍ତୁ ହଜ୍ ଯାତ୍ରାରେ ଯାଇ ବିଭିନ୍ନ ଦେଶର ମୁସ୍‌ଲିମ୍‌ମାନେ ମକ୍‌କାରେ ସମ୍ମିଳିତ ହେଉଥିଲେ; କିନ୍ତୁ ଏ ସବୁ ସମ୍ପର୍କ ଥିଲା ବଡ଼ ସୀମିତ ଓ ଲଘୁ ଏବଂ ଏହା ଭାରତୀୟ ମୁସଲମାନଙ୍କ ସାଧାରଣ ଦୃଷ୍ଟିଭଙ୍ଗୀକୁ ପ୍ରଭାବିତ କରିବାପାଇଁ ଯଥେଷ୍ଟ ନଥିଲା । ଭାରତୀୟ ମୁସଲମାନଙ୍କ ଦୃଷ୍ଟିଭଙ୍ଗୀ ଭାରତରେ ହିଁ ଆବଦ୍ଧ ଥିଲା । ଦିଲ୍ଲୀର ଆଫ୍‌ଗାନ୍ ଶାସକମାନେ ବିଶେଷତଃ ମହମ୍ମଦ ତୋଗ୍‌ଲକ୍ କାଏରୋର ଖଲିଫାଙ୍କ ପ୍ରଭୁତ୍ୱ ସ୍ୱୀକାର କରୁଥିଲେ । ପରବର୍ତ୍ତୀ କାଳରେ କନ୍‌ଷ୍ଟାଣ୍ଟିନୋପଲ୍‌ର ଓଟୋମାନ୍ ସମ୍ରାଟମାନେ ଖଲିଫା ହେଇଥିଲେ ସୁଦ୍ଧା ଭାରତରେ ସେମାନେ ସ୍ୱୀକୃତି ପାଇନଥିଲେ । ଭାରତର ମୋଗଲ ସମ୍ରାଟମାନେ ଭାରତ ବାହାରେ କୌଣସି ଧର୍ମନେତା କିମ୍ବା ଖଲିଫାଙ୍କୁ ସ୍ୱୀକାର କରିନଥିଲେ । ଊନବିଂଶ ଶତକର ଆରମ୍ଭରେ ମୋଗଲଶକ୍ତି ସମ୍ପୂର୍ଣ୍ଣ ବିଲୟପ୍ରାପ୍ତ ହେବା ପରେ କେବଳ ଭାରତର ମସ୍‌ଜିଦ୍-ମାନଙ୍କରେ ତୁରସ୍କର ସୁଲତାନଙ୍କ ନାମ ଉଚ୍ଚାରିତ ହେବା ଆରମ୍ଭ ହେଲା । ୧୮୫୭ର ବିଦ୍ରୋହ ପରେ ଏହା ସାଧାରଣ ଅଭ୍ୟାସରେ ପରିଣତ ହେଲା ।

ଏପରିଭାବରେ, ଭାରତୀୟ ମୁସଲମାନମାନେ ଭାରତ ବାହାରେ ମୁଖ୍ୟତଃ ଇସ୍‌ଲାମର ଅତୀତ ଗୌରବ ବିଷୟରେ ଏବଂ ଏକମାତ୍ର ତୁରସ୍କ ଯେ ଗୋଟାଏ ସ୍ୱାଧୀନ ମୁସ୍‌ଲିମ୍ ଶକ୍ତି ହିସାବରେ ତିଷ୍ଠି ରହିପାରିଛି—ସେ ବିଷୟରେ ମଧ୍ୟ ଚିନ୍ତା କରି ଯତ୍‌ସାମାନ୍ୟ ମାନସିକ ସନ୍ତୋଷ ଲାଭ କରିବାର ଉଦ୍ୟମ କରୁଥିଲେ । ଭାରତୀୟ ଜାତୀୟତାବାଦ ପ୍ରତି ଏହି ଭାବନାର ବିରୋଧିତା ନଥିଲା କିମ୍ବା ଉଭୟ ଭିତରେ ସଂଘର୍ଷ ଘଟିବାର ଅବକାଶ ନଥିଲା । ପ୍ରକୃତ-ପକ୍ଷେ, ବହୁ ହିନ୍ଦୁ ଇସ୍‌ଲାମୀୟ ଇତିହାସ ସଙ୍ଗେ ଭଲଭାବରେ ପରିଚିତ ଥିଲେ ଏବଂ ସେଥିପ୍ରତି ସେମାନଙ୍କର ପ୍ରଶଂସାବୋଧ ବି ଥିଲା । ତୁରସ୍କ ପ୍ରତି ସେମାନେ ସହାନୁ-ଭୂତିଶୀଳ ଥିଲେ; କାରଣ ତୁର୍କୀମାନଙ୍କୁ ସେମାନେ ଏସିଆବାସୀ ଭାବରେ ୟୁରୋପୀୟ ଆକ୍ରମଣରେ ଅନ୍ୟତମ ଶିକାର ମଣୁଥିଲେ । ତଥାପି ମୁସ୍‌ଲିମ୍‌ମାନେ ଯେପରି ଇସ୍‌ଲାମୀୟ ଗୌରବରୁ ଗୋଟାଏ ପ୍ରକାର ମାନସିକ ସନ୍ତୋଷ ଆହରଣ କରୁଥିଲେ, ସେଭଳି ଆବଶ୍ୟକତା ହିନ୍ଦୁମାନଙ୍କର ନ ଥିଲା । ପ୍ରଭେଦ ଏତିକି ।

ବିଦ୍ରୋହ ପରେ ଭାରତୀୟ ମୁସଲମାନମାନେ କେଉଁ ପକ୍ଷରେ ରହିବେ, ଏ ବିଷୟ ନେଇ ଦ୍ୱିଧାରେ ପଡ଼ିଥିଲେ । ବ୍ରିଟିଶ ସରକାର ସୁଚିନ୍ତିତ ଭାବରେ ହିନ୍ଦୁମାନଙ୍କ ଅପେକ୍ଷା ସେମାନଙ୍କ ଉପରେ କଠୋରତର ଦମନଲୀଳା ଚଳାଇଥିଲେ ଏବଂ ଏହା ମୁସଲମାନଙ୍କ ଭିତରେ ଯେଉଁମାନଙ୍କୁ ବିଶେଷ ଭାବରେ ବାଧିଥିଲା । ସେମାନଙ୍କ ଭିତରୁ ହିଁ ଏହି ବୁର୍ଜୁଆ ବା ନୂତନ ମଧ୍ୟବିତ୍ତ ଶ୍ରେଣୀ ବାହାରିଥାନ୍ତେ । ସେମାନେ ନିଜକୁ ସମ୍ପୂର୍ଣ୍ଣ ଦଳିତ ମନେ କରୁଥିଲେ ଏବଂ ସେମାନଙ୍କ ମନରେ ବ୍ରିଟିଶ ବିରୋଧିଭାବନା ପ୍ରବଳ ଥିଲା । ବିଚାର-ଚରଣରେ ସେମାନେ ଥିଲେ ସମ୍ପୂର୍ଣ୍ଣ ରକ୍ଷଣଶୀଳ । ୧ପ୍ରମ ଦଶକରେ ବ୍ରିଟିଶ ନୀତି ସେମାନଙ୍କ ପ୍ରତି କ୍ରମଶଃ କୋହଳ ଓ ଅଧିକତର ଅନୁକୂଳ ହେଲା । ଏହା ସାରତଃ, ଉଭୟ ସମ୍ପ୍ରଦାୟ ମଧ୍ୟରେ ବ୍ରିଟିଶ ସରକାରଙ୍କ ଦ୍ୱାରା ଅନୁସୃତ ଭାରସାମ୍ୟ ରକ୍ଷା କରିବା ନୀତିର ଫଳ । ତଥାପି ଏହି ପ୍ରକ୍ରିୟାରେ ସାର୍ ସୈୟଦ୍ ଅହମ୍ମଦ ଖାଁ ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିଥିଲେ । ତାଙ୍କର ଦୃଢ଼ବୋଧ ହୋଇଥିଲା ଯେ, ବ୍ରିଟିଶ ସରକାରଙ୍କ ସଙ୍ଗେ ସହଯୋଗ କରି କେବଳ ସେ ମୁସଲମାନଙ୍କ ଉନ୍ନତି ସାଧନ କରିପାରିବେ । ମୁସଲମାନମାନେ ଇଂରେଜୀ ଶିକ୍ଷା ପ୍ରାପ୍ତ ହୁଅନ୍ତୁ ବୋଲି ସେ ଆତୁର ଥିଲେ ଏବଂ ତାହାହେଲେ କେବଳ ସେ ସେମାନଙ୍କୁ ରକ୍ଷଣଶୀଳତାର ଗଣ୍ଡି ମଧ୍ୟରୁ ଟାଣି ଆଣି ପାରିବେ ବୋଲି ଭାବୁଥିଲେ । ୟୁରୋପୀୟ ସଭ୍ୟତା ତାଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା ଏବଂ ୟୁରୋପରୁ ଲେଖିଥିବା କେତେକ ଚିଠିରୁ ପ୍ରକୃତପକ୍ଷେ ଜଣାପଡ଼େ ସେ କେତେ ଭଲ ଅଭିଭୂତ ହୋଇଥିଲେ; କାରଣ କେତେକ ସ୍ଥାନରେ ସେ ନିଜକୁ ସମ୍ପୂର୍ଣ୍ଣ ଭୁଲି ଯାଇଚନ୍ତି କହିଲେ ଚଳେ ।

ସାର୍ ସୈୟଦ୍ ଥିଲେ ଜଣେ ଉଦ୍ଧର୍ଷିତ ସଂସ୍କାରକ ଏବଂ ଇସ୍‌ଲାମୀୟ ବିଚାର ଓ ଆଧୁନିକ ବୈଜ୍ଞାନିକ ବିଚାର ଭିତରେ ମେଳ ଆଣିବାପାଇଁ ସେ ଚାହିଁଥିଲେ । ସେ ଭାବୁ-ଥିଲେ ଯେ କୌଣସି ମୌଳିକ ବିଶ୍ୱାସ ଉପରେ ଆକ୍ରମଣ ଚଳାଇ ଏହା କରିବା ସମ୍ଭବ ନୁହେଁ; କରାଯାଇପାରିବ ଧର୍ମଶାସ୍ତ୍ରମାନଙ୍କର ଯୁକ୍ତିଯୁକ୍ତ ବ୍ୟାଖ୍ୟା ଯୋଗାଇ । ଇସ୍‌ଲାମ୍ ଓ ଇସାଇ ଧର୍ମର ଯାହାସବୁ ମୌଳିକ ସାଦୃଶ୍ୟ ସେ ପ୍ରଦର୍ଶିତ କଲେ । ମୁସ୍‌ଲିମ୍‌ମାନଙ୍କ ଭିତରେ ପ୍ରଚଳିତ ପରଦା ପ୍ରଥାର ସେ ଉଗ୍ର ବିରୋଧୀ ଥିଲେ । ତୁର୍କି ଖିଲାଫତ୍ ପ୍ରତି କୌଣସି ପ୍ରକାର ଆନୁଗତ୍ୟର ପକ୍ଷପାତୀ ସେ ନଥିଲେ । ସର୍ବୋପରି ଗୋଟିଏ ନୂତନ ଧରଣର ଶିକ୍ଷା ପ୍ରସାରିତ କରିବାପାଇଁ ସେ ଆତୁର ଥିଲେ । ଜାତୀୟ ଆନ୍ଦୋଳନର ସୂତ୍ରପାତ ତାଙ୍କୁ ଆତଙ୍କିତ କରିଥିଲା; କାରଣ ସେ ମନେ କରୁଥିଲେ ଯେ ବ୍ରିଟିଶ ସରକାର ସଙ୍ଗେ ବିରୋଧିତା କଲେ ସେ ତାଙ୍କର ପ୍ରସ୍ତାବିତ ଶିକ୍ଷା ନିର୍ଘଣ୍ଟ ପ୍ରତି ସରକାରଙ୍କ ସାହାଯ୍ୟ ଓ ସହାନୁଭୂତିରୁ ବଞ୍ଚିତ ହେବେ । ସରକାରୀ ସାହାଯ୍ୟ ତାଙ୍କୁ ଅପରିହାର୍ଯ୍ୟ ବୋଧ ହୋଇଥିଲା ଏବଂ ସେଥି-ହେତୁରୁ ସେ ମୁସଲମାନଙ୍କ ଭିତରେ ଥିବା ବ୍ରିଟିଶ ବିରୋଧୀ ମନୋଭାବର ଉଗ୍ରତା ଶାନ୍ତ କରିବାପାଇଁ ଏବଂ ସେତେବେଳେ ରୂପ ପରିଗ୍ରହ କରିଥିବା ଜାତୀୟ କଂଗ୍ରେସରୁ ସେମାନଙ୍କୁ ଦୂରରେ ରଖିବା ପାଇଁ ଉଦ୍ୟମ କରିଥିଲେ । ତାଙ୍କ ଦ୍ୱାରା ସ୍ଥାପିତ ଆଲିଗଡ଼

କଲେଜର ଅନ୍ୟତମ ଘୋଷିତ ଲକ୍ଷ୍ୟ ଥିଲା 'ଭାରତର ମୁସଲମାନଙ୍କୁ ବ୍ରିଟିଶ ସମ୍ରାଟଙ୍କ ଯୋଗ୍ୟ ତଥା ଉପଯୁକ୍ତ ପ୍ରଜା କରି ଗଢ଼ିବା ।' ଜାତୀୟ କଂଗ୍ରେସ ପ୍ରତି ତାଙ୍କର ବିରୋଧିତା ନଥିଲା; କାରଣ କଂଗ୍ରେସକୁ ପ୍ରଧାନତଃ ଏକ ହିନ୍ଦୁ ସଙ୍ଗଠନ ବୋଲି ସେ ଧରିନେଇ-ଥିଲେ । ଯଦି କେବେ ସେ ବିରୋଧ କରିଚନ୍ତି, ତାହା ଏଥିପାଇଁ ଯେ ସେ କଂଗ୍ରେସକୁ ରାଜନୀତି ଦୃଷ୍ଟିରୁ ଅତିଶୟ ଉଗ୍ର ମଣୁଥିଲେ (ଯଦିଓ ସେ କାଳରେ କଂଗ୍ରେସ ଯଥେଷ୍ଟ ନରମ ଥିଲା) ଏବଂ ସେ ବ୍ରିଟିଶ ସାହାଯ୍ୟ ଓ ସହଯୋଗ ବାଞ୍ଛା କରୁଥିଲେ । ସେ ପ୍ରମାଣ କରିବାକୁ ଚାହୁଁଥିଲେ ଯେ ବିଦ୍ରୋହ କାଳରେ ମୁସଲମାନମାନେ ଗୋଟାଏ ସମ୍ପ୍ରଦାୟ ଭାବରେ ବିଦ୍ରୋହୀ ହୋଇନଥିଲେ ଏବଂ ବହୁ ମୁସଲମାନ ବ୍ରିଟିଶ ଶକ୍ତି ପ୍ରତି ଅନୁଗତ ରହିଥିଲେ । ସେ କଦାପି ନିଜକାଳେ ହିନ୍ଦୁଦ୍ୱେଷୀ ନଥିଲେ କିମ୍ବା ସାମ୍ପ୍ରଦାୟିକ ବିଚ୍ଛିନ୍ନତାର ବିଚାର ତାଙ୍କୁ ସ୍ପର୍ଶ କରିନଥିଲା । ବାରମ୍ବାର ସେ ଜୋର୍ ଦେଇ କହିଚନ୍ତି ଯେ ଧର୍ମଗତ ମତପାର୍ଥକ୍ୟର ତାତ୍ପର୍ଯ୍ୟ ରାଜନୈତିକ ଅଥବା ଜାତୀୟବାଦୀ ବିଚାରରେ ସ୍ଥାନ ପାଇବା ଠିକ୍ ନୁହେଁ । "ତୁମେ କ'ଣ ସେହି ଏକା ଦେଶବାସୀ ନୁହଁ ?" ସେ କହିଥିଲେ, "ଏକଥା ଶୁଣିବେଳେ ମନେ ରଖିଥିବ ଯେ ହିନ୍ଦୁ ଓ ମୁସଲମାନ—ଏ ଦୁଇଟି ଶବ୍ଦର ଉଦ୍ଦେଶ୍ୟ କେବଳ ଧର୍ମଗତ ବୈଶିଷ୍ଟ୍ୟ ପ୍ରକାଶ କରିବା ପାଇଁ, ଅନ୍ୟଥା ହିନ୍ଦୁ ହୁଅନ୍ତୁ କି ମୁସଲମାନ ହୁଅନ୍ତୁ, ଏପରିକି ଏହି ଦେଶରେ ବାସ କରୁଥିବା ଖ୍ରୀଷ୍ଟାନ୍‌ମାନେ ମଧ୍ୟ ସମସ୍ତଙ୍କର ଜାତୀୟତା ସମାନ । ସମସ୍ତେ ଭାରତୀୟ ।"

ମୁସଲମାନଙ୍କ ଭିତରେ ଉଚ୍ଚବର୍ଗର କେତେକ ଅଂଶରେ ସାର ସୈୟଦ୍ ଅହମ୍ମଦ ଖାଁଙ୍କ ପ୍ରଭାବ ସୀମିତ ଥିଲା । ସହର ଅବା ଗ୍ରାମାଞ୍ଚଳରେ ଜନସାଧାରଣଙ୍କ ପର୍ଯ୍ୟନ୍ତ ସେ ପହଞ୍ଚି ପାରିନଥିଲେ । ମୁସ୍‌ଲିମ୍ ସମ୍ପ୍ରଦାୟର ସାଧାରଣ ଜନତା ସେମାନଙ୍କର ଉଚ୍ଚ ବର୍ଗରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ପଡ଼ିଥିଲେ ଏବଂ ଦେଖିବାକୁ ଗଲେ ସେମାନେ ହିନ୍ଦୁ ସାଧାରଣ ଜନତାର ନିକଟବର୍ତ୍ତୀ ଥିଲେ । ମୁସ୍‌ଲିମ୍ ଉଚ୍ଚବର୍ଗର କେତେକ ଲୋକେ ମୋଗଲ ରାଜତ୍ୱକାଳର ସମ୍ଭ୍ରାନ୍ତମାନଙ୍କ ବଂଶଜ ଯଦିଓ ଥିଲେ, ଜନସାଧାରଣଙ୍କର ସେପରି ପୃଷ୍ଠଭୂମି ବା ପରମ୍ପରା କିଛି ନଥିଲା । ସେମାନଙ୍କ ଭିତରୁ ଅଧିକାଂଶ ହିନ୍ଦୁ ସମାଜର ନିମ୍ନତମ ସ୍ତରରୁ ଧର୍ମାନ୍ତରିତ ହୋଇଥିଲେ ଏବଂ ଦରିଦ୍ରତା ଓ ଶୋଷଣ ସେମାନଙ୍କ ଜୀବନକୁ ଦୁର୍ବହ କରି ରଖିଥିଲା ।

ସାର୍ ସୈୟଦଙ୍କର କେତେ ଜଣ ସୁଦକ୍ଷ ତଥା ବିଖ୍ୟାତ ସହକର୍ମୀ ଥିଲେ । ତାଙ୍କର ଏ ପ୍ରକାର ବିଚାରକୁ ଅନ୍ୟମାନଙ୍କ ଭିତରେ ସୈୟଦ ଚରାଗ୍ ଅଲ୍ଲି ଓ ନବାବ ମୋସିନ୍ ଉଲ୍‌ମୁଲ୍‌କ ମଧ୍ୟ ସମର୍ଥନ କରିଥିଲେ । ତାଙ୍କର ଶିକ୍ଷା କାର୍ଯ୍ୟକ୍ରମ ପ୍ରତି ଆକୃଷ୍ଟ ହୋଇ ଆସିଥିଲେ ମୁନ୍‌ସି କରାମତ୍ ଅଲ୍ଲି, ଦିଲ୍ଲୀର ମୁନ୍‌ସି ଜାକାଉଲ୍ଲା, ଡକ୍ଟର ନଜିର ଅହମ୍ମଦ, ମୌଲନା ସିବ୍‌ଲି ନୋମାନ ଓ କବି ହାଲି । ଉର୍ଦ୍ଦୁ ସାହିତ୍ୟରେ କବି ହାଲିଙ୍କ ସ୍ଥାନ ଅତି ଉଚ୍ଚରେ । ମୁସ୍‌ଲିମ୍‌ମାନଙ୍କ ଭିତରେ ଇଂରେଜୀ ଶିକ୍ଷା ପ୍ରତି ଆଗ୍ରହ ସୃଷ୍ଟି କରିବାରେ ଓ ମୁସ୍‌ଲିମ୍ ମନକୁ ରାଜନୈତିକ ଆନ୍ଦୋଳନରୁ ଅଲଗା ରଖିବାରେ ସାର୍ ସୈୟଦ୍ ସଫଳ ହୋଇଥିଲେ । ଗୋଟାଏ ମୁସ୍‌ଲିମ୍ ଶିକ୍ଷା ସମ୍ମିଳନୀ ଆରମ୍ଭ କରାଗଲା ଏବଂ ସରକାରୀ କର୍ମରେ

ଓ ଅନ୍ୟାନ୍ୟ ବୃତ୍ତିରେ ଥିବା ଉଦୀୟମାନ ମଧ୍ୟବିତ୍ତ ଶ୍ରେଣୀ ସେଥିପ୍ରତି ଆକୃଷ୍ଟ ହେଲେ ।

ଏହା ସତ୍ତ୍ୱେ ବହୁ ଗଣ୍ୟମାନ ମୁସଲମାନ ଜାତୀୟ କଂଗ୍ରେସରେ ଯୋଗ ଦେଲେ । ମୁସଲମ୍‌ମାନଙ୍କୁ ନିଶ୍ଚିତ ଭାବରେ ଦୂରେଇ ରଖିଲା ଭଳି କିମ୍ବା ଏପରି କହିବା ଠିକ୍ ହେବ ଯେ ମୁସଲମ୍‌ମାନଙ୍କ ଭିତରୁ ଯେଉଁମାନେ ଜାତୀୟ ଆନ୍ଦୋଳନ ସପକ୍ଷରେ ନ ଥିଲେ, ସେମାନଙ୍କୁ ଦୂରେଇ ରଖିଲା ଭଳି ବ୍ରିଟିଶ ନୀତି କାର୍ଯ୍ୟକଲା; କିନ୍ତୁ ବିଂଶ ଶତକର ପ୍ରାରମ୍ଭରେ ମୁସଲିମ୍ ଯୁବସମାଜ ଭିତରେ ଜାତୀୟବାଦ ଓ ରାଜନୈତିକ କାର୍ଯ୍ୟକଳାପ ପ୍ରତି ଆଗ୍ରହ ଅଧିକତର ଭାବରେ ପରିଲକ୍ଷିତ ହେଲା । ଏଥିରୁ ସେମାନଙ୍କର ମନ ଫେରାଇନେଇ ନିରାପଦ ପନ୍ଥାରେ ନିୟୋଜିତ କରିବା ଉଦ୍ଦେଶ୍ୟରେ ଖ୍ରୀ: ୧୯୦୬ରେ ବ୍ରିଟିଶ ସରକାରଙ୍କ ପ୍ରେରଣାରେ ଓ ତାଙ୍କର ଅନ୍ୟତମ ମୁଖ୍ୟ ସମର୍ଥକ ଅଗା ଖାଁଙ୍କ ନେତୃତ୍ୱରେ ମୁସଲିମ୍ ଲିଗ୍ ସ୍ଥାପିତ ହେଲା । ଲିଗ୍‌ର ଦୁଇଟି ଲକ୍ଷ୍ୟ ଥିଲା ପ୍ରଧାନ : ବ୍ରିଟିଶ ସରକାର ପ୍ରତି ଆନୁଗତ୍ୟ ଓ ମୁସ୍‌ଲିମ୍ ସ୍ୱାର୍ଥ ସଂରକ୍ଷଣ ।

ଏ କଥା ଲକ୍ଷ୍ୟ କରିବା ଯୋଗ୍ୟ ଯେ ବିଦ୍ରୋହ ପରବର୍ତ୍ତୀ କାଳରେ ସାର୍ ସୈୟଦ୍ ଅହମ୍ମଦ ଖାଁଙ୍କ ସମେତ ନେତୃସ୍ଥାନୀୟ ଭାରତୀୟ ମୁସଲମାନ ଥିଲେ ସାମନ୍ତିକ ଶିକ୍ଷାପ୍ରାପ୍ତ ବ୍ୟକ୍ତି । ଯଦିଓ ସେମାନଙ୍କ ଭିତରୁ କେହି କେହି ପରେ ଇଂରେଜୀ ଶିକ୍ଷା କରିଥିଲେ ଓ ନୂତନ ଭାବଧାରା ଦ୍ୱାରା ପ୍ରଭାବିତ ହୋଇଥିଲେ, ନୂତନ ପାଶ୍ଚାତ୍ୟ ଶିକ୍ଷା ସେ ପର୍ଯ୍ୟନ୍ତ ସେମାନଙ୍କ ଭିତରେ କୌଣସି ବିଖ୍ୟାତ ପ୍ରତିଭା ସୃଷ୍ଟି କରିପାରିନଥିଲା । ଭାରତର ବିଖ୍ୟାତ ଉର୍ଦ୍ଦୁ କବି ଓ ଊନବିଂଶ ଶତକର ଅନ୍ୟତମ ଶ୍ରେଷ୍ଠ ସାହିତ୍ୟିକ ଗାଲିବ୍ ବିଦ୍ରୋହ ପୂର୍ବରୁ ଯୁବକ ଥିଲେ ।

ବିଂଶ ଶତକର ପ୍ରଥମ କେତେ ବର୍ଷରେ ମୁସ୍‌ଲିମ୍ ବୁଦ୍ଧିଜୀବୀଙ୍କ ଭିତରେ ଦୁଇପ୍ରକାର ମନୋଭାବ ଦେଖା ଦେଇଥିଲା । ପ୍ରଥମ ହେଉଛି ଜାତୀୟବାଦୀ ମନୋଭାବ । ଏଥିପ୍ରତି ଯୁବ ସମାଜ ମୁଖ୍ୟତଃ ଆଗ୍ରହୀ ଥିଲେ । ଦ୍ୱିତୀୟ ମନୋଭାବ ହେଉଛି ଭାରତର ଅତୀତରୁ ଓ କେତେ ପର୍ଯ୍ୟନ୍ତ ତାର ବର୍ତ୍ତମାନରୁ ମଧ୍ୟ ମୁହଁ ଫେରାଇ ନେଇ ଇସ୍‌ଲାମୀୟ ଦେଶମାନଙ୍କ ଉପରେ ବିଶେଷତଃ ଖିଲାଫତ୍ ପୀଠ ତୁରସ୍କ ଉପରେ ଆଗ୍ରହ ନିବିଷ୍ଟ କରିବା । ତୁରସ୍କର ସୁଲତାନ ଅବ୍‌ଦୁଲ ହମିଦଙ୍କ ଉତ୍ସାହପ୍ରାପ୍ତ ନିଖିଳ ଇସ୍‌ଲାମୀୟ ଆନ୍ଦୋଳନ ଉଚ୍ଚବର୍ଗର ମୁସଲମାନଙ୍କ ଭିତରେ କିଛିଟା ସମର୍ଥନ ଲାଭ କରିଥିଲା; କିନ୍ତୁ ସାର୍ ସୈୟଦ୍ ଏହାର ବିରୋଧ କରିଥିଲେ ଓ ତୁରସ୍କର ସୁଲତାନୀ ରାଜତ୍ୱ ପ୍ରତି ଭାରତୀୟମାନେ ଏତେଭଳି ଆଗ୍ରହିତ ହେବାର କୌଣସି ଯଥାର୍ଥତା ନାହିଁ ବୋଲି ଲେଖିଥିଲେ । ତୁର୍କୀ ଯୁବ ଆନ୍ଦୋଳନ ଭାରତୀୟ ମୁସଲମାନଙ୍କ ଭିତରେ ଏକ ମିଶ୍ରିତ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ପ୍ରଥମେ ଭାରତର ଅଧିକାଂଶ ମୁସଲମାନ ସେଥିପ୍ରତି ସନ୍ଦିହାନ ଥିଲେ ଏବଂ ତୁରସ୍କରେ ୟୁରୋପୀୟ ଶକ୍ତିମାନଙ୍କ ଷଡ଼ଯନ୍ତ୍ର ବିରୁଦ୍ଧରେ ସୁଲତାନ୍ ସୁଦୃଢ଼ ପ୍ରାଚୀର ସ୍ୱରୂପ ବିବେଚନା କରି ତାଙ୍କ ପ୍ରତି ଯଥେଷ୍ଟ ସହାନୁଭୂତି ରହିଥିଲା; କିନ୍ତୁ ଅନ୍ୟ ପକ୍ଷରେ ଅବୁଲ୍‌କାଲମ୍ ଆଜାଦଙ୍କ ଭଳି ବ୍ୟକ୍ତି ବି ଥିଲେ; ଯେଉଁମାନେ ଏହି ଆନ୍ଦୋଳନକୁ ସ୍ୱାଗତ କରିଥିଲେ ଏବଂ ତୁରସ୍କର ଶାସନ ଓ ସମାଜ

ଜୀବନରେ ସଞ୍ଚାର କରୁଥିଲେ । ଖ୍ରୀ: ୧୯୧୧ର ଟ୍ରିପୋଲି ଯୁଦ୍ଧ କାଳରେ, ଇଟାଲୀ ଯେବେ ଅଯୌକ୍ତିକ ଭାବରେ ତୁରସ୍କ ଆକ୍ରମଣ କଲା ଓ ପରେ ପରେ ଖ୍ରୀ: ୧୯୧୨-୧୩ର ବାଲ୍‌କାନ୍ ଯୁଦ୍ଧ କାଳରେ ଭାରତୀୟ ମୁସଲମାନଙ୍କ ଭିତରେ ତୁରସ୍କ ପ୍ରତି ଅଭୂତପୂର୍ବ ସହାନୁଭୂତି ପ୍ରକାଶ ପାଇଲା । ପ୍ରତ୍ୟେକ ଭାରତୀୟ ପ୍ରାଣରେ ଏହି ସହାନୁଭୂତି ଓ ଆତୁରତା ଜାଗ୍ରତ ହୋଇଥିଲେ ସୁଦ୍ଧା ମୁସଲମାନଙ୍କ ଭିତରେ ଏହା ଥିଲା ଗମ୍ଭୀରତର ଓ ସେମାନେ ଏହାକୁ ଏକ ପ୍ରକାର ବ୍ୟକ୍ତିଗତ ସମସ୍ୟା ବିବେଚନା କରୁଥିଲେ । ପୃଥିବୀର ଶେଷ ମୁସ୍‌ଲିମ୍ ଶକ୍ତି ଧ୍ୱଂସ ପାଇବାକୁ ବସିଥିଲା; ଭବିଷ୍ୟତରେ ଇସଲାମ୍ ଧର୍ମର ଶେଷ ଆଶ୍ରୟସ୍ଥଳ ନଷ୍ଟ ହୋଇ ହେବାକୁ ଯାଉଥିଲା । ଡକ୍ଟର ଏମ୍.ଏ. ଆନ୍‌ସାରୀ ଗୋଟାଏ ସେବାକାରୀ ଦଳ ଧରି ତୁରସ୍କ ଯାତ୍ରା କଲେ । ଏଥିପାଇଁ ନିତାନ୍ତ ଗରିବ ଲୋକେ ବି ଚାନ୍ଦା ଦେଇଥିଲେ । ମୁସଲମାନମାନେ ଏଥି ନିମନ୍ତେ ଯେଉଁଭଳି ଅକୁଣ୍ଠିତ ଭାବରେ ଦାନ କଲେ, ଭାରତୀୟ ମୁସଲମାନଙ୍କ ଉନ୍ନତି ବିଧାନ ନିମନ୍ତେ କୌଣସି ପ୍ରସ୍ତାବ ଦେଇ ପାଣ୍ଠି ସଂଗ୍ରହରେ ବାହାରିଥିଲେ ଏତେ ତୁରନ୍ତ ସାହାଯ୍ୟ ଓ ସମର୍ଥନ ମିଳିପାରି ନଥାନ୍ତା । ପ୍ରଥମ ବିଶ୍ୱଯୁଦ୍ଧ ଭାରତୀୟ ମୁସଲମାନଙ୍କ ପକ୍ଷରେ ବଡ଼ ଏକ ପରୀକ୍ଷାର ବେଳ ଥିଲା; କାରଣ ତୁରସ୍କ ଥିଲା ଅପର ପକ୍ଷରେ ଅର୍ଥାତ୍ ଇଂରେଜମାନଙ୍କ ବିରୁଦ୍ଧରେ । ସେମାନେ ନିଜକୁ ବଡ଼ ଅସହାୟ ବୋଧ କରୁଥିଲେ ଓ କିଛି କରିବାପାଇଁ ସମର୍ଥ ନଥିଲେ । ଯୁଦ୍ଧ ଯେବେ ଶେଷ ହେଲା, ସେମାନଙ୍କର ଅବରୁଦ୍ଧ ବ୍ରିଟିଶ ବିରୋଧୀ ମନୋଭାବ ଖିଲାଫତ୍ ଆନ୍ଦୋଳନ ଭାବରେ ଆତ୍ମପ୍ରକାଶ କଲା ।

ଭାରତରେ ମୁସ୍‌ଲିମ୍ ମନର ବିକାଶ ଦିଗରେ ଖ୍ରୀ: ୧୯୧୨ ଉଲ୍ଲେଖଯୋଗ୍ୟ; କାରଣ ସେହି ବର୍ଷ ଦୁଇଟି ସାପ୍ତାହିକ 'ଅଲ୍-ହିଲାଲ୍' (ଉର୍ଦ୍ଦୁ) ଓ 'ଦି କମ୍‌ରେଡ଼୍' (ଇଂରେଜୀ) ପ୍ରକାଶ ପାଇଲା । ଅବୁଲ୍ କାଲମ୍ ଆଜାଦ୍ (ବର୍ତ୍ତମାନ କଂଗ୍ରେସ ସଭାପତି) ଅଲ୍-ହିଲାଲ୍ ସମ୍ପାଦନା କରିଥିଲେ । ଚବିଶ ବର୍ଷ ବୟସର ପ୍ରତିଭାବାନ ଏହି ତରୁଣ କାଏରୋର ଅଲ୍ ଅଜ୍‌ହର ବିଶ୍ୱବିଦ୍ୟାଳୟରେ ଶିକ୍ଷାଲାଭ କରିଥିଲେ । ସେ ବିଂଶତି ବର୍ଷରେ ପଦାର୍ପଣ କରିବା ପୂର୍ବରୁ ଆରବ୍ୟ ଓ ପାରସିକ ଭାଷାରେ ଗଭୀର ବିଦ୍‌ବତ୍ତା ଲାଗି ଖ୍ୟାତି ଲାଭ କରିଥିଲେ । ଏଥିସଙ୍ଗେ ଭାରତ ବାହାରେ ଇସଲାମି ଦୁନିଆ ଓ ସେଥିରେ ଚାଲିଥିବା ବିବିଧ ସଂସ୍କାର ଆନ୍ଦୋଳନ ତଥା ୟୁରୋପୀୟ ଘଟଣାମାନଙ୍କ ବିଷୟରେ ସେ ଭଲ ଭାବରେ ଜ୍ଞାତ ଥିଲେ । ତାଙ୍କର ଦୃଷ୍ଟିଭଙ୍ଗୀ ବୁଦ୍ଧିବାଦୀ ଥିଲେ ସୁଦ୍ଧା ସେ ଇସ୍‌ଲାମି ଇତିହାସ ଓ କିମ୍ବଦନ୍ତୀ ସମ୍ପର୍କରେ ଭଲ ଭାବରେ ଜ୍ଞାତ ଥିଲେ ଏବଂ ସେଥିହେତୁରୁ ବୁଦ୍ଧିବାଦୀ ଦୃଷ୍ଟିକୋଣ ଧରି ସେ ମୁସ୍‌ଲିମ୍ ଧର୍ମଶାସ୍ତ୍ରର ବ୍ୟାଖ୍ୟା କଲେ । ସେ ତ ସହଜେ ଇସ୍‌ଲାମି ଐତିହ୍ୟ ଓ ପରମ୍ପରାରେ ଜର୍ଜରିତ ଥିଲେ । ସେଥି ସଙ୍ଗେ ମିଶର, ତୁରସ୍କ, ସିରିଆ, ପାଲେଷ୍ଟାଇନ୍, ଇରାକ୍ ଓ ଇରାନ୍‌ର ବହୁ ଗଣ୍ୟମାନ୍ୟ ତଥା ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସଙ୍ଗେ ତାଙ୍କର ବ୍ୟକ୍ତିଗତ ସମ୍ପର୍କ ଥିବା ହେତୁରୁ ସେମାନଙ୍କ ଦେଶର ରାଜନୈତିକ ଓ ସାଂସ୍କୃତିକ ବିଚାର ଓ କାର୍ଯ୍ୟ-କଳାପ ତାଙ୍କୁ ପ୍ରବଳ ଭାବରେ ପ୍ରଭାବିତ କରିଥିଲା । ତାଙ୍କର ବିବିଧ ରଚନା ଯୋଗୁଁ ଇସ୍‌ଲାମୀୟ ଦେଶମାନଙ୍କରେ ଯେ କେଉଁ ଭାରତୀୟ ମୁସଲମାନ ଅପେକ୍ଷା ସମ୍ଭବତଃ ସେ

ଅଧିକ ପରିଚିତ ଥିଲେ । ଯେ କେଉଁ ଯୁଦ୍ଧରେ ତୁରସ୍କ ଜଡ଼ିତ ହେବା ସଙ୍ଗେ ତାଙ୍କର ଆଗ୍ରହ ଓ ସହାନୁଭୂତିରେ ନିବିଡ଼ତା ସେଥି ପ୍ରତି ରହୁଥିଲା । ତଥାପି ତାଙ୍କର ଦୃଷ୍ଟିଭଙ୍ଗୀ ଅନ୍ୟାନ୍ୟ ବୟସ୍କ ମୁସ୍‌ଲିମ୍ ନେତାମାନଙ୍କଠାରୁ ଥିଲା ସମ୍ପୂର୍ଣ୍ଣ ଭିନ୍ନ । ତାଙ୍କର ଏହି ପ୍ରଶସ୍ତ ତଥା ବୁଦ୍ଧିବାଦୀ ଦୃଷ୍ଟିକୋଣ ତାଙ୍କୁ ବୟସ୍କ ମୁସ୍‌ଲିମ୍ ନେତାମାନଙ୍କର ସାମନ୍ତବାଦୀ, ସଙ୍କୀର୍ଣ୍ଣ ଧର୍ମପରାୟଣତା ତଥା ବିଚ୍ଛିନ୍ନତାକାମୀ ଅଭିମୁଖ୍ୟ ଠାରୁ ଦୂରରେ ରଖିଥିଲା ଏବଂ ଅବଶ୍ୟମ୍ଭାବୀ ଭାବରେ ତାଙ୍କୁ ଜଣେ ଭାରତୀୟ ଜାତୀୟତାବାଦୀରେ ପରିଣତ କଲା । ତୁରସ୍କ ତଥା ଅନ୍ୟାନ୍ୟ ଇସ୍‌ଲାମୀୟ ଦେଶମାନଙ୍କରେ ଜାତୀୟତାବାଦର ଅଭିବୃଦ୍ଧି ସେ ଲକ୍ଷ୍ୟ କରିଥିଲେ ଏବଂ ତାଙ୍କର ସେହି ଜ୍ଞାନ ଭାରତୀୟ କ୍ଷେତ୍ରରେ ପ୍ରୟୋଗ କରିବା ଫଳରେ ଭାରତୀୟ ଜାତୀୟ ଆନ୍ଦୋଳନରେ ଉଭୟର ସାଦୃଶ୍ୟ ସ୍ପଷ୍ଟଭାବରେ ଲକ୍ଷ୍ୟ କରି ପାରିଲେ । ଭାରତର ଅନ୍ୟ ମୁସଲମାନମାନେ ଭାରତ ବାହାରେ ଏସବୁ ଆନ୍ଦୋଳନ ସମ୍ପର୍କରେ ପ୍ରାୟ ଅଜ୍ଞ ଥିଲେ କହିଲେ ଚଳେ ଏବଂ ନିଜର ସାମନ୍ତବାଦୀ ବାତାବରଣରେ ଆବଦ୍ଧ ରହି ଅନ୍ୟାନ୍ୟ ସାହା ଘଟୁଥିଲା ତାର ପ୍ରକୃତ ତତ୍ତ୍ୱ ଉପଲବ୍‌ଧି କରିପାରିନଥିଲେ । ସେମାନଙ୍କର ସମସ୍ତ ବିଚାର ଧର୍ମ ଉପରେ କେବଳ ଆଶ୍ରିତ ଥିଲା ଏବଂ ସେମାନେ ଯଦି ତୁରସ୍କ ପ୍ରତି ସହାନୁଭୂତି ପ୍ରକାଶ କରିଥାନ୍ତି, ତାହା ମୁଖ୍ୟତଃ ଏହି ଧର୍ମ ସମ୍ବନ୍ଧ ଯୋଗୁଁ ଏ ପ୍ରକାର ଘନିଷ୍ଠ ସହାନୁଭୂତି ସତ୍ତ୍ୱେ ତୁରସ୍କର ଜାତୀୟତାବାଦୀ ଓ ଏକ ପ୍ରକାର ଧର୍ମନିରପେକ୍ଷ ଆନ୍ଦୋଳନ ପ୍ରତି ସେମାନେ ପ୍ରଶଂସ ନଥିଲେ ।

ତାଙ୍କର ସାପ୍ତାହିକ ଅଲ୍-ହିଲାଲ୍‌ରେ ଅବୁଲ୍ କାଲମ୍ ଆଜାଦ ଏକ ନୂତନ ଭାଷା ଉଚ୍ଚାରଣ କଲେ । ବିଚାର ଓ ଅଭିମୁଖ୍ୟ ଦୃଷ୍ଟିରୁ ଏଥିରେ ଯେ ନୂତନତ୍ୱ ଥିଲା କେବଳ ନୁହେଁ, ତାର ପ୍ରକାଶଭଙ୍ଗୀ ମଧ୍ୟ ଥିଲା ସ୍ୱତନ୍ତ୍ର । ତାଙ୍କ ଭାଷାର ପାରସିକ ପୃଷ୍ଠଭୂମି ଯୋଗୁଁ ବେଳେବେଳେ ସାମାନ୍ୟ ଭାବରେ ଜଟିଳ ହେଲେ ସୁଦ୍ଧା ଆଜାଦଙ୍କ ଶୈଳୀ ଥିଲା ଉତ୍ତେଜକ ଭାବରେ ଉନ୍ମୁଖ ଓ ପୌରୁଷପୂର୍ଣ୍ଣ । ନୂତନ ଭାବର ପ୍ରକାଶ ଲାଗି ସେ ନୂତନ ତଥା ବିଶେଷ ଭାବରେ ନିର୍ବାଚିତ ଶବ୍ଦମାନ ପ୍ରୟୋଗ କରୁଥିଲେ ଏବଂ ଆଜି ଉର୍ଦ୍ଦୁଭାଷା ଯେଉଁ ରୂପରେ ପ୍ରଚଳିତ; ସେଥିପ୍ରତି ଆଜାଦଙ୍କ ଅବଦାନ ଅସାମାନ୍ୟ । ମୁସ୍‌ଲିମ୍‌ମାନଙ୍କ ଭିତରେ ବୟସ୍କ ରକ୍ଷଣଶୀଳ ନେତାମାନଙ୍କର ଏସବୁ ପ୍ରତି ଅନୁରାଗ ନଥିଲା ଏବଂ ଆଜାଦଙ୍କ ବିଚାର ଓ ଆଚରଣର ସମାଲୋଚନାରେ ସେମାନେ କୁଣ୍ଠିତ ନଥିଲେ । ତଥାପି ସେମାନଙ୍କ ଭିତରେ ଯେଉଁମାନେ ଦିକ୍‌ପାଳ ପଣ୍ଡିତ ଭାବରେ ପରିଚିତ ଥିଲେ ସେମାନେ ସୁଦ୍ଧା ଆଜାଦଙ୍କ ଯୁକ୍ତି ଓ ବିତର୍କ ସମ୍ମୁଖରେ ସହଜରେ ତିଷ୍ଠି ପାରୁନଥିଲେ, କାରଣ ଧର୍ମଶାସ୍ତ୍ର ଓ ପ୍ରାଚୀନ ପରମ୍ପରା ଉପରେ ଭିତ୍ତିକରି ବିତର୍କ ହେଲେ ମଧ୍ୟ ଏ କଥା ପ୍ରମାଣିତ ହେଉଥିଲା ଯେ, ଆଜାଦଙ୍କ ଜ୍ଞାନ ଥିଲା ସେମାନଙ୍କ ଅପେକ୍ଷା ଗମ୍ଭୀରତର । ମଧ୍ୟ-ଯୁଗୀୟ ବିଦ୍‌ବତ୍ତା, ଅଷ୍ଟାଦଶ ଶତକର ବୁଦ୍ଧିବାଦ ଓ ଆଧୁନିକ ଦୃଷ୍ଟିଭଙ୍ଗୀର ଏକ ଅଦ୍‌ଭୁତ ସମ୍ମିଶ୍ରଣ ଥିଲେ ଅବୁଲ୍ କାଲମ୍ ଆଜାଦ୍ ।

ବୟସ୍କମାନଙ୍କ ଭିତରୁ ଯେଉଁ ମୁଷ୍ଟିମେୟ ବ୍ୟକ୍ତି ଆଜାଦଙ୍କ ଅଭିବ୍ୟକ୍ତିକୁ ସମର୍ଥନ କରିଥାନ୍ତି, ସେମାନଙ୍କ ଭିତରେ ଥିଲେ ମୌଲାନା ସିବ୍‌ଲି ନୋମାନି । ପଣ୍ଡିତ ପ୍ରବର ନୋମାନି ନିଜେ ତୁରସ୍କ ଯାଇଥିଲେ ଏବଂ ସାର୍ ସୈୟଦଙ୍କ ସଙ୍ଗେ ଆଲିଗଡ଼ କଲେଜ

ବ୍ୟାପାରରେ ସମ୍ପୃକ୍ତ ଥିଲେ । ଆଲିଗଡ଼ କଲେଜର ପରମ୍ପରା ଅବଶ୍ୟ ରାଜନୀତି ଓ ସାମାଜିକତା ଉଭୟ ଦିଗରୁ ରକ୍ଷଣଶୀଳ ତଥା ଭିନ୍ନ ଥିଲା । ଏହାର ଟ୍ରଷ୍ଟିମାନେ ରାଜା ଓ ଜମିଦାର—ସାମନ୍ତବାଦୀ ବ୍ୟବସ୍ଥାର ପ୍ରତିନିଧି । ଏହି କଲେଜର ଅଧ୍ୟକ୍ଷମାନେ ଥିଲେ ଜଣକ ପରେ ଜଣେ ଇଂରେଜ ଓ ରାଜକର୍ମଚାରୀମାନଙ୍କ ସଙ୍ଗେ ସେମାନେ ଘନିଷ୍ଠ ଭାବେ ସମ୍ପର୍କିତ ଥିବା ହେତୁରୁ କଲେଜର ଦୃଷ୍ଟିଭଙ୍ଗୀ ଥିଲା କଂଗ୍ରେସ ବିରୋଧୀ, ଜାତୀୟତାବାଦ ବିରୋଧୀ ଏବଂ ବିଚ୍ଛିନ୍ନତା ମନୋଭାବ ସେଠାରେ ପୃଷ୍ଠପୋଷକତା ଲାଭ କରିଥିଲା । ଛାତ୍ରମାନଙ୍କ ଆଗରେ ଲକ୍ଷ୍ୟ ଭାବରେ ରଖାଯାଉଥିଲା ଚାକିରି ସରକାରୀ କର୍ମରେ ଯୋଗ ଦେବା । ଏଥି ନିମନ୍ତେ ସରକାରୀ ପକ୍ଷ ଧରିବାର ଆବଶ୍ୟକତା ଥିଲା ଏବଂ ଜାତୀୟତାବାଦ ଓ ରାଜଦ୍ରୋହର ପ୍ରଶ୍ନ ନଥିଲା । ଆଲିଗଡ଼ କଲେଜଗୋଷ୍ଠୀ ନୂତନ ମୁସ୍‌ଲିମ୍ ବୁଦ୍ଧିଜୀବୀ ଶ୍ରେଣୀର ନେତୃତ୍ୱ ଗ୍ରହଣ କରିଥିଲା ଏବଂ ପ୍ରତ୍ୟେକ ମୁସଲିମ୍ ଆନ୍ଦୋଳନ ପଛରେ ପ୍ରତ୍ୟକ୍ଷ ଭାବରେ ହେଉ କି ପରୋକ୍ଷ ଭାବରେ ହେଉ ତାର ପ୍ରଭାବ କାର୍ଯ୍ୟ କରୁଥିଲା । ମୁଖ୍ୟତଃ ଏହି ଗୋଷ୍ଠୀର ପ୍ରୟାସ ଫଳରେ ହିଁ ମୁସ୍‌ଲିମ୍ ଲିଗ୍ ସ୍ଥାପିତ ହେଲା ।

ଅବୁଲ କାଲାମ୍ ଆଜାଦ୍ ରକ୍ଷଣଶୀଳତା ଓ ଜାତୀୟତାବାଦ୍ ବିରୋଧୀ ଏହି ଦୁର୍ଗ ଉପରେ ଆକ୍ରମଣ ଚାଳାଉଥିଲେ । ପ୍ରତ୍ୟକ୍ଷ ଭାବରେ ନ ହେଲେ ସୁଦ୍ଧା, ସେ ଯେଉଁ ଭାବଧାରା ପ୍ରସାରିତ କରୁଥିଲେ; ତାହା ଆଲିଗଡ଼ ପରମ୍ପରାକୁ କ୍ଷୁଣ୍ଣ କଲା । ଏହି ବୀର୍ଯ୍ୟବାନ୍ ତରୁଣ ଲେଖକ ଓ ପତ୍ରକାର ମୁସ୍‌ଲିମ୍ ବୁଦ୍ଧିଜୀବୀ ମହଲରେ ବିଶୃଙ୍ଖଳା ସୃଷ୍ଟି କରିଥିଲେ । ବୟସ୍କମାନେ ତାଙ୍କ ପ୍ରତି ରୁଷ୍ଟ ଥିଲେ ସୁଦ୍ଧା ତାଙ୍କର ଭାଷା ଯୁବମାନସକୁ ଉଦ୍‌ବେଳିତ କରିଥିଲା । ତୁର୍କି, ମିଶର ଓ ଇରାନର ବିବିଧ ଘଟଣା ଯୋଗୁଁ ଏବଂ ଭାରତୀୟ ଜାତୀୟତାବାଦୀ ଆନ୍ଦୋଳନର ଅଗ୍ରଗତି ଯୋଗୁ ଯୁବମାନସରେ ସେହି ଉଦ୍‌ବେଳନ ସୃଷ୍ଟି ହୋଇ ପାରିଥିଲା । ଇସ୍‌ଲାମ ତଥା ଇସ୍‌ଲାମୀୟ ଦେଶମାନଙ୍କ ପ୍ରତି ସହାନୁଭୂତି ଏବଂ ଭାରତୀୟ ଜାତୀୟତାବାଦ ଭିତରେ ସଙ୍ଘର୍ଷ ଘଟିବାର ପ୍ରଶ୍ନ ନାହିଁ ବୋଲି ଦର୍ଶାଇ ଆଜାଦ୍ ସେହି ଉଦ୍‌ବେଳନକୁ ଏକ ନିର୍ଦ୍ଦିଷ୍ଟ ଧାରାରେ ପରିଚାଳିତ କଲେ । ମୁସ୍‌ଲିମ୍ ଲିଗ୍‌କୁ କଂଗ୍ରେସର ନିକଟତର କରିବାରେ ତାହା ସହାୟକ ହେଲା । ବାଳକ ବୟସରୁ ହିଁ ଆଜାଦ୍ ଖ୍ରୀ: ୧୯୦୬ରେ ଅନୁଷ୍ଠିତ ଲିଗ୍‌ର ପ୍ରଥମ ଅଧିବେଶନରେ ତାର ସଭ୍ୟଶ୍ରେଣୀଭୁକ୍ତ ହୋଇଥିଲେ ।

ବ୍ରିଟିଶ ସରକାରଙ୍କ ଦ୍ୱାରା ଅଲ୍-ହିଲାଲ ଅନୁମୋଦିତ ହୋଇନଥିଲା । ପ୍ରଥମେ ପ୍ରେସ୍ ଆଇନ୍ ପ୍ରୟୋଗ କରି ଅମାନତ ଦାବି କରାଗଲା ଏବଂ ଶେଷରେ ଖ୍ରୀ: ୧୯୧୪ରେ ଅଲ୍-ହିଲାଲର ପ୍ରେସ୍ ବାଜ୍ୟାପ୍ତ କରାଗଲା । ଏପରିଭାବରେ, ମାତ୍ର ଦୁଇଟି ବର୍ଷ ପ୍ରକାଶିତ ହେବା ପରେ, ଆଲ୍-ହିଲାଲ ବନ୍ଦ ହେଲା । ତଦୁପରି, ଆଜାଦ୍ 'ଅଲ୍-ବଲାଗ୍' ନାମକ ଆଉ ଏକ ସାପ୍ତାହିକ ପ୍ରକାଶ କଲେ; କିନ୍ତୁ ଏହାର ପ୍ରକାଶନ ମଧ୍ୟ ଖ୍ରୀ: ୧୯୧୬ରେ ବନ୍ଦ ହେଲା, ଯେବେ ଆଜାଦ୍ ବ୍ରିଟିଶ ସରକାରଙ୍କ ଦ୍ୱାରା ଅନ୍ତରିତ ହେଲେ । ପ୍ରାୟ ଚାରିବର୍ଷ ଅନ୍ତରିଣ ଅବସ୍ଥାରେ ରହିବା ପରେ ସେ ଯେବେ ବାହାରକୁ ଆସିବେ, ଅନତିବିଳମ୍ବେ ଜାତୀୟ କଂଗ୍ରେସର ନେତୃବର୍ଗଙ୍କ ମଧ୍ୟରେ ତାଙ୍କର ଆସନ ଗ୍ରହଣ କଲେ । ସେହି ଦିନାବଧି

ଅବିଚ୍ଛିନ୍ନ ଭାବରେ କଂଗ୍ରେସର ଉଚ୍ଚତମ କାର୍ଯ୍ୟକାରୀ କମିଟିରେ ସେ ରହି ଆସିଥିଲେ ଏବଂ ଅପେକ୍ଷାକୃତ ଅଳ୍ପବୟସ୍କ ହେଲେ ସୁଦ୍ଧା କଂଗ୍ରେସର ଜଣେ ପୁରୁଖାନେତା ଭାବରେ ବିବେଚିତ ହେଉଥିଲେ । ଜାତୀୟ ତଥା ରାଜନୈତିକ ଏବଂ ସାମ୍ପ୍ରଦାୟିକ ତଥା ସଂଖ୍ୟାଲଘୁ ପ୍ରଶ୍ନ ଉପରେ ତାଙ୍କର ପରାମର୍ଶ ମୂଲ୍ୟବାନ ବିବେଚିତ ହେଉଥାଏ । ଦୁଇଥର ସେ ଜାତୀୟ କଂଗ୍ରେସର ସଭାପତି ଆସନ ଅଳଂକୃତ କରିସାରିଥିଲେ ଏବଂ ବାରମ୍ବାର ଦୀର୍ଘକାଳ ଜେଲରେ ଅତିବାହିତ କରିଥିଲେ ।

ଅଲ୍-ହିଲାଲ୍ ପ୍ରକାଶିତ ହେବାର କେତେମାସ ଆଗରୁ ଖ୍ରୀ: ୧୯୧୨ରେ ଯେଉଁ ଇଂରେଜୀ ସାପ୍ତାହିକ ପ୍ରକାଶ ପାଉଥିଲା, ତାର ନାମ ହେଉଛି 'ଦି କମ୍ରେଡ୍' । ଏହାର ପ୍ରଭାବ ବିଶେଷ ଭାବରେ ପଡ଼ିଥିଲା ଇଂରେଜୀ ଶିକ୍ଷିତ ମୁସ୍‌ଲିମ୍ ତରୁଣମାନଙ୍କ ଉପରେ । ଏହାର ସମ୍ପାଦକ ଥିଲେ ମୌଲାନା ମହମ୍ମଦ ଅଲି । ଇସ୍‌ଲାମୀୟ ପରମ୍ପରା ଓ ବିଲାତି (ଅକ୍‌ସଫୋର୍ଡ) ଶିକ୍ଷାର ଏକ ବିଚିତ୍ର ସମ୍ମିଶ୍ରଣ ଥିଲେ ମୌଲାନା ମହାଶୟ । ଅଲିଗଡ଼ ପରମ୍ପରାର ଜଣେ ସମର୍ଥକ ଭାବରେ ସେ ସବୁ ପ୍ରକାର ଆକ୍ରମଣାତ୍ମକ ରାଜନୀତିର ବିରୋଧୀ ଥିଲେ; କିନ୍ତୁ ସେ ଏତେ ଭାବରେ ସମର୍ଥ ଓ ଗତିଶୀଳ ଥିଲେ ଯେ ଗୋଟିଏ ଗଣ୍ଡିବଦ୍ଧ ପରିବେଷ୍ଟନୀ ଭିତରେ ତାଙ୍କର ବ୍ୟକ୍ତିତ୍ୱ ଆବଦ୍ଧ ରହିପାରିନଥାନ୍ତା । ତାଙ୍କର ଭାଷାର ଓଜସ୍ୱିତା ଓ ଆଘାତପ୍ରବଣତା ବରାବର ପ୍ରକାଶ ପାଉଥିଲା । ଖ୍ରୀ: ୧୯୧୧ରେ ବଙ୍ଗ-ଭଙ୍ଗ-ବ୍ୟବସ୍ଥା ନାକଚ ହେବା ଫଳରେ ସେ ମନରେ ଯେଉଁ ଧକ୍କା ଖାଇଲେ ସେଥିରେ ବ୍ରିଟିଶ ସରକାରଙ୍କ ଆନ୍ତରିକତା ଉପରୁ ତାଙ୍କର ଆସ୍ଥା ତୋହିଗଲା । ବାଲକାନ୍ ଯୁଦ୍ଧ ତାଙ୍କୁ ବିଚଳିତ କରିଥିଲା ଏବଂ ତୁରସ୍କ ସପକ୍ଷରେ ଓ ସେ ଯେଉଁ ଇସ୍‌ଲାମୀୟ ପରମ୍ପରାର ପ୍ରତିନିଧିତ୍ୱ କରେ, ସେ ବିଷୟରେ ସେ ପ୍ରଗାଢ଼ ଆନ୍ତରିକତା ସହକାରେ ଲେଖନୀ ଚାଳନା କଲେ । କ୍ରମଶଃ ତାଙ୍କ ଭିତରେ ବ୍ରିଟିଶ୍ ବିରୋଧୀ ମନୋଭାବ ବୃଦ୍ଧି ଲାଭକଲା ଏବଂ ପ୍ରଥମ ବିଶ୍ୱଯୁଦ୍ଧରେ ତୁରସ୍କ ଯୋଗଦେବା ମାତ୍ରେ ସେ ପ୍ରକ୍ରିୟା ପୂର୍ଣ୍ଣ ହେଲା । 'ଦି କମ୍ରେଡ୍'ରେ ପ୍ରକାଶିତ 'ଦି ଚଏସ୍ ଅଫ୍ ଦି ଟର୍କସ' ଶୀର୍ଷକ ତାଙ୍କର ଏକ ଦୀର୍ଘ ତଥା ବିଖ୍ୟାତ ପ୍ରବନ୍ଧ (ମୌଲାନା ଅଲି ଲେଖା ଅବା ବକ୍ତୃତାର ସ୍ୱଳ୍ପତାରେ ପକ୍ଷପାତୀ ନଥିଲେ ) ସରକାରଙ୍କ ଦ୍ୱାରା ଦି କମ୍ରେଡ୍‌ର ପ୍ରକାଶନ ବନ୍ଦ କରାଯିବାର କାରଣ ହେଲା । ପରେ ପରେ ତାଙ୍କୁ ଓ ତାଙ୍କର ଭାଇ ସୌକତ ଅଲିଙ୍କୁ ସରକାର ଗିରଫ କରି ଯୁଦ୍ଧ ଶେଷ ହେବାର ବର୍ଷେ କାଳ ପର୍ଯ୍ୟନ୍ତ ଅନ୍ତରୀଣ କରି ରଖିଲେ । ଖ୍ରୀ: ୧୯୧୯ ଶେଷରେ ଉଭୟେ ଅନ୍ତରୀଣରୁ ମୁକ୍ତ ହେବା ସଙ୍ଗେ ସଙ୍ଗେ ଜାତୀୟ କଂଗ୍ରେସରେ ଯୋଗଦେଲେ । ଚଳିତ ଶତକର ଦ୍ୱିତୀୟ ଦଶକ ଆଦ୍ୟ ଭାଗରେ ଅଲି ଭ୍ରାତୃଦ୍ୱୟ ଖିଲାଫତ୍ ଆନ୍ଦୋଳନ ଓ କଂଗ୍ରେସ ରାଜନୀତିରେ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରି ସେଥି ନିମନ୍ତେ ଜେଲ ଭୋଗିଥିଲେ । କଂଗ୍ରେସର ଏକ ବାର୍ଷିକ ଅଧିବେଶନରେ ମହମ୍ମଦ ଅଲି ସଭାପତିତ୍ୱ କରିଥିଲେ ଓ ବହୁ ବର୍ଷ ପର୍ଯ୍ୟନ୍ତ କଂଗ୍ରେସର ଉଚ୍ଚତମ କାର୍ଯ୍ୟକାରୀ କମିଟିର ସଭ୍ୟ ଥିଲେ । ଖ୍ରୀ: ୧୯୩୦ରେ ତାଙ୍କର ମୃତ୍ୟୁ ଘଟିଲା ।

ମହମ୍ମଦ ଅଲିଙ୍କ ରୂପାନ୍ତର ହେଉଛି ଭାରତୀୟ ମୁସ୍‌ଲିମ୍‌ମାନଙ୍କ ପରିବର୍ତ୍ତିତ ମନୋଭାବର

ପ୍ରତୀକ । ଏପରକି ଯେଉଁ ମୁସ୍‌ଲିମ୍‌ ଲିଗ୍‌ ଭାରତୀୟ ମୁସଲମାନଙ୍କର ଜାତୀୟତାବାଦୀ ପ୍ରବାହରୁ ଦୂରରେ ରଖିବା ପାଇଁ ସ୍ଥାପିତ ହୋଇଥିଲା ଏବଂ ପ୍ରତିକ୍ରିୟାଶୀଳ ତଥା ସାମନ୍ତବାଦୀ ମନୋଭାବାପନ୍ନ ବ୍ୟକ୍ତିମାନଙ୍କ ସମ୍ପୂର୍ଣ୍ଣ ଅଧୀନ ଥିଲା, ତରୁଣ ସମାଜର ଚାପ ସ୍ୱୀକାର କରିବାକୁ ବାଧ୍ୟ ହେଲା । ଅନିଚ୍ଛା ସତ୍ତ୍ୱେ ଜାତୀୟତାବାଦ ତରଙ୍ଗରେ ଭାସି ଭାସି ଲିଗ୍‌ କଂଗ୍ରେସର ନିକଟବର୍ତ୍ତୀ ହେଉଥିଲା । ଖ୍ରୀ: ୧୯୧୩ରେ ସରକାରଙ୍କ ପ୍ରତି ଆନୁଗତ୍ୟର ବହୁଘୋଷିତ ନୀତି ପରିବର୍ତ୍ତନ କରି ମୁସ୍‌ଲିମ୍‌ ଲିଗ୍‌ ଭାରତ ନିମନ୍ତେ ସ୍ୱଶାସନ ଦାବି ଉପସ୍ଥାପିତ କଲା । ଅଲ୍‌-ହିଲାଲ୍‌ରେ ତାଙ୍କର ବଳିଷ୍ଠ ଲେଖନୀ ଚାଳନ କରି ମୌଲାନା ଅବୁଲ କାଲାମ୍‌ ଆଜାଦ୍‌ ଏହି ପରିବର୍ତ୍ତନ ନିମନ୍ତେ ନାନା ଦିଗରୁ ଯୁକ୍ତି ଉପସ୍ଥାପିତ କରିଥିଲେ ।

## ୧୧. କେମଲ୍‌ ପାଷା : ଏସିଆରେ ଜାତୀୟତାବାଦ : ଇକ୍‌ବାଲ୍‌

ଭାରତରେ ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟ ଭିତରେ କେମଲ୍‌ ପାଷା ସ୍ୱାଭାବିକ ଭାବେ ଜନପ୍ରିୟ ଥିଲେ । ତୁରସ୍କକୁ ବିଦେଶୀ ଆଧିପତ୍ୟ ଓ ବିଚ୍ଛିନ୍ନତାରୁ ସେ ଯେ ଉଦ୍ଧାର କରିଥିଲେ କେବଳ ନୁହେଁ, ୟୁରୋପୀୟ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର, ବିଶେଷତଃ ଇଂଲଣ୍ଡର ସମସ୍ତ ଷଡ଼ଯନ୍ତ୍ର ପଣ୍ଡ କରି ଦେଇଥିଲେ; କିନ୍ତୁ ଅତାତୁର୍କଙ୍କ ନୀତି ଯେତେବେଳେ ଉନ୍ମୋଚିତ ହେଲା; ଯଥା—ତାଙ୍କର ବ୍ୟକ୍ତିଗତ ଧର୍ମ ବିଶ୍ୱାସର ଅଭାବ, ସୁଲତାନ ପଦ ଓ ଖିଲାଫତ୍‌ର ଉଚ୍ଛେଦ ସାଧନ, ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଗଠନ, ଧର୍ମ ସମ୍ପ୍ରଦାୟ ଗୁଡ଼ିକର ବିଯୋଜନ—ନୈଷ୍ଠିକ ମୁସଲମାନଙ୍କ ଭିତରେ ତାଙ୍କର ଜନପ୍ରିୟତା ହ୍ରାସ ପାଇ ଆସିଲା ଏବଂ ତାଙ୍କର ଏହି ଆଧୁନିକବାଦୀ ନୀତି ବିରୁଦ୍ଧରେ ଏକ ନୀରବ ବିଦ୍ୱେଷଭାବ ଜାଗ୍ରତ ହେଲା । କିନ୍ତୁ ଠିକ୍‌ ଏହି ନୀତି ନିମନ୍ତେ କେବଳ ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ତରୁଣଙ୍କ ଭିତରେ ସେ ଅଧିକତର ଜନପ୍ରିୟ ହୋଇ ଉଠିଲେ । ୧୮୫୭ ବିଦ୍ରୋହ କାଳରୁ ଭାରତୀୟ ମୁସଲମାନଙ୍କ ମନରେ ଯେଉଁ ସ୍ୱପ୍ନର ସୌଧ କ୍ରମଶଃ ଗଢ଼ି ଉଠିଥିଲା ଅତାତୁର୍କ ଆଂଶିକ ଭାବରେ ତାହା ଭାଙ୍ଗିଦେଲେ । ପୁଣି ଏକ ପ୍ରକାର ଶୂନ୍ୟତା ସୃଷ୍ଟି ହେଲା । ବହୁ ମୁସଲମାନ ଜାତୀୟତାବାଦୀ ଆନ୍ଦୋଳନରେ ଯୋଗ ଦେଇ ସେହି ଶୂନ୍ୟତା ପୂର୍ଣ୍ଣ କଲେ । ଅନେକେ ପୂର୍ବରୁ ଯୋଗଦେଇ ସାରିଥିଲେ । ଅନ୍ୟମାନେ ଦ୍ୱିଧାଗ୍ରସ୍ତ ଭାବରେ ଅଲଗା ରହିଲେ । ପ୍ରକୃତ ସଙ୍ଘର୍ଷ ଘଟୁଥିଲା ଆଧୁନିକ ମନୋଭାବ ତଥା ସାମନ୍ତବାଦୀ ଚିନ୍ତାଧାରା ମଧ୍ୟରେ । ଖିଲାଫତ୍‌ ଗଣଆନ୍ଦୋଳନ ଫଳରେ ସାମୟିକ ଭାବରେ ସାମନ୍ତବାଦୀ ନେତୃତ୍ୱ ଅପସାରିତ ହୋଇଥିଲା; କିନ୍ତୁ ସାମାଜିକ ଓ ଅର୍ଥନୈତିକ ଅବସ୍ଥାରେ କିମ୍ବା ଜନସାଧାରଣଙ୍କ ଆଶା-ଆକାଙ୍‌କ୍ଷାରେ ସେହି ଆନ୍ଦୋଳନର କୌଣସି ଦୃଢ଼ ଭିତ୍ତି ନଥିଲା । ତାର କେନ୍ଦ୍ର ଥିଲା ଅନ୍ୟତ୍ର ଏବଂ ଅତାତୁର୍କ ତାହା ଭାଙ୍ଗି ପକାଇବା ଫଳରେ ତାର ବାହ୍ୟ ଘଟାଟୋପ ଭୂଲୁଣ୍ଠିତ ପଡ଼ିଲା । କିଂକର୍ତ୍ତବ୍ୟ ବିମୂଢ଼ ମୁସ୍‌ଲିମ ଜନସାଧାରଣ ସମସ୍ତ କିଛୁ ରାଜନୈତିକ କର୍ମ ପ୍ରତି ବିମୁଖ ହୋଇ ଉଠିଲେ । ଯେଉଁସବୁ ପୁରାତନ ସାମନ୍ତବାଦୀ ନେତା ପରିସ୍ଥିତିର ଚାପରେ ମୁହଁ ମାଡ଼ି ପଡ଼ିରହିଲେ, ସବୁକାଳେ ସେମାନେ ସମର୍ଥକ ବ୍ରିଟିଶ

ନୀତିର ସହାୟତାରେ, ଅଲକ୍ଷିତ ଭାବରେ ପୁଣି ଆଗରେ ଆସି ଉଭା ହେଲେ; କିନ୍ତୁ ପରିବର୍ତ୍ତିତ ପରିସ୍ଥିତିରେ ପୂର୍ବର ସେହି ଅପ୍ରତିଦ୍ୱନ୍ଦ୍ୱୀ ନେତୃତ୍ୱ ପ୍ରତିଷ୍ଠା କରିବାର ସୁଯୋଗ ସେମାନଙ୍କର ନଥିଲା । ବିଳମ୍ବିତ ହେଲେ ସୁଦ୍ଧା ମୁସଲମାନଙ୍କ ଭିତରୁ ଏକ ମଧ୍ୟବିତ୍ତଶ୍ରେଣୀ ଗଢ଼ିଉଠୁଥିଲା । ସର୍ବୋପରି ଜାତୀୟ କଂଗ୍ରେସ ନେତୃତ୍ୱରେ ପରିଚାଳିତ ଏକ ରାଜନୈତିକ ଗଣଆନ୍ଦୋଳନର ଅଭିଜ୍ଞତା ଜନସାଧାରଣଙ୍କ ପକ୍ଷରେ କିଛି ସାମାନ୍ୟ ନଥିଲା ।

ବିଭିନ୍ନ ଘଟଣାର ଚାପରେ ସାରତଃ, ମୁସ୍‌ଲିମ୍ ଜନସାଧାରଣଙ୍କ ମନୋଭାବ ଏବଂ ବର୍ଦ୍ଧିଷ୍ଣୁ ଏକ ମଧ୍ୟବିତ୍ତ ଶ୍ରେଣୀ ଯଦିଓ ରୂପାୟିତ ହେଉଥିଲା; ତଥାପି ଏହି ମଧ୍ୟବିତ୍ତଶ୍ରେଣୀକୁ, ବିଶେଷତଃ ତରୁଣ ସମାଜକୁ, ପ୍ରଭାବିତ କରିବାରେ ସାର୍ ମହମ୍ମଦ ଇକବାଲ୍ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ସାଧାରଣ ଜନତା ଉପରେ ତାଙ୍କର ପ୍ରଭାବ ଥିଲା ନଗଣ୍ୟ । ଉର୍ଦ୍ଦୁ ଭାଷାରେ ରଚିତ ତାଙ୍କର ଉଦ୍ଦୀପନାପୂର୍ଣ୍ଣ ଜାତୀୟବାଦୀ କବିତାବଳୀ ଲାଗି ଇକବାଲ୍ ଜନପ୍ରିୟ ହୋଇଉଠିଥିଲେ । ବାଲ୍‌କନ୍ ଯୁଦ୍ଧକାଳରେ ଇସ୍‌ଲାମୀୟ ବିଷୟବସ୍ତୁ ନେଇ ସେ ଲେଖନୀ ଚାଳନା କଲେ । ତାତ୍‌କାଳିକ ପରିସ୍ଥିତି ଏବଂ ମୁସ୍‌ଲିମ୍ ଜନସାଧାରଣଙ୍କ ଭିତରେ ପ୍ରଚଳିତ ବିଚାର ଦ୍ୱାରା ସେ ପ୍ରଭାବିତ ହୋଇଥିଲେ ଏବଂ ସେ ମଧ୍ୟ ମୁସ୍‌ଲିମ ମାନସକୁ ବିପୁଳ ଭାବରେ ପ୍ରଭାବିତ କଲେ; ତଥାପି ସେ ଜନନାୟକ ନଥିଲେ । ସେ ଥିଲେ ଜଣେ କବି, ବୁଦ୍ଧିଜୀବୀ ଏବଂ ପୁରାତନ ସାମନ୍ତବାଦୀ ବ୍ୟବସ୍ଥାର ସମର୍ଥକ ଜଣେ ଦାର୍ଶନିକ । ତାଙ୍କର ପୂର୍ବପୁରୁଷ ଥିଲେ କାଶ୍ମୀରୀ ବ୍ରାହ୍ମଣ । ପାରସିକ ଓ ଉର୍ଦ୍ଦୁ ଭାଷାରେ ରଚିତ ଚିତ୍ତାକର୍ଷକ କବିତା ମାଧ୍ୟମରେ ମୁସ୍‌ଲିମ ବୁଦ୍ଧିଜୀବୀଙ୍କୁ ଗୋଟାଏ ଦାର୍ଶନିକ ପୃଷ୍ଠଭୂମି ଅର୍ପଣ କରି ଏକ ସ୍ୱତନ୍ତ୍ର ଢଗରେ ସେମାନଙ୍କର ମନକୁ ସେ ପରିଚାଳିତ କଲେ । ତାଙ୍କର ଚମତ୍କାର କବିତା ଲାଗି ସେ ନିଃସନ୍ଦେହରେ ଜନପ୍ରିୟ ଥିଲେ; କିନ୍ତୁ ତାଙ୍କର ବଡ଼ ଅବଦାନ ହେଉଛି, ସେ ଢଗରେ ଯେ ମୁସ୍‌ଲିମ ମାନସ ଯେବେ ବ୍ୟାକୁଳ ଭାବରେ ଆଶ୍ରୟ ଖୋଜୁଥିଲା, ସେ ତାହା ଯୋଗାଇ ଦେଇ ପାରିଥିଲେ । ପୁରାତନ ଇସ୍‌ଲାମୀୟ ଆଦର୍ଶ ଅର୍ଥହୀନ ହୋଇ ପଡ଼ିଥିଲା । ଖିଲାଫତ୍ ନଥିଲା । ପ୍ରତ୍ୟେକ ମୁସ୍‌ଲିମ ଦେଶ ସର୍ବୋପରି ତୁରସ୍କ, ଅନ୍ୟାନ୍ୟ ମୁସ୍‌ଲିମ୍ ଦେଶ ପ୍ରତି କୌଣସି ବିଚାର ନରଖି ଉତ୍କଟ ଭାବରେ ଥିଲା ଜାତୀୟତାବାଦୀ । ଅନ୍ୟତ୍ର ଭଳି ଏସିଆ ମହାଦେଶରେ ଜାତୀୟବାଦ ଥିଲା ଗୋଟାଏ ପ୍ରବଳ ପ୍ରଭାବଶାଳୀ ଶକ୍ତି ଏବଂ ଭାରତରେ ମଧ୍ୟ ଜାତୀୟବାଦୀ ଆନ୍ଦୋଳନ ଶକ୍ତିମନ୍ତ ହେବା ସଙ୍ଗେ ସଙ୍ଗେ ବ୍ରିଟିଶ ପ୍ରଭୁତ୍ୱକୁ ବାରମ୍ବାର ସଂଗ୍ରାମ ଯାଚୁଥିଲା । ଭାରତରେ ମୁସ୍‌ଲିମ ମାନସ ପ୍ରତି ଜାତୀୟ ବାଦର ଆବେଦନ ଥିଲା ପ୍ରବଳ ଏବଂ ମୁସ୍‌ଲିମ୍‌ମାନେ ବହୁ ସଂଖ୍ୟାରେ ସ୍ୱାଧୀନତା ସଂଗ୍ରାମରେ ଗ୍ରମୁଆ ବାହିନୀର କାର୍ଯ୍ୟ କରିଥିଲେ । ତଥାପି ଭାରତୀୟ ଜାତୀୟବାଦ ଏକରକମ ହିନ୍ଦୁମାନଙ୍କ ଅଧିକାରରେ ରହିଥିଲା ଏବଂ ବାହାରୁ ସେଥିରେ ହିନ୍ଦୁ ଚିହ୍ନ ସ୍ପଷ୍ଟ ଦେଖାଯାଉଥିଲା । ଅତଏବ, ମୁସ୍‌ଲିମ୍ ମନରେ ଦ୍ୱନ୍ଦ୍ୱ ଉପୁଜିଲା । ସେମାନଙ୍କର ମନୋନୀତ ଢଗରେ ପ୍ରଭାବିତ କରିବା ପ୍ରୟାସ ଘେନି ଅନେକ ସେହି ଜାତୀୟବାଦକୁ ଗ୍ରହଣ କଲେ, ଅନେକଙ୍କର ସେଥିପ୍ରତି ସହାନୁଭୂତି ଥିଲେ ସୁଦ୍ଧା, ନିଶ୍ଚିତ ହୋଇ ନପାରି ଅଲଗା ରହିଲେ । ଆହୁରି ଅନେକେ ଇକ୍‌ବାଲ୍‌ଙ୍କ

କାବ୍ୟ ଓ ଦାର୍ଶନିକ ଅଭିମୁଖ୍ୟ ସେମାନଙ୍କୁ ଯେଉଁଭଳି ପ୍ରସ୍ତୁତ କରିଥିଲା, ଭିନ୍ନ ପନ୍ଥା ଧରିବା ଦିଗରେ ଚାଲିଲେ ।

ମୁଁ ମନେକରେ ଯେ ଏହା ହେଉଛି ପୃଷ୍ଠଭୂମି, ଯେଉଁଥିରୁ ଏଇ କେତେ ବର୍ଷ ହେଲା ଭାରତକୁ ବିଭକ୍ତ କରିବା ନିମନ୍ତେ ଚିତ୍କାର ଉଠିଛି । ଏଥିପାଇଁ ବହୁତ କାରଣ ଥିଲା, ସେହି ବିଚାରକୁ ପୁଷ୍ଟ କରିବାପାଇଁ ନାନା ଧାରଣା ଥିଲା, ପ୍ରତ୍ୟେକ ପାର୍ଶ୍ୱରେ ବହୁ ତ୍ରୁଟିବିଚ୍ୟୁତି ବି ଘଟିଛି; କିନ୍ତୁ ଏଥିପାଇଁ ମୁଖ୍ୟତଃ ଦାୟୀ ବ୍ରିଟିଶ ସରକାରଙ୍କ ସୁଚିନ୍ତିତ ବିଭାଜନ ନୀତି । ତେବେ ଏହି ସବୁ ପଛରେ ଥିଲା ସେହି ମନସ୍ତାତ୍ତ୍ୱିକ ପୃଷ୍ଠଭୂମି; ଯାହା ଭାରତରେ ଏକ ମୁସ୍‌ଲିମ୍ ମଧ୍ୟବିତ୍ତଶ୍ରେଣୀର ବିକାଶରେ ବିଳମ୍ବ ଯୋଗୁଁ, ଐତିହାସିକ ପ୍ରବାହଠାରୁ ପୃଥକ୍ ଭାବରେ ସୃଷ୍ଟି ହୋଇଥିଲା । ଭାରତରେ ବିଦେଶୀ ଆଧିପତ୍ୟ ବିରୁଦ୍ଧରେ ଜାତୀୟତାବାଦୀ ସଂଗ୍ରାମ ବ୍ୟତୀତ ଆଭ୍ୟନ୍ତରୀଣ ବିବାଦ ପ୍ରଧାନତଃ ଘଟିଥିଲା ସାମନ୍ତବାଦୀ ବ୍ୟବସ୍ଥାର ଅବଶେଷ ଏବଂ ଆଧୁନିକତା ଅନୁରାଗୀ ବିଚାରଧାରା ଓ ତାର ଅନୁଷ୍ଠାନମାନଙ୍କ ମଧ୍ୟରେ । ଏହି ବିବାଦ ଜାତୀୟସ୍ତରରେ ଯେପରି ହିନ୍ଦୁ ମୁସଲମାନ ଆଦି ବଡ଼ ବଡ଼ ସମ୍ପ୍ରଦାୟମାନଙ୍କ ଭିତରେ ବି ରହିଛି । ପୁରାତନ କେତେକ ଭିତ୍ତି ଉପରେ ଏଗୁଡ଼ିକୁ ଉପଯୋଗୀ କରିବାର ପ୍ରୟାସ କରୁଥିଲେ ସୁଦ୍ଧା, ଜାତୀୟ କଂଗ୍ରେସର ଚରିତ୍ର ପ୍ରଧାନତଃ ଯେଉଁଥିରେ ପରିସ୍ଫୁଟ ସେହି ଜାତୀୟ ଆନ୍ଦୋଳନ ନିଃସନ୍ଦେହରେ ଏହିସବୁ ନୂତନ ଭାବଧାରା ଓ ଅନୁଷ୍ଠାନମାନଙ୍କର ଅଭିବୃଦ୍ଧି ଜନିତ ଐତିହାସିକ ପ୍ରକ୍ରିୟାର ପ୍ରତିନିଧିତ୍ୱ କରେ । ଏହି କାରଣରୁ ଏହା ତାର ପରିସର ଭିତରକୁ, ପରସ୍ପର ଭିତରେ ବ୍ୟାପକ ଭାବରେ ବିଭିନ୍ନ ନାନାବିଧ ଲୋକଙ୍କୁ ଆକର୍ଷିତ କରିଛି । ହିନ୍ଦୁ ପାର୍ଶ୍ୱରେ, କଠୋର ଶୃଙ୍ଖଳାରେ ଆବଦ୍ଧ ଗୋଟାଏ ସାମାଜିକ ବ୍ୟବସ୍ଥା ପ୍ରତିବନ୍ଧକ ହେଲା ଏବଂ ଅନ୍ୟାନ୍ୟ ଗୋଷ୍ଠୀମାନଙ୍କୁ ଭୟଭୀତ କଲା; କିନ୍ତୁ ଏହି ସାମାଜିକ ବ୍ୟବସ୍ଥା କ୍ଷୁଣ୍ଣ ହେଲଣି, ତାର କଠୋର ଶୃଙ୍ଖଳା ଓ ଅନନ୍ୟତା ବି ଦ୍ରୁତ ଭାଙ୍ଗି ଭାଙ୍ଗି ଯାଉଛି ଏବଂ ଯାହା ହେଉନା କାହିଁକି, ବହୁ ପ୍ରତିବନ୍ଧକ ସତ୍ତ୍ୱେ ଅଗ୍ରଗତିର ବେଗ ସେଥିରେ ଯେପରି ଲାଗିଲାଣି, ବ୍ୟାପକ ରାଜନୈତିକ ତଥା ସାମାଜିକବୋଧ ଦିଗରୁ ବିଚାର କଲେ, ଜାତୀୟ ଆନ୍ଦୋଳନର ଅଭିବୃଦ୍ଧି ବ୍ୟାହତ କଲା ଭଳି ଯଥେଷ୍ଟ ବଳ ଏହାର ଆଉ ନାହିଁ । ମୁସ୍‌ଲିମ୍ ପାର୍ଶ୍ୱରେ, ସାମନ୍ତବାଦୀମାନେ ବରାବର ଶକ୍ତିଶାଳୀ ହୋଇ ଆସିଛନ୍ତି ଏବଂ ଜନସାଧାରଣଙ୍କ ଉପରେ ସେମାନଙ୍କର ନେତୃତ୍ୱ ଲାଭ ଦେବାରେ ସାଧାରଣତଃ ସଫଳ ହୋଇଛନ୍ତି । ହିନ୍ଦୁ ଓ ମୁସଲମାନ ଉଭୟର ମଧ୍ୟବିତ୍ତ-ଶ୍ରେଣୀଗୁଡ଼ିକର ବିକାଶରେ ଗୋଟାଏ ପୁରୁଷର ବ୍ୟବଧାନ ରହି ଆସିଛି ଓ ରାଜନୈତିକ, ଅର୍ଥନୈତିକ ତଥା ଅନ୍ୟାନ୍ୟ ଦିଗରେ ତାହା ବରାବର ପ୍ରକାଶ ପାଉଛି । ଏହା ହିଁ ମୁସଲମାନଙ୍କ ଭିତରେ ଗୋଟାଏ ପ୍ରକାର ମନସ୍ତାତ୍ତ୍ୱିକ ଭୟ-ସୃଷ୍ଟି କରୁଛି ।

ପାକିସ୍ତାନ ବା ଭାରତକୁ ବିଭକ୍ତ କରିବା ପ୍ରସ୍ତାବ କେତେକଙ୍କ ଭାବଗତ ବିଚାରକୁ ଖାଦ୍ୟ ଯୋଗାଇଲେ ସୁଦ୍ଧା ଏହି ଅନଗ୍ରସରତାର ମୀମାଂସା ତାହା କଦାପି ହୋଇ ନପାରେ ଏବଂ ଯେପରି ହେଲେ ଆଉ କିଛି କାଳ ପାଇଁ ସମାଜ ଉପରେ ସାମନ୍ତବାଦୀଙ୍କ କବଳ ଦୃଢ଼

ହେବା ହିଁ ସାର ହେବ । ପରିଣାମରେ ମୁସ୍‌ଲିମ୍‌ମାନଙ୍କ ଅର୍ଥନୈତିକ ପ୍ରଗତି ବିଳମ୍ବିତ ହୋଇ ପଡ଼ିବ । ପାକିସ୍ତାନ ପ୍ରସ୍ତାବର ଆଦ୍ୟ ସମର୍ଥକମାନଙ୍କ ଭିତରେ ସେ ଥିଲେ ଯୁକ୍ତା ଇକବାଲ୍ ସେଥିରେ ଅନ୍ତର୍ନିହିତ ବିପଦ ଓ ଅସାଧୁତା ଉପଲବ୍ଧି କରିଥିବା ଭଳି ମନେହୁଏ । ଏଡ୍‌ଓ୍ୱାର୍ଡ଼ ଥମ୍ପସନ୍ ଲେଖିଚନ୍ତି, କୌଣସି କଥାପ୍ରସଙ୍ଗରେ ଇକବାଲ୍ ତାଙ୍କୁ କହିଥିଲେ ଯେ ମୁସଲିମ ଲିଗ୍ ଅଧିବେଶନର ସଭାପତି ଭାବରେ ପାକିସ୍ତାନ ଗଢ଼ିବା ବିଷୟ ସେ କହିଚନ୍ତି ସିନା, ତାଙ୍କର କିନ୍ତୁ ସନ୍ଦେହ ନାହିଁ ଯେ ପାକିସ୍ତାନ ଗଠନ ସମଗ୍ର ଭାରତ ପକ୍ଷରେ, ବିଶେଷତଃ ମୁସ୍‌ଲିମ୍‌ମାନଙ୍କ ପକ୍ଷରେ, କ୍ଷତିକାରକ ହେବ । ସମ୍ଭବତଃ ସେ ତାଙ୍କର ମତ ପରିବର୍ତ୍ତନ କରିଥିଲେ କିମ୍ବା ପୂର୍ବେ ସେଥିରେ ସେତେ ଗୁରୁତ୍ୱ ନଥିଲା ବୋଲି ସେ ସମ୍ପର୍କରେ ହୁଏତ ଗମ୍ଭୀର ଭାବରେ ବିଚାର କରି ନଥିଲେ । ପାକିସ୍ଥାନ ବିଚାର ଅଥବା ଭାରତର ବିଭାଜନ ନେଇ ଯେଉଁସବୁ ପରବର୍ତ୍ତୀ ଘଟଣାମାନ ଘଟିଲା, ଜୀବନପ୍ରତି ଇକବାଲ୍‌ଙ୍କ ଦୃଷ୍ଟିଭଙ୍ଗୀର ମେଳ ସେଥି ସଙ୍ଗେ ଘଟି ନପାରେ ।

ଜୀବନର ଶେଷ କେତେ ବର୍ଷରେ ଇକବାଲ୍‌ଙ୍କ ମନ ସମାଜବାଦ ପ୍ରତି ଧାବିତ ହୋଇଥିଲା । ସୋଭିଏତ୍ ରୁଷିଆର ମହାନ୍ ପ୍ରଗତି ତାଙ୍କୁ ଆକୃଷ୍ଟ କରିଥିଲା । ତାଙ୍କର କବିତାରେ ମଧ୍ୟ ଭିନ୍ନ ଚିନ୍ତାର ଅଭିବ୍ୟକ୍ତି ଘଟିଲା । ତାଙ୍କର ମୃତ୍ୟୁର କେତେମାସ ପୂର୍ବରୁ, ରୋଗଶଯ୍ୟାରୁ ସେ ମତେ ଡକାଇ ପଠାଇଥିଲେ ଓ ଆନନ୍ଦ ମନରେ ମୁଁ ତାଙ୍କୁ ଦେଖିବାକୁ ଯାଇଥିଲି । ନାନା ପ୍ରସଙ୍ଗର ଆଲୋଚନା ଭିତରୁ ମୁଁ ଅନୁଭବ କଲି ଯେ ଆମ ଭିତରେ ମତ ପାର୍ଥକ୍ୟ ସତ୍ତ୍ୱେ ବହୁତ କଥା ଅଛି, ଯେଉଁଥିରେ ଆମେ ଏକମତ ହୋଇପାରୁଁ ଓ ଅନାୟାସରେ ଏକତ୍ର ଚଳିପାରୁଁ । ସେ ସ୍ମୃତି-ରୋମନ୍ଥନ କରୁଥାନ୍ତି । ଅତୀତର ବହୁତ କଥା ନେଇ ସେ କହିଲାବେଳେ, ଆବଶ୍ୟକ ମନେକଲେ ପଦେଅଧେ କେବେ କହି, ମୁଁ କେବଳ ଶୁଣୁଥାଏ । ମୁଁ ତାଙ୍କର ଓ ତାଙ୍କ କବିତାର ପ୍ରଶଂସକ ଥିଲି ଏବଂ ମତେ ସେ ପସନ୍ଦ କରନ୍ତି ଓ ମୋ ପ୍ରତି ସେ ଭଲ ମତ ପୋଷଣ କରନ୍ତି । ଏକଥା ଅନୁଭବ କରି ମୁଁ ଖୁବ୍ ପ୍ରୀତ ହେଲି । ତାଙ୍କ ପାଖରୁ ବିଦାୟ ନେଇ ଆସିବାର କେତେ ମିନଟ୍ ପୂର୍ବରୁ ସେ ମତେ କହିଲେ, "ଜିନ୍ନା ଆଉ ତୁମ ଭିତରେ କିଛି ସାଦୃଶ୍ୟ ନାହିଁ । ସେ ଜଣେ ରାଜନୈତିକ ବ୍ୟକ୍ତି; କିନ୍ତୁ ତୁମେ ଜଣେ ଦେଶଭକ୍ତ ।" ଜିନ୍ନା ଆଉ ମୋର ଭିତରେ ଅନେକ କଥାରେ ଏବେ ବି ମେଳ ଅଛି ବୋଲି ମୋର ଆଶା । ଦେଶଭକ୍ତ କହିଲେ, ତାର ସୀମିତ ଅର୍ଥ ଭିତରେ ଅବଶ୍ୟ ଆଜିର ଯୁଗରେ ତାହା କୌଣସି ବିଶେଷ ଯୋଗ୍ୟତାକୁ ବୁଝାଏ କି ନା, ମୁଁ ଜାଣେନା । ଭାରତ ପ୍ରତି ମୁଁ ଯେହେତୁ ଅତିମାତ୍ରାରେ ଅନୁରକ୍ତ, ବହୁ ଦିନରୁ ମୁଁ ଅନୁଭବ କରିଚି ଯେ ଆମର ଓ ବିଶ୍ୱର ବିଭିନ୍ନ ସମସ୍ୟା ବୁଝି ସେସବୁର ମୀମାଂସା କରିବାପାଇଁ ଜାତୀୟ ଅନୁରକ୍ତି ଅପେକ୍ଷା ଆହୁରି ଅଧିକ କିଛି ଭାବ ବା ବୋଧ ଆମର ଆବଶ୍ୟକ । ଯଦିଓ ରାଜନୀତି ମତେ ଧରି ନେଇ ତାର ଶିକାର କରିସାରିଚି, ମୋ ପାଖରେ ରାଜନୈତିକ ବ୍ୟକ୍ତିର ଗୁଣ ସେ ବିଶେଷ ନାହିଁ, ଏ ବିଷୟରେ ଇକବାଲ୍ ଯେଉଁ ମନ୍ତବ୍ୟ କରିଚନ୍ତି, ସେଥିରେ ତିଳେ ମାତ୍ର ଭୁଲ ନାହିଁ ।

## ଭାରୀଶିଳ୍ପର ସୂତ୍ରପାତ : ତିଲକ ଓ ଗୋଖଲେ : ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ

ହିନ୍ଦୁ ମୁସ୍‌ଲିମ୍ ସମସ୍ୟାମାନଙ୍କର ପୃଷ୍ଠଭୂମି ବିଷୟରେ ଏବଂ ଭାରତର ବିଭାଜନ ଓ ପାକିସ୍ତାନ ପାଇଁ ଏହି ନୂତନ ଦାବି ପଛରେ କି ରହସ୍ୟ ଅଛି, ବୁଝିବାକୁ ଯାଇ ପଚାଶ ବର୍ଷରୁ ଊର୍ଦ୍ଧ୍ୱ କାଳ ଉପରେ ଲମ୍ଫ ଦେଇ ମୁଁ ଆସିଗଲି । ଏହି ସମୟମଧ୍ୟରେ ବହୁ ପରିବର୍ତ୍ତନ ଘଟିଛି ଅଉ ତାହା ଲୋକଙ୍କ ମନୋଭାବରେ ଯେପରି ଘଟିଛି, ସେତେଟା ସରକାରୀ ବ୍ୟବସ୍ଥାର ବାହ୍ୟ ଆଡ଼ମ୍ବରରେ ନୁହେଁ । ଉଚ୍ଛ କେତେକ ସମ୍ବିଧାନଗତ ସଂସ୍କାର ଘଟିଥିଲେ ସୁଦ୍ଧା ବହୁଧା ତାର ପ୍ରଦର୍ଶନୀ କେବଳ କରାଯାଉଛି ସିନା, ବ୍ରିଟିଶ ଶାସନର ସର୍ବମୟ କର୍ତ୍ତୃତ୍ୱର ଚରିତ୍ର ପରିବର୍ତ୍ତନ ଦିଗରେ ତାହା କୌଣସି ପାର୍ଥକ୍ୟ ସୃଷ୍ଟି କରିନି; ଦରିଦ୍ରତା ଓ ବେକାରି ଆଜି ଯାହା ଜେମ୍‌ସେଦ୍‌ପୁର ନାମରେ ପରିଚିତ, ସେଠାରେ ଖ୍ରୀ: ୧୯୧୧ ରେ ଜେମ୍‌ସେଦ୍‌ଜୀ ସମସ୍ୟାକୁ ମଧ୍ୟ ତାହା ସ୍ପର୍ଶ କରିନି । ଟାଟା ଏକ ଇସ୍ପାତ କାରଖାନା ଆରମ୍ଭ କରି ଭାରତରେ ଭାରୀ ଶିଳ୍ପର ଭିତ୍ତି ସ୍ଥାପନ କଲେ । ଏଥି ପ୍ରତି ଓ ଅନ୍ୟାନ୍ୟ ଶିଳ୍ପ ସ୍ଥାପନର ପ୍ରୟାସ ପ୍ରତି ସରକାରଙ୍କ ଶୁଭଦୃଷ୍ଟି ନଥିଲା ଓ କୌଣସି ଭାବରେ ହେଲେ ସରକାରଙ୍କ ଦିଗରୁ ଉତ୍ସାହ ମିଳିନଥିଲା । ମାର୍କିନ୍ ବିଶେଷଜ୍ଞମାନଙ୍କ ସହାୟତାରେ ମୁଖ୍ୟତଃ ଏହି ଇସ୍ପାତ୍ କାରଖାନା ଆରମ୍ଭ ହୋଇଥିଲା । ପ୍ରଥମାବସ୍ଥାରେ ଏହାର ଅବସ୍ଥା ସାଂଘାତିକ ହୋଇଉଠିଥିଲା; କିନ୍ତୁ ପ୍ରଥମ ବିଶ୍ୱଯୁଦ୍ଧ କାଳରେ ଅର୍ଥାତ୍ ଖ୍ରୀ: ୧୯୧୪ରୁ ୧୮ ଭିତରେ ଏହି କାରଖାନା ସେହି ସଙ୍କଟରୁ ଉଦ୍ଧାର ହୋଇ ପାରିଲା । ପୁନର୍ବାର ତାର ଅବସ୍ଥା ଖରାପ ହେଲା ଓ ତାର ସ୍ୱତ୍ୱ ଇଂରେଜ ସାହୁକାରଙ୍କ ହାତକୁ ଚାଲିଯିବାର ବିପଦ ଦେଖାଦେଇଥିଲା । କିନ୍ତୁ ଜାତୀୟବାଦୀ ଚାପ ଫଳରେ ଇଂରେଜ ସାହୁକାରଙ୍କ ଲୋଲୁପ ଦୃଷ୍ଟି ବ୍ୟର୍ଥ ହେଲା ।

ଭାରତର ଶିଳ୍ପକ୍ଷେତ୍ରରେ ଗୋଟାଏ ସର୍ବହରା ଶ୍ରେଣୀ ଗଢ଼ିଉଠୁଥିଲା; କିନ୍ତୁ ସେମାନଙ୍କ ଭିତରେ ସଂଗଠନ ନଥିଲା ଓ ସେମାନେ ଏକପ୍ରକାର ଅନାଥ ଅବସ୍ଥାରେ ଥିଲେ । ସେମାନେ ସାଧାରଣତଃ କୃଷକମାନଙ୍କ ଭିତରୁ ଆସିଥିଲେ ଏବଂ ସେମାନଙ୍କର ହୀନାବସ୍ଥା ମଜୁରିବୃଦ୍ଧି ଓ ଅବସ୍ଥାର ପରିବର୍ତ୍ତନ ଦିଗରେ ବାଧକ ହେଲା । କୌଣସି କାରିଗରୀ ବିଦ୍ୟା ଜାଣି ନଥିବା ସାଧାରଣ ଶ୍ରମିକ ଲକ୍ଷ ଲକ୍ଷ ସଂଖ୍ୟାରେ ବେକାର ଥିଲେ ଏବଂ ଯେକେଉଁ ମଜୁରି ହାରରେ କାମ କରିବାପାଇଁ ସେମାନଙ୍କ ଭିତରୁ ଲୋକେ ପଡ଼ାଉଠା ହୋଇ ଆସୁଥିବା ଫଳରେ ହରତାଳ ବା ଧର୍ମଘଟ ସଫଳ ହେବାର ସମ୍ଭାବନା ନଥିଲା । ଖ୍ରୀ ୧୯୨୦ ବେଳକୁ ପ୍ରଥମ ଟ୍ରେଡ୍ ୟୁନିୟନ କଂଗ୍ରେସ ସଙ୍ଗଠନ କରାଗଲା । ଭାରତୀୟ ରାଜନୈତିକ କ୍ଷେତ୍ରରେ କୌଣସି ପ୍ରଭାବ ପକାଇପାରିବା ଭଳି ଏହି ନୂତନ ସର୍ବହରାଙ୍କ ସଂଖ୍ୟା ଯଥେଷ୍ଟ ନଥିଲା । ସମୁଦ୍ରକୁ ଗଣ୍ଡେ ପାଣି ଭଳି କୃଷକ ଓ କୃଷିକ୍ଷେତ୍ରର ମଜୁରିଆଙ୍କ ଭିତରେ ଏମାନଙ୍କ ସଂଖ୍ୟା ଥିଲା ନଗଣ୍ୟ । ଗତ ଶତକର ଦ୍ୱିତୀୟ ଦଶକ ପରେ ଶିଳ୍ପକ୍ଷେତ୍ରର ଶ୍ରମିକମାନଙ୍କ ସ୍ୱର ଶୁଣିବାକୁ ମିଳିଲା । ସେ ସ୍ୱର ଥିଲା ବଡ଼ କ୍ଷୀଣ । ରୁଷ୍ ବିପ୍ଳବ ସର୍ବହରା ଶ୍ରେଣୀ ପ୍ରତି ଗୁରୁତ୍ୱ ଅର୍ପଣ କରିବା ପାଇଁ ଲୋକଙ୍କୁ ବାଧ୍ୟ ନକରୁଥିଲେ ଭାରତୀୟ ସର୍ବହରାର

ସେହି କ୍ଷୀଣ ସ୍ୱରପ୍ରତି କେହି କର୍ଣ୍ଣପାତ କରି ନଥାନ୍ତେ । ଖୁବ୍ ଭଲ ଭାବରେ ସଙ୍ଗଠିତ କେତେଟା ବଡ଼ ବଡ଼ ହରତାଳ ସର୍ବହରାଙ୍କ ଉପରେ ଦୃଷ୍ଟି ପକାଇବାକୁ ବାଧ୍ୟ କଲା ।

ଭାରତର ସର୍ବାଧିକ କୃଷକର ଅବସ୍ଥାନ । ତାର ସମସ୍ୟା ଭାରତର ସର୍ବପ୍ରଥମ ସମସ୍ୟା ହେଲେ ସୁଦ୍ଧା ସେ ନୀରବ ଥିଲା ଏବଂ ସରକାର ଯେପରି ରାଜନୈତିକ ନେତାମାନେ ମଧ୍ୟ ସେପରି ତାକୁ ଭୁଲି ଯାଇଥିଲେ । ରାଜନୈତିକ ଆନ୍ଦୋଳନର ପ୍ରାଥମିକ ପର୍ଯ୍ୟାୟମାନଙ୍କରେ ଉଚ୍ଚ-ମଧ୍ୟବିତ୍ତ ଶ୍ରେଣୀମାନଙ୍କର,ମୁଖ୍ୟତଃ ପେଶାଦାରଶ୍ରେଣୀ ଓ ଯେଉଁମାନେ ଶାସନକଳରେ ସ୍ଥାନ ପାଇବାକୁ ବ୍ୟାକୁଳ ଥିଲେ, ସେମାନଙ୍କର ଆଦର୍ଶଗତ ପ୍ରେରଣାର ପ୍ରଭାବ ପ୍ରବଳ ଥିଲା । ଖ୍ରୀ: ୧୮୮୫ରେ ସ୍ଥାପିତ ଜାତୀୟ କଂଗ୍ରେସ ଯେବେ ବାଲ୍ୟାବସ୍ଥା ଅତିକ୍ରମ କଲା, ଅଧିକତର ଆକ୍ରମଣଶୀଳ ଓ ଉଦ୍ଧତ ଏବଂ ନିମ୍ନ ମଧ୍ୟବିତ୍ତଶ୍ରେଣୀ ତଥା ଛାତ୍ର ଓ ଯୁବସମାଜର ପ୍ରତିନିଧିତ୍ୱ କରୁଥିବା ଏକ ନୂତନ ଧରଣର ନେତୃତ୍ୱ ଆତ୍ମପ୍ରକାଶ କଲା । ବଙ୍ଗ-ଭଙ୍ଗ ବିରୋଧ ଆନ୍ଦୋଳନରୁ ଏହି ଧରଣର ବହୁ ସୁଦକ୍ଷ ତଥା ଆକ୍ରମଣଶୀଳ ନେତା ବାହାରିଥିଲେ; କିନ୍ତୁ ନୂତନ ଯୁଗର ପ୍ରକୃତ ପ୍ରତୀକ ଥିଲେ ମହାରାଷ୍ଟ୍ରର ବାଲଗଙ୍ଗାଧର ତିଲକ । ପୁରାତନ ନେତୃତ୍ୱର ପ୍ରତିନିଧି ମଧ୍ୟ ଥିଲେ ଜଣେ ସୁଦକ୍ଷ, ଅପେକ୍ଷାକୃତ ଅଳ୍ପ ବୟସ୍କ ବ୍ୟକ୍ତି । ସେ ହେଉଚନ୍ତି ଗୋପାଳକୃଷ୍ଣ ଗୋଖ୍‌ଲେ । ସେ ମଧ୍ୟ ଜଣେ ମରାଠୀ । ବୈପ୍ଳବିକ ସ୍ଲୋଗାନ୍-ମାନଙ୍କରେ ଆକାଶ ଧ୍ୱନିତ ହେଉଥିଲା । ଲୋକଙ୍କ ମିଜାଜ ଉତ୍ତେଜିତ ହେଉଥିଲା ଓ ସଂଘର୍ଷ ଥିଲା ଅନିବାର୍ଯ୍ୟ । ଏହା ଏଡ଼ାଇବା ପାଇଁ କଂଗ୍ରେସର ବୟୋବୃଦ୍ଧ ନେତା, ଯାହାଙ୍କୁ ସମସ୍ତେ ସମ୍ମାନ ପ୍ରଦର୍ଶନ କରୁଥିଲେ ଓ ଦେଶର ପିତା ବିବେଚନା କରୁଥିଲେ—ଦାଦାଭାଇ ନରୋଜୀଙ୍କୁ ଅବସର ଅଶ୍ରୟ ଗୁଡ଼ ପୁଣି ସକ୍ରିୟ ରାଜନୀତି ଭିତରକୁ ଆସିବାକୁ ପଡ଼ିଲା । ଏହି ବ୍ୟବସ୍ଥା ଦୀର୍ଘକାଳଧରି ରହି ନଥିଲା ଏବଂ ଖ୍ରୀ: ୧୯୦୭ରେ ସଂଘର୍ଷ ଲାଗିଲା । ଏଥିରେ ବାହ୍ୟତଃ ଦେଖିଲେ, ବିଜୟ ଲାଭ କଲେ ପୁରାତନ ନରମପନ୍ଥୀମାନେ । ଏ ବିଜୟ ସେମାନେ ହାସଲ କରିପାରିଲେ ସାଂଗଠନିକ କର୍ତ୍ତୃତ୍ୱ ଓ ତାତ୍କାଳିକ କଂଗ୍ରେସର ନିୟନ୍ତ୍ରିତ ଭୋଟ ଅଧିକାର ଯୋଗୁଁ । ଏଥିରେ ସନ୍ଦେହ ନାହିଁ ଯେ ଭାରତର ରାଜନୈତିକ ମନୋଭାବାପନ୍ନ ଲୋକଙ୍କ ଭିତରୁ ସଂଖ୍ୟାଗରିଷ୍ଠ ଅଂଶ ତିଲକ ଓ ତାଙ୍କର ଦଳର ସପକ୍ଷରେ ଥିଲେ । କଂଗ୍ରେସ ତାର ମହତ୍ତ୍ୱ ଅନେକାଂଶରେ ହରାଇବସିଲା ଏବଂ ଅନ୍ୟାନ୍ୟ କାର୍ଯ୍ୟକଳାପ ପ୍ରତି ଅଧିକତର ଆଗ୍ରହ ପ୍ରକାଶ ପାଇଲା । ବଙ୍ଗଳାରେ ସନ୍ତ୍ରାସବାଦୀ କର୍ମତତ୍ପରତା ପ୍ରକାଶ ପାଇଲା । ରୁଷିଆ ଓ ଆୟରଲାଣ୍ଡର ବିପ୍ଳବୀମାନଙ୍କ ପ୍ରଦର୍ଶିତ ପଥ ଅନୁସୃତ ହେଉଥିଲା ।

ଏହିସବୁ ବୈପ୍ଳବିକ ଭାବଧାରା ଦ୍ୱାରା ମୁସ୍‌ଲିମ୍ ତରୁଣମାନେ ବି ପ୍ରଭାବିତ ହେଉଥିଲେ । ଆଲିଗଡ଼ କଲେଜ ଏହି ପ୍ରବଣତା ପ୍ରତିହତ କରିବାର ପ୍ରୟାସ କରିଥିଲା ଏବଂ ବର୍ତ୍ତମାନ ସରକାରୀ ପ୍ରେରଣାରେ ଆଗା ଖାଁ ଓ ଅନ୍ୟମାନେ ମୁସ୍‌ଲିମ୍‌ମାନଙ୍କୁ କଂଗ୍ରେସରୁ ଦୂରରେ

ରଖି ସେମାନଙ୍କ ନିମନ୍ତେ ଗୋଟାଏ ରାଜନୈତିକ ମଞ୍ଚର ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ ମୁସ୍‌ଲିମ୍ ଲିଗ୍ ସ୍ଥାପନ କରିଥିଲେ । ଏହାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ, ମୁସ୍‌ଲିମ୍‌ମାନଙ୍କ ନିମନ୍ତେ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ପ୍ରବର୍ତ୍ତିତ କରିବାର ନିଷ୍ପତ୍ତି ଗ୍ରହଣ କରାଗଲା । ତାର ଅର୍ଥ ଏଣିକି ମୁସ୍‌ଲିମ୍‌ମାନେ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ସ୍ୱତନ୍ତ୍ର ମୁସ୍‌ଲିମ୍‌ବହୁଳ ନିର୍ବାଚନମଣ୍ଡଳୀ-ମାନଙ୍କରୁ କେବଳ ନିର୍ବାଚନ ନିମନ୍ତେ ପ୍ରାର୍ଥୀ ହୋଇପାରିବେ । ଶତ ଶତ ବର୍ଷ ଧରି ସମ୍ମିଶ୍ରଣ ତଥା ସମନ୍ୱୟର ଯେଉଁ ପ୍ରକ୍ରିୟା ଚାଲିଆସିଥିଲା ଏବଂ ପ୍ରଯୁକ୍ତିବିଦ୍ୟାର ବିକାଶ ଫଳରେ ଯେଉଁ ପ୍ରକ୍ରିୟାରେ ଅପରିହାର୍ଯ୍ୟ ଭାବରେ ବେଗ ସଞ୍ଚାରିଥିଲା, ତାର ମୁଖ ପରିବର୍ତ୍ତନ କରି ଏବଂ ଭାରତର ଅନ୍ୟାନ୍ୟ ଅଂଶରୁ ସେମାନଙ୍କୁ ଅଲଗା କରି, ମୁସ୍‌ଲିମ୍‌ମାନଙ୍କୁ ଗୋଟାଏ ରାଜନୈତିକ ପରିଖା ଭିତରେ ଆବଦ୍ଧ କରାଗଲା । ପ୍ରଥମାବସ୍ଥାରେ ଏହି ପ୍ରତିବନ୍ଧକ ସେପରି ଅଲଙ୍ଘନୀୟ ନଥିଲା; କାରଣ ନିର୍ବାଚନ ମଣ୍ଡଳୀଗୁଡ଼ିକ ଥିଲା ଅତି କ୍ଷୁଦ୍ର; କିନ୍ତୁ ଭୋଟାଧିକାର ସମ୍ପ୍ରସାରିତ ହେବା ଫଳରେ ଏହା ବୃଦ୍ଧି ଲାଭ କଲା ଓ ତାର ପ୍ରଭାବ ସାଧାରଣ ତଥା ସାମାଜିକ ଜୀବନର ସାଙ୍ଗଠନିକ ବ୍ୟବସ୍ଥା ଉପରେ ପଡ଼ିଲା । କୌଣସି ଦୂଷିତ କ୍ଷତ ସମଗ୍ର ଶରୀରକୁ ଯେପରି ଦୂଷିତ କରିବାକୁ ବସିଲା । ନଗରପାଳିକା ତଥା ସ୍ୱାୟତ୍ତଶାସିତ ସଂସ୍ଥାମାନଙ୍କୁ ବ୍ୟାପି କରି ଏହା ପରିଶେଷରେ ଅକଳ୍ପିତ ଆକାର ଧାରଣ କଲା । ମୁସଲମାନମାନଙ୍କର ସ୍ୱତନ୍ତ୍ର ଟ୍ରେଡ୍ ୟୁନିଅନ୍, ଛାତ୍ର ସଂଗଠନ ଓ ବଣିକ ସଙ୍ଘମାନ (ଅନେକ ବର୍ଷ ପରେ ଅବଶ୍ୟ) ସ୍ଥାପିତ ହେଲା । ଏହିସବୁ କାର୍ଯ୍ୟକଳାପ ଦିଗରେ ମୁସ୍‌ଲିମ୍‌ମାନେ ବହୁତ ପଛରେ ପଡ଼ିଥିବାରୁ ସଂଗଠନଗୁଡ଼ିକ ତଳୁ ଗଢ଼ିଉଠିବା ପରିବର୍ତ୍ତେ କୃତ୍ରିମ ଭାବରେ ଉପରୁ ଗଢ଼ାଯାଇଥିଲା ଓ ସେସବୁର ନେତୃତ୍ୱ ଥିଲା ପୁରାତନରୁ ସାମନ୍ତବାଦ ସମର୍ଥକ ବ୍ୟକ୍ତିମାନଙ୍କ ହାତରେ । ସମଗ୍ର ଭାରତ ଉପରେ ଜାଗରଣର ଯେଉଁ ପ୍ରଭାବ ପଡ଼ିଥିଲା, ସେଥିରୁ ଏପରି ଭାବରେ ମୁସ୍‌ଲିମ୍ ମଧ୍ୟବିତ୍ତଶ୍ରେଣୀ ଏପରିକି ସାଧାରଣ ଜନତା ମଧ୍ୟ କେତେ ପର୍ଯ୍ୟନ୍ତ ବିଚ୍ଛିନ୍ନ ହୋଇ ପଡ଼ିଲେ । ବ୍ରିଟିଶ ସରକାରଙ୍କ ଦ୍ୱାରା ସୃଷ୍ଟି ଅଥବା ସଂରକ୍ଷିତ ନ୍ୟସ୍ତସ୍ୱାର୍ଥ ଯଥେଷ୍ଟ ଭାବରେ ଥିଲା । ବର୍ତ୍ତମାନ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ଦ୍ୱାରା ଗୋଟାଏ ଅତିରିକ୍ତ ତଥା ଶକ୍ତିଶାଳୀ ନ୍ୟସ୍ତସ୍ୱାର୍ଥ ସୃଷ୍ଟି କରାଗଲା ।

ଏହା ସେପରି କୌଣସି ସାମୟିକ ଅସୁସ୍ଥତା ନଥିଲା; ଯାହା ବର୍ଦ୍ଧିଷ୍ଣୁ ରାଜନୈତିକ ଚେତନା ସଙ୍ଗେ ଦୂର ହୁଅନ୍ତା । ସରକାରୀ ନୀତିଦ୍ୱାରା ପରିପାଳିତ ଏହା ବିସ୍ତାର ଲାଭ କଲା ଏବଂ ଦେଶର ଯାହାକିଛି ପ୍ରକୃତ ସମସ୍ୟା—ରାଜନୈତିକ, ସାମାଜିକ କିମ୍ବା ଅର୍ଥନୈତିକ ଯାହା ହେଉନା କାହିଁକି, ସେଗୁଡ଼ିକୁ ଆଚ୍ଛନ୍ନ କରି ରଖିଲା । ପୂର୍ବେ ଯେଉଁଠି କିଛି ନଥିଲା ସେଠାରେ ଏହା ବିଭେଦ ଓ ବିଦ୍ୱେଷ ସୃଷ୍ଟି କଲା । ପ୍ରକୃତ ପକ୍ଷେ; ଏହା ସେମାନଙ୍କୁ ଦୁର୍ବଳ କଲା ଯେଉଁମାନେ ଆତ୍ମବିଶ୍ୱାସ ଉପରେ ଭିତ୍ତି କରି ଚଳିବା କରିବା ପରିବର୍ତ୍ତେ ଅନ୍ୟର କୃତ୍ରିମ ପୃଷ୍ଠପୋଷକତା ଉପରେ ନିର୍ଭର କରିବାର ମନୋବୃତ୍ତି ଧରିଥିଲେ ।

ଶିକ୍ଷା ଓ ଅର୍ଥନୀତି ଦିଗରୁ ଯେଉଁସବୁ ଗୋଷ୍ଠୀ ବା ସଂଖ୍ୟାଲଘୁ ଅନଗ୍ରସର ଥିଲେ ।

ସେମାନଙ୍କ ପ୍ରତି ସ୍ପଷ୍ଟ ମିତ୍ର ହୋଇଥିଲା ସବୁମନ୍ତେ ସେମାନଙ୍କୁ ସାହାଯ୍ୟ ଯୋଗାଇବା । ବିଶେଷତଃ, ଗୋଟାଏ ଅଗ୍ରଗାମୀ ଶିକ୍ଷାନୀତି ପ୍ରବର୍ତ୍ତନ କରିବା, ଯାହା ଫଳରେ ସେମାନେ ସେମାନଙ୍କର ସମସ୍ତ ଅଭାବ ଅସୁବିଧା ପୂରଣ କରି ସମର୍ଥ ହୋଇ ପାରନ୍ତେ । ମୁସ୍‌ଲିମ୍ ହୋଇଥିବା କି ଅନ୍ୟାନ୍ୟ ଅନଗ୍ରସର ସଂଖ୍ୟାଲଘୁ ହୋଇଥିବା କିମ୍ବା ଯେଉଁମାନଙ୍କ ପକ୍ଷରେ ତାହା ଅତ୍ୟାବଶ୍ୟକ ଥିଲା ସେହି ଦଳିତ ଜାତି ହୋଇଥିବା, କାହାପାଇଁ ହେଲେ ସୁଦ୍ଧା କିଛି କରାଗଲା ନାହିଁ । ସମସ୍ତ ଯୁକ୍ତ ସରକାରୀ କର୍ମରେ ଚଳିଆ ଆସନ ପାଇଁ କରାଯାଉଥିଲା ଓ ସବୁ ଦିଗରୁ ମାନଦଣ୍ଡ ବୃଦ୍ଧି କରିବା ପରିବର୍ତ୍ତେ ବହୁଧା ଯୋଗ୍ୟତା କେବଳ ବଳି ଦିଆଯାଉଥିଲା ।

ଯେଉଁସବୁ ଗୋଷ୍ଠୀ ପୂର୍ବରୁ ଦୁର୍ବଳ ଅବା ଅନଗ୍ରସର ଥିଲେ, ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ବ୍ୟବସ୍ଥା ସେମାନଙ୍କୁ ଆହୁରି ଦୁର୍ବଳ କଲା । ଆହୁରି ମଧ୍ୟ ବିଚ୍ଛିନ୍ନତା ମନୋବୃତ୍ତି ଉତ୍ସାହିତ ହେବା ଫଳରେ ଜାତୀୟ ଏକତାର ଅଭିବୃଦ୍ଧି ବ୍ୟାହତ ହେଲା । ଏହି ବ୍ୟବସ୍ଥା ଥିଲା ଗଣତନ୍ତ୍ର ପ୍ରତି ଏକ ଚରମ ଅସ୍ୱୀକାର । ଏଥିଦ୍ୱାରା ଅତିମାତ୍ରାରେ ପ୍ରତିକ୍ରିୟାଶୀଳ ନୂତନ କେତେ ନ୍ୟସ୍ତସ୍ୱାର୍ଥ ସୃଷ୍ଟି ହେଲା, ମାନଦଣ୍ଡ ନିମ୍ନାଭିମୁଖୀ ହେଲା ଏବଂ ସମସ୍ତଙ୍କ ପକ୍ଷେ ସମାନ ଦେଶର ପ୍ରକୃତ ଅର୍ଥନୈତିକ ସମସ୍ୟାମାନଙ୍କ ଉପରୁ ଦୃଷ୍ଟି ଅପସାରିତ ହେଲା । ମୁସ୍‌ଲିମ୍‌ମାନଙ୍କ ଭିତରେ ପ୍ରଥମେ ପ୍ରବର୍ତ୍ତିତ ଏହିସବୁ ନିର୍ବାଚନମଣ୍ଡଳୀ ଅନ୍ୟାନ୍ୟ ଗୋଷ୍ଠୀ ଓ ସଂଖ୍ୟାଲଘୁଙ୍କ ଭିତରକୁ ବିସ୍ତୃତ ହେଲା ଏବଂ ଭାରତ ଏହିସବୁ ସ୍ୱତନ୍ତ୍ର ପ୍ରକୋଷ୍ଠର ଏକ ସମୁଦାୟ ହୋଇ ଉଠିଲା । ମୋଟ ଦୃଷ୍ଟିରେ ନପଡ଼ିଲେ ସୁଦ୍ଧା ସ୍ୱଳ୍ପକାଳ ପାଇଁ ଏଥିରୁ ସମ୍ଭବତଃ କିଛି ସୁଫଳ ମିଳିଥିବ; କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ଏଥିଦ୍ୱାରା ଭାରତୀୟ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଯେଉଁ ଆଘାତ ଲାଗିଲା ତାହା ପ୍ରକୃତରେ ବିପଜ୍ଜନକ । ଏଥିରୁ ଜାତହେଲା ସବୁପ୍ରକାର ବିଚ୍ଛିନ୍ନତାକାମୀ ମନୋବୃତ୍ତି ଓ ପରିଶେଷରେ ଭାରତର ବିଭକ୍ତିକରଣ ଦାବିରେ ତାହା ପର୍ଯ୍ୟବସିତ ହେଲା ।

ଏହିସବୁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ପ୍ରବର୍ତ୍ତିତ ହେବା କାଳରେ ଭାରତ ନିମନ୍ତେ ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଅଥବା ଭାରତ ସଚିବ ଥିଲେ ଲର୍ଡ ମର୍ଲେ । ପ୍ରଥମେ ସେ ଏହାର ପ୍ରତିରୋଧ କରିଥିଲେ; କିନ୍ତୁ ପରିଶେଷରେ ଭାରତର ବଡ଼ଲାଟଙ୍କ ଚାପରେ ସମ୍ମତ ହେଲେ । ଏହି ପ୍ରଣାଳୀରେ କି ପ୍ରକାର ବିପଦ ରହିଛି ଓ ତାହା କିପରି ପ୍ରତିନିଧିମୂଳକ ସଂସ୍ଥାମାନଙ୍କର ବିକାଶ ଅବଶ୍ୟମ୍ଭାବୀ ଭାବରେ ବିଳମ୍ବିତ କରିବ, ସେ ତାଙ୍କର ଡାଏରୀରେ ସୂଚୀତ କରିଚନ୍ତି । ଖୁବ୍ ସମ୍ଭବ, ବଡ଼ଲାଟ ଓ ତାଙ୍କର ସହକର୍ମୀମାନଙ୍କର ଠିକ୍ ଏହା ହିଁ ଉଦ୍ଦେଶ୍ୟ ଥିଲା । ଭାରତର ସମ୍ବିଧାନଗତ ସଂସ୍କାର ଉପରେ ପ୍ରସ୍ତୁତ ମୋଣ୍ଟେଗ୍ୟୁ ଚେମ୍‌ସ୍‌ଫୋର୍ଡ ରିପୋର୍ଟ (୧୯୧୮) ରେ ଏହିସବୁ ସାମ୍ପ୍ରଦାୟିକ ନିର୍ବାଚନ ମଣ୍ଡଳୀର ବିପଦ ଉପରେ ପୁନର୍ବାର ଜୋର୍ ଦେଇ କୁହାଯାଇଚି : "ମତବିଶ୍ୱାସ ଓ ବର୍ଗ ଉପରେ ଭିତ୍ତିକରି ଭାଗ ଭାଗ କରିବା ଅର୍ଥ ପରସ୍ପର ବିରୁଦ୍ଧରେ ସଂଗଠିତ ରାଜନୈତିକ ଶିବିରମାନ ସୃଷ୍ଟି

କରିବା ଏବଂ ତାହା ଲୋକଙ୍କୁ ନାଗରିକ ଭାବେ ଚିନ୍ତା କରିବା ପାଇଁ ଶିକ୍ଷା ନଦେଇ କୌଣସି ଏକ ପକ୍ଷଭୂତ ଲୋକ ଭାବରେ ନିଜକୁ ବିବେଚନା କରିବାର ଶିକ୍ଷା ଦେବ। ··· ଅତଏବ, ସାମ୍ପ୍ରଦାୟିକ ନିର୍ବାଚନମଣ୍ଡଳୀ ସୃଷ୍ଟି କରିବାର ଯେକୌଣସି ପ୍ରଣାଳୀ ସ୍ୱଶାସନ ନୀତିର ବିକାଶ ପକ୍ଷରେ ଏକ ଗୁରୁତର ପ୍ରତିବନ୍ଧକ ବୋଲି ଆମେ ବିବେଚନା କରୁ।"

□□□

# ଅଷ୍ଟମ ପରିଚ୍ଛେଦ

# ଅନ୍ତିମ ପର୍ବ (୨)

## ଜାତୀୟତାବାଦ ବନାମ ସାମ୍ରାଜ୍ୟବାଦ

## ୧. ମଧ୍ୟବିତ୍ତ ଶ୍ରେଣୀଗୁଡ଼ିକର ଅସହାୟ ଅବସ୍ଥା : ଗାନ୍ଧିଜୀଙ୍କ ଆଗମନ

ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । କଂଗ୍ରେସର ଦୁଇ ଗୋଷ୍ଠୀ—ତଥାକଥିତ ଚରମପନ୍ଥୀ ଓ ନରମପନ୍ଥୀଙ୍କ ବିବାଦ ଯୋଗୁଁ ମୁଖ୍ୟତଃ ଏବଂ ଯୁଦ୍ଧକାଳୀନ ବିବିଧ ନିୟନ୍ତ୍ରଣ ଓ ସୀମା-ବନ୍ଧନ ଯୋଗୁଁ ରାଜନୀତିରେ ଭଟ୍ଟା ପଡ଼ିଥିଲା । ତଥାପି ଗୋଟାଏ ମନୋବୃତ୍ତି ସ୍ପଷ୍ଟ ଲକ୍ଷ୍ୟ କରି ହେଉଥିଲା । ତାହା ହେଉଛି, ମୁସ୍‌ଲିମ୍‌ମାନଙ୍କ ଭିତରେ ଜାଗ୍ରତ ମଧ୍ୟବିତ୍ତଶ୍ରେଣୀ ଅଧିକରୁ ଅଧିକ ଜାତୀୟତାବାଦୀ ମନୋଭାବାପନ୍ନ ହୋଇଉଠୁଥିଲେ ଏବଂ ମୁସଲିମ୍ ଲିଗ୍‌କୁ କଂଗ୍ରେସ ଆଡ଼କୁ ଠେଲି ଠେଲି ନେଉଥିଲେ । ଏପରିକି ଉଭୟେ ହାତ ବି ମିଳାଇନେଇ-ଥିଲେ ।

ଯୁଦ୍ଧକାଳରେ ଶିଳ୍ପ ବିକାଶ ଲାଭ କଲା ଏବଂ ବଙ୍ଗଳାର ଝୋଟକଳ, ବମ୍ବେ, ଅହମଦା-ବାଦ ଓ ଅନ୍ୟତ୍ର ଅବସ୍ଥିତ ଲୁଗାକଲମାନଙ୍କରୁ ପ୍ରଚୁର ଲାଭ ମିଳିଲା । ଏହାର ପରିମାଣ ଥିଲା ଶତକଡ଼ା ଶହେରୁ ଦୁଇଶହ ପର୍ଯ୍ୟନ୍ତ । ଏହି ଲାଭର କିୟଦଂଶ ଡାଣ୍ଡୀ ଓ ଲଣ୍ଡନର ବିଦେଶୀ ପୁଞ୍ଜିପତିଙ୍କ ହାତକୁ ଗଲା ଓ ଅବଶିଷ୍ଟ ଭାରତୀୟ କୋଟିପତିମାନଙ୍କ ସମ୍ପଦ ବୃଦ୍ଧି କଲା । କିନ୍ତୁ ଯେଉଁ ଶ୍ରମିକମାନେ ଏହି ଲାଭଧନ ସୃଷ୍ଟି କଲେ, ସେମାନଙ୍କର ଅବସ୍ଥା ଅପରିବର୍ତ୍ତିତ ରହିଲା । 'ଅପରିଚ୍ଛନ୍ନ, ରୋଗ-ଜୀବାଣୁପୂର୍ଣ୍ଣ କୁଡ଼ିଆ' ଭିତରେ ଯେଉଁଥିରେ ଝରକା କିମ୍ବା ଚିମିନି ନଥିଲା, ଆଲୁଅ, ପାଣି ଯୋଗାଣ, ମଳମୂତ୍ର ତ୍ୟାଗକରିବାର ଉପଯୁକ୍ତ ବ୍ୟବସ୍ଥା ନଥିଲା, ସେଥିରେ ପଶୁଭଳି ଜୀବନଯାପନ କରୁଥିଲେ । ଏହା ଦେଖିବାକୁ ମିଳୁଥିଲା, ବ୍ରିଟିଶ ପୁଞ୍ଜିର ଆଧିପତ୍ୟ ଯେଉଁଠି ପ୍ରବଳ, ତଥାକଥିତ ସେହି ପ୍ରାସାଦପୂର୍ଣ୍ଣ ମହାନଗରୀ କଲିକତାର ସହରତଳି ଅଞ୍ଚଳରେ । ବମ୍ବେରେ ଯେଉଁଠି ଭାରତୀୟ ପୁଞ୍ଜିର ଆଧିପତ୍ୟ ଥିଲା, ଏକ ତଦନ୍ତ କମିଶନ ପନ୍ଦର ଫୁଟ-ବାର ଫୁଟର ଏକ ପ୍ରକୋଷ୍ଠରେ ଛ'ଗୋଟି ପରିବାରର ଶିଶୁ ଓ ବୟସ୍କ ମିଶି ତିରିଶି ଜଣ ଏକତ୍ର ବାସକରିବା ଦେଖିଥିଲେ । ସେମାନଙ୍କ ଭିତରୁ ତିନିଜଣ ସ୍ତ୍ରୀ ଥିଲେ ଆସନ୍ନପ୍ରସବା ଏବଂ ପ୍ରତ୍ୟେକ ପରିବାରର ଗୋଟିଏ ଗୋଟିଏ ଚୁଲି ସେହି ପ୍ରକୋଷ୍ଠ ଭିତରେ ଲାଗିଥିଲା । ଏହା ଏକ ବିଶେଷ ଦୃଷ୍ଟାନ୍ତ ହେଲେ ସୁଦ୍ଧା, ସେପରି କିଛି ଅସାଧାରଣ

ନୁହେଁ । ଏହି ଶତକର ଦ୍ୱିତୀୟ ଓ ତୃତୀୟ ଦଶକରେ ଯେବେ କେତେକ ଉନ୍ନତବିଧାନ କରାଯାଇଥିଲା, ତାର ପ୍ରମାଣ ହେଉଚି ଉପରୋକ୍ତ ଏହି ଦୃଷ୍ଟାନ୍ତ । ଏଥି ପୂର୍ବରୁ ଅବସ୍ଥା ଯେ କ'ଣ ହୋଇଥିବ କଳ୍ପନା କରାଯାଇ ନପାରେ । (୧)

ଶିଳ୍ପକ୍ଷେତ୍ରରେ ଶ୍ରମିକମାନଙ୍କର ଏପରି କେତେକ ବସ୍ତି ମୁଁ ଥରେ ପରିଦର୍ଶନ କରିଥିଲି । ସେଥିଭିତରେ ମୁଁ ଶ୍ୱାସରୁଦ୍ଧ ହୋଇ ପଡ଼ିଥିଲି ଏବଂ ହତବୁଦ୍ଧି ଭାବରେ ବାହାରକୁ ଆସିଲାବେଳେ କ୍ରୋଧରେ ଫାଟିପଡୁଥିଲି । ଏଥର ଆଉ ଗୋଟାଏ କୋଇଲା ଖଣି ଭିତରକୁ ଯାଇ ଆମର ନାରୀମାନେ ସେଠାରେ କି ପ୍ରକାର ଅବସ୍ଥାରେ କାର୍ଯ୍ୟ କରିଥାନ୍ତି, ଦେଖିବା ମନେପଡୁଛି । ଏପରି ଅବସ୍ଥାରେ ମଣିଷ ଯେ ପରିଶ୍ରମ କରିପାରେ, ସେ ଚିନ୍ତା ମୋ ପ୍ରାଣରେ ଏବେ ବି ଜୀବନ୍ତ ରହିଛି ଏବଂ ସେ ଦୃଶ୍ୟ ମୋର ଯେଉଁ ସ୍ନାୟବିକ ଉତ୍ତେଜନା ସୃଷ୍ଟି କରିଥିଲା ତାହା ଭୁଲିବାର ନୁହେଁ । ପରେ ପରେ ଖଣି ଭିତରେ ନାରୀମାନଙ୍କୁ କାମ କରାଇବା ମନା ହେଇଥିଲା; କିନ୍ତୁ ବର୍ତ୍ତମାନ ଯୁଦ୍ଧ ନିମନ୍ତେ ଅତିରିକ୍ତ ପରିଶ୍ରମ ଯେହେତୁ ଆବଶ୍ୟକ ସେଥିଲାଗି ସେମାନଙ୍କୁ ପୁଣି ଭୂଗର୍ଭକୁ ପଠାଗଲା ବୋଲି ଆମକୁ କୁହାଯାଉଛି । କିନ୍ତୁ ଏଣେ ଲକ୍ଷ ଲକ୍ଷ ପୁରୁଷ ବେକାରୀ ଓ ଅନାହାରରେ ସଢ଼ୁଛନ୍ତି । ଖଣି ଭିତରେ କାମ କରିବା ପାଇଁ ପୁରୁଷ ଲୋକର ଅଭାବ ନାହିଁ; କିନ୍ତୁ ମଜୁରିହାର ଏତେ କମ୍ ଓ ଖଣି ଭିତରର ଅବସ୍ଥା ଏତେ କଦର୍ଯ୍ୟ ଯେ ପୁରୁଷମାନେ ସେଥିପ୍ରତି ଆକୃଷ୍ଟ ହେଉନାହାନ୍ତି ।

ବ୍ରିଟିଶ ଟ୍ରେଡ୍ସ୍ ୟୁନିଅନ୍ କଂଗ୍ରେସ ଦ୍ୱାରା ପ୍ରେରିତ ଏକ ପ୍ରତିନିଧିଦଳ ଖ୍ରୀ: ୧୯୨୮ ରେ ଭାରତକୁ ଆସିଥିଲେ । ସେମାନଙ୍କର ରିପୋର୍ଟରେ ସେମାନେ କହିଛନ୍ତି ଯେ "ଆସାମର ଗୃହାରେ ବର୍ଷ ପରେ ବର୍ଷ ଦଶ ଲକ୍ଷ ଭାରତୀୟଙ୍କ ସ୍ୱେଦ, କ୍ଷୁଧା ଓ ନୈରାଶ୍ୟ ମିଶ୍ରିତ ହେଉଛି ।" ବଙ୍ଗଳାର ପବ୍ଲିକ୍ ହେଲଥ୍ ଡିରେକ୍ଟର ତାଙ୍କର ଖ୍ରୀ: ୧୯୨୭-୨୮ର ରିପୋର୍ଟରେ କହିଛନ୍ତି ଯେ, ସେହି ପ୍ରଦେଶର ଚାଷୀ 'ଯେ ପ୍ରକାର ଖାଦ୍ୟ ଖାଉଛନ୍ତି ସେଥିରେ ମୂଷା ପୁଦ୍ଧା ପାଞ୍ଚ ସପ୍ତାହରୁ ଅଧିକ କାଳ ବଞ୍ଚି ନପାରେ ।'

ପ୍ରଥମ ବିଶ୍ୱଯୁଦ୍ଧ ଶେଷ ହେଲା ଏବଂ ଯେଉଁ ଶାନ୍ତି ସ୍ଥାପିତ ହେଲା, ତାହା ଆମ ପାଇଁ ପ୍ରଗତି ଆଣିବା, ଆମର ଅନ୍ୟାନ୍ୟ ଅସୁବିଧା ଲାଘବ କରିବା ପରିବର୍ତ୍ତେ ପଞ୍ଜାବରେ ଦମନଶୀଳ ଆଇନକାନୁନ ଓ ସାମରିକ ଆଇନ ଜାରିକଲା । ଗୋଟାଏ ତିକ୍ତ ଅବମାନନାବୋଧ ଓ ବିକ୍ଷୋଭକ କ୍ରୋଧ ଭାରତୀୟ ମନକୁ ପୂର୍ଣ୍ଣକରି ରଖିଲା । ସାମ୍ବିଧାନିକ ସଂସ୍କାର ଓ ରାଜକର୍ମ ଭାରତୀୟଙ୍କଦ୍ୱାରା ପରିଚାଳିତ କରିବାର ଯେତେ ସବୁ ଆଲୋଚନା ଥିଲା, କେବଳ ଗୋଟାଏ ପ୍ରହସନ ଓ ଗୋଟାଏ ଅପମାନ ଯେବେ ଆମ ଦେଶର ଲୋକେ ପଦଦଳିତ ହେଉଥିଲେ ଏବଂ ଶୋଷଣର ନିର୍ଦ୍ଦୟ କଥା ନିରବଚ୍ଛିନ୍ନ ପ୍ରକ୍ରିୟା ଆମର ଦରିଦ୍ରତାକୁ ତୀବ୍ରତର

(୧) ଯେଉଁଥିରେ ଶ୍ରମିକମାନଙ୍କ ସମସ୍ୟା ଓ ଅବସ୍ଥା ସଂପର୍କରେ ଚର୍ଚ୍ଚା କରାଯାଇଛି, ବି. ଶିବ ରାଓଙ୍କ 'ଦି ଇଣ୍ଡଷ୍ଟ୍ରିଆଲ୍ ଓ୍ୱାର୍କର୍ ଇନ୍ ଇଣ୍ଡିଆ' ବହିରୁ ଏସବୁ ଉଦ୍ଧୃତ ଓ ତଥ୍ୟ ଗ୍ରହଣ କରାଯାଇଛି ।

କରୁଥିଲା ଓ ଆମର ପ୍ରାଣଶକ୍ତି ଶୋଷି ନେଉଥିଲା । ଆମେ ଗୋଟାଏ ପରିତ୍ୟକ୍ତ ଜାତିରେ ପରିଣତ ହେଉଥିଲୁ ।

ତଥାପି, କ'ଣ ଆମେ କରିପାରନ୍ତୁ ? ଏହି କୁଟିଳ ପ୍ରକ୍ରିୟା ପରିବର୍ତ୍ତିତ କରିବାର ପନ୍ଥା କ'ଣ ? କୌଣସି ସର୍ବଶକ୍ତିମାନ୍ ରାକ୍ଷସର କବଳରେ ପଡ଼ିଲା ଭଳି ଆମେ ଅସହାୟ ବୋଧ କରୁଥିଲୁ । ଆମର ଅଙ୍ଗପ୍ରତ୍ୟଙ୍ଗରେ ଗତିଶୀଳତା ନଥିଲା, ଆମର ମନ କୌଣସି ବିଷୟରେ ଚିନ୍ତାକରିବା ଅବସ୍ଥାରେ ନଥିଲା । ଆମର କୃଷୀମାନେ ଦାସ-ମନୋଭାବାପନ୍ନ ଓ ଭୟରେ ସଙ୍କୁଚିତ ଥିଲେ । ଶିଳ୍ପକ୍ଷେତ୍ରରେ ଶ୍ରମିକମାନଙ୍କ ଅବସ୍ଥା ମଧ୍ୟ କୃଷୀ ଅପେକ୍ଷା ଭଲ ନଥିଲା । ମଧ୍ୟବିତ୍ତ ଶ୍ରେଣୀମାନେ, ବୁଦ୍ଧିଜୀବୀମାନେ ଯେଉଁମାନେ ସେହି ଘୋଟିଯାଉଥିବା ଅନ୍ଧକାର ଭିତରେ ଯାତାୟାତ ଆଲୋକିତ କରିପାରିଥାନ୍ତେ, ସେହି ସର୍ବଗ୍ରାସୀ ଅନ୍ଧକାର ଭିତରେ ନିମଜ୍ଜିତ ଥିଲେ । କେତେକ ଦିଗରୁ ଦେଖିଲେ ସେମାନଙ୍କର ଅବସ୍ଥା କୃଷୀଙ୍କ ଅପେକ୍ଷା ଥିଲା ଆହୁରି ଦୟନୀୟ । ସେମାନଙ୍କ ଭିତରୁ ବହୁ ସଂଖ୍ୟକ ଶ୍ରେଣୀଚ୍ୟୁତ ବୁଦ୍ଧିଜୀବୀ ଜମିରୁ ବିଚ୍ଛିନ୍ନ ଓ କୌଣସି ପ୍ରକାର ଶାରୀରିକ ଶ୍ରମ ଅବା କାରିଗରି କର୍ମ କରିବା ପାଇଁ ଅସମର୍ଥ, ବର୍ଦ୍ଧିତ ବେକାର ଶ୍ରେଣୀରେ ଏବଂ ଅସହାୟ ତଥା ଆଶାହୀନ ଭାବରେ ସେହି ଅନ୍ଧକାର-ଗର୍ଭରେ ବୁଡ଼ିରହିଲେ । ଅଳ୍ପ କେତେ ଜଣ ଓକିଲ, ଡାକ୍ତର, ଇଞ୍ଜିନିଅର ଅବା କିରାଣୀ ଯଦି ସଫଳ ହୋଇପାରିଲେ ଜନସାଧାରଣଙ୍କ ଅବସ୍ଥାର ପରିବର୍ତ୍ତନ ପାଇଁ ତାହା କିଛି ନଥିଲା । କୃଷୀ ଅନାହାରରେ ପୀଡ଼ିତ ହେଉଥିଲା । ତଥାପି ତାର ପରିବେଷ୍ଟନୀ ବିରୁଦ୍ଧରେ ଶତ ଶତ ବର୍ଷ ଧରି ସେ ଯେଉଁ ସଂଗ୍ରାମ କରିଆସିଥିଲା, ସେଥିରୁ ସେ ଶିକ୍ଷା କରିଥିଲା ସବୁକିଛି ସହି-ସମ୍ଭାଳିଯିବା ପାଇଁ ଏବଂ ଉତ୍କଟ ଦାରିଦ୍ର୍ୟତା ତଥା ଅନାହାର ଭିତରେ ମଧ୍ୟ ତା'ର ଗୋଟାଏ ପ୍ରକାର ଅବିଚଳିତ ସମ୍ଭ୍ରମବୋଧ ଓ ଗୋଟାଏ ସର୍ବଶକ୍ତିମାନ ଭାଗ୍ୟ ନିକଟରେ ଆତ୍ମସମର୍ପଣର ଭାବ ରହିଥିଲା । କିନ୍ତୁ ମଧ୍ୟବିତ୍ତଶ୍ରେଣୀ, ବିଶେଷ କରି ନୂତନ ଗ୍ରେଟ ବୁର୍ଜୁଆବର୍ଗ ଭିତରେ ଏହି ଭାବ ନଥିଲା; କାରଣ ସେମାନଙ୍କର ପୃଷ୍ଠଭୂମି ଥିଲା ସ୍ୱତନ୍ତ୍ର । ବିକାଶ ଦିଗରୁ ଅସମ୍ପୂର୍ଣ୍ଣ ଓ ନୈରାଶ୍ୟରେ ଆଚ୍ଛନ୍ନ, ପନ୍ଥା କ'ଣ ସେମାନେ ବୁଝି ପାରୁ-ନଥିଲେ; କାରଣ ନୂତନ କିମ୍ବା ପୁରାତନ କୌଣସି ମହଲ ହେଲେ ସେମାନଙ୍କ ମନରେ ଆଶା ସଞ୍ଚାର କରିପାରୁନଥିଲା । ଯଦିଓ ସେ ପଥରେ ଦୁଃଖଭୋଗ ଏକପ୍ରକାର ନିଶ୍ଚିତ ଥିଲା, ତଥାପି ସାମାଜିକ ଉଦ୍ଦେଶ୍ୟ ସଙ୍ଗେ ସେମାନେ ନିଜକୁ ଖାପ ଖୁଆଇ ପାରି ନଥିଲେ, ସାର୍ଥକ କିଛି କରିବାର ସନ୍ତୋଷ ମଧ୍ୟ ପାଇପାରୁନଥିଲେ । ପ୍ରଥା-ପୀଡ଼ିତ, ସେମାନେ ବାର୍ଦ୍ଧକ୍ୟ ଯେପରି ଜନ୍ମ ଗ୍ରହଣ କରିଥିଲେ; କିନ୍ତୁ ସେମାନଙ୍କ ପଛରେ ନଥିଲା ପୁରାତନ ସଂସ୍କୃତି । ଆଧୁନିକ ବିଚାରଧାରା ସେମାନଙ୍କୁ ଆକୃଷ୍ଟ କରିଥିଲା; କିନ୍ତୁ ସେମାନଙ୍କଠାରେ ସେଥିର ଆନ୍ତର ତତ୍ତ୍ୱ, ଆଧୁନିକ, ସାମାଜିକ ତଥା ବୈଜ୍ଞାନିକ ଚେତନାର ଅଭାବ ରହିଥିଲା । କେହି କେହି ତତ୍କାଳୀନ ଶୋଚନୀୟ ଅବସ୍ଥାରୁ ମୁକ୍ତହେବା ପାଇଁ ଅତୀତର ଶବକୁ ପ୍ରାଣ-ପଣେ ଜାବୁଡ଼ି ଧରିବାର ଉଦ୍ୟମ କଲେ; କିନ୍ତୁ ସେଥିରୁ ଶାନ୍ତି ମିଳିନ୍ତା କିପରି ? ଶ୍ରୀ ରବୀନ୍ଦ୍ରନାଥ ଠାକୁର ଯଥାର୍ଥ ଭାବରେ କହିଛନ୍ତି ଯେ ଆମ ଭିତରେ ଯାହା କିଛି ମୃତ

ତାହା ପ୍ରତିପାଳନ କରିବା ଉଚିତ ନୁହେଁ; କାରଣ ମୁଠି ମୁଠିକୁ ନେଇ କେବଳ କାରବାର କରିପାରେ । ଅନ୍ୟମାନେ ନିଜଙ୍କୁ ପଶ୍ଚିମର ଗୋଟାଏ ଅପଫଳ, ନିଷ୍ପ୍ରଭ ନକଲ କରିବସିଲେ । ଅତଏବ, ପରିତ୍ୟକ୍ତ ଲୋକ ଭଳି ଦେହ ଓ ମନ ନିମନ୍ତେ ନିରାପତ୍ତାର କୌଣସି ଆଶ୍ରୟ ବ୍ୟାକୁଳଭାବରେ ଖୋଜି ଖୋଜି ଓ ଶେଷରେ କିଛି ନପାଇ ଭାରତୀୟ ଜୀବନର ଅନ୍ଧକାରାଚ୍ଛନ୍ନ ଜଳରାଶି ବକ୍ଷରେ ଲକ୍ଷ୍ୟହୀନ ଭାବରେ ସେମାନେ ଭାସିବାକୁ ଲାଗିଲେ ।

କ'ଣ ଆମେ କରନ୍ତୁ ? ଦରିଦ୍ରତା ଓ ନୈରାଶ୍ୟର ଏହି କାଳାଭୂମି ଭିତରୁ, ଯାହା ସେମାନଙ୍କୁ ଗଭୀରରୁ ଗଭୀରକୁ ଟାଣିନେଇଯାଉଛି, ଆମେ କିପରି ସେଥିରୁ ଭାରତକୁ ବାହାର କରି ଆଣିବୁ ? ସ୍ୱଳ୍ପ କେତେ ବର୍ଷର ଉତ୍ତେଜନା, ଯନ୍ତ୍ରଣା ଓ ଉତ୍କଣ୍ଠିତ ନୀରବତା କେବଳ ନୁହେଁ, ପୁରୁଷାନୁକ୍ରମିକ ଭାବରେ ଆମ ଲୋକେ 'ରକ୍ତ ଓ ଶ୍ରମ, ଅଶ୍ରୁ ଓ ସ୍ୱେଦ' ନିବେଦନ କରିଆସିଛନ୍ତି ଏବଂ ଏହି ପ୍ରକ୍ରିୟା ଭାରତର ଦେହ ଓ ଆତ୍ମାର ଗଭୀରରେ କ୍ଷତ କରି ଆମର ଜାତୀୟ ଜୀବନର ସମସ୍ତ ଦିଗକୁ ବିଷାକ୍ତ କରି ତୋଳିଛି; ଯକ୍ଷ୍ମାରୋଗ ଯେପରି ଫୁସ୍‌ଫୁସ୍‌ର ତନ୍ତୁଗୁଡ଼ିକୁ କ୍ଷୟ କରି ଧୀରେ ଧୀରେ ଅଥଚ ନିଶ୍ଚିତ ଭାବରେ ଜୀବନ ନାଶ କରିଥାଏ । ବେଳେବେଳେ ଆମର ମନେହୋଇଥାଏ ଯେ କଲେରା ଅଥବା ପ୍ଲେଗ୍ ଭଳି ଅଧିକତର କ୍ଷିପ୍ର ଓ ଅଧିକତର ସ୍ପଷ୍ଟ କୌଣସି ପ୍ରକ୍ରିୟା ଏହି ମନ୍ଥର ମୃତ୍ୟୁ ଅପେକ୍ଷା ଅଧିକ ସ୍ପୃହଣୀୟ ହୁଅନ୍ତା । ତେବେ ତାହି ଥିଲା ମାତ୍ର ଏକ ସାମୟିକ ବିଚାର । କାରଣ ଦୁଃସାହସିକ ଭାଗ୍ୟ ଅନ୍ୱେଷଣ କରିବାର ପନ୍ଥା କୌଣସି ଲକ୍ଷ୍ୟରେ ନେଇ ପହଞ୍ଚାଇ ନ ଥାଏ ଏବଂ ପୁରାତନ କୌଣସି ରୋଗର ଚିକିତ୍ସା ନକଲି ବୈଦ୍ୟ ଦ୍ୱାରା ସଫଳ ହୋଇନପାରେ ।

ତା'ପରେ ଆସିଲେ ଗାନ୍ଧି । ସେ ଥିଲେ ସଦ୍ୟପଞ୍ଚାରିତ ବାୟୁର ଏକ ପ୍ରବଳ ପ୍ରବାହ ଭଳି, ଯାହା ଆମକୁ ସ୍ୱଚ୍ଛନ୍ଦରେ ଗଭୀର ନିଃଶ୍ୱାସ ଟାଣିବାର ସୁଯୋଗ ଦେଲା । ଗୋଟାଏ ଉଜ୍ଜ୍ୱଳ ଆଲୋକରଶ୍ମି ଭଳି ସେ ଅନ୍ଧକାରର ବକ୍ଷ ବିଦୀର୍ଣ୍ଣ କଲେ ଓ ଆମର ଦୃଷ୍ଟିରୁ ପରଳ ଉତାରି-ଦେଲେ; ଗୋଟାଏ ଘୂର୍ଣ୍ଣିବାୟୁ ବହୁତ କିଛି ଯେପରି ଓଲଟପାଲଟ କରିଦିଏ; ଜନ-ସାଧାରଣଙ୍କ ବିଚାର ଭାବନାକୁ ସେ ଓଲଟପାଲଟ କରିଦେଲେ । ସେ ଆକାଶରୁ ଅବତରଣ କରି ନ ଥିଲେ; ଭାରତର କୋଟି କୋଟି ଲୋକଙ୍କ ଭିତରୁ ତାଙ୍କର ଅଭ୍ୟୁଦୟ ଘଟିଥିଲା । ସେ କହୁଥିଲେ ସେମାନଙ୍କର ଭାଷା ଏବଂ ସର୍ବଦା ସେମାନଙ୍କ ପ୍ରତି ଓ ସେମାନଙ୍କର ଘୋର ଦୁରବସ୍ଥା ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲେ । 'ତୁମେ ସମସ୍ତେ ଯେଉଁ କୃଷୀ ଓ ଶ୍ରମିକଙ୍କୁ ଶୋଷଣ କରି ଜୀବନଧାରଣ କରିଛ, ସେମାନଙ୍କ ପିଠି ଉପରୁ ଓହ୍ଲାଇ ଆସ' ବୋଲି ସେ ଆମକୁ କହିଥାନ୍ତି । ଯେଉଁ ବ୍ୟବସ୍ଥା ଏହି ଦରିଦ୍ରତା ଓ ଶୋଚନୀୟ ଅବସ୍ଥା ସୃଷ୍ଟି କରିଛି ତାହା ପରିତ୍ୟାଗ କର । ଗାନ୍ଧିଙ୍କ ଆବିର୍ଭାବ ପରେ ରାଜନୈତିକ ମୁକ୍ତି ଆନ୍ଦୋଳନ ଗୋଟିଏ ନୂତନ ରୂପ ପରିଗ୍ରହ କଲା ଓ ଏକ ନୂତନ ପ୍ରାଣଶକ୍ତିରେ ଅଭିଷିକ୍ତ ହେଲା । ସେ ଯାହାସବୁ କରୁଥିଲେ, ଆଂଶିକ ଭାବରେ କେବଳ ଆମେ ଗ୍ରହଣ କରୁଥିଲୁ କିମ୍ବା କେବେ କେବେ ଜମା ଗ୍ରହଣ କରୁନଥିଲୁ; କିନ୍ତୁ ସେ ସବୁ ଥିଲା ଗୌଣ । ତାଙ୍କର ଶିକ୍ଷାର ସାରାଂଶ ଥିଲା ନିର୍ଭୀକତା

ଓ ସତ୍ୟନିଷ୍ଠା ଏବଂ ଜନସାଧାରଣଙ୍କ କଲ୍ୟାଣ ସର୍ବଦା ଦୃଷ୍ଟି ସମ୍ମୁଖରେ ରଖି ଏହି ଉଭୟ ଉପରେ ଭିତ୍ତିକରି କାର୍ଯ୍ୟ କରିବା । ବ୍ୟକ୍ତି ହେଉ କି ଜାତି ହେଉ, ତା'ର ବିଶେଷତ୍ୱ ହେଉଛି ଅଭୟ ଅର୍ଥାତ୍ ନିର୍ଭୀକତା ବୋଲି ଆମର ପୁରାତନ ଗ୍ରନ୍ଥମାନଙ୍କରେ ଲକ୍ଷିତ ଅଛି । ଏହା କେବଳ ଶାରୀରିକ ନୁହେଁ; ମନରୁ ମଧ୍ୟ ଭୟ ଦୂରୀଭୂତ ହେବା ବିଧେୟ । ଆମ ଇତିହାସର ଅରୁଣ ପ୍ରଭାତରେ ଜନକ ଓ ଯାଜ୍ଞବଲ୍କ୍ୟ କହିଥିଲେ ଯେ ଜନନାୟକମାନଙ୍କର ପ୍ରଧାନ କାର୍ଯ୍ୟ ହେଉଛି ଜନସାଧାରଣଙ୍କୁ ନିର୍ଭୀକ କରାଇବା; କିନ୍ତୁ ବ୍ରିଟିଶଶାସିତ ଭାରତରେ ପ୍ରବଳ ଆବେଗ ଥିଲି ଭୟ—ବ୍ୟାପ୍ତିଶୀଳ, ଉତ୍ପୀଡ଼କ ଓ ଶ୍ୱାସରୁଦ୍ଧକର ଭୟ । ଭୟ ଥିଲି ସବୁକିଛି ପ୍ରତି : ସୈନିକ, ପୁଲିସ ଓ ସୁପରିବ୍ୟାପ୍ତ ଗୋଇନ୍ଦା-ବିନ୍ୟାସ ପ୍ରତି; କର୍ମଚାରୀଶ୍ରେଣୀ ପ୍ରତି; ଦମନ ଉଦ୍ଦେଶ୍ୟରେ ପ୍ରସ୍ତୁତ ବିବିଧ ଆଇନ ପ୍ରତି; ଜମିଦାରୀ ଗୁମାସ୍ତା ପ୍ରତି; ଆଉ ଦୁଆରମୁହଁରେ ସବୁବେଳେ ଜଗିବସିଥିବା କର୍ମହୀନତା ଓ ଅନାହାର ପ୍ରତି । ଏହି ସର୍ବବ୍ୟାପକ ଭୟ ବିରୁଦ୍ଧରେ ଗାନ୍ଧି ତାଙ୍କର ଶାନ୍ତ ଅଥଚ ଦୃଢ଼ ସ୍ୱର ଉତ୍ତୋଳନ କଲେ—ଭୟ କରନାହିଁ । ଏହା କ'ଣ ସେପରି ସହଜ ? ଅବଶ୍ୟ ନୁହେଁ । ତଥାପି, ଭୟ ତା'ର ଯେଉଁ ବିବିଧ କାଳ୍ପନିକ ରୂପ ବା ଅପଚ୍ଛାୟାମାନ ନିର୍ମାଣ କରେ, ବାସ୍ତବତା ଅପେକ୍ଷା ସେସବୁ ଅଧିକତର ଭୟାବହ ଏବଂ ବାସ୍ତବତାକୁ ମଧ୍ୟ ଯେବେ ଶାନ୍ତଭାବରେ ଅନୁଶୀଳନ କରାଯାଏ ଓ ତା'ର ପରିଣତିକୁ ସ୍ୱେଚ୍ଛାକୃତ ଭାବରେ ଗ୍ରହଣ କରାଯାଏ, ସେଥିରେ ଭୟର ମାତ୍ରା ନଗଣ୍ୟ ହୋଇପଡ଼େ ।

ତଥାପି, ସମ୍ପୂର୍ଣ୍ଣ ଭାବରେ ନହେଲେ ମଧ୍ୟ, ଏକରକମ ବିସ୍ମୟକର ଭାବରେ, ଅକସ୍ମାତ୍ ଭୟର ସେହି କୃଷ୍ଣ-ଆଚ୍ଛାଦନ ଲୋକଙ୍କ ଉପରୁ ଅପସାରିତ ହୋଇଗଲା । ଭୟ ଯେପରି ମିଥ୍ୟାର ଅନ୍ତରଙ୍ଗ ବନ୍ଧୁ, ନିର୍ଭୀକତା ସେହିପରି ସତ୍ୟର । ଭାରତୀୟ ଲୋକେ ପୂର୍ବାପେକ୍ଷା ଅଧିକତର ସତ୍ୟ ପ୍ରତି ଅନୁରକ୍ତ ଯେ ହୋଇପଡ଼ିଲେ ତାହା ନୁହେଁ, କିମ୍ବା ସେମାନଙ୍କର ସାଧାରଣ ପ୍ରକୃତି ରାତିକ ଭିତରେ ପରିବର୍ତ୍ତିତ ହୋଇଗଲାନି, ତଥାପି ବଡ଼ ଏକ ପରିବର୍ତ୍ତନ ପରିଲକ୍ଷିତ ହେଲା; କାରଣ ମିଥ୍ୟାର ଆଶ୍ରୟ ଓ ଗୋପନୀୟ ଆଚରଣରେ ଆବଶ୍ୟକତା ହ୍ରାସ ପାଇଲା । କୌଣସି ବିଶେଷ ମାନସ ଅନୁଶୀଳନ ପ୍ରଣାଳୀ ଅନୁସରଣ କରି, ଅନ୍ତରର ଗଭୀର ପ୍ରଦେଶରୁ ରୋଗୀର ବିବିଧ ଗୂଢ଼ୈଷାର ହେତୁ ବାହାର କରି ଓ ସେ ବିଷୟରେ ତାର ହୃଦ୍‌ବୋଧ କରାଇ ତାକୁ ସେଥିରୁ ଯେପରି ମୁକ୍ତ କରାଯାଇଥାଏ, ଏହା ଥିଲା ସେପରି ଏକ ମାନସିକ ପରିବର୍ତ୍ତନ ।

ଏହାର ମନସ୍ତାତ୍ତ୍ୱିକ ପ୍ରତିକ୍ରିୟା ମଧ୍ୟ ପ୍ରକାଶ ପାଇଲା । ତାହା ହେଉଛି, ବିଦେଶୀ ପ୍ରଭୁତ୍ୱ ଯାହା ଆମକୁ ଅବନତ ଓ ଅବମାନନାର ପଥକୁ ଟାଣିନେଇଛି ତାର ନିକଟରେ ଏତେ ଦୀର୍ଘକାଳ ଧରି ମସ୍ତକ ଅବନତ କରିଥିବା ହେତୁରୁ ଗୋଟାଏ ଗଭୀର ଲଜ୍ଜାବୋଧ ଏବଂ ପରିଣାମ ଯାହା ହେଉନା କାହିଁକି, ଆଉ ପଦାନତ ନ ହେବାର ଉଗ୍ର ଅଭିଳାଷ ।

ପୂର୍ବେ ଆମେ ଯାହା ଥିଲୁ ତଦପେକ୍ଷା ସତ୍ୟ ପ୍ରତି ଅଧିକ ଅନୁରକ୍ତ ହୋଇପଡ଼ି ନଥିଲୁ; କିନ୍ତୁ ଆମକୁ ଅସତ୍ୟ ଭିତରୁ ଟାଣିଆଣି ସତ୍ୟରେ ଉପନୀତ କରାଇବା ପାଇଁ ଗାନ୍ଧି ସର୍ବଦା

ଆମ ଆଗରେ ଥିଲେ ଅନମନୀୟ ସତ୍ୟର ଗୋଟାଏ ପ୍ରତୀକ ଭାବରେ । ସତ୍ୟ କ'ଣ ? ମୁଁ ନିଶ୍ଚିତ ଭାବରେ ଜାଣିନି । ବୋଧହୁଏ ଆମେ ଯାହା କିଛି ସତ୍ୟ ବୋଲି କହୁଁ, ତାହା ଆପେକ୍ଷିକ ସତ୍ୟ ଓ ଯାହା ଚରମ ସତ୍ୟ ତାହା ଆମର ସବୁ କିଛି ଊର୍ଦ୍ଧ୍ୱରେ ଅବସ୍ଥିତ । ଭିନ୍ନ ଭିନ୍ନ ଲୋକେ ଭିନ୍ନ ଭିନ୍ନ ଭାବରେ ସତ୍ୟକୁ ଦେଖିପାରନ୍ତି ଏବଂ ପ୍ରତ୍ୟେକ ବ୍ୟକ୍ତି ତା'ର ନିଜର ପୃଷ୍ଠଭୂମି, ଶିକ୍ଷା, ଆବେଗ ତଥା ପ୍ରବୃତ୍ତିମାନଙ୍କ ଦ୍ୱାରା ପ୍ରବଳ ଭାବରେ ପ୍ରଭାବିତ ହୋଇଥାଏ । ଏହା ଗାନ୍ଧିଜୀଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ; କିନ୍ତୁ ପ୍ରତ୍ୟେକ ବ୍ୟକ୍ତି ପକ୍ଷରେ ସତ୍ୟ ହେଉଛି ଯାହା ସେ ନିଜେ ଅନୁଭବ କରେ ଓ ସତ୍ୟ ବୋଲି ଜାଣେ । ଏହି ସଂଜ୍ଞା ଅନୁଯାରେ, ଗାନ୍ଧି ଯେପରି ସତ୍ୟର ଆଶ୍ରୟ ଗ୍ରହଣ କରିଛନ୍ତି ଅନ୍ୟ କୌଣସି ବ୍ୟକ୍ତି ସେପରି କରିବା ମୁଁ ଜାଣେନାହିଁ । ଜଣେ ରାଜନୀତିଜ୍ଞ ପକ୍ଷରେ ଏହି ଗୁଣ ପ୍ରକୃତରେ ବିପଜ୍ଜନକ; କାରଣ ସେ ତା'ର ମନର କଥା ମୁକ୍ତକଣ୍ଠରେ କହିପକାଏ ଓ ତାର ପରିବର୍ତ୍ତନଶୀଳ ମନର ବିଭିନ୍ନ ଦଶା ଦେଖିବା ପାଇଁ ଜନସାଧାରଣଙ୍କୁ ସୁଯୋଗ ଦିଏ ।

ଭାରତର କୋଟି କୋଟି ଲୋକଙ୍କୁ ଗାନ୍ଧିଜୀ କମ୍ ବେଶି ପରିମାଣରେ ପ୍ରଭାବିତ କଲେ । କେତେକଙ୍କର ଜୀବନର ଧାରା ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତିତ ହୋଇଗଲା ଓ ଅନ୍ୟମାନଙ୍କର ଆଂଶିକ ପରିବର୍ତ୍ତନ ଘଟିଲା କିମ୍ବା ସେହି ପ୍ରଭାବ କ୍ରମଶଃ ଉଭେଇଗଲା । ତଥାପି କାହା ଉପରୁ ଗାନ୍ଧିଜୀଙ୍କ ପ୍ରଭାବ ସମ୍ପୂର୍ଣ୍ଣ ଭାବରେ ଦୂର ହୋଇଗଲା ବୋଲି କହିବା କଠିନ; କାରଣ ସେଥିରୁ ଗୋଟାଏ କିଛି ଅଂଶରୁ ଅନ୍ତତଃ ମୁକ୍ତ ହେବାର ଉପାୟ ନଥିଲା । ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ଉପରେ ଭିନ୍ନ ଭିନ୍ନ ଭାବରେ ତାହା କାର୍ଯ୍ୟ କରିଛି ଏବଂ ଏହି ପ୍ରଶ୍ନର ଉତ୍ତର ଜଣକ ପାଇଁ ଆଉ ଜଣେ ଦେବା ସମ୍ଭବ ନୁହେଁ । ଯାହା କଥା ସେ କେବଳ କହିବ । କେହି କେହି ଏକ୍ଲିବିଏଡ଼ୀଜ୍ ଭାଷାରେ ହୁଏତ କହିବେ, "ଅଧିକନ୍ତୁ, ଅନ୍ୟ କେହି କହିବା ଯେବେ ଆମେ ଶୁଣୁ, ସେ ଯେତେ ବାଗ୍ମୀ ହେଲେ ସୁଦ୍ଧା, ତାର କହିବା ପ୍ରତି ଆମର ତିଳେମାତ୍ର ସମ୍ମାନ ନଥାଏ; କିନ୍ତୁ ଆମେ ତୁମକୁ ଯେବେ ଶୁଣୁ କିମ୍ବା ଅନ୍ୟ କାହା ମୁହଁରୁ ତୁମ କଥାର ପୁନରାବୃତ୍ତି ଶୁଣୁ, ସେ ତାକୁ ଯେତେ ଅସଂଲଗ୍ନ ଭାବରେ କହୁନା କାହିଁକି, ଆବାଲବୃଦ୍ଧବନିତା ସିଏ ତାହା ଶୁଣେ ସମ୍ପୂର୍ଣ୍ଣ ଭାବରେ ଅଭିଭୂତ ହୁଏ । ମୋ ନିଜ କଥା କହିଲେ, ସଜ୍ଜନବୃନ୍ଦ, ମୁଁ ପାଗଳ ହୋଇଯାଇନାହିଁ—ଏ କଥା ଆପଣମାନେ କହିବେ ବୋଲି ମୋର ଯଦି ଭୟ ନ ହୁଏ, ମୁଁ ଶପଥ କରି କହିପାରିବି, ତାଙ୍କର ବାଣୀ ମୋର ଉପରେ କି ଅସାଧାରଣ ପ୍ରଭାବ ପକାଇଥିଲା । ସେହି ବାଣୀ ଯଦି ଏବେ ବି କିଏ ଉଚ୍ଚାରଣ କରେ ଠିକ୍ ସେହିଭଳି ପ୍ରଭାବ ହିଁ ମୋ ଉପରେ ପଡ଼ିବ । ତାଙ୍କର ବାଣୀ ମୋ'ର କାନରେ ପଡ଼ିବା ମାତ୍ରେ ଯେକେଉଁ 'କୋରିବାଣ୍ଟ' (୧) ଅପେକ୍ଷା ଅଧିକତର ପ୍ରବଳ ଭାବରେ ଗୋଟାଏ ପ୍ରକାର ପବିତ୍ର ଆବେଗରେ ମୁଁ ଉତ୍ତେଜିତ ହୋଇଉଠେ ଏବଂ ତତ୍କ୍ଷଣାତ୍ ମୋର ହୃଦୟ ମୋର ଉଚ୍ଚାରଣ

(୧) ଗ୍ରୀକ୍ ମାତୃକା 'କାଇବେଲେ'ର ପୂଜକ । ଏହି ପୂଜାନୁଷ୍ଠାନରେ ଉଦ୍ଦଣ୍ଡ ନୃତ୍ୟ ଓ ଚିତ୍କାର ସହିତ ଯନ୍ତ୍ରସଙ୍ଗୀତ କରାଯାଇଥାଏ : ଅନୁବାଦକ ।

ଭିତରକୁ ଉଠିଆସେ ଓ ଆଖିରୁ ଲୋତକ ଝରିଯାଏ । ହାୟ, ମୁଁ କେବଳ ନୁହେଁ, ବହୁତ ଲୋକଙ୍କର ଏପରି ଦଶା ଘଟିଛି ।

"ହଁ, ପେରିକ୍ଲିସ୍ ଓ ଅନ୍ୟ ଯେତେ ଓଜସ୍ୱୀ ବକ୍ତାଙ୍କ ଭାଷଣ ମୁଁ ଶୁଣିଛି, ସେମାନଙ୍କର ପ୍ରଗଲ୍‌ଭତା ମୁଁ ସ୍ୱୀକାର କରେ; କିନ୍ତୁ ତାଙ୍କ ଭଳି ପ୍ରଭାବ ସେମାନେ ମୋ ଉପରେ ପକାଇପାରିନାହାନ୍ତି । ମୋର ଅନ୍ତଃସ୍ଥଳ ଉଦ୍‌ବେଳିତ କରି ମତେ କେବେହେଲେ ସେହି ଅନୁଭୂତ ଦେଇପାରିନାହାନ୍ତି ଯେ ଦାସଙ୍କ ଭିତରେ ମୁଁ ଦୀନତମ; କିନ୍ତୁ ସେହି ଦିନରୁ ମୋର ମନର ଅବସ୍ଥା ଏପରି ହୋଇଯାଇଛି, ମୁଁ ଅନୁଭବ କରୁଛି ଯେ ଏପର୍ଯ୍ୟନ୍ତ ମୁଁ ଯେପରି ଭାବରେ ଚଳିଆସିଛି ଆଉ ସେପରି ଚଳିବା ମୋ ପକ୍ଷପରେ ସମ୍ଭବପର ନୁହେଁ ।"

"ଆଉ ଗୋଟାଏ କଥା, ଯାହା ଅନ୍ୟ କାହା ପାଖରେ ହେଲେ ମୁଁ କେବେ ଅନୁଭବ କରିନାହିଁ, ଆଉ ମୋ ପାଖରୁ ମଧ୍ୟ ତମେ ଯେଉଁ କଥା ଆଶା କରିପାରିବନାହିଁ, ତାହା ହେଉଛି ଲଜ୍ଜାବୋଧ । ବିଶ୍ୱରେ ସକ୍ରେଟିସ୍ ହେଉଛନ୍ତି ଏକମାତ୍ର ବ୍ୟକ୍ତି, ଯିଏ ମୋର ମନରେ ଲଜ୍ଜାବୋଧ ଆଣିବା ପାଇଁ ସମର୍ଥ । କାରଣ ସେଥିରୁ ମୁକ୍ତ ହେବାର ଉପାୟ ନାହିଁ । ମୁଁ ବୁଝୁଛି, ଯାହା ସବୁ କରିବାକୁ ସେ ମୋତେ କହନ୍ତି, ମୁଁ କରିବା ଉଚିତ; ତଥାପି ମୁଁ ତାଙ୍କ ଦୃଷ୍ଟିର ଅନ୍ତରାଳ ହେବା ମାତ୍ରେ ଜନଗହଳି ଭିତରେ ରହିବାପାଇଁ ମୁଁ କ'ଣ କରୁଛି ସେଥିପାଇଁ ପରବାୟ କରେନାହିଁ । ଅତଏବ, କୌଣସି ପଳାତକ ଦାସ ଭଳି ମୁଁ ପଳାୟନ କରେ ଏବଂ ଯେତେ ପର୍ଯ୍ୟନ୍ତ ପାରେ ତାଙ୍କର ଦୃଷ୍ଟି ବାହାରେ ରହେ । ପୁଣି ଯେବେ ତାଙ୍କ ସଙ୍ଗେ ଦେଖା ହୁଏ, ପୂର୍ବେ ସ୍ୱୀକାର କରିଥିବା ସବୁ ବିଷୟ ମୋର ମନେପଡ଼େ ଓ ସ୍ୱାଭାବିକ ଭାବରେ ମୁଁ ଲଜ୍ଜିତ ହୁଏ ...।"

"ଏତକ କେବଳ କହିବାର କଥା, ସର୍ପ ଅପେକ୍ଷା ଅଧିକ କିଛି ବିଷାକ୍ତ ମତେ ଦଂଶନ କରିଛି । ବସ୍ତୁତଃ, ଏହା ଅପେକ୍ଷା ଅଧିକତର ଯନ୍ତ୍ରଣାଦାୟକ ଆଘାତ ଥାଇ ନପାରେ । ଦଂଶନ ମୁଁ ଲାଭ କରିଛି ହୃଦୟରେ; ଆପଣମାନେ ତାକୁ ହୃଦୟ କହନ୍ତୁ, ମନ କହନ୍ତୁ, କିମ୍ବା ଅନ୍ୟ ଯେକୌଣସି ନାମ ଦେବେ ତ ଦିଅନ୍ତୁ...।" (୧)

## ୨. ଗାନ୍ଧିଜୀଙ୍କ ନେତୃତ୍ୱରେ କଂଗ୍ରେସ ଏକ ଗତିଶୀଳ ସଂଗଠନରେ ପରିଣତ ହେଲା ।

ପ୍ରଥମ ଥର ପାଇଁ ଗାନ୍ଧି କଂଗ୍ରେସ ସଙ୍ଗଠନରେ ପ୍ରବେଶ କଲେ ଓ ଅନତିବିଳମ୍ବେ ତା'ର ସମ୍ବିଧାନ ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତିତ କଲେ । କଂଗ୍ରେସକୁ ସେ ଏକ ଗଣତାନ୍ତ୍ରିକ ଗଣ-ସଙ୍ଗଠନରେ ପରିଣତ କଲେ । ପୂର୍ବରୁ ଏହା ଗଣତାନ୍ତ୍ରିକ ଅବଶ୍ୟ ଥିଲା; କିନ୍ତୁ ସେଥିରେ ଭୋଟ ଅଧିକାରର କ୍ଷେତ୍ର ଥିଲା ସଙ୍କୁଚିତ ଓ ତାହା କେବଳ ବଡ଼ଲୋକଙ୍କ ଭିତରେ ଆବଦ୍ଧ

(୧) 'ଦି ଫାଇଭ୍ ଡାଏଲଗ୍‌ସ ଅଫ୍ ପ୍ଲାଟୋ' ଗ୍ରନ୍ଥରୁ ।

ଥିଲା । ବର୍ତ୍ତମାନ ଚାଷୀମାନେ କଂଗ୍ରେସର ସଭ୍ୟଶ୍ରେଣୀଭୁକ୍ତ ହେଲେ ଏବଂ ଏହି ନୂଆ ରୂପରେ କଂଗ୍ରେସ ଏକ ବିଶାଳ ଚାଷୀ-ସଙ୍ଗଠନ ଭଳି ପ୍ରତୀତ ହେଲା । ଅବଶ୍ୟ ମଧ୍ୟବିତ୍ତ-ଶ୍ରେଣୀର ଲୋକେ ମଧ୍ୟ ସେଥିରେ ଲକ୍ଷଣୀୟ ସଂଖ୍ୟାରେ ଥିଲେ । କାଳକ୍ରମେ କଂଗ୍ରେସର ଏହି ଚରିତ୍ର ବୃଦ୍ଧିଲାଭ କଲା । ଶିଳ୍ପକ୍ଷେତ୍ରର ଶ୍ରମିକମାନେ ବି ଆସି ଯୋଗଦେଲେ । କିନ୍ତୁ ବ୍ୟକ୍ତିଗତ ଭାବରେ କେବଳ; ସଙ୍ଗଠିତ ଭାବରେ ନୁହେଁ ।

ଏହି ସଙ୍ଗଠନର ଭିତ୍ତି ଓ ଲକ୍ଷ୍ୟ ହେଲା କର୍ମ; ଯେଉଁ କର୍ମ ଶାନ୍ତିପୂର୍ଣ୍ଣ ଉପାୟ ଦ୍ୱାରା ପରିଚାଳିତ । ସେ ପର୍ଯ୍ୟନ୍ତ କେବଳ ଭାଷଣ ଦେବା, ପ୍ରସ୍ତାବ ଗ୍ରହଣ କରିବା କିମ୍ବା ସନ୍ତ୍ରାସ-ବାଦୀ କାର୍ଯ୍ୟକଳାପରେ ଲିପ୍ତ ହେବା ବିକଳ୍ପ କର୍ମ ଭାବରେ ଥିଲା । ଏହି ଉଭୟ ପନ୍ଥା ବାଦ୍ ଦିଆଗଲା ଏବଂ କଂଗ୍ରେସର ମୌଳିକ ନୀତି ସଙ୍ଗେ ଯାଇପାରି ନଥିବାରୁ ସନ୍ତ୍ରାସବାଦର ନିନ୍ଦା କରାଗଲା । କର୍ମର ଏକ ନୂତନ କୌଶଳ ଉଦ୍‌ଭାବନ କରାଗଲା; ଯାହା ସମ୍ପୂର୍ଣ୍ଣ ଭାବରେ ଶାନ୍ତିପୂର୍ଣ୍ଣ ହେଲେ ମଧ୍ୟ, ଯାହା ଅନ୍ୟାୟ ବା ଅବିଚାର ବିବେଚିତ ହେବ ତା' ନିକଟରେ ପଦାନତ ନ ହେବା ସେଥିରେ ରହିଥିଲା ପ୍ରଚ୍ଛନ୍ନ ଭାବରେ । ପରିଣାମ ସ୍ୱରୂପ, ସେଥି ସଙ୍ଗେ ଜଡ଼ିତ ଦୁଃଖ ଓ ଯନ୍ତ୍ରଣା ସ୍ୱେଚ୍ଛାରେ ବରଣ କରିବା । ଗାନ୍ଧି ଥିଲେ ଜଣେ ବିଚିତ୍ର ଶାନ୍ତି-ବାଦୀ; କାରଣ ଗତିଶୀଳ ଶକ୍ତିରେ ପୂର୍ଣ୍ଣ ସେ ଥିଲେ କର୍ମଠ ବ୍ୟକ୍ତି । ଭାଗ୍ୟ ନିକଟରେ ହେଉ କିମ୍ବା ଅସତ୍ ବିବେଚିତ ଯେକୌଣସି ବିଷୟରେ ହେଉ, ମୁଣ୍ଡ ନୁଆଁଇବା ଲୋକ ସେ ନଥିଲେ । ପ୍ରତିରୋଧଶକ୍ତି ତାଙ୍କ ପାଖରେ ପ୍ରବଳ ଭାବରେ ଥିଲା । ଅବଶ୍ୟ ସେ ଶକ୍ତି ଥିଲା ଶାନ୍ତିପୂର୍ଣ୍ଣ ଓ ସୌଜନ୍ୟପୂର୍ଣ୍ଣ ।

କର୍ମର ଆହ୍ୱାନ ଥିଲା ବିବିଧ । ଗୋଟାଏ ଦିଗ ଥିଲା ବିଦେଶୀ ଶାସନର ପ୍ରତିରୋଧ କରିବା ଏବଂ ଅନ୍ୟଦିଗରେ ଥିଲା ଭିତରେ ଥିବା ବିବିଧ ସାମାଜିକ କୁସଂସ୍କାର ବିରୁଦ୍ଧରେ ଲଢ଼ିବା । କଂଗ୍ରେସର ମୌଳିକ ଲକ୍ଷ୍ୟ ଭାରତର ସ୍ୱାଧୀନତା ଓ ଶାନ୍ତିପୂର୍ଣ୍ଣ କର୍ମପନ୍ଥା ବ୍ୟତୀତ ତା'ର ବିବିଧ ପ୍ରୋଗ୍ରାମ ପଛର ମୁଖ୍ୟ ନୀତି ଥିଲା, ଜାତୀୟ ଏକତା ଯେଉଁଥିରେ ସଂଖ୍ୟାଲଘୁ ସମସ୍ୟାର ସମାଧାନ, ଦଳିତ ଜାତି ଉନ୍ନୟନ ଓ ଅସ୍ପୃଶ୍ୟତାର ଅଭିଶାପ ମୋଚନ ଥିଲା ଜଡ଼ିତ ।

ଭୟ, ମର୍ଯ୍ୟାଦା, ଇଚ୍ଛାକୃତ ଅବା ଅନିଚ୍ଛୁକ ଲୋକସହଯୋଗ ଏବଂ କେତେକ ଶ୍ରେଣୀ ଯାହାର ନ୍ୟସ୍ତସ୍ୱାର୍ଥ ଥିଲା ବ୍ରିଟିଶ ଶାସନରେ କେନ୍ଦ୍ରିତ—ଏ ସବୁ ବ୍ରିଟିଶ ଶାସନର ପ୍ରଧାନ ଅବଲମ୍ବନ ଉପଲବ୍ଧି କରି ଗାନ୍ଧି ତାର ଭିତ୍ତି ଉପରେ ଆକ୍ରମଣ କଲେ । ସେ ଡାକଦେଲେ ବ୍ରିଟିଶ-ପ୍ରଦତ୍ତ ଉପାଧି ତ୍ୟାଗ କରିବାପାଇଁ । ସ୍ୱଳ୍ପସଂଖ୍ୟକ ଲୋକ ଉପାଧି ଛାଡ଼ିଥିଲେ ସୁଦ୍ଧା ବ୍ରିଟିଶ-ପ୍ରଦତ୍ତ ଉପାଧି ପ୍ରତି ଥିବା ସମ୍ମାନ ଉଭାଇଗଲା ଏବଂ ତାହା ଅବନତିର ପ୍ରତୀକ ବିବେଚିତ ହେଲା । ନୂତନ କେତେ ମାନ ଓ ମୂଲ୍ୟବୋଧ ସ୍ଥାପିତ ହେଲା ଏବଂ ବଡ଼ଲାଟ ତଥା ଦେଶୀୟ ରାଜନ୍ୟବର୍ଗଙ୍କ ଦରବାରର ଆଡ଼ମ୍ବର ଓ ଆଡ଼ମ୍ବର, ଯାହା ଅତୀତରେ ଭୟ ଓ ବିସ୍ମୟର ଏକ ବିଚିତ୍ର ଚିତ୍ର ସୃଷ୍ଟି କରୁଥିଲା, ଅତ୍ୟନ୍ତ ଭାବରେ ଅତିଶୟ ଉପହାସ୍ୟ ଅଶ୍ଳୀଳ ତଥା ଲଜ୍ଜାକର ହୋଇଉଠିଲା; କାରଣ ତାର ଚତୁପାର୍ଶ୍ୱରେ ବ୍ୟାପ୍ତ ରହିଥିଲା ଜନସାଧାରଣଙ୍କ

ଦରିଦ୍ରତା ଓ ଦୁର୍ବିପାକ । ଧନୀ ଲୋକେ ସେମାନଙ୍କର ସମ୍ପଦ ଆଡ଼ମ୍ବର ସହକାରେ ପ୍ରଦର୍ଶିତ କରିବା ପାଇଁ ଆତୁର ନଥିଲେ । ବାହ୍ୟ ଭାବରେ ଅନ୍ତତଃ ସେମାନଙ୍କ ଭିତରୁ ଅନେକେ ସରଳ ଜୀବନଯାପନର ପନ୍ଥା ଅନୁସରଣ କଲେ ଓ ସେମାନଙ୍କର ପୋଷାକ ସାଧାରଣ ଲୋକଙ୍କ ପୋଷାକଠାରୁ ସେପରି କିଛି ଭିନ୍ନ ନଥିଲା ।

ଗୋଟିଏ ଭିନ୍ନ ତଥା ଅଧିକତର ଶାନ୍ତ ପରମ୍ପରାରେ ପରିପାଳିତ, କଂଗ୍ରେସର ବୟସ୍କ ନେତାମାନେ ଏହିସବୁ ନୂତନ ମାର୍ଗ ସହଜରେ ଗ୍ରହଣ କରିପାରି ନଥିଲେ ଏବଂ ଏ ପ୍ରକାର ଜନଜାଗରଣ ଲାଗି ବିଚଳିତ ହୋଇ ପଡ଼ିଥିଲେ । କିନ୍ତୁ ଦେଶରେ ପ୍ରବାହିତ ବିଚାର ଓ ଭାବନାର ସ୍ରୋତ ଏତେ ପ୍ରବଳ ଥିଲା ଯେ ସେମାନେ ମଧ୍ୟ କେତେ କାଳ ପର୍ଯ୍ୟନ୍ତ ସେହି ଦଶାରେ ପାରିହେଲେ । ମୁଷ୍ଟିମେୟ କେତେ ଜଣ କଂଗ୍ରେସ ଛାଡ଼ି ଚାଲିଗଲେ ଓ ସେମାନଙ୍କ ଭିତରେ ଥିଲେ ମହମ୍ମଦ ଅଲି ଜିନ୍ନା । ହିନ୍ଦୁ-ମୁସ୍‌ଲିମ୍ ପ୍ରଶ୍ନ ଉପରେ କୌଣସି ମତପାର୍ଥକ୍ୟ ଯୋଗୁଁ ସେ କଂଗ୍ରେସ ଛାଡ଼ି ନଥିଲେ; ସେ ଛାଡ଼ିଲେ କାରଣ ଗୋଟିଏ ନୂତନ ତଥା ଅଧିକତର ଅଗ୍ରଗାମୀ ମତବାଦ ସଙ୍ଗେ ପାଦ ମିଳାଇ ଯିବା ପାଇଁ ସେ ସମର୍ଥ ନଥିଲେ । ଅଧିକନ୍ତୁ, ପୋଷାକ-ପରିଚ୍ଛଦ ପ୍ରତି ଉଦାସୀନ, ହିନ୍ଦୁସ୍ତାନୀରେ କଥାବାର୍ତ୍ତା କରୁଥିବା କଂଗ୍ରେସର ସାଧାରଣ ଲୋକଙ୍କପ୍ରତି ତାଙ୍କର ଘୃଣାଭାବ ଥିଲା । ରାଜନୀତି ସମ୍ପର୍କରେ ତାଙ୍କର ଭାବନା ଥିଲା ଭିନ୍ନ ଧରଣର, ଯାହା ବିଧାନସଭାଗୃହ କିମ୍ବା କୌଣସି କମିଟି ପ୍ରକୋଷ୍ଠ ଭିତରେ ହିଁ ଆବଦ୍ଧ ରହିନ୍ତା । କେତେ ବର୍ଷ ପର୍ଯ୍ୟନ୍ତ ରାଜନୀତି କ୍ଷେତ୍ରରୁ ଯେ ନିଜକୁ ସମ୍ପୂର୍ଣ୍ଣ ଭାବରେ ବିଚ୍ଛିନ୍ନ ମନେକରିଥିଲେ ଏବଂ ଭାରତ ଛାଡ଼ି ଚାଲିଯିବା ପାଇଁ ନିଷ୍ପତ୍ତି କଲେ । ଇଂଲଣ୍ଡରେ ବସବାସ କରି ସେଠାରେ କେତେ ବର୍ଷ ଅତିବାହିତ କଲେ ।

କେହି କେହି କହନ୍ତି ଏବଂ ମୁଁ ମନେକରେ, ତାହା ମିଥ୍ୟା ମଧ୍ୟ ହୁଏତ ନୁହେଁ ଯେ ଭାରତୀୟ ମନର ପ୍ରକୃତି ସାରତଃ ଶାନ୍ତ, ନିଷ୍ଫଳ । ସମ୍ଭବତଃ ପ୍ରାଚୀନ ଜାତିମାନଙ୍କର ଜୀବନ ପ୍ରତି ଏପରି ଏକ ଦୃଷ୍ଟିଭଙ୍ଗୀ ବଢ଼ିଉଠିଥାଏ । ଦର୍ଶନର ଏକ ଦୀର୍ଘ ପରମ୍ପରା ମଧ୍ୟ ଏ ପ୍ରକାର ମନୋଭାବ ସୃଷ୍ଟି କରିଥାଏ । କିନ୍ତୁ ଗାନ୍ଧି ପ୍ରାଚୀନ ଭାରତୀୟ ଛାଞ୍ଚରେ ଗଢ଼ାହୋଇଥିଲେ ସୁଦ୍ଧା ତାଙ୍କୁ ସେ ପ୍ରକାର ଔଦାସ୍ୟ ଅଥବା ବୈରାଗ୍ୟ ସ୍ପର୍ଶ କରିନାହିଁ । ଶକ୍ତି ଓ କର୍ମରେ ସେ ଅତିକାୟ, ସମସ୍ତ ପ୍ରତି ସଚେତନ ଏବଂ ସେ ନିଜକୁ କେବଳ ଯେ ଆଗକୁ ଚଳାଇନିଅନ୍ତି ତା' ନୁହେଁ, ଅନ୍ୟମାନଙ୍କୁ ମଧ୍ୟ ସେହି ପ୍ରେରଣାରେ ଉଦ୍‌ବୁଦ୍ଧ କରନ୍ତି । ମୁଁ ଭଲଭାବରେ ଜାଣେ, ଭାରତୀୟ ଜନସାଧାରଣଙ୍କ ଏହି ମାନସିକ ଔଦାସ୍ୟ ବିରୁଦ୍ଧରେ ଲଢ଼ି ତାହା ଦୂର କରିବା ଦିଗରେ ଅନ୍ୟମାନଙ୍କ ଅପେକ୍ଷା ସେ ବହୁତ କିଛି ଅଧିକ କରିଚନ୍ତି ।

ଆମକୁ ସେ ପଠାଇଲେ ଗ୍ରାମାଞ୍ଚଳକୁ । ଏହି ନୂତନ କର୍ମଯୋଗର ଅଗଣିତ ବାର୍ତ୍ତାବହଙ୍କ କ୍ରିୟାକଳାପରେ ଗ୍ରାମାଞ୍ଚଳ ଚଞ୍ଚଳ ହୋଇଉଠିଲା । ଅଗଣିତ ବର୍ଷର ପାରମ୍ପରିକ ଆଶ୍ରୟ ଛାଡ଼ି କୃଷୀ ବାହାରକୁ ଆସିଲା ଜଣେ ନୂତନ ମନୀଷ ଭାବରେ । ଏହି କର୍ମପ୍ରବଣତାର ପ୍ରଭାବ ଆମ ଉପରେ ଭିନ୍ନ ଭାବରେ ପଡ଼ିଥିଲେ ସୁଦ୍ଧା ତାହା ଥିଲା ଦୂରପ୍ରସାରୀ; କାରଣ ଯୁକ୍ତିର ପ୍ରେରିତ ଦ୍ୱାରା ନିରନ୍ତର ତାଡ଼ିତ, ପ୍ରଥମଥର ପାଇଁ ଆମେ ଗ୍ରାମବାସୀଙ୍କୁ ଅନ୍ତରଙ୍ଗ ଭାବରେ

ଦେଖିଲୁ ତା'ର ଆଶ୍ରୟ ମାଟି-ଝାଟିର କୁଡ଼ିଆ ଭିତରେ । ବିଭିନ୍ନ ଗ୍ରନ୍ଥ ଅଧ୍ୟୟନ କରି ଓ ପଣ୍ଡିତମାନଙ୍କ ସଙ୍ଗେ ଚର୍ଚ୍ଚା କରି ଭାରତୀୟ ଅର୍ଥନୀତି ସମ୍ପର୍କରେ ଆମେ ଯେଉଁ ଜ୍ଞାନ ଆହରଣ କରିପାରି ନଥିଲୁ, ଗ୍ରାମାଞ୍ଚଳରେ ବୁଲି ତାହା ଅନାୟାସରେ ଲାଭ କଲୁ । ଯେଉଁ ଭାବଗତ ଅଭିଜ୍ଞତା ପୂର୍ବରୁ ଆମର ଘଟିସାରିଥିଲା ତାହା ବର୍ତ୍ତମାନ କର୍ମକ୍ଷେତ୍ରରେ ପ୍ରମାଣିତ ହେଲା ଏବଂ ପରବର୍ତ୍ତୀ କାଳରେ ଆମର ଅଭିମତ ଯେତେ ଭାବରେ ପରିବର୍ତ୍ତିତ ହେଲେ ସୁଦ୍ଧା ଆମର ଅଭ୍ୟସ୍ତ ପୁରାତନ ଜୀବନ କିମ୍ବା ପୁରାତନ ମାନଦଣ୍ଡକୁ ଫେରିଯିବାର ଅବକାଶ ଆଉ ନଥିଲା ।

ଅର୍ଥନୈତିକ, ସାମାଜିକ ଓ ଅନ୍ୟାନ୍ୟ ବିଷୟରେ ଗାନ୍ଧି ଦୃଢ଼ମତ ପୋଷଣ କରିଥାନ୍ତି । ଏ ସବୁ ବିଷୟରେ ତାଙ୍କର ବିଚାରଧାରା ଅନବରତ ବିସ୍ତୃତି ଲାଭ କରୁଥିଲେ ସୁଦ୍ଧା, ଲେଖିଲାବେଳେ ସେହି ପ୍ରକ୍ରିୟା ଭିତରେ କେବେ କେଉଁଠି ସାମାନ୍ୟ ପରିବର୍ତ୍ତନ ମଧ୍ୟ ଘଟୁଥିଲା । କିନ୍ତୁ କଂଗ୍ରେସ ଉପରେ ସେସବୁ ଲଦିଦେବା ପାଇଁ ସେ କେବେ ପ୍ରୟାସ କରିନାହାନ୍ତି ଯଦିଓ ସେଥିରୁ କିଛି କିଛି କଂଗ୍ରେସ ଭିତରେ ପ୍ରବେଶ କରାଇବା ପାଇଁ ସେ ଚେଷ୍ଟା କରିଛନ୍ତି । ଖୁବ୍ ଜଗି ରଖି ସେ ଆଗଉଥିଲେ; କାରଣ ଜନସାଧାରଣଙ୍କୁ ସାଥିରେ ନେଇକରି ଯିବା ଥିଲା ତାଙ୍କର ଅଭିଳାଷ । ତାଙ୍କର କୌଣସି ବିଚାରକୁ ସମ୍ପୂର୍ଣ୍ଣ ଭାବରେ ସମସ୍ତେ ଗ୍ରହଣ କରି ନଥାନ୍ତି । କେତେ ସେହି ମୌଳିକ ଦୃଷ୍ଟିଭଙ୍ଗୀ ସଙ୍ଗେ ଏକମତ ନଥିଲେ; କିନ୍ତୁ ପ୍ରଚଳିତ ଅବସ୍ଥା ସଙ୍ଗେ ଚଳିପାରିବା ଭଳି ସାମାନ୍ୟ ଭାବରେ ପରିବର୍ତ୍ତିତ ଆକାରରେ ଯାହା କଂଗ୍ରେସ ଭିତରକୁ ଆସୁଥିଲା ତାକୁ ଅନେକେ ଗ୍ରହଣ କରିଯାଉଥିଲେ । ଦୁଇଟି ଦିଗରେ ତାଙ୍କର ଚିନ୍ତାର ପୃଷ୍ଠଭୂମି ଅସ୍ପଷ୍ଟ ହେଲେ ବି ପ୍ରଭୂତ ପ୍ରଭାବ ପକାଉଥିଲା । ପ୍ରତ୍ୟେକ ବିଷୟର ପ୍ରଧାନ କଥା ହେଲା, ଜନସାଧାରଣ ସେଥିରୁ କେତେଭଳି ଲାଭବାନ ହେଉଛନ୍ତି ଏବଂ ଲକ୍ଷ୍ୟ ଠିକ୍ ବୋଲି ଜଣାଯାଉଥିଲେ ସୁଦ୍ଧା ସେଥିରେ ଉପନୀତ ହେବାର ଉପାୟ ହେଉଛି ପ୍ରଧାନ ଓ ତାକୁ ଅବଜ୍ଞା କରାଯାଇ ନପାରେ, କାରଣ ଉପାୟର ପ୍ରଭାବ ଲକ୍ଷ୍ୟ ଉପରେ ପଡ଼ିଥାଏ ଓ ସେଥିରେ ପରିବର୍ତ୍ତନ ବି ଆଣିଥାଏ ।

ସାରତଃ, ଗାନ୍ଧି ଜଣେ ଧାର୍ମିକ ବ୍ୟକ୍ତି । ତାଙ୍କର ଅସ୍ତିତ୍ୱର ଅନ୍ତଃସ୍ଥଳ ପର୍ଯ୍ୟନ୍ତ ସେ ଜଣେ ହିନ୍ଦୁ । ତଥାପି ଧର୍ମ ସମ୍ପର୍କରେ ତାଙ୍କର ଅବଧାରଣାରେ କୌଣସି ଅନ୍ଧବିଶ୍ୱାସ, ପ୍ରଥା ଅଥବା କର୍ମକାଣ୍ଡର ଚଳେମାତ୍ର ସମ୍ପର୍କ ନାହିଁ । (୧) ମୂଳତଃ, ତାଙ୍କର ଧର୍ମଧାରଣା ନୈତିକବିଧାନ

(୧) ଦୀର୍ଘ ଦିନର ଅଧ୍ୟୟନ ଓ ଅଭିଜ୍ଞତା ଫଳରେ ମୁଁ ଏହି ମୀମାଂସାରେ ଉପନୀତ ହୋଇପାରିଛି ଯେ : ୧. ସବୁ ଧର୍ମ ସତ୍ୟ; ୨. ପ୍ରତ୍ୟେକ ଧର୍ମରେ କିଛି ନା କିଛି ତ୍ରୁଟି ରହିଛି; ୩. ମୋର ହିନ୍ଦୁଧର୍ମ ଭଳି ସବୁ ଧର୍ମ ମୋର ସମାନ ଭାବରେ ପ୍ରିୟ । ମୁଁ ମୋର ନିଜ ଧର୍ମ ପ୍ରତି ଯେପରି, ସେପରି ସବୁ ଧର୍ମପ୍ରତି ଶ୍ରଦ୍ଧାବାନ୍ । ଫଳତଃ, ଧର୍ମାନ୍ତରଣ ବିଚାର ମତେ କେବେ ସ୍ପର୍ଶ କରିନି । 'ପରମେଶ୍ୱର ! ମତେ ଯେଉଁ ଆଲୋକ ଦାନ କରିଛ, ତାହା ଅନ୍ୟମାନଙ୍କୁ ଦାନ କର'—ଆମର ପ୍ରାର୍ଥନା ଏପରି ହେବା

ଉପରେ ତାଙ୍କର ଦୃଢ଼ବିଶ୍ୱାସ ସଙ୍ଗେ ଜଡ଼ିତ, ଯାହାକୁ ସେ ପ୍ରେମ ବା ସତ୍ୟର ବିଧାନ ଭାବରେ ନାମିତ କରିଚନ୍ତି । ସତ୍ୟ ଓ ଅହିଂସା ତାଙ୍କ ଦୃଷ୍ଟିରେ ଅଖଣ୍ଡ କିମ୍ବା ଗୋଟିକର ଦୁଇଟି ବିଭବ ଏବଂ ଏହି ଦୁଇଟି ଶବ୍ଦକୁ ସେ ପ୍ରାୟ ଏକା ଅର୍ଥରେ ବ୍ୟବହାର କରିଥାନ୍ତି । ହିନ୍ଦୁ ଧର୍ମର ପ୍ରକୃତ ତତ୍ତ୍ୱ ସେ ହୃଦ୍‌ବୋଧ କରିଚନ୍ତି ବୋଲି ଦାବିକରି, ସେ ଶାସ୍ତ୍ର ହେଉ କି ଅଭ୍ୟାସ ହେଉ ଯାହା ତାଙ୍କର ଆଦର୍ଶବାଦୀ ବ୍ୟାଖ୍ୟା ସଙ୍ଗେ ଖାପ ଖାଏନି ଅର୍ଥାତ୍ ତାହା ଯେପରି ହେବାର କଥା ତାଙ୍କର ବ୍ୟାଖ୍ୟା ଅନୁସାରେ ସେପରି ଯଦି ନହେଇଚି, ତାକୁ ପ୍ରକ୍ଷେପ ଅଥବା ପରବର୍ତ୍ତୀକାଳର ପରିବର୍ଦ୍ଧନ ଆଖ୍ୟା ଦେଇ ସେ ପ୍ରତ୍ୟାଖ୍ୟାନ କରିଥାନ୍ତି । "ଯାହା ମୁଁ ବୁଝି ନପାରୁଚି କିମ୍ବା ଗୋଟିଏ ନୈତିକ ଭିତ୍ତି ଉପରେ ପ୍ରତିଷ୍ଠା କରି ନପାରୁଚି ସେପରି କୌଣସି ପୂର୍ବଦୃଷ୍ଟାନ୍ତ କିମ୍ବା ଅଭ୍ୟାସର ଦାସ ହେବାପାଇଁ ମୁଁ ପ୍ରସ୍ତୁତ ନୁହେଁ," ସେ କହିଚନ୍ତି । ଅତଏବ, ଅଭ୍ୟାସ ବିଷୟରେ ନିଜର ମନମୁତାବକ ପନ୍ଥା ବାଛିନେବାରେ, ସେଥି ସଙ୍ଗେ ନିଜକୁ ଖାପ ଖୁଆଇବା ସକାଶେ ଆବଶ୍ୟକୀୟ ଭାବରେ ନିଜେ ପରିବର୍ତ୍ତିତ ହେବାରେ, ତାଙ୍କର କର୍ମଯୋଗ ତଥା ଜୀବନ-ଦର୍ଶନ ସମ୍ପ୍ରସାରିତ କରିବାରେ ସେ ଅସାଧାରଣ ଭାବରେ ସ୍ୱତନ୍ତ୍ର । ତେବେ ତାଙ୍କର ଧାରଣାର ନୈତିକ ବିଧାନ ସଙ୍ଗେ ତାର ବିରୋଧିତା ନଥିଲେ ହେଲା । ସେହି ଦର୍ଶନ ଯଥାର୍ଥ କି ଭ୍ରାନ୍ତ, ତା'ରି ଉପରେ ଯୁକ୍ତି କରାଯାଇପାରେ; କିନ୍ତୁ ପ୍ରତ୍ୟେକ ବିଷୟରେ, ବିଶେଷତଃ ନିଜ ସମ୍ପର୍କରେ, ସେହି ମୌଳିକ ମାପଦଣ୍ଡ ପ୍ରୟୋଗ କରିବାପାଇଁ ସେ ଜିଦ୍ ଧରିଥାନ୍ତି । ଜୀବନର ଅନ୍ୟାନ୍ୟ ବିଭାବରେ ଯେପରି, ରାଜନୀତିରେ ମଧ୍ୟ ସେପରି ଜଣେ ସାଧାରଣ ବ୍ୟକ୍ତି ପକ୍ଷରେ ଏହା ନାନା ଅସୁବିଧା ଓ ବହୁଧା ଭୁଲ ବୁଝାମଣା ସୃଷ୍ଟି କରେ; କିନ୍ତୁ ନିର୍ଦ୍ଦିଷ୍ଟ ସୀମା ଭିତରେ, ଗୋଟାଏ ପରିବର୍ତ୍ତିତ ଅବସ୍ଥା ସଙ୍ଗେ ସେ ବରାବର ନିଜକୁ ଅଭିଯୋଜିତ କରୁଥିଲେ ସୁଦ୍ଧା, କେତେ ବଡ଼ ଅସୁବିଧା ହେଉନା କାହିଁକି ସେ ତାଙ୍କର ନିର୍ବାଚିତ ପଥ କେବେ ଛାଡ଼ିନାହାନ୍ତି । ଯେଉଁ ସଂସ୍କାର ସେ ସୂଚିତ କରନ୍ତି, ଯେଉଁ ଉପଦେଶ ସେ ଅନ୍ୟମାନଙ୍କୁ ଦିଅନ୍ତି, ସର୍ବପ୍ରଥମେ ସେ ତାହା ନିଜ ଉପରେ ପ୍ରୟୋଗ କରିଥାନ୍ତି । ଅନ୍ୟମାନେ କରନ୍ତୁ ବୋଲି ସେ ଯାହା ଚାହାନ୍ତି, ସର୍ବଦା ସେ ତାହା ନିଜଠାରୁ ଆରମ୍ଭ କରନ୍ତି ଏବଂ ତାଙ୍କର ବଚନ ଓ କର୍ମରେ ତିଳେ ହେଲେ ଭେଦ ନଥାଏ । ଅତଏବ, ଯେତେ ଯାହା ଘଟୁନା କାହିଁକି, ସେ କେବେ-ହେଲେ ତାଙ୍କର ବ୍ୟକ୍ତିତ୍ୱର ଗ୍ଲାନି ଘଟାଇ ନାହାନ୍ତି ଏବଂ ତାଙ୍କର ଜୀବନ ଓ କର୍ମରେ ସର୍ବଦା ଏକ ସଜୀବ ପୂର୍ଣ୍ଣତା ବିଦ୍ୟମାନ ଥାଏ । ଏପରିକି ଯେଉଁ କାର୍ଯ୍ୟରେ ସେ ସଫଳ ହେଇ-ନାହାନ୍ତି ବୋଲି ଦେଖାଯାଇଚି, ସେଥିରେ ମଧ୍ୟ ତାଙ୍କର ମହତ୍ତ୍ୱ ବୃଦ୍ଧି ପାଇଚି ।

ନିଜର କଳ୍ପନା ଓ ଆଦର୍ଶ ଅନୁସାରେ ଯେଉଁ ଭାରତକୁ ଗଢ଼ିବାପାଇଁ ସେ ଚାହାଁରିଚନ୍ତି

---

କଦାପି ଉଚିତ ନୁହେଁ । ଆମର ପ୍ରାର୍ଥନା ହେବ : 'ପରମେଶ୍ୱର ! ସେମାନଙ୍କର ପରମ ଉନ୍ନତି ନିମନ୍ତେ ପ୍ରୟୋଜନୀୟ ସମସ୍ତ ଆଲୋକ ଓ ସତ୍ୟ ସେମାନଙ୍କୁ ଦାନକର ।'— 'ଫେଡ଼େରେସନ ଅଫ୍ ଇଣ୍ଟର୍-ନେସନାଲ୍ ଫେଲୋସିପ୍‌ସ' ସଭାରେ ପ୍ରଦତ୍ତ ଭାଷଣରୁ (ଜାନୁୟାରୀ, ୧୯୨୮) ।

ସେ ସମ୍ବନ୍ଧେ ତାଙ୍କର ଧାରଣା କଅଣ ? "ମୁଁ ସେପରି ଏକ ଭାରତ ପାଇଁ କାର୍ଯ୍ୟ କରିବି ଯେଉଁଠି ଦରିଦ୍ରତମ ଲୋକେ ବି ଅନୁଭବ କରି ପାରିବେ ଯେ ସେଇଟା ସେମାନଙ୍କର ଦେଶ; ଯାହାକୁ ଗଢ଼ିବା ଦିଗରେ ସେମାନେ ଉପେକ୍ଷିତ ହୋଇ ନାହାନ୍ତି, ସେପରି ଏକ ଭାରତ ଯେଉଁଠି କୌଣସି ଉଚ୍ଚଶ୍ରେଣୀ ଓ ନିମ୍ନଶ୍ରେଣୀ ନଥିବେ; ଯେଉଁଠି ସମ୍ପ୍ରଦାୟ ସମ୍ପ୍ରଦାୟ ଭିତରେ ଥିବ ପ୍ରୀତି ଓ ମୈତ୍ରୀ···ସେପରି ଏକ ଭାରତରେ ଅସ୍ପୃଶ୍ୟତାର ଅଭିଶାପ କିମ୍ବା ମାଦକ ଦ୍ରବ୍ୟର ଅଭିଶାପ ପାଇଁ କ୍ଷେତ୍ର ନଥିବ···ସ୍ତ୍ରୀମାନେ ପୁରୁଷମାନଙ୍କ ସଙ୍ଗେ ସମାନ ଅଧିକାର ପାଇବେ । ଏହା ହେଉଛି ମୋର ସ୍ୱପ୍ନର ଭାରତ ।" ନିଜର ହିନ୍ଦୁ ଉତ୍ତରାଧିକାର ପ୍ରତି ତାଙ୍କର ଅଭିମାନ ଯେହେତୁ ଥିଲା, ସେ ହିନ୍ଦୁ ଧର୍ମକୁ ଗୋଟାଏ ପ୍ରକାର ସାର୍ବଜନୀନ ପରିଚ୍ଛଦରେ ଭୂଷିତ କରିବାର ପ୍ରୟାସ କଲେ ଓ ସତ୍ୟର ଧର୍ମ ଭିତରେ ପୃଥିବୀର ସବୁ ଧର୍ମକୁ ସମ୍ମିଳିତ କରିନେଲେ । ତାଙ୍କର ସାଂସ୍କୃତିକ ଉତ୍ତରାଧିକାରକୁ ସଙ୍କୀର୍ଣ୍ଣ କରିବାପାଇଁ ସେ ପ୍ରସ୍ତୁତ ନଥିଲେ । "ଭାରତୀୟ ସଂସ୍କୃତି", ସେ ଲେଖିଚନ୍ତି "ସମ୍ପୂର୍ଣ୍ଣଭାବରେ ହିନ୍ଦୁ, ଇସଲାମ୍ କିମ୍ବା ଅନ୍ୟ କୌଣସି ଧର୍ମର ଏକ ସମନ୍ୱୟ ।" ସେ ପୁଣି କହିଚନ୍ତି : "ମୋର ଘର ଭିତରେ ସବୁ ଦେଶର ସଂସ୍କୃତି, ଯେତେ ମୁକ୍ତଭାବରେ ହୋଇପାରୁଛି, ସଞ୍ଚାଳିତ ହେଉ ବୋଲି ମୋ'ର ଇଚ୍ଛା । କିନ୍ତୁ ସେହି ସଞ୍ଚାଳନର ପ୍ରବଳତାରେ ମୁଁ ଉଡ଼ିଯିବାକୁ ରାଜି ନୁହେଁ । ଅନ୍ୟ ଲୋକଙ୍କ ଘରେ ଜଣେ ଅବାଞ୍ଛିତ ବ୍ୟକ୍ତି ଭାବରେ, ଭିକାରୀ ଭାବରେ କିମ୍ବା ଦାସ ଭାବରେ ରହିବା ପାଇଁ ମୁଁ ରାଜି ନୁହେଁ ।" ଆଧୁନିକ ବିଚାରଧାରାର ପ୍ରଭାବ ତାଙ୍କ ଉପରେ ପଡ଼ିଥିଲେ ସୁଦ୍ଧା ସେ ନିଜର ଚେର କଟିଯିବାକୁ ଦେଇନାହାନ୍ତି; ବରଂ ତାକୁ ଅଧିକତର ଦୃଢ଼ତାର ଅବଲମ୍ବନ କରିଚନ୍ତି । ଅତଏବ, ଜନସାଧାରଣଙ୍କର ଆଧ୍ୟାତ୍ମିକ ଏକତା ପୁନର୍ବାର ବିଧାନ କରିବା ପାଇଁ, ଉପରସ୍ତରରେ ଥିବା କ୍ଷୁଦ୍ର ପାଶ୍ଚାତ୍ୟପ୍ରଣୋଦିତ ଗୋଷ୍ଠୀ ଓ ଜନସାଧାରଣଙ୍କ ମଧ୍ୟରେ ଗଢ଼ି ଉଠିଥିବା ପ୍ରାଚୀର ଭାଙ୍ଗିବା ପାଇଁ, ପ୍ରାଚୀନ-ତାର ଅବଲମ୍ବନ ଭିତରୁ ଜୀବନ୍ତ ଯାହା କିଛି ଆବିଷ୍କାର କରି ସେଥି ଉପରେ ନୂତନ କରି ଗଢ଼ିବା ପାଇଁ, ଜନସାଧାରଣଙ୍କୁ ସେମାନଙ୍କର ବ୍ୟାମୋହ ଓ ଗତିଶୂନ୍ୟ ଅବସ୍ଥାରୁ ଜାଗରିତ କରି ସେମାନଙ୍କୁ ଗତିଶୀଳ କରିବା ପାଇଁ ସେ ବାହାରିଲେ । ତାଙ୍କର ଏକପଥଦର୍ଶୀ ଅଥଚ ବହୁପାର୍ଶ୍ୱିକ ପ୍ରକୃତିରୁ ଯେଉଁ ସ୍ପଷ୍ଟ ଧାରଣା ମିଳେ ତାହା ହେଉଛି ଦେହ ଓ ମନରେ ଜନସାଧାରଣଙ୍କ ସଙ୍ଗେ ତାଙ୍କର ଅଭେଦ୍ୟ ମିଳନ । ଆଉ ଭାରତ କେବଳ ନୁହେଁ ସମଗ୍ର ବିଶ୍ୱର ବଞ୍ଚିତ ଓ ଦୀନଙ୍କ ସଙ୍ଗେ ଏକ ବିସ୍ମୟକର ଏକତ୍ୱବୋଧ । ଅନ୍ୟ ସବୁ କିଛି ଭଲ ଧର୍ମ ମଧ୍ୟ ଏହି ନିମଜ୍ଜିତ ଲୋକଙ୍କୁ ଉତ୍ତୋଳିତ କରିବା ନିମନ୍ତେ ତାଙ୍କର ଉତ୍କଣ୍ଠା ନିକଟରେ ଗୌଣ ପ୍ରତୀତ ହୁଏ । "ଗୋଟାଏ କ୍ଷୁଧାପୀଡ଼ିତ ଜାତିର ନା ରହିପାରେ ଧର୍ମ, ନା କଳା, ନା ସଙ୍ଗଠନ ।" "ଭାରତର କୋଟି କୋଟି ଅନାହାରୀ ଲୋକଙ୍କ ପକ୍ଷରେ ଯାହା ଉପଯୋଗୀ ହୋଇପାରେ ତାହା ହିଁ ମୋ' ଦୃଷ୍ଟିରେ ସୁନ୍ଦର । ପ୍ରଥମେ ଜୀବନ ଧରିବା ପାଇଁ ଯାହା କିଛି ଅପରିହାର୍ଯ୍ୟ ତାହା ଆଜି ଦିଆଯାଉ । ଅନାୟାସରେ ଜୀବନର ସବୁକିଛି ଲାବଣ୍ୟ ଓ ଭୂଷଣ ଆପେ ଆପେ ପ୍ରକଟିତ ହେବ ।···ମୁଁ ଚାହେଁ ସେହି କଳା ଓ ସାହିତ୍ୟ ଯାହା କୋଟି କୋଟି

ଲୋକଙ୍କର ବୋଧଗମ୍ୟ ହେବ ।” ଏହି ଦୁଃଖୀ, ବଂଚିତ ଜନସାଧାରଣ ତାଙ୍କୁ ଚକିତ କରିଥାନ୍ତି ଏବଂ ସେମାନଙ୍କୁ ହିଁ କେନ୍ଦ୍ର କରି ସବୁ କିଛି ଘୂରିବା ଭଳି ତାଙ୍କୁ ପ୍ରତୀତ ହେଉଥାଏ । କୋଟି କୋଟି ଲୋକଙ୍କ ପାଇଁ ଏହା ଏକ ଚିରନ୍ତନ ବିନିଦ୍ରତା କିମ୍ବା ଏକ ଚିରନ୍ତନ ସମ୍ମୋହ । “ପ୍ରତ୍ୟେକ ନୟନରୁ ପ୍ରତ୍ୟେକ ଅଶ୍ରୁବିନ୍ଦୁ ପୋଛିନେବା ।” ତାଙ୍କର ଉଚ୍ଚ ଅଭିଳାଷ ବୋଲି ସେ କହନ୍ତି ।

ଅଦ୍‌ଭୁତ ଧରଣର ଶକ୍ତି ଓ ଆତ୍ମବିଶ୍ୱାସରେ ପୂର୍ଣ୍ଣ, ବ୍ୟକ୍ତି ବ୍ୟକ୍ତି ଭିତରେ ସମାନତା ଓ ବ୍ୟକ୍ତି ସ୍ୱତନ୍ତ୍ରତାର ଦୃଢ଼ ପକ୍ଷପାତୀ; କିନ୍ତୁ ଏ ସମସ୍ତକୁ ଦରିଦ୍ରତମ ଲୋକଙ୍କ କଲ୍ୟାଣ ଦୃଷ୍ଟିରୁ ଯିଏ ବିଚାର କରିଥାନ୍ତି, ଅତି ବିସ୍ମୟକର ଭାବରେ ପ୍ରାଣବନ୍ତ ଏହି ବ୍ୟକ୍ତି ଭାରତୀୟ ଜନତାର ମନକୁ ଯେ ମୁଗ୍ଧ କରି ପାରିଲେ ଓ ସେମାନଙ୍କୁ ଚୁମ୍ବକ ଭଳି ନିଜ ଆଡ଼କୁ ଆକର୍ଷିତ କରି ପାରିଲେ, ଏଥିରେ ଆଚମ୍ବିତ ହେବାର କିଛି ନାହିଁ । ଜନସାଧାରଣଙ୍କ ଦୃଷ୍ଟିରେ ସେ ଦେଖାଦେଲେ ଅତୀତ ସଙ୍ଗେ ଭବିଷ୍ୟତର ଅପୂର୍ବ ସଂଯୋଜକ ଭାବରେ । ଭବିଷ୍ୟତର ଜୀବନ ଓ ଆଶା ନିମନ୍ତେ ନିରାନନ୍ଦମୟ ଏହି ବର୍ତ୍ତମାନ ଯେ ଏକ ନିଶ୍ଚିତ ପଦକ୍ଷେପ ସେ ବିଶ୍ୱାସ ଗାନ୍ଧି ସେମାନଙ୍କର ମନରେ ସଞ୍ଚାର କରି ପାରିଲେ । ଗୋଟାଏ ଜୀବନର ଅଭ୍ୟାସ ପରିବର୍ତ୍ତନ କରିବା କଷ୍ଟକର ହେଉଥିଲେ ସୁଦ୍ଧା ଏବଂ ସେମାନଙ୍କର ମନ ବହୁଧା ଅଶାନ୍ତ ଓ ବିଶୃଙ୍ଖଳ ହେଉଥିଲେ ସୁଦ୍ଧା, ଜନସାଧାରଣ କେବଳ ନୁହନ୍ତି, ବୁଦ୍ଧିଜୀବୀ ଓ ଅନ୍ୟାନ୍ୟ ଶ୍ରେଣୀର ଲୋକେ ମଧ୍ୟ ଗାନ୍ଧିଜୀଙ୍କ କଳ୍ପିତ ଭବିଷ୍ୟତ ଉପରେ ଆଶାବାନ ଥିଲେ । ଏପରି ଭାବରେ ତାଙ୍କର ଅନୁଗାମୀମାନଙ୍କ ମଧ୍ୟରେ କେବଳ ନୁହେଁ, ତାଙ୍କର ପ୍ରତିପକ୍ଷ ଏବଂ ସେହି ସବୁ ନିରପେକ୍ଷ ବ୍ୟକ୍ତି ଯେଉଁମାନେ ନିଜର କର୍ତ୍ତବ୍ୟ ସମ୍ପର୍କରେ ନିଶ୍ଚିତ ହେଇପାରୁ ନଥିଲେ,.ସମସ୍ତଙ୍କ ଭିତରେ ଏକ ବିପୁଳ ମନସ୍ତାତ୍ତ୍ୱିକ ବିପ୍ଳବ ସେ ସୃଷ୍ଟି କରି ପାରିଲେ ।

କଂଗ୍ରେସ ଉପରେ ଗାନ୍ଧିଜୀଙ୍କ ଆଧିପତ୍ୟ ଯଦିଓ ବିସ୍ତୃତ ଥିଲା, ତଥାପି ସେ ଆଧିପତ୍ୟ ବଡ଼ ବିଚିତ୍ର ଧରଣର; କାରଣ କଂଗ୍ରେସ ଥିଲା ମତସଙ୍କୁଳ, ସହଜରେ କୌଣସି ଏକ ଦିଗରେ ଯିବା ପାଇଁ କୁଣ୍ଠିତ, ଗୋଟାଏ କର୍ମ-ଚଞ୍ଚଳ, ବିଦ୍ରୋହଭାବାପନ୍ନ, ବହୁମୁଖୀ ସଙ୍ଗଠନ । ଅନ୍ୟମାନଙ୍କର ଇଚ୍ଛା ସଙ୍ଗେ ମିଳିତ ହେବାପାଇଁ ଗାନ୍ଧିଜୀ ବହୁଧା ତାଙ୍କର ନିଷ୍ପତ୍ତି କୋହଳ କରୁଥିଲେ କେବଳ ନୁହେଁ, ବେଳେବେଳେ ତାଙ୍କର ମତବିରୋଧୀ ନିଷ୍ପତ୍ତିକୁ ମଧ୍ୟ ମାନି ନେଉଥିଲେ । କିନ୍ତୁ ଯେଉଁ ବିଷୟରେ ସେ ମନେକରୁଥିଲେ ଯେ ତାଙ୍କର ନିଷ୍ପତ୍ତି ଚୂଡ଼ାନ୍ତ, ସେଥିରେ ସେ ଅଟଳ ରହୁଥିଲେ ଏବଂ ଏଥିଲାଗି ଏକାଧିକ ଅବସରରେ କଂଗ୍ରେସ ଓ ତାଙ୍କ ଭିତରେ ଅପଡ଼ ହେଇଯାଇଚି । କିନ୍ତୁ ସର୍ବଦା ସେ ଥିଲେ ଭାରତର ସ୍ୱାଧୀନତା ଓ ଯୁଯୁତ୍ସୁ ଜାତୀୟତାବାଦର ପ୍ରତୀକ । ଭାରତକୁ ଯେଉଁମାନେ ଦାସତ୍ୱର ବେଡ଼ି ପିନ୍ଧାଇବାକୁ ଚାହାନ୍ତି, ସେମାନଙ୍କର ସେ ଅନମନୀୟ ପ୍ରତିପକ୍ଷୀ ଏବଂ ଏଥିଲାଗି ମୁଖ୍ୟତଃ ଲୋକେ ଅନ୍ୟାନ୍ୟ ବିଷୟରେ ତାଙ୍କ ସଙ୍ଗେ ଏକମତ ନହେଲେ ସୁଦ୍ଧା ତାଙ୍କର ନେତୃତ୍ୱ ମାନି ନେଉଥିଲେ । ଆନ୍ଦୋଳନ ନଥିଲାବେଳେ, ସବୁ ସମୟରେ, ସେମାନେ ତାଙ୍କର ନେତୃତ୍ୱ ଗ୍ରହଣ କରି ନାହାନ୍ତି; କିନ୍ତୁ ସଂଘର୍ଷ ଅନିବାର୍ଯ୍ୟ ବୋଲି ଯେବେ ଜଣାଯାଇଚି ଦେଶ ଦୃଷ୍ଟିରେ ସେହି

ପ୍ରତୀକ ହିଁ ସର୍ବ ପ୍ରଧାନ ହୋଇ ଉଠିଛି । ବାକି ଯେତେ ସବୁ ପଛକୁ ହଟିଯାଇଛି ।

ଏପରି ଭାବରେ, ଖ୍ରୀ: ୧୯୨୦ରେ ଜାତୀୟ କଂଗ୍ରେସ ଓ କେତେ ପର୍ଯ୍ୟନ୍ତ ଭାରତ ମଧ୍ୟ ଏହି ନୂତନ ତଥା ଅଜ୍ଞାତ ପଥ ଅନୁସରଣ କରି ବାରମ୍ବାର ବ୍ରିଟିଶ ଶକ୍ତି ସଙ୍ଗେ ସଂଗ୍ରାମରେ ରତ ହେଲା । ଏହିସବୁ ନୂତନ ଉପାୟରେ ଓ ସେ ସମୟରେ ଉପୁଜିଥିବା ନୂତନ ପରିସ୍ଥିତିରେ ଏହି ସଂଘର୍ଷ ନିହିତ ଥିଲା । ତଥାପି, ଏସବୁ ପଛରେ କୌଣସି ରାଜନୈତିକ କୌଶଳ କିମ୍ବା ଷଡ଼ଯନ୍ତ୍ର ନଥିଲା । ଯାହା ଥିଲା, ତାହା ହେଉଛି ଭାରତର ଲୋକଙ୍କୁ ବଳିଷ୍ଠ କରିବାର ଅଭିଳାଷ । କାରଣ ସେହି ବଳ ଦ୍ୱାରା କେବଳ ସେମାନେ ସ୍ୱାଧୀନତା ହାସଲ କରି ପାରିବେ ଓ ତାହା ରକ୍ଷା ବି କରି ପାରିବେ । ଗୋଟାକ ପରେ ଗୋଟାଏ, ଆଇନ ଅମାନ୍ୟ ଆନ୍ଦୋଳନ ଚାଲିଲା ଓ ସେଥିଲାଗି ଲୋକେ ବହୁତ ଦୁଃଖ ଭୋଗ କଲେ । କିନ୍ତୁ ସେହି ଦୁଃଖଭୋଗ ଥିଲା ସ୍ୱେଚ୍ଛାକୃତ ଏବଂ ସେଥି ହେତୁରୁ ତାହା ଆନ୍ଦୋଳନକୁ ଦୁର୍ବଳ କରିବା ପରିବର୍ତ୍ତେ ତାର ଶକ୍ତି ବୃଦ୍ଧି କରିଥିଲା । ଏହା ସେହି ଧରଣର ନଥିଲା ଯାହା ଅନିଚ୍ଛୁକ କାହାକୁ ଅଭିଭୂତ କରି ପରିଶେଷରେ ତାର ମନରେ ନୈରାଶ୍ୟ ଓ ବିନା ସଂଗ୍ରାମରେ ପରାଜୟ କରିବାର ମନୋଭାବ ସୃଷ୍ଟି କରିଥାଏ । ସରକାରୀ ଦମନ ବ୍ୟବସ୍ଥାର ହିଂସ୍ର ଛାମୁହଁରେ ପଡ଼ି ଅନିଚ୍ଛୁକମାନେ ବି ଦୁଃଖ ଭୋଗକଲେ ଏବଂ ଯେଉଁମାନେ ସ୍ୱେଚ୍ଛାରେ ଏହି ଦୁଃଖ ବରଣ କରିଥିଲେ ବେଳେବେଳେ ସେମାନେ ବି ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଥିଲେ; କିନ୍ତୁ ଦୁଃଖଭୋଗର ଅଭିଜ୍ଞତାରେ ଦୁର୍ବଳ ହେବା ପରିବର୍ତ୍ତେ ଅନେକେ ନିଜ ନିଜ ସଂକଳ୍ପରେ ଅଟଳ ରହିଲେ । କେଉଁ ସମୟରେ ହେଲେ, ଏପରିକି ଚରମ ଦୁର୍ଦ୍ଦଶାର କାଳରେ ମଧ୍ୟ, କଂଗ୍ରେସ ଅଧିକ ବଳଶାଳୀ କାହା ନିକଟରେ ଆତ୍ମସମର୍ପଣ କରିନି କିମ୍ବା ବିଦେଶୀ ଆଧିପତ୍ୟ ସମ୍ମୁଖରେ ମସ୍ତକ ଅବନତ କରିନି । ସ୍ୱାଧୀନତା ନିମନ୍ତେ ଭାରତର ଉତ୍କଣ୍ଠିତ ଆକାଂକ୍ଷାର ପ୍ରତୀକ ଭାବରେ ଓ ବିଦେଶୀ ଆଧିପତ୍ୟର ପ୍ରତିରୋଧ ନିମନ୍ତେ ତାର ସଂକଳ୍ପ ଭାବରେ, କଂଗ୍ରେସ ତିଷ୍ଠି ରହିଲା । ଏହି କାରଣରୁ ଭାରତବାସୀ ବିପୁଳସଂଖ୍ୟାରେ କଂଗ୍ରେସ ପ୍ରତି ସହାନୁଭୂତିଶୀଳ ଥିଲେ ଏବଂ ସେମାନଙ୍କ ଭିତରୁ ଅନେକେ ଯଦିଓ ଥିଲେ ଶକ୍ତିହୀନ ଓ ଅକ୍ଷମ କିମ୍ବା ସେପରି ଭାବରେ ଅବସ୍ଥାପିତ ଯଦ୍ଦ୍ୱାରା ନିଜେ କିଛି କରିବା ପାଇଁ ଅସମର୍ଥ, ତଥାପି ସେମାନେ ନେତୃତ୍ୱ ନିମନ୍ତେ କଂଗ୍ରେସକୁ ହିଁ ଚାହୁଁଥିଲେ । କେତେକ ଦିଗରୁ ଦେଖିଲେ କଂଗ୍ରେସ ଥିଲା ଗୋଟାଏ ଦଳ । ଅନ୍ୟ ଭାବରେ, ତାହା ଏକାଧିକ ଦଳର ମିଳିତ ମଞ୍ଚ ବି ହୋଇଆସିଛି; କିନ୍ତୁ ସାରତଃ ଏ ସବୁ ଅପେକ୍ଷା କଂଗ୍ରେସ ଥିଲା ଆହୁରି କିଛି ବୃହତ୍ତର ଓ ମହତ୍ତର; କାରଣ ବହୁସଂଖ୍ୟକ ଲୋକଙ୍କ ଅନ୍ତରତମ ଅଭିଳାଷର ସେ ଥିଲା ପ୍ରତିନିଧି । ତାର ସଭ୍ୟସଂଖ୍ୟା କେତେ ବେଶି ହେଲେ ସୁଦ୍ଧା ତା'ର ସୁପରିବ୍ୟାପ୍ତ ପ୍ରତିନିଧିମୂଳକ ଚରିତ୍ର ତୁଳନାରେ ତାହା ଥିଲା ଏକ କ୍ଷୀଣ ପ୍ରତିବିମ୍ବ ମାତ୍ର; କାରଣ ସଭ୍ୟସଂଖ୍ୟା ବୃଦ୍ଧି କରିବା ଲୋକଙ୍କ ଇଚ୍ଛା ଉପରେ ନିର୍ଭରଶୀଳ ନଥିଲା । ନିର୍ଭର କରୁଥିଲା ସୁଦୂର ଗ୍ରାମାଞ୍ଚଳରେ ଆମର ପହୁଞ୍ଚିପାରିବା ସାମର୍ଥ୍ୟ ଉପରେ । ବହୁବାର (ଏବେ ଯେପରି) ଆମେ ଗୋଟାଏ ବେଆଇନ ସଙ୍ଗଠନ ବିବେଚିତ ହୋଇଛୁ, ଯାହାର ଅସ୍ତିତ୍ୱକୁ

ଆଇନ ସ୍ୱୀକାର କରନ୍ତି ଏବଂ ଆମର ଖାତାପତ୍ର ପୁଲିସ୍ ଜବତ କରିଚନ୍ତି ।

ଆଇନ ଅମାନ୍ୟ ଆନ୍ଦୋଳନ ଚାଲୁ ନଥିଲା ବେଳେ ବି ବ୍ରିଟିଶ ସରକାରୀକଳ ସଙ୍ଗେ ଅସହଯୋଗ କରିବାର ସାଧାରଣ ମନୋଭାବ ବରାବର ଜାରି ରହିଥିଲା । ନଥିଲା ଅବଶ୍ୟ ତା'ର ଆକ୍ରମଣଶୀଳ ଚରିତ୍ର । ଏହାର ଅର୍ଥ ନୁହେଁ ଇଂରେଜମାନଙ୍କ ସଙ୍ଗେ ଅସହଯୋଗ କରିବା । ଅନେକ ପ୍ରଦେଶରେ, କଂଗ୍ରେସ ଯେବେ ସରକାର ଗଢ଼ିଲା, ସରକାରୀ କାର୍ଯ୍ୟରେ ଅସହଯୋଗ କରିବା ଅପରିହାର୍ଯ୍ୟ ହୋଇପଡ଼ିଲା । ତଥାପି ମଧ୍ୟ ସେହି ପୃଷ୍ଠଭୂମି ବିଶେଷ ଭାବରେ ପରିବର୍ତ୍ତିତ ହେଲାନି ଏବଂ ସରକାରୀ କର୍ମ ବ୍ୟତୀତ ଅନ୍ୟ ସବୁ କ୍ଷେତ୍ରରେ କଂଗ୍ରେସ ଲୋକଙ୍କ ଆଚରଣ ବିଧି ସମ୍ପର୍କରେ ନିର୍ଦ୍ଦେଶ ଦିଆଯାଇଥାଏ । ସାମୟିକ ଭାବରେ କେତେକ ସମାଧାନ ଓ ପରସ୍ପର ସଙ୍ଗେ ମିଳାମିଶି ଚଳିବା ଅପରିହାର୍ଯ୍ୟ ହେଲେ ସୁଦ୍ଧା ଭାରତୀୟ ଜାତୀୟବାଦ ଏବଂ ଏକ ବିଦେଶୀ ସାମ୍ରାଜ୍ୟବାଦ ଭିତରେ ଚୂଡ଼ାନ୍ତ ଭାବରେ କଦାପି ଶାନ୍ତି ସ୍ଥାପିତ ହୋଇ ନପାରେ । ଗୋଟାଏ ମୁକ୍ତ ଭାରତ କେବଳ ସମକକ୍ଷ ଭାବରେ ଇଂଲଣ୍ଡ ସଙ୍ଗେ ସହଯୋଗ କରିପାରେ ।

## ୩. ପ୍ରଦେଶମାନଙ୍କର କଂଗ୍ରେସ ସରକାର

କେତେ ବର୍ଷ ପର୍ଯ୍ୟନ୍ତ କମିଶନ, କମିଟି ନିଯୁକ୍ତ କରି, ବହୁ ବିତର୍କ ପରେ ବ୍ରିଟିଶ ପାର୍ଲାମେଣ୍ଟ ଖ୍ରୀ: ୧୯୩୫ରେ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଏକ୍ଟ ପ୍ରଚଳନ କଲେ । ଏହି ଆଇନରେ ଗୋଟାଏ ପ୍ରକାର ପ୍ରାଦେଶିକ ସ୍ୱଶାସନ ଓ ରାଷ୍ଟ୍ରସଂଘ ବ୍ୟବସ୍ଥା ରଖାଯାଇଥିଲା । କିନ୍ତୁ ଏତେ ବାଧା ଓ ସର୍ତ୍ତ ଲଗାଯାଇଥିଲା ଯେ ରାଜନୈତିକ ଓ ଅର୍ଥନୈତିକ ଉଭୟ ଶକ୍ତି ବ୍ରିଟିଶ ସରକାର ହାତରେ ପୂର୍ବ ଭଳି ପୁଞ୍ଜୀଭୂତ ରହିଲା । ପ୍ରକୃତପକ୍ଷେ, କେତେକ ଭାବରେ, ଏହି ଆଇନ ସରକାରଙ୍କ ପ୍ରତି କେବଳ ଦାୟୀ ଏକ୍‌ଜିକ୍ୟୁଟିଭର କ୍ଷମତା ପରିବର୍ଦ୍ଧିତ ଓ ସ୍ଥାୟୀ କଲା । ରାଷ୍ଟ୍ରସଂଘର ସଙ୍ଗଠନ ଶୈଳୀ ଯେପରି ଭାବରେ ବିବୃତ କରାଯାଇଥିଲା ସେଥିରେ ପ୍ରକୃତରେ ଅଗ୍ରଗତି କରିବା ଥିଲା ଅସମ୍ଭବ । ସେଥିରେ କିଛି ଛିଦ୍ର ନଥିଲା ଯାହାକୁ ନେଇ ବ୍ରିଟିଶ ନିୟନ୍ତ୍ରିତ ପ୍ରଶାସନ ବ୍ୟବସ୍ଥାରେ ଭାରତୀୟ ଜନସାଧାରଣଙ୍କ ପ୍ରତିନିଧିମାନେ ହସ୍ତକ୍ଷେପ କରି ପାରନ୍ତେ । ଯାହା କିଛି ପରିବର୍ତ୍ତନ ବା କୌଣସି ବ୍ୟବସ୍ଥା ବ୍ରିଟିଶ ପାର୍ଲାମେଣ୍ଟ ଜରିଆରେ ହିଁ ହେବାର ଥିଲା । ଏପରି ଭାବରେ, ସେହି ପ୍ରତିକ୍ରିୟାଶୀଳ ସଙ୍ଗଠନ ଶୈଳୀରେ ବୈପ୍ଳବିକ ପରିବର୍ତ୍ତନ ପାଇଁ ଅବକାଶ ତ ଦୂରର କଥା, ସ୍ୱଶାସନ ଦିଗରେ ଅଗ୍ରଗତି କରିବା ପାଇଁ ମଧ୍ୟ କୌଣସି ମାର୍ଗ ନଥିଲା । ଏଇ ଆଇନ ବ୍ରିଟିଶ ସରକାର ଏବଂ ରାଜନ୍ୟବର୍ଗ, ଜମିଦାର ଓ ଅନ୍ୟାନ୍ୟ ପ୍ରତିକ୍ରିୟାଶୀଳ ଗୋଷ୍ଠୀର ମିତ୍ରତାକୁ ଆହୁରି ମଜବୁତ୍ କଲା । ଏଥିଦ୍ୱାରା ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ବର୍ଦ୍ଧିତ ହେଲା । ଫଳତଃ, ବିଚ୍ଛିନ୍ନ ମନୋବୃତ୍ତିର ଅଭିବୃଦ୍ଧି ସାଧିତ ହେଲା । ବାଣିଜ୍ୟ, ଶିଳ୍ପ, ବ୍ୟାଙ୍କ କାରବାର ଓ ନୌଚଳାଚଳ କ୍ଷେତ୍ରରେ ବ୍ରିଟିଶ ପ୍ରାଧାନ୍ୟକୁ ଏହା ଆହୁରି ଦୃଢ଼ୀଭୂତ କଲା ଏବଂ ଏ ପ୍ରକାର ସ୍ଥିତିରେ କୌଣସି ରକମର ହସ୍ତକ୍ଷେପ ଯେପରି ନପଡେ ସେଥିଲାଗି କେତେକ ବିଧି-

ମୂଳକ ସମ୍ବନ୍ଧ ରଖାଗଲା । ଭାରତୀୟ ଅର୍ଥନୀତି, ସାମରିକ ଶକ୍ତି ଓ ବୈଦେଶିକ ବ୍ୟାପାର ଉପରେ ସମ୍ପୂର୍ଣ୍ଣ କର୍ତ୍ତୃତ୍ୱ ରହିଲା ବ୍ରିଟିଶ ପ୍ରଭୁତ୍ୱର । ଏହି ଆଇନ ବଡ଼ଲାଟଙ୍କୁ ଅପେକ୍ଷାକୃତ ଅଧିକ କ୍ଷମତାଶାଳୀ କଲା ।

ପ୍ରାଦେଶିକ ସ୍ୱାୟତ୍ତଶାସନର ସୀମିତ ପରିସର ଭିତରେ କ୍ଷମତା ହସ୍ତାନ୍ତରିତ ହେଲା ଅଧିକ ଭାବରେ । ଅନ୍ତତଃ ସେପରି ବୋଧ ହେଉଥିଲା । ତଥାପି, ଗୋଟାଏ ଲୋକପ୍ରିୟ ସରକାରଙ୍କ ସ୍ଥିତି ଥିଲା ବଡ଼ ବିଚିତ୍ର । ବଡ଼ଲାଟଙ୍କ କ୍ଷମତା ଓ ଗୋଟାଏ ଦାୟିତ୍ୱହୀନ କେନ୍ଦ୍ର ପ୍ରଭୁତ୍ୱର ସବୁକିଛି ବାଧା ପ୍ରତିବନ୍ଧକ ତାର ପଛରେ ଲାଗିଥିଲା । ଏପରିକି ବଡ଼ଲାଟଙ୍କ ଭଳି ପ୍ରଦେଶର ଲାଟ (ରାଜ୍ୟପାଳ) ମଧ୍ୟ ହସ୍ତକ୍ଷେପ କରି ପାରୁଥିଲେ, 'ଭେଟୋ' ପ୍ରୟୋଗ କରି ପାରୁଥିଲେ, ନିଜ କ୍ଷମତା ବଳରେ ଆଇନ ଲାଗୁ କରି ପାରୁଥିଲେ ଏବଂ ପ୍ରଦେଶର ବିଧାନସଭା ଓ ମନ୍ତ୍ରୀମାନଙ୍କର ପ୍ରତ୍ୟକ୍ଷ ବିରୋଧିତା କରି ସୁଦ୍ଧା ଯାହା ଇଚ୍ଛା ତାହା କରି ପାରୁଥିଲେ । ରାଜସ୍ୱର ଏକ ବଡ଼ ଅଂଶ ବିବିଧ ନ୍ୟସ୍ତସ୍ୱାର୍ଥ ପାଖରେ ବନ୍ଧକ ସ୍ୱରୂପ ରହିଥିଲା ଓ ସାଧାରଣ ପ୍ରଜାଙ୍କ ନିମନ୍ତେ ତାର ସଦ୍‌ବ୍ୟବହାର ହୋଇପାରୁ ନଥିଲା । ଉପର ଶ୍ରେଣୀୟ ସରକାରୀ କର୍ମଚାରୀ ଓ ପୁଲିସ ବିଭାଗକୁ ଘଣ୍ଟି ଘୋଡ଼ାଇ ରଖାଯାଇଥିଲା ଓ ସେମାନଙ୍କୁ ସ୍ପର୍ଶ କରିବାର ଶକ୍ତି ମନ୍ତ୍ରୀମାନଙ୍କର ନଥିଲା । ସେମାନଙ୍କର ଦୃଷ୍ଟିଭଙ୍ଗୀ ଥିଲା ସମ୍ପୂର୍ଣ୍ଣ ଉଦ୍ଧତ, ପ୍ରଭୁତ୍ୱବ୍ୟଞ୍ଜକ ଏବଂ ପୂର୍ବ ଭଳି ସେମାନେ ପଥନିର୍ଦ୍ଦେଶ ନିମନ୍ତେ ମନ୍ତ୍ରୀମାନଙ୍କ ଅପେକ୍ଷା ନରଖି ରାଜ୍ୟପାଳଙ୍କୁ ହିଁ ଚାହୁଁଥିଲେ । ତଥାପି ସେମାନେ ଥିଲେ ସେହିସବୁ ବ୍ୟକ୍ତି ଯାହାଙ୍କ ଜରିଆରେ ଲୋକପ୍ରିୟ ସରକାର କାର୍ଯ୍ୟକାରୀ ହେଉଥିଲା । ଉପରେ ରାଜ୍ୟପାଳଙ୍କଠାରୁ ଆରମ୍ଭ କରି ନିମ୍ନତମ ସରକାରୀ କର୍ମଚାରୀ ଓ ପୁଲିସ୍ ପାଇକ ପର୍ଯ୍ୟନ୍ତ ସମଗ୍ର ପ୍ରଶାସନର ଜଟିଳ ସଙ୍ଗଠନ ସେହି ଯଥାତଥା ରହିଥିଲା; ପରିବର୍ତ୍ତନ କହିଲେ ନିର୍ବାଚିତ ଏକ ବିଧାନସଭା ପ୍ରତି ଜବାବଦାର କେତେ ଜଣ ମନ୍ତ୍ରୀ କେବଳ ମଝିରେ କେଉଁଠି ଭରତି ହୋଇ ଯାହାକିଛି କରିପାରିବା ସମ୍ଭବ, କରିବାର ପ୍ରୟାସ କରୁଥିଲେ । ଯଦି ଗଭର୍ଣ୍ଣର (ଯିଏ ବ୍ରିଟିଶ ପ୍ରଭୁତ୍ୱର ପ୍ରତିନିଧି ଥିଲେ) ଓ ତାଙ୍କ ତଳେ କାର୍ଯ୍ୟ କରୁଥିବା ସରକାରୀ କର୍ମଚାରୀ ମନ୍ତ୍ରୀମାନଙ୍କ ସଙ୍ଗେ ଏକମତ ହୋଇ ପୂର୍ଣ୍ଣ-ପ୍ରାଣରେ ସହଯୋଗ କରନ୍ତି ସରକାରୀକଳ ସୁରୁଖୁରୁରେ କାର୍ଯ୍ୟକାରୀ ହୋଇପାରେ । ଅନ୍ୟଥା ଲୋକପ୍ରତିନିଧି ମନ୍ତ୍ରୀ ଓ ପ୍ରଶାସନ ଭିତରେ ବରାବର ସଂଘର୍ଷ ଲାଗିରହିବା ଅନିବାର୍ଯ୍ୟ । ଏପରି ସଂଘର୍ଷ ଘଟିବା ହିଁ ବିଧିନିବନ୍ଧ ଭଳି ଜଣାପଡ଼ୁଥିଲା; କାରଣ ଆମ ଲୋକପ୍ରିୟ ସରକାରଙ୍କ ନୀତି ଓ ପଦ୍ଧତି ଗୋଟାଏ ବ୍ୟକ୍ତିସ୍ୱାତନ୍ତ୍ର୍ୟ-ବିରୋଧୀ ପୁଲିସ୍‌ରାଜ ବ୍ୟବସ୍ଥା ଠାରୁ ଥିଲା ସମ୍ପୂର୍ଣ୍ଣ ଭିନ୍ନ । ଗଭର୍ଣ୍ଣର କିମ୍ବା ତାଙ୍କର ଅନୁଗତ କର୍ମଚାରୀମାନେ ଖୋଲାଖୋଲି ଭାବରେ ଲୋକପ୍ରିୟ ସରକାରଙ୍କ ନୀତି ଖିଲାଫ ନକଲେ ସୁଦ୍ଧା କିମ୍ବା ଅବାଧ ନ ହେଲେ ସୁଦ୍ଧା ସରକାର ଯାହା କରନ୍ତି ବା କରିବାକୁ ଚାହାଁନ୍ତି, ସେସବୁର ବାଟ ବନ୍ଦ କରିବା ପାଇଁ, ଅଯଥା ବିଳମ୍ବ ଘଟାଇବା ପାଇଁ, ଗୋଟାଏ ଉଦ୍ଦିଷ୍ଟ କାର୍ଯ୍ୟକୁ ଠିକ୍ ବିପରୀତ ଭାବରେ କରି ନେବା ପାଇଁ ଏବଂ କୌଣସି କାର୍ଯ୍ୟକୁ ବାତିଲ କରି ଦେବା ପାଇଁ ସମ୍ପୂର୍ଣ୍ଣ ସମର୍ଥ ଥିଲେ । ଆସେମ୍ବ୍ଲି ଓ ମନ୍ତ୍ରିମଣ୍ଡଳର ପ୍ରତ୍ୟକ୍ଷ ବିରୋଧିତାକୁ କଥା ଆସିଗଲେ ସୁଦ୍ଧା ଗଭର୍ଣ୍ଣର ଓ

ଭାଇସ୍‌ରୟଙ୍କ ମେସା-ରାୟ ଶକ୍ତିକୁ ରୋକିବା ପାଇଁ ଆଇନରେ ସେପରି କିଛି ନଥିଲା। ସେମାନଙ୍କ ମାର୍ଗରେ ପ୍ରକୃତ ଓ କେବଳମାତ୍ର ବାଧା ଯାହା ଥିଲା ତାହା ହେଉଛି ସଂଘର୍ଷର ଭୟ। ମନ୍ତ୍ରୀମାନେ କାଲେ ଇସ୍ତଫା ଦେଇଦେବେ, ଆସେମ୍ବ୍ଲିରେ ଅନ୍ୟମାନେ ସଂଖ୍ୟାଗରିଷ୍ଠତା ହାସଲ କରି ପାରିବେ ନାହିଁ; ଫଳତଃ ଗଣଆନ୍ଦୋଳନ ସୃଷ୍ଟି ହେବ—ଏହି ଭୟ। ଏହା ଥିଲା ସେହି ପୁରାତନ ସାଂବିଧାନିକ ସଂଘର୍ଷ; ଯାହା ଅନ୍ୟତ୍ର କୌଣସି ସ୍ୱେଚ୍ଛାଚାରୀ ରାଜା ଓ ପାର୍ଲାମେଣ୍ଟ ମଧ୍ୟରେ ଘଟି ବହୁଧା ବିପ୍ଳବ ଓ ରାଜାକୁ ଗାଦିଚ୍ୟୁତ କରିବାର ପଥ ପରିଷ୍କାର କରି ଦେଇଥିଲା। ଏ କ୍ଷେତ୍ରରେ ବିଦେଶୀ ସାମରିକ ଓ ଅର୍ଥନୈତିକ ଶକ୍ତି ଏବଂ ଦେଶରେ ସୃଷ୍ଟ ବିଶେଷ କେତେ ନ୍ୟସ୍ତସ୍ୱାର୍ଥ ଓ ଆଜ୍ଞା-ଆଜ୍ଞା-ଜୀ-ହଜୁର ସମ୍ପ୍ରଦାୟ ଦ୍ୱାରା ସମର୍ଥିତ ରାଜା ଥିଲେ ଏକ ଅତିରିକ୍ତ ବୈଦେଶିକ ପ୍ରଭୁତ୍ୱ।

ଏହି ସମୟରେ ହିଁ ବ୍ରହ୍ମଦେଶକୁ ଭାରତରୁ ବିଚ୍ଛିନ୍ନ କରାଗଲା। ବ୍ରହ୍ମଦେଶରେ ବ୍ରିଟିଶ ଓ ଭାରତୀୟ ଏବଂ କେତେ ପର୍ଯ୍ୟନ୍ତ ବ୍ରିଟିଶ ଓ ଚୀନା ଅର୍ଥନୈତିକ ତଥା ବାଣିଜ୍ୟ-ସ୍ୱାର୍ଥ ଭିତରେ ସଂଘର୍ଷ ଚାଲିଥିଲା। ଅତଏବ ସେଠାର ବ୍ରିଟିଶ ନୀତି ହେଲା ବର୍ମୀ ଲୋକଙ୍କ ଭିତରେ ଭାରତୀୟ ତଥା ଚୀନା ବିରୋଧୀ ମନୋଭାବକୁ ଉତ୍ସାହିତ କରିବା। ଏହି ନୀତି କିଛିକାଳ ପର୍ଯ୍ୟନ୍ତ ଅବଶ୍ୟ ଲାଭକର ହୋଇଥିଲା। କିନ୍ତୁ ଏହା ଯେବେ ବର୍ମୀ ଲୋକଙ୍କୁ ସ୍ୱାଧୀନତା ଦେବା ଦିଗରେ ଅଲଙ୍ଘନୀୟ ପ୍ରତିବନ୍ଧକ ଭାବରେ ଠିଆହେଲା, ଆଉ ପରିଣାମରେ ବର୍ମାରେ ଜାପାନ ପକ୍ଷପାତୀ ଯେଉଁ ପ୍ରବଳ ଆନ୍ଦୋଳନମାନ ସୃଷ୍ଟି ହେଲା ତାହା ଆତ୍ମପ୍ରକାଶ କଲା ଖ୍ରୀ: ୧୯୪୨ରେ ଜାପାନୀମାନେ ଯେବେ ବର୍ମା ଆକ୍ରମଣ କଲେ। ଖ୍ରୀ: ୧୯୩୫ର ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଏକ୍‌ଟ ସବୁ ଶ୍ରେଣୀର ଭାରତୀୟ ବିଚାର ପକ୍ଷରୁ ତିକ୍ତ ପ୍ରତିରୋଧର ସମ୍ମୁଖୀନ ହେଲା। ଏହି ଆଇନର ପ୍ରାଦେଶିକ ପ୍ରଶାସନ ସମ୍ପର୍କୀୟ ଅଂଶରେ ଯେଉଁଥିରେ ଗଭର୍ଣ୍ଣରମାନଙ୍କୁ ଓ ଭାଇସ୍‌ରୟଙ୍କୁ ନାନାବିଧ ସଂରକ୍ଷିତ ଅଧିକାର ଓ କ୍ଷମତା ଦିଆଯାଇଥିଲା, ତା'ର ତୀବ୍ର ସମାଲୋଚନା ତ ପ୍ରକାଶ ପାଇଲା; ଅଧିକନ୍ତୁ ଯେଉଁ ଅଂଶରେ ରାଷ୍ଟ୍ରସଂଘ ବ୍ୟବସ୍ଥା ବିଷୟ ଉଲ୍ଲେଖ ଥିଲା ସେଥିପ୍ରତି ଅଧିକତର କ୍ରୋଧ ପ୍ରକାଶ ପାଇଲା। ରାଷ୍ଟ୍ରସଂଘ ବ୍ୟବସ୍ଥାର ବିରୋଧୀ ସେପରି କେହି ନଥିଲେ ଏବଂ ସମସ୍ତେ ସ୍ୱୀକାର କରୁଥିଲେ ଯେ ଏକ ରାଷ୍ଟ୍ରସଂଘ ସଂଗଠନ ଭାରତ ପକ୍ଷରେ ବାଞ୍ଛନୀୟ; କିନ୍ତୁ ବ୍ରିଟିଶ ପ୍ରସ୍ତାବିତ ଏହି ବ୍ୟବସ୍ଥାରେ ଭାରତରେ ବ୍ରିଟିଶ ଶାସନ ଓ ନ୍ୟସ୍ତସ୍ୱାର୍ଥ ପ୍ରସ୍ତରୀଭୂତ ହେବାର ସମସ୍ତ ବ୍ୟବସ୍ଥା ରହିଥିଲା। କଥିତ ଆଇନର ପ୍ରାଦେଶିକ ପ୍ରଶାସନ ଅଂଶଟିକ କେବଳ ପ୍ରୟୋଗ କରାଗଲା ଏବଂ ନିର୍ବାଚନ ଲଢ଼ିବା ପାଇଁ କଂଗ୍ରେସ ନିଷ୍ପତ୍ତି ନେଲା। ତଥାପି ତାର ପରିସର ଭିତରେ ପ୍ରାଦେଶିକ ସରକାର ପରିଚାଳନା ଦାୟିତ୍ୱ ଗ୍ରହଣ କରାଯିବ କି ନାହିଁ—ଏହି ପ୍ରଶ୍ନ ଉପରେ କଂଗ୍ରେସ ଭିତରେ ତୀବ୍ର ବାଦାନୁବାଦ ଚାଲିଥିଲା। ଅଧିକାଂଶ ପ୍ରଦେଶର ନିର୍ବାଚନରେ କଂଗ୍ରେସ ଅଭିଭୂତକର ସାଫଲ୍ୟ ଅର୍ଜନ କଲା। ତଥାପି ମଧ୍ୟ, ଗଭର୍ଣ୍ଣର କିମ୍ବା ଭାଇସ୍‌ରୟଙ୍କ ପକ୍ଷରୁ କୌଣସି ହସ୍ତକ୍ଷେପ ଯେ କରାଯିବ ନାହିଁ, ଏ ବିଷୟ ସ୍ପଷ୍ଟ ନହେବା ପର୍ଯ୍ୟନ୍ତ ମନ୍ତ୍ରିମଣ୍ଡଳ ଗଢ଼ି ଶାସନ ଦାୟିତ୍ୱ ଗ୍ରହଣ କରିବା ପାଇଁ କଂଗ୍ରେସ ମନରେ ଦ୍ୱିଧା ରହିଥିଲା। କେତେମାସ ପରେ

ଏ ସମ୍ପର୍କରେ କେତେକ ଅନିର୍ଦ୍ଦିଷ୍ଟ ଆଶ୍ୱାସନା ମିଳିଲା ଏବଂ କଂଗ୍ରେସ ଖ୍ରୀ: ୧୯୩୭, ଜୁଲାଇ ମାସରେ ସରକାର ଗଠନ କଲା । ଭାରତର ଏଗାରଟି ପ୍ରଦେଶରୁ ଆଠଗୋଟି ପ୍ରଦେଶରେ କଂଗ୍ରେସ ସରକାର ସ୍ଥାପିତ ହେଲା । ଯେଉଁ ତିନୋଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିପାରି ନଥିଲା ସେଗୁଡ଼ିକ ହେଉଛି ସିନ୍ଧୁ, ବଙ୍ଗ ଓ ପଞ୍ଜାବ । ସିନ୍ଧୁ ଥିଲା ଏକ କ୍ଷୁଦ୍ର, ନୂତନ ଭାବରେ ସୃଷ୍ଟ ଓ ଏକପ୍ରକାର ଅସ୍ଥାୟୀ ପ୍ରଦେଶ । ବଙ୍ଗ ପ୍ରଦେଶର ଆସେଂବ୍ଲିରେ କଂଗ୍ରେସ ଥିଲା ସର୍ବାପେକ୍ଷା ବଡ଼ଦଳ; କିନ୍ତୁ ସଂଖ୍ୟାଗରିଷ୍ଠତା ନଥିବାରୁ ସରକାର ଗଠନ କରିପାରିନଥିଲା । ଭାରତରେ ବଙ୍ଗ (କଲିକତା କହିବା ଠିକ୍ ହେବ) ବ୍ରିଟିଶ ପୁଞ୍ଜିର ପ୍ରଧାନ କ୍ଷେତ୍ର ହୋଇଥିବାରୁ ୟୁରୋପୀୟ ବଣିକଶ୍ରେଣୀ ବଙ୍ଗ ଆସେମ୍ବ୍ଲିରେ ଯେତୋଟି ଆସନ ପାଇଥିଲେ ତାହା ପ୍ରକୃତରେ ବିସ୍ମୟକର । ସଂଖ୍ୟା ଦିଗରୁ ସେମାନେ ଥିଲେ ମୁଷ୍ଟିମେୟ; କେତେ ସହସ୍ର ମାତ୍ର । ତଥାପି ଆସେଂବ୍ଲି ଗୃହରେ ସେମାନଙ୍କର ସଂଖ୍ୟା ଥିଲା ପଚିଶି ଏବଂ (ଦଳିତ ଜାତି ବ୍ୟତୀତ) ସମଗ୍ର ପ୍ରଦେଶରେ ଏକ କୋଟି ସତର ଲକ୍ଷ ଅଣ-ମୁସ୍‌ଲିମ୍ ଜନସଂଖ୍ୟା ପାଇଁ ନିର୍ଦ୍ଦିଷ୍ଟ ଆସନ ଥିଲା ମାତ୍ର ପଚିଶ ଗୋଟି । ବଙ୍ଗ ଆସେଂବ୍ଲିର ଏହି ବ୍ରିଟିଶ ଗୋଷ୍ଠୀ ବଙ୍ଗ ରାଜନୀତିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି ଏବଂ ମନ୍ତ୍ରିମଣ୍ଡଳ ଗଢ଼ିବା କିମ୍ବା ଭାଙ୍ଗିବା ଏହି ଗୋଷ୍ଠୀ ଉପରେ ସମ୍ପୂର୍ଣ୍ଣ ଭାବରେ ନିର୍ଭର କରେ ।

ଭାରତୀୟ ସମସ୍ୟାର ଏକ ଅସ୍ଥାୟୀ ସମାଧାନ ଭାବରେ ସୁଦ୍ଧା ଖ୍ରୀ: ୧୯୩୫ର ଆଇନକୁ କଂଗ୍ରେସ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ନଥିଲା । କଂଗ୍ରେସର ଲକ୍ଷ୍ୟ ଥିଲା ଭାରତର ସ୍ୱାଧୀନତା ଏବଂ ସେଥି ହେତୁରୁ ଏହି ଆଇନକୁ ବିରୋଧ କରିବା ଥିଲା ଅନିବାର୍ଯ୍ୟ । କିନ୍ତୁ କଂଗ୍ରେସର ଏକ ସଂଖ୍ୟାଗରିଷ୍ଠ ଅଂଶ ପ୍ରାଦେଶିକ ସ୍ୱଶାସନ କାର୍ଯ୍ୟକାରୀ କରିବା ପାଇଁ ନିଷ୍ପତ୍ତି ନେଇ ସାରିଥିଲେ । ଏପରିଭାବରେ, କଂଗ୍ରେସ ନୀତି ଦୁଇ ଦିଗରେ ପରିଚାଳିତ ହେଲା : ଗୋଟାଏ ଦିଗରେ ସ୍ୱାଧୀନତା ଆନ୍ଦୋଳନ ଚାଲୁରଖିବା ଏବଂ ସେଥି ସଙ୍ଗେ ସଙ୍ଗେ ଆସେମ୍ବ୍ଲି ଜରିଆରେ ରଚନାତ୍ମକ ସଂସ୍କାର ନିମନ୍ତେ ବ୍ୟବସ୍ଥାମାନ ଗ୍ରହଣ କରିବା । କୃଷି-ସଂସ୍କାରର ବିବିଧ ସମସ୍ୟା ବିଶେଷ ତଥା ଜରୁରୀ ଦୃଷ୍ଟି ଦାବି କରୁଥିଲା ।

ସଂଖ୍ୟାଗରିଷ୍ଠତା ଦୃଷ୍ଟିରୁ ଯଦିଓ ତାର ଆବଶ୍ୟକତା ନଥିଲା, ତଥାପି ଅନ୍ୟାନ୍ୟ ଗୋଷ୍ଠୀଙ୍କ ସଙ୍ଗେ ମିଶି କଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ିବା ପ୍ରଶ୍ନ ଉପରେ ବିଚାର କରାଗଲା । ସରକାର ପରିଚାଳନା କାର୍ଯ୍ୟରେ ଅଧିକରୁ ଅଧିକ ଲୋକଙ୍କୁ ସଂପୃକ୍ତ କରିବା ଅବଶ୍ୟ ବାଞ୍ଛନୀୟ । କେବେହେଲେ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ିବାରେ ସେପରି କିଛି ବାଧା ନଥିଲା ଏବଂ ସୀମାନ୍ତ ପ୍ରଦେଶ ଓ ଆସାମରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ ନିମନ୍ତେ କଂଗ୍ରେସ ସମ୍ମତ ହେଲା । ବସ୍ତୁତଃ, କଂଗ୍ରେସ ବି ଥିଲା ଭାରତର ମୁକ୍ତି ଆକାଂକ୍ଷା ଦ୍ୱାରା ପ୍ରେରିତ ନାନାବିଧ ଗୋଷ୍ଠୀର ଏକପ୍ରକାର ସମ୍ମେଳନ ବା ମିଳିତ ସାମ୍ମୁଖ୍ୟ । ଏ ପ୍ରକାର ବୈଚିତ୍ର୍ୟ ସତ୍ତ୍ୱେ କଂଗ୍ରେସ ଭିତରେ ଶୃଙ୍ଖଳାବୋଧ, ସାମାଜିକ ଦୃଷ୍ଟିଭଙ୍ଗୀ ଓ ତାର ନିଜସ୍ୱ ଶାନ୍ତିପୂର୍ଣ୍ଣ ଧାରାରେ ସଂଗ୍ରାମ ନିବେଦନ କରିବାର ସାମର୍ଥ୍ୟ ଖୁବ୍ ଭଲଭାବରେ ଥିଲା । ଏହାକୁ ଆହୁରି ବିସ୍ତୃତ କରିବା ଅର୍ଥ ଯେଉଁସବୁ ଲୋକଙ୍କ ସଙ୍ଗେ ହାତ ମିଳାଇବା, ଯେଉଁମାନଙ୍କର ସମଗ୍ର

ରାଜନୈତିକ ଓ ସାମାଜିକ ଦୃଷ୍ଟିଭଙ୍ଗୀ ସମ୍ପୂର୍ଣ୍ଣ ଭିନ୍ନ ଓ ଯେଉଁମାନେ ମୁଖ୍ୟତଃ କ୍ଷମତା ଓ ମନ୍ତ୍ରୀତ୍ୱରେ ଆଗ୍ରହୀ । ଏ ପରିସ୍ଥିତିରେ ସଙ୍ଘର୍ଷ ନିହିତ ଥିଲା । ବ୍ରିଟିଶ ସ୍ୱାର୍ଥର ପ୍ରତିନିଧି—ଭାଇସ୍‌ରୟ, ଗଭର୍ଣ୍ଣର, ଉପରବର୍ଗର ସରକାରୀ କର୍ମଚାରୀମାନଙ୍କ ସଙ୍ଗେ ସଙ୍ଘର୍ଷ ଘଟିବା ଅସମ୍ଭବ ନଥିଲା । ଏହି ସଙ୍ଘର୍ଷ ସେତିକରେ ସୀମିତ ନରହି କାର୍ଯ୍ୟ ସମସ୍ୟା ଓ ଶ୍ରମିକମାନଙ୍କ ଅବସ୍ଥା ନେଇ ଜମି ଓ ଶିଳ୍ପ କ୍ଷେତ୍ରର ନ୍ୟସ୍ତସ୍ୱାର୍ଥ ଉପରକୁ ବିସ୍ତୃତ ହେବାର ଅବକାଶ ଓ ଆବଶ୍ୟକତା ଥିଲା । ଅଣକଂଗ୍ରେସ ରାଜନୈତିକ ବ୍ୟକ୍ତିମାନେ ସାଧାରଣତଃ ରାଜନୀତି ଓ ସାମାଜିକତା ଦୃଷ୍ଟିରୁ ଥିଲେ ରକ୍ଷଣଶୀଳ । ସେମାନଙ୍କ ଭିତରୁ କେତେ ପଦଲୋଲୁପ କେବଳ ଥିଲେ । ଏପରି ଲୋକେ ଯଦି ସରକାରରେ ଭର୍ତ୍ତି ହୁଅନ୍ତି, ଆମର ସମଗ୍ର ସାମାଜିକ ପ୍ରୋଗ୍ରାମ୍‌କୁ ଭଣ୍ଡୁର କରିଦେବା କିମ୍ବା କିଛି ନ ହେଲେ ତାର ପଥରୋଧ କରିବା ଓ କାର୍ଯ୍ୟକାରୀ କରିବାରେ ଅଯଥା ବିଳମ୍ବ ଘଟାଇବା କିଛି ବଡ଼କଥା ନୁହେଁ । ଅନ୍ୟ ମନ୍ତ୍ରୀମାନଙ୍କ ଅଜ୍ଞାତରେ ଏମାନେ ଗଭର୍ଣ୍ଣର ସଙ୍ଗେ ମିଶି ଆମର ଉଦ୍ଦେଶ୍ୟ ବିରୁଦ୍ଧରେ ଷଡ଼ଯନ୍ତ୍ର ବି କରିପାରନ୍ତି । ବ୍ରିଟିଶ ପ୍ରଭୁତ୍ୱ ବିରୁଦ୍ଧରେ ଏକ ମିଳିତ ସାମ୍ମୁଖ୍ୟ ଅତ୍ୟାବଶ୍ୟକ ହୋଇପଡ଼ିଥିଲା । ଏଥିରେ ସାମାନ୍ୟ କିଛି ଭେଦ ବା ଛିଦ୍ର ଆମର ଉଦ୍ଦେଶ୍ୟ ପକ୍ଷରେ କ୍ଷତିକାରକ । ଏପରି କୌଣସି ବ୍ୟାପକ ସମ୍ମେଳନରେ ନା ରହିପାରେ କୌଣସି ଉଦ୍ଦେଶ୍ୟର ବନ୍ଧନ, ନା କୌଣସି ସ୍ୱୀକୃତ ଆନୁଗତ୍ୟ କିମ୍ବା କୌଣସି ମିଳିତ ଲକ୍ଷ୍ୟ । ଏଥିରେ ମନ୍ତ୍ରୀମାନେ ନିଜ ନିଜ ବିଚାର ଓ ଦୃଷ୍ଟିକୋଣ ଧରି ଭିନ୍ନ ଭିନ୍ନ ଦିଗରେ ଭିଡ଼ାଓଟାରି କେବଳ ହେବେ ।

ଆମର ସାଧାରଣ ଜୀବନରେ ସେପରି ବହୁ ଲୋକ ସ୍ୱାଭାବିକ ଭାବରେ ସମ୍ମିଳିତ ଥିଲେ; ଯେଉଁମାନଙ୍କୁ ରାଜନୀତିଜ୍ଞ ଛଡ଼ା ଆଉ କିଛି କୁହାଯାଇ ନପାରେ । ଭଲ ଓ ମନ୍ଦ ଉଭୟ ଅର୍ଥରେ ସେମାନେ ଥିଲେ ଆସନ-ଲୋଲୁପ । କଂଗ୍ରେସ ତଥା ଅନ୍ୟାନ୍ୟ ସଂଗଠନମାନଙ୍କର ଦକ୍ଷ, ଉତ୍ସୁକ ତଥା ଦେଶପ୍ରେମୀ ବ୍ୟକ୍ତିଙ୍କ ସଙ୍ଗେ ଆସନ-ଲୋଲୁପ ବି ଥିଲେ । କିନ୍ତୁ ଖ୍ରୀ: ୧୯୨୦ରୁ କଂଗ୍ରେସ ଗୋଟାଏ ନିୟମତାନ୍ତ୍ରିକ ରାଜନୈତିକ ଦଳ ଅପେକ୍ଷା ଅଧିକ କିଛି ଭାବରେ ଗଢ଼ିଉଠିଥିଲା ଏବଂ ବାସ୍ତବ ଅଥବା ପ୍ରଚ୍ଛନ୍ନ, ଏକ ବୈପ୍ଲବିକ ପୃଷ୍ଠ ପରିବେଷ୍ଟିତ ଏହା ବହୁଧା ଆଇନର ସୀମା ବହିର୍ଭୂତ ହୋଇଉଠୁଥିଲା । ତା'ର କାର୍ଯ୍ୟକଳାପ, ହିଂସାଚରଣ ଗୁପ୍ତ ଚକ୍ରାନ୍ତ, ଷଡ଼ଯନ୍ତ୍ର ଓ ବୈପ୍ଳବିକ କର୍ମାନୁସରଣ ସଙ୍ଗେ ସମ୍ପର୍କିତ ନଥିଲେ ସୁଦ୍ଧା ଗୋଟାଏ ବୈପ୍ଳବିକ ଦଳଠାରୁ ଏହା କିଛି ଭିନ୍ନ ନଥିଲା । କଂଗ୍ରେସ ଭୁଲ କରୁଥିଲା କି ଠିକ୍ କରୁଥିଲା, ଫଳପ୍ରଦ ହେଉଥିଲା କି ନାହିଁ—ଏଥି ଉପରେ ବାଦାନୁବାଦ କରାଯାଇପାରେ । କିନ୍ତୁ ତା'ର ଚରିତ୍ରରେ ଅଦମ୍ୟ ସାହସ ଓ ଅସମ୍ଭବ ଧରଣର ସହିଷ୍ଣୁତା ଯେ ସୁସ୍ପଷ୍ଟ ଭାବରେ ପ୍ରକାଶ ପାଉଥିଲା, ଏଥିରେ କୌଣସି ସନ୍ଦେହ ନାହିଁ । ହୁଏତ ସାହସ ସହକାରେ କିଛି ସମୟ ପାଇଁ ହିଂସାତ୍ମକ କର୍ମରେ ଲିପ୍ତ ହୋଇପଡ଼ିବା ଅତି ସହଜ ଓ ସେ ମାର୍ଗରେ ମୃତ୍ୟୁ ମଧ୍ୟ ବରଣ କରାଯାଇପାରେ । କିନ୍ତୁ ନିଜର ବିଚାରଶୀଳତାର ତାଡ଼ନାରେ ଜୀବନର ସମସ୍ତ କିଛି ଉପହାର ପ୍ରତ୍ୟାଖ୍ୟାନ କରି ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ଏପରି

ଭାବରେ କାର୍ଯ୍ୟ କରିପିବା କିଛି ସାଧାରଣ କଥା ନୁହେଁ । ଯେକୌଣସି ଦେଶରେ ଏପରି ଏକ ପରୀକ୍ଷାରୁ ମୁଷ୍ଟିମେୟ କେବଳ ଉତ୍ତୀର୍ଣ୍ଣ ହେବାର ଆଶା ରଖିପାରନ୍ତି । କିନ୍ତୁ ଆଶ୍ଚର୍ଯ୍ୟ ତଥା ଆନନ୍ଦର କଥା ଯେ, ଭାରତରେ ବହୁସଂଖ୍ୟକ ଲୋକ ଏହି ପରୀକ୍ଷାରେ ସଫଳ ହୋଇ-ପାରିଚନ୍ତି ।

କୌଣସି ସଙ୍କଟ ଦ୍ୱାରା ଆଚ୍ଛନ୍ନ ହେବା ପୂର୍ବରୁ, ଯେତେ ଚଞ୍ଚଳ ସମ୍ଭବ, କୃଷକ ଓ ଶ୍ରମିକଙ୍କ ସପକ୍ଷରେ କିଛି ଆଇନ ବ୍ୟବସ୍ଥା କରିଦେବାପାଇଁ ବିଧାନ ସଭାମାନଙ୍କର କଂଗ୍ରେସ-ଦଳ ବରାବର ଆତୁର ଥିଲେ । ସଙ୍କଟ ଯେ କେଉଁ ମୁହୂର୍ତ୍ତରେ ଦେଖାଦେଇପାରେ, ଏହି ବୋଧ ସେମାନଙ୍କ ମନରେ ସର୍ବଦା ଜାଗ୍ରତ ଥିଲା । ଅଧିକନ୍ତୁ, ତାହା ନିହିତ ଥିଲା ସେ ସମୟର ପରିସ୍ଥିତିରେ । ପ୍ରାୟ ପ୍ରତ୍ୟେକ ପ୍ରଦେଶରେ ଆଉରି ଏକ ସଭା ବା ଚେମ୍ବର ଥାଏ, ଯେଉଁଠାକୁ ପ୍ରାର୍ଥୀ ନିର୍ବାଚିତ କରିବା ଭୋଟରଙ୍କ ସଂଖ୍ୟା ଥିଲା ଖୁବ୍ ସୀମିତ ଏବଂ ସେଠାରେ କୃଷି ଓ ଶିଳ୍ପ କ୍ଷେତ୍ରର ନ୍ୟସ୍ତସ୍ୱାର୍ଥ ପ୍ରତିନିଧିତ୍ୱ ପାଉଥିଲେ । ପ୍ରଗତିଶୀଳ ଆଇନ ବିଧାନ କରିବା ବାଟରେ ଆଉରି ବହୁତ ପ୍ରତିବନ୍ଧକ ବି ରହିଥିଲା । ମିଳିତ ମନ୍ତ୍ରିମଣ୍ଡଳ ଏ ସମସ୍ତ ଅସୁବିଧାକୁ ଆଉରି ଜଟିଳ କରି ତୋଳନ୍ତା । ଅତଏବ, ଆସାମ ଓ ସୀମାନ୍ତ ପ୍ରଦେଶ ବ୍ୟତୀତ ଅନ୍ୟ କୌଣସି ପ୍ରଦେଶରେ ମିଳିତ ମନ୍ତ୍ରିମଣ୍ଡଳ ନକରିବା ପାଇଁ ନିଷ୍ପତ୍ତି ନିଆଗଲା ।

ତେବେ ଏ ନିଷ୍ପତ୍ତି ଯେ ଚୂଡ଼ାନ୍ତ, ସେପରି କିଛି ନଥିଲା ଏବଂ ପରିବର୍ତ୍ତନର ସମ୍ଭାବନା ଦୃଷ୍ଟିରୁ ଅପସାରିତ ହୋଇନଥିଲା; କିନ୍ତୁ ପରିସ୍ଥିତି ଯେପରି ଦ୍ରୁତଗତିରେ ବଦଳିବାକୁ ଲାଗିଲା କୌଣସି ପରିବର୍ତ୍ତନର ସୁବିଧା ବି କ୍ରମଶଃ ଦୂର ହେବାକୁ ଲାଗିଲା ଏବଂ ପ୍ରଦେଶ-ମାନଙ୍କ କଂଗ୍ରେସ ସରକାର ଜରୁରୀ ସମାଧାନ ଦାବି କରୁଥିବା ନାନାବିଧ ସମସ୍ୟାରେ ଜଡ଼ିତ ହୋଇ ରହିଲେ । ପରବର୍ତ୍ତୀ ସମୟରେ ଏହି ନିଷ୍ପତ୍ତିର ବିଜ୍ଞତା ସମ୍ପର୍କରେ ବହୁ ବିତର୍କ ହୋଇଚି ଏବଂ ଭିନ୍ନ ଭିନ୍ନ ମତ ପ୍ରକାଶ ପାଇଚି । କୌଣସି ଏକ ଘଟଣା ପରେ ବିଜ୍ଞତା ପ୍ରକାଶ କରିବା ଅତି ସହଜ; କିନ୍ତୁ ଏବେ ସୁଦ୍ଧା ମୁଁ ମନେକରେ ଯେ ସେହି ସମୟରେ, ରାଜନୀତି ଦୃଷ୍ଟିରୁ ଆମେ ଯେଭଳି ଅବସ୍ଥିତ ଥିଲୁ, ଆମ ପକ୍ଷରେ ତାହା ହିଁ ଥିଲା ଏକ ସ୍ୱାଭାବିକ ତଥା ଯୁକ୍ତିସଙ୍ଗତ ନିଷ୍ପତ୍ତି । ତଥାପି ଏକଥା ସତ୍ୟ ଯେ, ସାମ୍ପ୍ରଦାୟିକ ପ୍ରଶ୍ନ ଉପରେ ତାର ପରିଣାମ ଦୁର୍ଭାଗ୍ୟଜନକ ହେଲା ଏବଂ ମୁସ୍‌ଲିମ୍‌ମାନଙ୍କ ଭିତରେ ଅଭିଯୋଗ ଓ ଅଲଗା ପଡ଼ି ରହିବାର ଏକ ଭାବ ସୃଷ୍ଟି ହେଲା । ପ୍ରତିକ୍ରିୟାଶୀଳ ଲୋକେ ଏଥିର ସୁବିଧା ନେଇ କେତେକ ଗୋଷ୍ଠୀ ଭିତରେ ନିଜ ନିଜ ସ୍ଥାନ ସୁଦୃଢ଼ କରିବା ପାଇଁ ତାହା ବ୍ୟବହାର କଲେ

ରାଜନୀତି ଓ ସମ୍ବିଧାନ ଦୃଷ୍ଟିରୁ କଥିତ ନୂତନ ଆଇନ (୧୯୩୫) ଓ ପ୍ରଦେଶମାନଙ୍କରେ କଂଗ୍ରେସ ସରକାର ସ୍ଥାପନ, ବ୍ରିଟିଶ ଶାସନର ସଙ୍ଗଠନ ଭିତରେ କୌଣସି ମୌଳିକ ପରିବର୍ତ୍ତନ ଆଣି ପାରିନଥିଲା । ପ୍ରକୃତ କ୍ଷମତା ପୂର୍ବରୁ ଯେଉଁଠି ରହିଆସିଥିଲା ସେଠାରେ ହିଁ ରହିଲା । କିନ୍ତୁ ଏଥିର ମନସ୍ତାତ୍ତ୍ୱିକ ପରିବର୍ତ୍ତନ ଥିଲା ଅତି ପ୍ରବଳ ଏବଂ ଗ୍ରାମାଞ୍ଚଳରେ ବିଜୁଳି ଭଳି ଏହା ଚମକି ଉଠିଲା । ଶିଳ୍ପକେନ୍ଦ୍ରମାନଙ୍କର ଶ୍ରମିକଙ୍କ ମଧ୍ୟରେ ଠିକ୍ ଏହି ଧରଣର ପ୍ରତିକ୍ରିୟା ପ୍ରକାଶ ପାଇଥିଲେ ମଧ୍ୟ ସହର ଅପେକ୍ଷା ଗ୍ରାମାଞ୍ଚଳରେ ଏହି ପରିବର୍ତ୍ତନ

ଅଧିକତର ଭାବରେ ଲକ୍ଷ୍ୟ କରି ହେଉଥିଲା । ଯେତେ ଯେପରି ଅସହ୍ୟ ଏକ ଓଜନ ଛାତି ଉପରୁ ଓହ୍ଲାଇ ଯାଇଛି, ଲୋକେ ବିପୁଳ ଏକ ସ୍ୱସ୍ତିବୋଧ ଅନୁଭବ କରୁଥିଲେ । ବହୁ ଦିନରୁ ଅବରୁଦ୍ଧ ଲୋକଶକ୍ତିର ପରିପ୍ରକାଶ ସର୍ବତ୍ର ଦୃଷ୍ଟିରେ ପଡୁଥିଲା । ଅଳ୍ପ ସମୟ ପାଇଁ ପଛେ ହେଉ ପୋଲିସ୍ ଓ ଗୋଇନ୍ଦା ଭୟ ଲୋକଙ୍କ ମନରୁ ଦୂରୀଭୂତ ହେଲା ଏବଂ ଦେଶର ଦରିଦ୍ରତମ କୃଷକ ମଧ୍ୟ ତାର ଆତ୍ମସମ୍ମାନ ଓ ଆତ୍ମନିର୍ଭରଶୀଳତା ବୃଦ୍ଧି ଲାଭ କରିବା ଅନୁଭବ କଲା । ପ୍ରଥମଥର ପାଇଁ ସେ ଅନୁଭବ କଲା, ସେ ବି ସମସ୍ତଙ୍କ ଭିତରୁ ଜଣେ ଏବଂ ତାକୁ ଅବଜ୍ଞା କରାଯାଇନପାରେ । ଜଟିଳ କର୍ମଶୃଙ୍ଖଳା ବିନ୍ୟାସ ଦ୍ୱାରା ତା'ଠାରୁ ବିଚ୍ଛିନ୍ନ, ସରକାର ତାର ପକ୍ଷରେ ସେପରି କିଛି ଅଜ୍ଞାତ ତଥା ସ୍ପର୍ଶର ବହିର୍ଭୂତ, ଅତ୍ୟାଶ୍ଚର୍ଯ୍ୟର କୌଣସି ସତ୍ତା ହୋଇ ଆଉ ନଥିଲା; ଯାହା ନିକଟରେ ପହଞ୍ଚିବା ଓ ପ୍ରଭାବ ପକାଇବା ଦୁଷ୍କର ହୁଅନ୍ତା । ପୂର୍ବେ ସରକାର କହିଲେ ସେ ବୁଝୁଥିଲା ପୀଡ଼ାଦାୟକ ଶୋଷଣ । ପ୍ରତାପଶାଳୀ ବ୍ୟକ୍ତିଙ୍କ ଆସନରେ ବର୍ତ୍ତମାନ ଯେଉଁମାନେ ବସିଥିଲେ ଲୋକେ ସେମାନଙ୍କୁ ଆଗରୁ ଦେଖିଛନ୍ତି, ସେମାନଙ୍କର କହିବା ଶୁଣିଛନ୍ତି ଓ ସେମାନଙ୍କ ସଙ୍ଗେ ଆଳାପ ଆଲୋଚନା ବି କରିଛନ୍ତି । କେବେ କେବେ ଉଭୟେ ଏକା ସଙ୍ଗେ ଜେଲ୍ ଯାଇଛନ୍ତି । ଉଭୟଙ୍କ ଭିତରେ ରହିଥିଲା ଏକପ୍ରକାର ବନ୍ଧୁ ଓ ସହକର୍ମୀ ଭାବ ।

ପ୍ରାଦେଶିକ ରାଜଧାନୀମାନଙ୍କରେ, ପୁରାତନ ଅମଲାତନ୍ତ୍ରର ଖାସ୍ ଦୁର୍ଗ ଭିତରେ ବହୁ ପ୍ରତୀକ ଦୃଶ୍ୟ ଦୃଷ୍ଟିଗୋଚର ହେଲା । ପ୍ରାଦେଶିକ 'ସେକ୍ରେଟେରିଏଟ୍' ନାମରେ ଅଭିହିତ ଏହି ସ୍ଥାନ, ଯେଉଁଠି ସବୁ ବିଭାଗର ଶୀର୍ଷତମ କର୍ତ୍ତାମାନେ ସମବେତ ଥିଲେ, ସରକାରଙ୍କର ପବିତ୍ର ମନ୍ଦିର ଭାବରେ ବିବେଚିତ ହୋଇଆସିଥିଲା ଏବଂ ଯେଉଁଠାରୁ ପ୍ରେରିତ ରହସ୍ୟମୟ ଆଦେଶକୁ ଲଙ୍ଘନ କରିବା କିମ୍ବା ସେଥି ଉପରେ ମନ୍ତବ୍ୟ ପ୍ରକାଶ କରିବା ଅଧିକାର କାହାର ନଥିଲା । କଟିବନ୍ଧରେ ଖୋଷିତ ତୀକ୍ଷ୍ଣ ଛୁରିକା, ଲାଲ ପରିଚ୍ଛଦଧାରୀ ଅର୍ଦ୍ଦଳି ଓ ପୁଲିସ୍‌ମାନେ ଏହି ପବିତ୍ର ସ୍ଥାନ ପହରା ଦେଉଥାନ୍ତି । ଯେଉଁମାନେ ସୌଭାଗ୍ୟଶାଳୀ କିମ୍ବା ଅତିମାତ୍ରାରେ ସାହସିକ କିମ୍ବା ବିତ୍ତବାନ୍ ଏମାନଙ୍କୁ ଅତିକ୍ରମ କରି ଭିତରେ ପ୍ରବେଶ କରିପାରିଥାନ୍ତି । ବର୍ତ୍ତମାନ କିନ୍ତୁ ଅସ୍ୱାଭାବିକ ଭାବରେ ସହର ଓ ଗ୍ରାମର ଦଳଦଳ ସାଧାରଣ ଲୋକ ଏହି ପବିତ୍ର ମନ୍ଦିରରେ ପ୍ରବେଶ କରି ଇଚ୍ଛାମତ ବିଚରଣ କରିବାକୁ ଲାଗିଲେ । ସେମାନଙ୍କର ଆଗ୍ରହର ଶେଷ ନଥିଲା । ବିଧାନ ସଭା ଗୃହକୁ ଯାଇ ସେମାନେ ସେଠାର କାର୍ଯ୍ୟ ଲକ୍ଷ୍ୟ କରନ୍ତି; କବାଟ କିମ୍ବା ଝରକାଫାଙ୍କରେ ମନ୍ତ୍ରୀମାନଙ୍କ ପ୍ରକୋଷ୍ଠ ଭିତରକୁ ଚାହାନ୍ତି । ସେମାନଙ୍କୁ ରୋକିବା ସହଜ ନଥିଲା; କାରଣ ସେମାନେ ନିଜକୁ ବାହାରର ଲୋକ ବୋଲି ଆଉ ଭାବୁନଥିଲେ । ସେଠାରେ ବ୍ୟବସ୍ଥା ଯଦିଓ ସେମାନଙ୍କୁ ଜଟିଳ ମନେହେଉଥିଲା ଓ ସେସବୁ ବୁଝିବା ସେମାନଙ୍କ ପକ୍ଷରେ କଷ୍ଟକର ଥିଲା, ତଥାପି ଏହି ମନ୍ଦିର ଉପରେ ସେମାନଙ୍କର ସ୍ୱତ୍ୱାଧିକାର ଯେ ରହିଛି, ଏକଥା ସେମାନେ ଅନୁଭବ କରି ପାରୁଥିଲେ । ଛୁରୀ ବନ୍ଧୁକଧାରୀ ପୋଲିସ ଓ ଅର୍ଦ୍ଦଳିମାନଙ୍କର କିଛି କରି ପାରିବାର ନଥିଲା । ପୁରାତନ ସବୁକିଛିମାନ ଭୁଷୁଡ଼ି ପଡ଼ୁଥିଲା । ପଦମର୍ଯ୍ୟାଦା ଓ ପ୍ରାଧିକାରର ପ୍ରତୀକ ୟୁରୋପୀୟ ପୋଷାକର ମୂଲ୍ୟ କିଛି

ନଥିଲା । କେଉଁମାନେ ବିଧାନସଭା ସଭ୍ୟ ଆଉ କେଉଁମାନେ ଗାଁର କୃଷି ବା ସହରବାସୀ, ବାରିବା କଠିନ ଥିଲା । ସମସ୍ତଙ୍କର ବେଶଭୂଷା ପ୍ରାୟ ଥିଲା ସମାନ : ପରିଧାନରେ ଅଧିକତଃ ହାତବୁଣା ଲୁଗା ଓ ମୁଣ୍ଡରେ ସର୍ବଜନବିଦିତ ଗାନ୍ଧିଟୋପି ।

ପଞ୍ଜାବ ଓ ବଙ୍ଗରେ ଯେଉଁଠି କେତେମାସ ପୂର୍ବରୁ ମନ୍ତ୍ରିପରିଷଦ ଗଠିତ ହୋଇଥିଲା ସେଠାର ଅବସ୍ଥା ସୁବିଧାଜନକ ନଥିଲା । ଏ ଦୁଇ ପ୍ରଦେଶରେ ସେପରି କୌଣସି ଅଚଳ ଅବସ୍ଥା ଦେଖା ଦେଉନଥିଲା ଏବଂ ପରିବର୍ତ୍ତନବେଳେ କୌଣସି ଭାବରେ ହେଲେ ସାଧାରଣ ଜୀବନରେ ବିଚଳନ ସୃଷ୍ଟି ହୋଇ ନଥିଲା । କ୍ଷମତା ହସ୍ତାନ୍ତର କାର୍ଯ୍ୟ ନୀରବରେ ସମାହିତ ହେଲା । ପଞ୍ଜାବରେ ବିଶେଷକରି ପୁରାତନ ବ୍ୟବସ୍ଥା ଚାଲୁରହିଲା ଏବଂ ମନ୍ତ୍ରୀମାନଙ୍କ ଭିତରୁ ଅଧିକାଂଶ ଥିଲେ ପୁରାତନ ଲୋକ । ପୂର୍ବେ ଉଚ୍ଚସରକାରୀ କର୍ମରେ ସେମାନେ ନିଯୁକ୍ତ ଥିଲେ ଏବଂ ସେଭଳିରେ ହିଁ ବର୍ତ୍ତମାନ କାର୍ଯ୍ୟକାରୀ ହେଲେ । ବ୍ରିଟିଶ ପ୍ରଶାସନ ଓ ସେମାନଙ୍କ ଭିତରେ କୌଣସି ସଙ୍ଘର୍ଷ ବା ଉତ୍ତେଜନାବୋଧ ନଥିଲା; କାରଣ ରାଜନୀତି ଦୃଷ୍ଟିରୁ ସେହି ପ୍ରଶାସନ ହିଁ ଥିଲା ସର୍ବେସର୍ବା ।

ନାଗରିକ ଅଧିକାର ଓ ରାଜନୈତିକ ବନ୍ଦୀ—ଏ ଦୁଇଟି ବିଷୟକୁ ନେଇ ଦେଖିଲେ, ଗୋଟାଏ ଦିଗରେ ବଙ୍ଗ ଓ ପଞ୍ଜାବ ଅନ୍ୟ ଦିଗରେ କଂଗ୍ରେସଶାସିତ ପ୍ରଦେଶମାନଙ୍କର ପାର୍ଥକ୍ୟ ଅବିଳମ୍ବେ ଦୃଷ୍ଟିଗୋଚର ହେଲା । ବଙ୍ଗ ଓ ପଞ୍ଜାବ ଉଭୟ ପ୍ରଦେଶରେ ପୁଲିସ୍ ଓ ଗୋଏନ୍ଦାରାଜ୍ ପୂର୍ବଭଳି ଚାଲିଥିଲା ଏବଂ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରାଯାଇନଥିଲା । ବଙ୍ଗରେ, ମନ୍ତ୍ରିମଣ୍ଡଳ ଯେଉଁଠି ୟୁରୋପୀୟ ଭୋଟ ଉପରେ ଥିଲା ନିର୍ଭରଶୀଳ, ଆହୁରି ହଜାର ହଜାର ରାଜନୈତିକ ବ୍ୟକ୍ତି ଅଟକବନ୍ଦୀ ହେଲେ ଅର୍ଥାତ୍ ଅନିର୍ଦ୍ଦିଷ୍ଟ କାଳ ପାଇଁ କୌଣସି ନିର୍ଦ୍ଦିଷ୍ଟ ଅଭିଯୋଗ ଅବା ବିଚାର ନଥାଇ ହଜାର ହଜାର ନରନାରୀଙ୍କୁ ଜେଲ ଭିତରେ ଭର୍ତ୍ତି କରି ଦିଆଗଲା । କଂଗ୍ରେସଶାସିତ ପ୍ରଦେଶମାନଙ୍କରେ ମନ୍ତ୍ରିମଣ୍ଡଳର ପ୍ରଥମ କାର୍ଯ୍ୟ ହେଲା ରାଜନୈତିକ ବନ୍ଦୀମାନଙ୍କୁ ଖଲାସ କରିବା । ବନ୍ଦୀମାନଙ୍କ ଭିତରୁ କେତେକଙ୍କୁ, ଯେଉଁମାନେ ହିଂସାତ୍ମକ କାଣ୍ଡ ନିମନ୍ତେ କାରାଦଣ୍ଡ ଭୋଗୁଥିଲେ, ମୁକ୍ତି ଦେବାରେ ବିଳମ୍ବ ଘଟୁଥିଲା; କାରଣ ମୁକ୍ତିଦେବାପାଇଁ ଲାଟ୍ ପ୍ରଥମେ ରାଜି ନଥିଲେ । ଖ୍ରୀ: ୧୯୩୮ ପ୍ରାରମ୍ଭରେ ଏ ପ୍ରଶ୍ନ ଉପରେ କଥା ବହୁତ ବଢ଼ିଗଲା ଓ ଦୁଇଟି କଂଗ୍ରେସ ସରକାର (ଯୁକ୍ତ ପ୍ରଦେଶ ଓ ବିହାର) ଇସ୍ତଫା ଦେଇ ବସିଲେ । ତଦୁପରି ଲାଟ୍ ତାଙ୍କର ଆପତ୍ତି ପ୍ରତ୍ୟାହାର କରନେଲେ ଏବଂ ବନ୍ଦୀମାନଙ୍କୁ ମୁକ୍ତ କରାଗଲା ।

## ୪. ଭାରତରେ ବ୍ରିଟିଶ୍ ରକ୍ଷଣଶୀଳତା ବନାମ ଭାରତୀୟ ଗତିଶୀଳତା

ନୂତନ ପ୍ରାଦେଶିକ ବିଧାନସଭାମାନଙ୍କରେ ଗ୍ରାମାଞ୍ଚଳରୁ ଆସିଥିବା ପ୍ରତିନିଧିମାନଙ୍କ ସଂଖ୍ୟା ଥିଲା ଅଧିକ । ଅତଏବ, ପ୍ରତ୍ୟେକ ବିଧାନସଭାରେ ଭୂସଂସ୍କାର ନିମନ୍ତେ ଆବଶ୍ୟମ୍ଭାବୀ ଭାବରେ

ଦାବି ଉତ୍‌ଥିତ ହେଲା । ସ୍ଥାୟୀ ବନ୍ଦୋବସ୍ତ ଓ ଅନ୍ୟାନ୍ୟ କାରଣ ଯୋଗୁଁ ବଙ୍ଗରେ ଭାଗଚାଷୀର ଅବସ୍ଥା ଥିଲା ଅପେକ୍ଷାକୃତ ଦୟନୀୟ । ଆହୁରି ମଧ୍ୟ ସେହିସବୁ ବଡ଼ ବଡ଼ ପ୍ରଦେଶ ମୁଖ୍ୟତଃ ବିହାର ଓ ଯୁକ୍ତପ୍ରଦେଶ, ଯେଉଁଠି ଜମିଦାରୀ ପ୍ରଥା ପ୍ରଚଳିତ ଥିଲା । ତୁଳନାମୂଳକ ଭାବେ, ସେହିସବୁ ପ୍ରଦେଶ ଯେଉଁଠି ପ୍ରଥମରୁ କୌଣସି ଏକପ୍ରକାର ରୟତୱାରୀ ସ୍ଥାପିତ ହୋଇଥିଲା (ମାନ୍ଦ୍ରାଜ, ବମ୍ବେ, ପଞ୍ଜାବ ଇତ୍ୟାଦି) ଯଦିଓ ବଡ଼ ବଡ଼ ଜମିଦାରୀ ମଧ୍ୟ ଗଢ଼ି ଉଠିଥିଲା । ବଙ୍ଗରେ ଯେ କୌଣସି ଫଳପ୍ରଦ ସଂସ୍କାରର ପଥରୋଧ କରି ବସିଲା ସେ ରାଜ୍ୟର ସ୍ଥାୟୀ ବନ୍ଦୋବସ୍ତ ବ୍ୟବସ୍ଥା । ଏହାର ଉଚ୍ଛେଦ ଘଟୁ ବୋଲି ପ୍ରାୟ ସମସ୍ତେ ଏକମତ ଥିଲେ; ଏପରିକି ସରକାରଙ୍କ ଦ୍ୱାରା ନିଯୁକ୍ତ ଗୋଟାଏ କମିଶନ ମଧ୍ୟ ସେଥିପାଇଁ ସୁପାରିଶ କରିସାରିଚନ୍ତି । କିନ୍ତୁ ନ୍ୟସ୍ତସ୍ୱାର୍ଥ ଲୋକେ ଯେପରି ସବୁ ଉପାୟ ଏବେ ବି କରିପାରୁଚନ୍ତି; ଯାହା ଫଳରେ ଏହି କାର୍ଯ୍ୟ ଏକେ ବନ୍ଦ ରହୁଚି କିମ୍ବା କାର୍ଯ୍ୟକାରୀ କରିବା ଦିଗରେ ଅଯଥା ବିଳମ୍ବ ଘଟୁଚି । ଏ ଦିଗରେ ପଞ୍ଜାବ ପ୍ରଦେଶ ଭାଗ୍ୟବାନ୍ କହିଲେ ଚଳେ; କାରଣ ସେଠାରେ ବିସ୍ତର ଜମି ପଡ଼ିଚି ।

କଂଗ୍ରେସ ପକ୍ଷରେ କାର୍ଷି ପ୍ରଶ୍ନ ଥିଲା ସର୍ବପ୍ରଧାନ ସାମାଜିକ ସମସ୍ୟା ଏବଂ ତା'ର ଅଧ୍ୟୟନ ଓ ସେଥି ନିମନ୍ତେ ନୀତି ନିରୂପଣ କରିବା ପାଇଁ ବହୁତ ସମୟ ଦିଆଯାଇଥିଲା । ପ୍ରଦେଶର ଅବସ୍ଥା ଓ ସେଠାର ପ୍ରାଦେଶିକ କଂଗ୍ରେସ ସଙ୍ଗଠନର ଶ୍ରେଣୀ-ଚରିତ୍ର ଭେଦ ଏହା ଭିନ୍ନ ଭିନ୍ନ ପ୍ରଦେଶରେ ଭିନ୍ନ ଭିନ୍ନ ରୂପରେ ରହିଥିଲା । କଂଗ୍ରେସର କେନ୍ଦ୍ର ସଙ୍ଗଠନ ସମଗ୍ର ଦେଶରେ ଲାଗୁହେବା ଭଳି ଯେଉଁ କାର୍ଷିନୀତି ନିରୂପଣ କରିଥିଲେ, ପ୍ରତ୍ୟେକ ପ୍ରଦେଶ ନିଜ ଅବସ୍ଥାକୁ ଧରି ସେଥିରେ ଆବଶ୍ୟକୀୟ ପରିଶିଷ୍ଟ ଯୋଗକଲେ । ଏ ଦିଗରେ ଯୁକ୍ତପ୍ରଦେଶର କଂଗ୍ରେସ ଥିଲା ସର୍ବାପେକ୍ଷା ଅଧିକ ଅଗ୍ରଗାମୀ ଏବଂ ଜମିଦାରୀ ପ୍ରଥାର ଉଚ୍ଛେଦ ପାଇଁ ସେଠାରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । କିନ୍ତୁ ଭାଇସରାୟ ଓ ପ୍ରାଦେଶିକ ଲାଟଙ୍କ ବିଶେଷ କ୍ଷମତା ଏବଂ ଭୂସ୍ୱାମୀ ପ୍ରତିନିଧିବହୁଳ ଅପର ହାଉସ୍‌ର ବିରୋଧ ଅତିରିକ୍ତ ଖ୍ରୀ: ୧୯୩୫ର ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଏକ୍‌ଟ ଯୋଗୁଁ ଏହା ସମ୍ପାଦନ କରିବା ସମ୍ଭବ ନଥିଲା । କୌଣସି ବୈପ୍ଳବିକ ଆନ୍ଦୋଳନ ଏହି ପ୍ରଥାର ଇତିଶ୍ରୀ ନକଲା ପର୍ଯ୍ୟନ୍ତ ତା'ର ବ୍ୟବସ୍ଥାର ପରିସର ଭିତରେ ହିଁ ଯାହା କିଛି ପରିବର୍ତ୍ତନ କରାଯିବା କଥା । ଏହା ଫଳରେ ସଂସ୍କାରବିଧାନ ଦୁଃସାଧ୍ୟ ଓ ଅତିଶୟ ଜଟିଳ ହୋଇଉଠିଲା ଏବଂ ତାର ପ୍ରସ୍ତାବିତଦଶା ଅନୁମିତ ସମୟ ଲଙ୍ଘନ କରିଗଲା ।

ସେ ଯାହାହେଉ ପର୍ଯ୍ୟାପ୍ତ ଭାବରେ କାର୍ଷି-ସଂସ୍କାର ପ୍ରବର୍ତ୍ତିତ ହେଲା ଓ ଗ୍ରାମ୍ୟ ଋଣ ସମସ୍ୟା ମଧ୍ୟ ତା'ର ପରିସର ଭିତରକୁ ଆସିଲା । କାରଖାନାମାନଙ୍କରେ ଶ୍ରମିକର ଅବସ୍ଥା, ସର୍ବସାଧାରଣ ସ୍ୱାସ୍ଥ୍ୟ ଓ ପରିଚ୍ଛନ୍ନତା, ସ୍ଥାନୀୟ ସ୍ୱାୟତ୍ତଶାସନ, ନିମ୍ନ ଓ ବିଶ୍ୱବିଦ୍ୟାଳୟ ସ୍ତରର ଶିକ୍ଷା, ସାକ୍ଷରତା, ଶିଳ୍ପ, ଗ୍ରାମ୍ୟ ଉନ୍ନୟନ—ଏବଂବିଧ ବହୁ ସମସ୍ୟା ମଧ୍ୟ ହାତକୁ ନିଆଗଲା । ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ ଏହି ସବୁ ସମସ୍ୟାମାନଙ୍କ ପ୍ରତି ପୂର୍ବବର୍ତ୍ତୀ ସରକାରମାନେ ଚରମ ଅବହେଳା ଓ ଅବଜ୍ଞା ପ୍ରଦର୍ଶନ କରିଥିଲେ । ସେମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା ପୁଲିସ ଓ ରାଜସ୍ୱ ବିଭାଗମାନଙ୍କୁ କେବଳ ସୁଦକ୍ଷ କରି ଗଢ଼ିବା । ଅନ୍ୟ

ଯେତେ ସବୁ, ନିଜ ନିଜ ଧାରାରେ, ଯେପରି ଭାବରେ ଚାଲିପାରନ୍ତି ଚାଲୁ । ମଝେ ମଧ୍ୟେ ଏ ଦିଗରେ ଯତ୍‌ସାମାନ୍ୟ ଉଦ୍ୟମ ହୋଇଛି । କମିଶନ ଓ ଯାଞ୍ଚ କମିଟିମାନ ନିଯୁକ୍ତ ହୋଇଛନ୍ତି ଓ ବର୍ଷ ବର୍ଷ ଧରି ଭ୍ରମଣ ଓ ପରିଶ୍ରମ କରି ସେମାନେ ଲମ୍ବା ଚଉଡ଼ା କେତେ ରିପୋର୍ଟ କେବଳ ପ୍ରକାଶ କରିଛନ୍ତି । ରିପୋର୍ଟଗୁଡ଼ିକ ସଂପୃକ୍ତ ବିଭାଗମାନଙ୍କର ଆଲମାରିରେ ଆଶ୍ରୟ ଲଭିଛି ଏବଂ କାର୍ଯ୍ୟତଃ କିଛି ହୋଇ ପାରିନି । ଜନସାଧାରଣଙ୍କ ପକ୍ଷରୁ ଅନବରତ ଦାବି ହେବା ସତ୍ତ୍ୱେ ବହୁତ ତଥ୍ୟ ବି ସଂଗ୍ରହ କରାଯାଇନି । ଏହିସବୁ ଆବଶ୍ୟକୀୟ ପରିସଂଖ୍ୟାନ, ଜରିପ ତଥା ତଥ୍ୟାଭାବ ଯେ କେଉଁ ଦିଗରେ ପ୍ରଗତି ପଥରେ ଗୁରୁତର ଅନ୍ତରାୟ ହୋଇ ରହିଛି । ଅତଏବ, ପ୍ରଶାସନଗତ ସାଧାରଣ କର୍ମ ବ୍ୟତୀତ ନୂତନ ପ୍ରାଦେଶିକ ସରକାର-ମାନଙ୍କୁ, ବର୍ଷବର୍ଷର ଅବହେଳାର ପରିଣତି, ପର୍ବତ ପ୍ରମାଣ କାର୍ଯ୍ୟସ୍ତୂପର ବହନ କରିବାକୁ ପଡ଼ିଲା ଏବଂ ଯେଉଁ ଆଡ଼କୁ ଚାହିଁଲେ ହେଲେ ଜରୁରୀ ସମସ୍ୟାମାନ କେବଳ ସେମାନଙ୍କର ଦୃଷ୍ଟି ଦାବି କରି ରହିଥିଲା । ଗୋଟାଏ ପୁଲିସଶାସିତ ରାଜ୍ୟକୁ ସମାଜସଚେତନ ଏକ ରାଜ୍ୟରେ ପରିଣତ କରିବାର ଗୁରୁ ଦାୟିତ୍ୱ ଥିଲା ସେମାନଙ୍କର । ଏହା କିଛି ସହଜ କଥା ନୁହେଁ । ଅଧିକନ୍ତୁ, ସେମାନଙ୍କର ସୀମିତ କ୍ଷମତା, ଜନସାଧାରଣଙ୍କ ଦରିଦ୍ରତା, ପ୍ରାଦେଶିକ ସରକାର ଓ କେନ୍ଦ୍ରର ସଂପୂର୍ଣ୍ଣ ସ୍ୱେଚ୍ଛାଚାରୀ ତଥା ଅଦ୍ୱିତୀୟ ପ୍ରଭୁତ୍ୱବ୍ୟଞ୍ଜକ ଭାଇସ୍‌ରାୟ ଶାସନର ପୃଥକ୍ ଦୃଷ୍ଟିଭଙ୍ଗୀ ଏହି କାର୍ଯ୍ୟକୁ ବହୁତ ପରିମାଣରେ ଜଟିଳ ଓ କଷ୍ଟକର କରି ତୋଳିଲା ।

ଏସବୁ ଅନ୍ତରାୟ ଓ ସୀମାବନ୍ଧନ ସମ୍ପର୍କରେ ଆମେ ଜ୍ଞାତ ଥିଲୁ । ଆମେ ଏକଥା ମଧ୍ୟ ଉପଲବ୍ଧି କରୁଥିଲୁ ଯେ ମୌଳିକ ଭାବରେ ଅବସ୍ଥାର ପରିବର୍ତ୍ତନ ନହେବା ପର୍ଯ୍ୟନ୍ତ ଆମେ ବିଶେଷ କିଛି କରି ପାରିବୁ ନାହିଁ । ଅତଏବ, ସ୍ୱାଧୀନତାର ଆକାଙ୍‌କ୍ଷା ଆମକୁ ଅଭିଭୂତ କରି ତୋଳିଥିଲା । ତଥାପି ପ୍ରଗତିର ଉତ୍‌କଣ୍ଠା ଏବଂ ବିଭିନ୍ନ ଦିଗରେ ଅଗ୍ରଗାମୀ ଦେଶମାନଙ୍କ ସଙ୍ଗେ ସମକକ୍ଷ ହେବାର ଏକ ବିପୁଳ ଅଭିଳାଷ ଆମ ପ୍ରାଣକୁ ପୂର୍ଣ୍ଣ କରିଥିଲା । ଯୁକ୍ତରାଷ୍ଟ୍ର ଆମେରିକା ଓ ସେହିସବୁ ଅଗ୍ରଗାମୀ ପ୍ରାଚ୍ୟଦେଶମାନଙ୍କ ବିଷୟରେ ଆମେ ଭାବୁଥାଉଁ; କିନ୍ତୁ ସର୍ବୋପରି ଆମ ଆଗରେ ଥିଲା ସୋଭିଏତ୍ ୟୁନିଅନ୍‌ର ଦୃଷ୍ଟାନ୍ତ, ଯେଉଁ ଦେଶ ଯୁଦ୍ଧ ଓ ଗୃହଯୁଦ୍ଧ ସତ୍ତ୍ୱେ ଓ ପ୍ରତୀୟମାନ କେତେକ ଅଲଙ୍ଘନୀୟ ଅସୁବିଧାର ସମ୍ମୁଖୀନ ହୋଇ ସୁଦ୍ଧା ମାତ୍ର କୋଡ଼ିଏ ବର୍ଷ ଭିତରେ ଅସମ୍ଭବ ଧରଣର ପ୍ରଗତି କରିପାରିଛି । କେହି କେହି କମ୍ୟୁନିଷ୍ଟବାଦ ପ୍ରତି ଆକୃଷ୍ଟ ହେଉଥିଲେ, ଅନ୍ୟମାନଙ୍କର ସେ ଆକର୍ଷଣ ନଥିଲା; କିନ୍ତୁ ସମସ୍ତେ ଶିକ୍ଷା ଓ ସଂସ୍କୃତି, ସ୍ୱାସ୍ଥ୍ୟ ଓ ଶାରୀରିକ କୁଶଳ ଏବଂ ଜାତି ସମସ୍ୟାର ସମାଧାନ ଦିଗରେ ସୋଭିଏତ୍ ୟୁନିଅନର ଅଗ୍ରଗତି ଲକ୍ଷ୍ୟ କରି, ଗୋଟାଏ ଅନ୍ତଃସାରଶୂନ୍ୟ ପୁରାତନ ସମାଜରୁ ଏକ ନୂତନ ସମାଜ ତିଆରି କରିବା ପାଇଁ ସେମାନେ ଯେଉଁ ବିସ୍ମୟକର ତଥା ବିପୁଳ ଉଦ୍ୟମ କରୁଥିଲେ, ସେଥିରେ ଚମତ୍କୃତ ହେଉଥିଲେ । ଶ୍ରୀ ରବୀନ୍ଦ୍ରନାଥ ଠାକୁର ମଧ୍ୟ ତାଙ୍କର ପ୍ରବଳ ବ୍ୟକ୍ତିତ୍ୱବାଦ ଓ କମ୍ୟୁନିଷ୍ଟ ବ୍ୟବସ୍ଥାର କେତେକ ବିଭାବ ପ୍ରତି ତାଙ୍କର ଅନାକର୍ଷଣ ସତ୍ତ୍ୱେ ସେହି ନୂତନ ସଭ୍ୟତାର ଜଣେ ପ୍ରଶଂସକ ହୋଇ ଉଠିଲେ ଏବଂ ନିଜ

ଦେଶର ସାମ୍ପ୍ରତିକ ଅବସ୍ଥା ସଙ୍ଗେ ତାର ତୁଳନା କରିଥିଲେ । ବ୍ୟାଧି ଓ ନିରକ୍ଷରତା ବିରୁଦ୍ଧରେ ସମସ୍ତ ଶକ୍ତି ନିୟୋଜିତ କରି ରୁଷିଆ କିପରି ସଂଗ୍ରାମ କଲା ଏବଂ ବିଶାଳ ଏକ ମହାଦେଶର ବଦନରୁ ଲଜ୍ଜିନା ପୋଛିଦେଇ, ଧୀର ତଥା ନିଶ୍ଚିତ ଗତିରେ, ଅଜ୍ଞତା ଓ ଦରିଦ୍ରତାର ବିଲୋପ ସାଧନ ଦିଗରେ କିପରି ସଫଳତା ଅର୍ଜନ କଲା—ତାର ଉଲ୍ଲେଖ ସେ କରିଚନ୍ତି ମୃତ୍ୟୁ ଶଯ୍ୟାରୁ ପ୍ରସାରିତ ତାଙ୍କର ଅନ୍ତିମ ବାର୍ତ୍ତାରେ । "ଶ୍ରେଣୀ ଶ୍ରେଣୀ ଭିତରେ ଓ ସମ୍ପ୍ରଦାୟ ସମ୍ପ୍ରଦାୟ ଭିତରେ ରହିଥିବା ସବୁ ପ୍ରକାର ଘୃଣାଜନକ ବ୍ୟବଧାନରୁ ତାର ସଭ୍ୟତା ମୁକ୍ତ ହୋଇପାରିଚି । ରୁଷିଆର ଦ୍ରୁତ ତଥା ବିସ୍ମୟକର ପ୍ରଗତି ମତେ ଆନନ୍ଦ ଦିଏ, ସଙ୍ଗେ ସଙ୍ଗେ ଈର୍ଷିତ ବି କରେ ।...ଅନ୍ୟତ୍ର କେଉଁଠି ଯେବେ ମୁଁ ଦେଖେ ଦୁଇ ଶହ ଜାତି; ମାତ୍ର କେତେ ବର୍ଷ ପୂର୍ବେ ଯେଉଁମାନଙ୍କର ବିକାଶର ସ୍ତର ଭିତରେ ଆକାଶପାତାଳ ପ୍ରଭେଦ ରହିଥିଲା, ବନ୍ଧୁଭାବରେ ଓ ଶାନ୍ତିପୂର୍ଣ୍ଣ ପ୍ରଗତିର ମାର୍ଗରେ ପଦକ୍ଷେପ କରି ଚାଲିଚନ୍ତି ଏବଂ ସେଥି ସଙ୍ଗେ ମୁଁ ଯେବେ ମୋର ସ୍ୱଦେଶ ଉପରେ ଦୃଷ୍ଟି ଫେରାଏ, ଆଉ ଦେଖେ ଯେ ଜ୍ଞାନର ଶିଖରଦେଶରେ ଅବସ୍ଥିତ ଗୋଟାଏ ଜାତି ବର୍ବରତାର ବିଶୃଙ୍ଖଳା ଭିତରକୁ ଖସିଯାଉଚି, ମୁଁ ଦୁଇଟି ଶାସନ ବ୍ୟବସ୍ଥାର ତୁଳନା ନ କରି ରହିପାରୁନାହିଁ । ଗୋଟାଏ ଭିତ୍ତି କରିଚି ସହଯୋଗ ଉପରେ, ଅନ୍ୟଟି ଶୋଷଣ ଉପରେ । ସୁତରାଂ ଉଭୟ ଦେଶ ମଧ୍ୟରେ ଏ ପ୍ରକାର ବିପରୀତ ଅବସ୍ଥା ସମ୍ଭବ ହୋଇପାରିଚି ।"

ଅନ୍ୟମାନେ ଯଦି ତାହା କରି ପାରିଲେ, ଆମେ ନ ପାରିବା କାହିଁକି ? ଆମର ସାମର୍ଥ୍ୟ, ଆମର ବୁଦ୍ଧି, ଆମର ଐକାନ୍ତିକ ସଂକଳ୍ପ ଏବଂ ସଫଳତା ନିମନ୍ତେ ସହିଷ୍ଣୁତା ଅବଲମ୍ବନ ଉପରେ ଆମର ଆସ୍ଥା ଥିଲା । ଆମର ନାନାବିଧ ଅସୁବିଧା, ଆମର ଦରିଦ୍ରତା ଓ ଅନଗ୍ରସର ଅବସ୍ଥା, ଆମର ପ୍ରତିକ୍ରିୟାଶୀଳ ଗୋଷ୍ଠୀ ଓ ଶ୍ରେଣୀ ଆମ ଭିତରେ ରହିଥିବା ବିଭେଦର ପ୍ରାଚୀର ସମ୍ପର୍କରେ ଆମେ ଅଜ୍ଞାତ ନ ଥିଲୁ । ଆମେ ସେସବୁର ସମ୍ମୁଖୀନ ହେବୁ ଓ ପରି-ଶେଷରେ ବିଜୟ ହାସଲ କରିବୁ । ଆମେ ଜାଣିଥିଲୁ, ଏଥିପାଇଁ ଖୁବ୍ ଚଡ଼ା ମୂଲ୍ୟ ଦେବାକୁ ପଡ଼ିବ । ତାହା ଦେବାପାଇଁ ଆମେ ପ୍ରସ୍ତୁତ ବି ଥିଲୁ; କାରଣ ଆମର ଆଜିର ଅବସ୍ଥାରେ, ଦିନ ପରେ ଦିନ ଯାହା ଦେଇଆସୁଚୁ ତା'ଠାରୁ କୌଣସି ମୂଲ୍ୟ ବୃହତ୍ତର ହୋଇ ନପାରେ; କିନ୍ତୁ ଏହି ବୈଦେଶିକ ସମସ୍ୟା—ବ୍ରିଟିଶ ଶାସନ ଓ ଆଧିପତ୍ୟ ପଦେ ପଦେ ଆମର ସମ୍ମୁଖୀନ ହୋଇ ଆମର ପ୍ରତ୍ୟେକ ଉଦ୍ୟମକୁ ଯେବେ ଭଣ୍ଡୁର କରୁଚି, ଆମର ବିଭିନ୍ନ ଘରୋଇ ସମସ୍ୟାର ସମାଧାନ ଦିଗରେ ଆମେ କାର୍ଯ୍ୟ ଆରମ୍ଭ କରିବୁ କିପରି ?

ତଥାପି, କେତେ ସୀମିତ ଓ ନିର୍ଦ୍ଦିଷ୍ଟ ଗଣ୍ଡି ମଧ୍ୟରେ ଆବଦ୍ଧ ହେଲେ ସୁଦ୍ଧା, ପ୍ରାଦେଶିକ ସରକାରମାନଙ୍କରେ ଆମେ ସାମାନ୍ୟ ସୁଯୋଗ ଯାହା ପାଇଥିଲୁ, ସମ୍ପୂର୍ଣ୍ଣ ଭାବରେ ତାର ସୁବିଧା ନେବାପାଇଁ ଚାହିଁଲୁ; କିନ୍ତୁ କର୍ତ୍ତବ୍ୟ ଓ ଦାୟିତ୍ୱରେ ଭାରାକ୍ରାନ୍ତ ଆମ ମନ୍ତ୍ରୀମାନଙ୍କ ପକ୍ଷରେ ତାହା ଥିଲା ଏକ ପ୍ରକାର ହୃଦସ୍ପନ୍ଦବିଦାରକ କର୍ମ; କାରଣ ସଙ୍ଗତି ଓ ସମଦୃଷ୍ଟିଭଙ୍ଗୀ ଅଭାବରୁ ସେମାନେ ଉଚ୍ଚ ସରକାରୀ-କର୍ମଚାରୀଙ୍କୁ ଏ ଗୁରୁଦାୟିତ୍ୱର ଅଂଶୀଦାର କରି ପାରୁ-ନଥିଲେ । ଆହୁରି ମଧ୍ୟ, ଦୁର୍ଭାଗ୍ୟର କଥା, ମନ୍ତ୍ରୀମାନଙ୍କ ସଂଖ୍ୟା ଥିଲା ମୁଷ୍ଟିମେୟ । ସରଳ

ଜୀବନଯାପନ ଓ ସରକାରୀ ଧନ ବ୍ୟୟ କରିବାରେ ସଂଯମର ଆଦର୍ଶ ପାଇଁ ଲୋକେ ସେମାନଙ୍କ ମୁହଁକୁ ଚାହୁଁଥିଲେ । ସେମାନଙ୍କର ଦରମା ଥିଲା ସ୍ୱଳ୍ପ ଏବଂ ଜଣେ ମନ୍ତ୍ରୀର ସେକ୍ରେଟେରୀ କିମ୍ବା ଅଧୀନସ୍ଥ କୌଣସି ଆଇ·ସି·ଏସ୍· ଦରମା ଓ ଭତ୍ତା ସ୍ୱରୂପ ମନ୍ତ୍ରୀଙ୍କ ଦରମାଠାରୁ ଚାରି ପାଞ୍ଚ ଗୁଣ ପାଉଥିଲେ । ସେମାନଙ୍କର ଦରମାରେ ହାତ ଦେବାର ସାମର୍ଥ୍ୟ ଆମର ନଥିଲା । ରେଳଗାଡ଼ିରେ ମନ୍ତ୍ରୀ ତୃତୀୟ ଅବା ଦ୍ୱିତୀୟ ଶ୍ରେଣୀରେ ଯାତ୍ରା କଲାବେଳେ ତାଙ୍କର ଅଧୀନସ୍ଥ କୌଣସି କର୍ମଚାରୀ ସେହି ଏକା ଗାଡ଼ିରେ ପ୍ରଥମ ଶ୍ରେଣୀରେ କିମ୍ବା ସ୍ୱତନ୍ତ୍ର ସେଲୁନ୍‌ରେ ଯାତ୍ରା କରିଥା'ନ୍ତି ।

ଅନେକେ କହନ୍ତି ଯେ କେନ୍ଦ୍ର କଂଗ୍ରେସ କାର୍ଯ୍ୟକାରୀ କମିଟି ଉପରୁ ନାନାପ୍ରକାର ପରିଚାଳନା ଜାରିକରି ପ୍ରାଦେଶିକ ସରକାରମାନଙ୍କ କାର୍ଯ୍ୟରେ ଅନବରତ ହସ୍ତକ୍ଷେପ କରୁଚନ୍ତି । ଏଥିରେ ତିଳେମାତ୍ର ସତ୍ୟତା ନାହିଁ । ପ୍ରଶାସନରେ କଂଗ୍ରେସ କେବେହେଲେ ହସ୍ତକ୍ଷେପ କରିନ । କଂଗ୍ରେସ କାର୍ଯ୍ୟକାରୀ କମିଟି ଯାହା ଚାହିଁଥାନ୍ତି, ତାହା ହେଉଚି ପ୍ରାଦେଶିକ ସରକାରମାନେ ସମସ୍ତ ମୌଳିକ ରାଜନୈତିକ ବିଷୟ ଉପରେ ଏକ ସର୍ବସାଧାରଣ ନୀତି ଅନୁସରଣ କରନ୍ତୁ ଏବଂ ନିର୍ବାଚନ ଇସ୍ତାହାରରେ ଦିଆଯାଇଥିବା କଂଗ୍ରେସର ପ୍ରୋଗ୍ରାମ୍ ଯେତେଦୂର ସମ୍ଭବ କାର୍ଯ୍ୟକାରୀ କରନ୍ତୁ । ବିଶେଷତଃ ଲାଟ ଓ ଭାରତ ସରକାରଙ୍କ ପ୍ରତି ଏମାନଙ୍କର ନୀତିରେ କୌଣସି ପ୍ରଭେଦ ନ ରହିବା ଦରକାର ।

ସମ୍ପୂର୍ଣ୍ଣଭାବରେ ଦାୟିତ୍ୱହୀନ ଓ ସ୍ୱେଚ୍ଛାଚାରୀ କେନ୍ଦ୍ର ସରକାରରେ କୌଣସି ପରିବର୍ତ୍ତନ ନକରି ପ୍ରାଦେଶିକ ସ୍ୱାୟତ୍ତଶାସନ ପ୍ରବର୍ତ୍ତିତ କରିବା ଫଳରେ ପ୍ରାଦେଶିକତା ଓ ବିବିଧତା ବୃଦ୍ଧି ଲାଭ କରିପାରେ ଓ ଭାରତୀୟ ଏକତାବୋଧ କ୍ଷୁଣ୍ଣ ହୋଇପାରେ । ବ୍ରିଟିଶ ସରକାର ଦେଶରେ ତାଙ୍କର ବିଚ୍ଛିନ୍ନତା ମନୋବୃତ୍ତି ଉତ୍ସାହିତ କରିବା ନୀତି ପ୍ରସାରିତ କରିବା ନିମନ୍ତେ ଏହା ଦୃଷ୍ଟି ସମ୍ମୁଖରେ ସମ୍ଭବତଃ ରଖିଥିଲେ । ଅନପସାରଣୀୟ ଦାୟିତ୍ୱହୀନ ଓ ସମବେଦନାହୀନ ଭାରତ ସରକାର; ଯାହା ବ୍ରିଟିଶ ସାମ୍ରାଜ୍ୟବାଦୀ ପରମ୍ପରାର ପ୍ରତିନିଧିତ୍ୱ କରେ, ପର୍ବତ ଭଳି ଦଣ୍ଡାୟମାନ ରହିଲା ଏବଂ ପ୍ରାଦେଶିକ ସରକାରମାନଙ୍କ ପ୍ରତି ଏକରକମର ନୀତି ଅନୁସରଣ କଲା । ନୂଆଦିଲ୍ଲୀ କିମ୍ବା ସିମ୍ଲାରୁ ଆଦେଷ୍ଟ, ଲାଟମାନେ ଠିକ୍ ସେହିଭଳି କାର୍ଯ୍ୟ କରୁଥିଲେ । ପ୍ରାଦେଶିକ କଂଗ୍ରେସ ସରକାରମାନେ ସ୍ୱକୀୟ ରୀତିରେ ଯଦି ଏହାଠାରୁ ଭିନ୍ନ ଭାବରେ କାର୍ଯ୍ୟ କରିଥାନ୍ତେ, ସେମାନଙ୍କୁ ପ୍ରତ୍ୟେକଙ୍କୁ ସ୍ୱତନ୍ତ୍ର ଭାବରେ ଅପସାରିତ କରାଯାଇଥାନ୍ତା । ଅତଏବ, ଭାରତ ସରକାରଙ୍କ ଆଗରେ ଏକ ମିଳିତ ସାମ୍ମୁଖ୍ୟ ରକ୍ଷା କରିବାପାଇଁ ପ୍ରାଦେଶିକ ସରକାରମାନେ ଏକଯୁଟ ରହିବା ନିତାନ୍ତ ଆବଶ୍ୟକ ଥିଲା । ଅନ୍ୟ ଦିଗରେ ଭାରତ ସରକାର ଏ ପ୍ରକାର ସହଯୋଗ ନିବାରଣ କରିବାପାଇଁ ବିଶେଷ ଭାବରେ ଆତୁର ଥିଲେ ଏବଂ ପ୍ରଦେଶ ପ୍ରଦେଶ ଭିତରେ ରହିଥିବା ସମ-ସମସ୍ୟା ଗୁଡ଼ିକର ସାମୂହିକ ସମାଧାନ କରିବା ପରିବର୍ତ୍ତେ ପ୍ରତ୍ୟେକ ପ୍ରାଦେଶିକ ସରକାର ସଙ୍ଗେ ସ୍ୱତନ୍ତ୍ର ସମ୍ପର୍କ ରଖିବା ମନସ୍ଥ କରୁଥିଲେ ।

ଖ୍ରୀ: ୧୯୩୭ ଅଗଷ୍ଟ ମାସରେ, ପ୍ରଦେଶମାନଙ୍କରେ କଂଗ୍ରେସ ସରକାର ଗଠନ କରିବା ପରେ ପରେ, କେନ୍ଦ୍ର-କଂଗ୍ରେସ କାର୍ଯ୍ୟକାରୀ କମିଟି ନିମ୍ନୋକ୍ତ ପ୍ରସ୍ତାବ ଗ୍ରହଣ କରିଥିଲେ :

"ଜାତୀୟ ପୁନର୍ଗଠନ ଓ ସାମାଜିକ ପରିକଳ୍ପନାର ଯେକୌଣସି ଯୋଜନା ନିମନ୍ତେ, ଯାହାର ମୀମାଂସା ସର୍ବାଦୌ ଆବଶ୍ୟକ, ସେହି ସବୁ ଜରୁରୀ ତଥା ଅପରିହାର୍ଯ୍ୟ ସମସ୍ୟା-ମାନଙ୍କର ବିଚାର ନିମନ୍ତେ ଏକ ବିଶେଷଜ୍ଞ କମିଟି ନିଯୁକ୍ତ କରିବାପାଇଁ କାର୍ଯ୍ୟକାରୀ କମିଟି କଂଗ୍ରେସ ମନ୍ତ୍ରୀମାନଙ୍କୁ ସୁପାରିସ୍ କରୁଚନ୍ତି । ଏ ପ୍ରକାର ମୀମାଂସା ନିମନ୍ତେ ବିସ୍ତୃତ ପରିମାପ ଓ ତଥ୍ୟ ସଂକଳନ ଏବଂ ସେଥି ସଙ୍ଗେ ସଙ୍ଗେ ସ୍ପଷ୍ଟ ଭାବରେ ନିରୂପିତ ଏକ ସାମାଜିକ ଲକ୍ଷ୍ୟ ଆବଶ୍ୟକ । ପ୍ରାଦେଶିକ ଭିତ୍ତିରେ ଏହି ସବୁ ସମସ୍ୟାର ସାର୍ଥକ ମୀମାଂସା କରାଯାଇ ନପାରେ; କାରଣ ଗୋଟାଏ ପ୍ରଦେଶ ସଙ୍ଗେ ଅନ୍ୟ ପ୍ରଦେଶମାନଙ୍କର ସ୍ୱାର୍ଥ ଜଡ଼ିତ ରହିଚି । ବିପର୍ଯ୍ୟସ୍ତକାରୀ ବନ୍ୟା ନିରୋଧ କରିବାପାଇଁ ଜଳସେଚନ ବ୍ୟବସ୍ଥାରେ ବନ୍ୟାଜଳ ବ୍ୟବ-ହାର କରିବାପାଇଁ, ମୃତ୍ତିକା ସଂରକ୍ଷଣ ପ୍ରଶ୍ନ ବିଚାର କରିବାପାଇଁ, ମେଲେରିଆ ନିରାକରଣ ପାଇଁ ଓ ଜଳ-ବିଦ୍ୟୁତ୍ ତଥା ଅନ୍ୟାନ୍ୟ ଯୋଜନାର ବିକାଶ ପାଇଁ ନିର୍ଦ୍ଦିଷ୍ଟ ନୀତି ଗ୍ରହଣ କରିବା ବେଳେ ନଦୀମାନଙ୍କର ବ୍ୟାପକ ସର୍ଭେ ଆବଶ୍ୟକ । ଏଥି ନିମନ୍ତେ ସମଗ୍ର ନଦୀ ଉପତ୍ୟକା ସର୍ଭେ କରିବାକୁ ପଡ଼ିବ ଓ ଖୁବ୍ ବଡ଼ ଆକାରରେ ରାଜ୍ୟ ପକ୍ଷରୁ ଯୋଜନା କରିବାକୁ ହେବ । ଶିଳ୍ପର ବିକାଶ ଓ ନିୟନ୍ତ୍ରଣ ଲାଗି ସୁଦ୍ଧା ଏକାଧିକ ପ୍ରଦେଶର ମିଳିତ ତଥା ସହଯୋଗମୂଳକ ପ୍ରଚେଷ୍ଟା ଆବଶ୍ୟକ । ଅତଏବ, କଂଗ୍ରେସ କାର୍ଯ୍ୟକାରୀ କମିଟି ପରାମର୍ଶ ଦେବାକୁ ଚାହାନ୍ତି ଯେ ପ୍ରଥମେ ଏକ ଆନ୍ତଃପ୍ରାଦେଶିକ ବିଶେଷଜ୍ଞ କମିଟି ନିଯୁକ୍ତ କରାଯାଉ ଓ ସେହି କମିଟି ବିଭିନ୍ନ ସମସ୍ୟାର ସାଧାରଣ ପ୍ରକୃତି ବିଚାର କରି ସେଗୁଡ଼ିକ କିପରି ଭାବରେ ଓ କେଉଁ କ୍ରମରେ ସମାଧାନ କରାଯାଇ ପାରିବ ପରାମର୍ଶ ଦିଅନ୍ତୁ । ଏହି ବିଶେଷଜ୍ଞ କମିଟି ପ୍ରତ୍ୟେକ ସମସ୍ୟାକୁ ସ୍ୱତନ୍ତ୍ର ଭାବରେ ବିଚାର କରିବାପାଇଁ ଅତିରିକ୍ତ କମିଟି ବା ବୋର୍ଡ଼ ଗଢ଼ିବାର ସୂଚନା ଦେଇ ପାରନ୍ତି ଏବଂ ମିଳିତ କାର୍ଯ୍ୟକ୍ରମ ନିମନ୍ତେ ସଂପୃକ୍ତ ପ୍ରାଦେଶିକ ସରକାରମାନଙ୍କୁ ପରାମର୍ଶ ଦେଇପାରନ୍ତି ।"

ପ୍ରାଦେଶିକ ସରକାରମାନଙ୍କୁ କେବେ କେବେ କି ପ୍ରକାର ପରାମର୍ଶ ଦିଆଯାଇଥାଏ, ଏହି ପ୍ରସ୍ତାବ ସୂଚିତ କରେ । ଏହା ଆହୁରି ମଧ୍ୟ ପ୍ରଦର୍ଶିତ କରେ ଯେ, ଅର୍ଥନୈତିକ ଓ ଶିଳ୍ପ କ୍ଷେତ୍ରରେ ପ୍ରାଦେଶିକ ସରକାରମାନଙ୍କ ଭିତରେ ସହଯୋଗ ଉତ୍ସାହିତ କରିବାପାଇଁ କଂଗ୍ରେସ କାର୍ଯ୍ୟକାରୀ କମିଟି କିଭଳି ଆକାଙ୍କ୍ଷିତ ଥିଲେ । ଆବଶ୍ୟକତଃ ଏ ପ୍ରକାର ପରାମର୍ଶ କଂଗ୍ରେସ ସରକାରମାନଙ୍କୁ ଦିଆଯାଉଥିଲେ ସୁଦ୍ଧା, ସେହି ସହଯୋଗ ସେମାନଙ୍କ ଭିତରେ ସୀମିତ ନଥିଲା । ବସ୍ତୁତଃ ଭାବରେ ନଦୀର ସର୍ଭେ କଲାବେଳେ ତାହା ଗୋଟିଏ ପ୍ରଦେଶର ସୀମା ଭିତରେ ଆବଦ୍ଧ ରହିପାରୁନଥିଲା । ଗାଙ୍ଗେୟ ଉପତ୍ୟକା ସର୍ଭେ କରିବା ଓ ଗଙ୍ଗା ନଦୀ କମିଶନ ସ୍ଥାପନ କରିବା (ଯେଉଁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଆହୁରି କରାଯାଇ ପାରିନି) ତିନିଗୋଟି ପ୍ରାଦେଶିକ ସରକାର—ଯୁକ୍ତ ପ୍ରଦେଶ, ବିହାର ଓ ବଙ୍ଗର ମିଳିତ ପ୍ରଚେଷ୍ଟାରେ ହିଁ ସମ୍ଭବ ହେଇପାରେ ।

କାର୍ଯ୍ୟକାରୀ କମିଟିର ପ୍ରସ୍ତାବ ସରକାରୀ ପ୍ରଚେଷ୍ଟାର ବଡ଼ ବଡ଼ ଯୋଜନା ପ୍ରତି କି ଗୁରୁତ୍ୱ ଅର୍ପଣ କରେ, ତାହା ମଧ୍ୟ ପ୍ରଦର୍ଶିତ କରେ । କେନ୍ଦ୍ର ସରକାର ଲୋକପ୍ରତିନିଧି-ମାନଙ୍କର ଆୟତ୍ତରେ ନ ରହିବା ପର୍ଯ୍ୟନ୍ତ ଓ ପ୍ରାଦେଶିକ ସରକାରମାନଙ୍କର ଗୋଡ଼ର ବେଡ଼ି ଦୂର ନହେଲା ପର୍ଯ୍ୟନ୍ତ ଏ ପ୍ରକାର ଯୋଜନାମାନ କାର୍ଯ୍ୟକାରୀ କରିବା ଅସମ୍ଭବ । ତଥାପି, ଆମେ ଆଶା କରିଥିଲୁ ଯେ, କେତେକ ଅତ୍ୟାବଶ୍ୟକ ପ୍ରାରମ୍ଭିକ କାର୍ଯ୍ୟ କରାଯିବ ଓ ଭବିଷ୍ୟତର ଯୋଜନାର ଭିତ୍ତି ସ୍ଥାପିତ ହେବ; କିନ୍ତୁ ଦୁର୍ଭାଗ୍ୟର କଥା, ପ୍ରାଦେଶିକ ସରକାରମାନେ ନିଜ ନିଜ ସମସ୍ୟା ନେଇ ଏତେ ଭଳି ବ୍ୟସ୍ତ ରହିଲେ ଯେ ଏହି ପ୍ରସ୍ତାବ କାର୍ଯ୍ୟକାରୀ କରିବାରେ ବିଳମ୍ବ ଘଟିଲା । ଯେ ଯାହାହେଉ, ଖ୍ରୀ: ୧୯୩୮ ଦ୍ୱିତୀୟାର୍ଦ୍ଧରେ ଏକ ଜାତୀୟ ଯୋଜନା କମିଟି ଗଠନ କରାଗଲା ଓ ମୁଁ ତାର ଚେୟାରମ୍ୟାନ୍ ହେଲି ।

ବହୁ ଅବସରରେ ମୁଁ କଂଗ୍ରେସ ସରକାରମାନଙ୍କ କାର୍ଯ୍ୟର ସମାଲୋଚନା କରିଥାଏ ଓ ସେମାନଙ୍କର ପ୍ରଗତିର ମନ୍ଥରତା ମତେ ବିରକ୍ତ କରିଥାଏ; କିନ୍ତୁ ପଛକୁ ଗୁହିଁ ଦେଖିଲେ ନାନାପ୍ରକାର ଅସୁବିଧାର ଘେର ଭିତରେ ପଡ଼ିଥିଲେ ସୁଦ୍ଧା ମାତ୍ର ଦୁଇ ବର୍ଷ ତିନି ମାସର ସ୍ୱଳ୍ପକାଳ ମଧ୍ୟରେ ସେମାନେ ଯାହାସବୁ କରି ପାରିଚନ୍ତି, ମୁଁ ବାସ୍ତବିକ ବିସ୍ମିତ ହୁଏ । ଦୁର୍ଭାଗ୍ୟର କଥା, ସେମାନଙ୍କର କେତକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଫଳପ୍ରସୂ ହେଇପାରିଲାନାହିଁ; କାରଣ ସେସବୁ କାର୍ଯ୍ୟ ଠିକ୍ ପୂର୍ଣ୍ଣ ହେବା ବେଳକୁ ପ୍ରଦେଶମାନଙ୍କର କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ ଏବଂ ସେମାନଙ୍କର ଉତ୍ତରାଧିକାରୀ ବ୍ରିଟିଶ ଲାଟ୍ ସେସବୁ କାର୍ଯ୍ୟ ପ୍ରତି ଦୃଷ୍ଟି ଦେଲେନାହିଁ । କଂଗ୍ରେସ ଶାସନ ଫଳରେ ବିଳମାଳର କୃଷୀ ଓ ଶିଳ୍ପ କ୍ଷେତ୍ରର ଶ୍ରମିକ ଲାଭବାନ ହେଲେ ଓ ସେମାନଙ୍କର ଶକ୍ତି ବର୍ଦ୍ଧିତ ହେଲା । ସଫଳତା ସହକାରେ ସମ୍ପାଦିତ କାର୍ଯ୍ୟମାନଙ୍କ ଭିତରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ସୁଦୂର ପ୍ରସାରୀ ଏକ କାର୍ଯ୍ୟ ହେଉଚି ମୌଳିକ ଶିକ୍ଷା ନାମରେ ଅଭିହିତ ଏକ ଗଣଶିକ୍ଷା ପଦ୍ଧତିର ପ୍ରବର୍ତ୍ତନ । ଏହି ପଦ୍ଧତି ଶିକ୍ଷାର ନବୀନତମ ସିଦ୍ଧାନ୍ତ ଉପରେ ଭିତ୍ତି କରିଥିଲା କେବଳ ନୁହେଁ; ବରଂ ଭାରତୀୟ ଅବସ୍ଥା ପ୍ରତି ଏହା ଥିଲା ବିଶେଷ ଉପଯୋଗୀ ।

ପ୍ରଗତିଶୀଳ ପରିବର୍ତ୍ତନର ମାର୍ଗରେ ପ୍ରତ୍ୟେକ ଧରଣର ନ୍ୟସ୍ତସ୍ୱାର୍ଥ ପଥରୋଧ କରିବାକୁ ବସିଲା । କାନପୁର ଲୁଗାକଳର ଶ୍ରମିକମାନଙ୍କ ଅବସ୍ଥା ସମ୍ପର୍କରେ ଅନୁସନ୍ଧାନ କରିବାପାଇଁ ଯୁକ୍ତପ୍ରଦେଶ ସରକାର ଯେଉଁ କମିଟି ନିଯୁକ୍ତ କଲେ, ମାଲିକମାନେ (ମୁଖ୍ୟତଃ ୟୁରୋପୀୟ ହେଲେ ବି ଭାରତୀୟ ବି ଥିଲେ) ସେଥି ପ୍ରତି ଖୁବ୍ ଅଶିଷ୍ଟ ବ୍ୟବହାର କଲେ ଓ କୌଣସି ତଥ୍ୟ ଦେଇନଥିଲେ । ଶ୍ରମିକମାନେ ମିଲ୍‌ମାଲିକ ଓ ସରକାର ଉଭୟର ସଂଗଠିତ ପ୍ରତି-ରୋଧର ସମ୍ମୁଖୀନ ହେଇ ଆସୁଥିଲେ ଓ ପୁଲିସ୍ ସର୍ବଦା ମାଲିକଙ୍କ ସେବାରେ ନିୟୋଜିତ ଥିଲା । ଅତଏବ, ଶିଳ୍ପ କ୍ଷେତ୍ରରେ କଂଗ୍ରେସ ସରକାର ଦ୍ୱାରା ପ୍ରବର୍ତ୍ତିତ ପରିବର୍ତ୍ତିତ ନୀତି ମାଲିକମାନଙ୍କ ପ୍ରଚ୍ଛନ୍ନ କ୍ରୋଧର କାରଣ ହେଲା । ଭାରତରେ ଶ୍ରମିକ ଆନ୍ଦୋଳନ ସଙ୍ଗେ ବହୁ ଦିନରୁ ସମ୍ପୃକ୍ତ ଓ ସେ କ୍ଷେତ୍ରର ଜଣେ ନରମପନ୍ଥୀ ଭାବରେ ପରିଚିତ ଶ୍ରୀଯୁକ୍ତ ବି· ଶିବରାଓ ମାଲିକମାନଙ୍କ କୌଶଳ ସମ୍ପର୍କରେ ଲେଖିଚନ୍ତି : "ଏ ପ୍ରକାର

ଅବସରମାନଙ୍କରେ (ଧର୍ମଘଟ ଇତ୍ୟାଦି) ପୋଲିସ୍ ସହାୟତାରେ ମାଲିକମାନେ ଯେଉଁ ଉପାୟ ଉଦ୍ଭାବନ ନୈପୁଣ୍ୟ ଓ ଅବିବେକତା ପ୍ରଦର୍ଶନ କରିଥାନ୍ତି, ଭାରତୀୟ ଅବସ୍ଥା ସଙ୍ଗେ ପରିଚିତ ନ ଥିଲେ ବିଶ୍ୱାସ କରିବା କଠିନ ।'' ଅଧିକାଂଶ ଦେଶର ସରକାର, ସେମାନଙ୍କର ଗଠନ ଚରିତ୍ର ଯୋଗୁ ମାଲିକ ପକ୍ଷକୁ ଢଳି ରହିଥାନ୍ତି । ଭାରତରେ ଏଥି ନିମନ୍ତେ ଆଉ ଏକ ଅତିରିକ୍ତ କାରଣ ସୂଚିତ କରିଚନ୍ତି ଶ୍ରୀ ଶିବରାଓ : "ବ୍ୟକ୍ତିଗତ ବୈରଭାବ ବ୍ୟତୀତ ମାତ୍ର କେତେଜଣଙ୍କୁ ବାଦ ଦେଲେ, ଭାରତରେ ହାକିମମାନଙ୍କ ମନରେ ଗୋଟାଏ ଭୟ ବରାବର ଘର କରି ରହିଚି ଯେ ଶ୍ରମିକସଙ୍ଘ ଗୁଡ଼ିକୁ ବଢ଼ିବାର ସୁଯୋଗ ଯଦି ଦିଆଯାଏ; ତାହା ଗଣଚେତନା ଜାଗ୍ରତ କରିବ ଏବଂ ଭାରତରେ ଯେଉଁ ରାଜନୈତିକ ସଂଗ୍ରାମ ଚାଲିଚି ଓ ମଧ୍ୟେ ମଧ୍ୟେ ଅସହଯୋଗ ତଥା ଆଇନ ଅମାନ୍ୟ ଆନ୍ଦୋଳନ ଆକାରରେ ଯେପରି କ୍ଷିପ୍ର ହୋଇ ଉଠୁଚି, ଗଣ ସଂଗଠନ ସନ୍ଦାନ୍ତରେ କୌଣସି ସମ୍ଭାବ୍ୟ ବିପଦ ଭିତରକୁ ମାଡ଼ିଯିବା ଠିକ୍ ହେବନାହିଁ ।'' (୧)

ସରକାର ନୀତି ନିର୍ଦ୍ଦେଶ କରନ୍ତି । ବ୍ୟବସ୍ଥାପକସଭା ଆଇନ ପ୍ରଣୟନ କରନ୍ତି; କିନ୍ତୁ ଏହି ନୀତିକୁ କାର୍ଯ୍ୟକାରୀ କରିବା ଓ ଏହିସବୁ ଆଇନ୍‌କୁ ପ୍ରୟୋଗ କରିବା ପରିଶେଷରେ ଶାସନକଳର କର୍ମଚାରୀମାନଙ୍କ ତତ୍ପରତା ଉପରେ ନିର୍ଭର କରେ । ଅତଏବ, ପ୍ରାଦେଶିକ ସରକାରମାନଙ୍କୁ ସ୍ଥାୟୀ କୃତ୍ୟକ ବିଶେଷତଃ ଆଇ. ସି. ଏସ୍. ଓ ପୁଲିସ୍ ବିଭାଗ ଉପରେ ଅପରିହାର୍ଯ୍ୟ ଭାବରେ ନିର୍ଭର କରିବାକୁ ପଡ଼ିଲା । ଗୋଟାଏ ଭିନ୍ନ ତଥା ପ୍ରଭୁତ୍ୱକାରୀ ପରମ୍ପରାରେ ପରିପାଳିତ ଏହି ସବୁ କୃତ୍ୟକ ନୂତନ ବାତାବରଣ, ଜନସାଧାରଣଙ୍କ ଦୃଢ଼ତା-ସୂଚକ ଭାବଭଙ୍ଗୀ, ସେମାନଙ୍କର ନିଜ ମହତ୍ତ୍ୱର କ୍ଷୁଣ୍ଣତା ଏବଂ ଯେଉଁମାନଙ୍କୁ ଗିରଫ କରି ଜେଲ୍ ଦଣ୍ଡ ଦେବା ଥିଲା ସେମାନଙ୍କର ଅଭ୍ୟାସ, ସେମାନଙ୍କ ତଳେ କାମ କରିବା ପସନ୍ଦ କରୁନଥିଲେ । କଂଗ୍ରେସ ସରକାର ପରିଚାଳନା ଦାୟିତ୍ୱ ନେବା ପରେ ଏମାନେ ଭବିଷ୍ୟତ ସମ୍ପର୍କରେ ଅନିଶ୍ଚିତ, ପ୍ରଥମେ କେତେକାଂଶରେ ଆତଙ୍କିତ ହୋଇ ପଡ଼ିଥିଲେ । କିନ୍ତୁ ସେପରି କିଛି ବୈପ୍ଳବିକ ପରିବର୍ତ୍ତନ ଘଟିଲା ନାହିଁ ଏବଂ କୃତ୍ୟକମାନେ କ୍ରମଶଃ ପୂର୍ବଭଳି ସେମାନଙ୍କର ଦୈନନ୍ଦିନ କର୍ମପନ୍ଥା ଅନୁସରଣ କରି ଚାଲିଲେ । ସେମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବା ମନ୍ତ୍ରୀମାନଙ୍କ ପକ୍ଷରେ ସହଜ ନଥିଲା । ସେପରି ଅବସ୍ଥାରେ, ଯେଉଁଠି ହସ୍ତକ୍ଷେପ କରିବା ପ୍ରମାଣ ଦାବି କରେ, ସେଇଠି କେବଳ ହସ୍ତକ୍ଷେପ କରିବା ସମ୍ଭବ ଥିଲା । ଆଇ. ସି. ଏସ୍. ପୁଲିସ ଆଦି ସ୍ଥାୟୀ କୃତ୍ୟକମାନଙ୍କ ଭିତରେ ଘନିଷ୍ଠ ସହଯୋଗ ରହିଥିଲା ଏବଂ ଜଣେ ଯଦି ସ୍ଥାନାନ୍ତରିତ ହୁଏ ତାର ସ୍ଥାନକୁ ଆସିବା ଲୋକ ପୂର୍ବର ରୀତି ହିଁ ଅନୁସରଣ କରିବାର ଯଥେଷ୍ଟ ସମ୍ଭାବନା ରହିଥିଲା । ସେମାନଙ୍କର ପରମ୍ପରାଗତ ପ୍ରତିକ୍ରିୟାଶୀଳ ତଥା ସ୍ୱେଚ୍ଛାଚାରୀ ମନୋଭାବ ହଠାତ୍ ପରିବର୍ତ୍ତନ କରାଇବା ସମ୍ଭବ ନଥିଲା । ଅବସ୍ଥାକୁ ଧରି କେତେକଜଣ ପରିବର୍ତ୍ତିତ ହୋଇପାରନ୍ତି, ନୂତନ ଅବସ୍ଥା ସଙ୍ଗେ ପାଦ

(୧) 'ଦି ଇଣ୍ଡଷ୍ଟ୍ରିଆଲ୍ ଓ୍ୱାରକର୍ ଇନ୍ ଇଣ୍ଡିଆ', ଶିବରାଓ ।

ମିଳାଇ ଚାଲିବାପାଇଁ ପ୍ରକୃତ ପ୍ରୟାସ କରିପାରନ୍ତି; କିନ୍ତୁ ସେମାନଙ୍କ ଭିତରୁ ଅଧିକାଂଶ ଭିନ୍ନ ଭାବରେ ଚିନ୍ତା କରୁଥିଲେ ଓ ଭିନ୍ନ ଭାବରେ କାର୍ଯ୍ୟକରି ଆସିବା ସେମାନଙ୍କର ଅଭ୍ୟାସରେ ପରିଣତ ହୋଇସାରିଥିଲା । ସମ୍ପୂର୍ଣ୍ଣ ଭାବରେ ରୂପାନ୍ତରିତ ହୋଇ ସେମାନେ ଗୋଟାଏ ନୂତନ ବ୍ୟବସ୍ଥାର ଭକ୍ତ ହୋଇ ପାରନ୍ତେ କିପରି ? ବଡ଼ ହେଲେ ଏକ ପ୍ରକାର ଜଡ଼ ତଥା ନିଶ୍ଚେଷ୍ଟ ଆନୁଗତ୍ୟ କେବଳ ସେମାନଙ୍କ ପାଖରୁ ଆଶା କରାଯାଇପାରେ । ପ୍ରକୃତପକ୍ଷେ, ସେମାନଙ୍କର କର୍ମକ୍ଷେତ୍ରର ପ୍ରକୃତିବଶତଃ ନୂତନ ଧରଣର କାର୍ଯ୍ୟ ପାଇଁ ସେମାନଙ୍କ ମନରେ ଉତ୍ସାହ ସୃଷ୍ଟି ହୋଇପାରି ନଥାନ୍ତା; କାରଣ ଏକେ ଏ ପ୍ରକାର କାର୍ଯ୍ୟରେ ସେମାନଙ୍କର ବିଶ୍ୱାସ ନଥିଲା, ଆହୁରି ମଧ୍ୟ ତଦ୍ଦ୍ୱାରା ସେମାନଙ୍କର ନ୍ୟସ୍ତସ୍ୱାର୍ଥରେ ବାଧା ପଡୁଥିଲା । ଦୁର୍ଭାଗ୍ୟର କଥା, ଏହି ଜଡ଼ ଆନୁଗତ୍ୟ ସୁଦ୍ଧା ବହୁ ଅବସରରେ ସେମାନଙ୍କ ପକ୍ଷରୁ ମିଳୁନଥିଲା ।

ନିରଙ୍କୁଶ ଶାସନ ଓ ପ୍ରଭୁତ୍ୱ ପ୍ରତିଷ୍ଠାର ବିବିଧ ପ୍ରଣାଳୀ ସଙ୍ଗେ ବହୁ ଦିନାବଧି ଅଭ୍ୟସ୍ତ ସିଭିଲ୍ ସର୍ଭିସ ଉଚ୍ଚବର୍ଗର ସଭ୍ୟମାନଙ୍କ ଭିତରେ ଗୋଟାଏ ଭାବ ରହିଥିଲା ଯେ, ଏହିସବୁ ମନ୍ତ୍ରୀ ଓ ବ୍ୟବସ୍ଥାପକମାନେ ସେମାନଙ୍କ ପାଇଁ ସଂରକ୍ଷିତ ଇଲାକା ଭିତରେ ଅନଧିକାର ପ୍ରବେଶ କରିଚନ୍ତି । ପୁରାତନ ଧାରଣା ଅନୁସାରେ ସେମାନେ ଅର୍ଥାତ୍ ଆଇ. ସି ଏସ୍.ମାନେ ବିଶେଷତଃ ସେହି ସମ୍ପ୍ରଦାୟର ଇଂରେଜମାନେ ମନେ କରୁଥିଲେ ଯେ ଭାରତ କହିଲେ ସେମାନଙ୍କୁ ହିଁ ବୁଝାଏ ଓ ଅନ୍ୟ ଯେତେ ସବୁ ଅନାବଶ୍ୟକ ଓ ମହତ୍ତ୍ୱହୀନ । ଏ ଧାରଣା ସେମାନଙ୍କର ବଦ୍ଧମୂଳ ଥିଲା । ନବାଗତଙ୍କୁ ବରଦାସ୍ତ କରିବା ସେମାନଙ୍କ ପକ୍ଷରେ ସହଜ ହୋଇନଥିଲା, ଆଉ ସେମାନଙ୍କର ହୁକୁମ ମାନିବା ପ୍ରକୃତରେ ଘୋର କଷ୍ଟ ବୋଧ ହେଉଥିଲା । ନିଜର କୌଣସି ନିର୍ଦ୍ଦିଷ୍ଟ ଆରାଧନା ମନ୍ଦିର ଭିତରକୁ ଅଛିବମାନେ ପଶିଆସିଲେ ଜଣେ ନୈଷ୍ଠିକ ହିନ୍ଦୁର ମନୋଭାବ ଯାହା ହୁଅନ୍ତା, ସେମାନେ ଠିକ୍ ସେହିଭଳି ଅନୁଭବ କରୁଥିଲେ । ଏତେ ପରିଶ୍ରମ ସହକାରେ ମର୍ଯ୍ୟାଦା ଓ ଜାତି-ପରାକାଷ୍ଠାର ଯେଉଁ ସୌଧ ସେମାନେ ନିର୍ମାଣ କରିଥିଲେ ଏବଂ ଯାହା ସେମାନେ ନିଜର ଧର୍ମ ବୋଲି ମଣୁଥିଲେ, ତାହା ଦୀର୍ଣ୍ଣ ହୋଇପଡୁଥିଲା । କଥିତ ଅଛି, ଚୀନାମାନେ 'ମୁହଁ' (୧) ଉପରେ ବିଶେଷ ଗୁରୁତ୍ୱ ଦେଇଥାନ୍ତି । ତଥାପି ମୋର ସନ୍ଦେହ ହୁଏ, ଭାରତର ଗୋରାଙ୍କ ଭଳି କୌଣସି ଚୀନା 'ମୁହଁ' ପ୍ରତି ଏତେ ଆବେଗଭରେ ଅନୁରକ୍ତ କି ନା । ଭାରତର ଗୋରାଙ୍କ ପକ୍ଷରେ 'ମୁହଁ' ବ୍ୟକ୍ତିଗତ, ଜାତିଗତ ତଥା ଜାତୀୟ ମର୍ଯ୍ୟାଦାସୂଚକ କେବଳ ନୁହେଁ; ବରଂ ସେମାନଙ୍କର ଶାସନ ଓ ନ୍ୟସ୍ତସ୍ୱାର୍ଥ ସଙ୍ଗେ ଅନ୍ତରଙ୍ଗ ଭାବରେ ସଂଶ୍ଳିଷ୍ଟ ।

ତଥାପି, ନବାଗତମାନଙ୍କୁ ବରଦାସ୍ତ କରିବାକୁ ହିଁ ପଡ଼ିଲା; କିନ୍ତୁ ଭୟବୋଧ ଯେତିକି ଯେତିକି ହ୍ରାସ ପାଇବାକୁ ଲାଗିଲା, ସେହି ଅନୁପାତରେ ବରଦାସ୍ତ କରିବା ମନୋବୃତ୍ତି ମଧ୍ୟ କ୍ରମଶଃ ହ୍ରାସ ହେବାକୁ ଲାଗିଲା । ପ୍ରଶାସନର ସବୁ ବିଭାଗରେ ଏହି ମନୋଭାବ ଯୋଟି

(୧) ଯେପରି 'ମୁହଁ' ହରାଇବା 'ମୁହଁ' ବଞ୍ଚାଇବା ଇତ୍ୟାଦି ।

ରହିଥିଲା; କିନ୍ତୁ ରାଜଧାନୀଠାରୁ ଦୂରରେ, ଜିଲ୍ଲାମାନଙ୍କରେ ଆଇନ ଓ ଶୃଙ୍ଖଳା ବୋଲି ଯାହା କହନ୍ତି, ଆଉ ଯାହା ଜିଲ୍ଲା ମାଜିଷ୍ଟ୍ରେଟ ଓ ପୁଲିସର ଖାସ୍ ଇଲକା, ସେସବୁ ବିଷୟରେ ଏହି ମନୋଭାବ ସ୍ପଷ୍ଟ ହେଇଉଠୁଥିଲା । କଂଗ୍ରେସ ସରକାର ନାଗରିକ ସ୍ୱାଧୀନତା ଉପରେ ଜୋର୍‌ଦେବା ଫଳରେ ସ୍ଥାନୀୟ କର୍ମଚାରୀ ଓ ପୋଲିସ ସେପରି କେତେ କାଣ୍ଡ ଘଟିବାର ସୁଯୋଗ ଦିଆଇଲେ; ଯାହା ସାଧାରଣତଃ କୌଣସି ସରକାର ଘଟିବାକୁ ଦେଇନଥାନ୍ତି । ପ୍ରକୃତ ପକ୍ଷେ, ମୁଁ ଭଲଭାବରେ ବୁଝିଚି ଯେ ସେପରି କେତେକ ଅବାଞ୍ଛିତ ଘଟଣାର ସୂତ୍ରପାତ କରିଥିଲେ ସ୍ଥାନୀୟ କର୍ମଚାରୀ କିମ୍ବା ପୁଲିସ । ଯେଉଁସବୁ ସାମ୍ପ୍ରଦାୟିକ ଗଣ୍ଡଗୋଳ ଘଟିଗଲା, ସେଥିରୁ ଅଧିକାଂଶ ପଛରେ ନାନାବିଧ କାରଣ ଅବଶ୍ୟ ଥିଲା; କିନ୍ତୁ ଏକଥା ନିଶ୍ଚିତ ଯେ ମାଜିଷ୍ଟ୍ରେଟମାନେ ଓ ପୁଲିସ ଲୋକେ ସର୍ବଦା ଦୋଷମୁକ୍ତ ନଥିଲେ । ଅଭିଜ୍ଞତାରୁ ଜଣାଯାଇଚି, ଗଣ୍ଡଗୋଳ ଉପୁଜିବା ସଙ୍ଗେ ସଙ୍ଗେ ଦକ୍ଷତା ସହକାରେ ତା'ର ମୁକାବିଲା କରିବା ମାତ୍ରେ ଅବସ୍ଥା ଶାନ୍ତ ହେଇ ଯାଇଚି; କିନ୍ତୁ ବାରମ୍ବାର ଆମେ ଯାହା ଦେଖିଲୁ ତାହା ହେଉଚି କର୍ତ୍ତବ୍ୟରେ ବିସ୍ମୟକର ଶୈଥିଲ୍ୟ ଓ ସୁଚିନ୍ତିତ ଛଳନା । ସ୍ପଷ୍ଟ ପ୍ରତୀତ ହେଉଥିଲା ଯେ ଏଥିର ଉଦ୍ଦେଶ୍ୟ ହେଉଚି କଂଗ୍ରେସ ସରକାରମାନଙ୍କୁ ନିନ୍ଦାର ପାତ୍ର କରିବା । ଯୁକ୍ତପ୍ରଦେଶରେ ଶିଳ୍ପ ନଗରୀ କାନ୍‌ପୁର ସ୍ଥାନୀୟ କର୍ମଚାରୀମାନଙ୍କର ଶୁଦ୍ଧ ନିର୍ବୁଦ୍ଧିତା ଓ ସୁଚିନ୍ତିତ ଅବ୍ୟବସ୍ଥାର ଜ୍ୱଳନ୍ତ ଦୃଷ୍ଟାନ୍ତ । ସାମ୍ପ୍ରଦାୟିକ ବିବାଦ ଯାହା କେବେ କେବେ ସ୍ଥାନୀୟ ଭାବରେ ଦଙ୍ଗାହାଙ୍ଗାମାରେ ପରିଣତ ହେଇଥାଏ, ଖ୍ରୀ: ୧୯୩୦ର କେତେ ବର୍ଷ ପୂର୍ବରୁ ଓ କେତେବର୍ଷ ପରେ ଅଧିକତର ଭାବରେ ଘଟିଲା; କିନ୍ତୁ କଂଗ୍ରେସ ଶାସନ ଦାୟିତ୍ୱ ନେବା ପରେ କେତେକ ପରିମାଣରେ ତାହା କମିଗଲା । ତା'ର ପ୍ରକୃତି ବଦଳିଗଲା ଏବଂ ସୁଚିନ୍ତିତ ଭାବରେ ଉତ୍ସାହିତ ଓ ସଂଗଠିତ, ନିର୍ଦ୍ଦିଷ୍ଟ ଏକ ରାଜନୈତିକ ରୂପ ପରିଗ୍ରହ କଲା ।

ସିଭିଲ୍ ସର୍ଭିସ୍‌ର ସୁନାମ ଥିଲା ଦକ୍ଷତା ପାଇଁ । ପ୍ରଧାନତଃ ସେମାନଙ୍କ ତରଫରୁ ହିଁ ଏପରି ପ୍ରଚାର ହେଉଥାଏ; କିନ୍ତୁ ଦେଖାଗଲା ଯେ ସେମାନଙ୍କର ସଙ୍କୀର୍ଣ୍ଣ କର୍ମକ୍ଷେତ୍ର ଯାହା ସଙ୍ଗେ ସେମାନେ ଅଭ୍ୟସ୍ତ, ତା'ର ବାହାରେ ସେମାନେ ସମ୍ପୂର୍ଣ୍ଣ ଅସହାୟ ଓ ଅସମର୍ଥ । ଗଣତାନ୍ତ୍ରିକ ରୀତିରେ କାର୍ଯ୍ୟ କରିବା ତାଲିମ ସେମାନଙ୍କର ନ ଥିଲା ଏବଂ ଯାହାଙ୍କ ପ୍ରତି ସେମାନଙ୍କର ଭୟ ଓ ଘୃଣା ରହିଥିଲା, ସେହି ଜନସାଧାରଣଙ୍କର ସହଯୋଗ ଓ ଶୁଭେଚ୍ଛା ସେମାନେ ଅର୍ଜନ କରିପାରୁନଥିଲେ । ସାମାଜିକ ପ୍ରଗତି ନିମନ୍ତେ କୌଣସି ବଡ଼ ତଥା ଦ୍ରୁତଗାମୀ ଯୋଜନା ସମ୍ପର୍କରେ ସେମାନଙ୍କର ଧାରଣା ନଥିଲା ଏବଂ ଲାଲଫିତା ଓ ନିର୍ବୁଦ୍ଧିତା ଦ୍ୱାରା ସେ ପ୍ରକାର ଯୋଜନାର ଅନିଷ୍ଟ କରିବା ଛଡ଼ା ଅଧିକ କିଛି କରିବାପାଇଁ ସେମାନଙ୍କର ସାମର୍ଥ୍ୟ ନଥିଲା । କେତେକ ବ୍ୟକ୍ତିବିଶେଷଙ୍କୁ ବାଦ୍ ଦେଲେ ଇଂରେଜ ଓ ଭାରତୀୟ ଉଚ୍ଚବର୍ଗର କର୍ମଚାରୀଙ୍କ ପ୍ରତି ଏହା ପ୍ରଯୁଜ୍ୟ । ଯେଉଁସବୁ ନୂତନ କର୍ମଜଞ୍ଜାଳର ସମ୍ମୁଖୀନ ସେମାନେ ଥିଲେ ସେଥି ପାଇଁ ସେମାନେ କେତେ ଭଳି ଅନୁପଯୁକ୍ତ ଭାବିଲେ ବିସ୍ମୟ ଲାଗେ ।

ଅପର ପକ୍ଷରେ ଲୋକପ୍ରତିନିଧିମାନଙ୍କ ଠାରେ ମଧ୍ୟ ଯଥେଷ୍ଟ ପରିମାଣରେ ଅନୁପଯୁକ୍ତତା ଓ ଅସାମର୍ଥ୍ୟ ଅବଶ୍ୟ ରହିଥିଲା; କିନ୍ତୁ କର୍ମକ୍ଷମତା, ଅପୂର୍ବ ଉତ୍ସାହ, ଜନସାଧାରଣଙ୍କ ସଙ୍ଗେ ଘନିଷ୍ଠ ସମ୍ପର୍କ ଏବଂ ଥରେ ଭୁଲ୍ କଲେ ସେଥିରୁ ଶିକ୍ଷା ଗ୍ରହଣ କରିବାର ଅଭିଳାଷ ଓ ସାମର୍ଥ୍ୟ ଲାଗି ଅନ୍ୟ ସବୁ ସେତେ ଭଲ ପରିସ୍ଫୁଟ ହେଉନଥିଲା । ସେମାନଙ୍କଠାରେ ଶକ୍ତି ଥିଲା, ଉଚ୍ଛଳ ଜୀବନ ଥିଲା, ଅନୁପ୍ରେରଣା ଥିଲା ଓ କୌଣସି ପ୍ରକାରେ ହେଲେ କାର୍ଯ୍ୟ ସମ୍ପାଦନ କରିବାର ଅଭିଳାଷ ଥିଲା । ବ୍ରିଟିଶ ଶାସକବର୍ଗ ଓ ସେମାନଙ୍କ ସମର୍ଥକମାନଙ୍କ ଉପେକ୍ଷା, ଅନୁଦାରତା ଓ ରକ୍ଷଣଶୀଳତା ସଙ୍ଗେ ତୁଳନା କରି ଦେଖିଲେ ଏକ ବିଚିତ୍ର ଅସମାନତା ଦୃଷ୍ଟିରେ ପଡ଼ୁଥିଲା । ଏପରି ଭାବରେ, ପରମ୍ପରାର ଦେଶ ଭାରତ ଏକ ବ୍ୟଙ୍ଗଚିତ୍ରରେ ପର୍ଯ୍ୟବସିତ ହୋଇଥିଲା । ଗୋଟାଏ ଗତିଶୀଳ ସମାଜର ପ୍ରତିନିଧି ଭାବରେ ଯେଉଁ ଇଂରେଜମାନେ ଏଠାକୁ ଆସିଥିଲେ; ସେମାନେ ଗୋଟାଏ ଗତିହୀନ, ପରିବର୍ତ୍ତନ-ବିମୁଖ ପରମ୍ପରାର ମୁଖ୍ୟ କାର୍ଯ୍ୟିଦାର ହୋଇ ଉଠିଲେ । ଭାରତୀୟଙ୍କ ଭିତରୁ ଅନେକେ, ଯେଉଁମାନେ ଏହି ନୂତନ ଗତିଶୀଳ ବ୍ୟବସ୍ଥାର ପ୍ରତିନିଧିତ୍ୱ କରିଥିଲେ, ରାଜନୈତିକ କେବଳ ନୁହେଁ, ସାମାଜିକ ଓ ଅର୍ଥନୈତିକ ପରିବର୍ତ୍ତନ ପାଇଁ ମଧ୍ୟ ଥିଲେ ଉତ୍ସୁକ । ସେହି ଭାରତୀୟଙ୍କ ପଛରେ ବିପୁଳ କେତେ ନୂତନ ଶକ୍ତି କାର୍ଯ୍ୟ କରୁଥିଲା; ଯାହା ସମ୍ପର୍କରେ ସେମାନେ ହୁଏତ ଅଜ୍ଞାତ ଥିଲେ । ଏହି ପରିବର୍ତ୍ତିତ ଭୂମିକା ବା ବ୍ୟଙ୍ଗାଭିନୟ ପ୍ରଦର୍ଶିତ କରୁଥିଲା ଯେ ଭାରତରେ ଅତୀତରେ ଯାହା କିଛି ରଚନାତ୍ମକ କିମ୍ବା ପ୍ରଗତିଶୀଳ ଭୂମିକା ଇଂରେଜମାନେ ଗ୍ରହଣ କରିଥାନ୍ତୁ ନା କାହିଁକି, ବହୁ ଦିନରୁ ସେହି ଭୂମିକା ସେମାନେ ପରିହାର କରି ସାରିଲେଣି ଏବଂ ବର୍ତ୍ତମାନ ସବୁକିଛି ପ୍ରଗତିର ପ୍ରବଳ ଅନ୍ତରାୟ ଭାବରେ କେବଳ ରହିଛନ୍ତି । ସେମାନଙ୍କର କର୍ମ ଜୀବନ ଥିଲା ମନ୍ଥର ଏବଂ ମୁକାବିଲା କରୁଥିବା କୌଣସି ଅନିବାର୍ଯ୍ୟ ସମସ୍ୟାର ସମାଧାନ କରିବାପାଇଁ ସେମାନେ ଥିଲେ ସମ୍ପୂର୍ଣ୍ଣ ଅସ-ମର୍ଥ । ସେମାନଙ୍କ ଭାଷା ସୁଦ୍ଧା, ଯେଉଁଥିରେ କିଛି ସ୍ପଷ୍ଟତା ଓ ଦୃଢ଼ତା ରହିଥିଲା, ହୋଇ ପଡ଼ିଲା ଶବ୍ଦାଡ଼ମ୍ବରସର୍ବସ୍ୱ, ଅଯୌକ୍ତିକ ଓ ସାରହୀନ ।

ବହୁ ଦିନରୁ ବ୍ରିଟିଶ ହାକିମମାନଙ୍କ ଦ୍ୱାରା ପ୍ରସାରିତ ଲୌକିକ ଏକ କାହାଣୀ ଶୁଣାଯାଏ । ବ୍ରିଟିଶ ସରକାର ସେମାନଙ୍କର ଉଚ୍ଚବର୍ଗୀୟ କର୍ମଚାରୀମାନଙ୍କ ଜରିଆରେ ଆମକୁ ସ୍ୱଶାସନର କ୍ଳେଶକର ତଥା ଜଟିଳ କଳା ସମ୍ପର୍କରେ କୁଆଡ଼େ ତାଲିମ ଦେଉଛନ୍ତି । ଇଂରେଜମାନେ ଏଠାକୁ ଆସି ସେମାନଙ୍କର ତାଲିମର ସୁଯୋଗ ଆମକୁ ଦେବା ପୂର୍ବରୁ ଆମେ ଆମକଥା ଭଲ ଭାବରେ ବୁଝୁଥିଲୁ ଓ ଯଥେଷ୍ଟ ସଫଳତା ସହକାରେ କେତେ ହଜାର ବର୍ଷ ଧରି ତାହା ତୁଲାଇ ଆଣି ପାରିଥିଲୁ । ଏଥିରେ ଅବଶ୍ୟ ସନ୍ଦେହ ନାହିଁ, ସେପରି କେତେକ ସଦ୍‌ଗୁଣର ଅଭାବ ଆମ ପାଖରେ ରହିଛି ଏବଂ ସେ ଅଭାବ ଆମକୁ ଦୂର କରିବାକୁ ପଡ଼ିବ । କେତେ ଭ୍ରାନ୍ତ ବ୍ୟକ୍ତି ଏକଥା ମଧ୍ୟ କହନ୍ତି ଯେ ଏହି ଅଭାବର ଅଭିବୃଦ୍ଧି ଘଟିଛି ବ୍ରିଟିଶ ଶାସନରେ । ତେବେ ଯାହା ତ୍ରୁଟି ବିଚ୍ୟୁତି ଥାଉନା କାହିଁକି, ଏତିକି କିନ୍ତୁ ଆମ ଆଗରେ ସ୍ପଷ୍ଟ ହୋଇ ଯାଇଛି ଯେ ବ୍ରିଟିଶ ସରକାରଙ୍କ ସ୍ଥାୟୀ କର୍ମଚାରୀମାନେ ଭାରତକୁ କୌଣସି

ପ୍ରଗତଶୀଳ ମାର୍ଗରେ ନେତୃତ୍ୱ ଦେବାପାଇଁ ସମ୍ପୂର୍ଣ୍ଣ ଅସମର୍ଥ । ଯେଉଁସବୁ ସଦ୍‌ଗୁଣର ଆଧାର ବୋଲି ସେମାନେ ନିଜକୁ ମଣନ୍ତି, ଠିକ୍ ସେହିସବୁ ଗୁଣ ହିଁ ଆଜିର ପରିସ୍ଥିତିରେ ସେମାନଙ୍କୁ ଅକର୍ମା କରି ଦେଇଛି; କାରଣ ଗୋଟାଏ ପ୍ରଗତଶୀଳ ଗାଣତାନ୍ତ୍ରିକ ସମାଜ ପାଇଁ ଯେଉଁ ପ୍ରକାର ଗୁଣ ଆବଶ୍ୟକ ତାହା ସାମନ୍ତଯୁଗୀୟ ଉପଯୋଗୀ ଗୁଣାବଳୀଠାରୁ ସମ୍ପୂର୍ଣ୍ଣ ଭାବରେ ଭିନ୍ନ । ଅନ୍ୟମାନଙ୍କୁ ତାଲିମ୍ ଦେବାଲାଗି ଆଗଭର ହେବା ପୂର୍ବରୁ ଯେଉଁ ତାଲିମ୍ ସେମାନେ ପାଇଚନ୍ତି, ତାହା ସମ୍ପୂର୍ଣ୍ଣ ଭାବରେ ପରିହାର କରିବା ସର୍ବାଦୌ ଆବଶ୍ୟକ ଏବଂ ଅତୀତକୁ ସମ୍ପୂର୍ଣ୍ଣ ଭାବରେ ଭୁଲିଯିବା ପାଇଁ ସେମାନଙ୍କୁ 'ଲେଥ୍' (୧) ଜଳରେ ଅବଶ୍ୟ ଥରେ ଅବଗାହନ କରିବାକୁ ପଡ଼ିବ ।

ନିରଙ୍କୁଶ ଏକ କେନ୍ଦ୍ର ସରକାର ତଳେ ପ୍ରଦେଶମାନଙ୍କର ଲୋକପ୍ରିୟ ସରକାରଙ୍କ ସ୍ଥିତି ଥିଲି ବଡ଼ ବିଚିତ୍ର ଓ ସେଥି ହେତୁରୁ ସେମାନଙ୍କୁ ନାନାବିଧ ବିପଦ୍‌ପୂର୍ଣ୍ଣ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲି । କଂଗ୍ରେସ ସରକାର ନାଗରିକ ସ୍ୱାଧୀନତାର ସଂରକ୍ଷଣ ନିମନ୍ତେ ଉତ୍ସୁକ ଥିଲେ ଏବଂ ପ୍ରଦେଶରେ ଗୋଇନ୍ଦା ବିଭାଗର ବ୍ୟାପକ କାର୍ଯ୍ୟକଳାପ ରୋକିବାର ଉଦ୍ୟମ କଲେ । ଏହି ବିଭାଗର ପ୍ରଧାନ କାର୍ଯ୍ୟ ଥିଲି ରାଜନୈତିକ ବ୍ୟକ୍ତି ତଥା ଅନ୍ୟ ସେ ସମସ୍ତେ ଯାହାଙ୍କର ମନୋଭାବ ସରକାର ବିରୋଧୀ ବୋଲି ସନ୍ଦେହ କରାଯାଉ-ଥିଲି, ସେମାନଙ୍କ ଗତିବିଧି ଉପରେ ନଜର ରଖିବା । ପ୍ରାଦେଶିକ ଗୋଇନ୍ଦାଙ୍କର କାର୍ଯ୍ୟ-କଳାପ ଉପରେ ବାଧା ଦେଲେ କ'ଣ ହେବ, ତେଣେ କେନ୍ଦ୍ର ଗୋଇନ୍ଦା ବିଭାଗ ଅଧିକତର ଉତ୍ସାହ ସହକାରେ କାର୍ଯ୍ୟ କରିବାକୁ ଲାଗିଲେ । କେବଳ ଆମର ଚିଠିପତ୍ର ଯେ ସେମାନେ ଯାଞ୍ଚ କରୁଥିଲେ ନୁହେଁ, ମନ୍ତ୍ରୀମାନଙ୍କର ଚିଠିପତ୍ର ମଧ୍ୟ ବେଳେବେଳେ ସେମାନଙ୍କର ହାତଦେଇ ଯାଇଥାଏ । ଅବଶ୍ୟ ସେ କାର୍ଯ୍ୟ ଖୁବ୍ ଗୋପନରେ କରାଯାଉଥିଲି ଓ ସେପରି କରାଯାଉଚି ବୋଲି ସରକାରୀ ଭାବରେ ସ୍ୱୀକାର କରିବାକୁ କେହି ରାଜି ନଥିଲେ । ଗତ ପଚିଶ ବର୍ଷରୁ ଅଧିକ କାଳ ଭିତରେ ମୁଁ ଭାରତ ମଧ୍ୟରେ କାହାକୁ କିମ୍ବା ବିଦେଶରେ କେଉଁ ଠିକଣାକୁ ଯେଉଁ ଚିଠି ଲେଖିଚି, ଆଉ ତାହା ଭାରତୀୟ ଡାକଘରେ ଦେଇଚି, ମୁଁ ବରାବର ଜାଣିଚି ଯେ ତାହା ଗୋଇନ୍ଦା ହାତ ଦେଇ ନିଶ୍ଚିତ ଭାବରେ ଯିବ, ଆଉ ସମ୍ଭବ ତା'ର ଗୋଟାଏ ନକଲ ବି ସେମାନଙ୍କ ପାଖରେ ରହିଯିବ । ଟେଲିଫୋନ୍‌ରେ ଯେବେ କଥା କହିଚି ମୁଁ କେବେ ଭୁଲିନି ଯେ ମୋର କଥା ଅନ୍ୟମାନେ ହୁଏତ ଶୁଣୁଚନ୍ତି । ଯେଉଁ ଚିଠି ମୋ ପାଖରେ ପହୁଞ୍ଚିଚି ତାହା ମଧ୍ୟ ଗୋଇନ୍ଦା ନଜର ଏଡ଼ାଇ ପାରିନି । ଏହାର ଅର୍ଥ ନୁହେଁ ଯେ ପ୍ରତ୍ୟେକ ଚିଠି ସବୁ ସମୟରେ ବିବେଚିତ ହେଉଚି । କେବେକେବେ ସବୁ ଚିଠି ଉପରେ ଗୋଇନ୍ଦା ନଜର ପଡ଼ୁଚି, ଅନ୍ୟ ସମୟରେ ସେଥିରୁ କେତୋଟି ବାଛି ନେଇ ସେମାନେ ପଢ଼ିଚନ୍ତି । ଏଥି ସଙ୍ଗେ ଯୁଦ୍ଧର କୌଣସି ସମ୍ପର୍କ ନାହିଁ । ଯୁଦ୍ଧ ସମୟରେ ତ

(୧) ଗ୍ରୀକ୍ ପୁରାଣ ବର୍ଣ୍ଣିତ ନରକର ନଦୀ । ଏହି ନଦୀରେ ସ୍ନାନ କଲେ ସ୍ନାନ କରିବା ଲୋକ ତା'ର ଅତୀତକୁ ସମ୍ପୂର୍ଣ୍ଣ ଭୁଲିଯାଏ ।—ଅନୁବାଦକ ।

ଦୋହରି ବିଚାର ଚାଲିଲେ । ସୌଭାଗ୍ୟକ୍ରମେ ଆମେ ଖୋଲଖୋଲ୍ ଭାବରେ କାର୍ଯ୍ୟ କରୁଥିଲୁ ଏବଂ ଆମର ରାଜନୈତିକ କାର୍ଯ୍ୟକଳାପରେ ଗୋପନ କରିବାର କିଛି ନଥିଲା । ତଥାପି ତୁମର ଚିଠି ଯେ କିଏ ଜଣେ ବରାବର ପଢୁଚି, ତୁମର ଟେଲିଫୋନ୍ କଥାବାର୍ତ୍ତା କିଏ ଶୁଣୁଚି, ତୁମର ଆଲାପ ଆଲୋଚନା ପାଇଁ କିଏ କାନପାତି ରହିଚି, ଏ ଅନୁଭୂତି ପ୍ରୀତିକର ନୁହେଁ । ଏହା ବିରକ୍ତି ଉପୁଜାଏ, ମନକୁ ଉଦାସ କରେ ଏବଂ ଏପରିକି ବ୍ୟକ୍ତିଗତ ସମ୍ପର୍କ ମଧ୍ୟ କ୍ଷୁଣ୍ଣ କରିଥାଏ । ତୁମର ପଛପଟରୁ କିଏ ଜଣେ ଦେଖୁଚି, ଏ ଭାବ ମନରେ ରହିଲେ ମନକଥା ଖୋଲି ଲେଖିବା ସହଜ ନୁହେ ।

ମନ୍ତ୍ରୀମାନେ କଠିନ ପରିଶ୍ରମ କରୁଥିଲେ ଓ ସେମାନଙ୍କ ଭିତରୁ ଅନେକଙ୍କର ସେ ପ୍ରକାର ପରିଶ୍ରମ ପାଇଁ ଶାରୀରିକ ଅବସ୍ଥା ନଥିଲା । ସେମାନଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା ଓ ଚେହେରାରୁ ପ୍ରଫୁଲ୍ଲତା ଉଭାଇଗଲା । ରହିଲା କେବଳ ଗୋଟାଏ କ୍ଳାନ୍ତ, ଅବସନ୍ନ ଶରୀର; କିନ୍ତୁ ଗୋଟାଏ ଉଦ୍ଦେଶ୍ୟ ସାଧନ ପାଇଁ ସେମାନେ ଯେ ଦାୟିତ୍ୱ ବହନ କରିଚନ୍ତି, ଏହି ବୋଧ ସେମାନଙ୍କୁ କର୍ମକ୍ଷମ କରି ରଖିଥିଲା ଏବଂ ସେମାନଙ୍କର ଆଇ. ସି. ଏସ୍. ସେକ୍ରେଟେରି ଓ ସେକ୍ରେଟେରି ଏଟ୍ କର୍ମଚାରୀମାନଙ୍କୁ ମଧ୍ୟ ସେମାନେ କଠିନ ପରିଶ୍ରମ ନକରାଇ ଛାଡ଼ୁ ନଥିଲେ । ଖ୍ରୀ: ୧୯୩୯ ନଭେମ୍ବର ଆଦ୍ୟ ଭାଗରେ ପ୍ରଦେଶମାନଙ୍କର କଂଗ୍ରେସ ସରକାର ଯେବେ ଇସ୍ତଫା ଦେଲେ, କର୍ମଚାରୀମାନେ ସ୍ୱସ୍ତିର ନିଃଶ୍ୱାସ ଛାଡ଼ିଲେ । ତଦୁପରି ସରକାରୀ ଅଫିସ-ସବୁ ଅପରାହ୍ନ ଚାରିଟାରେ ଠିକ୍ ବନ୍ଦ ହେବାକୁ ଲାଗିଲା ଏବଂ ପୂର୍ବଭଳି ପ୍ରତ୍ୟେକ ଅଫିସ ଯେପରି କୌଣସି ନିଭୃତ କକ୍ଷରେ ପରିଣତ ହେଲା, ଯେଉଁଠି ନୀରବତା ବିରାଜମାନ କରେ ଓ ଜନସାଧାରଣଙ୍କ ପାଇଁ ତା'ର ଦ୍ୱାର ଥାଏ ସର୍ବଦା ରୁଦ୍ଧ । ଜୀବନ ପୁଣି ଫେରିଗଲା ସେହି ଗତାନୁଗତିକ ପୁରାତନ ଧାରାକୁ, ସରକାରୀ କର୍ମରେ ପୂର୍ବଭଳି ମନ୍ଥରତା ପ୍ରକାଶ ପାଇଲା ଏବଂ ଅପରାହ୍ନ ଓ ସନ୍ଧ୍ୟା ପୋଲୋ, ଟେନିସ୍, ବ୍ରିଜ୍ ଆଦି କ୍ଳବ୍ ଜୀବନର ବିନୋଦନ ନିମନ୍ତେ ମୁକ୍ତ ରହିଲା । ଗୋଟାଏ ଦୁଃସ୍ୱପ୍ନ ଦୂର ହେବା ପରେ ବର୍ତ୍ତମାନ କର୍ମ ଓ କ୍ରୀଡ଼ା ଠିକ୍ ପୂର୍ବ ଭଳି ଚାଲିପାରିବ । ଏକଥା ସତ୍ୟ ଯେ ଏହି ସମୟରେ ଗୋଟିଏ ଯୁଦ୍ଧ ଚାଲିଚି, ଆଉ ତାହା ୟୁରୋପରେ କେବଳ ଏବଂ ହିଟ୍‌ଲରଙ୍କ ସେନାବାହିନୀ ପୋଲାଣ୍ଡକୁ ପଦଦଳିତ କରି ସାରିଚନ୍ତି; କିନ୍ତୁ ଏସବୁ ଚାଲିଥିଲା ବହୁ ଦୂରରେ । ଆଉ ଯାହା ଘଟୁନା କାହିଁକି, ତାହା ବିବେଚିତ ହେଉଥିଲା ଗୋଟାଏ ତୁଚ୍ଛ ଯୁଦ୍ଧ ଭାବରେ । ତେଣେ ସୈନିକମାନେ ନିଜର କର୍ତ୍ତବ୍ୟ ପାଳନ କରି—ଯୁଦ୍ଧ କରି ମରୁଥିଲାବେଳେ ଏଠାରେ ମଧ୍ୟ କର୍ତ୍ତବ୍ୟ ପାଳନର ତାଗିଦା ଥିଲା । ସେ କର୍ତ୍ତବ୍ୟ ହେଉଚି ଯୋଗ୍ୟ ଭାବରେ ତଥା ମର୍ଯ୍ୟାଦା ସହକାରେ ଗୋରା ଲୋକର ବୋଝ ବହନ କରିବା ।

ସ୍ୱଳ୍ପକାଳ ପାଇଁ ପଛେ ହେଉ, ପ୍ରଦେଶମାନଙ୍କରେ କଂଗ୍ରେସ ଶାସନ ଚାଲିଥିଲାବେଳେ, ଆମର ଆଉ ଲବ ମାତ୍ର ଦ୍ୱିଧା କରିବାର ନଥିଲା ଯେ ଭାରତରେ ପ୍ରଗତିର ପ୍ରଧାନ ଅନ୍ତରାୟ ହେଉଚି ବ୍ରିଟିଶ କର୍ତ୍ତୃକ ପ୍ରତିଷ୍ଠିତ ରାଜନୈତିକ ଓ ଅର୍ଥନୈତିକ ସଙ୍ଗଠନର ଢାଞ୍ଚା । ଏ କଥା ଅବଶ୍ୟ ସତ୍ୟ ଯେ ବହୁତି କିଛି ପାରମ୍ପରିକ ଅଭ୍ୟାସ, ସାମାଜିକ ଆଙ୍ଗିକ ଓ

ଆଚରଣ ପ୍ରଗତିର ପଥରୋଧ କରୁଥିଲା ଏବଂ ସେ ସବୁ ଅପସାରିତ ହେବା ଦରକାର; କିନ୍ତୁ ପ୍ରସାରିତ ହେବା ନିମନ୍ତେ ଭାରତୀୟ ଅର୍ଥନୀତିରେ ଯେଉଁ ସ୍ୱାଭାବିକ ପ୍ରବଣତା ନିହିତ ଥିଲା, ତାହା ବ୍ରିଟିଶ ପ୍ରଭୁତ୍ୱର ରାଜନୈତିକ ଓ ଅର୍ଥନୈତିକ ସୀମାବନ୍ଧନ ଦ୍ୱାରା ଯେତେ ଭାବରେ ବ୍ୟାହତ ହେଉଥିଲା । ଯେତେ ଭଳି ଅନ୍ତରାୟ ନଥିଲା ସେ ସବୁ ସାମାଜିକ ଅଭ୍ୟାସ ଓ ଆଚରଣ । ବ୍ରିଟିଶ ଅବରୋଧ ନଥିଲେ, ଅର୍ଥନୈତିକ ସମ୍ପ୍ରସାରଣ ଅନିବାର୍ଯ୍ୟ ହୋଇ-ପଡ଼ନ୍ତା । ଫଳତଃ, ବହୁତ କିଛି ସାମାଜିକ ପରିବର୍ତ୍ତନ ଘଟନ୍ତା ଏବଂ ନାନାବିଧ ଅନାବଶ୍ୟକ ପ୍ରଥା ଓ ଚଳଣିର ପରିସମାପ୍ତି ଘଟନ୍ତା । ସେହି ଅବରୋଧ ସାମନ୍ତବାଦୀ ଜମିଦାରୀ ବ୍ୟବସ୍ଥା ଓ ଅତୀତର ବହୁତ କିଛି ପ୍ରତୀକ ଉପରେ ଭିତ୍ତି କରିଥିଲା ଏବଂ ତାର ସଂରକ୍ଷଣ ଚାହୁଁଥିଲା । ବ୍ରିଟିଶ ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥା ସଙ୍ଗେ ଭାରତରେ ଯେକୌଣସି ଧରଣର ଗଣତନ୍ତ୍ର ସଙ୍ଗତି ରକ୍ଷା କରିପାରିନଥାନ୍ତା ଏବଂ ଉଭୟ ମଧ୍ୟରେ ଅନିବାର୍ଯ୍ୟ ଭାବରେ ସଂଘର୍ଷ ଲାଗନ୍ତା । ସେଥିହେତୁରୁ ଖ୍ରୀ: ୧୯୩୭-୩୯ର ଆଂଶିକ ଗଣତନ୍ତ୍ର ଶାସନ କାଳରେ; ଅର୍ଥାତ୍ କଂଗ୍ରେସ ଶାସନ କାଳରେ ସଂଘର୍ଷର ଆଶଙ୍କା ସର୍ବଦା ଜାଗ୍ରତ ଥିଲା । ସେଥି ହେତୁରୁ ମଧ୍ୟ ବ୍ରିଟିଶ ସରକାରଙ୍କ ବିଗୃହ ଥିଲା ଯେ ଭାରତର ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ସଫଳ ହୋଇପାରିଲା ନାହିଁ; କିନ୍ତୁ ପ୍ରକୃତ କାରଣ ହେଉଛି ଭାରତରେ ଯେଉଁମାନେ ଯେଉଁ ନ୍ୟସ୍ତସ୍ୱାର୍ଥ, ମୂଲ୍ୟବୋଧ ଓ ଶାସନର ଗଠନ ତୋଳିଥିଲେ, ଲୋକପ୍ରତି-ନିଧିମୂଳକ ଶାସନରେ ତାହା ରକ୍ଷା କରିବା ପାଇଁ ସେମାନେ ପାରୁନଥିଲେ । ଯେଉଁ ପ୍ରକାର ପୋଷା, ଅନୁଗତ ଗଣତନ୍ତ୍ର ସେମାନେ ଚାହୁଁଥିଲେ ଆଉ ଯାହା ଗଢ଼ିହୋଇ ପାରିଲେ ସେମାନେ ସମର୍ଥନ ଜଣାଇଥାନ୍ତେ, ସେପରି ତ ହୋଇପାରୁ ନଥିଲା; ଅଧିକନ୍ତୁ ଲୋକପ୍ରତିନିଧି କଂଗ୍ରେସ ସରକାରମାନେ ସବୁପ୍ରକାର ମୌଳିକ ପରିବର୍ତ୍ତନ ଲକ୍ଷ୍ୟରେ ହିଁ କାର୍ଯ୍ୟ କରି ବସିଲେ । ଅତଏବ ବ୍ରିଟିଶ ଶକ୍ତି ପାଇଁ ଏକମାତ୍ର ବିକଳ୍ପ ପନ୍ଥା ଥିଲା ପୂର୍ବର ନିରଙ୍କୁଶ ଶାସନ ରୀତିକୁ ଫେରିଯାଇ ଗଣତନ୍ତ୍ରର ସମସ୍ତ ଛଳନା ପରିହାର କରିବା । ଏହି ଦୃଷ୍ଟିଭଙ୍ଗୀର ବିକାଶ ଏବଂ ୟୁରୋପରେ ଫାସିଷ୍ଟବାଦର ଜନ୍ମ ଓ ଅଭିବୃଦ୍ଧି ଭିତରେ ବିଶେଷ ସାଦୃଶ୍ୟ ରହିଛି । ଯେଉଁ ଆଇନର ଶାସନ ନେଇ ଭାରତରେ ଇଂରେଜମାନେ ଗର୍ବ ଅନୁଭବ କରୁଥିଲେ ତାହା ଲୁପ୍ତ ହେଲା ଏବଂ ତା'ର ସ୍ଥାନରେ ଏପରି ଏକ ଅବରୋଧ ଅବସ୍ଥା ସୃଷ୍ଟି କରାଗଲା, ଯେଉଁଥିରେ ଚାଲିଲା ଅଧ୍ୟାଦେଶ ଓ ଅଜ୍ଞପ୍ତିର ଅଖଣ୍ଡ ରାଜତ୍ୱ ।

## ୪. ସଂଖ୍ୟାଲଘୁ ପ୍ରଶ୍ନ : ମୁସ୍‌ଲିମ୍—ଲିଗ୍ ମହମ୍ମଦଆଲି ଜିନ୍ନା

ଗତ ସାତ ବର୍ଷ ଭିତରେ ମୁସ୍‌ଲିମ୍ ଲିଗ୍‌ର ବିକାଶ ଓ ଅଭିବୃଦ୍ଧି ଏକ ଅସାଧାରଣ ବୃତ୍ତାନ୍ତ । ଇଂରେଜମାନଙ୍କ ପ୍ରରୋଚନାରେ ଖ୍ରୀ: ୧୯୦୬ରେ ସ୍ଥାପିତ ଓ ନୂତନ ପୁରୁଷର ମୁସଲିମ୍‌ମାନଙ୍କୁ ଜାତୀୟ କଂଗ୍ରେସ ଠାରୁ ଦୂରରେ ରଖିବା ପାଇଁ ଉଦ୍ଦିଷ୍ଟ, ଏହା ସାମନ୍ତ-ବାଦୀ ଲୋକଙ୍କ ଦ୍ୱାରା ନିୟନ୍ତ୍ରିତ ଏକ କ୍ଷୁଦ୍ର ତଥା ଉଚ୍ଚବର୍ଗ ମଧ୍ୟରେ ସୀମିତ ସଂଗଠନ ଭାବରେ ରହିଥିଲା । ମୁସ୍‌ଲିମ୍ ଜନତା ଉପରେ ଏହାର କୌଣସି ପ୍ରଭାବ ନଥିଲା ଏବଂ

ଏଭଳି ଏକ ସଂଗଠନ ଅଛି ବୋଲି ସେମାନେ ପ୍ରାୟ ଜାଣି ନଥିଲେ । ତା'ର ଗଠନ ଚରିତ୍ର ଦିଗରୁ ତାହା ଏକ କ୍ଷୁଦ୍ର ଗୋଷ୍ଠୀ ଭିତରେ ସୀମିତ ଥିଲା ଓ ଗୋଟାଏ ପରିବର୍ତ୍ତନହୀନ ନେତୃତ୍ୱ ନିଜର କର୍ତ୍ତୃତ୍ୱ ବଜାୟ ରଖିଥିଲା; ତଥାପି ମଧ୍ୟ ନାନା ଘଟଣାର ଗୁପ ଓ ମୁସଲିମ୍‌ମାନଙ୍କ ଭିତରେ ବର୍ଦ୍ଧିଷ୍ଣୁ ମଧ୍ୟବିତ୍ତ ଶ୍ରେଣୀ ତାକୁ କଂଗ୍ରେସ ଆଡ଼କୁ ଠେଲି ନେଉ ଥିଲେ । ପ୍ରଥମ ବିଶ୍ୱଯୁଦ୍ଧ, ତୁର୍କୀ ଖିଲାଫତର ଦୁର୍ଭାଗ୍ୟ ଓ ମୁସଲିମ୍ ତୀର୍ଥସ୍ଥାନମାନଙ୍କର ପ୍ରଭାବ ଭାରତୀୟ ମୁସଲମାନଙ୍କ ଉପରେ ପ୍ରବଳ ଭାବରେ ପଡ଼ିଥିଲା ଏବଂ ସେମାନଙ୍କୁ ତୀବ୍ର ବ୍ରିଟିଶ ବିଦ୍ୱେଷୀ କରି ତୋଳିଲା । ନିଜର ଗଠନ-ଚରିତ୍ର ଯୋଗୁଁ ମୁସଲିମ୍ ଲିଗ୍ ଏହି ଜାଗ୍ରତ ତଥା ଉଦ୍ଦୀପିତ ଜନତାକୁ ପଥ ନିର୍ଦ୍ଦେଶ କିମ୍ବା ନେତୃତ୍ୱ ନିବେଦନ କରିପାରି ନଥିଲା । ପ୍ରକୃତପକ୍ଷେ, ମୁସଲିମ୍ ଲିଗ୍ ଏକ ପ୍ରକାର ସ୍ନାୟବିକ ଦୁର୍ବଳତାରେ ପୀଡ଼ିତ ହେଲା ଓ ବସ୍ତୁତଃ ମଉଳିଗଲା । ଖିଲାଫତ୍ କମିଟି ନାମରେ ଏକ ନୂତନ ମୁସଲିମ୍ ସଂଗଠନ କଂଗ୍ରେସ ସଙ୍ଗେ ଘନିଷ୍ଠ ସହଯୋଗ ରକ୍ଷାକରି ଗଢ଼ି ଉଠିଲା । କଂଗ୍ରେସରେ ମଧ୍ୟ ମୁସଲିମ୍‌ମାନେ ବହୁ ସଂଖ୍ୟାରେ ଯୋଗ ଦେଲେ ଏବଂ ଖ୍ରୀ: ୧୯୨୦-୨୩ର ପ୍ରଥମ ଅସହଯୋଗ ଆନ୍ଦୋଳନ ପରେ ଖିଲାଫତ୍ କମିଟି ମଧ୍ୟ କ୍ରମଶଃ ମଉଳିବାକୁ ଲାଗିଲା; କାରଣ ତା'ର ଅସ୍ତିତ୍ୱର ହେତୁ ତୁର୍କୀ ଖିଲାଫତ୍ ସମସ୍ୟା ଉଭାଇ ଯାଇଥିଲା । ମୁସଲିମ୍ ଜନତା ରାଜନୈତିକ କାର୍ଯ୍ୟକଳାପରୁ ଦୂରକୁ ହଟିବାକୁ ଲାଗିଲା । ହିନ୍ଦୁ ଜନତା ଭିତରେ ମଧ୍ୟ ସେପରି ଅବସ୍ଥା ଦେଖା ଦେଇଥିଲା; କିନ୍ତୁ ତାର ବିସ୍ତାର ଥିଲା ସାମାନ୍ୟ । ତଥାପି ବହୁ ସଂଖ୍ୟକ ମୁସଲମାନ, ମୁଖ୍ୟତଃ ମଧ୍ୟବିତ୍ତ ଶ୍ରେଣୀସ୍ଥ, କଂଗ୍ରେସ ଜରିଆରେ କାର୍ଯ୍ୟ କରିବାକୁ ଲାଗିଲେ ।

ଏହି କାଳ ମଧ୍ୟରେ, କେତେକ କ୍ଷୁଦ୍ର ମୁସଲିମ୍ ସଂଗଠନ ପ୍ରବଳ ଆବେଗ ସହକାରେ ଅଥଚ ସବିରାମ ଭାବରେ, କାର୍ଯ୍ୟକାରୀ ହୋଇ ଉଠିଲେ ଏବଂ ବହୁଧା ପରସ୍ପର ଭିତରେ ସଂଘର୍ଷରେ ଲିପ୍ତ ରହୁଥିଲେ । ବ୍ରିଟିଶ ସରକାରଙ୍କ ଯତ୍‌ସାମାନ୍ୟ ସମର୍ଥନ ବ୍ୟତୀତ ସେମାନଙ୍କର ନା ଥିଲା ଲୋକ-ସଂପର୍କ ନା ରାଜନୈତିକ ମହତ୍ତ୍ୱ । ସେମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା ସରକାରୀ କର୍ମରେ ଓ ବିଧାନ ସଭାମାନଙ୍କରେ ମୁସଲିମ୍ ମାନଙ୍କ ପାଇଁ ବିଶେଷ ବିଶେଷ ସ୍ୱାଧୀକାର ଦାବି କରିବା । ଏ ଦିଗରେ ସେମାନେ ଏକ ନିର୍ଦ୍ଦିଷ୍ଟ ମୁସଲିମ୍ ଦୃଷ୍ଟିଭଙ୍ଗୀର ପ୍ରତିନିଧିତ୍ୱ କରିଥିଲେ; କାରଣ ଶିକ୍ଷା, ରାଜକର୍ମ ତଥା ଶିଳ୍ପ କ୍ଷେତ୍ରରେ ଓ ସଂଖ୍ୟାରେ ହିନ୍ଦୁମାନଙ୍କ ପ୍ରାବଲ୍ୟ ଯୋଗୁଁ ମୁସଲମାନଙ୍କ ଭିତରେ ଏକ ପ୍ରଚ୍ଛନ୍ନ କ୍ରୋଧ ତଥା ଭୟର ପୃଷ୍ଠଭୂମି ରହିଥିଲା । ମହମ୍ମଦ ଆଲ୍ଲି ଜିନ୍ନା ଭାରତୀୟ ରାଜନୀତିରୁ ଅବସର ନେଲେ । ଭାରତରୁ ଅବସର ନେଲେ ବୋଲି କହିଲେ ବି ଚଳିବ; କାରଣ ସେ ଯାଇ ଇଂଲଣ୍ଡରେ ବସବାସ କଲେ ।

ଖ୍ରୀ: ୧୯୩୦ର ଦ୍ୱିତୀୟ ଆଇନ ଅମାନ୍ୟ ଆନ୍ଦୋଳନ କାଳରେ ମୁସଲିମ୍‌ମାନଙ୍କ ପକ୍ଷରୁ ଯେଉଁ ସମର୍ଥନ ମିଳିଲା ତାହା କିଛି ସାମାନ୍ୟ ନୁହେଁ । ତେବେ ଖ୍ରୀ: ୧୯୨୦-୨୩ର ତୁଳନାରେ ଅବଶ୍ୟ କମ୍ । ଏହି ଆନ୍ଦୋଳନ ଫଳରେ ଯେତେ ଲୋକ ଜେଲ ଦଣ୍ଡ

ଭୋଗିଲେ, ସେମାନଙ୍କ ଭିତରେ ମୁସଲମାନଙ୍କ ସଂଖ୍ୟା ଥିଲା ଅତି କମ୍‌ରେ ଦଶ ହଜାର । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ, ଯାହାର ଜନସଂଖ୍ୟାର ଶତକଡ଼ା ୯୫ ଭାଗ ମୁସଲମାନ ଓ ଯାହାକୁ ଏକ ମୁସଲିମ୍ ଅଧ୍ୟୁଷିତ ପ୍ରଦେଶ କୁହାଯାଇପାରେ, ଏହି ଆନ୍ଦୋଳନରେ ଏକ ଅସାଧାରଣ ତଥା ପ୍ରମୁଖ ଭୂମିକା ଗ୍ରହଣ କଲା । ଏହି ପ୍ରଦେଶବାସୀ ପଠାଣମାନଙ୍କର ଅପ୍ରତିଦ୍ୱନ୍ଦ୍ୱୀ ତଥା ପୂଜ୍ୟ ନେତା ଖାଁ ଅବ୍‌ଦୁଲ ଗଫର୍‌ଖାଁଙ୍କ ଅସାଧାରଣ ବ୍ୟକ୍ତିତ୍ୱ ଓ କାର୍ଯ୍ୟ ଲାଗି ଏହା ସମ୍ଭବ ହୋଇପାରିଥିଲା । ଅଧୁନାତନ କାଳରେ ଭାରତରେ ଯେତେ ସବୁ ଅଦ୍‌ଭୁତ ଘଟଣା ଘଟିଛି, ସେଥି ଭିତରୁ କୌଣସି ଘଟଣା ସେତେ ବିସ୍ମୟକର ନୁହେଁ ଯେତେ ବିସ୍ମୟକର ଅବଦୁଲ୍ ଗଫର ଖାଁଙ୍କ ନେତୃତ୍ୱରେ, ନାନା ଦୁଃଖ ଦୁର୍ଦ୍ଦଶା ଭୋଗ କରି ସୁଦ୍ଧା, ଅବାଧ ତଥା କଳହରତ ପଠାଣମାନେ ରାଜନୈତିକ କର୍ମରେ ଶାନ୍ତିପୂର୍ଣ୍ଣ ପନ୍ଥା ଅବଲମ୍ବନ କରିବା । ପ୍ରକୃତପକ୍ଷେ, ସେମାନେ ଯେଉଁ ଦୁର୍ଦ୍ଦଶା ଭୋଗିଲେ ତାହା ସାମାନ୍ୟ ନୁହେଁ ଏବଂ ତା'ର ବହୁ ତିକ୍ତ ସ୍ମୃତି ଏବେ ବି ଜୀବନ୍ତ ରହିଛି; ତଥାପି ସେମାନଙ୍କର ଶୃଙ୍ଖଳାବୋଧ ଓ ଆତ୍ମସଂଯମ ଏପରି ଥିଲା ଯେ, ପଠାଣମାନେ ସରକାର ବିରୁଦ୍ଧରେ କିମ୍ବା ଅନ୍ୟ କୌଣସି ପ୍ରତିପକ୍ଷ ବିରୁଦ୍ଧରେ ହିଂସାତ୍ମକ କାର୍ଯ୍ୟ କରି ନାହାନ୍ତି । ଏକଥା ଯେବେ ମନେପଡ଼େ ଯେ ପଠାଣ ତା'ର ଭାଇ ଅପେକ୍ଷା ନିଜର ବନ୍ଧୁକକୁ ଅଧିକ ଭଲପାଏ, ସହଜରେ ଉତ୍ତ୍ୟକ୍ତ ହୋଇଉଠେ, ଆଉ ସାମାନ୍ୟ ପ୍ରରୋଚନାରେ ହତ୍ୟା କରିବା ଯାହାର ପ୍ରସିଦ୍ଧି, ତା'ର ଏବଂବିଧ ଆତ୍ମସଂଯମ ଅଭୂତପୂର୍ବ ତଥା ଅଚିନ୍ତ୍ୟପୂର୍ବ ପ୍ରତୀତ ହୁଏ ।

ଅବଦୁଲ ଗଫର୍ ଖାଁଙ୍କ ନେତୃତ୍ୱରେ ସୀମାନ୍ତ ପ୍ରଦେଶ ଖୁବ୍ ଦୃଢ଼ତା ସହକାରେ ଜାତୀୟ କଂଗ୍ରେସ ପାର୍ଶ୍ୱରେ ଦଣ୍ଡାୟମାନ ହେଲା । ଅନ୍ୟାନ୍ୟ ସ୍ଥାନରେ ବି ରାଜନୀତି-ସଚେତନ ବହୁ ମଧ୍ୟବିତ୍ତ ଶ୍ରେଣୀର ମୁସଲମାନ କଂଗ୍ରେସ ଆଦର୍ଶ ଅନୁସରଣ କଲେ । ଦେଶର କୃଷି ଓ ଶ୍ରମିକଙ୍କ ଭିତରେ; ବିଶେଷତଃ ଯୁକ୍ତପ୍ରଦେଶ ଭଳି ପ୍ରଦେଶମାନଙ୍କରେ ଯେଉଁଠି କୃଷି ଓ ଶ୍ରମିକ ସମ୍ବନ୍ଧୀୟ ପ୍ରୋଗ୍ରାମ ଖୁବ୍ ଅଗ୍ରଗତି କରିଥିଲା, କଂଗ୍ରେସର ପ୍ରଭାବ ଥିଲା ଅସାମାନ୍ୟ; କିନ୍ତୁ ଏକଥା ସତ୍ୟ ଯେ ସାମଗ୍ରିକ ଭାବରେ ଦେଖିଲେ ମୁସଲିମ୍ ଜନତା ଅଲକ୍ଷ୍ୟ ଭାବରେ ସେମାନଙ୍କର ପୁରାତନ, ସ୍ଥାନୀୟ ତଥା ସାମନ୍ତବାଦୀ ନେତୃତ୍ୱ ଆଡ଼କୁ ଚାହିଁଥିଲେ । ସେହି ନେତୃତ୍ୱ ସେମାନଙ୍କ ପାଖକୁ ଆସୁଥିଲା ଛଦ୍ମବେଶରେ, ହିନ୍ଦୁ ତଥା ଅନ୍ୟ ଧର୍ମାବଲମ୍ବୀମାନଙ୍କ ସମୁଦାୟ ଭିତରେ ମୁସଲିମ୍ ସ୍ୱାର୍ଥର ରକ୍ଷକ ଭାବରେ ।

ସାମ୍ପ୍ରଦାୟିକ ସମସ୍ୟା ବୋଲି ଯାହା କୁହାଯାଇଥାଏ ତାହା ଥିଲା ସଂଖ୍ୟାଲଘୁ ଦାବୀର ଆପୋଷ ମୀମାଂସା କରିବା ଓ ସଂଖ୍ୟାଗରିଷ୍ଠଙ୍କ ଭିତରେ ଉପଯୁକ୍ତ ଭାବରେ ସେମାନଙ୍କର ରକ୍ଷକତା କରିବା । ଏକଥା ଭୁଲିଲେ ଚଳିବ ନାହିଁ ଯେ ଭାରତର ସଂଖ୍ୟାଲଘୁ ୟୁରୋପର ସଂଖ୍ୟାଲଘୁଙ୍କ ଭଳି ଜାତୀୟ କିମ୍ବା ମହାଜାତୀୟ ନୁହନ୍ତି । ଏମାନେ ଧର୍ମଗତ ସଂଖ୍ୟାଲଘୁ । ଜାତି ଦୃଷ୍ଟିରୁ ଦେଖିଲେ ଭାରତ ଏକ ବିଚିତ୍ର ସମ୍ମିଶ୍ରଣ ଏବଂ ଏଠାରେ ଜାତିଗତ କୌଣସି ସମସ୍ୟା କେବେ ଉପୁଜି ନାହିଁ ଓ ଉପୁଜିବାର ସମ୍ଭାବନା ମଧ୍ୟ ନାହିଁ । ଧର୍ମ ଏସବୁ ଜାତିଗତ ପାର୍ଥକ୍ୟର ଅତୀତ । ତାର ଗଣ୍ଡି ଭିତରେ ଜାତିସମନ୍ୱୟ ଏପରି ଭାବରେ ସାଧିତ ହୋଇଥାଏ

ଯେ ପ୍ରତ୍ୟେକଟିକୁ ଚିହ୍ନଟ କରିବା ବାସ୍ତବିକ କଷ୍ଟକର । ଧର୍ମଗତ ପ୍ରତିବନ୍ଧକ ସର୍ବଦା ସ୍ଥାୟୀ ନୁହେଁ, କାରଣ ଗୋଟାଏ ଧର୍ମ ଛାଡ଼ି ଅନ୍ୟ ଏକ ଧର୍ମ ଗ୍ରହଣ କରିବା ବି କିଛି ଅସାଧାରଣ ନୁହେଁ ଏବଂ ଜଣେ ବ୍ୟକ୍ତି ନିଜର ଧର୍ମମତ ପରିବର୍ତ୍ତନ କରିବା ଦ୍ୱାରା ତା'ର ଜାତିଗତ ପୃଷ୍ଠଭୂମି କିମ୍ବା ତା'ର ସାଂସ୍କୃତିକ ତଥା ଭାଷାଗତ ଉତ୍ତରାଧିକାର ହରାଇ ନଥାଏ । ସମ୍ପ୍ରତି ଧର୍ମ କହିଲେ ପ୍ରକୃତରେ ଯାହା ବୁଝାଏ, ସେପରି ଭାବରେ ଭାରତର ରାଜନୈତିକ ସଂଗ୍ରାମରେ ତା'ର ଭୂମିକା ଅତି ନଗଣ୍ୟ; ତେବେ ଶବ୍ଦଟିକୁ ସେହି ଅର୍ଥରେ ବହୁଳ ଭାବରେ ବ୍ୟବହାର କରାଯାଉଛି ଓ ସଂପୃକ୍ତ ଲୋକେ ସେଥିରୁ ଲାଭ ଉଠାଉଛନ୍ତି । ଧର୍ମଗତ ପାର୍ଥକ୍ୟ ସାରତଃ ସେପରି କୌଣସି ପ୍ରତିବନ୍ଧକ ନୁହେଁ; କାରଣ ସେଥି ପାଇଁ ପାରସ୍ପରିକ ସହିଷ୍ଣୁତା ଯଥେଷ୍ଟ ଭାବରେ ରହିଛି । ରାଜନୈତିକ ବିଷୟମାନଙ୍କରେ ଧର୍ମର ସ୍ଥାନ ଅଧିକାର କରିଛି ଧର୍ମଗତ ଗୋଷ୍ଠୀ ଉପରେ ଏକ ସଂକୀର୍ଣ୍ଣ ଗୋଷ୍ଠୀ ମନୋଭାବ ଯାହାକୁ ସାମ୍ପ୍ରଦାୟିକତା ନାମରେ ଅଭିହିତ କରାଯାଇଥାଏ; କିନ୍ତୁ ପ୍ରକୃତ ପକ୍ଷେ ଏହା ସଂପୃକ୍ତ ଗୋଷ୍ଠୀ ନିମନ୍ତେ ପୃଷ୍ଠପୋଷକତା ଓ ରାଜନୈତିକ କ୍ଷମତା ହାସଲ କରିବାପାଇଁ ଉଦ୍ଦିଷ୍ଟ ।

ସଂପୃକ୍ତ ବିଭିନ୍ନ ଗୋଷ୍ଠୀର ସମ୍ମତି ସହକାରେ ଏହି ସାମ୍ପ୍ରଦାୟିକ ସମସ୍ୟାର ମୀମାଂସା କରିବା ପାଇଁ କଂଗ୍ରେସ ତଥା ଅନ୍ୟାନ୍ୟ ସଙ୍ଗଠନ ବାରମ୍ବାର ପ୍ରୟାସ କରିଚନ୍ତି । ଆଂଶିକ ଭାବରେ କିଛି ସଫଳତା ହାସଲ ହେଲେ ସୁଦ୍ଧା, ସର୍ବଦା ଏକ ମୌଳିକ ପ୍ରତିବନ୍ଧକ ବାଟ ମାଡ଼ି ବସି ରହୁଛି । ତାହା ହେଉଚି ବ୍ରିଟିଶ ସରକାରଙ୍କ ଉପସ୍ଥିତି ଓ ନୀତି । ଏହି ସମସ୍ୟାର ଗୋଟାଏ କିଛି ପ୍ରକୃତ ମୀମାଂସା ହେଉ ବୋଲି ବ୍ରିଟିଶ ସରକାର ସ୍ୱାଭାବିକ ଭାବରେ ଚାହିଁନାହାନ୍ତି; କାରଣ ସେପରି ହେଲେ ସେମାନଙ୍କ ବିରୁଦ୍ଧରେ ଯେଉଁ ରାଜନୈତିକ ଆନ୍ଦୋଳନ ବର୍ତ୍ତମାନ ଜନସାଧାରଣଙ୍କ ସ୍ତର ପର୍ଯ୍ୟନ୍ତ ବିସ୍ତୃତ ହେଲାଣି, ତାହା ବଳ ସଞ୍ଚୟ କରିବ ଓ ତୀବ୍ରତର ହେବ । ଏହା ଏକ ତ୍ରିକୋଣ ଭଳି ଯେଉଁଠି ସରକାର ସେପରି ଏକ ସୁବିଧାଜନକ ସ୍ଥାନରେ ବସିଛନ୍ତି, ଯେଉଁଠାରୁ କିଛି ବିଶେଷ ସ୍ୱାଧିକାର ବଣ୍ଟନ କରି ଗୋଟାଏ ପକ୍ଷ ବିରୁଦ୍ଧରେ ଅନ୍ୟ ପକ୍ଷକୁ ଲଗାଇଦେଇ ପାରୁଚନ୍ତି । ଅନ୍ୟାନ୍ୟ ଦଳମାନେ ଯଦି ଅବୁଝାମଣିଆ ହୋଇନଥାନ୍ତେ, ସେମାନେ ଏହି ଅନ୍ତରାୟ ଅତିକ୍ରମ କରିପାରିଥାନ୍ତେ; କିନ୍ତୁ ସେମାନଙ୍କର ବଡ଼ ଅଭାବ ହେଉଚି ବିଜ୍ଞତା ଓ ଦୂରଦର୍ଶିତା । ଯେବେ କୌଣସି ସମାଧାନ ହେବାକୁ ଯାଇଚି, ସରକାର ସେପରି ଏକ ପଦକ୍ଷେପ ନେଇଚନ୍ତି, ଯାହା ସମସ୍ତ ଉଦ୍ୟମକୁ ପଣ୍ଡ କରି ଦେଇଚି ।

ସଂଖ୍ୟାଲଘୁ ସୁରକ୍ଷା ନିମନ୍ତେ ଯେଉଁସବୁ ବ୍ୟବସ୍ଥା 'ଲିଗ୍ ଅଫ୍ ନେସନସ୍' (୧) (ଜାତିସଂଘ) ଦେଇଥାନ୍ତି, ସେ ବିଷୟ ନେଇ କୌଣସି ବିବାଦ ନଥିଲା । କେବଳ ସେତିକି ନୁହେଁ; ବରଂ ତା'ଠାରୁ ଅଧିକ କିଛି ପ୍ରବନ୍ଧ କରିବା ପାଇଁ ମଧ୍ୟ ସମସ୍ତେ ରାଜି ଥିଲେ । ସମସ୍ତଙ୍କ

(୧) ଆନ୍ତର୍ଜାତିକ ଶାନ୍ତି ବଜାୟ ରଖିବା ନିମନ୍ତେ ଖ୍ରୀ: ୧୯୧୯ରେ ପ୍ରତିଷ୍ଠିତ ହୋଇଥିଲା । ବର୍ତ୍ତମାନ ତା'ର କୌଣସି ଅସ୍ତିତ୍ୱ ନାହିଁ—ଅନୁବାଦକ ।

ପ୍ରତି ସମାନ ଭାବରେ ପ୍ରଯୁଜ୍ୟ ଗୋଟିଏ ଗାଣତାନ୍ତ୍ରିକ ସମ୍ବିଧାନରେ, ମୌଳିକ ସାମ୍ବି-ଧାନିକ ବ୍ୟବସ୍ଥା ଦ୍ୱାରା ଧର୍ମ, ସଂସ୍କୃତି, ଭାଷା, ବ୍ୟକ୍ତି ଓ ଗୋଷ୍ଠୀର ମୌଳିକ ଅଧିକାର ସୁନିଶ୍ଚିତ ଓ ସୁରକ୍ଷିତ ହେବା ଦରକାର । ଏହା ବ୍ୟତୀତ, ଭାରତରେ ବିଭିନ୍ନ ଜାତି ଓ ସଂଖ୍ୟାଲଘୁଙ୍କ ପ୍ରତି କି ପ୍ରକାର ସହିଷ୍ଣୁତା ପ୍ରକାଶ କରାଯାଇଛି ଓ କିପରି ସେମାନଙ୍କର ସର୍ବାଙ୍ଗୀନ ବିକାଶ ଉତ୍ସାହିତ କରାଯାଇଛି, ଭାରତର ସମଗ୍ର ଇତିହାସ ହେଉଛି ତା'ର ସାକ୍ଷୀ । ୟୁରୋପରେ ଦିନେ ଯେଉଁ ତିକ୍ତ ଧର୍ମଗତ ହିଂସାକାଣ୍ଡ ଓ ନିର୍ଯ୍ୟାତନା ଚାଲିଥିଲା, ସେଥିସଙ୍ଗେ ତୁଳନା କଲା ଭଳି ଭାରତୀୟ ଇତିହାସରେ କିଛି ନାହିଁ । ଅତଏବ, ଧର୍ମ ଓ ସଂସ୍କୃତି ପ୍ରତି ସହିଷ୍ଣୁ ହେବା ନିମନ୍ତେ ଶିକ୍ଷା ଗ୍ରହଣ କରିବାପାଇଁ ବିଲାତ ଯିବାର ଆବ-ଶ୍ୟକତା ଆମର ନାହିଁ । ଭାରତୀୟ ଜୀବନରେ ଏହି ସହିଷ୍ଣୁତା ନିହିତ ଅଛି । ବ୍ୟକ୍ତିଗତ ତଥା ରାଜନୈତିକ ଅଧିକାର ଓ ନାଗରିକ ସ୍ୱତନ୍ତ୍ରତା ସମ୍ପର୍କରେ ଆମେ ପ୍ରଭାବିତ ହୋଇଛୁ ଫରାସୀ ଓ ମାର୍କିନ ବିପ୍ଳବର ଭାବଧାରା ଏବଂ ବ୍ରିଟିଶ ପାର୍ଲାମେଣ୍ଟର ସାମ୍ବିଧାନିକ ଇତିହାସ ଦ୍ୱାରା । ଏହାପରେ ସମାଜବାଦୀ ବିଚାରଧାରା ଓ ସୋଭିଏତ୍ ବିପ୍ଳବର ପ୍ରଭାବ ଆମ ଉପରେ ପଡ଼ିଲା ଓ ଆମର ଚିନ୍ତାରେ ଅର୍ଥନୈତିକ ଦୃଷ୍ଟିକୋଣ ପ୍ରତି ଅଧିକତର ମହତ୍ତ୍ୱ ଅର୍ପିତ ହେଲା ।

ବ୍ୟକ୍ତି ଓ ଗୋଷ୍ଠୀର ଏ ପ୍ରକାର ସମସ୍ତ ଅଧିକାରର ପୂର୍ଣ୍ଣ ସୁରକ୍ଷା ବ୍ୟତୀତ, ସମସ୍ତେ ସହମତ ଥିଲେ ଯେ, ବ୍ୟକ୍ତି ତଥା ଗୋଷ୍ଠୀର ପୂର୍ଣ୍ଣ ବିକାଶ ମାର୍ଗରେ ଯେଉଁସବୁ ଘୃଣାଜନକ ସାମାଜିକ ତଥା ପ୍ରଥାଗତ ପ୍ରତିବନ୍ଧକ ରହିଛି, ସରକାରୀ ସ୍ତରରେ ଓ ବେସରକାରୀ ସଂସ୍ଥାମାନଙ୍କଦ୍ୱାରା ସେସବୁ ଦୂରକରିବା ପାଇଁ ସବୁମତେ ଉଦ୍ୟମ କରିବାକୁ ପଡ଼ିବ ଏବଂ ଯେତେ ଚଞ୍ଚଳ ସମ୍ଭବ ସେମାନେ ଯେପରି ନାନାବିଧ ଅସୁବିଧା ଭିତରୁ ଉଠି ଆସିପାରିବେ, ସେଥିଲାଗି ଅନଗ୍ରସର ଶ୍ରେଣୀର ଲୋକମାନଙ୍କୁ ଶିକ୍ଷା ଦିଗରେ ଓ ସେମାନଙ୍କର ଅର୍ଥନୈତିକ ଉନ୍ନତି ଦିଗରେ ବିହିତ ସାହାଯ୍ୟ ଯୋଗାଇବାକୁ ପଡ଼ିବ । ବିଶେଷଭାବରେ ଏହା ପ୍ରଯୁଜ୍ୟ ଦଳିତ ଜାତିମାନଙ୍କ ପ୍ରତି । ଆହୁରି ମଧ୍ୟ ନିର୍ଦ୍ଦେଶିତ କରାଯାଇଥିଲା, ନାଗରିକତାର ସମସ୍ତ ସ୍ୱାଧିକାର ନାରୀମାନେ ପୁରୁଷମାନଙ୍କ ଭଳି ସମାନ ଭାବରେ ଭୋଗକରିବେ ।

କଅଣ ଆଉ ବାକି ରହିଲା ? କେବଳମାତ୍ର ଭୟ ଯେ ରାଜନୀତିରେ ସଂଖ୍ୟାଗରିଷ୍ଠମାନେ ସଂଖ୍ୟାଲଘୁଙ୍କୁ ପରାଭୂତ କରିଦେବେ । ସଂଖ୍ୟାଗରିଷ୍ଠ କହିଲେ ସଚରାଚର କୃଷି ଓ ଶ୍ରମିକଙ୍କୁ ବୁଝାଏ; ଯେଉଁମାନଙ୍କ ଭିତରେ ସବୁ ଧର୍ମର ଲୋକେ ରହିଥାନ୍ତି, ଆଉ ଯେଉଁମାନେ ବିଦେଶୀ ଶାସନଦ୍ୱାରା କେବଳ ନୁହେଁ, ସେମାନଙ୍କର ଉପର ଶ୍ରେଣୀର ଲୋକଙ୍କଦ୍ୱାରା ବି ସବୁକାଳେ ଶୋଷିତ ହୋଇ ଆସିଛନ୍ତି । ଧର୍ମ ଓ ସଂସ୍କୃତି ଇତ୍ୟାଦିର ସୁରକ୍ଷା ନିଶ୍ଚିତ ହେବା ପରେ ଯେଉଁ ସବୁ ବଡ଼ ବଡ଼ ସମସ୍ୟା ଅପରିହାର୍ଯ୍ୟ ଭାବେ ଦେଖାଦେବ, ତାହା ହେଉଛି ଅର୍ଥନୀତି ସମ୍ବ-ନ୍ଧୀୟ ଆଉ କାହାର ବ୍ୟକ୍ତିଗତ ଧର୍ମମତ ସଙ୍ଗେ ତାର କୌଣସି ସମ୍ପର୍କ ନାହିଁ । ହୁଏତ ଶ୍ରେଣୀ ସଙ୍ଘର୍ଷ ଉପୁଜି ପାରେ; ଧର୍ମଗତ ସଙ୍ଘର୍ଷ କଦାପି ନୁହେଁ । ଧର୍ମ ନେଇ ସଙ୍ଘର୍ଷ ଉପୁଜିବାର ଆଶଙ୍କା କେବଳ ସେଇଠି, ଯେଉଁଠି ଧର୍ମ କୌଣସି ନ୍ୟସ୍ତସ୍ୱାର୍ଥର ପ୍ରତିନିଧିତ୍ୱ କରୁଥାଏ । ତଥାପି, ଧର୍ମଗତ ପାର୍ଥକ୍ୟ ନେଇ ଲୋକେ ଏପରି ଭାବରେ ଅଭ୍ୟସ୍ତ ହୋଇପଡ଼ିଥିଲେ ଏବଂ

ସେ ବାଟରେ ସେମାନଙ୍କୁ ସାଂପ୍ରଦାୟିକ ମନୋଭାବାପନ୍ନ ଧାର୍ମିକ ସଙ୍ଗଠନମାନ ତଥା ସରକାରୀ କାର୍ଯ୍ୟକଳାପ ଏପରି ଉତ୍ସାହିତ କରୁଥିଲା ଯେ ସଂଖ୍ୟାଗରିଷ୍ଠ ଧର୍ମଗତ ସଂପ୍ରଦାୟ ଅର୍ଥାତ୍ ହିନ୍ଦୁମାନେ ଅନ୍ୟ ସମସ୍ତଙ୍କୁ ବୁଡାଇଦେବେ ବୋଲି ବହୁ ମୁସଲମାନଙ୍କ ମନରେ ଭୟ ସର୍ବଦା ଘର କରି ରହିଥିଲା । ଏକଥା ବୁଝି ହୁଏନା ଯେ କେତେ ସଂଖ୍ୟାଗରିଷ୍ଠ ହେଲେ ସୁଦ୍ଧା ମୁସ୍‌ଲିମ୍ ଭଳି ଏକ ବିଶାଳ ସଂଖ୍ୟାଲଘୁର ସ୍ୱାର୍ଥରେ ହିନ୍ଦୁମାନେ କିପରି ଆଘାତ ପହଞ୍ଚାଇ ପାରିବେ ? ଅଧିକନ୍ତୁ ମୁସଲିମ୍‌ମାନେ ଦେଶର କେତେକ ନିର୍ଦ୍ଦିଷ୍ଟ ଅଂଶରେ ଘନୀଭୂତ ହୋଇ ରହିଚନ୍ତି ଆଉ ସେସବୁ ଅଞ୍ଚଳ ସ୍ୱାଭାବିକ ଭାବରେ ସ୍ୱାୟତ୍ତଶାସନ ଲାଭ କରିପାରିବ; କିନ୍ତୁ ଭୟ ତ ଆଉ ବିଚାର ବୁଦ୍ଧିସମ୍ପନ୍ନ ନୁହେଁ !

ମୁସ୍‌ଲିମ୍‌ମାନଙ୍କ ପାଇଁ ( ଏବଂ ପରେ ଅନ୍ୟାନ୍ୟ କ୍ଷୁଦ୍ର ଗୋଷ୍ଠୀମାନଙ୍କ ପାଇଁ ) ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ପ୍ରବର୍ତ୍ତିତ ହେଲା ଏବଂ ସଂଖ୍ୟା ଅନୁପାତ ଅପେକ୍ଷା ଅଧିକ ସ୍ଥାନ ସେମାନଙ୍କୁ ଦିଆଗଲା; କିନ୍ତୁ ଗୋଟାଏ ଲୋକପ୍ରତିନିଧିମୂଳକ ସଭାରେ ପ୍ରତିନିଧି ଆଧିକ୍ୟ ସଂଖ୍ୟାଲଘୁଙ୍କୁ ସଂଖ୍ୟାଗରିଷ୍ଠ କରିପାରିଲାନାହିଁ । ପ୍ରକୃତପକ୍ଷେ, ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ଅବସ୍ଥାକୁ ଆହୁରି ଖରାପ କଲା; କାରଣ ସୁରକ୍ଷିତ ଗୋଷ୍ଠୀ ପ୍ରତି ସଂଖ୍ୟାଗରିଷ୍ଠ ଲୋକେ ଆଗ୍ରହ ହରାଇ ବସିଲେ ଏବଂ ପରସ୍ପର ଭିତରେ ବିଚାର ପାଇଁ ଓ ପରସ୍ପର ଭିତରେ ମିଳି-ମିଶି ଚଳିବାପାଇଁ ସେପରି ଅବକାଶ ଆଉ ରହିଲା ନାହିଁ । ମିଳିତ ନିର୍ବାଚନ ମଣ୍ଡଳୀରେ, ଯେଉଁଠି ପ୍ରାର୍ଥୀ ପ୍ରତ୍ୟେକ ଗୋଷ୍ଠୀକୁ ନିବେଦନ କରେ, ପରସ୍ପର ବୁଝାମଣା ପାଇଁ ପ୍ରଭୂତ ଅବକାଶ ରହିଥାଏ । କଂଗ୍ରେସ ଆଉ କିଛି ଆଗେଇ ଯାଇ, ଘୋଷଣା କଲା ଯେ କେବେ ଯଦି ସଂଖ୍ୟାଲଘୁର ବିଶେଷ କୌଣସି ସ୍ୱାର୍ଥ ନେଇ, ସଂଖ୍ୟାଗରିଷ୍ଠ ଓ ଧର୍ମସଂପର୍କିତ ସଂଖ୍ୟାଲଘୁଙ୍କ ମଧ୍ୟରେ ମତ ପାର୍ଥକ୍ୟ ଦେଖାଦିଏ, ତାହାହେଲେ ସଂଖ୍ୟାଗରିଷ୍ଠଙ୍କ ଭୋଟ୍ ଦ୍ୱାରା ତା'ର ନିଷ୍ପତ୍ତି କରାଯିବ ନାହିଁ । ସେ ପ୍ରକାର ବିବାଦ କୌଣସି ନିରପେକ୍ଷ ବିଚାର ବିଭାଗୀୟ ଟ୍ରିବ୍ୟୁନାଲ୍ କିମ୍ବା ଆବଶ୍ୟକ ପକ୍ଷେ ଆନ୍ତର୍ଜାତିକ ଟ୍ରିବ୍ୟୁନାଲ୍ ହାତକୁ ଦିଆଯିବ, ଯାହାଙ୍କ ନିଷ୍ପତ୍ତି ହେବ ଚୂଡ଼ାନ୍ତ ।

ଗୋଟାଏ ଗଣତାନ୍ତ୍ରିକ ବ୍ୟବସ୍ଥାରେ କୌଣସି ଧାର୍ମିକ ସଂଖ୍ୟାଲଘୁ ଅବା ଗୋଷ୍ଠୀକୁ ଆଉ କି ଅଧିକ ସୁରକ୍ଷା ପ୍ରତିଶ୍ରୁତି ଦିଆଯାଇପାରେ, ଧାରଣା କରିବା କଠିନ । ଏକଥା ମଧ୍ୟ ସ୍ମରଣ ରଖିବାକୁ ହେବ ଯେ କେତେକ ପ୍ରଦେଶରେ ମୁସ୍‌ଲିମ୍‌ମାନେ ପ୍ରକୃତରେ ସଂଖ୍ୟା-ଗରିଷ୍ଠ ଏବଂ ସେସବୁ ପ୍ରଦେଶ ଯେହେତୁ ସ୍ୱଶାସିତ, ସଂଖ୍ୟାଗରିଷ୍ଠ ମୁସ୍‌ଲିମମାନେ କେତେକ ସର୍ବଭାରତୀୟ ବିଚାରକୁ ବାଦଦେଲେ, ନିଜ ପସନ୍ଦ ଅନୁସାରେ କାର୍ଯ୍ୟ କରିବାରେ କୌଣସି ପ୍ରତିବନ୍ଧକ ନଥିଲା । କେନ୍ଦ୍ର ସରକାରରେ ମଧ୍ୟ ମୁସ୍‌ଲିମ୍‌ମାନେ ଅନିବାର୍ଯ୍ୟ ଭାବରେ ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଲାଭକଲେ । ମୁସ୍‌ଲିମ୍ ସଂଖ୍ୟାଗରିଷ୍ଠ ପ୍ରଦେଶମାନଙ୍କରେ ଏହି ସାମ୍ପ୍ରଦାୟିକ ଧାର୍ମିକ ସମସ୍ୟା ଅନ୍ୟ ଭାବରେ ପ୍ରକାଶ ପାଇଥିଲା; କାରଣ ସେଠାରେ ଅନ୍ୟ ସଂଖ୍ୟାଲଘୁ ଗୋଷ୍ଠୀମାନେ (ହିନ୍ଦୁ ଓ ଶିଖ୍ ) ସୁରକ୍ଷା ଦାବି କରିଥିଲେ । ଏପରି ଭାବରେ, ପଞ୍ଜାବରେ ମୁସଲମାନ, ହିନ୍ଦୁ ଓ ଶିଖଙ୍କୁ ନେଇ ଏକ ତ୍ରିମୁଖୀ ସମସ୍ୟା ରହିଥିଲା । କେଉଁଠି ଯଦି

ମୁସଲମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ରହିଲା; ଅନ୍ୟମାନେ ନିଜ ପାଇଁ ସ୍ୱତନ୍ତ୍ର ସୁରକ୍ଷା ଦାବି କରି ବସିଲେ । ଥରେ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ପ୍ରବର୍ତ୍ତିତ ହେବା ପରେ ସେଥିରୁ କେତେ ଯେ ପ୍ରାଚୀର, ପ୍ରକୋଷ୍ଠ ଓ ପ୍ରତିବନ୍ଧକ ଗଢ଼ି ଉଠିଲା ତା'ର ସୀମା ନାହିଁ । ସ୍ପଷ୍ଟତଃ ଗୋଟାଏ ସମ୍ପ୍ରଦାୟକୁ ତାର ସଂଖ୍ୟାନୁପାତର ଅତିରିକ୍ତ ଭାବରେ ପ୍ରତିନିଧି ସ୍ଥାନ ଯଦି ଦିଆଯାଏ, ତାହା କରାଯାଇପାରେ କେବଳ ଅନ୍ୟ ଗୋଷ୍ଠୀ ପାଖରୁ ତା'ର ସଂଖ୍ୟାନୁପାତିକ ପ୍ରତିନିଧି ସଂଖ୍ୟାରୁ କିଛି ଅଂଶ ଛଡ଼ାଇନେଇ । ଅନ୍ୟ ସ୍ଥାନ ଅପେକ୍ଷା ବିଶେଷଭାବେ ବଙ୍ଗରେ ଏହାର ଅଦ୍‌ଭୁତ ପରିଣାମ ଘଟିଲା; କାରଣ ସେଠାରେ ୟୁରୋପୀୟଙ୍କ ନିମନ୍ତେ ମୁଖ୍ୟତଃ, ଅତ୍ୟଧିକ ପ୍ରତିନିଧି ଆସନ ସଂରକ୍ଷିତ କରାଯିବାରେ ଅନ୍ୟମାନଙ୍କର ସଂଖ୍ୟାନୁପାତିକ ସ୍ଥାନ ଅସମ୍ଭବ ଭାବରେ କାଟିଦିଆଗଲା । ଏପରି, ଭାବରେ ବଙ୍ଗର ବୁଦ୍ଧିଜୀବୀମାନେ, ଯେଉଁମାନେ ଭାରତୀୟ ରାଜନୀତି ଓ ସ୍ୱାଧୀନତା ସଂଗ୍ରାମରେ ସ୍ମରଣୀୟ ଭୂମିକା ଗ୍ରହଣ କରିଥିଲେ, ହଠାତ୍ ଉପଲବ୍‌ଧି କଲେ ଯେ ସମ୍ବିଧି ଦ୍ୱାରା ସୀମିତ ଓ ନିର୍ଦ୍ଦିଷ୍ଟ, ପ୍ରାଦେଶିକ ବ୍ୟବସ୍ଥାପକ ସଭାରେ, ସେମାନଙ୍କର ସ୍ଥିତି ଅତିଶୟ ଦୁର୍ବଳ ହୋଇପଡ଼ିଛି ।

କଂଗ୍ରେସ ବହୁତ ଭୁଲ୍ କରିଛି; କିନ୍ତୁ କୌଶଳ ଓ ଆଭିମୁଖ୍ୟ ନେଇ ଏସବୁ ଭୁଲ ଅପେକ୍ଷାକୃତ ସ୍ୱଳ୍ପ କହିଲେ ଚଳେ । ଏଥିରେ ସନ୍ଦେହ ନଥିଲା ଯେ କେବଳ ରାଜନୈତିକ କାରଣମାନଙ୍କରୁ ସୁଦ୍ଧା କଂଗ୍ରେସ ସାମ୍ପ୍ରଦାୟିକ ସମସ୍ୟାର ସମାଧାନ ଚାହୁଁଥିଲା; କାରଣ ତଦ୍ୱାରା ପ୍ରଗତିପଥର ଏକ ବୃହତ୍ ଅନ୍ତରାୟ ଅପସାରିତ କରିବାପାଇଁ ତା'ର ଅଧୀରତା ଓ ଉତ୍‌କଣ୍ଠା ରହିଥିଲା । କେବଳ ସାମ୍ପ୍ରଦାୟିକ ବିଚାର ନେଇ ସ୍ଥାପିତ ସଂସ୍ଥା ଓ ସଙ୍ଗଠନମାନଙ୍କରେ ଏ ପ୍ରକାର ଉତ୍ସୁକତା ପରିଲକ୍ଷିତ ହେଉନଥିଲା; କାରଣ ସେମାନଙ୍କର ଅସ୍ତିତ୍ୱ ନିମନ୍ତେ ପ୍ରଧାନ କାରଣ ଥିଲା ନିଜ ନିଜ ଗୋଷ୍ଠୀର ବିଭିନ୍ନ ଦାବି ଉପରେ ଜୋର୍ ଦେବା । ଏହା ଫଳରେ ସ୍ଥିତାବସ୍ଥାରେ କେତେକ ନ୍ୟସ୍ତସ୍ୱାର୍ଥ ବଢ଼ିଉଠିଲା । ସଭ୍ୟ ତାଲିକା ଭିତରେ ହିନ୍ଦୁମାନେ ସଂଖ୍ୟାଗରିଷ୍ଠ ଥିଲେସୁଦ୍ଧା ବହୁ ମୁସଲମାନ ତଥା ଶିଖ୍ ଓ ଖ୍ରୀଷ୍ଟାନ କଂଗ୍ରେସର ସଭ୍ୟ ଥିଲେ । ଅତଏବ, ଜାତୀୟ ଦୃଷ୍ଟିକୋଣରୁ ସବୁ କଥା ବିଚାର କରିବା ପାଇଁ କଂଗ୍ରେସ ବାଧ୍ୟ ଥିଲା । ତା'ପକ୍ଷରେ ସର୍ବପ୍ରଧାନ ପ୍ରଶ୍ନ ଥିଲା ଜାତୀୟ ମୁକ୍ତି ଏବଂ ଏକ ସ୍ୱାଧୀନ ଗଣତନ୍ତ୍ର ରାଷ୍ଟ୍ରର ପ୍ରତିଷ୍ଠା । କଂଗ୍ରେସ ଉପଲବ୍‌ଧି କରିଥିଲା ଯେ ଭାରତ ଭଳି ଏକ ବିଶାଳ ତଥା ବିବିଧତାପୂର୍ଣ୍ଣ ଦେଶରେ, ଖାଲି ଏକ ଗାଣତାନ୍ତ୍ରିକ ବ୍ୟବସ୍ଥା ଯେଉଁଠି ସବୁ ବିଷୟରେ ସଂଖ୍ୟାଲଘୁ ଗୋଷ୍ଠୀମାନଙ୍କୁ ଦବାଇଦେବା ପାଇଁ କିମ୍ବା ସେମାନଙ୍କର ମତାମତକୁ ଅଗ୍ରାହ୍ୟ ଅବା ଅବଜ୍ଞା କରିବା ପାଇଁ ସଂଖ୍ୟାଗରିଷ୍ଠଙ୍କ ହାତରେ ପୂର୍ଣ୍ଣ କ୍ଷମତା ରହିବ, ସ୍ଥାପନ କରିବା ସମ୍ଭବ ହେଲେ ସୁଦ୍ଧା ସନ୍ତୋଷଜନକ କିମ୍ବା ବାଞ୍ଛନୀୟ ନୁହେଁ । କଂଗ୍ରେସ ଚାହୁଁଥିଲା ଏକତା ଓ ତାହା ନିଶ୍ଚିତ ବୋଲି ଧରିନେଇଥିଲା; କିନ୍ତୁ ଗୋଟାଏ ଶାସନପଦ୍ଧତିରେ ଭାରତର ସାଂସ୍କୃତିକ ଜୀବନର ସମ୍ପନ୍ନତା ଓ ବିବିଧତାକୁ କାହିଁକି ଯେ କଠୋର ଶୃଙ୍ଖଳାରେ ଆବଦ୍ଧ କରାଯିବ, କଂଗ୍ରେସ କୌଣସି କାରଣ ଦେଖି ପାରୁନଥିଲା । ଅତଏବ, ବହୁତ ପରିମାଣରେ ପ୍ରାଦେଶିକ ସ୍ୱଶାସନ ମାନିନିଆଗଲା ଏବଂ ସାଂସ୍କୃତିକ ବିକାଶ,

ବ୍ୟକ୍ତି ଓ ଗୋଷ୍ଠୀର ସ୍ୱତନ୍ତ୍ରତା ଯେଭଳି ବ୍ୟାହତ ନହୁଏ ସେଥିଲାଗି କେତେକ ରକ୍ଷାକବଚ ମଞ୍ଜୁର କରାଗଲା ।

କିନ୍ତୁ ଦୁଇଟି ମୌଳିକ ପ୍ରଶ୍ନ ଉପରେ କଂଗ୍ରେସ ରହିଲା ଅଟଳ । ତାହା ହେଉଛି ଜାତୀୟ ଏକତା ଓ ଗଣତନ୍ତ୍ର । ଏହାର ଭିତ୍ତି ଉପରେ କଂଗ୍ରେସ ସ୍ଥାପିତ ହୋଇଥିଲା ଏବଂ ଗତ ପଚାଶ ବର୍ଷ ଭିତରେ ତା'ର ବିକାଶ ଏଥିଉପରେ ଜୋର୍ ଦେଇ ସାଧିତ ହୋଇଛି । ବିଚାର ଓ ଆଚରଣ ଉଭୟ ଦିଗରୁ କଂଗ୍ରେସ ସଂସ୍ଥା, ମୁଁ ଯେତେଦୂର ଜାଣେ, ପୃଥିବୀର ଶ୍ରେଷ୍ଠ ଗଣତାନ୍ତ୍ରିକ ସଙ୍ଗଠନମାନଙ୍କ ଭିତରେ ଅନ୍ୟତମ । ସମଗ୍ର ଦେଶରେ ପରିବ୍ୟାପ୍ତ ତା'ର ଅଯୁତ ସଂଖ୍ୟକ ସ୍ଥାନୀୟ କମିଟିମାନଙ୍କ ଜରିଆରେ କଂଗ୍ରେସ ଜନସାଧାରଣଙ୍କୁ ଗଣତାନ୍ତ୍ରିକ ମାର୍ଗରେ ଶିକ୍ଷା ଦେଇଛି ଏବଂ ଅପୂର୍ବ ସାଫଲ୍ୟ ଅର୍ଜନ କରିଛି । ମହାତ୍ମା ଗାନ୍ଧିଙ୍କ ଭଳି ଜଣେ ପ୍ରଭୂତ ପ୍ରଭାବଶାଳୀ ଜନନାୟକ କଂଗ୍ରେସ ସଙ୍ଗେ ସଂପୃକ୍ତ ଥିଲେ ସୁଦ୍ଧା କଂଗ୍ରେସର ଗଣତାନ୍ତ୍ରିକ ଚରିତ୍ର କ୍ଷୁଣ୍ଣ ହୋଇନି । ସଂଘର୍ଷ ଓ ସଙ୍କଟ କାଳରେ, ସବୁ ଦେଶରେ ଯେପରି କରିଥାନ୍ତି, ଆମ ଭିତରେ ମଧ୍ୟ ପଥପ୍ରଦର୍ଶନ ନିମନ୍ତେ ନାୟକ ଉପରେ ନିର୍ଭର କରିବାର ମନୋବୃତ୍ତି ଅବଶ୍ୟମ୍ଭାବୀ ହୋଇଉଠିଥାଏ ଏବଂ ସେ ପ୍ରକାର ସଙ୍କଟ ବି କିଛି ବିରଳ ନଥିଲା । କଂଗ୍ରେସକୁ ଗୋଟାଏ ବ୍ୟକ୍ତି-ସ୍ୱାଧୀନତା ବିରୋଧୀ ସଙ୍ଗଠନ କହିବାଠାରୁ ଅଧିକ ହାସ୍ୟକର ବିଷୟ ଆଉ କିଛି ନାହିଁ ଏବଂ ବଡ଼ କୌତୁକର କଥା ଯେ କଂଗ୍ରେସ ଉପରେ ଏ ପ୍ରକାର ଅଭିଯୋଗ ବ୍ରିଟିଶ ପ୍ରଭୁତ୍ୱର ସେହି ସବୁ ପ୍ରମୁଖ ପ୍ରତିନିଧିମାନେ ସାଧାରଣତଃ ଆରୋପ କରିଥାନ୍ତି, ଯେଉଁମାନେ ଭାରତରେ ଥିଲେ ସ୍ୱୈରତନ୍ତ୍ର ଓ ନିରଙ୍କୁଶ ପ୍ରଭୁତ୍ୱର ପ୍ରତୀକ ।

ତତ୍ତ୍ୱ ଦିଗରୁ ଅନ୍ତତଃ, ଅତୀତରେ ବ୍ରିଟିଶ ସରକାର ଥିଲେ ଭାରତୀୟ ଏକତା ଓ ଗଣତନ୍ତ୍ରର ସମର୍ଥକ । ଇଂରେଜମାନେ ଗର୍ବ ଅନୁଭବ କରୁଥିଲେ ଯେ ସେମାନଙ୍କର ଶାସନ ଫଳରେ ଭାରତର ରାଜନୈତିକ ଏକତା ସାଧିତ ହୋଇଛି । ଅବଶ୍ୟ ସେ ଏକତା ଦାସତ୍ୱର ଏକତା । ଆମକୁ ଆହୁରି କୁହାଗଲା ଯେ ସେମାନେ ଆମକୁ ଗଣତାନ୍ତ୍ରିକ ପଦ୍ଧତି ଓ ପ୍ରତିଷ୍ଠା ବିଷୟରେ ଶିକ୍ଷିତ କରୁଛନ୍ତି । କିନ୍ତୁ ବଡ଼ ବିଚିତ୍ର କଥା, ବ୍ରିଟିଶ ସରକାରଙ୍କ ନୀତି, ସିଧା-ସଳଖ ଭାବରେ, ଭାରତୀୟମାନଙ୍କୁ ଏକତା ଓ ଗଣତନ୍ତ୍ରରୁ ବଞ୍ଚିତ କରିଛି । ଖ୍ରୀ: ୧୯୪୦ ଅଗଷ୍ଟ ମାସରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଘୋଷଣା କରିବାକୁ ବାଧ୍ୟହେଲେ ଯେ ଭାରତରେ ବ୍ରିଟିଶ ସରକାରଙ୍କ ନୀତି "ଜନସାଧାରଣଙ୍କ ଭିତରେ ବିଭେଦ ଓ ବିବାଦ ସୃଷ୍ଟି କରିବା ଓ ଉତ୍ସାହିତ କରିବା ନିମନ୍ତେ ଉଦ୍ଦିଷ୍ଟ ।" ବ୍ରିଟିଶ ସରକାରଙ୍କ ଦାୟିତ୍ୱପୂର୍ଣ୍ଣ ମୁଖ-ପାତ୍ରମାନେ ଆମକୁ ଖୋଲଖୋଲା ଭାବରେ କହିବା ଆରମ୍ଭ କରିଦେଲେ ଯେ, କୌଣସି ନୂତନ ବ୍ୟବସ୍ଥା ଲାଗି ଭାରତର ଏକତାକୁ ହୁଏତ ବଳିଦେବାକୁ ପଡ଼ିବ, ଆଉ ଗଣତନ୍ତ୍ର ଭାରତ ପ୍ରତି ଉପଯୋଗୀ ନୁହେଁ । ଭାରତର ସ୍ୱାଧୀନତା ଦାବି ଓ ଗୋଟାଏ ଗଣତାନ୍ତ୍ରିକ ରାଷ୍ଟ୍ରର ପ୍ରତିଷ୍ଠା ବିଷୟରେ ଏ ଗୋଟିକ ଉତ୍ତର କେବଳ ସେମାନଙ୍କ ତରଫରୁ ମିଳିଥାଏ । ସେହି ଉତ୍ତର ପ୍ରସଙ୍ଗତଃ ଆମକୁ କହେ ଯେ ଇଂରେଜମାନେ ଯେଉଁ ଦୁଇଟି ବଡ଼ ଉଦ୍ଦେଶ୍ୟ

ସେମାନଙ୍କ ସମ୍ମୁଖରେ ରଖିଥିଲେ, ସେଥିରେ ବଡ଼ ବିକଳ ଭାବରେ ବିଫଳ ହୋଇଚନ୍ତି । ଏକଥା ଉପଲବ୍‌ଧି କରିବାପାଇଁ ସେମାନଙ୍କୁ ଦେଢ଼ଶହ ବର୍ଷ ଲାଗିଗଲା ।

ସବୁ ସମ୍ପୃକ୍ତ ପକ୍ଷ ରାଜି ହେବାଭଳି ସାମ୍ପ୍ରଦାୟିକ ସମସ୍ୟାର ଗୋଟାଏ ସମାଧାନ ବାହାର କରିବାରେ ଆମେ ବିଫଳ ହେଲୁ ଏବଂ ଏହି ବିଫଳତାର ପରିଣାମ ଯେପରି ଆମକୁ ମୁଣ୍ଡେଇବାକୁ ପଡ଼ିବ, ସେପରି ମଧ୍ୟ ତାହାର ଏକ ଅଂଶ ଆମକୁ ଅବଶ୍ୟ ଗ୍ରହଣ କରିବାକୁ ହେବ । ତେବେ କୌଣସି ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଅବା ପରିବର୍ତ୍ତନ ପାଇଁ ସମସ୍ତଙ୍କୁ କିଏ ବା ରାଜି କରାଇପାରିବ କିପରି ? ଗୋଟାଏ ଦିଗରେ ସବୁବେଳେ ସାମନ୍ତବାଦୀ ଓ ପ୍ରତିକ୍ରିୟାଶୀଳ ଶକ୍ତି ରହିଚନ୍ତି, ଯେଉଁମାନେ ସବୁ କିଛି ପରିବର୍ତ୍ତନର ବିରୋଧୀ । ଅନ୍ୟ ଦିଗରେ ସେପରି ସବୁ ଅଛନ୍ତି, ଯେଉଁମାନେ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ପରିବର୍ତ୍ତନ କାମନା କରନ୍ତି । ଏ ଉଭୟ ମଧ୍ୟରେ ଆହୁରି ସବୁ ଗୋଷ୍ଠୀ ରହିଚନ୍ତି । ଗୋଟାଏ କ୍ଷୁଦ୍ର ଗୋଷ୍ଠୀ ଯଦି ପରିବର୍ତ୍ତନ ବିରୁଦ୍ଧରେ ଭେଟୋ (ନିଜସ୍ୱ ଅଧିକାର ବଳରେ ନାମଞ୍ଜୁର କରିବା) ପ୍ରୟୋଗ କରି ବସେ, ପରିବର୍ତ୍ତନର ପ୍ରଶ୍ନ ଆଉ ଉଠିବନି । ଶାସକର ଯଦି ନୀତି ହେଲା ଦେଶର ଜନସାଧାରଣଙ୍କ ଭିତରେ ସଂଖ୍ୟା ଦିଗରୁ ନଗଣ୍ୟ ହେଲେ ସୁଦ୍ଧା, ସେପରି କେତେକ ଗୋଷ୍ଠୀକୁ ଉତ୍ସାହିତ କରିବା, ତାହାହେଲେ ପରିବର୍ତ୍ତନ ଅଣାଯାଇପାରେ କେବଳ ସଫଳ ବିପ୍ଳବ ଜରିଆରେ । ଏକଥା ସ୍ପଷ୍ଟ ଯେ ଭାରତରେ ବହୁସଂଖ୍ୟକ ସାମନ୍ତ-ବାଦୀ ତଥା ପ୍ରତିକ୍ରିୟାଶୀଳ ଗୋଷ୍ଠୀ ଅଛନ୍ତି ଯେଉଁମାନଙ୍କ ଭିତରୁ କେତେ ଦେଶୀ ଆଉ ଅନ୍ୟମାନେ ଇଂରେଜମାନଙ୍କ ଦ୍ୱାରା ସୃଷ୍ଟ ଓ ପରିପାଳିତ । ସଂଖ୍ୟା ଦିଗରୁ ସେମାନେ ତୁଚ୍ଛ ହୋଇପାରନ୍ତି; କିନ୍ତୁ ସେମାନଙ୍କ ପଛରେ ରହିଚି ବ୍ରିଟିଶ-ଶକ୍ତି ।

ମୁସ୍‌ଲିମ୍ ଲିଗ୍ ବ୍ୟତୀତ ମୁସଲମାନ୍‌ମାନଙ୍କ ଭିତରେ ନାନାବିଧ ସଙ୍ଗଠନ ଗଢ଼ିଉଠିଲା । ସେଥିଭିତରୁ ଅପେକ୍ଷାକୃତ ପୁରାତନ ଓ ଅଧିକତର ଗୁରୁତ୍ୱପୂର୍ଣ୍ଣ ଏକ ସଂଗଠନର ନାମ ହେଉଚି 'ଜମିଅତ୍-ଉଲ୍-ଉଲେମା'; ଯେଉଁଥିରେ ସମଗ୍ର ଭାରତର ମୁଲ୍ଲା ଓ ମୌଲଭୀମାନେ ସଭ୍ୟ ଥିଲେ । ସାଧାରଣ ଦୃଷ୍ଟିଭଙ୍ଗୀରେ ପାରମ୍ପରିକ ଓ ରକ୍ଷଣଶୀଳ, ଧର୍ମ ଉପରେ ପ୍ରତିଷ୍ଠିତ ଏହି ସଙ୍ଗଠନ ତଥାପି ରାଜନୀତି ଦୃଷ୍ଟିରୁ ଥିଲା ଅଗ୍ରଗାମୀ ଓ ଏହା ସାମ୍ରାଜ୍ୟବାଦ-ବିରୋଧୀ ବିଚାର ପୋଷଣ କରୁଥିଲା । ରାଜନୈତିକ ସ୍ତରରେ ଏହି ସଂଗଠନ କଂଗ୍ରେସ ସଙ୍ଗେ ବହୁଧା ସହଯୋଗ କରିଚି ଏବଂ ଏହାର ବହୁ ସଭ୍ୟ କଂଗ୍ରେସର ସଭ୍ୟଶ୍ରେଣୀଭୁକ୍ତ ଥିଲେ ଓ ନିଜ ସଙ୍ଗଠନ ଜରିଆରେ କାର୍ଯ୍ୟ କରୁଥିଲେ । 'ଅହରାର ଜମାତ' ପରେ ସ୍ଥାପିତ ହେଲା ଓ ପଞ୍ଜାବରେ ଏହା ଥିଲା ସର୍ବାପେକ୍ଷା ବଳିଷ୍ଠ ସଙ୍ଗଠନ । ଏହା ଥିଲା ମୁଖ୍ୟତଃ ନିମ୍ନମଧ୍ୟବିତ୍ତ ଶ୍ରେଣୀ ମୁସଲମାନମାନଙ୍କର ଏକ ସଂସ୍ଥା ଏବଂ କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଜନସାଧାରଣଙ୍କ ଉପରେ ଏହାର ପ୍ରଭାବ ଥିଲା ଅସାମାନ୍ୟ । ମୋମିନ୍‌ମାନେ (ମୁଖ୍ୟତଃ ବୁଣାଳି ଶ୍ରେଣୀ) ସଂଖ୍ୟା ଦିଗରୁ ପର୍ଯ୍ୟାପ୍ତ ହେଲେ କ'ଣ ହେଲା ମୁସଲମାନ୍‌ମାନଙ୍କ ଭିତରେ ଏମାନେ ଥିଲେ ଦରିଦ୍ରତମ ଓ ଅତିଶୟ ଅନଗ୍ରସର, ଦୁର୍ବଳ ଓ ଅସଂଗଠିତ । କଂଗ୍ରେସ ପ୍ରତି ଏମାନେ ବନ୍ଧୁଭାବାପନ୍ନ ଓ ମୁସ୍‌ଲିମ୍ ଲିଗ୍‌ର ବିରୋଧୀ ଥିଲେ; କିନ୍ତୁ ବଳ ଅଭାବରୁ ରାଜନୈତିକ

ଜମିଦାରୀ ଜଞ୍ଜାଳରୁ ଦୂରେଇ ରହୁଥିଲେ । ବଙ୍ଗରେ ଥିଲା କୃଷକ-ସଭା । ଜମିଅତ୍-ଉଲ୍-ଉଲେମା ଓ ଅହରାର୍ ଜମାତ୍ ଉଭୟେ ସାଧାରଣ କାର୍ଯ୍ୟରେ ତଥା ବ୍ରିଟିଶ ସରକାର-ବିରୋଧୀ ଉଗ୍ର ଆନ୍ଦୋଳନମାନଙ୍କରେ କଂଗ୍ରେସ ସଙ୍ଗେ ସହଯୋଗ କରିଚନ୍ତି ଓ ସେଥିଲାଗି ଦୁଃଖ ଭୋଗ ମଧ୍ୟ କରିଚନ୍ତି । ଯେଉଁ ପ୍ରମୁଖ ମୁସ୍‌ଲିମ୍ ସଙ୍ଗଠନ କେବଳ ବଚନ ଛଡ଼ା ଅନ୍ୟ ଭାବରେ ବ୍ରିଟିଶ ହାକିମମାନଙ୍କ ସଙ୍ଗେ କେବେହେଲେ ସଙ୍ଘର୍ଷ କରିନି, ତାହା ହେଉଚି ମୁସ୍‌ଲିମ୍ ଲିଗ୍ ଏବଂ ଯାହାର ପରବର୍ତ୍ତୀ ବହୁ ପରିବର୍ତ୍ତନ ଓ ବିକାଶ ଭିତରେ ପର୍ଯ୍ୟାପ୍ତ ସଂଖ୍ୟାରେ ମୁସଲମାନ୍‌ମାନେ ତା'ର ସଭ୍ୟ ତାଲିକାଭୁକ୍ତ ହେବା ସତ୍ତ୍ୱେ କେବେହେଲେ ତା'ର ଉଚ୍ଚବର୍ଗୀୟ ସାମନ୍ତବାଦୀ ନେତୃତ୍ୱ ପରିହାର କରିପାରିନାହିଁ ।

ଏମାନଙ୍କ ବ୍ୟତୀତ ଶିଆ ମୁସ୍‌ଲିମ୍‌ମାନଙ୍କର ସ୍ୱତନ୍ତ୍ର ସଙ୍ଗଠନ ଥିଲା; କିନ୍ତୁ ଏମାନେ ସୁସଙ୍ଗଠିତ ନଥିଲେ ଏବଂ ଏମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ରାଜନୈତିକ ଦାବି କେବଳ ଉପସ୍ଥାପିତ କରିବା । ଇସ୍‌ଲାମ୍‌ର ପ୍ରଥମାବସ୍ଥାରେ ଆରବ ଦେଶରେ ଖିଲାଫତ୍‌ର ଉତ୍ତରାଧିକାର ନେଇ ଉଚ୍ଚ ବିବାଦ ଉପୁଜିଥିଲା । ଫଳରେ, ମୁସ୍‌ଲିମ୍‌ମାନେ ଦୁଇଟି ଶାଖାରେ ବିଭକ୍ତ ହୋଇପଡ଼ିଲେ । ଏମାନେ ହେଲେ ଶିଆ ଓ ସୁନ୍ନି । ସେ କଳହ ବରାବର ଲାଗିରହିଲା ଏବଂ ଆଜି ବି ତାହା ଉଭୟଙ୍କୁ ଅଲଗା କରି ରଖିଚି; କିନ୍ତୁ କଳହ ପଛର ରାଜନୀତି ଅନେକ ଦିନରୁ ଉଭାଇଗଲାଣି । ଭାରତରେ ଏବଂ ଇରାନ ବ୍ୟତୀତ ଅନ୍ୟାନ୍ୟ ଇସ୍‌ଲାମୀୟ ଦେଶମାନଙ୍କରେ ସୁନ୍ନିମାନେ ସଂଖ୍ୟାଗରିଷ୍ଠ । ଇରାନ୍‌ରେ କେବଳ ଶିଆମାନଙ୍କ ସଂଖ୍ୟା ବେଶି । କେବେ କେବେ ଏହି ଉଭୟ ଶାଖା ମଧ୍ୟରେ ଧର୍ମଗତ ସଙ୍ଘର୍ଷ ମଧ୍ୟ ଘଟିଚି । ଭାରତର ଶିଆ ସଙ୍ଗଠନ ମୁସ୍‌ଲିମ୍ ଲିଗ୍‌ଠାରୁ ଅଲଗା ରହିଚି ଏବଂ ଉଭୟ ଭିତରେ ପରସ୍ପରର ମେଳ ନାହିଁ । ଏହି ସଙ୍ଗଠନ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ବ୍ୟବସ୍ଥାର ବିରୋଧୀ । ତେବେ ଲିଗ୍‌ରେ ମଧ୍ୟ କେତେକ ଖ୍ୟାତନାମା ଶିଆ ଅଛନ୍ତି ।

ଏହି ସବୁ ମୁସ୍‌ଲିମ୍ ସଙ୍ଗଠନ ଓ ମୁସ୍‌ଲିମ୍ ଲିଗ୍ ବ୍ୟତୀତ ଆଉ କେତେ ମୁସ୍‌ଲିମ୍ ସଙ୍ଗଠନ ଆଜାଦ୍ ମୁସ୍‌ଲିମ୍ ସମ୍ମିଳନୀ କରିବା ପାଇଁ ମିଳିତ ହୋଇଥିଲେ । ବସ୍ତୁତଃ ଏହା ଥିଲା ମୁସ୍‌ଲିମ୍ ଲିଗ୍ ବିରୁଦ୍ଧରେ ଏକପ୍ରକାର ମିଳିତ ମୁସ୍‌ଲିମ୍ ସାମ୍ମୁଖ୍ୟ । ଖ୍ରୀ: ୧୯୪୦ରେ ଦିଲ୍ଲୀରେ ଏହାର ପ୍ରଥମ ପ୍ରତିନିଧିମୂଳକ ଅଧିବେଶନ ଖୁବ୍ ସଫଳ ହୋଇଥିଲା ।

ମୁଖ୍ୟ ହିନ୍ଦୁ ସାମ୍ପ୍ରଦାୟିକ ସଙ୍ଗଠନ ହେଉଚି ହିନ୍ଦୁ ମହାସଭା, ମୁସ୍‌ଲିମ୍ ଲିଗ୍‌ର ପ୍ରତିରୂପ; କିନ୍ତୁ ଅପେକ୍ଷାକୃତ କମ୍ ଗୁରୁତ୍ୱପୂର୍ଣ୍ଣ । ଲିଗ୍ ଭଳି ଏହା ମଧ୍ୟ ଉତ୍କଟ ଭାବରେ ସାମ୍ପ୍ରଦାୟିକ; କିନ୍ତୁ ଏହାର ସଙ୍କୀର୍ଣ୍ଣ ଦୃଷ୍ଟିଭଙ୍ଗୀକୁ କେତେକ ଅସ୍ପଷ୍ଟ ଜାତୀୟ ଶବ୍ଦାଡ଼ମ୍ବର-ଦ୍ୱାରା ଘୋଡ଼ାଇବାକୁ ଚେଷ୍ଟା କରେ; କିନ୍ତୁ ଏହାର ଦୃଷ୍ଟିଭଙ୍ଗୀ ପ୍ରଗତିଶୀଳ ନୁହେଁ ଓ ଏହା ପୁଣି ଅତୀତକୁ ଆଣି ପ୍ରତିଷ୍ଠା କରିବାକୁ ଚାହେଁ । ଏହାର ଦୁର୍ଭାଗ୍ୟ ଯେ ମୁସ୍‌ଲିମ୍ ଲିଗ୍‌ର କେତେକ ନେତାଙ୍କ ଭଳି ଏହାର କେତେକ ନେତା ମଧ୍ୟ ଦାୟିତ୍ୱହୀନ ଓ ହିଂସାତ୍ମକ ଭାଷା ବ୍ୟବହାର କରିବା ପସନ୍ଦ କରନ୍ତି । ଉଭୟ ପକ୍ଷର ଏହି ବାକ୍‌ଯୁଦ୍ଧ ବଡ଼ ବିରକ୍ତିକର । କାର୍ଯ୍ୟ କହିଲେ, ଏମାନେ ଏହି ବାକ୍‌ଯୁଦ୍ଧ ହିଁ ବୁଝନ୍ତି ।

ଅତୀତରେ ମୁସ୍‌ଲିମ୍ ଲିଗ୍‌ର ଏହି ସାମ୍ପ୍ରଦାୟିକ ଦୃଷ୍ଟିଭଙ୍ଗୀ ଥିଲା ବହୁଧା ଅସୁବିଧାଜନକ ଓ ଯୁକ୍ତିହୀନ, କିନ୍ତୁ ହିନ୍ଦୁ ମହାସଭାର ଦୃଷ୍ଟିଭଙ୍ଗୀ ମଧ୍ୟ କମ୍ ଅନମନୀୟ ନଥିଲା । ପଞ୍ଜାବ ଓ ସିନ୍ଧୁର ହିନ୍ଦୁ ସଂଖ୍ୟାଲଘୁ ଓ ପଞ୍ଜାବର ପ୍ରଭାବଶାଳୀ ଶିଖ୍ ଗୋଷ୍ଠୀ ବହୁଧା ପ୍ରତିରୋଧକ ହେବା ଫଳରେ କୌଣସି ସମାଧାନ କରିବାକୁ ବାଟ ଛାଡ଼ୁନାହାନ୍ତି । ବ୍ରିଟିଶ ନୀତି ଥିଲା ଏହିସବୁ ବିଭେଦକୁ ଉତ୍ସାହିତ କରିବା ଓ ଏହି ସବୁ ଉପରେ ଜୋର୍ ଦେବା ଏବଂ କଂଗ୍ରେସ ଅପେକ୍ଷା ଅଧିକତର ସାମ୍ପ୍ରଦାୟିକ ସଙ୍ଗଠନଗୁଡ଼ିକୁ ଅଧିକ ଗୁରୁତ୍ୱ ଅର୍ପଣ କରିବା ।

କୌଣସି ଗୋଷ୍ଠୀ ଅବା ଦଳର ଗୁରୁତ୍ୱ ଅବା ନିତାନ୍ତପକ୍ଷେ ଜନସାଧାରଣଙ୍କ ଉପରେ ତା'ର ପ୍ରଭାବର ପରୀକ୍ଷା ହେଉଛି ନିର୍ବାଚନ । ଭାରତରେ ଖ୍ରୀ: ୧୯୩୭ର ସାଧାରଣ ନିର୍ବାଚନରେ ହିନ୍ଦୁ ମହାସଭା ସମ୍ପୂର୍ଣ୍ଣ ଭାବରେ ପରାଜିତ ହୋଇଥିଲା । ଶେଷରେ ତା'ର ଚିହ୍ନ ବର୍ଣ୍ଣ କେଉଁଠି ଦେଖିବାକୁ ନଥିଲା । ମୁସ୍‌ଲିମ୍ ଲିଗ୍‌ର ଅବସ୍ଥା ତଦପେକ୍ଷା ସାମାନ୍ୟ ଭଲ ଥିଲା ସତ୍ୟ; କିନ୍ତୁ ସାମଗ୍ରିକ ଭାବରେ ଦେଖିଲେ ଏହାର ଅବସ୍ଥା ମଧ୍ୟ ତଦ୍ରୂପ । ବିଶେଷତଃ ମୁସ୍‌ଲିମ୍-ଅଧ୍ୟୁଷିତ ପ୍ରଦେଶମାନଙ୍କରେ ପଞ୍ଜାବ ଓ ସିନ୍ଧୁରେ ଏହା ସମ୍ପୂର୍ଣ୍ଣ ଭାବରେ ବିଫଳ ହେଲା ଏବଂ ବଙ୍ଗରେ ଏହାର ସଫଳତା ଥିଲା ମାତ୍ର ଆଂଶିକ । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ପରେ ଗଢ଼ିଲା । ମୁସ୍‌ଲିମ୍ ସଂଖ୍ୟାଲଘୁ ପ୍ରଦେଶ-ମାନଙ୍କରେ ମୋଟାମୋଟି ଭାବରେ ମୁସ୍‌ଲିମ୍ ଲିଗ୍ ବହୁଳ ପ୍ରଦେଶମାନଙ୍କ ଅପେକ୍ଷା ଅଧିକତର ସଫଳତା ହାସଲ କରିଥିଲା; କିନ୍ତୁ ଏହିସବୁ ପ୍ରଦେଶରେ ସ୍ୱାଧୀନ ମୁସ୍‌ଲିମ୍ ଗୋଷ୍ଠୀମାନ ଥିଲା ଏବଂ ମୁସ୍‌ଲିମ୍‌ମାନେ କଂଗ୍ରେସ ଟିକେଟରେ ମଧ୍ୟ ନିର୍ବାଚିତ ହୋଇଥିଲେ ।

ଏହା ପରେ ଆରମ୍ଭ ହେଲା ପ୍ରଦେଶର କଂଗ୍ରେସ ସଙ୍ଗଠନ ଓ ପ୍ରଦେଶର କଂଗ୍ରେସ ସରକାରମାନଙ୍କ ବିରୁଦ୍ଧରେ ମୁସ୍‌ଲିମ୍ ଲିଗ୍ ପକ୍ଷରୁ ଏକ ଅଦ୍ଭୁତ ଆନ୍ଦୋଳନ । ଦିନ ପରେ ଦିନ ଅବିଶ୍ରାନ୍ତ ଭାବରେ ମୁସ୍‌ଲିମ୍ ଲିଗ୍ ଆବୃତ୍ତି କରିବାକୁ ଲାଗିଲା ଯେ କଂଗ୍ରେସ ସରକାର-ମାନେ ମୁସଲମାନ୍‌ମାନଙ୍କ ପ୍ରତି 'ନୃଶଂସ' ଆଚରଣ କରୁଛନ୍ତି । ସରକାରମାନଙ୍କରେ ମୁସ୍‌ଲିମ୍ ମନ୍ତ୍ରୀ ବି ଥିଲେ; କିନ୍ତୁ ସେମାନେ ମୁସ୍‌ଲିମ୍ ଲିଗ୍‌ର ସଭ୍ୟ ନଥିଲେ । ଏହିସବୁ 'ନୃଶଂସତା' କ'ଣ ସାଧାରଣତଃ ପ୍ରକାଶ କରାଯାଉନଥିଲା । କୌଣସି ସ୍ଥାନୀୟ କ୍ଷୁଦ୍ର ଘଟଣା ଯାହା ସଙ୍ଗେ ସରକାରର କୌଣସି ସମ୍ପର୍କ ନାହିଁ, ତାକୁ ବିକୃତ ଓ ଅତିରଞ୍ଜିତ କରାଯାଉ-ଥିଲା । କେତେକ ସରକାରୀ ବିଭାଗର ସାମାନ୍ୟ କେତେକ ତ୍ରୁଟି ଯାହା ଅବିଳମ୍ବେ ସଂଶୋଧିତ ହୋଇ ପାରିଥିଲା, ନୃଶଂସତା ପର୍ଯ୍ୟାୟଭୁକ୍ତ ଥିଲା । କେବେକେବେ ସମ୍ପୂର୍ଣ୍ଣ ମିଥ୍ୟା ଓ ଭିତ୍ତିହୀନ ଅଭିଯୋଗ ବି ହେଉଥିଲା । ଏକ ରିପୋର୍ଟ ବି ପ୍ରକାଶ ପାଇଥିଲା ଯାହାର ବିଷୟବସ୍ତୁ ଉଦ୍ଭଟ କଳ୍ପନା ମାତ୍ର ଓ ତଥ୍ୟ ସଙ୍ଗେ ତା'ର କୌଣସି ସମ୍ପର୍କ ନଥିଲା । ଯେଉଁ-ମାନେ ଅଭିଯୋଗ କରିଥିଲେ, ଅନୁସନ୍ଧାନ ନିମନ୍ତେ ବିହିତ ବିବରଣୀ ଯୋଗାଇବା ପାଇଁ କିମ୍ବା ସେମାନେ ଆସି ସରକାରୀ ସହାୟତାରେ ନିଜେ ଅନୁସନ୍ଧାନ କରିବାପାଇଁ ତାଙ୍କୁ କଂଗ୍ରେସ ସରକାର ନିମନ୍ତ୍ରଣ ଜଣାଇଥିଲେ । କେହିହେଲେ ତା'ର ସୁବିଧା ନେଇନାହାନ୍ତି; କିନ୍ତୁ କଂଗ୍ରେସ ବିରୁଦ୍ଧରେ ଆନ୍ଦୋଳନ ଚାଲୁରହିଲା । ଖ୍ରୀ: ୧୯୪୦ ରେ, କଂଗ୍ରେସ

ସରକାରମାନେ ଇସ୍ତଫା ଦେବା ପରେ ପରେ କଂଗ୍ରେସର ତତ୍କାଳୀନ ସଭାପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ଜିନ୍ନାଙ୍କ ପାଖକୁ ଚିଠି ଲେଖି ଓ ସର୍ବସାଧାରଣରେ ଏକ ବିବୃତି ଦେଇ ମୁସ୍‌ଲିମ୍ ଲିଗ୍‌କୁ ଆହ୍ୱାନ ଜଣାଇଥିଲେ ଯେ କଂଗ୍ରେସ ସରକାରମାନଙ୍କ ବିରୁଦ୍ଧରେ ଯଦି କିଛି ଅଭିଯୋଗ ଥାଏ, ତା'ର ବିଚାର ଓ ନିଷ୍ପତ୍ତି ପାଇଁ ଲିଗ୍ ତାହା ଫେଡ଼େରଲ କୋର୍ଟରେ ଦାଖଲ କରୁ । ମିଷ୍ଟର ଜିନ୍ନା ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ ଓ ଏଥିନିମନ୍ତେ ଏକ ରୟଲ୍ କମିଶନ ନିଯୁକ୍ତ ହେବାର ସମ୍ଭାବନା ସୂଚିତ କରିଥିଲେ । ଏ ପ୍ରକାର କମିଶନ ନିଯୁକ୍ତ କରିବାର ପ୍ରଶ୍ନ ନଥିଲି ଏବଂ ବ୍ରିଟିଶ ସରକାର କେବଳ ତାହା କରିପାରନ୍ତେ । କେତେକ ବ୍ରିଟିଶ ଗଭର୍ଣ୍ଣର, କଂଗ୍ରେସ ଶାସନକାଳରେ ପ୍ରଦେଶମାନଙ୍କର ଯେଉଁମାନେ ଥିଲେ ମୁଖ୍ୟ, ସର୍ବସାଧାରଣରେ ଘୋଷଣା କଲେ ଯେ ସଂଖ୍ୟାଲଘୁଙ୍କ ସଙ୍ଗେ ବ୍ୟବହାର ସଂକ୍ରାନ୍ତରେ ସେମାନେ ଆପତ୍ତିଜନକ ସେପରି କିଛି ପାଇନାହାନ୍ତି । ଖ୍ରୀ: ୧୯୩୫ର ଆଇନ ଅନୁସାରେ ଆବଶ୍ୟକ ବେଳେ ସଂଖ୍ୟାଲଘୁଙ୍କ ସୁରକ୍ଷା ପାଇଁ ସେମାନଙ୍କ ହାତରେ ବିଶେଷ ଅଧିକାର ଅର୍ପିତ ହୋଇଥିଲି ।

ହିଟ୍‌ଲର୍ କ୍ଷମତାକୁ ଆସିବା ଦିନ ନାଜି ପ୍ରଚାର ପ୍ରଣାଳୀର ଏକ ନିବିଷ୍ଟ ସମୀକ୍ଷା ମୁଁ କରିଥିଲି ଏବଂ ଠିକ୍ ସେପରି କିଛି ଭାରତରେ ଘଟୁଥିବା ଲକ୍ଷ୍ୟ କରି ମୋର ବିସ୍ମୟର ଅବଧି ନଥିଲି । ବର୍ଷକ ପରେ, ଖ୍ରୀ: ୧୯୩୮ରେ, ଚେକୋସ୍ଲୋଭାକିଆକୁ ଯେବେ ସୁଡ଼େଟେନ୍‌ଲେଣ୍ଡ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିଥିଲା; ନାଜୀମାନେ ସେଠାରେ ଯେଉଁ ସବୁ ପଦ୍ଧତି ପ୍ରୟୋଗ କରିଥିଲେ, ମୁସ୍‌ଲିମ୍ ଲିଗ୍‌ର ମୁଖପାତ୍ରମାନେ ସମର୍ଥନ ସହକାରେ ସେସବୁର ଅଧ୍ୟୟନ ଓ ଉଲ୍ଲେଖ କରୁଥିଲେ । ସୁଡ଼େଟେନ୍‌ଲେଣ୍ଡର ଜର୍ମାନ ଅଧିବାସୀ ଓ ଭାରତୀୟ ମୁସଲମାନ୍‌ମାନଙ୍କ ଭିତରେ ତୁଳନା କରାଯାଉଥିଲି । ଭାଷଣରେ ଓ କେତେକ ସମ୍ବାଦପତ୍ରରେ ହିଂସାଭାବ ଓ ପ୍ରରୋଚନା ସ୍ପଷ୍ଟ ହୋଇଉଠିଲା । ଜଣେ କଂଗ୍ରେସ ମୁସଲମାନ ମନ୍ତ୍ରୀଙ୍କୁ ଛୁରୀରେ ଆଘାତ କରାଗଲା; କିନ୍ତୁ ମୁସ୍‌ଲିମ୍ ଲିଗ୍‌ର କୌଣସି ନେତା ଏହି କାର୍ଯ୍ୟର ନିନ୍ଦା କଲେନାହିଁ; ବରଂ ସତ୍ୟ କହିଲେ, ସେମାନେ ତାହା ଉପେକ୍ଷା କରିଥିଲେ । ଅନ୍ୟାନ୍ୟ ଧରଣର ହିଂସା ପ୍ରଦର୍ଶନ ବାରମ୍ବାର ଘଟିବାକୁ ଲାଗିଲା ।

ଏସବୁ ଘଟଣାବଳୀ ଦ୍ୱାରା ଓ ସାଧାରଣ ଜୀବନର ମାନ ଏଭଳି ନିମ୍ନଗାମୀ ହେବା ଦେଖି ମୁଁ ବଡ଼ ହତାଶ ହୋଇଥିଲି । ହିଂସା, ଅଶିଷ୍ଟତା ଓ ଦାୟିତ୍ୱହୀନତା ବରାବର ବୃଦ୍ଧି ପାଉଥିଲା ଓ ଯେପରି ଅନୁମିତ ହୁଏ ଏ ପ୍ରକାର କାର୍ଯ୍ୟକୁ ସମର୍ଥନ କରୁଥିଲେ ମୁସ୍‌ଲିମ୍ ଲିଗ୍‌ର ଦାୟିତ୍ୱ-ସମ୍ପନ୍ନ ନେତାମାନେ । ଏ ପ୍ରକାର ପ୍ରବଣତା ଦମନ କରିବାପାଇଁ ମୁଁ ସେମାନଙ୍କର କେତେକ ନେତାଙ୍କ ପାଖକୁ ବିନୀତ ଭାବରେ ଲେଖିଲି, କିନ୍ତୁ ଫଳ କିଛି ହେଲାନି । କଂଗ୍ରେସ ସରକାରମାନେ, ନିଜ ସ୍ୱାର୍ଥଦୃଷ୍ଟିରୁ ଅନ୍ତତଃ, ପ୍ରତ୍ୟେକ ସଂଖ୍ୟାଲଘୁ କିମ୍ବା ଅନ୍ୟ କୌଣସି ଗୋଷ୍ଠୀକୁ ନିଜ ଆଦର୍ଶରେ ପ୍ରଭାବିତ କରିବାପାଇଁ ଅକ୍ଲାନ୍ତ ଉଦ୍ୟମ କରିଥିଲେ । ପ୍ରକୃତ-ପକ୍ଷେ, କେତେକ ମହଲରୁ ଅଭିଯୋଗ ହୋଇଥିଲା ଯେ ଅନ୍ୟାନ୍ୟ ଗୋଷ୍ଠୀଙ୍କୁ ସେମାନଙ୍କର ପ୍ରାପ୍ୟରୁ ବଞ୍ଚିତ କରି କଂଗ୍ରେସ ସରକାର ମୁସଲମାନ୍‌ମାନଙ୍କ ପ୍ରତି ଅହେତୁକ କୃପା ପ୍ରଦର୍ଶନ

କରୁଚନ୍ତି; କିନ୍ତୁ ତାହା ସେପରି କୌଣସି ନିର୍ଦ୍ଦିଷ୍ଟ ଅଭିଯୋଗଗତ ପ୍ରଶ୍ନ ନଥିଲା, ଯାହାର ପ୍ରତିକାର କରିଯାଇପାରନ୍ତା କିମ୍ବା ଯୁକ୍ତିସଙ୍ଗତ ଭାବରେ ବିବେଚିତ ହୋଇପାରନ୍ତା । ମୁସ୍‌ଲିମ୍ ଲିଗର ସଭ୍ୟ ଓ ସମର୍ଥକମାନେ ଘୃଣିମତ ଏକ ଆନ୍ଦୋଳନ ଚଳାଇଥିଲେ ଏବଂ ମୁସ୍‌ଲିମ୍ ଜନସାଧାରଣଙ୍କ ମନରେ ବିଶ୍ୱାସ ଆଣିବାର ଉଦ୍ୟମ କରୁଥିଲେ ଯେ ସାଙ୍ଘାତିକ କିଛି ସବୁ ଘଟିଯାଉଚି, ଯେଉଁଥି ପାଇଁ କଂଗ୍ରେସ କେବଳ ଦାୟୀ । ସେଇ ସାଙ୍ଘାତିକ କଥାଟା କ’ଣ କେହି ଜାଣିଥିବା ଭଳି ଜଣାଯାଉନଥିଲା । ତେବେ ଏସବୁ ଚିତ୍କାର ଓ ଅଭିଶାପବର୍ଷଣ ପଛରେ, ଏଠାରେ ଯଦି ନହେଲା ଅନ୍ୟ କେଉଁଠାରେ ହେଲେ, ନିଶ୍ଚୟ କିଛି ଗୁରୁତର କାରଣ ରହିଥିବ । ଉପନିର୍ବାଚନଗୁଡ଼ିକରେ ତୁହା ଉଠିଲା ‘ଇସ୍‌ଲାମ୍ ବିପନ୍ନ’ ଏବଂ କୋରାଣ ଛୁଇଁ ଶପଥ କରି ମୁସ୍‌ଲିମ୍ ଲିଗ୍ ପ୍ରାର୍ଥୀଙ୍କୁ ଭୋଟ ଦେବାପାଇଁ ଭୋଟର-ମାନଙ୍କୁ କୁହାଗଲା ।

ଏ ସବୁର ପ୍ରଭାବ ମୁସ୍‌ଲିମ୍ ଜନତା ଉପରେ ପଡ଼ିଲା, ସନ୍ଦେହ ନାହିଁ । ତଥାପି ଦେଖିବାକୁ ହେବ, ସେମାନଙ୍କ ଭିତରୁ କମ୍ ଲୋକ ଲିଗ୍‌ର ଏହି ମନୋଭାବକୁ ପ୍ରତିରୋଧ କରିନାହାନ୍ତି । ଅଧିକାଂଶ ଉପନିର୍ବାଚନରେ ଲିଗ୍ ବିଜୟୀ ହେଲା । ଯେଉଁଠି ଲିଗ୍ ଜିଣିଚି ମଧ୍ୟ ସେଠାର ମୁସ୍‌ଲିମ୍ ଭୋଟରମାନଙ୍କ ଭିତରୁ ଅଳ୍ପସଂଖ୍ୟକ ହେଲେ ସୁଦ୍ଧା ଉଲ୍ଲେଖ-ଯୋଗ୍ୟ ଏକ ଅଂଶ କଂଗ୍ରେସର କାର୍ଯ୍ୟ ପ୍ରୋଗ୍ରାମଦ୍ୱାରା ପରିଚାଳିତ, ଲିଗ୍ ପ୍ରାର୍ଥୀ ବିରୁଦ୍ଧରେ ଭୋଟ ଦେଇଚନ୍ତି; କିନ୍ତୁ ତା’ର ଇତିହାସରେ ପ୍ରଥମ ଥର ପାଇଁ ମୁସ୍‌ଲିମ୍ ଲିଗ୍ ଜନସମର୍ଥନ ଲାଭ କଲା ଏବଂ ଜନ-ସଙ୍ଗଠନ ଭାବରେ ରୂପାନ୍ତରିତ ହେବାକୁ ଲାଗିଲା । ଏସବୁ ଯେତେ ଯାହା ଘଟୁଥିଲା, ସେଥିରେ ମୁଁ ଦୁଃଖିତ ହେଲେ ସୁଦ୍ଧା ମୁସ୍‌ଲିମ୍ ଲିଗ୍‌ର ଏହି ନୂତନ ରୂପାନ୍ତର ପ୍ରକ୍ରିୟାକୁ ମୁଁ ଏକରକମ ସ୍ୱାଗତ କରିଥିଲି କହିଲେ ଚଳେ; କାରଣ ଏପରି ଭାବରେ ଗତିକଲେ ପରିଶେଷରେ ହୁଏତ ତା’ର ସାମନ୍ତବାଦୀ ନେତୃତ୍ୱର ପତନ ଘଟିବ ଏବଂ ପ୍ରଗତିଶୀଳମାନେ ସମ୍ମୁଖକୁ ଆସିଯିବେ । ଏ ପର୍ଯ୍ୟନ୍ତ ପ୍ରକୃତ ଅସୁବିଧା ଯାହା ଥିଲା, ତାହା ହେଉଚି ରାଜନୈତିକ ଓ ସାମାଜିକ ଦୃଷ୍ଟିରୁ ମୁସ୍‌ଲିମ୍‌ମାନଙ୍କର ଅତିଶୟ ପଛୁଆଭାବ, ଯାହା ସେମାନଙ୍କୁ ପ୍ରତିକ୍ରିୟାଶୀଳ ନେତୃତ୍ୱର ଶିକାର କରିଥିଲା ।

ମହମ୍ମଦ ଆଲି ଜିନ୍ନା ନିଜେ ତାଙ୍କର ଅଧିକାଂଶ ଲିଗ୍ ସହକର୍ମୀମାନଙ୍କଠାରୁ ଅପେକ୍ଷା-କୃତ ଅଗ୍ରଗାମୀ ଥିଲେ । ପ୍ରକୃତପକ୍ଷେ, ସେଥିଭିତରେ ତାଙ୍କର ସମକକ୍ଷ କେହି ନଥିଲା ଏବଂ ସେଥିହେତୁରୁ ଲିଗ୍ ସେ ଭିତରେ ତାଙ୍କର ନେତୃତ୍ୱ ଥିଲା ଅପରିହାର୍ଯ୍ୟ । ସାଧାରଣ ସଭାମାନ-ଙ୍କରେ ମଧ୍ୟ ତାଙ୍କର ସହଯୋଗୀମାନଙ୍କର ସୁବିଧାବାଦ ଓ କେବେ‌କେବେ ସେମାନଙ୍କର ଗୁରୁତର ତ୍ରୁଟିବିଚ୍ୟୁତି ଲାଗି ନିଃସଙ୍କୋଚ ଅସନ୍ତୋଷ ପ୍ରକାଶ କରିଥା’ନ୍ତି । ସେ ଭଲ ଭାବରେ ଜାଣିଥିଲେ ଯେ ମୁସ୍‌ଲିମ୍‌ମାନଙ୍କ ଭିତରେ ଯେଉଁମାନେ ଅଗ୍ରଗାମୀ, ସ୍ୱାର୍ଥତ୍ୟାଗୀ ଓ ସାହସୀ, ସେମାନଙ୍କ ଭିତରୁ ଏକ ବଡ଼ ଅଂଶ କଂଗ୍ରେସରେ ଯୋଗଦେଇ ତା’ର କର୍ମାନୁ-ସରଣ କରୁଚନ୍ତି । ଭାଗ୍ୟ କୁହ କିମ୍ବା ଘଟଣାପ୍ରବାହର ଗତି କୁହ, ସେ ସେମାନଙ୍କ ଭିତରେ ଫିଙ୍ଗି ହୋଇପଡ଼ିଚନ୍ତି, ଯାହାଙ୍କ ପ୍ରତି ସମ୍ମାନବୋଧ ତାଙ୍କର କେବେହେଲେ ନଥିଲା । ସେ

ସେମାନଙ୍କର ନେତା ସତ୍ୟ; କିନ୍ତୁ ସେମାନଙ୍କର ପ୍ରତିକ୍ରିୟାଶୀଳ ମତବାଦରେ ବନ୍ଦୀ ନହେଲେ ସେମାନଙ୍କୁ ଏକାଠି ରଖିବାର ଅନ୍ୟ ଉପାୟ ନଥିଲା । ତେବେ ଏପରି ବନ୍ଦୀ ହେବାପାଇଁ ସେ ଯେ ବିଶେଷ ଅନିଚ୍ଛୁକ ଥିଲେ ନୁହେଁ; କାରଣ ତାଙ୍କର ସମସ୍ତ ବାହ୍ୟ ଆଧୁନିକତା ସତ୍ତ୍ୱେ, ମତବାଦ ଦିଗରୁ ସେ ଥିଲେ ସେହି ପୁରୁଷର ଲୋକ, ଯେଉଁ ପୁରୁଷ ଆଧୁନିକ ରାଜନୈତିକ ବିଗ୍ରହ ଓ ଆଚରଣ ସମ୍ପର୍କରେ ଅଜ୍ଞାତ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଯାହା ଆଜିର ବିଶ୍ୱକୁ ସମ୍ପୂର୍ଣ୍ଣ ଭାବରେ ଆଚ୍ଛନ୍ନ କରିଚି, ସେଇ ଅର୍ଥନୈତିକ ବିଗ୍ରହ ବିଷୟରେ ସେ ସମ୍ପୂର୍ଣ୍ଣ ଅଜ୍ଞ ଥିବା ଭଳି ପ୍ରତୀତ ହେଇଥାଏ । ପ୍ରଥମ ବିଶ୍ୱଯୁଦ୍ଧ ପରେ ସମଗ୍ର ପୃଥିବୀରେ ଯେଉଁସବୁ ଅସାଧାରଣ ଘଟଣାମାନ ଘଟୁଥିଲା, ତା'ର ପ୍ରଭାବ ତାଙ୍କ ଉପରେ ପଡ଼ୁଥିଲା ଭଳି ମନେହୁଏନି । ସେ ସେତେବେଳେ କଂଗ୍ରେସ ଛାଡ଼ିଥିଲେ, ଯେବେ ରାଜନୀତିରେ କଂଗ୍ରେସ ଲମ୍ଫଦେଇ କିଛି ଦୂର ଆଗେଇଗଲା । କଂଗ୍ରେସର ଅର୍ଥନୈତିକ ତଥା ଲୋକାଭିମୁଖୀ ଦୃଷ୍ଟିଭଙ୍ଗୀର ବିକାଶ ସଙ୍ଗେ ଲିଗ୍ ଆଉ କଂଗ୍ରେସ ମଧ୍ୟରେ ବ୍ୟବଧାନ ଆହୁରି ପ୍ରସାରିତ ହେଇପଡ଼ିଲା, କିନ୍ତୁ ମତବାଦ ଦିଗରୁ ଜିନ୍ନା ଠିକ୍ ସେହି ସ୍ଥାନରେ ହିଁ ରହିଗଲେ, ଯେଉଁଠି ଗୋଟାଏ ପୁରୁଷ ପୂର୍ବେ ତାଙ୍କୁ ଦେଖିବାକୁ ମିଳିଥିଲା । ତା'ର ଆହୁରି ପଛକୁ ସେ ଫେରିଯାଇଥିଲେ ବୋଲି କହିଲେ ଚଳିବ; କାରଣ ବର୍ତ୍ତମାନ ସେ ପୂର୍ଣ୍ଣସ୍ୱରରେ ଭାରତର ଏକତା ଓ ଗଣତନ୍ତ୍ର ଉପରେ ନିନ୍ଦା ବର୍ଷଣ କରିବାରେ ଲାଗିଥିଲେ । "ପାଶ୍ଚାତ୍ୟ ଗଣତନ୍ତ୍ରର ଅର୍ଥହୀନ ଧାରଣା ଉପରେ ପ୍ରତିଷ୍ଠିତ କୌଣସି ସରକାର ତଳେ ସେମାନେ ରହିବେ ନାହିଁ ।" ସେ କହିଚନ୍ତି । ଦୀର୍ଘକାଳ ଧରି ଯେଉଁ ଧାରଣାର ବଶବର୍ତ୍ତୀ ହେଇ ସେ ରହିଲେ ତାହା ଯେ ନିରର୍ଥକ, ଉପଲବ୍ଧି କରିବାପାଇଁ ତାଙ୍କୁ ଦୀର୍ଘକାଳ ଲାଗିଗଲା ।

ମୁସ୍‌ଲିମ୍ ଲିଗ୍ ଭିତରେ ଜନାବ ଜିନ୍ନା ଜଣେ ନିଃସଙ୍ଗ ବ୍ୟକ୍ତି । ନିଜର ଘନିଷ୍ଠ ସହକର୍ମୀମାନଙ୍କଠାରୁ ମଧ୍ୟ ସେ ବିଚ୍ଛିନ୍ନ ରହନ୍ତି । ବିସ୍ତୃତ ଭାବରେ ହେଲେ ସୁଦ୍ଧା ଏକ-ପ୍ରକାର ବ୍ୟବଧାନ ରଖି ସେ ସମ୍ମାନ ଗ୍ରହଣ କରିଥାନ୍ତି ଏବଂ ଲୋକେ ତାଙ୍କୁ ଯେତିକି ସୁଖ ପାଆନ୍ତି, ତା'ଠାରୁ ଅଧିକ ହୁଏତ ଭୟ କରନ୍ତି । ଜଣେ ରାଜନୀତିଜ୍ଞ ଭାବରେ ତାଙ୍କର ସାମର୍ଥ୍ୟ ସମ୍ପର୍କରେ ସନ୍ଦେହ କରିବାର କିଛି ନାହିଁ; କିନ୍ତୁ କିପରି ଭାବରେ କେଜାଣି, ସେହି ସାମର୍ଥ୍ୟ ଆଜି ଭାରତରେ ବ୍ରିଟିଶ ଶାସନର ବିଚିତ୍ର ଅବସ୍ଥା ସଙ୍ଗେ ଗୁନ୍ଥି ହେଇଯାଇଚି । ଜଣେ ଆଇନଜୀବୀ ରାଜନୀତିଜ୍ଞ ଭାବରେ, ଜଣେ ସୁଦକ୍ଷ ବ୍ୟବସ୍ଥାପକ ଭାବରେ ଏବଂ ଜାତୀୟତା-ବାଦୀ ଭାରତ ଓ ବ୍ରିଟିଶ-ଶକ୍ତି ମଧ୍ୟରେ ସେ ଭାରସାମ୍ୟ ରକ୍ଷା କରିପାରିଚନ୍ତି ବୋଲି ମନେ-କରୁଥିବା ଜଣେ ବ୍ୟକ୍ତି ଭାବରେ ସେ ସୁପରିଚିତ । ଅବସ୍ଥା ଯଦି ଭିନ୍ନ ରକମର ହୋଇଥାନ୍ତା ଏବଂ ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ପ୍ରକୃତ ସମସ୍ୟାମାନଙ୍କର ସମ୍ମୁଖୀନ ହେବାକୁ ଯଦି ତାଙ୍କୁ ପଡ଼ିଥାନ୍ତା, ତାଙ୍କର ସାମର୍ଥ୍ୟ କେତେ ଦୂର ପର୍ଯ୍ୟନ୍ତ ତାଙ୍କୁ ତିଷ୍ଠିବାର ସୁଯୋଗ ଦିଅନ୍ତା କହିବା କଠିନ । ନିଜ ସମ୍ପର୍କରେ ତାଙ୍କର ଧାରଣା କିଛି ନ୍ୟୂନ ନହେଲେ ସୁଦ୍ଧା, ଅନ୍ୟ ପ୍ରକାର ପରିସ୍ଥିତିରେ ସେ ନିଜକୁ କିପରି ଭାବରେ ଚଳାଇ ନେଇ ପାରନ୍ତେ, ସେ ବିଷୟରେ ସେ ନିଜେ ହୁଏତ ସନ୍ଦିହାନ । ଏହା ହେଇପାରେ ପରିବର୍ତ୍ତନ ବିରୁଦ୍ଧରେ

ତାଙ୍କର ମଗ୍ନଚେତନଗତ ସେହି ଆବେଗର ଏକ ବ୍ୟାଖ୍ୟା ଯେଉଁ ଆବେଗ ସ୍ଥିତାବସ୍ଥା ଚାହେଁ ଏବଂ ତାଙ୍କ ସଙ୍ଗେ ଯେଉଁମାନେ ସମ୍ପୂର୍ଣ୍ଣ ଏକମତ ନୁହନ୍ତି, ସେଭଳି ଲୋକଙ୍କ ସଙ୍ଗେ ଶାନ୍ତ ମସ୍ତିଷ୍କରେ ବିଭିନ୍ନ ସମସ୍ୟାର ବିଚାର ଆଲୋଚନା ଏଡ଼ାଇବାକୁ ଚାହେଁ । ବର୍ତ୍ତମାନର ଏହି ବ୍ୟବସ୍ଥା ସଙ୍ଗେ ତାଙ୍କର ସଂଯୋଗ ମଣି-କାଞ୍ଚନ ଭଳି । ଏକ ନୂତନ ବ୍ୟବସ୍ଥା ପାଇଁ ସେ କିମ୍ବା ଅନ୍ୟ କେହି ଉପଯୁକ୍ତ ହୋଇପାରିବେ କି ନାହିଁ କହିବା କଠିନ । କି ଆବେଗ ତାଙ୍କୁ ଚାଳିତ କରୁଚି, କି ଲକ୍ଷ୍ୟ ପାଇଁ ସେ ଧାଇଁଚନ୍ତି ? କିମ୍ବା ଏପରି ହୋଇପାରେ କି ଯେ ତାଙ୍କର କୌଣସି ବିଷୟ ପ୍ରତି ସେପରି ଉତ୍କଣ୍ଠା ନାହିଁ ? ହୁଏତ ଏପରି ବି ହୋଇ-ପାରେ ଯେ ଗୋଟାଏ ମୁଗ୍ଧକର ରାଜନୈତିକ ଚେସ୍ ଖେଳରେ ରଜା ଗୋଟି 'ଅଟକିଲି' ବୋଲି ବାରମ୍ବାର କହିବାର ସୁଯୋଗରୁ ପାଇବା ଆମୋଦ ବ୍ୟତୀତ କୌଣସି ଗଭୀର ଉଦ୍ଦେଶ୍ୟ ତାଙ୍କର କିଛି ନାହିଁ । ତାଙ୍କର କାର୍ଯ୍ୟକଳାପରୁ ମନେହୁଏ, କଂଗ୍ରେସ ପ୍ରତି ସେ ଘୃଣାଭାବ ପୋଷଣ କରନ୍ତି ଏବଂ ବର୍ଷ ପରେ ବର୍ଷ ଅତିବାହିତ ହେବା ସଙ୍ଗେ ତାହା ବୃଦ୍ଧିଲାଭ କରିଚି । ଯାହା ସବୁ ଘୃଣା କରନ୍ତି ସେସବୁ ତ ସ୍ପଷ୍ଟ ଜଣାଗଲା; କିନ୍ତୁ ସେ ପସନ୍ଦ କରନ୍ତି କଅଣ ? ତାଙ୍କର ସମସ୍ତ ଶକ୍ତି ଓ କ୍ରନ୍ଦଖୋର ମନୋଭାବ ସତ୍ତ୍ୱେ ସେ ଏକ ବିଶିଷ୍ଟ ନେତିବାଚକ ବ୍ୟକ୍ତି ଯାହାର ଉପଯୁକ୍ତ ପ୍ରତୀକ ହେବ 'ନାସ୍ତି' । ଅତଏବ, ତାଙ୍କର ଅସ୍ତିବାଚକ ବିଶ୍ୱାସ ବିଷୟରେ ଜାଣିବାର ସବୁ ଉଦ୍ୟମ ବିଫଳ ହୁଏ ଏବଂ ସେହି ଉଦ୍ୟ-ମରେ ସଫଳ ହେବା ଭରସା କାହାର ନାହିଁ ।

ଭାରତରେ ବ୍ରିଟିଶ ଶାସନ ଜାରି ହେବା କାଳରୁ ମୁସଲମାନମାନଙ୍କ ଭିତରୁ ଆଧୁନିକ ରୁଚିବନ୍ତ ମୁଷ୍ଟିମେୟ ସୁବିଦିତ ବ୍ୟକ୍ତି କେବଳ ବାହାରିପାରିଚନ୍ତି । ସେମାନଙ୍କ ଭିତରୁ କେତେକ ବିଚକ୍ଷଣ ବ୍ୟକ୍ତି ଯଦିଓ ବାହାରିଚନ୍ତି ସେମାନେ ସର୍ବଦା ପୁରାତନ ସଂସ୍କୃତି ଓ ପରମ୍ପରାର ନିମ ବିରାଦର ବଜାୟ ରଖିବା ଚାହିଁଚନ୍ତି ଏବଂ ଆଧୁନିକ ଦୁନିଆ ସଙ୍ଗେ ସହଜରେ ସଙ୍ଗତି ରକ୍ଷା କରିପାରି ନାହାନ୍ତି । ପରିବର୍ତ୍ତିତ ସମୟ ସଙ୍ଗେ ପାଦ ମିଳାଇ ଚାଲିବା ଏବଂ ଗୋଟାଏ ନୂତନ ପରିବେଷ୍ଟନୀ ସଙ୍ଗେ, ସଂସ୍କୃତି ଦିଗରୁ ତଥା ଅନ୍ୟାନ୍ୟ ଦିଗରୁ, ଖାପଖୁଆଇ ଚଳିବା ଦିଗରେ ଏହି ଅସାମର୍ଥ୍ୟ ଅବଶ୍ୟ କୌଣସି ସହଜାତ ଦୁର୍ବଳତା ଯୋଗୁ ନୁହେଁ । କେତେକ ଐତିହାସିକ କାରଣରୁ, ଗୋଟାଏ ନୂତନ ଔଦ୍ୟୋଗିକ ମଧ୍ୟବିତ୍ତଶ୍ରେଣୀର ବିକାଶରେ ବିଳମ୍ବ ହେତୁରୁ ଏବଂ ମୁସଲମାନମାନଙ୍କ ଅତିଶୟ ସାମନ୍ତବାଦୀ ପୃଷ୍ଠଭୂମି ଯାହା ବିକାଶର ସମସ୍ତ ପଥ ରୁନ୍ଧିକଲା ଓ ପ୍ରତିଭାର ମୁକ୍ତି ନିରୋଧିତ କଲା, ସେଥିହେତୁରୁ ଏହାର ସୃଷ୍ଟି । ବଙ୍ଗରେ ମୁସଲମାନମାନଙ୍କର ଅନଗ୍ରସତା ବିଶେଷ ଭାବରେ ପରିଲକ୍ଷିତ ହୋଇଥିଲା । ସ୍ପଷ୍ଟତଃ ଏହାର ଦୁଇଗୋଟି କାରଣ ମଧ୍ୟରୁ ଗୋଟିଏ ହେଉଚି ବ୍ରିଟିଶ-ଶାସନର ପ୍ରଥମା-ବସ୍ଥାରେ ସେମାନଙ୍କ ଉଚ୍ଚବର୍ଗର ବିନାଶସାଧନ ଏବଂ ଦ୍ୱିତୀୟଟି ହେଲା ଯେ ସେମାନଙ୍କ ଭିତରୁ ଅଧିକାଂଶ ନିମ୍ନଶ୍ରେଣୀର ହିନ୍ଦୁଙ୍କ ଭିତରୁ ଧର୍ମାନ୍ତରିତ ହୋଇଥିଲେ । ଏହି ହିନ୍ଦୁମାନଙ୍କୁ ଯୁଗ-ଯୁଗଧରି ଉନ୍ନତି ଓ ପ୍ରଗତିର ସମସ୍ତ ସୁଯୋଗରୁ ବଞ୍ଚିତ କରାଯାଇଥିଲା । ଉତ୍ତର-ଭାରତରେ ସଂସ୍କୃତିସମ୍ପନ୍ନ ଉଚ୍ଚବର୍ଗର ମୁସଲମାନମାନେ ସେମାନଙ୍କର ପୁରାତନ

ପରମ୍ପରା ଓ ପୁରାତନ ଜମିଜମା ବ୍ୟବସ୍ଥା ସଙ୍ଗେ ବନ୍ଧା ହୋଇ ରହିଥିଲେ । ମାତ୍ର କେତେ- ବର୍ଷ ହେଲା ଲକ୍ଷଣୀୟ ପରିବର୍ତ୍ତନ ଦୃଷ୍ଟିଗୋଚର ହେଉଛି ଏବଂ ଭାରତୀୟ ମୁସଲମାନମାନଙ୍କ ଭିତରେ ଏକ ନୂତନ ମଧ୍ୟବିତ୍ତଶ୍ରେଣୀ ଦ୍ରୁତ ବିକାଶ ଲାଭ କରୁଛି; ତଥାପି, ବିଜ୍ଞାନ ଓ ଶିଳ୍ପ କ୍ଷେତ୍ରରେ ସେମାନେ ହିନ୍ଦୁ ଓ ଅନ୍ୟମାନଙ୍କଠାରୁ ଏବେ ବି ବହୁତ ପଛରେ ପଡ଼ିଛନ୍ତି । ହିନ୍ଦୁମାନେ ବି କମ୍ ଅନଗ୍ରସର ନୁହନ୍ତି । ବେଳେବେଳେ ମୁସ୍‌ଲିମ୍‌ମାନଙ୍କ ଅପେକ୍ଷା ବିଚାର ଓ ଆଚରଣରେ ସେମାନେ ଅଧିକତର ଅତୀତ ଅଭ୍ୟାସ ଓ ପାରମ୍ପରିକ ରୀତିନୀତିର ଆଶ୍ରିତ ମନେହେଉଥାନ୍ତି । ତଥାପି ସୁଦ୍ଧା ସେମାନଙ୍କ ଭିତରୁ ବିଜ୍ଞାନ, ଶିଳ୍ପ ଓ ଅନ୍ୟାନ୍ୟ କ୍ଷେତ୍ରରେ ବହୁ ବିଖ୍ୟାତ ବ୍ୟକ୍ତି ବାହାରିପାରିଛନ୍ତି । କ୍ଷୁଦ୍ର ପାର୍ସି ସମ୍ପ୍ରଦାୟ ମଧ୍ୟ ଆଧୁନିକ ଶିଳ୍ପକ୍ଷେତ୍ର ନିମନ୍ତେ କେତେକ ବିଖ୍ୟାତ ବ୍ୟକ୍ତିତ୍ୱ ଦାନ କରିଛି । ବଡ଼ ମଜାର କଥା ଯେ ଜିନ୍ନା ପରିବାର ପ୍ରଥମେ ହିନ୍ଦୁ ଥିଲେ ।

ହିନ୍ଦୁ ଓ ମୁସଲମାନ୍ ଉଭୟ ସମ୍ପ୍ରଦାୟ ଭିତରୁ ବହୁ ପ୍ରତିଭା ଓ ସାମର୍ଥ୍ୟ ଅତୀତରେ ସରକାରୀ କର୍ମରେ ନିୟୋଜିତ ହୋଇଛି; କାରଣ ସେତେବେଳେ ସେଇ ଗୋଟିକ ଦିଗ ହିଁ ଆକର୍ଷକ ଓ ମୁକ୍ତ ଥିଲା । ରାଜନୈତିକ ମୁକ୍ତି ଆନ୍ଦୋଳନର ଅଭିବୃଦ୍ଧି ସଙ୍ଗେ ସେହି ଆକର୍ଷଣ କମିଆସିଲା ଏବଂ ସମର୍ଥ, ଆଗ୍ରହବାନ୍ ତଥା ସାହସିକ ବ୍ୟକ୍ତିମାନେ କଂଗ୍ରେସ ଭିତରକୁ ଟାଣିହୋଇ ଆସିଲେ । ଏପରି ଭାବରେ ମୁସ୍‌ଲିମ୍‌ମାନଙ୍କ ଭିତରୁ ବହୁ ଶ୍ରେଷ୍ଠ ବିବେଚକ ବ୍ୟକ୍ତି କଂଗ୍ରେସରେ ଯୋଗଦେଲେ । ଅଧୁନାତନ କାଳରେ ମୁସ୍‌ଲିମ୍ ଯୁବକମାନେ ସୋସାଲିଷ୍ଟ ଓ କମ୍ୟୁନିଷ୍ଟ ପାର୍ଟିରେ ମଧ୍ୟ ଯୋଗଦେଇଛନ୍ତି । ଏ ସମସ୍ତ ଉତ୍ସୁକ ତଥା ପ୍ରଗତିଶୀଳ ବ୍ୟକ୍ତିଙ୍କ ବ୍ୟତୀତ ନେତୃତ୍ୱର ଉତ୍କର୍ଷ ଦିଗରୁ ଦେଖିଲେ, ମୁସ୍‌ଲିମ୍‌ମାନେ ଥିଲେ ଖୁବ୍ ଦରିଦ୍ର ଏବଂ ଅଗ୍ରଗତି ନିମନ୍ତେ ସରକାରୀ କର୍ମ ଲାଗି କେବଳ ଇଚ୍ଛୁକ ଥିଲେ । ଜିନ୍ନା କିନ୍ତୁ ଥିଲେ ଭିନ୍ନ ଧରଣର ଲୋକ । ସେ ସମର୍ଥ ଥିଲେ, ଜିଦ୍‌ଖୋର ଥିଲେ ଏବଂ ଅନ୍ୟ ବହୁ ଲୋକଙ୍କ ପାଖରେ ପଦବୀର ଯେଉଁ ଦୁର୍ବଳତା ପ୍ରକାଶ ପାଉଥିଲା, ତାହା ତାଙ୍କର ନଥିଲା । ଅତଏବ, ମୁସ୍‌ଲିମ୍ ଲିଗ୍ ଭିତରେ ତାଙ୍କର ସ୍ଥାନ ଥିଲା ଅଦ୍ୱିତୀୟ ଏବଂ ସେ ଯେଉଁ ସମ୍ମାନର ଅଧିକାରୀ ଥିଲେ, ତାହା ଲିଗ୍‌ର ବହୁ ବିଶିଷ୍ଟ ଲୋକଙ୍କ ଭାଗ୍ୟରେ ଘଟି ନଥିଲା । ଦୁର୍ଭାଗ୍ୟର କଥା, ତାଙ୍କର ଏକଜିଦିଆ ମନୋଭାବ ଯୋଗୁଁ କୌଣସି ନୂତନ ବିଚାର ପ୍ରତି ତାଙ୍କର ମନ ଖୋଲି ରହିପାରୁ ନଥିଲା ଏବଂ ନିଜ ସଂଗଠନ ଉପରେ ତାଙ୍କର ଅଖଣ୍ଡ କର୍ତ୍ତୃତ୍ୱ ତାଙ୍କୁ ନିଜ ଦଳର ଭିନ୍ନମତାବଲମ୍ବୀଙ୍କ ପ୍ରତି ଓ ଅନ୍ୟ ସଂଗଠନମାନଙ୍କ ପ୍ରତି ଅସହିଷ୍ଣୁ କରି ତୋଳିଥିଲା । ମୁସ୍‌ଲିମ୍ ଲିଗ୍ କହିଲେ ମହମ୍ମଦ ଆଲି ଜିନ୍ନା । କିନ୍ତୁ ଗୋଟାଏ ପ୍ରଶ୍ନ ସ୍ୱତଃ ଉଠୁଛି ଯେ ଲିଗ୍ ଯେବେ ଗୋଟାଏ ଗଣସଂଗଠନରେ ରୂପାନ୍ତରିତ ହୋଇଉଠୁଛି, କେଉଁ ମାନଧାତା ଅମଳର ଭାବଧାରା ଦେଇ ଏହି ସାମନ୍ତବାଦୀ ନେତୃତ୍ୱ କେତେ କାଳ ରହିପାରିବ ?

କଂଗ୍ରେସର ସଭାପତି ଥିବା କାଳରେ ବହୁ ଅବସରରେ ମୁଁ ଜିନ୍ନାଙ୍କ ପାଖକୁ ଲେଖିଛି ଓ ତାଙ୍କୁ ଅନୁରୋଧ କରିଛି ଯେ ସେ ଠିକ୍ ଭାବରେ କହନ୍ତୁ କି ଆମେ କ'ଣ

କରିବା ସେ ଚାହାନ୍ତିନ । ମୁଁ ପଚାରିଥିଲି ସେ ଲିଗ୍ ଚାହେଁ କ'ଣ ଓ ତା'ର ନିର୍ଦ୍ଦିଷ୍ଟ ଲକ୍ଷ୍ୟ କ'ଣ ? ମୁଁ ଆହୁରି ଜାଣିବାକୁ ଚାହିଁଥିଲି ଯେ କଂଗ୍ରେସ ସରକାରଙ୍କ ବିରୁଦ୍ଧରେ ଲିଗ୍‌ର କି କି ଅଭିଯୋଗ ରହିଛି ? ମୋର ଉଦ୍ଦେଶ୍ୟ ଥିଲା ଯେ ଚିଠିପତ୍ର ଦିଆନିଆ ଭିତରେ, ଯେଉଁଠି ଯେଉଁଠି ଆମ ମନରେ ସନ୍ଦେହ ଉପୁଜୁଛି ତାହା ସ୍ପଷ୍ଟ ହୋଇଯିବ ଏବଂ ତାହା ପରେ ସେଥିରୁ ଉପୁଜିଥିବା ଗୁରୁତ୍ୱପୂର୍ଣ୍ଣ ବିବେଚ୍ୟ ବିଷୟଗୁଡ଼ିକ ଉପରେ ବ୍ୟକ୍ତିଗତ ଭାବରେ ଆଲୋଚନା କରାଯାଇପାରିବ । ଶ୍ରୀଯୁକ୍ତ ଜିନ୍ନା ଉତ୍ତର ଦେବାକୁ ଯାଇ ଦୀର୍ଘ ପତ୍ରମାନ ଲେଖିଚନ୍ତି; କିନ୍ତୁ ମୁଁ ଯାହା ତାଙ୍କଠାରୁ ବୁଝିବାକୁ ଚାହୁଁଥିଲି, ତା'ର ଉତ୍ତର ମିଳିନି । ନିର୍ଦ୍ଦିଷ୍ଟ ଭାବରେ ସେ କ'ଣ ଚାହାଁନ୍ତି କିମ୍ବା ଲିଗ୍‌ର ଅଭିଯୋଗଗୁଡ଼ିକ କ'ଣ ସେ ମତେ କିମ୍ବା ଅନ୍ୟ କାହାକୁ କହିବା କିପରି ଏଡାଇ ପାରିଲେ ଆଶ୍ଚର୍ଯ୍ୟର କଥା । ବାରମ୍ବାର ଆମ ଭିତରେ ପତ୍ର ବିନିମୟ ହୋଇଛି, ତଥାପି ପୁଣି ସର୍ବଦା ସେହି ଅସ୍ପଷ୍ଟତା ଓ ଅପୂର୍ଣ୍ଣତା ବ୍ୟତୀତ ନିର୍ଦ୍ଦିଷ୍ଟ କିଛି ମୁଁ ତାଙ୍କର ପତ୍ରଗୁଡ଼ିକରୁ ପାଇପାରିନି । ଏଥିରେ ମୁଁ ଖୁବ୍ ବିସ୍ମିତ ହେଲି କେବଳ ନୁହେଁ, ଟିକିଏ ଅସହାୟ ବି ମନେକଲି । ମନେହେଲା, ଶ୍ରୀଯୁକ୍ତ ଜିନ୍ନା କୌଣସି ଭାବରେ ହେଲେ ତାଙ୍କର ବିଚାର ବ୍ୟକ୍ତ କରିବାକୁ ଚାହାନ୍ତିନି ଏବଂ କୌଣସି ସମାଧାନ ପାଇଁ ସେ ମୋଟେ ଆତୁର ନୁହନ୍ତି ।

ପରେ ପରେ ଗାନ୍ଧିଜୀ ଓ ଆମ ଭିତରୁ କେହି କେହି ଜିନ୍ନାଙ୍କ ସଙ୍ଗେ ବହୁବାର ସାକ୍ଷାତ୍ କରିଚନ୍ତି । ସେମାନେ ଘଣ୍ଟା-ଘଣ୍ଟାଧରି କଥା ହେଲେ ପୁଣି ଗୋଟାଏ ପ୍ରାଥମିକ ଅବସ୍ଥାରୁ କେବେହେଲେ ଅଗେଇ ପାରି ନାହାନ୍ତି । ଆମ ପ୍ରସ୍ତାବ ଥିଲା ଯେ କଂଗ୍ରେସ ଓ ଲିଗ୍‌ର ପ୍ରତିନିଧିମାନେ ଏକତ୍ର ହୁଅନ୍ତୁ ଏବଂ ସେମାନଙ୍କର ସମସ୍ତ ପାରସ୍ପରିକ ସମସ୍ୟା ଉପରେ ଆଲୋଚନା କରନ୍ତୁ । ଜିନ୍ନା କହିଲେ ଯେ ଆମେ ମୁସ୍‌ଲିମ୍ ଲିଗ୍‌କୁ ଭାରତୀୟ ମୁସଲମାନମାନଙ୍କର ଏକମାତ୍ର ପ୍ରତିନିଧିମୂଳକ ସଂଗଠନ ବୋଲି ସର୍ବସାଧାରଣରେ ସ୍ୱୀକାର କଲା ପରେ କେବଳ ସେ ପ୍ରକାର ଆଲୋଚନା ସମ୍ଭବ । ଆମେ ଅବଶ୍ୟ ଲିଗ୍‌ର ଗୁରୁତ୍ୱ ସ୍ୱୀକାର କରୁଥିଲୁ ଓ ସେଥି ହେତୁରୁ କେବଳ ତା'ର ସଙ୍ଗେ ଆଲୋଚନା କରିବାର ପ୍ରସ୍ତାବ ଦେଇଥିଲୁ; କିନ୍ତୁ ଦେଶର ଅନ୍ୟାନ୍ୟ ମୁସ୍‌ଲିମ ସଂଗଠନଗୁଡ଼ିକୁ, ଯେଉଁ ଭିତରୁ କେତେକ ଆମ ସଙ୍ଗେ ଘନିଷ୍ଠ ସହଯୋଗ ରକ୍ଷାକରୁଥିଲେ, ଆମେ ଉପେକ୍ଷା କରନ୍ତୁ କିପରି ? ଆହୁରି ମଧ୍ୟ କଂଗ୍ରେସ ଭିତରେ ବହୁ ସଂଖ୍ୟକ ମୁସଲମାନ ଥିଲେ ଏବଂ ଆମର ଉଚ୍ଚତମ କାର୍ଯ୍ୟ-ନିର୍ବାହିକା ମଣ୍ଡଳଗୁଡ଼ିକରେ ସେମାନେ ସ୍ଥାନ ପାଇଥିଲେ । ଜିନ୍ନାଙ୍କ ଦାବୀକୁ ମାନିନେବା ଅର୍ଥ କଂଗ୍ରେସ ଭିତରୁ ଆମର ପୁରାତନ ମୁସ୍‌ଲିମ୍ ଲିଗ୍ ସହଯୋଗୀମାନଙ୍କୁ ବିତାଡ଼ିତ କରିବା ଆଉ କଂଗ୍ରେସରେ ମୁସଲମାନମାନଙ୍କ ପାଇଁ ସ୍ଥାନ ଯେ ନାହିଁ ଏକଥା ସର୍ବସମକ୍ଷରେ ଘୋଷଣା କରିବା । ଏହା ଫଳରେ କଂଗ୍ରେସର ମୌଳିକ ଚରିତ୍ର ବଦଳିଯିବ ଏବଂ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଗୋଟାଏ ଜାତୀୟ ସଂଗଠନ ଏକ ସାମ୍ପ୍ରଦାୟିକ ସଂସ୍ଥାରେ ପର୍ଯ୍ୟ-ବସିତ ହେବ । ଆମ ପକ୍ଷରେ ତାହା ଥିଲା ଧାରଣାତୀତ । କଂଗ୍ରେସ ଯଦି ନଥାନ୍ତା ପ୍ରତ୍ୟେକ ଭାରତୀୟ ନିମନ୍ତେ ଉନ୍ମୁକ୍ତ ଏକ ନୂତନ ଜାତୀୟ ସଂଗଠନ ଆମକୁ ଗଢ଼ିବାକୁ ପଡ଼ନ୍ତା ।

ଜିନ୍ନା ଯାହିଁକି ଏକଥା ଗଣ୍ଡି କରି ଧରିଚନ୍ତି ଓ ଅନ୍ୟାନ୍ୟ ବିଷୟରେ ଆଲୋଚନା କରିବା ପାଇଁ କାହିଁକି ରାଜି ହେଉ ନାହାନ୍ତି, ଆମେ ବୁଝିପାରିନଥିଲୁ । ପୁନର୍ବାର ଆମେ ଏତିକି କେବଳ ବୁଝିବାକୁ ପାଇଲୁ ଯେ ସେ କୌଣସି ମୀମାଂସା ଚାହୁଁନାହାନ୍ତି କିମ୍ବା କୌଣସି ଭାବରେ ହେଲେ ନିଜର ଅଙ୍ଗୀକାର ଦେବାକୁ ପ୍ରସ୍ତୁତ ନୁହନ୍ତି । ସବୁ ବିଷୟ ଅମୀମାଂସିତ ରଖିବାରେ ସେ ସନ୍ତୁଷ୍ଟ ଥିଲେ ଏବଂ ସେ ଆଶା କରୁଥିଲେ ଯେ ଏପରି ଭାବରେ କଥା ଗଡ଼ାଇନେଲେ ସେ ବ୍ରିଟିଶ ସରକାରଙ୍କ ପାଖରୁ କିଛି ଅଧିକ ଫାଇଦା ହାସଲ କରିପାରିବେ ।

ଜିନ୍ନାଙ୍କର ଦାବୀ ଭିତ୍ତି କରିଥିଲା ଏକ ନୂତନ ସିଦ୍ଧାନ୍ତ ଉପରେ ଯାହା ଅଧୁନା ସେ ପ୍ରଚାର କରିବା ଆରମ୍ଭ କରି ଦେଇଥିଲେ । ତାହା ହେଉଚି, ଭାରତରେ ଦୁଇଟି ଜାତି ଅଛନ୍ତି : ହିନ୍ଦୁ ଓ ମୁସଲମାନ । ଦୁଇଟି ଜାତି କେବଳ ବୋଲି ଜିନ୍ନା କାହିଁକି କହୁଥିଲେ ମୁଁ ବୁଝିପାରୁ ନଥିଲି; କାରଣ ଜାତୀୟତା ଯଦି ଧର୍ମ ଉପରେ ଭିତ୍ତି କରେ, ତାହାହେଲେ ଭାରତକୁ ବହୁ ଜାତିର ଦେଶ କୁହାଯାଇପାରିବ । ଦୁଇ ଭାଇ ଭିତରୁ ଜଣେ ହିନ୍ଦୁ ତ ଅନ୍ୟ ଜଣକ ମୁସଲମାନ ହେଇପାରେ । ସେମାନେ ହେବେ ଦୁଇଟି ଜାତି । ଏହି ଦୁଇ ଜାତି କିଏ କେଉଁଠି କମ୍ ବହୁତ ସଂଖ୍ୟାରେ ଭାରତର ଅଧିକାଂଶ ଗ୍ରାମରେ ପୂରିରହିଚନ୍ତି । ସେମାନଙ୍କ ଭିତରେ ସୀମାରେଖା ନାହିଁ । ଜଣେ ଜଣକୁ ଆବୃତ କରି ରହିଚି । ବଙ୍ଗ-ଭାଷାଭାଷୀ ହିନ୍ଦୁ ଓ ମୁସଲମାନ ଏକାଠି ରହିଚନ୍ତି, ଏକା ଭାଷା କହୁଚନ୍ତି, ଉଭୟର ପ୍ରଥା ଓ ପରମ୍ପରା ପ୍ରାୟ ସମାନ; ଅଥଚ ସେମାନେ ହେବେ ଦୁଇଟା ଜାତି ! ଏସବୁ ଥିଲା ଆମର ବୋଧର ଅଗମ୍ୟ ଏବଂ ମନେହେଉଥିଲା ଏପରି କରିବା ଦ୍ୱାରା ଆମେ ପୁଣି କେଉଁ ମଧ୍ୟ-ଯୁଗୀୟ ଜୀବନକୁ ଫେରିଯାଉଚୁ । ଗୋଟାଏ ଜାତି କ'ଣ ତା'ର ସଂଜ୍ଞା ନିରୂପଣ କରିବା କଷ୍ଟକର ? ସମ୍ଭବତଃ ଜାତୀୟ ଚେତନାର ଅତ୍ୟାବଶ୍ୟକୀୟ ଚାରିତ୍ରିକତା ହେଉଚି ଗୋଟାଏ ଐକ୍ୟବୋଧ ଓ ମିଳିତ ଭାବରେ ଅବଶିଷ୍ଟ ମାନବଜାତିର ସମ୍ମୁଖୀନ ହେବାର ମମତ୍ୱ-ବୋଧ । ଭାରତରେ ଏହା କେତେ ପରିମାଣରେ ରହିଚି, ସେଥି ଉପରେ ବିତର୍କ ହୋଇ-ପାରେ । ଏକଥା ବି କୁହାଯାଇପାରେ ଯେ ଅତୀତରେ ଭାରତ ଏକ ବହୁଜାତିସମ୍ବଳିତ ଦେଶ ଭାବରେ ବିକାଶ ଲାଭ କଲା ଓ କ୍ରମଶଃ ଏକ ଜାତୀୟଚେତନା ପ୍ରାପ୍ତ ହେଲା; କିନ୍ତୁ ଏସବୁ ତାତ୍ତ୍ୱିକ ବିମୂର୍ତ୍ତନ କେବଳ, ଯାହାର ଜଞ୍ଜାଳରେ ଜଡ଼ିତ ହେବାର ଆବଶ୍ୟକତା ଆମର ନାହିଁ । ପୃଥିବୀର ଯେଉଁ ଦେଶଗୁଡ଼ିକ ଆଜି ପ୍ରଭୂତ ପରାକ୍ରମଶାଳୀ, ସେଗୁଡ଼ିକ ବହୁଜାତିକ; କିନ୍ତୁ ସଙ୍ଗେ ସଙ୍ଗେ ସେସବୁ ଦେଶରେ, ଯୁକ୍ତରାଷ୍ଟ୍ର ଆମେରିକା ଓ ସୋଭିଏତ୍ ୟୁନିୟନ୍ ଭଳି, ଏକ ଜାତୀୟ ଚେତନା ସମସ୍ତଙ୍କ ପ୍ରାଣରେ ବିକଶିଉଠିଚି ।

ଜିନ୍ନାଙ୍କ 'ଦୁଇଜାତି'-ତତ୍ତ୍ୱ ପାକିସ୍ତାନ ଧାରଣାକୁ ବିକଶିତ କଲା; ଅର୍ଥାତ୍ ଭାରତକୁ ଭାରତ ଓ ପାକିସ୍ତାନ କରି ବିଭକ୍ତ କରିବା ପ୍ରଶ୍ନ ଉଠିଲା । ଏହି ତତ୍ତ୍ୱ ଅବଶ୍ୟ 'ଦୁଇ ଜାତି'ର ସମସ୍ୟା ସମାଧାନ କରିପାରୁ ନଥିଲା; କାରଣ ଭାରତର ସର୍ବତ୍ର ଏମାନେ ପୂରିରହିଥିଲେ । କିନ୍ତୁ ତାହା ଗୋଟାଏ ଆଧିଭୌତିକ ଧାରଣାକୁ ଆଧାର ଯୋଗାଇଲା । ଏଥି ହେତୁରୁ ଭାରତର

ଏକତା ସପକ୍ଷରେ ଯେଉଁମାନେ ଥିଲେ, ସେମାନଙ୍କ ଭିତରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି ହେଲା । ସାଧାରଣତଃ ଜାତୀୟ ଏକତା ଉପରେ କାହା ମନରେ ପ୍ରଶ୍ନ ଉଠି ନଥିଲା । ତାକୁ ଅନ୍ୟଥା କରିବା କିମ୍ବା ସେଥି ଉପରେ ଆକ୍ରମଣ କରିବା କିମ୍ବା ସେହି ଏକତାକୁ ବିଭେଦ-ଗ୍ରସ୍ତ କରିବା ଉଦ୍ୟମ ଯେବେ ହୁଏ, ଏକତାର ପ୍ରକୃତ ମହତ୍ତ୍ୱ ପ୍ରତିଭାତ ହୁଏ ଏବଂ ତାହା ଅବ୍ୟାହତ ରଖିବା ପାଇଁ ଏକ ନିଶ୍ଚିତ ମନୋବଳ ଜାଗ୍ରତ ହୁଏ । ଏପରି ଭାବରେ, ବେଳେବେଳେ ବିଚ୍ଛିନ୍ନ କରିବାର ଉଦ୍ୟମ ପ୍ରକୃତରେ ସେହି ଏକତାକୁ ଅଧିକତର ସଂହତ କରିବା ଦିଗରେ ସହାୟକ ହୁଏ ।

କଂଗ୍ରେସ ଏବଂ ଅନ୍ୟାନ୍ୟ ଧାର୍ମିକ-ସାମ୍ପ୍ରଦାୟିକ ସଂଗଠନମାନଙ୍କ ଦୃଷ୍ଟିଭଙ୍ଗୀ ଭିତରେ ଏକ ମୌଳିକ ପାର୍ଥକ୍ୟ ରହିଥିଲା । ସାମ୍ପ୍ରଦାୟିକ ସଂଗଠନମାନଙ୍କ ଭିତରେ ପ୍ରଧାନ ଥିଲେ ମୁସଲିମ୍ ଲିଗ୍ ଓ ତା'ର ହିନ୍ଦୁ ପ୍ରତିରୂପ ହିନ୍ଦୁ ମହାସଭା । ଏହିସବୁ ସାମ୍ପ୍ରଦାୟିକ ସଂଗଠନ ତତ୍ତ୍ୱ ଦିଗରୁ ଭାରତର ସ୍ୱାଧୀନତାକାମୀ ଥିଲେ ମଧ୍ୟ, ନିଜ ନିଜ ସମ୍ପ୍ରଦାୟ ପାଇଁ ବିଶେଷ ସ୍ୱାଧିକାର ଓ ସୁରକ୍ଷା ଦାବୀ କରିବାରେ ଅଧିକତର ଆଗ୍ରହୀ ଥିଲେ । ଏ ମାର୍ଗରେ, ଅପରିହାର୍ଯ୍ୟ ଭାବରେ, ସେମାନଙ୍କୁ ଭରସା କରିବାକୁ ପଡ଼ୁଥିଲା ବ୍ରିଟିଶ ସରକାରଙ୍କ ଉପରେ ଏବଂ ସେଥି ହେତୁରୁ ସରକାର ସଙ୍ଗେ ସମସ୍ତ ରକମର ସଂଘର୍ଷ ଏଡ଼ାଇବା ମତଲବରେ ସେମାନେ ରହୁଥିଲେ । ଗୋଟିଏ ଐକ୍ୟବଦ୍ଧ ଜାତି ଭାବରେ ଭାରତର ସ୍ୱାଧୀନତା ସଙ୍ଗେ କଂଗ୍ରେସର ଦୃଷ୍ଟିଭଙ୍ଗୀ ଏଡେଭଳି ଜଡ଼ିତ ଥିଲା ଯେ ଅନ୍ୟ ସବୁକିଛି ତା'ର ଦୃଷ୍ଟିରେ ଥିଲା ଗୌଣ ଏବଂ ଏହାର ଅର୍ଥ ହେଉଚି ବ୍ରିଟିଶ-ଶକ୍ତି ସଙ୍ଗେ ବିସ୍ତୃତ ବିବାଦ ଓ ସଂଘର୍ଷ । ଭାରତୀୟ ଜାତୀୟବାଦ, ଯାହାର ପ୍ରତିନିଧିତ୍ୱ କରିଥିଲା କଂଗ୍ରେସ, ବ୍ରିଟିଶ ସାମ୍ରାଜ୍ୟବାଦର ବିରୋଧ କରୁଥିଲା । ଅଧିକନ୍ତୁ, କଂଗ୍ରେସ କାର୍ଯ୍ୟ, ଅର୍ଥନୈତିକ ଓ ସାମାଜିକ ନିର୍ଦ୍ଦେଶମାନ ଗ୍ରହଣ କରିସାରିଥିଲା । ମୁସ୍‌ଲିମ୍ ଲିଗ୍ କିମ୍ବା ହିନ୍ଦୁ ମହାସଭା ଏ ପ୍ରକାର ପ୍ରଶ୍ନ ବିଷୟରେ ମଧ୍ୟ ନେଇ ନଥିଲେ କିମ୍ବା ସେଥିନିମନ୍ତେ ଗୋଟିଏ ନିର୍ଦ୍ଦେଶ ପ୍ରସ୍ତୁତ କରିବା ଉଦ୍ୟମ ସେମାନଙ୍କ ଦିଗରୁ ହୋଇ ନଥିଲା । ଏ ପ୍ରକାର ବିଷୟମାନଙ୍କରେ ସୋସାଲିଷ୍ଟ ଓ କମ୍ୟୁନିଷ୍ଟମାନେ ଅବଶ୍ୟ ଖୁବ୍ ମନୋନିବେଶ କରିଥିଲେ; ନିଜ ନିଜ ନିର୍ଦ୍ଦେଶ ପ୍ରସ୍ତୁତ କରିଥିଲେ, ଆଉ କଂଗ୍ରେସ ଭିତରେ ଓ ବାହାରେ ସେ ସବୁ ଆଗେଇନେବା ପାଇଁ ସେମାନେ ଉଦ୍ୟମଶୀଳ ଥିଲେ ।

କଂଗ୍ରେସ ଏବଂ ସେହିସବୁ ଧାର୍ମିକ-ସାମ୍ପ୍ରଦାୟିକ ସଂଗଠନମାନଙ୍କ ଭିତରେ ମତରେ ଓ କାର୍ଯ୍ୟରେ ଆହୁରି ଏକ ଲକ୍ଷଣୀୟ ପାର୍ଥକ୍ୟ ରହିଥିଲା । ତା'ର ଆନ୍ଦୋଳନମୂଳକ ତଥା ପାର୍ଲାମେଣ୍ଟାରି କାର୍ଯ୍ୟକଳାପ ବ୍ୟତୀତ କଂଗ୍ରେସ ଜନସାଧାରଣଙ୍କ ଭିତରେ କେତେକ ରଚନାତ୍ମକ କାର୍ଯ୍ୟକ୍ରମ ଉପରେ ବିଶେଷ ଜୋର୍ ଦେଉଥିଲା । ଗ୍ରାମୋଦ୍ୟୋଗ ସଙ୍ଗଠନ ଓ ଉନ୍ନୟନ, ଦଳିତ ଜାତିମାନଙ୍କ ଉନ୍ନତିବିଧାନ ଏବଂ ପରେ ମୌଳିକ ଶିକ୍ଷାର ପ୍ରସାର ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା । ଗ୍ରାମାଞ୍ଚଳର କର୍ମଯୋଜନାରେ ସାମିଲ ଥିଲା ପରିଚ୍ଛନ୍ନତା ଓ କେତେକ ସହଜ ତଥା ସୁଲଭ ପ୍ରଣାଳୀର ଚିକିତ୍ସା-ବ୍ୟବସ୍ଥା । ଏହିସବୁ କାର୍ଯ୍ୟକ୍ରମ ଚଳାଇ-

ନେବାପାଇଁ କଂଗ୍ରେସ କେତେକ ସ୍ୱତନ୍ତ୍ର ସଂସ୍ଥା ଗଢ଼ିଥିଲା । ରାଜନୈତିକ ଜଞ୍ଜାଳରୁ ଦୂରରେ ରହି ଏହିସବୁ ସଂସ୍ଥାରେ ହଜାର ହଜାର କର୍ମୀ ପୂରା ସମୟ ଦେଇ କାର୍ଯ୍ୟ କରୁଥିଲେ ଏବଂ ଯେଉଁମାନେ ସାମୟିକ ଭାବରେ ଆସି ସାହାଯ୍ୟ କରୁଥିଲେ, ସେମାନଙ୍କ ସଂଖ୍ୟା ଥିଲା ଆହୁରି ଅଧିକ । ରାଜନୈତିକ କାର୍ଯ୍ୟକଳାପରେ ଭଟ୍ଟା ପଡ଼ୁଥିଲାବେଳେ ସୁଦ୍ଧା ରାଜନୈତିକ କ୍ଷେତ୍ରର ବାହାରେ ନୀରବ ତଥା ନିରବଚ୍ଛିନ୍ନ ଭାବରେ ଏହି ରଚନାତ୍ମକ କାର୍ଯ୍ୟ ଚାଲିଥିଲା । କଂଗ୍ରେସ ଆଉ ସରକାର ଭିତରେ ଯେବେ ଖୋଲାଖୋଲି ସଂଘର୍ଷ ଲାଗିଲା, ଏହିସବୁ ଅଣରାଜନୈତିକ ସଂସ୍ଥାଗୁଡ଼ିକୁ ଦମନ କରିବାପାଇଁ ମଧ୍ୟ ସରକାର ଭୁଲି ନଥିଲେ । ଏହିସବୁ କାର୍ଯ୍ୟକ୍ରମର ଅର୍ଥନୈତିକ ମୂଲ୍ୟ ଉପରେ କେହି କେହି ଅବଶ୍ୟ ପ୍ରଶ୍ନ ଉଠାଇଥା'ନ୍ତି; କିନ୍ତୁ ସେସବୁର ସାମାଜିକ ମହତ୍ତ୍ୱ ଉପରେ ପ୍ରଶ୍ନ ଉଠି ନପାରେ । ଏହି ସବୁ ସଂସ୍ଥା ଜରିଆରେ ପୂରା ସମୟ ଦେଇ ଓ ଜନସାଧାରଣଙ୍କ ସଙ୍ଗେ ପ୍ରତ୍ୟକ୍ଷ ସମ୍ପର୍କ ରକ୍ଷା କରି କାର୍ଯ୍ୟ କରିବା-ପାଇଁ ବହୁ ସଂଖ୍ୟାରେ କର୍ମୀ ତାଲିମପ୍ରାପ୍ତ ହେଲେ ଏବଂ ଏହି ତାଲିମପ୍ରାପ୍ତ କର୍ମୀମାନେ ଜନସାଧାରଣଙ୍କ ଭିତରେ ଆତ୍ମନିର୍ଭରଶୀଳତା ଓ ନିଜକୁ ନିଜେ ସାହାଯ୍ୟ କରିବାର ମନୋବୃତ୍ତି ପ୍ରସାରିତ କଲେ । ଶ୍ରମିକ ସଂଗଠନ ଓ କୃଷକ ସଂଗଠନମାନଙ୍କରେ ମଧ୍ୟ କଂଗ୍ରେସର ସଭ୍ୟ ଓ ସଭ୍ୟାମାନେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲେ । ପ୍ରକୃତପକ୍ଷେ, ଏପରି ବହୁ ସଙ୍ଗଠନ ସେମାନେ ନିଜେ ଗଢ଼ିଛନ୍ତି । ସର୍ବାପେକ୍ଷା ବୃହତ୍ତମ ତଥା ସୁସଙ୍ଗଠିତ ଅହମଦାବାଦର ବୟନଶିଳ୍ପ ଶ୍ରମିକସଂଘ କଂଗ୍ରେସ ଦ୍ୱାରା ସ୍ଥାପିତ ହୋଇଥିଲା ଏବଂ କଂଗ୍ରେସ ସଙ୍ଗେ ପ୍ରତ୍ୟକ୍ଷ ସହଯୋଗ ରକ୍ଷା କରି କାର୍ଯ୍ୟ କରୁଥିଲା ।

ଏହିସବୁ କାର୍ଯ୍ୟକଳାପ କଂଗ୍ରେସକୁ ଯେଉଁ ଦୃଢ଼ ପୃଷ୍ଠଭୂମି ଯୋଗାଇଲା, ଧାର୍ମିକ-ସାମ୍ପ୍ରଦାୟିକ ସଙ୍ଗଠନମାନ ସେଥିରୁ ସମ୍ପୂର୍ଣ୍ଣ ବଞ୍ଚିତ ଥିଲେ । ସେମାନଙ୍କର କର୍ମ ପରିସର ଆନ୍ଦୋଳନରେ କିମ୍ବା ନିର୍ବାଚନ ଲଢ଼େଇରେ ଥିଲା ସୀମିତ । କଂଗ୍ରେସ ଲୋକେ ସର୍ବଦା ସରକାରଙ୍କ ଦିଗରୁ ଯେଉଁଭଳି ବ୍ୟକ୍ତିଗତ ବିପଦର ସମ୍ମୁଖୀନ ଥିଲେ ଏବଂ ସମ୍ଭାବ୍ୟ ବିପଦର ଭାବନା, ଯାହା ପଦେପଦେ କଂଗ୍ରେସ ଲୋକଙ୍କ ମନରେ ସବୁ ସମୟରେ ସତେଜ ରହୁଥିଲା, ଧାର୍ମିକ-ସାମ୍ପ୍ରଦାୟିକ ସଙ୍ଗଠନମାନଙ୍କର ସେପରି ଭୟ ଅବା ବିପଦର ଆଶଙ୍କା ନଥିଲା । ଏପରି ଭାବରେ ସେହିସବୁ ସଙ୍ଗଠନରେ ସୁବିଧାବାଦୀ ଓ ପଦଲାଳସୀ ଲୋକେ ପ୍ରବେଶ କରିବାପାଇଁ ସୁଯୋଗ ଉଣ୍ଡି ରହୁଥିଲେ । କିନ୍ତୁ ଜମିଅତ-ଉଲ୍-ଉଲେମା ଓ ଅହରାର—ଏ ଦୁଇଟି ମୁସ୍‌ଲିମ ସଙ୍ଗଠନ ସରକାରୀ ଦମନନୀତିର ଶିକାର ହେଲେ; କାରଣ ରାଜନୀତି ଦିଗରେ ଏମାନେ କଂଗ୍ରେସ କର୍ମପନ୍ଥା ବହୁଧା ଅନୁସରଣ କରୁଥିଲେ ।

ଭାରତରେ ନୂତନ ବୁର୍ଜୁଆ ଶ୍ରେଣୀର ଅଭିବୃଦ୍ଧି ସଙ୍ଗେ ବଢ଼ିଉଠିଥିବା ଜାତୀୟତାବାଦୀ ଆବେଗର ପ୍ରତିନିଧିତ୍ୱ କେବଳ କଂଗ୍ରେସ ଯେ କରୁଥିଲା ନୁହେଁ, ସାମାଜିକ ପରିବର୍ତ୍ତନ ନିମନ୍ତେ ଶ୍ରମଜୀବୀ ଶ୍ରେଣୀର ପ୍ରେରଣାକୁ ମଧ୍ୟ ବହୁ ପରିମାଣରେ ଗ୍ରହଣ କରିଥିଲା । ନିର୍ଦ୍ଦିଷ୍ଟ ଭାବରେ କହିଲେ କୃଷିକ୍ଷେତ୍ରରେ କଂଗ୍ରେସ ବୈପ୍ଳବିକ ପରିବର୍ତ୍ତନର ପକ୍ଷପାତୀ ଥିଲା । ଏ ପ୍ରକାର ବିଷୟର ବେଳେବେଳେ କଂଗ୍ରେସ ସଙ୍ଗଠନ ଭିତରେ ମତାନୈକ୍ୟ ସୃଷ୍ଟି

ଶିରଥାଏ ଏବଂ ଜମିଦାରଶ୍ରେଣୀର ଲୋକେ ଓ ବଡ଼ ବଡ଼ ଶିଳ୍ପପତିମାନେ ଜାତୀୟତାବାଦୀ ମନୋଭାବାପନ୍ନ ଥିବା ସତ୍ତ୍ୱେ, ସମାଜବାଦୀ ପରିବର୍ତ୍ତନ ଆଶଙ୍କାରେ କଂଗ୍ରେସରୁ ଦୂରରେ ରହୁଥିଲେ । କଂଗ୍ରେସ ଭିତରେ ସୋସାଲିଷ୍ଟ ଓ କମ୍ୟୁନିଷ୍ଟମାନଙ୍କୁ ସ୍ଥାନ ମିଳିଲା ଓ କଂଗ୍ରେସର ନୀତି ନିର୍ଣ୍ଣୟ କରିବାରେ ସେମାନଙ୍କର ପ୍ରଭାବ କମ୍ ନଥିଲା । ହିନ୍ଦୁ ହେଉ କି ମୁସ୍‌ଲିମ୍ ହେଉ ସାମ୍ପ୍ରଦାୟିକ ସଂଗଠନଗୁଡ଼ିକ ସାମନ୍ତବାଦୀ ତଥା ରକ୍ଷଣଶୀଳ ବ୍ୟକ୍ତିମାନଙ୍କ ସଙ୍ଗେ ସଂଶ୍ଳିଷ୍ଟ ଥିଲେ ଓ ସବୁ ପ୍ରକାର ବୈପ୍ଳବିକ ସାମାଜିକ ପରିବର୍ତ୍ତନର ବିରୋଧୀ ଥିଲେ । ଅତଏବ, ପ୍ରକୃତ ସଂଘର୍ଷ ଘଟୁଥିଲା ମୁଖ୍ୟତଃ ଦୁଇଟି ମାର୍ଗ ଭିତରେ । ଗୋଟାଏ ଦିଗରେ ଥିଲେ ଜାତୀୟତାବାଦୀ, ଗଣତାନ୍ତ୍ରିକ ତଥା ବୈପ୍ଳବିକ ସାମାଜିକ ପରିବର୍ତ୍ତନ ନୀତିର ପକ୍ଷପାତୀ ଏବଂ ଅନ୍ୟ ଦିଗରେ ଥିଲେ ସାମନ୍ତବାଦୀ ଶାସନତନ୍ତ୍ର ସଂରକ୍ଷଣର ପକ୍ଷପାତୀ । ଏହି ସନ୍ଦର୍ଭରେ ଧର୍ମର କୌଣସି ସମ୍ପର୍କ ନଥିଲା ଯଦିଓ, ଧର୍ମ ନାମରେ ରକ୍ଷଣଶୀଳତା ଓ ପ୍ରତିକ୍ରିୟାକୁ ବହୁଧା ଆବୃତ କରି ରଖାଯାଉଥିଲା । ସଙ୍କଟ କାଳରେ ଏହି ପରିବର୍ତ୍ତନ-ବିରୋଧୀମାନେ ସ୍ଥିତାବସ୍ଥାର ସଂରକ୍ଷଣ ଉଦ୍ଦେଶ୍ୟରେ ଅବଶ୍ୟମ୍ଭାବୀ ଭାବରେ ବିଦେଶୀ ଆକ୍ରମଣ ଉପରେ ନିର୍ଭର କରୁଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ସଙ୍ଗେ ଭାରତରେ ଯେଉଁ ଆଭ୍ୟନ୍ତରୀଣ ସଙ୍କଟ ଉପୁଜିଲା, ତା'ର ଫଳରେ ପ୍ରଦେଶର କଂଗ୍ରେସ ସରକାରମାନେ ଗାଦୀ ଛାଡ଼ି ଆସିଲେ । ଏ ଘଟଣା ପୂର୍ବରୁ ଅବଶ୍ୟ ମହମ୍ମଦ ଆଲି ଜିନ୍ନା ଓ ମୁସ୍‌ଲିମ୍ ଲିଗ୍ ସଙ୍ଗେ ଆଲୋଚନା କରିବାପାଇଁ କଂଗ୍ରେସ ପୁଣି ଥରେ ଉଦ୍ୟମ କରିଥିଲା । ଯୁଦ୍ଧ ଆରମ୍ଭ ହେବା ପରେ ଅନୁଷ୍ଠିତ କଂଗ୍ରେସ କାର୍ଯ୍ୟକାରୀ କମିଟିର ପ୍ରଥମ ବୈଠକରେ ଯୋଗଦେବା ପାଇଁ ଜିନ୍ନା ନିମନ୍ତ୍ରିତ ହେଲେ । ସେ ଆସିପାରିନଥିଲେ । ପରେ ଅବଶ୍ୟ ଆମେ ତାଙ୍କ ସହିତ ସାକ୍ଷାତ କଲୁ ଏବଂ ବିଶ୍ୱର ଏହି ସଙ୍କଟ ଦୃଷ୍ଟିରୁ ଏକ ସାର୍ବଜନୀନ ନୀତି ନିର୍ଦ୍ଧାରଣ କରିବାର ଉଦ୍ୟମ କଲୁ । ସେଥିରେ ବିଶେଷ କିଛି ଫଳ ନହେଲେ ସୁଦ୍ଧା ଏ ପ୍ରକାର ଆଲୋଚନା ଚାଲୁରଖିବା ପାଇଁ ଆମେ ନିଷ୍ପତ୍ତି ନେଲୁ । ଇତିମଧ୍ୟରେ, ପ୍ରଦେଶର କଂଗ୍ରେସ ସରକାରମାନେ ରାଜନୈତିକ ପ୍ରଶ୍ନ ଉପରେ ଇସ୍ତଫା ଦେଇ ବସିଲେ । ମୁସଲିମ୍ ଲିଗ୍ ଓ ସାମ୍ପ୍ରଦାୟିକ ସମସ୍ୟା ସଙ୍ଗେ ଏହାର କୌଣସି ସମ୍ପର୍କ ନଥିଲା । ଜିନ୍ନା କିନ୍ତୁ ଏହାକୁ ଏକ ପ୍ରକୃଷ୍ଟ ଅବସର ମଣି କଂଗ୍ରେସ ଉପରେ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ କରିଦେଲେ ଏବଂ ପ୍ରଦେଶମାନଙ୍କରେ କଂଗ୍ରେସ ଶାସନରୁ 'ପରିତ୍ରାଣ ଦିବସ' ପାଳନ କରିବାପାଇଁ ମୁସ୍‌ଲିମ୍ ଲିଗ୍‌କୁ ନିର୍ଦ୍ଦେଶ ଦେଲେ । ଏହାପରେ କଂଗ୍ରେସର ଜାତୀୟତାବାଦୀ ମୁସଲମାନମାନଙ୍କ ଉପରେ ବିଶେଷତଃ ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟ ଭିତରେ ସମାନଭାବରେ ସମ୍ମାନିତ କଂଗ୍ରେସ ସଭାପତି ମୌଲାନା ଅବୁଲ୍ କାଲାମ୍ ଆଜାଦଙ୍କ ଉପରେ ଶିଷ୍ଟାଚାରହୀନ ଅକଥ୍ୟ ଭାଷାରେ ଗାଳି ବର୍ଷଣ କରିଲାଗିଲେ । 'ପରିତ୍ରାଣ ଦିବସ' ଏକ ତୁଚ୍ଛ ବ୍ୟାପାରରେ ପରିଣତ ହେଲା ଏବଂ ଭାରତର କେତେକ ସ୍ଥାନରେ ମୁସ୍‌ଲିମ୍‌ମାନେ ପ୍ରତିବିକ୍ଷୋଭ ପ୍ରଦର୍ଶନ କଲେ; କିନ୍ତୁ ଏଥିଦ୍ୱାରା ତିକ୍ତତା ବୃଦ୍ଧି ପାଇଲା ଏବଂ ଜିନ୍ନା ଓ ତାଙ୍କ ନେତୃତ୍ୱରେ ପରିଚାଳିତ ମୁସ୍‌ଲିମ୍

ଲିଗ୍ କଂଗ୍ରେସ ସଙ୍ଗେ କୌଣସି ପ୍ରକାର ସମାଧାନ କରିବା ଉଦ୍ଦେଶ୍ୟରେ କିମ୍ବା ସ୍ୱାଧୀନତା ଆନ୍ଦୋଳନକୁ ଆଗେଇନେବା ଉଦ୍ଦେଶ୍ୟରେ ଯେ ନାହାନ୍ତି, ଏ ଧାରଣା ଆମର ଦୃଢ଼ୀଭୂତ ହେଲା । ଜିନ୍ନା ଓ ତାଙ୍କର ଲିଗ୍ ପ୍ରଚଳିତ ଅବସ୍ଥା ଜାରି ରହିବା ପସନ୍ଦ କରନ୍ତି । (୧)

## ୭. ଜାତୀୟ ଯୋଜନା କମିଟି

ଖ୍ରୀ: ୧୯୩୮ ଶେଷ ଆଡ଼କୁ କଂଗ୍ରେସ ଆନୁକୂଲ୍ୟରେ ଏକ ଜାତୀୟ ଯୋଜନା କମିଟି ଗଠିତ ହେଲା । ଏଥିରେ ପନ୍ଦର ଜଣ ସଭ୍ୟ ଥିଲେ ଏବଂ ପ୍ରାଦେଶିକ ସରକାର ତଥା ଯେଉଁସବୁ ଦେଶୀୟ ରାଜ୍ୟ ଆମ ସଙ୍ଗେ ସହଯୋଗ କରିବା ପସନ୍ଦ କରିଥିଲେ, ସେମାନଙ୍କର ପ୍ରତିନିଧିମାନେ ମଧ୍ୟ ରହିଲେ । ସଭ୍ୟମାନଙ୍କ ଭିତରେ ଥିଲେ ସୁବିଦିତ ଶିଳ୍ପପତି, ପୁଞ୍ଜିପତି, ଅର୍ଥଶାସ୍ତ୍ରୀ, ଅଧ୍ୟାପକ, ବୈଜ୍ଞାନିକ ଏବଂ ଟ୍ରେଡ୍ ୟୁନିଅନ୍ କଂଗ୍ରେସ ଓ ଗ୍ରାମୋଦ୍ୟୋଗ ସଙ୍ଘର ପ୍ରତିନିଧିମାନେ । ବଙ୍ଗ, ପଞ୍ଜାବ ଓ ସିନ୍ଧୁର ଅଣକଂଗ୍ରେସ ପ୍ରାଦେଶିକ ସରକାରମାନେ ଏବଂ ହାଇଦରାବାଦ, ମହୀଶୂର, ବରୋଦା, ତ୍ରିବାଙ୍କୁଡ଼ ଓ ଭୂପାଳ ଭଳି ବଡ଼ ଦେଶୀୟ ରାଜ୍ୟଗୁଡ଼ିକ ଏହି କମିଟି ସଙ୍ଗେ ସହଯୋଗ କରିଥିଲେ । ଗୋଟାଏ ଦିଗରୁ ଦେଖିଲେ ଏହି କମିଟି ସୁନ୍ଦର ଭାବରେ ପ୍ରତିନିଧିମୂଳକ ଥିଲା ଏବଂ ରାଜନୈତିକ ସୀମାନ୍ତ, ମୋଗଲବନ୍ଦି ତଥା ଦେଶୀୟ ରାଜ୍ୟ ଭିତରେ ଥିବା ଉଚ୍ଚ ପ୍ରାଚୀର ତା'ର ପଥରୋଧ କରିପାରି ନଥିଲା । ଏତିକି କେବଳ, ଏଥିରେ ଭାରତ ସରକାରଙ୍କ ପ୍ରତିନିଧି ନଥିଲେ ଓ ଏଥିପ୍ରତି ତାଙ୍କର ସହଯୋଗମୂଳକ ମନୋଭାବ ନଥିଲା । ବଡ଼ ବଡ଼ ଧନତାନ୍ତ୍ରିକ ପୁଞ୍ଜିପତି ଏଥିରେ ଥିଲେ, ଆଉ ସେମାନଙ୍କ ସଙ୍ଗେ ବି ଥିଲେ ସେପରି ଲୋକେ ଯେଉଁମାନେ ଆଦର୍ଶବାଦୀ ଓ ଅନମନୀୟ ତତ୍ତ୍ୱଦର୍ଶୀ ବିବେଚିତ ହେଉଥିଲେ । ସମାଜବାଦୀ ଓ ମାର୍କସ୍‌ବାଦୀ ବି ଥିଲେ । ପ୍ରଦେଶ ସରକାରମାନଙ୍କ ପକ୍ଷରୁ ବିଶେଷଜ୍ଞମାନେ ଓ ଶିଳ୍ପ ବିଭାଗର ଡିରେକ୍ଟରମାନେ ବି ଯୋଗଦେଇଥିଲେ ।

ବିଭିନ୍ନ ଧରଣର ଲୋକଙ୍କର ଏହା ଥିଲା ଏକ ବିଚିତ୍ର ସମାବେଶ ଏବଂ ଏପରି ଏକ କମିଟି କିପରି କାର୍ଯ୍ୟକାରୀ ହୋଇପାରିବ ସ୍ପଷ୍ଟ ଜଣାପଡୁ ନଥିଲା । ମୁଁ ଏହି କମିଟିର ଚେୟାରମେନ ହେଲି; କିନ୍ତୁ ମନରେ ସନ୍ଦେହ ଓ ଦ୍ୱିଧା ରହିଥିଲା । ତେବେ ଏପରି ଏକ

---

(୧) ଏ ବହି ଲେଖିବା ଶେଷ ହେବା ପରେ ଓ୍ୱିଲଫ୍ରିଡ୍ କାଣ୍ଟୱେଲ୍ ସ୍ମିଥ୍ ନାମକ ଜଣେ କାନାଡ଼ାବାସୀ ବିଦ୍ୱାନ୍‌ଙ୍କ ଦ୍ୱାରା ଲିଖିତ 'ମଡର୍ଣ୍ଣ ଇସ୍‌ଲାମ୍ ଇନ୍ ଇଣ୍ଡିଆ : ଏ ସୋସାଲ୍ ଏନାଲିସିସ୍' ବହିଟି ପଢ଼ିବାକୁ ପାଇଲି । ସ୍ମିଥ୍ ଭାରତ ଓ ମିଶରରେ କେତେ ବର୍ଷ ଅତିବାହିତ କରିଚନ୍ତି । କଥିତ ବହିରେ ସେ ୫୭-ବିଦ୍ରୋହ ଅବଧି ଭାରତୀୟ ମୁସଲମାନମାନଙ୍କ ଭିତରେ ବିକାଶ ଲାଭ କରିଥିବା ନାନା ବିଚାରଧାରାର ଏକ ମନୋଜ୍ଞ ଅନୁଶୀଳନ ଯୋଗାଇଚନ୍ତି । ସାର୍ ସୟଦ୍ ଅହମଦ ଖାଁଙ୍କ ସମୟରୁ ଆରମ୍ଭ ହୋଇଥିବା ନାନା ପ୍ରଗତିଶୀଳ ଓ ପ୍ରତିକ୍ରିୟାଶୀଳ ଆନ୍ଦୋଳନ ବିଷୟରେ ଏବଂ ମୁସ୍‌ଲିମ୍ ଲିଗ୍‌ର ଭିନ୍ନ ଭିନ୍ନ ଦଶା ନେଇ ସେ ଚର୍ଚ୍ଚା କରିଚନ୍ତି ।

କମିଟିର ଆବଶ୍ୟକତା ମୁଁ ବହୁ ପୂର୍ବରୁ ଯେହେତୁ ଅନୁଭବ କରିଥିଲି ଏବଂ ଏହାର କାର୍ଯ୍ୟ ପ୍ରତି ଯେହେତୁ ମୋର ପ୍ରବଳ ଆଗ୍ରହ ଥିଲା, ମୁଁ ଏଥିରୁ ଦୂରେଇ ରହିପାରି ନଥାନ୍ତି ।

ପଦେ ପଦେ ଆମେ ଅସୁବିଧାର ସମ୍ମୁଖୀନ ହେଉଥିଲୁ । ପ୍ରକୃତରେ ଯୋଜନା ତିଆରି କରିବାପାଇଁ ଯଥେଷ୍ଟ ପରିସଂଖ୍ୟାନ ତଥ୍ୟ ଆମ ପାଖରେ ନଥିଲା ଏବଂ ଚେଷ୍ଟା କଲେ ବି ବିଶେଷ କିଛି ସଂଗୃହିତ ହୋଇପାରି ନଥିଲା । ଭାରତ ସରକାର ସାହାଯ୍ୟ କରିବାପାଇଁ ପ୍ରସ୍ତୁତ ନଥିଲେ । ପ୍ରାଦେଶିକ ସରକାରମାନେ ବି ସେମାନଙ୍କର ସହଯୋଗମୂଳକ ବନ୍ଧୁଭାବ ସତ୍ତ୍ୱେ ଭାରତୀୟ ସ୍ତରର ଏକ ପରିକଳ୍ପନା ପ୍ରଣୟନରେ ସେପରି ବିଶେଷ ଭାବରେ ଉତ୍ସୁକ ଥିବାର ଜଣାଯାଉନଥିଲା ଏବଂ ଆମର କାର୍ଯ୍ୟ ପ୍ରତି ସେମାନଙ୍କର ଯାହାକିଛି ଆଗ୍ରହ; ତାହା ନହେଲେ ନଚଳେ ଭଳି ନଥିଲା । ସେମାନଙ୍କର ନାନା ସମସ୍ୟା ଓ ଜଞ୍ଜାଳ ନେଇ ସେମାନେ ଅତମାନାରେ ବ୍ୟସ୍ତ ଥିଲେ । କଂଗ୍ରେସ ପ୍ରଭାବଶାଳୀ ବ୍ୟକ୍ତିମାନେ ଯାହାଙ୍କ ପୃଷ୍ଠପୋଷକତାରେ ଏହି କମିଟି ଅସ୍ତିତ୍ୱ ଲାଭ କଲା, ଏହାକୁ ଏକ ଅନାବଶ୍ୟକ ଶିଶୁ ଭାବରେ ଦେଖୁଥିଲେ ଏବଂ ସେ କିପରି ବଢ଼ିବ ସେ ବିଷୟରେ ଧାରଣା ସେମାନଙ୍କର ନଥିଲା; ବରଂ ତା'ର ଭବିଷ୍ୟତ କାର୍ଯ୍ୟକଳାପ ସମ୍ପର୍କରେ ସେମାନଙ୍କର ସନ୍ଦେହ ରହିଥିଲା । ବଡ଼ ବଡ଼ ବ୍ୟବସାୟୀମାନେ ନିଶ୍ଚିତ ଭାବରେ ଶଙ୍କାକୁଳ ଥିଲେ ଏବଂ କମିଟିର କାର୍ଯ୍ୟପନ୍ଥା ସମ୍ପର୍କରେ ସେମାନଙ୍କର ସେଭଳି ପ୍ରୀତି ପରିଲକ୍ଷିତ ହେଉନଥିଲା । କମିଟିରେ ସେମାନେ ଯୋଗ ରହିଲେ ଦେବାର କାରଣ ହୁଏତ ଯେ ସେମାନେ ବାହାରେ ରହିବା ଅପେକ୍ଷା ଭିତରେ ନିଜର ସ୍ୱାର୍ଥ ରକ୍ଷା କରିବାପାଇଁ ଅଧିକତର ସୁବିଧା ପାଇବେ ବୋଲି ମନେ କରୁଥିଲେ ।

ଏକଥା ମଧ୍ୟ ସ୍ପଷ୍ଟ ପ୍ରତୀତ ହେଉଥିଲା ଯେ ଏକ ବ୍ୟାପକ ଧରଣର ପରିକଳ୍ପନା ସେପରି ଏକ ମୁକ୍ତ ଜାତୀୟ ସରକାରରେ କେବଳ ସମ୍ଭବ; ଯାହାର ଯଥେଷ୍ଟ ଶକ୍ତି ଓ ଜନପ୍ରିୟତା ଥିବ ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ମୌଳିକ ପରିବର୍ତ୍ତନ ପ୍ରବର୍ତ୍ତିତ କରିବାପାଇଁ । ଏପରିଭାବରେ, ଜାତୀୟ ମୁକ୍ତି ଅର୍ଜନ ଓ ବିଦେଶୀ କର୍ତ୍ତୃତ୍ୱ ଅପସାରଣ ଯୋଜନା ପୂର୍ବର ଅପରିହାର୍ଯ୍ୟ ଆବଶ୍ୟକତା ହୋଇପଡ଼ିଲା । ଆମ ଆଗରେ ଅନ୍ତରାୟର ଅଭାବ ନଥିଲା—ଆମର ସାମାଜିକ ଅନଗ୍ରସରତା, ନାନାପ୍ରକାର ପ୍ରଥା, ପାରମ୍ପରିକ ଦୃଷ୍ଟିଭଙ୍ଗୀ ଇତ୍ୟାଦି; କିନ୍ତୁ ଯାହା ହେଉନା କାହିଁକି ସେସବୁର ସମ୍ମୁଖୀନ ହେବାକୁ ହିଁ ପଡ଼ିବ । ଏପରିଭାବରେ ପରିକଳ୍ପନା ପ୍ରଣୟନ ବର୍ତ୍ତମାନ ପାଇଁ ନୁହେଁ; ତାହା ଥିଲା ଏକ ଅନିଶ୍ଚିତ, ଅପରିଚିତ ଭବିଷ୍ୟତ ପାଇଁ, ଆଉ ସେଥିରେ ଏକ ପ୍ରକାର ଆନୁମାନିକତାର ସ୍ପର୍ଶ ଲାଗିଥିଲା । ତଥାପି ବର୍ତ୍ତମାନ ଉପରେ ହିଁ ତା'ର ଭିତ୍ତି ଗଢ଼ିବାକୁ ପଡ଼ିଲା ଏବଂ ଆମର ଆଶା ଥିଲା ଯେ ସେହି ଭବିଷ୍ୟତ ବେଶି ଦୂରର ନୁହେଁ । ଆମେ ଯଦି ମିଳୁଥିବା ତଥ୍ୟ ସଂଗ୍ରହ କରି ପାରୁଛୁ, ସହଯୋଜନ କରି ପାରୁଛୁ ଓ ପ୍ରାଥମିକ ପରିକଳ୍ପନା କରି ପାରୁଛୁ ଇତ୍ୟବସରରେ କେଉଁ ଭାବରେ ସେମାନେ କାର୍ଯ୍ୟ କରିଯିବେ ଓ ସେମାନଙ୍କର ସମ୍ବଳର ଉନ୍ନତି ସାଧନ କରିପାରିବେ, ସେ ବିଷୟରେ ପ୍ରାଦେଶିକ ସରକାର ତଥା ଦେଶୀୟ ରାଜ୍ୟମାନଙ୍କୁ ସୂଚିତ କରିଦେଇ ଆମେ ଭବିଷ୍ୟତର, ନିର୍ଦ୍ଦିଷ୍ଟ ଭାବରେ ଫଳପ୍ରଦ,

ଯୋଜନା ନିମନ୍ତେ କ୍ଷେତ୍ର ପ୍ରସ୍ତୁତ କରିଥାଇବୁ । ଯୋଜନାର ଉଦ୍ୟମ କରି, ସେଥି ସଙ୍ଗେ ଆମର ଅର୍ଥନୈତିକ, ସାମାଜିକ, ସାଂସ୍କୃତିକ ତଥା ଜାତୀୟ କାର୍ଯ୍ୟକଳାପ ଉପରେ ମେଳ ଖାଇ ପାରୁଚି ଦେଖିବାରେ ଆମ ପାଇଁ ଓ ସର୍ବସାଧାରଣଙ୍କ ପାଇଁ ଶିକ୍ଷା କରିବା ଲାଗି ଯଥେଷ୍ଟ କିଛି ଥିଲା । ସେମାନଙ୍କର ଚିନ୍ତା ଓ କାର୍ଯ୍ୟର ସଙ୍କୀର୍ଣ୍ଣ ଗଣ୍ଡି ଭିତରୁ ବାହାରିଆସି, ପରସ୍ପର ସଙ୍ଗେ ସମ୍ପର୍କିତ ଭାବରେ, ବିଭିନ୍ନ ସମସ୍ୟା ଉପରେ ବିଚାର କରିବାପାଇଁ ଏବଂ କେତେ ପର୍ଯ୍ୟନ୍ତ ଅନ୍ତତଃ ଗୋଟାଏ ବିସ୍ତୃତ ସହଯୋଗମୂଳକ ଦୃଷ୍ଟିଭଙ୍ଗୀର ବିକାଶ ସାଧନ ପାଇଁ ଏହା ଜନସାଧାରଣଙ୍କୁ ସାହାଯ୍ୟ କଲା ।

ଯୋଜନା କମିଟି ପଛର ମୂଳ ବିଚାର ଥିଲା ଦେଶରେ ଶିଳ୍ପର କ୍ଷେତ୍ର ପ୍ରସାରିତ କରିବା । "ଦରିଦ୍ରତା ଓ ବେକାରି, ଜାତୀୟ ପ୍ରତିରକ୍ଷା ଓ ଅର୍ଥନୈତିକ ଅଭ୍ୟୁନ୍ନତିର ସମସ୍ୟା ସାଧାରଣତଃ ଶିଳ୍ପୀକରଣ ବିନା ସମାଧାନ କରାଯାଇନପାରେ । ଏ ପ୍ରକାର ଶିଳ୍ପୀକରଣ ଦିଗରେ ଜାତୀୟ ଯୋଜନାର ଏକ ବିସ୍ତୃତ ପରିକଳ୍ପ ନିର୍ଦ୍ଦିଷ୍ଟ ଆକାରରେ ପ୍ରକାଶ କରିବାକୁ ପଡ଼ିବ । ଏହି ପରିକଳ୍ପରେ ମୌଳିକ ଭାରୀଶିଳ୍ପ, ମଧ୍ୟମ ଧରଣର ଶିଳ୍ପ ତଥା କୁଟୀର ଶିଳ୍ପର ବିକାଶ ନିମନ୍ତେ ବ୍ୟବସ୍ଥା କରାଯାଇଥିବ ।

"କିନ୍ତୁ କୌଣସି ଯୋଜନା ପକ୍ଷରେ କୃଷିର ଉନ୍ନତି ଅବଜ୍ଞା କରିବା ସମ୍ଭବ ନୁହେଁ; କାରଣ ତାହା ଜନସାଧାରଣଙ୍କ ପ୍ରଧାନ ଅବଲମ୍ବନ । ଠିକ୍ ସେହି ଭଳି ସାମାଜିକ ସେବା କ୍ଷେତ୍ର ବି ଗୁରୁତ୍ୱପୂର୍ଣ୍ଣ । ଅତଏବ, ସବୁକଥା ପରସ୍ପର ସଙ୍ଗେ ଜଡ଼ିତ ଏବଂ ଗୋଟି'କରୁ ଅନ୍ୟଟିକୁ ବିଚ୍ଛିନ୍ନ କରିବା କିମ୍ବା ଗୋଟାଏ ଦିଗ ଉପରେ ଦୃଷ୍ଟି ନଦେଇ ଅନ୍ୟ ଦିଗରେ ଆଗେଇଯିବା ସମ୍ଭବପର ନୁହେଁ । ଏହି ଯୋଜନା ବ୍ୟାପାର ସମ୍ପର୍କରେ ଆମେ ଯେତେ ଅଧିକ ଚିନ୍ତା କଲୁ, ଆକାର ଓ ପ୍ରକାରରେ ତାହା ସେତେ ବିଶାଳତର ହୋଇ ଉଠିଲା । କୌଣସି କାର୍ଯ୍ୟକଳାପ ତା'ର ପରିସର ବାହାରେ ରହି ପାରିବ ବୋଲି ମନେ ହେଲା ନାହିଁ । ଏହାର ଅର୍ଥ ନୁହେଁ ଯେ ସବୁକିଛି ଉପରେ ନିୟନ୍ତ୍ରଣ ଓ ଶୃଙ୍ଖଳା ପ୍ରୟୋଗ କରିବା'କୁ ଆମେ ଚାହୁଁଥିଲୁ; କିନ୍ତୁ ଯୋଜନାର ଏକ ନିର୍ଦ୍ଦିଷ୍ଟ ଅଂଶ ଉପରେ ନିଷ୍ପତ୍ତି ନେଲାବେଳେ ସୁଦ୍ଧା ସବୁକିଛି ଆମକୁ ଆଖି ଆଗରେ ରଖିବାକୁ ପଡ଼ୁଥିଲା । ମୋର ଯେପରି ମନେ ହୁଏ, କମିଟିର ଅନ୍ୟ ସଭ୍ୟମାନଙ୍କର ବି ସେପରି ଏହି କାର୍ଯ୍ୟରେ ମନ ଲାଗିଯାଇଥିଲା; କିନ୍ତୁ ସଙ୍ଗେ ସଙ୍ଗେ ଏକ ପ୍ରକାର ଅସ୍ପଷ୍ଟତା ଓ ଅନିଶ୍ଚୟତା ବି ପଶି ଆସୁଥିଲା; ଯୋଜନାର ପ୍ରଧାନ କେତେକ ବିଷୟ ଉପରେ ମନୋନିବେଶ କରିବା ପରିବର୍ତ୍ତେ ଆମେ ଏକ ପ୍ରକାର ପରିବ୍ୟାପ୍ତିର ପ୍ରଲୋଭନରେ ବି ପଡ଼ିଯାଉଥିଲୁ । ଏହା ଫଳରେ ଆମର ଅନେକ ସବ୍‌କମିଟିର କାର୍ଯ୍ୟ ପୂରଣ ହେବାରେ ବିଳମ୍ବ ଘଟିଲା । ଅବଶ୍ୟ, ଏକ ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନ ପାଇଁ କାର୍ଯ୍ୟ କରିବାର ସଜାଗ ଭାବ ଅନେକଙ୍କର ନଥିଲା ।

ଆମ ଯୋଜନା କମିଟି ଯେଉଁଭଳି ଭାବରେ ଗଠିତ ହୋଇଥିଲା, ସେଥିରେ କୌଣସି ସାମାଜିକ ମତ ଅଥବା ସମାଜ-ସଙ୍ଗଠନଜନିତ ମୌଳିକ ସିଦ୍ଧାନ୍ତ ଉପରେ ଆମେ ସମସ୍ତେ

ଏକମତ ହେବା ସହଜ ନଥିଲା । ବିମୂର୍ତ୍ତ ଭାବରେ ଏହିସବୁ ନୀତି ଉପରେ ଆଲୋଚନା କରିବା ଉଦ୍ୟମ ଯଦି ହୁଏ, ତାହାହେଲେ ଆରମ୍ଭରୁ ହିଁ ଆଭିମୁଖ୍ୟରେ ମୌଳିକ ପାର୍ଥକ୍ୟ ଘଟିବ । ହୁଏତ କମିଟି ଭିତରେ ବିଭେଦ ସୃଷ୍ଟି ହେବାର ଆଶଙ୍କା ବି ରହିଥିଲା । ଏ ପ୍ରକାର ବିଦେଶିକ ନୀତିର ଅଭାବ ଏକ ଗୁରୁତର ଗତିରୋଧକ ଭାବରେ ଦେଖା ଦେଇଥିଲେ ସୁଦ୍ଧା ସେଥିରୁ ମୁକ୍ତ ହେବାର ଉପାୟ ନଥିଲା । ଯୋଜନାର ସାଧାରଣ ସମସ୍ୟା ସଙ୍ଗେ ପ୍ରତ୍ୟେକଟି ସମସ୍ୟା ଉପରେ ବିମୂର୍ତ୍ତ ଭାବରେ ନୁହେଁ ବାସ୍ତବ ରୂପରେ ବିବେଚନା କରିବାର ନିଷ୍ପତ୍ତି ନେଇ, ସେ ପ୍ରକାର ବିବେଚନା ଭିତରୁ ନୀତି ବିକାଶ ଲାଭ କରିବାପାଇଁ ଛାଡ଼ିଦେଲେ, ମୋଟାମୋଟି ଭାବରେ, ଆମ ସମ୍ମୁଖରେ ଦୁଇଟି ଆଭିମୁଖ୍ୟ ରହିଥିଲା । ଗୋଟିଏ ହେଉଛି ସମାଜବାଦୀ ଆଭିମୁଖ୍ୟ, ଯାହାର ଲକ୍ଷ୍ୟ ଥିଲା ଲାଭ ମନୋବୃତ୍ତି ଦୂର କରି ନ୍ୟାୟସଙ୍ଗତ ବଣ୍ଟନର ମହତ୍ତ୍ୱ ଉପରେ ଜୋର୍ ଦେବା; ଦ୍ୱିତୀୟଟି ହେଉଛି ବଡ଼ ବଡ଼ ସୌଦାଗରମାନଙ୍କ ପୁଞ୍ଜିବାଦୀ ଆଭିମୁଖ୍ୟ ଯାହାର ଉଦ୍ଦେଶ୍ୟ ଥିଲା, ଯେତେଦୂର ସମ୍ଭବ ହୋଇପାରେ, ଲାଭ-ମନୋବୃତ୍ତି ଓ ସରକାରୀ କଟକଣାମୁକ୍ତ ଉଦ୍ୟୋଗର ବିକାଶ ବଜାୟ ରଖିବା ଏବଂ ଉତ୍ପାଦନ ଉପରେ ବିଶେଷ ଜୋର୍ ଦେବା । ଆମର ଦୃଷ୍ଟି ଭଙ୍ଗୀରେ ଆହୁରି ଏକ ପାର୍ଥକ୍ୟ ବି ରହିଥିଲା । ଏକ ପକ୍ଷରେ ଥିଲେ ଭାରୀଶିଳ୍ପର ଦ୍ରୁତ ପ୍ରସାର ପକ୍ଷପାତୀ ଏବଂ ଅନ୍ୟ ପକ୍ଷରେ ଥିଲେ ଗ୍ରାମୋଦ୍ୟୋଗ ଓ କୁଟୀରଶିଳ୍ପର ବିକାଶ ପ୍ରତି ଅଧିକତର ଦୃଷ୍ଟି ଦେବାରେ ଆଗ୍ରହୀ । ଦ୍ୱିତୀୟ ପକ୍ଷର ଯୁକ୍ତି ଥିଲା ଯେ ଗ୍ରାମୋନ୍ନତି ପନ୍ଥାରେ କେବଳ ଦେଶର ବିପୁଳସଂଖ୍ୟକ ପୂର୍ଣ୍ଣ ବେକାର ଓ ଆଂଶିକ ବେକାର ଲୋକଙ୍କୁ କର୍ମ ଯୋଗାଇ ଦିଆଯାଇ ପାରିବ । ପରିଶେଷରେ, ଚୂଡ଼ାନ୍ତ ନିଷ୍ପତ୍ତି ନେବା କାଳରେ ପାର୍ଥକ୍ୟ ଉପୁଜିବାର ଅବକାଶ ରହିଥିଲା । ଦୁଇ କିମ୍ବା ତତୋଽଧିକ ପ୍ରତିବେଦନ ଦିଆଯିବା ହେବାରେ ବିଶେଷ କିଛି କ୍ଷତି ଅବଶ୍ୟ ନଥିଲା ଯଦି ସମସ୍ତ କିଛି ପ୍ରାପ୍ୟ ତଥ୍ୟ ସଂଗୃହୀତ ହୋଇ ପାରୁଛି, ସମନ୍ୱିତ କରାଯାଇ ପାରୁଛି, ପ୍ରାଥମିକ କ୍ଷେତ୍ର ପ୍ରସ୍ତୁତ ହୋଇ ପାରୁଛି ଏବଂ ଯୋଜନାର ବିଭିନ୍ନ ଦିଗ ସୂଚିତ କରାଯାଇ ପାରୁଛି । ଯୋଜନା କାର୍ଯ୍ୟକାରୀ କରିବାର ସମୟ ଯେବେ ଆସିବ, ସେ ସମୟର ଗଣତାନ୍ତ୍ରିକ ସରକାର କେଉଁ ମୌଳିକ ନୀତି ଅବଲମ୍ବନ କରିବେ, ତାହା ସେ ବାଛି ନେବେ । ଇତି ମଧ୍ୟରେ, ପ୍ରାଥମିକ ପ୍ରସ୍ତୁତି, ଯେତେ ପରିମାଣରେ କରାଯାଇ ପାରୁଛି, କରିଯିବା ଏବଂ ଜନସାଧାରଣ ତଥା ପ୍ରାଦେଶିକ ସରକାର ଓ ଦେଶୀୟ ରାଜ୍ୟମାନଙ୍କ ଅବଗତି ନିମନ୍ତେ ଏ ସମସ୍ୟାର ବିଭିନ୍ନ ବିଭାବ ସୂଚିତ କରି ଯିବା ଦରକାର ।

ଯୋଜନା ତ ଦୂରର କଥା, କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ସାମାଜିକ ଉଦ୍ଦେଶ୍ୟ ବିନା ସୁଷ୍ଠୁଭାବେ ଆମେ କୌଣସି ସମସ୍ୟା ଉପରେ ବିବେଚନା କରିପାରିନଥାନ୍ତୁ । ସେହି ଘୋଷିତ ଲକ୍ଷ୍ୟ ଥିଲା ଜନସାଧାରଣଙ୍କ ପାଇଁ ପ୍ରୟୋଜନାନୁରୂପ ଜୀବନ ଧାରଣର ମାନ ନିର୍ଦ୍ଧାରିତ କରିବା ଅର୍ଥାତ୍ ଜନସାଧାରଣଙ୍କ ଘୋର ଦାରିଦ୍ର୍ୟ ଦୂର କରିବା । ତୈରସାରେ ହିସାବ କରି ଅର୍ଥ ଶାସ୍ତ୍ରୀମାନେ ହିସାବ କରିଥିଲେ ଯେ ମୁଣ୍ଡପିଚ୍ଛା ମାସିକ ପନ୍ଦର ଟଙ୍କାରୁ ପଚିଶ ଟଙ୍କା ହେଉଛି

ସର୍ବନିମ୍ନ ଗୃହଦା, ଯେଉଁଥିରୁ କମ୍ କରିବାର ବାଟ କିଛି ନାହିଁ । ଏ ସଂଖ୍ୟା ଯୁଦ୍ଧ ପୂର୍ବର । ପାଶ୍ଚାତ୍ୟ ଜଗତର ମାନ ସଙ୍ଗେ ତୁଳନା କଲେ ଏହା କିଛି ନୁହେଁ ତଥାପି ଭାରତର ସାମ୍ପ୍ରତିକ ମାନ ଦୃଷ୍ଟିରୁ ଦେଖିଲେ ଏହି ସଂଖ୍ୟା ଖୁବ୍ ବଡ଼ ବୋଧ ହେଉଥିଲା । ଭାରତରେ ମୁଣ୍ଡପିଚ୍ଛା ହାରାହାରି ବାର୍ଷିକ ଆୟ ଥିଲା ପ୍ରାୟ ପଞ୍ଚଷଠି ଟଙ୍କା । ଧନୀ ଓ ଗରିବ, ସହରବାସୀ ଓ ଗ୍ରାମବାସୀ ସମସ୍ତେ ଏହାର ଅନ୍ତର୍ଭୁକ୍ତ । ଧନୀ ଓ ଗରିବ ଭିତରେ ଥିବା ବିରାଟ ବ୍ୟବଧାନ ଏବଂ ମୁଷ୍ଟିମେୟ କେତେକଙ୍କ ହାତରେ ଧନ ପୁଞ୍ଜିଭୂତ ହୋଇଥିବା ଦୃଷ୍ଟିରୁ ଜଣେ ଗ୍ରାମବାସୀର ହାରାହାରି ଆୟ ଖୁବ୍ କମ୍ ଧରାଯାଇଥିଲା; ବୋଧହୁଏ ବର୍ଷକୁ ମୁଣ୍ଡପିଚ୍ଛା ତିରିଶ ଟଙ୍କା । ଏହିସବୁ ସଂଖ୍ୟାରୁ ସେମାନଙ୍କର ଘୋର ଦାରିଦ୍ର୍ୟ ଓ ଦୁରବସ୍ଥା ସୂଚିତ ହୁଏ । ଖାଦ୍ୟ, ବସ୍ତ୍ର, ବାସ ଓ ବଞ୍ଚି ରହିବାପାଇଁ ଅନ୍ୟ ଯାହା କିଛି ନିତାନ୍ତ ଆବଶ୍ୟକ ସେସବୁର ଅଭାବ ଥିଲା ! ଏହି ଅଭାବ ଦୂର କରି ପ୍ରତ୍ୟେକ ବ୍ୟକ୍ତି ନିମନ୍ତେ ଏକ ଉଚିତ ମାନଦଣ୍ଡ ନିର୍ଦ୍ଧିତ କରିବାକୁ ହେଲେ ଜାତୀୟ ଆୟ ବହୁତ ପରିମାଣରେ ବଢ଼ାଇବାକୁ ହେବ ଏବଂ ସେହି ଅଧିକ ଉତ୍ପାଦନ ସଙ୍ଗେ ଧନର ଅଧିକତର ସମବଣ୍ଟନ କରିବାକୁ ପଡ଼ିବ । ଆମେ ହିସାବ କରି ଦେଖିଥିଲୁ ଯେ ଜୀବନ ଧାରଣର ପ୍ରକୃତ ଏକ ପ୍ରଗତିଶୀଳ ମାନଦଣ୍ଡ ନିମନ୍ତେ ଜାତୀୟସମ୍ପଦ ଶତକଡ଼ା ପାଞ୍ଚଶହରୁ ଛ'ଶହ ପର୍ଯ୍ୟନ୍ତ ବୃଦ୍ଧି ପାଇବା ଆବଶ୍ୟକ । ଏତେ ବଡ଼ ଲମ୍ଫଦେଇ ଯିବା ଆମ ପକ୍ଷରେ ସମ୍ଭବ ନଥିଲା । ଅତଏବ, ଆମର ଲକ୍ଷ୍ୟ ରହିଲା ଦଶବର୍ଷ ଭିତରେ ଶତକଡ଼ା ଦୁଇ ଶହରୁ ତିନି ଶହ ପର୍ଯ୍ୟନ୍ତ ବୃଦ୍ଧି ।

ଯୋଜନା ପାଇଁ ଆମେ ଦଶବର୍ଷର ଏକ ପର୍ଯ୍ୟାୟ ନିର୍ଦ୍ଧାରଣ କଲୁ ଓ ସେଥିରେ ଭିନ୍ନ ଭିନ୍ନ ସମୟ ଓ ଅର୍ଥନୈତିକ ଜୀବନର ଭିନ୍ନ ଭିନ୍ନ ଅଂଶ ନିମନ୍ତେ ନିସ୍ପନ୍ଧିତ ସଂଖ୍ୟା ନିର୍ଣ୍ଣୟ କଲୁ । ଏ ସମ୍ପର୍କରେ ଲକ୍ଷ୍ୟ ବିଷୟକ କେତେକ ପରାମର୍ଶ ଦିଆଗଲା :

(୧) ଶରୀର ପୁଷ୍ଟି ନିମନ୍ତେ ପ୍ରତ୍ୟେକ କାର୍ଯ୍ୟକ୍ଷମ ଶ୍ରମଜୀବୀ ପକାଶେ ୨୦୦୦ରୁ ୨୮୦୦ ନ୍ୟୂନଟ କେଲୋରି ବିଶିଷ୍ଟ ସୁଷମ ଖାଦ୍ୟ;

(୨) ବସ୍ତ୍ର ଦିଗରେ ବର୍ତ୍ତମାନର ପନ୍ଦର ଗଜ ସ୍ଥାନରେ ବର୍ଷରେ ମୁଣ୍ଡପିଚ୍ଛା ଅନ୍ତତଃ ତିରିଶି ଗଜ ବସ୍ତ୍ର ବ୍ୟବହୃତ ହେଉ;

(୩) ବାସ ଦିଗରେ ମୁଣ୍ଡପିଚ୍ଛା ଅତିକମ୍‌ରେ ଶହେ ବର୍ଗଫୁଟର ବ୍ୟବସ୍ଥା ଦରକାର ।

ଆହୁରି ମଧ୍ୟ ପ୍ରଗତି ନିମନ୍ତେ ଅନ୍ୟ କେତେକ ବିଷୟ ଉପରେ ଦୃଷ୍ଟି ରଖିବାକୁ ହେବ : (୧) କୃଷି ଉତ୍ପାଦନ ବୃଦ୍ଧି, (୨) ଶିଳ୍ପ ଉତ୍ପାଦନ ବୃଦ୍ଧି, (୩) ବେକାର ସଂଖ୍ୟାର କ୍ରମିକ ହ୍ରାସ ସାଧନ, (୪) ମୁଣ୍ଡପିଚ୍ଛା ଆୟ ବୃଦ୍ଧି, (୫) ନିରକ୍ଷରତା ଦୂରୀକରଣ, (୬) ସର୍ବସାଧାରଣ ସେବା ବ୍ୟବସ୍ଥାର ବିସ୍ତାର, (୭) ଏକ ହଜାର ଜନସଂଖ୍ୟା ଭିତ୍ତିରେ ଚିକିତ୍ସା କେନ୍ଦ୍ର ସ୍ଥାପନ ବ୍ୟବସ୍ଥା ଓ (୮) ଜୀବନର ହାରାହାରି କାଳ ବୃଦ୍ଧି ।

ସାମଗ୍ରିକ ଭାବରେ ଆମର ଉଦ୍ଦେଶ୍ୟ ଥିଲା ଯେତେଦୂର ସମ୍ଭବ ଦେଶକୁ ସ୍ୱୟଂସମ୍ପୂର୍ଣ୍ଣ କରି ଗଢ଼ିବା । ଆନ୍ତର୍ଜାତିକ ବାଣିଜ୍ୟ ବିଷୟରେ ବି ଆମେ ଧ୍ୟାନ ଦେଇଥିଲୁ; କିନ୍ତୁ ଅର୍ଥନୈତିକ ସାମ୍ରାଜ୍ୟବାଦର ଆବର୍ତ୍ତ ଭିତରକୁ ଆମେ ଯେପରି ଟାଣିହୋଇ ନଯାଉ ସେଥି

ନିମନ୍ତେ ସତର୍କ ଥିଲୁ । କୌଣସି ସାମ୍ରାଜ୍ୟବାଦୀ ଶକ୍ତିର ଶିକାର ହେବାକୁ ଆମେ ଚାହୁଁ-ନଥିଲୁ କିମ୍ବା ନିଜେ ସାମ୍ରାଜ୍ୟବାଦୀ ହେବାର ମନୋବୃତ୍ତି ପୋଷଣ କରୁନଥିଲୁ । ଦେଶର ଉତ୍ପାଦନ ଉପରେ ଆମର ପ୍ରଥମ ଦାବି ଥିଲା, ଆମର ଖାଦ୍ୟ, କଞ୍ଚାମାଲ ଓ ଉତ୍ପାଦିତ ଦ୍ରବ୍ୟର ଚାହିଦା ମେଣ୍ଟାଇବା । ଉଦ୍‌ବୃତ୍ତ ଉତ୍ପାଦନ ବିଦେଶରେ ନେଇ ଗଦେଇବା ଆମେ ଚାହୁଁ ନଥିଲୁ । ଆମେ ଚାହୁଁଥିଲୁ ତା'ର ବିନିମୟରେ ଆମର ଆବଶ୍ୟକୀୟ ଦ୍ରବ୍ୟ ଆମଦାନୀ କରିବା ପାଇଁ । ଆମେ ବୁଝୁଥିଲୁ ଯେ, ରପ୍ତାନି ବଜାର ଉପରେ ଆମର ଜାତୀୟ ଅର୍ଥନୀତି ଯଦି ନିର୍ଭର କରିଯାଏ, ତାହାହେଲେ ଅନ୍ୟ ଜାତିମାନଙ୍କ ସଙ୍ଗେ ସଂଘର୍ଷର ଆଶଙ୍କା ବରାବର ରହିବ ଏବଂ ସେ ସବୁ ରପ୍ତାନି ବଜାର ଯଦି ବନ୍ଦ ହୋଇଯାଏ ଅକସ୍ମାତ୍ ଆମର ସବୁକିଛି ବାଣିଜ୍ୟ ବ୍ୟବସ୍ଥା ଓଲଟ ପାଲଟ ହୋଇଯିବ ।

ଅତଏବ, ଆମେ ଯଦିଓ କୌଣସି ସୁନିର୍ଦ୍ଦିଷ୍ଟ ସାମାଜିକ ସିଦ୍ଧାନ୍ତ ନେଇ କାର୍ଯ୍ୟାରମ୍ଭ କରି-ନଥିଲୁ, ଆମର ସାମାଜିକ ଲକ୍ଷ୍ୟ କିନ୍ତୁ ଯଥେଷ୍ଟ ପରିମାଣରେ ସ୍ପଷ୍ଟ ଥିଲା ଏବଂ ତାହା ଯୋଜନା ନିମନ୍ତେ ଏକ ସାର୍ବଜନୀନ ଭିତ୍ତି ଅର୍ପଣ କଲା । ଏହି ଯୋଜନାର ସାରବସ୍ତୁ ଥିଲା ବ୍ୟାପକ ନିୟମନ ଓ ସହଯୋଜନ । ଏପରି ଭାବରେ କଟକଣାହୀନ ଉଦ୍ୟୋଗକୁ ବାଦ ଦିଆଯାଉନଥିଲେ ସୁଦ୍ଧା ତା'ର ପରିସର ଯଥେଷ୍ଟ ଭାବରେ ସଙ୍କୁଚିତ ରଖାଯାଇଥିଲା । ପ୍ରତିରକ୍ଷା ସମ୍ବନ୍ଧୀୟ ଶିଳ୍ପସଂସ୍ଥାଗୁଡ଼ିକର ସଂଗଠନ ଓ ନିୟନ୍ତ୍ରଣ ସରକାରଙ୍କ ହାତରେ ଛାଡ଼ିଦେବା ନିଷ୍ପତ୍ତି କରାଗଲା । ଅନ୍ୟାନ୍ୟ ମୌଳିକ ଭାରୀଶିଳ୍ପ ସମ୍ପର୍କରେ କମିଟିର ସଂଖ୍ୟାଗରିଷ୍ଠ ମତ ହେଲା ଯେ ସେସବୁ ମଧ୍ୟ ସରକାର ନିଜ ସ୍ୱତ୍ୱରେ ରଖନ୍ତୁ; କିନ୍ତୁ ଏକ ବଳିଷ୍ଠ ସଂଖ୍ୟାଲଘୁ ମତ ହେଲା, ସେଗୁଡ଼ିକ ସରକାରୀ ନିୟନ୍ତ୍ରଣାଧୀନ ରହିବା ଯଥେଷ୍ଟ ହେବ । ଅବଶ୍ୟ ସେ ପ୍ରକାର ନିୟନ୍ତ୍ରଣ ଖୁବ୍ ଶୃଙ୍ଖଳା ସହକାରେ କାର୍ଯ୍ୟକାରୀ ହେବା ଦରକାର । ସର୍ବସାଧାରଣ ସେବା ସମ୍ବନ୍ଧୀୟ ସଂସ୍ଥାଗୁଡ଼ିକ ବିଷୟରେ ମଧ୍ୟ ନିଷ୍ପତ୍ତି ନିଆଗଲା ଯେ ସେ ସବୁ ଉପରେ ରାଷ୍ଟ୍ରର କୌଣସି ପ୍ରତିନିଧି ଅର୍ଥାତ୍ କେନ୍ଦ୍ର ସରକାର; ପ୍ରଦେଶ ସରକାର ଅଥବା କୌଣସି ସ୍ଥାନୀୟ ପରିଷଦର କର୍ତ୍ତୃତ୍ୱ ରହୁ । ଏ ସମ୍ପର୍କରେ ସୂଚିତ କରାଗଲା ଯେ ଲଣ୍ଡନ ଟ୍ରାନ୍‌ସପୋର୍ଟ ବୋର୍ଡ ଭଳି କୌଣସି ସଂସ୍ଥା ଏହାର କର୍ତ୍ତୃତ୍ୱ କରିବା ଠିକ୍ ହେବ । ଅନ୍ୟ ସବୁ ଗୁରୁତ୍ୱପୂର୍ଣ୍ଣ ତଥା ଅପରିହାର୍ଯ୍ୟ ଶିଳ୍ପ ସମ୍ପର୍କରେ ଯଦିଓ କୌଣସି ବିଶେଷ ନିୟମ ରଖା ନଗଲା, ତଥାପି ଏକଥା ସ୍ପଷ୍ଟ କରି ଦିଆଗଲା ଯେ ଯୋଜନାର ପ୍ରକୃତି ହେଉଚି କିଛି ନା କିଛି ନିୟନ୍ତ୍ରଣ ଆରୋପ କରିବା ଏବଂ ତା'ର ପରିମାଣ ଶିଳ୍ପ ଶିଳ୍ପ ଭିତରେ କମ୍ ବେଶି ହୋଇପାରେ ।

ରାଷ୍ଟ୍ର ମାଲିକାନାର ଶିଳ୍ପଗୁଡ଼ିକର ଏଜେନ୍‌ସି ବା କାରକତା ସମ୍ପର୍କରେ ଆମର ପରାମର୍ଶ ହେଲା ଯେ ଗୋଟାଏ ସ୍ୱଶାସିତ ସର୍ବସାଧାରଣ ଟ୍ରଷ୍ଟ ବା ନ୍ୟାସ ହେବ ଉପଯୁକ୍ତ ବ୍ୟବସ୍ଥା । ସେପରି ଏକ ନ୍ୟାସ ରାଷ୍ଟ୍ରୀୟ ମାଲିକାନା ଓ ନିୟନ୍ତ୍ରଣ ନିଶ୍ଚିତ କରିବ ଏବଂ ସଙ୍ଗେ ସଙ୍ଗେ ସେହି ସବୁ ଅସୁବିଧା ଓ ଅପାରଗତା ଏଡ଼ାଇ ପାରିବ, ଯାହା କେବେ କେବେ ପ୍ରତ୍ୟକ୍ଷ ଗଣତାନ୍ତ୍ରିକ ନିୟନ୍ତ୍ରଣ ବ୍ୟବସ୍ଥାରେ ଦେଖାଦେଇଥାଏ । ଆମର ଆଉ ଏକ

ପରାମର୍ଶ ହେଲା ଯେ ଶିଳ୍ପ କ୍ଷେତ୍ରରେ ସମବାୟୀ ମାଲିକାନା ଓ ନିୟନ୍ତ୍ରଣ ବ୍ୟବସ୍ଥା ବି ଭଲ ହେବ । ଯୋଜନା କାର୍ଯ୍ୟକାରୀ ହେବା ବେଳେ ଶିଳ୍ପର ସମସ୍ତ ଶାଖା ପ୍ରଶାଖାରେ କି ପ୍ରକାର ଉନ୍ନତି ଘଟୁଚି, ତାହା ଭିନ୍ନ ଭିନ୍ନ ଭାବରେ ସମୀକ୍ଷା କରିବା ଏବଂ ସାମଗ୍ରିକ ଭାବରେ କେତେ ଭଲ ପ୍ରଗତି ସାଧିତ ହେଉଚି, ପର୍ଯ୍ୟାୟକ୍ରମେ ତାହା ନିରୀକ୍ଷା କରିବା ନିତାନ୍ତ ଆବଶ୍ୟକ । ଏହାର ଅର୍ଥ ଶିଳ୍ପର ସମ୍ପ୍ରସାରଣ ନିମନ୍ତେ ଆବଶ୍ୟକୀୟ ଭାବରେ ପ୍ରକର୍ମୀ-ମାନଙ୍କୁ ତାଲିମ୍ ଦେବା ଏବଂ ଏ ପ୍ରକାର ତାଲିମ୍‌ର ବ୍ୟବସ୍ଥା ଶିଳ୍ପ ସଂସ୍ଥାମାନଙ୍କରେ କରାଯିବା ପାଇଁ ସରକାର ନିର୍ଦ୍ଦେଶ ଦେବେ । ଜମି ସମ୍ପର୍କରେ କେତେକ ସାଧାରଣ ନୀତି ବିସ୍ତାର କରାଗଲା । 'କୃଷିଜମି, ଖଣି, କ୍ୱାରି ବା ପଥର ଖାଦ, ନଦୀ ଓ ଜଙ୍ଗଲ ହେଉଚି ଜାତୀୟ ସମ୍ପଦ ଏବଂ ସେସବୁ ଉପରେ ଅଦ୍ୱିତୀୟ ମାଲିକାନା ପ୍ରତିଷ୍ଠିତ ହେବ ଭାରତୀୟ ଜନସାଧାରଣଙ୍କର ସାମୂହିକ ଭାବରେ ।' କୃଷି କ୍ଷେତ୍ରରେ କୋଠ ଖମାର ଓ ସମବାୟ ଖମାର ଜରିଆରେ ସମବାୟ ନୀତି ପ୍ରୟୋଗ କରିବାକୁ ହେବ । ଅନ୍ତତଃ ଆରମ୍ଭରେ । ଏପରି କିଛି ପ୍ରସ୍ତାବ ନଥିଲା ଯାହା ଅନୁସାରେ ଚାଷୀ ତା'ର ନିଜ କ୍ଷେତରେ କିମ୍ବା ଚକବନ୍ଦି ଭାବରେ ଚାଷ କରିବା ଉପରେ କୌଣସି ଆପତ୍ତି ରହିବ ନାହିଁ; କିନ୍ତୁ ତାଲୁକଦାର ଆଉ ଜମିଦାର ଭଳି ମଧ୍ୟସ୍ୱତ୍ୱାଧିକାରୀଙ୍କ ପ୍ରଥମ ଅବସ୍ଥାନର ପରେ ମୋଟେ ବରଦାସ୍ତ କରାଯିବ ନାହିଁ । ଏହିସବୁ ଶ୍ରେଣୀଙ୍କ ହାତରେ ଯେଉଁ ଅଧିକାର ରହିଚି, ତାହା କ୍ରମଶଃ କିଣି ନେବାକୁ ହେବ । ଆବାଦଯୋଗ୍ୟ ପଡ଼ିଆଜମିରେ ସରକାର ଅବଲମ୍ବେ କୋଠ ଖମାରମାନ ସ୍ଥାପନ କରିବେ । ସମବାୟ ଚାଷ ଦୁଇ ଧରଣର ହେଇପାରେ; ବ୍ୟକ୍ତି ଅଥବା ପରିବାର ସଙ୍ଗେ ସମ୍ମିଳିତ ଭାବରେ । ସର୍ବାଙ୍ଗୀନ ବିକାଶ ନିମନ୍ତେ ସେ ଦିଗରେ କିଛି ସ୍ୱତନ୍ତ୍ରତା ଦିଆଯାଇଥିଲା; କାରଣ ଅଭିଜ୍ଞତା ବୃଦ୍ଧି ସଙ୍ଗେ ନିର୍ଦ୍ଦିଷ୍ଟ କେଉଁ ଧରଣର ବ୍ୟବସ୍ଥା ଫଳପ୍ରଦ ହେଇ ପାରୁଚି ବୁଝିହେବ ଓ ବିହିତ ଉତ୍ସାହ ସେଥି ନିମନ୍ତେ ଦିଆଯାଇ ପାରିବ ।

ଆମେ କିମ୍ବା ଏପରି କୁହାଯାଇ ପାରେ ଯେ ଆମ ଭିତରୁ କେତେ ଜଣ ଅବଶ୍ୟ ଏକ ସମାଜବାଦୀ ଋଣ ବ୍ୟବସ୍ଥା ଉଦ୍‌ଭାବନ କରିବା ଆଶା ରଖିଥିଲୁ । ବ୍ୟାଙ୍କ୍, ଜୀବନବୀମା କମ୍ପାନୀ ସବୁ ଯଦି ଜାତୀୟକରଣ କରା ନଯାଉଚି, ଅନ୍ତତଃ ସେସବୁ ସରକାରୀ ନିୟନ୍ତ୍ରଣାଧୀନ ରହିଲେ କ୍ରମଶଃ ପୁଞ୍ଜି ଓ ତା'ର ସଞ୍ଚାର ବ୍ୟବସ୍ଥା ସମ୍ପୂର୍ଣ୍ଣ ରାଷ୍ଟ୍ରାୟତ୍ତ କରାଯାଇ ପାରିବ । ଆମଦାନୀ ଓ ରପ୍ତାନୀ ବାଣିଜ୍ୟ ଉପରେ ନିୟନ୍ତ୍ରଣ ଜାରି କରିବା ବି ବାଞ୍ଛନୀୟ । ଏ ପ୍ରକାର ବିବିଧ ଉପାୟରେ, କୃଷି ଓ ଶିଳ୍ପକ୍ଷେତ୍ର ଉପରେ, ସାମଗ୍ରିକ ଭାବରେ କମ୍ ବହୁତରେ ଏବଂ ଗୋଟାଏ ନିର୍ଦ୍ଦିଷ୍ଟ ଗଣ୍ଡି ମଧ୍ୟରେ ବ୍ୟକ୍ତିଗତ ପ୍ରଚେଷ୍ଟା କାର୍ଯ୍ୟକାରୀ ହେବା ପାଇଁ ଛାଡ଼ିଦେଇ, ବିସ୍ତୃତ ଭାବରେ ରାଷ୍ଟ୍ରର ନିୟନ୍ତ୍ରଣ ପ୍ରତିଷ୍ଠା କରିହେବ ।

ଏପରି ଭାବରେ, ବିଶେଷ ସମସ୍ୟାଗୁଡ଼ିକର ବିବେଚନା ଜରିଆରେ ଆମେ କ୍ରମଶଃ ଆମର ସାମାଜିକ ନୀତି ଓ ଲକ୍ଷ୍ୟ ବିକାଶ କଲୁ । ଏହାକୁ ଏକ ପୂର୍ଣ୍ଣାଙ୍ଗ ପରିକଳ୍ପ ବୋଲି ସିଦ୍ଧାନ୍ତ ଦୃଷ୍ଟିରୁ କୁହାଯାଇ ନପାରେ; କାରଣ ଏଥିରେ କିଛି ବ୍ୟବଧାନ ରହି ଯାଉଥିଲା; କିଛି ଅସ୍ପଷ୍ଟତା ଓ କେତେ ପରିମାଣରେ ଅସଙ୍ଗତି ମଧ୍ୟ ଥିଲା । ଆମ କମିଟିରେ ନାନା

ମତର ଲୋକେ ଥିବା ସତ୍ତ୍ୱେ ଆମେ ଯେ ବହୁତ କଥାରେ ଏକମତ ହୋଇ ପାରିଥିଲୁ, ସେଥିରେ ମୁଁ ଆନନ୍ଦିତ ଓ ବିସ୍ମିତ ହୋଇଥିଲି । ଆମ ଭିତରେ ବଡ଼ ବ୍ୟବସାୟୀମାନେ ଥିଲେ ଏକକ ବୃହତ୍ତମ ଗୋଷ୍ଠୀ ଏବଂ ବହୁତ ବିଷୟରେ ବିଶେଷତଃ ଅର୍ଥ ଓ ବାଣିଜ୍ୟ ସମ୍ବନ୍ଧରେ ସେମାନଙ୍କର ଦୃଷ୍ଟିଭଙ୍ଗୀ ଥିଲା ନିଶ୍ଚିତ ଭାବରେ ରକ୍ଷଣଶୀଳ । ତଥାପି ଦ୍ରୁତ ପ୍ରଗତି ସାଧନ ନିମନ୍ତେ ଆମର ପ୍ରେରଣା ଏତେ ପ୍ରବଳ ଥିଲା ଯେ ଏବଂ ଦ୍ରୁତ ପ୍ରଗତି ମାଧ୍ୟମରେ କେବଳ ଆମର ଦରିଦ୍ରତା ଓ ବେକାର ସମସ୍ୟାର ସମାଧାନ କରାଯାଇ ପାରିବ ବୋଲି ଆମର ଧାରଣା ଏତେ ଦୃଢ଼ଥିଲା ଯେ ଆମେ ନିଜ ନିଜ ଗଣ୍ଡି ମଧ୍ୟରୁ ବାହାରିଆସି ନୂତନ ମାର୍ଗରେ ଚିନ୍ତା କରିବାକୁ ବାଧ୍ୟ ହେଉଥିଲୁ । କୌଣସି ବିଷୟ ପ୍ରତି ଗୋଟାଏ ତାତ୍ତ୍ୱିକ ଆଭିମୁଖ୍ୟର ପ୍ରୟୋଗ ଏଡ଼ାଇବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ବାସ୍ତବ ସମସ୍ୟାକୁ ତାର ବୃହତ୍ତର ପରିପ୍ରେକ୍ଷୀରୁ ଦେଖିଥିଲୁ । ଏ ପ୍ରକାର ଦୃଷ୍ଟିଭଙ୍ଗୀ ଅପରିହାର୍ଯ୍ୟ ଭାବରେ ଆମକୁ ଏକ ନିର୍ଦ୍ଦିଷ୍ଟ ଦିଗରେ ପରିଚାଳିତ କଲା । ଯୋଜନା କମିଟି ସଭ୍ୟମାନଙ୍କର ସହଯୋଗମୂଳକ ମନୋବୃତ୍ତି ମୋ ପକ୍ଷରେ ଗୋଟାଏ ବିଶେଷ କୃତଜ୍ଞତା ଓ ସନ୍ତୋଷର କାରଣ ଥିଲା । ରାଜନୈତିକ ବିବାଦ ସଙ୍ଗେ ତୁଳନା କରି ଦେଖିଲେ ଏହି ପରିବେଶ ବାସ୍ତବିକ ଥିଲା ସୁଖଦାୟକ । ଆମେ ଆମର ଦୃଷ୍ଟିଭଙ୍ଗୀର ବିଭିନ୍ନତା ସମ୍ପର୍କରେ ସଚେତନ ଥିଲୁ; ତଥାପି ଏକମତ ହେବା ପାଇଁ ଆମର ଉଦ୍ୟମର ଅଭାବ ନଥିଲା ଏବଂ ପ୍ରତ୍ୟେକ ଦୃଷ୍ଟିକୋଣ ଭଲ ଭାବରେ ବିବେଚନା କଲାପରେ, ସମସ୍ତଙ୍କ ପକ୍ଷରେ କିମ୍ବା ଅଧିକାଂଶଙ୍କ ପକ୍ଷରେ ଗ୍ରହଣଯୋଗ୍ୟ ଗୋଟାଏ ସମ୍ମିଳିତ ନିଷ୍ପତ୍ତିରେ ଉପନୀତ ହେବା ଦିଗରେ ଆମେ ବହୁଧା ସଫଳତା ଅର୍ଜନ କରିଥିଲୁ ।

ଆମ କମିଟିରେ କେବଳ ନୁହେଁ, ଦେଶର ବୃହତ୍ତର ପରିପ୍ରେକ୍ଷୀରେ ମଧ୍ୟ ଆମେ ଯେଭଳି ଭାବରେ ଥିଲୁ, ସମାଜବାଦର କୌଣସି ବିଧିବଦ୍ଧ ବିଗ୍ରହର ଅନୁସରଣ କରି ସେତେବେଳେ ଯୋଜନା କରିପାରି ନଥାନ୍ତୁ; ତଥାପି ଯୋଜନାର ବିକାଶ ସଙ୍ଗେ ସଙ୍ଗେ ମତେ ସ୍ପଷ୍ଟ ପ୍ରତୀତ ହେଉଥିଲା ଯେ ଆମେ ଅନିବାର୍ଯ୍ୟ ଭାବରେ ସମାଜବାଦୀ ବ୍ୟବସ୍ଥାର କେତେକ ମୌଳିକ ଭିତ୍ତି ସ୍ଥାପନ ଦିଗରେ ଅଗ୍ରସର ହେଉଚୁ । ସମାଜର ସଞ୍ଚୟ ବୃତ୍ତି ଉପରେ ଏହା ସୀମା ଧାର୍ଯ୍ୟ କରୁଥିଲା, ଅଭିବୃଦ୍ଧିର ବହୁତ କିଛି ପ୍ରତିବନ୍ଧକ ଅପସାରଣ କରୁଥିଲା ଏବଂ ଏପରି ଭାବରେ ଏକ ଦ୍ରୁତ ପ୍ରସାରଣଶୀଳ ସାମାଜିକ ବ୍ୟବସ୍ଥା ଦିଗରେ ଧାବିତ ହେଉଥିଲା । ଏହା ଭିତ୍ତି କରିଥିଲା ସାଧାରଣ ଲୋକର କଲ୍ୟାଣଚିନ୍ତା ଉପରେ, ତା'ର ବିବିଧ ମାନଦଣ୍ଡ ଉନ୍ନତ କରିବା ଉପରେ, ଅଭିବୃଦ୍ଧି ନିମନ୍ତେ ତାକୁ ନାନାବିଧ ସୁଯୋଗ ଯୋଗାଇବା ଉପରେ ଏବଂ ଏପରି ଭାବରେ ତା'ର ଅନ୍ତର୍ନିହିତ ପ୍ରତିଭା ଓ ଆବଦ୍ଧ ସାମର୍ଥ୍ୟ ମୁକ୍ତ କରିବା ଉପରେ । ଏସବୁ ଉଦ୍ୟମ କରିବାର ଥିଲା ଗଣତାନ୍ତ୍ରିକ ସ୍ୱାଧୀନତାର ପ୍ରକରଣରେ ଏବଂ ସାଧାରଣତଃ ସମାଜବାଦୀ ସିଦ୍ଧାନ୍ତ ବିରୋଧୀ ଗୋଷ୍ଠୀମାନଙ୍କ ଭିତରୁ ଅନ୍ତତଃ କେତେକଙ୍କର ସାଧ୍ୟମତ ସହଯୋଗ ନେଇ । କେତେକ ଦିଗରେ ଯୋଜନାକୁ ଦୁର୍ବଳ କରିଗଲେ ସୁଦ୍ଧା ଏହି ସହଯୋଗ ମତେ ଗ୍ରହଣଯୋଗ୍ୟ ମନେ ହେଉଥିଲା, ଉଚିତ ମାର୍ଗରେ ବଡ଼ ଏକ ପଦକ୍ଷେପ

ନିଆଗଲେ ମୋର ମନେ ହେଉଥିଲା ପରିବର୍ତ୍ତନ ପ୍ରକ୍ରିୟାର ବେଗ ଫଳରେ ଅଧିକତର ମେଳ, ରକ୍ଷା ଓ ପ୍ରଗତି ସହଜେ ହୋଇପାରିବ । ହୁଏତ ମୁଁ ଅତିମାତ୍ରାରେ ଆଶାବାଦୀ ଥିଲି । ସଂଘର୍ଷ ଯଦି ଅନିବାର୍ଯ୍ୟ ହୁଏ, ତାର ସମ୍ମୁଖୀନ ହେବାକୁ ପଡ଼ିବ । ଯଦି ଏଡ଼ାଇଯିବା ସମ୍ଭବ ହୁଏ କିମ୍ବା କମ୍ କରି ଦିଆଯାଇ ପାରେ, ତାହାହେଲେ କ୍ଷତି କିଛି ନାହିଁ । ବିଶେଷତଃ ରାଜନୈତିକ କ୍ଷେତ୍ରରେ ଆମେ ସଂଘର୍ଷ ଭିତରେ ଥିଲୁ କହିଲେ ଚଳେ ଏବଂ ଭବିଷ୍ୟତରେ ବି ଅନିଶ୍ଚିତ ଅବସ୍ଥା ନିମନ୍ତେ ଯଥେଷ୍ଟ ପରିମାଣରେ ଅବକାଶ ରହିଥିଲା । ଏପରି ଭାବରେ ଗୋଟାଏ ଯୋଜନା ପ୍ରତି ସର୍ବସାଧାରଣ ସମ୍ମତିର ମୂଲ୍ୟ ପ୍ରକୃତରେ ଥିଲା ଉପାଦେୟ । କୌଣସି ଆଦର୍ଶବାଦୀ ଧାରଣା ଉପରେ ଭିତ୍ତିକରି ପ୍ରାଥମିକ ପରିକଳ୍ପନା କରିବା ଯଥେଷ୍ଟ ସହଜ; କିନ୍ତୁ ଯେପରି ଏକ ଯୋଜନାର ସନ୍ତୋଷଜନକ କାର୍ଯ୍ୟକାରିତା ନିମନ୍ତେ ଆବଶ୍ୟକୀୟ ସାର୍ବଜନୀନ ସମ୍ମତି ଓ ସମର୍ଥନ ଲାଭକରିବା ଅତୀବ କଷ୍ଟକର ।

ଯଦିଓ ଯୋଜନା ଅନିବାର୍ଯ୍ୟ ଭାବରେ ବହୁତ ପରିମାଣରେ ନିୟନ୍ତ୍ରଣ ଓ ସଂଯୋଜନା ଆବଶ୍ୟକ କରେ ଏବଂ କେତେକ ପରିମାଣରେ ବ୍ୟକ୍ତିଗତ ସ୍ୱାଧୀନତାରେ ହସ୍ତକ୍ଷେପ କରେ; ତଥାପି ଆଜିର ଭାରତର ପ୍ରକରଣରେ ପ୍ରକୃତରେ ଅଧିକତର ସ୍ୱାଧୀନତାହାସଲ ଦିଗରେ ହିଁ ତା'ର ଗତି ନିର୍ଦ୍ଧାରିତ ହେବ । ଆମର ଯେଉଁଭଳି କିଛି ମହତ୍ତ୍ୱପୂର୍ଣ୍ଣ ସ୍ୱାଧୀନତା ନଥିଲା; ଯାହା ଆମେ ହରାଇବାକୁ ଯାଉଥିଲୁ । ବରଂ ଆମେ ସ୍ୱାଧୀନତା ଅର୍ଜନ କରୁଥିଲୁ । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପ୍ରତି ଆମେ ଯଦି ଅନୁରକ୍ତ ରହୁ ଏବଂ ସହଯୋଗମୂଳକ ଉଦ୍ୟୋଗକୁ ଉତ୍ସାହିତ କରୁ, ତାହାହେଲେ ସମତାର କେନ୍ଦ୍ରୀକରଣ ଓ କଠୋର ଶୃଙ୍ଖଳାର ଶାସନଜନିତ ବହୁତ କିଛି ବିପଦ ଏଡ଼ାଇଯିବା ସମ୍ଭବ ହେବ ।

ଆମର ପ୍ରଥମ ଅଧିବେଶନରେ ଆମେ ଏକ ଦୀର୍ଘ ପ୍ରଶ୍ନମାଳା ପ୍ରସ୍ତୁତ କରିଥିଲୁ, ଯାହା ପ୍ରାଦେଶିକ ସରକାରମାନଙ୍କୁ ଏବଂ ସର୍ବସାଧାରଣ ସଂସ୍ଥା, ବିଶ୍ୱବିଦ୍ୟାଳୟ, ବଣିକ ସଙ୍ଘ, ଶ୍ରମିକ ସଙ୍ଘ, ଗବେଷଣାଗାର ତଥା ଅନ୍ୟାନ୍ୟ ସଂସ୍ଥାମାନଙ୍କୁ ପଠାଗଲା । ନିର୍ଦ୍ଦିଷ୍ଟ ସମସ୍ୟା-ମାନଙ୍କ ବିଷୟରେ ଅନୁସନ୍ଧାନ କରି ରିପୋର୍ଟ ଦେବା ପାଇଁ ୨୯ ଗୋଟି ସବ୍‌କମିଟି ମଧ୍ୟ ନିଯୁକ୍ତ ହୋଇଥିଲେ । ସେଥି ଭିତରୁ ଆଠଗୋଟି କୃଷିକ୍ଷେତ୍ରର ବିବିଧ ସମସ୍ୟା ବିଷୟ ବୁଝୁଥିଲେ, ଆଉ କେତେଗୋଟି ଶିଳ୍ପକ୍ଷେତ୍ରର ଦାୟିତ୍ୱ ନେଇଥିଲେ; ଅର୍ଥ ଓ ବାଣିଜ୍ୟ ପାଇଁ ଥିଲା ପାଞ୍ଚଗୋଟି; ଦୁଇଟି କରି ପରିବହନ, ଶିକ୍ଷା, ଜନମଙ୍ଗଳ; ଲୋକ ସମ୍ପର୍କ ତଥା ସାମାଜିକ ସ୍ଥିତି ବିବେଚନା ନିମନ୍ତେ ନିଯୁକ୍ତ ଥିଲେ । ଆଉ ଗୋଟିଏ କମିଟି ନିଯୁକ୍ତ ଥିଲା ଯୋଜନାକୃତ ଅର୍ଥନୀତିରେ ନାରୀର ଭୂମିକା ସମ୍ପର୍କରେ । ଏ ସମସ୍ତ ସବ୍‌କମିଟିର ସଭ୍ୟ ସଂଖ୍ୟା ଥିଲା ପ୍ରାୟ ତିନିଶହ ପଚିଶ ଏବଂ କେହି କେହି ଏକାଧିକ ସବ୍‌କମିଟିର ସଭ୍ୟ ବି ଥିଲେ । ଏମାନଙ୍କ ଭିତରୁ ଅଧିକାଂଶ ନିଜ ନିଜ କ୍ଷେତ୍ରରେ ବିଶେଷଜ୍ଞ ଥିଲେ—ବ୍ୟବସାୟୀ, ସରକାରୀ ଓ ନଗରପାଳିକା କର୍ମଚାରୀ, ବିଶ୍ୱବିଦ୍ୟାଳୟର ଅଧ୍ୟାପକ, ବୈଜ୍ଞାନିକ, ଇଞ୍ଜି-ନିଅର ଟ୍ରେଡ୍ ୟୁନିଅନ ସଭ୍ୟନ୍ ଏବଂ ପୁଲିସ ବିଭାଗର କର୍ମଚାରୀ । ଏପରିଭାବରେ ଦେଶରେ ଲଭ୍ୟ ପ୍ରତିଭା ଭିତରୁ ବହୁତ କିଛି ଆମେ ଏକାଠି କରିପାରିଥିଲୁ । ଆମ ସଙ୍ଗେ ସହଯୋଗ

କରିବା ପାଇଁ ବ୍ୟକ୍ତିଗତ ଭାବରେ ଇଚ୍ଛୁକ ଥିଲେ ସୁଦ୍ଧା ଯେଉଁମାନେ ଅନୁମତି ପାଇନଥିଲେ ସେମାନେ ହେଉଚନ୍ତି ଭାରତ ସରକାରଙ୍କ କର୍ମଚାରୀ । ଆମ କାର୍ଯ୍ୟରେ ଏତେ ଲୋକ ସମ୍ମିଳିତ ହେବା ନାନା ଭାବରେ ଆମ ପକ୍ଷରେ ସହାୟକ ହେଲା । ସେମାନଙ୍କର ବିଶେଷ ଜ୍ଞାନ ଅଭିଜ୍ଞତାର ସୁବିଧା ଆମେ ପାଇଲୁ ଏବଂ ସେମାନେ ମଧ୍ୟ ଏକ ବିସ୍ତୃତ ପରିପ୍ରେକ୍ଷୀରେ ସେମାନଙ୍କର ବିଶେଷଜ୍ଞାନ ପ୍ରୟୋଗ କରିବାର ଅବକାଶ ଲାଭକଲେ । ସମଗ୍ର ଦେଶରେ ମଧ୍ୟ ଏହା ଯୋଜନା ପ୍ରତି ଅଧିକତର ଆଗ୍ରହ ସୃଷ୍ଟି କଲା; କିନ୍ତୁ ଏତେ ସଂଖ୍ୟା-ବହୁଳତା ଗୋଟାଏ ଦିଗରେ ଅସୁବିଧା ମଧ୍ୟ ସୃଷ୍ଟି କରିଥିଲା; କାରଣ ଏକ ବିଶାଳ ଦେଶର ବିଭିନ୍ନ ପ୍ରାନ୍ତରୁ ଆସି ବାରମ୍ବାର ମିଳିତ ହେବାରେ ଅନିବାର୍ଯ୍ୟ ଭାବରେ ବିଳମ୍ବ ଘଟିଥାଏ ।

ଜାତୀୟ କର୍ମଜଞ୍ଜାଳର ସମସ୍ତ ବିଭାଗରୁ ଆଗତ ପ୍ରତିଭାବାନ୍ ତଥା ସମର୍ଥ ଲୋକଙ୍କ ସମ୍ପର୍କରେ ଆସିବା'ରେ ମୁଁ ଆନନ୍ଦ ଅନୁଭବ କରୁଥିଲି ଏବଂ ଏଥିଦ୍ୱାରା ଅନେକ ବିଷୟରେ ମୋର ବି ଶିକ୍ଷା ଲାଭ ହେଉଥିଲା । ଆମେ ଏକ କାର୍ଯ୍ୟ ପ୍ରଣାଳୀ ଅନୁସରଣ କରିଥିଲୁ : ପ୍ରତ୍ୟେକ ସବ୍‌କମିଟି ଏକ ମଧ୍ୟବର୍ତ୍ତୀକାଳୀନ ପ୍ରତିବେଦନ ବା ରିପୋର୍ଟ ଦେଇଥାନ୍ତି, ଯାହା ଉପରେ ଯୋଜନା କମିଟି ବିଚାରକରି, ନିଜର ମନ୍ତବ୍ୟ ଲେଖି ପୁଣି ସଂପୃକ୍ତ କମିଟି ନିକଟକୁ ପଠାଇ ଦିଅନ୍ତି । ଏହି ବ୍ୟବସ୍ଥାରେ କମିଟି ପ୍ରତିବେଦନର କେଉଁ ଅଂଶ ଗ୍ରହଣ କରିଥାନ୍ତି ଓ କେଉଁ ଅଂଶ ଉପରେ ସମାଲୋଚନା କରିଥାନ୍ତି । ସବ୍‌କମିଟିର ଚୂଡ଼ାନ୍ତ ରିପୋର୍ଟ ପାଇଲା ପରେ ସେଥିର ନିର୍ଦ୍ଦିଷ୍ଟ ବିଷୟ ଉପରେ ଆମେ ନିଷ୍ପତ୍ତି ନେଇଥାଉଁ । ସମସ୍ତ ଚୂଡ଼ାନ୍ତ ରିପୋର୍ଟ ଅଧ୍ୟୟନ କଲାପରେ ଯୋଜନା କମିଟି ସାମଗ୍ରିକ ଭାବରେ ତାର ପର୍ଯ୍ୟାଲୋଚନା କରି ନିଜର ବିସ୍ତୃତ ରିପୋର୍ଟ ପ୍ରସ୍ତୁତ କରନ୍ତି ଏବଂ ସେଥିରେ ପରିଶିଷ୍ଟ ଆକାରରେ ସବ୍‌କମିଟି ରିପୋର୍ଟଗୁଡ଼ିକ ଯୋଗ କରିଦେଇଥାନ୍ତି । ସବ୍‌କମିଟି ରିପୋର୍ଟ-ଗୁଡ଼ିକ ବିବେଚନା କଲାବେଳେ କମିଟିର ଚୂଡ଼ାନ୍ତ ରିପୋର୍ଟ ବସ୍ତୁତଃ ରୂପାୟିତ ହୋଇ ଉଠିଥାଏ ।

କେତେକ ସବ୍‌କମିଟି ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ସମୟ ଭିତରେ କାର୍ଯ୍ୟ ସମ୍ପାଦନ ନକରି ପାରିବା ହେତୁରୁ ମୁଖ୍ୟତଃ, ବିରକ୍ତିକର ବିଳମ୍ବ ଘଟୁଥିଲା; କିନ୍ତୁ ସାମଗ୍ରିକ ଭାବରେ ଆମେ ଆମ କାମରେ ଖୁବ୍ ଭଲ ଭାବରେ ଅଗ୍ରଗତି କରି ପାରିଥିଲୁ । ଶିକ୍ଷା ସମ୍ପର୍କରେ ଆମେ ଦୁଇଟି ଚମତ୍କାର ନିଷ୍ପତ୍ତି ନେଇଥିଲୁ : ଶିକ୍ଷାର ପ୍ରତ୍ୟେକ ସ୍ତର ନିମନ୍ତେ, ବାଳକ ଓ ବାଳିକା ଉଭୟଙ୍କ ପାଇଁ, ଶାରୀରିକ ସ୍ୱାସ୍ଥ୍ୟର ଏକ ନିର୍ଦ୍ଦିଷ୍ଟ ମାନଦଣ୍ଡ ରଖାଯାଉ ବୋଲି ଆମେ ପରାମର୍ଶ ଦେଇଥିଲୁ । ଆମେ ଆହୁରି ପରାମର୍ଶ ଦେଇଥିଲୁ ଯେ ଅଠରରୁ ବାଇଶି ବର୍ଷ ବୟସ ଭିତରେ ପ୍ରତ୍ୟେକ ଯୁବକ ଯୁବତୀ କୃଷି, ଶିଳ୍ପ ଓ ଧ୍ୱଂସ ଜନକ ଉପଯୋଗିତା କ୍ଷେତ୍ର ସମେତ ଜାତୀୟ କର୍ମରେ ଗୋଟିଏ ବର୍ଷ ଯେପରି ବିନିଯୋଗ କରନ୍ତି, ସେଥି ନିମନ୍ତେ ସମାଜସେବା କିମ୍ବା ଶ୍ରମଦାନର ଏକ ବାଧ୍ୟତାମୂଳକ ବ୍ୟବସ୍ଥା ସ୍ଥାପନ କରାଯାଉ । ଦେହ ଓ ମନରେ ଅସମର୍ଥ ବିବେଚିତ ନହେଲେ କୌଣସି ଯୁବକ ଯୁବତୀ ଏଥିରୁ ଛୁଟି ପାଇବା ଉଚିତ ନୁହେଁ ।

ଖ୍ରୀ: ୧୯୩୯ ସେପ୍ଟେମ୍ବର ମାସରେ ଦ୍ୱିତୀୟ ମହାଯୁଦ୍ଧ ଯେବେ ଆରମ୍ଭ ହେଲା, ଜାତୀୟ ଯୋଜନା କମିଟିର କାର୍ଯ୍ୟ ସ୍ଥଗିତ ରଖିବା କଥା ଉଠିଲା । ଅଧିକନ୍ତୁ, ନଭେମ୍ବର ମାସରେ ପ୍ରଦେଶର କଂଗ୍ରେସ ସରକାରମାନେ ଇସ୍ତଫା ଦେବା ଫଳରେ ଆମର ଅସୁବିଧା ବି ବହୁତ ପରିମାଣରେ ବଢ଼ିଗଲା; କାରଣ ପ୍ରଦେଶମାନଙ୍କରେ ନିରଙ୍କୁଶ ଗଭର୍ଣ୍ଣର ଶାସନ ଆମ କାର୍ଯ୍ୟରେ ଟିକେ ମାତ୍ର ଆଗ୍ରହ ପ୍ରକାଶ କଲେନାହିଁ । ଯୁଦ୍ଧକାଳୀନ ସୁବିଧା ତୁଳାଇ ପଇସା କରିବାରେ ବ୍ୟବସାୟୀମାନେ ଏତେଭଳି ବ୍ୟସ୍ତ ରହିଲେ ଯେ ସେମାନଙ୍କର ମଧ୍ୟ ଯୋଜନା ପ୍ରତି ପୂର୍ବର ଆଗ୍ରହ ରହିଲା ନାହିଁ । ଦିନକୁ ଦିନ ଅବସ୍ଥା ବଦଳି ବଦଳି ଯାଉଥିଲା । ତଥାପି ସୁଦ୍ଧା ଆମେ କାମ କରିଯିବା ପାଇଁ ନିଷ୍ପତ୍ତି ନେଲୁ ଏବଂ ଆମେ ଅନୁଭବ କରୁଥିଲୁ ଯେ ଯୁଦ୍ଧ ଆମ କାର୍ଯ୍ୟର ପ୍ରୟୋଜନୀୟତା ବିଶେଷ ଭାବରେ ବଢ଼ାଇ ଦେଇଛି । ଯୁଦ୍ଧ ଲାଗିଲା ଅର୍ଥ ଶିଳ୍ପକ୍ଷେତ୍ର ପ୍ରସାରିତ ହେବା ଅବଶ୍ୟମ୍ଭାବୀ ଏବଂ ଆମେ ଯେତିକି କାର୍ଯ୍ୟ ସମ୍ପାଦନା କରି-ପାରିଥିଲୁ ଓ ଆହୁରି କରିବା ପାଇଁ ଯାହା ନିୟୋଜିତ ଥିଲୁ, ଏହି ପ୍ରକାର ପ୍ରକ୍ରିୟା ପକ୍ଷରେ ନିଶ୍ଚିତ ଭାବରେ ସହାୟକ ହେବ । ସେହି ସମୟରେ ଇଞ୍ଜିନିୟରିଂ ଶିଳ୍ପ, ପରିବହନ ରସାୟନଶିଳ୍ପ ଓ ଉତ୍ପାଦନ ଶିଳ୍ପମାନଙ୍କ ପାଇଁ ନିଯୁକ୍ତ ସବ୍‌କମିଟିମାନଙ୍କ ରିପୋର୍ଟ ଆମେ ପରୀକ୍ଷାକରି ଦେଖିଥିଲୁ । ଯୁଦ୍ଧ ଦୃଷ୍ଟିରୁ ଏ ସବୁର ଗୁରୁତ୍ୱ ଖୁବ୍ ବେଶି; କିନ୍ତୁ ସରକାର ଆମ କାର୍ଯ୍ୟ ପ୍ରତି ଆଗ୍ରହୀ ନଥିଲେ କେବଳ ନୁହେଁ; ବରଂ ସେଥିପ୍ରତି ଏକପ୍ରକାର ବିରାଗଭାବ ପୋଷଣ କରୁଥିଲେ । ଯୁଦ୍ଧ ଆରମ୍ଭ ହେବାର ପ୍ରଥମ କେତେ ମାସରେ, ତଥାକଥିତ 'ନକଲି ଯୁଦ୍ଧ କାଳରେ' ସରକାରଙ୍କ ନୀତି ଥିଲା ଭାରତୀୟ ଶିଳ୍ପର ଅଭିବୃଦ୍ଧି ନିରୁତ୍ସାହିତ କରିବା । ପରେ ଅବଶ୍ୟ, ନାନା ଘଟଣାର ଚାପରେ, ସେମାନଙ୍କର ବହୁତ କିଛି ଆବଶ୍ୟକୀୟ ଦ୍ରବ୍ୟ ଭାରତୀୟ ବଜାରରୁ କିଣିବା ପାଇଁ ସେମାନେ ବାଧ୍ୟହେଲେ ଯଦିଓ ଭାରତରେ କୌଣସି ଭାରୀଶିଳ୍ପ ସ୍ଥାପନର ପକ୍ଷପାତୀ ସେମାନେ ନଥିଲେ । ଏହାର ଅର୍ଥ ବସ୍ତୁତଃ ନିବାରଣ । କାରଣ ସରକାରୀ ଅନୁମତି ବିନା କୌଣସି ଯନ୍ତ୍ରପାତି ବିଦେଶରୁ ଆମଦାନୀ କରିବାର ବାଟ ନଥିଲା ।

ଯୋଜନା କମିଟିର କାର୍ଯ୍ୟ ଅବ୍ୟାହତ ରହିଲା ଏବଂ ସବ୍‌କମିଟି ରିପୋର୍ଟଗୁଡ଼ିକର ବିବେଚନା ପ୍ରାୟ ଶେଷ ହେଇଥିଲା । ବାକି କାମ ଶେଷକରି ଆମର ରିପୋର୍ଟ ତିଆରି କରିବା ପାଇଁ ଆମେ ପ୍ରସ୍ତୁତ ହେଉଥିଲୁ; କିନ୍ତୁ ଖ୍ରୀ: ୧୯୪୦ ଅକ୍ଟୋବର ମାସରେ ମତେ ଗିରଫ କରାଗଲା ଏବଂ ଏକ ଦୀର୍ଘକାଳୀନ କାରାବାସର ବ୍ୟବସ୍ଥା ମୋ ପାଇଁ କରିଦିଆଗଲା । ଯୋଜନା କମିଟି ଓ ତାର ସବ୍‌କମିଟିଗୁଡ଼ିକର ବହୁ ସଭ୍ୟ ବି ଗିରଫ ହେଲେ ଓ କାରାଦଣ୍ଡପ୍ରାପ୍ତହେଲେ । ଯୋଜନା କମିଟି ତାର କାର୍ଯ୍ୟ ଅବ୍ୟାହତ ରଖୁ ବୋଲି ମୁଁ ଆତୁର ଥିଲି ଏବଂ ମୁକ୍ତ ଥିବା ମୋର ସହଯୋଗୀମାନଙ୍କୁ ମୁଁ ଜେଲ୍ ଭିତରୁ ଅନୁରୋଧ କରିଥିଲି; କିନ୍ତୁ ମୋର ଅନୁପସ୍ଥିତିରେ କମିଟିର କାର୍ଯ୍ୟ ଚଳାଇନେବା ପାଇଁ ସେମାନେ ପ୍ରସ୍ତୁତ ନଥିଲେ । ମୁଁ ଅଧ୍ୟୟନ କରି ଗୋଟାଏ ଛୋଟା ରିପୋର୍ଟ ଯେପରି ପ୍ରସ୍ତୁତ କରିପାରିବି,

ସେଥି ନିମନ୍ତେ ଯୋଜନା କମିଟିର ସମସ୍ତ କାଗଜପତ୍ର ମୁଁ ମୋର କାର୍ଯ୍ୟପ୍ରକୋଷ୍ଠକୁ ଅଣାଇବାକୁ ଚାହିଁଥିଲି; କିନ୍ତୁ ଭାରତ ସରକାର ହସ୍ତକ୍ଷେପ କରି ତାହା ବନ୍ଦ କଲେ । କେବଳ ଯେ କାଗଜପତ୍ର ମୋ ପାଖରେ ପହଞ୍ଚିବା ସରକାର ନିବାରଣ କଲେ ତା ନୁହେଁ, ଯୋଜନା ବିଷୟରେ ଆଲୋଚନା କରିବା ପାଇଁ ମଧ୍ୟ ମୋ ସଙ୍ଗେ ଦେଖା କରିବାଲାଗି କାହାକୁ ହେଲେ ଅନୁମତି ଦିଆଗଲା ନାହିଁ ।

ଅତଏବ, ଜେଲ୍‌ରେ ମୋର ସମସ୍ତ ଅତିବାହିତ ହେବା ବେଳେ ଜାତୀୟ ଯୋଜନା କମିଟି ଅବସନ୍ନତା ଭଜିଲା । ଅସମ୍ପୂର୍ଣ୍ଣ ହେଲେ ସୁଦ୍ଧା ଆମେ ଯେତେ ପରିମାଣରେ କାର୍ଯ୍ୟ କରିଯାଇଥିଲୁ ଆଉ ଯୁଦ୍ଧ ଉଦ୍ଦେଶ୍ୟରେ ଯାହା ବିନିଯୋଗ କରାଯାଇ ପାରିଥାନ୍ତା, ସେସବୁ ଆମ ଅଫିସ୍‌ର ଭିତ୍ତି ଉପରେ ଗଚ୍ଛିତ ରହିଲା । ଖ୍ରୀ: ୧୯୪୧ ଡିସେମ୍ବର ମାସରେ ମୁଁ ଜେଲ୍‌ରୁ ଖଲାସ ହେଲି ଓ କେତେ ମାସ ବାହାରେ ଥିଲି । ମୋ ପକ୍ଷରେ ଏବଂ ଅନ୍ୟ-ମାନଙ୍କ ପକ୍ଷରେ ମଧ୍ୟ ଏହି ସମୟ ଖୁବ୍ ଉତ୍ତେଜନାପୂର୍ଣ୍ଣ ଥିଲା । ନାନାପ୍ରକାର ନୂତନ ପରିସ୍ଥିତି ଉପୁଜି ସାରିଥିଲା । ପ୍ରଶାନ୍ତ ମହାସାଗରରେ ଯୁଦ୍ଧ ଚାଲିଥିଲା, ଭାରତ ଉପରେ ଆକ୍ରମଣ ଆଶଙ୍କା ଘୋଟି ରହିଥିଲା ଏବଂ ରାଜନୈତିକ ପରିସ୍ଥିତି ସହଜ ନହେବା ପର୍ଯ୍ୟନ୍ତ ସେ ସମୟରେ ଯୋଜନା କମିଟିର ଅସମ୍ପୂର୍ଣ୍ଣ କାର୍ଯ୍ୟ ହାତକୁ ନେବା ସମ୍ଭବ ନଥିଲା । ମୁଁ ପୁଣି ଜେଲ୍‌କୁ ଫେରିଗଲି ।

## ୭. କଂଗ୍ରେସ ଓ ଶିଳ୍ପକ୍ଷେତ୍ର
## ବୃହତ୍ ଶିଳ୍ପ ବନାମ କୁଟୀରଶିଳ୍ପ

ଗାନ୍ଧିଜୀଙ୍କ ନେତୃତ୍ୱରେ କଂଗ୍ରେସ ବହୁ ଦିନରୁ ଗ୍ରାମୋଦ୍ୟୋଗର ବିଶେଷତଃ ହାତକଟା ସୂତା ଓ ହାତବୁଣା ଲୁଗାର ପୁନଃ ପ୍ରଚଳନ ବ୍ୟାପକ ଭାବରେ ସମ୍ପାଦନ କରିବା ସମର୍ଥନ କରି ଆସୁଥିଲା । ତଥାପି, କେବେହେଲେ ସୁଦ୍ଧା କଂଗ୍ରେସ ବୃହତ୍ ଶିଳ୍ପର ବିକାଶ ପ୍ରତି ବିରୋଧିତା କରିନି ଏବଂ ଯେବେ ସୁଯୋଗ ମିଳିଛି, ବ୍ୟବସ୍ଥାସଭାରେ ହେଉ କି ବାହାରେ କେଉଁଠି ହେଉ, କଂଗ୍ରେସ ତା'ର ଉନ୍ନୟନ ପ୍ରୋତ୍ସାହିତ କରିଛି । ପ୍ରଦେଶର କଂଗ୍ରେସ ସରକାରମାନେ ଏଥିପାଇଁ ଆତୁର ଥିଲେ । ଖ୍ରୀ: ୧୯୧୦ରୁ ୨୦ ଭିତରେ ଟାଟା ଷ୍ଟୀଲ୍ ଏଣ୍ଡ୍ ଆଇରନ୍ ଓ୍ୱାର୍କସ୍ ବା ଟାଟାର ଲୁହା କାରଖାନା ଯେବେ ଗୁରୁତର ଅସୁବିଧାର ସମ୍ମୁଖୀନ ହେଲା, କେନ୍ଦ୍ର ବ୍ୟବସ୍ଥାପକ ସଭା କଂଗ୍ରେସ ଦଳର ନିର୍ବନ୍ଧରୁ ପ୍ରଧାନତଃ, ଗୋଟାଏ ସଙ୍କଟ କାଳ ଅତିକ୍ରମି ଯିବା ପାଇଁ ସରକାରୀ ସାହାଯ୍ୟ ମିଳିପାରିଥିଲା । ଭାରତୀୟ ଜାହାଜ ନିର୍ମାଣ ଶିଳ୍ପ ଓ ଜାହାଜ ଚଳାଚଳ ବ୍ୟବସ୍ଥାର ବିକାଶ ଅନେକ ଦିନରୁ ଜାତୀୟତାବାଦୀ ମତ ଓ ସରକାର ମଧ୍ୟରେ ତୀବ୍ର ବିବାଦର କାରଣ ହେଇଥିଲା । କଂଗ୍ରେସ ସଙ୍ଗେ ଭାରତର ସବୁ ମହଲ ଭାରତୀୟ ଜାହାଜ ନିର୍ମାଣ ଓ ଚଳାଚଳ ବ୍ୟବସ୍ଥା ପାଇଁ ସବୁ ପ୍ରକାର ସାହାଯ୍ୟ ଦିଆଯାଉ ବୋଲି ବରାବର ଦାବି କରୁଥିଲେ । ଅନ୍ୟ ଦିଗରେ, ଭାରତ ସରକାର ଶକ୍ତିଶାଳୀ ବ୍ରିଟିଶ ଜାହାଜ କମ୍ପାନୀଗୁଡ଼ିକର ନ୍ୟସ୍ତସ୍ୱାର୍ଥ ସଂରକ୍ଷଣ କରିବା

ହାତରେ ସଜାଗ ଥାଲେ । ଆବଶ୍ୟକୀୟ ପୁଞ୍ଜି, କାରିଗରୀ କୁଶଳତା ଓ ପରିଚାଳନା ସାମର୍ଥ୍ୟ ଥିଲେ ମଧ୍ୟ ସରକାରୀ ବାଛ-ବିଚାର ଯୋଗୁଁ ଭାରତୀୟ ଜାହାଜ କାରବାର ଅଭିବୃଦ୍ଧିରୁ ବଞ୍ଚିତ ହେଲା । ଶିଳ୍ପ, ବାଣିଜ୍ୟ କମ୍ବା ଆର୍ଥିକ କାରବାର କ୍ଷେତ୍ରରେ ବ୍ରିଟିଶ ସ୍ୱାର୍ଥ କଥା ଯଦି ଉଠିଲା; ତାହାହେଲେ ସରକାର ଖୁବ୍ ସଚେତନ ଭାବରେ ଏ ପ୍ରକାର ବାଛ-ବିଚାର ନୀତି କାର୍ଯ୍ୟକାରୀ କରୁଥିଲେ ।

ଭାରତରେ ଅନୁରୂପ ଶିଳ୍ପ-ସଂସ୍ଥାଗୁଡ଼ିକର କ୍ଷତି ଘଟାଇ ଇମ୍ପିରିଏଲ୍ କେମିକେଲ୍ ଇଣ୍ଡଷ୍ଟ୍ରିଜ୍ ନାମକ ବିରାଟ ଏକ ଶିଳ୍ପ ପ୍ରତିଷ୍ଠାନକୁ ବାରମ୍ବାର ସାହାଯ୍ୟ କରାଯାଇଛି । କେତେ ବର୍ଷ ତଳେ, ପଞ୍ଜାବରେ ଖଣିଜ ସମ୍ପଦ ଉଦ୍ଧାର ନିମନ୍ତେ ଏହି ପ୍ରତିଷ୍ଠାନକୁ ଏକ ଏକଚେଟିଆ ପଟ୍ଟା ଦିଆଗଲା । ସେଥିରେ ଯେଉଁସବୁ ସର୍ତ୍ତ ରହିଛି, ମୁଁ ଯେତେଦୂର ଜାଣେ, ବାହାରେ ପ୍ରକାଶ କରାଯାଇ ନାହିଁ; କାରଣ 'ଜନସାଧାରଣଙ୍କ ସ୍ୱାର୍ଥ ଦୃଷ୍ଟିରୁ' ସେପରି କରିବା ଠିକ୍ ହେବ ନାହିଁ ବୋଲି ସରକାର ଧରିନେଇଛନ୍ତି ।

ପ୍ରଦେଶ କଂଗ୍ରେସ ସରକାରମାନେ ଗୋଟାଏ ପାୱାର-ଆଲ୍‌କହଲ ଶିଳ୍ପ ସ୍ଥାପନ କରିବା ନିମନ୍ତେ ଉତ୍ସୁକ ଥିଲେ । ନାନା ଦୃଷ୍ଟିକୋଣରୁ ଏହା ବାଞ୍ଛନୀୟ ଥିଲା ଏବଂ ସେଥି ନିମନ୍ତେ ଯୁକ୍ତପ୍ରଦେଶ ଓ ବିହାରରେ ଅତିରିକ୍ତ ଏକ କାରଣ ବିଦ୍ୟମାନ ଥିଲା । ଏହି ଦୁଇ ପ୍ରଦେଶର ବହୁ ସଂଖ୍ୟକ ଚିନି କାରଖାନାରୁ ଉପଜାତ ଦ୍ରବ୍ୟ ଭାବରେ ପର୍ଯ୍ୟାପ୍ତ ପରିମାଣରେ ଝିଗୁଡ଼ ଉତ୍ପାଦିତ ହେଉଥିଲା । କିନ୍ତୁ ଏହାକୁ ଅନାବଶ୍ୟକ ଦ୍ରବ୍ୟ ବିବେଚନା କରାଯାଉଥିଲା । ପାୱାର-ଆଲ୍‌କହଲ ଉତ୍ପାଦନ ନିମନ୍ତେ ଏହି ଝିଗୁଡ଼ ବ୍ୟବହାର କରିବାର ପ୍ରସ୍ତାବ ଦିଆଗଲା । ଉତ୍ପାଦନ ପ୍ରକ୍ରିୟା ଅତି ସରଳ । କିନ୍ତୁ ସେ ହାତରେ ଗୋଟିଏ କେବଳ ଅସୁବିଧା ଯାହା ରହିଥିଲା; ତାହା ହେଉଛି ବର୍ମାସେଲ୍ ଓ ବର୍ମା ଅଏଲ କମ୍ପାନୀର ସ୍ୱାର୍ଥ । ଭାରତ ସରକାର ଏମାନଙ୍କ ସ୍ୱାର୍ଥର ସମର୍ଥକ ଥିଲେ ଏବଂ ସେଥି ହେତୁରୁ ପାୱାର-ଆଲ୍‌କହଲ ଉତ୍ପାଦନ ନିମନ୍ତେ ଅନୁମତି ଦେବାକୁ ରାଜି ହେଲେନାହିଁ । ଚଳିତ ଯୁଦ୍ଧର ତୃତୀୟ ବର୍ଷରେ କେବଳ ବର୍ମା ଜାପାନ ହାତରେ ପଡ଼ିଲା ପରେ, ଭାରତକୁ ତେଲ ଓ ପେଟ୍ରୋଲ ଯୋଗାଣ ଯେତେବେଳେ କଟିଗଲା ସରକାର ଉପଲବ୍‌ଧି କଲେ ଯେ ପାୱାର ଆଲ୍‌କହଲ ନିତାନ୍ତ ଆବଶ୍ୟକ ଓ ତା'ର ଉତ୍ପାଦନ ଭାରତରେ ହେବା ଉଚିତ । ଖ୍ରୀ: ୧୯୪୨ରେ ଆମେରିକାର ଗ୍ରେଡ଼ୀ କମିଟି ଏଥି ଉପରେ ବିଶେଷ ଜୋର୍ ଦେଇଥିଲେ ।

ଏପରିଭାବରେ, ଭାରତରେ ଶିଳ୍ପୀକରଣ ସପକ୍ଷରେ କଂଗ୍ରେସ ସବୁବେଳେ ମତ ଦେଇ ଆସିଛି ଏବଂ ସେଥି ସଙ୍ଗେ ସଙ୍ଗେ କୁଟୀରଶିଳ୍ପର ବିକାଶ ଉପରେ ଜୋର୍ ଦେଇଛି ଓ ସେଥିଲାଗି କାର୍ଯ୍ୟ ମଧ୍ୟ କରିଛି । ଏହି ଉଭୟ ଆଭିମୁଖ୍ୟ ଭିତରେ କୌଣସି ବିବାଦ ଅଛି କି ? ସମ୍ଭବତଃ ପାର୍ଥକ୍ୟ ରହିଛି ଉଭୟରୁ ଗୋଟାକ ଉପରେ ଜୋର୍ ଦେବା ଯୋଗ । ଆଉ ସେଥିରେ ସେହି ସବୁ ମାନବିକ ତଥା ଆର୍ଥିକ ବିଷୟର ବିଚାର ବି ରଖାଯାଇଛି; ଯାହା ପୂର୍ବେ ଭାରତରେ ଉପେକ୍ଷା କରାଯାଇଥିଲା । ଭାରତୀୟ ଶିଳ୍ପପତିମାନେ ଓ ସେମାନଙ୍କୁ ସମର୍ଥନ କରୁଥିବା ରାଜନୈତିକ ବ୍ୟକ୍ତିମାନେ ୟୁରୋପରେ ଊନବିଂଶ ଶତକର ପୁଞ୍ଜିବାଦୀ

ଶିଳ୍ପବିକାଶଧାରାରେ ବିଗତ ଶତାବ୍ଦୀର ବଂଶଶତକରେ ସ୍ପଷ୍ଟ ପରିଲକ୍ଷିତ ହେଉଥିବା ତାର ବହୁତ କୁଛ କୁପରିଣାମ ଦେଖି ସୁଦ୍ଧା ଦେଖିପାରୁନଥିଲେ । ଭାରତରେ ସାଧାରଣ ପ୍ରଗତି ଶତାବ୍ଦୀର ଧରି ବାଧାପ୍ରାପ୍ତ ହୋଇଥିବା ଫଳରେ ସେହିସବୁ ପରିଣାମ ସୁଦୂରପ୍ରସାରୀ ହେବା ଅସାଧାରଣ ନୁହେଁ । ଭାରତରେ, ପ୍ରଚଳିତ ଅର୍ଥନୈତିକ ବ୍ୟବସ୍ଥାରେ, ଯେଉଁ ପ୍ରକାର ମଧ୍ୟମ ଧରଣର ଶିଳ୍ପସଂସ୍ଥାମାନ ସ୍ଥାପିତ ହେଉଥିଲା, ସେଥିରେ ଶ୍ରମିକମାନେ ଅଧିକରୁ ଅଧିକ ଭାବରେ ନିଯୁକ୍ତ ହେବା ପରିବର୍ତ୍ତେ ଅଧିକରୁ ଅଧିକ ବେକାର କେବଳ ସୃଷ୍ଟି ହେଲେ । ଗୋଟାଏ ଦିଗରେ ପୁଞ୍ଜି ପୁଞ୍ଜୀଭୂତ ହେଲବେଳେ ଅନ୍ୟ ଦିଗରେ ଦାରିଦ୍ର୍ୟ ଓ ବେକାରି ବୃଦ୍ଧି ପାଇଲା । ଭିନ୍ନ ପ୍ରକାର ବ୍ୟବସ୍ଥାରେ, ଅଧିକରୁ ଅଧିକ ପରିଶ୍ରମ ଗ୍ରହଣ କରିପାରିବା ଭଳି ବଡ଼ ଧରଣର ଶିଳ୍ପ ସ୍ଥାପନ ଉପରେ ଗୁରୁତ୍ୱ ଦେଇ, ବିକାଶର ଯୋଜନା କରି ଏ ପ୍ରକାର ଦୁରବସ୍ଥା ଭଲ ଭାବରେ ଏଡ଼ାଯାଇପାରନ୍ତା ।

ଜନସାଧାରଣଙ୍କ ଭିତରେ ବ୍ୟାପ୍ତିଶୀଳ ଏହି ଦରିଦ୍ରତା ଗାନ୍ଧିଜୀଙ୍କୁ ପ୍ରବଳ ଭାବରେ ପ୍ରଭାବିତ କଲା । ମୋର ମନେହୁଏ ଆଉ ଏକଥା ବି ସତ୍ୟ, ଜୀବନ ପ୍ରତି ଗାନ୍ଧିଜୀଙ୍କ ଦୃଷ୍ଟିଭଙ୍ଗୀ ଓ ଯାହାକୁ ଆଧୁନିକ ଦୃଷ୍ଟିଭଙ୍ଗୀ ବୋଲି କୁହାଯାଏ, ଉଭୟ ଭିତରେ ଏକ ମୌଳିକ ପାର୍ଥକ୍ୟ ରହିଛି । ଚିରବର୍ଦ୍ଧିମାନ ଜୀବନଧାରଣର ମାନ ପ୍ରତି ଏବଂ ଆଧ୍ୟାତ୍ମିକ ଆନୈତିକ ମୂଲ୍ୟବୋଧ ବିନିମୟରେ ବିଳାସିତାର ଅଭିବୃଦ୍ଧି ସାଧନ ପ୍ରତି ସେ ପ୍ରଲୋଭିତ ନୁହନ୍ତି । ପରିଶ୍ରମହୀନ ଆରାମ ଜୀବନର ପକ୍ଷପାତୀ ସେ ନୁହନ୍ତି । ତାଙ୍କ ପକ୍ଷରେ ଜୀବନର ସିଧାସଳଖ ମାର୍ଗ ହେଉଛି ଦୁର୍ଗମ ଓ ବନ୍ଧୁର ଏବଂ ବିଳାସ-ବ୍ୟସନରେ ଯିଏ ଲିପ୍ତ ହୁଏ, ତା'ର ସଦ୍‌ଗୁଣ ନଷ୍ଟ ହୁଏ ଓ ତା'ର ପ୍ରକୃତି କୁଟିଳ ହୋଇପଡ଼େ । ସର୍ବୋପରି ଧନୀ ଓ ଦରିଦ୍ର ଭିତରେ—ସେମାନଙ୍କର ଜୀବନଯାପନର ପ୍ରଣାଳୀରେ ସେମାନଙ୍କର ଅଭିବୃଦ୍ଧିର ସୁଯୋଗ ଭିତରେ ଯେଉଁ ବିରାଟ ବ୍ୟବଧାନ ରହିଛି, ତାହା ତାଙ୍କୁ କଦର୍ଯ୍ୟ ବୋଧ ହେଉଥାଏ । ତାଙ୍କର ବ୍ୟକ୍ତିଗତ ତଥା ମନସ୍ତାତ୍ତ୍ୱିକ ସନ୍ତୋଷ ନିମନ୍ତେ ସେହି ବ୍ୟବଧାନ ଅତିକ୍ରମ କରି ସେ ଦରିଦ୍ରତାର ସ୍ତରରେ ଉପନୀତ ହେଲେ ଏବଂ ବଞ୍ଚିତମାନଙ୍କ ପକ୍ଷରେ ଅବସ୍ଥାର ଉନ୍ନତି ସାଧନ ଯେତିକି ସମ୍ଭବ ସେତିକି କେବଳ ଗ୍ରହଣ କଲେ । ସେମାନଙ୍କର ଜୀବନଧାରା, ସେମାନଙ୍କର ପୋଷାକ (ପୋଷାକର ଅଭାବ ମଧ୍ୟ) ସେ ଆପଣାର କରି-ନେଲେ । ମୁଷ୍ଟିମେୟ ଧନଶାଳୀ ବ୍ୟକ୍ତି ଏବଂ ଅଗଣିତ ଦରିଦ୍ରତାଗ୍ରସ୍ତ ଜନସାଧାରଣଙ୍କ ଭିତରେ ରହିଥିବା ବିପୁଳ ବ୍ୟବଧାନ ଦୁଇଟି ପ୍ରଧାନ କାରଣରୁ ବୋଲି ସେ ବୁଝିଥିଲେ : ବିଦେଶୀ ଶାସନ ଓ ତାର ଆନୁଷଙ୍ଗିକ ଶୋଷଣ; ଏବଂ ଅତିକାୟ ଯନ୍ତ୍ରରେ ରୂପାୟିତ ପାଶ୍ଚାତ୍ୟ ଜଗତର ପୁଞ୍ଜିବାଦୀ ଶିଳ୍ପ-ସଭ୍ୟତା । ଉଭୟ ବିରୁଦ୍ଧରେ ତାଙ୍କ ମନରେ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ଅତୀତର ସେହି ସୁଶାସିତ ତଥା କମ୍ ବହୁତରେ ସ୍ୱୟଂ-ସଂପୂର୍ଣ୍ଣ ଗ୍ରାମ୍ୟ-ସମାଜ ନିକଟକୁ ତାଙ୍କର ବ୍ୟାକୁଳ ମନ ଧାବିତ ହେଉଥିଲା ଯେଉଁଠି ଉତ୍ପାଦନ, ବଣ୍ଟନ ଓ ଭୋକ୍ତନ ମଧ୍ୟରେ ସ୍ୱତଃ ଭାରସାମ୍ୟ ପ୍ରତିଷ୍ଠିତ ହୋଇଥିଲା; ଯେଉଁଠି ରାଜନୈତିକ କିମ୍ବା ଅର୍ଥନୈତିକ ଶକ୍ତି ଆଜିଭଳି କେନ୍ଦ୍ରିତ ହେବା ପରିବର୍ତ୍ତେ ବିସ୍ତୃତ ହୋଇ ରହିଥିଲା; ଯେଉଁଠି ଏକ

ପ୍ରକାର ସରଳ ଗଣତନ୍ତ୍ର କାର୍ଯ୍ୟକାରୀ ହେଉଥିଲା; ଯେଉଁଠି ଧନୀ ଓ ଦରିଦ୍ରର ବ୍ୟବଧାନ ଏତେ ଉତ୍କଟ ନଥିଲା; ଯେଉଁଠି ମହାନଗରୀମାନଙ୍କର ଅହିତକର ପରିବେଶ ନଥିଲା ଏବଂ ଲୋକେ ଜୀବନଦାୟୀ ମୃତ୍ତିକାର ସଂସ୍ପର୍ଶରେ ରହି, ଉନ୍ମୁକ୍ତ ପ୍ରାନ୍ତରବାହି ନିର୍ମଳ ବାୟୁ ସେବନ କରି ସରଳ ଜୀବନ ଯାପନ କରୁଥିଲେ ।

ଗାନ୍ଧିଜୀ ଓ ଅନ୍ୟାନ୍ୟ ବହୁ ଲୋକଙ୍କ ଭିତରେ ଜୀବନର ଅର୍ଥ ପ୍ରତି ଦୃଷ୍ଟି ଭଙ୍ଗୀର ଏହି ମୌଳିକ ପାର୍ଥକ୍ୟ ରହିଥିଲା ଏବଂ ଏହି ପାର୍ଥକ୍ୟ ତାଙ୍କର ବଚନରେ ଓ କର୍ମରେ ଉଜ୍ଜ୍ୱଳ ହୋଇ ଉଠିଥିଲା । ସ୍ପଷ୍ଟ ତଥା ଶକ୍ତିଶାଳୀ ତାଙ୍କର ବାଣୀ ମୁଖ୍ୟତଃ ଭାରତ ଏବଂ ଅନ୍ୟାନ୍ୟ ଦେଶର ଧାର୍ମିକ ତଥା ନୈତିକ ଅନୁଶାସନମାନଙ୍କରୁ ପ୍ରେରଣା ଲାଭକରିଥିଲା । ନୈତିକ ମୂଲ୍ୟବୋଧର ବିଜୟ ହିଁ ପ୍ରକୃତ ବିଜୟ; ଅନୁପଯୁକ୍ତ ଉପାୟ କେବେହେଲେ ଲକ୍ଷ୍ୟର ଯଥାର୍ଥତା ପ୍ରତିପାଦନ କରିନପାରେ; ଅନ୍ୟଥା ବ୍ୟକ୍ତି ହେଉ କି ଜାତି ହେଉ ତା'ର ବିନାଶ ଅନିବାର୍ଯ୍ୟ ।

ତଥାପି ନିଜ ମନର କଳ୍ପଲୋକରେ ଆବଦ୍ଧ ସ୍ୱପ୍ନଜୀବୀ ସେ ନଥିଲେ । ଜୀବନ ଓ ତା'ର ବିବିଧ ସମସ୍ୟା ସଙ୍ଗେ ସେ ଥିଲେ ଓତପ୍ରୋତ ଭାବରେ ଜଡ଼ିତ । ସେ ଜନ୍ମଲାଭ କରିଥିଲେ ସୁଚତୁର ବଣିକ ସମ୍ପ୍ରଦାୟର ବାସସ୍ଥଳ ଗୁଜରାଟରେ ଏବଂ ଭାରତୀୟ ଗ୍ରାମ ଓ ସେଠାରେ ପ୍ରଚଳିତ ଜୀବନର ଅବସ୍ଥା ସମ୍ପର୍କରେ ତାଙ୍କର ଜ୍ଞାନ ଥିଲା ଅନୁପମ । ଏହି ବ୍ୟକ୍ତିଗତ ଅଭିଜ୍ଞତାରୁ କେବଳ ସେ ଉଦ୍ଭାବନ କଲେ ତାଙ୍କର ଚରଖା ଓ ଗ୍ରାମୋଦ୍ୟୋଗ ନିର୍ଘଣ୍ଟ । ଅଗଣିତ ବେକାର ଓ ଆଂଶିକ ଭାବରେ ବେକାର ଲୋକଙ୍କୁ ଯଦି ହଠାତ୍ କିଛି ସାହାଯ୍ୟ ଦିଆଯାଇପାରେ; ସମଗ୍ର ଦେଶରେ ବ୍ୟାପ୍ତିଶୀଳ ଦରିଦ୍ରତା ଜନସାଧାରଣଙ୍କୁ ଯେପରି ଭାବରେ ହତାଶ ତଥା ପକ୍ଷାଘାତଗ୍ରସ୍ତ କରୁଚି, ତାହା ଯଦି ବନ୍ଦ କରିବାକୁ ହୁଏ, ଗ୍ରାମବାସୀଙ୍କର ଜୀବନଧାରଣର ମାନ, କେତେ ନଗଣ୍ୟ ହେଉ ପଛେ, ସାର୍ବଜନୀନ ଭାବରେ ଉନ୍ନୀତ କରିବାକୁ ଯଦି ହୁଏ; ଅନ୍ୟମାନଙ୍କ ପାଖରୁ ଅସହାୟ ତଥା ପତିତ ଭାବରେ ମୁଷ୍ଟିଭିକ୍ଷା କରିବା ପରିବର୍ତ୍ତେ ସେମାନଙ୍କୁ ଆତ୍ମନିର୍ଭରଶୀଳତା ଯଦି ଶିକ୍ଷାଦେବାକୁ ହୁଏ; ହାତରେ ବିଶେଷ ଧନ ନଥାଇ ଯଦି ଏସବୁ ସମ୍ପାଦନ କରିବାକୁ ହୁଏ, ତାହାହେଲେ ଗାନ୍ଧିଜୀଙ୍କ ଉଦ୍ଭାବିତ ରଚନାତ୍ମକ କର୍ମ ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ବିଦେଶୀ ଶାସନ ଓ ଶୋଷଣରେ ନିହିତ ଅକଲ୍ୟାଣ ତ ସହଜେ ଅଛି, ସଂସ୍କାର ଉଦ୍ଦେଶ୍ୟରେ ବଡ଼ ବଡ଼ ପରିକଳ୍ପନା କାର୍ଯ୍ୟକାରୀ କରିବା ନିମନ୍ତେ ମଧ୍ୟ ସ୍ୱତନ୍ତ୍ରତାର ଅଭାବ । ଭାରତର ସମସ୍ୟା ଥିଲା ମୂଳଧନ ଅଭାବ ଓ ପର୍ଯ୍ୟାପ୍ତ ଅବ୍ୟବହାର୍ଯ୍ୟ ପରିଶ୍ରମ । ଏହି ଅବ୍ୟବହାର୍ଯ୍ୟ ପରିଶ୍ରମ ଅର୍ଥାତ୍ ଅନୁତ୍ପାଦକ ଏହି ଲୋକଶକ୍ତିକୁ କିପରି ବ୍ୟବହାର କରାଯାଇ ପାରିବ ? ବାହୁଶକ୍ତି ଓ ଯନ୍ତ୍ରଶକ୍ତି ଭିତରେ ନିର୍ବୋଧ ତୁଳନାମାନ କରାଯାଇଥାଏ । ଅବଶ୍ୟ ଏକଥା ସ୍ୱୀକାର୍ଯ୍ୟ ଯେ ଗୋଟାଏ ଅତିକାୟ ଯନ୍ତ୍ର ଏକ ହଜାର କିମ୍ବା ଦଶ ହଜାର ଲୋକଙ୍କ କାର୍ଯ୍ୟ କରିଦେଇପାରେ; କିନ୍ତୁ ସେହି ଦଶ ହଜାର ଲୋକ ଯଦି ନିଷ୍କର୍ମା ହୋଇ ବସନ୍ତି କିମ୍ବା ଓପାସ ରହନ୍ତି, ସାମାଜିକ କଲ୍ୟାଣ ଦୃଷ୍ଟିରୁ ଯନ୍ତ୍ରର ପ୍ରବର୍ତ୍ତନ କୌଣସିମତେ ଲାଭଜନକ ହେବନାହିଁ । ଏତିକି କେବଳ

ହୋଇପାରେ, ଏକ ଦୂର ପରିପ୍ରେକ୍ଷୀରେ ତାହା ହୁଏତ ସାମାଜିକ ଅବସ୍ଥାର ପରିବର୍ତ୍ତନ ସୂଚିତ କରିପାରିବ । ଅତିକାୟ ଯନ୍ତ୍ର ଯେବେ ନାହିଁ, ତୁଳନାର ପ୍ରଶ୍ନ ଉଠିବାର ଅବକାଶ ନାହିଁ । ବ୍ୟକ୍ତିଗତ ତଥା ଜାତୀୟ ଦୃଷ୍ଟିକୋଣରୁ, ଉତ୍ପାଦନ ନିମନ୍ତେ ଲୋକଶକ୍ତି ବ୍ୟବହାର କରିବା ସମ୍ପୂର୍ଣ୍ଣ ଲାଭଜନକ । ବ୍ୟାପକ ଭାବରେ ଯନ୍ତ୍ରର ପ୍ରବର୍ତ୍ତନ ଓ ଏଥି ଭିତରେ ଆବଶ୍ୟକୀୟ ବିବାଦର ଅବକାଶ ନାହିଁ । ଅବଶ୍ୟ ସେହି ଯନ୍ତ୍ର ଯଦି ମୁଖ୍ୟତଃ ଶ୍ରମ ବିନିଯୋଗ ନିମନ୍ତେ ବ୍ୟବହୃତ ହୋଇଥାଏ; ନୂଆକରି ବେକାରି ସୃଷ୍ଟି କରିବା ପାଇଁ ନୁହେଁ ।

ଭାରତ ସଙ୍ଗେ ପାଶ୍ଚାତ୍ୟର କ୍ଷୁଦ୍ର ତଥା ଶିଳ୍ପୋନ୍ନତ ଦେଶମାନଙ୍କର କିମ୍ବା ସୋଭିଏତ୍ ରୁଷିଆ ଅଥବା ଯୁକ୍ତରାଷ୍ଟ୍ର ଆମେରିକା ଭଳି ଅପେକ୍ଷାକୃତ ସ୍ୱଳ୍ପ ଜନସଂଖ୍ୟାବିଶିଷ୍ଟ ବୃହତ୍ ଦେଶମାନଙ୍କର ତୁଳନା କରିବା ଭ୍ରମାତ୍ମକ । ପଶ୍ଚିମ-ୟୁରୋପରେ ଶିଳ୍ପୀକରଣ ପ୍ରକ୍ରିୟା ଶହେ ବର୍ଷ ତଳୁ ଆରମ୍ଭ ହେଲାଣି ଏବଂ ସେଠାର ଜନସଂଖ୍ୟା କ୍ରମଶଃ ତଦନୁସାରେ ବିନ୍ୟସ୍ତ ହୋଇ ପାରିଛି । ପ୍ରଥମେ ଜନସଂଖ୍ୟା ଦ୍ରୁତ ବୃଦ୍ଧି ଲାଭକଲା, ତା'ପରେ କେତେ କାଳ ସ୍ଥିର ରହିଲା ଏବଂ ବର୍ତ୍ତମାନ ହ୍ରାସ ହେଉଛି । ସୋଭିଏତ୍ ରୁଷିଆ ଓ ଆମେରିକାର ସେପରି ସବୁ ସୁବିସ୍ତୃତ ଅଞ୍ଚଳ ରହିଛି; ଯେଉଁଠି ଜନସଂଖ୍ୟା ସମାନୁପାତିକ ନହେଲେ ହେଁ କ୍ରମଶଃ ବୃଦ୍ଧି ଲାଭ କରୁଛି । ସେଠାରେ କୃଷି ନିମନ୍ତେ ଟ୍ରାକ୍ଟର ନିତାନ୍ତ ଭାବରେ ଆବଶ୍ୟକ; କିନ୍ତୁ ଯେ ପର୍ଯ୍ୟନ୍ତ ଉପଜୀବ୍ୟ ନିମନ୍ତେ ବହୁସଂଖ୍ୟକ ଲୋକେ ଜମି ଉପରେ କେବଳ ନିର୍ଭର କରିଥିବେ, ସେ ପର୍ଯ୍ୟନ୍ତ ଅତ୍ୟଧିକ ଜନବହୁଳ ଗାଙ୍ଗେୟ ଉପତ୍ୟକା ନିମନ୍ତେ ଟ୍ରାକ୍ଟର ସମାନ ଭାବରେ ଆବଶ୍ୟକ ବୋଲି କୁହାଯାଇ ନପାରେ । ଅନ୍ୟାନ୍ୟ ବହୁ ସମସ୍ୟା ଦେଖା-ଦେବ, ଯେପରି ଆମେରିକାରେ ବି ଦେଖାଦେଇଛି । ଭାରତରେ ହଜାର ହଜାର ବର୍ଷ ଧରି କୃଷିକର୍ମ କରାଯାଉଛି ଏବଂ ମାଟିର ଉର୍ବରତାରୁ ଯେତିକି ଲାଭ ଉଠାଯିବା କଥା, ଉଠାଗଲାଣି । ଟ୍ରାକ୍ଟର ଦ୍ୱାରା ମାଟିକୁ ସାଧାରଣ ଲଙ୍ଗଳ ଅପେକ୍ଷା ଗଭୀରତର ଭାବରେ ଚଷିବାଦ୍ୱାରା ମାଟିର ଉର୍ବରାଶକ୍ତି ଦୁର୍ବଳ ତଥା କ୍ଷୟଶୀଳ ହେବାର ଆଶଙ୍କା ନାହିଁ କି ? ଭାରତରେ ରେଳପଥ ଯେ ନିର୍ମାଣ କରାଗଲା, ଆଉ ସେହି ଉଦ୍ଦେଶ୍ୟରେ ଉଚ୍ଚ ଉଚ୍ଚ ବନ୍ଧ ଯେ ଉତ୍ଥିତ କରାଗଲା, ସ୍ୱାଭାବିକ ଜଳନିଷ୍କାସନ ବ୍ୟବସ୍ଥା ପ୍ରତି ଦୃଷ୍ଟି ଦିଆଯାଇନାହିଁ । ଏହି ସବୁ ବନ୍ଧ ଜଳ-ନିଷ୍କାସନର ପଥରୋଧ କରିବା ଫଳରେ ଆମେ ବାରମ୍ବାର ତଥା ବେଳକୁ ବେଳ ପ୍ରବଳ ବନ୍ୟାର ସମ୍ମୁଖୀନ ହେଉଛୁ ଏବଂ ମୃତ୍ତିକା ସଂରକ୍ଷଣ ଏକ କଷ୍ଟସାଧ୍ୟ ବ୍ୟାପାର ହୋଇଉଠିଛି । ଏଥି ହେତୁରୁ ମେଲେରିଆ ବି ପ୍ରସାର ଲାଭକରିଛି ।

ଅତିକାୟ ଯନ୍ତ୍ର ଟ୍ରାକ୍ଟର୍‌ର ମୁଁ ପୂର୍ଣ୍ଣ ସମର୍ଥକ ଏବଂ ମୋର ହୃଦ୍‌ବୋଧ ହୋଇଛି ଯେ ଜମି ଉପରୁ ଚାପ ଲାଘବ କରିବା ନିମନ୍ତେ, ଦାରିଦ୍ର୍ୟତାକୁ ପରାଜିତ କରି ଜନସାଧାରଣଙ୍କ ଜୀବନଧାରଣର ମାନ ବୃଦ୍ଧି କରିବା ନିମନ୍ତେ, ପ୍ରତିରକ୍ଷା ତଥା ଅନ୍ୟାନ୍ୟ ବହୁ ଉଦ୍ଦେଶ୍ୟ ସାଧନ ନିମନ୍ତେ ଭାରତରେ ଦ୍ରୁତ ଶିଳ୍ପୀକରଣ ନିତାନ୍ତ ଆବଶ୍ୟକ । କିନ୍ତୁ ଏକଥା ମଧ୍ୟ ଅଛି ଯେ ଶିଳ୍ପୀକରଣର ପୂର୍ଣ୍ଣ ଫାଇଦା ଉଠାଇବାକୁ ହେଲେ ଓ ସେ ଦିଗର ବହୁ ବିପଦ ଏଡ଼ାଇବାକୁ ହେଲେ ଅତି ସାବଧାନ ଭାବରେ ଯୋଜନା କରିବାକୁ ପଡ଼ିବ । ଯେଉଁସବୁ

ଦେଶମାନଙ୍କରେ ଅଗ୍ରଗତି ବାଧାପ୍ରାପ୍ତ ହୋଇଛି, ଆଜି ଏ ପ୍ରକାର ଯୋଜନା ଆବଶ୍ୟକ । ବିଶେଷତଃ ଚୀନ ଓ ଭାରତ ଭଳି ଦେଶ ପାଇଁ ଯେଉଁଠି ନିଜସ୍ୱ ପରମ୍ପରାର ପ୍ରବଳ ପ୍ରଭାବ ବିଦ୍ୟମାନ, ଏ ପ୍ରକାର ଯୋଜନା ନିତାନ୍ତ ଜରୁରୀ ।

ଚୀନରେ ଶିଳ୍ପ ସମବାୟ ବା 'ଇଣ୍ଡାସ୍କୋ' ଆନ୍ଦୋଳନ ପ୍ରତି ମୁଁ ବିଶେଷ ଭାବରେ ଆକୃଷ୍ଟ ହୋଇଥିଲି । ମୋର ମନେ ହୁଏ, ସେପରି କିଛି ଏକ ଆନ୍ଦୋଳନ ଭାରତ ପାଇଁ ଆବଶ୍ୟକ ଏବଂ ଏଠାର ଅବସ୍ଥା ସଙ୍ଗେ ତା'ର ଖୁବ୍ ମେଳ ବି ପଡ଼ିବ । ଭାରତୀୟ ପୃଷ୍ଠଭୂମି ସଙ୍ଗେ ଏହା ସଙ୍ଗତି ରକ୍ଷା କରି ପାରିବ, କ୍ଷୁଦ୍ର ଶିଳ୍ପ ନିମନ୍ତେ ଗୋଟାଏ ଗଣତାନ୍ତ୍ରିକ ଭିତ୍ତି ଯୋଗାଇ ପାରିବ ଏବଂ ସମବାୟ ସୂତ୍ରରେ କାର୍ଯ୍ୟ କରିବାର ଅଭ୍ୟାସ ବୃଦ୍ଧି କରିବ । ବୃହତ୍ ଶିଳ୍ପ ପ୍ରତି ପରିପୂରକ ଭାବରେ ଏହା କାର୍ଯ୍ୟ କରିବ । ଏକଥା ସ୍ମରଣ ରଖିବାକୁ ପଡ଼ିବ ଯେ ଭାରତରେ ଭାରୀଶିଳ୍ପର ବିକାଶ କେତେ କ୍ଷିପ୍ର ହେଲେ ସୁଦ୍ଧା କ୍ଷୁଦ୍ର ଶିଳ୍ପ ଓ କୁଟୀରଶିଳ୍ପ ନିମନ୍ତେ ବିଶାଳ ଏକ କ୍ଷେତ୍ର ବରାବର ଉନ୍ମୁକ୍ତ ରହିବ । ଏପରିକି, ସୋଭିଏତ୍ ରୁଷିଆରେ ମଧ୍ୟ ମାଲିକ ଉତ୍ପାଦକ ସମବାୟ ସଂସ୍ଥାମାନ ଶିଳ୍ପ ଅଭିବୃଦ୍ଧିରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଚନ୍ତି ।

ବିଜୁଳିଶକ୍ତି ଯେତେ ସୁବିଧାରେ ମିଳିବ ଆଉ ଯେତେ ଅଧିକ ଭାବରେ ବ୍ୟବହୃତ ହେବ କ୍ଷୁଦ୍ର ଶିଳ୍ପର ସେତେ ଅଭିବୃଦ୍ଧି ଘଟିବ ଏବଂ ବଡ଼ ଧରଣର ଶିଳ୍ପ ସଙ୍ଗେ ପ୍ରତିଯୋଗିତା କରିବା ନିମନ୍ତେ ଅର୍ଥନୈତିକ ଦିଗରୁ ସାମର୍ଥ୍ୟ ଲାଭ କରିବ । ବିକେନ୍ଦ୍ରୀକରଣ ସପକ୍ଷରେ ମଧ୍ୟ ମତ ବୃଦ୍ଧି ପାଉଚି ଏବଂ ହେନ୍‌ରି ଫୋର୍ଡ଼ ମଧ୍ୟ ସେ କଥା କହୁଚନ୍ତି । ବୈଜ୍ଞାନିକମାନେ ସୂଚିତ କରୁଚନ୍ତି ଯେ ବଡ଼ ବଡ଼ ଶିଳ୍ପପ୍ରଧାନ ନଗରୀମାନଙ୍କରେ ଜୀବନଯାପନ କରିବା ଫଳରେ ମାଟି ସଙ୍ଗେ ଯେଉଁପରି ସମ୍ପର୍କ ତୁଟିଯାଉଚି, ସେଥିରେ ମନସ୍ତତ୍ତ୍ୱ ତଥା ପ୍ରାଣୀବିଜ୍ଞାନ ଦୃଷ୍ଟିରୁ କେତେକ ବିପଦ ନିହିତ ଅଛି । ଆହୁରି କେହି କେହି ମଧ୍ୟ କହନ୍ତି ଯେ ପୃଥିବୀ-ପୃଷ୍ଠରେ ମାନବର ନିରାପତ୍ତା ନିମନ୍ତେ, ଉଦ୍‌ବର୍ତ୍ତନ ଦୃଷ୍ଟିରୁ, ମାଟିର କୋଳକୁ ଓ ଗ୍ରାମ୍ୟଜୀବନକୁ ଫେରିଯିବା ଆବଶ୍ୟକ ହୋଇ ପଡ଼ୁଚି । ସୌଭାଗ୍ୟର କଥା, ଆଜି ବିଜ୍ଞାନ ଜନସଂଖ୍ୟାର ପରିବ୍ୟାପ୍ତି ସମ୍ଭବ କରି ପାରିଚି ଏବଂ ମଣିଷ ମାଟିର ନିକଟତମ ପରିବେଶରେ ରହି ସୁଦ୍ଧା ଆଧୁନିକ ସଭ୍ୟତା ଓ ସଂସ୍କୃତିର ସମସ୍ତ କିଛି ସ୍ୱାଚ୍ଛନ୍ଦ୍ୟ ଉପଭୋଗ କରିପାରୁଚି ।

ସେ ଯାହା ହେଉ କି ନା, ଗତ ଢେର ବର୍ଷ ଧରି ଭାରତରେ ଆମର ସମସ୍ୟା ହେଉଚି ସାମ୍ପ୍ରତିକ ପରିସ୍ଥିତିରେ ଏବଂ ବିଦେଶୀ ଶାସନ ଓ ତା'ର ଆନୁଷଙ୍ଗିକ ନ୍ୟସ୍ତସ୍ୱାର୍ଥ ଯେଉଁସବୁ ପ୍ରତିବନ୍ଧକ ସୃଷ୍ଟି କରୁଚି, ଆମେ କିପରି ଜନସାଧାରଣଙ୍କର ଦାରିଦ୍ର୍ୟ ମୋଚନ କରିବା ଓ ସେମାନଙ୍କ ପ୍ରାଣରେ ଆତ୍ମବିଶ୍ୱାସ ଜାଗ୍ରତ କରିବା । ଯେକୌଣସି ସମସ୍ତରେ କୁଟୀରଶିଳ୍ପର ବିକାଶସାଧନ କରାଯାଇପାରେ ବୋଲି ନାନା ଯୁକ୍ତି ଉଠୁଚି; କିନ୍ତୁ ଆମେ ଯେପରି ଭାବରେ ଅବସ୍ଥିତ, ତାହା ଛଡ଼ା ଆମେ ବାସ୍ତବରେ ଆଉ କିଛି କରିପାରି ନଥାନ୍ତେ । ଯେଉଁ ପ୍ରଣାଳୀ ଆମେ ଗ୍ରହଣ କରିଥାଇଁ ତାହା ସର୍ବୋତ୍କୃଷ୍ଟ କିମ୍ବା ସର୍ବାଙ୍ଗୀନ ଭାବରେ

ଉପଯୋଗୀ ହୋଇ ନଥାଇପାରେ । ସମସ୍ୟାର ବିଶାଳତା, ଅସୁବିଧା ଓ ଜଟିଳତା ସଙ୍ଗେ ମୁହୂର୍ମୁହୁ ସରକାରୀ ଦମନନୀତିର ସମ୍ମୁଖୀନ ହେବାକୁ ପଡ଼ିଛି । ଉଦ୍ୟମ ଓ ତ୍ରୁଟି-ବିଚ୍ୟୁତି ଭିତରଦେଇ ଆମକୁ କ୍ରମଶଃ ଶିକ୍ଷା କରିବାକୁ ହୋଇଛି । ମୋର ମନେହୁଏ, ଆମେ ଆରମ୍ଭରୁ ସମବାୟ ପଦ୍ଧତିକୁ ଉତ୍ସାହିତ କରିବାର ଥିଲା ଏବଂ କୁଟୀର ଓ ଗ୍ରାମ ପକ୍ଷରେ ଉପଯୋଗୀ ଶ୍ରେଷ୍ଠ ଯନ୍ତ୍ରପାତିର ଉନ୍ନତି ନିମନ୍ତେ ପ୍ରାୟୋଗିକ ତଥା ବିଜ୍ଞାନସମ୍ମତ ବିଶ୍ୱବିବୃଦ୍ଧି ଉପରେ ଅଧିକତର ଭାବରେ ନିର୍ଭର କରିବାର ଥିଲା । ଏହି ସବୁ ସଙ୍ଗଠନ-ମାନଙ୍କରେ ବର୍ତ୍ତମାନ ସମବାୟ ନୀତି ପ୍ରବର୍ତ୍ତିତ କରାଯାଉଛି ।

ଅର୍ଥନୀତିବିଶାରଦ ଜି. ଡି. ଏଇଚ୍. କୋଲ୍ କହିଛନ୍ତି, "ହାତକଟା ସୂତା ଓ ହାତବୁଣା ଲୁଗାର ଉନ୍ନତି ନିମନ୍ତେ ଗାନ୍ଧିଙ୍କର ଏ ଯେଉଁ ଆନ୍ଦୋଳନ, ଅତୀତର ପୁନରୁଦ୍ଧାର ସକାଶେ ଆତୁର କୌଣସି କଳ୍ପନାପ୍ରିୟ ବ୍ୟକ୍ତିର ଖିଆଲ ଗୋଟାଏ ସଉକ ନୁହେଁ; ଗ୍ରାମର ଦାରିଦ୍ର୍ୟ ଲାଘବ କରି ତା'ର ଜୀବନଧାରଣର ମାନ ଉନ୍ନୀତ କରିବା ଦିଗରେ ଏହା ଏକ ବାସ୍ତବ ଉଦ୍ୟମ ।" ଏ ଉକ୍ତି ଅକ୍ଷରେ ଅକ୍ଷରେ ସତ୍ୟ ଏବଂ ସେତିକି କେବଳ ନୁହେଁ ଗାନ୍ଧିଜୀଙ୍କ ସ୍ୱଦେଶୀ ଆନ୍ଦୋଳନ ଦରିଦ୍ର ଚାଷୀକୁ ମଣିଷ ଭାବରେ ଦେଖିବା ପାଇଁ, ସ୍ୱଳ୍ପ କେତେକ ଝଲମଲ ନଗରୀ ପଛରେ ଯେ କି ଦାରିଦ୍ର୍ୟ, କି ଦୁର୍ବିପାକର ସଂସାର ପଡ଼ିରହିଛି; ତାହା ଉପଲବ୍ଧି କରିବା ପାଇଁ ଏବଂ ଭାରତରେ ମୁକ୍ତି ଓ ପ୍ରଗତିର ପ୍ରକୃତ ପ୍ରକାଶ କେତେକ କୋଟିପତି କିମ୍ବା ସମୃଦ୍ଧିଶାଳୀ ଓକିଲ ଅଥବା ସେପରି କେତେକଙ୍କୁ ସୃଷ୍ଟି କରିବାରେ କିମ୍ବା ବିଧାନସଭା ତଥା ବିଧାନ ପରିଷଦ ସ୍ଥାପନ କରିବାରେ ଯେ ନାହିଁ, ରହିଛି ଚାଷୀ ଜୀବନର ଅବସ୍ଥା ଓ ବ୍ୟବସ୍ଥାର ପରିବର୍ତ୍ତନରେ—ଏହି ମୌଳିକ ବାସ୍ତବତା ଭଲ ଭାବରେ ଧାରଣା କରିବା ପାଇଁ ଭାରତକୁ ବାଧ୍ୟକଲା । ଭାରତରେ ଇଂରେଜମାନେ ଗୋଟାଏ ନୂତନ ଶ୍ରେଣୀ ବା ଜାତି ସୃଷ୍ଟି କରିଥିଲେ । ଏମାନେ ହେଉଛନ୍ତି ଇଂରେଜୀଶିକ୍ଷିତ ବାବୁଲୋକ । ଜନସାଧାରଣଙ୍କଠାରୁ ବିଚ୍ଛିନ୍ନ, ଏମାନେ ରହିଥିଲେ ନିଜସ୍ୱ ଏକ ଦୁନିଆରେ ଏବଂ ସବୁବେଳେ, ଏପରିକି ପ୍ରତିବାଦ କଲାବେଳେ ମଧ୍ୟ, ଶାସକଙ୍କ ଆଡ଼କୁ ଦୃଷ୍ଟି ଢାଳି ରହୁଥିଲେ । ଗାନ୍ଧିଜୀ କେତେକାଂଶରେ ଏହି ବ୍ୟବଧାନ ସଙ୍କୁଚିତ କରିପାରିଲେ ଏବଂ ଶାସକଙ୍କ ଉପରୁ ମୁହଁ ଫେରାଇ ନିଜ ଲୋକଙ୍କୁ ଚାହିଁବା ପାଇଁ ଏହି ଶ୍ରେଣୀକୁ ବାଧ୍ୟ କଲେ ।

ଯନ୍ତ୍ରପାତି ବ୍ୟବହାର ସମ୍ପର୍କରେ ଗାନ୍ଧିଜୀଙ୍କ ମନୋଭାବ କ୍ରମଶଃ ପରିବର୍ତ୍ତିତ ହେବା ଭଳି ବୋଧ ହୁଏ : "ଯନ୍ତ୍ର ବିଷୟରେ ମୋର କିଛି ଆପତ୍ତି ନାହିଁ ।" ସେ କହିଛନ୍ତି, "ଆପତ୍ତି ହେଉଛି ଯନ୍ତ୍ର ପାଇଁ ଏ ଯେଉଁ ଉନ୍ମାଦନା ଦେଖାଦେଉଛି ।" "ପ୍ରତ୍ୟେକ ଗ୍ରାମର ଘରେ ଘରେ ଆମେ ଯଦି ବିଜୁଳିଶକ୍ତି ପହଞ୍ଚାଇ ଦେଇପାରୁ, ଗ୍ରାମବାସୀ ସେମାନଙ୍କର କୃଷିକର୍ମ ବିଜୁଳି ସାହାଯ୍ୟରେ ଚଳାଇବାରେ ମୋର ଆପତ୍ତି ନାହିଁ ।" ଆଜିର ପରିସ୍ଥିତିରେ ଅନ୍ତତଃ, ବଡ଼ ବଡ଼ ଯନ୍ତ୍ରର ବ୍ୟବହାର ଅନିବାର୍ଯ୍ୟ ଭାବରେ ଧନ ଓ ଶକ୍ତି କେନ୍ଦ୍ରୀଭୂତ କରିବ ବୋଲି ସେ ବୋଧ କରୁଥିଲେ : "ସ୍ୱଳ୍ପ କେତେକଙ୍କ ହାତରେ ସମ୍ପଦ ଓ ଶକ୍ତି କେନ୍ଦ୍ରୀଭୂତ

କରିବା ଉଦ୍ଦେଶ୍ୟରେ ଯନ୍ତ୍ର ବ୍ୟବହାର କରିବା ମୁଁ ପାପ ଓ ଅନ୍ୟାୟ ବିବେଚନା କରେ । ଆଜି ଯନ୍ତ୍ରର ବ୍ୟବହାର ସେହି ଉଦ୍ଦେଶ୍ୟରେ ହିଁ କରାଯାଉଛି ।'' କେତେକ ଧରଣର ଭାରିଶିଳ୍ପ, ବହୁସଂଖ୍ୟକ ମୌଳିକ ଶିଳ୍ପ ଓ ସାର୍ବଜନୀନ ଉପଯୋଗିତା ସମ୍ବନ୍ଧୀୟ ଶିଳ୍ପର ଆବଶ୍ୟକତା ସେ ସ୍ୱୀକାର କରିବାକୁ ପ୍ରସ୍ତୁତ ଥିଲେ ଯଦି ସେସବୁ ରାଷ୍ଟ୍ରାୟତ୍ତ ହୁଏ ଏବଂ ତାଙ୍କର ବିବେଚନାରେ ଅତ୍ୟାବଶ୍ୟକ କେତେକ ଧରଣର କୁଟୀରଶିଳ୍ପର କାର୍ଯ୍ୟରେ ହସ୍ତକ୍ଷେପ ନକରେ । ନିଜର କେତେକ ପ୍ରସ୍ତାବ ବିଷୟ ଉଲ୍ଲେଖ କରି ସେ କହିଚନ୍ତି : "ଅର୍ଥନୈତିକ ସମାନତାର ଦୃଢ଼ ଭିତ୍ତି ଉପରେ ଯଦି ନିର୍ମିତ ନହୁଏ, ଏହି ସମଗ୍ର ପ୍ରୋଗ୍ରାମ୍ ବାଲି ଉପରେ ତୋଳିବା ଇମାରତ ଭଳି ଦିନେ ଭୂମିସାତ୍ ପଡ଼ିବ ।'' ଏପରି ଭାବରେ, କୁଟୀରଶିଳ୍ପ ତଥା କ୍ଷୁଦ୍ର ଶିଳ୍ପର ଉତ୍ସାହୀ ସମର୍ଥକମାନେ ମଧ୍ୟ ସ୍ୱୀକାର କରନ୍ତି ଯେ ବଡ଼ ଧରଣର ଶିଳ୍ପ ପ୍ରତିଷ୍ଠା, କେତେ ପର୍ଯ୍ୟନ୍ତ ଆବଶ୍ୟକ ଓ ଅନିବାର୍ଯ୍ୟ । ତା'ର ପରିସର ସୀମିତ ହେଉ, ଏତିକି କେବଳ ସେମାନେ ଚାହାଁନ୍ତି । ବାହ୍ୟତଃ, ତାହାହେଲେ ପ୍ରଶ୍ନ ହେଉଚି ଏହି ଉଭୟ ଧରଣର ଉତ୍ପାଦନ ଓ ଅର୍ଥନୀତି ଭିତରୁ କେଉଁ ଉପରେ ଜୋର୍ ଦିଆଯିବ ଓ ଉଭୟ ମଧ୍ୟରେ ସଙ୍ଗତି କିପରି ରହିବ । ଏଥିରେ ଦ୍ୱିମତ ହେବାର ନାହିଁ ଯେ ଆଧୁନିକ ବିଶ୍ୱର ପ୍ରକରଣରେ ଯେକୌଣସି ଦେଶ ଆନ୍ତର୍ଜାତିକ ସହଯୋଗ ଓ ନିର୍ଭରତାର ଗଢ଼ଣ ଭିତରେ ରହି ସୁଦ୍ଧା ରାଜନୀତି ଓ ଅର୍ଥନୀତି ଦିଗରୁ ସ୍ୱାଧୀନ ହୋଇ ନପାରେ ଯଦି ତା'ର ଶିଳ୍ପୀକରଣ ଓ ଶକ୍ତି-ସମ୍ବଳର ବିକାଶ ଏକ ଉଚ୍ଚତର ଅବସ୍ଥାରେ ଉପନୀତ ହୋଇନଥାଏ । ଅନ୍ୟଥା ଗୋଟାଏ ଉଚ୍ଚ ଜୀବନଧାରଣର ମାନ ଅର୍ଜନ କରିବା କିମ୍ବା ସେ ସ୍ତର ବଜାୟ ରଖିବା ତା'ର ପକ୍ଷରେ ସମ୍ଭବ ହେବନାହିଁ । ଆହୁରି ମଧ୍ୟ ଆଧୁନିକ ପ୍ରଯୁକ୍ତିବିଦ୍ୟାର ସାହାଯ୍ୟ ବିନା ଜୀବନର ପ୍ରତ୍ୟେକ କ୍ଷେତ୍ରରୁ ଦରିଦ୍ରତା ଲୋପ କରିବାର ଅନ୍ୟ ପନ୍ଥା ନାହିଁ । ଶିଳ୍ପ ଦିଗରେ ଅନଗ୍ରସର ଏକ ଦେଶ ବରାବର ବିଶ୍ୱର ଭାରସାମ୍ୟ ନଷ୍ଟ କରିବ ଓ ଅଧିକତର ଉନ୍ନତ ଦେଶ-ମାନଙ୍କର ଆକ୍ରମଣଶୀଳ ମନୋବୃତ୍ତି ଉତ୍ସାହିତ କରିବ । ତା'ର ରାଜନୈତିକ ସ୍ୱାଧୀନତା ସେ ବଜାୟ ରଖିପାରିଲେ ସୁଦ୍ଧା ତାହା ନାମକୁମାତ୍ର ରହିଥିବ ଏବଂ ତା'ର ଅର୍ଥନୈତିକ କର୍ତ୍ତୃତ୍ୱ ସବୁ ସମୟରେ ଅନ୍ୟ ହାତକୁ ଚାଲିଯିବା ପାଇଁ ବସିବ । ଏହି କର୍ତ୍ତୃତ୍ୱ, ଅନିବାର୍ଯ୍ୟ ଭାବରେ, ତା'ର କ୍ଷୁଦ୍ର ପରିସରଭୁକ୍ତ ଅର୍ଥନୀତିକୁ ବିଗାଡ଼ି ଦେବ, ଯାହାର ସଂରକ୍ଷଣ ସେ ଚାହିଁଥିବ ନିଜସ୍ୱ ଦୃଷ୍ଟିକୋଣରୁ ଜୀବନ ଗଢ଼ିବା ଲାଗି । ଏପରି ଭାବରେ, ଗୋଟାଏ ଦେଶର ଅର୍ଥନୀତିକୁ ବିଶେଷ ପରିମାଣରେ କୁଟୀରଶିଳ୍ପ ତଥା କ୍ଷୁଦ୍ର ଶିଳ୍ପର ଭିତ୍ତି ଉପରେ ଗଢ଼ିବାର ଉଦ୍ୟମ ବିଫଳତାରେ ପର୍ଯ୍ୟବସିତ ହେବା ଅବଶ୍ୟମ୍ଭାବୀ । ଏହା ଦେଶର ମୌଳିକ ସମସ୍ୟାମାନଙ୍କର ସମାଧାନ କରିପାରିବ ନାହିଁ କିମ୍ବା ସ୍ୱାଧୀନତା ବଜାୟ ରଖିପାରିବ ନାହିଁ । ଗୋଟାଏ ଉପନିବେଶ ହେବା ବ୍ୟତୀତ ବିଶ୍ୱରେ ତା' ପାଇଁ ଅନ୍ୟ ଆସନ ନାହିଁ ।

ଗୋଟାଏ ଦେଶରେ ସମ୍ପୂର୍ଣ୍ଣ ଭାବରେ ଭିନ୍ନ ଦୁଇ ପ୍ରକାର ଅର୍ଥନୀତି ଗ୍ରହଣ କରିବା କି ସମ୍ଭବ ? ଗୋଟାଏ ଭିତ୍ତି କରିବ ଅଧିକାୟ ଯନ୍ତ୍ର ଓ ଶିଳ୍ପୀକରଣ ଉପରେ ଏବଂ ଅନ୍ୟଟି ନିର୍ମିତ ହେବ ମୁଖ୍ୟତଃ କୁଟୀରଶିଳ୍ପର ଭିତ୍ତି ଉପରେ । ଏକଥା ଧାରଣା କରାଯାଇ

ପାରେନା; କାରଣ ଗୋଟାଏ ଅନ୍ୟଟିକୁ ଅବଶ୍ୟ ଅତିକ୍ରମ କରିଯିବ ଏବଂ ଏଥିରେ ସନ୍ଦେହ ନାହିଁ ଯେ ବଳପୂର୍ବକ ନିରୋଧିତ ନହେଲେ ଅତିକାୟ ଯନ୍ତ୍ରର ବିଜୟ ହିଁ ସୁନିଶ୍ଚିତ । ଏପରି ଭାବରେ, ଦୁଇ ଧରଣର ଉତ୍ପାଦନ ଓ ଅର୍ଥନୀତି ଭିତରେ ସଙ୍ଗତି ରକ୍ଷା କରିବାର ପ୍ରଶ୍ନ କେବଳ ଏହା ନୁହେଁ । ଶୀର୍ଷରେ ରହି ଗୋଟାଏ ଆଧିପତ୍ୟ କଲାବେଳେ ଅନ୍ୟଟି ରହିଥିବ ତା'ର ପୂରକ ଭାବରେ, କୌଣସିମତେ ତା'ର ସଙ୍ଗେ ନିଜକୁ ଚଳାଇ ନେଇ । ଅଧୁନାତନ ପ୍ରାଯୁକ୍ତିକ ସାଫଲ୍ୟ ଉପରେ ପ୍ରତିଷ୍ଠିତ ଅର୍ଥନୀତି ଆଧିପତ୍ୟ ଯେ କରିବ, ସନ୍ଦେହ ନାହିଁ । ପ୍ରଯୁକ୍ତିବିଦ୍ୟା ଯଦି ଅତିକାୟ ଯନ୍ତ୍ରର ଦାବି ଉତ୍‌ଥାପନ କରେ, ଆଜି ଯେପରି ବହୁତ ପରିମାଣରେ କରୁଛି, ତାହାହେଲେ ତା'ର ସମସ୍ତ ବିଜଡ଼ିତ ଅବସ୍ଥା ଓ ପରିଣାମ ସମେତ ଅତିକାୟ ଯନ୍ତ୍ରକୁ ଗ୍ରହଣ କରିବାକୁ ହିଁ ପଡ଼ିବ । ସେହି ଶିଳ୍ପ-ବିଜ୍ଞାନ ଅନୁସାରେ ଉତ୍ପାଦନର ବିକେନ୍ଦ୍ରୀକରଣ ଯେଉଁଠି ସମ୍ଭବ, କରିବା ବାଞ୍ଛନୀୟ; କିନ୍ତୁ ଯେତେବେଳେ ହେଲେ ଅଧୁନାତନ କାରୁକୌଶଳର ମାର୍ଗ ହିଁ ଅନୁସରଣ କରିବାକୁ ପଡ଼ିବ ଏବଂ କେବଳ ଏକ ସାମୟିକ ବ୍ୟବସ୍ଥା ବ୍ୟତୀତ କେଉଁ ମାନ୍ଧାତା ଅମଳର ଉତ୍ପାଦନ ପ୍ରଣାଳୀ ଅବଲମ୍ବନ କରି ରହିବା ଅର୍ଥ ଅଭିବୃଦ୍ଧି ଓ ବିକାଶର ପଥରୋଧ କରିବା ।

କ୍ଷୁଦ୍ର ଶିଳ୍ପ ଓ ବୃହତ୍ ଶିଳ୍ପର ଗୁଣାଗୁଣ ସମ୍ପର୍କରେ ଯେତେ ସବୁ ଯୁକ୍ତି ଆଜି ବିଚାର ଭାବରେ ଅପ୍ରାସଙ୍ଗିକ ମନେହୁଏ; କାରଣ ଆମର ବିଶ୍ୱ ନିଜେ ସମ୍ମୁଖୀନ ହେବା ଅବସ୍ଥାର ବାସ୍ତବତାକୁ ଅସ୍ୱୀକାର ନକରି ବଡ଼ ଧରଣର ଶିଳ୍ପପକ୍ଷରେ ହିଁ ନିଷ୍ପତ୍ତି ଗ୍ରହଣ କରିଛି । ଭାରତରେ ମଧ୍ୟ ଏହି ସବୁ ତଥ୍ୟ ଉପରେ ହିଁ ନିଷ୍ପତ୍ତି ନିଆଯାଇଛି ଏବଂ କାହାର ସନ୍ଦେହ କରିବାର ନାହିଁ ଯେ ଭାରତ ନିକଟ ଭବିଷ୍ୟତରେ ଦ୍ରୁତ ଶିଳ୍ପୀକରଣ କରିବ । ସେହି ଦିଗରେ କିଛି ବାଟ ସେ ଆଗେଇଗଲାଣି ମଧ୍ୟ । ନିୟନ୍ତ୍ରଣହୀନ ଓ ଯୋଜନାହୀନ ଶିଳ୍ପୀକରଣର କୁପରିଣାମ ଆଜି ସ୍ୱୀକୃତ ହୋଇଯାଇଛି । ଏହିସବୁ କୁପରିଣାମ ବୃହତ୍ ଶିଳ୍ପର ଆବଶ୍ୟକୀୟ ପ୍ରତିକ୍ରିୟା କିମ୍ବା ସେହି ଶିଳ୍ପ ପଛର ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥାରୁ ପ୍ରାପ୍ତ, ଅଲଗା କଥା । ଅର୍ଥନୈତିକ ବ୍ୟବସ୍ଥା ଯଦି ପ୍ରଥମତଃ ସେଥିପାଇଁ ଦାୟୀ ତାହାହେଲେ ପ୍ରୟୋଗ-କୌଶଳ ବା ଟେକ୍‌ନିକ୍‌ର ଅନିବାର୍ଯ୍ୟ ତଥା ବାଞ୍ଛନୀୟ ଉନ୍ନତିର ନିନ୍ଦା କରିବା ପରିବର୍ତ୍ତେ ଆମେ ସେହି ବ୍ୟବସ୍ଥାର ପରିବର୍ତ୍ତନ ନିମନ୍ତେ ଅଣ୍ଟାଭିଡ଼ିବା ଉଚିତ ।

ବିବିଧ ଅନୁପଯୋଗୀ ସତ୍ତ୍ୱ ଓ ଉତ୍ପାଦନ ପ୍ରଣାଳୀ ଭିତରେ ପରିମାଣାତ୍ମକ ସଙ୍ଗତି ସ୍ଥାପନ କରିବା ଓ ଭାରସାମ୍ୟ ରକ୍ଷାକରିବା ପ୍ରକୃତ ପ୍ରଶ୍ନ ନୁହେଁ; ପ୍ରକୃତ ପ୍ରଶ୍ନ ହେଉଛି କିଛି ଭିନ୍ନ ଓ ନୂତନ ନିମନ୍ତେ ଗୁଣାତ୍ମକ ପରିବର୍ତ୍ତନ ଘଟାଇବା; ଯେଉଁଥିରୁ ବିବିଧ ସାମାଜିକ ପରିଣାମ ପ୍ରବାହିତ ହୋଇଥାଏ । ଏହି ଗୁଣାତ୍ମକ ପରିବର୍ତ୍ତନର ଅର୍ଥନୈତିକ ଓ ରାଜନୈତିକ ବିଭାବ ଅବଶ୍ୟ ଗୁରୁତ୍ୱପୂର୍ଣ୍ଣ; କିନ୍ତୁ ଠିକ୍ ସେହିଭଳି ଗୁରୁତ୍ୱପୂର୍ଣ୍ଣ ତା'ର ସାମାଜିକ ଓ ମନସ୍ତାତ୍ତ୍ୱିକ ବିଭାବ । ଭାରତରେ ବିଶେଷତଃ, ଯେଉଁଠି ଆମେ କେଉଁ ଦୂର ଅତୀତରୁ କେତେକ ପୁରାତନ ବିଚାରଧାରା ଓ କର୍ମପନ୍ଥା ସଙ୍ଗେ ନାନା ଭାବରେ ବାନ୍ଧି ହୋଇ ରହିଛୁ, ନୂତନ ଧାରଣା ଓ

ନୂତନ ଦିଗନ୍ତ ଲାଭ କରିବା ଉଦ୍ଦେଶ୍ୟରେ ଆମର ଆବଶ୍ୟକ ନୂତନ କେତେ ଅଭିଜ୍ଞତା ଓ ନୂତନ କେତେ ପ୍ରକ୍ରିୟା । ଏପରି ଭାବରେ, ଆମ ଜୀବନଯାପନ ପ୍ରଣାଳୀର ସଙ୍ଗୃହୀନ ଚରିତ୍ର ଆମେ ପରିବର୍ତ୍ତନ କରି ତାକୁ ଗତିଶୀଳ ଓ ପ୍ରାଣମୟ କରି ପାରିବା ଏବଂ ଆମର ମନ ସକ୍ରିୟ ଓ ଦୁଃସାହସିକ କର୍ମ ନିମନ୍ତେ ଉତ୍ସୁକ ହୋଇ ଉଠିବ । ନୂତନ ଅବସ୍ଥାରୁ ନୂତନ ଅଭିଜ୍ଞତା ଲାଭ ହୁଏ । କାରଣ ମନ ତା'ର ସମ୍ପର୍କରେ ଆସି ଗୋଟାଏ ନୂତନ ପରିବେଷ୍ଟନୀ ସଙ୍ଗେ ମିଳିମିଶି ଚଳିବା ପାଇଁ ବାଧ୍ୟ ହୁଏ ।

ବର୍ତ୍ତମାନ ସ୍ୱୀକୃତ ହେଲାଣି ଯେ ଶିଶୁର ଶିକ୍ଷା କୌଣସି ହସ୍ତଶିଳ୍ପ କିମ୍ବା ଶାରୀରିକ କାର୍ଯ୍ୟକଳାପ ସଙ୍ଗେ ଘନିଷ୍ଠ ଭାବରେ ସମ୍ପର୍କିତ ହେବା ଆବଶ୍ୟକ । ସେଥିଦ୍ୱାରା ମନ ଉଦ୍ଦୀପିତ ହୁଏ ଏବଂ ମନ ଓ ହସ୍ତର କାର୍ଯ୍ୟ ଭିତରେ ସମନ୍ୱୟ ସାଧିତ ହୁଏ । ସେପରି ଭାବରେ ଯନ୍ତ୍ର ମଧ୍ୟ ବର୍ଦ୍ଧମାନ ବାଳକ କିମ୍ବା ବାଳିକାର ମନକୁ ଉଦ୍ଦୀପିତ କରେ । ଯନ୍ତ୍ରର ପ୍ରଭାବ ତା'ର ମନ ଉପରେ ପଡ଼େ (ଉପଯୁକ୍ତ ଅବସ୍ଥାରେ ଅବଶ୍ୟ; କୌଣସି କାରଖାନାର ଅସନ୍ତୁଷ୍ଟ ତଥା ଶୋଷିତ ଶ୍ରମିକ ଭାବରେ ନୁହେଁ) ଏବଂ ତା'ର ଦୃଷ୍ଟି ସମ୍ମୁଖରେ ନୂତନ କେତେ ଦିଗନ୍ତ ଉନ୍ମୋଚିତ ହୁଏ । ସାଧାରଣ ତଥା ସରଳ କେତେ ବୈଜ୍ଞାନିକ ପରୀକ୍ଷା-ନିରୀକ୍ଷା, ଯେପରି ଅଣୁବୀକ୍ଷଣ ଯନ୍ତ୍ରରେ ଦେଖିବା ଏବଂ ପ୍ରକୃତିର ସାଧାରଣ ତଥା ସ୍ୱାଭାବିକ କେତେକ କ୍ରିୟାର ବ୍ୟାଖ୍ୟା ଶିଶୁ ମନରେ ଅନୁସନ୍ଧିତ୍ସା ବଳବତୀ କରେ । ଜୀବନର କେତେକ ପ୍ରକ୍ରିୟାର ବୋଧ ଜନ୍ମାଏ ଏବଂ କେତେକ ନିର୍ଦ୍ଦିଷ୍ଟ ନୀତି ଓ ପୁରାତନ ସୂତ୍ର ଉପରେ ନିର୍ଭର ନ କରି ପରୀକ୍ଷା-ନିରୀକ୍ଷା ଦ୍ୱାରା ପ୍ରକୃତ ବିଷୟ ଜାଣିବାର ଆକାଙ୍କ୍ଷା ସୃଷ୍ଟି କରେ । ଆତ୍ମବିଶ୍ୱାସ ଓ ସହଯୋଗ ମନୋବୃତ୍ତି ବର୍ଦ୍ଧିତ ହୁଏ ଏବଂ ଅତୀତର ଦୂଷିତ ପରିବେଶରୁ ଉଦ୍‌ଗତ ନୈରାଶ୍ୟ କ୍ରମଶଃ ଦୂର ହୁଏ । ଚିର ପରିବର୍ତ୍ତନଶୀଳ ତଥା ଉତ୍କର୍ଷାଭିମୁଖୀ ଯାନ୍ତ୍ରିକ ପ୍ରୟୋଗ-କୌଶଳ ଉପରେ ପ୍ରତିଷ୍ଠିତ ସଭ୍ୟତା ଏହି ପଥରେ ପ୍ରଗତି କରିଯାଏ । ଏପରି ଏକ ସଭ୍ୟତା ଏକ ସ୍ପଷ୍ଟ ପରିବର୍ତ୍ତନ, ପୁରାତନ ଢାଞ୍ଚାରୁ ଏକପ୍ରକାର ଲମ୍ଫ ପ୍ରଦାନ ସଦୃଶ ଏବଂ ଏହା ଆଧୁନିକ ଶିଳ୍ପୀକରଣ ସଙ୍ଗେ ଘନିଷ୍ଠ ଭାବରେ ସମ୍ପୃକ୍ତ । ଅନିବାର୍ଯ୍ୟ ଭାବରେ ଏଥିରୁ ନୂତନ କେତେକ ସମସ୍ୟା ଓ ଅସୁବିଧା ଅବଶ୍ୟ ସୃଷ୍ଟି ହୁଏ; କିନ୍ତୁ ସେସବୁ ଅତିକ୍ରମି ଯିବା ପାଇଁ ଏହା ମାର୍ଗ ବି ପ୍ରଦର୍ଶନ କରେ ।

ଶିକ୍ଷାର ସାହିତ୍ୟ ବିଭାଗ ପ୍ରତି ମୋର ପକ୍ଷପାତିତା ରହିଛି ଏବଂ ପ୍ରାଚୀନ ସାହିତ୍ୟର ମୁଁ ଜଣେ ପ୍ରଶଂସକ; କିନ୍ତୁ ମୁଁ ନିଶ୍ଚିତ ଭାବରେ ଜାଣେ ଯେ ପ୍ରତ୍ୟେକ ବାଳକ ବାଳିକା ପାଇଁ ପଦାର୍ଥବିଜ୍ଞାନ, ରସାୟନବିଦ୍ୟା ବିଶେଷତଃ ଜୀବବିଦ୍ୟା ଏବଂ ବିଜ୍ଞାନର ପ୍ରୟୋଗ ସମ୍ପର୍କରେ କିଛି ପ୍ରାଥମିକ ବୈଜ୍ଞାନିକ ତାଲିମ୍ ନିତାନ୍ତ ଆବଶ୍ୟକ । ତାହାହେଲେ କେବଳ ସେମାନେ ଆଧୁନିକ ଦୁନିଆର ମତିଗତି ବୁଝିପାରିବେ, ତା'ର ସଙ୍ଗେ ସଙ୍ଗତି ରଖି ଚଳିଶିଖିବେ ଏବଂ କେତେ ପର୍ଯ୍ୟନ୍ତ ଅନ୍ତତଃ ଏକ ବିଜ୍ଞାନସମ୍ମତ ମାନସିକତାର କ୍ରମବିକାଶ ସମ୍ଭବ କରି ପାରିବେ । ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିବିଦ୍ୟାର ଅପୂର୍ବ ସଫଳତାରେ (ନିକଟ ଭବିଷ୍ୟତରେ ଏହା ଆହୁରି ଉନ୍ନତ ହେବ), ବୈଜ୍ଞାନିକ ଯନ୍ତ୍ରପାତିର ଚମତ୍କାର କୌଶଳରେ, ବିସ୍ମୟକର ଭାବରେ ସୂକ୍ଷ୍ମ ଅଥଚ ଶକ୍ତିଶାଳୀ ଯନ୍ତ୍ରରେ, ବିଜ୍ଞାନ ଓ ତା'ର ବିବିଧ ପ୍ରୟୋଗ ଦିଗରେ

ଦୁଃସାହସିକ ଅନ୍ୱେଷଣ ଫଳରେ ପ୍ରାପ୍ତ ସବୁ କିଛିରେ, ପ୍ରକୃତିର ବିଭିନ୍ନ ପ୍ରକ୍ରିୟାର ଆକର୍ଷକ ଝଲକରେ, ଚିନ୍ତା ଓ ଅଭ୍ୟାସର ପ୍ରଦେଶରେ, କୋଟିସଂଖ୍ୟକ କର୍ମୀଙ୍କ ଜୀବନରେ ବିଜ୍ଞାନର ଏହି ସୁନ୍ଦର ବସ୍ତୁତିରେ ଏବଂ ସର୍ବୋପରି ଏସବୁ ଯେ ମଣିଷ ମନର ଉଦ୍ଭାବନ ଓ ଅବଦାନ —ଏ ସତ୍ୟରେ ଯେଉଁ ବିସ୍ମୟ ଓ ଆନନ୍ଦ ଭରିରହିଛି, ବାସ୍ତବିକ ଧାରଣାର ଅତୀତ ।

## ୮. ଶିଳ୍ପିକ ପ୍ରଗତି ଉପରେ ସରକାରୀ ବାଧା : ଯୁଦ୍ଧକାଳୀନ ଉତ୍ପାଦନ ଓ ସ୍ୱାଭାବିକ ଉତ୍ପାଦନ

ଜେମସେଦ୍‌ପୁରରେ ସ୍ଥାପିତ ଟାଟା ଆଇରନ୍ ଏଣ୍ଡ୍ ଷ୍ଟିଲ୍ ଓ୍ୱାର୍କସ୍ (ଟାଟା କମ୍ପାନୀ) ଭାରତରେ ଭାରୀଶିଳ୍ପର ପ୍ରତିନିଧି । ଏଭଳି ବଡ଼ ଧରଣର କାରଖାନା ଆଉ ନାହିଁ ଏବଂ ଅନ୍ୟ ଯେତେସବୁ ଇଞ୍ଜିନିଅରିଂ କାରଖାନା ତା'ର ତୁଳନାରେ ଛୋଟ ଛୋଟ ଦୋକାନ ଭଳି । ସରକାରୀ ନୀତି ଯୋଗୁଁ ଟାଟା କମ୍ପାନୀର ଉନ୍ନତି ମଧ୍ୟ ମନ୍ଥର ହୋଇଛି । ପ୍ରଥମ ବିଶ୍ୱଯୁଦ୍ଧ କାଳରେ ରେଲଇଞ୍ଜିନ, ଯାତ୍ରୀବାହୀ ଓ ମାଲବାହୀ ଡବାର ଅଭାବ ପଡ଼ିଲା । ଟାଟା କମ୍ପାନୀ ରେଲଇଞ୍ଜିନ୍ ତିଆରି କରିବା ପାଇଁ ନିଷ୍ପତ୍ତି କଲେ ଏବଂ ମୋର ମନେହୁଏ ସେଥି ଉଦ୍ଦେଶ୍ୟରେ ଆବଶ୍ୟକୀୟ ଯନ୍ତ୍ରପାତି ମଧ୍ୟ ବିଦେଶରୁ ଆମଦାନୀ କରିଥିଲେ; କିନ୍ତୁ ଯୁଦ୍ଧ ଶେଷ ହେବା ପରେ ଭାରତ ସରକାର ଓ ରେଲବାଇ ବୋର୍ଡ (ଭାରତ ସରକାରଙ୍କ ଅନ୍ୟତମ ବିଭାଗ) ବ୍ରିଟିଶ ତିଆରି ଇଞ୍ଜିନ୍ ପ୍ରତି ତାଙ୍କର ପୃଷ୍ଠପୋଷକତା ଅବ୍ୟାହତ ରଖିବା ଲାଗି ନିଷ୍ପତ୍ତି କଲେ । ସାଧାରଣ ବଜାରରେ ରେଲଇଞ୍ଜିନ୍ ବିକ୍ରି ହେବାର ତ ନାହିଁ ଏବଂ ଭାରତର ରେଲବାଇ ଏବେ ସରକାରୀ କର୍ତ୍ତୃତ୍ୱାଧୀନ କିମ୍ବା ବ୍ରିଟିଶ କମ୍ପାନୀମାନଙ୍କ ମାଲିକାନାରେ ଥିବାରୁ ଟାଟା କମ୍ପାନୀ ରେଲଇଞ୍ଜିନ୍ ତିଆରି କରିବା ବିଚାର ଛାଡ଼ିବାକୁ ବାଧ୍ୟ ହେଲେ ।

ଶିଳ୍ପ ଦିଗରେ ତଥା ଅନ୍ୟ ଭାବରେ ଭାରତ ଯଦି ଉନ୍ନତ କରିବାକୁ ଚାହେଁ ତା'ର ତିନୋଟି ମୌଳିକ ଆବଶ୍ୟକତା ହେଉଛି; ଗୋଟାଏ ଭାରୀ ଇଞ୍ଜିନିଅରିଙ୍ଗ୍ ଓ ମେସିନ୍ ତିଆରି କାରଖାନା, ବିଜ୍ଞାନ ଗବେଷଣାଗାର ଏବଂ ବିଦ୍ୟୁତ୍‌ଶକ୍ତି । ସବୁକିଛି ଯୋଜନାର ଏତିକ ମୂଳଭିତ୍ତି ଏବଂ ଜାତୀୟ ଯୋଜନା କମିଟି ଏଥିଉପରେ ସର୍ବାଧିକ ଗୁରୁତ୍ୱ ଅର୍ପଣ କରିଥିଲେ । ଏ ତିନିଟିରୁ ଗୋଟିଏ ହେଲେ ଆମର ନାହିଁ । ଆଉ ଶିଳ୍ପକ୍ଷେତ୍ରରେ ସମ୍ପ୍ରସାରଣ ରୋଧକରିବା ବ୍ୟବସ୍ଥା ତ ବରାବର ଚାଲିଛି । ଏକ ପ୍ରଗତିଶୀଳ ନୀତି ଅତି ଚଞ୍ଚଳ ଏ ସବୁ ବାଧା ଉଠାଇ ଦେଇ ପାରନ୍ତା; କିନ୍ତୁ ସରକାରଙ୍କ ନୀତି ହେଲା ଠିକ୍ ତା'ର ବିପରୀତ ଏବଂ ଷ୍ପଷ୍ଟଭାବରେ ଭାରତରେ ଭାରୀଶିଳ୍ପର ବିକାଶ ପକ୍ଷରେ ନିରୋଧମୂଳକ । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା ପରେ ବିଦେଶରୁ ଆବଶ୍ୟକୀୟ ଯନ୍ତ୍ରପାତି ଆମଦାନୀ କରିବା ପାଇଁ ଅନୁମତି ଦିଆଗଲାନାହିଁ । ପରେ ଜାହାଜରେ ଆଣିବାର ଅସୁବିଧା ଦର୍ଶାଗଲା । ଭାରତରେ ମୂଳଧନ କିମ୍ବା କାରିଗରୀ ଦକ୍ଷତାର ଅଭାବ ନଥିଲା—ଥିଲା କେବଳ ଆବଶ୍ୟକୀୟ ଯନ୍ତ୍ରପାତି ଏବଂ ଶିଳ୍ପପତିମାନେ ସେଥିପାଇଁ ବରାବର ଦାବି କରୁଥାନ୍ତି । ଯନ୍ତ୍ରପାତି ଆମଦାନୀ କରିବା

ପାଇଁ ପୂର୍ବରୁ ଯଦି ସୁଯୋଗ ଦିଆଯାଇଥାନ୍ତା, ଭାରତର ଅର୍ଥନୈତିକ ଅବସ୍ଥା ପ୍ରଭୂତ ଭାବରେ ଯେ ଉନ୍ନତ ହୋଇଥାନ୍ତା କେବଳ ନୁହେଁ, ଅଧିକନ୍ତୁ ଦୂର-ପ୍ରାଚ୍ୟର ରଣାଙ୍ଗନ-ମାନଙ୍କରେ ଯୁଦ୍ଧର ତମାମ ଚିତ୍ର ବଦଳିଯାଇଥାନ୍ତା । ଆକାଶମାର୍ଗରେ ଅପର୍ଯ୍ୟାପ୍ତ ଧନ ବ୍ୟୟକରି ଓ ବହୁତ କିଛି ଅସୁବିଧା ଭିତର ଦେଇ ଅତ୍ୟାବଶ୍ୟକୀୟ ସରଞ୍ଜାମ ସବୁ ଯାହା ଆଣିବାକୁ ପଡ଼ିଲା, ସେସବୁ ଭାରତରେ ଉତ୍ପାଦନ କରାଯାଇ ପାରିଥାନ୍ତା । ଚୀନ ଓ ପ୍ରାଚ୍ୟ ଭୂଖଣ୍ଡ ପାଇଁ ଭାରତ ପ୍ରକୃତରେ ଗୋଟାଏ ଅସ୍ତ୍ରାଗାର ହୋଇପାରିଥାନ୍ତା ଏବଂ ତା'ର ଶିଳ୍ପୀକ ପ୍ରଗତି କାନାଡ଼ା କିମ୍ବା ଅଷ୍ଟ୍ରେଲିଆର ସମକକ୍ଷ ହୋଇପାରିଥାନ୍ତା । ଯୁଦ୍ଧ ପରିସ୍ଥିତିର ଚାହିଦା ଅତିଶୟ ଜରୁରୀ ହୋଇଥିଲେ ସୁଦ୍ଧା ବ୍ରିଟିଶ୍ ଶିଳ୍ପର ଭବିଷ୍ୟତ ଚାହିଦା ପ୍ରତି ସର୍ବଦା ଦୃଷ୍ଟି ରଖାଯାଉଥିଲା ଏବଂ ଯୁଦ୍ଧ ପରବର୍ତ୍ତୀକାଳରେ ବ୍ରିଟିଶ ଶିଳ୍ପ-ସଂସ୍ଥାମାନଙ୍କ ସଙ୍ଗେ ପ୍ରତିଯୋଗିତା କଲାଭଳି ଭାରତରେ କୌଣସି ଶିଳ୍ପର ବିକାଶ ଅବାଞ୍ଛିତ ବିବେଚିତ ହୋଇଥିଲା । ଏହା କୌଣସି ଗୋପନ ନୀତି ନଥିଲା । ବ୍ରିଟିଶ ପତ୍ରପତ୍ରିକାରେ ଏ ନୀତିର ଅଭିବ୍ୟକ୍ତି ବାରମ୍ବାର କରାଯାଉଥିଲା ଏବଂ ସେସବୁ ଉଲ୍ଲେଖ କରି ଭାରତର ପ୍ରତିବାଦ ବି ବାରମ୍ବାର ଚାଲିଥିଲା ।

ବାଙ୍ଗାଲୋର୍‌ରେ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍‌ସ ସ୍ଥାପନ ଟାଟା ଲୁହା କମ୍ପାନୀର ପ୍ରତିଷ୍ଠାତା ଦୂରଦ୍ରଷ୍ଟା ଜେମ୍‌ସେଦ୍‌ଜୀ ଟାଟାଙ୍କ ଗଭୀର ପରିକଳ୍ପନାର ପରିଚୟ ଦିଏ । ଭାରତରେ ଏଭଳି ଗବେଷଣା ଅନୁଷ୍ଠାନ ବେଶି ନଥିଲା । ଅନ୍ୟଗୁଡ଼ିକ ଥିଲା ସରକାରୀ ଅନୁଷ୍ଠାନ ଓ ସେଗୁଡ଼ିକର ଲକ୍ଷ୍ୟଥିଲା ସୀମିତ । ଆମେରିକା ଓ ସୋଭିଏତ୍ ୟୁନିୟନ୍‌ରେ ବୈଜ୍ଞାନିକ ଓ ଶିଳ୍ପୀକ ଗବେଷଣାର କ୍ଷେତ୍ର ବିଶାଳ । ହଜାର ହଜାର ଇନ୍‌ଷ୍ଟିଚ୍ୟୁଟ୍, ଏକାଡ଼େମୀ ଓ ବିଶେଷ ମହତ୍ତ୍ୱସମ୍ପନ୍ନ ଶିକ୍ଷାୟତନ ତା'ର ଅନ୍ତର୍ଭୁକ୍ତ । ଭାରତରେ ଏ ଦିଗ ପ୍ରତି ସମ୍ପୂର୍ଣ୍ଣ ଅବହେଳା କରାଯାଇଥିଲା ଏବଂ ବାଙ୍ଗାଲୋର୍ ଇନ୍‌ଷ୍ଟିଚ୍ୟୁଟ୍ ତଥା ବିଶ୍ୱବିଦ୍ୟାଳୟମାନଙ୍କରେ ଯେତିକି ଗବେଷଣା କାର୍ଯ୍ୟ ଚାଲିଥିଲା, ତାହା ବ୍ୟତୀତ ଆଉ କୌଣସି କ୍ଷେତ୍ର ନଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବାର କିଛି କାଳ ପରେ କେତେ ସୀମିତ ପରିସର ହେଲେ ସୁଦ୍ଧା, ଗବେଷଣା କାର୍ଯ୍ୟକୁ ଉତ୍ସାହିତ କରିବା ପାଇଁ ଭାରତରେ ଯେଉଁ ଉଦ୍ୟମ ହେଲା, ତାହା ବିଫଳ ଯାଇନି ।

ଜାହାଜ ଓ ରେଲଇଞ୍ଜିନ୍ ନିର୍ମାଣ ନିରୁତ୍ସାହିତ ଓ ନିବାରିତ କଲାବେଳେ ମୋଟର ତିଆରି କାରଖାନା ନିର୍ମାଣ କରିବାର ଏକ ଉଦ୍ୟମ ମଧ୍ୟ ପଣ୍ଡ କରିଦିଆଗଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର କେତେ ବର୍ଷ ପୂର୍ବରୁ ଏଥିନିମନ୍ତେ ପ୍ରସ୍ତୁତି କରାଯାଇଥିଲା ଏବଂ ଗୋଟାଏ ବିଖ୍ୟାତ ମୋଟର-ନିର୍ମାତା ମାର୍କିନ୍ ପ୍ରତିଷ୍ଠାନ ସହଯୋଗରେ ସତ୍ତ୍ୱ କିଛି ବ୍ୟବସ୍ଥା ହୋଇଥିଲା । ଭାରତରେ ସେତେବେଳକୁ କେତେଗୋଟି ଯୋଡ଼ା-ଯୋଡ଼ି କାରଖାନା କାର୍ଯ୍ୟକାରୀ ହେଉଥିଲା । ପ୍ରସ୍ତାବ ଥିଲା ଯେ ମୋଟରଗାଡ଼ିର ସବୁକିଛି ଅଂଶ ଭାରତୀୟ ମୂଳଧନ, ପରିଚାଳନା ଓ କାରିଗରୀ ଦକ୍ଷତା ସହକାରେ ଭାରତରେ ଉତ୍ପାଦନ କରାଯିବ । ମାର୍କିନ୍ ପ୍ରତିଷ୍ଠାନ ସଙ୍ଗେ ବ୍ୟବସ୍ଥା କରି ତା'ର ପେଟେଣ୍ଟ ବ୍ୟବହାର କରାଯାଇ ପାରିବ ଏବଂ ପ୍ରଥମେ ପ୍ରଥମେ ଉତ୍ପାଦନର ସବୁ ସ୍ତର ନିମନ୍ତେ ମାର୍କିନ୍ ପର୍ଯ୍ୟବେକ୍ଷଣ ବି ମିଳିବ । ବମ୍ବେ

ପ୍ରଦେଶର ତତ୍‌କାଳୀନ କଂଗ୍ରେସ ସରକାର ସକ୍ରିୟଭାବେ ସାହାଯ୍ୟ ଯୋଗାଇବା ପାଇଁ ପ୍ରତିଶ୍ରୁତ ହେଲେ । ଏହି ଯୋଜନା ପାଇଁ ଜାତୀୟ ଯୋଜନା କମିଟି ବିଶେଷ ଭାବରେ ଆଗ୍ରହୀ ଥିଲେ । କେବଳ ଯନ୍ତ୍ରପାତି ଆମଦାନୀ କରିବା ବ୍ୟତୀତ ବସ୍ତୁତଃ ସବୁ କିଛି ବ୍ୟବସ୍ଥା ହୋଇ ସାରିଥିଲା; କିନ୍ତୁ ଭାରତ-ସଚିବ ଏହା ପସନ୍ଦ କଲେନି ଏବଂ ଯନ୍ତ୍ରପାତି ଆମଦାନୀ କରିବା ଉପରେ ତାଙ୍କର ନିବାରକ ହୁକୁମ ଜାରି ହେଲା । ତାଙ୍କ ମତରେ 'ବର୍ତ୍ତମାନ ଏହି ଶିଳ୍ପ ନିର୍ମାଣ ଉଦ୍ୟମ ହେଲେ ଯୁଦ୍ଧ ନିମନ୍ତେ ଜରୁରି ଭାବରେ ଆବଶ୍ୟକ ଶ୍ରମ ଓ ଯନ୍ତ୍ରପାତି ଅନ୍ୟ ଦିଗରେ ବ୍ୟବହାର କରିବାକୁ ପଡ଼ିବ ।' ଏହା ଯୁଦ୍ଧ ଆରମ୍ଭ ହେବାର ପ୍ରଥମ କେତେ ମାସର—ତଥାକଥିତ 'ନକଲ' ଯୁଦ୍ଧ ସମୟର କଥା । ସରକାରଙ୍କୁ ସୂଚିତ କରାଗଲା ଯେ ଶ୍ରମ ଏପରିକି କାରିଗରୀ ଶ୍ରମ ପ୍ରଚୁର ପରିମାଣରେ ମିଳୁଛି ଏବଂ ଦେଖିଲେ ବସ୍ତୁତଃ ବେକାର ପଡ଼ିଛି । ଯୁଦ୍ଧର ଆବଶ୍ୟକତା ଦର୍ଶାଇବା ମଧ୍ୟ ଗୋଟିଏ ବିଚିତ୍ର ଯୁକ୍ତି; କାରଣ ସେହି ଆବଶ୍ୟକତା ଭିତରେ ମୋଟର ପରିବହନର ପ୍ରବଳ ଗୁରୁତ୍ୱ ଥିଲା; କିନ୍ତୁ ଲଣ୍ଡନରେ ଉପବିଷ୍ଟ ସର୍ବୋଚ୍ଚ ଅଧିକାରୀ ଭାରତ-ସଚିବ ଏହି ସବୁ ଯୁକ୍ତିଦ୍ୱାରା ବିଚଳିତ ହେଲେନାହିଁ । ଏକଥା ମଧ୍ୟ ଶୁଣାଗଲା ଯେ ଏକ ଶକ୍ତିଶାଳୀ ପ୍ରତିଦ୍ୱନ୍ଦ୍ୱୀ ମାର୍କିନ୍ ମୋଟର କର୍ପୋରେସନ୍ ଅନ୍ୟ କାହାର ସାହାଯ୍ୟରେ ଭାରତରେ ମୋଟର-ଶିଳ୍ପ ସ୍ଥାପନ କରିବା ପସନ୍ଦ କରୁନାହିଁ ।

ପରିବହନ ଭାରତରେ ଯୁଦ୍ଧ ସମୟର ବଡ଼ ଏକ ସମସ୍ୟା ଭାବରେ ଦେଖାଦେଲା । ମୋଟର ଟ୍ରକ୍, ପେଟ୍ରୋଲ୍, ରେଲଇଞ୍ଜିନ୍, ମାଲ୍-ଡବା ଏପରିକି କୋଇଲାର ମଧ୍ୟ ଅଭାବ ପଡ଼ିଥିଲା । ଏସବୁ ଅସୁବିଧାର ସମାଧାନ ସହଜ ହୋଇଥାନ୍ତା ଯଦି ଯୁଦ୍ଧ ପୂର୍ବର ଭାରତ ପକ୍ଷରୁ ଦିଆଯାଇଥିବା ପ୍ରସ୍ତାବମାନ ସରକାର ପ୍ରତ୍ୟାଖ୍ୟାନ କରିନଥାନ୍ତେ । ରେଲଇଞ୍ଜିନ୍, ରେଲଡ଼ବା, ମୋଟର, ଟ୍ରକ୍ ଓ ଅସ୍ତ୍ରସଜ୍ଜିତ ମୋଟରଗାଡ଼ି ବି ଭାରତରେ ଉତ୍ପାଦନ କରାଯାଇପାରିଥାନ୍ତା । ପେଟ୍ରୋଲ୍ ଅଭାବ ପାୱାର-ଆଲ୍‌କହଲ୍ ଅନେକାଂଶରେ ପୂରଣ କରନ୍ତା । କୋଇଲା କଥା କହିଲେ, ଭାରତରେ ଅଭାବ ନଥିଲା । ଖଣିଗର୍ଭରେ କୋଇଲା ପୂରି ରହିଥିଲା; କିନ୍ତୁ ବ୍ୟବହାର ନିମନ୍ତେ ଅତି ଅଳ୍ପ ପରିମାଣ କେବଳ ଉତ୍ପାଦନ କରାଯାଇଥିଲା । ଯୁଦ୍ଧକାଳର ବଢ଼ନ୍ତି ଗୁରୁତ୍ୱ ସତ୍ତ୍ୱେ କୋଇଲା ଉତ୍ପାଦନ ବସ୍ତୁତଃ କମିଥିଲା । କୋଇଲାଖଣିଗୁଡ଼ିକର ଅବସ୍ଥା ଏତେ ଖରାପ ଓ ମଜୁରି ହାର ଏତେ କମ୍ ଥିଲା ଯେ ଶ୍ରମିକମାନେ ସେଥି ପ୍ରତି ଆକର୍ଷିତ ହେବାର କିଛି କାରଣ ନଥିଲା । ପରିଶେଷରେ ଖଣି-ଗର୍ଭରେ ସ୍ତ୍ରୀମାନେ କାମ କରିବା ଉପରେ ଯେଉଁ ନିଷେଧାଜ୍ଞା ରହିଥିଲା, ତାହା ଉଠାଇ ନିଆଗଲା; କାରଣ କମ୍ ମଜୁରି ହାରରେ କାମ କରିବାପାଇଁ ସ୍ତ୍ରୀମାନେ ପ୍ରସ୍ତୁତ ଥିଲେ । କୋଇଲା-ଶିଳ୍ପର ସଂସ୍କାର କରି ଶ୍ରମିକମାନଙ୍କୁ ଆକର୍ଷିତ କରିବା ଉଦ୍ଦେଶ୍ୟରେ ସେଠାର ଅବସ୍ଥା ଓ ମଜୁରି ହାର ଉନ୍ନତ କରିବା ଦିଗରେ କୌଣସି ଉଦ୍ୟମ କରାଯାଇନଥିଲା । କୋଇଲା ଅଭାବରୁ ଶିଳ୍ପର ପ୍ରସାର ବିଶେଷ ପରିମାଣରେ ବ୍ୟାହତ ହେଲା ଏବଂ ଏପରିକି ଚାଲୁଥିବା କାରଖାନାଗୁଡ଼ିକ ମଧ୍ୟ ବନ୍ଦ ହେଲା ।

ଭାରତରେ ପରିବହନ ଅସୁବିଧା ତ ବିଧିରେ ଥିଲା, ଅଧିକନ୍ତୁ ଶହ ଶହ ରେଲଇଞ୍ଜିନ୍, ହଜାର ହଜାର ରେଲଡ଼ବା, ଜାହାଜ ଯୋଗେ ଭାରତରୁ ମଧ୍ୟପ୍ରାଚ୍ୟକୁ ପଠାଯିବା ଫଳରେ ସେ ଅସୁବିଧା ବହୁତ ପରିମାଣରେ ବଢ଼ିଗଲା । ଅନ୍ୟତ୍ର ବ୍ୟବହୃତ ହେବା ପାଇଁ କେତେକ ଅଞ୍ଚଳରୁ ଷ୍ଟାୟୀ ରେଲପଥ ସୁଦ୍ଧା ଉଠାଇ ନିଆଗଲା । ଭବିଷ୍ୟତର ପରିଣାମ ପ୍ରତି ମୋଟେ ଦୃଷ୍ଟି ନଦେଇ ଏସବୁ ସ୍ଥାନାନ୍ତରଣ କାର୍ଯ୍ୟ ଯେପରି ଖିଆଲି ଭାବରେ କରାଗଲା, ବାସ୍ତବିକ ବିସ୍ମୟକର । ଏ ବ୍ୟବସ୍ଥାରେ ପରିକଳ୍ପ ଓ ପୂର୍ବୋଦୃଷ୍ଟି ଲେଶମାତ୍ର ନଥିଲା ଏବଂ ଗୋଟାଏ ସମସ୍ୟାର ଆଂଶିକ ସମାଧାନ ଅବଲମ୍ବେ ଗୁଡ଼ାଏ ଗୁରୁତର ସମସ୍ୟା ସୃଷ୍ଟି କରୁଥିଲା ।

ଖ୍ରୀ: ୧୯୪୦ ଆରମ୍ଭରେ ଭାରତରେ ଗୋଟାଏ ଉଡ଼ାଜାହାଜ ତିଆରି କାରଖାନା ସ୍ଥାପନର ଉଦ୍ୟମ ହେଲା । ପ୍ରଥମବାର ଗୋଟାଏ ମାର୍କିନ୍ ପ୍ରତିଷ୍ଠାନ ସଙ୍ଗେ ସବୁକିଛୁ ବ୍ୟବସ୍ଥା କରାଗଲା ଏବଂ ଭାରତ ସରକାର ତଥା ସାମରିକ ବିଭାଗର ସମ୍ମତି ନିମନ୍ତେ ଜରୁରି ତାରବାର୍ତ୍ତାମାନ ପଠାଗଲା । କୌଣସି ଉତ୍ତର ନାହିଁ । ବାରମ୍ବାର ସ୍ମରଣ କରାଇବା ପରେ ଉତ୍ତର ଆସିଲା ଯେ ସରକାର ଯୋଜନାଟିକୁ ପସନ୍ଦ କରିନାହାନ୍ତି । ଇଂଲଣ୍ଡ ଓ ଆମେରି-କାରେ କିଣିବାକୁ ମିଳୁଥିଲା ବେଳେ ଭାରତରେ ଉଡ଼ାଜାହାଜ ତିଆରି କରି ଲାଭ କ'ଣ ?

ଯୁଦ୍ଧ ପୂର୍ବରୁ ନାନାବିଧ ଔଷଧ, ଔଷଧି ଦ୍ରବ୍ୟ ଓ ଟୀକା-ରସ ଜର୍ମାନୀରୁ ଭାରତକୁ ଆସୁଥିଲା । ଯୁଦ୍ଧ ଫଳରେ ତାହା ବନ୍ଦ ହେଲା । ଅନତିବିଳମ୍ବେ ସରକାରଙ୍କୁ ସୂଚିତ କରାଗଲା ଯେ କେତେକ ଅତ୍ୟାବଶ୍ୟକୀୟ ଟୀକା-ରସ ଓ ଔଷଧ ଭାରତରେ ପ୍ରସ୍ତୁତ କରାଯାଇ ପାରିବ । ଏ ପରାମର୍ଶ ପସନ୍ଦ ହେଲାନି ଏବଂ ଓଲଟି ସରକାର ପରାମର୍ଶ ଦେଲେ ଯେ ଏ ଦିଗରେ ଭାରତର ଯାହା କିଛି ଆବଶ୍ୟକତା ଇମ୍ପିରିଅଲ୍ କେମିକେଲ ଇଣ୍ଡଷ୍ଟ୍ରିଜ୍ ଜରିଆରେ ପୂରଣ କରାଯାଇ ପାରିବ । ପୁଣି ଯେବେ ପରାମର୍ଶ ଦିଆଗଲା ଯେ ଇମ୍ପିରିଅଲ୍ କେମିକାଲ୍ ଇଣ୍ଡଷ୍ଟ୍ରିଜ୍ ଯୋଗାଇବା ଔଷଧ ଆହୁରି ଅଳ୍ପ ଖର୍ଚ୍ଚରେ ଭାରତରେ ଉତ୍ପାଦନ କରି ସାମରିକ ଓ ବେସାମରିକ ବ୍ୟବହାର ନିମନ୍ତେ, କୌଣସି ବ୍ୟକ୍ତିଗତ ସ୍ୱାର୍ଥ ବିଚାର ନରଖି ଯୋଗାଯାଇ ପାରିବ, ରାଷ୍ଟ୍ରୀୟ ବ୍ୟାପାରରେ ଏ ପ୍ରକାର ହୀନ ମନୋଭାବ ଭର୍ତ୍ତି କରିବା ଉଚିତ ନୁହେଁ ବୋଲି ଉଚ୍ଚ କର୍ତ୍ତୃପକ୍ଷ ଘୋର ବିରକ୍ତି ପ୍ରକାଶକଲେ । କୁହାଗଲା 'ଭାରତ ସରକାର ଗୋଟାଏ ବାଣିଜ୍ୟ ସଂସ୍ଥା ନୁହେଁ ।'

ପ୍ରକୃତରେ ଭାରତ ସରକାର ଗୋଟାଏ ବାଣିଜ୍ୟ ସଂସ୍ଥା ନୁହେଁ । କଥିତ ବିଶାଳ ଯୌଥ ପ୍ରତିଷ୍ଠାନକୁ ସବୁ ପ୍ରକାର ସୁବିଧା ଦିଆଯାଇଥିଲା । ଏ ପ୍ରକାର ସୁବିଧା ଦିଆଯାଇନଥିଲେ ସୁଦ୍ଧା ତା'ର ବିପୁଳ ସମ୍ବଳ, କେତେକାଂଶରେ ଟାଟା ପ୍ରତିଷ୍ଠାନ ବ୍ୟତୀତ ଅନ୍ୟ କୌଣସି ଭାରତୀୟ ସଂସ୍ଥାକୁ ପ୍ରତିଯୋଗିତାର କ୍ଷେତ୍ରରେ ତିଷ୍ଠିବାକୁ ଦେଇନଥାନ୍ତା । ଏସବୁ ସୁବିଧା ଅତିରିକ୍ତ ଆଇ. ସି. ଆଇ.ର ଶକ୍ତିଶାଳୀ ସମର୍ଥକ ଭାରତ ଓ ଇଂଲଣ୍ଡ ଉଭୟ ଦେଶରେ ରହିଥିଲେ । ଭାରତର ଭାଇସ୍‌ରୟ ଆସନ ଛାଡ଼ି ଦିବାର କେତେମାସ ପରେ ଲର୍ଡ଼ ଲିନ୍‌ଲିଥ୍‌ଗୋ ଏକ ନୂତନ ଭୂମିକାରେ ଅବତୀର୍ଣ୍ଣ ହେଲେ । ଇମ୍ପିରିଅଲ୍ କେମିକେଲ୍‌ସ୍‌ର ସେ ହେଲେ ଅନ୍ୟତମ ଡାଇରେକ୍ଟର ବା ପରିଚାଳକ ।

ଖ୍ରୀ: ୧୯୪୨ ଡ଼ିସେମ୍ବର ମାସରେ, ଭାଇସ୍‌ରୟ୍ ଭାବରେ ଲର୍ଡ ଲିନ୍‌ଲିଥଗୋ ଘୋଷଣା କଲେ : "ଯୋଗାଣ କ୍ଷେତ୍ରରେ ଆମେ ବିପୁଳ ସାଫଲ୍ୟ ଅର୍ଜନ କରିଛୁ । ଭାରତର ଅବଦାନ ଅତୀବ ଗୁରୁତ୍ୱପୂର୍ଣ୍ଣ ଓ ମୂଲ୍ୟବାନ···ଯୁଦ୍ଧର ପ୍ରଥମ ଛ' ମାସରେ ପ୍ରାୟ ୨୯ କୋଟି ଟଙ୍କା ମୂଲ୍ୟର ଠିକା ଦିଆଯାଇଛି । ପରବର୍ତ୍ତୀ ଏପ୍ରିଲ୍‌ରୁ ଅକ୍ଟୋବର ଭିତରେ ତାହା ୧୩୭ କୋଟି ହେଲା । ଅକ୍ଟୋବର ଶେଷ ପୁରା ୪୨୮ କୋଟି ଟଙ୍କାର ଠିକା ଦିଆଯାଇଛି ଏବଂ ଏହା ବ୍ୟତୀତ ଗୁଳିବାରୁଦ କାରଖାନାମାନଙ୍କରେ ଯେଉଁ ବରାଦ ଦିଆଗଲା, ତା'ର ମୂଲ୍ୟ ମଧ୍ୟ ସାମାନ୍ୟ ନୁହେଁ ।" ଏସବୁ ସତ ଏବଂ ଯୁଦ୍ଧ ଉଦ୍ୟୋଗ ପାଇଁ ଭାରତର ଅବଦାନ ଭାଇସ୍‌ରୟଙ୍କ ଏହି ଉକ୍ତି ପରେ ଅଧିକ ବଢ଼ିଯାଇଛି । ଏଥିରୁ ଯିଏ କେହି ଅନୁମାନ କରି-ପାରନ୍ତି ଯେ, ଏହା ଔଦ୍ୟୋଗିକ କାର୍ଯ୍ୟକଳାପର ବୃଦ୍ଧି ପ୍ରଦର୍ଶିତ କରୁଛି ଏବଂ ଉତ୍ପାଦନ ପ୍ରଭୂତ ପରିମାଣରେ ବଢ଼ିଯାଇଛି । ତଥାପି ଆଶ୍ଚର୍ଯ୍ୟର କଥା, ଭାରତର ଶିଳ୍ପକ୍ଷେତ୍ରରେ କଥିତ ସମୟର ପରିବର୍ତ୍ତନ କିଛି ନୁହେଁ କହିଲେ ଚଳେ । ଖ୍ରୀ: ୧୯୩୮-୩୯ରେ ଭାରତର ଔଦ୍ୟୋଗିକ କାର୍ଯ୍ୟକଳାପର ସୂଚନାଙ୍କ ଥିଲା (୧୯୩୫କୁ ଶହେ ବୋଲି ଧରି) ୧'୧·୧ । ଖ୍ରୀ: ୧୯୩୯-୪୦ରେ ୧୧୪୦; ଖ୍ରୀ: ୧୯୪୦-୪୧ରେ ୧୧୨·୧ ଓ ୧୨୭·୦ ଭିତରେ ରହିଲା; ଖ୍ରୀ: ୧୯୪୨ ମାର୍ଚ୍ଚରେ ଏହି ସୂଚନାଙ୍କ ଥିଲା ୧୧୮·୯; ଏପ୍ରିଲ୍, ୧୯୪୨ରେ ଏହା ୧୦୯·୨କୁ ଖସିଆସିଲା ଏବଂ ତା'ପରେ କ୍ରମଶଃ ବୃଦ୍ଧି ପାଇ ଜୁଲାଇରେ ହେଲା ୧୧୬·୨ । ଏ ସବୁ ସଂଖ୍ୟା ପୂର୍ଣ୍ଣ ନୁହେଁ; କାରଣ ଏଥିରେ ଗୋଳାବାରୁଦ କାରଖାନା ଓ ରସାୟନ ଶିଳ୍ପ-ଗୁଡ଼ିକର ହିସାବ ଯୋଗ କରାଯାଇନି । ତଥାପି ଏ ସବୁ ମହତ୍ତ୍ୱପୂର୍ଣ୍ଣ ଓ ତାତ୍ପର୍ଯ୍ୟପୂର୍ଣ୍ଣ । ଏଥିରୁ ହିସାବ କରି ଦେଖିହେଉଛି ଯେ ଜୁଲାଇ, ୧୯୪୨ରେ ଗୋଳାବାରୁଦ ଇତ୍ୟାଦି ବାଦ୍ ଦେଲେ ଭାରତର ସର୍ବମୋଟ ଔଦ୍ୟୋଗିକ କାର୍ଯ୍ୟକଳାପର ହାର ଯୁଦ୍ଧ ପୂର୍ବ ସମୟର ହାରଠାରୁ ସାମାନ୍ୟ ମାତ୍ର ବେଶି । ଏହା ବଡ଼ ବିସ୍ମୟର କଥା । ଖ୍ରୀ: ୧୯୪୧, ଡ଼ିସେମ୍ବର ମାସରେ କେବଳ ସୂଚନାଙ୍କ ୧୨୬·୦କୁ ଉଠିଯାଇଥିଲା ଏବଂ ତା'ପରେ ଖସିଆସିଲା । ତଥାପି ଶିଳ୍ପ-ସଂସ୍ଥାମାନଙ୍କରେ ସରକାର ଯେଉଁ ଠିକା ଦେଉଥିଲେ, ତାହା କ୍ରମଶଃ ବର୍ଦ୍ଧିତ ହେଉଥିଲା । ଖ୍ରୀ: ୧୯୩୯ ଅକ୍ଟୋବରରୁ ମାର୍ଚ୍ଚ, ୧୯୪୦ ପର୍ଯ୍ୟନ୍ତ ଛ'ମାସ ଭିତରେ, ଲର୍ଡ ଲିନ୍‌ଲିଥ୍‌ଗୋଙ୍କ ଉକ୍ତି ଅନୁସାରେ, ଏହି ସବୁ ଠିକାର ମୂଲ୍ୟ ଥିଲା ୨୯ କୋଟି ଏବଂ ଖ୍ରୀ: ୧୯୪୨ ଏପ୍ରିଲ୍‌ରୁ ଅକ୍ଟୋବର ପର୍ଯ୍ୟନ୍ତ ଛ'ମାସର ଠିକା ମୂଲ୍ୟ ଥିଲା ୧୩୭ କୋଟି ।

ଏହିସବୁ କୋଟି କୋଟି ଟଙ୍କାର ଯୁଦ୍ଧକାଳୀନ ବରାଦ ଶିଳ୍ପ ଉତ୍ପାଦନରେ ବିଶେଷ କିଛି ଅଗ୍ରଗତିର ସୂଚନା ଦିଏନାହିଁ; ବରଂ ପ୍ରକୃତରେ ଏତିକି ସୂଚିତ କରେ ଯେ ଯୁଦ୍ଧ ଉଦ୍ଦେଶ୍ୟରେ ବିଶେଷ ଧରଣର ଉତ୍ପାଦନ ନିମନ୍ତେ ସ୍ୱାଭାବିକ ଉତ୍ପାଦନ ବିସ୍ତୃତ ଭାବରେ କମ୍ କରିଦିଆଗଲା । ଏଥିଦ୍ୱାରା ସାମୟିକ ଭାବରେ ଅବଶ୍ୟ ଯୁଦ୍ଧର ଆବଶ୍ୟକତା ଯୋଗାଇ ଦିଆଗଲା; କିନ୍ତୁ ଜନସାଧାରଣଙ୍କ ନିମନ୍ତେ ଉଦ୍ଦିଷ୍ଟ ଉତ୍ପାଦନ ଅସମ୍ଭବ ଭାବରେ ଖସିଗଲା । ଅନିବାର୍ଯ୍ୟ ଭାବରେ ଏହାର ପରିଣାମ ହେଲା ଦୂରପ୍ରସାରୀ । ଭାରତ ପାର୍ଶ୍ୱରେ ଲଣ୍ଡନରେ

ଷ୍ଟର୍‌ଲିଂ ପାଣ୍ଠି ବୃଦ୍ଧି ପାଇଲାବେଳେ ଏବଂ ଭାରତରେ ମୁଷ୍ଟିମେୟ କେତେଜଣଙ୍କ ହାତରେ ଧନ ପୁଞ୍ଜୀଭୂତ ହେଲାବେଳେ, ଅତ୍ୟାବଶ୍ୟକ ଦ୍ରବ୍ୟର ଅଭାବ ଲାଗି ସମଗ୍ର ଦେଶ ପ୍ରବଳ ଅସୁବିଧା ଭୋଗକଲା; କାଗଜଟଙ୍କା ବେଳକୁ ବେଳ ଅଧିକ ଭାବରେ ପ୍ରସାରିତ ହେଲା ଏବଂ ଦରଦାମ୍ ସାଙ୍ଘାତିକ ଭାବରେ ବଢ଼ିଗଲା । ଖ୍ରୀ: ୧୯୪୨ ଅଧାଅଧି ବେଳକୁ ଖାଦ୍ୟସଙ୍କଟ ଜଳଜଳ ହେଲାଣି ଏବଂ ଖ୍ରୀ: ୧୯୪୩ ଶରତ୍ କାଳରେ ବଙ୍ଗ ଓ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଲକ୍ଷ ଲକ୍ଷ ଲୋକ ଦୁର୍ଭିକ୍ଷ ଗ୍ରାସରେ ଜୀବନ ହରାଇଲେ । ଯୁଦ୍ଧର ବୋଝ ଏବଂ ଯୁଦ୍ଧ ସମ୍ପର୍କୀୟ ସରକାରୀ ନୀତି ଭାରତର କୋଟି କୋଟି ଲୋକଙ୍କ ଉପରେ ପଡ଼ିଲା, ଯାହା ବହନ କରିବା ପାଇଁ ସେମାନଙ୍କର ସାମର୍ଥ୍ୟ ମୋଟେ ନଥିଲା । ଫଳରେ ଅଗଣିତ ଲୋକ ସର୍ବାପେକ୍ଷା କଷ୍ଟକରତମ ମୃତ୍ୟୁର କବଳରେ ପଡ଼ିଲେ । ସେହି ମୃତ୍ୟୁ ହେଉଛି ଅନାହାର-ଜନିତ ମୃତ୍ୟୁ—ତିଳ ତିଳ ମରଣ ।

ମୁଁ ଯେଉଁ ହିସାବ ଦେଲି ତାହା ଖ୍ରୀ: ୧୯୪୨ ଶେଷ ପର୍ଯ୍ୟନ୍ତ । ତା'ପରେ ମୋ ପାଖରେ ଆଉ ହିସାବ ନାହିଁ । ସମ୍ଭବତଃ ଇତିମଧ୍ୟରେ ବହୁତ ପରିବର୍ତ୍ତନ ଘଟିଗଲାଣି ଏବଂ ଭାରତର ଶିଳ୍ପ-ଉତ୍ପାଦନର ସୂଚନାଙ୍କ ହୁଏତ ଅଧିକ ହେଉଛି । (୧) କିନ୍ତୁ ଏ ସବୁଥିରୁ ଯାହା ଚିହ୍ନ ମିଳୁଛି, କୌଣସି ମୌଳିକ ଭାବରେ ପରିବର୍ତ୍ତନ ଘଟିଥିବା ଭଳି ଜଣାଯାଉନି । ଠିକ୍ ସେହି ରକମର ବିବିଧ ପ୍ରକ୍ରିୟା ଚାଲିଛି, ଠିକ୍ ସେହି ଧରଣର ସଙ୍କଟ ଗୋଟାକ ପରେ ଗୋଟାଏ ଲାଗିରହିଛି, ଠିକ ସେହି ଧରଣର ସାମୟିକ ନିରାକରଣ ବ୍ୟବସ୍ଥା ଏଠି ସେଠି କରାଯାଉଛି । ପୂର୍ବଭଳି କୌଣସି ଯୋଜନା ଓ ବିସ୍ତୃତ ଦୃଷ୍ଟିଭଙ୍ଗୀର ସୂଚନା ନାହିଁ । ଆଉ ବ୍ରିଟିଶ ଶିଳ୍ପର ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ଠିକ୍ ସେହି ଧରଣର ପକ୍ଷପାତିତା ଅବ୍ୟାହତ ରହିଛି; କିନ୍ତୁ ଇତିମଧ୍ୟରେ ଲୋକେ ଖାଦ୍ୟ ଅଭାବରୁ ଓ ମହାମାରୀ ହେତୁରୁ ଅଗଣିତ ସଂଖ୍ୟାରେ ମରିବାରେ ଲାଗିଚନ୍ତି । ଏକଥା ସତ୍ୟ ଯେ କେତେକ ଶିଳ୍ପ ବିଶେଷତଃ ବୟନ,

---

(୧) କିନ୍ତୁ ସେପରି ନୁହେଁ । କଲିକତାରୁ ଇଂରେଜୀ ଭାଷାରେ ପ୍ରକାଶିତ 'କେପିଟାଲ୍' ପତ୍ରିକାର ୯, ମାର୍ଚ୍ଚ, ୧୯୪୪ ସଂଖ୍ୟାରେ ଭାରତରେ ଶିଳ୍ପିକ କାର୍ଯ୍ୟକଳାପର ନିମ୍ନୋକ୍ତ ସୂଚନାଙ୍କ ପ୍ରକାଶ ପାଇଛି ।

୧୯୩୫—୩୬...୧୦୦

୧୯୩୮-୩୯...୧୧୧.୧;   ୧୯୩୯-୪୦...୧୧୪.୦;   ୧୯୪୦-୪୧...୧୧୬.୩;   ୧୯୪୧-୪୨...୧୨୨.୭;   ୧୯୪୨-୪୩...୧୦୮.୮;   ୧୯୪୩-୪୪...୧୦୮.୦ (ପ୍ରାୟ); ୧୯୪୪ (ଜାନୁୟାରୀ)...୧୧୧.୭

ଏଥିରେ ମୁଦ୍ରାସ୍ଫୀତ ଉତ୍ପାଦନ ଯୋଗକରାଯାଇନି । ଅତଏବ, ଚାରି ବର୍ଷରୁ ଅଧିକ କାଳର ଯୁଦ୍ଧ ପର୍ଯ୍ୟାୟ ପରେ ମଧ୍ୟ ସାମଗ୍ରିକ ଭାବରେ ଦେଖିଲେ ଭାରତରେ ଶିଳ୍ପିକ କାର୍ଯ୍ୟକଳାପ ପ୍ରାକ୍‌ଯୁଦ୍ଧ ସମୟ ତୁଳନାରେ ପ୍ରକୃତରେ କିଛି ହ୍ରାସ ପାଇଛି ।

ଲୁହା ଓ ଇସ୍ପାତ୍ ଏବଂ ଯୋଟକଳଗୁଡ଼ିକ ଖୁବ୍ ଭଲ ଭାବରେ ସମୃଦ୍ଧ ହୋଇପାରିଥିଲା । ବଡ଼ ବଡ଼ ଶିଳ୍ପପତି, ଯୁଦ୍ଧ-ଠିକାଦାର, ମହାଜନୁଦ୍ଦକାରୀ ଓ ଲାଭଖୋରଙ୍କ ଭିତରେ କୋଟିପତି ସଂଖ୍ୟା ବୃଦ୍ଧି ପାଇଛି ଏବଂ ଅତିରିକ୍ତ କରଭାର ସତ୍ତ୍ୱେ ଭାରତର ଉପରବର୍ଗର ଏକ କ୍ଷୁଦ୍ର ଅଂଶ ହାତରେ ପ୍ରଚୁର ଧନ ଜମାହୋଇଯାଇଛି । ଶ୍ରମିକଶ୍ରେଣୀ ସାଧାରଣତଃ ଲାଭବାନ୍ ହୋଇନି ଏବଂ ଶ୍ରମିକ ନେତା ଏନ୍. ଏମ୍. ଯୋଶୀ କେନ୍ଦ୍ର ଆସେମ୍ବ୍ଲିରେ ଘୋଷଣା କରିଥିଲେ ଯେ ଯୁଦ୍ଧକାଳରେ ଭାରତୀୟ ଶ୍ରମିକମାନଙ୍କ ଅବସ୍ଥା ପୂର୍ବାପେକ୍ଷା ଅଧିକ ଖରାପ ହୋଇଛି; ପଞ୍ଜାବ ଓ ସିନ୍ଧୁରେ ବିଶେଷକରି, ଜମିଦାର ଓ ବଡ଼ ଚାଷୀମାନେ ସମୃଦ୍ଧ ହୋଇଥିଲେ । କିନ୍ତୁ ସାମଗ୍ରିକ ଭାବରେ ନେଲେ ଭାରତର ଚାଷୀକୂଳ ଯୁଦ୍ଧ ହେତୁରୁ ଖୁବ୍ ଦୁରବସ୍ଥା ଭୋଗିଥିଲେ । ଦରବୃଦ୍ଧି ଓ ମୁଦ୍ରାସ୍ଫୀତି ଯୋଗୁଁ ଖାଉଟିମାନେ କଳବଳ ହୋଇ ପଡ଼ିଥିଲେ ।

ଖ୍ରୀ: ୧୯୪୨ ମଧ୍ୟଭାଗରେ ଗ୍ରେଡ଼ି କମିଟି ନାମରେ ଅଭିହିତ ଏକ ମାର୍କିନ୍ ଟେକ୍‌ନିକେଲ୍ କମିଶନ ଭାରତକୁ ଆସିଲେ ପ୍ରଚଳିତ ଶିଳ୍ପ-ସଂସ୍ଥାଗୁଡ଼ିକର ପରୀକ୍ଷା କରି ଉତ୍ପାଦନ ବୃଦ୍ଧି ନିମନ୍ତେ ପରାମର୍ଶ ଦେବାପାଇଁ । ଯୁଦ୍ଧ ଉଦ୍ଦେଶ୍ୟରେ ଉତ୍ପାଦନ ବିଷୟରେ ସେମାନେ ଜାଣିବାକୁ ଚାହିଁବା ସ୍ୱାଭାବିକ । କମିଶନ ଯେଉଁ ରିପୋର୍ଟ ଦେଲେ ତାହା ପ୍ରକାଶିତ ହେଲାନି । ସମ୍ଭବତଃ ତାହା ପ୍ରକାଶ ନ କରିବା ପାଇଁ ଭାରତ ସରକାର ନିଷ୍ପତ୍ତି କରିନେଲେ । ସେମାନେ କରିଥିବା ସୁପାରିଶ୍ ଭିତରୁ କେତେଗୋଟି କେବଳ ଘୋଷଣା କରାଗଲା । ପାଓ୍ୱାର-ଅଲ୍‌କହଲ୍ ଉତ୍ପାଦନ, ଇସ୍ପାତ୍ ଶିଳ୍ପର ସମ୍ପ୍ରସାରଣ, ଅଧିକ ବିଦ୍ୟୁତ୍‌ଶକ୍ତି, ଅଧିକତର ଆଲୁମିନିୟମ୍ ଓ ବିଶୁଦ୍ଧ ଗନ୍ଧକ ଉତ୍ପାଦନ ଏବଂ ବିବିଧ ଶିଳ୍ପର ବିଜ୍ଞାନସମ୍ମତ ପୁନର୍ଗଠନ ନିମନ୍ତେ ଗ୍ରେଡ଼ି କମିଟି ପରାମର୍ଶ ଦେଇଥିଲେ । ମାର୍କିନ୍ ଆଦର୍ଶରେ ପ୍ରତିଷ୍ଠିତ, ସରକାରୀ ବିଭାଗରୁ ସ୍ୱତନ୍ତ୍ର, ଉତ୍ପାଦନ ଉପରେ ଉଚ୍ଚ କ୍ଷମତାପନ୍ନ ନିୟନ୍ତ୍ରଣ କାର୍ଯ୍ୟକାରୀ କରିବାପାଇଁ ମଧ୍ୟ ସେମାନେ ସୁପାରିଶ କରିଥିଲେ । ଏକଥା ସ୍ପଷ୍ଟ ଯେ, ଗ୍ରେଡ଼ି କମିଟି ଭାରତ ସରକାରଙ୍କ ମନ୍ଥର, ନୈମିତ୍ତିକ ତଥା ଦକ୍ଷତାବିହୀନ ପଦ୍ଧତିର ପ୍ରଶଂସକ ହୋଇପାରିନଥିଲେ । ସରକାରଙ୍କ ଉପରେ ଏତେବଡ଼ ଯୁଦ୍ଧ ମଧ୍ୟ ସେପରି କୌଣସି ବିଶେଷ ପ୍ରଭାବ ପକାଇ ପାରି-ନଥିଲା । ତେବେ, ଭାରତୀୟମାନଙ୍କ ଦ୍ୱାରା ପରିଚାଳିତ ଏକ ବିରାଟ ସଂଗଠନ ଟାଟା ଷ୍ଟିଲ୍ ଓ୍ୱାର୍କସ୍‌ର ସଂଗଠନ କୁଶଳତା ଓ କର୍ମଦକ୍ଷତା ଦେଖି କମିଟି ମୁଗ୍ଧ ହୋଇଥିଲେ । ଗ୍ରେଡ଼ି କମିଟିର ପ୍ରାଥମିକ ପ୍ରତିବେଦନରେ ଆହୁରି କୁହାଯାଇଛି ଯେ "କମିଟି ଭାରତୀୟ ଶ୍ରମିକର ଉତ୍କୃଷ୍ଟ କର୍ମ-ଶକ୍ତି ଓ ସାଧୁତା ଦେଖି ପ୍ରସନ୍ନ ହୋଇଥିଲେ । ଭାରତୀୟ ହସ୍ତ ଦକ୍ଷତାପୂର୍ଣ୍ଣ ଏବଂ କାର୍ଯ୍ୟ କରିବା ନିମନ୍ତେ ସନ୍ତୋଷଜନକ ପରିସ୍ଥିତି ଓ ନ୍ୟୁନତର ନିରାପତ୍ତା ଯୋଗାଇଲେ ଏହି ଅଧ୍ୟବସାୟୀ ଶ୍ରମିକ ଉପରେ ନିର୍ଭର କରାଯାଇ ପାରିବ । (୧)

(୧) ଗ୍ରେଡ଼ି କମିଟି ରିପୋର୍ଟକୁ ମାଡ଼ିବସିବା ସମ୍ବନ୍ଧରେ ବମ୍ବେରୁ ପ୍ରକାଶିତ ୨୮, ନଭେମ୍ବର, ୧୯୪୨ ସଂଖ୍ୟା 'କମର୍ସ' ପତ୍ରିକାର ମନ୍ତବ୍ୟ ଉଲ୍ଲେଖଯୋଗ୍ୟ ;

ଗତ ଦୁଇ ତିନି ବର୍ଷରେ ରସାୟନଶିଳ୍ପ ବର୍ଦ୍ଧିତ ହୋଇଛି, ଜାହାଜ ନିର୍ମାଣ କିଛି ଅଗ୍ରଗତି କରିଛି ଏବଂ ଏକ ବ୍ୟୋମଯାନ-ଶିଳ୍ପ ବି ସ୍ଥାପିତ ହୋଇଛି । ଷ୍ଟୋଟ ଓ ଲୁଗାକଳ ସମେତ ସମସ୍ତ ଯୁଦ୍ଧ-ଉଦ୍ଦିଷ୍ଟ ଶିଳ୍ପ ଅତିରିକ୍ତ କରି ସତ୍ତ୍ୱେ ବିପୁଳ ଭାବରେ ଲାଭବାନ୍ ହୋଇଛନ୍ତି ଏବଂ ବହୁତ ମୂଳଧନ ଜମିଛି । ନୂତନ ଶିଳ୍ପ ନିର୍ମାଣ ଉଦ୍ଦେଶ୍ୟରେ ମୂଳଧନ ଖଟାଇବା ଉପରେ ଭାରତ ସରକାର ନିଷେଧାଜ୍ଞା ଜାରି କରିଥିଲେ । ଅଧୁନା ସେ ନୀତି କିଛି କୋହଳ କରାଯାଇଛି ଯଦିଓ ଯୁଦ୍ଧ ଶେଷ ନହେବା ଯାଏଁ ନିର୍ଦ୍ଦିଷ୍ଟ କିଛି କରାଯିବା ଆଶା ନାହିଁ । ଏଇମାତ୍ର କୋହଳ ବ୍ୟବସ୍ଥା ହିଁ ବଡ଼ ବଡ଼ ବ୍ୟବସାୟୀମାନଙ୍କୁ କର୍ମଚଞ୍ଚଳ କରିଛି ଓ ବଡ଼ ବଡ଼ ଶିଳ୍ପ ଯୋଜନାମାନ ଆକାର ଘେନୁଛି । ଭାରତ, ଯାହାର ପ୍ରଗତି ଏତେ ଦିନ ଧରି ବାଧାପ୍ରାପ୍ତ ହୋଇଥିଲା, ବ୍ୟାପକ ଶିଳ୍ପୀକରଣ ନିମନ୍ତେ ଆଜି ଉନ୍ମୁଖ ପ୍ରସ୍ତୁତ ହେଉଛି ।



'ପ୍ରକୃତ କଥା ହେଉଛି, ଦରିଆ ସେପାରି, ଶକ୍ତିଶାଳୀ କେତେ ନ୍ୟସ୍ତସ୍ୱାର୍ଥ ଏ ଦେଶରେ ଶିଳ୍ପପ୍ରସାରଣର ତଣ୍ଟି ଚିପିବା ଉଦ୍ଦେଶ୍ୟରେ କାର୍ଯ୍ୟକାରୀ ହେଉଛନ୍ତି; କାରଣ ତାହାହେଲେ ଯୁଦ୍ଧ ପରବର୍ତ୍ତୀ ବର୍ଷରେ ପାଶ୍ଚାତ୍ୟ-ଜଗତ ପ୍ରାଚ୍ୟ ପକ୍ଷରୁ କୌଣସି ବିପଜ୍ଜନକ ପ୍ରତିଯୋଗିତାର ସମ୍ମୁଖୀନ ହେବାର ଅବକାଶ ରହିବ ନାହିଁ ।

## ନବମ ପରିଚ୍ଛେଦ

# ଅନ୍ତିମ ପର୍ବ (୩) ଦ୍ୱିତୀୟ ବିଶ୍ୱଯୁଦ୍ଧ

### ୧. କଂଗ୍ରେସର ବୈଦେଶିକ ନୀତି

ଭାରତର ଅନ୍ୟାନ୍ୟ ରାଜନୈତିକ ସଙ୍ଗଠନମାନଙ୍କ ଭଳି ଜାତୀୟ କଂଗ୍ରେସ ମଧ୍ୟ ବହୁକାଳାବଧି ଆଭ୍ୟନ୍ତରୀଣ ରାଜନୀତିରେ ଲିପ୍ତ ରହି ବୈଦେଶିକ ବ୍ୟାପାର ପ୍ରତି ବିଶେଷ ଦୃଷ୍ଟି ଦେଇନଥିଲା । ଖ୍ରୀ: ୧୯୨୦ରୁ ୩୦ ଭିତରେ ବୈଦେଶିକ ବ୍ୟାପାର ପ୍ରତି କଂଗ୍ରେସ ଦୃଷ୍ଟି ଦେଲା । ସୋସାଲିଷ୍ଟ ଓ କମ୍ୟୁନିଷ୍ଟମାନେ କ୍ଷୁଦ୍ରଗୋଷ୍ଠୀ ହେଲେହେଁ ଦେଶ ବାହାରର ଘଟଣା ପ୍ରତି ଆଗ୍ରହୀ ଥିଲେ । ଅନ୍ୟ ସଙ୍ଗଠନମାନଙ୍କର ସେ ଦୃଷ୍ଟି ନଥିଲା । ମୁସ୍‌ଲିମ୍ ସଙ୍ଗଠନଗୁଡ଼ିକ ପାଲେଷ୍ଟାଇନ୍ ବିଷୟରେ ଆଗ୍ରହୀ ଥିଲେ ଓ ମଝିରେ ମଝିରେ ସେଠାକାର ମୁସ୍‌ଲିମ୍ ଆରବମାନଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ କରି ପ୍ରସ୍ତାବମାନ କେବଳ ଗ୍ରହଣ କରୁଥିଲେ । ଏମାନେ ତୁର୍କୀ, ମିଶର ଓ ଇରାନ୍‌ର ତୀବ୍ର ଜାତୀୟବାଦ ପ୍ରତି ଏକପ୍ରକାର ଭୟମିଶ୍ରିତ କୌତୂହଳବୋଧ ପୋଷଣ କରୁଥିଲେ; କାରଣ ସେସବୁ ଦେଶ ଧର୍ମନିରପେକ୍ଷ ଥିଲା ଏବଂ ସେଠାରେ ସେପରି ସବୁ ସଂସ୍କାରମାନ କାର୍ଯ୍ୟକାରୀ କରାଯାଉଥିଲା; ଯାହା ଭାରତୀୟ ମୁସ୍‌ଲିମ୍ ସଙ୍ଗଠନମାନଙ୍କ ଦୃଷ୍ଟିରେ ଇସ୍‌ଲାମୀୟ ପରମ୍ପରାର ପରିପନ୍ଥୀ ବିବେଚିତ ହେଉଥିଲା । କଂଗ୍ରେସ କ୍ରମଶଃ ତା'ର ଏକ ନିଜସ୍ୱ ବୈଦେଶିକ ନୀତିର ବିକାଶ ଦିଗରେ ମନ ଦେଲା ଏବଂ ତାହା ଭିତ୍ତି କଲା ସବୁ ରାଜନୈତିକ ଓ ଅର୍ଥନୈତିକ ସାମ୍ରାଜ୍ୟବାଦର ବିଲୋପସାଧନ ଏବଂ ସ୍ୱାଧୀନ ଦେଶମାନଙ୍କ ପାରସ୍ପରିକ ସହଯୋଗ ବିଚାର ଉପରେ । ଭାରତର ସ୍ୱାଧୀନତା ଦାବି ସଙ୍ଗେ ଏହାର ସଙ୍ଗତି ରହୁଥିଲା । ଖ୍ରୀ: ୧୯୨୦ ସୁଦ୍ଧା କଂଗ୍ରେସ ବୈଦେଶିକ ନୀତି ଉପରେ ଏକ ପ୍ରସ୍ତାବ ଗ୍ରହଣକଲା, ଯେଉଁଥିରେ ଅନ୍ୟ ଦେଶମାନଙ୍କ ସଙ୍ଗେ ସହଯୋଗ କରିବା ଏବଂ ବିଶେଷତଃ ଆମର ସମସ୍ତ ପଡ଼ୋଶୀ ଦେଶମାନଙ୍କ ସଙ୍ଗେ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠା କରିବାର ଆକାଂକ୍ଷା ପ୍ରକାଶ ପାଇଥିଲା । ଆଉ ଏକ ବଡ଼ ଧରଣର ଯୁଦ୍ଧ ଘଟିବାର ସମ୍ଭାବନା ଉପରେ ପରେ ବିଚାର କରାଯାଇଥିଲା ଏବଂ ଖ୍ରୀ: ୧୯୨୭ରେ, ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବାର ବାର ବର୍ଷ ପୂର୍ବରୁ, କଂଗ୍ରେସ ପ୍ରଥମେ ସେ ସମ୍ପର୍କରେ ତା'ର ନୀତି ଘୋଷଣା କଲା ।

ଏହା ସେହି ସମୟର କଥା ଯେବେ ହିଟଲର୍‌ର କ୍ଷମତାକୁ ଆସିବା ପାଇଁ ପାଞ୍ଚ ଛ' ବର୍ଷର ବ୍ୟବଧାନ ରହିଥିଲା ଏବଂ ଜାପାନ ଆହୁରି ମାଞ୍ଚୁରିଆ ଆକ୍ରମଣ କରିନଥିଲା । ଇଟାଲୀରେ ମୁସୋଲିନୀ ନିଜର ଆସ୍ଥାନ ଦୃଢ଼ କରୁଥିଲେ ସୁଦ୍ଧା ବିଶ୍ୱଶାନ୍ତି ପକ୍ଷରେ ଦିନେ ଯେ ସେ ଏକ

ବିପଦ ରୂପରେ ଆତ୍ମପ୍ରକାଶ କରିବେ, ତା'ର ସୂଚନା ମିଳୁନଥିଲା । ଇଂଲଣ୍ଡ ସଙ୍ଗେ ଫାସିଷ୍ଟ ଇଟାଲୀର ମୈତ୍ରୀ ସମ୍ପର୍କ ଥିଲା ଏବଂ ବ୍ରିଟିଶ ରାଷ୍ଟ୍ରନୀତିଜ୍ଞମାନେ ମୁସୋଲିନୀଙ୍କ ପ୍ରଶଂସାରେ ମୁଖର ହୋଇଉଠିଥିଲେ । ୟୁରୋପରେ ଆହୁରି ଛୋଟ ଛୋଟ ଏକଛତ୍ରବାଦୀ ମୁଣ୍ଡଟେକି ଉଠୁଥିଲେ ଏବଂ ବ୍ରିଟିଶ ସରକାର ସଙ୍ଗେ ସେମାନଙ୍କର ପ୍ରାୟ ଭଲ ସମ୍ପର୍କ ରହିଥିଲା । ସୋଭିଏତ୍ ୟୁନିଅନ୍ ଓ ଇଂଲଣ୍ଡ ଭିତରେ ଅବଶ୍ୟ ବନ୍ଧୁ ସମ୍ପର୍କ ସମ୍ପୂର୍ଣ୍ଣ ଭାବରେ ତୁଟିଯାଇଥିଲା । ଆର୍କସ୍ ଘଟଣା ପରେ ଉଭୟ ଦେଶ ମଧ୍ୟରେ କୂଟନୈତିକ ସମ୍ପର୍କ ଛିନ୍ନ ହେଲା । ଲିଗ୍ ଅଫ୍ ନେସନ୍ସରେ ଓ ଆନ୍ତର୍ଜାତିକ ଶ୍ରମିକ ସଙ୍ଗଠନରେ ବ୍ରିଟିଶ ଓ ଫରାସୀ ନୀତି ଥିଲା ସ୍ପଷ୍ଟଭାବରେ ରକ୍ଷଣଶୀଳ । ନିରସ୍ତ୍ରୀକରଣ ନିମନ୍ତେ ଯେଉଁ ବିରାମହୀନ ଆଲୋଚନା ଚାଲିଥିଲା, ଆମେରିକା ସମେତ ଲିଗ୍‌ରେ ପ୍ରତିନିଧିତ୍ୱ କରୁଥିବା ସମସ୍ତ ଦେଶ ଆକାଶପଥରୁ ବୋମାବର୍ଷଣ ସମ୍ପୂର୍ଣ୍ଣ ଭାବରେ ଉଚ୍ଛେଦ କରିଯାଉ ବୋଲି ମତ ଦେଲାବେଳେ ବ୍ରିଟେନ୍ ସେ ସମ୍ପର୍କରେ କେତେକ ସର୍ତ୍ତ ଲୋଡ଼ିବସିଲା । ବହୁ ବର୍ଷ ଧରି ବ୍ରିଟିଶ ସରକାର ତାଙ୍କର 'ପୁଲିସ୍ କାର୍ଯ୍ୟ' ଉଦ୍ଦେଶ୍ୟରେ ଇରାକ୍‌ରେ ତଥା ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ ସହର ଓ ଗ୍ରାମାଞ୍ଚଳରେ ଉଡ଼ାଜାହାଜରୁ ବୋମା ବର୍ଷଣ କରିଥିଲେ । ଏହି 'ଅଧିକାର' ପାଇଁ ଧରିବସିବା ଫଳରେ ଲିଗ୍ ଅଫ୍ ନେସନ୍ସରେ ଓ ପରେ ନିରସ୍ତ୍ରୀକରଣ ସମ୍ମେଳନରେ କୌଣସି ସର୍ବସମ୍ମତ ନିଷ୍ପତ୍ତିରେ ପହଞ୍ଚିବା ପଥ ରୁନ୍ଧିକଲେ ।

ଜର୍ମାନୀ-ଓ୍ୱେଇମାର ସାଧାରଣତନ୍ତ୍ର, ଜର୍ମାନୀ ଲିଗ୍ ଅଫ୍ ନେସନ୍ସର ସଭ୍ୟ ଥିଲା ଏବଂ ୟୁରୋପରେ ସ୍ଥାୟୀ ଶାନ୍ତିର ଅଗ୍ରଦୂତ ରୂପରେ ଲୋକାର୍ଣ୍ଣୋକୁ ସ୍ୱାଗତ କରାଗଲା ଓ ଏହା ବ୍ରିଟିଶ ନୀତିର ବିଜୟ ବୋଲି ଧରାଯାଇଥିଲା । ଏହି ସବୁ ଘଟଣାବଳୀର ଆଉ ଏକ ପାର୍ଶ୍ୱରେ ସୋଭିଏତ୍ ୟୁନିଅନ୍‌କୁ ନିମନ୍ତ୍ରଣ ଏକଘରିଆ କରାଯାଉଥିଲା ଏବଂ ୟୁରୋପରେ ତା'ର ବିରୁଦ୍ଧରେ ଏକ ମିଳିତ ସାମ୍ମୁଖ୍ୟ ସୃଷ୍ଟି ହେଉଥିଲା । ରୁଷିଆ ତା'ର ବିପ୍ଳବର ଦଶମ ବାର୍ଷିକ ଉତ୍ସବ ପାଳନ କରିସାରିଥିଲା ଏବଂ ପ୍ରାଚ୍ୟର ତୁରସ୍କ, ଇରାନ୍, ଆଫଗାନିସ୍ଥାନ ଓ ମଙ୍ଗୋଲିଆ ସଙ୍ଗେ ତାହାର ବନ୍ଧୁ ସମ୍ପର୍କ ସ୍ଥାପିତ ହୋଇଥିଲା ।

ଚୀନ ବିପ୍ଳବ ମଧ୍ୟ ଦୀର୍ଘ ପଦକ୍ଷେପରେ ଅଗ୍ରଗତି କରିଥିଲା । ଜାତୀୟତାବାଦୀ ସେନାବାହିନୀ ଅର୍ଦ୍ଧେକ ଚୀନ ଦଖଲ କରିସାରିଥିଲେ ଏବଂ ସେଥିଲାଗି ସେମାନଙ୍କୁ ବନ୍ଦର, ସହର ଓ ଅନ୍ୟାନ୍ୟ ଅଞ୍ଚଳରେ ବିଦେଶୀ ସ୍ୱାର୍ଥ, ବିଶେଷତଃ ବ୍ରିଟିଶ ସ୍ୱାର୍ଥ ସଙ୍ଗେ ସଂଘର୍ଷ କରିବାକୁ ପଡ଼ୁଥିଲା । ପରବର୍ତ୍ତୀ ସମୟରେ ଦଳ-କନ୍ଦଳ ଯୋଗୁଁ କୁଓମିନ୍‌ଟାଙ୍ଗ୍ କେତେକ ବିବଦମାନ ଗୋଷ୍ଠୀରେ ବିଭକ୍ତ ହେଲା ।

ବିଶ୍ୱ ପରିସ୍ଥିତି ଅଧ୍ୟୟନ କଲେ ଜଣାଯାଉଥିଲା ଯେ ଏକ ବଡ଼ ଧରଣର ସଂଘର୍ଷ ପାଇଁ ପ୍ରସ୍ତୁତ ଯେପରି ଚାଲିଚି । ଗୋଟାଏ ୟୁରୋପୀୟ ଗୋଷ୍ଠୀ ଦେଶମାନଙ୍କର ଅଗ୍ରଣୀ ଥିଲେ ଇଂଲଣ୍ଡ ଓ ଫ୍ରାନ୍ସ ଏବଂ ଅନ୍ୟ ଦିଗରେ ସୋଭିଏତ୍ ୟୁନିଅନ୍ ଓ କେତେକ ପ୍ରାଚ୍ୟ ଦେଶ । ଯୁକ୍ତରାଷ୍ଟ୍ର ଆମେରିକା ଏହି ଉଭୟ ଗୋଷ୍ଠୀର ବାହାରେ ରହିଥିଲା । କମ୍ୟୁନିଷ୍ଟବାଦ ପ୍ରତି ତୀବ୍ର ଘୃଣାଭାବ ଆମେରିକାକୁ ରୁଷିଆଠାରୁ ଦୂରରେ ରଖିଥିଲା ଏବଂ ବ୍ରିଟିଶ ନୀତି

ଉପରେ ତା'ର ଆସ୍ଥା ନଥିବାରୁ, ବ୍ରିଟିଶ୍ ପୁଞ୍ଜି ଓ ଶିଳ୍ପ ସଙ୍ଗେ ପ୍ରତିଯୋଗିତା ଚାଲିଥିବା ହେତୁରୁ ବ୍ରିଟିଶ ଗୋଷ୍ଠୀରେ ସେ ମଧ୍ୟ ଯୋଗ ଦେଇନଥିଲା । ସର୍ବୋପରି ଏସବୁ ବିଚାର ପଛରେ ଥିଲା ଆମେରିକାର ସମ୍ପୂର୍ଣ୍ଣ ଭାବରେ ବିଚ୍ଛିନ୍ନ ରହିବା ମନୋବୃତ୍ତି ଓ ୟୁରୋପର କଳହରେ ଭର୍ତ୍ତି ହେଇଯିବାର ଭୟ ।

ଏ ପ୍ରକାର ପରିସ୍ଥିତିରେ ଭାରତୀୟ ଜନମତ ଅନିବାର୍ଯ୍ୟ ଭାବରେ ସୋଭିଏତ୍ ୟୁନିୟନ୍ ଓ ତା'ର ମିତ୍ର ପ୍ରାଚ୍ୟ ଦେଶମାନଙ୍କ ପକ୍ଷରେ ରହିଲା । ସମାଜବାଦୀ ବିଚାର ପ୍ରତି ଆକୃଷ୍ଟ ବ୍ୟକ୍ତିଙ୍କ ସଂଖ୍ୟା ଯଦିଓ ବୃଦ୍ଧି ଲାଭ କରୁଥିଲା; ତଥାପି ସୋଭିଏତ୍ ୟୁନିଅନ୍ ପ୍ରତି ଏହି ସମର୍ଥନର ଅର୍ଥ ବିସ୍ତୃତ ଭାବରେ କମ୍ୟୁନିଜମ୍‌କୁ ସମର୍ଥନ କରିବା ନୁହେଁ । ଭାରତର ଆସନ୍ନ ସ୍ୱାଧୀନତା ଓ ଏସିଆରେ ୟୁରୋପୀୟ ଆଧିପତ୍ୟ ବିଲୁପ୍ତିର ଶୁଭ ସଙ୍କେତ ଭାବରେ ଚୀନା ବିପ୍ଳବର ବିଜୟକୁ ଭାରତରେ ଉଚ୍ଛ୍ୱସିତ ସ୍ୱାଗତ ଜ୍ଞାପନ କରାଯାଇଥିଲା । ଡଚ୍ ଇଷ୍ଟ-ଇଣ୍ଡିସ ଓ ଇଣ୍ଡୋଚୀନ ଏବଂ ପଶ୍ଚିମ-ଏସିଆର କେତେକ ଦେଶ ଓ ମିଶରରେ ଚାଲିଥିବା ଜାତୀୟ-ବାଦୀ ଆନ୍ଦୋଳନ ପ୍ରତି ଆମେ ଆଗ୍ରହୀ ଥିଲୁ । ସିଙ୍ଗାପୁରକୁ ଏକ ବଳିଷ୍ଠ ନୌଘାଟି କରି ଗଢ଼ିବା । ଏବଂ ସିଂହଳର ଟ୍ରିଙ୍କୋମାଲି ବନ୍ଦର ଉନ୍ନତ କରିବା ପଛରେ ଆଗାମୀ ଯୁଦ୍ଧର ପ୍ରସ୍ତୁତି ପ୍ରଚ୍ଛନ୍ନ ରହିଥିଲା ଏବଂ ଏଥିରୁ ମନେହେଉଥିଲା ଯେ ଇଂଲଣ୍ଡ ଏ ଅଞ୍ଚଳରେ ତା'ର ସାମ୍ରାଜ୍ୟବାଦୀ ଆସ୍ଥାନ ଦୃଢ଼ ତଥା ଶକ୍ତିଶାଳୀ କରି ସୋଭିଏତ୍ ୟୁନିଅନ୍‌କୁ ଏବଂ ପ୍ରାଚ୍ୟ ଭୂଖଣ୍ଡରେ ମୁଣ୍ଡ ଟେକିଉଠୁଥିବା ଜାତୀୟବାଦୀ ଆନ୍ଦୋଳନକୁ ଧ୍ୱଂସ କରିବାର ଉଦ୍ୟମ କରିବ ।

ଏହି ପୃଷ୍ଠଭୂମିରେ ଖ୍ରୀ: ୧୯୨୭ରେ ଜାତୀୟ କଂଗ୍ରେସ ତା'ର ବୈଦେଶିକ ନୀତି ଗଢ଼ିବା ଆରମ୍ଭ କଲା । କଂଗ୍ରେସ ଘୋଷଣା କଲା ଯେ ଭାରତ କୌଣସି ସାମ୍ରାଜ୍ୟବାଦୀ ଯୁଦ୍ଧରେ ଅଂଶ ଗ୍ରହଣ କରିନପାରେ ଏବଂ ଭାରତର ଜନସାଧାରଣଙ୍କ ସମ୍ମତି ବିନା ଭାରତକୁ କେବେ-ହେଲେ କୌଣସି ଯୁଦ୍ଧରେ ବଳପୂର୍ବକ ଭର୍ତ୍ତି କରିଦିଆଯାଇ ନପାରେ । ପରବର୍ତ୍ତୀ ବର୍ଷମାନଙ୍କରେ ବାରମ୍ବାର ଏହି ଘୋଷଣାର ପୁନରାବୃତ୍ତି କରାଗଲା ଓ ତଦନୁସାରେ ବ୍ୟାପକ ପ୍ରଚାର ଚାଲିଲା । ଏହା କଂଗ୍ରେସ ନୀତିର ଅନ୍ୟତମ ଭିତ୍ତି ହେଇ ଉଠିଲା ଏବଂ ସାଧାରଣତଃ ଏହା ଭାରତୀୟ ନୀତି ଭାବରେ ଗୃହୀତ ହେଲା । ଭାରତର କୌଣସି ବ୍ୟକ୍ତି କିମ୍ବା ସଙ୍ଗଠନ ଏହାର ବିରୋଧ କରିନଥିଲେ ।

ଇତିମଧ୍ୟରେ ୟୁରୋପରେ ବହୁତ ପରିବର୍ତ୍ତନ ଘଟୁଥିଲା ଏବଂ ହିଟ୍‌ଲର୍ ଓ ତାଙ୍କର ନାତ୍ସିବାଦ ମୁଣ୍ଡଟେକିଉଠୁଥିଲେ । ସେସବୁ ପରିବର୍ତ୍ତନ ବିରୁଦ୍ଧରେ କଂଗ୍ରେସରେ ଅବିଲମ୍ବେ ପ୍ରତିକ୍ରିୟା ସୃଷ୍ଟି ହେଲା ଏବଂ ଅକୁଣ୍ଠ ଭାବରେ ସେସବୁର ନିନ୍ଦାବାଦ କରାଗଲା; କାରଣ ହିଟ୍‌ଲର୍ ଓ ତାଙ୍କର ମତବାଦ ଉଭୟ ଥିଲା ସାମ୍ରାଜ୍ୟବାଦ ଓ ଜାତିବାଦର ପ୍ରତିରୂପ ତଥା ତୀବ୍ର ବହିଃପ୍ରକାଶ, ଯା'ର ବିରୁଦ୍ଧରେ କଂଗ୍ରେସ ଥିଲା ସଂଗ୍ରାମରତ । ଚୀନ ପ୍ରତି ଗଭୀର ସହାନୁଭୂତି ଦୃଷ୍ଟିରୁ ମାଞ୍ଚୁରିଆ ଉପରେ ଜାପାନର ଆକ୍ରମଣ ଆତୁର ପ୍ରବଳ ପ୍ରତିକ୍ରିୟା ସୃଷ୍ଟି କଲା । ଆବିସିନିଆ, ସ୍ପେନ୍, ଚୀନ-ଜାପାନ ଯୁଦ୍ଧ, ଚେକୋସ୍ଲୋଭାକିଆ ଓ ମ୍ୟୁନିଚ୍

କଂଗ୍ରେସର ଭାବନାକୁ ଆହୁରି ମଜବୁତ୍ କଲା ଏବଂ ଆସନ୍ନ ଯୁଦ୍ଧର ଉତ୍ତେଜନା ବୃଦ୍ଧି କଲା ।

କିନ୍ତୁ ଏ ଯେଉଁ ଯୁଦ୍ଧ ନିକଟତର ହେଉଥିଲା, ହିଟ୍‌ଲରଙ୍କ ଅଭ୍ୟୁଦୟ ପୂର୍ବରୁ କଳ୍ପିତ ଯୁଦ୍ଧଠାରୁ ଭିନ୍ନରୂପ ନେଲାଭଳି ଅନୁମିତ ହେଉଥିଲା । ତଥାପି ସୁଦ୍ଧା ବ୍ରିଟିଶ ନୀତି ପ୍ରାୟଶଃ ଫାଶିଷ୍ଟବାଦ ଓ ନାଜିବାଦ ପ୍ରତି ସହାନୁଭୂତିଶୀଳ ଥିଲା ଏବଂ ଏ କଥା ବିଶ୍ୱାସ କରିବା ସହଜ ନଥିଲା ଯେ ହଠାତ୍ ଘଟାଘଟି ଯୋଗୁ ନୀତିର ପରିବର୍ତ୍ତନ ଘଟିବ, ଆଉ ଇଂଲଣ୍ଡ ସ୍ୱାଧୀନତା ଓ ଗଣତନ୍ତ୍ରର ବୀର ସମର୍ଥକ ଭାବରେ ଠିଆ ହେବ । ତା'ର ସାମ୍ରାଜ୍ୟବାଦୀ ମନୋଭାବ ଓ ସାମ୍ରାଜ୍ୟକୁ ଧରିରଖିବାର ଅଭିଳାଷ, କେତେ କ'ଣ ଘଟିଗଲେ ବି ବରାବର ବଜାୟ ରହିବ ଏବଂ ସୋଭିଏତ୍ ୟୁନିଅନ୍ ଓ ସେ ଯାହାସବୁର ପ୍ରତିନିଧିତ୍ୱ କରେ, ସେଥି ପ୍ରତି ଅନମନୀୟ ବିରୋଧିତା ଚାଲୁରଖିବ; କିନ୍ତୁ ବେଳକୁ ବେଳ ଏକଥା ସ୍ପଷ୍ଟ ହୋଇ ଉଠୁଥିଲା ଯେ ହିଟଲରଙ୍କୁ ସନ୍ତୁଷ୍ଟ କରିବା ଅଭିଳାଷ ଇଂଲଣ୍ଡର ଥିବା ସତ୍ତ୍ୱେ ହିଟ୍‌ଲର୍ ପୁରାତନ ଭାରସାମ୍ୟ ସମ୍ପୂର୍ଣ୍ଣ ଭାବରେ ବିପର୍ଯ୍ୟସ୍ତ କରି ଏବଂ ବ୍ରିଟିଶ ସାମ୍ରାଜ୍ୟର ଗୁରୁତ୍ୱପୂର୍ଣ୍ଣ କେତେକ ସ୍ୱାର୍ଥପ୍ରତି ବିପଦର ଆଶଙ୍କା ସୃଷ୍ଟି କରି ୟୁରୋପରେ ଏକପ୍ରକାର ସର୍ବଶକ୍ତିମାନ୍ ହୋଇଉଠୁଥିଲେ । ଇଂଲଣ୍ଡ ଓ ଜର୍ମାନୀ ଭିତରେ ଯୁଦ୍ଧ ଲାଗିଯିବାର ସମ୍ଭାବନା ଦେଖାଗଲା । ଯୁଦ୍ଧ ଯଦି ଲାଗେ, ଆମର ନୀତି ସେତେବେଳେ କ'ଣ ହେବ ? ଆମ ନୀତିର ଦୁଇଟି ଦିଗ— ବ୍ରିଟିଶ ସାମ୍ରାଜ୍ୟବାଦ ପ୍ରତି ବିରୋଧିତା ଏବଂ ଫାସିଷ୍ଟବାଦ ତଥା ନାଜିବାଦ ପ୍ରତି ବିରୋଧିତା ଭିତରେ ମେଳ ଆସିବ କିପରି ? ଆମର ଜାତୀୟବାଦ ଓ ଆମର ଆନ୍ତର୍ଜାତୀୟବାଦର ଏକତ୍ର ସମାବେଶ ଘଟିବ କିପରି ? ପ୍ରଚଳିତ ଅବସ୍ଥାରେ ଆମ ପକ୍ଷରେ ଏ ପ୍ରଶ୍ନ ଥିଲା ବଡ଼ ଜଟିଳ । କିନ୍ତୁ ଏ ଜଟିଳତା ଅନାୟାସରେ ସରଳ ହୋଇଉଠନ୍ତା ଯଦି ବ୍ରିଟିଶ ସରକାର ଟିକିଏ ଆଗେଇ ଆସି ଆମକୁ ଦର୍ଶାଇପାରନ୍ତେ ଯେ ସରକାର ଭାରତରେ ତାଙ୍କର ସାମ୍ରାଜ୍ୟବାଦୀ ନୀତି ପରିତ୍ୟାଗ କରିଚନ୍ତି ଏବଂ ଜନସାଧାରଣଙ୍କ ଶୁଭେଚ୍ଛା ଉପରେ ନିର୍ଭର କରିବାକୁ ଚାହାନ୍ତି ।

ଜାତୀୟବାଦ ଓ ଆନ୍ତର୍ଜାତୀୟବାଦ ଭିତରେ ପ୍ରତିଦ୍ୱନ୍ଦ୍ୱିତା ହେଲେ ଜାତୀୟବାଦ ବିଜୟୀ ହେବା ସୁନିଶ୍ଚିତ । ପ୍ରତ୍ୟେକ ଦେଶରେ ଓ ପ୍ରତ୍ୟେକ ସଙ୍କଟକାଳରେ ତାହା ହିଁ ଘଟିଚି । ବିଦେଶୀ ଆଧିପତ୍ୟର ଏକ ଦେଶରେ, ଯେଉଁଠି ନିରବଚ୍ଛିନ୍ନ ସଂଗ୍ରାମ ଓ ଦୁଃଖଭୋଗର ଚିତ୍ର ସ୍ମୃତି ପ୍ରାଣେ ପ୍ରାଣେ ପୂର୍ଣ୍ଣ ରହିଥାଏ, ଏ ପ୍ରକାର ପରିଣତି ଅନିବାର୍ଯ୍ୟ ଓ ଅବଶ୍ୟମ୍ଭାବୀ । ଇଂଲଣ୍ଡ ଓ ଫ୍ରାନ୍‌ସ ସାଧାରଣତନ୍ତ୍ର ସ୍ପେନ୍‌କୁ ପ୍ରବଞ୍ଚନା କରିଥିଲେ ଓ ଚେକୋସ୍ଲୋଭାକିଆ ପ୍ରତି ବିଶ୍ୱାସଘାତକତା କଲେ ଏବଂ ଏପରି ଭାବରେ, ସେମାନଙ୍କ ବିବେଚନାରେ, ସେମାନଙ୍କର ଜାତୀୟ ସ୍ୱାର୍ଥ ନିମନ୍ତେ ଆନ୍ତର୍ଜାତୀୟବାଦକୁ ବଳି ଦେଲେ । ସେମାନଙ୍କର ବିଚାର ଯେ ଭ୍ରାନ୍ତ, ପରବର୍ତ୍ତୀ ଘଟଣାମାନଙ୍କ ଦ୍ୱାରା ପ୍ରମାଣିତ ହେଲା । ଇଂଲଣ୍ଡ, ଫ୍ରାନ୍‌ସ ଓ ଚୀନ ପ୍ରତି ସ୍ପଷ୍ଟ ସହାନୁଭୂତି ଏବଂ ନାଜିବାଦ ତଥା ଜାପାନୀ ସାମରିକବାଦ ଓ ଆକ୍ରମଣ ପ୍ରତି ଘୃଣାଭାବ ସତ୍ତ୍ୱେ ଯୁକ୍ତରାଷ୍ଟ୍ର ଆମେରିକା ନିଜର ଅଲଗା ରହିବା ନୀତିକୁ ଜାବୁଡ଼ି ରହିଥିଲା; କିନ୍ତୁ ପାର୍ଲ୍‌ ହାର୍ବର ଆମେରିକାକୁ ଯୁଦ୍ଧ ଭିତରକୁ ଟିଙ୍ଗି ଦେଲା । ଆନ୍ତର୍ଜାତୀୟତାର

ପ୍ରତୀକ ସୋଭିଏତ୍ ରୁଷ୍ ତା'ର ବହୁ ମିତ୍ର ଓ ସମର୍ଥକଙ୍କୁ ବିଭ୍ରାନ୍ତ କରି ଅପରିବର୍ତ୍ତନୀୟ ଭାବରେ ଏକ ଜାତୀୟ ନୀତି ଅନୁସରଣ କରୁଥିଲା । ଜର୍ମାନ ସେନାବାହିନୀର ଅଗ୍ରନୀକ ଆକ୍ରମଣ ସୋଭିଏତ୍ ୟୁନିଅନ୍‌କୁ ମଧ୍ୟ ଯୁଦ୍ଧ ଭିତରକୁ ଟାଣିଆଣିଲା । ନିଜକୁ ବଞ୍ଚାଇବାର ବିଫଳ ଆଶା ପୋଷି ଏବଂ ଯୁଦ୍ଧ ତଥା ଯୁଯୁତ୍ସୁ ଗୋଷ୍ଠୀ ଏଡ଼ାଇବା ଉଦ୍ୟମ କରି ସ୍କେଣ୍ଡିନେଭିଆ ଦେଶ ସମୂହ, ହଲାଣ୍ଡ ଓ ବେଲ୍‌ଜିଅମ୍ ପରିଶେଷରେ ତା'ର ଆବର୍ତ୍ତରେ ପତିତ ହେଲେ । ଜାତୀୟ ଭାବନାଦ୍ୱାରା କେବଳ ପରିଚାଳିତ, ତୁରସ୍କ ଏକ ପରିବର୍ତ୍ତନଶୀଳ ନିରପେକ୍ଷତାର କ୍ଷୁରଧାର ଉପରେ ପାଞ୍ଚବର୍ଷ ହେଲା ବିପଜ୍ଜନକ ଭାବରେ ବସିଚି । ବାହ୍ୟତଃ, ସ୍ୱାଧୀନ ହେଲେ ସୁଦ୍ଧା ଏବେ ବି ଏକ ଅର୍ଦ୍ଧ-ଔପନିବେଶିକ ଦେଶ ମିଶର ଗୋଟାଏ ପ୍ରଧାନ ଯୁଦ୍ଧାଞ୍ଚଳ ଭାବରେ ଏକ ବିଚିତ୍ର ତଥା ଅସ୍ୱାଭାବିକ ସ୍ଥିତିରେ ରହିଚି । ବସ୍ତୁତଃ, ମିତ୍ରଶକ୍ତିବର୍ଗଙ୍କ ସଶସ୍ତ୍ର-ବାହିନୀର ସମ୍ପୂର୍ଣ୍ଣ କର୍ତ୍ତୃତ୍ୱାଧୀନ ଏହା ଏକ ଯୁଯୁତ୍ସୁ ଦେଶ । ତଥାପି ଆପାତତଃ ଏହା ଯୁଯୁତ୍ସୁ ନୁହେଁ ।

ବିଭିନ୍ନ ଦେଶ ଓ ସରକାରଙ୍କ ଦ୍ୱାରା ଅନୁସୃତ ଏହି ସବୁ ନୀତି ନିମନ୍ତେ ଯଥାର୍ଥତା କିମ୍ବା କିଛି ଯୁକ୍ତି ଥାଇପାରେ । ଲୋକଙ୍କୁ ପ୍ରସ୍ତୁତ ନକରି ଓ ସେମାନଙ୍କ ସହଯୋଗ ଲାଭ ନକରି ଗୋଟାଏ ଗଣତନ୍ତ୍ର ଦେଶ ସହଜରେ ଯୁଦ୍ଧ ଭିତରକୁ ଝାମ୍ପ ଦେଇନପାରେ । ଏପରିକି ନିରଙ୍କୁଶ ପ୍ରଭୁତ୍ୱର ଦେଶ ବି ସେଥିଲାଗି ପ୍ରଥମେ କ୍ଷେତ୍ର ପ୍ରସ୍ତୁତ କରିଥାଏ; କିନ୍ତୁ ହେତୁ କିମ୍ବା ଯଥାର୍ଥତା ଯାହା ହେଉନା କାହିଁକି, ଏଥିରେ କିଛି ଅସ୍ପଷ୍ଟତା ନାହିଁ ଯେ କୌଣସି ଦେଶରେ ଯେବେ ସଙ୍କଟ ଦେଖା ଦେଇଚି ଜାତୀୟ ଭାବନା କିମ୍ବା ସେହି ସମ୍ପର୍କୀୟ ଭାବନା ହିଁ ସର୍ବପ୍ରଧାନ ହୋଇ ଉଠିଚି ଏବଂ ସେଥି ସଙ୍ଗେ ସଙ୍ଗତି ରଖିବା ଲାଗି ଅକ୍ଷମ ସବୁ କିଛି ଭାବନା ଉଡ଼ିଯାଇଛି । ମ୍ୟୁନିକ ସଙ୍କଟ କାଳରେ ୟୁରୋପର ଶତଶତ ଆନ୍ତର୍ଜାତିକ ସଙ୍ଗଠନ, ଫାଶିଷ୍ଟବିରୋଧୀ ସଙ୍ଘମାନ କିପରି ମୂକ, ଶକ୍ତିହୀନ ଓ ନିଷ୍କ୍ରିୟ ହୋଇ ପଡ଼ିଲେ, ବଡ଼ ଅସାଧାରଣ କଥା । ବ୍ୟକ୍ତିବିଶେଷ କେହି କେହି ଓ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀ ଆନ୍ତର୍ଜାତିକ ମନୋଭାବାପନ୍ନ ହୋଇପାରନ୍ତି ଏବଂ କୌଣସି ଏକ ବୃହତ୍ତର ଉଦ୍ଦେଶ୍ୟ ନିମନ୍ତେ ବ୍ୟକ୍ତିଗତ ତଥା ଆଶୁ ଜାତୀୟ ସ୍ୱାର୍ଥ ମଧ୍ୟ ଉତ୍ସର୍ଗ କରିବା ପାଇଁ ପ୍ରସ୍ତୁତ ହୋଇପାରନ୍ତି; କିନ୍ତୁ କୌଣସି ଜାତି ପକ୍ଷରେ ଏପରି କରିବା ସମ୍ଭବ ନୁହେଁ । ଯେବେ ବିଶ୍ୱାସ ବଳବ ଯେ ଆନ୍ତର୍ଜାତୀୟ ସ୍ୱାର୍ଥ ଜାତୀୟ ସ୍ୱାର୍ଥ ପକ୍ଷରେ ଅନୁକୂଳ, ସେତେବେଳେ କେବଳ ଜାତୀୟ ଉତ୍ସାହ ସୃଷ୍ଟି ହେବ । କେତେ ମାସ ତଳେ ଲଣ୍ଡନର 'ଇକନୋମିଷ୍ଟ' ସମ୍ବାଦପତ୍ର ବ୍ରିଟିଶ ବୈଦେଶିକ ନୀତି ଆଲୋଚନା ପ୍ରସଙ୍ଗରେ ଲେଖିଚନ୍ତି; "ସେହି ବୈଦେଶିକ ନୀତି କେବଳ ଅବିଚଳିତ ଭାବରେ ଅନୁସୃତ ହେବାର ଆଶା ରଖିପାରେ; ଯେଉଁଥିରେ ଜାତୀୟ ସ୍ୱାର୍ଥ ପୂର୍ତ୍ତି ତଥା ପ୍ରକାଶ୍ୟ ଭାବରେ ସଂରକ୍ଷିତ ହୋଇଥାଏ । କୌଣସି ଜାତି ଆନ୍ତର୍ଜାତିକ ସ୍ୱାର୍ଥକୁ ନିଜର ସ୍ୱାର୍ଥ ଆଗରେ ରଖେନାହିଁ । ଏ ଦୁଇଟିର ସାମଞ୍ଜସ୍ୟ ଯଦି ଲକ୍ଷିତ ହୁଏ, ତେବେ ଯାଇ କେବଳ ଆନ୍ତର୍ଜାତୀୟତା ଫଳପ୍ରଦ ହେବାର ସମ୍ଭାବନା ଦେଖାଦେଇପାରେ ।"

ପ୍ରକୃତପକ୍ଷେ, ଆନ୍ତର୍ଜାତୀୟତା ସ୍ୱାଧୀନ ଦେଶରେ କେବଳ ବିକାଶ ଲାଭ କରେ । କାରଣ

ପରାଧୀନ ଦେଶର ସମସ୍ତ ବିଚାର ଓ ଶକ୍ତି ନିଜର ସ୍ୱାଧୀନତା ଅର୍ଜନ କରିବା ଦିଗରେ ହିଁ ନିୟୋଜିତ ହୋଇଥାଏ । ସେହି ପରାଧୀନ ଅବସ୍ଥା ଦେହର କର୍କଟ ରୋଗ ଭଳି ଯାହା ହେତୁରୁ କୌଣସି ଅଙ୍ଗପ୍ରତ୍ୟଙ୍ଗ ସୁସ୍ଥ ରହିବାର କଥା ତ ନାହିଁ, ବରଂ ମନରେ ସର୍ବଦା ଅଶାନ୍ତି ସୃଷ୍ଟି କରି ରହେ ଏବଂ ସବୁ ଚିନ୍ତା ଓ କାର୍ଯ୍ୟର ଶୁଦ୍ଧତା ନଷ୍ଟ କରେ । ଏଥିରେ ସଂଘର୍ଷ ନିହିତ ଏବଂ ସେହି ସଂଘର୍ଷ ସେଥି ପ୍ରତି ତୀବ୍ର ଏକାଗ୍ରତା ଦାବି କରି ଅନ୍ୟାନ୍ୟ ବୃହତ୍ତର ପ୍ରଶ୍ନମାନଙ୍କର ବିଚାର ଦିଗ ରୁଦ୍ଧ କରେ । ଅତୀତର ବହୁ ସଂଘର୍ଷ ଓ ଦୁଃଖଭୋଗର ଏକ ଦୀର୍ଘ ତଥା କ୍ରମାଗତ ଇତିହାସ ବ୍ୟକ୍ତି ତଥା ଜାତି ଉଭୟ ମାନସର ଅବିଚ୍ଛେଦ୍ୟ ସହଚର ହୋଇ ଉଠେ । ତାହା ପରିଣତ ହୁଏ ଏକ ଆବେଶ, ଏକ ପ୍ରବଳ ଉତ୍କଣ୍ଠାରେ ଏବଂ ଯେ ପର୍ଯ୍ୟନ୍ତ ତାର ମୂଳ କାରଣ ଦୂର ନହୋଇଛି ତାହା ଶାନ୍ତ ହେବାର ନୁହେଁ । ଏପରିକି ପରାଧୀନତା-ବୋଧ ଦୂର ହେବା ପରେ ମଧ୍ୟ ମନ ଏକ ସ୍ୱାଭାବିକ ଅବସ୍ଥାକୁ ଆସିବାରେ ବିଳମ୍ବ ହୁଏ; କାରଣ ଦେହ ଅପେକ୍ଷା ମନର କ୍ଷତ ଭଲ ହେବା ପାଇଁ ଅଧିକ ସମୟ ଲାଗେ ।

ଭାରତରେ ଏହି ପୃଷ୍ଠଭୂମି ବହୁ ପୂର୍ବରୁ ରହିଥିଲା । ତଥାପି ଆମର ଜାତୀୟ ଆନ୍ଦୋଳନକୁ ଗାନ୍ଧିଜୀ ଯେଉଁ ନୂତନ ଦିଗନିର୍ଦ୍ଦେଶ ଦେଲେ, ତାହା ଅନେକାଂଶରେ ନୈରାଶ୍ୟ ଓ ତିକ୍ତତା ଲାଘବ କଲା । ଅବଶ୍ୟ ପୂର୍ବର ସେସବୁ ଅନୁଭୂତି ରହିଥିଲା; କିନ୍ତୁ ଘୃଣାଭାବରୁ ଏତେ ଭଳି ମୁକ୍ତ ଅନ୍ୟ କୌଣସି ଦେଶର ଜାତୀୟ ଆନ୍ଦୋଳନ ବିଷୟରେ ମୁଁ ଜାଣିନି । ଗାନ୍ଧିଜୀ ଥିଲେ ଜଣେ ତୀବ୍ର ଜାତୀୟତାବାଦୀ । ସଙ୍ଗେ ସଙ୍ଗେ ସେ ଅନୁଭବ ବି କରୁଥିଲେ ଯେ ଭାରତ ପାଇଁ ନୁହେଁ, ସମଗ୍ର ବିଶ୍ୱ ପାଇଁ ତାଙ୍କର ଗୋଟାଏ ବାର୍ତ୍ତା ରହିଛି । ବିଶ୍ୱ-ଶାନ୍ତି ନିମନ୍ତେ ତାଙ୍କର ପ୍ରବଳ ଆଗ୍ରହ ରହିଥିଲା । ଅତଏବ, ତାଙ୍କର ଜାତୀୟତାବାଦରେ ଥିଲା ଗୋଟାଏ ପ୍ରକାର ବିଶ୍ୱ-ଦୃଷ୍ଟିଭଙ୍ଗୀ ଏବଂ ଆକ୍ରମଣାତ୍ମକ ମନୋବୃତ୍ତିରୁ ତାହା ସମ୍ପୂର୍ଣ୍ଣ ମୁକ୍ତ ଥିଲା । ଭାରତର ସ୍ୱାଧୀନତା ବାଞ୍ଛା କଲାବେଳେ ସେ ବିଶ୍ୱାସ କରୁଥିଲେ ଯେ ପରସ୍ପର ନିର୍ଭରଶୀଳ ଏକ ବିଶ୍ୱ-ଜାତି-ସଂଘ ମାନବସମାଜର ପ୍ରକୃତ ଲକ୍ଷ୍ୟ ହେବା ଉଚିତ; କେଉଁ ଦୂର ଭବିଷ୍ୟତରେ ତାହା ଆତ୍ମଗୋପନ କରିଥାଉନା କାହିଁକି, ସେ କହିଥିଲେ; "ମୋର ଜାତୀୟତାବାଦ ଧାରଣା ହେଉଛି, ମୋର ଦେଶ ମୁକ୍ତ ହେଉ ଆଉ ଆବଶ୍ୟକ ହେଲେ ସାରା ଦେଶ ପଛେ ଧୂଳିରେ ମିଶିଯାଉ ମାନବ ଜାତି କିନ୍ତୁ ବଞ୍ଚି ରହୁ । ଏଠାରେ ଜାତିବିଦ୍ୱେଷ ପାଇଁ ସ୍ଥାନ ନାହିଁ । ଏହା ହେଉ ଆମର ଜାତୀୟତାବାଦ" ଏବଂ ପୁଣି "ମୁଁ ସମଗ୍ର ବିଶ୍ୱକୁ ଆଖି ଆଗରେ ରଖି ଚିନ୍ତା କରିବାକୁ ଚାହେଁ । ମାନବଜାତିର କଲ୍ୟାଣ ମୋର ଦେଶପ୍ରେମରେ ନିହିତ । ଅତଏବ, ମୁଁ ଭାରତର ସେବା କଲାବେଳେ ସମଗ୍ର ମାନବଜାତିର ସେବା କରୁଛି ବୋଲି ଅନୁଭବ କରେ···ପୃଥିବୀରେ ଅନ୍ୟାନ୍ୟ ଦେଶମାନଙ୍କଠାରୁ ବିଚ୍ଛିନ୍ନ ଭାବରେ ସ୍ୱାଧୀନ ରହିବା କୌଣସି ରାଷ୍ଟ୍ରର ଲକ୍ଷ୍ୟ ହେବା ଠିକ୍ ନୁହେଁ । ଲକ୍ଷ୍ୟ ହେଉଛି ସ୍ୱେଚ୍ଛାକୃତ ପରସ୍ପର ନିର୍ଭରଶୀଳତା । ବିଶ୍ୱର ଉନ୍ନତ ମାନସ ଆଜି ସମ୍ପୂର୍ଣ୍ଣ ଭାବରେ ସ୍ୱାଧୀନ, ପରସ୍ପର ଭିତରେ ଯୁଦ୍ଧରତ ରାଷ୍ଟ୍ର କାମନା କରେନାହିଁ; କାମନା କରେ ମିତ୍ରଭାବାପନ୍ନ ଓ ପରସ୍ପର ନିର୍ଭରଶୀଳ ଏକ ରାଷ୍ଟ୍ରସଂଘ । ସେହି ସୁଦିନ ହୁଏତ କେଉଁ ଦୂର ଭବିଷ୍ୟତ ଭିତରେ ଲୁକ୍କାୟିତ ଅଛି ।

ମୁଁ ମୋର ଦେଶପାଇଁ ସେପରି ଅସମ୍ଭବ କିଛି ଦାବି କରିବାକୁ ଯାଉନାହିଁ; କିନ୍ତୁ ସ୍ୱାଧୀନତା ପରିବର୍ତ୍ତେ ସାର୍ବଜନୀନ ପରସ୍ପର ନିର୍ଭରଶୀଳତା ପାଇଁ ଆମେ ପ୍ରସ୍ତୁତ ଅଛୁ ବୋଲି ବ୍ୟକ୍ତ କରିବାରେ ଅସମ୍ଭବ କିମ୍ବା ଅବାସ୍ତବ କିଛି କହୁଥାଇଁ ବୋଲି ମନେ କରେନାହିଁ । ସ୍ୱାଧୀନତା ସାବ୍ୟସ୍ତ କରିବା ବିନା ସମ୍ପୂର୍ଣ୍ଣ ମୁକ୍ତ ହେବାର ସାମର୍ଥ୍ୟ ମୁଁ କାମନା କରେ ।”

ଜାତୀୟତାବାଦୀ ଆନ୍ଦୋଳନ ଶକ୍ତି ଓ ଆତ୍ମବିଶ୍ୱାସ ନେଇ ଯେବେ ବଢ଼ିବାକୁ ଲାଗିଲା ଅନେକେ ଏକ ମୁକ୍ତ ଭାରତର ଚିତ୍ର ନେଇ ଚିନ୍ତା କରିବାକୁ ଲାଗିଲେ—ଭାରତ କିପରି ହେବା ଦରକାର, କ’ଣ ସେ କରିବ ଓ ଅନ୍ୟାନ୍ୟ ଦେଶ ସଙ୍ଗେ ତା’ର ସମ୍ପର୍କ କ’ଣ ହେବ ? ଭାରତର ବିଶାଳତା ଓ ତା’ର ପ୍ରଚ୍ଛନ୍ନ ଶକ୍ତି ତଥା ସମ୍ବଳ ସେମାନଙ୍କ ମନରେ ଖୁବ୍ ବଡ଼ବଡ଼ ବିଚାର ସଞ୍ଚାରିତ କଲା । କୌଣସି ଦେଶ କିମ୍ବା ଦେଶ-ଗୋଷ୍ଠୀର ଅନୁଚର ଅଥବା ଗଲଗ୍ରହ ହୋଇ ଭାରତ ରହିନପାରେ । ତା’ର ମୁକ୍ତି ଓ ପ୍ରଗତି ଏସିଆରେ ଓ ସେଥି ହେତୁରୁ ପୃଥିବୀରେ ଏକ ନୂତନ ଅବସ୍ଥା ସୃଷ୍ଟି କରିବ । ଏ ପ୍ରକାର ବିଚାର ଅନିବାର୍ଯ୍ୟଭାବରେ ପୂର୍ଣ୍ଣ ସ୍ୱାଧୀନତା ଏବଂ ଇଂଲଣ୍ଡ ଓ ତା’ର ସାମ୍ରାଜ୍ୟର ସମସ୍ତ ବନ୍ଧନରୁ ମୁକ୍ତ ହେବା ଉପରେ ନିବଦ୍ଧ ହେଲା । ଡୋମିନିଅନ ଷ୍ଟେଟସ୍ ସ୍ୱାଧୀନତାର ଯେତେ ନିକଟବର୍ତ୍ତୀ ହେଉନା କାହିଁକି ଆମେ ଦେଖିଲୁ ଆମର ପୂର୍ଣ୍ଣ ବିକାଶ ନିମନ୍ତେ ତାହା ଏକ ଅସ୍ୱାଭାବିକ ସୀମାବନ୍ଧନ ଓ ପ୍ରତିବନ୍ଧକ । ଡୋମିନିଅନ ଷ୍ଟେଟସ୍ ପଛର ଭାବ ହେଉଛି ଏକ ‘ମାତୃଦେଶ’ ତା’ର ଅଙ୍ଗରୁ ଉଦ୍‌ଭୂତ ସମସ୍ତ ସାର୍ବଜନୀନ ସାଂସ୍କୃତିକ ପୃଷ୍ଠଭୂମିରେ ଅବସ୍ଥିତ । ଏହା ଭାରତ ପ୍ରତି ପ୍ରଯୁଜ୍ୟ ହୋଇ ନପାରେ । ଆନ୍ତର୍ଜାତିକ ସହଯୋଗ ନିମନ୍ତେ ଏଥିର କ୍ଷେତ୍ର ଅବଶ୍ୟ ପ୍ରଶସ୍ତ ଆଉ ତାହା ବାଞ୍ଛନୀୟ ମଧ୍ୟ; କିନ୍ତୁ ଏହାର ଆଉ ଏକ ଅର୍ଥ ହେଉଛି ସାମ୍ରାଜ୍ୟ କିମ୍ବା ରାଜ୍ୟଗୋଷ୍ଠୀ ବହିର୍ଭୂତ ଦେଶମାନଙ୍କ ସଙ୍ଗେ ମୁକ୍ତ ତଥା ପୂର୍ଣ୍ଣ ସହଯୋଗ ନିମନ୍ତେ ଅବକାଶର ଅଭାବ । ଏପରିଭାବରେ, ଡୋମିନିଅନ୍ ଷ୍ଟେଟସ୍ ଆମ ଆଗରେ ଏକ ସୀମିତ କ୍ଷେତ୍ର କେବଳ ରଖିଥିଲା ଏବଂ ଭବିଷ୍ୟତର ବହୁତ କିଛି ସମ୍ଭାବନା ଓ ପ୍ରତିଶ୍ରୁତିରେ ପୂର୍ଣ୍ଣ ଆମର ବିଚାର ସେହିସବୁ ସୀମା ବନ୍ଧନ ଅତିକ୍ରମ କରି ଏକ ବୃହତ୍ତର ସହଯୋଗର କ୍ଷେତ୍ର ଅଭିମୁଖେ ଧାବିତ ହେଉଥିଲା । ଆମର ପୂର୍ବ ଓ ପଶ୍ଚିମରେ ଅବସ୍ଥିତ ପଡ଼ୋଶୀ ଦେଶ ଚୀନ, ଆଫଗାନିସ୍ଥାନ, ଇରାନ୍ ଓ ସୋଭିଏତ୍ ୟୁନିଅନ୍ ସଙ୍ଗେ ବିଶେଷତଃ, ଘନିଷ୍ଠ ସମ୍ପର୍କ ସ୍ଥାପନ କରିବା ନିମନ୍ତେ ଆମେ ଭାବୁଥିଲୁ । ଯେତେ ଦୂରରେ ଥିଲେ ସୁଦ୍ଧା ଆମେରିକା ସଙ୍ଗେ ଘନିଷ୍ଠ ସମ୍ପର୍କ ଆମେ କାମନା କରୁଥିଲୁ; କାରଣ ଆମେରିକା ଓ ସୋଭିଏତ୍ ୟୁନିଅନ୍ ପାଖରୁ ଆମର ବହୁତ କିଛି ଶିକ୍ଷା କରିବାର ଥିଲା । ଅନେକେ ବି ମନେକରୁଥିଲେ ଯେ ଇଂଲଣ୍ଡ ପାଖରୁ ଅଧିକ କିଛି ଶିକ୍ଷା କରିବାର ଆଉ ନାହିଁ ଏବଂ ଯେବେହେଲେ ସୁଦ୍ଧା ପାରସ୍ପରିକ ସମ୍ପର୍କରୁ କେବଳ ଆମେ ଲାଭବାନ୍ ହୋଇ ପାରିବା । ତେବେ ସେଥି ଆଗରୁ ଆମକୁ ବନ୍ଧନରୁ ମୁକ୍ତ ହେବାକୁ ପଡ଼ିବ ଏବଂ ସମକକ୍ଷ ଭାବରେ ହିଁ ଇଂଲଣ୍ଡ ସଙ୍ଗେ ଆମର ସମ୍ପର୍କ ରହିବ ।

କେତେକ ବ୍ରିଟିଶ ଡୋମିନିଅନ୍ ଓ ଉପନିବେଶରେ ଜାତିବିଦ୍ୱେଷ ଓ ଭାରତୀୟଙ୍କ ପ୍ରତି ଅସାମାଜିକ ବ୍ୟବହାର ସେହି ଗୋଷ୍ଠୀ ଭିତରୁ ବାହାରି ଆସିବା ପାଇଁ ଆମ ପକ୍ଷରେ ବଳିଷ୍ଠ

କାରଣ ଥିଲା ଓ ଆମର ସଙ୍କଳ୍ପ ଦୃଢ଼ କଲା । ବିଶେଷତଃ ଦକ୍ଷିଣ-ଆଫ୍ରିକା ଥିଲା ସର୍ବଦା ଆମର ବିରକ୍ତିର କାରଣ ଏବଂ ପୂର୍ବ-ଆଫ୍ରିକା ଓ କେନିଆ ପ୍ରତ୍ୟକ୍ଷ ଭାବରେ ବ୍ରିଟିଶ ଔପନିବେଶିକ ନୀତି ଦ୍ୱାରା ଥିଲା ଚାଳିତ । କିନ୍ତୁ ମନେହେଲେ କି ବ୍ୟକ୍ତିବିଶେଷ ଭାବରେ ଆମେ କାନାଡ଼ା, ଅଷ୍ଟ୍ରେଲିଆ ଓ ନ୍ୟୁଜିଲଣ୍ଡ ଲୋକଙ୍କ ସଙ୍ଗେ ଭଲରେ ଚଳିପାରୁଥିଲୁ; କାରଣ ସେମାନେ ଥିଲେ ଏକ ନୂତନ ପରମ୍ପରାର ପ୍ରତିନିଧି ଏବଂ ବ୍ରିଟିଶ ଜାତିର ବହୁତ କିଛି ବିଦ୍ୱେଷ ଓ ସାମାଜିକ ରକ୍ଷଣଶୀଳତାରୁ ସେମାନେ ମୁକ୍ତ ଥିଲେ ।

ଭାରତର ସ୍ୱାଧୀନତା କଥା କହିଲାବେଳେ ଆମେ ସମସ୍ତଙ୍କଠାରୁ ଅଲଗା ହୋଇ ରହିବୁ ବୋଲି ଭାବୁନଥିଲୁ । ଅନ୍ୟାନ୍ୟ ବହୁ ଦେଶ ଅପେକ୍ଷା ଆମେ ଆହୁରି ଭଲ ଭାବରେ ଉପଲବ୍ଧି କରିପାରୁଥିଲୁ ଯେ ପୁରାତନ ଢଙ୍ଗର ପୂର୍ଣ୍ଣ ଜାତୀୟ ସ୍ୱାଧୀନତାର ଦିନ ଆଉ ନାହିଁ ଏବଂ ବିଶ୍ୱ-ସହଯୋଗର ଏକ ନୂତନ ଯୁଗ ପ୍ରଭାତିବା ନିଶ୍ଚିତ । ଅତଏବ, ଆମେ ବାରମ୍ବାର ଏକଥା ସ୍ପଷ୍ଟ ଭାବରେ କହୁଥିଲୁ ଯେ ଗୋଟାଏ ଆନ୍ତର୍ଜାତିକ ବ୍ୟବସ୍ଥା ଭିତରେ ଅନ୍ୟାନ୍ୟ ଜାତିମାନଙ୍କ ସଙ୍ଗେ ଆମେ ଆମର ସ୍ୱାଧୀନତାକୁ ସୀମିତ ରଖିବା ଲାଗି ପ୍ରସ୍ତୁତ ଅଛୁ । ସେହି ବ୍ୟବସ୍ଥା ସମଗ୍ର ବିଶ୍ୱକୁ ହୁଏତ ଆବୃତ କରିବ କିମ୍ବା ବିଶ୍ୱର ଏକ ବୃହତ୍ତର ଅଂଶ ସେଥିର ଅନ୍ତର୍ଭୁକ୍ତ ହେବ କିମ୍ବା ଏକ ଆଞ୍ଚଳିକ ଜାତିଗୋଷ୍ଠୀ ଭାବରେ କାର୍ଯ୍ୟ କରିବ । ବ୍ରିଟିଶ୍ ରାଜ୍ୟଗୋଷ୍ଠୀ ଏଥିରୁ କେଉଁ ଗୋଟିକରେ ହେଲେ ରହିବା ଭଳି ଜଣାଯାଉ ନଥିଲା । ହୁଏତ ଏକ ବୃହତ୍ତର ବ୍ୟବସ୍ଥାର ଅଂଶ ଭାବରେ ରହିପାରେ ।

ଆମର ତୀବ୍ର ଜାତୀୟତାବାଦୀ ବିଗ୍ରହ ସତ୍ତ୍ୱେ ଆମେ କ୍ରମଶଃ କିପରି ଆନ୍ତର୍ଜାତିକ ମନୋଭାବାପନ୍ନ ହୋଇ ଉଠୁଥିଲୁ ବାସ୍ତବିକ ବିସ୍ମୟର କଥା । କୌଣସି ପରାଧୀନ ଦେଶର ଜାତୀୟତାବାଦୀ ଆନ୍ଦୋଳନ ଏ ଦିଗନ୍ତରେ ଆମର ସମକକ୍ଷ ନଥିଲା ଏବଂ ସେସବୁ ଦେଶର ସାଧାରଣ ମନୋବୃତ୍ତି ଥିଲା, ଯେପରି ଭାବରେ ହେଲେ, ଆନ୍ତର୍ଜାତିକ ପ୍ରତିଶ୍ରୁତି ଏଡ଼ାଇ ଯିବା । ଭାରତରେ ମଧ୍ୟ ସେପରି ବହୁଲୋକ ଥିଲେ ଯେଉଁମାନେ ପ୍ରଜାତନ୍ତ୍ର ସ୍ପେନ ଓ ଚୀନ, ଆବିସିନିଆ ଓ ଚେକୋସ୍ଲୋଭାକିଆ ପ୍ରତି ଆମର ସମର୍ଥନ ବିରୁଦ୍ଧରେ ସ୍ୱର ଉଠାଇଥାନ୍ତି । ଇଟାଲୀ, ଜର୍ମାନୀ ଓ ଜାପାନ ଭଳି ଶକ୍ତିଶାଳୀ ଜାତିମାନଙ୍କ ସଙ୍ଗେ ଶତ୍ରୁତା କରି ଲାଭ କ'ଣ —ହେଲା ସେମାନଙ୍କର ଯୁକ୍ତି; ସେମାନେ ଆହୁରି କହୁଥାନ୍ତି ଯେ ଯିଏ ଇଂଲଣ୍ଡର ଶତ୍ରୁ ସେ ଆମର ବନ୍ଧୁ; ରାଜନୀତିରେ ଆଦର୍ଶବାଦର ସ୍ଥାନ ନାହିଁ; ଏହା ଶକ୍ତି ଓ ସୁଯୋଗର ଏକ ଖେଳ ମାତ୍ର; କିନ୍ତୁ ଏହି ସବୁ ଆପତ୍ତିକାରୀମାନେ କଂଗ୍ରେସ ଦ୍ୱାରା ସୃଷ୍ଟ ଗଣମନୋଭାବ ଦ୍ୱାରା ଅଭିଭୂତ ହୋଇପଡ଼ୁଥିଲେ ଏବଂ ପ୍ରକାଶ୍ୟରେ ସେମାନଙ୍କର ଅଭିମତ ପ୍ରକାଶ କରିବା ଲାଗି ପ୍ରସ୍ତୁତ ନଥିଲେ । ମୁସ୍‌ଲିମ୍ ଲିଗ୍ ବରାବର ସମ୍ପୂର୍ଣ୍ଣ ଭାବରେ ନୀରବ ରହୁଥିଲା ଏବଂ କୌଣସି ଆନ୍ତର୍ଜାତିକ ପ୍ରଶ୍ନ ଉପରେ ତା'ର କିଛି କହିବାର ନଥିଲା ।

ଖ୍ରୀ: ୧୯୩୮ରେ ଆବଶ୍ୟକୀୟ ଚିକିତ୍ସା ସରଞ୍ଜାମ ସହ କେତେ ଜଣ ଡାକ୍ତରଙ୍କୁ କଂଗ୍ରେସ ଏକ ମେଡ଼ିକେଲ ମିଶନ୍ ଭାବରେ ଚୀନକୁ ପଠାଇଲା । ଅନେକ ବର୍ଷ ପର୍ଯ୍ୟନ୍ତ ଏମାନେ ଖୁବ୍ ଭଲ କାମ କଲେ । ଏହି ମିଶନ୍ ପଠାଗଲାବେଳେ ସୁଭାଷ ବୋଷ୍ ଥିଲେ କଂଗ୍ରେସର

ସଭାପତି । ଜାପାନ, ଜର୍ମାନୀ କିମ୍ବା ଇଟାଲୀ କାହା ବିରୁଦ୍ଧରେ ହେଲେ କଂଗ୍ରେସ ପଦକ୍ଷେପ ନେବା ସେ ପସନ୍ଦ କରୁନଥିଲେ; କିନ୍ତୁ ଦେଶରେ ଓ କଂଗ୍ରେସରେ ମନୋଭାବ ଏପରି ଥିଲା ଯେ ଚୀନ ପ୍ରତି କିମ୍ବା ଫାଶିଷ୍ଟ ଓ ନାଜି ଆକ୍ରମଣର ଶିକାର ଦେଶମାନଙ୍କ ପ୍ରତି କଂଗ୍ରେସ ଯେଉଁ ସହାନୁଭୂତି ପ୍ରକାଶ କରୁଥିଲା ସେଥି ହେତୁରୁ ଚୀନକୁ ଡାକ୍ତରଦଳ ପଠାଇବାରେ କିମ୍ବା ଅନ୍ୟ କୌଣସି ଭାବରେ ସହାନୁଭୂତି ପ୍ରଦର୍ଶନ କରିବାରେ ସଭାପତି ଶ୍ରୀ ବୋଷ୍ ବିରୋଧ କରିନଥିଲେ । ଆମେ ସେପରି ବହୁତ ପ୍ରସ୍ତାବ ଗ୍ରହଣ କରିଥିଲୁ ଓ ସଭା ଶୋଭାଯାତ୍ରା ସଙ୍ଗଠନ କରିଥିଲୁ, ଯାହା ପ୍ରତି ସେ ସଭାପତି ଥିବା ସମୟରେ ସମର୍ଥନ କରୁନଥିଲେ ସୁଦ୍ଧା କୌଣସି ପ୍ରତିବାଦ କରୁନଥିଲେ; କାରଣ ସେସବୁ ପଛରେ ଲୋକଙ୍କ ମନୋଭାବର ବଳ ସେ ଭଲ ଭାବରେ ଉପଲବ୍ଧି କରିପାରୁଥିଲେ । ଘର ଓ ବାହାରର ନାନା ବିଷୟରେ, କଂଗ୍ରେସ ସଭାପତି ସୁଭାଷଚନ୍ଦ୍ର ବୋଷ୍ ଓ କଂଗ୍ରେସ କାର୍ଯ୍ୟକାରୀ କମିଟିର ଅନ୍ୟମାନଙ୍କ ଭିତରେ ଦୃଷ୍ଟିଭଙ୍ଗୀରେ ବଡ଼ ଏକ ପାର୍ଥକ୍ୟ ରହିଥିଲା ଏବଂ ଖ୍ରୀ: ୧୯୩୯ ଆରମ୍ଭରେ ସଭାପତି ଓ କାର୍ଯ୍ୟକାରୀ କମିଟି ପରସ୍ପରଠାରୁ ଅଲଗ ହେବା ଅବସ୍ଥାକୁ ଆସିଥିଲେ । ତା'ର ପରେ ସର୍ବସାଧାରଣରେ କଂଗ୍ରେସ ନୀତି ଉପରେ ସେ ଆକ୍ରମଣ ଆରମ୍ଭ କରିଦେଲେ ଏବଂ ସେହି ବର୍ଷ ଅଗଷ୍ଟ ଆରମ୍ଭରେ କଂଗ୍ରେସ କାର୍ଯ୍ୟକାରୀ କମିଟି କଂଗ୍ରେସର ଜଣେ ପୂର୍ବତନ ସଭାପତିଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ ଶାସ୍ତି ବିଧାନ କରିବାର ଏକ ଅସାଧାରଣ ପଦକ୍ଷେପ ଗ୍ରହଣ କଲେ ।

## ୭. ଯୁଦ୍ଧ ପ୍ରତି କଂଗ୍ରେସର ଆଭିମୁଖ୍ୟ

ଏପରି ଭାବରେ ଯୁଦ୍ଧ ସମ୍ପର୍କରେ କଂଗ୍ରେସର ଦୁଇ ପ୍ରକାର ନୀତି ପ୍ରକାଶ ପାଇଲା । ଗୋଟାଏ ନୀତି ହେଲା ଫାଶିଷ୍ଟବାଦ, ନାଜିବାଦ ଓ ଜାପାନୀ ସାମରିକବାଦର ବିରୋଧ କରିବା; କାରଣ ସେମାନଙ୍କର ଆଭ୍ୟନ୍ତରୀଣ ନୀତି ଓ ଅନ୍ୟ ଦେଶ ଉପରେ ଆକ୍ରମଣ କଂଗ୍ରେସ ବରଦାସ୍ତ କରୁନଥିଲା । ଆକ୍ରମିତ ଦେଶମାନଙ୍କ ପ୍ରତି ଗଭୀର ସହାନୁଭୂତିବୋଧ ସଙ୍ଗେ ସଙ୍ଗେ ସେହି ଆକ୍ରମଣ ବନ୍ଦକରିବା ଉଦ୍ଦେଶ୍ୟରେ, ଯୁଦ୍ଧରେ ହେଉ କି ଅନ୍ୟ କୌଣସି ଉଦ୍ୟମରେ ହେଉ ଯୋଗଦେବା ପାଇଁ ତା'ର ପ୍ରବଳ ଆଗ୍ରହ ରହିଥିଲା । ଅନ୍ୟ ଦିଗରେ ଭାରତର ସ୍ୱାଧୀନତା ଉପରେ ଜୋର୍ ଦିଆଯାଉଥିଲା । ସ୍ୱାଧୀନତା ଆମର ମୌଳିକ ଲକ୍ଷ୍ୟ; ଆଉ ସେଥି ନିମନ୍ତେ ଅବିଚ୍ଛିନ୍ନ ଭାବରେ ଆମେ ସଂଗ୍ରାମ କରି ଆସିଚୁ ବୋଲି କେବଳ ନୁହେଁ, ବରଂ ଏକ ସମ୍ଭାବ୍ୟ ଯୁଦ୍ଧର ସମ୍ପର୍କ ନେଇ ବିଶେଷତଃ, ସ୍ୱାଧୀନତା ଲାଭକରିବା ଉପରେ ଆମେ ଦୃଢ଼ ରହିଥିଲୁ; କାରଣ ଆମେ ବାରମ୍ବାର ଜୋର୍ ଦେଇ କହିଥିଲୁ ଯେ, ପରାଧୀନତାରୁ ମୁକ୍ତ ଭାରତ କେବଳ ସେପରି ଏକ ଯୁଦ୍ଧରେ ଯଥାଯୋଗ୍ୟ ଅଂଶ ଗ୍ରହଣ କରିପାରିବ । ସ୍ୱାଧୀନ ହେଲେ କେବଳ ଇଂଲଣ୍ଡ ସଙ୍ଗେ ଆମର ଅତୀତ ସମ୍ପର୍କର ଯେଉଁ ତିକ୍ତ ଐତିହ୍ୟ ରହିଚି, ତାହା ଆମେ ପାସୋରି ପାରୁ ଏବଂ ଜନସାଧାରଣଙ୍କ ଭିତରେ ଉତ୍ସାହ ସୃଷ୍ଟି କରିବା ପାଇଁ ଓ ଆମର ସମସ୍ତ ସମ୍ବଳ ପ୍ରତିରକ୍ଷା ନିମନ୍ତେ ସଙ୍ଗଠନ କରିବା-

ଲାଗି ସମର୍ଥ ହୋଇ ପାରିବୁ । ଆମର ସ୍ୱାଧୀନତା ବିନା ସେହି ଆଗାମୀ ଯୁଦ୍ଧର କୌଣସି ନୂତନତ୍ୱ ରହିବ ନାହିଁ ଏବଂ ସେହି ଯୁଦ୍ଧ ଆମକୁ ପ୍ରତୀତ ହେବ ଦୁଇଟି ସାମ୍ରାଜ୍ୟବାଦର ବିବାଦ ଓ ବ୍ରିଟିଶ୍ ସାମ୍ରାଜ୍ୟର ପ୍ରତିରକ୍ଷା ଆଉ ତାହା ଚିରସ୍ଥାୟୀ କରିବାର ଉଦ୍ୟମ ଭଳି । ଏତେ ଦିନ ଧରି ଯେଉଁ ସାମ୍ରାଜ୍ୟବାଦ ବିରୁଦ୍ଧରେ ଆମେ ସଂଗ୍ରାମ କରି ଆସିଚୁ, ତା'ର ପ୍ରତିରକ୍ଷା ନିମନ୍ତେ ଅସ୍ତ୍ର ଧାରଣ କରିବା ଆମକୁ ଅସମ୍ଭବ ଓ ଅର୍ଥହୀନ ବୋଧ ହେଉଥିଲା । ଆମ ଭିତରୁ କେହି କେହି ବୃହତ୍ତର ଦୃଷ୍ଟିରୁ ନାଜିବାଦ ତୁଳନାରେ ବ୍ରିଟିଶ୍ ସାମ୍ରାଜ୍ୟବାଦ କମ୍ ଅହିତକର ବୋଲି ଯଦିଓ ମଣୁଥିଲେ ସେହି ବିଗ୍ରହ ସଙ୍ଗେ ଆମ ଜନସାଧାରଣଙ୍କୁ କିନ୍ତୁ ପ୍ରସ୍ତୁତ କରିବାର ସାମର୍ଥ୍ୟ ଆଦୌ ନଥିଲା । ସ୍ୱାଧୀନତା କେବଳ ଜନସାଧାରଣଙ୍କର ଅନ୍ତର୍ନିହିତ ଶକ୍ତି ପ୍ରବାହିତ କରିପାରେ ଏବଂ ଏକ ମହତ୍ତ୍ୱପୂର୍ଣ୍ଣ ଉଦ୍ଦେଶ୍ୟ ନିମନ୍ତେ ଏକ ସମସ୍ୱର ଚିତ୍ତତାକୁ ଅପୂର୍ବ ଉତ୍ସାହରେ ପରିଣତ କରିପାରେ । ଏ ଦିଗରେ ଅନ୍ୟ ପନ୍ଥା ଆଉ ନଥିଲା ।

କଂଗ୍ରେସ ନିର୍ଦ୍ଦିଷ୍ଟ ଭାବରେ ଦାବିକଲା ଯେ ଜନସାଧାରଣଙ୍କର କିମ୍ବା ଲୋକପ୍ରତିନିଧି-ମାନଙ୍କର ସମ୍ମତି ବିନା ଭାରତକୁ କୌଣସି ଯୁଦ୍ଧରେ ପ୍ରବିଷ୍ଟ କରିଦିଆନଯାଉ ଏବଂ ସେ ପ୍ରକାର ସମ୍ମତି ବିନା ଭାରତ ବାହାରେ ଯୁଦ୍ଧ କରିବା ନିମନ୍ତେ ଭାରତୀୟ ସୈନ୍ୟଙ୍କୁ ପ୍ରେରଣ କରାନଯାଉ । ବିବିଧ ଗୋଷ୍ଠୀ ଓ ଦଳସମ୍ବଳିତ କେନ୍ଦ୍ର ବ୍ୟବସ୍ଥାପକ ସଭା ଭାରତୀୟ ସୈନ୍ୟଙ୍କୁ ବାହାରକୁ ପଠାନଯାଉ ବୋଲି ଦାବି କରିଥିଲା । ସାମ୍ରାଜ୍ୟବାଦୀ ଉଦ୍ଦେଶ୍ୟ ସାଧନ ନିମନ୍ତେ ଏବଂ ବିଶେଷତଃ କୌଣସି ଦେଶ ଜୟକରିବା ନିମନ୍ତେ କିମ୍ବା କୌଣସି ଜନତାକୁ ଦମନ କରିବା ନିମନ୍ତେ ଯାହା ସଙ୍ଗେ ଆମର ମୋଟେ କଳହ କେବେ ଘଟିନି ବରଂ ସ୍ୱାଧୀନତା ପୁନର୍ବାର ଲାଭକରିବା ନିମନ୍ତେ ଯେଉଁ ଜାତିର ଉଦ୍ୟମ ପ୍ରତି ଆମେ ବରାବର ସହାନୁଭୂତି ପ୍ରକାଶ କରିଚୁ, ସେହି ଦେଶ ଓ ସେହି ଜାତି ବିରୁଦ୍ଧରେ ଆମ ସଶସ୍ତ୍ର ବାହିନୀକୁ କାହିଁକି ବ୍ୟବହାର କରାଯାଉଚି ବୋଲି ଏକ ଗୁରୁତର ଅଭିଯୋଗ ଆମର ବହୁଦିନରୁ ଥିଲା । ସାମ୍ରାଜ୍ୟବାଦୀ ଉଦ୍ଦେଶ୍ୟ ସାଧନ ନିମନ୍ତେ ଭାରତୀୟ ସୈନ୍ୟଙ୍କୁ ଭଡ଼ାଟିଆ ଭାବରେ ବର୍ମା, ଚୀନ, ଇରାନ୍, ମଧ୍ୟ-ପ୍ରାଚ୍ୟ ଓ ଆଫ୍ରିକାର କେତେକ ଅଂଶରେ ବ୍ୟବହାର କରାଯାଇଥିଲା । ସେହିସବୁ ଦେଶରେ ଭାରତୀୟ ସୈନ୍ୟ ହେଲେ ବ୍ରିଟିଶ୍ ସାମ୍ରାଜ୍ୟବାଦର ପ୍ରତୀକ ଏବଂ ସେଠାରେ ଲୋକେ ସ୍ୱାଭାବିକ ଭାବରେ ଭାରତ ବିରୋଧୀ ହୋଇ ଉଠିଥିଲେ । ଜଣେ ମିଶରବାସୀର ଉକ୍ତି ମନ୍ତବ୍ୟ ମୋର ମନେ ପଡ଼ୁଚି : "ତୁମେ ଯେ ନିଜର ସ୍ୱାଧୀନତା ହରାଇଲ କେବଳ ନୁହେଁ, ବରଂ ଅନ୍ୟମାନଙ୍କୁ ଦାସତ୍ୱର ବେଡ଼ି ପିନ୍ଧାଇବା ପାଇଁ ଇଂରେଜମାନଙ୍କୁ ସାହାଯ୍ୟ କରୁଚ ।"

ଏହି ଦ୍ୱୈତ ନୀତିର ଦୁଇ ଅଂଶ ପରସ୍ପର ଭିତରେ ସ୍ୱତଃ ମେଳ ରଖିପାରୁନଥିଲେ । ଉଭୟ ଭିତରେ ଏକ ପ୍ରକାର ବିରୋଧାଭାସ ରହିଥିଲା; କିନ୍ତୁ ସେହି ବିପରୀତ ଭାବର ସ୍ରଷ୍ଟା ଆମେ ନଥିଲୁ । ପରିସ୍ଥିତି ଗର୍ଭରେ ତାହା ନିହିତ ଥିଲା ଏବଂ ସେହି ପରିସ୍ଥିତିରୁ ଉଦ୍ଭୂତ ଯେକୌଣସି ନୀତିରେ ଅନିବାର୍ଯ୍ୟ ଭାବରେ ତା'ର ପ୍ରତିବିମ୍ବ ଦେଖା ଦେଉଥିଲା । ଫାସିଷ୍ଟବାଦ

ଓ ନାଜିବାଦର ନିନ୍ଦନ ଏବଂ ସାମ୍ରାଜ୍ୟବାଦୀ ଆଧିପତ୍ୟର ରକ୍ଷଣାବେକ୍ଷଣ—ଏ ଅସଙ୍ଗତି ଆମେ ବାରମ୍ବାର ସୂଚିତ କରୁଥିଲୁ । ଏକଥା ଅବଶ୍ୟ ସତ୍ୟ ଯେ ଫାସିଷ୍ଟବାଦ ଓ ନାଜିବାଦ ଅକଥନୀୟ ହିଂସ୍ର ଅପରାଧରେ ଲିପ୍ତ ଥିଲାବେଳେ ସାମ୍ରାଜ୍ୟବାଦ ଭାରତରେ ଓ ଅନ୍ୟତ୍ର ତା'ର ଆସ୍ଥାନ ଦୃଢ଼ କରିସାରିଥିଲା । ଉଭୟ ମଧ୍ୟରେ ପ୍ରଭେଦ କେବଳ ସମୟ ଓ ମାତ୍ରାର; ପ୍ରକାର ଭାବରେ ନୁହେଁ । ଫାସିଷ୍ଟବାଦ ଓ ନାଜିବାଦ ଆମଠାରୁ ବହୁ ଦୂରରେ ରହିଥିଲା ଆଉ ଯାହା ସମ୍ପର୍କରେ ଆମର ଜ୍ଞାନ ପଢ଼ିବାରେ କେବଳ ଥିଲା ସୀମିତ; କିନ୍ତୁ ସାମ୍ରାଜ୍ୟବାଦ ସର୍ବଦା ଆମର ଦ୍ୱାରଦେଶରେ ରହିଥିଲା ଏବଂ ଆମ ସମସ୍ତଙ୍କୁ ଘେରାଉ କରିବା ସଙ୍ଗେ ସଙ୍ଗେ ସମଗ୍ର ବାତାବରଣରେ ବ୍ୟାପ୍ତ ରହିଥିଲା । ଅନ୍ୟତ୍ର କେଉଁଠି ଗଣତନ୍ତ୍ରର ପତାକା ଉଚ୍ଚକୁ ତୋଳି ଧରି ଭାରତରେ ଆମକୁ ଗଣତାନ୍ତ୍ରିକ ଜୀବନରୁ ବଞ୍ଚିତ କରିବାର ଏହି ଅସଙ୍ଗତି ଆମେ ଦୃଢ଼ ଭାବରେ ସୂଚିତ କରୁଥିଲୁ ।

ଆମର ବୈଦେଶିକ ନୀତିରେ ଯାହା କିଛି ଅସଙ୍ଗତି ଥାଉନା କାହିଁକି, ପ୍ରତିରକ୍ଷା ପାଇଁ ହେଉ କିମ୍ବା ଆକ୍ରମଣ ପ୍ରତିହତ କରିବା ପାଇଁ ହେଉ, ଅସ୍ତ୍ର ଧାରଣ ସମ୍ପର୍କରେ ଆମର ଅହିଂସ ନୀତି ଅନ୍ତର୍ଭୁକ୍ତ ହେବାର ପ୍ରଶ୍ନ ନଥିଲା ।

ଖ୍ରୀ: ୧୯୩୮ ଗ୍ରୀଷ୍ମ କାଳରେ ମୁଁ ଇଂଲଣ୍ଡ ତଥା ୟୁରୋପରେ ପର୍ଯ୍ୟଟନ କରୁଥିଲି ଏବଂ ଲିଖନ, ଭାଷଣ ତଥା ବ୍ୟକ୍ତିଗତ ଆଲୋଚନାରେ ମୁଁ ଆମର ଏହି ବୈଦେଶିକ ନୀତି ବୁଝାଇବାକୁ ଯାଇ ଆମ ଦେଶର ପରିସ୍ଥିତିକୁ ଯଥାତଥା ରଖିବାରେ କିମ୍ବା ପରିସ୍ଥିତିର ପ୍ରବାହରେ ଭାସିଯିବାକୁ ଛାଡ଼ିଦେବାରେ କି କି ବିପଦ ରହିଛି ସୂଚିତ କରିଥିଲି । ମୁନିଚ୍ ଲେଣ୍ଡ୍ ସଙ୍କଟର ଚରମ ମୁହୂର୍ତ୍ତରେ ଉଦ୍‌ବିଗ୍ନ ଜେନ୍ ଲୋକେ ଯୁଦ୍ଧ ଲାଗିଲେ ଭାରତ କି ପନ୍ଥା ଧରିବ ବୋଲି ମତେ ପ୍ରଶ୍ନ କରିଥିଲେ । ବିପଦ ସେମାନଙ୍କର ଏତେ ନିକଟବର୍ତ୍ତୀ ହୋଇ ସାରିଥିଲା ଓ ଏତେ ବିରାଟ ରୂପ ଧରିଥିଲା ଯେ ଆମର ପୁରାତନ ଅଭିଯୋଗ ଓ ଆମର ବୈଦେଶିକ ନୀତିର ଯଥାର୍ଥତା ଉପଲବ୍‌ଧି କରିବା ଅବସ୍ଥାରେ ସେମାନେ ନଥିଲେ । ତଥାପି ସୁଦ୍ଧା ମୋର କହିବା ସେମାନେ ବୁଝିଥିଲେ ଓ ମୋର ଯୁକ୍ତି ଗ୍ରହଣ କରିଥିଲେ ।

ଖ୍ରୀ: ୧୯୩୯ ମଧ୍ୟଭାଗରେ ଜଣାପଡ଼ିଲା ଯେ ଭାରତୀୟ ସୈନ୍ୟଙ୍କୁ ଦରିଆ ସେପାରି, ସମ୍ଭବତଃ ସିଙ୍ଗାପୁର ଓ ମଧ୍ୟ-ପ୍ରାଚ୍ୟକୁ ପଠାଯାଇଛି । ଲୋକପ୍ରତିନିଧିଙ୍କ ଅଜ୍ଞାତରେ ଏକଥା କରାଯାଇଥିବାରୁ ଅବଲମ୍ବେ ସେଥି ଉପରେ ଖୁବ୍ ଉଚ୍ଚବାଚ ହେଲା । ଏକଥା ସମସ୍ତେ ସ୍ୱୀକାର କରିବେ ଯେ, ସଙ୍କଟ କାଳରେ ସୈନ୍ୟ ଚାଳନା ପ୍ରାୟଶଃ ଗୁପ୍ତ ରଖିବାକୁ ପଡ଼ିଥାଏ । ତଥାପି ସୁଦ୍ଧା ପ୍ରତିନିଧିସ୍ଥାନୀୟ ନେତାମାନଙ୍କୁ ବିଶ୍ୱାସକୁ ନିଆଯାଇ ପାରନ୍ତା ଓ ସେଥିଲାଗି ବହୁତ ପନ୍ଥା ବି ଥିଲା । କେନ୍ଦ୍ର ଆସେମ୍ବ୍ଲିରେ ବିଭିନ୍ନ ଦଳର ନେତା ଥିଲେ ଏବଂ ପ୍ରତ୍ୟେକ ପ୍ରଦେଶରେ ଲୋକପ୍ରତିନିଧି ଶାସନ ଚାଲିଥିଲା । ସ୍ୱାଭାବିକ ରୀତିରେ, କେନ୍ଦ୍ର ସରକାରଙ୍କୁ ନାନା ବିଷୟରେ ପ୍ରଦେଶର ମନ୍ତ୍ରୀମାନଙ୍କ ସଙ୍ଗେ ପରାମର୍ଶ କରିବା କାଳରେ କେତେକ ଗୁପ୍ତ ବିଷୟ ମଧ୍ୟ ଖୋଲିବାକୁ ପଡ଼ିଥାଏ । କିନ୍ତୁ ଏ କ୍ଷେତ୍ରରେ ଲୋକପ୍ରତିନିଧିମାନଙ୍କ ପ୍ରତି ଏବଂ ଜାତିର ଘୋଷିତ ଅଭିଳାଷ ପ୍ରତି ସାଧାରଣ ଭାବରେ

ସୁଦ୍ଧା ସମ୍ମାନ ପ୍ରଦର୍ଶନ କରାଯାଇନଥିଲା । ଅଧିକନ୍ତୁ, ଖ୍ରୀ: ୧୯୩୫ର ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଏକ୍ଟ, ଯାହାର ଉପରେ ଭିତ୍ତି କରି ପ୍ରାଦେଶିକ ସରକାରମାନେ କାର୍ଯ୍ୟକାରୀ ହେଉଥିଲେ, ଯୁଦ୍ଧକାଳୀନ ଜରୁରି ପରିସ୍ଥିତିରେ କେନ୍ଦ୍ର ସରକାରଙ୍କ ହାତରେ ସମସ୍ତ କ୍ଷମତା କେନ୍ଦ୍ରିତ କରିବା ଉଦ୍ଦେଶ୍ୟରେ, ବ୍ରିଟିଶ୍ ପାର୍ଲିମେଣ୍ଟ ଜରିଆରେ ସଂଶୋଧନ କରିବା ନିମନ୍ତେ ବ୍ୟବସ୍ଥା ଗ୍ରହଣ କରାଯାଉଥିଲା । ସାଧାରଣତଃ ଗୋଟାଏ ଗଣତାନ୍ତ୍ରିକ ଦେଶରେ ସଂପୃକ୍ତ ଦଳମାନଙ୍କ ସମ୍ମତି ନେଇଥିଲେ ଏହା ଏକ ସ୍ୱାଭାବିକ ତଥା ଯୁକ୍ତିସଙ୍ଗତ ପଦକ୍ଷେପ ବିବେଚିତ ହେଇଥାନ୍ତା । ଏକଥା ସମସ୍ତେ ଜାଣନ୍ତି ଯେ ସଙ୍ଘଭୁକ୍ତ ରାଜ୍ୟମାନେ, ପ୍ରଦେଶ-ମାନେ କିମ୍ବା ସ୍ୱଶାସିତ ସଂସ୍ଥାମାନେ ନିଜର ଅଧିକାର ପ୍ରତି ଏତେ ଲୋଭ ରଖିଥାନ୍ତି ଯେ ସଙ୍କଟ ତଥା ଜରୁରି ପରିସ୍ଥିତିରେ ସୁଦ୍ଧା କୌଣସି କେନ୍ଦ୍ର ସରକାରଙ୍କ ହାତରେ ସେସବୁ ଅଧିକାର ସମର୍ପଣ କରି ଦେବା ପାଇଁ ସହଜରେ ରାଜି ହୁଅନ୍ତି ନାହିଁ । ଏହି ଭିତ୍ତି-ଓ୍ୱଟରି ଯୁକ୍ତରାଷ୍ଟ୍ର ଆମେରିକାରେ ବରାବର ଲାଗିଛି ଏବଂ ବର୍ତ୍ତମାନ ମୁଁ ଏକଥା ଲେଖିଲାବେଳେ ଅଷ୍ଟ୍ରେଲିଆରେ ଏକ ଗଣଭୋଟ ରାଜ୍ୟ ସରକାରଙ୍କ ହାତରୁ କେତେକ କ୍ଷମତା କାଢ଼ିନେଇ କମନ୍‌ଓ୍ୱେଲ୍‌ଥ ସରକାରଙ୍କ ହାତରେ ଦେବା ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଛି । ଯୁଦ୍ଧ-କାଳୀନ ପରିସ୍ଥିତିରେ ଯୁଦ୍ଧ ଉଦ୍ଦେଶ୍ୟରେ ମଧ୍ୟ ସେ କଥା କରାଯାଇପାରିନାହିଁ । ତଥାପି ଆମେରିକା ଓ ଅଷ୍ଟ୍ରେଲିଆ ଉଭୟ ଦେଶରେ କେନ୍ଦ୍ର ସରକାର ଓ ବ୍ୟବସ୍ଥାସଭାର ସଭ୍ୟମାନେ ସେହିସବୁ ରାଜ୍ୟରୁ ହିଁ ଗଣଭୋଟ ଦ୍ୱାରା ନିର୍ବାଚିତ । ଭାରତରେ କେନ୍ଦ୍ର ସରକାର ଅତୀତରେ ଯେପରି ଏବେ ସୁଦ୍ଧା ସେପରି ସମ୍ପୂର୍ଣ୍ଣ ଦାୟିତ୍ୱହୀନ ଓ ନିରଙ୍କୁଶ । ଏ ସରକାର ନିର୍ବାଚିତ ନୁହେଁ ଏବଂ ଜନସାଧାରଣଙ୍କ ପ୍ରତି କିମ୍ବା ପ୍ରଦେଶମାନଙ୍କ ପ୍ରତି ଦାୟିତ୍ୱଶୀଳ ନୁହେଁ । ବ୍ରିଟିଶ୍ ସରକାରଙ୍କର ଏଜେଣ୍ଟ ଭାବରେ ଏହା କାର୍ଯ୍ୟ କରେ । ପ୍ରଦେଶ ସରକାର ଓ ବ୍ୟବସ୍ଥାପକସଭାର କେତେକ ଅଧିକାର ଏହି କେନ୍ଦ୍ର ସରକାର ହାତରେ ଦେବା ଅର୍ଥ ପ୍ରାଦେଶିକ ସରକାର ଗୁଡ଼ିକୁ ଆହୁରି ଅଧିକ ଦୁର୍ବଳ କରିବା ଓ ପ୍ରାଦେଶିକ ସ୍ୱଶାସନ ମୂଳରେ କୁଠାରାଘାତ କରିବା । ଏଥିପ୍ରତି ଗଭୀର ବିରକ୍ତି ପ୍ରକାଶ ପାଇଲା । ଏପରି ବି ଅନୁଭବ କରାଗଲା ଯେ ଏହି ନୀତି ସେହି ଆଶ୍ୱାସନାର ବିରୋଧ କରେ; ଯାହା କଂଗ୍ରେସ ସରକାରମାନଙ୍କ ଗଠନ କାଳରେ ଦିଆଯାଇଥିଲା । ସେଥିରୁ ମଧ୍ୟ ସୂଚନା ମିଳୁଥିଲା ଯେ ପୂର୍ବଭଳି ତା'ର ନିର୍ବାଚିତ ଲୋକପ୍ରତିନିଧିମାନଙ୍କ ପଦେ ସୁଦ୍ଧା ନକହି ଭାରତ ଉପରେ ଯୁଦ୍ଧ ଲଦିଦିଆଯିବ ।

କଂଗ୍ରେସ କାର୍ଯ୍ୟକାରୀ କମିଟି ଏହି ନୀତି ସଙ୍ଗେ ଯେ ଏକମତ ନୁହେଁ ତାହା ଖୁବ୍ ବଳିଷ୍ଠ ଭାବରେ ବ୍ୟକ୍ତ କଲା । କଂଗ୍ରେସ ବୁଝିଥିଲା ଯେ କଂଗ୍ରେସ ତଥା କେନ୍ଦ୍ର ବ୍ୟବସ୍ଥାପକସଭା— ଉଭୟର ଘୋଷଣାକୁ ଏହା ସୁଚିନ୍ତିତ ଭାବରେ ଅବଜ୍ଞା କରୁଛି । କଂଗ୍ରେସ ଘୋଷଣା କଲା ଯେ ଭାରତର ଜନସାଧାରଣଙ୍କ ସମ୍ମତି ବିନା ଭାରତକୁ କୌଣସି ଦୂରପ୍ରସାରୀ ନୀତି ସଙ୍ଗେ ଲିପ୍ତ କରିବାରେ ସେ ରାଜି ହେଇ ନପାରେ ଏବଂ ଏପରିଭାବରେ ଯଦି ଭାରତ ଉପରେ ଯୁଦ୍ଧ ଲାଦି ଦିଆଯାଏ, ତା'ର ପ୍ରତିରୋଧ କରିବା ପାଇଁ ସେ ବାଧ୍ୟ ହେବ । ପୁନରପି

ଖ୍ରୀ: ୧୯୩୯ ଅଗଷ୍ଟ ଆରମ୍ଭରେ କଂଗ୍ରେସ ବିବୃତି କଲା ଯେ "ଏହି ବିଶ୍ୱ-ସଙ୍କଟରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସହାନୁଭୂତି ସମ୍ପୂର୍ଣ୍ଣ ଭାବରେ ସେହି ମାନବତା ପ୍ରତି ରହିଛି, ଯେଉଁମାନେ ମୁକ୍ତି ଓ ଗଣତନ୍ତ୍ରର ସୁରକ୍ଷା ନିମନ୍ତେ ଦଣ୍ଡାୟମାନ । ୟୁରୋପ, ଆଫ୍ରିକା ଓ ଦୂର ପୂର୍ବ-ଏସିଆରେ ଫାଶିଷ୍ଟବାଦର ଆକ୍ରମଣ ଏବଂ ଚେକୋସ୍ଲୋଭାକିଆ ଓ ସ୍ପେନ୍‌ରେ ବ୍ରିଟିଶ ସାମ୍ରାଜ୍ୟବାଦର ଗଣତନ୍ତ୍ର ପ୍ରତି ବିଶ୍ୱାସଘାତକତା କଂଗ୍ରେସ ପୁନଃ ପୁନଃ ନିନ୍ଦିତ କରିଛି ।" ସେହି ବିବୃତିରେ ଆହୁରି କୁହାଗଲା, "ଅତୀତରେ ବ୍ରିଟିଶ ସରକାରଙ୍କର ନୀତି ଓ ବର୍ତ୍ତମାନ କାର୍ଯ୍ୟକଳାପ ବିସ୍ତୃତ ଭାବରେ ପ୍ରଦର୍ଶିତ କରେ ଯେ ଏହି ସରକାର ମୁକ୍ତି ଓ ଗଣତନ୍ତ୍ରର ପକ୍ଷପାତୀ ନୁହନ୍ତି ଏବଂ ଯେ କେଉଁ ସମୟରେ ଉଭୟର ଆଦର୍ଶ ପ୍ରତି ବିଶ୍ୱାସ-ଘାତକତା କରିପାରନ୍ତି । ଏ ପ୍ରକାର ଏକ ସରକାର ସଙ୍ଗେ ଭାରତ ସହଯୋଗ କରି ନପାରେ ଏବଂ ଯେଉଁ ଗଣତାନ୍ତ୍ରିକ ସ୍ୱାଧୀନତାରୁ ସେ ନିଜେ ବଞ୍ଚିତ ଏବଂ ଯାହାର ପ୍ରତି ବିଶ୍ୱାସଘାତକତା କରିବାର ଯଥେଷ୍ଟ ଅବକାଶ ରହିଛି, ସେଥି ନିମନ୍ତେ ଭାରତକୁ ତା'ର ସମସ୍ତ ସମ୍ବଳ ନିୟୋଜିତ କରିବାପାଇଁ କୁହାଯାଇ ନପାରେ ।" ଏହି ନୀତି ବିରୁଦ୍ଧରେ ପ୍ରତିବାଦର ପ୍ରଥମ ପଦକ୍ଷେପ ସ୍ୱରୂପ କେନ୍ଦ୍ର ବ୍ୟବସ୍ଥାପକ ସଭାର କଂଗ୍ରେସ ସଭ୍ୟମାନଙ୍କୁ ଆସେମ୍ବ୍ଲିର ପରବର୍ତ୍ତୀ ଅଧିବେଶନରେ ଯୋଗ ନଦେବା ପାଇଁ ନିର୍ଦ୍ଦେଶ ଦିଆଗଲା ।

ଏହି ଶେଷ ପ୍ରସ୍ତାବ ଗ୍ରହଣ କରାଗଲା ୟୁରୋପରେ ପ୍ରକୃତପକ୍ଷେ ଯୁଦ୍ଧ ଲାଗିବାର ତିନି ସପ୍ତାହ ପୂର୍ବରୁ । ଦେଖାଗଲା ଯେ ଭାରତ ସରକାର ଆଉ ତାଙ୍କ ପଛର ବ୍ରିଟିଶ୍ ସରକାର ଯୁଦ୍ଧ ସଙ୍କଟଜନିତ ଗୁରୁତ୍ୱପୂର୍ଣ୍ଣ ବିଷୟମାନଙ୍କରେ କେବଳ ନୁହେଁ, ଅତି ସାଧାରଣ କଥାରେ ସୁଦ୍ଧା ଭାରତୀୟ ଜନମତକୁ ସମ୍ପୂର୍ଣ୍ଣ ଭାବରେ ଉପେକ୍ଷା କରିବାପାଇଁ ଯେପରି ବଦ୍ଧପରିକର ହୋଇଚନ୍ତି । ଏହି ନୀତି ପ୍ରଦେଶରେ ଗଭର୍ଣ୍ଣରଙ୍କ ଭାବଭଙ୍ଗୀରେ ପ୍ରତିଫଳିତ ହେଲା ଏବଂ ପ୍ରଶାସନର ସିଭିଲ୍ ସର୍ଭିସ୍ କଂଗ୍ରେସ ସରକାରମାନଙ୍କ ପ୍ରତି ଅଧିକ ଅସହଯୋଗ ମନୋଭାବ ପୋଷଣ କଲା । ପ୍ରଦେଶରେ ଏହିସବୁ କଂଗ୍ରେସ ସରକାରଙ୍କ ଅବସ୍ଥା ବେଳକୁବେଳ ଅଧିକ ଭାବରେ ଅସୁବିଧାଜନକ ହୋଇଉଠୁଥିଲା ଏବଂ ଲୋକମତ ଉତ୍ତେଜିତ ତଥା ଆଶଙ୍କିତ ହୋଇଥିଲା । କଂଗ୍ରେସ ସରକାରମାନେ ଆଶଙ୍କା କରୁଥିଲେ ଯେ ପ୍ରାୟ ପଚିଶ ବର୍ଷ ପୂର୍ବେ ଖ୍ରୀ: ୧୯୧୪ରେ ବ୍ରିଟିଶ ସରକାର ଯେପରି କରିଥିଲେ, ବର୍ତ୍ତମାନ ବି ସେପରି କରିବେ; ଅର୍ଥାତ୍ ପ୍ରଦେଶ ସରକାର ଜନମତ ଏବଂ ତାତ୍କାଳିକ ସବୁ କିଛି ଘଟଣାକୁ ଅବଜ୍ଞା କରି ଭାରତ ଉପରେ ଯୁଦ୍ଧ ଲଦିଦେବେ ଏବଂ ଯେଉଁ ସାମାନ୍ୟ ତଥା ସୀମିତ ସ୍ୱାଧୀନତା ଭାରତ ହାସଲ କରିଛି, ତାହା ଛଡ଼ାଇନେବା ପାଇଁ ଯୁଦ୍ଧକୁ ଏକ ଆଳ କରି ବସିବେ, ଆଉ ନିର୍ବିବାଦରେ ତା'ର ସମ୍ବଳ ଲୁଣ୍ଠନ କରିବେ ।

କିନ୍ତୁ ଏହି ପଚିଶ ବର୍ଷ ଭିତରେ ବହୁତ କିଛି ଘଟଣା ଘଟିଯାଇଥିଲା ଏବଂ ଜନସାଧାରଣଙ୍କ ମତଗତ ଭିନ୍ନ ପ୍ରକାର ହୋଇସାରିଥିଲା । ଭାରତ ଭଳି ଏକ ମହାନ୍ ଦେଶକୁ ଅସ୍ଥାବର ସମ୍ପତ୍ତି ଭାବରେ ବ୍ୟବହାର କରିବା ଓ ତା'ର ଲୋକଙ୍କୁ ସମ୍ପୂର୍ଣ୍ଣ ରୂପେ ତଥା ବିଦ୍ୱେଷପୂର୍ଣ୍ଣ ଭାବରେ ଉପେକ୍ଷା କରିବା ଧାରଣା ପ୍ରତି ତିକ୍ତ ତଥା ପ୍ରଚ୍ଛନ୍ନ କ୍ରୋଧ

ପ୍ରକାଶ ପାଉଥିଲା । ଗତ କୋଡ଼ିଏ ବର୍ଷର ସଂଗ୍ରାମ ଆଉ ଦୁଃଖଭୋଗ କ'ଣ ବ୍ୟର୍ଥ ଯିବ ? ଏହି ଲାଞ୍ଛନା ଓ ଅପମାନନା ନୀରବରେ ମୁଣ୍ଡପାତି ନେଇ ଭାରତୀୟ ଲୋକେ ଜନ୍ମଭୂମି ନାମରେ କ'ଣ କଳଙ୍କ ବୋଳିବେ ? ଭାରତର ବହୁଲୋକ ଯାହା ମନ୍ଦ ଓ ଅକଲ୍ୟାଣକର, ତା'ର ପ୍ରତିରୋଧ କରିବା ଶିଖିଥିଲେ ଏବଂ ସେପରି କେଉଁଠି ମୁଣ୍ଡ ନୁଆଇବା ପାଇଁ ସେମାନେ ପ୍ରସ୍ତୁତ ନଥିଲେ, ଯାହା ସେମାନଙ୍କ ପକ୍ଷରେ ଲଜ୍ଜାକର ବିବେଚିତ ହୁଅନ୍ତା । ମସ୍ତକ ଅବନତ ନକଲେ କି ପରିଣାମ ଘଟିବ, ସ୍ୱେଚ୍ଛାରେ ସେମାନେ ଗ୍ରହଣ କରିନେଇଥିଲେ ।

ଏହା ବ୍ୟତୀତ ଦେଶର ତରୁଣକୁଳ ବି ଥିଲେ ଯାହାଙ୍କର ଜାତୀୟତାବାଦୀ ସଂଗ୍ରାମ ଓ ତା'ର ଲିପ୍ତତା ସମ୍ପର୍କରେ ବ୍ୟକ୍ତିଗତ ଅଭିଜ୍ଞତା କିଛି ନଥିଲା ଏବଂ ଯାହାଙ୍କ ପକ୍ଷରେ ଦ୍ୱିତୀୟ ଓ ତୃତୀୟ ଦଶକର ଆଇନଅମାନ୍ୟ ଆନ୍ଦୋଳନ ଅତୀତର ଇତିହାସ ମାତ୍ର ଥିଲା । ଅଭିଜ୍ଞତା ଓ ଦୁଃଖଭୋଗର ଅଗ୍ନି-ପରୀକ୍ଷା ଦେଇ ସେମାନେ ଆସି ନଥିଲେ ଏବଂ ଅନେକ କଥାକୁ ଅନିବାର୍ଯ୍ୟ କିମ୍ବା ସ୍ୱାଭାବିକ ବୋଲି ଧରିନେଉଥିଲେ । ପୂର୍ବବର୍ତ୍ତୀ ପୁରୁଷକୁ ଦୁର୍ବଳ ଓ ମିଳାମିଶାପ୍ରବଣ ମଣି ସେମାନେ ପସନ୍ଦ କରୁ ନଥିଲେ ଏବଂ ମନେକରୁଥିଲେ ଯେ କାର୍ଯ୍ୟ ଆପେକ୍ଷା କଡ଼ା କଥା ଅଧିକ ଫଳପ୍ରଦ । ବ୍ୟକ୍ତିଗତ ନେତୃତ୍ୱର ପ୍ରଶ୍ନ ଯେତେ କିମ୍ବା ରାଜନୀତି ଅଥବା ଅର୍ଥନୀତିର ସିଦ୍ଧାନ୍ତ ଯେତେ ସେମାନେ ପରସ୍ପର ଭିତରେ ବିତର୍କ ଓ କଳହରେ ରତ ଥିଲେ । ବିଶ୍ୱ-ବ୍ୟାପାର ସମ୍ପର୍କରେ ସେମାନଙ୍କର ଆଲୋଚନାର ଅନ୍ତ ନଥିଲା; କିନ୍ତୁ ସେ ବିଷୟରେ ସେମାନଙ୍କର ଜ୍ଞାନ ଯଥେଷ୍ଟ ନଥିଲା । ଯେଉଁସବୁ ଅଭିଜ୍ଞତା ଓ ନୀତି ଚରିତ୍ରକୁ ଦୃଢ଼କରେ ତା'ର ଅଭାବ ସେମାନଙ୍କଠାରେ ପରିଲକ୍ଷିତ ହେଉଥିଲା ଏବଂ ସେମାନଙ୍କର ବିଚାର ଓ ଆଚରଣରେ ଅପରିପକ୍ୱତା ହିଁ ପ୍ରକାଶ ପାଉଥିଲା । ସେମାନଙ୍କ ଭିତରେ ବହୁତ ଭଲ ଗୁଣ ଥିଲା, ଭଲ କାର୍ଯ୍ୟ କରିବା ପାଇଁ ପ୍ରବଳ ଉତ୍ସାହ ଥିଲା; କିନ୍ତୁ କାହିଁକି କେଜାଣି ସେମାନଙ୍କର କାର୍ଯ୍ୟକଳାପ, ଆଶା ଓ ଉତ୍ସାହ ଉଦ୍ଦୀପିତ କରୁନଥିଲା । ହୁଏତ ଏହା ଏକ ସାମୟିକ ଅବସ୍ଥା ମାତ୍ର ଯାହା ସେମାନେ ଶୀଘ୍ର ଅତିକ୍ରମି ଯିବେ କିମ୍ବା ଇତିମଧ୍ୟରେ ସେମାନଙ୍କର ଯେଉଁସବୁ ତିକ୍ତ ଅଭିଜ୍ଞତା ହେଲଣି, ହୁଏତ ଅତିକ୍ରମ କରି ଆସିଯିବେଣି ।

ଜାତୀୟତାବାଦୀ ଶିବିରର ଏହିସବୁ ଗୋଷ୍ଠୀ ଭିତରେ, ଅନ୍ୟାନ୍ୟ ବିଷୟରେ ଯାହା ମତଭେଦ ଥାଉନା କାହିଁକି, ଭାରତ ପ୍ରତି ଏହି ସଙ୍କଟକାଳରେ ବ୍ରିଟିଶ ନୀତି ସମସ୍ତଙ୍କ ମନରେ ଗୋଟାଏ ପ୍ରକାର ପ୍ରତିକ୍ରିୟା ସୃଷ୍ଟି କଲା । କ୍ରୋଧ ସେମାନଙ୍କ ଭିତରେ ଦମକ-ଛିଟିଥିଲା ଏବଂ ସମସ୍ତେ ସମସ୍ୱରରେ କଂଗ୍ରେସକୁ ଡାକଦେଲେ ତା'ର ପ୍ରତିରୋଧ କରିବା ପାଇଁ । ଭାରତର ଗର୍ବିତ ତଥା ସୁବେଦୀ ଜାତୀୟତାବାଦ ଏହି ଅପମାନନା ନିକଟରେ ମୁଣ୍ଡ ନୁଆଇବା ପାଇଁ ପ୍ରସ୍ତୁତ ନଥିଲା । ଅନ୍ୟ ସବୁ ବିଚାର ଏହାର ତୁଳନାରେ ମନେହେଉଥିଲା ଗୌଣ ।

ୟୁରୋପରେ ଯୁଦ୍ଧ ଘୋଷିତ ହେଲା ଏବଂ ଅନତିବିଳମ୍ବେ ଭାରତର ଭାଇସ୍‌ରୟ ଘୋଷଣା କଲେ ଯେ ଭାରତ ମଧ୍ୟ ଯୁଦ୍ଧରେ ଯୋଗଦେଲା । ଗୋଟାଏ ଲୋକ, ସେଥିରେ ପୁଣି ବିଦେଶୀ ଏବଂ ଗୋଟାଏ ଘୃଣିତ ବ୍ୟବସ୍ଥାର ପ୍ରତିନିଧି ଚାଳିଶି କୋଟି ଲୋକଙ୍କୁ, ପଦେ

ସୁଦ୍ଧା ସେମାନଙ୍କୁ ନପଚାରି, ଯୁଦ୍ଧ ଭିତରେ ଭରିଡ଼ କରି ଦେଇପାରିଲେ । ଚାଳିଶି କୋଟି ଲୋକଙ୍କର ଭାଗ୍ୟର ନିଷ୍ପତ୍ତି ଏପରି ଭାବରେ ଯେଉଁ ବ୍ୟବସ୍ଥାରେ ହୋଇପାରେ, ସେଥିରେ ମୌଳିକ ଭାବରେ ନିଶ୍ଚୟ କିଛି ତ୍ରୁଟି, କିଛି ଅନ୍ୟାୟ ଅଛି । ଡୋମିନିଅନ୍‌ଗୁଡ଼ିକରେ ଅର୍ଥାତ୍ ବ୍ରିଟିଶ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ଉପନିବେଶ ବା ସ୍ୱଶାସିତ ଦେଶମାନଙ୍କରେ ଲୋକପ୍ରତିନିଧି-ମାନେ ନାନା ଦିଗରୁ ବିଚାରି, ବିତର୍କ କରି ଶେଷରେ ନିଷ୍ପତ୍ତି ଗ୍ରହଣ କରିଥିଲେ । ଭାରତର ବ୍ୟବସ୍ଥା ଥିଲା ସ୍ୱତନ୍ତ୍ର । ଏ ଆଘାତ ଲାଗିଲା ଆମର ପ୍ରାଣରେ ।

## ୩. ଯୁଦ୍ଧର ପ୍ରତିକ୍ରିୟା

ୟୁରୋପରେ ଯୁଦ୍ଧ ଆରମ୍ଭ ହେବା ସମୟରେ ମୁଁ ଥିଲି ଚୁଙ୍ଗ୍‌କିଂରେ । ଅବିଳମ୍ବେ ଦେଶକୁ ଫେରିବା ପାଇଁ କଂଗ୍ରେସ ସଭାପତି ମୋ ନିକଟକୁ ତାରବାର୍ତ୍ତା ପଠାଇଲେ, ଆଉ ଫେରିବା ପାଇଁ ମତେ ବି ତର ସହି ନଥିଲା । ମୁଁ ପହଞ୍ଚିଲାବେଳକୁ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ଚାଲିଥିଲା ଏବଂ ଏହି ବୈଠକକୁ ଜିନ୍ନା ନିମନ୍ତ୍ରିତ ହୋଇଥିଲେ ସୁଦ୍ଧା ଯୋଗଦେବା ପାଇଁ ସେ ତାଙ୍କର ଅସାମର୍ଥ୍ୟ ପ୍ରକାଶ କରିଥିଲେ । ଭାଇସ୍‌ରାୟ ଭାରତକୁ ଆନୁଷ୍ଠାନିକ ଭାବରେ ଯୁଦ୍ଧରେ ଯୋଗଦିଆଇଥିଲେ କେବଳ ନୁହେଁ, ଦେଶରେ ଗୁଡ଼ାଏ ଅଧ୍ୟାଦେଶ ବି ଜାରି କରିସାରିଥିଲେ । ବ୍ରିଟିଶ ପାର୍ଲିମେଣ୍ଟରେ ମଧ୍ୟ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଏମେଣ୍ଡମେଣ୍ଟ ଏକ୍ଟ ଗୃହୀତ ହୋଇ ସାରିଥିଲା । ଏହି ସବୁ ଆଇନ୍‌କାନୁନ୍ ଦ୍ୱାରା ପ୍ରାଦେଶିକ ସରକାରମାନଙ୍କର ଅଧିକାର ଓ କାର୍ଯ୍ୟକ୍ଷେତ୍ର ସୀମିତ କରି ଦିଆଯାଇଥିଲା ଏବଂ ଏ ବ୍ୟବସ୍ଥାକୁ ସେମାନେ ସୁଖ ପାଇ ନଥିଲେ । ବିଶେଷତଃ ଲୋକପ୍ରତିନିଧିମାନଙ୍କ ସଙ୍ଗେ ପରାମର୍ଶ କରିବା ପାଇଁ କୌଣସି ଉଦ୍ୟମ କରାଯାଇ ନଥିବାରୁ ସେମାନଙ୍କ ମନରେ ଏକ-ପ୍ରକାର ପ୍ରଚ୍ଛନ୍ନ କ୍ରୋଧ ବି ରହିଥିଲା । ପ୍ରକୃତପକ୍ଷେ, ସେମାନଙ୍କର ବହୁ ପୋଷିତ ଆଶା ଓ ଆକାଂକ୍ଷାକୁ ସମ୍ପୂର୍ଣ୍ଣ ଭାବରେ ଅବଜ୍ଞା କରାଯାଇଥିଲା ।

ଖ୍ରୀ: ୧୯୩୯ ସେପ୍‌ଟେମ୍ବର ୧୪ ତାରିଖରେ ଦୀର୍ଘ ବିଚାରାଲୋଚନା ପରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଯୁଦ୍ଧ ସଙ୍କଟ ଉପରେ ଏକ ଦୀର୍ଘ ବିବୃତ୍ତି ପ୍ରକାଶ କଲେ । ଭାଇସ୍‌ରାୟ ଯେଉଁସବୁ ପଦକ୍ଷେପ ନେଇଥିଲେ, ଆଉ ଯେଉଁସବୁ ନୂତନ ଆଇନ୍‌କାନୁନ୍ ପ୍ରଚଳିତ କରିଥିଲେ ସେ ସବୁର ଉଲ୍ଲେଖ କରି ବିବୃତିରେ କୁହାଗଲା ଯେ 'କାର୍ଯ୍ୟକାରୀ କମିଟି ଏହି ସବୁ ଘଟଣାରେ ଗଭୀରତମ ଉଦ୍‌ବିଗ୍ନତା ପ୍ରକାଶ କରୁଛନ୍ତି ।' ବିବୃତିରେ ଫାଶିଷ୍ଟବାଦ ଓ ନାଜିବାଦ ବିଶେଷତଃ ପୋଲାଣ୍ଡ ଜର୍ମାନୀର ଉପରେ ନାଜି ସରକାରଙ୍କ 'ଅଧୁନାତନ ଆକ୍ରମଣ'ର ତୀବ୍ର ନିନ୍ଦାବାଦ କରି ସେହି ଆକ୍ରମଣକୁ ପ୍ରତିରୋଧ କରୁଥିବା ଦେଶପ୍ରେମୀଙ୍କ ପ୍ରତି ସହାନୁଭୂତି ଓ ସମବେଦନା ଜ୍ଞାପନ କରାଗଲା ।

କଂଗ୍ରେସ ପକ୍ଷରୁ ସହଯୋଗ ନିବେଦନ କଲାବେଳେ ଏକଥା ବି କୁହାଗଲା ଯେ 'ଉପରୁ କୌଣସି ନିଷ୍ପତ୍ତି ଲଦିଦେଲେ କଂଗ୍ରେସ ନିଶ୍ଚୟ ତା'ର ବିରୋଧ କରିବ । କୌଣସି ମହତ୍ ଉଦ୍ଦେଶ୍ୟ ନିମନ୍ତେ ସହଯୋଗ ଯଦି ବାଞ୍ଛା କରାଯାଏ, ତାହା ଜୋର୍ ଜବରଦସ୍ତି ଦ୍ୱାରା କମ୍ଭା

ଏକତରଫା ନିଷ୍ପତ୍ତିଦ୍ୱାରା ଲାଭ କରାଯାଇପାରେନା ଏବଂ କାର୍ଯ୍ୟକାରୀ କମିଟି ଏ କଥା ମାନିବାକୁ ପ୍ରସ୍ତୁତ ନୁହନ୍ତି ଯେ କୌଣସି ବିଦେଶୀ ପ୍ରଭୁତ୍ୱଦ୍ୱାରା ଜାରିହେବା ଆଦେଶ ଭାରତ ଲୋକେ ପାଳନ କରିବେ । ଗୋଟାଏ ଆଦର୍ଶ ଯାହାକୁ ଉଭୟ ପକ୍ଷ ମହାନ୍ ବିବେଚନା କରନ୍ତି, ସେଥି ନିମନ୍ତେ ସହଯୋଗ ପାରସ୍ପରିକ ସମ୍ମତିଦ୍ୱାରା ଓ ସମଦଶାପନ୍ନ ଭାବରେ କେବଳ ସମ୍ଭବ । ଭାରତର ଲୋକେ ଦେଶର ସ୍ୱାଧୀନତା ପାଇଁ ଓ ଗୋଟାଏ ମୁକ୍ତ ଗାଣତାନ୍ତ୍ରିକ ବ୍ୟବସ୍ଥାର ପ୍ରତିଷ୍ଠା ପାଇଁ ଅଦୂର ଅତୀତରେ ବହୁବାର ବିପଦ ବରଣ କରିଚନ୍ତି ଓ ହସି ହସି ବହୁ ତ୍ୟାଗ ସ୍ୱୀକାର କରିଚନ୍ତି । ସେମାନଙ୍କର ସମସ୍ତ ସହାନୁଭୂତି ରହିଚି ମୁକ୍ତି ଓ ଗଣତନ୍ତ୍ର ପକ୍ଷରେ; କିନ୍ତୁ ଗାଣତାନ୍ତ୍ରିକ ସ୍ୱାଧୀନତା ପାଇଁ ବୋଲି କଥିତ ଏହି ଯୁଦ୍ଧରେ ଭାରତ ନିଜକୁ ସାମିଲ କରି ନପାରେ ଯେବେ ସେ ନିଜେ ସ୍ୱାଧୀନତାରୁ ବଞ୍ଚିତ ହୋଇଚି ଏବଂ ଯାହା କିଛି ସୀମିତ ସ୍ୱାଧୀନତା ସେ ଅର୍ଜନ କରିଥିଲା ତାହା ମଧ୍ୟ ତା' ହାତରୁ ଛଡ଼ାଇ ନିଆଯାଇଚି ।

'କାର୍ଯ୍ୟକାରୀ କମିଟି ଅବଗତ ଅଛନ୍ତି ଯେ ଇଂଲଣ୍ଡ ଓ ଫ୍ରାନ୍ସର ସରକାରମାନେ ଗଣତନ୍ତ୍ର ଓ ମୁକ୍ତି ନିମନ୍ତେ ଏବଂ ଆକ୍ରମଣର ଅବସାନ ଘଟାଇବା ନିମନ୍ତେ ଯୁଦ୍ଧ କରୁଚନ୍ତି ବୋଲି ଘୋଷଣା କରିଚନ୍ତି; କିନ୍ତୁ କଥିତ ବାକ୍ୟ, ଘୋଷିତ ଆଦର୍ଶ ଏବଂ ପ୍ରକୃତ ଉଦ୍ଦେଶ୍ୟ ଓ ଲକ୍ଷ୍ୟ ଭିତରେ ବ୍ୟବଧାନ ଯେ ବରାବର ରହିଆସିଚି ତା'ର ବହୁ ଦୃଷ୍ଟାନ୍ତ ଅଦୂର ଅତୀତର ଇତିହାସରେ ଭରିରହିଚି ।' ଏ ସମ୍ପର୍କରେ ପ୍ରଥମ ବିଶ୍ୱଯୁଦ୍ଧ କାଳରେ କେତେକ ଘଟଣା ଉଲ୍ଲେଖ କରି ପୁଣି କୁହାଗଲା : ଆପାତଦୃଷ୍ଟିରେ ବ୍ୟଗ୍ର, କୌଣସି ମତ-ବିଶ୍ୱାସର ଘୋଷଣାକୁ ସଙ୍ଗେ ସଙ୍ଗେ କପରି ନୀଚ ଭାବରେ ତ୍ୟାଗ କରାଯାଇପାରେ, ପରବର୍ତ୍ତୀ ସମୟର ଇତିହାସ ତାହା ପୁନର୍ବାର ପ୍ରଦର୍ଶିତ କରିଚି । ··· ପୁନର୍ବାର ଜୋର ଦେଇ କୁହାଯାଉଚି ଯେ ଗଣତନ୍ତ୍ର ବିପନ୍ନ ଆଉ ତା'ର ପ୍ରତିରକ୍ଷା କରିବାକୁ ହିଁ ପଡ଼ିବ । ଏହି ବିବୃତି ସଙ୍ଗେ କାର୍ଯ୍ୟକାରୀ କମିଟି ସମ୍ପୂର୍ଣ୍ଣ ଏକମତ । କମିଟି ବିଶ୍ୱାସ କରନ୍ତି ଯେ ପଶ୍ଚିମ-ଜଗତର ଲୋକେ ଏହି ଆଦର୍ଶ ଓ ଲକ୍ଷ୍ୟଦ୍ୱାରା ଅନୁପ୍ରାଣିତ ଏବଂ ଏଥିଲାଗି ସବୁପ୍ରକାର ତ୍ୟାଗ ନିମନ୍ତେ ପ୍ରସ୍ତୁତ ଅଛନ୍ତି; କିନ୍ତୁ ଥରକୁଥର ଲୋକଙ୍କର ଏବଂ ସଂଗ୍ରାମରେ ଯେଉଁମାନେ ନିଜକୁ ଉତ୍ସର୍ଗ କରିଦେଲେ, ସେମାନଙ୍କର ଆଦର୍ଶ ଓ ଭାବନା ଉପେକ୍ଷିତ ହୋଇଚି ଏବଂ ସେମାନଙ୍କ ପ୍ରତି ବିଶ୍ୱସ୍ତତା କରାଯାଇନି ।

'ଏହି ଯୁଦ୍ଧର ଉଦ୍ଦେଶ୍ୟ ଯଦି ସ୍ଥିତାବସ୍ଥା, ସାମ୍ରାଜ୍ୟବାଦୀ ଅଧିକାରଭୋଗ, ଉପନିବେଶ ଓ ସ୍ୱାଧିକାର ରକ୍ଷାକରିବା ତାହାହେଲେ ଭାରତର ସେଥିରେ କରିବାର କିଛି ନାହିଁ; କିନ୍ତୁ ଏହା ଯଦି ଗଣତନ୍ତ୍ରର ସୁରକ୍ଷା ପାଇଁ ଏବଂ ଗଣତନ୍ତ୍ର ଉପରେ ପ୍ରତିଷ୍ଠିତ ଏକ ବିଶ୍ୱ-ବ୍ୟବସ୍ଥା ପାଇଁ, ତାହାହେଲେ ଭାରତ ସେଥିପ୍ରତି ଅତିମାତ୍ରାରେ ଆଗ୍ରହୀ । କାର୍ଯ୍ୟକାରୀ କମିଟିର ହୃଦ୍‌ବୋଧ ହୋଇଚି ଯେ ବ୍ରିଟିଶ ଗଣତନ୍ତ୍ର କିମ୍ବା ବିଶ୍ୱ ଗଣତନ୍ତ୍ର ସଙ୍ଗେ ଭାରତୀୟ ଗଣତନ୍ତ୍ରର ସ୍ୱାର୍ଥର ସଂଘର୍ଷ ଘଟିବାର ଅବକାଶ ନାହିଁ; କିନ୍ତୁ ସାମ୍ରାଜ୍ୟବାଦ ଓ ଫାସିଷ୍ଟବାଦ ଏବଂ ଭାରତ ତଥା ଅନ୍ୟ ଯେ କେଉଁ ସ୍ଥାନର ଗଣତନ୍ତ୍ର ଭିତରେ ଏକ ଅନୁଚ୍ଛେଦ୍ୟ ସଂଘର୍ଷ ନିହିତ

ଅଛି । ଇଂଲଣ୍ଡ ଯଦି ଗଣତନ୍ତ୍ରର ପୃଷ୍ଠପୋଷକତା ଓ ସମ୍ପ୍ରସାରଣ ନିମନ୍ତେ ଲଢ଼ାଇ କରୁଥାଏ, ତାହାହେଲେ ଆବଶ୍ୟକୀୟ ଭାବରେ ପ୍ରଥମେ ତା'ର ଅଧିକୃତ ଇଲାକାରୁ ତାକୁ ସାମ୍ରାଜ୍ୟବାଦ ଲୋପ କରିବାକୁ ପଡ଼ିବ । ··· ଗୋଟିଏ ମୁକ୍ତ ଗଣତାନ୍ତ୍ରିକ ଭାରତ ଆକ୍ରମଣ ବିରୁଦ୍ଧରେ ପାରସ୍ପରିକ ପ୍ରତିରକ୍ଷା ତଥା ଅର୍ଥନୈତିକ ସହଯୋଗ ନିମନ୍ତେ ଅନ୍ୟାନ୍ୟ ସ୍ୱାଧୀନ ଦେଶମାନଙ୍କ ସଙ୍ଗେ ଆନନ୍ଦରେ ନିଜକୁ ସମ୍ମିଳିତ କରିବ । ମାନବଜାତିର ସର୍ବବିଧ ପ୍ରଗତି ନିମନ୍ତେ ବିଶ୍ୱର ଜ୍ଞାନ ଓ ସମ୍ବଳ ବିନିଯୋଗ କରି, ମୁକ୍ତ ଓ ଗଣତନ୍ତ୍ର ଭିତ୍ତିରେ ଏକ ପ୍ରକୃତ ବିଶ୍ୱ ବ୍ୟବସ୍ଥାର ପ୍ରତିଷ୍ଠା ନିମନ୍ତେ ଭାରତ ନିଶ୍ଚୟ କାର୍ଯ୍ୟ କରିବ ।'

କଂଗ୍ରେସ କାର୍ଯ୍ୟକାରୀ କମିଟି ଜାତୀୟତାବାଦୀ ହୋଇଥିଲେ ସୁଦ୍ଧା ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଧରି ଏହି ଯୁଦ୍ଧ ସଶସ୍ତ୍ରବାହିନୀ ଭିତରେ ସଙ୍ଘର୍ଷ କେବଳ ନୁହେଁ; ବରଂ ତା'ଠାରୁ ଆହୁରି କିଛି ଅଧିକ ବୋଲି ଉପଲବ୍ଧି କଲା : 'ଯେଉଁ ସଙ୍କଟ ଆଜି ୟୁରୋପକୁ ବିପଦଗ୍ରସ୍ତ କରିଛି, ତାହା ୟୁରୋପର କେବଳ ନୁହେଁ, ତାହା ସମଗ୍ର ମାନବଜାତିର ସଙ୍କଟ ଏବଂ ଅନ୍ୟାନ୍ୟ ସଙ୍କଟ ଅବା ଯୁଦ୍ଧଭଳି ଆଜିକାର ବିଶ୍ୱ ବ୍ୟବସ୍ଥାର ଗଠଣକୁ ଅକ୍ଷତ ଛାଡ଼ି ଅତିବାହିତ ହେବନାହିଁ । ଭଲ ପାଇଁ ହେଉ କି ମନ୍ଦ ପାଇଁ ହେଉ ରାଜନୀତି, ସମାଜନୀତି ଓ ଅର୍ଥନୀତି—ସବୁ ଦିଗରୁ ଆମର ବିଶ୍ୱକୁ ପୁନଃ ସଙ୍ଗଠିତ କରିବାର ସମ୍ଭାବନା ରହିଛି । ଏହି ସଙ୍କଟ ବିଗତ ବିଶ୍ୱଯୁଦ୍ଧ ପରବର୍ତ୍ତୀ କାଳରୁ ବିପଜ୍ଜନକ ଭାବରେ ବଢ଼ିଉଠିଥିଲା । ସାମାଜିକ ଓ ରାଜନୈତିକ ବିବାଦ ତଥା ବିରୋଧାଭାସର ଅନିବାର୍ଯ୍ୟ ପରିଣତି ଏବଂ ସେହିସବୁ ବିରୋଧାଭାସ ଦୂର ହୋଇ ଗୋଟିଏ ନୂତନ ଭାରସାମ୍ୟ ପ୍ରତିଷ୍ଠିତ ନହେବା ପର୍ଯ୍ୟନ୍ତ ଏହାର ଚୂଡ଼ାନ୍ତ ନିଷ୍ପତ୍ତି ଘଟିବାର ଅବକାଶ ନାହିଁ । ଗୋଟିଏ ଦେଶ ଉପରେ ଅନ୍ୟ ଏକ ଦେଶ ଆଧିପତ୍ୟ କରିବା ଏବଂ ଗୋଟିଏ ଦେଶକୁ ଅନ୍ୟ ଏକ ଦେଶ ଶୋଷଣ କରିବା ବନ୍ଦ ହେଲେ କେବଳ ଏବଂ ସମସ୍ତଙ୍କର କଲ୍ୟାଣ ନିମନ୍ତେ ଅଧିକତର ନ୍ୟାୟସଙ୍ଗତ ଭିତ୍ତିରେ ଅର୍ଥନୈତିକ ସମ୍ପର୍କର ପୁନଃ ସଙ୍ଗଠନଦ୍ୱାରା କେବଳ ସେହି ଭାରସାମ୍ୟ ରକ୍ଷାକରିବା ସମ୍ଭବ । ଏହି ସମସ୍ୟାର ମୂଳ ହେଲା ଭାରତ । କାରଣ ଭାରତ ଆଧୁନିକ ସାମ୍ରାଜ୍ୟବାଦର ଜ୍ୱଳନ୍ତ ଦୃଷ୍ଟାନ୍ତ ଏବଂ ଏହି ସମସ୍ୟାକୁ ଅବଜ୍ଞା କରି ବିଶ୍ୱକୁ ନୂତନ ରୂପରେ ନିର୍ମାଣ କରିବା ସଫଳ ହୋଇନପାରେ । ତା'ର ବିଶାଳ ସମ୍ବଳ ଯୋଗୁ ନୂତନ ବିଶ୍ୱ ସଙ୍ଗଠନର ଯେ କେଉଁ ଯୋଜନାରେ ଭାରତ ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ ନକରି ରହିପାରିବ ନାହିଁ । ଏକଥା ସେ କରିପାରେ ଗୋଟିଏ ସ୍ୱାଧୀନ ଜାତି ଭାବରେ କେବଳ; ଆଉ ଏହି ମହାନ୍ ଲକ୍ଷ୍ୟ ନିମନ୍ତେ କାର୍ଯ୍ୟ କରିବା ପାଇଁ ଯାହାର ସମସ୍ତ ଶକ୍ତିକୁ ମୁକ୍ତ କରି ଦିଆଯାଇଛି । ଆଜିର କାଳରେ ମୁକ୍ତ ଅବଭାଜ୍ୟ ଏବଂ ପୃଥିବୀର ଯେ କେଉଁ ଅଂଶରେ ସାମ୍ରାଜ୍ୟବାଦୀ ଆଧିପତ୍ୟ ବଜାୟ ରଖିବାର ଉଦ୍ୟମ ହେଲେ ତାହା ଅନିବାର୍ଯ୍ୟ ଭାବରେ ନୂତନ ବିପର୍ଯ୍ୟୟ ଭିତରକୁ ବାଟ କଢ଼ାଇନେବ ।.

ଦେଶୀୟ ରାଜନ୍ୟବର୍ଗ ୟୁରୋପରେ ଗଣତନ୍ତ୍ର ନିମନ୍ତେ ସମର୍ଥନ ନିବେଦନ କରିବା ବିଷୟ ଉଲ୍ଲେଖ କରିବାକୁ ଯାଇ କାର୍ଯ୍ୟକାରୀ କମିଟି ସୂଚିତ କଲେ ଯେ ସେମାନଙ୍କର ନିଜ

ନିଜ ରାଜ୍ୟରେ ଯେଉଁଠି ଅବମିଶ୍ର ଏକଛତ୍ର ଶାସନ ଚାଲିଛି, ଗଣତନ୍ତ୍ର ଶାସନ ପ୍ରବର୍ତ୍ତନ କଲେ ସେମାନେ ଗୋଟାଏ ଆଦର୍ଶର ଅନୁଗାମୀ ଭାବରେ ପରିଚୟ ଦେଇପାରନ୍ତେ ।

ଯୁଦ୍ଧକୁ ସବୁମନ୍ତେ ସାହାଯ୍ୟ କରିବା ପାଇଁ ପୁନର୍ବାର ସେମାନଙ୍କର ଆତୁରତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ଅତୀତରେ ଓ ବର୍ତ୍ତମାନର ବ୍ରିଟିଶ ନୀତିର ଗଭୀର ପ୍ରତି ଆଶଙ୍କା ବ୍ୟକ୍ତ କରି କାର୍ଯ୍ୟକାରୀ କମିଟି କହିଥିଲେ ଯେ 'ଗଣତନ୍ତ୍ର କିମ୍ବା ଆତ୍ମନିୟନ୍ତ୍ରଣର ଉଦ୍ଦେଶ୍ୟ ଆଗେଇ ନେବା ପାଇଁ କୌଣସି ଉଦ୍ୟମ କିମ୍ବା ବ୍ରିଟିଶ ସରକାରଙ୍କର ବର୍ତ୍ତମାନ ଯୁଦ୍ଧ ସମସ୍ୟର ଘୋଷଣାମାନ କାର୍ଯ୍ୟକାରୀ କରାଯାଉଛି କିମ୍ବା କରାଯିବ ବୋଲି କୌଣସି ପ୍ରମାଣ ଦେଖି-ବାକୁ ସେମାନେ ପାଉନାହାନ୍ତି ।' ବିବୃତ୍ତିରେ ଆହୁରି କୁହାଗଲା ଯେ 'ପରିସ୍ଥିତିର ଗାମ୍ଭୀର୍ଯ୍ୟ ଦୃଷ୍ଟିରୁ ଏବଂ ଗତ କେତେ ଦିନର ଘଟଣାର ଗତି ମଣିଷ ମନର ବିଚାର ଅପେକ୍ଷା ଅଧିକତର କ୍ଷିପ୍ର ହେଉଥିବାରୁ ଏହି ଅବସ୍ଥାରେ କୌଣସି ଚୂଡ଼ାନ୍ତ ନିଷ୍ପତ୍ତି ନେବା ପାଇଁ କମିଟି ଇଚ୍ଛା କରୁନାହାନ୍ତି । କାରଣ ଯେଉଁସବୁ ପ୍ରଶ୍ନ ଉପରେ ବର୍ତ୍ତମାନ ବାଜି ବସିଛି, ଯେଉଁସବୁ ଲକ୍ଷ୍ୟ ଉପରେ ଦୃଷ୍ଟି ନିବେଶ କରାଯାଇଛି ଏବଂ ବର୍ତ୍ତମାନ ଓ ଭବିଷ୍ୟତ ଉଭୟ କାଳରେ ଭାରତର ସ୍ଥିତି କ'ଣ ସେ ବିଷୟରେ ପୂର୍ଣ୍ଣ ବିଶଦୀକରଣ ନିମନ୍ତେ କମିଟି ସମୟ ଚାହାନ୍ତି ।' ଅତଏବ 'ଗଣତନ୍ତ୍ର ଓ ସାମ୍ରାଜ୍ୟବାଦ ସମ୍ବନ୍ଧରେ ଏବଂ ପରିକଳ୍ପିତ ନୂତନ ବ୍ୟବସ୍ଥା ସମ୍ପର୍କରେ ବିଶେଷତଃ ଭାରତ ପକ୍ଷରେ ତାହା କିପରି ପ୍ରଯୁଜ୍ୟ ହେବ ଆଉ ବର୍ତ୍ତମାନ କିପରି କାର୍ଯ୍ୟକାରୀ କରାଯିବ ସେ ବିଷୟରେ ବ୍ରିଟିଶ ସରକାର ତାଙ୍କର ଯୁଦ୍ଧର ଲକ୍ଷ୍ୟ ସ୍ପଷ୍ଟ ଭାବରେ ଘୋଷଣା କରନ୍ତୁ ବୋଲି' କମିଟି ଆହ୍ୱାନ କଲେ । 'ଯୁଦ୍ଧର ଲକ୍ଷ୍ୟ ଭିତରେ ସାମ୍ରାଜ୍ୟବାଦର ବିଲୋପସାଧନ ଏବଂ ଜନସାଧାରଣଙ୍କ ଇଚ୍ଛା ପ୍ରକାରେ ପରିଚାଳିତ ଗୋଟାଏ ସ୍ୱାଧୀନ ଦେଶ ଭାବରେ ଭାରତକୁ ଗ୍ରହଣ କରିବା ବିଷୟ ଅଛି କି ?··· ଯେ କୌଣସି ଘୋଷଣାର ପ୍ରକୃତ ପରୀକ୍ଷା ହେଉଛି ବର୍ତ୍ତମାନର କ୍ଷେତ୍ରରେ ତାର ପ୍ରୟୋଗ; କାରଣ ବର୍ତ୍ତମାନ ହିଁ ଆଜିର କର୍ମ ପରିଚାଳିତ କରେ ଓ ଭବିଷ୍ୟତକୁ ରୂପ ଦିଏ··· ସାମ୍ରାଜ୍ୟବାଦୀ ମନୋଭାବ ଯେଉଁ, ଏହି ସଙ୍ଗଠନ ସ୍ଥିତି ବଜାୟ ରଖିବା ଉଦ୍ଦେଶ୍ୟରେ ଯାହା ଯୁଦ୍ଧ ଓ ମାନବିକ ଅବନତିର କାରଣ, ଏହି ଘୋର ଯୁଦ୍ଧ ଯଦି ଚଳାଇନିଆଯାଏ ତାହାହେଲେ ତାହାଠାରୁ ବଳି ଦୁର୍ଭାଗ୍ୟ ଆଉ ନାହିଁ ।'

ବହୁ ଉଦ୍‌ବିଗ୍ନ ବିଚାର ଆଲୋଚନା ପରେ ପ୍ରକାଶିତ ଏହି ବିବୃତି ଭାରତ ଓ ଇଂଲଣ୍ଡ ଭିତରେ ଯେତେ ସବୁ ବିଭେଦର ପ୍ରାଚୀର ଗଢ଼ି ଉଠି ଉଭୟ ଦେଶର ସମ୍ପର୍କକୁ ଦୀର୍ଘ ଦେଢ଼ଶହ ବର୍ଷ ଧରି ବିଷାକ୍ତ କରି ତୋଳିଥିଲା, ତାହା ଅତିକ୍ରମ କରିବା ଦିଗରେ ଏବଂ ଆମ ଜନସାଧାରଣଙ୍କ ଗଭୀର ଆଗ୍ରହ ଓ ଉତ୍ସାହ ଯେଉଁ ଏହି ବିଶ୍ୱ-ସଂଗ୍ରାମରେ ଯୋଗଦେବାର ଆତୁରତା ଆଉ ସ୍ୱାଧୀନତା ନିମନ୍ତେ ଆମର ସୁତୀବ୍ର ଆକାଂକ୍ଷା ଭିତରେ ବୁଝାମଣା ନିମନ୍ତେ କିଛି ନା କିଛି ଗୋଟାଏ ବାଟକରିବା ଦିଗରେ ଥିଲା ଏକ ଉଦ୍ୟମ । ସ୍ୱାଧୀନତା ନିମନ୍ତେ ଭାରତର ଅଧିକାର ଦୃଢ଼ ଭାବରେ ଦାବି କରିବା କିଛି ନୂଆ କଥା ନୁହେଁ । ଏହା ଯୁଦ୍ଧ କିମ୍ବା ଆନ୍ତର୍ଜାତିକ ସଙ୍କଟରୁ ଜନ୍ମି ନଥିଲା । ବହୁ ଦିନରୁ ଆମର ସବୁକିଛି ଚିନ୍ତା ଓ କାର୍ଯ୍ୟକଳାପର

ଏହା ଥିଲା ମୂଳଭିତ୍ତି ଆଉ ଯାହାକୁ କେନ୍ଦ୍ର କରି ପୁରୁଷ ପରେ ପୁରୁଷ ଅତିବାହିତ ହୋଇଚି । ସ୍ପଷ୍ଟ ଭାବରେ ଭାରତର ସ୍ୱାଧୀନତା ଘୋଷଣା କରିବା ଦିଗରେ ସେପରି କୌଣସି ଅସୁବିଧା ନଥିଲା । ସ୍ୱାଧୀନତା ଘୋଷଣା କରିସାରି ଯୁଦ୍ଧର ଆବଶ୍ୟକତା ଆଖି ଆଗରେ ରଖି ପ୍ରଚଳିତ ଅବସ୍ଥା ସଙ୍ଗେ ତାକୁ ଖାପଖୁଆଇ ନେଇ ହୁଅନ୍ତା । ଭାରତର ସ୍ୱାଧୀନତା ସ୍ୱୀକାର କରିବା ପାଇଁ ଇଂଲଣ୍ଡର ଯଦି ସଦିଚ୍ଛା ଓ ସଂକଳ୍ପ ଥାନ୍ତା ତାହାହେଲେ ସେପରି ବଡ଼ କିଛି ପ୍ରତିବନ୍ଧକ ଆଉ ରହନ୍ତାନି । ଯାହା ବା ରହନ୍ତା ସଂପୃକ୍ତ ଦଳମାନଙ୍କ ସମ୍ମତି ସହକାରେ ଆପୋଷ ମୀମାଂସା କରି ହୁଅନ୍ତା । ପ୍ରତ୍ୟେକ ପ୍ରଦେଶରେ ପ୍ରାଦେଶିକ ସରକାରମାନେ ଦାୟିତ୍ୱରେ ଥିଲେ । ଯୁଦ୍ଧକାଳ ପାଇଁ ଏକ ଲୋକପ୍ରିୟ ଶାସନ ବ୍ୟବସ୍ଥା ଅନାୟାସରେ କେନ୍ଦ୍ରରେ ଗଢ଼ାଯାଇ ପାରନ୍ତା । ସେହି ବ୍ୟବସ୍ଥା ଦକ୍ଷ ଭାବରେ ତଥା ଜନସାଧାରଣଙ୍କ ଭିତରେ ଯୁଦ୍ଧ ଉଦ୍ୟମ ସଙ୍ଗଠିତ କରନ୍ତା, ସଶସ୍ତ୍ରବାହିନୀଙ୍କ ସଙ୍ଗେ ପୂର୍ଣ୍ଣପ୍ରାଣରେ ସହଯୋଗ କରନ୍ତା ଏବଂ ଗୋଟାଏ ଦିଗରେ ଜନସାଧାରଣ ଓ ପ୍ରାଦେଶିକ ସରକାର ଏବଂ ଅନ୍ୟ ଦିଗରେ ବ୍ରିଟିଶ ସରକାର—ଉଭୟ ମଧ୍ୟରେ ଯୋଗସୂତ୍ର ହୋଇ ରହନ୍ତା । ଅନ୍ୟ ଯେତେ ସାମ୍ବିଧାନିକ ସମସ୍ୟାର ସମାଧାନ ଶୀଘ୍ର ସମ୍ପାଦନ କରିବା ଦିଗରେ ପ୍ରୟାସୀ ହେବା ବାଞ୍ଛନୀୟ ହେଲେ ସୁଦ୍ଧା ଯୁଦ୍ଧ ଶେଷ ହେବା ପର୍ଯ୍ୟନ୍ତ ତାହା ଘୁଞ୍ଚାଇଦେଇ ହୁଅନ୍ତା । ଯୁଦ୍ଧ ପରେ ନିର୍ବାଚିତ ଲୋକପ୍ରତିନିଧିମାନେ ଗୋଟାଏ ସ୍ଥାୟୀ ସମ୍ବିଧାନ ପ୍ରଣୟନ କରନ୍ତେ ଏବଂ ଆମର ପାରସ୍ପରିକ ସ୍ୱାର୍ଥ ବିଷୟ ନେଇ ଇଂଲଣ୍ଡ ସଙ୍ଗେ ଚୁକ୍ତିରେ ଆବଦ୍ଧ ହୁଅନ୍ତେ ।

ଏହି ଯୁଦ୍ଧ ସଙ୍ଗେ ଜଡ଼ିତ ନାନା ଆନ୍ତର୍ଜାତିକ ପ୍ରଶ୍ନ ବିଷୟରେ ଆମ ଦେଶର ଅଧିକାଂଶ ଲୋକେ ଧ୍ୟାନ ଦେଉନଥିଲାବେଳେ ଏବଂ ଅଧୁନାତନ ବ୍ରିଟିଶ୍ ନୀତି ପ୍ରତି ଗଭୀର ବିରକ୍ତି ପ୍ରକାଶ କରୁଥିଲା ବେଳେ ଇଂଲଣ୍ଡକୁ ଏହି ପ୍ରସ୍ତାବ ଦେବା କଂଗ୍ରେସ କାର୍ଯ୍ୟକାରୀ କମିଟି ପକ୍ଷରେ କିଛି ସହଜ ବ୍ୟାପାର ନଥିଲା । ଆମେ ଜାଣିଥିଲୁ ଯେ ଉଭୟ ପକ୍ଷର ଦୀର୍ଘକାଳୀନ ଅବିଶ୍ୱାସ ଓ ସନ୍ଦେହ ପଦେ କିଛି ଚମତ୍କାର କଥାରେ ଉଭାଇଯିବାର ନୁହେଁ । ତଥାପି ଆମର ଆଶା ଥିଲା ଯେ ପରିସ୍ଥିତିର ଚାପ ଇଂଲଣ୍ଡର ନେତାମାନଙ୍କୁ, ସେମାନଙ୍କର ସାମ୍ରାଜ୍ୟବାଦୀ ଘେର ଭିତରୁ ପଦାକୁ ବାହାରିଆସି, ଟିକିଏ ଦୂରଦୃଷ୍ଟି ରଖି ଆମର ପ୍ରସ୍ତାବ ଗ୍ରହଣ କରିବା ପାଇଁ ପ୍ରବର୍ତ୍ତାଇବ ଏବଂ ଏପରି ଭାବରେ ଇଂଲଣ୍ଡ ଓ ଭାରତର ଦୀର୍ଘ ଦିନର ବିବାଦ ମେଣ୍ଟାଇବା ସଙ୍ଗେ ସଙ୍ଗେ ଯୁଦ୍ଧ ନିମନ୍ତେ ଭାରତର ଶକ୍ତି ଓ ସମ୍ବଳର ପୂର୍ଣ୍ଣ ବିନିଯୋଗ ସମ୍ଭବ କରିବ ।

କିନ୍ତୁ ଘଟିଲା ତା'ର ବିପରୀତ । ଆମର ସବୁ କିଛି ଆଗ୍ରହ ଓ ଆକାଙ୍କ୍ଷାର ଏକମାତ୍ର ଉତ୍ତର ହେଲା—ନାହିଁ । ଆମେ ଭଲ ଭାବରେ ବୁଝିପାରିଲୁ ଯେ ଇଂଲଣ୍ଡ ଆମକୁ ବନ୍ଧୁ ଓ ସହକର୍ମୀ ଭାବରେ ଚାହେଁନି; ଚାହେଁ ଗୋଟାଏ ଦାସ ଜାତି ଭାବରେ ତା'ର ଆଦେଶ ପାଳନ କରିବା ପାଇଁ । ଆମେ ଆମ ପ୍ରସ୍ତାବରେ ଯେଉଁ 'ସହଯୋଗ' ଶବ୍ଦ ବ୍ୟବହାର କରିଥିଲୁ, ତା'ର ଅର୍ଥ ଆମେ ଯେପରି ଭାବରେ ବୁଝିଥିଲୁ ଇଂଲଣ୍ଡ ସେପରି ନବୁଝି ଅର୍ଥ କଲା ଅନ୍ୟ

ଭାବରେ । ଆମ ପାଇଁ ସହଯୋଗର ଅର୍ଥ ଥିଲା ବନ୍ଧୁ ବନ୍ଧୁ ଭିତରେ ଓ 'ସମାନେ ସମାନେ ସହଯୋଗ । ସେମାନଙ୍କ ପାଇଁ ସହଯୋଗର ଅର୍ଥ ହେଲା, ସେମାନେ ଆଦେଶ କରିବେ ଆଉ ଦ୍ୱିରୁକ୍ତି ନକରି ସେ ଆଦେଶ ଆମେ ପାଳନ କରିବୁ । ଯାହାସବୁ ଆମର ଧ୍ୟେୟ ଥିଲା ଏବଂ ଯାହା ଲାଗି ଆମେ ମନେକରୁଥିଲୁ ଯେ ଆମ ଜୀବନର କିଛି ଅର୍ଥ ଅଛି; ତାହା ତ୍ୟାଗ ନକଲେ ଓ ଜନସାଧାରଣଙ୍କ ପ୍ରତି ବିଶ୍ୱାସଘାତକତା ନକଲେ ସେ ସ୍ଥିତିକୁ ସ୍ୱୀକାରକରିବା ଆମ ପକ୍ଷରେ ଅସମ୍ଭବ ଥିଲା । ଆମ ଭିତରୁ କେହି କେହି ଯଦି ବି ଏପରି କରିବାକୁ ରାଜି ହୋଇଥାନ୍ତି ଲୋକଙ୍କୁ ଆମେ ଆମ ସଙ୍ଗରେ ନେଇ ପାରିନଥାନ୍ତି । ଆମେ ସମ୍ପୂର୍ଣ୍ଣ ଭାବରେ ପଥହରା ହୋଇ ପଡ଼ନ୍ତୁ ଏବଂ ଜାତୀୟତାବାଦର ଜୀବନ୍ତ ପ୍ରବାହରୁ ବିଚ୍ଛିନ୍ନ ହେବା ସଙ୍ଗେ ସଙ୍ଗେ ଆମର ଈପ୍‌ସିତ ଆନ୍ତର୍ଜାତୀୟତା ସୁଦ୍ଧା ହରାଇ ବସନ୍ତ ।

ଆମ ପ୍ରାଦେଶିକ ସରକାରମାନେ ବଡ଼ ଅସୁବିଧାର ସମ୍ମୁଖୀନ ହେଲେ । ସେମାନଙ୍କ ଆଗରେ ଦୁଇଟି ମାତ୍ର ପନ୍ଥା ଥିଲା : ଗଭର୍ଣ୍ଣର ଓ ଭାଇସ୍‌ରାୟଙ୍କ ଅବ୍ୟାହତ ହସ୍ତକ୍ଷେପ ଏକେ ବରଦାସ୍ତ କରିବା କିମ୍ବା ସେମାନଙ୍କ ସଙ୍ଗେ ଝଗଡ଼ା କରିବା । ଶାସନ କ୍ଷେତ୍ରର ବଡ଼ ବଡ଼ ହାକିମମାନେ ସମ୍ପୂର୍ଣ୍ଣ ଭାବରେ ଗଭର୍ଣ୍ଣର ପକ୍ଷରେ ଥିଲେ ଏବଂ ବ୍ୟବସ୍ଥାପକ ସଭା ତଥା ମନ୍ତ୍ରୀମାନଙ୍କ, ପୂର୍ବାପେକ୍ଷା ଅଧିକ ଭାବରେ ଅନଧିକାର ପ୍ରବେଶକାରୀ ମଣୁଥିଲେ । ସେହି ପୁରାତନ ଝଗଡ଼ା ଯେଉଁଥିରେ ଏକ ପକ୍ଷରେ ଥିଲେ ସ୍ୱେଚ୍ଛାଚାରୀ ରାଜା କିମ୍ବା ତାଙ୍କର ପ୍ରତିନିଧି; ଅପର ପକ୍ଷରେ ପାର୍ଲାମେଣ୍ଟ, ତାର ପୁନରାବୃତ୍ତି ଘଟିଲା । ପ୍ରଭେଦ କେବଳ ଏତିକି, ଏ କ୍ଷେତ୍ରରେ ରାଜା ଓ ତାଙ୍କର ପ୍ରତିନିଧି ଥିଲେ ପରଦେଶୀ ଏବଂ ତାଙ୍କର ପ୍ରଭୁତ୍ୱ ତିଷ୍ଠିଥିଲା ସାମରିକ ବଳ ଉପରେ । ନିଷ୍ପତ୍ତି ହେଲା ଭାରତର ଆଠଟି ପ୍ରଦେଶରୁ (ବଙ୍ଗ, ପଞ୍ଜାବ ଓ ସିନ୍ଧୁ ଛଡ଼ା ଅନ୍ୟ ସବୁ ପ୍ରଦେଶରୁ) କଂଗ୍ରେସ ସରକାରମାନେ ପ୍ରତିବାଦ ସ୍ୱରୂପ ଇସ୍ତଫା ଦେବେ । ଆଉ କେତେକଙ୍କର ମତ ଥିଲା ଯେ ଇସ୍ତଫା ନଦେଇ ସେମାନେ ଦାୟିତ୍ୱରେ ରହନ୍ତୁ ଏବଂ ଗଭର୍ଣ୍ଣର ଦ୍ୱାରା ବରଖାସ୍ତ ହୁଅନ୍ତୁ । କଂଗ୍ରେସ ଆଉ ଭାରତ ସରକାରଙ୍କ ଭିତରେ ଯେଉଁ ବିବାଦ ରହିଥିଲା, ସେ ଦୃଷ୍ଟିରୁ କାହାର ସନ୍ଦେହ କରିବାର ନଥିଲା ଏବଂ ଦିନକୁ ଦିନ ତାହା ଆହୁରି ସ୍ପଷ୍ଟ ହୋଇ ଉଠୁଥିଲା ଯେ ଗଭର୍ଣ୍ଣର ଓ ମନ୍ତ୍ରିମଣ୍ଡଳ ଭିତରେ ଝଗଡ଼ା ଲାଗିବା ଅନିବାର୍ଯ୍ୟ ଏବଂ ମନ୍ତ୍ରୀମାନେ ଯଦି ଇସ୍ତଫା ନଦିଅନ୍ତି ଗଭର୍ଣ୍ଣର ସେମାନଙ୍କୁ ଅବଶ୍ୟ ବରଖାସ୍ତ କରିବେ । ସାମ୍ବିଧାନିକ ପନ୍ଥା ଅନୁସରଣ କରି ସେମାନେ ଇସ୍ତଫା ଦେବା ନିଷ୍ପତ୍ତି କଲେ ଏବଂ ସେମାନେ ଜାଣିଥିଲେ ଯେ କଂଗ୍ରେସ ଦଳ ସଂଖ୍ୟାଗରିଷ୍ଠ ହେବାରୁ ଅନ୍ୟ କୌଣସି ଦଳ ମନ୍ତ୍ରିମଣ୍ଡଳ ଗଢ଼ିପାରିବନାହିଁ ଏବଂ ପରିଣାମ ଏପରି ହେବ ଯେ ବ୍ୟବସ୍ଥାପକ ସଭା ଭାଙ୍ଗିବ ଓ ପୁଣି ନିର୍ବାଚନ ହେବ । ଗଭର୍ଣ୍ଣରମାନେ କିନ୍ତୁ ଆଉ ଥରେ ନିର୍ବାଚନ କରାଇବାପାଇଁ ଆଗ୍ରହିତ ନଥିଲେ; କାରଣ ସେମାନେ ଭଲଭାବରେ ଜାଣିଥିଲେ ଯେ ନିର୍ବାଚନରେ କଂଗ୍ରେସ ପୁନର୍ବାର ବିପୁଳ ସଂଖ୍ୟାଗରିଷ୍ଠତା ହାସଲ୍ କରିବ । ଅତଏବ ବ୍ୟବସ୍ଥାପକ ସଭାଗୁଡ଼ିକୁ ଭାଙ୍ଗିଦେବା ପରିବର୍ତ୍ତେ ତା'ର କାର୍ଯ୍ୟ ସ୍ଥଗିତ କରିଦିଆଗଲା ଏବଂ ବ୍ୟବସ୍ଥାପକ ସଭା ତଥା ମନ୍ତ୍ରିମଣ୍ଡଳର ସମସ୍ତ କ୍ଷମତା ନିଜ ହାତକୁ ସେମାନେ ଉଠାଇ

ନେଲେ । ପ୍ରଦେଶମାନଙ୍କରେ ଗଭର୍ଣ୍ଣରମାନେ ହୋଇଉଠିଲେ ନିରଙ୍କୁଶ ଶାସକ । ଆଇନ ତିଆରି କରିବା, ହୁକୁମ ଜାରି କରିବା ଓ ଯାହା ଇଚ୍ଛା ତାହା କରିବା ଜଣେ ଲୋକର ମରଜି ଉପରେ ନିର୍ଭର କଲା । କୌଣସି ନିର୍ବାଚିତ ପରିଷଦ କିମ୍ବା ଜନମତ ପ୍ରତି ଗଭର୍ଣ୍ଣରମାନଙ୍କର ଭ୍ରୂକ୍ଷେପ ନଥିଲା ।

ବ୍ରିଟିଶ ମୁଖପାତ୍ରମାନେ ବହୁଧା ଜୋର୍ ଦେଇ କହିଥାନ୍ତି ଯେ ପ୍ରାଦେଶିକ ସରକାର-ମାନଙ୍କୁ ଇସ୍ତଫା ଦେବାକୁ କହି କଂଗ୍ରେସ କାର୍ଯ୍ୟକାରୀ କମିଟି ହୁକୁମ ଜାରିଭଳି ବ୍ୟବହାର କରିଚନ୍ତି । ଏହା ଏକ ବିଚିତ୍ର ଅଭିଯୋଗ ଏବଂ ଏହା ପୁଣି ସେଇମାନେ କରୁଚନ୍ତି, ଯେଉଁମାନେ ଫାସିଷ୍ଟ ଓ ନାଜି ଦେଶମାନଙ୍କ ବାହାରେ ଅନ୍ୟ ଯେ କାହା ଅପେକ୍ଷା ଅଧିକ ସ୍ୱେଚ୍ଛାଚାରୀ ତଥା ପ୍ରଭୁତ୍ୱଜ୍ଞାପକ ରୀତିରେ କାର୍ଯ୍ୟକାରୀ ହୋଇଥା'ନ୍ତି । ବସ୍ତୁତଃ କଂଗ୍ରେସ ନୀତିର ପ୍ରକୃତ ଭିତ୍ତି ଯାହା ଉପରେ ନିର୍ଭର କରି ବ୍ୟବସ୍ଥାପକ ସଭାକୁ ପ୍ରତିନିଧି ନିର୍ବାଚିତ ହେଲେ ଏବଂ ଭାଇସ୍‌ରାୟଙ୍କ ପ୍ରତିଶ୍ରୁତି ଅନୁସାରେ ପ୍ରାଦେଶିକ ସରକାରମାନ ଗଠିତ ହେଲା, ତାହା ହେଉଚି ପ୍ରାଦେଶିକ କ୍ଷେତ୍ରରେ କାର୍ଯ୍ୟ କରିବାର ସ୍ୱାଧୀନତା; ଆଉ ଯେଉଁଥିରେ ଗଭର୍ଣ୍ଣର କିମ୍ବା ଭାଇସ୍‌ରାୟ ହସ୍ତକ୍ଷେପ କରିବେ ନାହିଁ; କିନ୍ତୁ ଏହି ହସ୍ତକ୍ଷେପ କରିବା ଥିଲା ଏକ ମାମୁଲି ବ୍ୟାପାର ଏବଂ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ (୧୯୩୫) ଭିତ୍ତିରେ ଦିଆ-ଯାଇଥିବା ସାମ୍ବିଧାନିକ ଅଧିକାର ସୁଦ୍ଧା ଆହୁରି ସଙ୍କୁଚିତ କରି ଦିଆଗଲା । ବ୍ରିଟିଶ ପାର୍ଲାମେଣ୍ଟର ଏକ ସଂଶୋଧିତ ଆଇନ୍ ବଳରେ ଯୁଦ୍ଧ ନାମରେ ପ୍ରଦେଶମାନଙ୍କର ଏହି ସାମ୍ବିଧାନିକ ଅଧିକାର ସମ୍ପୂର୍ଣ୍ଣ ଭାବରେ କ୍ଷୁଣ୍ଣ କରାଗଲା । ପ୍ରାଦେଶିକ ବ୍ୟାପାରରେ କେତେବେଳେ ଓ କେଉଁଠି ହସ୍ତକ୍ଷେପ କରାଯିବ, ତାହା ଭାରତ ସରକାରଙ୍କ ହାତରେ ଅର୍ଥାତ୍ ଭାଇସ୍‌ରାୟଙ୍କ ହାତରେ ନ୍ୟସ୍ତ ହେଲା ଏବଂ ପ୍ରାଦେଶିକ ସରକାରମାନଙ୍କ ଅଧିକାର ନିମନ୍ତେ କୌଣସି ରକ୍ଷାପ୍ରଦ ବ୍ୟବସ୍ଥା ଆଉ ରହିଲା ନାହିଁ । ଏକ ବିଚିତ୍ର ଅବସ୍ଥା ଭିତର ଦେଇ ସେମାନେ ଗତି କରିବାକୁ ଲାଗିଲେ । ଭାଇସ୍‌ରାୟ ତଥା ଗଭର୍ଣ୍ଣର ଜେନେରେଲ ତାଙ୍କର ମନୋନୀତ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ର ଅସୀମିତ ସହଯୋଗ ବଳରେ, ଯୁଦ୍ଧ ଆବଶ୍ୟକତାର ଆବରଣ ତଳେ, ବ୍ୟବସ୍ଥାପକ ସଭା ଓ ପ୍ରାଦେଶିକ ସରକାରଙ୍କର ପ୍ରତ୍ୟେକ ନିଷ୍ପତ୍ତି ବାତିଲ୍ କରି ଦେଇ ପାରିଲେ । ଏ ପ୍ରକାର ପରିସ୍ଥିତିରେ କୌଣସି ଲୋକପ୍ରତିନିଧି ସରକାର କାର୍ଯ୍ୟକାରୀ ହୋଇ ନପାରେ । ଏକେ ଗଭର୍ଣ୍ଣର ଓ ସିଭିଲ୍ ସର୍ଭିସ ହାକିମଙ୍କ ସଙ୍ଗେ କିମ୍ବା ଅନ୍ୟ ପକ୍ଷରେ ବ୍ୟବସ୍ଥାପକ ସଭା ଓ ଜନସାଧାରଣଙ୍କ ସଙ୍ଗେ ମନ୍ତ୍ରିମଣ୍ଡଳୀକୁ ଝଗଡ଼ା କରିବାକୁ ପଡ଼ନ୍ତା । କଂଗ୍ରେସ ସଂଖ୍ୟାଗରିଷ୍ଠ ପ୍ରତ୍ୟେକ ବ୍ୟବସ୍ଥାପକ ସଭାରେ, ଯୁଦ୍ଧ ଆରମ୍ଭ ହେବା ପରେ, କଂଗ୍ରେସର ଦାବୀ ବିଧିବଦ୍ଧ ଭାବରେ ଗୃହୀତ ହେଲା ଏବଂ ଭାଇସ୍‌ରାୟଙ୍କ ଦ୍ୱାରା ସେହି ଦାବୀ ପ୍ରତ୍ୟାଖ୍ୟାତ ହେବା ଅର୍ଥ ଅବଶ୍ୟମ୍ଭାବୀ ବିବାଦ କିମ୍ବା ଇସ୍ତଫା ପ୍ରଦାନ । କଂଗ୍ରେସର ସାଧାରଣ କର୍ମୀମାନେ କିନ୍ତୁ ବ୍ରିଟିଶ ଶକ୍ତି ବିରୁଦ୍ଧରେ ପୁଣି ଏକ ଆନ୍ଦୋଳନ ଚଳାଇବା ପାଇଁ ବ୍ୟଗ୍ର ହୁଅନ୍ତି ଥିଲେ । ତଥାପି ଯେତେଦୂର ସମ୍ଭବ ସେହି ପନ୍ଥା ଏଡ଼ାଇବା ପାଇଁ କଂଗ୍ରେସ କାର୍ଯ୍ୟକାରୀ କମିଟି ଆତୁର ଥିଲେ ଏବଂ ଏକ ନରମ ପନ୍ଥା ଗ୍ରହଣ କଲେ ।

ନିର୍ବାଚନ କରାଇ ଜନସାଧାରଣ କିମ୍ବା ଭୋଟରମାନଙ୍କ ମନୋଭାବ ଜାଣିବା ବ୍ରିଟିଶ ସରକାରଙ୍କ ପକ୍ଷରେ କଷ୍ଟକର ନଥିଲା । ସରକାର କିନ୍ତୁ ବରାବର ନିର୍ବାଚନ ମାର୍ଗ ଏଡ଼ାଇବାକୁ ଚାହିଁଥିଲେ; କାରଣ ସେମାନଙ୍କର ସନ୍ଦେହ ନଥିଲା ଯେ ନିର୍ବାଚନ ହେଲେ କଂଗ୍ରେସ ବିପୁଳ ଭାବରେ ଜୟମଣ୍ଡିତ ହେବ ।

ଭାରତର ଦୁଇଟି ବଡ଼ ପ୍ରଦେଶ ଓ ପଞ୍ଜାବରେ ଏବଂ କ୍ଷୁଦ୍ର ସିନ୍ଧୁ ପ୍ରଦେଶରେ ସରକାରମାନେ ଇସ୍ତଫା ଦେଇ ନଥିଲେ । ବଙ୍ଗ ଓ ପଞ୍ଜାବରେ ଗଭର୍ଣ୍ଣର ଓ ଉଚ୍ଚବର୍ଗୀୟ ହାକିମମାନେ ବରାବର ଆଧିପତ୍ୟ କରି ଆସୁଥିଲେ ଏବଂ ସେଥି ହେତୁରୁ ମନ୍ତ୍ରିମଣ୍ଡଳ ସଙ୍ଗେ ସେ ସମୟରେ ବିବାଦ ଲାଗିବାର କିଛି କାରଣ ନଥିଲା । ତଥାପି ପୁଣି ବଙ୍ଗରେ ପରବର୍ତ୍ତୀ ଏକ ଅବସରରେ ପ୍ରଧାନମନ୍ତ୍ରୀଙ୍କ ପ୍ରତି ବିମୁଖ ଗଭର୍ଣ୍ଣର ତାଙ୍କୁ ଇସ୍ତଫା ଦେବାକୁ ବାଧ୍ୟ କଲେ । ସିନ୍ଧୁରେ ମଧ୍ୟ, ବଙ୍ଗ ଘଟଣାର କିଛି କାଳ ପରେ, ପ୍ରଧାନମନ୍ତ୍ରୀ ବ୍ରିଟିଶ ସରକାରଙ୍କ ନୀତିର ସମାଲୋଚନା କରି ଭାଇସ୍‌ରୟଙ୍କ ପାଖକୁ ଏକ ଚିଠି ଲେଖିଲେ ଏବଂ ପ୍ରତିବାଦ ସ୍ୱରୂପ ତାଙ୍କୁ ଦିଆଯାଇଥିବା ଏକ ଉପାଧି ଫେରସ୍ତ କଲେ; କିନ୍ତୁ ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ନାହିଁ । ଭାଇସ୍‌ରାୟ ଅବଶ୍ୟ ସେହି ଚିଠିଟି ଲାଗି ତାଙ୍କୁ ଗଭର୍ଣ୍ଣରଙ୍କ ଦ୍ୱାରା ପ୍ରଧାନମନ୍ତ୍ରୀ ପଦରୁ ବରଖାସ୍ତ କଲେ । ଭାଇସ୍‌ରାୟଙ୍କ ଏବଂବିଧ ଆଚରଣ ତାଙ୍କର ଉଚ୍ଚ ଆସନର ମର୍ଯ୍ୟାଦାକୁ କ୍ଷୁଣ୍ଣ କଲା ବୋଲି ବିବେଚିତ ହୋଇଥିଲା ।

ପ୍ରଦେଶର କଂଗ୍ରେସ ସରକାରମାନେ ଗାଦି ଛାଡ଼ି ଆସିବା ପ୍ରାୟ ପାଞ୍ଚ ବର୍ଷ ହେଲାଣି । ଏହି ସମୟ ଭିତରେ ଏକଦା କଂଗ୍ରେସ-ଶାସିତ ପ୍ରଦେଶମାନଙ୍କରେ ଜଣେ ବ୍ୟକ୍ତି; ଅର୍ଥାତ୍ ଗଭର୍ଣ୍ଣରଙ୍କ ନିରଙ୍କୁଶ ଶାସନ ଚାଲିଛି ଏବଂ ଆମେ ଯୁଦ୍ଧ ଆଳରେ ଓ ଯୁଦ୍ଧର କୁହୁଡ଼ି ଭିତରେ ମଧ୍ୟ-ଊନବିଂଶ ଶତକର ବିଶୁଦ୍ଧ ସ୍ୱୈରତନ୍ତ୍ରକୁ ଫେରିଯାଇଛୁ । ସିଭିଲ୍ ସର୍ଭିସ ଓ ପୁଲିସ୍‌ର ଅଖଣ୍ଡ ପ୍ରଭୁତ୍ୱ ଚାଲିଛି ଏବଂ ସେମାନଙ୍କ ଭିତରୁ କେହି ଯଦି ସେ ଇଂରେଜ ହେଉ କି ଭାରତୀୟ ହେଉ, ବ୍ରିଟିଶ ସରକାରଙ୍କ ନିର୍ମମ ନୀତି କାର୍ଯ୍ୟକାରୀ କରିବାରେ ତିଳେମାତ୍ର ସଙ୍କୋଚ ପ୍ରକାଶ କରେ, ଉଚ୍ଚ କର୍ତ୍ତୃପକ୍ଷଙ୍କର ଚରମ ବିରାଗର ପାତ୍ର ହୋଇ ବସେ । କଂଗ୍ରେସ ସରକାରମାନେ ଯେଉଁସବୁ କାର୍ଯ୍ୟ କରିଥିଲେ, ସେଥିରୁ ବହୁତ କିଛି ବର୍ତ୍ତମାନ ତା'ର ବିପରୀତ ଧାରାରେ ଚାଲିଛି ଏବଂ ସେମାନଙ୍କର ସମସ୍ତ ଯୋଜନା ଅଳିଆଗଦାକୁ ଫିଙ୍ଗି ଦିଆଯାଇଛି । ସୌଭାଗ୍ୟର କଥା, ଭାଗଚାଷୀ ସମ୍ପର୍କୀୟ କେତେକ ଆଇନ ଏବେ ବି ଯଦିଓ ଜାରି ରହିଛି; ତଥାପି ପୁଣି, ବହୁଧା ତା'ର ବ୍ୟାଖ୍ୟା କରାଯାଉଛି ଭାଗଚାଷୀର ସ୍ୱାର୍ଥ ବିରୁଦ୍ଧରେ ।

ଗତ ଦୁଇବର୍ଷ ଭିତରେ ଅପେକ୍ଷାକୃତ କ୍ଷୁଦ୍ର ଆସାମ, ଓଡ଼ିଶା ଓ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶମାନଙ୍କରେ ଏକ ସରଳ ଉପାୟ ଅବଲମ୍ବନ କରି ପ୍ରାଦେଶିକ ସରକାରଗୁଡ଼ିକର ପୁନର୍ଗଠନ କରାଯାଇଛି । ବ୍ୟବସ୍ଥାପକ ସଭାର କେତେ ସଭ୍ୟଙ୍କୁ ବନ୍ଦୀକରି ନେଇ ଉପସ୍ଥିତ ସଂଖ୍ୟାଲଘୁଙ୍କୁ ସଂଖ୍ୟାଗରିଷ୍ଠ କରିଦିଆଗଲା । ବଙ୍ଗରେ ବର୍ତ୍ତମାନର ମନ୍ତ୍ରିମଣ୍ଡଳ ୟୁରୋପୀୟ ସଭ୍ୟମାନଙ୍କ ସମର୍ଥନ ଉପରେ ସମ୍ପୂର୍ଣ୍ଣ ନିର୍ଭର କରିଛି । ଓଡ଼ିଶାର ମନ୍ତ୍ରିମଣ୍ଡଳ ବେଶିଦିନ

ଉଣ୍ଟିପାରଲ ନାହିଁ ଏବଂ ଯେଉଁଠାରେ ବର୍ତ୍ତମାନ ଗଭର୍ଣ୍ଣରଙ୍କ ଏକାଧିପତ୍ୟ ଚାଲିଛି । ସୀମାନ୍ତ ପ୍ରଦେଶରେ ଯେଉଁ ମନ୍ତ୍ରିମଣ୍ଡଳ ଚାଲିଛି, ବ୍ୟବସ୍ଥାପକ ସଭାରେ ତା'ର ସଂଖ୍ୟାଗରିଷ୍ଠତା ନାହିଁ । ଅତଏବ, ବ୍ୟବସ୍ଥାପକ ସଭାର ଅଧିବେଶନ କରାଇ ଦିଆଯାଉନି । ପଞ୍ଜାବ ଓ ସିନ୍ଧୁରେ କାରାଗାର ବାହାରେ ଥିବା କଂଗ୍ରେସ ବ୍ୟବସ୍ଥାପକମାନଙ୍କ ଉପରେ ଏପରି ବିଶେଷ ଆଦେଶ ଜାରି କରାଯାଇଛି ଯେ, ସେମାନେ ବ୍ୟବସ୍ଥାପକ ସଭାର ଅଧିବେଶନ-ମାନଙ୍କରେ କିମ୍ବା କୌଣସି ସର୍ବସାଧାରଣ କାର୍ଯ୍ୟରେ ଯୋଗଦେଇ ପାରିବେ ନାହିଁ । (୧)

## ୪. କଂଗ୍ରେସର ଆଉ ଏକ ପ୍ରସ୍ତାବ ବ୍ରିଟିଶ ସରକାର ପ୍ରତ୍ୟାଖ୍ୟାନକଲେ : ଓ୍ୱିନ୍‌ଷ୍ଟନ୍ ଚର୍ଚ୍ଚିଲ୍

ଭାରତର ଏଗାରଟି ପ୍ରଦେଶରୁ ଆଠଗୋଟି ପ୍ରଦେଶରେ ଗଭର୍ଣ୍ଣରଙ୍କର ଏକଚ୍ଛତ୍ର ଶାସନ ଯାହା ଚାଲିଲା, ତାହା ଶାସନର ଶୀର୍ଷରେ ମନ୍ତ୍ରୀମାନଙ୍କ ବଦଳରେ ଆଉ କେତେ ଲୋକଙ୍କ ନିଯୁକ୍ତିରେ କେବଳ ପର୍ଯ୍ୟବସିତ ହେଲନାହିଁ; ବରଂ ଯେଉଁ ମୌଳିକ ପରିବର୍ତ୍ତନ ଘଟିଲା, ସେଥିରେ ସମଗ୍ର ପ୍ରଦେଶର ଶାସନ ସଂଗଠନର ମହତ୍ତ୍ୱ, ନୀତି ଓ ପଦ୍ଧତି ସମ୍ପୂର୍ଣ୍ଣ ଭାବରେ ଅନ୍ୟ ପ୍ରକାର ହୋଇପଡ଼ିଲା । ସ୍ଥାୟୀ କର୍ମଚାରୀ ଓ କର୍ତ୍ତାବ୍ୟକ୍ତିମାନଙ୍କ ଉପରେ ବ୍ୟବସ୍ଥାପକ ସଭା ଓ ଲୋକମତର ଯେଉଁ ଅଙ୍କୁଶ ଥିଲା ତାହା ଅପସାରିତ ହେଲା ଏବଂ ଗଭର୍ଣ୍ଣରଙ୍କଠାରୁ ଆରମ୍ଭକରି ତଳଆଡ଼କୁ ସର୍ବତ୍ର ଜନପାଳନ କର୍ମଚାରୀ ଓ ପୁଲିସ୍ କର୍ମଚାରୀମାନଙ୍କର ଜନସାଧାରଣଙ୍କ ପ୍ରତି ମନୋଭାବ ଓ ଆଭିମୁଖ୍ୟ ଭିନ୍ନ ରକମର ହୋଇପଡ଼ିଲା । କଂଗ୍ରେସ ସରକାରମାନେ ଦାୟିତ୍ୱ ନେବା ପୂର୍ବରୁ ଯେଉଁ ଅବସ୍ଥା ଥିଲା, ଏ ଅବସ୍ଥା ତା'ର ତୁଳନାରେ ଶୋଚନୀୟ ହୋଇପଡ଼ିଲା । ଏ ଶାସନର ତଥାକଥିତ ଆଇନ ହେଲା ଊନବିଂଶ ଶତକର ବଳଗର୍ବିତ ସ୍ୱୈରତନ୍ତ୍ର, ଆଉ ସେହି ଆଇନ ଅତି ନିର୍ମମ ଭାବରେ ପ୍ରୟୋଗ କରାଗଲା । ପୂର୍ବର ସେହି ବିଶ୍ୱାସ ଓ ପିତୃଭାବ ଆଉ ନଥିଲା ଏବଂ ଭାଙ୍ଗିପଡ଼ୁଥିବା ବହୁକାଳ-ପ୍ରତିଷ୍ଠିତ ନ୍ୟସ୍ତସ୍ୱାର୍ଥର ସମସ୍ତ ଭୟ ଓ ଗଭୀର ଆବେଗ ପ୍ରଶାସନର ଇଂରେଜମାନଙ୍କୁ ଆଚ୍ଛନ୍ନ କଲା । କଂଗ୍ରେସ ସରକାରମାନଙ୍କର ସତାଇଶି ମାସ ଶାସନର ଦାଉ ସମ୍ଭାଳିବା ଏବଂ ସାମାନ୍ୟ କିଛି ଗଣ୍ଡଗୋଳ କଲେ ଯେଉଁମାନଙ୍କୁ ଜେଲ୍‌ରେ ଠୁଙ୍କିଦିଆଯାଉଥିଲା, ସେମାନଙ୍କର ନୀତି ଓ ଆଦେଶ ପାଳନ କରିବା ଏମାନଙ୍କ ପକ୍ଷରେ ବଡ଼ କଷ୍ଟକର ଓ ଅପ୍ରୀତିକର ଥିଲା । ବର୍ତ୍ତମାନ ପୂର୍ବର ଭାବ ଚାଲୁକରିବାର ଅଭିଳାଷ କେବଳ ନୁହେଁ, ଏହି ଗଣ୍ଡଗୋଳକାରୀଙ୍କୁ ଯଥା ସ୍ଥାନରେ ସ୍ଥାପିତ କରିବାପାଇଁ ପ୍ରଶାସନର ଇଂରେଜମାନେ ଆତୁର ଥିଲେ ।

(୧) ଖ୍ରୀ: ୧୯୪୫ ଆରମ୍ଭରେ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ବ୍ୟବସ୍ଥାପକ ସଭା ପରିଶେଷରେ ବଜେଟ୍ ଅଧିବେଶନ କଲା । ଆସ୍ଥା-ପ୍ରସ୍ତାବରେ ପରାଜିତ ହୋଇ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ । ଡ: ଖାନ୍ ସାହେବଙ୍କ ନେତୃତ୍ୱରେ ଗୋଟାଏ କଂଗ୍ରେସ ମନ୍ତ୍ରିମଣ୍ଡଳ କାର୍ଯ୍ୟଭାର ଗ୍ରହଣ କଲା ।

ବଳମାଳର ଗୃହିଣୀ, କାରଖାନାର ଶ୍ରମିକ, ହସ୍ତଶିଳ୍ପୀ, ଦୋକାନୀ, ଶିଳ୍ପପତି, ପେଶାଦାର-ଶ୍ରେଣୀ, କଲେଜ ଛାତ୍ରଛାତ୍ରୀ, ତଳିଆ କର୍ମଚାରୀ ଏବଂ ଏପରିକି ଉପର ବର୍ଗର ଭାରତୀୟ କର୍ମଚାରୀମାନଙ୍କ ଭିତରୁ ମଧ୍ୟ ଯେଉଁମାନେ ଲୋକପ୍ରତିନିଧି ଶାସନ ପ୍ରତି ଆଗ୍ରହ ପ୍ରକାଶ କରିଥିଲେ, ସମସ୍ତଙ୍କୁ ଏକଥା ଭଲଭାବରେ ବୁଝିବାକୁ ଦିଆଯିବ ଯେ ଏବେ ବି ବ୍ରିଟିଶ୍‌ରାଜ୍ ଚାଲିଛି, ଆଉ ତା'ର ସଙ୍ଗେ ହିସାବ ନିକାଶ କରିବାକୁ ପଡ଼ିବ—ଏହା ହେଲା ସୋଗଙ୍କ ମନୋଭାବ । ବ୍ରିଟିଶ୍‌ରାଜ ହିଁ ସମସ୍ତଙ୍କର ବ୍ୟକ୍ତିଗତ ଭବିଷ୍ୟତ ନିର୍ଦ୍ଧାରଣ କରିବ; ବାହାରୁ ଅସ୍ଥାୟୀ ଭାବରେ ଅନଧିକାର ପ୍ରବେଶ କରିଥିବା କେତେକ ଲୋକଙ୍କ ଦ୍ୱାରା ସମ୍ଭବ ନୁହେଁ । ଏକଦା ମନ୍ତ୍ରୀମାନଙ୍କର ସେକ୍ରେଟାରୀ ଭାବରେ ଯେଉଁମାନେ କାର୍ଯ୍ୟ କରୁଥିଲେ, ବର୍ତ୍ତମାନ ଗଭର୍ଣ୍ଣରଙ୍କ ଶାସନରେ ସେମାନେ ହେଲେ ପ୍ରଧାନ ହାକିମ ଓ ପୂର୍ବର ସେହି ହାକିମି ଢଙ୍ଗରେ ସେମାନେ କଥାବାର୍ତ୍ତା କଲେ । ଜିଲ୍ଲା ମାଜିଷ୍ଟ୍ରେଟମାନେ ନିଜ ନିଜ ଜିଲ୍ଲାରେ ପୁଣି ସର୍ବେସର୍ବା ହୋଇ ଉଠିଲେ । ପୁଲିସ୍‌ମାନେ ସେମାନଙ୍କର ପୁରାତନ ଆଚରଣକୁ ଫେରିବାରେ ସ୍ୱସ୍ତିରେ ନିଶ୍ୱାସ ମାରିଥିଲେ ଏବଂ ସେମାନେ ଜାଣିଥିଲେ ଯେ କେତେ ଦୁର୍ବ୍ୟବହାର କଲେ ସୁଦ୍ଧା ଉପରୁ ସେମାନଙ୍କୁ ସମର୍ଥନ ଓ ସାହାଯ୍ୟ ଅବଶ୍ୟ ମିଳିବ । ସବୁକିଛି ଆବୃତ କରିବାପାଇଁ ଯୁଦ୍ଧର କୁହୁଡ଼ିକୁ ବ୍ୟବହାର କରାଯାଇପାରେ ।

କଂଗ୍ରେସ ସରକାରମାନଙ୍କର ବହୁ ସମାଲୋଚକ ସୁଦ୍ଧା ଏ ଅବସ୍ଥା ଦେଖି ଆଚମ୍ବିତ ହୋଇପଡ଼ିଲେ । କଂଗ୍ରେସ ସରକାରମାନଙ୍କର ବହୁତ କିଛି ସଦ୍‌ଗୁଣ ବର୍ତ୍ତମାନ ଏମାନଙ୍କର ସ୍ମରଣ ହେଲା ଏବଂ କଂଗ୍ରେସ ମନ୍ତ୍ରୀମାନେ ଗାଦି ତ୍ୟାଗ କରିଥିବାରୁ ଏମାନେ ତୀବ୍ର ବିରକ୍ତି ପ୍ରକାଶ କଲେ । ଏମାନଙ୍କ ମତରେ, ପରିଣାମ ଯାହା ହେଉନା କାହିଁକି, କଂଗ୍ରେସଲୋକେ ଶାସନ ଦାୟିତ୍ୱରେ ରହିବା ଉଚିତ ଥିଲା । ବଡ଼ ବିଚିତ୍ର କଥା ଯେ ମୁସ୍‌ଲିମ୍ ଲିଗ୍‌ର ସଭ୍ୟମାନେ ମଧ୍ୟ ପ୍ରଚଳିତ ଅବସ୍ଥାରେ ଆଶଙ୍କିତ ହୋଇପଡ଼ିଲେ ।

ଅଣ-କଂଗ୍ରେସ ସରକାରଙ୍କ ସମାଲୋଚକମାନଙ୍କର ଏଭଳି ଯଦି ପ୍ରତିକ୍ରିୟା, କଂଗ୍ରେସର ସଭ୍ୟ ତଥା ସମର୍ଥକ ଏବଂ ବ୍ୟବସ୍ଥାପକମାନଙ୍କ ମନର ପ୍ରତିକ୍ରିୟା ସହଜେ ଅନୁମେୟ । ମନ୍ତ୍ରୀମାନେ ମନ୍ତ୍ରିତ୍ୱରୁ ଇସ୍ତଫା ଦେଇଥିଲେ ସୁଦ୍ଧା ବ୍ୟବସ୍ଥାପକ ସଭ୍ୟ ପଦରୁ ଇସ୍ତଫା ଦେଇ ନଥିଲେ । ସେହିପରି ବାଚସ୍ପତିମାନେ ଓ କଂଗ୍ରେସ ବ୍ୟବସ୍ଥାପକମାନେ ମଧ୍ୟ ଇସ୍ତଫା ଦେଇ ନଥିଲେ । ତଥାପି ଏମାନଙ୍କୁ ଅବଜ୍ଞା କରାଗଲା ଏବଂ ପୁଣି ଥରେ ନିର୍ବାଚନ କରିବାର ପ୍ରଶ୍ନ ନଥିଲା । କେବଳ ସାମ୍ବିଧାନିକ ଦୃଷ୍ଟିକୋଣରୁ ବିଚାର କଲେ ସୁଦ୍ଧା ଏ ପ୍ରକାର ଏକ ଅବସ୍ଥା ସହ୍ୟ କରିବା ସହଜ ନୁହେଁ ଏବଂ ଯେ କେଉଁ ଦେଶରେ ଏ ଅବସ୍ଥା ଶାସନସଙ୍କଟ ସୃଷ୍ଟି କରିଥାନ୍ତା । କଂଗ୍ରେସ ଭଳି ଏକ ଶକ୍ତିଶାଳୀ ବିପ୍ଳବ-ପ୍ରାଣ ସଙ୍ଗଠନ, ଯାହାର ପଛରେ ସ୍ୱାଧୀନତା ନିମନ୍ତେ ସଂଗ୍ରାମର ଦୀର୍ଘ ଇତିହାସ ରହିଛି, ଆଉ ଦେଶର ଜାତୀୟତାବାଦୀ ମନୋଭାବର ଯିଏ ପ୍ରତିନିଧି, ତା' ପକ୍ଷରେ ନିର୍ବେଦ ଭାବରେ ଏହି ଏକଛତ୍ର ଶାସନ ମୁଣ୍ଡପାତି ନେବା କେବେ ହୋଇନପାରେ । ଦେଶରେ ଯାହା ଘଟୁଥିଲା, ଆଉ ତାହା ଯେତେବେଳେ ତା'ର ନିଜ ବିରୁଦ୍ଧରେ ଉଦ୍ଦିଷ୍ଟ

ଥିଲି, କଂଗ୍ରେସ ନୀରବ ଦ୍ରଷ୍ଟା ଭାବରେ କେବଳ ରହିପାରନ୍ତା କିପରି ? ବ୍ୟବସ୍ଥାପକ ସଭା ଦଳନ, ସର୍ବସାଧାରଣ କାର୍ଯ୍ୟକଳାପ ନିବାରଣ ତଥା ଭାରତ ସମ୍ପର୍କରେ ବ୍ରିଟିଶ ସରକାରଙ୍କ ସମଗ୍ର ନୀତିର ଦୃଢ଼ ପ୍ରତିବିଧାନ ଉଦ୍ଦେଶ୍ୟରେ ନିର୍ଦ୍ଦିଷ୍ଟ କର୍ମପନ୍ଥା ଗ୍ରହଣ କରିବାପାଇଁ ବାରମ୍ବାର ଓ ବେଳକୁବେଳ ବଳିଷ୍ଠ ଦାବୀ ଉତ୍‌ଥିତ ହେଲା ।

ସେମାନଙ୍କର ଯୁଦ୍ଧର ଲକ୍ଷ୍ୟ ପ୍ରକାଶ କରିବାପାଇଁ କିମ୍ବା ଭାରତରେ ଆଗକୁ ପାଦ ବଢ଼ାଇବା ପାଇଁ ବ୍ରିଟିଶ ସରକାର ମନାକରିଦେଲାପରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଘୋଷଣା କରିଥିଲେ : "ଏହି ଦାବୀ (କଂଗ୍ରେସର)ର ଉତ୍ତର ସମ୍ପୂର୍ଣ୍ଣ ଅସନ୍ତୋଷଜନକ ଏବଂ ଭୁଲ ବୁଝାମଣା ସୃଷ୍ଟି କରିବାପାଇଁ, ଆଉ ମୁଖ୍ୟ ତଥା ନୈତିକ ପ୍ରଶ୍ନ ଯାହା ତାହା ଆଚ୍ଛନ୍ନ କରିବାପାଇଁ ବ୍ରିଟିଶ୍ ସରକାରଙ୍କ ପକ୍ଷରୁ ଉଦ୍ୟମ ହୋଇଛି···ଦେଶର ପ୍ରତିକ୍ରିୟାଶୀଳ ଲୋକଙ୍କ ସଙ୍ଗେ ହାତ ମିଳାଇ ଭାରତରେ ସାମ୍ରାଜ୍ୟବାଦୀ ଆଧିପତ୍ୟ ବଜାୟ ରଖିବାପାଇଁ, ନାନା ଅପ୍ରାସଙ୍ଗିକ ପ୍ରଶ୍ନ ପଛରେ ଆଶ୍ରୟ ନେଇ, ଯୁଦ୍ଧର ଲକ୍ଷ୍ୟ ଓ ଭାରତର ସ୍ୱାଧୀନତା ସମ୍ବନ୍ଧରେ ସରକାର କୌଣସି ବିବୃତି ଦେବାକୁ ଚାହାନ୍ତିନି ବୋଲି କେବଳ କାର୍ଯ୍ୟକାରୀ କମିଟି ଏହି ଉଦ୍ୟମର ଅର୍ଥ କରନ୍ତି । ଏହି ଯୁଦ୍ଧ ସଙ୍କଟ ଓ ତତ୍ଜନିତ ବିଭିନ୍ନ ସମସ୍ୟା ସାରତଃ ଏକ ନୈତିକ ପ୍ରଶ୍ନର ଅନ୍ତର୍ଭୁକ୍ତ ବୋଲି କଂଗ୍ରେସ ମନେକରେ ଏବଂ ମୂଳଭୂଲ କରିବା ମନୋଭାବ ନେଇ ସେଥିରୁ ଲାଭ ଉଠାଇବାପାଇଁ କଂଗ୍ରେସ ଚାହିଁନି । ଇତର କୌଣସି ପ୍ରଶ୍ନ ବିବେଚନା କରିବା ପୂର୍ବରୁ ଯୁଦ୍ଧର ଲକ୍ଷ୍ୟଜନିତ ନୈତିକ ତଥା ସର୍ବପ୍ରଧାନ ପ୍ରଶ୍ନ ଓ ଭାରତର ସ୍ୱାଧୀନତା ସମ୍ପର୍କରେ ଏକ ସନ୍ତୋଷଜନକ ସମାଧାନ ହେବା ଚାହି । ଲୋକପ୍ରତିନିଧିଙ୍କ ହାତକୁ ପ୍ରକୃତ କ୍ଷମତା ଦିଆନଗଲେ କିମ୍ବା ନିକାଲେ, ଏପରିକି ଏହି ଅବସ୍ଥାନ୍ତର ପର୍ଯ୍ୟାୟରେ ମୁଦ୍ଧା, କଂଗ୍ରେସ ଶାସନ ଦାୟିତ୍ୱ ଗ୍ରହଣ କରିପାରିବ ନାହିଁ ।"

କାର୍ଯ୍ୟକାରୀ କମିଟି ଆହୁରି କହିଚନ୍ତି ଯେ ବ୍ରିଟିଶ ସରକାରଙ୍କ ପକ୍ଷରୁ ଯେଉଁ ସବୁ ଘୋଷଣା ପ୍ରକାଶ ପାଇଚି, ସେଥି ହେତୁରୁ ବ୍ରିଟିଶ ନୀତି ସଙ୍ଗେ ସମ୍ମିଳିତ ନହେବା ପାଇଁ କଂଗ୍ରେସ ବାଧ ହୋଇଚି ଏବଂ ଅସହଯୋଗର ପ୍ରଥମ ପଦକ୍ଷେପ ସ୍ୱରୂପ ପ୍ରଦେଶର କଂଗ୍ରେସ ସରକାରମାନେ ଇସ୍ତଫା ଦେଇଚନ୍ତି । ଅସହଯୋଗର ସାଧାରଣ ନୀତି ଜାରି ରହିଚି ଏବଂ ବ୍ରିଟିଶ ସରକାର ତାଙ୍କର ନୀତି ସଂଶୋଧିତ ଓ ପରିବର୍ତ୍ତିତ କଲା ପର୍ଯ୍ୟନ୍ତ ତାହା ଅବ୍ୟାହତ ରହିବ । "କାର୍ଯ୍ୟକାରୀ କମିଟି କଂଗ୍ରେସ ଲୋକଙ୍କୁ ଏ କଥା ଅବଶ୍ୟ ସ୍ମରଣ କରାଇଦେବାକୁ ଚାହାନ୍ତି ଯେ ଅପର ପକ୍ଷ ସଙ୍ଗେ କୌଣସି ସମ୍ମାନଜନକ ସମାଧାନରେ ଉପନୀତ ହେବା ପାଇଁ ଉଦ୍ୟମ କରିବା ସତ୍ୟାଗ୍ରହର ବିରୋଧୀ ନୁହେଁ; ବରଂ ସତ୍ୟାଗ୍ରହର ପ୍ରତ୍ୟେକ ଆଙ୍ଗିକରେ ତାହା ନିହିତ ଅଛି···ଅତଏବ, ବ୍ରିଟିଶ ସରକାର କଂଗ୍ରେସ ମୁହଁରେ ସମାଧାନର ଦ୍ୱାର ନିର୍ବିଘ୍ନରେ ଭାବରେ ରୁଦ୍ଧ କରିଦେଇଥିଲେ ମୁଦ୍ଧା ଗୋଟାଏ ସମ୍ମାନଜନକ ସମାଧାନରେ ଉପନୀତ ହେବାପାଇଁ କାର୍ଯ୍ୟକାରୀ କମିଟି ବରାବର ଉପାୟ ଅନୁସନ୍ଧାନ ଚେଷ୍ଟାରେ ରହିବେ ।"

ଦେଶର ପ୍ରଚଳିତ ଉତ୍ତେଜନା ଦୃଷ୍ଟିରୁ ଏବଂ ଦେଶର ତରୁଣକୁଳ ଧ୍ୱଂସାତ୍ମକ ପନ୍ଥା

ଅବଲମ୍ବନ କରିବାର ସମ୍ଭାବନା ଥିବା ହେତୁରୁ କାର୍ଯ୍ୟକାରୀ କମିଟି ଅହିଂସାର ମୌଳିକ ନୀତି ସମ୍ପର୍କରେ ଦେଶବାସୀଙ୍କୁ ସ୍ମରଣ କରାଇବା ସଙ୍ଗେ ସଙ୍ଗେ ସେହି ନୀତି ଯେପରି ଭଙ୍ଗ ନହୁଏ, ସେଥିଲାଗି ଜନସାଧାରଣଙ୍କୁ ସାବଧାନ କରିଥିଲେ । କେଉଁଠି ଯଦି ଆଇନ ଅମାନ୍ୟ କରିବା ହୁଏ, ତାହା ସମ୍ପୂର୍ଣ୍ଣ ଶାନ୍ତିପୂର୍ଣ୍ଣ ହେବା ଦରକାର । କମିଟି ଆହୁରି କହିଥିଲେ ଯେ 'ସତ୍ୟାଗ୍ରହ ଅର୍ଥ ସମସ୍ତଙ୍କ ପ୍ରତି, ବିଶେଷତଃ ପ୍ରତିପକ୍ଷ ପ୍ରତି, ଶୁଭେଚ୍ଛା ପ୍ରକାଶ ।' ଯୁଦ୍ଧ ସଙ୍ଗେ କିମ୍ବା ଆକ୍ରମଣ ବିରୁଦ୍ଧରେ ଦେଶର ପ୍ରତିରକ୍ଷା ସଙ୍ଗେ ଅହିଂସାର ଏହି ଉଲ୍ଲେଖର କୌଣସି ସମ୍ପର୍କ ନଥିଲା । ବ୍ରିଟିଶ ଶାସନ ବିରୁଦ୍ଧରେ ଭାରତର ସ୍ୱାଧୀନତା ସଂଗ୍ରାମ ଯେଉଁ ପନ୍ଥା ଅବଲମ୍ବନ କରିବ, ସେଥିରେ ପ୍ରୟୋଗ କରିବା ଥିଲା ଏଥିର ଉଦ୍ଦେଶ୍ୟ ।

ମୁଁ ଯେଉଁ ସମୟର କଥା କହୁଛି, ସେହି କେତେ ମାସରେ ପୋଲାଣ୍ଡ ଦଲନ ପରେ ୟୁରୋପରେ ଯୁଦ୍ଧ ଏକପ୍ରକାର ନିସ୍ତବ୍ଧ ଅବସ୍ଥାରେ ରହିଥିଲା । ଏହା ହେଉଛି ତଥାକଥିତ 'ନକଲି' ଯୁଦ୍ଧର ପର୍ଯ୍ୟାୟ ଏବଂ ଭାରତରେ ବିଶେଷତଃ ସାଧାରଣ ଲୋକ ପକ୍ଷରେ ତାହା କେଉଁ ଦୂରଦୂରାନ୍ତର ଏକ ଘଟଣା ଭାବରେ ପ୍ରତୀତ ହେଉଥିଲା ଏବଂ ଯୁଦ୍ଧ ସରଞ୍ଜାମ ଯୋଗାଇବା ଦାୟିତ୍ୱ ବ୍ୟତୀତ ଭାରତରେ ବ୍ରିଟିଶ ହାକିମମାନେ ଯୁଦ୍ଧର କୌଣସି ଲିପ୍ତତା ଅନୁଭବ କରିବା ଅବସ୍ଥାରେ ନଥିଲେ । ସେତେବେଳେ ଓ ଖ୍ରୀ: ୧୯୪୧, ଜୁନ ମାସରେ ଜର୍ମାନୀ ରୁଷିଆ ଆକ୍ରମଣ କରିବା ଦିବସ ପର୍ଯ୍ୟନ୍ତ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ବ୍ରିଟିଶ ଯୁଦ୍ଧ ଉଦ୍ୟମରେ ସହଯୋଗ କରିବା ବିରୋଧରେ ଥିଲା । ଯୁବସମାଜର କେତେକ ଗୋଷ୍ଠୀ ବ୍ୟତୀତ ଅନ୍ୟ କେଉଁଠି ହେଲେ ସେମାନଙ୍କର ଯେପରି ଲକ୍ଷଣୀୟ ପ୍ରଭାବ କିଛି ନଥିଲା; କିନ୍ତୁ ପ୍ରଚଳିତ ମନୋଭାବକୁ ସେମାନେ ଯେହେତୁ ଗୋଟାଏ ପ୍ରକାର ଆକ୍ରମଣାତ୍ମକ ଅଭିବ୍ୟକ୍ତି ଦେଉଥିଲେ, ସେମାନଙ୍କ ଉପରେ ଲୋକଙ୍କର କିଛିଟା ରୋକ ରହିଥିଲା ।

ଏପରି ସମୟରେ ପ୍ରଦେଶମାନଙ୍କରେ ଓ କେନ୍ଦ୍ର ଆସେମ୍ବ୍ଲି ପାଇଁ ନିର୍ବାଚନ କରିବା ସହଜ ହୋଇଥାନ୍ତା । ଆଉ ଯାହା ହେଉନା କାହିଁକି, ଯୁଦ୍ଧ କିନ୍ତୁ ତା'ର ଅନ୍ତରାୟ ହୋଇ ନଥିଲା । ସେ ପ୍ରକାର ନିର୍ବାଚନ ବାତାବରଣ ନିର୍ମଳ କରନ୍ତା ଓ ଦେଶର ପ୍ରକୃତ ଅବସ୍ଥା ପ୍ରକାଶ କରାଇଥାନ୍ତା; କିନ୍ତୁ ବ୍ରିଟିଶ ଶାସକମାନେ ବାସ୍ତବତା କହିଲେ ଭୀତ ହେଉଥିଲେ; କାରଣ ବିଭିନ୍ନ ଗୋଷ୍ଠୀର ପ୍ରଭାବ ସମ୍ପର୍କରେ ସେମାନେ ଯେଉଁ ସବୁ ଅବାସ୍ତବ ଯୁକ୍ତି ଅବ୍ୟାହତ ଭାବରେ ପରିବେଷଣ କରୁଥିଲେ, ତା'ର ଅବସାନ ଘଟନ୍ତା; କିନ୍ତୁ ସବୁପ୍ରକାରେ ନିର୍ବାଚନର ବାଟ ବନ୍ଦ କରାଗଲା । ପ୍ରଦେଶରେ ଗଭର୍ଣ୍ଣର ଶାସନ ଚାଲିଥିଲା ଏବଂ କେନ୍ଦ୍ର ଆସେମ୍ବ୍ଲିକୁ ତିନି ବର୍ଷ ପାଇଁ ଅତିମାତ୍ରାରେ ସୀମାବଦ୍ଧ ଭୋଟାଧିକାର ବ୍ୟବସ୍ଥାରେ, ଯେଉଁମାନେ ନିର୍ବାଚିତ ହୋଇଥିଲେ, ସେମାନେ ଦଶବର୍ଷ ଆସେମ୍ବ୍ଲିରେ ବସିଲେଣି । ଖ୍ରୀ: ୧୯୩୯ରେ ଯୁଦ୍ଧ ଆରମ୍ଭ ହେଲାବେଳକୁ ମଧ୍ୟ ଏମାନଙ୍କର କାର୍ଯ୍ୟକାଳ (ତିନି ବର୍ଷ) ପୂର୍ଣ୍ଣ ହୋଇ ସାରିଥିଲା । ବର୍ଷ ପରେ ବର୍ଷ ଆସେମ୍ବ୍ଲିର ମିଆଦ ବର୍ଷକପାଇଁ ବଢ଼ାଇ ଦିଆଯାଉଥାଏ । ସଭ୍ୟମାନଙ୍କର ବୟସ ବଢ଼ୁଥିଲା, ସମ୍ମାନ ବଢ଼ୁଥିଲା, କେବେ କେବେ କାହାର ମୃତ୍ୟୁ ବି ଘଟୁଥିଲା ଓ ସେହି ସ୍ମୃତି ବି କ୍ରମଶଃ ମଉଳି ଯାଉଥିଲା ଯେ ଦିନେ

ସେମାନେ ନିର୍ବାଚିତ ହୋଇ ଏହି ଗୃହକୁ ଆସିଥିଲେ । ବ୍ରିଟିଶ ସରକାର ନିର୍ବାଚନର ପକ୍ଷପାତୀ ନଥିଲେ । ନିର୍ବାଚନ ଦୈନନ୍ଦିନ ଜୀବନର ଧାରା ବିଭ୍ରାନ୍ତ କରିବ ଏବଂ ସତତ ବିବଦମାନ ବିଭିନ୍ନ ଦଳ ଓ ଧର୍ମର ଯେଉଁ ଉଜ୍ଜ୍ୱଳ ଚିତ୍ର ଭାରତ ପ୍ରଦର୍ଶିତ କରୁଛି, ତାହା ଅସ୍ପଷ୍ଟ ଓ ମଳିନ ହୋଇପଡ଼ିବ । ନିର୍ବାଚନ ନହେଲେ କୌଣସି ବ୍ୟକ୍ତି ଅବା ଗୋଷ୍ଠୀକୁ, କୃପାଲାଭ କରିବାର ଯୋଗ୍ୟତା ଯାହାର ଅଛି, ସହଜରେ ଗୁରୁତ୍ୱ ଦେଇ ହୁଏ ।

ସମଗ୍ର ଦେଶର ପରିସ୍ଥିତି, ବିଶେଷତଃ ଯେଉଁସବୁ ପ୍ରଦେଶରେ ଗୋଟିଏ ବ୍ୟକ୍ତିର ଶାସନ ଚାଲିଥିଲା, ସେଠାରେ କ୍ରମଶଃ ଉତ୍ତେଜନାରେ କଠିନ ହୋଇଉଠିଲା । କଂଗ୍ରେସ ଲୋକଙ୍କୁ ସେମାନଙ୍କର ମାମୁଲି କାର୍ଯ୍ୟକଳାପ ଲାଗି ଜଣ ଜଣ କରି ଜେଲ୍‌ରେ ଭର୍ତ୍ତି କରାଗଲା । ପୋଲିସ୍ ଓ ନିମ୍ନଶ୍ରେଣୀସ୍ଥ କର୍ମଚାରୀଙ୍କ ଅତ୍ୟାଚାରରେ ଗ୍ରାମାଞ୍ଚଳ ହାହାକାର କରି ଉଠିଲେ । ସରକାରଙ୍କର ଏହି ଭୃତ୍ୟମାନେ ଉପରିସ୍ଥ କର୍ମଚାରୀମାନଙ୍କ କୃପାଲାଭ ଆଶାରେ ଯୁଦ୍ଧ ନାମରେ ଯାହା ଇଚ୍ଛା ତାହା କରିଯାଉଥିଲେ । ଏହି ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ କିଛି କରିବାର ଆବଶ୍ୟକତା ଜରୁରୀ ହୋଇ ପଡ଼ିଲା ଏବଂ ଖ୍ରୀ: ୧୯୪୦, ମାର୍ଚ୍ଚ ମାସରେ ବିହାର ପ୍ରଦେଶର ରାମଗଡ଼ଠାରେ ମୌଲାନା ଅବୁଲ କାଲମ୍ ଆଜାଦଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ, ଏକମାତ୍ର ଅନୁସରଣୀୟ ପନ୍ଥା ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବା ନିଷ୍ପତ୍ତି ଗ୍ରହଣ କରାଗଲା । ତଥାପି ମଧ୍ୟ କଂଗ୍ରେସ କୌଣସି ନିର୍ଦ୍ଦିଷ୍ଟ ପଦକ୍ଷେପ ସଙ୍ଗେ ସଙ୍ଗେ ନନେଇ ଆନ୍ଦୋଳନ ନିମନ୍ତେ ପ୍ରସ୍ତୁତ ରହିବା ପାଇଁ ଜନସାଧାରଣଙ୍କୁ ଆହ୍ୱାନ କଲା ।

ଦେଶ ଭିତରେ ଏକ ଆଭ୍ୟନ୍ତରୀଣ ସଙ୍କଟ ଗଭୀରତର ହେଲାଭଳି ବୋଧ ହେଉଥିଲା ଏବଂ ଯେପରି ଜଣାଯାଉଥିଲା ସଂଘର୍ଷ ଅବଶ୍ୟମ୍ଭାବୀ । ଯୁଦ୍ଧକାଳୀନ ବ୍ୟବସ୍ଥା ଭାବରେ ଡିଫେନ୍‌ସ ଅଫ୍ ଇଣ୍ଡିଆ ଏକ୍‌ଟ ବା ଭାରତ ରକ୍ଷା ଆଇନ ଜାରି କରାଗଲା ଏବଂ ସାଧାରଣ କାର୍ଯ୍ୟକଳାପ ଦମନ କରିବା ଉଦ୍ଦେଶ୍ୟରେ, ଲୋକଙ୍କୁ ଗିରଫ କରି, ସେମାନଙ୍କ ଭିତରୁ ଅନେକଙ୍କୁ ବିଚାରଣାର ସୁଯୋଗ ନଦେଇ କାରାଗାରରେ ନିକ୍ଷେପ କରିବା ଉଦ୍ଦେଶ୍ୟରେ ବିସ୍ତୃତ ଭାବରେ ବ୍ୟବହୃତ ହେଲା ।

ଯୁଦ୍ଧ ପରିସ୍ଥିତିର ଅଭାବନୀୟ ପରିବର୍ତ୍ତନ ଘଟିଲା । ଜର୍ମାନୀ ଡେନ୍‌ମାର୍କ ଓ ନରୱେ ଆକ୍ରମଣ କଲା ଏବଂ ଅଳ୍ପକାଳ ପରେ ଅତି ବିସ୍ମୟକର ଭାବରେ ଫ୍ରାନ୍‌ସର ପତନ ଘଟିଲା । ଏସବୁ ଘଟଣା ଲୋକଙ୍କ ମନରେ ପ୍ରଗାଢ଼ ପ୍ରଭାବ ବିସ୍ତାରକଲା । ଲୋକଙ୍କ ମନରେ ପ୍ରତିକ୍ରିୟା ଭିନ୍ନ ଭିନ୍ନ ହେବା ସ୍ୱାଭାବିକ; କିନ୍ତୁ ଫ୍ରାନ୍‌ସ ପାଇଁ ଭାରତରେ ବିପୁଳ ସମବେଦନା ପ୍ରକାଶ ପାଉଥିଲା ଏବଂ ଡେନ୍‌ମାର୍କ ପରେ ପରେ ଓ ଇଂଲଣ୍ଡରେ ଜର୍ମାନୀର ବୋମାବର୍ଷୀ ବିମାନ-ମାନଙ୍କର ଅଗ୍ନି ଓ ଇସ୍ପାତର ଉତ୍ପାତ କାଳରେ ଭାରତୀୟ ମନ ଇଂଲଣ୍ଡ ପ୍ରତି ଦୟାର୍ଦ୍ର ହୋଇ ଉଠିଥିଲା । ଆଇନ ଅମାନ୍ୟ ଆନ୍ଦୋଳନ ନିମନ୍ତେ କଂଗ୍ରେସ ସଜବାଜ ହୋଇ ରହିଥିଲା; କିନ୍ତୁ ସ୍ୱାଧୀନ ଇଂଲଣ୍ଡର ଏ ପ୍ରକାର ମର୍ମନ୍ତୁଦ ପରିସ୍ଥିତିରେ କଂଗ୍ରେସ ଆନ୍ଦୋଳନ କଥା ଭାବିପାରିଲା ନାହିଁ । କେତେ ଲୋକ ଅବଶ୍ୟ ଥିଲେ, ଯେଉଁମାନେ ମନେକରୁଥିଲେ

ଯେ ଇଂଲଣ୍ଡର ଅସୁବିଧା ଓ ବିପଦ ଭାରତ ପକ୍ଷରେ ପରମ ସୁଯୋଗ; କିନ୍ତୁ କଂଗ୍ରେସର ନେତାମାନେ ଏ ପ୍ରକାର କୌଣସି ସୁଯୋଗରୁ, ଇଂଲଣ୍ଡର ଦୁର୍ଯୋଗରୁ, ଫାଇଦା ଉଠାଇବାର ବିରୋଧୀ ଥିଲେ ଏବଂ ସେକଥା ସେମାନେ ସର୍ବସାଧାରଣରେ ଘୋଷଣା କଲେ । ସାମୟିକ ଭାବରେ ଆଇନ ଅମାନ୍ୟ ଆନ୍ଦୋଳନ ବିଚାର ବାଦ୍ ଦିଆଗଲା ।

ବ୍ରିଟିଶ ସରକାର ସଙ୍ଗେ ସମାଧାନରେ ଉପନୀତ ହେବାପାଇଁ କଂଗ୍ରେସ ପକ୍ଷରୁ ଆଉ ଏକ ଉଦ୍ୟମ ହେଲା । ପୂର୍ବେ ଯେଉଁ ଉଦ୍ୟମ ହୋଇଥିଲା, ସେଥିରେ ଦୃଷ୍ଟି ଦୂରକୁ ପ୍ରସାରିତ କରି ଯୁଦ୍ଧର ଲକ୍ଷ୍ୟ ଓ ସେଥି ସଙ୍ଗେ ଭାରତର ଶାସନ ବ୍ୟବସ୍ଥାର ପରିବର୍ତ୍ତନ ବିଷୟରେ ଘୋଷଣା କରିବାପାଇଁ ପ୍ରସ୍ତାବ ଦିଆଯାଇଥିଲା । ବର୍ତ୍ତମାନର ପ୍ରସ୍ତାବ ଥିଲା ସଂକ୍ଷିପ୍ତ ଓ କ୍ଳୃପ୍ତ ଏବଂ ଏଥିରେ ଭାରତ ବିଷୟ କେବଳ ଉଲ୍ଲେଖ ଥିଲା । ଏହି ପ୍ରସ୍ତାବରେ ଭାରତୀୟ ସ୍ୱାଧୀନତା ସ୍ୱୀକାର କରିବାପାଇଁ ଏବଂ କେନ୍ଦ୍ରରେ ଏକ ଜାତୀୟ ସରକାର (ଯାହାର ଅର୍ଥ ବିଭିନ୍ନ ଦଳର ସହଯୋଗ) ପ୍ରତିଷ୍ଠା କରିବାପାଇଁ କୁହାଗଲା । ଏ ସନ୍ଧାନ୍ତରେ ସେହି ଅବସ୍ଥାରେ ବ୍ରିଟିଶ ପାର୍ଲିମେଣ୍ଟରେ କୌଣସି ନୂତନ ଆଇନ ଗ୍ରହଣ କରିବାର କଥା ନଥିଲା । ପ୍ରଚଳିତ ଆଇନର ପରିସର ଭିତରେ ଭାଇସ୍‌ରାୟ ଏକ ଜାତୀୟ ସରକାର ଗଠନ କରନ୍ତୁ ବୋଲି କଂଗ୍ରେସ ପ୍ରସ୍ତାବ ଦେଲା । ପ୍ରସ୍ତାବିତ ପରିବର୍ତ୍ତନ, ଯେହେତୁ ଗୁରୁତ୍ୱପୂର୍ଣ୍ଣ, ଆପୋଷ ଚୁକ୍ତି ଓ ପ୍ରଚଳିତ ଜରିଆରେ କରାଯାଇପାରିବ । ସମ୍ବିଧିସମ୍ମତ ଓ ଶାସନତାନ୍ତ୍ରିକ ପରିବର୍ତ୍ତନ କରିବାକୁ ଅବଶ୍ୟ ପଡ଼ିବ; କିନ୍ତୁ ସେସବୁ ଅଧିକତର ଅନୁକୂଳ ସୁଯୋଗ ଓ ସୁବିସ୍ତୃତ ଆଲୋଚନା ନିମନ୍ତେ ରଖାଯାଇପାରିବ । ତେବେ ପ୍ରଥମେ ପୂର୍ଣ୍ଣ ସ୍ୱାଧୀନତା ନିମନ୍ତେ ଭାରତର ଅଧିକାର ସ୍ୱୀକୃତ ହେବା ଦରକାର । ଏହି ସବୁ ସର୍ତ୍ତ ଉପରେ ଯୁଦ୍ଧ ଉଦ୍ୟମ ନିମନ୍ତେ ପୂର୍ଣ୍ଣ ସହଯୋଗ ନିବେଦନ କରାଗଲା ।

ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କଦ୍ୱାରା ଉପସ୍ଥାପିତ ଏହିସବୁ ପ୍ରସ୍ତାବ କଂଗ୍ରେସ ବହୁକାଳରୁ ବରାବର କହିଆସୁଥିବା ଦାବିର ଉତ୍‌କଣ୍ଠାକୁ କିୟତ୍ ପରିମାଣରେ ପ୍ରଶମିତ କଲା । ଆମେ ଯେଉଁ ଅଧିକାର ଅର୍ଥାତ୍ ପୂର୍ଣ୍ଣ ସ୍ୱରାଜ ଦାବି କରି ଆସୁଥିଲୁ, ତା'ର ତୁଳନାରେ ରାଜାଜୀଙ୍କ ପ୍ରସ୍ତାବର ଦାବି ଯଥେଷ୍ଟ ଭାବରେ କମ୍ ଥିଲା । କୌଣସି ଆଇନଗତ ଅସୁବିଧା ନଥାଇ ଅବିଳମ୍ବେ ସେ ସବୁ କାର୍ଯ୍ୟକାରୀ କରାଯାଇ ପାରନ୍ତା । ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଗୋଷ୍ଠୀ ଓ ଦଳର ଅଧିକାର ସେହି ପ୍ରସ୍ତାବରେ ହାସଲ ହେବାର ଅବକାଶ ଥିଲା; କାରଣ ଜାତୀୟ ସରକାର ଅନିବାର୍ଯ୍ୟ ଭାବରେ ହୁଅନ୍ତା ଏକ ମିଳିତ ସରକାର । କଂଗ୍ରେସ ପ୍ରସ୍ତାବରେ ବ୍ରିଟିଶ ସରକାରଙ୍କର ବିଚାର ସ୍ଥିତି ମଧ୍ୟ ବିବେଚିତ ହୋଇଥିଲା । ଭାଇସ୍‌ରାୟ ରହିବେ କିନ୍ତୁ ଜାତୀୟ ସରକାରଙ୍କର କୌଣସି ନିଷ୍ପତ୍ତିକୁ ସେ ବାତିଲ୍ କରିବେନାହିଁ ବୋଲି ଧରିନିଆ-ଯାଇଥିଲା; କିନ୍ତୁ ପ୍ରଶାସନର ଶୀର୍ଷରେ ତାଙ୍କର ଉପସ୍ଥିତି ଅର୍ଥ ବ୍ରିଟିଶ ସରକାରଙ୍କ ସଙ୍ଗେ ଘନିଷ୍ଠ ଯୋଗାଯୋଗ ରକ୍ଷା । ଯୁଦ୍ଧ ଉଦ୍ୟମର ସମଗ୍ର ବିନ୍ୟାସ ପ୍ରଧାନ ସେନାପତିଙ୍କ କର୍ତ୍ତୃତ୍ୱରେ ରହିବ । ବ୍ରିଟିଶ କର୍ତ୍ତୃକ ବ୍ୟବସ୍ଥିତ ଅସାମରିକ ପ୍ରଶାସନର ଜଟିଳ ସଙ୍ଗଠନ ସ୍ଥିତ କାଏମ୍ ରହିବ । ପ୍ରକୃତପକ୍ଷେ, ପ୍ରସ୍ତାବିତ ପରିବର୍ତ୍ତନର ପ୍ରଧାନ କଥା ହେବ ପ୍ରଶାସନରେ

କରୁଥିଲେ । ଏକ ନୂତନ ଭାବଧାରାର ପ୍ରବର୍ତ୍ତନ, ଏକ ନୂତନ ଦୃଷ୍ଟିଭଙ୍ଗୀ ଓ ଏକ ନୂତନ ଶକ୍ତିର ସଞ୍ଚାର । ଫଳରେ ଯୁଦ୍ଧ ଉଦ୍ୟମରେ ଲୋକ-ସହଯୋଗ ବର୍ଦ୍ଧିତ ହେବ ଏବଂ ଦେଶ ସମ୍ମୁଖୀନ ହେଉଥିବା ବହୁ ଗୁରୁତର ସମସ୍ୟାର ସମାଧାନ ବାହାର କରିବା ସହଜ ହେବ । ଏହି ସବୁ ପରିବର୍ତ୍ତନ ସଙ୍ଗେ ଯୁଦ୍ଧପରେ ଭାରତ ସ୍ୱାଧୀନ ହେବ—ଏହି ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତି ଭାରତରେ ଏକ ନୂତନ ମନସ୍ତାତ୍ତ୍ୱିକ ପୃଷ୍ଠଭୂମି ସୃଷ୍ଟି କରିବ, ଯାହା ଯୁଦ୍ଧରେ ଭାରତର ପୂର୍ଣ୍ଣପ୍ରାଣ ସହଯୋଗ ନିମନ୍ତେ ମାର୍ଗ ଉନ୍ମୁକ୍ତ ଓ ପ୍ରଶସ୍ତ କରିବ ।

ଅତୀତର ଯେତେ ସବୁ ଘୋଷଣା ଓ ଅଭିଜ୍ଞତା ପରେ ଏହି ପ୍ରସ୍ତାବ କରିବା କଂଗ୍ରେସ ପକ୍ଷରେ କିଛି ସହଜ ନଥିଲା । ଗୋଟାଏ ଜାତୀୟ ସରକାର ଗଢ଼ାହେଇ ଏପରି ସୀମାବନ୍ଧନ ଭିତରେ ଅସହାୟ ଓ ନିଷ୍କ୍ରିୟ ହେଇପଡ଼ିବ ବୋଲି ଅନେକେ ମନେକଲେ । କଂଗ୍ରେସ ମହଲରେ ଏହା ବିରୁଦ୍ଧରେ ପ୍ରବଳ ଆପତ୍ତି ସୃଷ୍ଟି ହେଲା ଏବଂ ମୁଁ ବି ନିଜେ ବହୁ ଭାବିଚିନ୍ତି ଏଥିପାଇଁ ରାଜି ହେଲି । ମୁଁ ରାଜି ହେଲି ମୁଖ୍ୟତଃ ବୃହତ୍ତର ଆନ୍ତର୍ଜାତିକ ବିଚାର ଦୃଷ୍ଟିରୁ ଏବଂ ମୋର ଅଭିଳାଷ ଥିଲା, ଯଦି ଏହା ସମ୍ମାନଜନକ ଭାବରେ ସମ୍ଭବ ହେବାର ଥାଏ, ତାହାହେଲେ, ଫାସିଷ୍ଟବାଦ ଓ ନାଜିବାଦ ବିରୁଦ୍ଧରେ ଚାଲିଥିବା ସଂଗ୍ରାମରେ ଆମେ ସମ୍ପୂର୍ଣ୍ଣ ଭାବରେ ଯୋଗଦେବୁ ।

କିନ୍ତୁ ଆମ ଆଗରେ ଆଉରି ବଡ଼ ଏକ ଅସୁବିଧା ଥିଲା ଓ ତାହା ହେଉଛି ଗାନ୍ଧିଜୀଙ୍କ ବିରୋଧ । ଗାନ୍ଧିଜୀ ବିରୋଧ କରୁଥିଲେ କେବଳ ଶାନ୍ତି ଓ ଅହିଂସା କାରଣରୁ । ଯୁଦ୍ଧ ଉଦ୍ୟମରେ ସାହାଯ୍ୟ କରିବୁ ବୋଲି ଆମେ ପୂର୍ବେ ଏକାଧିକବାର ଯେଉଁ ସହଯୋଗ ନିବେଦନ କରିଥିଲୁ, ସେ ତା'ର ବିରୋଧ କରିନଥିଲେ; କିନ୍ତୁ ଏଥିରେ କୌଣସି ସନ୍ଦେହ ନାହିଁ ଯେ ସେ ଏ ବିଷୟରେ ବଡ଼ ଅସ୍ୱସ୍ତି ଅନୁଭବ କରିଥିବେ । ଯୁଦ୍ଧ ଆରମ୍ଭ ହେଲାବେଳେ ସେ ଭାଇସ୍‌ରୟଙ୍କୁ କହିଥିଲେ ଯେ ଏ ଯୁଦ୍ଧ ପାଇଁ କଂଗ୍ରେସ କେବଳ ନୈତିକ ସାହାଯ୍ୟ ଦେବ; କିନ୍ତୁ ତା'ର ପରେ କଂଗ୍ରେସ ବାରମ୍ବାର ଯେଉଁ ନୀତି ବିସ୍ଥାନ କଲା, ତାହା ଭିନ୍ନ ପ୍ରକାର ହେଲା । ଗୋଟାଏ ହିଂସାତ୍ମକ ଯୁଦ୍ଧ ଉଦ୍ୟମ ନିମନ୍ତେ କଂଗ୍ରେସ ଦାୟିତ୍ୱ ନେବାପାଇଁ ରାଜି ହେବା ବିରୁଦ୍ଧରେ ନିର୍ଦ୍ଦିଷ୍ଟ ଭାବରେ ତାଙ୍କର ମତ ସେ ପ୍ରକାଶକଲେ । ଏ ସମ୍ପର୍କରେ ତାଙ୍କର ବିଚାର ଏତେ ଦୃଢ଼ ଥିଲା ଯେ ଏହି ପ୍ରଶ୍ନ ଉପରେ ସେ ତାଙ୍କର ସହଯୋଗୀମାନଙ୍କ ପାଖରୁ, ଏପରିକି କଂଗ୍ରେସ ସଙ୍ଗଠନରୁ ସୁଦ୍ଧା ଭିନ୍ନ ମତ ପୋଷଣ କରି ରହିଲେ । ତାଙ୍କ ସଙ୍ଗେ ସଂଶ୍ଳିଷ୍ଟ ସମସ୍ତଙ୍କ ପକ୍ଷରେ ଏହା ବଡ଼ କ୍ଳେଶକର ଥିଲା; କାରଣ ଆଜିର କଂଗ୍ରେସ ଥିଲା ତାଙ୍କର ସର୍ଜନା । ତଥାପି ଯୁଦ୍ଧ ପରିସ୍ଥିତିରେ ତାଙ୍କର ଅହିଂସା ନୀତି ପ୍ରୟୋଗ କଂଗ୍ରେସ ସଙ୍ଗଠନ ଗ୍ରହଣ କରି ନଥିଲା ଏବଂ ବ୍ରିଟିଶ ସରକାର ସଙ୍ଗେ ବୁଝାମଣା କରିବାପାଇଁ ଅଧୀର କଂଗ୍ରେସ ତା'ର ସମ୍ମାନିତ ତଥା ପ୍ରିୟନେତାଙ୍କଠାରୁ ଅଲଗା ହେଇ ପଡ଼ିବା ପର୍ଯ୍ୟନ୍ତ ଆଗେଇଗଲା ।

ଦେଶର ପରିସ୍ଥିତି ନାନା ଭାବରେ ଖରାପ ଆଡ଼କୁ ଗତି କରିଥିଲା । ରାଜନୀତି ଦୃଷ୍ଟିରୁ ତାହା ଥିଲା ସ୍ପଷ୍ଟ । ଅର୍ଥନୀତି ଦିଗରୁ ଚାଷୀ ଓ ଶ୍ରମିକମାନଙ୍କ ଭିତରୁ କେତେ ଯୁଦ୍ଧ ଅବସ୍ଥା ଯୋଗୁଁ ସାମାନ୍ୟ ଉନ୍ନତି କରିଥିଲେ ସୁଦ୍ଧା ଅନ୍ୟ ସମସ୍ତେ ପ୍ରାୟ ଯୁଦ୍ଧର ବାଧା ଭୋଗୁଥିଲେ ।

ଏ ସମୟରେ ଯେଉଁମାନେ ପ୍ରକୃତରେ ଲାଭବାନ ହେଉଥିଲେ, ସେମାନେ ହେଉଚନ୍ତି ଯୁଦ୍ଧ-ମାଲ ଯୋଗାଣରେ ନିଯୁକ୍ତ ବ୍ୟବସାୟୀ, ଠିକାଦାର ଓ ଗୋଟାଏ ଗୋଷ୍ଠୀ ସରକାରୀ କର୍ମଚାରୀ, ମୁଖ୍ୟତଃ ଇଂରେଜ, ଯେଉଁମାନେ ଯୁଦ୍ଧକର୍ମ ନିମନ୍ତେ ମୋଟା ଦରମାରେ ନିଯୁକ୍ତ ହେଇଥିଲେ । ସରକାରଙ୍କ ଧାରଣା ଥିଲା ଯେ ଅତ୍ୟଧିକ ଲାଭର ଲୋଭ ଦେଖାଇ ଉତ୍ସାହିତ କଲେ ଯୁଦ୍ଧ ଉଦ୍ୟମ ଅଧିକତର ସହଯୋଗ ସଂଗ୍ରହ କରିବ ଓ ସଫଳ ହେବ । ଦୁର୍ନୀତି ଓ ପ୍ରିୟାପ୍ରୀତି ତୋଷଣ ପ୍ରବଳ ଭାବରେ ଚାଲିଥିଲା ଓ ସେଥିଉପରେ କୌଣସି ନିୟନ୍ତ୍ରଣ ନଥିଲା । ଲୋକଙ୍କ ଭିତରେ ସମାଲୋଚନା ପ୍ରକାଶ ପାଇଲେ ତାହା ଯୁଦ୍ଧ ଉଦ୍ୟମକୁ ନିରୁତ୍ସାହିତ କରିବାପାଇଁ ଉଦ୍ଦିଷ୍ଟ ବୋଲି ବିବେଚିତ ହେଉଥିଲା ଏବଂ ସେଥିହେତୁରୁ ଭାରତରକ୍ଷା ଆଇନ ତା'ର ସମସ୍ତ ଆୟୁଧ ନେଇ ସେଥି ପ୍ରତି ଧାବିତ ହେଉଥିଲା । ଏ ପରିସ୍ଥିତିରେ ଜଣେ ଉତ୍ସାହିତ ହେବାର କିଛି କାରଣ ନଥିଲା ।

ଅତଏବ, ବ୍ରିଟିଶ ସରକାର ସଙ୍ଗେ ବୁଝାମଣା ଉଦ୍ଦେଶ୍ୟରେ ଆଉ ଥରେ ସବୁମନ୍ତେ ଉଦ୍ୟମ କରିବା ପାଇଁ ଏହି ସବୁ କାରଣ ଆମକୁ ପ୍ରବୃତ୍ତ କଲା । ଫଳ କ'ଣ ହେବ ? ସେପରି କିଛି ଆଶାଜନକ ନୁହେଁ । ସ୍ଥାୟୀ କୃଷକମାନେ ନିଜ ନିଜର ସଙ୍ଗଠନ ଧରି ବର୍ତ୍ତମାନ ନିୟନ୍ତ୍ରଣ ଓ ସମାଲୋଚନାରୁ ମୁକ୍ତ ଭାବରେ ଯେଉଁ ଆନନ୍ଦ ଉପଭୋଗ କରୁଥିଲେ, ଗତ ଦୁଇ ପୁରୁଷରୁ ଅଧିକ କାଳ ଧରି ତାହା ସେମାନଙ୍କ ଭାଗ୍ୟରେ ଘଟିନଥିଲା । ଯାହା ପ୍ରତି ସେମାନଙ୍କର ଶୁଭଦୃଷ୍ଟି ନଥିଲା, ତାକୁ କେବେ ବିଚାରଣାର ସୁଯୋଗ ଦେଇ କିମ୍ବା ନଦେଇ ଜେଲ୍‌ରେ ଭର୍ତ୍ତି କରିଦେଇପାରୁଥିଲେ । ବିଶାଳ ପ୍ରଦେଶମାନଙ୍କର ଗଭର୍ଣ୍ଣରମାନେ ନିରଙ୍କୁଶ କ୍ଷମତା ଭୋଗକରୁଥିଲେ । ପରିସ୍ଥିତି ଦ୍ୱାରା ବାଧ୍ୟ ନହେଲେ ପରିବର୍ତ୍ତନ ନିମନ୍ତେ ସେମାନେ ସମ୍ମତ ହେବେ କାହିଁକି ? ସାମ୍ରାଜ୍ୟବାଦର ଏହି ଇମାରତ ଶୀର୍ଷରେ ବିରାଜିତ ଥିଲେ ଭାଇସ୍‌ରାୟ ଲର୍ଡ୍ ଲିନ୍‌ଲିଥ୍‌ଗୋ ଏବଂ ତାଙ୍କର ଉଚ୍ଚ ଆସନକୁ ମାନିବା ଭଳି ଚଉପାଶରେ ରାଜସତ୍କାର ପ୍ରାବଲ୍ୟ ଥିଲା । ସ୍ଥୂଳକାୟ, ଅଳ୍ପବୁଦ୍ଧିସମ୍ପନ୍ନ, ଶିଳାଭଳି ଘନ, ଶିଳାଭଳି ପ୍ରାୟ ଛିଦ୍ରଶୂନ୍ୟ ସ୍ଥାନ ଜଣେ ପ୍ରାଚୀନପନ୍ଥୀ ବ୍ରିଟିଶ ସମ୍ଭ୍ରାନ୍ତ ବ୍ୟକ୍ତିର ସମସ୍ତ ଗୁଣ ଓ ଅବଗୁଣର ଆଧାର ଲର୍ଡ୍ ଲିନ୍‌ଲିଥ୍‌ଗୋ ସାଧୁ ଉଦ୍ଦେଶ୍ୟ ନେଇ, ଆନ୍ତରିକତା ସହକାରେ ସେ ଜଟିଳ ପରିସ୍ଥିତିରୁ କୌଣସି ପ୍ରକାରେ ଏକ ମାର୍ଗ ଖୋଲିବା ପାଇଁ ଆତୁର ଥିଲେ; କିନ୍ତୁ ତାଙ୍କର ସୀମାବନ୍ଧନ ଥିଲା ନାନାବିଧ । ତାଙ୍କର ମନ ସେହି ପୁରାତନ ଧାରାରେ କାର୍ଯ୍ୟ କରୁଥିଲା ଏବଂ ନୂତନ କିଛି ପ୍ରବର୍ତ୍ତନ କରିବା କଥାରୁ ଓହରିଯାଉଥିଲା । ଯେଉଁ ଶାସକ-ଶ୍ରେଣୀରୁ ସେ ଆସିଥିଲେ, ତା'ର ପରମ୍ପରା ଦ୍ୱାରା ତାଙ୍କର ଦୃଷ୍ଟି ଏକ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ କେବଳ ପହଞ୍ଚିପାରୁଥିଲା । ସିଭିଲ୍ ସର୍ଭିସ୍ ଓ ଅନ୍ୟ ଯେଉଁମାନଙ୍କଦ୍ୱାରା ସେ ପରିବେଷ୍ଟିତ ହିଁଥିଲେ, ସେମାନଙ୍କର ଆଖି ଓ କାନ ଦେଇ ସେ ଦେଖୁଥିଲେ ଓ ଶୁଣୁଥିଲେ । ମୌଳିକ ରାଜନୈତିକ ଓ ସାମାଜିକ ପରିବର୍ତ୍ତନ ବିଷୟରେ ଉଚ୍ଚବାଚ କରିବା ଲୋକଙ୍କ ପ୍ରତି ତାଙ୍କର ବିଶ୍ୱାସ ନଥିଲା । ଭାରତରେ ବ୍ରିଟିଶ ସାମ୍ରାଜ୍ୟ ଓ ତା'ର ମୁଖ୍ୟ ପ୍ରତିନିଧିଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ପ୍ରତି ଯେଉଁମାନେ ଯଥୋଚିତ ମୂଲ୍ୟ ଦେଉନଥିଲେ, ସେମାନଙ୍କୁ ସେ ନାପସନ୍ଦ

ପଶ୍ଚିମ ୟୁରୋପ ଉପରେ ଜର୍ମାନୀର ଝଟିକା-ଅଭିଯାନଜନିତ ଚମତ୍କାରିତ୍ୱ ସେହି କେତେ ଦିନରେ ଇଂଲଣ୍ଡରେ ଏକ ପରିବର୍ତ୍ତନ ଘଟିଲା । ମିଃ ନେଭିଲ ଚେମ୍ବରଲେନ୍ ହଟିଯାଇଥିଲେ ଓ କେତେକ ଦିଗରୁ ତାହା ଆଶ୍ୱାସନାର କଥା ବି ଥିଲା । ନେଟ୍‌ଲେଣ୍ଡ୍‌ର ମାରକୁଇସ୍ ଯିଏ ଶାସ୍ତ୍ର ହୁକୁମତ୍‌ର ଥିଲେ ଏକ ଉଜ୍ଜ୍ୱଳ ରତ୍ନ, ଭାରତ-ସଚିବ ପଦରୁ ହଟିଗଲେ । ସେ ଯିବାରେ କାହାର ଦୁଃଖ ନଥିଲା । ତାଙ୍କର ଆସନକୁ ଆସିଲେ ମିଷ୍ଟର ଆମେରୀ, ଯାହାଙ୍କ ବିଷୟରେ ବିଶେଷ କିଛି ଜଣାଶୁଣା ନଥିଲା; କିନ୍ତୁ ଯେତିକ ଜଣାଥିଲା ତାହା ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ହାଉସ୍ ଅଫ୍ କମନ୍‌ସରେ ଚୀନ ଉପରେ ଜାପାନର ଆକ୍ରମଣକୁ ସେ ବଳିଷ୍ଠ ଭାବରେ ସମର୍ଥନ କରିଥିଲେ ଏବଂ ସେଥି ନିମନ୍ତେ ସେ ଯେଉଁ ଯୁକ୍ତି ବାଢ଼ିଥିଲେ ତାହା ହେଉଚି ଯେ ଚୀନରେ ଜାପାନ ଯାହା କରୁଚି, ସେଥିଲାଗି ଯଦି ତା'ର ନିନ୍ଦାବାଦ କରିବାର ହୁଏ, ଭାରତ ଓ ମିଶରରେ ତା'ର କାର୍ଯ୍ୟକଳାପ ଲାଗି ମଧ୍ୟ ଇଂଲଣ୍ଡକୁ ଠିକ୍ ସେହିଭଳି ନିନ୍ଦା କରିବାକୁ ପଡ଼ିବ । (୧) ଏ ଯୁକ୍ତି ଅଭ୍ରାନ୍ତ; କିନ୍ତୁ ବିକୃତ ଭାବରେ ତା'ର ପ୍ରୟୋଗ କରାଯାଇଥିଲା ଗୋଟାଏ ଭ୍ରାନ୍ତ ଉଦ୍ଦେଶ୍ୟରେ ।

କିନ୍ତୁ ବ୍ରିଟିଶ ମନ୍ତ୍ରି-ପରିଷଦର କାହା ଉପରେ ଯଦି ବହୁତ କିଛି ନିର୍ଭର କରୁଥିଲା ସେ ହେଉଚନ୍ତି ନୂତନ ପ୍ରଧାନମନ୍ତ୍ରୀ ଓ୍ୱିନ୍‌ଷ୍ଟନ୍ ଚର୍ଚ୍ଚିଲ । ଭାରତୀୟ ସ୍ୱାଧୀନତା ସମ୍ପର୍କରେ ଚର୍ଚ୍ଚିଲଙ୍କ ଅଭିମତ ଥିଲା ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଏବଂ ତାହା ବାରମ୍ବାର ସେ ପ୍ରକାଶ କରିଥିଲେ । ଭାରତୀୟ ସ୍ୱାଧୀନତାର ସେ ଥିଲେ ଜଣେ ଅନମନୀୟ ବୈରୀ । ଜାନୁଆରୀ, ୧୯୩୦ରେ ସେ କହିଥିଲେ : "ସହଜରେ ହେଉ କି ବଳପୂର୍ବକ ହେଉ, ଗାନ୍ଧି ଓ ଭାରତୀୟ କଂଗ୍ରେସକୁ ଏବଂ ସେମାନଙ୍କର ଆଦର୍ଶ ଓ ଉଦ୍ଦେଶ୍ୟକୁ ପଦଦଳିତ କରିବାକୁ ପଡ଼ିବ ।" ସେହି ବର୍ଷ ଡ଼ିସେମ୍ବର ମାସରେ ସେ କହିଥିଲେ : "ଭାରତୀୟ ଜୀବନ ଉପରୁ ଓ ତା'ର ଉନ୍ନତିର ମାର୍ଗ ଉପରୁ କର୍ତ୍ତୃତ୍ୱ ଅପସାରଣ କରିବାର ତିଳେମାତ୍ର ଅଭିଳାଷ ବ୍ରିଟିଶ ଜାତିର ନାହିଁ···ଯାହା ଆମର ସମସ୍ତ ସ୍ୱଶାସିତ ଉପନିବେଶ ଓ ଅଧୀନ ରାଜ୍ୟମାନଙ୍କ ଅପେକ୍ଷା ବ୍ରିଟିଶ ସାମ୍ରାଜ୍ୟକୁ ଅଧିକତର ବଳିଷ୍ଠ ଓ ଗୌରବୋଜ୍ଜ୍ୱଳ କରିଚି, ବ୍ରିଟିଶ୍ ରାଜାଙ୍କ ମୁକୁଟର ସେହି ମୁକ୍ତାମାନ ତଥା ଅମୂଲ୍ୟ ରତ୍ନଟିକୁ ପରିତ୍ୟାଗ କରିବାର ଲେଶମାତ୍ର ଉଦ୍ଦେଶ୍ୟ ଆମର ନାହିଁ ।"

ପରେ, ଯେଉଁ ଦୁଇଟି ଚମତ୍କାର ଶବ୍ଦ ପ୍ରଲୋଭନ ସ୍ୱରୂପ ଆମ ଉଦ୍ଦେଶ୍ୟରେ ପ୍ରୟୋଗ କରାଯାଇଥାଏ, ସେହି 'ଡୋମିନିଅନ୍ ଷ୍ଟେଟସ୍' ବା ଔପନିବେଶିକ ସ୍ୱାୟତ୍ତଶାସନର ଅର୍ଥ ଭାରତ ପ୍ରତି ପ୍ରକୃତରେ କ'ଣ ହୋଇପାରେ ତାହା ସେ ବୁଝାଇଥିଲେ । ଖ୍ରୀ: ୧୯୩୧, ଜାନୁଆରୀ ମାସରେ ସେ କହିଥିଲେ : "ଏହା (ଔପନିବେଶିକ ସ୍ୱାୟତ୍ତଶାସନ) ଅନ୍ତିମ ଲକ୍ଷ୍ୟ ବୋଲି ଆମେ ସବୁବେଳେ ଭାବନା କରି ଆସିଚୁ; କିନ୍ତୁ ଯୁଦ୍ଧ ସମୟର ସମ୍ମେଳନମାନ ରେ ଭାରତରେ ପ୍ରତିନିଧିମାନେ ଯେପରି ଭାବରେ ସମ୍ମିଳିତ ହୋଇଥାନ୍ତି, ସେତିକି କେବଳ ଶିଷ୍ଟାଚାରର ଭାବନା ବ୍ୟତୀତ କେହି କେବେ ମନେକରିନାହିଁ । ଯେ କୌଣସି ସମୟରେ ହେଲେ

(୧) ମିଷ୍ଟର ଆମେରୀ, ହାଉସ୍ ଅଫ୍ କମନ୍‌ସ; ୨୭ ଫେବ୍ରୁଆରୀ, ୧୯୩୩

ଭାରତ ସମ୍ପର୍କରେ ଯେଉଁ ନୀତି ଓ ବିଧାନ କାର୍ଯ୍ୟକାରୀ କରାଯିବ, ତାହା ଆମକୁ ଆଗରୁ ସୁନିର୍ଦ୍ଦିଷ୍ଟ କରିବା ପ୍ରୟୋଜନୀୟ ମନେହେବା ଭୁଲ୍ ।'' ପୁନର୍ବାର ଖ୍ରୀ: ୧୯୩୧, ଡ଼ିସେମ୍ବର ମାସରେ : ''ସର୍ବସାଧାରଣ କ୍ଷେତ୍ରର ବହୁ ନେତୃସ୍ଥାନୀୟ ବ୍ୟକ୍ତି ଯାହାଙ୍କ ଭିତରେ ସେ ସମୟରେ ମୁଁ ବି ଥିଲି, ଔପନିବେଶିକ ସ୍ୱାୟତ୍ତଶାସନ ବିଷୟରେ ବକ୍ତୃତା କରିଚନ୍ତି ଆଉ ମୁଁ ବି କରିଚି; କିନ୍ତୁ ମୁଁ କେବେହେଲେ ଭାବିନାହିଁ ଯେ ଆମେ ଯେତେଦୂର ଆଗକୁ ଦେଖିପାରୁଥାଉଁ, ସେଥିଭିତରେ ଭାରତ ସେହି ସାମ୍ବିଧାନିକ ଅଧିକାର ଓ ବ୍ୟବସ୍ଥା ଲାଭକରିବ, ଯାହା କାନାଡ଼ା ପାଇଚି···ତା'ର ସାମ୍ରାଜ୍ୟରୁ ଭାରତକୁ ବାଦ୍‌ଦେଲେ ଇଂଲଣ୍ଡ ସବୁଦିନ ପାଇଁ ଏକ ବୃହତ୍ ଶକ୍ତି ଭାବରେ ବିଲୟ ଭଜିବ ।''

ଏହା ଥିଲା ସମସ୍ୟାର ମର୍ମ । ଭାରତ ହେଉଚି ସାମ୍ରାଜ୍ୟ, ଆଉ ତା'ର ଉପରେ ଆଧିପତ୍ୟ କରି, ତାକୁ ଶୋଷଣ କରି ଇଂଲଣ୍ଡ ବଳିଷ୍ଠ ହେଉଚି, ଗୌରବ ଅର୍ଜ୍ଜନ କରିଚି ଏବଂ ପୃଥିବୀରେ ଏକ ବୃହତ୍ ଶକ୍ତି ହୋଇପାରିଚି । ଏକ ବିଶାଳ ସାମ୍ରାଜ୍ୟର ଅଧିପତି ଭାବରେ ବିନା, ଇଂଲଣ୍ଡକୁ ଅନ୍ୟ ଭାବରେ ଚର୍ଚ୍ଚିଲ୍ ଧାରଣା କରିପାରିନାହାନ୍ତି ଏବଂ ସେଥି ହେତୁରୁ ଏକ ସ୍ୱାଧୀନ ଭାରତ ତାଙ୍କର ଧାରଣାରେ ପ୍ରବେଶ କରିପାରିନି । ଆଉ ଔପନିବେଶିକ ସ୍ୱାୟତ୍ତଶାସନ ଯାହା ଆମ ପକ୍ଷରେ ସହଜଲଭ୍ୟ ବୋଲି ବହୁ ଦିନରୁ ଆମକୁ କୁହାଯାଉଚି, ସେ ବିଷୟରେ ଚର୍ଚ୍ଚିଲ୍‌ଙ୍କ ବ୍ୟାଖ୍ୟା ହେଉଚି, ତାହା କେବଳ ଶବ୍ଦର ଆଡ଼ମ୍ବର ଆଉ ସେଥି ସଙ୍ଗେ ସ୍ୱାଧୀନତା ଓ କ୍ଷମତାର କୌଣସି ସମ୍ପର୍କ ନାହିଁ । ପୂର୍ଣ୍ଣ ଅର୍ଥରେ ଔପନିବେଶିକ ସ୍ୱାୟତ୍ତଶାସନ କହିଲେ ଯାହା ବୁଝାଏ, ସେପରି ଭାବରେ ସୁଦ୍ଧା କିଛି ଗ୍ରହଣ କରିବା ପାଇଁ ଆମେ ପ୍ରସ୍ତୁତ ନଥିଲୁ ଏବଂ ଆମେ ଦାବିକରି ବସିଲୁ ପୂର୍ଣ୍ଣ ସ୍ୱାଧୀନତା । ଚର୍ଚ୍ଚିଲ୍ ଓ ଆମ ଭିତରର ବ୍ୟବଧାନ ପ୍ରକୃତପକ୍ଷେ ବିରାଟ ।

ଆମେ ତାଙ୍କର ଉକ୍ତି ମନେପକାଇଲୁ ଓ ବୁଝିଲୁ ଯେ ସେ ଜଣେ ଜିଦ୍‌ଖୋର ଓ ପଛକୁ-ବିମୁଖ ବ୍ୟକ୍ତି । ତାଙ୍କର ନେତୃତ୍ୱରେ ଇଂଲଣ୍ଡ ପାଖରୁ ଆମର ଆଶା କରିବାର କିଛି ନାହିଁ । ତାଙ୍କର ଅନୁପମ ସାହସ ଓ ନେତୃତ୍ୱ ଦେବାର ଅପୂର୍ବ କୁଶଳତା ସତ୍ତ୍ୱେ ସେ ପ୍ରତିକ୍ରିୟାଧର୍ମୀ କରନ୍ତି । ଊନବିଂଶ ଶତକର ରକ୍ଷଣଶୀଳ ସାମ୍ରାଜ୍ୟବାଦୀ ଇଂଲଣ୍ଡର ଏବଂ ନୂତନ ବିଶ୍ୱର ନାନା ଜଟିଳତା ଓ ଶକ୍ତିର ଖେଳ ବୁଝିବାପାଇଁ ସେ ଯେପରି ଅସମର୍ଥ, ତଦପେକ୍ଷା ଆହୁରି ଅସମର୍ଥ ଯେଉଁ ଭବିଷ୍ୟତ ରୂପ ନେଉଥିଲା ତା'ର ସ୍ୱରୂପ ଉପଲବ୍ଧି କରିବାପାଇଁ । ତଥାପି ସେ ଜଣେ ମହାନ୍ ବ୍ୟକ୍ତି; ଯିଏ ଖୁବ୍ ବଡ଼ ପଦକ୍ଷେପ ନେଇପାରନ୍ତି । ଫ୍ରାନ୍ସ ଓ ଇଂଲଣ୍ଡକୁ ନେଇ ଗୋଟାଏ ଯୁକ୍ତରାଷ୍ଟ୍ର ଗଠନର ପ୍ରସ୍ତାବ ସେ ଯାହା ଦେଇଥିଲେ, ନିତାନ୍ତ ବିପଦଗ୍ରସ୍ତ ଅବସ୍ଥାରେ ହେଉପଛେ, ତା'ର ପଛରେ ଦୂରଦୃଷ୍ଟି ଥିଲା, ପ୍ରଚଳିତ ପରିସ୍ଥିତି ସଙ୍ଗେ ପାଦ ମିଳାଇ ଯିବାର ଅନୁକୂଳତା ଥିଲା ଏବଂ ଭାରତ ମନରେ ତାଙ୍କର ଏ ଭାବନା ଗଭୀର ରେଖାପାତ କରିଥିଲା । ହୁଏତ ପ୍ରଧାନମନ୍ତ୍ରୀ ଭାବରେ ତାଙ୍କର ବିଶାଳ ଦାୟିତ୍ୱବୋଧ, ତାଙ୍କର ଦୃଷ୍ଟିକୋଣ ସମ୍ପ୍ରସାରିତ କରିଥିଲା ଓ ଅତୀତର ବହୁ ବିଦ୍ୱେଷ ଓ ଧାରଣାର ବନ୍ଧନରୁ ତାଙ୍କୁ ମୁକ୍ତକଲା । ହୁଏତ ନବ ପରିସ୍ଥିତିର ଆବଶ୍ୟକତା, ଯାହା ଭୁଲିଇବା ତାଙ୍କ ପକ୍ଷରେ

ତାଙ୍କର ସର୍ବଶ୍ରେଷ୍ଠ ଦାୟିତ୍ୱ, ସେଥିଲାଗି କେବଳ ସେ ଉପଲବ୍ଧି କରିବାକୁ ବାଧ ହେବେ ଯେ ଯୁଦ୍ଧର ଦୃଷ୍ଟିକୋଣରୁ ଭାରତର ସ୍ୱାଧୀନତା ଅନିବାର୍ଯ୍ୟ କେବଳ ନୁହେଁ, ବାଞ୍ଛନୀୟ ମଧ୍ୟ । ମୋର ମନେପଡ଼େ ଅଗଷ୍ଟ, ୧୯୩୯ରେ ମୁଁ ଚୀନ୍ ଗଲାବେଳେ, ଉଭୟର ବନ୍ଧୁ ଜଣେ ସମ୍ମାନିତ ବ୍ୟକ୍ତିଙ୍କ ଜରିଆରେ, ମୁଁ ସେହି ଯୁଦ୍ଧପୀଡ଼ିତ ଦେଶକୁ ଯାଉଥିବାରୁ, ସେ ମତେ ଶୁଭେଚ୍ଛା ଜଣାଇଥିଲେ ।

ଅତଏବ, ବହୁତ କିଛି ଆଶା କରିନଥିଲେ ହେଁ ଆମେ ସେହି ପ୍ରସ୍ତାବ ଦେଲାବେଳେ ନିତାନ୍ତ ଆଶାହୀନ ନଥିଲୁ । ଅନତିବିଳମ୍ବେ ବ୍ରିଟିଶ ସରକାରଙ୍କ ପାଖରୁ ଉତ୍ତର ଆସିଗଲା । ବ୍ରିଟିଶ ସରକାର ଆମ ପ୍ରସ୍ତାବକୁ ସମ୍ପୂର୍ଣ୍ଣ ଭାବରେ ପ୍ରତ୍ୟାଖ୍ୟାନ କରିଦେଲେ । କେବଳ ସେତିକି ନୁହେଁ, ଯେପରି କୌଶଳପୂର୍ଣ୍ଣ ଭାଷାରେ ସେ ଉତ୍ତର ଲେଖାଯାଇଥିଲା, ସେଥିରୁ ଆମର ହୃଦ୍‌ବୋଧ ହେଲା ଯେ ଭାରତରେ କ୍ଷମତା ହସ୍ତାନ୍ତର କରିବାର ଉଦ୍ଦେଶ୍ୟ ସେମାନଙ୍କର ମୋଟେ ନାହିଁ । ଭାରତରେ ବିଭେଦ ବୃଦ୍ଧି କରିବାପାଇଁ ଏବଂ ଯାହା କିଛି ମଧ୍ୟଯୁଗୀୟ ଓ ପ୍ରତିକ୍ରିୟାଶୀଳ ସେସବୁ ଦୃଢ଼ୀଭୂତ କରିବାପାଇଁ ସେମାନେ ବଦ୍ଧପରିକର । ସେମାନେ ହୁଏତ ମନେକରୁଥିଲେ ଯେ ଭାରତ ଉପରୁ ସାମ୍ରାଜ୍ୟବାଦୀ ନିୟନ୍ତ୍ରଣ କୋହଳ କରିବା ସଙ୍ଗେ ସଙ୍ଗେ ଗୃହଯୁଦ୍ଧ ଲାଗିଯିବ, ଆଉ ଭାରତ ବରବାଦ ହେଇଯିବ ।

ବ୍ରିଟିଶ ସରକାରଙ୍କର ଏ ପ୍ରକାର ଆଚରଣ ସଙ୍ଗେ ଆମେ ଅଭ୍ୟସ୍ତ ଥିଲେ ହେଁ ଏହି ଉତ୍ତର ଆମକୁ କ୍ରୁଦ୍ଧ କଲା ଏବଂ ମନରେ ଅବସାଦଭାବ ଜାଗ୍ରତ ହେଲା । ମୋର ମନେ ପଡ଼ୁଛି ଠିକ୍ ଏହି ସମୟରେ ମୁଁ ଏକ ପ୍ରବନ୍ଧ ଲେଖିଥିଲି, ଯାହାର ଶିରୋନାମା ଥିଲା 'ପଥ-ବିଚ୍ଛେଦ' । ମୁଁ ଭାରତର ମୁକ୍ତିକାମୀ ଥିଲି ବହୁ କାଳରୁ ଏବଂ ହୃଦୟଙ୍ଗମ କରିଥିଲି ଯେ ଗୋଟାଏ ଜାତି ଭାବରେ ଉନ୍ନତ କରିବାକୁ ହେଲେ ଆମ ପାଇଁ ଅନ୍ୟ ପନ୍ଥା ଆଉ ନାହିଁ । ଇଂଲଣ୍ଡ ସଙ୍ଗେ ମଧ୍ୟ ସ୍ୱାଭାବିକ ବନ୍ଧୁ ସମ୍ପର୍କ ଓ ସହଯୋଗ ପ୍ରତିଷ୍ଠା କରିପାରେ କେବଳ ଗୋଟାଏ ସ୍ୱାଧୀନ ଭାରତ । ତଥାପି ହେଁ ମୁଁ ସେହି ବନ୍ଧୁ ସମ୍ପର୍କ ନେଇ ଆଶାୟୀ ଥିଲି । ବର୍ତ୍ତମାନ ସହସା ମୁଁ ଅନୁଭବ କଲି ଯେ ଇଂଲଣ୍ଡ ଯଦି ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତିତ ନହୁଏ; ଆମେ ଉଭୟେ ଗୋଟାଏ ମାର୍ଗରେ ଅଗ୍ରସର ହେବାର ଅବକାଶ ନାହିଁ; ଭିନ୍ନ ଭିନ୍ନ ମାର୍ଗ ଆମକୁ ଅନୁସରଣ କରିବାକୁ ପଡ଼ିବ ।

## ୫. ବ୍ୟକ୍ତିଗତ ସତ୍ୟାଗ୍ରହ

ଅତଏବ, ଯାହା ଆମର ଶକ୍ତିର ଉତ୍ସ ଉନ୍ମୁକ୍ତ କରି, ଗୋଟାଏ ମହାଜାତିର ସମସ୍ତ ଆଗ୍ରହ ସହକାରେ, ଆମକୁ ବିଶ୍ୱ-ସଂଗ୍ରାମରେ ଲମ୍ଫ ଦେବାର ଉତ୍ସାହ ଦେଇଥାନ୍ତା, ସେହି ମୁକ୍ତି-କାମନାର ମାଦକତା ପରିବର୍ତ୍ତେ ଆମେ ଅନୁଭବ କଲୁ କେବଳ ଆଶାହତର ବେଦନା । ଆମ ପ୍ରସ୍ତାବର ଅସ୍ୱୀକାର ଲିଖିତ ଥିଲା ଉଦ୍ଧତ ଭାଷାରେ, ଆଉ ସେଥିରୁ ଫୁଟିଉଠିଥିଲା ବ୍ରିଟିଶ ଶାସନ ଓ ଜାତିର ଆତ୍ମ-ଗୌରବ । ସେଥିସଙ୍ଗେ ଗୋଟି ଗୋଟି କରି ହିସାବ କରାଯାଇଥିଲା, ସ୍ୱାଧୀନତା ଲାଭକରିବାକୁ ହେଲେ ଭାରତକୁ କି କି ସର୍ତ୍ତ ଆବଶ୍ୟକୀୟ

ଭାବରେ ପୂରଣ କରିବାକୁ ପଡ଼ିବ । ସେଥିଭିତରୁ କେତେକ ସର୍ତ୍ତ କେବେହେଲେ ପୂରଣ ହେବାର ନଥିଲା । ଆମର ଆଉ ବୁଝିବାର ବାକି ନଥିଲା ଯେ ବ୍ରିଟିଶ ପାର୍ଲାମେଣ୍ଟର ଏହି ଯେତେ ସବୁ ଆଗ୍ରହପୂର୍ଣ୍ଣ ବିତର୍କ, ଚକ୍‌ମକ୍ ବଚନ ଓ ଶବ୍ଦାଡ଼ମ୍ବର, ରାଜନୈତିକ ଚାଲବାଜି ଛଡ଼ା ଅନ୍ୟ କିଛି ନୁହେଁ ଏବଂ ସେଥିରେ ପ୍ରଚ୍ଛନ୍ନ ରହିଛି ଭାରତ ଉପରେ, ଯେତେକାଳ ସମ୍ଭବ, ସାମ୍ରାଜ୍ୟବାଦୀ କର୍ତ୍ତୃତ୍ୱ ବଜାୟ ରଖିବାର ଅବିଚଳିତ ଉଦ୍ଦେଶ୍ୟ । ଭାରତର ସଜୀବ ଶରୀରକୁ ନଖୀ ସାମ୍ରାଜ୍ୟବାଦ ନିଜର କବଳରେ ଅସହାୟ କରି ରଖିବ ଏବଂ ଏହା ହେଉଛି ମୁକ୍ତି ଓ ଗଣତନ୍ତ୍ରର ସେହି ଆନ୍ତର୍ଜାତିକ ବ୍ୟବସ୍ଥାର ପରିମାପ ବା ନମୁନା; ଯେଉଁଥିପାଇଁ ଇଂଲଣ୍ଡ ସଂଗ୍ରାମ କରୁଛି ବୋଲି ଉଚ୍ଚସ୍ୱରରେ ଘୋଷଣା କରୁଥିଲା ।

ଏହା ବ୍ୟତୀତ ଆଉ ଏକ ବିଷୟରେ ବି ତାତ୍ପର୍ଯ୍ୟପୂର୍ଣ୍ଣ ସୂଚନା ମିଳିଥିଲା : ବର୍ମା ଏକ ମାମୁଲି ଦାବି ଉପସ୍ଥାପିତ କରିଥିଲା ଯେ ଯୁଦ୍ଧ ଶେଷ ହେବା ପରେ ତାକୁ ଔପନିବେଶିକ ସ୍ୱାୟତ୍ତଶାସନ ଦିଆଯିବ ବୋଲି ପ୍ରତିଶ୍ରୁତି ଦିଆଯାଉ । ଏହା ପ୍ରଶାନ୍ତ ମହାସାଗରରେ ଯୁଦ୍ଧ ଲାଗିବାର ଅନେକ ଆଗର କଥା ଏବଂ ଯାହା ହେଲେ ସୁଦ୍ଧା ଏହି ଯୁଦ୍ଧର ପରିଚାଳନାରେ ହସ୍ତକ୍ଷେପ କରୁନଥିଲା; କାରଣ ଯୁଦ୍ଧର ଅବସାନ ପରେ କେବଳ ଏହା କାର୍ଯ୍ୟକାରୀ ହେବାର କଥା । ବର୍ମା ଯାହା ଚାହିଁଥିଲା, ତାହା ପୂର୍ଣ୍ଣ ସ୍ୱାଧୀନତା ନୁହେଁ; ଔପନିବେଶିକ ସ୍ୱାୟତ୍ତଶାସନ କେବଳ । ଭାରତରେ ଯେମିତି ବର୍ମାରେ ବି ସେମିତି ବାରମ୍ବାର କୁହାଯାଉଥିଲା ଯେ ଏ ଦେଶମାନଙ୍କରେ ବ୍ରିଟିଶ ନୀତିର ଲକ୍ଷ୍ୟ ହେଉଛି ଔପନିବେଶିକ ସ୍ୱାୟତ୍ତଶାସନର ପ୍ରବର୍ତ୍ତନ । ଭାରତଠାରୁ ବର୍ମାର ଅବସ୍ଥା ଭିନ୍ନ ଥିଲା । ଭାରତ ବିଷୟ ପଡ଼ିଲେ ବ୍ରିଟିଶ ସରକାର, ସତ୍ୟ ହେଉ କି କାଳ୍ପନିକ ହେଉ, ଯେଉଁସବୁ ଆପତ୍ତି ଉତ୍ଥାପନ କରିଥାନ୍ତି, ତାହା ବର୍ମା ପ୍ରତି ଲାଗୁହେଉନଥିଲା; କାରଣ ଭାରତ ଅପେକ୍ଷା ସେ ଦେଶ ଥିଲା ଅଧିକତର ଭାବରେ ସମଜାତୀୟ । ତଥାପି ବର୍ମାର ସେହି ସର୍ବସମ୍ମତ ଦାବି ଅସ୍ୱୀକୃତ ହେଲା ଏବଂ କୌଣସି ପ୍ରତିଶ୍ରୁତି ଦିଆଗଲାନାହିଁ । ଔପନିବେଶିକ ସ୍ୱାୟତ୍ତଶାସନ ହୋଇପଡ଼ିଲା କୌଣସି ଦୂର-ଭବିଷ୍ୟତର ସ୍ୱପ୍ନ ମାତ୍ର । ସେହି ଅସ୍ପଷ୍ଟ ତଥା ସସ୍ତା ସଦୃଶ ଆଧିବିଦ୍ୟକ ଅବଧାରଣା କୌଣସି ଅନ୍ୟ ଲୋକ ନିମନ୍ତେ, ଆମଠାରୁ ଭିନ୍ନ ଅନ୍ୟ କୌଣସି ଯୁଗ ନିମନ୍ତେ କେବଳ ପ୍ରଯୁଜ୍ୟ । ଓ୍ୱିନ୍‌ଷ୍ଟନ୍ ଚର୍ଚ୍ଚିଲ୍ ସ୍ପଷ୍ଟ କହିଲେ ତାହା ଶୂନ୍ୟ ବାଗାଡ଼ମ୍ବର ଓ ବାହ୍ୟ ଲୌକିକତା ମାତ୍ର; ଯାହାର କୌଣସି ସମ୍ପର୍କ ବର୍ତ୍ତମାନ କିମ୍ବା ଅଦୂର ଭବିଷ୍ୟତ ସଙ୍ଗେ ନଥିଲା । ସେହି-ପରି ମଧ୍ୟ ଭାରତର ସ୍ୱାଧୀନତା ଦାବି ବିରୁଦ୍ଧରେ ଯେଉଁସବୁ ଆପତ୍ତି ଉତ୍ଥାପନ କରାଯାଉଥିଲା, ଯେଉଁସବୁ ଅଯୌକ୍ତିକ ସର୍ତ୍ତ ରଖାଯାଉଥିଲା, ସମସ୍ତେ ଜାଣୁଥିଲେ ଯେ ତାହା ଶୂନ୍ୟ ବାକ୍ୟବାହୁଲ୍ୟ କେବଳ । ଆଉ ସେଥିରେ ବାସ୍ତବତା କିମ୍ବା ତାତ୍ପର୍ଯ୍ୟ କିଛି ନାହିଁ । ଯଦି କିଛି ବାସ୍ତବତା ସେଥିରେ ଥିଲା, ତାହା ହେଉଛି, ଯେତେ ଯାହା ହେଲେ ସୁଦ୍ଧା, ଭାରତକୁ ଯାବୁଡ଼ି ରଖିବାପାଇଁ ଇଂଲଣ୍ଡର ସଙ୍କଳ୍ପ ଆଉ ତା'ର କବଳରୁ ମୁକ୍ତ ହେବା ପାଇଁ ଭାରତର ସଙ୍କଳ୍ପ । ଅନ୍ୟ ସବୁ କିଛି କେବଳ ମାରପେଞ୍ଚ କଥା, ଓକିଲସୁଲଭ ବାକ୍‌ଚାତୁରୀ କିମ୍ବା କୂଟନୈତିକ ପ୍ରତାରଣା । ଏହି ଦୁଇ ବିରୋଧୀଭାବର ସଂଘାତର ପରିଣାମ କ'ଣ ହେବ

ଭବିଷ୍ୟତ କେବଳ ପ୍ରମାଣିତ କରିବ ।

ଅତି ଚଞ୍ଚଳ ଭବିଷ୍ୟତ ପ୍ରମାଣ କଲା ବର୍ମାରେ ବ୍ରିଟିଶ ନୀତିର ପରିଣାମ । ଭାରତରେ ମଧ୍ୟ ସେହି ଭବିଷ୍ୟତ ଧୀରେ ଧୀରେ ଉନ୍ମୋଚିତ ହେଲା; ଆଉ ସେଥି ସଙ୍ଗେ ଆସିଲା ସଙ୍ଘର୍ଷ, ତିକ୍ତତା ଓ ନିର୍ଯାତନା ।

ବ୍ରିଟିଶ ସରକାରଙ୍କ ଶେଷ ଅପମାନଜନକ ଘୋଷଣା ପରେ, ଭାରତରେ ଏହା ସବୁ ଘଟୁଥିଲା । ତା'ର ନିରବଚ୍ଛିନ୍ନ ହୋଇ ରହିବା ଅସମ୍ଭବ ହୋଇପଡ଼ିଲା । ଗୋଟାଏ ବିପଦ-ସଙ୍କୁଳ ଯୁଦ୍ଧ ଯେତେବେଳେ ଚାଲିଥିଲା, ଯେତେବେଳେ ପୃଥିବୀର ସର୍ବତ୍ର ଲୋକେ ଲକ୍ଷ ଲକ୍ଷ ସଂଖ୍ୟାରେ ସ୍ୱାଧୀନତାର ଆଦର୍ଶ ନିମନ୍ତେ ଅଖଣ୍ଡ ବିଶ୍ୱାସ ଘେନି ବିପୁଳ ତ୍ୟାଗ ସ୍ୱୀକାର କରୁଥିଲେ, ଏହା ଯଦି ହୁଏ ବ୍ରିଟିଶ ସରକାରଙ୍କ ମନୋଭାବ ତାହାହେଲେ ଏହି ସଙ୍କଟ କଟିଗଲା ପରେ ଓ ଲୋକମତର ତାଗିଦା ପ୍ରଶମିତ ହେବା ପରେ, ତାଙ୍କର ମନୋଭାବ କ'ଣ ହେବ ? ଇତ୍ୟବସରରେ, ଭାରତରେ ସର୍ବତ୍ର ଆମ ଭିତରୁ ଲୋକଙ୍କୁ ବାଛି ବାଛି କାରାଗାରରେ ନେଇ ବନ୍ଦୀ କରାଯାଉଥିଲା । ଆମର ଦୈନନ୍ଦିନ କାର୍ଯ୍ୟକଳାପ ସୀମାବଦ୍ଧ କରିବା ସଙ୍ଗେ ସଙ୍ଗେ ସେଥି ଉପରେ ନାନା ଭାବରେ ହସ୍ତକ୍ଷେପ କରାଗଲା । କାରଣ ଏକଥା ମନେ ରଖିବାକୁ ପଡ଼ିବ ଯେ ବ୍ରିଟିଶ ସରକାର ଭାରତରେ ସର୍ବଦା ଜାତୀୟତାବାଦୀ ଆନ୍ଦୋଳନ ଓ ଶ୍ରମିକ ଆନ୍ଦୋଳନ ବିରୁଦ୍ଧରେ ଆକ୍ରମଣ ଚଳାଇଚନ୍ତି । ଆଇନ-ଅମାନ୍ୟ ଆନ୍ଦୋଳନ ଆରମ୍ଭ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବା ପାଇଁ ସରକାରଙ୍କ ଧୈର୍ଯ୍ୟ ନଥାଏ । କେବେ କେବେ ସେହି ଆକ୍ରମଣ ତେଜିଉଠି ସବୁ ସାମ୍ମୁଖ୍ୟରେ ବିସ୍ତୃତ ହୁଏ, କେବେ ବା ସାମାନ୍ୟ ଶାନ୍ତ ହୁଏ; କିନ୍ତୁ ତା'ର କ୍ରିୟା ସର୍ବଦା ଅବ୍ୟାହତ ରହିଚି । (୧) ପ୍ରଦେଶ-

(୧) ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ମଧ୍ୟ ବହୁ ଲୋକ ଜେଲ୍‌ରେ ଥିଲେ । ମୋର କେତେ ଜଣ ତରୁଣ ସାଥୀ ପନ୍ଦର ବର୍ଷ ଜେଲ୍‌ରେ ବିତାଇସାରିଲା ପରେ ବି ଏ ପର୍ଯ୍ୟନ୍ତ ଖଲାସ ହୋଇ ନାହାନ୍ତି । ଦଣ୍ଡିତ ହେଲାବେଳକୁ ସେମାନେ ବାଳକ ଥିଲେ କହିଲେ ଚଳେ ଏବଂ କାହାର ହେଲେ ବୟସ କୋଡ଼ିଏ ପାର ହୋଇ ନଥିବ । ବର୍ତ୍ତମାନ ସେମାନେ ପ୍ରୌଢ଼ ଓ ସେମାନଙ୍କ କେଶ ଧଳା ହୋଇ ଆସିଲାଣି । ଯୁକ୍ତପ୍ରଦେଶର କାରାଗାରମାନଙ୍କୁ ଥରକୁଥର ଆସିଲାବେଳେ ମୋର ସେମାନଙ୍କ ସଙ୍ଗେ ଦେଖା ହୋଇଚି । ମୁଁ ଜେଲ୍‌କୁ ଆସିଚି, କେତେ ଦିନ ରହିଚି ଓ ପୁଣି ଫେରିଯାଇଚି; କିନ୍ତୁ ସେମାନେ ଜେଲ୍ ଫାଟକ ବାହାରକୁ ଆସିନାହାନ୍ତି । ସେମାନେ ଯୁକ୍ତପ୍ରଦେଶ ଅଧିବାସୀ ଏବଂ ଏହି କେତେ ବର୍ଷ ଧରି ଯୁକ୍ତପ୍ରଦେଶର କାରାଗାରମାନଙ୍କରେ ସେମାନଙ୍କୁ ରଖାଯାଇଥିଲେ ସୁଦ୍ଧା ସେମାନଙ୍କୁ ଦଣ୍ଡାଦେଶ ହୋଇଥିଲା ପଞ୍ଜାବରେ ଓ ସେଥି ହେତୁରୁ ପଞ୍ଜାବ ସରକାରଙ୍କ ବନ୍ଦୀ ଭାବରେ ସେମାନେ ଏସବୁ ଜେଲ୍‌ରେ ରହିଥିଲେ । ସେମାନଙ୍କୁ ଖଲାସ କରିବା ପାଇଁ ଯୁକ୍ତପ୍ରଦେଶର କଂଗ୍ରେସ ସରକାର ସୁପାରିଶ କରିଥିଲେ; କିନ୍ତୁ ପଞ୍ଜାବ ସରକାର ସେଥି ସଙ୍ଗେ ଏକମତ ହେଲେନାହିଁ ।

ମାନଙ୍କରେ ସ୍ୱଳ୍ପ କେତେ ମାସର କଂଗ୍ରେସ ଶାସନକାଳରେ ଏହା ଏକପ୍ରକାର ନିସ୍ତବ୍ଧ ଅବସ୍ଥାରେ ଥିଲା ଏବଂ କଂଗ୍ରେସ ସରକାରମାନେ ଇସ୍ତଫା ଦେବା ପରେ ପରେ ଏହା ପୁଣି ତେଜିଉଠିଲା ଏବଂ ସ୍ଥାୟୀ କୃତ୍ୟକମାନେ ଖ୍ୟାତନାମା କଂଗ୍ରେସ ବ୍ୟକ୍ତି ଓ ବ୍ୟବସ୍ଥାପକ ସଭାର ସଭ୍ୟମାନଙ୍କୁ ବନ୍ଦୀ କରିବା ନିମନ୍ତେ ଆଦେଶ ଦେଇ ଏକ ବିଚିତ୍ର ଆନନ୍ଦ ଉପଭୋଗ କରୁଥିଲେ ।

ନିର୍ଦ୍ଦିଷ୍ଟ ଭାବରେ କିଛି କରିବା ଅନିବାର୍ଯ୍ୟ ହୋଇପଡ଼ିଲା, କାରଣ କେବେ କେବେ ବିଫଳତା କର୍ମହୀନତାରୁ ହିଁ ଉପୁଜିଥାଏ । ଆମର ପ୍ରତିଷ୍ଠିତ ନୀତି ଅନୁସାରେ ସେହି କର୍ମ ହୋଇପାରେ କେବଳ ଆଇନ ଅମାନ୍ୟ ପ୍ରକୃତିର । ତଥାପି, ତାହା ଯେପରି ଏକ ଗଣଆନ୍ଦୋଳନର ଆକାର ନ ଧରେ ସେଥିଲାଗି ସତର୍କତା ଅବଲମ୍ବନ କରାଗଲା ଏବଂ ଆଇନ-ଅମାନ୍ୟ କେତେକ ମନୋନୀତ ବ୍ୟକ୍ତିଙ୍କ ଭିତରେ ସୀମିତ ରହିଲା । ଏହାକୁ ବ୍ୟକ୍ତିଗତ ସତ୍ୟାଗ୍ରହ ନାମରେ ଅଭିହିତ କରାଗଲା ଏବଂ ଏଥିରେ ଗଣଆନ୍ଦୋଳନର ଚରିତ୍ର ନଥିଲା । ବସ୍ତୁତଃ ଏହା ଥିଲା ଏକ ଉଚ୍ଚକୋଟୀର ନୈତିକ ପ୍ରତିବାଦ । ଶାସନକଳର କାର୍ଯ୍ୟ ଓଲଟପାଲଟ କରିବା ଦିଗରେ ଯେକୌଣସି ଉଦ୍ୟମ ସୁଚିନ୍ତିତ ଭାବରେ ଆମେ ପରିହାର କରିବୁ ଏବଂ ଶାସନ କାର୍ଯ୍ୟରେ ଅଡୁଆ ସୃଷ୍ଟି କରିବା ଲୋକଙ୍କୁ ଜେଲ୍‌ରେ ଭରିତ କରିବା ପାଇଁ କର୍ତ୍ତୃପକ୍ଷଙ୍କୁ ସହଜରେ ସୁଯୋଗ ଦେବୁ—ଏହା ଜଣେ ରାଜନୀତିଜ୍ଞର ଦୃଷ୍ଟି କୋଣରୁ ବିଚକ୍ଷଣବୋଧ ହେବାର କଥା । ପୃଥିବୀର କେଉଁଠି ହେଲେ ଆକ୍ରମଣାତ୍ମକ ରାଜନୈତିକ କର୍ମ କିମ୍ବା ବିପ୍ଳବର ଗତି ଓ ପ୍ରକୃତି ଏପରି ହୋଇନାହିଁ । ତଥାପି ବିପ୍ଳବାତ୍ମକ ରାଜନୀତି ସଙ୍ଗେ ନୈତିକତାର ସମନ୍ୱୟ ଥିଲା ଗାନ୍ଧିଜୀଙ୍କ ପନ୍ଥା ଏବଂ ଏପରି କୌଣସି ଆନ୍ଦୋଳନ ଆରମ୍ଭ ହେବା ମାତ୍ରେ ତାଙ୍କର ନେତୃତ୍ୱ ଥିଲା ଅପରିହାର୍ଯ୍ୟ । ବ୍ରିଟିଶ ନୀତି ଆଗରେ ଆମେ ମୁଣ୍ଡ ନୁଆଁଇବୁ ନାହିଁ ଏବଂ ସେଥିଲାଗି ସ୍ୱେଚ୍ଛାକୃତ ଭାବରେ ନିର୍ଯ୍ୟାତନା ବରଣ କରି ଆମେ ଆମର ବିରକ୍ତି ଓ ସଙ୍କଳ୍ପ ପ୍ରଦର୍ଶିତ କରୁଚୁ; ଅଥଚ ଗଣ୍ଡଗୋଳ ସୃଷ୍ଟି କରିବା ଆମର ଉଦ୍ଦେଶ୍ୟ ନୁହେଁ—ଏହା ଥିଲା ଗାନ୍ଧିଜୀଙ୍କ ଆନ୍ଦୋଳନର ନିଜସ୍ୱ ପ୍ରକୃତି ।

ଏହି ବ୍ୟକ୍ତିଗତ ସତ୍ୟାଗ୍ରହ ଆନ୍ଦୋଳନ ଅତି ସାମାନ୍ୟ ଭାବରେ ଆରମ୍ଭ ହେଲା । ପ୍ରତ୍ୟେକ ବ୍ୟକ୍ତିକୁ ଏଥିରେ ଅଂଶ ଗ୍ରହଣ କରିବା ପୂର୍ବରୁ ଗୋଟାଏ ପ୍ରକାର କିଛି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡ଼ୁଥାଏ ଓ ବିହିତ ଅନୁମତି ଗ୍ରହଣ କରିବାକୁ ହୋଇଥାଏ । ଯେଉଁମାନେ ଯୋଗ୍ୟ ବିବେଚିତ ହୁଅନ୍ତି ସେମାନେ ଗୋଟାଏ କିଛି ସାଧାରଣ ଆଇନ ଭଙ୍ଗ କରି ଗିରଫ ହୁଅନ୍ତି ଓ ସେମାନଙ୍କ ଉପରେ କାରାଦଣ୍ଡ ଆଦେଶ ହୋଇଥାଏ । ଆମର ଯେ ପ୍ରକାର ରୀତି, ପ୍ରଥମେ ନେତୃସ୍ଥାନୀୟ ଲୋକେ ଅର୍ଥାତ୍ କଂଗ୍ରେସ କାର୍ଯ୍ୟକାରୀ କମିଟି ସଭ୍ୟ, ପ୍ରଦେଶ-ମାନଙ୍କର ପୂର୍ବତନ ମନ୍ତ୍ରୀ, ବ୍ୟବସ୍ଥାପକ, ଅଖିଳ ଭାରତୀୟ କଂଗ୍ରେସ କମିଟି ଓ ପ୍ରଦେଶ କଂଗ୍ରେସ କମିଟି ସଭ୍ୟମାନେ ଏଥିପାଇଁ ମନୋନୀତ ହୋଇଥାନ୍ତି; କିନ୍ତୁ କ୍ରମଶଃ ଏ ସଂଖ୍ୟା ବଢ଼ିଚାଲିଲା ଓ ପ୍ରାୟ ପଚିଶ ତିରିଶରୁ ହଜାର ନରନାରୀ କାରାବରଣ କଲେ । ସରକାରଙ୍କ ଦ୍ୱାରା ରହିତ ପ୍ରାଦେଶିକ ବ୍ୟବସ୍ଥାସଭାମାନଙ୍କରେ ଆମର ବହୁସଂଖ୍ୟକ ସଭ୍ୟ ଓ ବାଚସ୍ପତି

ଏହାର ଅନ୍ତର୍ଭୁକ୍ତ ଥିଲେ । ଏପରିଭାବରେ, ଆମେ ପ୍ରଦର୍ଶିତ କଲୁ ଯେ ଆମର ନିର୍ବାଚିତ ବ୍ୟବସ୍ଥାପକ ସଭାଗୁଡ଼ିକୁ ଯଦି କାର୍ଯ୍ୟ କରିବାକୁ ଦିଆନଗଲା, ତାହାହେଲେ ସେଥିର ସଭ୍ୟମାନେ ବରଂ କାରାବାସ ପସନ୍ଦ କରିବେ ସିନା, କୌଣସି ସ୍ୱେଚ୍ଛାଚାରୀ ଶାସନ ଆଗରେ ମୁଣ୍ଡ ନୁଆଁଇବେ ନାହିଁ ।

ଆନୁଷ୍ଠାନିକ ଭାବରେ ବ୍ୟକ୍ତିଗତ ସତ୍ୟାଗ୍ରହ ନିବେଦନ କରିବା ଲୋକଙ୍କ ବ୍ୟତୀତ, ଅନ୍ୟମାନେ କେଉଁଠି ଗୋଟାଏ ଭାଷଣ ଦେଇ କିମ୍ବା ସେଭଳି କିଛି କାର୍ଯ୍ୟ କରି ସହସ୍ର-ସଂଖ୍ୟାରେ ଗିରଫ ହେଲେ ଏବଂ ସେମାନଙ୍କୁ ଏକେ କାରାଦଣ୍ଡ ଆଦେଶ ହେଲା କିମ୍ବା ବିଚାର ନିମନ୍ତେ ଅଦାଲତକୁ ନଆଣି ଅଟକବନ୍ଦ ଭାବରେ ରଖାଗଲା । ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହେବାର ଅଳ୍ପ କିଛିକାଳ ପରେ ଗୋଟାଏ ଭାଷଣ ଲାଗି ମତେ ଗିରଫ କରାଗଲା ଓ ଚାରିବର୍ଷ ଜେଲ୍‌ଦଣ୍ଡ ଦିଆଗଲା ।

ଅକ୍ଟୋବର, ୧୯୪୦ରୁ ବର୍ଷିକରୁ ଅଧିକ କିଛିକାଳ ଏ ସମସ୍ତେ ଜେଲ୍‌ରେ ରହିଲେ । ଯେତିକ ସମ୍ବାଦ ଆମ ପାଖରେ ପହଞ୍ଚିପାରୁଥିଲା, ଆମେ ସେଥିରୁ ଯୁଦ୍ଧର ଗତି ଏବଂ ଭାରତ ତଥା ବାହାର ଦୁନିଆରେ ଘଟୁଥିବା ନାନା ବିଷୟ ସମ୍ପର୍କରେ ଜାଣିବାର ପ୍ରୟାସ କରୁଥିଲୁ । ପ୍ରେସିଡ଼େଣ୍ଟ ରୁଜ୍‌ଭେଲ୍‌ଟଙ୍କ ଚତୁର୍ବିଧ ମୁକ୍ତି ବିଷୟରେ ଆମେ ପଢ଼ିଲୁ; ଆଟ୍‌ଲାଣ୍ଟିକ୍ ଚାର୍ଟର୍ ବିଷୟ ଶୁଣିଲୁ ଏବଂ ପରେ ପରେ ଚର୍ଚ୍ଚିଲ୍‌ଙ୍କ ବ୍ୟାଖ୍ୟାରୁ ମଧ୍ୟ ଶୁଣିଲୁ ଯେ ଏହି ଚାର୍ଟର୍ ବା ସନନ୍ଦ ଭାରତ ପ୍ରତି ପ୍ରଯୁଜ୍ୟ ନୁହେଁ ।

ଖ୍ରୀ: ୧୯୪୧, ଜୁନ୍ ମାସରେ ହିଟ୍‌ଲର ଅଚାନକ ଭାବରେ ରୁଷିଆ ଆକ୍ରମଣ କଲେ । ଏ ସମ୍ବାଦରେ ଆମେ ବିଚଳିତ ହୋଇପଡ଼ିଲୁ ଏବଂ ଉତ୍କଣ୍ଠିତ ଆଗ୍ରହ ସହକାରେ ଯୁଦ୍ଧ ପରିସ୍ଥିତିର ସେହିସବୁ ନାଟକୀୟ ପରିବର୍ତ୍ତନ ଲକ୍ଷ୍ୟ କରିବାକୁ ଲାଗିଲୁ ।

ଖ୍ରୀ: ୧୯୪୧, ଡ଼ିସେମ୍ବର ଚାରି ତାରିଖରେ ଆମ ଭିତରୁ ଅନେକେ ଜେଲ୍‌ରୁ ଖଲାସ ହେଲେ; ମାତ୍ର ତିନିଦିନ ପରେ ଜାପାନ ପର୍ଲ୍ ହାର୍ବର୍ ଉପରେ ଚଢ଼ାଉ କଲା; ଆରମ୍ଭ ହେଲା ପ୍ରଶାନ୍ତ ମହାସାଗରର ଯୁଦ୍ଧ ।

## ୭· ପର୍ଲ୍ ହାର୍ବର : ଗାନ୍ଧୀ ଓ ଅହିଂସା

ଆମେ ଜେଲ୍‌ରୁ ଖଲାସ ହୋଇ ଆସିଲାବେଳକୁ ଭାରତ ଓ ଇଂଲଣ୍ଡ ଭିତରେ ଚାଲିଥିବା ବିବାଦ କୌଣସି ଭାବରେ ହେଲେ ବଦଳି ନଥିଲା । କାରାଗାରର ପ୍ରଭାବ ଲୋକଙ୍କ ଉପରେ ନାନା ଭାବରେ ପଡ଼ିଥାଏ । କେତେ ଭାଙ୍ଗି ପଡ଼ନ୍ତି କିମ୍ବା ଦୁର୍ବଳ ହୋଇ ପଡ଼ନ୍ତି; ଅନ୍ୟମାନେ ଏକପ୍ରକାର କଠିନତା ପ୍ରାପ୍ତ ହୁଅନ୍ତି ଏବଂ ନିଜର ଆଦର୍ଶ ଉପରେ ଅଧିକ ଭାବରେ ଦୃଢ଼ ହୋଇ ଉଠନ୍ତି । ସାଧାରଣତଃ ଏହି ଦ୍ୱିତୀୟ କିସମର ଲୋକଙ୍କ ପ୍ରଭାବ ଜନସାଧାରଣଙ୍କ ଉପରେ ବିଶେଷ ଭାବରେ ପଡ଼ିଥାଏ । ଜାତୀୟତାବାଦୀ ସଂଗ୍ରାମ ଦିଗରୁ ଦେଖିଲେ ଆମର ସ୍ଥିତି ଅପରିବର୍ତ୍ତିତ ରହିଥିଲେ ସୁଦ୍ଧା, ପାର୍ଲ୍ ହାର୍ବର୍ ଓ ତା'ର ପରେ ଯାହା ସବୁ ଘଟିଗଲା ଅଚାନକ ଏକ ନୂତନ

ଉତ୍ତେଜନା ସୃଷ୍ଟି କଲା ଓ ଏକ ନୂତନ ପରିପ୍ରେକ୍ଷୀ ଯୋଗାଇଲା । ଉତ୍ତେଜନାର ଏହି ନୂତନ ବାତାବରଣ ଭିତରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ବସିଲା । ସେତେବେଳକୁ ଜାପାନୀମାନେ କୌଣସି ବଡ଼ ଧରଣର ଅଗ୍ରଗତି କରିନଥିଲେ ମଧ୍ୟ ଖୁବ୍ ବଡ଼ ଧରଣର ଓ ଆଚମ୍ବିତକର ବିଛୁ ବିପର୍ଯ୍ୟୟ ଘଟିପାରିଥିଲା । ଯୁଦ୍ଧ ଦୂରର ବିଷୟ ହୋଇ ଆଉ ରହି ନଥିଲା; ତାହା ଭାରତ ଆଡ଼କୁ ମାଡ଼ିଆସୁଥିଲା ଓ ତା'ର ପ୍ରଭାବ ଭାରତ ଉପରେ ଗଭୀର ଭାବରେ ପଡ଼ୁଥିଲା । ଏପରି ଏକ ଅସାଧାରଣ ତଥା ବିପଦସଙ୍କୁଳ ପରିସ୍ଥିତିରେ ଫଳପ୍ରଦ ଭାବରେ କିଛି କରିବାପାଇଁ କଂଗ୍ରେସ ଲୋକେ ବ୍ୟାକୁଳ ହୋଇଉଠିଲେ । ଏହି ନୂତନ ପରିସ୍ଥିତିରେ ଜେଲ୍‌ଯିବା କାରବାର ସେମାନଙ୍କୁ ସମ୍ପୂର୍ଣ୍ଣ ଅର୍ଥହୀନ ବୋଧ ହେଲା; କିନ୍ତୁ ସମ୍ମାନଜନକ ସହଯୋଗ ନିମନ୍ତେ କିଛି ବାଟ ଖୋଲି ନହେଲେ ଏବଂ କର୍ମ ନିମନ୍ତେ ଲୋକଙ୍କୁ ଅନୁପ୍ରାଣିତ କରିବାର ସୁଯୋଗ ନମିଳିଲେ ଆମେ କଅଣ କରିପାରନ୍ତୁ ? ଆସନ୍ନ ବିପଦର ଭୟ କେବଳ ଯଥେଷ୍ଟ ହୁଅନ୍ତାନି ।

ଅତୀତର ଇତିହାସ ଓ ଯେତେ ଯାହାସବୁ ଘଟିଗଲା, ତାହା ସତ୍ତ୍ୱେ ବି ଆମେ ଏହି ଯୁଦ୍ଧରେ ବିଶେଷତଃ ଭାରତର ପ୍ରତିରକ୍ଷାରେ ସହଯୋଗ କରିବା ପାଇଁ ଆତୁର ଥିଲୁ । ତେବେ ତା' ପୂର୍ବରୁ ଆବଶ୍ୟକ ହୋଇପଡ଼ୁଥିଲା ଏକ ଜାତୀୟ ସରକାର ଗଠନ; ଯାହା ଦେଶର ଅନ୍ୟାନ୍ୟ ଦଳୀମତ ସଙ୍ଗେ ସହଯୋଗ ରଖି କାର୍ଯ୍ୟ କରିବାର ସୁଯୋଗ ଦିଅନ୍ତା, ଆଉ ଲୋକେ ବି ଅନୁଭବ କରନ୍ତେ ଯେ ଏହା ପ୍ରକୃତରେ ଏକ ଜାତୀୟ ଉଦ୍ୟମ; ଯେଉଁମାନେ ଆମକୁ ଦାସତ୍ୱରେ ବାନ୍ଧିଚନ୍ତି ସେମାନଙ୍କର ଅନ୍ୟତମ ଦୋଷ ନୁହେଁ । ଚିନ୍ତାର ଏ ପ୍ରକାର ଆଭିମୁଖ୍ୟ ନେଇ କଂଗ୍ରେସଲୋକଙ୍କ ଭିତରେ ମତ ପାର୍ଥକ୍ୟ ନଥିଲା; କିନ୍ତୁ ଅପ୍ରତ୍ୟାଶିତ ଭାବରେ ଏକ ଗୁରୁତ୍ୱପୂର୍ଣ୍ଣ, ନୀତିଗତ ପାର୍ଥକ୍ୟ ଦେଖାଦେଲା । ଗାନ୍ଧିଜୀ ଏହି ଧ୍ୱଂସମୁଖି ଯୁଦ୍ଧକଥାରେ ସୁଦ୍ଧା ଅହିଂସା ସମ୍ପର୍କରେ ତାଙ୍କର ମୌଳିକ ନୀତି ପରିହାର କରିବା ପାଇଁ ପ୍ରସ୍ତୁତ ନଥିଲେ । ଯୁଦ୍ଧ ଯେତେ ସନ୍ନିକଟ ହେଉଥିଲା, ଅହିଂସା ଉପରେ ତାଙ୍କର ବିଶ୍ୱାସର ଅଟଳତା ପ୍ରତି ତାହା ଏକ ଆହ୍ୱାନ ବୋଲି ସେ ମଣୁଥିଲେ । ଏହି ସଙ୍କଟ ସମୟରେ ସେ ଯଦି ବିଚଳିତ ହୁଅନ୍ତି, ତାହାହେଲେ ତା'ର ଦୁଇଟି କେବଳ ଅର୍ଥ ହେବ : ଏକେ ଅହିଂସା, ସେ ବିଶ୍ୱାସ କଲାଭଳି, ସର୍ବବ୍ୟାପକ ତଥା ମୌଳିକ ନୀତି ଓ କର୍ମପନ୍ଥା ନୁହେଁ କିମ୍ବା ଅହିଂସା ନୀତି ପରିହାର କରିବାରେ ଅଥବା କୌଣସି ପ୍ରକାରେ ସଂଶୋଧନ କରିନେବାରେ ସେ ଭୁଲ କରୁଚନ୍ତି । ସାରା ଜୀବନର ଏହି ବିଶ୍ୱାସ ଯାହା ତାଙ୍କର ସମସ୍ତ କାର୍ଯ୍ୟକଳାପର ଭିତ୍ତି ଥିଲା, ସେ ପରିତ୍ୟାଗ କରି ନପାରନ୍ତି ଏବଂ ସେ ଅନୁଭବ କଲେ ଯେ ସେହି ଅହିଂସାର ସବୁକିଛି ଲକ୍ଷ୍ୟତା ଓ ଆବଶ୍ୟକୀୟ ପରିଣାମ ତାଙ୍କୁ ସ୍ୱୀକାର କରିନେବାକୁ ହିଁ ପଡ଼ିବ ।

ଠିକ୍ ଏହି ଧରଣର ଏକ ଜଟିଳତା ଓ ଦ୍ୱନ୍ଦ୍ୱ ପ୍ରଥମଥର ପାଇଁ ଦେଖା ଦେଇଥିଲା । ଖ୍ରୀ: ୧୯୩୮ର ମ୍ୟୁନିକ୍ ସଙ୍କଟ ବେଳରେ ଯେବେ ଯୁଦ୍ଧ ଆସନ୍ନ ଜଣାଯାଉଥିଲା, ସେ ସମୟରେ ମୁଁ ଥିଲି ୟୁରୋପରେ ଓ ସେହି ସଙ୍କଟ ନେଇ କଂଗ୍ରେସରେ ଯେଉଁ ଆଲୋଚନା

ହୋଇଥିଲା ମୁଁ ଉପସ୍ଥିତ ନଥିଲି; କିନ୍ତୁ ସେହି ସଙ୍କଟ ଅତିବାହିତ ହେବା ସଙ୍ଗେ ଓ ଯୁଦ୍ଧ ସ୍ଥଗିତ ହେବା ଫଳରେ ସେ ଦ୍ୱନ୍ଦ୍ୱ ଦୂର ହୋଇଥିଲା । ସେପ୍‌ଟେମ୍ବର, ୧୯୩୯ରେ ଯୁଦ୍ଧ ଯେବେ ପ୍ରକୃତରେ ଆରମ୍ଭ ହେଲା, ସେ ପ୍ରକାର ନୀତିଗତ ପ୍ରଶ୍ନ ଉଠିନଥିଲା କିମ୍ବା ଆମେ ସେ ବିଷୟରେ ବିଚାର କରି ନଥିଲୁ । ଖ୍ରୀ: ୧୯୪୦ ବର୍ଷାଗ କାଳର ଶେଷ ଭାଗରେ କେବଳ ଗାନ୍ଧିଜୀ ପୁନର୍ବାର ଆମ୍ଭମାନଙ୍କୁ ସ୍ପଷ୍ଟଭାବରେ ଶୁଣାଇଦେଲେ ଯେ କୌଣସି ହିଂସାତ୍ମକ ଯୁଦ୍ଧରେ ସେ ନିଜକୁ ଜଡ଼ିତ କରିପାରିବେ ନାହିଁ ଏବଂ କଂଗ୍ରେସ ଯଦି ଯୁଦ୍ଧପ୍ରତି ତାଙ୍କଭଳି ମନୋଭାବ ପୋଷଣ କରେ, ତାହାହେଲେ ସେ ସୁଖୀ ହେବେ । ସଶସ୍ତ୍ର ତଥା ହିଂସାତ୍ମକ ସଂଗ୍ରାମକୁ ସାହାଯ୍ୟ ଯୋଗାଇବା ବ୍ୟତୀତ ଅନ୍ୟ ସବୁପ୍ରକାର ନୈତିକ ସାହାଯ୍ୟ ଯୋଗାଇବା ପାଇଁ ସେ ରାଜି ଥିଲେ । ସ୍ୱାଧୀନ ଭାରତ ମଧ୍ୟ ଯେ ଅହିଂସା ନୀତି ଅନୁସରଣ କରିବ, କଂଗ୍ରେସ ଏହା ଘୋଷଣା କରୁ ବୋଲି ସେ ଚାହିଁଥିଲେ । ସେ ଅବଶ୍ୟ ଜାଣିଥିଲେ ଯେ ଦେଶରେ ଯେପରି କଂଗ୍ରେସ ଭିତରେ ବି ସେପରି ବହୁ ଲୋକ ଅଛନ୍ତି, ଯାହାଙ୍କର ଅହିଂସା ଉପରେ ଆସ୍ଥା ନାହିଁ । ସେ ଉପଲବ୍ଧି କରିପାରୁଥିଲେ ଯେ ପ୍ରତିରକ୍ଷାର ପ୍ରଶ୍ନ ଉଠିଲେ ସ୍ୱାଧୀନ ଭାରତର ସରକାର ପକ୍ଷରେ ଅହିଂସା ନୀତି ପରିହାର କରି ଜଳ, ସ୍ଥଳ ଓ ଆକାଶ-ବାହିନୀ ଗଢ଼ିବାର ଅନିବାର୍ଯ୍ୟ ଆବଶ୍ୟକତା ଉପୁଜିପାରେ; କିନ୍ତୁ ସେ ଚାହୁଁଥିଲେ ଅନ୍ତତଃ ପକ୍ଷେ ସମ୍ଭବ ଯଦି ହୁଏ, କଂଗ୍ରେସ ଅହିଂସାର ପତାକା ଉତ୍ତୋଳନ କରୁ, ସେପରି ଭାବରେ ଲୋକଙ୍କ ମନକୁ ପ୍ରସ୍ତୁତ କରୁ ଏବଂ ଶାନ୍ତିପୂର୍ଣ୍ଣ କର୍ମ ଦିଗରେ ଅଧିକରୁ ଅଧିକ ଭାବରେ ସେମାନଙ୍କ ବିଚାର ପରିଚାଳନା କରୁ । ସାମରିକ ଶକ୍ତିସମ୍ପନ୍ନ ଏକ ଭାରତର ଚିତ୍ର ଦେଖିବା ପାଇଁ ସେ ପ୍ରସ୍ତୁତ ନଥିଲେ । ଭାରତ ଅହିଂସାର ଏକ ପ୍ରତୀକ ଓ ଜ୍ୱଳନ୍ତ ଦୃଷ୍ଟାନ୍ତ ହେଉ— ଏହା ଥିଲା ତାଙ୍କର ସ୍ୱପ୍ନ ଏବଂ ସେପରି ଏକ ଭାରତ ତା'ର ଆଦର୍ଶ ବଳରେ ହିଂସା ଓ ଯୁଦ୍ଧର ମାର୍ଗରୁ ବିଶ୍ୱକୁ ଫେରାଇଆଣିପାରିବ ବୋଲି ସେ ବିଶ୍ୱାସ କରୁଥିଲେ । ଏହି ବିଚାରକୁ ସାମଗ୍ରିକ ଭାବରେ ଭାରତ ଗ୍ରହଣ ନକରିବା ଯଦିଓ, କଂଗ୍ରେସ କିନ୍ତୁ ଅଗ୍ନିପରୀକ୍ଷା ବେଳରେ ପଛଘୁଞ୍ଚା ଦେବା ଠିକ୍ ହେବନାହିଁ ବୋଲି ସେ ମନେକରୁଥିଲେ ।

ଆମର ସ୍ୱାଧୀନତା ସଂଗ୍ରାମରେ ଓ ଜାତୀୟ ଏକତା ଗଢ଼ି ତୋଳିବାରେ ଅହିଂସାର ପ୍ରୟୋଗକୁ କଂଗ୍ରେସ ବହୁ ପୂର୍ବରୁ ତା'ର ଏକ ମୌଳିକ ନୀତି ଓ ଅଭ୍ୟାସ ଭାବରେ ଗ୍ରହଣ କରିସାରିଥିଲା । କୌଣସି ସମୟରେ ହେଲେ କଂଗ୍ରେସ ସେହି ସ୍ଥିତିରୁ ବିଚ୍ୟୁତ ହୋଇ-ନଥିଲା କିମ୍ବା ବାହାର ଆକ୍ରମଣ ସମ୍ମୁଖରେ ପ୍ରତିରକ୍ଷା ବ୍ୟବସ୍ଥାରେ ଅଥବା ଆଭ୍ୟନ୍ତରୀଣ ଅଶାନ୍ତିରେ ସେହି ନୀତି ପ୍ରୟୋଗ କରିନଥିଲା । ପ୍ରକୃତପକ୍ଷେ, ଭାରତୀୟ ସେନାବାହିନୀର ଉନ୍ନତି ପ୍ରତି କଂଗ୍ରେସ ଆଗ୍ରହଶୀଳ ଥିଲା ଏବଂ ଭାରତୀୟ ସେନାବାହିନୀର ଅଫିସରମାନେ ଭାରତୀୟ ହେବା ଦରକାର ବୋଲି ବାରମ୍ବାର ଦାବି ଉପସ୍ଥାପିତ କରିଥିଲା । କେନ୍ଦ୍ର ବ୍ୟବସ୍ଥାପକ ସଭାରେ କଂଗ୍ରେସ ଦଳ ଏହି ବିଷୟକ ପ୍ରସ୍ତାବ ହୁଏତ କେବେ ଆଗତ କରିଚନ୍ତି, କେବେ ବା ସେପରି ପ୍ରସ୍ତାବର ଆଲୋଚନାରେ ଅଂଶ ଗ୍ରହଣ କରିଚନ୍ତି । ତୃତୀୟ ଦଶକରେ କଂଗ୍ରେସଦଳର ନେତା ଭାବରେ ମୋର ପିତା ସ୍କିନ୍ କମିଟିର ଥିଲେ ଅନ୍ୟତମ ସଭ୍ୟ ।

ଭାରତୀୟ ସେନାବାହିନୀର ପୁନର୍ଗଠନ ଓ ଭାରତୀୟକରଣ ନିମନ୍ତେ ଏହି କମିଟି ଗଠିତ ହୋଇଥିଲା । ପରେ ଅବଶ୍ୟ ସେ ସେହି କମିଟିରୁ ଇସ୍ତଫା ଦେଇଥିଲେ । ତେବେ ତାଙ୍କର ଇସ୍ତଫା ପଛର କାରଣ ଥିଲା ରାଜନୈତିକ; ଅହିଂସା ସଙ୍ଗେ ତାର କୌଣସି ସମ୍ପର୍କ ନଥିଲା । ଖ୍ରୀ: ୧୯୩୭-୩୮ରେ ପ୍ରାଦେଶିକ ସରକାରମାନଙ୍କ ସଙ୍ଗେ ପରାମର୍ଶ କଲା ପରେ କେନ୍ଦ୍ର ବ୍ୟବସ୍ଥାପକ ସଭାରେ କଂଗ୍ରେସଦଳ ଭାରତୀୟ ସ୍ଥଳବାହିନୀର ସମ୍ପ୍ରସାରଣ ଓ ଆଧୁନିକ ଯନ୍ତ୍ରପାତିରେ ତାକୁ ସଜ୍ଜିତ କରିବା ନିମନ୍ତେ, ପ୍ରାୟ ନଗଣ୍ୟ ଜଳ ତଥା ଆକାଶବାହିନୀର ବିକାଶ ନିମନ୍ତେ ଏବଂ ବ୍ରିଟିଶ ସ୍ଥଳବାହିନୀ ସ୍ଥାନରେ କ୍ରମଶଃ ଭାରତୀୟ ସ୍ଥଳବାହିନୀ ପ୍ରତିଷ୍ଠା କରିବା ନିମନ୍ତେ ଏକାଧିକ ପ୍ରସ୍ତାବ ଆଗତ କରିଥିଲେ । ଭାରତରେ ବ୍ରିଟିଶ ସୈନ୍ୟଙ୍କ ପିଛା ଯାହା ଖରଚ ହୋଇଥାଏ, ତାହା ଭାରତୀୟ ସୈନ୍ୟଙ୍କ ମୂଳରେ ଖରଚ ହେବା ଧନର ଚାରିଗୁଣ ହୋଇଥିବାରୁ ବ୍ରିଟିଶ ସୈନ୍ୟଙ୍କୁ ଅପସାରିତ କରି, ସେ ସ୍ଥାନ ଭାରତୀୟ ସୈନ୍ୟଙ୍କୁ ପୂରଣ କରିବାକୁ ଦେଲେ ଅତିରିକ୍ତ ଖରଚ ବିନା ସେହି ଧନରେ ହିଁ ସେମାନଙ୍କୁ ଯନ୍ତ୍ର-ସରଞ୍ଜାମ ଯୋଗାଇ ଦିଆଯାଇ ପାରିବ ଓ ସେମାନଙ୍କର ସଂଖ୍ୟା ବି ବୃଦ୍ଧି କରି ହେବ । ମ୍ୟୁନିକ୍ କାଳରେ ବିମାନବାହିନୀର ଉନ୍ନତି ସାଧନର ଗୁରୁତ୍ୱ ଉପରେ ପୁନର୍ବାର ଜୋର ଦିଆଗଲା ଯଦିଓ, ସରକାରଙ୍କ ପକ୍ଷରୁ ଯୁକ୍ତି ହେଲା ଯେ ସେଥି ନିମନ୍ତେ ବିଶେଷଜ୍ଞ ମତ ଅନୁକୂଳ ନୁହେଁ । ଖ୍ରୀ: ୧୯୪୦ରେ କେନ୍ଦ୍ର ବ୍ୟବସ୍ଥାପକ ସଭାରେ କଂଗ୍ରେସଦଳ ଖାସ ଏଥିପାଇଁ ଯୋଗଦେଇ ଉପରୋକ୍ତ ଦାବିର ପୁନରାବୃତ୍ତି କରିଥିଲେ ଏବଂ ଭାରତର ପ୍ରତିରକ୍ଷା ନିମନ୍ତେ ବିହିତ ବ୍ୟବସ୍ଥା ଗ୍ରହଣ କରିବାରେ ସରକାର ଓ ତାଙ୍କର ସାମରିକ ବିଭାଗ କିପରି ଅସମର୍ଥ ହୋଇପଡ଼ିଚନ୍ତି ତାହା ଦର୍ଶାଇଥିଲେ ।

ମୁଁ ଯେତେ ଦୂର ଜାଣେ, କୌଣସି ସମୟରେ ହେଲେ ଜଳ, ସ୍ଥଳ ତଥା ଆକାଶବାହିନୀ ସଂକ୍ରାନ୍ତରେ କିମ୍ବା ପୁଲିସ୍ ବିଭାଗ ସଂକ୍ରାନ୍ତରେ ଅହିଂସାର ପ୍ରଶ୍ନ ବିବେଚିତ ହୋଇନି । ଏତିକି କେବଳ ଧରିନିଆଯାଇଥିଲା ଯେ ଅହିଂସାର ପ୍ରୟୋଗ ଆମର ସ୍ୱାଧୀନତା ସଂଗ୍ରାମ ପ୍ରତି କେବଳ ସୀମିତ । ଏ କଥା ସତ୍ୟ ଯେ ନାନା ଭାବରେ ଆମର ଚିନ୍ତା ଉପରେ ଏହାର ଶକ୍ତିଶାଳୀ ପ୍ରଭାବ ପଡ଼ିଚି ଏବଂ ସେଥି ହେତୁରୁ କେବଳ କଂଗ୍ରେସ ବିଶ୍ୱ-ନିରସ୍ତ୍ରୀକରଣ ଏବଂ ଆନ୍ତର୍ଜାତିକ ତଥା ଜାତୀୟ ବିବାଦମାନଙ୍କର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ଦୃଢ଼ନିଷ୍ଠ ମତ ପ୍ରକାଶ କରି ପାରୁଚି ।

ପ୍ରଦେଶମାନଙ୍କରେ କଂଗ୍ରେସ ସରକାର ଚାଲିଥିଲାବେଳେ ବହୁ ପ୍ରଦେଶରେ ବିଶ୍ୱବିଦ୍ୟାଳୟ ତଥା କଲେଜମାନଙ୍କରେ, କୌଣସି ଧରଣର ହେଲେ, ସାମରିକ ତାଲିମ ବ୍ୟବସ୍ଥା ରହୁ ବୋଲି ଆଗ୍ରହ ପ୍ରକାଶ ପାଉଥିଲା । ଭାରତ ସରକାର ତାହା ପସନ୍ଦ କରିନଥିଲେ ଓ ତାହା କାର୍ଯ୍ୟକାରୀ କରିବାକୁ ଦେଇନଥିଲେ ।

ସନ୍ଦେହ ନାହିଁ, ଏ ପ୍ରକାର ମନୋଭାବ ପଛରେ ଗାନ୍ଧିଜୀଙ୍କର ସମର୍ଥନ ନଥିଲା; କିନ୍ତୁ କୌଣସି ଅବସ୍ଥାରେ ହେଲେ ସେ ଏ ବିଷୟରେ ହସ୍ତକ୍ଷେପ କରିନାହାନ୍ତି । ସଶସ୍ତ୍ର ପୋଲିସ୍ ଦ୍ୱାରା କୌଣସି ଗୁରୁତର ଗଣ୍ଡଗୋଳ ଦମନ କରିବା ମଧ୍ୟ ପସନ୍ଦ କରୁନଥିଲେ ଏବଂ

ସେଥିଲାଗି ସେ ଦୁଃଖ ପ୍ରକାଶ ବି କରିଚନ୍ତି, କିନ୍ତୁ ତାଙ୍କ ମତରେ ସେପରି କରିବା ଖରାପ ହେଲେ ସୁଦ୍ଧା, ସେପରି ଅବସରରେ ସବୁ ଦିଗରୁ ବିଚାରକଲେ ତାହା କମ୍ କ୍ଷତିକାରକ ବୋଲି ସେ ବରଦାସ୍ତ କରୁଥିଲେ ଏବଂ ତାଙ୍କର ଆଶା ଥିଲା ଯେ ଅହିଂସା ସମ୍ପର୍କରେ ସେ ଯେଉଁ ଶିକ୍ଷା ଦେଉଚନ୍ତି, ତାହା କ୍ରମଶଃ ଭାରତ-ମାନସରେ ଯଥୋଚିତ ସ୍ଥାନ ଲାଭକରିବ । କଂଗ୍ରେସ ଭିତରେ ଆପେକ୍ଷିକ ମନୋଭାବର ପ୍ରସାର ଲକ୍ଷ୍ୟକରି ଯେ କୌଣସି ହିଂସାତ୍ମକ କର୍ମ ପ୍ରତି ତାଙ୍କର ସମର୍ଥନ ଯେହେତୁ ନଥିଲା, ଚତୁର୍ଥ ଦଶକର ପ୍ରଥମ ପାଦରେ ସେ କଂଗ୍ରେସର ସାଧାରଣ ସଭ୍ୟପଦ ତ୍ୟାଗ କରିଥିଲେ । ତଥାପି ସୁଦ୍ଧା କଂଗ୍ରେସର ଏକମାତ୍ର ପରାମର୍ଶଦାତା ଓ ଅଦ୍ୱିତୀୟ ନେତା ଭାବରେ ସେ ରହିଲେ । ଆମ ସମସ୍ତଙ୍କ ପକ୍ଷରେ ତାହା ଥିଲା ଏକ ଖାପ ବହିର୍ଭୂତ ତଥା ଅସ୍ୱାଭାବିକ ସ୍ଥିତି; କିନ୍ତୁ କଂଗ୍ରେସ ସଭ୍ୟପଦରୁ ଯିବା ଫଳରେ ସେ ହୁଏତ ଅନୁଭବ କରୁଥିଲେ ଯେ କଂଗ୍ରେସ ଯେଉଁସବୁ ନୀତିନିଷ୍ଠି ଗ୍ରହଣ କରୁଚି ଏବଂ ଯାହା ତାଙ୍କର ଆଚରିତ ନୀତି ଓ ବିଶ୍ୱାସ ସଙ୍ଗେ ସମ୍ପୂର୍ଣ୍ଣ ସହମତ ନୁହେଁ, ସେଥିଲାଗି ଅନ୍ତତଃ ସେ ବ୍ୟକ୍ତିଗତ ଭାବରେ ଦାୟୀ ନୁହନ୍ତି । ତାଙ୍କର ଭିତରେ ଓ ଆମର ଜାତୀୟ ରାଜନୀତିରେ ଏହି ଅନ୍ତର୍ଦ୍ୱନ୍ଦ୍ୱ ବରାବର ରହିଆସିଚି । ସେହି ଦ୍ୱନ୍ଦ୍ୱ ଥିଲା ଜାତୀୟ ନେତା ଗାନ୍ଧି ଓ ଧର୍ମ-ପ୍ରବର୍ତ୍ତକ ମହାତ୍ମା ଗାନ୍ଧି ଭିତରେ, ଯାହାଙ୍କର ବାଣୀ ଭାରତ ପାଇଁ କେବଳ ନୁହେଁ, ସମଗ୍ର ମାନବଜାତି ଓ ସମଗ୍ର ବିଶ୍ୱ ନିମନ୍ତେ ଥିଲା ଉଦ୍ଦିଷ୍ଟ । ଜୀବନର ବିଶେଷତଃ ରାଜନୈତିକ ଜୀବନର ବିଭିନ୍ନ ଅନିବାର୍ଯ୍ୟ ଆବଶ୍ୟକତା ଓ ଉପଯୋଗିତା ସଙ୍ଗେ ନିଜେ ଉପଲବ୍ଧି କରିଥିବା ସତ୍ୟକୁ ସହମତ କରି ଚଳିବା କେବେହେଲେ ସହଜ ନୁହେଁ । ସାଧାରଣତଃ ଲୋକେ ଏହା ଏକ ସମସ୍ୟା ବୋଲି ବିଚଳିତ ହେଉନଥାନ୍ତି । ଯଦି କେଉଁଠି ରକ୍ଷିବାର ଆବଶ୍ୟକତା ଥାଏ, ସେମାନେ ସତ୍ୟକୁ ମନର କୌଣସି କୋଣରେ ସ୍ୱତନ୍ତ୍ର ଭାବରେ ଗୋପନ ରଖି କର୍ମର ପରିମାପ ଭାବରେ ଉପଯୋଗିତାକୁ ଦ୍ୱିଧାହୀନ ଭାବରେ ଗ୍ରହଣ କରିନେଇଥାନ୍ତି । ରାଜନୀତିରେ ଏହା ହିଁ ହେଉଚି ସାଂଘାତିକ ନୀତି ଏବଂ ଦୁର୍ଭାଗ୍ୟର କଥା, ରାଜନୀତିଜ୍ଞମାନେ ଏକ ବିଚାର ସୁବିଧାବାଦୀ ପ୍ରଜାତି ବୋଲି କେବଳ ନୁହେଁ, ବ୍ୟକ୍ତିଗତ ସ୍ତରରେ ବି ସେମାନେ କାର୍ଯ୍ୟକାରୀ ହୋଇପାରି ନଥାନ୍ତି । ଅନ୍ୟମାନଙ୍କୁ ସେମାନେ ଯେହେତୁ କାର୍ଯ୍ୟ କରାନ୍ତି, ଅନ୍ୟମାନଙ୍କର ସତ୍ୟ ସମ୍ପର୍କରେ ଜ୍ଞାନ ଓ ସତ୍ୟକୁ ଗ୍ରହଣ କରିବାର ସାମର୍ଥ୍ୟ କେତେ ତାହା ସେମାନଙ୍କୁ ବିଚାର କରିବାକୁ ପଡ଼ିଥାଏ । ଏଥି ହେତୁରୁ ସତ୍ୟ ସଙ୍ଗେ ସାଲିସ୍ କରି ତାକୁ ପ୍ରଚଳିତ ଅବସ୍ଥା ସଙ୍ଗେ ଖାପଖୁଆଇ ନେବାକୁ ପଡ଼ିଥାଏ ସେମାନଙ୍କୁ । ଏ ପ୍ରକାର ସଙ୍ଗତି ବିଧାନ ଅବଶ୍ୟମ୍ଭାବୀ ହେଲେ ସୁଦ୍ଧା ସେଥିରେ ବିପଦର ଆଶଙ୍କା ରହିଥାଏ । ସତ୍ୟକୁ ପ୍ରତ୍ୟାଖ୍ୟାନ ଓ ଅବଜ୍ଞା କରିବାର ମନୋଭାବ ବୃଦ୍ଧି ପାଏ ଏବଂ ଉପଯୋଗିତା କେବଳ କର୍ମର ଏକମାତ୍ର ମାନଦଣ୍ଡ ହୋଇଉଠେ ।

କେତେକ ନୀତି ପ୍ରତି ତାଙ୍କର ସମସ୍ତ ଅନୁରକ୍ତି ସତ୍ତ୍ୱେ, ଅନ୍ୟମାନଙ୍କ ସଙ୍ଗେ ଓ ପରିବର୍ତ୍ତିତ ପରିସ୍ଥିତି ସଙ୍ଗେ ସଙ୍ଗତି ରକ୍ଷାକରି ଚଳିବା ଦିଗରେ, ସେମାନଙ୍କର ବିଶେଷତଃ ଜନସାଧାରଣଙ୍କର ସବଳତା ଓ ଦୁର୍ବଳତା ବିବେଚନା କରିବାରେ ଏବଂ ସତ୍ୟର ସ୍ୱରୂପକୁ

ସେ ଯେଉଁଭଳି ଭାବରେ ପ୍ରତ୍ୟକ୍ଷ କରିଛନ୍ତି, ସେହି ଅନୁସାରେ କାର୍ଯ୍ୟ କରିବାପାଇଁ ସେମାନେ କେତେଦୂର ସମର୍ଥ ବିଚାର କରିବାରେ, ଗାନ୍ଧିଜୀ ଅପୂର୍ବ କୁଶଳତା ପ୍ରଦର୍ଶନ କରିଛନ୍ତି; କିନ୍ତୁ ହାସଲ୍ କରିବା ଦିଗରେ ସେ କାଳେ ବହୁଦୂର ଆଗେଇ ଯାଇଚନ୍ତି—ଏହି ଭୟରେ ସମୟେ ସମୟେ ସେ ନିଜକୁ ସଙ୍କୁଚିତ କରି ନିଜର ଉପଲବ୍ଧି ସତ୍ୟର ଆଶ୍ରୟକୁ ଫେରି-ଆସିଚନ୍ତି । କର୍ମତତ୍ପରତା ଭିତରେ ମଧ୍ୟ ସେ ଜନ-ମାନସର ଗତି ବୁଝିପାରୁଥିଲେ, ତା'ର ବହିତ ପ୍ରତକ୍ରିୟା ତାଙ୍କ ମନରେ ହେଉଥିଲା ଏବଂ ଏପରି ଭାବରେ କେତେ ପର୍ଯ୍ୟନ୍ତ ସେ ନିଜକୁ ସେଥିପ୍ରତି ଅନୁକୂଳ କରିପାରୁଥିଲେ । ଅନ୍ୟ ସମୟରେ ଯେ ଯେବେ ଅଧିକତର ତତ୍ତ୍ୱଭାବାପନ୍ନ ହୋଇପଡ଼ନ୍ତି, ଅନ୍ୟ ସଙ୍ଗେ ନିଜର ମେଳ ରଖି ଚଳିବା କଷ୍ଟକର ହୋଇ-ପଡ଼େ । ଏହି ପାର୍ଥକ୍ୟ ତାଙ୍କର କାର୍ଯ୍ୟରେ ଓ ତାଙ୍କର ରଚନାବଳୀରେ ଲକ୍ଷ୍ୟ କରିବାକୁ ମିଳେ । ତାଙ୍କର ନିଜ ଲୋକଙ୍କ ପକ୍ଷରେ ଏହା ଯେପରି ବିଭ୍ରାନ୍ତକର, ଅନ୍ୟମାନଙ୍କ ପକ୍ଷରେ ମଧ୍ୟ, ଯେଉଁମାନେ ଭାରତର ପୃଷ୍ଠଭୂମି ସମ୍ପର୍କରେ ଅଜ୍ଞାନ, ଅଧିକତର ବିଭ୍ରାନ୍ତକର ହୋଇଉଠେ ।

ଜଣେ ବ୍ୟକ୍ତିବିଶେଷ ଗୋଟାଏ ଜାତିର ବିଚାର ଓ ମତବାଦକୁ କେତେଦୂର ପ୍ରଭାବିତ କରିପାରେ, କହିବା କଠିନ । ଇତିହାସରେ କେତେକ ବ୍ୟକ୍ତି ଯେ ଶକ୍ତିଶାଳୀ ପ୍ରଭାବ ପକାଇଚନ୍ତି, ଏକଥା ସତ୍ୟ; କିନ୍ତୁ ଏହା ବି ସ୍ୱୀକାର କରିବାକୁ ପଡ଼ିବ ଯେ ସେମାନେ ସେପରି କିଛି ବିଷୟ ପ୍ରକାଶ କରିଚନ୍ତି କିମ୍ବା ସେପରି କିଛି ବିଷୟ ଉପରେ ଜୋର୍ ଦେଇଚନ୍ତି, ଯାହା ଜନସାଧାରଣଙ୍କ ମନରେ ପୂର୍ବରୁ ରହିଥିଲା କିମ୍ବା ଏପରି ବି ହୋଇପାରେ ଯେ ପ୍ରଚଳିତ ଯୁଗର ଅସ୍ପଷ୍ଟ ଭାବରେ ଅନୁଭୂତ, କେତେକ ଧାରଣାକୁ ସେମାନେ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଭାବରେ ବ୍ୟକ୍ତ କରିଚନ୍ତି । ବର୍ତ୍ତମାନ ଯୁଗରେ ଭାରତୀୟ ମନ ଉପରେ ଗାନ୍ଧିଜୀଙ୍କ ପ୍ରଭାବ ଅତିକ୍ରମନୀୟ । କେତେକାଳ ପର୍ଯ୍ୟନ୍ତ ଓ କିପରି ଭାବରେ ଏହା ରହିବ, ଭବିଷ୍ୟତ କେବଳ ଦର୍ଶାଇପାରେ । ଯେଉଁମାନେ ତାଙ୍କ ସଙ୍ଗେ ଏକମତ କିମ୍ବା ତାଙ୍କୁ ଜଣେ ଜାତୀୟ ନେତା ଭାବରେ ଗ୍ରହଣ କରିଚନ୍ତି, ତାଙ୍କର ପ୍ରଭାବ ସେମାନଙ୍କ ଭିତରେ କେବଳ ଆବଦ୍ଧ ନୁହେଁ; ଏହା ସେମାନଙ୍କ ଉପରେ ବି କାର୍ଯ୍ୟ କରିଥାଏ, ଯେଉଁମାନେ ତାଙ୍କ ସଙ୍ଗେ ଏକମତ ନୁହନ୍ତି ଓ ତାଙ୍କୁ ସମାଲୋଚନା ବି କରିଥାନ୍ତି । ଅହିଂସା ଉପରେ କିମ୍ବା ଅର୍ଥନୀତି ଉପରେ ତାଙ୍କର ତାତ୍ତ୍ୱିକ ବିଚାରକୁ ସମ୍ପୂର୍ଣ୍ଣ ଭାବରେ ଖୁବ୍ କମ୍ ଲୋକ ଭାରତରେ ଗ୍ରହଣ କରିଚନ୍ତି । ତଥାପି ଅନେକେ କୌଣସି ନା କୌଣସି ଭାବରେ ସେସବୁ ତତ୍ତ୍ୱଦ୍ୱାରା ନିଶ୍ଚିତ ଭାବରେ ପ୍ରଭାବିତ ହୋଇଚନ୍ତି । ସାଧାରଣତଃ, ତାଙ୍କର ଅନ୍ତରନିଃସୃତ ଅଖଣ୍ଡ ଧର୍ମବିଶ୍ୱାସର ଭାଷାରେ ସେ ରାଜନୈତିକ ସମସ୍ୟାମାନଙ୍କ ପ୍ରତି ଓ ଦୈନନ୍ଦିନ ଜୀବନର ବିବିଧ ସମସ୍ୟା ପ୍ରତି ନୈତିକ ଅଭିମୁଖ୍ୟର ଆବଶ୍ୟକତା ଉପରେ ବିଶେଷ ଜୋର୍ ଦେଇଥାନ୍ତି । ତାଙ୍କର ଅଭିବ୍ୟକ୍ତିର ଏହି ଧାର୍ମିକ ପୃଷ୍ଠଭୂମି, ମୁଖ୍ୟତଃ ସେମାନଙ୍କୁ ପ୍ରଭାବିତ କରିଚି ଯେଉଁମାନେ ଧର୍ମଭାବାପନ୍ନ; କିନ୍ତୁ ତା'ର ନୈତିକ ଆଭିମୁଖ୍ୟ ମଧ୍ୟ ଅନ୍ୟମାନଙ୍କୁ ସମାନ ଭାବରେ ପ୍ରଭାବିତ କରିଚି । ଗାନ୍ଧି-ବିଚାରଧାରାର ପ୍ରଭାବ ଫଳରେ ଅନେକେ ନିଜକୁ ନୈତିକ ତଥା ଆଚାରଶୁଦ୍ଧ କର୍ମର ଉଚ୍ଚାଙ୍ଗ ଅବସ୍ଥାକୁ ଉନ୍ନୀତ କରିପାରିଚନ୍ତି; ଆହୁରି ଅନେକେ ଅନ୍ତତଃ ସେହି

ଅନୁସାରେ ଚଳାଇବାକୁ ବାଧ୍ୟ ହେଉଛନ୍ତି ଏବଂ ସେହି ଚଳା ସେମାନଙ୍କର କର୍ମ ଓ ଆଚରଣକୁ ପ୍ରଭାବିତ ନକରି ଛାଡ଼ିନ । ସାଧାରଣତଃ ସବୁ ଯେପରି ହୋଇଥାଏ, ରାଜନୀତି କେବଳ ଉପଯୋଗିତା ଓ ସୁବିଧାବାଦରେ ଆବଦ୍ଧ ରହେନାହିଁ ଏବଂ ଗାନ୍ଧି-ବିଚାର ଅନୁସାରେ ପ୍ରତ୍ୟେକ ବିଚାର ଓ କର୍ମ ପଛରେ ଏକ ନୈତିକବୋଧ ଅପ୍ରକାଶ୍ୟ ଭାବରେ ଅବ୍ୟାହତ ରହେ । ଉପଯୋଗିତା କହି କିମ୍ବା ଯାହା ଏଇ ମୁହୂର୍ତ୍ତରେ ସମ୍ଭବ ଓ ବାଞ୍ଛନୀୟ ତାହା, କେବେହେଲେ ଅବଜ୍ଞା କରାଯାଇ ନପାରେ; କିନ୍ତୁ ଅନ୍ୟାନ୍ୟ ବିଚାର ଓ ଦୂର ଭବିଷ୍ୟତର ପରିଣାମ ଉପରେ ଧ୍ୟାନଦେଲେ ତା'ର ଆସକ୍ତି ଅନେକ ପରିମାଣରେ ଲାଘବ ହୋଇପାରିଥାଏ ।

ଏହି ସବୁ ବିଭିନ୍ନ ଦିଗରେ ଗାନ୍ଧିଜୀଙ୍କ ପ୍ରଭାବ ଭାରତରେ ବ୍ୟାପ୍ତ ହୋଇଛି ଓ ତା'ର ଚିହ୍ନ ବି ରହିଛି, କିନ୍ତୁ ତାଙ୍କର ଅହିଂସା କିମ୍ବା ଅର୍ଥନୈତିକ ବିଚାର ଲାଗି କେବଳ ସେ ଭାରତର ନେତୃବର୍ଗଙ୍କ ଭିତରେ ସର୍ବାଗ୍ରରେ ରହିନାହାନ୍ତି । ଭାରତର କୋଟି ସଂଖ୍ୟକ ଲୋକଙ୍କ ପାଇଁ ସେ ହେଉଛନ୍ତି ଭାରତୀୟ ମୁକ୍ତି ସଙ୍କଳ୍ପର, ସଂଗ୍ରାମୀ ଜାତୀୟତାବାଦର, ଉଦ୍ଧତ ଶକ୍ତି ସମ୍ମୁଖରେ ଅନବରତ ରହିବା ଏବଂ ଜାତୀୟ ସମ୍ମାନ ବଜାୟ ରଖିବାର ପ୍ରତୀକ । ଭାରତରେ ସେପରି ବହୁତ ଲୋକ ଅଛନ୍ତି, ଯେଉଁମାନେ ନାନା ବିଷୟରେ ତାଙ୍କ ସଙ୍ଗେ ଏକମତ ନୁହନ୍ତି, ତାଙ୍କର ସମାଲୋଚନା କରନ୍ତି କିମ୍ବା କୌଣସି ନିର୍ଦ୍ଦିଷ୍ଟ ପ୍ରଶ୍ନ ଉପରେ ତାଙ୍କ ପାଖରୁ ଅଲଗା ହୋଇପାରିଥାନ୍ତି; କିନ୍ତୁ କର୍ମର ଆହ୍ୱାନବେଳେ ଓ ସଂଗ୍ରାମବେଳେ ଆଖି ଆଗରେ ଯେବେ ରହେ ଭାରତର ସ୍ୱାଧୀନତାର ପ୍ରଶ୍ନ, ସେମାନେ ସମସ୍ତେ ତାଙ୍କ ପାଖରେ ହିଁ ଯାଇ ପହଞ୍ଚନ୍ତି ଓ ନେତୃତ୍ୱ ଦେବାପାଇଁ ତାଙ୍କୁ ହିଁ ଲୋଡ଼ନ୍ତି ।

ଖ୍ରୀ: ୧୯୪୦ରେ ଯୁଦ୍ଧ ସମ୍ପର୍କରେ ଓ ସ୍ୱାଧୀନ ଭାରତର ଭବିଷ୍ୟତ ସମ୍ପର୍କରେ ଗାନ୍ଧିଜୀ ଯେବେ ଅହିଂସାର ପ୍ରଶ୍ନ ଉଠାନ୍ତି, କଂଗ୍ରେସ କାର୍ଯ୍ୟକାରୀ କମିଟି ସେ ବିଷୟରେ ନିଜର ମତାମତ ଗାନ୍ଧିଜୀଙ୍କ ପାଖରେ ସ୍ପଷ୍ଟ ଭାବରେ ଉପସ୍ଥାପିତ କରିବା ଉଚିତ ମନେକଲେ । ସେମାନେ ତାଙ୍କୁ ଜଣାଇଦେଲେ ଯେ ସେମାନେ ସେତେ ଦୂର ଯାଇପାରିବେ ନାହିଁ, ଯେତେଦୂର ସେମାନେ ଯିବା ଗାନ୍ଧିଜୀ ଚାହାନ୍ତି ଏବଂ ବୈଦେଶିକ ବ୍ୟାପାରରେ ଭବିଷ୍ୟତରେ ତାଙ୍କର ଅହିଂସ ନୀତିର ପ୍ରୟୋଗ ସମ୍ପର୍କରେ ଏତେବେଳୁ ଭାରତ କିମ୍ବା କଂଗ୍ରେସ ପକ୍ଷରୁ ସେମାନେ କୌଣସି ପ୍ରତିଶ୍ରୁତି ଦେବା ଅବସ୍ଥାରେ ସମ୍ଭବତଃ ନାହାନ୍ତି । ଏହା ଫଳରେ ଗାନ୍ଧିଜୀଙ୍କ ସଙ୍ଗେ ଏହି ପ୍ରଶ୍ନ ଉପରେ ଖୋଲାଖୋଲି ଭାବରେ କଂଗ୍ରେସର ସମ୍ପର୍କ ଏକ-ରକମ ତୁଟିଗଲା । ଦୁଇମାସ ପରେ ଏଥି ଉପରେ ପୁଣି ଆଲୋଚନା ଚାଲିଲା ଏବଂ ଉଭୟପକ୍ଷ ମଧ୍ୟରେ ଯେଉଁ ରାଜିନାମା ହେଲା, ପରେ ଅଖିଳ ଭାରତୀୟ କଂଗ୍ରେସ କମିଟି ତାହା ଏକ ପ୍ରସ୍ତାବର ଅଂଶ ଭାବରେ ଗ୍ରହଣ କରିନେଲେ । ରାଜିନାମାର ସେହି ସୂତ୍ରରେ ଗାନ୍ଧିଜୀଙ୍କ ମନୋଭାବ ସମ୍ପୂର୍ଣ୍ଣ ରୂପରେ ପ୍ରତିଫଳିତ ହୋଇନଥିଲା; ସେଥିରେ ଯେତିକି କେବଳ ଥିଲା ସେତିକି ପାଇଁ ଅନିଚ୍ଛା ସତ୍ତ୍ୱେ ହେଉ, ସେ ରାଜି ହୋଇଥିଲେ ଆଉ ଯେତିକି ସେଥି ଉପରେ କଂଗ୍ରେସ କହିବା ପାଇଁ ପ୍ରସ୍ତୁତ ଥିଲା । ସେହି ସମୟରେ, ଗୋଟାଏ ଜାତୀୟ

ସରକାର ଭିତ୍ତିରେ ଯୁଦ୍ଧ ଉଦ୍ୟମରେ ସହଯୋଗ କରିବା ପାଇଁ କଂଗ୍ରେସ ଯେଉଁ ପ୍ରସ୍ତାବ ଦେଇଥିଲା, ବ୍ରିଟିଶ ସରକାର ତାହା ପ୍ରତ୍ୟାଖ୍ୟାନ କରିସାରିଥିଲେ । ଗୋଟାଏ କିଛି ସଙ୍ଘର୍ଷ ଯେ ଲାଗିବ, ଜଳଜଳ ଦିଶୁଥିଲା ଏବଂ ଅବଶ୍ୟମ୍ଭାବୀ ମନେହେଉଥିଲା । ଏପରି ଏକ ପରିସ୍ଥିତିରେ ଗାନ୍ଧିଜୀ ଓ କଂଗ୍ରେସ ପରସ୍ପର ମୁହଁକୁ ଚାହିଁ ଉଭୟଙ୍କ ଭିତରେ ଉପୁଜିଥିବା ଅଚଳ ଅବସ୍ଥାରୁ କୌଣସି ପ୍ରକାରେ ହେଲେ ଗୋଟାଏ ବାଟ ଫିଟାଇବା ପାଇଁ ପ୍ରବଳ ଭାବରେ ଆକାଙ୍‌କ୍ଷିତ ଥିଲେ । ଏହି ଆପୋଷ ବୁଝାମଣାରେ ଯୁଦ୍ଧର ଉଲ୍ଲେଖ ନଥିଲା; କାରଣ ଯୁଦ୍ଧରେ ସହଯୋଗ କରିବାପାଇଁ ଆମର ପ୍ରସ୍ତାବକୁ ଏଇ ସେଦିନ ମାତ୍ର ପୁରାପୁରି ପ୍ରତ୍ୟାଖ୍ୟାନ କରି ଦିଆଯାଇଥିଲା । ଏଥିରେ ଅହିଂସା ସମ୍ପର୍କରେ କଂଗ୍ରେସ ନୀତିର ତାତ୍ତ୍ୱିକ ବିସ୍ତୃତ ରହିଥିଲା ଏବଂ ପ୍ରଥମଥର ପାଇଁ ଏଥିରେ ବିବୃତ କରାଗଲା ଭବିଷ୍ୟତର ମୁକ୍ତ ଭାରତରେ, ବୈଦେଶିକ ବ୍ୟାପାର ସମ୍ବନ୍ଧରେ କଂଗ୍ରେସ ମତରେ ଅହିଂସାର ପ୍ରୟୋଗ କିପରି ହେବା ଉଚିତ । ପ୍ରସ୍ତାବର ସେହି ଅଂଶଟିକ ହେଉଛି :

ଅଖିଳ ଭାରତୀୟ କଂଗ୍ରେସ କମିଟି 'ଅହିଂସ ନୀତି ଓ ତା'ର ଅଭ୍ୟାସ ଉପରେ, ସ୍ୱରାଜ ଆନ୍ଦୋଳନ ପାଇଁ କେବଳ ନୁହେଁ; ବରଂ ମୁକ୍ତ ଭାରତରେ ତା'ର ପ୍ରୟୋଗ ଯେତେଦୂର ସମ୍ଭବ ହୋଇପାରେ, ଦୃଢ଼ ଆସ୍ଥା ସ୍ଥାପନ କରନ୍ତି । କମିଟିର ହୃଦ୍‌ବୋଧ ହୋଇଛି ଏବଂ ବିଶ୍ୱର ଅଧୁନାତନ ଘଟଣାବଳୀ ପ୍ରମାଣ ମଧ୍ୟ କରିଛି ଯେ ସମ୍ପୂର୍ଣ୍ଣ ବିଶ୍ୱ-ନିରସ୍ତ୍ରୀକରଣ ଏବଂ ଏକ ନୂତନ ତଥା ନ୍ୟାଯ୍ୟତର ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥାର ପ୍ରତିଷ୍ଠା ନିମନ୍ତେ ନିତାନ୍ତ ଆବଶ୍ୟକ, ଯଦି ଏହି ବିଶ୍ୱ ନିଜକୁ ଧ୍ୱଂସ ସ୍ତୂପରେ ପରିଣତ କରି ପୁନର୍ବାର ବର୍ବରତାକୁ ଫେରିଯିବା ଉଚିତ ନଥାଏ । ଅତଏବ, ଏକ ମୁକ୍ତ ଭାରତ ବିଶ୍ୱ-ନିରସ୍ତ୍ରୀକରଣ ନିମନ୍ତେ ତା'ର ସମସ୍ତ ଶକ୍ତି ଓ ସମ୍ବଳ ନିୟୋଜିତ କରିବ ଏବଂ ବିଶ୍ୱକୁ ଏ ଦିଗରେ ନେତୃତ୍ୱ ଦେବାଲାଗି ନିଜେ ପ୍ରସ୍ତୁତ ରହିବ । ଏପରି ନେତୃତ୍ୱ ଦେବା ଅନିବାର୍ଯ୍ୟ ଭାବରେ ଯଦିଓ ନିର୍ଭର କରିବ, ଆଭ୍ୟନ୍ତରୀଣ ଅବସ୍ଥା ଓ ବହିର୍ଜଗତର ବିଭିନ୍ନ ହେତୁ ଉପରେ, ତଥାପି ସ୍ୱାଧୀନ ଭାରତ ଏହି ନିରସ୍ତ୍ରୀକରଣ ନୀତି ଫଳପ୍ରଦ ଭାବରେ କାର୍ଯ୍ୟକାରୀ କରିବା ପାଇଁ ଯଥାସାଧ୍ୟ ପରିବେନାପ୍ତି ପ୍ରୟାସ କରିବ । ଜାତି ଜାତି ମଧ୍ୟରେ ଯୁଦ୍ଧର ବିଲୋପ ସାଧନ ଏବଂ ଫଳପ୍ରଦ ନିରସ୍ତ୍ରୀକରଣ ତଥା ବିଶ୍ୱଶାନ୍ତି ପ୍ରତିଷ୍ଠା ପରିଶେଷରେ ନିର୍ଭର କରିବ ଯୁଦ୍ଧ ତଥା ଜାତି ଜାତି ମଧ୍ୟରେ ଉପୁଜିଥିବା ସଂଘାତର ନାନା କାରଣ ଦୂର କରିବା ଉପରେ । ଗୋଟାଏ ଦେଶ ଉପରେ ଅନ୍ୟ ଏକ ଦେଶର ଆଧିପତ୍ୟର ଏବଂ ଗୋଟାଏ ଜାତି ଅବା ଗୋଷ୍ଠୀ ଉପରେ ଅନ୍ୟର ଶୋଷଣ ବ୍ୟବସ୍ଥାର ଅବସାନ ଘଟାଇ ଏହିସବୁ ହେତୁ ମୂଳୋତ୍ପାଟିତ କରିବାକୁ ପଡ଼ିବ । ସେହି ଲକ୍ଷ୍ୟ ସାଧନ ଦିଗରେ ଭାରତ ଶାନ୍ତିପୂର୍ଣ୍ଣ ଉପାୟରେ କାର୍ଯ୍ୟ କରିଯିବ ଏବଂ ଏହି ଉଦ୍ଦେଶ୍ୟ ଦୃଷ୍ଟି ସମ୍ମୁଖରେ ରଖି କେବଳ ଭାରତର ଜନସାଧାରଣଙ୍କ ମୁକ୍ତି ତଥା ସ୍ୱାଧୀନ ଜାତିର ପ୍ରତିଷ୍ଠା ଲାଭ କରିବାପାଇଁ ଆକାଙ୍‌କ୍ଷିତ । ବିଶ୍ୱର ଶାନ୍ତି ଓ ପ୍ରଗତି ନିମନ୍ତେ ଏକ ମୁକ୍ତ ଜାତିସଙ୍ଘ ଭିତରେ ଅନ୍ୟାନ୍ୟ ଦେଶ ସଙ୍ଗେ ଘନିଷ୍ଠ ସଂଯୋଗ ସ୍ଥାପନ ଦିଗରେ ଏପ୍ରକାର ସ୍ୱାଧୀନତା ହେବ ପ୍ରଥମ ତଥା ଅତ୍ୟାବଶ୍ୟକ ପଦକ୍ଷେପ ।' ଏଥିରୁ ଲକ୍ଷ୍ୟକରି ହେବ

ଯେ ଏହି ଘୋଷଣା ଶାନ୍ତିପୂର୍ଣ୍ଣ କର୍ମ ଓ ନିରସ୍ତ୍ରୀକରଣ ନିମନ୍ତେ କଂଗ୍ରେସର ଅଭିଳାଷ ଦୃଢ଼ଭାବରେ ଉପସ୍ଥାପିତ କରିବା ସଙ୍ଗେ ସଙ୍ଗେ ସେଥି ନିମନ୍ତେ ଆବଶ୍ୟକୀୟ କେତେକ କାରଣ ଓ ସୀମାବନ୍ଧନ ଉପରେ ମଧ୍ୟ ଜୋର୍ ଦେଇଛି ।

ଖ୍ରୀ: ୧୯୪୦ରେ କଂଗ୍ରେସରେ ଆଭ୍ୟନ୍ତରୀଣ ସଙ୍କଟ ଦୂର ହେଲା ଏବଂ ପରବର୍ତ୍ତୀ ବର୍ଷରେ ଆମ ଭିତରୁ ଅନେକେ ଜେଲ୍ ଯାତ୍ରା କଲେ । ଖ୍ରୀ: ୧୯୦୧ ଡିସେମ୍ବରରେ କିନ୍ତୁ ଗାନ୍ଧିଜୀ ପୂର୍ଣ୍ଣ ଅହିଂସା ଉପରେ ଯେତେବେ ଜିଗର କରି ବସିଲେ, ସେହି ସଙ୍କଟ ପୁଣି ଗଢ଼ି-ଉଠିଲା । ପୁନର୍ବାର କଂଗ୍ରେସ ଭିତରେ ଓ ବାହାରେ ଏହି ମତପାର୍ଥକ୍ୟ ପ୍ରକାଶ ପାଇଲା ଏବଂ କଂଗ୍ରେସ ସଭାପତି ମୌଲନା ଅବୁଲ୍ କାଲାମ୍ ଆଜାଦ୍ ଓ ଅନ୍ୟମାନେ ଗାନ୍ଧିଜୀଙ୍କ ଦୃଷ୍ଟିକୋଣ ସ୍ୱୀକାର କରିପାରି ନଥିଲେ । ଏକଥା ସ୍ପଷ୍ଟ ହୋଇଉଠିଲା ଯେ ଗାନ୍ଧିଜୀଙ୍କର କେତେକ ବିଶ୍ୱସ୍ତ ଅନୁଗାମୀଙ୍କ ସମେତ ମୋଟାମୋଟି ଭାବରେ କଂଗ୍ରେସ ଏହି ବିଷୟରେ ଗାନ୍ଧିଜୀଙ୍କ ସଙ୍ଗେ ଏକମତ ହୋଇପାରୁନାହିଁ । ଅବସ୍ଥାର ଚାପ ଓ କେତେକ ନାଟକୀୟ ଘଟଣାର ଦ୍ରୁତ ଅନୁକ୍ରମ ଆମ ସମସ୍ତଙ୍କୁ ଓ ଗାନ୍ଧିଜୀଙ୍କୁ ମଧ୍ୟ ପ୍ରଭାବିତ କଲା ଏବଂ କଂଗ୍ରେସ ଦୃଷ୍ଟିକୋଣ ସଙ୍ଗେ ସେ ନିଜକୁ ଚିହ୍ନିତ ନକଲେ ସୁଦ୍ଧା କଂଗ୍ରେସ ତାଙ୍କର ଦୃଷ୍ଟିଭଙ୍ଗୀ ଗ୍ରହଣ କରୁ ବୋଲି ସେ ଯେପରି ଏକରକମ ଧରିବସିଥିଲେ, ସେଥିରୁ ବିରତହେଲେ ।

ଅନ୍ୟ କୌଣସି ସମୟରେ ଗାନ୍ଧିଜୀ କଂଗ୍ରେସରେ ଏହି ପ୍ରଶ୍ନ ଉଠାଇନାହାନ୍ତି । ପରେ ସାର୍ ଷ୍ଟାଫୋର୍ଡ କ୍ରିପ୍ସ ଯେତେବେ ତାଙ୍କର ପ୍ରସ୍ତାବ ନେଇ ଭାରତ ଆସିଲେ, ସେତେବେଳେ ଅହିଂସାର ପ୍ରଶ୍ନ ଉଠିନଥିଲା । ରାଜନୈତିକ ଦୃଷ୍ଟିକୋଣରୁ ହିଁ ତାଙ୍କର ପ୍ରସ୍ତାବ ବିବେଚିତ ହେଲା । ମାସ ପରେ ମାସ ଅତିବାହିତ ହେବା ସଙ୍ଗେ ଖ୍ରୀ. ୧୯୪୨, ଅଗଷ୍ଟ ସୁଦ୍ଧା ଗାନ୍ଧିଜୀଙ୍କର ଜାତୀୟବାଦ ଓ ସ୍ୱାଧୀନତା ନିମନ୍ତେ ତାଙ୍କର ପ୍ରବଳ ଆକାଙ୍‌କ୍ଷା ତାଙ୍କୁ ସମ୍ମତ କରାଇ ବସିଲା ଯେ ଭାରତ ଯଦି ଗୋଟିଏ ସ୍ୱାଧୀନ ଦେଶ ଭାବରେ କାର୍ଯ୍ୟକାରୀ ହୋଇପାରୁଛି, ତେବେ ଯୁଦ୍ଧରେ ଅଂଶ ଗ୍ରହଣ କରୁ । ତାଙ୍କ ପକ୍ଷରେ ଏହା ଥିଲା ଏକ ଅଦ୍ଭୁତ ତଥା ବିସ୍ମୟକର ପରିବର୍ତ୍ତନ ଏବଂ ମନରେ ତଥା ଆତ୍ମାରେ ସେ କମ୍ ଯନ୍ତ୍ରଣା ଭୋଗିନାହାନ୍ତି । ଅହିଂସ ନୀତି—ଯାହା ଥିଲା ତାଙ୍କର ରକ୍ତଗତ ଓ ମାନବ-ଜୀବନର ସାର୍ଥକତା; ଭାରତର ସ୍ୱାଧୀନତା—ଯାହା ଥିଲା ତାଙ୍କର ଜୀବନର ପ୍ରଧାନ ତଥା ଅନିର୍ବାଣ ଆକାଙ୍‌କ୍ଷା, ଏ ଉଭୟର ଦ୍ୱନ୍ଦ୍ୱରେ ସେ ଭାରତର ସ୍ୱାଧୀନତା ପ୍ରତି ସାମାନ୍ୟ ଭାବରେ ଆସକ୍ତ ହୋଇ ପଡ଼ିଲେ । ଏହାର ଅର୍ଥ ଅବଶ୍ୟ ନୁହେଁ ଯେ ଅହିଂସା ଉପରେ ତାଙ୍କର ଆସ୍ଥା ଦୋହଲିଗଲା; କିନ୍ତୁ ଏକଥା ନିଶ୍ଚିତ ଯେ ଏହି ଯୁଦ୍ଧରେ କଂଗ୍ରେସ ଅହିଂସ ନୀତି ପ୍ରୟୋଗ ନକରୁ—ଏଥି ସଙ୍ଗେ ଏକମତ ହେବାପାଇଁ ସେ ପ୍ରସ୍ତୁତ ଥିଲେ । ନିଜ ବିଶ୍ୱାସରେ ଅଟଳ, ଯୁଗ-ପ୍ରବର୍ତ୍ତକ ମହାପୁରୁଷଙ୍କୁ ପଛରେ ରଖି ଆଗରେ ଆସି ଉଭାହେଲା ବାସ୍ତବବାଦୀ ରାଷ୍ଟ୍ରନୀତିଜ୍ଞ ।

ଗାନ୍ଧିଜୀଙ୍କ ମନରେ ବାରମ୍ବାର ଏହି ଯେଉଁ ଦ୍ୱନ୍ଦ୍ୱ ଚାଲିଥାଏ, ଆଉ ଯାହା ବାରମ୍ବାର ପ୍ରତୀୟମାନ ବହୁ ଅନ୍ତର୍ବିରୋଧର କାରଣ ହେଲା ଏବଂ ଯାହା ମତେ ଓ ମୋର

କାର୍ଯ୍ୟକଳାପକୁ ଅତି ଘନିଷ୍ଠ ଭାବରେ ପ୍ରଭାବିତ କଲି, ମୁଁ ଯେବେ ତାହା ଲକ୍ଷ୍ୟ କରେ ଓ ସେଥି ଉପରେ ଚିନ୍ତାକରିବସେ ମୋର ମନେପଡ଼େ ଲିଡ଼େଲ୍ ହାର୍ଟଙ୍କ ଗୋଟିଏ ବହିର କେତେକ ଅଂଶ : "ଅପ୍ରତ୍ୟକ୍ଷ ଆଭିମୁଖ୍ୟର ଧାରଣା ମନ ଉପରେ ମନର ପ୍ରଭାବର ସମସ୍ତ ସମସ୍ୟା ସଙ୍ଗେ ଘନିଷ୍ଠ ଭାବରେ ସମ୍ପର୍କିତ । ଏହା ମାନବ ଇତିହାସରେ ସର୍ବଶ୍ରେଷ୍ଠ ପ୍ରଭାବଶାଳୀ କାରଣ । ତଥାପି, ଅନ୍ୟ ଏକ ଶିକ୍ଷା ସଙ୍ଗେ ଏହାର ସଙ୍ଗତିବିଧାନ କରିବା ବାସ୍ତବିକ କଠିନ : ତାହା ହେଉଛି, ବିଭିନ୍ନ ସ୍ୱାର୍ଥ ଉପରେ ତା'ର କି ପ୍ରକାର ପରିଣତି ହୋଇପାରେ କିମ୍ବା କେଉଁ ପରିଣତିକୁ ତାହା ବାଟ କଢ଼ାଇ ନେଇପାରେ, ସେଥିପ୍ରତି ବିଗ୍ରହ ନରଖି ସତ୍ୟ ଅନୁଧାବନ କରିଗଲେ ପ୍ରକୃତ ମୀମାଂସାରେ ଉପନୀତ ହେବା କିମ୍ବା ସେହି ଆଭିମୁଖ୍ୟ ଲାଭକରିବା ସମ୍ଭବ ହୋଇଥାଏ ।

"ମାନବିକ ପ୍ରଗତି କ୍ଷେତ୍ରରେ ଈଶ୍ୱର-ପ୍ରତ୍ୟାଦିଷ୍ଟ ବ୍ୟକ୍ତିମାନେ ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହୋଇଚନ୍ତି, ଇତିହାସ ତା'ର ସାକ୍ଷୀ । ନିଜେ ପ୍ରତ୍ୟକ୍ଷ କରିବା ସତ୍ୟ ନିଃସଙ୍କୋଚ ଭାବରେ ବ୍ୟକ୍ତ କରିବାର ଚୂଡ଼ାନ୍ତ ବାସ୍ତବ ମୂଲ୍ୟ ଏହାର ପ୍ରମାଣ । ତଥାପି, ଏକଥା ବି ସ୍ପଷ୍ଟ ଯେ ସେହି ଅନ୍ତର୍ଦୃଷ୍ଟି ଦର୍ଶନ ଗ୍ରହଣ କରିବା ଓ ତା'ର ପ୍ରସାର ବିଧାନ କରିବା ସର୍ବଦା ଅନ୍ୟ ଏକ ଶ୍ରେଣୀର ମନୁଷ୍ୟମାନଙ୍କ ଉପରେ ନିର୍ଭର କରିଥାଏ । ଏମାନେ ହେଉଚନ୍ତି 'ନେତା' ଯେଉଁମାନଙ୍କୁ ସତ୍ୟ ଏବଂ ସତ୍ୟ ନିମନ୍ତେ ମଣିଷର ଗ୍ରହଣଶୀଳତା ଭିତରେ ଗୁଳନାମା କରିବାରେ ଏକପ୍ରକାର ଦର୍ଶନସମ୍ମତ କୌଶଳ ଅବଲମ୍ବନ କରିବାକୁ ପଡ଼ିଥାଏ । ଏମାନଙ୍କର ପ୍ରଭାବ ବହୁଧା ନିର୍ଭର କରିଥାଏ, ଏମାନଙ୍କର ନିଜସ୍ୱ ସତ୍ୟ ପ୍ରତ୍ୟକ୍ଷ କରିବା ଶକ୍ତି ଉପରେ ଏବଂ ତାହା ଘୋଷଣା କରିବାର ବାସ୍ତବ ଜ୍ଞାନ ଉପରେ ।

"ଏହି ଈଶ୍ୱର-ପ୍ରତ୍ୟାଦିଷ୍ଟ ଧର୍ମପ୍ରବର୍ତ୍ତକମାନଙ୍କ ଉପରେ ପଥର ବୃଷ୍ଟି ହେବା ଦରକାର; ଏହା ସେମାନଙ୍କର ଲଲାଟ ଲିଖନ ଏବଂ ସେମାନଙ୍କର ଆତ୍ମୋପଲବ୍ଧିର ତାହା ହିଁ କଷଟି; କିନ୍ତୁ ଯେଉଁ ନେତା ଉପରେ ଢେଲମାଡ଼ ହୁଏ ସେ ଏତିକି କେବଳ ପ୍ରମାଣିତ କରିବ ଯେ ଜ୍ଞାନର ଅଭାବ ହେତୁରୁ କିମ୍ବା ଜଣେ ଧର୍ମପ୍ରବର୍ତ୍ତକର କାର୍ଯ୍ୟ ଓ ଜଣେ ନେତାର କାର୍ଯ୍ୟ ଭିତରେ ଥିବା ପ୍ରଭେଦ ବୁଝିନପାରି ଉଭୟର ସୀମା ଅଦଳବଦଳ କରିବା ଫଳରେ ସେ ତା'ର କାର୍ଯ୍ୟରେ ବିଫଳ ହୋଇଚି । ଏପରି ଏକ ତ୍ୟାଗର କର୍ମଫଳ, ଯାହା ଜଣେ ମଣିଷ ଭାବରେ ତାକୁ ସମ୍ମାନିତ କରିଥାଏ; ଜଣେ ନେତା ଭାବରେ ତା'ର ପ୍ରତୀୟମାନ ବିଫଳତାର କ୍ଷତିପୂରଣ କରିପାରେ କି ନା ସମସ୍ତ କେବଳ ପ୍ରକାଶ କରିବ । ଅନ୍ତତଃପକ୍ଷେ, ନେତାମାନେ ସାଧାରଣତଃ ଯେଉଁ ଦୋଷ କରିଥାନ୍ତି ତାହା ସେ ଏଡ଼ାଇ ପାରିଥାଏ । ତାହା ହେଉଚି, ପ୍ରକୃତ ଲକ୍ଷ୍ୟ ପକ୍ଷରେ ଯାହା ଚୂଡ଼ାନ୍ତଭାବରେ ଲାଭଜନକ ସେପରି ନକରି ସାମୟିକ ଉପଯୋଗିତାର ବେଦିକାରେ ସତ୍ୟକୁ ବଳି ଦେବା; କାରଣ ଯିଏ କୌଶଳ ଦୃଷ୍ଟିରୁ ଅଭ୍ୟାସଗତ ଭାବରେ ସତ୍ୟକୁ ଦମନ କରି ରଖେ, ତା'ର ଚିନ୍ତାର ଗର୍ଭରୁ ସେ ଏକ ବିକଳାଙ୍ଗ ବସ୍ତୁ କେବଳ ଜନ୍ମ ଦେଇଥାଏ ।

"ସତ୍ୟରେ ଉପନୀତ ହେବା ଦିଗର ପ୍ରଗତି ସଙ୍ଗେ ସେହି ସତ୍ୟକୁ ଗ୍ରହଣ କରିବା ଦିଗର

ପ୍ରଗତିକୁ ମିଳାଇବାର କୌଣସି ବାସ୍ତବ ମାର୍ଗ ଅଛି କି ? ଏହି ସମସ୍ୟାର ଏକ ସମ୍ଭାବ୍ୟ ସମାଧାନର ସୂଚନା ମିଳେ କେତେକ ସୁପରିକଳ୍ପିତ ନୀତି ଉପରେ ଗମ୍ଭୀର ଭାବରେ ଚିନ୍ତା କଲେ । ସେହି ସବୁ ନୀତି କୌଣସି ଏକ ଉଦ୍ଦେଶ୍ୟ ଅବିଚଳିତ ଭାବରେ ବଜାୟ ରଖିବାର ମହତ୍ତ୍ୱ ସୂଚିତ କରିବା ସଙ୍ଗେ ସଙ୍ଗେ ପ୍ରଚଳିତ ଅବସ୍ଥା ପ୍ରତି ଅନୁକୂଳ ଭାବରେ ସେହି ଉଦ୍ଦେଶ୍ୟ ଅନୁଧାବନ କରିବା ନିର୍ଦ୍ଦେଶିତ କରେ । ସତ୍ୟ ପ୍ରତି ବିରୋଧିତା ବିଶେଷତଃ ସେଇଠି ଅନିବାର୍ଯ୍ୟ ହେଉଥିଠେ ଯେଉଁଠି ତାହା ଏକ ନୂତନ ଭାବର ରୂପ ନିଏ; କିନ୍ତୁ ଲକ୍ଷ୍ୟ ପ୍ରତି କେବଳ ନୁହେଁ, ଆଭିମୁଖ୍ୟର ପ୍ରଣାଳୀ ପ୍ରତି ମଧ୍ୟ ଧ୍ୟାନଦେଲେ ପ୍ରତିରୋଧର ମାତ୍ରା ହ୍ରାସ କରାଯାଇପାରେ । ବହୁକାଳରୁ ପ୍ରତିଷ୍ଠିତ କୌଣସି ସ୍ଥିତି ଉପରେ ଆକ୍ରମଣ କରିବାକୁ ଗଲବେଳେ ସମ୍ମୁଖ ଆକ୍ରମଣ କର ନାହିଁ; କୌଶଳରେ ସେପରି ଏକ ପାର୍ଶ୍ୱର ସନ୍ଧାନ କର, ଯେଉଁଠି ସତ୍ୟକୁ ପ୍ରବେଶ କରାଇବା ସହଜ ଓ ସୁଲଭ ହେବ । କିନ୍ତୁ ସେପରି ଯେକୌଣସି ଅପ୍ରତ୍ୟକ୍ଷ ଆଭିମୁଖ୍ୟ ଗ୍ରହଣ କଲାବେଳେ ସତ୍ୟରୁ ଯେପରି ଭ୍ରଷ୍ଟ ହୋଇନଯାଅ, ସେଥିପ୍ରତି ସାବଧାନ ରହ; କାରଣ ଅସତ୍ୟର ଆଶ୍ରୟ ଗ୍ରହଣ କରିବାଠାରୁ ବଳି ମାରାତ୍ମକ, ସତ୍ୟର ପ୍ରକୃତ ଅଗ୍ରଗତି ପକ୍ଷରେ ଅଧିକ କିଛି ନାହିଁ । ସେହିସବୁ କାଳ ଉପରେ ସିଂହାବଲୋକନ କଲେ, ଯେବେ ବହୁ ନୂତନ ଚିନ୍ତାଧାରା ଗୃହୀତ ହୋଇଛି, ଏକଥା ଲକ୍ଷ୍ୟକରି ହେବ ଯେ ଗ୍ରାହ୍ୟ ପ୍ରକ୍ରିୟା ଏଥିପାଇଁ ସହଜ ହୋଇଥିଲା; କାରଣ ସେହି ସବୁ ଚିନ୍ତା ମୌଳିକ ଭାବରେ ନୂତନ ରୂପରେ ପରିବେଷଣ କରିବା ପରିବର୍ତ୍ତେ, ପ୍ରାଚୀନ ବୋଲି ସମ୍ମାନିତ ଅଥଚ ବିସ୍ମୃତ କୌଣସି ନୀତି ଅବା ଆଚରଣକୁ ଆଧୁନିକ ଢଙ୍ଗରେ ପରିବେଷଣ କରାଯାଇଛି । ଏଥିରେ ପ୍ରତାରଣାର ପ୍ରଶ୍ନ ନାହିଁ; ଅଛି ଯୋଗସୂତ୍ର ସନ୍ଧାନରେ ସତର୍କତା ଅବଲମ୍ବନ, କାରଣ ଆକାଶର ଏହି ସୂର୍ଯ୍ୟ ତଳେ ନୂତନ ବୋଲି କିଛି ନାହିଁ ।" (୧)

## ୭. ଉତ୍ତେଜନା

ଖ୍ରୀ: ୧୯୪୨ର ସେହି ପ୍ରଥମ କେତେ ମାସରେ ଭାରତରେ ଉତ୍ତେଜନା ବୃଦ୍ଧିପାଇଲା । ରଣମଞ୍ଚ କ୍ରମଶଃ ନିକଟବର୍ତ୍ତୀ ହୋଇଆସୁଥିଲା ଏବଂ ଭାରତର ନଗରମାନଙ୍କ ଉପରେ ବୋମା ବର୍ଷଣର ସମ୍ଭାବନା ଦେଖାଦେଇଥିଲା । ଯେଉଁ ପ୍ରାଚ୍ୟ ଦେଶମାନଙ୍କରେ ଏହି ପ୍ରଳୟଙ୍କରୀ ଯୁଦ୍ଧ ଚାଲିଛି, ସେଠାର ଅବସ୍ଥା କ'ଣ ହେବ ? ଭାରତ ଓ ଇଂଲଣ୍ଡର ସମ୍ପର୍କରେ କି ନୂତନ ଅବସ୍ଥା ଉପୁଜିବ ? ପରସ୍ପର ପ୍ରତି କ୍ରୋଧ ଦୃଷ୍ଟିରେ ଚାହିଁ, ଅତୀତ ଇତିହାସର କେତେ ତିକ୍ତ ସ୍ମୃତିଦ୍ୱାରା ବିଚ୍ଛିନ୍ନ, ଯେଉଁ ବିଧି-ନିର୍ବନ୍ଧକୁ କେହି ଆଉ କରିପାରି ନଥାନ୍ତେ, ତା'ର ଶିକାର ଭାବରେ, ଆମେ କ'ଣ ପୂର୍ବଭଳି ଗତି କରି ଯିବୁ ? ଉଭୟ ଉପରକୁ ବର୍ତ୍ତମାନ ଯେଉଁ ବିପଦ ମାଡ଼ିଆସୁଛି ତାହା କ'ଣ ଉଭୟ ଦେଶ ମଧ୍ୟରେ ବ୍ୟବଧାନ ଦୂର କରିବା

(୧) ଲିଡ଼େଲ ହାର୍ଟ—'ଦ ଷ୍ଟ୍ରେଟେଜି ଅଫ୍ ଇନ୍‌ଡ଼ାଇରେକ୍ଟ ଏପ୍ରୋଚ' (୧୯୪୧) ମୁଖବନ୍ଧ ।

ଦାଗରେ ସହାୟକ ହୋଇ ପାରିବ ? ହ୍ୱାଟ-ବଜାର ସବଦ୍ଧ ଉତ୍ତେଜନାର ଏକ ତରଙ୍ଗ ଖେଳିଗଲା ଓ ନାନାବିଧ ଗୁଜବ ପ୍ରସାରିତ ହୋଇଲା । ଯେଉଁ ଭବିଷ୍ୟତ ଦ୍ରୁତ ପଦରେ ମାଡ଼ି-ଆସୁଥିଲା, ସେଥିରେ ବିତ୍ତଶାଳୀ ଶ୍ରେଣୀ ଆତଙ୍କିତ ହୋଇଉଠୁଥିଲେ; କାରଣ ସେହି ଭବିଷ୍ୟତ ଆଉ ଯାହା ହେଉନା କାହିଁକି, ସେମାନେ ଯେଉଁ ସାମାଜିକ ବ୍ୟବସ୍ଥା ପ୍ରତି ଅଭ୍ୟସ୍ତ ଥିଲେ ଏବଂ ଯେଉଁ ସ୍ୱତନ୍ତ୍ର ସ୍ଥିତି ଓ ସ୍ୱାର୍ଥ ଉପଭୋଗ କରୁଥିଲେ ତାହା ଓଲଟପାଲଟ କରିଦେବାର ଆଶଙ୍କା ରହିଥିଲା । କୃଷୀ ଓ ଶ୍ରମିକମାନଙ୍କର ଏ ପ୍ରକାର କିଛି ଭୟ ନଥିଲା, କାରଣ ହରାଇବାକୁ ସେମାନଙ୍କର କିଛି ନଥିଲା; ବରଂ ସେମାନେ ବର୍ତ୍ତମାନର ଦୁରବସ୍ଥାରୁ ମୁକ୍ତ ହେବାପାଇଁ, ଯେକେଉଁ ଧରଣର ହେଉ, ପରିବର୍ତ୍ତନ ନିମନ୍ତେ ଆକାଙ୍କ୍ଷିତ ଥିଲେ ।

ଭାରତରେ ବରାବର ଚୀନ ପ୍ରତି ଗଭୀର ସମବେଦନା ରହିଥିଲା ଏବଂ ଫଳତଃ ଜାପାନ ପ୍ରତି ଏକପ୍ରକାର ବିତୃଷ୍ଣା ବି ଉପୁଜି ସାରିଥିଲା । ପ୍ରଥମେ ମନେକରାଯାଉଥିଲା ଯେ ପ୍ରଶାନ୍ତ ମହାସାଗରୀୟ ଯୁଦ୍ଧ ଚୀନ ଉପରେ ପଡ଼ୁଥିବା ଚାପ କେତେକାଂଶରେ ଲାଘବ କରିବ । ସାଢ଼େ ଚାରିବର୍ଷ ଧରି ଚୀନ ଏକା ଏକା ଜାପାନ ବିରୁଦ୍ଧରେ ସଂଗ୍ରାମ କରି ଆସିଥିଲା । ବର୍ତ୍ତମାନ ତା'ର ପକ୍ଷରେ ଶକ୍ତିଶାଳୀ ମିତ୍ରମାନେ ଏକଜୁଟ ହୋଇଚନ୍ତି ଏବଂ ଏଣିକି ତା'ର ଭାର ଅବଶ୍ୟ ଲାଘବ ହେବ ଓ ତା'ର ବିପଦ ହ୍ରାସ ପାଇବ; କିନ୍ତୁ ସେହି ମିତ୍ରମାନେ ଥରକୁ ଥର ମାଡ଼ କେବଳ ବହନ କଲେ ଏବଂ ଆଗେଇଆସୁଥିବା ଜାପାନୀ ସୈନ୍ୟବାହିନୀ ସମ୍ମୁଖରେ ବ୍ରିଟିଶ ଔପନିବେଶିକ ସାମ୍ରାଜ୍ୟ ଅତି ବିସ୍ମୟକର କ୍ଷିପ୍ରତା ସହକାରେ ଦୀର୍ଣ୍ଣ ହେବାକୁ ଲାଗିଲା । ଏହି ଗର୍ବୋନ୍ନତ ତଥା ସ୍ଫୀତ ଇମାରତ୍ର ତେବେ କ'ଣ ଥିଲା ଗୋଟାଏ ଭିତ୍ତିହୀନ ଅଥବା ଆତ୍ମଶକ୍ତିହୀନ ତାସ୍ ରଚିତ ଏକ ଗୃହ କେବଳ ? ଆଧୁନିକ ଯୁଦ୍ଧ ନିମନ୍ତେ ଯେଉଁସବୁ ସାଜସରଞ୍ଜାମ ଆବଶ୍ୟକ, ସେସବୁ ପ୍ରାୟ କିଛି ନଥିବା ସତ୍ତ୍ୱେ ଚୀନ ଯେ ଏତେ କାଳ ଜାପାନୀ ଆକ୍ରମଣର ପ୍ରତିରୋଧ କରିପାରିଲା, ସେଥି ସଙ୍ଗେ ଇଂରେଜ ସାମ୍ରାଜ୍ୟବାଦୀମାନଙ୍କର ତୁଳନା କରିବା ଅନିବାର୍ଯ୍ୟ ହୋଇଉଠିଲା । ଲୋକଙ୍କ ଦୃଷ୍ଟିରେ ଚୀନର ସମ୍ମାନ ବିଶେଷ ପରିମାଣରେ ବଢ଼ିଗଲା ଏବଂ ଜାପାନ ପ୍ରତି ସେଭଳି ସଦ୍‌ଭାବ ନଥିଲେ ସୁଦ୍ଧା, ଏସିଆ ମହାଦେଶୀୟ ଏକ ଶକ୍ତିର ସାମରିକ ବଳ ସମ୍ମୁଖରେ ବହୁକାଳରୁ ପ୍ରତିଷ୍ଠିତ ୟୁରୋପୀୟ ଔପନିବେଶିକ ଶକ୍ତିମାନଙ୍କର ବିପର୍ଯ୍ୟୟ ଲୋକଙ୍କ ମନରେ ଏକପ୍ରକାର ସନ୍ତୋଷର ଭାବ ସଞ୍ଚାର କଲା । ବ୍ରିଟିଶ ପକ୍ଷରେ ମଧ୍ୟ ଏହି ପ୍ରାଚ୍ୟ-ଏସୀୟ ଭାବ ସ୍ପଷ୍ଟ ଭାବରେ ପ୍ରକାଶ ପାଇଥିଲା । ପରାଜୟ ଓ ବିପର୍ଯ୍ୟୟ ମଧୁର ନିଶ୍ଚୟ ନୁହେଁ; କିନ୍ତୁ ଗୋଟାଏ ପ୍ରାଚ୍ୟ ତଥା ଏସୀୟ ଶକ୍ତି ସେମାନଙ୍କ ଉପରେ ଯେ ବିଜୟ ହାସଲ କଲା ଏକଥା ସେମାନଙ୍କର-ଲାଞ୍ଛନାକୁ ଅତିମାତ୍ରାରେ ତିକ୍ତ କରି ତୋଳିଥିଲା । ଜଣେ ଉଚ୍ଚ ଇଂରେଜ ରାଜକର୍ମଚାରୀ ମନ୍ତବ୍ୟ କରିଥିଲେ ଯେ ପୀତବର୍ଣ୍ଣ ଜାପାନୀମାନଙ୍କ ପରିବର୍ତ୍ତେ ଜର୍ମାନମାନେ ଯଦି ଇଂଲଣ୍ଡର 'ପ୍ରିନ୍‌ସ ଅଫ୍ ଓ୍ୱେଲସ୍' ଓ 'ରିପାଲସ' ଯୁଦ୍ଧଜାହାଜ ଦୁଇଟି ବୁଡ଼ାଇ ପାରିଥାନ୍ତେ ତାଙ୍କର ଦୁଃଖ କରିବାର କିଛି ନଥିଲା ।

ଚୀନା ନେତା ଜେନେରାଲିସିମୋ ଓ ମାଦାମ ଚିୟାଙ୍ଗ୍ କାଇ-ଶେକ୍‌ଙ୍କ ଭାରତ ପରିଦର୍ଶନ

ଭାରତରେ ଏକ ମହାନ୍ ଘଟଣା ହୋଇଉଠିଲା । ଆନୁଷ୍ଠାନିକ ଚଳଣୀ ଓ ଭାରତ ସରକାରଙ୍କ ମରଜି ଯୋଗୁଁ ସେମାନେ ସାଧାରଣ ଲୋକଙ୍କ ସଙ୍ଗେ ମିଳାମିଶା କରିବାର ସୁବିଧା ପାଇ ନଥିଲେ ସୁଦ୍ଧା ସେହି ସଙ୍କଟଜନକ ଅବସ୍ଥାରେ ଭାରତରେ ସେମାନଙ୍କର ଉପସ୍ଥିତି ଓ ଭାରତର ସ୍ୱାଧୀନତା ପ୍ରତି ସେମାନଙ୍କର ପ୍ରକାଶ୍ୟ ସହାନୁଭୂତି ନିଜର ଜାତୀୟ ଗଣ୍ଡି ଭିତରୁ ବାହାରିଆସିବା ପାଇଁ ଭାରତକୁ ସାହାଯ୍ୟ କଲା ଏବଂ ଯେଉଁ ଆନ୍ତର୍ଜାତିକ ପ୍ରଶ୍ନ ଏହି ଯୁଦ୍ଧ ସଙ୍ଗେ ଜଡ଼ିତ ଥିଲା ସେ ସମ୍ପର୍କରେ ତା'ର ଅଗ୍ରଗତିକୁ ପୁଷ୍ଟ କଲା । ଭାରତ ଓ ଚୀନର ସମ୍ପର୍କ ଦୃଢ଼ତର ହେଲା ଏବଂ ସେଥି ସଙ୍ଗେ ଚୀନ ଓ ଅନ୍ୟାନ୍ୟ ଜାତିମାନଙ୍କ ସହିତ ମିଳିତ ହୋଇ ପୃଥିବୀରେ ମୁକ୍ତି ଓ ଗଣତନ୍ତ୍ରର ଶତ୍ରୁ ନାତ୍ସିବାଦ ବିରୁଦ୍ଧରେ ଦଣ୍ଡାୟମାନ ହେବାପାଇଁ ଭାରତର ଅଭିଳାଷ ବଳବତ୍ତର କଲା । ଭାରତର ଆସନ୍ନ ବିପଦ ତା'ର ଜାତୀୟବାଦ ଓ ଆନ୍ତର୍ଜାତୀୟତା ଭିତରେ ଘନିଷ୍ଠତା ସ୍ଥାପନ ଦିଗରେ ସହାୟକ ହେଲା । ଉଭୟଙ୍କୁ ବିଚ୍ଛିନ୍ନ କରିବାର ଯଦି କିଛି ହେତୁ ଥିଲା, ତାହା ହେଉଚି ବ୍ରିଟିଶ ସରକାରଙ୍କ ନୀତି ।

ଭାରତ ଉପରକୁ ଯେଉଁ ବିପଦ ମାଡ଼ିଆସୁଥିଲା ସେ ସମ୍ପର୍କରେ ଭାରତ ସରକାର ସଚେତନ ନଥିଲେ ବୋଲି ନୁହେଁ । ସେମାନଙ୍କ ମନରେ ବି ଉଦ୍‌ବିଗ୍ନତା ଓ ଖୁବ୍ ଚଞ୍ଚଳ କିଛି କରିବାର ଉପାୟ ନିମନ୍ତେ ବ୍ୟାକୁଳତା ଅବଶ୍ୟ ରହିଥିବ; କିନ୍ତୁ ଭାରତରେ ଇଂରେଜମାନଙ୍କର ଏପରି ସ୍ୱାର୍ଥ-ପ୍ରଧାନ ସ୍ଥିତି ଥିଲା, ନିର୍ଦ୍ଦିଷ୍ଟ ଅଭ୍ୟାସ ଅଥବା କର୍ମସୂଚୀରେ ସେମାନେ ଏତେଭଳି ଆବଦ୍ଧ ଥିଲେ, ଅମଲାତାନ୍ତ୍ରିକ ଗଳଫିତାର ପ୍ରକ୍ରିୟା ଏତେ ଭଲି ସମାପ୍ତିହୀନ ଥିଲା ଯେ ସେମାନଙ୍କର ଦୃଷ୍ଟିଭଙ୍ଗୀ କିମ୍ବା କାର୍ଯ୍ୟକଳାପରେ କୌଣସି ଲକ୍ଷଣୀୟ ପରିବର୍ତ୍ତନ ଦୃଷ୍ଟିଗୋଚର ହେଉନଥିଲା । ସେମାନଙ୍କ ଗତିବିଧିରେ ବେଗ ନଥିଲା, ଅଧୀରତା ନଥିଲା, ଉତ୍ତେଜନା ନଥିଲା ଓ ନିଶ୍ଚିତଭାବରେ କିଛି କରିବାର ଉତ୍କଣ୍ଠା ନଥିଲା । ଯେଉଁ ପ୍ରଣାଳୀରେ ସେମାନେ କାର୍ଯ୍ୟ କରୁଥିଲେ, ତାହା ନିର୍ମିତ ହୋଇଥିଲା ଅନ୍ୟ ଏକ ଯୁଗ ଓ ଉଦ୍ଦେଶ୍ୟ ନିମନ୍ତେ । ସେମାନଙ୍କର ସାମରିକ ଓ ବେସାମରିକ ଉଭୟ କ୍ଷେତ୍ରର ଲକ୍ଷ୍ୟ ଥିଲା । ଭାରତ ଉପରେ ଆଧିପତ୍ୟ ବଜାୟ ରଖିବା ଓ ଭାରତର ଲୋକଙ୍କ ମୁକ୍ତି ଉଦ୍ୟମ ସବୁମନ୍ତେ ପଣ୍ଡ କରିବା । ଭାରତରେ ସେମାନଙ୍କର ଉଦ୍ଦେଶ୍ୟ ସାଧନ କରିବା ନିମନ୍ତେ ଇଂରେଜ-ମାନଙ୍କର ଶକ୍ତି ଯଥେଷ୍ଟ ଥିଲା; କିନ୍ତୁ ଗୋଟାଏ ଶକ୍ତିଶାଳୀ ତଥା ଦୁର୍ଦ୍ଧର୍ଷ ଶତ୍ରୁ ବିରୁଦ୍ଧରେ ଆଧୁନିକ ଯୁଗରେ ଯୁଦ୍ଧ ଚଳାଇବା ଥିଲା ଏକ ସ୍ୱତନ୍ତ୍ର ବ୍ୟାପାର ଏବଂ ସେଥିପ୍ରତି ସଜ ହେବା ସେମାନଙ୍କ ପକ୍ଷରେ ଆଦୌ ମାତ୍ର ସହଜ ନଥିଲା । ଏଥି ନିମନ୍ତେ ବୁଦ୍ଧିବୃତ୍ତି ଦିଗରୁ ସେମାନେ ଯେ ଅନୁପଯୁକ୍ତ ଥିଲେ କେବଳ ନୁହେଁ, ବରଂ ସେମାନଙ୍କ ଶକ୍ତିର ଏକ ପ୍ରମୁଖ ଅଂଶ ଭାରତରେ ଜାତୀୟବାଦ ଦମନ କରିବାରେ ନିୟୋଜିତ ଥିଲା । ନବ ନବ ସମସ୍ୟା ସମ୍ମୁଖରେ ବର୍ମା ଓ ମାଲୟ ଶାସନର ବିଫଳତା କେତେ ତାତ୍ପର୍ଯ୍ୟପୂର୍ଣ୍ଣ ଓ ପ୍ରକାଶମାନ ହେଲେ ସୁଦ୍ଧା ଭାରତର ଇଂରେଜମାନେ ସେଥିରୁ ଶିକ୍ଷା ଗ୍ରହଣ କରିପାରିନଥିଲେ । ଭାରତକୁ ଯେଉଁ ସିଭିଲ୍ ସର୍ଭିସ୍ ଶାସନ କରୁଥିଲା, ବର୍ମାରେ ବି ସେହି ବ୍ୟବସ୍ଥା ଯଥାଯଥ ଭାବରେ କାର୍ଯ୍ୟକାରୀ ହେଉଥିଲା । ପ୍ରକୃତପକ୍ଷେ, ମାତ୍ର ସେଦିନ ପର୍ଯ୍ୟନ୍ତ ବର୍ମା ଭାରତୀୟ

ପ୍ରଶାସନର ଅଂଶବିଶେଷ ଥିଲା । ସେଠାରେ ସରକାରୀ ନୀତି-ନିୟମ ଭାରତଠାରୁ କୌଣସି-ମତେ ଭିନ୍ନ ନଥିଲା ଏବଂ ବର୍ମୀ ପ୍ରଦର୍ଶିତ କଲା, ସେହି ଶାସନ ପ୍ରଣାଳୀ କେତେଭଳି ମୃତକଳ୍ପ । ତଥାପି ସେହି ପ୍ରଣାଳୀ କୌଣସି ପରିବର୍ତ୍ତନ ବିନା ଚାଲୁରହିଲା ଏବଂ ଭାଇସ୍‌ରାୟ ଓ ତାଙ୍କର ଉଚ୍ଚ କର୍ମଚାରୀମାନେ ପୂର୍ବଭଳି କାର୍ଯ୍ୟ କରିବାରେ ଲାଗିଲେ । ବର୍ମାରେ ଯେଉଁ ଉଚ୍ଚ କର୍ମଚାରୀମାନେ ବିକଳ ଭାବରେ ବିଫଳ ହୋଇଥିଲେ, ସେମାନେ ଭାରତରେ ଆସି ସେମାନଙ୍କ ଶ୍ରେଣୀର ସଂଖ୍ୟା ବୃଦ୍ଧି କଲେ । ସିମ୍‌ଲାର ପାହାଡ଼ ଉପରେ ଉପବିଷ୍ଟ ହେଲେ ଆଉ ଜଣେ ମହାମହିମ । ଲଣ୍ଡନର ନିର୍ବାସିତ ସରକାରମାନଙ୍କ ଭଳି ଏକାଧିକ ବ୍ରିଟିଶ୍ ଉପନିବେଶରୁ ନିର୍ବାସିତ ଉଚ୍ଚ ସରକାରୀ କର୍ମଚାରୀମାନଙ୍କୁ ଅତିଥି କରିବାର ସୌଭାଗ୍ୟ ଆମର ଲାଭହେଲା । ଆଙ୍ଗୁଠିରେ ମୁଦି ଲାଗିବା ଭଳି ଭାରତରେ ବ୍ରିଟିଶ୍ ଛାଞ୍ଚାରେ ସେମାନେ ଯଥାଯଥ ଭାବରେ ଖାପିଗଲେ । ରଙ୍ଗମଞ୍ଚରେ ଗ୍ରୀସ୍ମମୂର୍ତ୍ତି ସଦୃଶ ଏହି ଉଚ୍ଚ କର୍ମଚାରୀମାନେ ସେମାନଙ୍କର ଅଭ୍ୟସ୍ତ ରୀତିରେ କାର୍ଯ୍ୟକାରୀ ହେବାକୁ ଲାଗିଲେ । ସେମାନଙ୍କର ଶାହୀ ଘଟାଟୋପର, ଦରବାରୀ ଶିଷ୍ଟାଚାର, ଦରବାର କରି ଉପାଧି ବିତରଣ, ପ୍ୟାରେଡ଼, ନୈଶଭୋଜ ଓ ରୀତିଶୁଦ୍ଧ ପୋଷାକ-ପରିଚ୍ଛଦ, ଲମ୍ବା ଚଉଡ଼ା କଥା ଇତ୍ୟାଦି ଜରିଆରେ ସେମାନେ ଆମକୁ ଆଚମ୍ବିତ କରିବାର ପ୍ରୟାସରୁ ବିରତ ହୋଇନଥିଲେ । ନୂଆ ଦିଲ୍ଲୀରେ ଭାଇସ୍‌ରାୟଙ୍କ ରାଜପ୍ରାସାଦ ଥିଲା ମୁଖ୍ୟ ମନ୍ଦିର ଯେଉଁଠି ଶ୍ରେଷ୍ଠ ପୂଜାରୀ ଉପବିଷ୍ଟ ଥିଲେ; କିନ୍ତୁ ଦେଶରେ ଆହୁରି ଅନେକ ମନ୍ଦିର ଓ ଆହୁରି ଅନେକ ପୂଜାରୀ ବି ଥିଲେ । ଏ ସମସ୍ତ ଆନୁଷ୍ଠାନିକ ବିଧିବିଧାନ ଓ ଶାହୀ ଘଟାଟୋପର ଉଦ୍ଦେଶ୍ୟ ଥିଲା ଲୋକଙ୍କ ମନରେ ପ୍ରଭାବ ପକାଇବା ଏବଂ ଅତୀତରେ ଆମ ଲୋକଙ୍କ ଉପରେ ଏହାର ପ୍ରଭାବ ପଡ଼ିଥିଲା; କାରଣ ଭାରତୀୟମାନେ ଏ ପ୍ରକାର ପ୍ରଦର୍ଶନ ପ୍ରତି ଯୁଗେ ଯୁଗେ ଅଭ୍ୟସ୍ତ ହୋଇଆସିଚନ୍ତି; କିନ୍ତୁ ନୂତନ କେତେ ମାନଦଣ୍ଡ ଗଢ଼ି ଉଠିଥିଲା, ବିଭିନ୍ନ ମୂଲ୍ୟବୋଧ ସୃଷ୍ଟି ହୋଇ ସାରିଥିଲା ଏବଂ ବର୍ତ୍ତମାନ ଏହି ଆଡ଼ମ୍ବର ଲୋକଙ୍କୁ ଆଚମ୍ବିତ କରିବା ପରିବର୍ତ୍ତେ ବ୍ୟଙ୍ଗ ଓ ବିଦ୍ରୁପର ବିଷୟ ହୋଇଉଠିଲା । ଅନେକେ ମନେକରିଥାନ୍ତି ଯେ ଭାରତୀୟମାନେ ଦ୍ରୁତ ପରିବର୍ତ୍ତନବିମୁଖ ଏକ ଧୀରଗତିକ ଜାତି ଯାହାଙ୍କର ଅଣନିଃଶ୍ୱାସୀ ଭାବରେ କିଛି କରିବା ପ୍ରତି ଆତୁରତା ନଥାଏ; କିନ୍ତୁ ସେମାନେ ବି ସେମାନଙ୍କର କାର୍ଯ୍ୟର ଏକପ୍ରକାର ବେଗ ଓ ତେଜ ପ୍ରକଟ କରିପାରିଥିଲେ; କାରଣ କାର୍ଯ୍ୟ କରିସିବା ପାଇଁ ସେମାନଙ୍କର ପ୍ରବଳ ଅଭିଳାଷ ଜାଗିଥିଲା । ପ୍ରଦେଶର କଂଗ୍ରେସ ସରକାରମାନେ, ସେମାନଙ୍କର ତ୍ରୁଟି-ବିଚ୍ୟୁତି ଯାହା ହେଉନା କାହିଁକି ଫଳଲାଭ ନିମନ୍ତେ ଆତୁର ଥିଲେ ଏବଂ ବହୁ ପ୍ରତିଷ୍ଠିତ କର୍ତ୍ତବ୍ୟ-କର୍ମର ଧାରା ଅବଜ୍ଞା କରି ଅବ୍ୟାହତ ଭାବରେ କଠିନ ପରିଶ୍ରମ କରୁଥିଲେ । ବର୍ତ୍ତମାନର ଏହି ଗୁରୁତର ସଙ୍କଟ ଓ ବିପଦ ସମ୍ମୁଖରେ ଭାରତ ସରକାର ଓ ତାଙ୍କର ଏଜେଣ୍ଟମାନଙ୍କର ନିଶ୍ଚେଷ୍ଟତା ଓ ମନ୍ଥରତା ବାସ୍ତବିକ ବିରକ୍ତିକର ଥିଲା ।

ଏହାପରେ ଆସିଲେ ମାର୍କିନମାନେ । ଭାରତ ସରକାରଙ୍କ ପୁରୁଣା ରାଜନୀତି ସଙ୍ଗେ ସେମାନେ ପରିଚିତ ନଥିଲେ ଏବଂ ସେ ବିଷୟରେ ଜାଣିବା ପାଇଁ ସେମାନଙ୍କର ସେପରି

ଆଗ୍ରହ ବି ନଥିଲା । ସେମାନେ ଥିଲେ ଅତିମାତ୍ରାରେ କର୍ମଚଞ୍ଚଳ ଓ କୌଣସି କାର୍ଯ୍ୟ ପୂରଣ ନହେବା ପର୍ଯ୍ୟନ୍ତ ସେମାନଙ୍କର ତର ନଥାଏ । ବିଳମ୍ବ ପ୍ରତି ଅସହିଷ୍ଣୁ, ସେମାନେ ନାଲିଫିତା ଓ ଅନ୍ୟାନ୍ୟ ପ୍ରତିବନ୍ଧକ ସମ୍ମୁଖରୁ ହଟାଇ ଆଗେଇଯିବା ଫଳରେ ନୂଆଦିଲ୍ଲୀର ଧରାବନ୍ଧା ଜୀବନ ବିପର୍ଯ୍ୟସ୍ତ ହୋଇପଡ଼ିଲା । କେଉଁ ଅବସରରେ କି ପ୍ରକାର ପୋଷାକ ପିନ୍ଧିବାକୁ ପଡ଼ିବ ସେ ବିଷୟରେ ଜାଣିବା ପାଇଁ ସେମାନଙ୍କର ଫୁରୁସତ ନଥାଏ ଏବଂ କେବେ କେବେ ସେସବୁ ଆନୁଷ୍ଠାନିକ ପ୍ରଣାଳୀ ଓ କୂଟନୈତିକ ରୀତିନୀତିର କଠୋର ଶୃଙ୍ଖଳା ସେମାନେ ନିଜ ଅଜ୍ଞାତରେ ଭାଙ୍ଗି ବସୁଥିଲେ । ଯେଉଁ ସାହାଯ୍ୟ ସେମାନଙ୍କ ଦେଶରୁ ଆସୁଥିଲା, ତାହା ଭାରତ ସରକାରଙ୍କ ସନ୍ତୋଷର କାରଣ ହୋଇଥିଲେ ସୁଦ୍ଧା ଉଚ୍ଚତମ ସରକାରୀ ମହଲରେ ମାର୍କିନ୍‌ମାନେ ବିଶେଷ ଭାବରେ ଆଦୃତ ନଥିଲେ ଏବଂ ଉଭୟ ମଧ୍ୟରେ ପ୍ରୀତିକର ସମ୍ପର୍କ ସ୍ଥାପିତ ହୋଇପାରିନଥିଲା । ଭାରତୀୟମାନେ କିନ୍ତୁ ମାର୍କିନ୍‌ମାନଙ୍କୁ ମୋଟାମୋଟି ଭାବରେ ପସନ୍ଦ କରିଥିଲେ; ହାତର କାର୍ଯ୍ୟ ସମ୍ପନ୍ନ କରିବାପାଇଁ ସେମାନଙ୍କର କର୍ମଶକ୍ତି ଓ ଗଭୀର ଆଗ୍ରହ ଥିଲା ଅତ୍ୟନ୍ତ ପ୍ରଭାବଶାଳୀ ଏବଂ ଭାରତର ବ୍ରିଟିଶ କର୍ମଚାରୀ ମହଲରେ ଏସବୁ ଗୁଣର ଅଭାବ ସ୍ପଷ୍ଟ ଲକ୍ଷ୍ୟ କରିହେଉଥିଲା । ସେମାନଙ୍କର ସାଦାସିଧା ଆଚରଣ ଓ ସରକାରୀ ଢଙ୍ଗଢାଙ୍ଗ ପ୍ରତି ଅସ୍ପୃହା ଲୋକେ ପସନ୍ଦ କରୁଥିଲେ । ଭାରତର ସରକାରୀ କର୍ମଚାରୀ ଶ୍ରେଣୀ ଓ ନବାଗତ ମାର୍କିନମାନଙ୍କ ଭିତରେ କାର୍ଯ୍ୟ କରୁଥିବା ପରସ୍ପର ପ୍ରତି ଏହି ଅପ୍ରକାଶ୍ୟ ବିରାଗ ଭାରତୀୟଙ୍କ ପକ୍ଷରେ ନୀରବ ଆମୋଦର କାରଣ ହୋଇଥିଲା ଏବଂ ସେ ସମ୍ପର୍କରେ ସତ୍ୟ ଓ କଳ୍ପିତ ବହୁତ କଥା ଲୋକଙ୍କ ମୁହଁରୁ ଶୁଣିବାକୁ ମିଳୁଥିଲା ।

ଯୁଦ୍ଧ ଭାରତର ନିକଟବର୍ତ୍ତୀ ହେଉଥିଲା ଓ ସେଥିଲାଗି ଗାନ୍ଧିଜୀ ବିଶେଷ ଭାବରେ ବିଚଳିତ ହୋଇଉଠିଥିଲେ । ନୂତନ ପରିସ୍ଥିତିରେ ତାଙ୍କର ଅହିଂସ ନୀତି ଓ ନିର୍ଘଣ୍ଟ ପ୍ରୟୋଗ କରିବା କିଛି ସହଜ ନଥିଲା । ଗୋଟାଏ ପରିଶତ୍ରୁସୈନ୍ୟ ମାଡ଼ିଆସୁଥିଲାବେଳେ କିମ୍ବା ଉଭୟ ପଟର ସୈନ୍ୟ ମୁହାଁମୁହିଁ ହେଲାବେଳେ ଆଇନ-ଅମାନ୍ୟ କିମ୍ବା ବ୍ୟକ୍ତିଗତ ସତ୍ୟାଗ୍ରହର ପ୍ରଶ୍ନ ଉଠି ନପାରେ । ନିଷ୍କ୍ରିୟତା କିମ୍ବା ଆକ୍ରମଣ ମୁହଁରେ ମୁଣ୍ଡ ନୁଆଁଇବା ପ୍ରଶ୍ନ ବି ଉଠିନପାରେ । କ'ଣ ତେବେ ? ତାଙ୍କର ନିଜର ସହଯୋଗୀମାନେ ଓ ମୋଟାମୋଟି ଭାବରେ କଂଗ୍ରେସ ଏପରି ଏକ ଅବସର ନିମନ୍ତେ କିମ୍ବା ଆକ୍ରମଣର ସଶସ୍ତ୍ର ପ୍ରତିରୋଧର ବିକଳ୍ପ ପନ୍ଥା ଭାବରେ ଅହିଂସା ଉପଯୋଗୀ ନୁହେଁ ବୋଲି ପ୍ରତ୍ୟାଖ୍ୟାନ କରିସାରିଥିଲେ ଏବଂ ପରିଶେଷରେ ଗାନ୍ଧିଜୀ ବି ସମ୍ମତ ହୋଇଥିଲେ ଯେ ତାଙ୍କର ସହଯୋଗୀମାନଙ୍କର ଓ କଂଗ୍ରେସର ସେପରି କରିବାର ଅଧିକାର ଅଛି । ତଥାପି ନିଜ ଭିତରେ ସେ ଅଶାନ୍ତ ଭୋଗୁଥିଲେ; କାରଣ କୌଣସି ହିଂସାତ୍ମକ ମାର୍ଗରେ ବ୍ୟକ୍ତିଗତ ଭାବରେ ସେ ସମ୍ମିଳିତ ହୋଇପାରିନଥାନ୍ତେ; କିନ୍ତୁ ଜଣେ ବ୍ୟକ୍ତିବିଶେଷ ଅପେକ୍ଷା ସେ ଥିଲେ ଆହୁରି ଉଚ୍ଚ ଓ ମହତ୍ତର । ଜାତୀୟତାବାଦୀ ଆନ୍ଦୋଳନରେ ସେ କୌଣସି କର୍ମକର୍ତ୍ତାର ଆସନ ଗ୍ରହଣ କରିଥାନ୍ତୁ ବା ନଥାନ୍ତୁ, ତାଙ୍କର ଆସନ ଲୋକଙ୍କ ହୃଦୟରେ ପ୍ରତିଷ୍ଠିତ ଥିଲା ଏବଂ କୋଟି କୋଟି ଲୋକଙ୍କ ଭିତରେ ତାଙ୍କର ବାଣୀ ଅସାଧାରଣ ମହତ୍ତ୍ୱ ଲାଭକରୁଥିଲା ।

ବର୍ତ୍ତମାନ ହେଉ କି ଅତୀତରେ ହେଉ, ଯଦି କେହି ଭାରତକୁ ବିଶେଷତଃ ତା'ର ଜନସାଧାରଣଙ୍କୁ ଜାଣିଥିଲେ, ଆଉ ସେମାନଙ୍କର ସଂଖ୍ୟା କି ମୁଷ୍ଟିମେୟ ଅବଶ୍ୟ, ସେମାନଙ୍କ ଅପେକ୍ଷା ଆହୁରି ଭଲ ଭାବେ ଗାନ୍ଧିଜୀ ଜାଣନ୍ତି ଏ ଦେଶକୁ ଓ ତାର ନରନାରୀଙ୍କୁ । ଭାରତସାରା ବିସ୍ତୃତ ଭାବରେ ପର୍ଯ୍ୟଟନ କରି ଲକ୍ଷ ଲକ୍ଷ ଲୋକଙ୍କ ସଂସ୍ପର୍ଶରେ ସେ ଆସିଚନ୍ତି ବୋଲି କେବଳ ନୁହେଁ, ବରଂ ତାଙ୍କ ପାଖରେ ଯେପରି କିଛି ବିଶେଷତ୍ୱ ଅଛି, ଯଦ୍ଦ୍ୱାରା ଲୋକଙ୍କ ସଙ୍ଗେ ଭାବଗତ ସମ୍ପର୍କ ସ୍ଥାପନ କରିବା ପାଇଁ ସେ ସମର୍ଥ ହୋଇପାରୁଚନ୍ତି । ଲୋକଙ୍କ ସଙ୍ଗେ ସେ ଏକାକାର ହୋଇଯାଇପାରନ୍ତି, ସେମାନଙ୍କ ଭଳି ଅନୁଭବ କରିପାରନ୍ତି ଏବଂ ଲୋକେ ଏ ବିଷୟରେ ସଚେତନ ବୋଲି ସେମାନେ ଗାନ୍ଧିଜୀଙ୍କୁ ସେମାନଙ୍କର ଭକ୍ତି ଓ ଆନୁଗତ୍ୟ ଅର୍ପଣ କରିଥାନ୍ତି । ତଥାପି ଭାରତକୁ ସେ ଯେପରି ଭାବରେ ଦେଖୁଥିଲେ, ତା'ର ପଛରେ କେତେ ପର୍ଯ୍ୟନ୍ତ ଗୁଜରାଟରେ ତାଙ୍କର ବାଲ୍ୟାବସ୍ଥାରେ ତାଙ୍କ ଉପରେ ପଡ଼ିଥିବା ପ୍ରଭାବ କାର୍ଯ୍ୟ କରୁଥିଲା । ଗୁଜୁରାଟୀମାନେ ମୁଖ୍ୟତଃ ଏକ ଶାନ୍ତିପୂର୍ଣ୍ଣ ବଣିକ ସମ୍ପ୍ରଦାୟ, ଯେଉଁମାନେ ଜୈନ ଧର୍ମର ଅହିଂସାଦ୍ୱାରା ପ୍ରଭାବିତ । ଭାରତର ଅନ୍ୟାନ୍ୟ ଅଂଶରେ ଏ ପ୍ରଭାବ ସେତେ ଭଲ ନାହିଁ ଓ କେତେକ ଅଞ୍ଚଳରେ ଜମାରୁ ନାହିଁ । ସମଗ୍ର ଦେଶରେ ପରିବ୍ୟାପ୍ତ କ୍ଷତ୍ରିୟମାନେ ସେମାନଙ୍କର ଯୁଦ୍ଧଯାତ୍ରାରେ କିମ୍ବା ହିଂସ୍ରଜନ୍ତୁ ଶିକାର କରିବାରେ ଏହି ପ୍ରଭାବକୁ ହସ୍ତକ୍ଷେପ କରିବାର ସୁଯୋଗ ଦେଇନଥାନ୍ତି । ବ୍ରାହ୍ମଣ ସମେତ ଅନ୍ୟାନ୍ୟ ଶ୍ରେଣୀମାନେ ମଧ୍ୟ ଅହିଂସାଦ୍ୱାରା ସେପରି କିଛି ପ୍ରଭାବିତ ନଥିଲେ; କିନ୍ତୁ ଗାନ୍ଧିଜୀ ଭାରତୀୟ ଚିନ୍ତା ଓ ଇତିହାସର ବିକାଶରୁ ଏକ ଉଦାର ମତାବଲମ୍ବୀ ଦୃଷ୍ଟିଭଙ୍ଗୀ ଆହରଣ କଲେ ଏବଂ ଯଦିଓ ଭାରତୀୟ ଭାବୁକତା ଓ ଇତିହାସ ଅହିଂସ ମାର୍ଗରୁ ବିଚ୍ୟୁତ ହୋଇଚି, ତଥାପି ଅହିଂସା ହିଁ ତା'ର ପଛର ମୌଳିକ ମତ ବୋଲି ଗ୍ରହଣ କରି ସେଥି ଉପରେ ସେ ତାଙ୍କର ଆସ୍ଥା ଦୃଢ଼ୀଭୂତ କଲେ । ଏହି ଦୃଷ୍ଟିଭଙ୍ଗୀ ସଙ୍ଗେ ବହୁ ଭାରତୀୟ ଭାବୁକ ଓ ଐତିହାସିକ, ଅସ୍ୱାଭାବିକ ମନେ କରି, ଏକମତ ନୁହନ୍ତି । ମାନବିକ ଅସ୍ତିତ୍ୱର ସାମ୍ପ୍ରତିକ ଅବସ୍ଥାରେ ଅହିଂସାରେ ଉପଯୋଗିତା ସଙ୍ଗେ ଏହାର କୌଣସି ସମ୍ପର୍କ ନଥାଇପାରେ; କିନ୍ତୁ ଗାନ୍ଧିଜୀଙ୍କ ମନରୁ ଏହାର ଏକ ଐତିହାସିକ ପ୍ରବଣତାର ସୂଚନା ମିଳେ ।

ଜାତୀୟ ଚରିତ୍ର ଓ ଇତିହାସ ନିର୍ଦ୍ଧାରଣ କରିବାରେ ଭୂଗୋଳର ସଂଯୋଗ ଶକ୍ତିଶାଳୀ ପ୍ରଭାବ ପକାଇଥାଏ । ଗୋଟାଏ ଦିଗରେ ଅଭ୍ରଭେଦୀ ହିମାଚଳ ଓ ଅନ୍ୟ ତିନି ଦିଗରେ ସାଗରଦ୍ୱାରା ବହିର୍ଜଗତରୁ ବିଚ୍ଛିନ୍ନ ହେବା ଫଳରେ ଏହି ଉପମହାଦେଶରେ ଜାତୀୟ ଐକ୍ୟ ବୋଧ ବଢ଼ିବା ସଙ୍ଗେ ସଙ୍ଗେ ତାହା ନିଜ ଗଣ୍ଡି ମଧ୍ୟରେ ଆବଦ୍ଧ ହେବାର ପ୍ରବଣତାକୁ ପୁଷ୍ଟ କଲା । ଏହି ବିଶାଳ ଭୂଖଣ୍ଡରେ ଏକ ସ୍ୱତନ୍ତ୍ର ସମପ୍ରାକୃତିକ ସଭ୍ୟତା ଗଢ଼ିଉଠିଲା, ଯାହାର ସମ୍ପ୍ରସାରଣ ଓ ବିକାଶ ନିମନ୍ତେ ପ୍ରଭୂତ ପରିସର ରହିଥିଲା ଏବଂ ଯାହା ଏକ ବଳିଷ୍ଠ ସାଂସ୍କୃତିକ ଏକତା ଅବିଚ୍ଛିନ୍ନ ଭାବରେ ସଂରକ୍ଷଣ କରିଆସିଲା । ତଥାପି, ସେହି ଏକତା ଭିତରେ ଭୂଗୋଳ ପୁନର୍ବାର ବିବିଧତା ସୃଷ୍ଟି କଲା । ଉତ୍ତର ଓ ମଧ୍ୟ-ଭାରତର ସମତଳଭୂମି, ଦକ୍ଷିଣାପଥର ବିଚ୍ଛିନ୍ନତାପୂର୍ଣ୍ଣ ପାର୍ବତ୍ୟଭୂମିଠାରୁ ଭିନ୍ନ ଏବଂ ବିଭିନ୍ନ ଭୌଗୋଳିକ ଅଞ୍ଚଳର ଅଧିବାସୀଙ୍କ

ଭିତରେ ବିଭିନ୍ନ ବୈଶିଷ୍ଟ୍ୟ ବିକାଶଲାଭକଲା । ଇତିହାସର ଗତି ମଧ୍ୟ ଉତ୍ତର ଓ ଦକ୍ଷିଣରେ ଭିନ୍ନ ରକମର ହେଲା । ତେବେ ବହୁଧା ଉଭୟ ଭିତରେ ମିଳନ ଘଟିଚି । ବିଗନ୍ତବିସ୍ତୃତ ସମତଳଭୂମିବିଶିଷ୍ଟ ଉତ୍ତର-ଭାରତ ନିମନ୍ତେ ବହିରାକ୍ରମଣରୁ ନିଜକୁ ରକ୍ଷା କରିବା ପାଇଁ ଦୃଢ଼ିଆ ଭଳି ଏକ ଶକ୍ତିଶାଳୀ କେନ୍ଦ୍ର ପ୍ରଭୁତ୍ୱ ଆବଶ୍ୟକ ହେଇଥିଲା । ଉତ୍ତର ଓ ଦକ୍ଷିଣ ଉଭୟ ଖଣ୍ଡରେ ସାମ୍ରାଜ୍ୟ ପରେ ସାମ୍ରାଜ୍ୟ ଗଢ଼ିଉଠିଥିଲା; କିନ୍ତୁ ଉତ୍ତର ହିଁ ଥିଲା ପ୍ରକୃତରେ ସାମ୍ରାଜ୍ୟର କେନ୍ଦ୍ର ଓ ତାର ଆଧିପତ୍ୟ ବହୁଧା ଦକ୍ଷିଣ ଉପରେ ବିସ୍ତୃତ ହେଇଥିଲା । ସେ କାଳରେ ଏକ ବଳିଷ୍ଠ କେନ୍ଦ୍ର-ପ୍ରଭୁତ୍ୱ ଅର୍ଥ ଅନିବାର୍ଯ୍ୟ ଭାବରେ ସ୍ୱୈରତନ୍ତ୍ର ଶାସନ । ଅନ୍ୟାନ୍ୟ କାରଣ ବ୍ୟତୀତ, ମରାଠାମାନଙ୍କ ଦ୍ୱାରା ମୁଖ୍ୟତଃ ମୋଗଲ ସାମ୍ରାଜ୍ୟର ଅବସାନ ଯେ ସାଧିତ ହେଲା ତାହା ଇତିହାସର ଦୁର୍ଘଟଣା କେବଳ ନୁହେଁ । ଦାକ୍ଷିଣାତ୍ୟର ପାର୍ବତ୍ୟଭୂମିରୁ ଆଗତ ମରାଠାମାନଙ୍କ ଭିତରେ ସ୍ୱାଧୀନତାବୋଧ ଜାଗ୍ରତ ରହିଥିବାବେଳେ, ଉତ୍ତରଖଣ୍ଡ ସମତଳ ଭୂମିର ଅଧିକାଂଶ ଲୋକେ ଏକପ୍ରକାର ଦାସ-ମନୋଭାବାପନ୍ନ ଓ ପ୍ରଭୁତ୍ୱାନୁଗତ ହେଇଉଠିଥିଲେ । ବଙ୍ଗରେ ଇଂରେଜମାନେ ସହଜରେ ବିଜୟ ହାସଲ କରିପାରିଥିଲେ ଏବଂ ଯେହି ଉର୍ବର ସମତଳଭୂମିର ଲୋକେ ବିସ୍ମୟକର ଆନୁଗତ୍ୟ ପ୍ରଦର୍ଶନ କରି ବିଦେଶୀ ପ୍ରଭୁତ୍ୱ ନିକଟରେ ଆତ୍ମସମର୍ପଣ କଲେ । ବଙ୍ଗରେ ନିଜର ଆସ୍ଥାନ ସୁଦୃଢ଼ କରି ଇଂରେଜମାନେ ଦେଶର ଅନ୍ୟାନ୍ୟ ଅଞ୍ଚଳକୁ ସଂପ୍ରସାରିତ ହେଇଥିଲେ ।

ଆଜି ବି ଭୂଗୋଳର ମୂଲ୍ୟ ଅଛି ଏବଂ ଭବିଷ୍ୟତରେ ବି ତାର ମୂଲ୍ୟ ରହିବ; କିନ୍ତୁ ବର୍ତ୍ତମାନ ଅନ୍ୟାନ୍ୟ କାରଣ ଗୁରୁତ୍ୱପୂର୍ଣ୍ଣ ହେଇଉଠୁଚି । ପର୍ବତ ଓ ସମୁଦ୍ର ଆଉ ପ୍ରତିବନ୍ଧକ ହେଇନଥିଲେ ସୁଦ୍ଧା ଏବେ ବି କୌଣସି ଜାତିର ଚରିତ୍ର ଓ କୌଣସି ଦେଶର ରାଜନୈତିକ ତଥା ଅର୍ଥନୈତିକ ସ୍ଥିତି ସେଥିଦ୍ୱାରା ହିଁ ନିର୍ଦ୍ଧାରିତ ହୋଇଥାଏ । କୌଣସି ବିଶ୍ୱବ୍ୟାପୀ ଯୋଜନା ନ ହେବା ପର୍ଯ୍ୟନ୍ତ ଦେଶ-ଦେଶ ମଧ୍ୟରେ ରାଜନୈତିକ ସୀମାରେଖା ନିର୍ଦ୍ଧା-ରଣର ବ୍ୟବସ୍ଥା ବିବେଚନା କଲାବେଳେ ପର୍ବତ ଓ ସମୁଦ୍ରକୁ ଅବଜ୍ଞା କରାଯାଇନପାରେ ।

ଭାରତ ଓ ଭାରତୀୟ ଜନସାଧାରଣଙ୍କ ସମ୍ପର୍କରେ ଗାନ୍ଧିଜୀଙ୍କ ଜ୍ଞାନ ପ୍ରଗାଢ଼ । ଇତିହାସରେ ଯେପରି କିଛି ବିଶେଷ ଭାବରେ ଆଗ୍ରହିତ ନଥିଲେ ସୁଦ୍ଧା ଏବଂ କେତେକଙ୍କର ଯେପରି ଇତିହାସ ପ୍ରତି ଗଭୀର ଆବେଗ ରହିଥାଏ ଓ ଗୋଟାଏ ଐତିହାସିକ ବୋଧ ଥାଏ, ସେପରି କିଛି ନଥିଲେ ସୁଦ୍ଧା, ଗାନ୍ଧିଜୀ ଭାରତୀୟ ଲୋକଙ୍କର ଐତିହାସିକ ମୂଳାଧାର ସମ୍ପର୍କରେ ପୂର୍ଣ୍ଣ ସଚେତନ ଓ ଅନ୍ତରଙ୍ଗ ଭାବରେ ଜ୍ଞାତ ଥିଲେ । ଆଜିର ଭାରତୀୟ ସମସ୍ୟାମାନଙ୍କ ଉପରେ ଅନିବାର୍ଯ୍ୟ ଭାବରେ ସେ ମନୋନିବେଶ କରୁଥିଲେ ସୁଦ୍ଧା ଚଳିତ ବିଭିନ୍ନ ଘଟଣା ସମ୍ପର୍କରେ ସେ ଭଲ ଭାବରେ ଜାଣନ୍ତି ଓ ସାବଧାନତା ସହକାରେ ସେ ସବୁର ଗତି ଅନୁସରଣ କରିଥାନ୍ତି । ଅନାବଶ୍ୟକ ବିଷୟ ପରିହାର କରି ଗୋଟାଏ ସମସ୍ୟା କିମ୍ବା ଗୋଟାଏ ପରିସ୍ଥିତିର ସାରାଂଶ ଗ୍ରହଣ କରିବାର ସାମର୍ଥ୍ୟ ତାଙ୍କର ଅଛି । ନୈତିକ ବିଭାଗ ବୋଲି ସେ ଯାହା ମଣନ୍ତି, ସେଥିଦ୍ୱାରା ସବୁ କିଛି ବିବେଚନା କରି ସେ ଏକ ବୃହତ୍ତର ପରିପ୍ରେକ୍ଷୀ ଓ ଏକପ୍ରକାର ଆସ୍ଥିତ୍ୱ ଲାଭ କରିଥାନ୍ତି । ବର୍ନାର୍ଡ଼ ଶ' କହିଚନ୍ତି ଯେ ସାମୟିକ

କୌଶଳ ଦୃଷ୍ଟିରୁ ଗାନ୍ଧିଜୀ କେତେ ଭୁଲ କଲେ ସୁଦ୍ଧା ଆଗକୁ ଲକ୍ଷ୍ୟ ରଖି ସେ ଯେଉଁ କାର୍ଯ୍ୟ କରିଥାନ୍ତି, ତାହା ସଠିକ ପ୍ରମାଣିତ ହୋଇଆସୁଚି । ଅନେକେ ଅବଶ୍ୟ ଅନ୍ତିମ ଲକ୍ଷ୍ୟ ନେଇ ଭାବିତ ହୋଇନଥାନ୍ତି; କିନ୍ତୁ ସାମୟିକ ସୁଯୋଗ ହାସଲ ପ୍ରତି ସେମାନଙ୍କର ଆଗ୍ରହ ଥାଏ ଅପେକ୍ଷାକୃତ ବେଶି ।

## ୮. ସାର୍ ଷ୍ଟାଫୋର୍ଡ଼ କ୍ରିପ୍ସଙ୍କ ଭାରତ ଆଗମନ

ପେନାଙ୍ଗ୍ ଓ ସିଙ୍ଗାପୁରର ପତନ ପରେ ଜାପାନୀମାନେ ଯେବେ ମାଳୟରେ ଆଗେଇ-ବାରେ ଲଗିଲେ, ସେ ଦେଶରୁ ବହୁ ଭାରତୀୟ ଓ ଅନ୍ୟ ଜାତିର ଲୋକେ ଭାରତ ଭିତରକୁ ପଳାଣି ଆସିଲେ । ପ୍ରସ୍ତୁତ ହୋଇ ଆସିବା ପାଇଁ ସେମାନଙ୍କ ହାତରେ ଅବସର ନଥିଲା ଏବଂ ଦେହରେ ଥିବା ପୋଷାକ ବ୍ୟତୀତ ସେମାନଙ୍କ ପାଖରେ ଆଉ କିଛି ନଥିଲା । ଏହାପରେ ଶତ ସହସ୍ର ସଂଖ୍ୟାରେ, ଅଧିକ ଭାବରେ ଭାରତୀୟ, ବର୍ମା ଛାଡ଼ି ଆସିଲେ ବାସ୍ତୁହରାମାନେ । ବର୍ମାର ବେସାମରିକ ଓ ଅନ୍ୟାନ୍ୟ କର୍ତ୍ତୃପକ୍ଷ କିପରି ସେମାନଙ୍କୁ ଛାଡ଼ି ପଳାଇଲେ ଏବଂ କିପରି ଏହି ଅସହାୟ ତଥା ଅନାଥ ଲୋକେ ନିଜ ନିଜ ଉପାୟରେ ବର୍ମା ଛାଡ଼ି ଆସିଲେ, ସେ କାହାଣୀ ଭାରତସାରା ପ୍ରସାରିତ ହୋଇଗଲା । ଶତ୍ରୁ ପରିବୃତ ଘଞ୍ଚ ଅରଣ୍ୟାନୀ ଭିତର ଦେଇ, କେତେ ପର୍ବତ ଲଙ୍ଘନକରି, ଶହ ଶହ ମାଇଲ ପଥ ସେମାନେ ପାଦରେ ଚାଲି ଚାଲି ଆସିଲେ । ପଥରେ ଅନାହାର, ରୋଗ କିମ୍ବା ଶତ୍ରୁ ଅବା ଦସ୍ୟୁର ଛୁରିକା ଅନେକଙ୍କର ଜୀବନ ହରଣ କଲା । ଯୁଦ୍ଧର ତାହା ଏକ ଭୟାନକ ପରିଣାମ ଏବଂ ତାକୁ ସ୍ୱୀକାର ନକରି ବାଟ ନାହିଁ । କିନ୍ତୁ ଭାରତୀୟ ଓ ଇଂରେଜ ବାସ୍ତୁହରାଙ୍କ ଭିତରେ ବୈଷମ୍ୟ ରଖି ବ୍ୟବହାର କରିବାର କାରଣ ଯୁଦ୍ଧ ଦ୍ୱାରା ଉପୁଜି ନଥିଲା । ସେପରି ଅବସ୍ଥାରେ, ଯେତେଦୂର ସମ୍ଭବ ହୋଇପାରେ, ଗୋରା ବାସ୍ତୁହରାଙ୍କର ଯତ୍ନ ନିଆଯାଇଥିଲା ଏବଂ ସେମାନଙ୍କ ପାଇଁ ପରିବହନ ଓ ଅନ୍ୟାନ୍ୟ ସାହାଯ୍ୟ ବ୍ୟବସ୍ଥା କରିଦିଆଗଲା । ବର୍ମାରେ, ଏକ ଦୋମୁହାଣିରେ ଯେଉଁଠାରୁ ଦୁଇଗୋଟି ସଡ଼କ ଭାରତ ଆଡ଼କୁ ଲମ୍ବିଯାଇଚି, ଅଗଣିତ ବାସ୍ତୁହରା ସେଠାରେ ଜୁଣ୍ଡ ହୋଇଥାନ୍ତି । ସଡ଼କ ଦୁଇଟି ଭିତରୁ ଯେଉଁଟିର ଅବସ୍ଥା ଅପେକ୍ଷାକୃତ ଭଲ, ତାହା ଇଂରେଜ କିମ୍ବା ୟୁରୋପୀୟ ବାସ୍ତୁହରାଙ୍କ ନିମନ୍ତେ ସଂରକ୍ଷିତ ହେଲା । ସେହି ସଡ଼କ ପରିଚିତ ହେଲା 'ଗୋରା ସଡ଼କ' ନାମରେ ।

ବର୍ଣ୍ଣବୈଷମ୍ୟ ଓ ଲୋକଙ୍କ ଦୁଃଖ-ଯାତନାର ନାନା ମର୍ମନ୍ତୁଦ କାହାଣୀ ଆମ ପାଖରେ ଆସି ପହଞ୍ଚୁଥିଲା ଏବଂ ପଥକ୍ଳାନ୍ତ, ପ୍ରପୀଡ଼ିତ, କଙ୍କାଳସାର ସେହି ନିରାଶ୍ରିତ ଲୋକେ ଭାରତର ସବୁ ପ୍ରାନ୍ତରେ ନିଜ ନିଜ ଦୁଃଖ-ଦୁର୍ଦ୍ଦଶା ଯେବେ ବର୍ଣ୍ଣନା କରିବସିଲେ, ଭାରତୀୟ ମନ ଉପରେ ତା'ର ପ୍ରଭାବ ପ୍ରବଳ ଭାବରେ ପଡ଼ିଲା ।

ଠିକ୍ ସେହି ସମୟରେ ସାର୍ ଷ୍ଟାଫୋର୍ଡ଼ କ୍ରିପସ ଯୁଦ୍ଧକାଳୀନ ବ୍ରିଟିଶ୍ ମନ୍ତ୍ରୀପରିଷଦର ପ୍ରସ୍ତାବ ଧରି ଭାରତକୁ ଆସିଲେ । ଗତ ଅଢ଼େଇ ବର୍ଷ ଭିତରେ ସେ ପ୍ରସ୍ତାବ ଉପରେ ନାନା

ଦିଗରୁ ବହୁ ଆଲୋଚନା ହୋଇସାରିଛି ଏବଂ ଆଜି ତାହା ଇତିହାସ ହୋଇଗଲାଣି । ସାର୍ ଷ୍ଟାଫୋର୍ଡ଼ଙ୍କ ସଙ୍ଗେ ଆପୋଷ-ଆଲୋଚନାରେ ଅଂଶ ଗ୍ରହଣ କରିଥିବା ଜଣେ ବ୍ୟକ୍ତି ପକ୍ଷରେ ବର୍ତ୍ତମାନ ସେ ବିଷୟରେ କିଛି କହି ଆଉ କିଛି ଭବିଷ୍ୟତରେ କେବେହେଲେ କହିବା ଠିକ୍ ହେବ ମନେକରି ରହିବା ସମ୍ଭବ ନୁହେଁ । ବସ୍ତୁତଃ, ଆଲୋଚନାବେଳେ ଯେଉଁସବୁ ପ୍ରାସଙ୍ଗିକ ପ୍ରଶ୍ନ ଓ ବିଗ୍ରହ ଉଠିଥିଲା ସେସବୁ ସର୍ବସାଧାରଣରେ ବିଦିତ କରାଇ ଦିଆ-ଯାଇଛି । ସେ ବିଷୟରେ ନୂଆକରି କହିବା ପାଇଁ କିଛି ନାହିଁ ।

ମୋର ମନେପଡ଼େ, ପ୍ରଥମଥର ପାଇଁ ମୁଁ ଯେବେ ସେ ପ୍ରସ୍ତାବ ପଢ଼ି ଦେଖିଲି, ପ୍ରଗାଢ଼ ଏକ ଅବସାଦ ମତେ ଗ୍ରାସକରି ବସିଲା ଏବଂ ସେହି ଅବସାଦର ପ୍ରଧାନ କାରଣ ହେଉଛି ଯେ ସାର୍ ଷ୍ଟାଫୋର୍ଡ଼ କ୍ରିପ୍‌ସଙ୍କ ପାଖରୁ ଏବଂ ସେତେବେଳର ସଙ୍କଟମୟ ପରିସ୍ଥିତି ହେତୁରୁ ମୁଁ ଅଧିକତର ବାସ୍ତବ ଓ ତାତ୍ପର୍ଯ୍ୟପୂର୍ଣ୍ଣ କିଛି ଆଶା କରୁଥିଲି । ଯେତେବାର ସେ ପ୍ରସ୍ତାବ ମୁଁ ପଢ଼ିଛି ଓ ଯେତେଭାବରେ ତାହା ବିବେଚନା କରିଛି, ମୋର ଅବସାଦବୋଧ ବୃଦ୍ଧି ପାଇଛି ସିନା ହ୍ରାସ ହୋଇନି । ଭାରତୀୟ ବ୍ୟାପାର ସଙ୍ଗେ ଅପରିଚିତ କୌଣସି ବ୍ୟକ୍ତି ଯଦି ମନେକରେ ଯେ ଆମେ ଯାହା ଦାବି କରୁଥିଲୁ ସେସବୁ ପୂରଣ କରିବା ଦିଗରେ କ୍ରିପ୍‌ସ ପ୍ରସ୍ତାବ ବହୁତ ବାଟ ଆଗେଇଯାଇଛି, ବୁଝିବାରେ ଜଟିଳତାର ଆଶଙ୍କା ଉପୁଜି ନପାରେ; କିନ୍ତୁ ଅନୁଶୀଳନ କରି ଦେଖିଲେ, ସେଥିରେ ବହୁତ କିଛି ସୀମା ବନ୍ଧନ ରହିଥିବା ଜଣା-ପଡ଼େ ଏବଂ ଆତ୍ମନିୟନ୍ତ୍ରଣ ନୀତିକୁ ସ୍ୱୀକାର କରାଯାଇଥିଲେ ସୁଦ୍ଧା ତାକୁ ଏପରି ଛନ୍ଦାଛନ୍ଦି କରି ରଖାଯାଇଥିଲା ଯେ ତାକୁ ଗ୍ରହଣ କରିବା ଅର୍ଥ ଆମର ଭବିଷ୍ୟତକୁ ବିପନ୍ନ କରିବସିବା ।

ମୂଳତଃ ପ୍ରସ୍ତାବଟି ରଚନା କରାଯାଇଥିଲା ଭବିଷ୍ୟତ ନିମନ୍ତେ ଅର୍ଥାତ୍ ଯୁଦ୍ଧ ପରେ ତାହା କାର୍ଯ୍ୟକାରୀ ହେବାର କଥା । ତେବେ, ପ୍ରସ୍ତାବର ଅନ୍ତିମ ଧାରାରେ ଅସ୍ପଷ୍ଟ ଭାବରେ ବର୍ତ୍ତମାନ ପାଇଁ ସହଯୋଗର ଡାକରା ରହିଥିଲା । ଆତ୍ମନିୟନ୍ତ୍ରଣ ନୀତି ଉପରେ ଜୋର୍ ଦେବାକୁ ଯାଇ ପ୍ରସ୍ତାବରେ ଉଲ୍ଲେଖ ଥିଲା ଯେ ଇଚ୍ଛାକଲେ କୌଣସି ପ୍ରଦେଶ ଭାରତୀୟ ଯୁକ୍ତରାଷ୍ଟ୍ରରେ ଯୋଗ ଦେଇନପାରେ ଏବଂ ଏକ ସ୍ୱାଧୀନ ରାଜ୍ୟ ଭାବରେ ଅଲଗା ରହିପାରେ । ଆହୁରି ମଧ୍ୟ ଏ ପ୍ରକାର ଅଧିକାର ଦିଆଯାଇଥିଲା ଦେଶୀୟ ରାଜ୍ୟଗୁଡ଼ିକୁ ଏବଂ ଏକଥା ମନେ ରଖିବା ଉଚିତ ଯେ, ଭାରତରେ ପ୍ରାୟ ଛ'ଶହି ଦେଶୀୟ ରାଜ୍ୟ ରହିଛି, ଯାହା ଭିତରୁ ସ୍ୱଳ୍ପକେତେ-ଗୋଟି ବଡ଼ ରାଜ୍ୟକୁ ବାଦ୍‌ଦେଲେ ବାକିସବୁ ପ୍ରାୟ ନିତାନ୍ତ କ୍ଷୁଦ୍ର ଓ ଚତୁର୍ଦ୍ଦିଗରେ ଅନ୍ୟ-ଦେଶୀୟ ରାଜ୍ୟ ଅର୍ଥାତ୍ ବ୍ରିଟିଶ-ଭାରତଦ୍ୱାରା ପରିବେଷ୍ଟିତ । ଏହି ସବୁ ଦେଶୀୟ ରାଜ୍ୟ ଓ ପ୍ରଦେଶମାନେ ସମ୍ବିଧାନ ପ୍ରଣୟନ କରିବାରେ ଭାଗ ନେବେ, ସମ୍ବିଧାନ ଉପରେ ପ୍ରଭାବ ପକାଇବେ ଓ ଯେତେବେଳେ ଇଚ୍ଛା ସେଥିରୁ ବାହାରିଯିବେ—ଏହା ଥିଲା କ୍ରିପ୍‌ସ ପ୍ରସ୍ତାବର ସାରମର୍ମ ଏବଂ ତାହା ଗ୍ରହଣକରିବା ଅର୍ଥ ପ୍ରତ୍ୟେକେ ପ୍ରତ୍ୟେକଙ୍କ ପାଖରୁ ଅଲଗା ହେବାପାଇଁ ବିଧାନ କରିବା । ଫଳତଃ, ଅର୍ଥନୈତିକ ହେଉ କି ରାଜନୈତିକ ହେଉ ଦେଶର ଯାହା ସବୁ ପ୍ରକୃତ ସମସ୍ୟା ଗୌଣ ହୋଇଉଠାନ୍ତା । ପରସ୍ପରଠାରୁ ନାନା ଭାବରେ ଭିନ୍ନ, ପ୍ରତିଦ୍ୱନ୍ଦ୍ୱିତାଶୀଳ ଶକ୍ତିମାନେ ଗୋଟାଏ ବଳିଷ୍ଠ ପ୍ରଗତିଶୀଳ ତଥା ଏକତାବଦ୍ଧ ଜାତୀୟ

ରାଷ୍ଟ୍ରର ଗଠନ ସମ୍ଭବ କରି ନଦେବା ପାଇଁ ଏକଜୁଟ ହୁଅନ୍ତେ । ଭାରତୀୟ ଯୁକ୍ତରାଷ୍ଟ୍ରରୁ ବାହାରିଯିବାର ଭୟ ଦେଖାଇ ବହୁ ଅବାଞ୍ଛିତ ଧାରା ସମ୍ବିଧାନରେ ଭରିଡ କରିଦିଆ ହୁଅନ୍ତା ଏବଂ ସେପରି ଏକ ସମ୍ବିଧାନ କେନ୍ଦ୍ର ସରକାରଙ୍କୁ ଦୁର୍ବଳ ଓ ପୌରୁଷହୀନ କରନ୍ତା । ତଥାପି, ଯୁକ୍ତରାଷ୍ଟ୍ରରୁ ଓହରିଯିବା ବନ୍ଦ ହୁଅନ୍ତା ନାହିଁ ଏବଂ ଯେଉଁ କେତେକ ପ୍ରଦେଶ ଓ ଦେଶୀୟ ରାଜ୍ୟ ଯୁକ୍ତରାଷ୍ଟ୍ରରେ ରହନ୍ତେ, ସେମାନଙ୍କୁ ନେଇ ସମ୍ବିଧାନକୁ ନୂତନ ଭାବରେ ଗଢ଼ିବା ଓ ତାକୁ କାର୍ଯ୍ୟକାରୀ କରିବା କଷ୍ଟକର ହୋଇପଡ଼ନ୍ତା । ସମ୍ବିଧାନ ପ୍ରଣୟନ ନିମନ୍ତେ ଯେଉଁ ପରିଷଦ ଗଢ଼ାହୁଅନ୍ତା, ସେଥିପାଇଁ ଧର୍ମଭିତ୍ତିରେ ପ୍ରବର୍ତ୍ତିତ, ପ୍ରଚଳିତ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ମାଧ୍ୟମରେ ପ୍ରଦେଶମାନଙ୍କରେ ନିର୍ବାଚନ ହୁଅନ୍ତା । ଏହାଠାରୁ ବଳି ଦୁର୍ଭାଗ୍ୟର କଥା ଆଉ କିଛି ନାହିଁ ଯେ ଯେଉଁମାନେ ନିର୍ବାଚିତ ହୋଇ ଆସନ୍ତେ ସେମାନଙ୍କ ମନରେ ପୁରାତନ ଭେଦଭାବ ଅନିବାର୍ଯ୍ୟ ଭାବରେ ରହନ୍ତା । ତଥାପି ଏ ଅବସ୍ଥାରେ ତାହା ଅନ୍ୟଥା କରିବାର ପନ୍ଥା ନାହିଁ; କିନ୍ତୁ ଦେଶୀୟ ରାଜ୍ୟମାନଙ୍କ ନିମନ୍ତେ ନିର୍ବାଚନର ବ୍ୟବସ୍ଥା ନଥିଲା ଏବଂ ନ'କୋଟି ଦେଶୀୟ ରାଜ୍ୟ ଅଧିବାସୀ ସମ୍ପୂର୍ଣ୍ଣ ଭାବରେ ପ୍ରତ୍ୟାଖ୍ୟାତ ହୋଇ-ଥିଲେ । ଦେଶୀୟ ରାଜ୍ୟ ସମୂହର ଅର୍ଦ୍ଧସାମନ୍ତବାଦୀ ଶାସକମାନେ ନିଜ ନିଜ ରାଜ୍ୟର ଜନସଂଖ୍ୟା ଅନୁପାତରେ ନିଜ ନିଜ ପ୍ରତିନିଧି ମନୋନୀତ କରିବାର ଅଧିକାର ପାଉଥିଲେ । ଏହି ମନୋନୀତ ବ୍ୟକ୍ତିମାନଙ୍କ ମଧ୍ୟରେ କେତେଜଣ ଦକ୍ଷ ମନ୍ତ୍ରୀ ହୁଏତ ଆସିଯାଇପାରନ୍ତି; କିନ୍ତୁ ମୋଟାମୋଟି ଭାବରେ ସେମାନେ ଦେଶୀୟ ରାଜ୍ୟ ପ୍ରଜାଙ୍କର ପ୍ରତିନିଧିତ୍ୱ କରିବା ପରିବର୍ତ୍ତେ, ସ୍ୱାଭାବିକ ଭାବରେ, ସାମନ୍ତବାଦୀ ତଥା ସ୍ୱେଚ୍ଛାଚାରୀ ରାଜନ୍ୟବର୍ଗର ପ୍ରତିନିଧିତ୍ୱ ହିଁ କରନ୍ତେ । ସମ୍ବିଧାନ ପ୍ରଣେତା ପରିଷଦରେ ସେମାନଙ୍କ ସଂଖ୍ୟା ହୁଅନ୍ତା ପ୍ରାୟ ଏକ-ଚତୁର୍ଥାଂଶ ଏବଂ ସେମାନଙ୍କର ଏହି ସଂଖ୍ୟା, ସାମାଜିକତା ଦୃଷ୍ଟିରୁ ସେମାନଙ୍କର ଅନଗ୍ରସର ମନୋଭାବ ଏବଂ କଥାକଥାକେ ଛାଡ଼ି ଚାଲିଯିବାର ଭୟ ପ୍ରଦର୍ଶନ, ସମ୍ବିଧାନର ନିଷ୍ପତ୍ତି-ଗୁଡ଼ିକୁ ପ୍ରବଳ ଭାବରେ ପ୍ରଭାବିତ କରନ୍ତା । କନଷ୍ଟିଚ୍ୟୁଏଣ୍ଟ୍ ଆସେମ୍ବ୍ଲି ବା ସମ୍ବିଧାନ ପ୍ରଣେତା ପରିଷଦ ନିର୍ବାଚିତ ଓ ମନୋନୀତ ବ୍ୟକ୍ତିଙ୍କର ଏକ ବିଚିତ୍ର ସମାବେଶ ହୋଇ ଉଠନ୍ତା । ନିର୍ବାଚିତ ବ୍ୟକ୍ତିମାନେ ଧର୍ମଭିତ୍ତିରେ ପ୍ରବର୍ତ୍ତିତ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ-ମାନଙ୍କରୁ ଏବଂ କେତେକ ନ୍ୟସ୍ତସ୍ୱାର୍ଥ ସଂସ୍ଥାରୁ ନିର୍ବାଚିତ ହୋଇ ଆସନ୍ତେ ଏବଂ ଅନ୍ୟମାନେ ଦେଶୀୟ ରାଜ୍ୟ ରାଜାମାନଙ୍କଦ୍ୱାରା ମନୋନୀତ ହୁଅନ୍ତେ । ସେତିକି କେବଳ ନୁହେଁ, ଆହୁରି ମଧ୍ୟ ବ୍ୟବସ୍ଥା ଥିଲା ଯେ ମିଳିତ ନିଷ୍ପତ୍ତି ଗ୍ରହଣ କରିବା ପାଇଁ କୌଣସି ଉପାୟ ରହିବନାହିଁ । ଅତଏବ, ସହିତ ତଥା ଚୂଡ଼ାନ୍ତ ନିଷ୍ପତ୍ତିରୁ ଯେଉଁ ବାସ୍ତବତାବୋଧ ଆସିଥାଏ ତାହା ଅଭାବିତ ହୁଅନ୍ତା । ପରିଷଦର ବହୁ ସଭ୍ୟ ଦାୟିତ୍ୱହୀନ ଭାବରେ କାର୍ଯ୍ୟ କରିବାର ମନୋ-ଭାବ ପୋଷଣ କରନ୍ତେ; କାରଣ ସେମାନେ ଜାଣିଥିଲେ ଯେ ସେହି ସବୁ ନିଷ୍ପତ୍ତି କାର୍ଯ୍ୟକାରୀ କରିବାର ଦାୟିତ୍ୱ ଗ୍ରହଣ କରିବା ପାଇଁ ସେମାନେ ବାଧ୍ୟ ନୁହନ୍ତି ।

ଭାରତକୁ ଦୁଇଖଣ୍ଡ କରିବା ପାଇଁ ଯେକୌଣସି ପ୍ରସ୍ତାବ ଉପରେ ଚିନ୍ତାକରିବା ବଡ଼ ବେଦନା ଦାୟକ । ଗଭୀର ଭାବରେ ଅନୁଭୂତ ଯେଉଁ ସବୁ ମନୋବୃତ୍ତି ଓ ଦୃଢ଼ ଧାରଣା ପ୍ରବଳଭାବରେ

ଲୋକଙ୍କୁ ଉଦ୍‌ବେଳିତ କରିଥାଏ, ଏହା ତା'ର ବିରୁଦ୍ଧରେ ଯାଉଥିଲା । ଭାରତର ସମଗ୍ର ଜାତୀୟତାବାଦୀ ଆନ୍ଦୋଳନ ଭିତ୍ତି କରିଥିଲା ଭାରତର ଏକତା ଉପରେ; କିନ୍ତୁ ବର୍ତ୍ତମାନର ଜାତୀୟତାବାଦ ଅପେକ୍ଷା ଏହି ଐକ୍ୟ ମନୋବୃତ୍ତି ଥିଲା ଅତି ପୁରାତନ ଓ ଗଭୀରତର । ଏହାର ମୂଳ ନିହିତ ଥିଲା ଭାରତୀୟ ଇତିହାସର କେଉଁ ସୁଦୂର ଅତୀତରେ । ସେହି ପ୍ରତ୍ୟୟ, ସେହି ଭାବନା ଆଧୁନିକ ଘଟଣାବଳୀ ଦ୍ୱାରା ଅଧିକତର ମଜବୁତ ହୋଇଉଠିଥିଲା ଏବଂ ତାହା ଭାରତର ବହୁ ଲୋକଙ୍କ ନିମନ୍ତେ ଏପରି ଏକ ମୌଳିକ ବିଶ୍ୱାସରେ ପରିଣତ ହେଲା, ଯାହାକୁ ଖଣ୍ଡନ କରାଯାଇ ନପାରେ କିମ୍ବା ଅନ୍ୟ ପ୍ରକାର କୌଣସି ବିଶ୍ୱାସ ଉପସ୍ଥାପିତ କରି ପ୍ରତିଦ୍ୱନ୍ଦ୍ୱିତା ନିମନ୍ତେ ଯାହାକୁ ଆହ୍ୱାନ କରାଯାଇ ନପାରେ । ମୁସ୍‌ଲିମ୍ ଲିଗ୍ ପକ୍ଷରୁ ଗୋଟାଏ ଆହ୍ୱାନ ଅବଶ୍ୟ ଆସିଥିଲା; କିନ୍ତୁ ଖୁବ୍ କମ୍‌ଲୋକ ସେଥିଉପରେ ଗୁରୁତ୍ୱ ଦେଇ-ଥିଲେ ଏବଂ ଦେଶରେ ବି ସେପରି ବହୁ ମୁସ୍‌ଲିମ୍ ଥିଲେ, ଯେଉଁମାନେ ସେଥିସହିତ ଏକମତ ହୋଇନାହାନ୍ତି । ଯଦିଓ ସେଥିରେ ଦେଶକୁ ବିଭକ୍ତ କରିବାର ଏକ ଅସ୍ପଷ୍ଟ ତଥା ଅନିର୍ଦ୍ଦିଷ୍ଟ ସୂଚନା ରହିଥିଲା, ତଥାପି ସେହି ଆହ୍ୱାନ ପ୍ରାଦେଶିକତା ଉପରେ ଭିତ୍ତି କରିନଥିଲା, ଭିତ୍ତି ଥିଲା ଧର୍ମଗତ ମତପାର୍ଥକ୍ୟ ଉପରେ ଆଶ୍ରିତ ଜାତି ସମ୍ପର୍କରେ ଏକ ମଧ୍ୟଯୁଗୀୟ ଧାରଣା ଏବଂ ସେହି ଅନୁସାରେ ଦେଖିଲେ ଭାରତର ପ୍ରତ୍ୟେକ ଗ୍ରାମରେ ଦୁଇଟି ଜାତି ବାସ କରୁଥିଲେ । ଦେଶ ବିଭକ୍ତ ହେଲେ ବି, ଦେଶସାରା ପରିବ୍ୟାପ୍ତ ଓ ପରସ୍ପର ସଙ୍ଗେ ଜଡ଼ିତ ଧାର୍ମିକ ଭେଦଭାବକୁ ଲଙ୍ଘନ କରାଯାଇନପାରେ । ଦେଶର ବିଭାଜନ ଯେଉଁସବୁ ସମସ୍ୟାର ସମାଧାନ କରି ପାରିବ ବୋଲି ଉଦ୍ଦେଶ୍ୟ ରଖାଯାଇଛି, ବିଭାଜନ ଅନ୍ୟାନ୍ୟ ବହୁ ଅସୁବିଧା ବୃଦ୍ଧିକରିବା ସଙ୍ଗେ ସଙ୍ଗେ ଠିକ୍ ସେହି ସବୁ ସମସ୍ୟାକୁ ହିଁ ଅଧିକତର ଜଟିଳ କରି ବସିବ ।

ଭାବ ଦିଗରୁ କେବଳ ନୁହେଁ, ଦେଶର ବିଭାଜନ ବିରୁଦ୍ଧରେ ଆହୁରି ବଳିଷ୍ଠ କାରଣମାନ ରହିଛି । ବ୍ରିଟିଶ୍ ସରକାରଙ୍କ ନୀତି ହେତୁରୁ ମୁଖ୍ୟତଃ ଭାରତର ସାମାଜିକ ଓ ଅର୍ଥନୈତିକ ସମସ୍ୟାମାନ ଏକ ସଙ୍କଟରେ ଉପନୀତ ହେଲାଣି । ଯଦି କୌଣସି ଗୁରୁତର ବିପର୍ଯ୍ୟୟ ଏଡ଼ାଇବାକୁ ହୁଏ, ତାହାହେଲେ ଦ୍ରୁତ ତଥା ସର୍ବାଙ୍ଗୀନ ପ୍ରଗତି ନିତାନ୍ତ ଆବଶ୍ୟକ । ସେହି ପ୍ରଗତି ସମ୍ଭବ ହୋଇପାରେ ସମଗ୍ର ଭାରତ ନିମନ୍ତେ ଏକ ବାସ୍ତବ ତଥା ଫଳପ୍ରଦ ପରିକଳ୍ପନା ଗଢ଼ିବାରେ; କାରଣ ଦେଶର ବିଭିନ୍ନ ଅଞ୍ଚଳ ପରସ୍ପରର ଅଭାବ ମେଣ୍ଟାଇବାରେ ଜଡ଼ିତ । ସାମଗ୍ରିକ ଭାବରେ ନେଲେ ଭାରତ ଅନେକାଂଶରେ ଏକ ଶକ୍ତିଶାଳୀ ତଥା ସ୍ୱାବଲମ୍ବୀ ଦେଶ; କିନ୍ତୁ ଗୋଟିଏ ଗୋଟିଏ ପ୍ରାନ୍ତ ବା ଅଞ୍ଚଳକୁ ଅଲଗା କରି ଦେଖିଲେ, ତାହା ଦୁର୍ବଳ ଓ ଅନ୍ୟମାନଙ୍କ ଉପରେ ନିର୍ଭରଶୀଳ ଜଣାଯିବ । ଏହି ସବୁ ଓ ଅନ୍ୟ ଯେତେ ଯୁକ୍ତି ଯଦି ଅତୀତ ନିମନ୍ତେ ସଙ୍ଗତ ଓ ଯଥେଷ୍ଟ ବୋଲି ଗୃହୀତ ହୁଏ, ଆଧୁନିକ କାଳର ରାଜନୈତିକ ଓ ଅର୍ଥନୈତିକ ବିକାଶ ଦୃଷ୍ଟିରୁ ବିଚାର କଲେ ସେ ସବୁର ମହତ୍ତ୍ୱ ବହୁ ଗୁଣରେ ବଢ଼ିଯାଉଛି । ପୃଥିବୀରେ ସର୍ବତ୍ର କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ନିଜର ସ୍ୱତନ୍ତ୍ର ସତ୍ତା ହରାଇ ବସିଲେଣି । ଅନ୍ୟାନ୍ୟ ବୃହତ୍ତର ରାଜ୍ୟ ସଙ୍ଗେ ଏକେ ସେସବୁ ମିଶିଗଲେଣି କିମ୍ବା ଅର୍ଥନୈତିକ ଦୃଷ୍ଟିରୁ ଅନନ୍ୟୋପାୟ ଭାବରେ ନିର୍ଭରଶୀଳ ହୋଇ ପଡ଼ିଲେଣି । ବଡ଼ ବଡ଼ ରାଷ୍ଟ୍ରସଙ୍ଘ ଗଢ଼ିବା

ଦିଗରେ କିମ୍ବା କେତେକ ରାଷ୍ଟ୍ର ମିଳିତହୋଇ ସମ୍ମିଳିତ ଭାବରେ କାର୍ଯ୍ୟ କରିବାର ଏକ ଅନିବାର୍ଯ୍ୟ ପ୍ରବଣତା ଦେଖାଦେଇଛି । ଜାତୀୟତାବାଦୀ ରାଷ୍ଟ୍ରର ଧାରଣା ବଦଳରେ ପ୍ରସାର ଲାଭ କରୁଛି ବହୁଜାତିକ ରାଷ୍ଟ୍ରୀୟତା ଏବଂ ଦୂର ଭବିଷ୍ୟତରେ ଏକ ବିଶ୍ୱ-ସରକାର ରୂପ ନେବାର ଆଶା ଅମୂଳକ ହୋଇନପାରେ । ଏହି ଅବସ୍ଥାରେ ଭାରତର ବିଭାଜନ ବିଚାରକୁ ନେବା ଅର୍ଥ ଐତିହାସିକ ତଥା ଅର୍ଥନୈତିକ ବିକାଶର ସମଗ୍ର ପ୍ରବାହ ବିରୁଦ୍ଧରେ ଗତି କରିବା । ଏହାଠାରୁ ଅଧିକତର ଉଦ୍ଭଟ କଳ୍ପନା କରାଯାଇନପାରେ ।

ତଥାପି ଅତ୍ୟଧିକ ଆବଶ୍ୟକତା କିମ୍ବା କୌଣସି ବାଧ୍ୟକର ବିପର୍ଯ୍ୟୟର ଚାପରେ ବହୁତ କିଛି ଅବାଞ୍ଛିତ ବିଷୟ ସନ୍ଧାନରେ ରାଜିହେବାକୁ ପଡ଼ିଥାଏ । ଯୁକ୍ତି ଓ ସଙ୍ଗତି ଦୃଷ୍ଟିରୁ ଯାହା ବିଚକ୍ଷଣ ହେବାର ନୁହେଁ, ତା'ର ବିଶ୍ଳେଷଣ ପାଇଁ ମନସ୍ଥିତି ହୁଏତ ବାଧ୍ୟ କରିପାରେ । କିନ୍ତୁ ବ୍ରିଟିଶ ସରକାରଙ୍କ ପକ୍ଷରୁ ଉପସ୍ଥାପିତ ପ୍ରସ୍ତାବରେ ନିର୍ଦ୍ଦିଷ୍ଟ ଭାବରେ କୌଣସି ଏକ ଅଂଶରେ ବିଭାଜନ ସମ୍ପର୍କରେ କିଛି ନାହିଁ । ସେଥିରେ ଯେଉଁ ଦିଗ ନିର୍ଦ୍ଦେଶ ରହିଛି, ତାହା ପ୍ରଦେଶ ଓ ଦେଶୀୟ ରାଜ୍ୟମାନଙ୍କୁ କେତେ ଭାବରେ ଯେ ଖଣ୍ଡବିଖଣ୍ଡ କରିବ, ତା'ର ସୀମା ନାହିଁ । ସେହି ପ୍ରସ୍ତାବ ଦେଶର ସମସ୍ତ ପ୍ରତିକ୍ରିୟାଶୀଳ ସାମନ୍ତବାଦୀ ଓ ସାମାଜିକତା ଦୃଷ୍ଟିରୁ ଅନଗ୍ରସର ଗୋଷ୍ଠୀମାନଙ୍କୁ ବିଭାଜନର ଅଧିକାର ନିମନ୍ତେ ପ୍ରରୋଚିତ କରନ୍ତା । ସମ୍ଭବତଃ ସେମାନଙ୍କ ଭିତରୁ କେହିହେଲେ ଗୁରୁତ୍ୱ ଦେଇ ସେ ପ୍ରକାର ଅଧିକାର ଚାହାନ୍ତି ନାହିଁ; କାରଣ ନିଜ ନିଜ ଗୋଡ଼ରେ ଠିଆହେବାର ସାମର୍ଥ୍ୟ ସେମାନଙ୍କର ନାହିଁ । ତେବେ ସେମାନେ ନାନା ପ୍ରକାର ଗଣ୍ଡଗୋଳ ସୃଷ୍ଟିକରି ଏକ ସ୍ୱାଧୀନ ଭାରତୀୟ ରାଷ୍ଟ୍ରଗଠନ ମାର୍ଗରେ ପ୍ରତିବନ୍ଧକ ତୋଳିପାରନ୍ତି କିମ୍ବା ସେହି ଦିଗ୍ଭର ଅଭ୍ୟୁଦୟ ବିଳମ୍ବିତ କରିପାରନ୍ତି । ବ୍ରିଟିଶ୍ ନୀତି ଯଦି ସେମାନଙ୍କର ପୃଷ୍ଠପୋଷକତା କରୁଥାଏ, ଯାହା ଅସ୍ୱାଭାବିକ ମଧ୍ୟ ନୁହେଁ, ବହୁକାଳ ପର୍ଯ୍ୟନ୍ତ ଭାରତର ସ୍ୱାଧୀନତା ଲାଭ ହୋଇ ନପାରେ । ବ୍ରିଟିଶ ନୀତି ସମ୍ପର୍କରେ ଆମର ତିକ୍ତ ଅଭିଜ୍ଞତା ରହିଛି ଏବଂ ଆମେ ଲକ୍ଷ୍ୟ କରିଛୁ, ପ୍ରତ୍ୟେକ ଅବସ୍ଥାରେ ତାହା ବିଭେଦକାରୀ ମନୋଭାବକୁ ହିଁ ପ୍ରଶ୍ରୟ ଦେଇଆସିଛି । ବ୍ରିଟିଶ ନୀତିର ପ୍ରକୃତି ପରିବର୍ତ୍ତିତ ହେବ ବୋଲି ନିଶ୍ଚୟତା କ'ଣ ? ତା' ନହେଲେ ଠିକ୍ ଅବସରବେଳେ ସେମାନେ କହିଦେଇ ପାରିବେ, ଭାରତକୁ ସେମାନେ ସ୍ୱାଧୀନତା ଅର୍ପଣ କରିପାରୁନାହାନ୍ତି ଏଥିପାଇଁ ଯେ ସେ ସମ୍ପର୍କୀୟ ଯାହା କିଛି ସର୍ତ୍ତ ପୂରଣ ହୋଇନାହିଁ । ପ୍ରକୃତପକ୍ଷେ, ବ୍ରିଟିଶ ସରକାରଙ୍କ ବିଭେଦକାରୀ ନୀତି ଅବ୍ୟାହତ ରହିବାର ସମ୍ଭାବନା ହିଁ ବିଶେଷ ପରିମାଣରେ ଥିଲା ।

ଅତଏବ, ଏହି ପ୍ରସ୍ତାବରେ ରାଜି ହେବା ଅର୍ଥ ପାକିସ୍ତାନକୁ କିମ୍ବା କୌଣସି ଏକ ନିର୍ଦ୍ଦିଷ୍ଟ ବିଭାଜନକୁ ଗ୍ରହଣ କରିବା କେବଳ ନୁହେଁ, ଯାହା ନିଶ୍ଚିତ ଭାବରେ ଅକଲ୍ୟାଣକର ହୁଅନ୍ତା; ବରଂ ତା'ଠାରୁ ଆହୁରି କିଛି ଅଧିକ ଅକଲ୍ୟାଣ ଘଟନ୍ତା, ଯାହା ଅନିର୍ଦ୍ଦିଷ୍ଟ ସଂଖ୍ୟକ ବିଭାଜନର ସମ୍ଭାବନା ଦିଗରେ ଦ୍ୱାର ଉନ୍ମୁକ୍ତ କରନ୍ତା । ଭାରତର ସ୍ୱାଧୀନତା ପକ୍ଷରେ ଏହା ଏକ ଅବ୍ୟାହତ ବିପଦ ହୋଇ ରହନ୍ତା ଏବଂ ଯେଉଁ ପ୍ରତିଶ୍ରୁତି ଲୋକଙ୍କୁ ଦିଆଯାଇଛି ତା'ର ଅନ୍ତ୍ୟେଷ୍ଟି ହୋଇଉଠନ୍ତା ।

ନିପ୍‌ସ ପ୍ରସ୍ତାବ ଅନୁସାରେ, ଭାରତୀୟ ଦେଶୀୟ ରାଜ୍ୟଗୁଡ଼ିକର ଭବିଷ୍ୟତ ସମ୍ପର୍କରେ, ଦେଶୀୟ ରାଜ୍ୟ ପ୍ରଜା କିମ୍ବା ସେମାନଙ୍କର ନିର୍ବାଚିତ ପ୍ରତିନିଧି ନିଷ୍ପତ୍ତି ନେଇପାରୁନଥିଲେ । ନିଷ୍ପତ୍ତି କରନ୍ତେ ସେସବୁ ରାଜ୍ୟର ସ୍ୱେଚ୍ଛାଚାରୀ ଶାସକମାନେ । ଏହି ନୀତିକୁ ଆମେ ମାନିନେବା ଅର୍ଥ ଆମର ବହୁକାଳରୁ ଘୋଷିତ ଓ ବାରମ୍ବାର କଥିତ ନୀତିର ବିରୁଦ୍ଧାଚରଣ କରିବା ଏବଂ ଦେଶୀୟ ରାଜ୍ୟର ଲୋକଙ୍କ ପ୍ରତି ବିଶ୍ୱାସଘାତକତା କରିବା । ଏହି ନୀତି ସେମାନଙ୍କୁ ଆହୁରି ବହୁକାଳ ପର୍ଯ୍ୟନ୍ତ ସ୍ୱେଚ୍ଛାଚାରୀ ଶାସନ କବଳରେ ପକାଇ ରଖନ୍ତା । ଦେଶୀୟ ରାଜନ୍ୟବର୍ଗଙ୍କ ପ୍ରତି, ଯେତେଦୂର ସମ୍ଭବ, ଅକଠୋର ବ୍ୟବହାର କରିବା ପାଇଁ ଆମେ ପ୍ରସ୍ତୁତ ଥିଲୁ; କାରଣ ସେସବୁ ଅଞ୍ଚଳରେ ଗଣତନ୍ତ୍ର ଶାସନର ପ୍ରବର୍ତ୍ତନ ନିମନ୍ତେ ଆମେ ସେମାନଙ୍କର ସହଯୋଗ କାମନା କରୁଥିଲୁ । ଯଦି ତୃତୀୟ ପକ୍ଷ ଭାବରେ ବ୍ରିଟିଶ ଶକ୍ତି ଭିଳି କିଛି ନଥାନ୍ତା, ସନ୍ଦେହ ନାହିଁ, ଆମେ ସଫଳ ହୋଇପାରନ୍ତୁ; କିନ୍ତୁ ବ୍ରିଟିଶ ସରକାର ଦେଶୀୟ ରାଜ୍ୟମାନଙ୍କରେ ସ୍ୱୈରତନ୍ତ୍ର ପ୍ରତି ସମର୍ଥନ ଜଣାଉଥିବା ପର୍ଯ୍ୟନ୍ତ ନିଜ ରାଜ୍ୟର ଜନସାଧାରଣଙ୍କୁ ଦବାଇ ରଖିବା ପାଇଁ ଦେଶୀୟ ରାଜନ୍ୟବର୍ଗ ଭାରତୀୟ ଯୁକ୍ତରାଷ୍ଟ୍ରରେ ଯୋଗଦେବା ପରିବର୍ତ୍ତେ ବାହାରେ ରହି ବ୍ରିଟିଶ ସାମରିକ ସାହାଯ୍ୟ ଉପରେ ନିର୍ଭର କରିବା ପସନ୍ଦ କରିବେ । ପ୍ରକୃତପକ୍ଷେ, ଆମେ ଶୁଣିବାକୁ ପାଉଥିଲୁ ଯେ ସେପରି କିଛି ଅବସ୍ଥା ଯଦି ଉପୁଜେ, ଦେଶୀୟ ରାଜ୍ୟମାନଙ୍କରେ ବିଦେଶୀ ସୈନ୍ୟଙ୍କୁ ରଖାଯିବ । ପ୍ରସ୍ତାବିତ ଭାରତୀୟ ଯୁକ୍ତରାଷ୍ଟ୍ରରେ ଏହିସବୁ ରାଜ୍ୟ ବହୁଧା ପରସ୍ପରଠାରୁ ବିଚ୍ଛିନ୍ନ ଦ୍ୱୀପଭଳି ଯେହେତୁ ରହିବେ, ପ୍ରଶ୍ନ ଉଠିଲା, ବିଦେଶୀ ସୈନ୍ୟମାନେ ସେସବୁ ରାଜ୍ୟରେ ପ୍ରଥମେ ପ୍ରବେଶ କରି ପାରିବେ କିପରି ଏବଂ ଗୋଟାଏ ରାଜ୍ୟରେ ରହି ଭାରତୀୟ ଯୁକ୍ତରାଷ୍ଟ୍ର ପରିବେଷ୍ଟିତ ଅନ୍ୟ ଏକ ରାଜ୍ୟ ସଙ୍ଗେ ଯୋଗାଯୋଗ ସ୍ଥାପନ କରିବେ କିପରି ? ସେଥିପାଇଁ ଆବଶ୍ୟକ ହେଇ ପଡ଼ିବ ଭାରତୀୟ ଯୁକ୍ତରାଷ୍ଟ୍ରର ଭିତର ଦେଇ ବିଦେଶୀ ସୈନ୍ୟଚାଳନାର ଅଧିକାର ।

ଗାନ୍ଧିଜୀ ବାରମ୍ବାର ଘୋଷଣା କରିଚନ୍ତି ଯେ ଦେଶୀୟ ରାଜାମାନଙ୍କର ସେ ଶତ୍ରୁ ନୁହନ୍ତି । ବହୁ ଅବସରରେ ସେ ସେମାନଙ୍କର ଶାସନ ପ୍ରଣାଳୀର ଏବଂ ପ୍ରଜାଙ୍କୁ ସାଧାରଣ ନାଗରିକ ଅଧିକାରରୁ ସେମାନେ ଯେପରି ବଞ୍ଚିତ କରିଚନ୍ତି ତା'ର ସମାଲୋଚନା କରିଥିଲେ ସୁଦ୍ଧା ଦେଶୀୟ ରାଜ୍ୟର ରାଜାମାନଙ୍କ ପ୍ରତି ଗାନ୍ଧିଜୀଙ୍କ ମନୋଭାବ ଅପରିବର୍ତ୍ତିତ ଭାବରେ ବନ୍ଧୁଭାବାପନ୍ନ ରହିଆସିଚି । ଦେଶୀୟ ରାଜ୍ୟ ବ୍ୟାପାରରେ ପ୍ରତ୍ୟକ୍ଷ ଭାବରେ ହସ୍ତକ୍ଷେପ ନକରିବା ପାଇଁ ଅନେକ ବର୍ଷ ପର୍ଯ୍ୟନ୍ତ ସେ କଂଗ୍ରେସକୁ ଅଟକାଇଥିଲେ । ସେ ବିଶ୍ୱାସ କରୁଥିଲେ ଯେ ଦେଶୀୟ ରାଜ୍ୟ ପ୍ରଜା ନିଜେ ସେ ଦିଗରେ ଉଦ୍ୟମ ଆରମ୍ଭକଲେ ସେମାନଙ୍କର ଆତ୍ମବିଶ୍ୱାସ ଓ ଶକ୍ତି ବିକାଶ ଲାଭକରିବ । ତାଙ୍କର ଏହି ମନୋଭାବ ଆମ ଭିତରୁ ଅନେକଙ୍କୁ ପ୍ରଭାବିତ କରିପାରିନଥିଲା । ତଥାପି ଏହା ପଛରେ ଥିଲା ଏକ ମୌଳିକ ଦୃଢ଼ ଧାରଣା, ଯାହା ତାଙ୍କର ନିଜ ଭାଷାରେ କହିଲେ : "ମୋର ଦୃଷ୍ଟିଭଙ୍ଗୀର ଏକ ମୌଳିକ ବିଷୟ ହେଉଚି ଯେ ବ୍ରିଟିଶ ଭାରତର ଜନସାଧାରଣଙ୍କ ସ୍ୱାଧୀନତା ପାଇ ସୁଦ୍ଧା ଦେଶୀୟ ରାଜ୍ୟ ପ୍ରଜାଙ୍କ ଅଧିକାର ବିକ୍ରି କରି ଦେବାରେ ମୁଁ ଭାଗ ନେଇପାରିବିନାହିଁ ।"

ଭାରତୀୟ ସମ୍ବିଧାନ ଓ ବ୍ରିଟିଶ୍ କମନ୍‌ୱେଲ୍‌ଥ ସମ୍ବିଧାନର ପ୍ରଖ୍ୟାତ ପ୍ରାମାଣିକ ଅଧ୍ୟାପକ ବେରିଡେଲକୀଥ୍ ଦେଶୀୟ ରାଜ୍ୟ ସମ୍ପର୍କରେ ଗାନ୍ଧିଜୀଙ୍କ ଦାବିକୁ (ଯାହା କଂଗ୍ରେସର ଦାବି ମଧ୍ୟ) ସମର୍ଥନ କରି ଲେଖିଛନ୍ତି : "ସମ୍ରାଟଙ୍କ ପରାମର୍ଶଦାତାମାନେ ଏକଥା ମନେରଖିବା ଉଚିତ୍ ଯେ ପ୍ରଦେଶମାନଙ୍କରେ ଭାରତୀୟମାନେ ଯେଉଁସବୁ ଅଧିକାର ଭୋଗ କରୁଛନ୍ତି, ଦେଶୀୟ ରାଜ୍ୟ ଅଧିବାସୀଙ୍କୁ ସେଥିରୁ ବଞ୍ଚିତ କରାଯାଇ ପାରିବନାହିଁ ଏବଂ ସେମାନଙ୍କର ନିର୍ମଳ କର୍ତ୍ତବ୍ୟ ହେଉଚି ସମ୍ରାଟଙ୍କୁ ସେପରି ପରାମର୍ଶ ଦେବା ଯାହା ଫଳରେ ସେ ତାଙ୍କର ପ୍ରଭୁତ୍ୱ ପ୍ରୟୋଗ କରି ଦେଶୀୟ ରାଜ୍ୟ ରାଜନ୍ୟବର୍ଗଙ୍କୁ ନିଜ ନିଜ ରାଜ୍ୟରେ ସେପରି ଶାସନ-ଗତ ସଂସ୍କାର ସାଧନ ନିମନ୍ତେ ପ୍ରବର୍ତ୍ତାଇବେ, ଯାହା ଅଚିରେ ଦେଶୀୟ ରାଜ୍ୟମାନଙ୍କରେ ଦାୟିତ୍ୱପୂର୍ଣ୍ଣ ଶାସନ ସମ୍ଭବ କରିବ । କୌଣସି ସଙ୍ଘ କିମ୍ବା ଯୁକ୍ତରାଷ୍ଟ୍ର ଭାରତର ସ୍ୱାର୍ଥ ପକ୍ଷରେ ଅନୁକୂଳ ବୋଲି ବିବେଚିତ ହେବନାହିଁ, ଯଦି ସେଠାରେ ପ୍ରଦେଶମାନଙ୍କର ପ୍ରତିନିଧିମାନେ ଦାୟିତ୍ୱହୀନ ରାଜାମାନଙ୍କ ମନୋନୀତ ବ୍ୟକ୍ତିମାନଙ୍କ ସଙ୍ଗେ ବସିବାପାଇଁ ବାଧ୍ୟ ହୁଅନ୍ତି । ଗାନ୍ଧିଜୀ ଯେପରି ଦାବି କରୁଚନ୍ତି ଯେ ସମ୍ରାଟ ତାଙ୍କର ଜନସାଧାରଣଙ୍କୁ କ୍ଷମତା ହସ୍ତାନ୍ତର କରିବା ସଙ୍ଗେ ସଙ୍ଗେ ଦେଶୀୟ ରାଜ୍ୟ ରାଜାମାନେ ସେମାନଙ୍କର ପ୍ରଜାଙ୍କୁ କ୍ଷମତା ହସ୍ତାନ୍ତର କରିବାକୁ ବାଧ୍ୟ—ଏହା ବିରୁଦ୍ଧରେ କହିବାପାଇଁ ବସ୍ତୁତଃ କିଛି ନାହିଁ ।" ବ୍ରିଟିଶ ସରକାରଙ୍କ ପୂର୍ବବର୍ତ୍ତୀ ଏକ ପ୍ରସ୍ତାବ ଯେଉଁଥିରେ ସଙ୍ଘ ବିଷୟରେ ଚର୍ଚ୍ଚା କରାଯାଇଥିଲି, ସେ ସମ୍ପର୍କରେ ଅଧ୍ୟାପକ କୀଥ୍ ତାଙ୍କର ଏହି ମତ ଦେଇଥିଲେ; କିନ୍ତୁ ସାର ଷ୍ଟାଫୋର୍ଡ କ୍ରିପ୍‌ସଙ୍କ ପ୍ରସ୍ତାବ ପ୍ରତି ଏହା ଆହୁରି ଭଲଭାବରେ ପ୍ରଯୁଜ୍ୟ ।

ଏହି ପ୍ରସ୍ତାବ ଉପରେ ଯେତେ ଅଧିକ ଭାବି ବସିଲେ ଏହା ସେତେ ଅଧିକ ଅବାସ୍ତବ ପ୍ରତୀତ ହେଲା । ଭାରତ ହେଇଉଠୁଥିଲା ଏକ ପଶାପାଲି, ଯେଉଁଥିରେ ନାମକୁ ମାତ୍ର ସ୍ୱାଧୀନ କିମ୍ବା ଅର୍ଦ୍ଧ-ସ୍ୱାଧୀନ ବହୁ ରାଜା ସମାବିଷ୍ଟ ହେଇଚନ୍ତି ଏବଂ ସେଥି ଭିତରୁ ଅନେକେ ନିଜ ନିଜ ସ୍ୱେଚ୍ଛାଚାରୀ ଶାସନର ସୁରକ୍ଷା ନିମନ୍ତେ ବ୍ରିଟିସ ସାମରିକ ଶକ୍ତି ଉପରେ ନିର୍ଭର କରିଚନ୍ତି । ସେପରି ଏକ ଭାରତରେ, ରାଜନୈତିକ ହେଉ, କି ଅର୍ଥନୈତିକ ହେଉ ଏକତା ପ୍ରତିଷ୍ଠିତ ହେବାର ଅବକାଶ ନାହିଁ ଏବଂ ରାଜନୀତି ଓ ଅର୍ଥନୀତି ଉଭୟ କ୍ଷେତ୍ରରେ ତା'ର ଆତ୍ମନିର୍ଭରଶୀଳ ବହୁ କ୍ଷୁଦ୍ର ରାଜ୍ୟ ଜରିଆରେ ବ୍ରିଟେନ, ଏବେ ଯେପରି ସେତେବେଳେ ମଧ୍ୟ ସେପରି, ତା'ର କର୍ତ୍ତୃତ୍ୱ ବଜାୟ ରଖିବ ।

ଯୁଦ୍ଧକାଳୀନ ବ୍ରିଟିଶ ମନ୍ତ୍ରିପରିଷଦର ମନରେ ଭାରତର ଭବିଷ୍ୟତ ସମ୍ପର୍କରେ କି ଖିଆଲ ଥିଲି ମୁଁ ଜାଣେନାହିଁ । ମୋର ମନେହୁଏ, ସାର୍ ଷ୍ଟାଫୋର୍ଡ କ୍ରିପସ ଭାରତର ଶୁଭ କାମନା କରୁଥିଲେ ଓ ଭାରତକୁ ମୁକ୍ତ ଓ ଏକତାବଦ୍ଧ ଦେଖିବା ଆଶା ପୋଷଣ କରୁଥିଲେ; କିନ୍ତୁ ଏହା ବ୍ୟକ୍ତିଗତ ମତ କିମ୍ବା ଅଭିମତ କିମ୍ବା ଶୁଭେଚ୍ଛାର ବିଷୟ ନଥିଲି । ଆମକୁ ବିବେଚନା କରିବାକୁ ପଡ଼ିଥିଲି ଏକ ସରକାରୀ ଦଲିଲ ଉପରେ ଯାହା ତା'ର ସୁଚିନ୍ତିତ ଅସ୍ପଷ୍ଟତା ସତ୍ତ୍ୱେ ଯତ୍ନସହକାରେ ଗଠା କରାଯାଇଥିଲି ଏବଂ ଆମକୁ କୁହାଯାଇଥିଲି ଯେ ଆମେ ସେହି ଦଲିଲ୍-ଟିକୁ ଗ୍ରହଣ କରିପାରୁ କିମ୍ବା ପ୍ରତ୍ୟାଖ୍ୟାନ କରିପାରୁ, ପୁରାପୁରି ଭାବରେ ବିନା ଆଂଶିକ

ଭାବରେ ନୁହେଁ । ଆହୁରି ମଧ୍ୟ ତାର ପଛରେ ରହିଥିଲା ଶତବର୍ଷ ପୁରାତନ, ଅବିଚ୍ଛିନ୍ନ ଭାବରେ ଅନୁସୃତ ବ୍ରିଟିଶ ସରକାରଙ୍କ ନୀତି । ସେହି ନୀତି ହେଉଛି ଭାରତରେ ବିଭେଦ ସୃଷ୍ଟିକରିବା ଏବଂ ଜାତୀୟ ଅଭିବୃଦ୍ଧି ଓ ଜାତୀୟ ସ୍ୱାଧୀନତା ମାର୍ଗର ସମସ୍ତ କିଛି ପ୍ରତିବନ୍ଧକର ପୃଷ୍ଠପୋଷକତା କରିବା । ଅତୀତରେ ଯେତେ ପଦକ୍ଷେପ ନିଆଯାଇଛି, ପ୍ରତ୍ୟେକ ଅବସରରେ ନାନାବିଧ ସର୍ତ୍ତ ଓ ସୀମା ବନ୍ଧନ ଦ୍ୱାରା ତାର ଗତିରୋଧ କରାଯାଇଛି । ପ୍ରଥମେ ପ୍ରଥମେ ତାହା ନିର୍ଦୋଷ ମନେ ହେଉଥିଲେ ମଧ୍ୟ ପରେ ପରେ ସେସବୁ ଦୃଢ଼ ପ୍ରତିବନ୍ଧକ ତଥା ଅହେତୁକ ନିୟନ୍ତ୍ରଣ ପ୍ରମାଣିତ ହେଲା ।

ଏକଥା ଯୁକ୍ତିସଙ୍ଗତ ଓ ସମ୍ଭାବ୍ୟ ମଧ୍ୟ ଯେ କ୍ରିପ୍‌ସ ପ୍ରସ୍ତାବରୁ ଯେଉଁସବୁ ବିପଜ୍ଜନକ ପରିଣାମ ଅନୁମିତ ହେଉଛି ତାହା ଭବିଷ୍ୟତରେ ରୂପ ନନେଇ ପାରେ । ବୁଦ୍ଧି ଓ ଦେଶାତ୍ମବୋଧକ ଏବଂ ଭାରତ ତଥା ବିଶ୍ୱ ପ୍ରତି ଯାହା କଲ୍ୟାଣକର, ସେପରି ଏକ ବୃହତ୍ତର ଦୃଷ୍ଟିକୋଣ ନିଃସନ୍ଦେହରେ ଦେଶୀୟ ରାଜ୍ୟଗୁଡ଼ିକର ରାଜା ଓ ମନ୍ତ୍ରୀଙ୍କ ସମେତ ବହୁ ଲୋକଙ୍କୁ ପ୍ରଭାବିତ କରନ୍ତା । ଆମ କଥା ଆମକୁ ବୁଝିବା ପାଇଁ ଛାଡ଼ି ଦେଇଥିଲେ ଆମେ ପରସ୍ପର ଉପରେ ବିଶ୍ୱାସ ରଖି ସେ ଅବସ୍ଥାର ଅମ୍ଳ ଯୀନ ହୁଅନ୍ତୁ, ସେ ସମସ୍ୟାର ସମସ୍ତ କିଛି ଜଟିଳତା ଓ ପ୍ରତ୍ୟେକ ଗୋଷ୍ଠୀ ଯେଉଁସବୁ ଅସୁବିଧାର ଆଶଙ୍କା କରିଥାନ୍ତି, ସେ ବିଷୟରେ ବିବେଚନା କରନ୍ତୁ ଏବଂ ସବୁ କିଛି ବିଷୟରେ ଖୁବ୍ ଭଲ ଭାବରେ ବିଚାର ଆଲୋଚନା କରି ସମସ୍ତଙ୍କ ପକ୍ଷରେ ଗ୍ରହଣଯୋଗ୍ୟ ଗୋଟାଏ ସମାଧାନ ବାହାର କରନ୍ତୁ । ଆତ୍ମନିୟନ୍ତ୍ରଣ ଅଧିକାର ଆମର ରହିବ ବୋଲି ଆମକୁ ସୂଚିତ କରାଯିବା ସତ୍ତ୍ୱେ ଆମ କଥା ବୁଝିବା ପାଇଁ ଆମ ଉପରେ ଭାର ଦେବାର ପ୍ରଶ୍ନ ନଥିଲା । ବ୍ରିଟିଶ୍ ସରକାର ସର୍ବଦା ଏପରି ସବୁ ଘାଟି ଜଗି ରହିଥିଲେ, ଯେଉଁଠାରୁ ନାନା ଭାବରେ ହସ୍ତକ୍ଷେପ କରି ପ୍ରତି ପଦରେ ବାଧା ସୃଷ୍ଟି କରିବା ତାଙ୍କ ପକ୍ଷରେ ସହଜ ଥିଲା । ସମଗ୍ର ସରକାରୀ କଳ ତାଙ୍କର ଆୟତ୍ତରେ ଥିଲା କେବଳ ନୁହେଁ, ଦେଶୀୟ ରାଜ୍ୟମାନଙ୍କରେ ତାଙ୍କର ପ୍ରତିନିଧି ରେସିଡେଣ୍ଟ୍ ଓ ପୋଲିଟିକାଲ୍ ଏଜେଣ୍ଟମାନେ ମଧ୍ୟ ବଳବନ୍ତ ଥିଲେ । ପ୍ରକୃତ ପକ୍ଷେ, ରାଜାମାନେ ସେମାନଙ୍କର ପ୍ରଜାଙ୍କ ପ୍ରତି ଯେତେ ସ୍ୱେଚ୍ଛାଚାରିତା କରନ୍ତୁ ନା କାହିଁକି, ଭାଇସ୍‌ରାୟଙ୍କ ପ୍ରତ୍ୟକ୍ଷ କର୍ତ୍ତୃତ୍ୱାଧୀନ ରାଜନୈତିକ ବିଭାଗମାନଙ୍କ ନିୟନ୍ତ୍ରଣର ବଶୀଭୂତ ଥିଲେ । ସେମାନଙ୍କର ବହୁ ପ୍ରଧାନମନ୍ତ୍ରୀଙ୍କୁ ବଳପୂର୍ବକ ସେମାନଙ୍କ ଉପରେ ଲଦି ଦିଆଯାଇଥିଲା; ଅର୍ଥାତ୍ ଜଣେ ରାଜାଙ୍କର ପ୍ରଧାନମନ୍ତ୍ରୀ କିଏ ହେବ ତାହା ନିର୍ଣ୍ଣୟ କରୁଥିଲେ ଭାଇସରାୟଙ୍କ ରାଜନୈତିକ ବିଭାଗ । କହିବା ବାହୁଲ୍ୟ, ସେସବୁ ପ୍ରଧାନମନ୍ତ୍ରୀ ଥିଲେ ବ୍ରିଟିଶ୍‌ମାନଙ୍କର କର୍ମଚାରୀ ।

ବ୍ରିଟିଶ୍ ପ୍ରସ୍ତାବର ବହୁତ କିଛି ସମ୍ଭାବ୍ୟ ପରିଣତିରୁ ଯଦିଓ ଆମେ ରକ୍ଷା ପାଉଥିଲୁ; ତଥାପି ଭାରତୀୟ ସ୍ୱାଧୀନତାକୁ ଦୁର୍ବଳ କରିବାପାଇଁ, ପ୍ରଗତିରେ ବିଳମ୍ବ ଘଟାଇବା ପାଇଁ ଏବଂ ଯେଉଁଥିରେ ଅସୁବିଧାର ଅନ୍ତ ରହିବନି ସେପରି କେତେ ବିପଜ୍ଜନକ ସମସ୍ୟା ସୃଷ୍ଟି କରିବା ପାଇଁ ସେଥିରେ ଯଥେଷ୍ଟ କିଛି ଥିଲା । ଗୋଟାଏ ପୁରୁଣା ଚଳେ ଧର୍ମ ଉପରେ ଭିତ୍ତି କରି ଯେଉଁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ବ୍ୟବସ୍ଥା ପ୍ରବର୍ତ୍ତିତ କରାଯାଇଥିଲା ତାହା ଯଥେଷ୍ଟ ଅନିଷ୍ଟ

ଘଟାଇ ପାରିଥିଲା । ବର୍ତ୍ତମାନ ଜ୍ଞାନ, ସଂସ୍କୃତି ଓ ସଂସ୍କାର ବିରୋଧୀ ପ୍ରତ୍ୟେକ ଗୋଷ୍ଠୀ ଗଣ୍ଡଗୋଳ ସୃଷ୍ଟି କରିବା ପାଇଁ ଏବଂ ଭାରତ ବହୁ ଭାଗରେ ବିଭକ୍ତ ହୋଇ ପଡ଼ିବ—ଏହି ଭୟ ଯେ ବରାବର ରହିଆସିଚି ସେଥି ନିମନ୍ତେ ଦ୍ୱାର ଉନ୍ମୁକ୍ତ ରହିଲା । ଏପରି ଯେଉଁ ଏକ ଭାରତ ଯୁଦ୍ଧ ପରେ ବାହାରିବ, ଯାହାର ଭବିଷ୍ୟତ କହିଲେ ବୁଝିବାକୁ ହେବ ବିଭେଦ, ବିବାଦ ଓ କ୍ଷୟଶୀଳତା ସେଥିନିମନ୍ତେ ସଂକଳ୍ପବଦ୍ଧ ହେବା ପାଇଁ ଆମକୁ କୁହାଯାଉଥିଲା । ଜାତୀୟ କଂଗ୍ରେସ କେବଳ ନୁହେଁ ଅମର ବହୁ ଉଦାରପନ୍ଥୀ ରାଜନୀତିଜ୍ଞ, ଯେଉଁମାନେ ବ୍ରିଟିଶ ସରକାରଙ୍କ ସଙ୍ଗେ ସର୍ବଦା ସହଯୋଗ କରିଥାନ୍ତି, ଏପରି ଏକ ଅସ୍ତିତ୍ୱହୀନ ଭାରତ ନିମନ୍ତେ ବ୍ରିଟିଶ ପ୍ରସ୍ତାବରେ ରାଜି ହେବାପାଇଁ ଅସାମର୍ଥ୍ୟ ପ୍ରକାଶ କଲେ ।

ତଥାପି, ଭାରତୀୟ ଏକତା ପ୍ରତି ତା'ର ଯେତେ ପ୍ରଗାଢ଼ ଅନୁରକ୍ତି ଥାଉନା କାହିଁକି କଂଗ୍ରେସ ଅନ୍ୟାନ୍ୟ ସଂଖ୍ୟାଲଘୁ ଗୋଷ୍ଠୀଙ୍କ ସହଯୋଗ ନିମନ୍ତେ ଆତୁର ଥିଲା ଏବଂ ଘୋଷଣା ମଧ୍ୟ କଲା ଯେ ଜନସାଧାରଣଙ୍କ ଘୋଷିତ ଇଚ୍ଛା ବିରୁଦ୍ଧରେ ଭାରତୀୟ ଯୁକ୍ତରାଷ୍ଟ୍ର ଭିତରେ କୌଣସି ପ୍ରାଦେଶିକ ଏକକ ରହିପାରିବ ନାହିଁ । ଯଦି ଅନିବାର୍ଯ୍ୟ ହୋଇ ଉଠେ ଭାରତକୁ ବିଭକ୍ତ କରିବା ନୀତିକୁ କଂଗ୍ରେସ ବାଧ୍ୟ ହୋଇ ଗ୍ରହଣ କରିବ ସିନା, ସେ ଦିଗରେ କାହାରିକୁ ଉତ୍ସାହିତ କରିବା ପାଇଁ କଂଗ୍ରେସ ପ୍ରସ୍ତୁତ ନୁହେଁ । କ୍ରିପ୍‌ସ ପ୍ରସ୍ତାବ ଉପରେ ଗୃହୀତ ପ୍ରସ୍ତାବରେ କଂଗ୍ରେସ କାର୍ଯ୍ୟକାରୀ କମିଟି କହିଚନ୍ତି : "ଭାରତୀୟ ସ୍ୱାଧୀନତା ଓ ଏକତା ନିମନ୍ତେ କଂଗ୍ରେସ ବହୁ ପୂର୍ବରୁ ଗୁରୁତ୍ୱ ଦେଇଆସିଚି ଏବଂ ଆଜିର ଆଧୁନିକ ବିଶ୍ୱରେ ବିଶେଷତଃ, ଯେବେ ଲୋକଙ୍କ ମନ ଅନିବାର୍ଯ୍ୟ ଭାବରେ ବୃହତ୍ତର ସଙ୍ଘ ଗଠନ ଦିଗରେ ଧାବିତ ହୋଇଥାଏ, ସେହି ଏକତା ଭଙ୍ଗ ହେବା ବିଷୟରେ ଚିନ୍ତାକରିବା ହିଁ ଅତିଶୟ କ୍ଳେଶକର ଏବଂ ତାହା ସଂପୃକ୍ତ ସମସ୍ତଙ୍କ ପକ୍ଷରେ ନିଶ୍ଚିତ ଭାବରେ କ୍ଷତିକାରକ ହେବ । ତଥାପି, କୌଣସି ଅଞ୍ଚଳ ଅବା ପ୍ରଦେଶର ଲୋକଙ୍କୁ ସେମାନଙ୍କର ପ୍ରତିଷ୍ଠିତ ତଥା ଘୋଷିତ ଇଚ୍ଛା ବିରୁଦ୍ଧରେ ଯୁକ୍ତରାଷ୍ଟ୍ରରେ ରହିବା ପାଇଁ କଂଗ୍ରେସ କମିଟି ବାଧ୍ୟ କରିବନାହିଁ । ଏହି ନୀତିକୁ ସ୍ୱୀକାର କଲାବେଳେ କମିଟି ଅନୁଭବ କରନ୍ତି ଯେ ସେପରି ଅବସ୍ଥା ସୃଷ୍ଟି ଦିଗରେ ସବୁମନ୍ତେ ଉଦ୍ୟମ ହେବା ଉଚିତ, ଯାହା ସମସ୍ତଙ୍କ ପକ୍ଷରେ ସମାନ ଓ ସହଯୋଗମୂଳକ ଏକ ଜାତୀୟ ଜୀବନ ବିକାଶ କରିବା ଦିଗରେ ଭିନ୍ନ ଭିନ୍ନ ଅଂଶର ଲୋକଙ୍କୁ ସାହାଯ୍ୟ ଯୋଗାଇବ । ଏହି ନୀତିକୁ ଗ୍ରହଣ କଲେ ଏକଥା ଅନିବାର୍ଯ୍ୟ ହୋଇ ଉଠିଚି ଯେ ସେପରି କୌଣସି ପରିବର୍ତ୍ତନ ଆଣିବା ଉଚିତ ନୁହେଁ, ଯାହା ପୁଣି ନୂତନ କେତେ ସମସ୍ୟା ସୃଷ୍ଟି କରିବ । ଆହୁରି ମଧ୍ୟ ସେହି ଅଞ୍ଚଳର ଅନ୍ୟାନ୍ୟ ବଡ଼ ବଡ଼ ସମ୍ପ୍ରଦାୟ ଉପରେ ବାଧ୍ୟ କରି କିଛି ଲଦିଦେବା ଉଚିତ ନୁହେଁ । ପ୍ରତ୍ୟେକ ଆଞ୍ଚଳିକ ଏକକ ବା ୟୁନିଟ୍‌ର ପୂର୍ଣ୍ଣ ସ୍ୱାୟତ୍ତ ଶାସନ ଅଧିକାର ରହିବ; କିନ୍ତୁ ଗୋଟାଏ ବଳିଷ୍ଠ ଜାତୀୟ ରାଷ୍ଟ୍ରର ବିକାଶ ଦିଗରେ ତାହା ଅନୁକୂଳ ହେବା ଆବଶ୍ୟକ । ଯୁଦ୍ଧକାଳୀନ ବ୍ରିଟିଶ ମନ୍ତ୍ରିପରିଷଦ ପକ୍ଷରୁ ବର୍ତ୍ତମାନ କରାଯାଇଥିବା ପ୍ରସ୍ତାବ ଭାରତୀୟ ଯୁକ୍ତରାଷ୍ଟ୍ର ଗଠନ କଳ୍ପନା ବେଳରୁ ହିଁ ବିଚ୍ଛିନ୍ନତାକୁ ଉତ୍ସାହିତ କରୁଚି ଏବଂ ପରେ ନିଶ୍ଚିତ ଭାବରେ ସେ ଦିଗରେ ଉଦ୍ୟମ ହେବ ଏବଂ ସହଯୋଗ ଓ ସଦିଚ୍ଛା ଯେତେବେଳେ ନିତାନ୍ତ

ଆବଶ୍ୟକ ଠିକ୍ ସେହି ବେଳରେ ହିଁ ସମ୍ପର୍କର ସୂତ୍ରପାତ କରିବ । ଗୋଟାଏ ସାମ୍ପ୍ରଦାୟିକ ଦାବି ପୂରଣ କରିବା ଉଦ୍ଦେଶ୍ୟରେ ସମ୍ଭବତଃ ଏହି ପ୍ରସ୍ତାବ କରାଯାଇଛି । କିନ୍ତୁ ଏହାର ଅନ୍ୟ ପ୍ରକାର ପରିଣାମ ଯାହା ହେବ, ତାହା ବିଭିନ୍ନ ସମ୍ପ୍ରଦାୟର ରାଜନୀତି ଦୃଷ୍ଟିରୁ ପ୍ରତିକ୍ରିୟାଶୀଳ ଓ ସବୁ ପ୍ରକାର ପ୍ରଗତି ବିରୋଧୀ ଗୋଷ୍ଠୀମାନଙ୍କୁ ଗଣ୍ଡଗୋଳ ଉଠାଇବା ନିମନ୍ତେ ଏବଂ ଦେଶର ଜୀବନ ସଙ୍ଗେ ଜଡ଼ିତ ବିଭିନ୍ନ ସମସ୍ୟା ଉପରୁ ଜନସାଧାରଣଙ୍କ ଦୃଷ୍ଟି ଫେରାଇବା ନିମନ୍ତେ ସୁଯୋଗ ଦେଉଛି ।"

କମିଟି ଆହୁରି କହିଥିଲେ ଯେ "ଆଜିର ଏହି ଗୁରୁତର ସଙ୍କଟ କାଳରେ ବର୍ତ୍ତମାନର ମୂଲ୍ୟ ହିଁ ବେଶି ଏବଂ ଭବିଷ୍ୟତ ପାଇଁ ଉଦ୍ଦିଷ୍ଟ କୌଣସି ପ୍ରସ୍ତାବର ଗୁରୁତ୍ୱ ମଧ୍ୟ କେବଳ ସେତିକି —ଯେତେ ପରିମାଣରେ ତାହା ବର୍ତ୍ତମାନକୁ ପ୍ରଭାବିତ କରି ପାରୁଛି ।" ଭବିଷ୍ୟତରେ କାର୍ଯ୍ୟକାରୀ ହେବା ପାଇଁ କରାଯାଇଥିବା ଏହି ପ୍ରସ୍ତାବ ସଙ୍ଗେ ଏକମତ ହେବା ପାଇଁ ପ୍ରସ୍ତୁତ ନଥିଲେ ସୁଦ୍ଧା, କୌଣସି ଭାବରେ ହେଲେ ଗୋଟାଏ ରାଜିନାମାରେ ଉପନୀତ ହେବା ପାଇଁ କଂଗ୍ରେସ କମିଟି ଉଦ୍‌ବିଗ୍ନ ଥିଲେ; କାରଣ ତାହାହେଲେ ସେମାନେ ଘୋଷଣା କଲଭଳି ଭାରତ ତାର ପ୍ରତିରକ୍ଷାର ଦାୟିତ୍ୱ ଯଥୋଚିତ ଭାବରେ ବହନ କରିପାରିବ । ସେଥିରେ ଅହିଂସା ପ୍ରଶ୍ନ ଜଡ଼ିତ ହେବାର ଲେଶ ନଥିଲା ଏବଂ କୌଣସି ଅବସରରେ ହେଲେ ତାର ଉଲ୍ଲେଖ କରାଯାଇନାହିଁ । ବସ୍ତୁତଃ, ନାନା ବିଷୟ ମଧ୍ୟରୁ ଯେଉଁ ବିଷୟରେ ଆଲୋଚନା ହେଲା, ତାହା ହେଉଛି ଯେ ଜଣେ ଭାରତୀୟ ଭାରତର ପ୍ରତିରକ୍ଷା ମନ୍ତ୍ରୀ ହେବା ଦରକାର ।

ଏହି ଅବସ୍ଥାରେ କଂଗ୍ରେସ ଭାରତ ପ୍ରତି ଆସନ୍ନ ବିପଦ ଦୃଷ୍ଟିରୁ, ଭବିଷ୍ୟତ ସମ୍ବନ୍ଧୀୟ ସମସ୍ତ ପ୍ରଶ୍ନ ଭବିଷ୍ୟତ ପାଇଁ ରଖି ଗୋଟାଏ ଜାତୀୟ ସରକାର ଗଠନ ଦିଗରେ ମନୋନିବେଶ କରିବା ପାଇଁ ପ୍ରସ୍ତୁତ ଥିଲେ; କାରଣ ଗୋଟାଏ ଜାତୀୟ ସରକାର କେବଳ ସ୍ୱଦେଶ ପ୍ରତିରକ୍ଷାରେ ପୂର୍ଣ୍ଣପ୍ରାଣରେ କାର୍ଯ୍ୟ କରିପାରେ । ଭବିଷ୍ୟତ ପାଇଁ ବ୍ରିଟିଶ ସରକାର ଯେଉଁ କେତେକ ନିର୍ଦ୍ଦିଷ୍ଟ ପ୍ରସ୍ତାବ ଉପସ୍ଥାପିତ କରିଥିଲେ, ସେଥି ସଙ୍ଗେ କଂଗ୍ରେସ ଏକମତ ହୋଇପାରୁ-ନଥିଲେ; କାରଣ ସେଥି ସଙ୍ଗେ ନାନା ପ୍ରକାର ବିପଜ୍ଜନକ ପ୍ରତିଶ୍ରୁତି ଜଡ଼ିତ ଥିଲା । କଂଗ୍ରେସର ବିଚାର ଦିଗରୁ ଦେଖିଲେ, ଏହି ସବୁ ପ୍ରସ୍ତାବ ପ୍ରତ୍ୟାହାର କରିନିଆଯାଇପାରେ କିମ୍ବା ବ୍ରିଟିଶ ଉଦ୍ଦେଶ୍ୟର ସୂଚନା ଭାବରେ ରଖାଯାଇପାରେ; କିନ୍ତୁ କଂଗ୍ରେସ ତାହା ଗ୍ରହଣ କରିବା ପାଇଁ ଯେ ପ୍ରସ୍ତୁତ ନୁହେଁ ସେ ବିଷୟରେ କୌଣସି ଅସ୍ପଷ୍ଟତା ରହିନପାରେ । ତଥାପି, ସାମ୍ପ୍ରତିକ ଅବସ୍ଥାରେ କଂଗ୍ରେସର ସହଯୋଗ ନିମନ୍ତେ ପନ୍ଥା ବାହାର କରିବାରେ ଏହା ପ୍ରତିବନ୍ଧକ ହେବାର କୌଣସି କାରଣ ନାହିଁ ।

ବର୍ତ୍ତମାନ ସମ୍ପର୍କରେ ବିଚାରକଲେ ମଧ୍ୟ ବ୍ରିଟିଶ ଓ୍ୱାର କ୍ୟାବିନେଟ୍‌ର ପ୍ରସ୍ତାବ ଥିଲା ଅସ୍ପଷ୍ଟ ଓ ଅସମ୍ପୂର୍ଣ୍ଣ । ଏତିକି କେବଳ ସେଥିରେ ସ୍ପଷ୍ଟ କରିଦିଆଯାଇଥିଲା ଯେ ଭାରତର ପ୍ରତିରକ୍ଷା ଦାୟିତ୍ୱ ବ୍ରିଟିଶ ସରକାରଙ୍କ ହାତରେ ହିଁ ରହିବ । ସାର ଷ୍ଟାଫୋର୍ଡ କ୍ରିପ୍‌ସ ବାରମ୍ବାର ଯେଉଁସବୁ ବିବୃତି ଦେଉଥିଲେ, ସେଥିରୁ ଅନୁମିତ ହେଉଥିଲା ଯେ ପ୍ରତିରକ୍ଷା ବ୍ୟତୀତ ଅନ୍ୟ

ସମସ୍ତ ବିଷୟ ଫଳପ୍ରଦ ଭାରତୀୟ ନିୟନ୍ତ୍ରଣର ପରିସର ଭିତରେ ଗ୍ରାହ୍ୟ ହୋଇଆସିବ । ଆହୁରି ମଧ୍ୟ କଥା ଉଠିଥିଲା ଯେ ଇଂଲଣ୍ଡର ରାଜାଙ୍କ ଭଳି ଭାଇସରାୟ ବି ରହିବେ ଶାସନ-ତାନ୍ତ୍ରିକ ପ୍ରମୁଖ ଭାବରେ । ଏଥିରୁ ଆମକୁ ବୋଧହେଲା, ବିଗ୍ରହ କମିଟି ଯେଉଁ ଗୋଟିଏ ପ୍ରଶ୍ନ କେବଳ ରହିଲା ତାହା ହେଉଛି ଭାରତର ପ୍ରତିରକ୍ଷା । ଆମର ଯୁକ୍ତି ଥିଲା, ଯୁଦ୍ଧ କାଳରେ ପ୍ରତିରକ୍ଷା ବିଭାଗ ଅଧିକାଂଶ ଜାତୀୟ କାର୍ଯ୍ୟକଳାପକୁ ଆବୃତ କରି ବସିବ ଏବଂ ଆବଶ୍ୟକତା ଅନୁଯାୟୀ ଆବୃତ କରାଇବା ହୁଏତ ଅନିବାର୍ଯ୍ୟ ହୋଇ ପଡ଼ିବ । ଅତଏବ, ଜାତୀୟ ସରକାରଙ୍କ କାର୍ଯ୍ୟକଳାପର ପରିସର ଭିତରୁ ପ୍ରତିରକ୍ଷା ବିଭାଗକୁ ଯଦି ସମ୍ପୂର୍ଣ୍ଣ ଭାବରେ ହଟାଇ ନିଆଯାଏ, ଯାହା ରହିବ ତାହା କିଛି ନୁହେଁ କହିଲେ ଚଳେ । ସଶସ୍ତ୍ର ବାହିନୀ ଉପରେ ଓ ସାମରିକ କାର୍ଯ୍ୟକ୍ରମରେ ବ୍ରିଟିଶ ପ୍ରଧାନ ସେନାପତିଙ୍କ ପୂର୍ଣ୍ଣ କର୍ତ୍ତୃତ୍ୱ ଜାରି ରହିବ ବୋଲି ନିଷ୍ପତ୍ତି ହେଲା । ଆହୁରି ମଧ୍ୟ ନିଷ୍ପତ୍ତି ହେଲା ଯେ ଯୁଦ୍ଧ ସମ୍ପର୍କୀୟ ସମସ୍ତ କୌଶଳ ଶାସ୍ତ୍ର ସାମରିକ ଅଫିସରମାନଙ୍କ ଦ୍ୱାରା ପରିଚାଳିତ ହେବ । ଶେଷରେ ଆମର ଗୋଟିଏ ମାତ୍ର ଦାବି ରହିଲା ଯେ ଜାତୀୟ ସରକାରରେ ଜଣେ ପ୍ରତିରକ୍ଷା ମନ୍ତ୍ରୀ ରହିବେ ।

କିଛିକାଳ ଆଲୋଚନା ପରେ ସାର୍ ଷ୍ଟାଫୋର୍ଡ଼ ରାଜି ହେଲେ ଯେ ଜାତୀୟ ସରକାରରେ ଜଣେ ଭାରତୀୟ ମନ୍ତ୍ରୀଙ୍କ ଅଧୀନରେ ଗୋଟାଏ ପ୍ରତିରକ୍ଷା ବିଭାଗ ରଖାଯାଇ-ପାରେ; କିନ୍ତୁ ସେହି ବିଭାଗ ଲୋକ-ସମ୍ପର୍କ, ପେଟ୍ରୋଲ, କାଣ୍ଟିନ୍, ଲେଖା ଓ ଛାପା କାମ, ବିଦେଶାଗତ ପ୍ରତିନିଧି ଦଳମାନଙ୍କ ନିମନ୍ତେ ସାମାଜିକ ପ୍ରବନ୍ଧର ବ୍ୟବସ୍ଥା, ସୈନିକମାନଙ୍କର ମନୋରଞ୍ଜନ ଇତ୍ୟାଦି ବିଷୟ କେବଳ ବୁଝିବ । ଏହା ଏକ ଚମତ୍କାର ତାଲିକା ଏବଂ ଏହି ଦାୟିତ୍ୱରେ ରହିବା ଭାରତୀୟ ପ୍ରତିରକ୍ଷା ମନ୍ତ୍ରୀ ଏକ ହାସ୍ୟକର ଭୂମିକାରେ ହିଁ ଅବତୀର୍ଣ୍ଣ ହେବେ । ଏଥି ଉପରେ ଅଧିକ ଆଲୋଚନା ହେଲା ଏବଂ ଶେଷରେ କେତେକାଂଶରେ ଭିନ୍ନ ଏକ ଅଭିମୁଖ୍ୟ ପ୍ରକାଶ ପାଇଲା । ଉଭୟ ପକ୍ଷର ଦୃଷ୍ଟିକୋଣ ଭିତରେ ଆହୁରି ବହୁତ ବ୍ୟବଧାନ ରହିଥିଲେ ସୁଦ୍ଧା ଆମେ ପରସ୍ପରର ନିକଟବର୍ତ୍ତୀ ହୋଇପାରୁଛୁ ବୋଲି ଅନୁମାନ କରୁଥିଲୁ । ପ୍ରଥମ ଥର ପାଇଁ ମତେ ବୋଧ ହେଲା ଓ ଅନ୍ୟମାନେ ବି ବୋଧ କରିପାରିଲେ ଯେ ଗୋଟାଏ ରାଜିନାମା ଯାହାହେଉ ହେବାକୁ ଯାଉଛି । ଯୁଦ୍ଧ ପରିସ୍ଥିତିର ସଙ୍କଟ ଯେପରି ଭାବରେ ଘନେଇ ଆସୁଥିଲା, ଅବିଚ୍ଛିନ୍ନ ଭାବରେ ତାହା ଆମ ସମସ୍ତଙ୍କୁ ଟାଣି ନେଉଥିଲା ଗୋଟାଏ ମୀମାଂସାରେ ପହଞ୍ଚିବା ପାଇଁ ।

ଯୁଦ୍ଧ ଓ ଆକ୍ରମଣର ବିପଦ ବଢ଼ି ଉଠିଥିଲା ଏବଂ ତାର ସମ୍ମୁଖୀନ ହେବା ବ୍ୟତୀତ ଅନ୍ୟ ପନ୍ଥା ନଥିଲା । ନାନା ଭାବରେ ତାର ସାମନା କରାଯାଇପାରେ । ତେବେ, ବର୍ତ୍ତମାନ ହେଉ କିମ୍ବା ଭବିଷ୍ୟତରେ ହେଉ ସମ୍ମୁଖୀନ ହେବା ପାଇଁ ଗୋଟିଏ ମାତ୍ର ପ୍ରକୃତ ଫଳପ୍ରଦ ମାର୍ଗ ଦେଖି ହେଉଥିଲା । ଆମେ ଅନୁଭବ କରୁଥିଲୁ ଯେ ଏହି ମନୋସ୍ତାତ୍ତ୍ୱିକ ମୁହୂର୍ତ୍ତ ହୁଏତ ଅତିବାହିତ ହୋଇଯିବ ଏବଂ ପରେ ପରେ ବର୍ତ୍ତମାନ ପାଇଁ କେବଳ ଯେ ବିପଦ ମାଡ଼ିଆସିବ ତାହା ନୁହେଁ, ଭବିଷ୍ୟତ ପାଇଁ ମଧ୍ୟ ଆହୁରି ଗୁରୁତର କେତେ ବିପଦ ପୁଞ୍ଜିତ କରିବ । ପୁରାତନ ସଙ୍ଗେ ନୂତନ ଆୟୁଧ ଓ ସେସବୁ ବ୍ୟବହାର କରିବାର ନୂତନ ପ୍ରଣାଳୀ, ନୂତନ

ଅଗ୍ରହ, ନୂତନ ଦଗନ୍ତ ଏବଂ ଭବିଷ୍ୟତ ଉପରେ ସେପରି ଏକ ନୂତନ ଆସ୍ଥା, ଯାହା ଅତୀତ ଓ ବର୍ତ୍ତମାନ ଦୃଷ୍ଟିଭଙ୍ଗୀଠାରୁ ସାରତଃ ହେବ ଭିନ୍ନ, ଆବଶ୍ୟକ ହୋଇଥିଲା ଏବଂ ତାର ପ୍ରମାଣ ନିହିତ ଥିଲା ବର୍ତ୍ତମାନର ପରିବର୍ତ୍ତନ ବିଧାନରେ । ଆମର ଉଗ୍ରତା ହୁଏତ ଆମର ଆଶାବାଦକୁ ସ୍ପଷ୍ଟ କରୁଥିଲା ଏବଂ ଛଳେ ପାଇଁ ହୁଏତ ଆମେ ଭୁଲି ଯାଉଥିଲୁ କିମ୍ବା ନ୍ୟୂନ କରି ଦେଖୁଥିଲୁ ଯେ ବ୍ରିଟେନ୍‌ର ଶାସକବର୍ଗ ଓ ଆମ ଭିତରେ ଯେଉଁ ବ୍ୟବଧାନ ରହିଚି ତାହା ପ୍ରସ୍ଥରେ ଓ ଗଭୀରତାରେ କିଛି ସାଧାରଣ ନୁହେଁ । ବିପଦ ହେଉ କି ବିପର୍ଯ୍ୟୟ ହେଉ, ତାହାର ସମ୍ମୁଖରେ ପୁରୁଣା ଶତ ଶତ ବର୍ଷର ଏହି ବିବାଦ ଭୁଲିଯିବା କିଛି ସହଜ ନଥିଲା । କୌଣସି କାଳରେ ହେଲେ କୌଣସି ସାମ୍ରାଜ୍ୟବାଦୀ ଶକ୍ତି ପକ୍ଷରେ, ବିନା ବାଧା ନହେଲେ ତାର ଅଧିକୃତ ରାଜ୍ୟ ଉପରୁ କର୍ତ୍ତୃତ୍ୱ କୋହଳ କରିବା ସହଜ ହୋଇନି । ପରିସ୍ଥିତି କ'ଣ ସେହି ବାଧାକର ଶକ୍ତି ଓ ସଙ୍କଳ୍ପ ସୃଷ୍ଟି କଲାଣି ? ଆମେ ଜାଣିନଥିଲୁ କିନ୍ତୁ ଆଶା ବି ଛାଡ଼ି-ନଥିଲୁ ।

ଏହାପରେ, ମୁଁ ଯେବେ ଖୁବ୍ ଆଶାନ୍ୱିତ ହୋଇ ଉଠିଥିଲି, ନାନା ପ୍ରକାର ପ୍ରତିକୂଳ ଘଟଣା ସବୁ ଘଟିବାକୁ ଲାଗିଲା । ଲର୍ଡ଼ ହାଲିଫାକ୍ସ ଆମେରିକାର କୌଣସି ଏକ ସ୍ଥାନରେ ଭାଷଣ ଦେଲାବେଳେ ଜାତୀୟ କଂଗ୍ରେସ ଉପରେ ପ୍ରବଳ ଭାବରେ ଆକ୍ରମଣ କଲେ । ସୁଦୂର ଆମେରିକାରେ ସେ ଯେ କାହିଁକି ଏପରି କରି ବସିଲେ ବୁଝିବା କଠିଣ; କିନ୍ତୁ କଂଗ୍ରେସ ସଙ୍ଗେ ଆଲୋଚନା ଚାଲିଥିଲାବେଳେ ବ୍ରିଟିଶ ସରକାରଙ୍କ ନୀତି ଓ ଦୃଷ୍ଟିଭଙ୍ଗୀର ପ୍ରତିନିଧିତ୍ୱ କରୁନଥିଲେ, ସେପରି ବନ୍ୟ ଭାଷାରେ ସେ କହିପାରିନଥାନ୍ତେ । ଦିଲ୍ଲୀରେ ଏ କଥା ଭଲ ଭାବରେ ବିଦିତ ଥିଲା ଯେ ଭାଇସ୍‌ରୟ ଲର୍ଡ଼ ଲିନ୍‌ଲିଥ୍‌ଗୋ ଓ ସିଭିଲ୍ ସର୍ଭିସ୍‌ର ଉଚ୍ଚ କର୍ମଚାରୀମାନେ ସେମାନଙ୍କର କ୍ଷମତା ସଙ୍କୁଚିତ ହେବା ଆଶଙ୍କା କରି ବ୍ରିଟିଶ୍ ସରକାର ଓ କଂଗ୍ରେସ ଭିତରେ ପ୍ରକୃତରେ କୌଣସି ବୁଝାମଣା ନ ହେଉ ବୋଲି ଚାହୁଁଥିଲେ ଓ ସେ ଦିଗରେ ନିଷ୍କ୍ରିୟ ବି ନଥିଲେ । ସେ ସମୟରେ ବହୁତ କିଛି ଭିତରେ ଭିତରେ ଘଟିଚି, ଯାହାର ଅସ୍ପଷ୍ଟ ସୂଚନା କେବଳ ବାହାରେ ପ୍ରକାଶ ପାଉଥିଲା ।

ପ୍ରତିରକ୍ଷା ମନ୍ତ୍ରୀଙ୍କ କର୍ତ୍ତବ୍ୟ ଓ ଦାୟିତ୍ୱ ସମ୍ପର୍କରେ ଯେଉଁ ନୂତନ ଅଭିମୁଖ୍ୟ ବାହାରିଥିଲା, ସେ ସମ୍ପର୍କରେ ଆଲୋଚନା କରିବା ପାଇଁ ଆମେ ପୁଣି ଯେବେ ସାର୍ ଷ୍ଟାଫୋର୍ଡ଼ କ୍ରିପ୍‌ସଙ୍କ ସଙ୍ଗେ ସାକ୍ଷାତ କଲୁ, ଜଣାଗଲା ଯେ ପୂର୍ବେ ଯେଉଁସବୁ ଆଲୋଚନା ହୋଇଥିଲା ତାର କିଛି ମୂଲ୍ୟ ନାହିଁ; କାରଣ ଆଉ ମନ୍ତ୍ରୀ ନିଯୁକ୍ତ ହେବାକୁ ଯାଉନାହାନ୍ତି କିମ୍ବା ସେମାନଙ୍କୁ କ୍ଷମତା ହସ୍ତାନ୍ତର କରିବାର ପ୍ରଶ୍ନ ଉଠୁନି । ଭାଇସ୍‌ରୟଙ୍କର ଯେଉଁ ଏକଜିକ୍ୟୁଟିଭ କାଉନ୍‌ସିଲ୍ ଥିଲା ତାହା ସେପରି ରହିବ ଏବଂ ଯଦି କିଛି କରିବାର କିଛି ଥାଏ, ତାହା ହେଉଚି ଭାରତର ରାଜନୈତିକ ଦଳମାନଙ୍କର ପ୍ରତିନିଧି ହିସାବରେ ଆଉ କେତେଜଣ ଭାରତୀୟଙ୍କୁ ସେଥିରେ ନିଯୁକ୍ତ କରିବା । ଭାଇସ୍‌ରୟଙ୍କ କାଉନ୍‌ସିଲ୍ କୌଣସି ଭାବରେ ହେଲେ ମନ୍ତ୍ରି ପରିଷଦ ବୋଲି ବିବେଚିତ ହୋଇ ପାରନ୍ତାନାହିଁ; କାରଣ ତାହା ଥିଲା କେତେକ ବିଭାଗର ମୁଖ୍ୟକର୍ତ୍ତା ଅଥବା ସେକ୍ରେଟେରୀମାନଙ୍କର ଏକ ସମାହାର କେବଳ ଏବଂ ସମସ୍ତ କ୍ଷମତା କେନ୍ଦ୍ରିତ ଥିଲା

ଭାଇସ୍‌ରୟଙ୍କ ହାତରେ । ଆମେ ଉପଲବ୍ଧି କରିଥିଲୁ ଯେ ଆଇନଗତ ପରିବର୍ତ୍ତନ ନିମନ୍ତେ ସମୟ ଲାଗିବ ଏବଂ ସେଥି ହେତୁରୁ ଆମେ ସେଥି ଉପରେ ଜୋର୍ ଦେଇନଥିଲୁ; କିନ୍ତୁ ଆମେ ଜାଗର କରି ବସିଲୁ ଯେ ଗୋଟାଏ ପ୍ରଚଳ ଅନ୍ତତଃପକ୍ଷେ ଅବଶ୍ୟ ମାନିମାକୁ ପଡ଼ିବ ଅର୍ଥାତ୍ ତାହା ହେଉଛି ଭାଇସ୍‌ରୟ ଏବଂ କାଉନ୍‌ସିଲ୍‌କୁ ମନ୍ତ୍ରିପରିଷଦ ବିବେଚନା କରିବେ ଓ ତାର ନିଷ୍ପତ୍ତି ମାନିବେ । ଆମକୁ ଏଥର କୁହାଗଲା ଯେ ତାହା ସମ୍ଭବ ନୁହେଁ ଏବଂ ଭାଇସ୍‌ରୟଙ୍କ କ୍ଷମତା ସବୁମନ୍ତେ ଅବ୍ୟାହତ ରହିବ । ଆଲୋଚନାର ଏ ଗତି ଆମ ପକ୍ଷରେ ଥିଲା ଅତିଶୟ ବିସ୍ମୟକର; କାରଣ ଆମର ପୂର୍ବବର୍ତ୍ତୀ ସବୁ କିଛି ଆଲୋଚନା ଭିନ୍ନ ଏକ ଭିତ୍ତି ଉପରେ ଗଢ଼ି ଉଠିଥିଲା ।

ଆକ୍ରମଣ ବିରୁଦ୍ଧରେ ଭାରତରେ ପ୍ରତିରୋଧ ଶକ୍ତି ଆମେ କିପରି ଭାବରେ ବୃଦ୍ଧି କରିପାରିବୁ ସେ ବିଷୟରେ ଆଲୋଚନା କଲୁ । ଭାରତୀୟ ସେନାବାହିନୀ ନିଜକୁ ଏକଜାତୀୟ ସେନାବାହିନୀ ବୋଲି ଅନୁଭବ କରୁ, ଏଥିପାଇଁ ଆମେ ଉତ୍ସୁକ ଥିଲୁ ଏବଂ ଏପରି ଭାବରେ ଯୁଦ୍ଧରେ ଏକ ଦେଶପ୍ରେମୀ ମନୋଭାବ ଭର୍ତ୍ତି କରିବାକୁ ଆମେ ଚାହୁଁଥିଲୁ । ଆକ୍ରମଣ ଯଦି ହୁଏ, ଗୃହରକ୍ଷା ନିମନ୍ତେ ଆମେ ଖୁବ୍ ଚଞ୍ଚଳ ନୂଆ ନୂଆ ସୈନ୍ୟବାହିନୀ, ହୋମଗାର୍ଡ଼ ଇତ୍ୟାଦି ଗଢ଼ିବା ପାଇଁ ଚାହୁଁଥିଲୁ । ଏ ସମସ୍ତ ଅବଶ୍ୟ ପ୍ରଧାନ ସେନାପତିଙ୍କ କର୍ତ୍ତୃତ୍ୱାଧୀନ ରହନ୍ତା । ଆମକୁ କୁହାଗଲା, ଆମେ ସେପରି କିଛି କରିପାରିବୁ ନାହିଁ ଏବଂ ଭାରତୀୟ ସୈନ୍ୟବାହିନୀ ବ୍ରିଟିଶ ସୈନ୍ୟ ବାହିନୀର ଯେହେତୁ ଏକ ଅଂଶବିଶେଷ, ତାହାକୁ ଜାତୀୟ ସେନାବାହିନୀ ବୋଲି ଉଲ୍ଲେଖ କିମ୍ବା ବିବେଚନା କରାଯାଇନପାରେ । ଗୃହରକ୍ଷୀ ବାହିନୀ ଭଳି ସ୍ୱତନ୍ତ୍ର କିଛି ସଙ୍ଗଠନ ଗଢ଼ିବା ପାଇଁ ଆମେ ଅନୁମତି ପାଇବୁ ନାହିଁ, ସେ ବିଷୟରେ ଆମେ ସନ୍ଦିହାନ ଥିଲୁ ।

ଅତଏବ, ମୋଟାମୋଟି ଭାବରେ କହିଲେ, ଆଲୋଚନାର ଫଳ ଏତିକି ହେଲା ଯେ ବର୍ତ୍ତମାନ ସରକାର ଯେପରି ଚାଲିଛି ସେପରି ଚାଲିବ, ଭାଇସ୍‌ରୟଙ୍କ ହାତରେ ନିରଙ୍କୁଶ କ୍ଷମତା ରହିବ ଏବଂ ଇଚ୍ଛାକଲେ ଆମ ଭିତରୁ କେତେଜଣ ତାଙ୍କର ପାର୍ଷଦ ପରିଚ୍ଛଦ ଧାରଣ କରି କାଣ୍ଟିନ, ଲେଖା ଓ ଛପା କାମ ଭଳି କେତେକ ତୁଚ୍ଛ ବିଷୟର ତତ୍ତ୍ୱ ନେଇ-ପାରୁ । ଅଠର ମାସ ତଳେ ମିଷ୍ଟର ଆମେରି ଯାହା ଆମକୁ ଯାଚିଥିଲେ ଏବଂ ସେତେବେଳେ ଭାରତ ପକ୍ଷରେ ଯାହା ଏକ ପ୍ରକାଶ୍ୟ ଅପମାନ ବୋଲି ଆମର ମନେ ହେଉଥିଲା, କ୍ରିପ୍‌ସ ପ୍ରସ୍ତାବ ଓ ତାର ଭିତରେ ତିଳେମାତ୍ର ପ୍ରଭେଦ ନଥିଲା । ଏକଥା ଅବଶ୍ୟ ସତ୍ୟ ଯେ ଏତେ ସବୁ ଘଟିଯିବା ପରେ ଗୋଟାଏ ପ୍ରକାର ମନସ୍ତାତ୍ତ୍ୱିକ ପରିବର୍ତ୍ତନ ଦେଖାଦିଅନ୍ତା ଏବଂ ଭାରତୀୟ ପୁରୁଷକାର ପ୍ରକାଶିତ ହୁଅନ୍ତା । ଭାଇସ୍‌ରୟଙ୍କ ସିଂହାସନକୁ ଘେରି ଯେଉଁ ଭୃତ୍ୟ ଓ ପରିଚୟ ସାଧାରଣତଃ ରହିଥାଆନ୍ତି, ସେମାନଙ୍କ ଅପେକ୍ଷା ସ୍ୱାଧୀନଚେତା ତଥା ସୁଦକ୍ଷ ଲୋକଙ୍କ କାର୍ଯ୍ୟକଳାପ ନିଶ୍ଚିତ ଭାବରେ ଭିନ୍ନ ହୁଅନ୍ତା ।

ସେହି ସମୟ ବୋଲି କେବଳ ନୁହେଁ, ଅନ୍ୟ ଯେକୌଣସି ସମୟରେ ମଧ୍ୟ ସେହି ଅବସ୍ଥାକୁ ସ୍ୱୀକାର କରିବା ଆମ ପକ୍ଷରେ ଅସମ୍ଭବ କେବଳ ନୁହେଁ, ବରଂ ଥିଲା ଧାରଣାତୀତ । ସେପରି

କରିବା ପାଇଁ ଆମେ ଯଦି ପାହୁଣ୍ଡେ ଆଗେଇ ଯାଇଥାନ୍ତୁ ଆମ ଲୋକେ ଆମକୁ ଶତ୍ରୁ ଭଳି ମଣନ୍ତେ । ବସ୍ତୁତଃ ପରବର୍ତ୍ତୀ ସମୟରେ କ୍ରିପ୍ସଙ୍କ ସଙ୍ଗେ ଆଲୋଚନାର ବିଷୟବସ୍ତୁ ଯେବେ ବାହାରେ ପ୍ରକାଶ ପାଇଲା, ଆମେ କିପରି ଏତେ ସବୁ କଥାରେ ବ୍ରିଟିଶ ସରକାର ସଙ୍ଗେ ରାଜି ହୋଇ ଯାଉଥିଲୁ ବୋଲି ଦେଶସାରା ଭାରି ପାଟିତୁଣ୍ଡ ହେଲା ।

ସାର୍ ଷ୍ଟାଫୋର୍ଡ଼ କ୍ରିପ୍ସଙ୍କ ସଙ୍ଗେ ଆମେ ଯେଉଁଥର ଆଲୋଚନା କରିଚୁ, ସେଥି ଭିତରେ ଥରେ ହେଲେ ଉଠାଇଥିବା ଏହି ସଂଖ୍ୟାଲଘୁ ବା ସାମ୍ପ୍ରଦାୟିକ ପ୍ରଶ୍ନ ଉଠିନି କିମ୍ବା ବିବେଚିତ ହୋଇନି । ପ୍ରକୃତପକ୍ଷେ, ସେହି ଅବସ୍ଥାରେ ଏହା ଉଠିନଥାନ୍ତା । ଭବିଷ୍ୟତର ଶାସନତାନ୍ତ୍ରିକ ପରିବର୍ତ୍ତନ ବେଳେ ବିବେଚନା ନିମନ୍ତେ ତାହା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହୋଇ ରହନ୍ତା; କିନ୍ତୁ ବ୍ରିଟିଶ ପ୍ରସ୍ତାବ ପ୍ରତି ପ୍ରଥମେ ଆମର ଯେଉଁ ପ୍ରତିକୂଳ ପ୍ରତିକ୍ରିୟା ହେଲା ସେଥିହେତୁରୁ ଏହାକୁ ସ୍ୱାଭାବିକ ଭାବରେ ଆଲୋଚନାର ପରିସର ଭିତରୁ ବାଦ ଦିଆଗଲା । ଗୋଟାଏ ଜାତୀୟ ସରକାର ହାତକୁ ଫଳପ୍ରଦ ଭାବରେ କ୍ଷମତା ହସ୍ତାନ୍ତର କରିବାର ନୀତି ଉପରେ ଯଦି କିଛି ବୁଝାମଣା ହୋଇଥାନ୍ତା, ସେତେବେଳେ ନିଃସନ୍ଦେହରେ ଏହି ପ୍ରଶ୍ନ ଉଠିଥାନ୍ତା; କାରଣ ଜାତୀୟ ସରକାରରେ, ନିଜ ନିଜ ଶକ୍ତି ଅନୁପାତରେ, କେଉଁ କେଉଁ ଗୋଷ୍ଠୀ କିପରି ଭାବରେ ପ୍ରତିନିଧିତ୍ୱ କରନ୍ତେ, ସେ ବିଷୟରେ ନିଷ୍ପତ୍ତି କରିବାକୁ ପଡ଼ନ୍ତା; କିନ୍ତୁ ସେହି ନୀତି ଉପରେ ଏକମତ ହେବାର ଅବସ୍ଥାରେ ଆମେ ଯେହେତୁ ପହୁଞ୍ଚି ପାରିନଥିଲୁ, ଅନ୍ୟାନ୍ୟ ଦଳ ଓ ସମ୍ପ୍ରଦାୟ ପ୍ରଶ୍ନ ଉଠିନଥିଲା କିମ୍ବା ବିଚାରକୁ ନିଆଯାଇନଥିଲା । ଆମ ଦିଗରୁ ଅନ୍ତତଃ, ଦେଶର ପ୍ରଧାନ ପ୍ରଧାନ ଦଳଗୁଡ଼ିକର ବିଶ୍ୱାସଭାଜନ ଏକ ଫଳପ୍ରଦ ଜାତୀୟ ସରକାର ଗଠନ କରାଯାଉ ବୋଲି ଆମେ ଏତେ ଭାବରେ ଉତ୍ସୁକ ଥିଲୁ ଯେ ଆମର ମନେ ହୋଇଥିଲା ଅନୁପାତ ପ୍ରଶ୍ନ ନେଇ ସେପରି କିଛି ଅସୁବିଧା ଅଲଙ୍ଘନୀୟ ହେବନାହିଁ । କଂଗ୍ରେସ ସଭାପତି ମୌଲାନା ଅବୁଲ୍ କାଲମ୍ ଆଜାଦ୍ ଏକ ପତ୍ରରେ ସାର୍ ଷ୍ଟାଫୋର୍ଡ଼ଙ୍କ ପାଖକୁ ଲେଖିଥିଲେ "ଆମେ ଏକଥା ଆପଣଙ୍କୁ ସୂଚାଇ ଦେବାକୁ ଚାହୁଁ; ଯେ ଆମେ ଯେଉଁ ସବୁ ପରାମର୍ଶ ଉପସ୍ଥିତ କରିଚୁ, ତାହା ଆମର କେବଳ ନୁହେଁ ବରଂ ଭାରତୀୟ ଜନସାଧାରଣଙ୍କର ସର୍ବସମ୍ମତ ଦାବି ବୋଲି ବିବେଚନା କରାଯାଇପାରେ । ଏହି ସବୁ ବିଷୟରେ ବିଭିନ୍ନ ଦଳ ଓ ଗୋଷ୍ଠୀ ଭିତରେ ମତ ପାର୍ଥକ୍ୟ ନାହିଁ ଏବଂ ମତ ପାର୍ଥକ୍ୟ କଥା କହିଲେ ଏ କ୍ଷେତ୍ରରେ ଦୁଇଟି ପକ୍ଷକୁ କେବଳ ନାମିତ କରାଯାଇ ପାରେ ଏବଂ ତାହା ହେଉଚି, ଏକ ପକ୍ଷରେ ଭାରତୀୟ ଜନସାଧାରଣ ଓ ଅପର ପକ୍ଷରେ ବ୍ରିଟିଶ ସରକାର । ଭାରତରେ ଯାହା କିଛି ବା ମତ ପାର୍ଥକ୍ୟ ଅଛି ତାହା ଆଜିର ବିବେଚନାର ବିଷୟ ନୁହେଁ; ଭବିଷ୍ୟତର ଶାସନତାନ୍ତ୍ରିକ ପରିବର୍ତ୍ତନ କାଳରେ ତାହା ଉଠିପାରେ । ଏହି ପ୍ରଶ୍ନ ସ୍ଥଗିତ ରଖିବା ପାଇଁ ଆମେ ରାଜି ଅଛୁ; କାରଣ ବର୍ତ୍ତମାନର ସଙ୍କଟ କାଳରେ ଭାରତର ପ୍ରତିରକ୍ଷା ନିମନ୍ତେ ଯଥୋପଯୋଗୀ ଏକତା ହାସଲ କରାଯାଇ ପାରିବ । ଭାରତରେ ଏ ପ୍ରକାର ସମ୍ପୂର୍ଣ୍ଣ ମତମେଳ ରହିଥିବାବେଳେ ଗୋଟାଏ ମୁକ୍ତ ଜାତୀୟ ସରକାର ଭାରତର ଆଦର୍ଶ ନିମନ୍ତେ ଏବଂ ପୃଥିବୀର ସର୍ବତ୍ର କୋଟି କୋଟି ଲୋକ ଯେଉଁସବୁ ଆଦର୍ଶ ନିମନ୍ତେ ଦୁଃଖଯନ୍ତ୍ରଣା ଭୋଗୁଚନ୍ତି

ଓ ମୃତ୍ୟୁ ବରଣ କରୁଚନ୍ତି, ସେଥି ନିମନ୍ତେ କାର୍ଯ୍ୟ କରୁ—ଏକଥା ଯଦି ବ୍ରିଟିଶ ସରକାର ଗ୍ରହଣ କରୁନାହାନ୍ତି ଓ ତାର ପଥରୋଧ କରିବା ଚାହାନ୍ତି, ତାହାହେଲେ ତାହାଠାରୁ ବଳି ଦୁର୍ଭାଗ୍ୟର ବିଷୟ କିଛି ନାହିଁ ।"

ଏକ ପରବର୍ତ୍ତୀ ତଥା ଅନ୍ତିମ ପତ୍ରରେ କଂଗ୍ରେସ ସଭାପତି ଆଜାଦ ଲେଖିଥିଲେ : "କଂଗ୍ରେସ ହାତକୁ କ୍ଷମତା ଆସୁ ବୋଲି ଆମେ ବ୍ୟାକୁଳ ନୋହୁଁ । ଆମେ କିନ୍ତୁ ଆଗ୍ରହ ଭାରତର ଜନସାଧାରଣ ସ୍ୱାଧୀନତା ଓ କ୍ଷମତା ପାଆନ୍ତୁ ବୋଲି । ଆମେ ଭଲ ଭାବରେ ବୁଝି ପାରୁଁ ଯେ ବ୍ରିଟିଶ ସରକାର ଯଦି ଦେଶରେ ବିଭେଦ ଉତ୍ପାଦିତ କରିବା ନୀତି ଅନୁସରଣ କରିବା ପନ୍ଥାରୁ ବିରତ ହୁଅନ୍ତି, ତାହାହେଲେ ଆମେ ସମସ୍ତେ ଯେକୌଣସି ଦଳ ଓ ଗୋଷ୍ଠୀର ଲୋକ ହୋଇଥାଉନା କାହିଁକି ସମସ୍ତେ ଏକତ୍ର ହୋଇ ଏକ ସର୍ବସମ୍ମତ କର୍ମପନ୍ଥା ନିର୍ଦ୍ଧାରଣ କରିପାରିବୁ; କିନ୍ତୁ ଦୁଃଖର କଥା, ଏହି ସଙ୍କଟସନ୍ଧିବେଳେ ମଧ୍ୟ ବ୍ରିଟିଶ ସରକାର ତାଙ୍କର ଭଙ୍ଗାରୁଜା ନୀତି ଛାଡ଼ିପାରୁନାହାନ୍ତି । ଆମେ ଏ ସିଦ୍ଧାନ୍ତରେ ଉପନୀତ ହେବାକୁ ବାଧ୍ୟ ହେଉଚୁ ଯେ ବ୍ରିଟିଶ ସରକାର ଭାରତରେ ଯେତେକାଳ ପର୍ଯ୍ୟନ୍ତ ରଖି ପାରିବେ, ତାଙ୍କର ଶାସନ ବଜାୟ ରଖିବାକୁ ଚାହାନ୍ତି ଏବଂ ସେଥି ଉଦ୍ଦେଶ୍ୟରେ ଦେଶରେ ବିଭେଦ ଓ ବିବାଦ ଉତ୍ପାଦିତ କରୁଚନ୍ତି । ଆମ ଉପରକୁ ଆକ୍ରମଣ ଯେପରି ମାଡ଼ି ଆସୁଚି ଓ ଆମ ଉପରେ ବିପଦ ଯେପରି ଝୁଲି ରହିଚି, ଏପରି ଏକ ପରିସ୍ଥିତିରେ ମଧ୍ୟ ଭାରତର ଫଳପ୍ରଦ ପ୍ରତିରକ୍ଷା ନିମନ୍ତେ ବ୍ରିଟିଶ ସରକାର ଗୁରୁତ୍ୱ ଦେଇ ଭାବୁନାହାନ୍ତି । ଆମ ପକ୍ଷରେ, ଭାରତୀୟ ଜନସାଧାରଣଙ୍କ ପକ୍ଷରେ ଭାରତର ପ୍ରତିରକ୍ଷା ଓ ନିରାପତ୍ତା ହିଁ ପ୍ରଧାନ ବିଷୟ ଏବଂ ସେହି ଦୃଷ୍ଟିରୁ ହିଁ ଆମେ ସବୁ କିଛି ବିବେଚନା କରୁଁ ।"

ଏହି ପତ୍ରରେ ପ୍ରତିରକ୍ଷା ସମ୍ପର୍କରେ ଆମର ସ୍ଥିତି ମଧ୍ୟ ସେ ସ୍ପଷ୍ଟ କରିଦେଇଥିଲେ : "ପ୍ରଧାନ ସେନାପତିଙ୍କ ସାଧାରଣ କ୍ଷମତା କୌଣସି ଭାବରେ ହେଲେ କ୍ଷୁଣ୍ଣ କରିବାପାଇଁ କେହି ପରାମର୍ଶ ଦେଇନାହାନ୍ତି । ପ୍ରକୃତ ପକ୍ଷେ, ଆମେ ଆହୁରି ଟିକିଏ ଆଗେଇଯାଇ ଯୁଦ୍ଧମନ୍ତ୍ରୀ ଭାବରେ ତାଙ୍କୁ ଅଧିକ କ୍ଷମତା ଦେବାରେ ରାଜି ହେବାପାଇଁ ପ୍ରସ୍ତୁତ ଥିଲୁ; କିନ୍ତୁ ଏକଥା ସ୍ପଷ୍ଟ ଯେ ପ୍ରତିରକ୍ଷା ସମ୍ପର୍କରେ ଆମର ଓ ବ୍ରିଟିଶ ସରକାରଙ୍କର ଧାରଣା ଭିତରେ ବହୁତ ପ୍ରଭେଦ ରହିଛି । ଆମ ଧାରଣାରେ ପ୍ରତିରକ୍ଷା ଅର୍ଥ ହେଉଚି ତାକୁ ଏକ ଜାତୀୟ ଚରିତ୍ର ଅର୍ପଣକରିବା ଏବଂ ସେଥିରେ ଅଂଶ ଗ୍ରହଣ କରିବା ପାଇଁ ଭାରତର ପ୍ରତ୍ୟେକ ନରନାରୀଙ୍କୁ ଅହ୍ୱାନ ଦେବା । ଏହାର ଆହୁରି ଅର୍ଥ ହେଉଚି, ଆମ ନିଜ ଲୋକଙ୍କ ଉପରେ ବିଶ୍ୱାସ ସ୍ଥାପନ କରିବା ଏବଂ ଏହି ମହାନ ଉଦ୍ୟମରେ ସେମାନଙ୍କର ପୂର୍ଣ୍ଣ ସହଯୋଗ ବାଞ୍ଛା କରିବା । ଯେପରି ଜଣାଯାଉଚି, ବ୍ରିଟିଶ ସରକାରଙ୍କ ଦୃଷ୍ଟିଭଙ୍ଗୀ ଭାରତୀୟ ଲୋକଙ୍କ ପ୍ରତି ଅବିଶ୍ୱାସ ଉପରେ ଭିତ୍ତି କରିଚି ଏବଂ ପ୍ରକୃତ କ୍ଷମତା ସେମାନଙ୍କୁ ଦେବା ପାଇଁ ବ୍ରିଟିଶ ସରକାର ଚାହାନ୍ତିନାହିଁ । ପ୍ରତିରକ୍ଷା ସମ୍ବନ୍ଧରେ ସମ୍ରାଟ-ସରକାରଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱ ସାର୍ବଭୌମ ବୋଲି ଆପଣ ଉଲ୍ଲେଖ କରିଚନ୍ତି । ସେହି କର୍ତ୍ତବ୍ୟ ଓ ଦାୟିତ୍ୱ ଫଳପ୍ରଦ ଭାବରେ ସମ୍ପାଦିତ ହୋଇ ନପାରେ, ଯଦି ଭାରତୀୟ ଲୋକେ ତାହା ଅନୁଭବ ଓ ବହନ

ନକରନ୍ତି । ତାର ସାକ୍ଷୀ ଆମର ଅଦୂର ଅତୀତ । ଲୋକଙ୍କ ସହଯୋଗ ବଳରେ କେବଳ ସେ ଯୁଦ୍ଧ କରାଯାଇପାରେ, ଭାରତ ସରକାର ଏକଥା ଉପଲବ୍ଧି କରିପାରୁନାହାନ୍ତି ।"

କଂଗ୍ରେସ ସଭାପତିଙ୍କର ଏହି ଅନ୍ତିମ ପତ୍ର ପାଇବା ପରେ ପରେ ସାର୍ ଷ୍ଟାଫୋର୍ଡ କ୍ରିପ୍ସ ଆକାଶ ମାର୍ଗରେ ଇଂଲଣ୍ଡ ଫେରିଗଲେ; କିନ୍ତୁ ଯିବା ପୂର୍ବରୁ ଏବଂ ଦେଶକୁ ଫେରିବା ସଙ୍ଗେ ସଙ୍ଗେ ସେ ଯେଉଁସବୁ ବିବୃତି ଦେଲେ, ସେସବୁ ଏକ ମିଥ୍ୟା-ଜାଲ୍ କହିଲେ ଚଳେ; କାରଣ ଆମେ ଯାହାସବୁ ଆଲୋଚନା କରିଥିଲୁ, ତାର ବିପରୀତ କଥା ହିଁ ସେଥିରେ ଥିଲା । ଭାରତର ସମ୍ବନ୍ଧ ଭ୍ରାନ୍ତ ମନୋଭାବ ସୃଷ୍ଟିହେଲା ଏବଂ ଦାୟିତ୍ୱପୂର୍ଣ୍ଣ ବ୍ୟକ୍ତିମାନେ ତାହା ଖଣ୍ଡନ କରିବା ସତ୍ତ୍ୱେ ସାର୍ ଷ୍ଟାଫୋର୍ଡ ଓ ଅନ୍ୟମାନେ ବାରମ୍ବାର ସେହିସବୁ ବିବୃତି ପ୍ରକାଶ କରିଥିଲେ ।

କଂଗ୍ରେସ କେବଳ ନୁହେଁ ଭାରତର ପ୍ରତ୍ୟେକ ଦଳ ତଥା ଗୋଷ୍ଠୀ ବ୍ରିଟିଶ୍ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ । ଦେଶର ନରମପନ୍ଥୀ ରାଜନୀତିଜ୍ଞମାନେ ମଧ୍ୟ ଏହି ପ୍ରସ୍ତାବକୁ ସମର୍ଥନ କରିପାରିନଥିଲେ । କେବଳ ମୁସ୍‌ଲିମ୍ ଲିଗ୍‌କୁ ବାଦ୍‌ଦେଲେ ଅନ୍ୟ ସମସ୍ତେ ପ୍ରାୟ କୌଣସି ପ୍ରକାର କାରଣ ଦର୍ଶାଇ ତାହା ପ୍ରତ୍ୟାଖ୍ୟାନ କରିଥିଲେ । ମୁସ୍‌ଲିମ୍ ଲିଗ୍, ପୂର୍ବେ ଯେପରି କରିଥାଏ ଏବେ ବି ସେପରି, ଅନ୍ୟମାନେ ନିଜର ମତାମତ ଦେବା ପର୍ଯ୍ୟନ୍ତ ଅପେକ୍ଷା କଲା ଏବଂ ଶେଷରେ ନିଜର ସ୍ୱତନ୍ତ୍ର କାରଣ ଦର୍ଶାଇ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲା ।

ବ୍ରିଟିଶ୍ ପାର୍ଲାମେଣ୍ଟରେ ଓ ଅନ୍ୟାନ୍ୟ ସ୍ଥାନରେ କୁହାଗଲା ଯେ ଗାନ୍ଧିଜୀଙ୍କ ଶାନ୍ତିସମ୍ପନ୍ନ ମନୋଭାବ ଯୋଗୁଁ କଂଗ୍ରେସ କ୍ରିପ୍ସ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲା । ଏହା ସମ୍ପୂର୍ଣ୍ଣ କଳ୍ପିତ । ଅନ୍ୟମାନଙ୍କ ସଙ୍ଗେ ଗାନ୍ଧିଜୀ ମଧ୍ୟ ଏ କଥାକୁ ନାପସନ୍ଦ କରିଥିଲେ ଯେ ବ୍ରିଟିଶ ପ୍ରସ୍ତାବ ହେତୁରୁ ଭବିଷ୍ୟତରେ ଅନିର୍ଦ୍ଦିଷ୍ଟ ସଂଖ୍ୟାରେ ଭାରତକୁ ଭାଗ ଭାଗ କରିବାକୁ ପଡ଼ିବ । ଆହୁରି ମଧ୍ୟ ଦେଶୀୟ ରାଜ୍ୟମାନଙ୍କର ନ'କୋଟି ଲୋକଙ୍କୁ ଯେପରି ଭାବରେ ସେମାନଙ୍କର ଭବିଷ୍ୟତ ସମ୍ପର୍କରେ ମତ ଦେବାପାଇଁ ବଞ୍ଚିତ କରାଯାଉଚି ଗାନ୍ଧିଜୀ ତାହା ସମର୍ଥନ କରିପାରି ନଥିଲେ । ପରବର୍ତ୍ତୀ ସମସ୍ତ ଆଲୋଚନାବେଳେ, ଯେବେ ଭବିଷ୍ୟତ କଥା ଗ୍ରୁଡ଼ି ବର୍ତ୍ତମାନ ଅବସ୍ଥାରେ କି କି ପରିବର୍ତ୍ତନ କରାଯାଇ ପାରିବ ବିଚାର କରାଯାଇଥିଲା, ଗାନ୍ଧିଜୀ ଉପସ୍ଥିତ ନଥିଲେ; କାରଣ ତାଙ୍କର ଧର୍ମପତ୍ନୀଙ୍କ ଅସୁସ୍ଥତା ଯୋଗୁଁ ତାଙ୍କୁ ଦିଲ୍ଲୀ ଛାଡ଼ିବାକୁ ପଡ଼ିଥିଲା । ଅତଏବ, ସେସବୁ ଆଲୋଚନା ସଙ୍ଗେ ଗାନ୍ଧିଜୀଙ୍କର କୌଣସି ସମ୍ବନ୍ଧ ନଥିଲା । ପୂର୍ବବର୍ତ୍ତୀ ବହୁ ଅବସରରେ ଅହିଂସା ପ୍ରଶ୍ନ ନେଇ କଂଗ୍ରେସ କାର୍ଯ୍ୟକାରୀ କମିଟି ଏକମତ ହୋଇପାରି ନାହାନ୍ତି ଏବଂ କମିଟି ବସ୍ତୁତଃ ଅଗ୍ରହଶୀଳ ଥିଲେ ଏକ ଜାତୀୟ ସରକାର ଗଢ଼ି ଯୁଦ୍ଧ ଉଦ୍ୟମରେ, ବିଶେଷତଃ ଭାରତର ପ୍ରତିରକ୍ଷା ବ୍ୟାପାରରେ, ସହଯୋଗ କରିବା ପାଇଁ ।

ଯୁଦ୍ଧ ଥିଲା ସେ ସମୟର ପ୍ରମୁଖ ପ୍ରଶ୍ନ ଏବଂ ବିଚାରବନ୍ତ ଲୋକେ ସେଥିଲାଗି ଚିନ୍ତିତ ଥିଲେ । ଭାରତ ଉପରେ ଆକ୍ରମଣ ଆସନ୍ନ ଜଣାଯାଉଥିଲା । ତଥାପି, ଆମ ଭିତରେ ବୁଝାମଣା ଓ ରାଜିନାମା ହେବାରେ ଯୁଦ୍ଧ ପ୍ରତିବନ୍ଧକ ହୋଇନଥିଲା; କାରଣ ଯୁଦ୍ଧର ପରିଚାଳନା କରିଥାନ୍ତି ଅନିବାର୍ଯ୍ୟ ଭାବରେ ବିଶେଷଜ୍ଞମାନେ; ସାଧାରଣ ଲୋକେ ସେ ବିଷୟରେ ଅନଭିଜ୍ଞ । ଯୁଦ୍ଧ

କପରି ଭାବରେ ପରିଚାଳିତ ହେବ ସେ ବିଷୟରେ ଏକମତ ହେବା ଦୁଷ୍କର ନଥିଲା । ପ୍ରକୃତ ପ୍ରଶ୍ନ ଥିଲା ଜାତୀୟ ସରକାର ହାତକୁ କ୍ଷମତା ହସ୍ତାନ୍ତର କରିବା । ଏହି ପ୍ରଶ୍ନ କିଛି ନୂତନ ନୁହେଁ । ଏହା ହିଁ ଥିଲା ଭାରତୀୟ ଜାତୀୟବାଦ ଓ ବ୍ରିଟିଶ ସାମ୍ରାଜ୍ୟବାଦ ଭିତରେ ବିବାଦର କାରଣ ଏବଂ ଏହି ପ୍ରଶ୍ନ ଉପରେ, ଯୁଦ୍ଧ ବେଳେ ହେଉ କି ଶାନ୍ତି ସମୟରେ ହେଉ, ଇଂଲଣ୍ଡ ଓ ଭାରତର ବ୍ରିଟିଶ ଶାସକ ଗୋଷ୍ଠୀ ଟଳେହେଲେ ଘୁଞ୍ଚିବା ପାଇଁ ପ୍ରସ୍ତୁତ ନଥିଲେ । କ୍ଷମତା ନ ଛାଡ଼ିବା ପାଇଁ ସେମାନେ ଥିଲେ କୃତସଂକଳ୍ପ, ଆଉ ସେମାନଙ୍କ ପଛରେ ଯେଉଁ ଚକ୍ରବର୍ତ୍ତିକ ବ୍ୟକ୍ତିତ୍ୱର ପୂର୍ଣ୍ଣ ସମର୍ଥନ ରହିଥିଲା, ସେ ହେଉଛନ୍ତି ମିଷ୍ଟର ଓ୍ୱିନ୍‌ଷ୍ଟନ୍ ଚର୍ଚ୍ଚିଲ୍ ।

## ୯. ନୈରାଶ୍ୟ

ସାର୍ ଷ୍ଟାଫୋର୍ଡ଼ କ୍ରିପ୍‌ସଙ୍କ ଆଲୋଚନାର ଅପ୍ରତ୍ୟାଶିତ ସମାପ୍ତି ଓ ତାଙ୍କର ଅଗ୍ରନନ୍ତ ଇଂଲଣ୍ଡ ପ୍ରତ୍ୟାବର୍ତ୍ତନ ଆମ୍ଭମାନଙ୍କୁ ବିସ୍ମିତ କରିଥିଲା । ଆଲୋଚନାରୁ ଆମ୍ଭେମାନେ ଯାହା ଦେଖିଲୁ, ଏପରି ଏକ ଅସମ୍ଭବ ପ୍ରସ୍ତାବ ଏବଂ ବର୍ତ୍ତମାନ ଅବସ୍ଥା ପ୍ରତି ନଜର ରଖି ବିଚାର କଲେ ଯାହା ପୂର୍ବେ କହିଥିବା କଥାର ପୁନରାବୃତ୍ତି କେବଳ—ଏଥିପାଇଁ ବ୍ରିଟିଶ୍ ଓ୍ୱାର୍ କେବିନେଟ୍‌ର ଜଣେ ମନ୍ତ୍ରୀ କ'ଣ ଏଠାକୁ ଆସିଥିଲେ ? କିମ୍ବା ଆମେରିକାବାସୀଙ୍କ ପାଇଁ ଉଦ୍ଦିଷ୍ଟ ଏହା କ'ଣ ଥିଲା ଗୋଟାଏ ପ୍ରଚାର କୌଶଳ କେବଳ ? ଏହାର ପ୍ରତିକ୍ରିୟା ଦେଶରେ ତୀବ୍ର ଓ ତିକ୍ତ ଭାବରେ ପ୍ରକାଶ ପାଇଲା । ବ୍ରିଟେନ୍ ସଙ୍ଗେ ରାଜିନାମା ହେବାର କୌଣସି ଆଶା ନଥିଲା । ଆକ୍ରମଣ ବିରୁଦ୍ଧରେ, ନିଜ ଦେଶର ପ୍ରତିରକ୍ଷା ନିମନ୍ତେ ଯୁଦ୍ଧ ଭାରତୀୟ ଲୋକେ ଚାହିଁଲାଭଳି ସୁଯୋଗ ସେମାନଙ୍କୁ ଦିଆଗଲା ନାହିଁ ।

ଇତିମଧ୍ୟରେ ସେହି ଆକ୍ରମଣର ସମ୍ଭାବନା ବଢ଼ୁଥିଲା ଏବଂ ପଲପଲ ଅନାହାରପୀଡ଼ିତ ଭାରତୀୟ ବାସ୍ତୁହରା ପୂର୍ବ ସୀମାନ୍ତ ଅତିକ୍ରମ କରି ଭାରତରେ ପ୍ରବେଶ କରୁଥିଲେ । ପୂର୍ବ-ବଙ୍ଗରେ, ଆକ୍ରମଣ ଆଶଙ୍କାରେ ଅସ୍ଥିର ଚିତ୍ତ, ନଦୀ ପଥରେ ଯାତାୟାତ କରୁଥିବା ଅଯୁତ ନୌକା ନଷ୍ଟ କରି ଦିଆଗଲା । ଏ ସମ୍ପର୍କରେ ପରେ କୁହାଗଲା ଯେ ଗୋଟାଏ ସରକାରୀ ଆଦେଶର ଭୁଲ ବ୍ୟାଖ୍ୟା ଫଳରେ ସେପରି ହୋଇଗଲା । ଜଳପଥରେ ପୂର୍ଣ୍ଣ ସେହି ବିଶାଳ ଅଞ୍ଚଳରେ ପରିବହନର ଏକମାତ୍ର ଉପାୟ ଥିଲା ନୌକା । ସେଗୁଡ଼ିକ ନଷ୍ଟ କରି ଦିଆଯିବା ଫଳରେ ବିଭିନ୍ନ ଅଞ୍ଚଳର ଲୋକେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇପଡ଼ିଲେ, ସେମାନଙ୍କର ଜୀବିକା ଓ ପରିବହନ ବ୍ୟବସ୍ଥା ଧ୍ୱଂସପ୍ରାପ୍ତ ହେଲା ଏବଂ ବଙ୍ଗଳା ଦୁର୍ଭିକ୍ଷର ଏହା ଥିଲା ଅନ୍ୟତମ ପ୍ରଧାନ କାରଣ । ବଙ୍ଗରୁ ହଟିଯିବା ଉଦ୍ଦେଶ୍ୟରେ ବିସ୍ତୃତ ପ୍ରସ୍ତୁତି ଚାଲିଲା ଏବଂ ଦକ୍ଷିଣ-ବର୍ମା ଓ ରେଙ୍ଗୁନରେ ଯେପରି ଘଟିଥିଲା ଏଠାରେ ତାର ପୁନରାବୃତ୍ତି ହେବାଭଳି ଜଣାଯାଉଥିଲା । ମାନ୍ଦ୍ରାଜରେ ଏକ ଅନିର୍ଦ୍ଦିଷ୍ଟ ତଥା ଅସମର୍ଥିତ ଗୁଜବ ପ୍ରଚାରିତ ହୋଇଗଲା ଯେ ଏକ ଜାପାନୀ ନୌବହର ମାନ୍ଦ୍ରାଜ ଉପକୂଳ ଆଡ଼କୁ ମାଡ଼ିଆସୁଛି । ଫଳ

ସରକାରୀ କର୍ମଚାରୀମାନେ ମାନ୍ଦ୍ରାଜ ଛାଡ଼ି ଅବିଳମ୍ବେ ପଳାଇଗଲେ କେବଳ ନୁହେଁ, ମାନ୍ଦ୍ରାଜ ବନ୍ଦରର କିୟଦଂଶ ଅଚଳ କରିଦେଇଗଲେ । ପରେ ଅବଶ୍ୟ ଜଣାଗଲା ଯେ ଯେଉଁ ସମ୍ବାଦ ପ୍ରଚାରିତ ହୋଇଥିଲା, ତାହା ଗୋଟାଏ ଭିତ୍ତିହୀନ ଗୁଜବ ମାତ୍ର । ଭାରତର ଅସାମରିକ ପ୍ରଶାସନ ଘୋର ସ୍ନାୟବିକ ଦୁର୍ବଳତାରେ ପୀଡ଼ିତ ଥିବା ଭଳି ବୋଧ ହେଉଥିଲା । ଏହାର ସବଳତା ପ୍ରକାଶ ପାଉଥିଲା ଭାରତୀୟ ଜାତୀୟତାବାଦ ଉପରେ ଚଢ଼ାଉ କରିବାରେ କେବଳ ।

ଆମେ କ'ଣ କରନ୍ତୁ ? ଭାରତର କୌଣସି ଅଂଶ, ଯୋଷା ମାନିବାଭଳି, ଆକ୍ରମଣ ସମ୍ମୁଖରେ ମୁଣ୍ଡ ନୁଆଁଇବା ଆମେ ସହ୍ୟ କରିପାରି ନଥାନ୍ତୁ । ସଶସ୍ତ୍ର ପ୍ରତିରୋଧ କରିବା କାମ ଥିଲା ସ୍ଥଳ ଓ ଆକାଶବାହିନୀର । ମାର୍କିନ୍ ସାହାଯ୍ୟ, ବିଶେଷତଃ ନାନାବିଧ ଉଡ଼ାଜାହାଜ ଆକାରରେ, ପ୍ରଚୁର ପରିମାଣରେ ଆସୁଥିଲା ଏବଂ ଧୀରେ ଧୀରେ ସାମରିକ ପରିସ୍ଥିତିରେ ପରିବର୍ତ୍ତନ ଦେଖା ଦେଉଥିଲା । ସାହାଯ୍ୟ କରିବା ପାଇଁ ଆମ ଆଗରେ ଏକମାତ୍ର ଯେଉଁ ପନ୍ଥା ଥିଲା ତାହା ହେଉଛି ଜନସାଧାରଣଙ୍କ ଭିତରେ ପ୍ରବଳ ଆଗ୍ରହ ଓ ସବୁକିଛୁ ପଣ କରି ଆକ୍ରମଣର ପ୍ରତିରୋଧ ନିମନ୍ତେ ଅତ୍ୟୁଗ୍ର ଅଭିଳାଷ ସୃଷ୍ଟିକରିବା ଏବଂ ସେଥି ଉଦ୍ଦେଶ୍ୟରେ ଗୃହରକ୍ଷୀ ବାହିନୀ ଓ ସେଭଳି ଜନସଙ୍ଗଠନମାନ ଗଢ଼ି ଗୃହ-ସାମ୍ମୁଖ୍ୟର ସମଗ୍ର ବାତାବରଣ ପରିବର୍ତ୍ତନ କରିବା । ବ୍ରିଟିଶ ନୀତି ଯୋଗୁଁ ଏସବୁ କରିବା ଆମ ପକ୍ଷରେ ଅତିଶୟ ଅସୁବିଧାଜନକ ହୋଇ ଉଠିଥିଲା । ଆକ୍ରମଣର ଅବ୍ୟବହିତ ପୂର୍ବେ ମଧ୍ୟ ସାମରିକ କ୍ଷେତ୍ର ବାହାରେ କୌଣସି ଭାରତୀୟ ହାତରେ ବନ୍ଧୁକ ଦେବାପାଇଁ ସରକାର ବିଶ୍ୱାସ କରୁନଥିଲେ ଏବଂ ଗ୍ରାମାଞ୍ଚଳରେ ନିରସ୍ତ୍ର ପ୍ରତିରକ୍ଷା ସଙ୍ଘ ସଙ୍ଗଠନ ଦିଗରେ ସ୍ୱେଚ୍ଛା ଆମର ଉଦ୍ୟମ ସରକାର ପସନ୍ଦ କରୁନଥିଲେ ଏବଂ ବେଳେବେଳେ ତାହା ପଣ୍ଡ କରିବା ପାଇଁ ପଶ୍ଚାତ୍ପଦ ହେଉନଥିଲେ । ଲୋକଙ୍କ ପକ୍ଷରୁ ପ୍ରତିରୋଧ ନିମନ୍ତେ ସଙ୍ଗଠିତ ହେବା ଉଦ୍ୟମକୁ ପ୍ରୋତ୍ସାହିତ କରିବା ଦୂରେ ଥାଉ, ବ୍ରିଟିଶ ହାକିମମାନେ ସେ ପ୍ରକାର ଉଦ୍ୟମ ପ୍ରତି ଭୟଭୀତ ଥିଲେ; କାରଣ ଲୋକଙ୍କର ପ୍ରତିରକ୍ଷା ସଂଗଠନ କହିଲେ ଦେଶଦ୍ରୋହ ଓ ବ୍ରିଟିଶ ଶାସନ ପ୍ରତି ବିପଦ ବୋଲି ସେମାନେ ବହୁପୂର୍ବରୁ ବୁଝିବାରେ ଅଭ୍ୟସ୍ତ ଥିଲେ । ସେମାନଙ୍କର ପୁରାତନ ନୀତି କେବଳ ସେମାନଙ୍କୁ ଅନୁସରଣ କରିବାକୁ ପଡ଼ୁଥିଲା; କାରଣ ଅନ୍ୟ ପନ୍ଥା କହିଲେ ସେମାନେ ବୁଝିପାରୁଥିଲେ ଲୋକଙ୍କର ବିଶ୍ୱାସଭାଜନ ଓ ପ୍ରତିରକ୍ଷା ନିମନ୍ତେ ସେମାନଙ୍କୁ ସଙ୍ଗଠିତ କରିବାରେ ଉଦ୍ୟମଶୀଳ ଏକ ଜାତୀୟ ସରକାର ଗଠନ ନିମନ୍ତେ ସ୍ୱୀକୃତ ହେବା । ଏହି ବିକଳ୍ପ ପନ୍ଥା ସେମାନେ ସୁଚିନ୍ତିତ ଭାବରେ ପରିତ୍ୟାଗ କରିପାରିଥିଲେ ଏବଂ ଉଭୟ ମଧ୍ୟରେ ଅନ୍ୟ ମାର୍ଗ ଆଉ ନଥିଲା । ଅତଏବ, ସ୍ୱାଭାବିକ ଭାବରେ ଲୋକଙ୍କୁ ସେମାନେ ଅସ୍ଥାବର ସମ୍ପତ୍ତି ପରି ମଣୁଥିଲେ । ଲୋକେ କିଛି ଉଦ୍ୟମ କରନ୍ତୁ ବୋଲି ସେମାନେ ଚାହୁଁନଥିଲେ ଏବଂ ଇଚ୍ଛା ମତ ସେମାନଙ୍କୁ ବ୍ୟବହାର କରିବା ଓ ପ୍ରୟୋଜନ ଅନ୍ତେ ଅବ୍ୟବହାର୍ଯ୍ୟ ସାମଗ୍ରୀ ଭାବରେ ଆଡ଼େଇଦେବା ଥିଲା ସେମାନଙ୍କର ମନୋଭାବ । ଖ୍ରୀ: ୧୯୪୨, ଏପ୍ରିଲ୍ ଶେଷରେ ଅଖିଳ ଭାରତୀୟ କଂଗ୍ରେସ କମିଟି ଏକ ବୈଠକରେ ଏହି

ନୀତି ଓ ଆଚରଣ ପ୍ରତି ଗଭୀର କ୍ଷୋଭ ଓ ବିରକ୍ତି ପ୍ରକାଶ କରିବା ସଙ୍ଗେ ସଙ୍ଗେ ଘୋଷଣା କଲେ ଯେ ସେମାନେ ସେପରି ଏକ ସ୍ଥିତି ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି; ଯାହା ଜନସାଧାରଣଙ୍କୁ ଏକ ପରଦେଶୀ ପ୍ରଭୁର କ୍ରୀତଦାସ ଭାବରେ କାର୍ଯ୍ୟରେ ନିୟୋଜିତ କରିବ ।

ସେ ଯାହାହେଉ; ଆସନ୍ନ ଦୁର୍ଦ୍ଦୈବ ସମ୍ମୁଖରେ ଆମେ ନୀରବ ଓ ନିଷ୍କ୍ରିୟ ଦ୍ରଷ୍ଟା ଭାବରେ ରହିପାରି ନଥାନ୍ତୁ । ଅତଏବ, ଆକ୍ରମଣ ହେଲେ ସେମାନଙ୍କୁ କ'ଣ କରିବାକୁ ପଡ଼ିବ, ଆମେ ଜନସାଧାରଣଙ୍କୁ ପରାମର୍ଶ ଓ ଉପଦେଶ ଦେବାରେ ଲାଗିଲୁ । ବ୍ରିଟିଶ ନୀତି-ପ୍ରତି ସେମାନଙ୍କର ଯେତେ ବିତୃଷ୍ଣା ଥାଉ ନା କାହିଁକି ବ୍ରିଟିଶ୍ କିମ୍ବା ମିତ୍ରପକ୍ଷ ସଶସ୍ତ୍ର-ବାହିନୀର କାର୍ଯ୍ୟକଳାପରେ ହସ୍ତକ୍ଷେପ କରିବା ଉଚିତ ହେବନାହିଁ ବୋଲି ଆମେ ସେମାନଙ୍କୁ ବୁଝାଇ କହିଲୁ; କାରଣ ସେପରି କରିବା ଅର୍ଥ ଶତ୍ରୁକୁ ପରୋକ୍ଷ ଭାବରେ ସାହାଯ୍ୟ କରିବା । ଆମେ ଆହୁରି ବି କହିଲୁ ଯେକୌଣସି ଅବସରରେ ହେଲେ ସେମାନେ ଆକ୍ରମଣକାରୀ ପାଖରେ ଆତ୍ମସମର୍ପଣ କରିବା କିମ୍ବା ତାର ଆଦେଶ ପାଳନ କରିବା କିମ୍ବା ତାର ଦାନ ଗ୍ରହଣକରିବା ଜାତୀୟ ସମ୍ମାନ ଓ ଜୀବନ ପକ୍ଷରେ କ୍ଷତିକାରକ କେବଳ ନୁହେଁ, ବରଂ ମାରାତ୍ମକ । ଆକ୍ରମଣକାରୀମାନେ ଯଦି ଗାଁ ଗଣ୍ଡା ଦଖଲ କରିବା ଉଦ୍ୟମ କରନ୍ତି, ଜୀବନ ପଣକରି ସେମାନଙ୍କର ପ୍ରତିରୋଧ କରିବାକୁ ପଡ଼ିବ; କିନ୍ତୁ ଏହି ପ୍ରତିରୋଧ ଶାନ୍ତିପୂର୍ଣ୍ଣ ହେବା ଦରକାର । ଶତ୍ରୁ ସଙ୍ଗେ ସମ୍ପୂର୍ଣ୍ଣ ଭାବରେ ଅସହଯୋଗ କରିବା ହେବ ଆମର ଉଦ୍ଦେଶ୍ୟ ।

ଏହିସବୁ ଅହିଂସ ଅସହଯୋଗ ଉପାୟରେ ଗୋଟାଏ ଆକ୍ରମଣଶୀଳ ସୈନ୍ୟବାହିନୀର ପ୍ରତିରୋଧ କରିବାର ଧାରଣା ଅନେକଙ୍କୁ ଉଦ୍ଭଟ ମନେ ହେଉଥିଲା ଏବଂ ସେମାନେ ଯେଉଁ ସମାଲୋଚନା କରୁଥିଲେ, ସେଥିରେ କିଯ୍ତୁ ପରିମାଣରେ ବ୍ୟଙ୍ଗ ବିଦ୍ରୂପ ବି ମିଶି ରହୁଥିଲା । ତଥାପି, ଏହି ଉପାୟ କେତେକଙ୍କୁ ଉଦ୍ଭଟ ମନେହେଲେ ସୁଦ୍ଧା ଲୋକଙ୍କ ପକ୍ଷରେ ଏହା ଥିଲା ଏକମାତ୍ର ପନ୍ଥା ଓ ପ୍ରକୃତପକ୍ଷେ ଏକ ବୀରତ୍ୱପୂର୍ଣ୍ଣ ପନ୍ଥା । ଏହି ଉପଦେଶ ସଶସ୍ତ୍ର ବାହିନୀକୁ ଦିଆଯାଉନଥିଲା କିମ୍ବା ସଶସ୍ତ୍ର ପ୍ରତିରୋଧ ପରିବର୍ତ୍ତେ ଶାନ୍ତିପୂର୍ଣ୍ଣ ପ୍ରତିରୋଧ କରିବାପାଇଁ କୁହାଯାଉନଥିଲା । ଏହି ଉପଦେଶ ଉଦ୍ଦିଷ୍ଟ ଥିଲା ନିରସ୍ତ୍ର ସାଧାରଣ ଜନତା ପ୍ରତି ଯେଉଁମାନେ ନିଜ ପକ୍ଷର ସଶସ୍ତ୍ରବାହିନୀ ପରାଜିତ ହେଲେ କିମ୍ବା ପଛଘୁଞ୍ଚା ଦେଲେ ଆକ୍ରମଣକାରୀ ନିକଟରେ ସର୍ବଦା ଆତ୍ମସମର୍ପଣ କରିଥାଆନ୍ତି । ବିଧିବଦ୍ଧ ସଶସ୍ତ୍ରବାହିନୀ ବ୍ୟତୀତ ଶତ୍ରୁକୁ ହଇରାଣ କରିବା ପାଇଁ ଗରିଲା ଦଳ ସଂଗଠନ କରାଯାଇପାରେ । କିନ୍ତୁ ସେପରି କରିବା ଆମ ପକ୍ଷରେ ସମ୍ଭବ ନଥିଲା; କାରଣ ସେଥି ନିମନ୍ତେ ଉପଯୁକ୍ତ ତାଲିମ, ଅସ୍ତ୍ର-ଶସ୍ତ୍ର ଓ ସ୍ଥଳବାହିନୀର ପୂର୍ଣ୍ଣ ସହଯୋଗ ଆବଶ୍ୟକ । କେତେଗୋଟି ଗରିଲା ଦଳ ପ୍ରସ୍ତୁତ କରିଦେଇ ପାରିଲେ ସୁଦ୍ଧା ଅବଶିଷ୍ଟ ଜନସଂଖ୍ୟା ତ ନିରସ୍ତ୍ର ଓ ଅସହାୟ ରହୁଥିଲେ । ସାଧାରଣତଃ ଶତ୍ରୁ ଅଧିକୃତ ଅଞ୍ଚଳର ସାଧାରଣ ଲୋକେ ଶତ୍ରୁ ନିକଟରେ ଆତ୍ମସମର୍ପଣ କରିଥାନ୍ତି । ପ୍ରକୃତପକ୍ଷେ, ଆମେ ଜାଣିଥିଲୁ ଯେ କେତେକ ଅଞ୍ଚଳରେ ଆସନ୍ନ ବିପଦର ସଙ୍କେତ ପାଇ ବ୍ରିଟିଶ ହାକିମମାନେ ନିର୍ଦ୍ଦେଶ ଦେଇସାରିଥିଲେ ଯେ ସୈନ୍ୟମାନେ ତଥା ଅସାମରିକ ଉଚ୍ଚ ସରକାରୀ କର୍ମଚାରୀମାନେ ସେହିସବୁ ଅଞ୍ଚଳ ଛାଡ଼ି ପଳାଇଗଲା ପରେ ନିମ୍ନବର୍ଗର

କର୍ମଚାରୀମାନେ ଓ ଲୋକେ ଶତ୍ରୁ ନିକଟରେ ଆତ୍ମସମର୍ପଣ କରନ୍ତୁ ।

ଆମେ ଖୁବ୍ ଭଲ ଭାବରେ ଜାଣିଥିଲୁ ଯେ ଶାନ୍ତିପୂର୍ଣ୍ଣ ଅସହଯୋଗ ଶତ୍ରୁ ସୈନ୍ୟଙ୍କ ଅଗ୍ରଗତି ରୋକିଦେଇ ପାରିବନାହିଁ । ଆମେ ଅଧିକନ୍ତୁ ମଧ୍ୟ ଜାଣିଥିଲୁ ଯେ ସାଧାରଣ ଲୋକଙ୍କ ପକ୍ଷରେ ଇଚ୍ଛାକଲେ ସୁଦ୍ଧା, ଶତ୍ରୁର ପ୍ରତିରୋଧ କରିବା ସହଜ ହେବନାହିଁ । କିନ୍ତୁ ଆମେ ଆଶା କରୁଥିଲୁ ଯେ ଶତ୍ରୁ ଅଧିକୃତ ସହର ଓ ଗ୍ରାମମାନଙ୍କର ନେତୃସ୍ଥାନୀୟ ବ୍ୟକ୍ତିମାନେ ଶତ୍ରୁ ନିକଟରେ ଆତ୍ମସମର୍ପଣ କରିବା ପାଇଁ, ତାର ଆଦେଶ କାର୍ଯ୍ୟକାରୀ କରିବା ପାଇଁ, ଖାଦ୍ୟ ଦ୍ରବ୍ୟ ସଂଗ୍ରହରେ ତାକୁ ସାହାଯ୍ୟ କରିବା ପାଇଁ କିମ୍ବା ଅନ୍ୟ ଯେକୌଣସି ଭାବରେ ହେଲେ ସହଯୋଗ କରିବା ପାଇଁ ରାଜି ହେବେନାହିଁ । ତାର ଅର୍ଥ ବିନା କାଳ ବିଳମ୍ବରେ ସେମାନେ ଦଣ୍ଡିତ ହୁଅନ୍ତେ, ଖୁବ୍ ସମ୍ଭବ ମୃତ୍ୟୁ ଦଣ୍ଡ ଲଭନ୍ତେ ଏବଂ ସେଥି ସଙ୍ଗେ ସଙ୍ଗେ ଅନ୍ୟମାନଙ୍କ ଉପରେ ବି ଅତ୍ୟାଚାର ହୁଅନ୍ତା । ମୃତ୍ୟୁ ମୁଖରେ ସୁଦ୍ଧା ଏ ପ୍ରକାର ପ୍ରତିରୋଧ, ଅଳ୍ପସଂଖ୍ୟକ ଲୋକଙ୍କଦ୍ୱାରା ପଛେ ହେଉ, କେବଳ ସଂପୃକ୍ତ ଅଞ୍ଚଳର ଲୋକଙ୍କ ଉପରେ ନୁହେଁ; ବରଂ ଦେଶରେ ସର୍ବତ୍ର ପ୍ରବଳ ଭାବରେ ପ୍ରଭାବ ପକାଇବ ବୋଲି ଆମେ ଆଶା କରୁଥିଲୁ । ଏପରି ଭାବରେ, ଜାତୀୟ ଚେତନାରେ ଉଦ୍‌ବୁଦ୍ଧ, ପ୍ରତିରୋଧର ଏକ ବାତାବରଣ ଦେଶରେ ସୃଷ୍ଟି ହୋଇପାରିବ ବୋଲି ଆମେ ଆଶା କରୁଥିଲୁ ।

ଏହାର କେତେ ମାସ ପୂର୍ବେ, ବହୁଧା ସରକାରୀ ବିରୋଧିତା ସତ୍ତ୍ୱେ, ଆମେ ସହର ଓ ଗ୍ରାମମାନଙ୍କରେ ପଡ଼ା କମିଟି ଓ ପ୍ରତିରକ୍ଷା ୟୁନିଟ୍‌ମାନ ସଙ୍ଗଠନ କରୁଥିଲୁ । ଦେଶର ଖାଦ୍ୟ ସମସ୍ୟା ଆମକୁ ବିଚଳିତ କରିଥିଲା ଏବଂ ବର୍ତ୍ତମାନ ପରିବହନ ଅସୁବିଧା ଦୃଷ୍ଟିରୁ ଓ ଯୁଦ୍ଧ ପରିସ୍ଥିତିର ଅନ୍ୟାନ୍ୟ ବିକାଶ ଦୃଷ୍ଟିରୁ ଆମେ ଏକ ସଙ୍କଟର ସମ୍ମୁଖୀନ ହେବୁ ବୋଲି ଆଶଙ୍କା କରୁଥିଲୁ । ଏ ବିଷୟରେ ସରକାର କିଛି ବୋଇଲେ କିଛି କରୁନଥିଲେ । ଗ୍ରାମାଞ୍ଚଳରେ ବିଶେଷ କରି, ଆମେ ସ୍ୱାବଲମ୍ବୀ ୟୁନିଟ୍‌ମାନ ସଙ୍ଗଠନ କରିବାର ଉଦ୍ୟମ କଲୁ ଏବଂ ଆଧୁନିକ ପରିବହନ ବ୍ୟବସ୍ଥା ବିଫଳ ହେଲେ ଲୋକେ ବଳଦଗାଡ଼ିରେ ଯେପରି ପଣ୍ୟ ସରବରାହ କରିପାରିବେ, ସେଥିଲାଗି ସେମାନଙ୍କୁ ଉତ୍ସାହିତ କଲୁ । ପୂର୍ବ ଦିଗରୁ ଆକ୍ରମଣ ହେଲାବେଳେ ଚୀନରେ ବିପନ୍ନ ଅଞ୍ଚଳର ଲୋକେ ପଶ୍ଚିମ ଦିଗକୁ ଯେପରି ପଳାଇ ଯାଉଥିଲେ, ସେପରି ଭାରତରେ ପୂର୍ବ ସୀମାନ୍ତ ଆଡ଼ୁ ଆକ୍ରମଣ ହେଲେ ଅସୁମାରି ସଂଖ୍ୟାରେ ପଳାତକ ଓ ବାସ୍ତୁହରା ପଶ୍ଚିମ ଆଡ଼କୁ ଅଗ୍ରନିକ ମାଡ଼ିଆସିବାର ସମ୍ଭାବନା ବି ରହିଥିଲା । ସେମାନଙ୍କୁ ସ୍ୱାଗତ କରି ସେମାନଙ୍କର ପ୍ରାଥମିକ ଥଇଥାନ ନିମନ୍ତେ ଆମେ ପ୍ରସ୍ତୁତ ହେଉଥିଲୁ । ସରକାରୀ ସହଯୋଗ ବିନା ଏ ସବୁ ଦୁଃସାଧ୍ୟ କେବଳ ନୁହେଁ, ପ୍ରକୃତପକ୍ଷେ, ଏକରକମ ଅସମ୍ଭବ ବୋଧହେଲେ ସୁଦ୍ଧା ଆମେ ପାରୁପର୍ଯ୍ୟନ୍ତ ଉଦ୍ୟମ କରୁଥିଲୁ । ପ୍ରତିରକ୍ଷା ୟୁନିଟ୍‌ଗୁଡ଼ିକର ଉଦ୍ଦେଶ୍ୟ ଥିଲା ଏସବୁ କାର୍ଯ୍ୟରେ ସାହାଯ୍ୟ କରିବା ଏବଂ ଆତଙ୍କ ନିରୋଧ କରି ନିଜ ନିଜ ଅଞ୍ଚଳରେ ଶାନ୍ତିଶୃଙ୍ଖଳା ରକ୍ଷା କରିବା । ବୋମା ବର୍ଷଣ ଓ ଆକ୍ରମଣ ସମ୍ବାଦ, ତାହା କେଉଁ ସୁଦୂର ଅଞ୍ଚଳରେ ପଛେ ହେଉ, ସାଧାରଣ ଲୋକଙ୍କ ଭିତରେ ଆତଙ୍କ ସୃଷ୍ଟି କରିପାରେ ଏବଂ ସର୍ବାଦୌ ତାହା ବନ୍ଦ କରିବା ଆବଶ୍ୟକ ।

ଏ ବିଗରେ ସରକାର ଯେଉଁସବୁ ବ୍ୟବସ୍ଥା ଗ୍ରହଣ କରିଥିଲେ, ତାହା ଯଥେଷ୍ଟ ନଥିଲା ଓ ସେଥି-ପ୍ରତି ସେମାନଙ୍କର ବିଶ୍ୱାସ ବି ନ ଥିଲା । ଗ୍ରାମାଞ୍ଚଳରେ ଘୋର ଡକାଏତି ବଢ଼ୁଥିଲା ।

ଆମେ ଏହି ସବୁ ବଡ଼ ବଡ଼ ଯୋଜନା ପ୍ରସ୍ତୁତ କଲୁ ଏବଂ ସାମାନ୍ୟ ଭାବରେ ପଛେ ହେଉ ତାହା କାର୍ଯ୍ୟକାରୀ କଲୁ; କିନ୍ତୁ ଆମେ ସ୍ପଷ୍ଟ ବୁଝି ପାରୁଥିଲୁ ଯେ ଯେଉଁ ବିରାଟ ସମସ୍ୟାର ଆମେ ସମ୍ମୁଖୀନ ହେଉଥିଲୁ, ତାର ତୁଳନାରେ ଆମର କାର୍ଯ୍ୟ ଥିଲା ନଗଣ୍ୟ ଓ ତୁଚ୍ଛ । ଏ ସମସ୍ୟାର ପ୍ରକୃତ ସମାଧାନ ସରକାରୀ କଳ ଓ ଜନସାଧାରଣଙ୍କ ଭିତରେ ସମ୍ପୂର୍ଣ୍ଣ ସହଯୋଗ ରକ୍ଷାକରି କେବଳ କରାଯାଇପାରେ; କିନ୍ତୁ ସେ ପ୍ରକାର ସହଯୋଗ ଅସମ୍ଭବ ପ୍ରମାଣିତ ହୋଇ ସାରିଥିଲା । ସେ ପରିସ୍ଥିତିର ବେଦନା ଅକଥନୀୟ । ଆମେ ଜାଣିଥିଲୁ, ସଙ୍କଟ ଅସିଗଲାଣି ଏବଂ କାର୍ଯ୍ୟ କରିବା ପାଇଁ ଆମେ ଉଦ୍‌ବେଳିତ ଓ ଉତ୍‌କଣ୍ଠିତ ଥିଲେ ସୁଦ୍ଧା ସରକାର ଆମକୁ ଫଳପ୍ରଦ ଭାବରେ କାର୍ଯ୍ୟ କରିବାକୁ ଦେଉନଥିଲେ । ଦୁର୍ବିପାକ ଓ ବିପର୍ଯ୍ୟୟ ଦୀର୍ଘ ପଦକ୍ଷେପରେ ଆମ ଆଡ଼କୁ ମାଡ଼ି ଆସୁଥିଲାବେଳେ ଭାରତ ପଡ଼ି ରହିଥିଲା ନିଃସହାୟ ଓ ନିଷ୍କ୍ରିୟ, ଠିକ୍ ଓ ବିମର୍ଷ—ଗୋଟାଏ ରଣମଞ୍ଚ ଯେଉଁଠି ପରଦେଶୀ ଶକ୍ତିମାନେ ପ୍ରତିଦ୍ୱନ୍ଦ୍ୱିତା କରିବେ ।

ଯୁଦ୍ଧକୁ କେତେ ଘୃଣା କରୁଥିଲେ ସୁଦ୍ଧା ଭାରତ ଉପରେ ଜାପାନୀ ଆକ୍ରମଣର ଗୁରୁ ସମ୍ଭାବନା ମତେ କୌଣସି ଭାବରେ ହେଲେ ଭୟଭୀତ କରିନଥିଲା । ଆସନ୍ନ ଯୁଦ୍ଧ ପ୍ରତି ଯେତେ ଭୟାବହ ହେଉ ପଛେ, ମୋର ମନର କେଉଁ ଏକ ଅଂଶରେ ମୁଁ ଏକପ୍ରକାର ଆକର୍ଷିତ ଥିଲି; କାରଣ ମୁଁ ଚାହୁଁଥିଲି ଯେ ପ୍ରବଳ ଭାବରେ ଆମକୁ ଥରେ ଚହଲାଇ ଦିଆଯାଉ, ଲକ୍ଷ ଲକ୍ଷ ଲୋକେ ଗୋଟାଏ ଅପୂର୍ବ ବ୍ୟକ୍ତିଗତ ଅଭିଜ୍ଞତାର ସମ୍ମୁଖୀନ ହୁଅନ୍ତୁ । ତାହା-ହେଲେ କେବଳ ଇଂଲଣ୍ଡ ଆମ ଉପରେ ସମାଧିର ଯେଉଁ ଶାନ୍ତି ଲଦି ଦେଇଛି, ସେଥିରୁ ଲୋକେ ନିଜକୁ ମୁକ୍ତ କରିପାରିବେ । ମୁଁ ଚାହୁଁଥିଲି ସେପରି କିଛି ଏକ ଅବସ୍ଥା, ଯାହା ସେମାନଙ୍କୁ ଆଜିର ବାସ୍ତବତାର ସମ୍ମୁଖୀନ ହେବାପାଇଁ ଏବଂ ଯେଉଁ ଅତୀତ ସେମାନଙ୍କୁ ଯାବୁଡ଼ି ଧରିଛି, ତାର କବଳରୁ ଫିଟି ଆସିବା ପାଇଁ କ୍ଷୁଦ୍ର କ୍ଷୁଦ୍ର ଯେତେ ରାଜନୈତିକ ବିବାଦ ଓ ଅସ୍ଥାୟୀ ସମସ୍ୟାମାନଙ୍କର ଚକ୍ର ସେମାନଙ୍କର ମନରେ ଘୂରି ରହିଛି, ତାର ଉର୍ଦ୍ଧ୍ୱକୁ ଉଠିଯିବା ପାଇଁ ବାଧ୍ୟ କରିବ । ଅତୀତରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହେବାକୁ ହେବନି; କିନ୍ତୁ ସେଥିରେ ଜୀବନ କରିବା ବି ଲୋଡ଼ନି; ବର୍ତ୍ତମାନକୁ ଉପଲବ୍‌ଧି କରିବା ଓ ଭବିଷ୍ୟତ ଭିତରକୁ ନିଶ୍ଚିତ ଦୃଷ୍ଟିରେ ଚାହିଁବା ମୁଁ କାମନା କରୁଥିଲି । ଜୀବନର ଛନ୍ଦ ବଦଳାଇ ବର୍ତ୍ତମାନ ଓ ଭବିଷ୍ୟତ ସଙ୍ଗେ ତାର ସଙ୍ଗତି ରକ୍ଷାକରିବା ପାଇଁ ମୁଁ ଆତୁର ଥିଲି । ଯୁଦ୍ଧଜନିତ ବ୍ୟୟ ଅସମ୍ଭବ ଭାବରେ ବଢ଼ୁଥିଲା ଏବଂ ଯୁଦ୍ଧର ପରିଣାମ କ'ଣ ହେବ ତାର କିଛି ନିଶ୍ଚିତତା ନଥିଲା । ଏ ଯୁଦ୍ଧ ଆମେ ଚାହିଁନଥିଲୁ; କିନ୍ତୁ ଯେତେବେଳେ ତାହା ଆସିଲାଣି, ଜାତିର ତନ୍ତ୍ର ମଜବୁତ୍ କରିବାପାଇଁ ଏବଂ ସେହିସବୁ ସଜୀବ ଅଭିଜ୍ଞତା ଯାହା ଭିତରୁ ଏକ ନୂତନ ଜୀବନ ପ୍ରସ୍ଫୁଟିତ ହୋଇପାରେ, ତାହା ଯୋଗାଇବା ପାଇଁ ଏ ଯୁଦ୍ଧକୁ ଉପଯୋଗୀ କରାଯାଇପାରେ । ଅଗଣିତ ସଂଖ୍ୟାରେ ଲୋକେ ଅବଶ୍ୟ ମରିବେ; ତାହା ଅନିବାର୍ଯ୍ୟ । କିନ୍ତୁ ଦୁର୍ଭିକ୍ଷରେ ମରିବା ଅପେକ୍ଷା

ଯୁଦ୍ଧରେ ମରିବା ଭଲ । ଗୋଟାଏ ଶୋଚନୀୟ ତଥା ଆଶାହତ ଜୀବନଯାପନ କରିବା ଅପେକ୍ଷା ମରଣ ଶ୍ରେୟସ୍କର । ମୃତ୍ୟୁ ଭିତରୁ ଜୀବନ ନୂତନ ଭାବରେ ଜନ୍ମ ନିଏ ଏବଂ ବ୍ୟକ୍ତି ହୁଅନ୍ତୁ କି ଜାତି ହୁଅନ୍ତୁ, ଯେଉଁମାନେ କିପରି ମରିବାକୁ ହୁଏ ଜାଣନ୍ତିନି, କିପରି ବଞ୍ଚିବାକୁ ହୁଏ ସେମାନଙ୍କ ପକ୍ଷରେ ଅଜ୍ଞାତ ରହିଯାଏ । "ଯେଉଁଠି ସମାଧି ଅଛି, ସେଠାରେ କେବଳ ପୁନରୁତ୍‌ଥାନ ସମ୍ଭବ ।"

ଭାରତକୁ ଯୁଦ୍ଧ ଆସିଥିଲେ ଯୁଦ୍ଧ ଆମକୁ ତାହା ଉଚ୍ଚାଟନ କରିନଥିଲା । ସେପରି କୌଣସି ଆନନ୍ଦପ୍ରଦ ଉଦ୍ୟମରେ ଆମେ ଆମର ଶକ୍ତି ଲଗାଇ ଦେବାର ଅବସର ନଥିଲା; ଯେବେ ଦୁଃଖ ଓ ମୃତ୍ୟୁ ଭୂଲ ହୁଏ, ସ୍ୱାର୍ଥ ପରିଣତ ହୁଏ ପରାର୍ଥରେ । ସମ୍ମୁଖରେ ରହେ କେବଳ ମୁକ୍ତିର ମାଦକତା ଏବଂ ଭବିଷ୍ୟତର ଏକ ଉଜ୍ଜ୍ୱଳ ଚିତ୍ର । ଆମପାଇଁ ଘଟିଥିଲା କେବଳ ଦୁଃଖ ଓ ଯାତନା, ଆଉ ଆସନ୍ନପ୍ରାୟ ବିପର୍ଯ୍ୟୟର ଚେତନା, ଯାହା ଆମର ଦୃଷ୍ଟିକୁ ତୀବ୍ର କରୁଥିଲା ଓ ପ୍ରାଣରେ ଯନ୍ତ୍ରଣାବୋଧ ଜାଗ୍ରତ କରୁଥିଲା; କିନ୍ତୁ ସେହି ବିପର୍ଯ୍ୟୟ ଟାଳିବା ପାଇଁ ଆମେ କୌଣସି ଭାବରେ ହେଲେ, ସାହାଯ୍ୟ କରିପାରୁନଥିଲୁ । ଯାହା ଅନିବାର୍ଯ୍ୟ, ଯେଉଁଥିରୁ ରକ୍ଷା ପାଇବାର ଉପାୟ ନାହିଁ, ସେପରି ଏକ ଦୁର୍ଭାଗ୍ୟ, ଯାହା ବ୍ୟକ୍ତିଗତ କେବଳ ନୁହେଁ ଜାତିଗତ ମଧ୍ୟ, ତାର ଦୁଶ୍ଚିନ୍ତା ଆମ ପ୍ରାଣକୁ ଆଚ୍ଛନ୍ନ କଲା ।

ଯୁଦ୍ଧରେ ବିଜୟ ହେଉ କି ପରାଜୟ ହେଉ, କିଏ ବିଜୟୀ ହେଲା ବା ପରାଜିତ ହେଲା, ସେଥି ସଙ୍ଗେ ଏହାର ସମ୍ପର୍କ ନଥିଲା । ଅକ୍ଷ-ଶକ୍ତିମାନେ ଜୟଯୁକ୍ତ ହେବା ଆମେ ଚାହୁଁ ନଥିଲୁ; କାରଣ ତାର ଅର୍ଥ ନିଶ୍ଚିତ ସର୍ବନାଶ । ଆମେ ଚାହୁଁ ନଥିଲୁ ଯେ ଜାପାନୀମାନେ ଭାରତର କୌଣସି ଅଂଶ ଭିତରକୁ ପଶି ଆସନ୍ତୁ କିମ୍ବା କୌଣସି ଅଂଶ ଦଖଲ କରନ୍ତୁ । ସେପରି ହେଲେ ଯେକୌଣସିମତେ ପ୍ରତିରୋଧ କରିବାକୁ ପଡ଼ିବ ଏବଂ ଏକଥା ଜନସାଧାରଣଙ୍କୁ ଆମେ ବାରମ୍ବାର ଜୋର୍‌ଦେଇ କହୁଥିଲୁ; କିନ୍ତୁ ଏସବୁ ଥିଲା ଗୋଟାଏ ନେତି-ଅଭିମୁଖ୍ୟ । କି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଏହି ଯୁଦ୍ଧରେ ନିହିତ ଅଛି ଆଉ କି ଭବିଷ୍ୟତ ସେଥିରୁ ଜନ୍ମ ନେବ ? ଏହା କି କେବଳ ଅତୀତର ଦୋଷ ତ୍ରୁଟି ଓ ବିପର୍ଯ୍ୟୟର ପୁନରାବୃତ୍ତି ମାତ୍ର ? କିମ୍ବା ପ୍ରକୃତିର ଅନ୍ଧଶକ୍ତିମାନଙ୍କର ଏହା ଏକ ଖେଳ, ଯାହା ମଣିଷର ଅଭିଳାଷ ଓ ଆଦର୍ଶ ବିଗ୍ରହକୁ ନିଏ ନାହିଁ ? ଭାରତର ଭାଗ୍ୟରେ କ'ଣ ଅଛି ?

ବର୍ଷେକ ତଳେ, ତାଙ୍କର ମୃତ୍ୟୁଶଯ୍ୟାରୁ, ରବୀନ୍ଦ୍ରନାଥ ଠାକୁର ଯେଉଁ ଅନ୍ତିମ ବାର୍ତ୍ତା ପ୍ରେରଣ କରିଥିଲେ, ଆମେ ସେ ବିଷୟରେ ଭାବୁଥିଲୁ : "...ବର୍ବରତାର ଦୈତ୍ୟ ସମସ୍ତ ଛଳନା ପରିହାର କରି, ତାର ବିଷ-ମୁଖ ବ୍ୟାଦାନ କରି, ଆତ୍ମପ୍ରକାଶ କରିଛି ଏବଂ ଧ୍ୱଂସର ମତ୍ତତା ଘେନି ମାନବ ଜାତିକୁ କ୍ଷତବିକ୍ଷତ କରିବାପାଇଁ ପ୍ରସ୍ତୁତ ରହିଛି । ବିଶ୍ୱର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏଁ ଘୃଣାର ବିଷାକ୍ତ ବାଷ୍ପ ବାୟୁମଣ୍ଡଳକୁ ତମସାଚ୍ଛନ୍ନ କରିଛି । ପଶ୍ଚିମ ଜଗତର ମନସ୍ତତ୍ତ୍ୱରେ ଯେଉଁ ହିଂସାଭାବ ଏତେ କାଳ ହୁଏତ ଲୁକ୍‌କାୟିତ ରହିଥିଲା, ପରିଶେଷରେ ଜାଗ୍ରତ ହୋଇ ମାନବିକ ଆତ୍ମାକୁ ଅପବିତ୍ର କରିଛି ।

"ହିନେ କେବେ ଅବଶ୍ୟ ଭାଗ୍ୟଚକ୍ରର ଗତି ଇଂରେଜମାନଙ୍କୁ ସେମାନଙ୍କର ଭାରତୀୟ

ସାମ୍ରାଜ୍ୟ ତ୍ୟାଗ କରିବାକୁ ବାଧ୍ୟ କରିବ; କିନ୍ତୁ କି ପ୍ରକାର ଭାରତ ସେମାନେ ପଛରେ ଛାଡ଼ି ଯିବେ ? କି ଦୁର୍ଦ୍ଦଶା ଆମ ପାଇଁ ଛାଡ଼ି ଯିବେ ? ସେମାନଙ୍କର ଶତ ଶତ ବର୍ଷର ଶାସନ ବ୍ୟବସ୍ଥାର ପ୍ରବାହ ଶେଷରେ ଯେବେ ଶୁଷ୍କହେବ, ପଛରେ ରହିବ କେବଳ କର୍ଦ୍ଦମ ଓ ଆବର୍ଜନାର ଏକ ପତିତ ଭୂଖଣ୍ଡ । ଏକ ସମୟରେ ମୋର ବିଶ୍ୱାସ ଥିଲା ଯେ ୟୁରୋପର ହୃଦୟର ସଭ୍ୟତାର ବନ୍ଧୁ ନିର୍ଝର ନିର୍ଗତ ହେବ; କିନ୍ତୁ ଆଜି ମୁଁ ଯେବେ ଏ ପୃଥିବୀରୁ ଚାଲିଯିବାକୁ ବସିଲିଣି, ମୋର ମନରେ ସେ ବିଶ୍ୱାସ ଆଉ ନାହିଁ ।''

''ଚତୁପାଶକୁ ଚାହିଁ ଦେଖିଲେ ମୋର ଦୃଷ୍ଟିରେ ପଡ଼ୁଚି ଏକ ଗର୍ବିତ ସଭ୍ୟତାର ଭଗ୍ନାବଶେଷ, ଆଉ ମନେ ହେଉଚି ତାହା ଅନାବଶ୍ୟକ ଏକ ବିଶାଳ ସ୍ତୂପଭଳି ଯେପରି ପଡ଼ି ରହିଛି । ତଥାପି ମଣିଷ ଉପରୁ ଆସ୍ଥା ହରାଇ ମୁଁ ସେତେ ବଡ଼ ଗର୍ହିତ ପାପ କରିବାକୁ ଯିବିନି; ବରଂ ମୁଁ ଆଗକୁ ଚାହିଁ ଦେଖିବି, ଯେବେ ଏହି ମହାପ୍ଲାବନ ପରେ ଏବଂ ସେବା ଓ ତ୍ୟାଗ ବଳରେ ବାତାବରଣ ଯେବେ ସ୍ୱଚ୍ଛ ହେଉଚି, ତା'ର ଇତିହାସରେ ଏକ ନୂତନ ଅଧ୍ୟାୟ ଲେଖାହେବ । ସମ୍ଭବତଃ ସେହି ସୁଦିନ ଫାଟିବ ଏହି ଦିଗନ୍ତରୁ—ପ୍ରାଚ୍ୟରୁ ଯେଉଁଠି ସୂର୍ଯ୍ୟ ଉଦୟ ହୁଏ । ଦିନ ଆସିବ, ଯେବେ ଅପରାଜିତ ମନୁଷ୍ୟ ସମସ୍ତ ପ୍ରତିବନ୍ଧକ ସତ୍ତ୍ୱେ, ତାର ନିରୁଦ୍ଦିଷ୍ଟ ମାନବିକ ଐତିହ୍ୟ ଲାଭ କରିବାପାଇଁ ତାର ବିଜୟର ପଥରୁ ଅବଶ୍ୟ ମୁହଁ ଫେରାଇବ ।''

''ଆଜି ଯେଉଁସବୁ ବିପଦ ଆମେ ପ୍ରତ୍ୟକ୍ଷ କରୁଥାଇଁ, ତାହା ଉଦ୍ଦଣ୍ଡ ଶକ୍ତିର ସହଚର । ସେଦିନ ଆସୁଚି ଯେବେ ଋଷି ବାକ୍ୟର ସତ୍ୟତା ପୂର୍ଣ୍ଣ ମାତ୍ରାରେ ପ୍ରକଟିତ ହେବ । ''ଅସତ୍ୟାଚରଣ ଦ୍ୱାରା ମଣିଷ ସମୃଦ୍ଧ ହୁଏ, ବାଞ୍ଛା ପୂର୍ଣ୍ଣ କରେ, ଶତ୍ରୁଗଣଙ୍କୁ ପରାଜିତ କରେ, କିନ୍ତୁ ପରିଶେଷରେ ସମୂଳେ ଧ୍ୱଂସପ୍ରାପ୍ତ ହୁଏ ।''

ଯଥାର୍ଥ ମଣିଷ ଉପରୁ ଆସ୍ଥା ହରାଇବାର ନୁହେଁ । ଈଶ୍ୱରଙ୍କ ଅସ୍ତିତ୍ୱ ଆମେ ଅସ୍ୱୀକାର କରିପାରୁ; କିନ୍ତୁ ମଣିଷକୁ ଯଦି ଆମେ ଅସ୍ୱୀକାର କରି ବସୁ, କି ଆଶା ଆଉ ଅମର ରହିଲା ? କାରଣ ସେତେବେଳେ ସବୁ କିଛି ନିଷ୍ଫଳତାରେ ପର୍ଯ୍ୟବସିତ ହେବ । ତଥାପି, କୌଣସି ବିଷୟରେ ହେଲେ କମ୍ଚା ସତ୍ୟାଚରଣର ବିଜୟ ସୁନିଶ୍ଚିତ ବୋଲି ହେଲେ, ବିଶ୍ୱାସ ସ୍ଥାପନ କରିବା ସହଜ ନ ଥିଲା ।

କ୍ଲାନ୍ତ ଦେହ ଓ ବିଚଳିତ ମନ ଘେନି, ମୋର ପରିବେଶରୁ ମୁକ୍ତହେବା ଉଦ୍ଦେଶ୍ୟରେ, ହିମାଳୟ କୋଡ଼ର ଏକ ଉପତ୍ୟକାରେ ଅବସ୍ଥିତ, କୁଲୁ ଅଭିମୁଖେ ଯାତ୍ରା କଲି ।

## ୧୦. ଆହ୍ୱାନ : ଭାରତ-ଛାଡ଼ ପ୍ରସ୍ତାବ

ପନ୍ଦର ଦିନ ଅନୁପସ୍ଥିତ ହେବା ପରେ ମୁଁ ଯେବେ କୁଲୁ ଉପତ୍ୟକାରୁ ଫେରିଆସିଲି, ଅନୁଭବ କଲି ଯେ ଦେଶର ଆଭ୍ୟନ୍ତରୀଣ ଅବସ୍ଥା ଦ୍ରୁତ ପରିବର୍ତ୍ତିତ ହେଉଛି । ରାଜନୀତିର ଶେଷ ଉଦ୍ୟମ ବିଫଳ ହେବା ପରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା, ତାହା ଇତିମଧ୍ୟରେ

ଖୁବ୍ ବଢ଼ିଯାଇଚ ଏବଂ ସ୍ପଷ୍ଟ ଅନୁଭବ କରୁଚନ୍ତି ଯେ ମିଳାମିଶାର ଆଶା ଆଉ ନାହିଁ । ବ୍ରିଟିଶ୍ ପାର୍ଲାମେଣ୍ଟରେ ଓ ଅନ୍ୟାନ୍ୟ ସ୍ଥାନରେ ବ୍ରିଟିଶ୍ ସରକାରଙ୍କ ପକ୍ଷରୁ ପ୍ରଦତ୍ତ ବିବୃତିମାନ ସେହି ଧାରଣା ଦୃଢ଼ୀଭୂତ କରିଥିଲା ଏବଂ ଲୋକେ ଉତ୍ତେଜିତ ହୋଇ ଉଠୁଥିଲେ । ଭାରତରେ ସରକାରୀ ନୀତି ଆମର ସାଧାରଣ ରାଜନୈତିକ ତଥା ସର୍ବସାଧାରଣ କାର୍ଯ୍ୟକଳାପ ବନ୍ଦ କରିବା ଦିଗରେ ନିର୍ଦ୍ଦିଷ୍ଟ ଭାବରେ ଉଦ୍ଦିଷ୍ଟ ଥିଲା ଏବଂ ସବୁ ଦିଗରୁ ଚାପ ପକାଯାଉଥିଲା । କ୍ରିପ୍‌ସ ଆଲୋଚନା କାଳରେ ଆମର ଅନେକ କର୍ମୀ ଜେଲ୍‌ରେ ଥିଲେ । ବର୍ତ୍ତମାନ ମୋର କେତେକ ନିକଟତମ ତଥା ବହୁବିଦିତ ବନ୍ଧୁ ଓ ସହକର୍ମୀଙ୍କୁ ଗିରଫ କରାଗଲା ଓ ଭାରତ ରକ୍ଷା ଆଇନ ବଳରେ ସେମାନଙ୍କୁ ଜେଲ୍‌ରେ ଭର୍ତ୍ତି କରାଗଲା । ମଇମାସ ଆରମ୍ଭରେ ରଫି ଅହମ୍ମଦ କିଦ୍‌ୱାଇ ଗିରଫ ହେଲେ । ତାଙ୍କ ପରେ ପରେ ଯୁକ୍ତପ୍ରଦେଶ କଂଗ୍ରେସ କମିଟି ସଭାପତି ଶ୍ରୀ କୃଷ୍ଣଦତ୍ତ ପଲ୍ଲିବାଲ୍ ଓ ଅନ୍ୟମାନେ ଗିରଫ ହେଲେ । ଯେପରି ଜଣାଯାଉଥିଲା ଆମ ଭିତରୁ ଅନେକଙ୍କୁ ଏପରି ଭାବରେ କର୍ମ କ୍ଷେତ୍ରରୁ ଉଠାଇ ନିଆଯିବ ଏବଂ ଆମର ଜାତୀୟ ଆନ୍ଦୋଳନ ଯେପରି ଅଗ୍ରସର ନହେବ ଓ କ୍ରମଶଃ ଯେପରି ବିଚ୍ଛିନ୍ନ ହୋଇପଡ଼ିବ ଥିଲା ସରକାରଙ୍କ ଉଦ୍ଦେଶ୍ୟ । ଏପରି ନିଷ୍କ୍ରିୟ ଭାବରେ କ'ଣ ଆମେ ଏପରି ସବୁ କଥାକୁ ମାନିନେଇ ରହିବୁ ? ଆମେ ସେଭଳି ଶିକ୍ଷା ପାଇନଥିଲୁ ଏବଂ ଆମର ବ୍ୟକ୍ତିଗତ ତଥା ଜାତୀୟ ଅହଙ୍କାର ଏ ପ୍ରକାର ସରକାରୀ ଆଚରଣ ବିରୁଦ୍ଧରେ ବିଦ୍ରୋହ କରି ଉଠିଲା ।

କିନ୍ତୁ ଗୁରୁତର ଯୁଦ୍ଧ ସଙ୍କଟ ଓ ଆକ୍ରମଣର ସମ୍ଭାବନା ଦୃଷ୍ଟିରୁ କ'ଣ ଆମେ କରନ୍ତୁ ? ତଥାପି ନିଷ୍କ୍ରିୟତା ଏହି ଉଦ୍ଦେଶ୍ୟ ପକ୍ଷରେ ମୋଟେ ସହାୟକ ହେଉନଥିଲା; କାରଣ ଏଥି ଭିତରୁ ଯେଉଁସବୁ ମନୋବୃତ୍ତି ବଢ଼ି ଉଠୁଥିଲା, ତାହା ଆମ ମନରେ ଆଶଙ୍କା ଓ ଉଦ୍‌ବିଗ୍ନତା ଭରୁଥିଲା । ଜନମତରେ ନାନା ପ୍ରକାର ଚିନ୍ତାଧାରା ପ୍ରତିଫଳିତ ଥିଲା । ଏପରି ଏକ ବିଶାଳ ଦେଶରେ ଓ ଏପରି ଏକ ସଙ୍କଟ କାଳରେ ସେପରି ହେବା ସ୍ୱାଭାବିକ । ପ୍ରକୃତରେ ଜାପାନୀ-ମାନଙ୍କୁ ମୋଟେ କେହି ପସନ୍ଦ କରୁନଥିଲେ; କାରଣ ପ୍ରଭୁ ପରିବର୍ତ୍ତନର ଆକୁଳତା କାହାର ହେଲେ ନଥିଲା । ବରଂ ଚୀନାମାନଙ୍କ ପାଇଁ ପ୍ରବଳ ସହାନୁଭୂତି ସର୍ବତ୍ର ରହିଥିଲା; କିନ୍ତୁ ଗୋଟାଏ କ୍ଷୁଦ୍ରଗୋଷ୍ଠୀ ପରୋକ୍ଷ ଭାବରେ ଜାପାନ ପକ୍ଷପାତି ଥିଲେ । ଏହି ଦୃଷ୍ଟିରୁ ଯେ ଭାରତର ସ୍ୱାଧୀନତା ନିମନ୍ତେ ସେମାନେ ଜାପାନୀ ଆକ୍ରମଣର ସୁଯୋଗ ନେବେ । ସୁଭାଷଚନ୍ଦ୍ର ବୋଷ ବର୍ଷେକ ପୂର୍ବେ ଗୋପନରେ ଭାରତରୁ ଖସି ଚାଲିଯିବା ପରେ ରେଡ଼ିଓ ମାଧ୍ୟମରେ ଯାହି ସବୁ ପ୍ରଚାର କରୁଥିଲେ, ତାର ପ୍ରଭାବ ଏମାନଙ୍କ ଉପରେ ପଡ଼ୁଥିଲା । ଅଧିକାଂଶ ଲୋକେ କିନ୍ତୁ ନୀରବରେ ଅବସ୍ଥାର ଗତି ଲକ୍ଷ୍ୟ କରୁଥିଲେ । ଦୁର୍ଭାଗ୍ୟବଶତଃ ଅବସ୍ଥା ଯଦି ସେପରି ଏକ ମୋଡ଼ ଧରେ, ଯେବେ ଭାରତର ଏକ ଅଂଶ ଶତ୍ରୁ ଦଖଲରେ ରହିବ, ତାହାହେଲେ ଲୋକଙ୍କ ଭିତରୁ ବିଶେଷତଃ ସେହି ସବୁ ଧନିକଗୋଷ୍ଠୀ ଭିତରୁ, ଯେଉଁମାନଙ୍କର ଏକମାତ୍ର ଉତ୍କଣ୍ଠା ନିଜକୁ ଓ ନିଜର ସମ୍ପତ୍ତି ନିରାପଦ ରଖିବା, ଅନେକେ ଆଗେଇଯାଇ ଶତ୍ରୁ ସଙ୍ଗେ ହାତ ମିଳାଇ ବସିବେ । ଅତୀତରେ ନିଜ ଉଦ୍ଦେଶ୍ୟ ସାଧନ ନିମନ୍ତେ ଭାରତର ବ୍ରିଟିଶ୍ ସରକାର

ସେଭଳି ଲୋକଙ୍କୁ ଯେହେତୁ ଉତ୍ସାହିତ କରନ୍ତି, ବର୍ତ୍ତମାନର ପରିବର୍ତ୍ତିତ ଅବସ୍ଥାରେ ମଧ୍ୟ ନିଜ ସ୍ୱାର୍ଥ ପ୍ରତି ସଜାଗ ରହି, ଜାପାନୀଙ୍କ ସଙ୍ଗେ ସେମାନେ ଅନାୟାସରେ ହାତ ମିଳାଇ ଦେଇ ପାରିବେ । ଏ ପ୍ରକାର ସହଯୋଗିତା, ବର୍ତ୍ତମାନ ପ୍ରତିରୋଧ ଆନ୍ଦୋଳନ ସତ୍ତ୍ୱେ, ଫ୍ରାନସ୍, ବେଲ୍‌ଜିଅମ, ନର୍‌ୱେ ଏବଂ ୟୁରୋପର ବହୁ ନାଜି ଅଧିକୃତ ଦେଶମାନଙ୍କରେ କପଟ କାର୍ଯ୍ୟକାରୀ ହେଉଥିଲା, ଆମେ ଜାଣିଥିଲୁ । ଆମେ ଦେଖିଥିଲୁ, ପେର୍ଟିନେକ୍‌ସଙ୍କ ଭାଷାରେ କହିଲେ, ଭିଚିର ଲୋକେ କପଟ, "ନିଜ ବୁଦ୍ଧିକୁ ପ୍ରତାରଣା କରି ଲଜ୍ଜାକୁ ସମ୍ମାନ, ଭୀରୁତାକୁ ସାହସିକତା, ନିଗୃଣସ୍ୟତା ଓ ଅଜ୍ଞାତକୁ ପ୍ରଜ୍ଞା ଏବଂ ଅପମାନକୁ ସଦ୍‌ଗୁଣ କହି ଜର୍ମାନ ବିଜୟକୁ ଗୋଟାଏ ନୈତିକ ପୁନରଭ୍ୟୁତ୍ଥାନ ଭାବରେ ପୂର୍ଣ୍ଣପ୍ରାଣରେ ସ୍ୱୀକାର କରି-ନେଇଥିଲେ । ବିପ୍ଳବ ଓ ବର୍ଦ୍ଧମାନ ଦେଶାତ୍ମବୋଧର ସେ ଦେଶ ଫ୍ରାନ୍‌ସରେ ଯଦି ଦଳେ ଲୋକ ବିଜୟୀ ଶତ୍ରୁ ସଙ୍ଗେ ହାତ ମିଳାଇ ଦେଇ ପାରିଲେ, ଭାରତରେ ମଧ୍ୟ ଯେଉଁଠି ବ୍ରିଟିଶ୍ ପୃଷ୍ଠପୋଷକତାରେ ଏ ପ୍ରକାର ହାତମିଳା ମନୋଭାବ ବହୁ ପୂର୍ବରୁ ଚାଲିଆସିଛି ଓ ଲୋକେ ସେଥିରୁ ଲାଭ ପାଉଛନ୍ତି, ଠିକ୍ ସେହି ଶ୍ରେଣୀର ଲୋକେ ଏଠାରେ ଜାପାନୀଙ୍କ ସଙ୍ଗେ ହାତ ମିଳାଇଦେବା କିଛି ଅସମ୍ଭବ ନୁହେଁ । ପ୍ରକୃତପକ୍ଷେ ଏହା ଖୁବ୍ ସମ୍ଭବ ଯେ ଆକ୍ରମଣକାରୀ ସଙ୍ଗେ ହାତ ମିଳାଇବା ପାଇଁ ଯେଉଁମାନେ ଆଗରେ ହେବାକୁ ଚାହିଁବେ, ସେମାନେ ହେଉଛନ୍ତି ସେହି ଲୋକେ ଯେଉଁମାନେ ବ୍ରିଟିଶ ଶାସନ ସଙ୍ଗେ ବରାବର ହାତ ମିଳାଇ ଆସିଛନ୍ତି, ଆଉ ଗୃହ ଉପରୁ ଉଚ୍ଚ କଣ୍ଠରେ ସେହି ଶାସନ ପ୍ରତି ଆନୁଗତ୍ୟ ଘୋଷଣା କରିଥାନ୍ତି । ହାତ କପଟ ମିଳାଇବାକୁ ହୁଏ, ସେ ବିଦ୍ୟାରେ ସେମାନେ ଧୁରନ୍ଧର ଏବଂ ଘର ଭୁଷୁଡ଼ି ପଡ଼ିଲେ ଝୁଙ୍କା ଭିତ୍ତିକୁ ଧରି ରହିବାରେ ସେମାନଙ୍କର ସେପରି କିଛି ଅସୁବିଧା ହେବନାହିଁ । ପୁଣି ଯଦି ଆଉ ଥରେ କିଛି ଅଦଳ ବଦଳ ହେଲା, ସେମାନେ ପୁଣି କୌଣସିମତେ ସେଥିସଙ୍ଗେ ହାତ ମିଳାଇ ଚାଲିବେ, ଯେପରି ସେମାନଙ୍କ ଭଳି ଲୋକେ ୟୁରୋପରେ କରିଚନ୍ତି । କ୍ରିପ୍‌ସ ଆଲୋଚନା ବିଫଳ ହେବା ପରେ ଦେଶରେ ବ୍ରିଟିଶ୍ ବିରୋଧୀ ମନୋଭାବ ଯେପରି ଅଭୂତପୂର୍ବ ଭାବରେ ବଢ଼ି ଯାଉଛି, ଆବଶ୍ୟକତା ପଡ଼ିଲେ, ସେ ଲୋକେ ତାର ବି ସୁଯୋଗ ନେବାକୁ ଚାହାଁନ୍ତିବେ । ଅନ୍ୟମାନେ ମଧ୍ୟ ବ୍ୟକ୍ତିଗତ କାରଣରୁ ଓ ସୁବିଧାବାଦୀ ଭାବନାରୁ ନହେଲେ ଓ ଅନ୍ୟବିଧ ପ୍ରେରଣାଦ୍ୱାରା ତାଡ଼ିତ ହୋଇ ସେପରି କରିବେ । ସେମାନଙ୍କ ଦୃଷ୍ଟିରୁ ସମସ୍ତ ପରିପ୍ରେକ୍ଷୀ ଓ ବୃହତ୍ତର ପ୍ରଶ୍ନମାନଙ୍କର ଆଦର୍ଶ ହଜିଯିବ । ଏହି ସବୁ ଘଟଣା ଆମକୁ ନିରୁତ୍ସାହିତ କରୁଥିଲା ଏବଂ ଆମେ ଅନୁଭବ କଲୁ ଯେ ଭାରତରେ ବ୍ରିଟିଶ ନୀତିକୁ ଆମେ ଯଦି ଏପରି ମୁଣ୍ଡପୋତି ମାନିନେଇ ଚାହାଁନ୍ତେଲେ, ପରିଣାମ ହେବ ବିପଜ୍ଜନକ ଏବଂ ଦିନେ ଆମ ଲୋକେ ସମ୍ପୂର୍ଣ୍ଣ ଭାବରେ ଅଧଃପତିତ ହେବେ ।

ଅନେକଙ୍କ ମନରେ ଏ ଧାରଣା ଉପୁଜି ସାରିଥିଲା ଯେ ଜାପାନ ଆଉ ଯଦି ଆକ୍ରମଣ ହୁଏ ଓ ପୂର୍ବ-ଭାରତର କେତେକ ଅଞ୍ଚଳ ତାର ଦଖଲକୁ ଚାଲିଯାଏ, ଭାରତରେ ଅନ୍ୟନ୍ୟ ବହୁ ଅଞ୍ଚଳରେ ସାମରିକ ଶାସନକଳ ଭାଙ୍ଗିପଡ଼ିବ ଓ ଅରାଜକତା ସୃଷ୍ଟି ହେବ । ଆମ ଆଗରେ ମାଲୟ ଓ ବର୍ମାର ନଜିର ରହିଥିଲା । ଯୁଦ୍ଧରେ ଗତି ଜାପାନ ପକ୍ଷରେ ଯେତେ ଅନୁକୂଳ

ହେଲେ ପୁଣି ଦେଶର ବଡ଼ ଏକ ଖଣ୍ଡ ଶତ୍ରୁ ଦଖଲ କରିଯିବ ବୋଲି କେହି ଭାବୁନଥିଲେ । ଭାରତ ଏକ ବିଶାଳ ଦେଶ ଏବଂ ଭୂଖଣ୍ଡର ଏ ପ୍ରକାର ବିସ୍ତୃତି ଯେ ଶତ୍ରୁ ପକ୍ଷରେ ଏକ ପ୍ରତିବନ୍ଧକ, ତାର ପ୍ରମାଣ ମିଳିଲା ଚୀନରେ । ବିସ୍ତୃତିର ଉପଯୋଗିତା ସେତେବେଳେ ପ୍ରମାଣିତ ହୁଏ, ଯେବେ ତାର ସୁବିଧା ନେଇ ପ୍ରତିରୋଧ କରିବାପାଇଁ ସଙ୍କଳ୍ପ ଜାଗେ । ଭାଙ୍ଗିପଡ଼ିବା ଓ ଆତ୍ମସମର୍ପଣ କରିବା ସଙ୍ଗେ ତାର ସମ୍ପର୍କ ନାହିଁ । ବିଶ୍ୱସ୍ତସୂତ୍ରରୁ ଆମେ ସମ୍ବାଦ ପାଇଥିଲୁ ଯେ ଆକ୍ରମଣ ହେଲେ ମିତ୍ରପକ୍ଷ ସଶସ୍ତ୍ରବାହିନୀ ଶତ୍ରୁର ଦଖଲ ପାଇଁ କେତେକ ବଡ଼ ବଡ଼ ଅଞ୍ଚଳ ଛାଡ଼ିଦେଇ, ପଛକୁ ହଟି ଆସି, ପ୍ରତିରକ୍ଷାର ଆଉ ଏକ ସାମ୍ନୁଖ୍ୟ ନିର୍ମାଣ କରିବେ । ସେମାନେ ଅନୁମାନ କରୁଥିଲେ, ଚୀନରେ ଯେପରି ହେଲା, ଶତ୍ରୁ ସେ ସମସ୍ତ ଅଞ୍ଚଳ ହୁଏତ ଦଖଲ କରିବାକୁ ଚାହିଁ ନପାରେ । ଅତଏବ, ଆମ ଆଗରେ ପ୍ରଶ୍ନ ରହିଲା ଯେ ଆମେ କିପରି ଶତ୍ରୁ ଅଧିକୃତ ଅଞ୍ଚଳରେ ଏବଂ ଅନ୍ୟ ଯେଉଁସବୁ ଅଞ୍ଚଳରେ ଯେଉଁଠି ସାଧାରଣ ଶାସନକଳ ଭାଙ୍ଗିପଡ଼ିବାର ବିଶେଷ ସମ୍ଭାବନା ରହିଛି, ପରିସ୍ଥିତିର ସମ୍ମୁଖୀନ ହେବୁ । ଯେତେଦୂର ପାରନ୍ତୁ ଆମେ ସେ ପ୍ରକାର ସଙ୍କଟ ନିମନ୍ତେ ମନରେ ଓ ଅନ୍ୟାନ୍ୟ ଭାବରେ ପ୍ରସ୍ତୁତ ହେବାର ଉଦ୍ୟମ କଲୁ । ଶାନ୍ତି ଶୃଙ୍ଖଳା ରକ୍ଷାକରିବା ପାଇଁ ଏବଂ ଯେତେ କ୍ଷୟକ୍ଷତି ଘଟୁ ପଛେ ଆକ୍ରମଣକାରୀର ପ୍ରତିରୋଧ କରିବା ପାଇଁ ଆମେ ସ୍ଥାନୀୟ ସଙ୍ଗଠନମାନଙ୍କୁ ଉତ୍ସାହ ଓ ଭରସା ଦେଲୁ ।

ଏତେ ବର୍ଷ ପର୍ଯ୍ୟନ୍ତ ଚୀନାମାନେ ଧୈର୍ଯ୍ୟ ନ ହରାଇ ଲଢ଼ି ପାରିଲେ କାହିଁକି ? ସର୍ବୋପରି ଋସିଆନ୍ ଓ ସୋଭିଏତ୍ ୟୁନିଅନ୍‌ର ଅନ୍ୟାନ୍ୟ ଜାତିମାନେ ଏ ପ୍ରକାର ସାହସ ଓ ଆନ୍ତରିକତା ସହକାରେ ଦୁର୍ଦ୍ଧର୍ଷ ଭାବରେ ଲଢ଼ିଲେ କାହିଁକି ? ପୃଥିବୀର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଲୋକେ ବୀର ଭାବରେ ଲଢ଼ିଚନ୍ତି; କାରଣ ଆକ୍ରମଣର ଭୟ ଓ ଦେଶାତ୍ମବୋଧ ଏବଂ ନିଜ ନିଜ ସାମାଜିକ ବ୍ୟବସ୍ଥା ଅତୁଟ ରଖିବାର ଆକାଙ୍‌କ୍ଷା ସେମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା । ତଥାପି ପୁଣି ଋଷିଆ ଓ ଅନ୍ୟାନ୍ୟ ଦେଶମାନଙ୍କ ମଧ୍ୟରେ ଯୁଦ୍ଧ ଉଦ୍ୟମର ଐକାନ୍ତିକତାରେ କିଛି ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ଡନ୍‌କାର୍କ୍ ସମୟରେ ଓ ତା'ପରେ ମଧ୍ୟ ବହୁ ଦେଶ ଦୁର୍ଦ୍ଦାନ୍ତ ଭାବରେ ଲଢ଼ିଥିଲେ; କିନ୍ତୁ ସେ ମୁହୂର୍ତ୍ତର ସଙ୍କଟ ଅତିବାହିତ ହେବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ଉଦ୍ୟମ ବେଳକୁ ଏକ ପ୍ରକାର ନୈତିକ ଶିଥିଳତା ଦେଖାଦେଲା । ଯୁଦ୍ଧରେ କୌଣସିମତେ ଜୟ ଲାଭ କରିବାକୁ ତ ପଡ଼ିବ; କିନ୍ତୁ ଭବିଷ୍ୟତ କ'ଣ ହେବ ? ଏ ସନ୍ଦେହ ବୋଧହୁଏ ସେମାନଙ୍କ ମନରେ ଉପୁଜିଥିଲା । ଯେଉଁସବୁ ଖବର ଆମକୁ ମିଳିଚି, ସେଥିରୁ ଜଣାଯାଏ ଯେ ସୋଭିଏତ୍ ୟୁନିଅନ୍‌ରେ ସେ ପ୍ରକାର ସନ୍ଦେହ ଅଥବା ବିବାଦର ( ଅବଶ୍ୟ ଏକଥା ସତ୍ୟ ଯେ ସେଠାରେ ବିବାଦ ଉତ୍ସାହିତ କରାଯାଏନାହିଁ ) ଅବକାଶ ନଥିଲା । ବର୍ତ୍ତମାନ ଓ ଭବିଷ୍ୟତ ଉଭୟ ଉପରେ ଲୋକଙ୍କର ପୂର୍ଣ୍ଣ ଆସ୍ଥା ଥିଲା ।

କିନ୍ତୁ ଭାରତରେ ବର୍ତ୍ତମାନ ପ୍ରତି ଗଭୀର ବିରାଗ ଜନ୍ମି ସାରିଥିଲା ଏବଂ ଭବିଷ୍ୟତ ବି ଅନ୍ଧକାରମୟ ଜଣାଯାଉଥିଲା । କୌଣସି ଦେଶପ୍ରେମୀ ପ୍ରେରଣା ଲୋକଙ୍କୁ ଉଦ୍ୟମଶୀଳ

କରୁନଥିଲା । ଆକ୍ରମଣ ଓ ଅଧିକତର ଦୁର୍ଭାଗ୍ୟ ମୁହଁରୁ ରକ୍ଷା ପାଇବା ପାଇଁ ଆକୁଳତା କେବଳ ଥିଲା । ଅଳ୍ପସଂଖ୍ୟକ ଲୋକ ଆନ୍ତର୍ଜାତିକ ଘଟଣାବଳୀ ଅଧ୍ୟୟନ କରି ବିଚଳିତ ହୋଇଥିଲେ । ଏ ପ୍ରକାର ମନୋଭାବ ତ ସହଜେ ଥିଲା, ସେଥି ସଙ୍ଗେ ଗୋଟାଏ ବିଦେଶୀ ତଥା ସାମ୍ରାଜ୍ୟବାଦୀ ଶକ୍ତି ଲୋକଙ୍କୁ ବଳପୂର୍ବକ କାର୍ଯ୍ୟ କରାଇବା ସମସ୍ତଙ୍କୁ ବାଧୁଥିଲା ଓ ମନରେ ପ୍ରଚ୍ଛନ୍ନ କ୍ରୋଧ ଭରିରହିଥିଲା । ଯେଉଁ ଶାସନ ବ୍ୟବସ୍ଥାରେ ଜଣେ ସ୍ୱେଚ୍ଛାଚାରୀ ଶାସକର ମରଜି ଉପରେ ସବୁ କିଛି ନିର୍ଭରକରେ ସେଥିରେ ମୌଳିକ ଭାବରେ କିଛି ଭୁଲ୍ ଯେ ରହିଚି, ସନ୍ଦେହ ନାହିଁ । ସ୍ୱାଧୀନତା ସମସ୍ତଙ୍କର ପ୍ରିୟ; କିନ୍ତୁ ସେଥିରୁ ଯେଉଁମାନେ ବଞ୍ଚିତ ହୋଇଚନ୍ତି, କିମ୍ବା ତାହା ହରାଇବାର ବିପଦରେ ଯେଉଁମାନେ ପଡ଼ିଚନ୍ତି ସେମାନଙ୍କ ପକ୍ଷରେ ତାହା କେତେ ଭଲ ପ୍ରିୟ, ଅନୁଭୂତିର କଥା । ଆଧୁନିକ ବିଶ୍ୱରେ ସ୍ୱାଧୀନତା ନାନା ଭାବରେ ନିୟନ୍ତ୍ରିତ ଓ ସୀମିତ; କିନ୍ତୁ ଯେଉଁମାନେ ସ୍ୱାଧୀନ ନୁହନ୍ତି ଏହିସବୁ ସୀମା ବନ୍ଧନର ମହତ୍ତ୍ୱ ସେମାନେ ଉପଲବ୍ଧି କରିପାରନ୍ତି ନାହିଁ । ସ୍ୱାଧୀନତାର ଧାରଣାକୁ ସେମାନେ ଏପରି ଏକ ଆଦର୍ଶରେ ରୂପ ଦେଇ ଭାବବସନ୍ତି ଯେ ପରିଶେଷରେ ତାହା ଏକ ଅତ୍ୟୁଗ୍ର କ୍ଷୁଧାରେ ପରିଣତ ହୁଏ ଓ ତାର ନିବୃତ୍ତି ନିମନ୍ତେ ଅଭିଭୂତ ଭାବରେ ସେମାନେ ସବୁ କିଛି ତ୍ୟାଗ ପାଇଁ ପ୍ରସ୍ତୁତ ହୋଇ ଯାଆନ୍ତି । ସେହି ଆକାଙ୍‌କ୍ଷା ସଙ୍ଗେ ଯଦି କିଛି ଖାପ ଖାଏନି କିମ୍ବା ତାର ପରିପନ୍ଥୀ ମନେହୁଏ ତାହା କ୍ଷତି ସହିବାପାଇଁ ବାଧ୍ୟ ବୋଲି ସେମାନେ ବିଚାରନ୍ତି । ଯେଉଁ ମୁକ୍ତି ଆକାଙ୍‌କ୍ଷା ପାଇଁ ଭାରତରେ ବହୁ ଲୋକ କଷ୍ଟ ସହିଥିଲେ ଓ ତ୍ୟାଗ କରିଥିଲେ ତାହା ପ୍ରତିବନ୍ଧକର ସମ୍ମୁଖୀନ ହୋଇଥିଲା କେବଳ ନୁହେଁ, ମନେ ହେଉଥିଲା, କେଉଁ ଦୂର ତଥା ଅସ୍ପଷ୍ଟ ଭବିଷ୍ୟତ ଭିତରକୁ ତାର ସମ୍ଭାବନା ଯେପରି ହଜି ହଜି ଯାଉଚି । ବିଶ୍ୱରେ ସ୍ୱାଧୀନତାର ଯେଉଁ ସଂଗ୍ରାମ ଚାଲିଥିଲା ସେଥି ସଙ୍ଗେ ଏହି ଆକାଙ୍‌କ୍ଷାକୁ ଯୋଡ଼ି ଭାରତରେ ତଥା ବିଶ୍ୱର ମୁକ୍ତି ଉଦ୍ଦେଶ୍ୟରେ ଏବଂ ଭାରତର ପ୍ରତିରକ୍ଷା ପାଇଁ ମଧ୍ୟ ସେହି ବିଶାଳ ଶକ୍ତିଭଣ୍ଡାରରୁ ଶକ୍ତି ଆହରଣ କରିବା ପରିବର୍ତ୍ତେ, ଯୁଦ୍ଧକୁ ସେଥିରୁ ବିଚ୍ଛିନ୍ନ କରିଦିଆଯାଇଥିଲା ଏବଂ ତାର ପ୍ରଶ୍ନ ଉପରେ ଅଣା କେନ୍ଦ୍ରିତ କରାଯାଉନଥିଲା । କୌଣସି ଜାତିକୁ ଏପରି କି ଶତ୍ରୁକୁ ମଧ୍ୟ ଅଣାହାନ କରି ଗୁଡ଼ିବା ବୁଦ୍ଧିମତ୍ତାର କାର୍ଯ୍ୟ ନୁହେଁ ।

ଭାରତରେ ସେପରି କେତେ ଲୋକ ଅବଶ୍ୟ ଥିଲେ, ଯେଉଁମାନେ ଏହି ଯୁଦ୍ଧକୁ ସେହି ସଙ୍ଗେ ଜଡ଼ିତ ବିଭିନ୍ନ ଦେଶର ରାଷ୍ଟ୍ରନୀତିଜ୍ଞମାନଙ୍କ ତୁଚ୍ଛ ଉଚ୍ଚାଭିଳାଷ ଅପେକ୍ଷା ବୃହତ୍ତର ଓ ବିପୁଳତର ମଣୁଥିଲେ । ଯେଉଁମାନେ ଏହାର ବୈପ୍ଳବିକ ତାତ୍ପର୍ଯ୍ୟ ନିଜ ନିଜ ଘରେ ଅନୁଭବ କରୁଥିଲେ, ଉପଲବ୍ଧି କରିପାରୁଥିଲେ ଯେ ଏହାର ଚୂଡ଼ାନ୍ତ ସମସ୍ୟା ଏବଂ ସେଥିରୁ ଯେଉଁସବୁ ପରିଣାମ ପ୍ରବାହିତ ହେବ, ତାହା ବିଶ୍ୱକୁ ସାମରିକ ବିଜୟ ଓ ରାଜନୀତିଜ୍ଞମାନଙ୍କର ଚିନ୍ତା ଓ ଉଚ୍ଚାରଣର ବହୁ ଦୂରକୁ ନେଇଯିବ; କିନ୍ତୁ ସେମାନଙ୍କର ସଂଖ୍ୟା ଥିଲା ଅତି ସୀମିତ ଏବଂ ଅବଶିଷ୍ଟ ଲୋକେ, ଅନ୍ୟାନ୍ୟ ଦେଶର ଲୋକଙ୍କ ଭଳି, ଏହାକୁ ଏକ ସଙ୍କୀର୍ଣ୍ଣ ଦୃଷ୍ଟିକୋଣରୁ ଦେଖିଥାନ୍ତି, ଯାହା ସେମାନଙ୍କ ଭାଷାରେ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ଏବଂ ତାତ୍କାଳିକ ପରିଣାମଦ୍ୱାରା ସେମାନେ ପ୍ରଭାବିତ ହୁଅନ୍ତି । ଯେଉଁମାନେ ସୁବିଧାପରାୟଣ, ବ୍ରିଟିଶ୍ ନୀତି

ସଙ୍ଗେ ଜନକୁ ଖାପ ଖୁଆଇ ଚଳାଇନେଲେ । ଅନ୍ୟ ଯେକୌଣସି ପ୍ରଭୁତ୍ୱ ଅଥବା ନୀତି ସଙ୍ଗେ ସେମାନେ ଠିକ୍ ଏପରି ଭାବରେ ହିଁ ହାତ ମିଳାଇ ଚାଲିଥାନ୍ତେ । କେତେକଙ୍କ ମନରେ ଏହି ନୀତି ବିରୁଦ୍ଧରେ ଭୀଷଣ ପ୍ରତିକ୍ରିୟା ସୃଷ୍ଟି ହେଲା ଏବଂ ସେମାନେ ଅନୁଭବ କରୁଥିଲେ ଯେ ଏହାର ବଶତା ସ୍ୱୀକାର କରିବା ଭାରତର ଲକ୍ଷ୍ୟ ପ୍ରତି କେବଳ ନୁହେଁ ବିଶ୍ୱର ଆଦର୍ଶ ପ୍ରତି ହେବ ଏକ ବିଶ୍ୱାସଘାତକତା । ବହୁ ଲୋକ; କିନ୍ତୁ କେବଳ ନିଷ୍କ୍ରିୟ, ଗତିହୀନ ଓ କିଂକର୍ତ୍ତବ୍ୟବିମୂଢ଼-ହୋଇ ରହିଲେ । ଭାରତୀୟ ଲୋକଙ୍କର ଠିକ୍ ଏହି ପୁରାତନ ଦୋଷ ଦୁର୍ବଳତା ବିରୁଦ୍ଧରେ ଆମେ କି ସଂଗ୍ରାମ ନ କରିଛୁ ।

ଭାରତର ମାନସରେ ଏହି ସଂଘର୍ଷ ଚାଲିଥିଲାବେଳେ ଏବଂ ନୈରାଶ୍ୟବୋଧ ବେଳକୁ ବେଳ ବଢ଼ୁଥିଲାବେଳେ ଗାନ୍ଧିଜୀ କେତେ ପ୍ରବନ୍ଧ ଲେଖିଥିଲେ ଯାହା ଅଗଣନ ଲୋକଙ୍କ ଚିନ୍ତାକୁ ଏକ ନୂତନ ଦିଗର ସନ୍ଧାନ ଦେଲା; ସେମାନଙ୍କର ଅସ୍ପଷ୍ଟ କେତେ ଧାରଣାକୁ ରୂପାୟିତ କଲା । ସେହି ସଙ୍କଟପୂର୍ଣ୍ଣ ଅବସ୍ଥାରେ ନିଷ୍କ୍ରିୟତା ଏବଂ ସେ ସମୟରେ ଯାହାସବୁ ଘଟିଯାଉଥିଲା ତାହା ମୁଣ୍ଡ ପୋତି ମାନିଯିବା ତାଙ୍କ ପକ୍ଷରେ ଅସହ୍ୟ ହୋଇଉଠିଥିଲା । ସେହି ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ଯେଉଁ ଗୋଟିକ ମାର୍ଗ ଉନ୍ମୁକ୍ତ ଥିଲା, ତାହା ହେଉଚି ଭାରତର ସ୍ୱାଧୀନତାକୁ ସ୍ୱୀକାର କରିବା, ଯାହା ଫଳରେ ମୁକ୍ତ ଭାରତ ମିତ୍ରଜାତିମାନଙ୍କ ସହଯୋଗିତାରେ ଆକ୍ରମଣ ଓ ଅଭିଯାନର ପ୍ରତିରୋଧ କରିବ । ସେହି ସ୍ୱୀକୃତି ଯଦି ନ ଆସୁଚି, ତାହାହେଲେ ପ୍ରଚଳିତ ବ୍ୟବସ୍ଥା ପ୍ରତି ପ୍ରତିଦ୍ୱନ୍ଦ୍ୱିତାର ଆହ୍ୱାନ ଜଣାଇ ନିଶ୍ଚିତ ଭାବରେ କିଛି କରିବାକୁ ପଡ଼ିବ ଏବଂ ଯେଉଁ ଅବସାଦ ଲୋକଙ୍କୁ ପକ୍ଷାଘାତଗ୍ରସ୍ତ କରୁଚି ଏବଂ ସେମାନଙ୍କୁ ଯେ କୌଣସି ପ୍ରକାର ଆକ୍ରମଣର ସହଜ ଶିକାର କରି ରଖିଚି, ସେଥିରୁ ସେମାନଙ୍କୁ ମୁକ୍ତ ଓ ଜାଗ୍ରତ କରିବାକୁ ପଡ଼ିବ ।

ଏହି ଦାବିରେ ନୂତନତ୍ୱ କିଛି ନଥିଲା । କାରଣ ଆମେ ବରାବର ଯାହା କହି ଆସିଥିଲୁ ଏହା ଥିଲା ତାର ପୁନରାବୃତ୍ତି ମାତ୍ର; କିନ୍ତୁ ଗାନ୍ଧିଜୀଙ୍କ ଲେଖା ଓ ବକ୍ତୃତାରେ ଏକ ନୂତନ ଜରୁରୀ ପ୍ରୟୋଜନୀୟତାବୋଧ ଓ ଭାବାବେଗ ପ୍ରକାଶ ପାଉଥିଲା । ଆଉ ସେଥି ସଙ୍ଗେ ଥିଲା କର୍ମ ନିମନ୍ତେ ଆହ୍ୱାନ । ଏଥିରେ ସନ୍ଦେହ ନାହିଁ ଯେ ଭାରତର ତାତ୍କାଳିକ ମନୋଭାବ ସେଥିରେ ଅଭିବ୍ୟକ୍ତ ଲଭିଥିଲା । ଜାତୀୟବାଦ ଓ ଆନ୍ତର୍ଜାତୀୟତା ଭିତରୁ ଜାତୀୟବାଦ ପ୍ରମୁଖତ୍ୱ ପ୍ରାପ୍ତ ହୋଇଥିଲା । ତଥାପି ସେହି ଜାତୀୟବାଦ କେତେବେଳେହେଲେ ଆନ୍ତର୍ଜାତୀୟତାର ପରିପନ୍ଥୀ ନଥିଲା ଏବଂ ପ୍ରକୃତପକ୍ଷେ ସମ୍ମାନିତ ତଥା ଫଳପ୍ରଦ ଭାବରେ ସୁଯୋଗ ଲଭିହେଲେ, ସେହି ବୃହତ୍ତର ବିଶ୍ୱ ପ୍ରତି ଅନୁକୂଳ ହେବା ଉଦ୍ଦେଶ୍ୟରେ ମାର୍ଗ ନିମନ୍ତେ ଯଥାସମ୍ଭବ ଉଦ୍ୟମ କରୁଥିଲା । ଉଭୟ ଭିତରେ ସଙ୍ଘାତ ଉପୁଜିବାର ଆବଶ୍ୟକତା ବି ନ ଥିଲା; କାରଣ ୟୁରୋପର ଆକ୍ରମଣଶୀଳ ଜାତୀୟତାର ବିପରୀତ ଭାବରେ ଭାରତୀୟ ଜାତୀୟବାଦ ଅନ୍ୟମାନଙ୍କ ବ୍ୟାପାରରେ ହସ୍ତକ୍ଷେପ କରିବାକୁ ଚାହିଁବା ପରିବର୍ତ୍ତେ ସମସ୍ତଙ୍କ ପକ୍ଷରେ ସୁବିଧାଜନକ ହେବା ଭଳି ଅନ୍ୟମାନଙ୍କ ସଙ୍ଗେ ସହଯୋଗ କରିବାକୁ ଚାହୁଁଥିଲା । ଜାତୀୟ ସ୍ୱାଧୀନତା ସତ୍ତା ଆନ୍ତର୍ଜାତୀୟତାର ଅପରିହାର୍ଯ୍ୟ ଭିତ୍ତି ଭାବରେ

ବିବେଚିତ ହେଉଥିଲା । ଅତଏବ, ଭାରତୀୟ ବିଚାରରେ ଜାତୀୟବାଦ ଥିଲା ଆନ୍ତର୍ଜାତୀୟତାରେ ଉପନୀତ ହେବା ପାଇଁ ଏକମାତ୍ର ପଥ ଏବଂ ଫାଶିଷ୍ଟବାଦ ଓ ନାଜିବାଦ ବିରୁଦ୍ଧରେ ଚାଲିଥିବା ସାର୍ବଜନୀନ ସଂଗ୍ରାମରେ ସହଯୋଗର ପ୍ରକୃତ ଭିତ୍ତିସ୍ୱରୂପ । ଇତିମଧ୍ୟରେ, ସେହି ଆନ୍ତର୍ଜାତୀୟତା ଯାହା ବିଷୟରେ ଏତେ ଆଲୋଚନା ସମାଲୋଚନା ଚାଲିଚି, ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ପୁରାତନ ନୀତି ଭଳି, ଏକ ନୂତନ ( ସେତେଭଳି ନୂତନ ବି ନୁହେଁ ) ପରିଚ୍ଛଦ ଧାରଣ କରି ସନ୍ଦେହାନ ଦୃଷ୍ଟିରେ ଦେଖିବା ଆରମ୍ଭ କଲାଣି । ପ୍ରକୃତପକ୍ଷେ, ଏହା ଥିଲା ଏକ ଆକ୍ରମଣାତ୍ମକ ଜାତୀୟବାଦ ଯାହା ସାମ୍ରାଜ୍ୟ କିମ୍ବା କମନ୍ ୱେଲ୍ଥ କିମ୍ବା ତତ୍ତ୍ୱାବଧାରକ ରାଷ୍ଟ୍ର ନାମରେ ତାର ନିଜ ଇଚ୍ଛା ଅନ୍ୟମାନଙ୍କ ଉପରେ ଲଦି ଦେବାକୁ ଚାହୁଁଥିଲା ।

ପରିସ୍ଥିତିର ଏହି ନୂତନ ଗତି ଆମ୍ଭମାନଙ୍କ ଭିତରୁ କେତେକଙ୍କୁ ଆଲୋଡ଼ିତ କରିଥିଲା; କାରଣ ଯଦି ଫଳପ୍ରଦ ନହୁଏ, ସେପରି କର୍ମ ସମ୍ପୂର୍ଣ୍ଣ ନିରର୍ଥକ ଏବଂ ସେପରି ଫଳପ୍ରଦ କର୍ମ ନିଶ୍ଚିତ ଭାବରେ ଯୁଦ୍ଧ ଉଦ୍ୟମରେ ଅନ୍ତରାୟ ସୃଷ୍ଟି କରିବ, ଆଉ ତାହା ମଧ୍ୟ ସେତିକିବେଳେ ଯେବେ ଭାରତ ଉପରେ ଆକ୍ରମଣର ବିପଦ ଘନାଇ ରହିଚି । ଗାନ୍ଧିଜୀଙ୍କର ସାଧାରଣ ଆଭିମୁଖ୍ୟ ମଧ୍ୟ ଗୁରୁତ୍ୱପୂର୍ଣ୍ଣ କେତେ ଆନ୍ତର୍ଜାତୀୟ ବିଚାରକୁ ଅବଜ୍ଞା କଲାଭଳି ଜଣାଯାଉଥିଲା । ଆହୁରି ମଧ୍ୟ ଜଣାଯାଉଥିଲା ସେହି ଆଭିମୁଖ୍ୟ ଜାତୀୟବାଦର ଏକ ସଙ୍କୀର୍ଣ୍ଣ ଦୃଷ୍ଟିଭଙ୍ଗୀ ଉପରେ ଯେପରି ଭିତ୍ତି କରିଚି । ତିନି ବର୍ଷର ଯୁଦ୍ଧକାଳ ଭିତରେ ଆମେ ସୁଚିନ୍ତିତ ଭାବରେ ସେପରି ଏକ ନୀତି ଅନୁସରଣ କରି ଆସିଥିଲୁ; ଯାହାର ଉଦ୍ଦେଶ୍ୟ ଥିଲା ଯୁଦ୍ଧ ଉଦ୍ୟମକୁ ବିବ୍ରତ ନକରିବା ଏବଂ ଯାହା ସେତେବେଳେ ଆମେ କରିଚୁ ମଧ୍ୟ ତାହା ପ୍ରତୀକ-ପ୍ରତିବାଦଠାରୁ ଅଧିକ କିଛି ନୁହେଁ । ସେହି ପ୍ରତୀକ-ପ୍ରତିବାଦ ଏପରି ବିପୁଳ ଆୟତନ ଧାରଣ କଲା ଯେ ଖ୍ରୀ: ୧୯୪୦-୪୧ ରେ ଆମର ତିରିଶି ହଜାର ନେତୃସ୍ଥାନୀୟ ନରନାରୀ କାରାଗାରକୁ ପ୍ରେରିତ ହେଲେ । ଯେଉଁମାନେ ଜେଲ ବରଣ କଲେ ସେମାନଙ୍କୁ ବ୍ୟକ୍ତିଗତ ଭାବରେ ମନୋନୀତ କରାଯାଇଥିଲା ଏବଂ ତାହା ଯେପରି ଏକ ଗଣଆନ୍ଦୋଳନରେ ପରିଣତ ନହୁଏ, କିମ୍ବା ଶାସନ ପରିଚାଳନାରେ ପ୍ରତ୍ୟକ୍ଷ ଭାବରେ ହସ୍ତକ୍ଷେପ ନକରେ, ସେଥି ନିମନ୍ତେ ସମସ୍ତ ପ୍ରକାର ସତର୍କତା ଅବଲମ୍ବନ କରାଯାଇଥିଲା । ତାର ପୁନରାବୃତ୍ତି ଆମେ କରିପାରିନଥାନ୍ତୁ । ଅନ୍ୟ କିଛି ଯଦି ଆମେ କରିବାକୁ ଯାଉଁ ତାହା ଭିନ୍ନ ଧରଣର ହେବ ଓ ଅଧିକତର ଫଳପ୍ରଦ-ଭାବରେ କରିବା ଅନିବାର୍ଯ୍ୟ ହୋଇପଡ଼ିବ । ଭାରତର ସୀମାନ୍ତରେ ଯୁଦ୍ଧ ଆସି ପହଞ୍ଚି ସାରିଥିଲାବେଳେ ପ୍ରତିରକ୍ଷା ଉଦ୍ୟମରେ ଏହା ଅବଶ୍ୟ ବାଧା ସୃଷ୍ଟିକରିବ ଓ ତାହାହେଲେ ଶତ୍ରୁକୁ ଉତ୍ସାହିତ ନ କରିବ କିପରି ?

ଏସବୁ ଥିଲା ସ୍ପଷ୍ଟ କେତେକ ଅସୁବିଧା ଏବଂ ସବୁ ବିଷୟ ଆମେ ଗାନ୍ଧିଜୀଙ୍କ ସଙ୍ଗେ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା କଲେ ସୁଦ୍ଧା ପରସ୍ପରର ବିଚାରରେ ଅପରିବର୍ତ୍ତିନୀୟ ରହିଲୁ । ନାନା ଅସୁବିଧା ତ ରହିଥିଲା ଏବଂ ଆମେ ନିଷ୍କ୍ରିୟ ରହିଲେ କିମ୍ବା କୌଣସି କର୍ମପନ୍ଥା ଅନୁସରଣ କଲେ ସୁଦ୍ଧା ବିପଦ ଏଡ଼ାଇବାର ପଥ ଥିଲାଭଳି ଜଣାଯାଉନଥିଲା । ଆମର ଆଲୋଚନାରେ ଅନେକ ଅସ୍ପଷ୍ଟ ଓ ଅନିର୍ଦ୍ଦିଷ୍ଟ ବିଚାର ସ୍ପଷ୍ଟ ହେଲା ଏବଂ ଗାନ୍ଧିଜୀଙ୍କ

ଦୃଷ୍ଟିରୁ ସେପରି କେତେକ ଆନ୍ତର୍ଜାତୀୟ ବିଷୟ ଅଣାଗଲା, ଯାହାର ଗୁରୁତ୍ୱ ଗାନ୍ଧିଜୀ ଉପଲବ୍ଧି କଲେ । ତାଙ୍କର ପରବର୍ତ୍ତୀ ରଚନାମାନଙ୍କରେ ପରିବର୍ତ୍ତନ ପରିଲକ୍ଷିତ ହେଲା ଏବଂ ସେ ନିଜେ ସେହି ସବୁ ଆନ୍ତର୍ଜାତିକ ବିଷୟ ଉପରେ ଜୋର୍‌ଦେଲେ ଏବଂ ଭାରତର ସମସ୍ୟାକୁ ଏକ ପ୍ରଶସ୍ତ ପରିପ୍ରେକ୍ଷୀରୁ ଦେଖିଲେ; କିନ୍ତୁ ତାଙ୍କର ମୌଳିକ ଦୃଷ୍ଟିଭଙ୍ଗୀ ସେହିପରି ରହିଲା । ଭାରତରେ ବ୍ରିଟିଶ୍ ସରକାରଙ୍କ ସ୍ୱେଚ୍ଛାଚାରୀ ତଥା ଦମନଶୀଳ ନୀତି ସମ୍ମୁଖରେ ନୀରବ ଓ ନିଶ୍ଚେଷ୍ଟ ରହିବା ପ୍ରତି ତାଙ୍କର ଆପତ୍ତି ଏବଂ ସେହି ନୀତି ବିରୁଦ୍ଧରେ ଫଳପ୍ରଦ ପ୍ରତିବାଦ ସ୍ୱରୂପ କିଛି କରିବା ନିମନ୍ତେ ତାଙ୍କର ତୀବ୍ର ଅଭିଳାଷ ବଳବତ୍ତର ରହିଥିଲା । ତାଙ୍କ ମତରେ ବଶ୍ୟତା ସ୍ୱୀକାର ଅର୍ଥ ଭାରତର ମନୋବଳ ଭାଙ୍ଗିଦେବା ଏବଂ ଯୁଦ୍ଧ ଯେଉଁ ରୂପ ନେଉନା କାହିଁକି ଓ ତାର ପରିଣାମ ଯାହା ହେଉନା କାହିଁକି, ଭାରତର ଲୋକେ କିନ୍ତୁ ଦାସ ଭାବରେ ପଡ଼ିରହିଲେ ବହୁକାଳ ପର୍ଯ୍ୟନ୍ତ ସ୍ୱାଧୀନତା ହାସଲ କରିବା ସେମାନଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିବ । ଏହାର ଆହୁରି ମଧ୍ୟ ଅର୍ଥ ହେବ, ପ୍ରତିରୋଧ ନ କରି ଆକ୍ରମଣକାରୀ ନିକଟରେ ଆତ୍ମସମର୍ପଣ କରିବା ଏବଂ ତାହା ମଧ୍ୟ ଅସ୍ଥାୟୀ ସାମରିକ ପରାଜୟ କିମ୍ବା ସାମୟିକ ପଛଘୁଞ୍ଚା ଦେଖାଦେଲେ । ଏହାର ଅର୍ଥହେବ ଲୋକେ ସମ୍ପୂର୍ଣ୍ଣ ଭାବରେ ଭାଙ୍ଗିପଡ଼ିବା ଏବଂ ସ୍ୱାଧୀନତା ନିମନ୍ତେ ଗତ ପଚିଶ ବର୍ଷର ଅବିରାମ ସଂଗ୍ରାମ ଫଳରେ ଯେଉଁ ବଳ ସେମାନେ ପାଇଚନ୍ତି, ତାହା ହରାଇ ବସିବା । ଏହାର ଅର୍ଥ ହେବ ଯେ ବିଶ୍ୱ ଭାରତର ସ୍ୱାଧୀନତା ଦାବି ଭୁଲିଯିବ ଏବଂ ପରେ ଯାହା ରାଜିନାମା ହେବ ପଛରେ ସେହି ପୁରାତନ ସାମ୍ରାଜ୍ୟବାଦୀ ପ୍ରେରଣା ଓ ଇଚ୍ଛାଭିଳାଷ ପ୍ରଭାବଶାଳୀ ଭାବରେ କାର୍ଯ୍ୟ କରିବ । ଭାରତୀୟ ସ୍ୱାଧୀନତା ପ୍ରତି ତାଙ୍କର ଉତ୍କଣ୍ଠିତ ଆକାଂକ୍ଷା ଓ ଭାବାବେଗ ସମ୍ମୁଖରେ ଭାରତ ତାଙ୍କର ପ୍ରିୟ ମାତୃଭୂମି ଅପେକ୍ଷା ଆହୁରି କିଛି ବଡ଼ ହୋଇ ଉଠିଥିଲା । ଭାରତ ଥିଲା ତାଙ୍କର ଦୃଷ୍ଟିରେ ବିଶ୍ୱର ସମସ୍ତ ଔପନିବେଶିକ ତଥା ଶୋଷିତ ଜାତିମାନଙ୍କର ପ୍ରତୀକ ସ୍ୱରୂପ ଏବଂ ତାର କଷଟିରେ ହିଁ ଯେକେଉଁ ବିଶ୍ୱନୀତି ବିବେଚିତ ହେବା ଅନିବାର୍ଯ୍ୟ । ଭାରତ ଯଦି ପରାଧୀନ ରହେ, ତାହାହେଲେ ଅନ୍ୟାନ୍ୟ ଔପନିବେଶିକ ଦେଶ ଓ ପରାଧୀନ ଜାତିମାନେ ପରାଧୀନ ଅବସ୍ଥାରେ ହିଁ ପଡ଼ିରହିବେ ଏବଂ ଯେଉଁସବୁ ଆଦର୍ଶ ନିମନ୍ତେ ଏହି ବିଶ୍ୱଯୁଦ୍ଧ ଚାଲିଚି, ତାହା ବ୍ୟର୍ଥ ହୋଇଯିବ । ଯୁଦ୍ଧର ନୈତିକ ଭିତ୍ତିରେ ପରିବର୍ତ୍ତନ ଆଣିବା ନିତାନ୍ତ ପ୍ରୟୋଜନୀୟ ଥିଲା । ଜଳ, ସ୍ଥଳ ଓ ଆକାଶବାହିନୀମାନେ ନିଜ ନିଜ କ୍ଷେତ୍ରରେ କର୍ମତତ୍ପର ରହି ଉତ୍କୃଷ୍ଟତର ହିଂସା ଉପାୟରେ ଯୁଦ୍ଧରେ ହୁଏତ ଜୟ-ଲାଭ କରିବେ; କିନ୍ତୁ ସେମାନଙ୍କର ସେହି ବିଜୟ କି ଉଦ୍ଦେଶ୍ୟ ସାଧନ କରିବ ? ସଶସ୍ତ୍ର ସଂଘର୍ଷ ନିମନ୍ତେ ବି ନୈତିକ ବଳର ସାହାଯ୍ୟ ଆବଶ୍ୟକ ହୋଇଥାଏ । ନେପୋଲିଅନ୍ କହିଥିଲେ ଯେ ଯୁଦ୍ଧରେ "ନୈତିକ ଓ ଭୌତିକ ବଳର ଅନୁପାତ ହେଉଚି ତିନିରେ ଏକ ।" ସମଗ୍ର ବିଶ୍ୱରେ କୋଟି କୋଟି ପରାଧୀନ ତଥା ଶୋଷିତ ଲୋକଙ୍କର ଏହି ଭରସା ଓ ବିଶ୍ୱାସ ଅଛି ଯେ ଏହି ଯୁଦ୍ଧ ପ୍ରକୃତରେ ସେମାନଙ୍କର ମୁକ୍ତି ଯୁଦ୍ଧ ଏବଂ କେତେ ଦୂରଦର୍ଶିତାର ଦୃଷ୍ଟିରୁ ଦେଖିଲେ ସୁଦ୍ଧା ଏହି ଯୁଦ୍ଧର ମହତ୍ତ୍ୱ ଅପରିସୀମ ଏବଂ ସେହି ମହତ୍ତ୍ୱ

ଯୁଦ୍ଧ ପରବର୍ତ୍ତୀ ଶାନ୍ତିକାଳରେ ଆହୁରି ଉଜ୍ଜ୍ୱଳତର ହେବ । ଏହି ବିଶ୍ୱର ଥିଲା ନୈତିକ ଭିତ୍ତି ଉପରେ ପ୍ରତିଷ୍ଠିତ । ଯୁଦ୍ଧର ଗତିରେ ଗୋଟାଏ ସଙ୍କଟ ଯେ ଦେଖା ଦେଇଛି ,ସେଥିରୁ ପ୍ରମାଣିତ ହେଉଛି ଦୃଷ୍ଟିଭଙ୍ଗୀ ଓ ନୀତିରେ ପରିବର୍ତ୍ତନର ଆବଶ୍ୟକତା ଏବଂ ଏହିସବୁ କୋଟି କୋଟି ବିପର୍ଯ୍ୟ ତଥା ଦ୍ୱିଧାଗ୍ରସ୍ତ ଲୋକଙ୍କୁ ଆଗ୍ରହଶୀଳ ସମର୍ଥକରେ ରୂପାନ୍ତରିତ କରିବା । କେତେ ଦୁଃସାଧ୍ୟ ଓ ଅସାଧାରଣ ହେଲେ ସୁଦ୍ଧା ଏହା ଯଦି କରାଯାଇପାରେ ତାହାହେଲେ ଅକ୍ଷ-ଶକ୍ତିବର୍ଗଙ୍କ ସମସ୍ତ ସାମରିକ ବଳ ବିଫଳ ହେବ ଏବଂ ସେମାନଙ୍କର ପରାଜୟ ନିଶ୍ଚିତ ହୋଇ ଉଠିବ । ଅକ୍ଷ-ଶକ୍ତିବର୍ଗଙ୍କ ଅଧିକୃତ ଦେଶମାନଙ୍କରେ ମଧ୍ୟ ବହୁ ଲୋକେ ଏହି ଶକ୍ତିଶାଳୀ ବିଶ୍ୱବ୍ୟାପୀ ଭାବନାରେ ପ୍ରଭାବିତ ହେବେ ।

ଭାରତରେ ଜନସାଧାରଣଙ୍କର ବିପର୍ଯ୍ୟ ମନସ୍ଥିତିକୁ ଏକ ଅନମନୀୟ ଆତ୍ମାଭିମାନରେ ରୂପାନ୍ତରିତ କରି ସେମାନଙ୍କୁ ପ୍ରତିରୋଧପରାୟଣ କରିବା ଆବଶ୍ୟକ । ବ୍ରିଟିଶ୍ ହାକିମମାନଙ୍କ ମନୋମୁଖୀ କାରବାର ବିରୁଦ୍ଧରେ ମସ୍ତକ ଉନ୍ନତ କରି ଦଣ୍ଡାୟମାନ ହେବାରେ ଏହାର ଶୁଭ ପଡ଼ିବ; କିନ୍ତୁ ଏହି ମନୋବୃତ୍ତିକୁ ଯେକୌଣସି ଆକ୍ରମଣକାରୀ ବିରୁଦ୍ଧରେ ପ୍ରତିରୋଧ ସଂଗଠନ କରିବା ଦିଗରେ ଫଳପ୍ରଦ ଭାବରେ ବ୍ୟବହାର କରାଯାଇପାରିବ । ଜଣକ ନିକଟରେ ବଶ୍ୟତା ସ୍ୱୀକାର କଲେ ଓ ଜଣକର ଦାସତ୍ୱ ଭାଗ୍ୟ କରି ମାନିନେଲେ ଅନ୍ୟ ନିକଟରେ ମଧ୍ୟ ସେହି ମନୋଭାବ ଓ ଆଚରଣ ଠିକ୍ ସେପରି ଭାବରେ କାର୍ଯ୍ୟ କରିବ ଏବଂ ଏପରି ଭାବରେ ଲାଞ୍ଛନା ଓ ଅଧଃପତନ ନିମନ୍ତେ ମାର୍ଗ ଉନ୍ମୁକ୍ତ ରହିବ ।

ଏହିସବୁ ମୁକ୍ତି ସଙ୍ଗେ ଆମେ ପରିଚିତ ଥିଲୁ । ଏସବୁ ଉପରେ ଆମର ବିଶ୍ୱାସ ଥିଲା ଏବଂ ଆମେ ଏସବୁ ପ୍ରୟୋଗ ବି କରୁଥିଲୁ; କିନ୍ତୁ ଦୁର୍ଭାଗ୍ୟର କଥା, ବ୍ରିଟିଶ୍ ସରକାରଙ୍କ ନୀତି ସେହି ଅଲୌକିକ କାର୍ଯ୍ୟ ସମ୍ପାଦନ କରିବା ନିମନ୍ତେ ପଥ ଦେଉନଥିଲା । ଅସ୍ଥାୟୀଭାବରେ ପଛେ ହେଉ ଯୁଦ୍ଧ ଚାଲିଥିଲା ସମୟରେ ଭାରତୀୟ ସମସ୍ୟାର ସମାଧାନ ଦିଗରେ ଆମର ସମସ୍ତ ଉଦ୍ୟମ ବିଫଳ ହୋଇଥିଲା ଏବଂ ଯୁଦ୍ଧର ଲକ୍ଷ୍ୟ ଘୋଷଣା ନିମନ୍ତେ ଆମର ସମସ୍ତ ଅନୁରୋଧ ପ୍ରତ୍ୟାଖ୍ୟାନ କରାଯାଇଥିଲା । ଏଥିରେ ସନ୍ଦେହ ନାହିଁ, ସେ ଦିଗରେ ପୁଣି ଉଦ୍ୟମ କଲେ ତାହା ମଧ୍ୟ ବ୍ୟର୍ଥ ହୁଅନ୍ତା । କ'ଣ ତେବେ ? ଯଦି ସଂଘର୍ଷ ହିଁ ଅନିବାର୍ଯ୍ୟ, ନୈତିକତା ଦିଗରୁ କିମ୍ବା ଅନ୍ୟ ଯେକୌଣସି ଦିଗରୁ ତାର ଯଥାର୍ଥତା ରହିଥିଲେ ସୁଦ୍ଧା, ଏଥିରେ ସନ୍ଦେହ ନାହିଁ ଯେ ସଶସ୍ତ୍ର ଅଭିଯାନର ବିପଦ ଆସନ୍ନ ମନେ ହେଉଥିବାବେଳେ ଯୁଦ୍ଧ ଉଦ୍ୟମରେ ନିଶ୍ଚିତ ଭାବରେ ଯାହା ଅସୁବିଧା ସୃଷ୍ଟି କରିବ । ଏ ସତ୍ୟକୁ ଅସ୍ୱୀକାର କରିବାର ଉପାୟ ନଥିଲା । ତଥାପି କଡ଼ ବିଚାର ଯେ ସେହି ବିପଦ ହିଁ ଆମ ମନରେ ଏହି ଦ୍ୱନ୍ଦ୍ୱ ସୃଷ୍ଟି କରିଥିଲା; କାରଣ ଆମେ ତାର ନୀରବ ଦ୍ରଷ୍ଟା ଭାବରେ ରହିପାରି ନଥାନ୍ତୁ ଏବଂ ପରିସ୍ଥିତିର ଦାବି ଅନୁସାରେ ଗୋଟିଏ ଜାତିର ଶତ୍ରୁକୁ ପ୍ରତିରୋଧ କରିବା ଓ ଭାର ବହନ କରିବା ନିମନ୍ତେ ଯେଉଁମାନଙ୍କୁ ଆମେ ସମ୍ପୂର୍ଣ୍ଣ ଅସମର୍ଥ ଓ ଅଦକ୍ଷ ମଣୁଥିଲୁ ସେମାନେ ଆମ ଦେଶର ସର୍ବନାଶ କରିବାକୁ ଯିବା ଆମେ ବରଦାସ୍ତ କରନ୍ତୁ କିପରି ? ଆମର ସମସ୍ତ ରୁଦ୍ଧ ଭାବାବେଗ ଓ ଶକ୍ତି ଖୋଜୁଥିଲା ଏକ ନିର୍ଗମ-ପଥ; ଏକ କର୍ମପନ୍ଥା ।

ଗାନ୍ଧିଜୀଙ୍କ ବୟସ ସତୁରି ପାର ହୋଇଥିଲା । ବିରାମହୀନ କର୍ମଜଞ୍ଜାଳ, ଶାରୀରିକ ଓ ମାନସିକ କଠିନ ପରିଶ୍ରମର ଏକ ଦୀର୍ଘ ଜୀବନ ତାଙ୍କ ଶରୀରକୁ କ୍ଷୀଣ କରିସାରିଥିଲା । ତଥାପି 'ସେ ଓଜସ୍ୱୀ ଓ ତେଜସ୍ୱୀ ଥିଲେ ଏବଂ ସେ ଅନୁଭବ କରୁଥିଲେ ଯେ ତାଙ୍କର ଜୀବନର ସମସ୍ତ କିଛି କର୍ମ ବ୍ୟର୍ଥ ହୋଇଯିବ ଯଦି ତାତ୍କାଳିକ ପରିସ୍ଥିତି ନିକଟରେ ସେ ଆତ୍ମସମର୍ପଣ କରିବସନ୍ତି । ଅତଏବ, ଯେଉଁଥିପାଇଁ ସେ ସମଗ୍ର ଜୀବନ ଉତ୍ସର୍ଗ କରିଚନ୍ତି, ସେଥି ଉଦ୍ଦେଶ୍ୟରେ ତାଙ୍କୁ ଅବଶ୍ୟ କିଛି କରିବାକୁ ପଡ଼ିବ । ଅହିଂସା ଉପରେ ତାଙ୍କର ଅଟଳ ବିଶ୍ୱାସ ସତ୍ତ୍ୱେ ଭାରତର ସ୍ୱାଧୀନତା ପ୍ରତି ଏବଂ ପୃଥିବୀର ସମସ୍ତ ଜାତି ଓ ଜନସାଧାରଣଙ୍କ ପ୍ରତି ତାଙ୍କର ଅନୁରକ୍ତି ଶେଷରେ ଅଗ୍ରାଧିକାର ଲଭିକଲା । ଏଥିପୂର୍ବେ ଦେଶର ପ୍ରତିରକ୍ଷା ସଂକ୍ରାନ୍ତରେ ଏବଂ ଜରୁରୀ ପରିସ୍ଥିତିର ଗୃହ୍ୱଦା ପ୍ରକାରେ ଅହିଂସା ନୀତି ଉପରେ ଅଟଳ ନରହିବା ପାଇଁ ସେ କଂଗ୍ରେସକୁ ବଡ଼ ଅନିଚ୍ଛୁକ ଓ କୁଣ୍ଠିତ ଭାବରେ ସମ୍ମତି ଦେଇଥିଲେ; କିନ୍ତୁ ସେ ନିଜେ ସେଥିରୁ ଅଲଗାହୋଇ ରହିଥିଲେ । ସେ ଉପଲବ୍ଧି କଲେ ଯେ ଏ ସଂକ୍ରାନ୍ତରେ ତାଙ୍କର ଉଦାସୀନ ମନୋଭାବ ବ୍ରିଟେନ୍ ଓ ଜାତିସଙ୍ଘ ସଙ୍ଗେ ବୁଝାମଣା କରିବାରେ ହୁଏତ ଅନ୍ତରାୟ ସୃଷ୍ଟି କରିପାରେ । ଅତଏବ, ନିଜେ ଆଗେଇ ଯାଇ କଂଗ୍ରେସରେ ସେ ଯେଉଁ ପ୍ରସ୍ତାବ ଆଗତ କଲେ ସେଥିରେ ଘୋଷଣା କରାଗଲା ଯେ ସ୍ୱାଧୀନ ଭାରତର ଅସ୍ଥାୟୀ ସରକାରଙ୍କ ପ୍ରଥମ ତଥା ପ୍ରଧାନ କର୍ତ୍ତବ୍ୟ ହେବ ମୁକ୍ତ ସଂଗ୍ରାମରେ ଓ ଆକ୍ରମଣ ବିରୁଦ୍ଧରେ ଦେଶର ସମସ୍ତ ସମ୍ବଳ ବିନିଯୋଗ କରିବା ଏବଂ ସାମରିକ ତଥା ଅନ୍ୟ ସମସ୍ତ ପ୍ରକାର ଶକ୍ତି ଖଟାଇ ଭାରତର ପ୍ରତିରକ୍ଷାରେ ମିଳିତ ଜାତିସଙ୍ଘ ସଙ୍ଗେ ପୂର୍ଣ୍ଣପ୍ରାଣରେ ସହଯୋଗ କରିବା । ଏପରି ଭାବରେ ନିଜର ଅଙ୍ଗୀକାର ଜ୍ଞାପନକରିବା ତାଙ୍କ ପକ୍ଷରେ କିଛି ସହଜ କଥା ନଥିଲା । ତଥାପି, ସେ ନିଜକୁ ସମ୍ଭାଳି ନେଲେ; କାରଣ କିଛି ଗୋଟାଏ ବୁଝାମଣା ହେଉ ଏବଂ ଗୋଟିଏ ସ୍ୱାଧୀନ ଦେଶ ଭାବରେ ଭାରତ ଆକ୍ରମଣର ପ୍ରତିରୋଧ କରୁ—ତାଙ୍କର ଏ ଆକାଂକ୍ଷା ଅନ୍ୟସବୁ କିଛି ବିଚାରକୁ ପଛକୁ ଠେଲିଦେଇଥିଲା ।

ତତ୍ତ୍ୱ ଦିଗରୁ ଓ ଅନ୍ୟାନ୍ୟ ଦିଗରୁ ମଧ୍ୟ ଯେଉଁ ମତପାର୍ଥକ୍ୟ ବହୁଧା ଆମକୁ ଗାନ୍ଧିଜୀଙ୍କ ପାଖରୁ ଅଲଗା କରୁଥିଲା, ତାହା ଉଭାଇଗଲା । ତଥାପି, ଆହୁରି ଏକ ବଡ଼ ଅସୁବିଧା ରହି-ଥିଲା । ତାହା ହେଉଛି, ଆମେ ଯାହା କିଛି କଲେ ହେଲେ ପୂର୍ବ ଉଦ୍ୟମରେ ଅସୁବିଧା ସୃଷ୍ଟିହେବ । ବ୍ରିଟିଶ୍ ସରକାରଙ୍କ ସଙ୍ଗେ ବୁଝାମଣା ହୋଇ ପାରିବ ବୋଲି ଗାନ୍ଧିଜୀ ଯେପରି ବିଶ୍ୱାସ କରୁଥିଲେ, ସେଥିରେ ଆମେ ବିସ୍ମିତ ହୋଇଥିଲୁ । ଖାଲି ସେତିକି ନୁହେଁ ସେ ଅଧିକ ମଧ୍ୟ କହିଲେ ଯେ ବୁଝାମଣା ନିମନ୍ତେ ସେ ତାଙ୍କର ଯାବୁସାଧ୍ୟ ଚେଷ୍ଟା କରିବେ । ଅତଏବ, କର୍ମ ସମ୍ପର୍କରେ କହୁତ କିଛି ସେ କହିଲେ ମଧ୍ୟ ସେ କର୍ମର ସଙ୍ଗା ନିରୂପଣ କରୁ ନଥିଲେ କିମ୍ବା କ'ଣ ସେ କରିବାକୁ ଚାହାନ୍ତି, ତାର ସୂଚନା ବି ଦେଉ ନଥିଲେ ।

ଆମେ ଏପରି ଭାବରେ ଦ୍ୱନ୍ଦ୍ୱ ଓ ବିତର୍କ ଭିତରେ ପଡ଼ିଥିଲାବେଳେ ଦେଶର ମାନସିକ ଅବସ୍ଥା ପରିବର୍ତ୍ତିତ ହେଉଥିଲା ଏବଂ ଅବସନ୍ନତା ଓ ଉଦାସୀନତା ଭିତରୁ ଉଠି ତାହା

ଗଭୀର ଉତ୍ତେଜନା ଓ ପ୍ରବଳ ପ୍ରତ୍ୟାଶାରେ ପର୍ଯ୍ୟବସିତ ହେଲା । କଂଗ୍ରେସ ପ୍ରସ୍ତାବ ଗ୍ରହଣ କରିବ ବୋଲି କମ୍ପା ନିଷ୍ପତ୍ତି ନେବ ବୋଲି ଘଟଣାର ପ୍ରବାହ ଅଟକି ରହି ନଥାନ୍ତା । ଗାନ୍ଧିଜୀଙ୍କ ବାଣୀ ସେଥି ନିମନ୍ତେ ପଥ ଉନ୍ମୁକ୍ତ କରିଥିଲା ଏବଂ ବର୍ତ୍ତମାନ ତାହା ନିଜର ଗତିରୁ ବେଗ ସଂଗ୍ରହ କରି ବହି ଚାଲିଥିଲା । ଆମ ସମସ୍ତଙ୍କ ଆଗରେ ଏକଥା ସ୍ପଷ୍ଟ ହୋଇ ଉଠିଲା ଯେ ଗାନ୍ଧିଜୀ, ଭୁଲ୍ କରିଥାନ୍ତୁ କି ଠିକ୍ କରିଥାନ୍ତୁ, ଜନସାଧାରଣଙ୍କର ସେ ସମୟର ମିଜାଜକୁ କିନ୍ତୁ ରୂପାୟିତ କରିପାରିଛନ୍ତି । ସେଥିରେ ଏକ ପ୍ରକାର ମତ୍ତତା ଓ ଭାଗବତ ପ୍ରେରଣା ରହିଥିଲା, ଯାହା ଯୁକ୍ତିସଙ୍ଗତ ବିଚାର ଓ ଶାନ୍ତ ମସ୍ତିଷ୍କରେ କର୍ମର ପରିଣାମ ବିବେଚନା ନିମନ୍ତେ ପ୍ରଥମ ସ୍ଥାନ ରଖିନଥିଲା । ସେ ସବୁ ପରିଣାମର ଗୁରୁତ୍ୱ ବୁଝି ହେଉ ନଥିଲା ବୋଲି ନୁହେଁ । ବେଶ୍ ବୁଝି ହେଉଥିଲା ଯେ କିଛି ହାସଲ ହେଉ କି ନହେଉ, ମାନବିକ ଦୁଃଖ ଦୁର୍ଦ୍ଦଶା ଆକାରରେ କିନ୍ତୁ ଆମକୁ ବଡ଼ ଭାରି ଦାମ ଦେବାକୁ ପଡ଼ିବ; କିନ୍ତୁ ମନର ଦ୍ୱନ୍ଦ୍ୱ ଆକାରରେ ପ୍ରତିଦିନ ଓ ପ୍ରତି ମୁହୂର୍ତ୍ତରେ ଯେଉଁ ଦାମ୍ ଦେବାକୁ ପଡ଼ୁଥିଲା; ତାହା ମଧ୍ୟ ସାମାନ୍ୟ ନୁହେଁ ଏବଂ ସେଥିରୁ ରକ୍ଷା ପାଇବାର କୌଣସି ସମ୍ଭାବନା ବି ନଥିଲା । ଗୋଟାଏ ମନ୍ଦଭାଗ୍ୟ ହାତର କ୍ରୀଡ଼ନକ ହେବା ପରିବର୍ତ୍ତେ କର୍ମର ଅଜ୍ଞାତ ସମୁଦ୍ର ଭିତରକୁ ଲମ୍ଫ ଦେଇ କିଛି କରିବା ବରଂ ଭଲ । କୌଣସି ରାଜନୀତିଜ୍ଞ ଏପରି ଏକ ଅଭିମୁଖ୍ୟ ପସନ୍ଦ କରି ନପାରେ; କିନ୍ତୁ ଏହା ଥିଲା ସେହି ଜାତିର ଅଭିମୁଖ୍ୟ ଯେଉଁ ଜାତି ଏକ ରକମ ହତାହତ ଜ୍ଞାନ ହରାଇ ସାରିଥିଲା । ତଥାପି ପୁଣି ଯୁକ୍ତିର ନିଜସ୍ୱ ପ୍ରଭାବ ଥିଲା । ପରସ୍ପର ବିରୋଧୀ ଭାବନା ଭିତରେ ଏକ ମଧ୍ୟମ ପନ୍ଥା ବାହାର କରିବାର ପ୍ରୟାସ ଥିଲା । ମାନବିକ ଚରିତ୍ରର ମୌଳିକ ବସ୍ତୁ ଅସଙ୍ଗତି ଭିତରେ ସଙ୍ଗତି ରକ୍ଷାକରିବାର ଆତୁରତା ଥିଲା । ଯୁଦ୍ଧର ଗତିରୁ ବୁଝା ଯାଉଥିଲା, ତାହା ଶୀଘ୍ର ଶେଷହେବାର ନୁହେଁ । ବହୁ ବର୍ଷ ଧରି ହୁଏତ ଚାଲିପାରେ । ଏତେବେଳକୁ ବହୁ ବିପର୍ଯ୍ୟୟ ଘଟି ଗଲାଣି ଓ ଆହୁରି ଘଟିବାର ଅବକାଶ ବି ରହିଛି; ତଥାପି, ଯେତେ ବିପର୍ଯ୍ୟୟ ସତ୍ତ୍ୱେ ଏହି ଯୁଦ୍ଧ ସେ ପର୍ଯ୍ୟନ୍ତ ଅବଶ୍ୟ ଚାଲିବ, ଯେ ପର୍ଯ୍ୟନ୍ତ ଯେଉଁସବୁ ଆବେଗ ଏ ଯୁଦ୍ଧ ଭିଆଇଲା, ତାହା ଶାନ୍ତ ନହୋଇଛି ଏବଂ ଯୁଦ୍ଧ ଯେଉଁ ସବୁ ଆବେଗକୁ ଉତ୍ସାହିତ କରିଛି, ତାହା ମଧ୍ୟ ଶାନ୍ତ ନହୋଇଛି । ଏଥିରୁ ଅଧାଅଧି ସଫଳତା ବୋଲି କିଛି ହେବା ଉଚିତ ନୁହେଁ । କାରଣ ଯାହା ଅଧାଅଧି ସଫଳତା ବୋଲି ବିବେଚିତ ହୁଏ ତାହା ବହୁଧା ବିଫଳତା ଅପେକ୍ଷା ଅଧିକତର ଯନ୍ତ୍ରଣାଦାୟକ । ଯୁଦ୍ଧର ଗତି କେବଳ ସାମରିକ କ୍ଷେତ୍ରରେ ଯେ ବେଗବତୀ ହେଉଛି, ତାହା ନୁହେଁ ବରଂ ତା'ଠାରୁ ବି ଅଧିକ ଭଲ. ଗତି ସେହି ସବୁ ମୌଳିକ ଉଦ୍ଦେଶ୍ୟରେ ପରିଲକ୍ଷିତ ହେଉଛି, ଯେଉଁଥିପାଇଁ ଏ ଯୁଦ୍ଧ ଲାଗିଛି ବୋଲି ବାରମ୍ବାର ଘୋଷଣା କରାଯାଉଛି । ଆମେ ଯେଉଁ କର୍ମପନ୍ଥା ଗ୍ରହଣ କରିବୁ ତାହା ହୁଏତ ସେହି ମୌଳିକ ଉଦ୍ଦେଶ୍ୟ ସମୂହର ଅଧୋଗତି ପ୍ରତି ବଳପୂର୍ବକ ବିଶ୍ୱର ଦୃଷ୍ଟି ଆକର୍ଷଣ କରିବ ଏବଂ ଏକ ନୂତନ ତଥା ବାଞ୍ଛିତ ଦିଗ ଅନୁସରଣ କରିବା ନିମନ୍ତେ ସହାୟକ ହେବ । ହଠାତ୍ କୌଣସି ସଫଳତା ଲାଭ ନହେଲେ ପୁଣି ହୁଏତ ପରିଶେଷରେ ସେହି ସବୁ ଉଦ୍ଦେଶ୍ୟର ସଫଳତା ନିଶ୍ଚିତ କରିବ ଏବଂ ଏପରି ଭାବରେ ଭବିଷ୍ୟତର

ସାମରିକ କର୍ମ ନିମନ୍ତେ ମଧ୍ୟ ଶକ୍ତିଶାଳୀ ସମର୍ଥନ ଯୋଗାଇବ ।

ଗୋଟାଏ ଦିଗରେ ଲୋକଙ୍କର ମିଜାଜ ଯେତେ ଚଢ଼ୁଥିଲା, ଅନ୍ୟ ଦିଗରେ ସରକାରଙ୍କ ମିଜାଜ ମଧ୍ୟ ଅନୁରୂପ ଭାବରେ ଚଢ଼ୁଥିଲା । ଏଥି ନିମନ୍ତେ କୌଣସି ଭାବପ୍ରବଣତା କିମ୍ବା ଅନ୍ୟ ପ୍ରେରଣାର ଆବଶ୍ୟକତା ନଥିଲା; କାରଣ ଚଢ଼ା ମିଜାଜ ଥିଲା ସରକାରଙ୍କର ସ୍ୱାଭାବିକ ମିଜାଜ ଓ ସ୍ୱାଭାବିକ କର୍ମାନୁସରଣର ଦ୍ୟୋତକ । ସାଧାରଣତଃ ଗୋଟାଏ ବିଦେଶୀ ପ୍ରଭୁତ୍ୱ ତାର ଅଧୀନ ରାଜ୍ୟରେ ଯେପରି ଆଚରଣ କରିଥାଏ । ସରକାର ମନେ ମନେ ଏ ସୁଯୋଗକୁ ସ୍ୱାଗତ କରିଥିଲେ ଏବଂ ଭାରତରେ ଯେଉଁମାନେ ତାଙ୍କର ଇଚ୍ଛା ବିରୁଦ୍ଧରେ ସ୍ୱର ତୋଳିଆନ୍ତି, ଏଥର ସେମାନଙ୍କୁ ସବୁଦିନ ପାଇଁ ନୀରବ କରିଦେବା ଲାଗି ବଦ୍ଧପରିକର ହେଲେ ଏବଂ ତଦନୁରୂପ ପ୍ରସ୍ତୁତ କରିବାକୁ ଲାଗିଲେ ।

ଘଟଣା ପରେ ଘଟଣା ଘଟି ଚାଲିଲା । ତେବେ ବି, ବିଚିତ୍ର କଥା, ଗାନ୍ଧିଜୀ ଭାରତର ସମ୍ମାନ ବଜାୟ ରଖିବାପାଇଁ ଓ ସ୍ୱାଧୀନତା ନିମନ୍ତେ ତାର ଅଧିକାର ଦୃଢ଼ଭାବରେ ସାବ୍ୟସ୍ତ କରିବାପାଇଁ ଏବଂ ଏକ ସ୍ୱାଧୀନ ଦେଶ ଭାବରେ ଆକ୍ରମଣର ପ୍ରତିରୋଧ କରିବା ଦିଗରେ ପୂର୍ଣ୍ଣ ସହଯୋଗ କରିବାପାଇଁ ଅତୀତରେ କର୍ମ ସମ୍ପର୍କରେ ବହୁତ କିଛି କହିଥିଲେ ସୁଦ୍ଧା ସେହି କର୍ମର ପ୍ରକୃତ ସମ୍ପର୍କରେ କିଛି କହିଲେ ନାହିଁ । ସେ କର୍ମ ଶାନ୍ତିପୂର୍ଣ୍ଣ ହେବା ଆବଶ୍ୟକ, ସନ୍ଦେହ ନାହିଁ; କିନ୍ତୁ ଅଧିକ କିଛି କହିବାର ଅବକାଶ କ'ଣ କିଛି ନାହିଁ ? ବ୍ରିଟିଶ ସରକାରଙ୍କ ସଙ୍ଗେ ରାଜିନାମା ହେବାର ସମ୍ଭାବନା ଉପରେ ସେ ଅଧିକତର ଜୋର ଦେବା ଆରମ୍ଭକଲେ । ସେ ଅଧିକନ୍ତୁ ମଧ୍ୟ ପ୍ରକାଶ କଲେ ଯେ ସେ ପୁଣି କଥାବାର୍ତ୍ତା ଆରମ୍ଭ କରିବେ ଏବଂ ଗୋଟାଏ କିଛି ବାଟ ବାହାରକରିବା ପାଇଁ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରିବେ । ଅଖିଳ ଭାରତୀୟ କଂଗ୍ରେସ କମିଟିରେ ତାଙ୍କର ଶେଷ ବକ୍ତୃତାରେ ରାଜିନାମା ନିମନ୍ତେ ତାଙ୍କର ଐକାନ୍ତିକ ଅଭିଳାଷ ବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ସେଥି ଉଦ୍ଦେଶ୍ୟରେ ସେ ଭାଇସ୍‌ରୟଙ୍କ ସଙ୍ଗେ ସାକ୍ଷାତ କରିବାପାଇଁ ସିଦ୍ଧାନ୍ତ କରିଚନ୍ତି ବୋଲି ପ୍ରକାଶ କଲେ । ବାହାରେ ହେଉ କିମ୍ବା କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକମାନଙ୍କରେ ହେଉ, ନିସ୍ତାର ପ୍ରକୃତ ସମ୍ପର୍କରେ ତାଙ୍କର ମନରେ ଯାହାଥିଲା; ତାହାର ସୂଚନା କେବଳ ଗୋଟିଏ ଅବସର ଛଡ଼ା ଅନ୍ୟ କୌଣସି ଅବସରରେ କେବେ ସେ ଦେଇନଥିଲେ । ଥରେ ସେ ଗୋପନରେ ସୂଚିତ କରିଥିଲେ ଯେ ସରକାରଙ୍କ ସଙ୍ଗେ ଆଲୋଚନା ବିଫଳ ହେଲେ, ପ୍ରତିବାଦ ସ୍ୱରୂପ ଗୋଟାଏ ଦିନ ହରତାଳ କରି ଦେଶସାରା ସମସ୍ତ କାମଦାମ ବନ୍ଦକରିବା ପାଇଁ ଜନସାଧାରଣଙ୍କୁ ସେ ନିବେଦନ କରିବେ । ଏ ପ୍ରକାର ଅସହଯୋଗ ହେବ ଗୋଟାଏ ଜାତିର ପ୍ରତିବାଦର ପ୍ରତୀକ । ଏହା ମଧ୍ୟ ଥିଲା ଏକ ଅସ୍ପଷ୍ଟ ସୂଚନା; ମାତ୍ର ଯାହାର ରୂପରେଖ ସେ ପ୍ରକାଶ କରିନଥିଲେ; କାରଣ ରାଜିନାମା ନିମନ୍ତେ ତାଙ୍କର ଉଦ୍ୟମ ଆରମ୍ଭହେବା ପୂର୍ବରୁ ଅଧିକ କିଛି ଯୋଜନା କରିବାପାଇଁ ସେ ଚାହୁଁନଥିଲେ । ଅତଏବ, ସେ କିମ୍ବା କଂଗ୍ରେସ କାର୍ଯ୍ୟକାରୀ କମିଟି, ପ୍ରକାଶ୍ୟ ଭାବରେ ହେଉ କି ଗୋପନରେ ହେଉ, କୌଣସି ନିର୍ଦ୍ଦେଶ ଜାରି କରିନଥିଲେ । ଏତିକବେଳେ ଲୋକଙ୍କୁ କୁହାଯାଉଥିଲା ଯେ ସେମାନେ

ସବୁକିଛୁ ଅବସର ନିମନ୍ତେ ପ୍ରସ୍ତୁତ ରହିଲୁ ଏବଂ ଯେକେଉଁ ଅବସ୍ଥାରେ ସୁଦ୍ଧା ଶାନ୍ତିପୂର୍ଣ୍ଣ ନୀତି ଓ ଅହିଂସା କର୍ମର ପନ୍ଥାରୁ ବିଚ୍ୟୁତ ହୋଇନାହିଁ ।

ସେହି ଅଚଳ ଅବସ୍ଥାରୁ କୌଣସି ଭାବରେ ହେଲେ ଗୋଟାଏ ମାର୍ଗ ଉନ୍ମୁକ୍ତ କରିବା ପାଇଁ ଗାନ୍ଧିଜୀ ସବଦିଓ ଆହୁରି ଆଶା ରଖିଥିଲେ, ସେ ଆଶାର ମଧୁର ଭାଷା ଅନେକେ କିନ୍ତୁ ଶୁଣିପାରୁନଥିଲେ । ଘଟଣାର ଧାରା ଓ ପରିସ୍ଥିତିର ପ୍ରକୃତ ଅନିବାର୍ଯ୍ୟ ଏକ ସଙ୍ଘର୍ଷ ପ୍ରତି ସଂକେତ କରୁଥିଲା । ସେ ଅବସ୍ଥାରେ ଥରେ ଉପନୀତ ହେବା ପରେ ସମସ୍ତ କିଛୁ ମଧ୍ୟ ସ୍ଥିତିର ମହତ୍ତ୍ୱ ଲୁପ୍ତ ହୁଏ ଏବଂ ପ୍ରତ୍ୟେକ ବ୍ୟକ୍ତିକୁ ସ୍ଥିର କରିନେବାକୁ ପଡ଼େ, ସେ କେଉଁ ପକ୍ଷରେ ରହିବ । କଂଗ୍ରେସଲୋକଙ୍କ ପାଇଁ ଏବଂ କଂଗ୍ରେସ ସଙ୍ଗେ ଏକମତ ଅନ୍ୟମାନଙ୍କ ପାଇଁ ବସ୍ତୁବିଚାରର ପ୍ରଶ୍ନ ନଥିଲା । ଗୋଟାଏ ଦୁର୍ଦ୍ଦାନ୍ତ ସରକାର ତା'ର ସମସ୍ତ ଶକ୍ତି ନିୟୋଜିତ କରି ଆମ ଲୋକଙ୍କୁ ପଦଦଳିତ କରିବାର ଉଦ୍ୟମ କରିବ ଆଉ ଆମେ, ଭାରତର ସ୍ୱାଧୀନତା ସଙ୍ଗେ ସଂପର୍କିତ ଏକ ସଂଘର୍ଷ କାଳରେ, ନୀରବ ତଥା ନିଶ୍ଚେଷ୍ଟ ଦ୍ରଷ୍ଟା ଭାବରେ ରହିଥିବୁ—ଏକଥା ଆମର ଧାରଣାର ଅତୀତ ଥିଲା । ଅନେକେ ଅବଶ୍ୟ ସେମାନଙ୍କର ମହାନୁଭୂତି ସତ୍ତ୍ୱେ ଦୂରେଇ ରହିଥାନ୍ତି; କିନ୍ତୁ ଜଣେ ସୁବିଦିତ କଂଗ୍ରେସଲୋକ ପକ୍ଷରେ ତାର ପୂର୍ବ କର୍ମଫଳରୁ ନିଜକୁ ରକ୍ଷାକରିବା ପାଇଁ ସେ ପ୍ରକାର ଉଦ୍ୟମ କରିବା ନିତାନ୍ତ ଲଜ୍ଜାକର ଓ ସମ୍ମାନ ହାନିକର ହୋଇନ୍ତା । ଏପରି ନହେଲେ ବି ଅନ୍ୟ କେଉଁ ପନ୍ଥା ଅନୁସରଣ କରିବାର ଉପାୟ ସେମାନଙ୍କର ନଥିଲା । ଭାରତର ସମଗ୍ର ଅତୀତ ଇତିହାସ ସେମାନଙ୍କ ପଛରେ ଗୋଡ଼ାଇଥିଲା ଏବଂ ବର୍ତ୍ତମାନର ଦାରୁଣ ଯନ୍ତ୍ରଣାର ତାଡ଼ନା ଓ ଭବିଷ୍ୟତର ଆଶା ସେମାନଙ୍କୁ ଆଗକୁ ଟାଣି ନେଉଥିଲା ଓ ସେମାନଙ୍କର କର୍ମରେ ଶୃଙ୍ଖଳା ରକ୍ଷା କରୁଥିଲା । 'ଅତୀତ ଉପରେ ଅତୀତ ଜମାଟ ବାନ୍ଧି ଅନବରତ ଭାବରେ ଗୃହୀତ', ବେର୍ଗସନ୍ କହିଚନ୍ତି ତାଙ୍କର 'କ୍ରିଏଟିଭ୍ ଇଭୋଲ୍ୟୁସନ୍' ଗ୍ରନ୍ଥରେ । 'ବସ୍ତୁତଃ, ଅତୀତ ନିଜ ସଂରକ୍ଷଣ ନିଜେ କରିଥାଏ—ସ୍ୱୟଂକ୍ରିୟ ଭାବରେ । ଅଖଣ୍ଡ ଭାବରେ ଦେଖିଲେ ସମ୍ଭବତଃ, ପ୍ରତି ମୁହୂର୍ତ୍ତରେ ତାହା ଆମର ପଛେ ପଛେ ଗୃହୀତ ।·· ଏଥିରେ ସନ୍ଦେହ ନାହିଁ ଯେ ଆମେ ଆମ ଅତୀତର ଏକ କ୍ଷୁଦ୍ର ଅଂଶ ନେଇ କେବଳ ଚିନ୍ତା କରିଥାଉଁ; କିନ୍ତୁ ଆମର ସମଗ୍ର ଅତୀତ ଆଉ ସେଥି ସଙ୍ଗେ ଆମ ଆତ୍ମାର ମୌଳିକ ପ୍ରବଣତା ଯେଉଁ ଆମେ ପ୍ରକୃତରେ କାମନା କରୁଁ, ସଂକଳ୍ପ କରୁଁ ଓ କର୍ମ କରୁଁ ।'

ଖ୍ରୀ: '୯୪୨ । ଅଗଷ୍ଟ ସାତ ଓ ଆଠ ଦୁଇଦିନ ବମ୍ବେରେ ଅଖିଳ ଭାରତୀୟ କଂଗ୍ରେସ କମିଟି ଯେଉଁ ପ୍ରସ୍ତାବ ଉପରେ ପ୍ରକାଶ୍ୟ ବିତର୍କ ବିବେଚନା କଲେ, ତାହା ସେହି ଦିନରୁ 'ଭାରତ-ଛାଡ଼' ପ୍ରସ୍ତାବ ନାମରେ ବିଦିତ ହୋଇ ଆସିଚ । ପ୍ରସ୍ତାବଟି ଥିଲା ଦୀର୍ଘ ଓ ବ୍ୟାପକ ଯେଉଁଥିରେ 'ଭାରତ ନିମନ୍ତେ ଓ ମିଳିତ ଜାତିସଂଘ-ଉଦ୍ଦେଶ୍ୟରେ ସଫଳତା ନିମନ୍ତେ ଭାରତରେ ବ୍ରିଟିଶ ଶାସନର ବିଲୋପ ବିଧାନକରି ଅବିଳମ୍ବେ ଭାରତର ସ୍ୱାଧୀନତା ସ୍ୱୀକାର କରିବା ସକାଶେ' ସୁସଙ୍ଗତ ଯୁକ୍ତି ପରିବେଷଣ କରାଯାଇଥିଲା । 'ସେହି ଶାସନର ବ୍ୟାପ୍ତି ଭାରତକୁ ଅଧଃପତିତ ଓ ଦୁର୍ବଳ କରୁଚି ଏବଂ ନିଜର ପ୍ରତିରକ୍ଷା ଦିଗରେ ଓ ବିଶ୍ୱମୁକ୍ତିର

ଉଦ୍ଦେଶ୍ୟ ସାଧନ ଦିଗରେ ତାଙ୍କୁ ବେଳକୁ ବେଳ କମ୍ ସମର୍ଥ କରୁଚି ।' 'ସାମ୍ରାଜ୍ୟ, ସମ୍ପଦ ଶାସନକାରୀ ଶକ୍ତିର ପୁଷ୍ଟିସାଧନ ପରିବର୍ତ୍ତେ ଗୋଟାଏ ଭାର ଓ ଅଭିଶାପରେ ପରିଣତ ହୋଇଚି । ଭାରତ, ଆଧୁନିକ ସାମ୍ରାଜ୍ୟବାଦର ଉତ୍କୃଷ୍ଟ ପ୍ରସିଦ୍ଧ ଦେଶ, ଏହି ପ୍ରଶ୍ନର ଜଟିଳ ଗଣ୍ଠି ହୋଇ ଉଠିଚି; କାରଣ ଭାରତର ସ୍ୱାଧୀନତାରୁ ହିଁ ଇଂଲଣ୍ଡ ଓ ମିଳିତ ଜାତିସଂଘର ସଦୁଦ୍ଦେଶ୍ୟ ପ୍ରମାଣିତ ହେବ ଏବଂ ଏସିଆ ଓ ଅଫ୍ରିକାର ଲୋକଙ୍କ ପ୍ରାଣରେ ଆଶା ଓ ଉତ୍ସୁକତା ସଞ୍ଚାର କରିବ ।' ପ୍ରସ୍ତାବରେ ଏକ ଅସ୍ଥାୟୀ ସରକାର ଗଠନ ନିମନ୍ତେ ପରାମର୍ଶ ଦିଆଯାଇଥିଲା । ସେ ପ୍ରକାର ସରକାର ହେବ ଏକ ମିଳିତ ସରକାର, ଯେଉଁଥିରେ ଦେଶର ମୁଖ୍ୟ ଲୋକ ସଙ୍ଗଠନର ପ୍ରତିନିଧିମାନେ ସ୍ଥାନ ପାଇବେ ଏବଂ ସେ ସରକାରର 'ପ୍ରାଥମିକ କର୍ତ୍ତବ୍ୟ ହେବ ମିତ୍ର-ଶକ୍ତିବର୍ଗଙ୍କ ସଙ୍ଗେ ମିଳିତଭାବରେ ତାର ସମସ୍ତ ସଶସ୍ତ୍ର ବଳ ଓ ନିରସ୍ତ୍ର ଅହିଂସବାଦୀଙ୍କୁ ସଙ୍ଗଠିତ କରି ଭାରତର ପ୍ରତିରକ୍ଷା ଓ ଆକ୍ରମଣର ପ୍ରତିରୋଧ ବିଧାନ କରିବା ।' ଏହି ସରକାର ଏକ କନ୍‌ଷ୍ଟିଚ୍ୟୁଏଣ୍ଟ୍ ଅସେମ୍ବ୍ଲି ନିମନ୍ତେ ଯୋଜନା ପ୍ରସ୍ତୁତ କରିବ ଏବଂ ସେହି ଆସେମ୍ବ୍ଲି ଭାରତର ସବୁ ଦଳମତ ପକ୍ଷରେ ଗ୍ରହଣଯୋଗ୍ୟ ଏକ ସମ୍ବିଧାନ ପ୍ରସ୍ତୁତ କରିବେ । ସେହି ସମ୍ବିଧାନ ହେବ ସଂଯୁକ୍ତ ରାଷ୍ଟ୍ର ଢଙ୍ଗର ଯେଉଁଥିରେ ପ୍ରତ୍ୟେକ ଏକକ ବା ରାଜ୍ୟର ପର୍ଯ୍ୟାପ୍ତ ପରିମାଣରେ ସ୍ୱାୟତ୍ତ ଶାସନ କ୍ଷମତା ରହିବ ଓ ନିର୍ଦ୍ଦିଷ୍ଟ କେତେକ ବିଷୟ ବାଦଦେଲେ ଅନ୍ୟ ସମସ୍ତ ପ୍ରକାର ଅଧିକାର ସେହି ରାଜ୍ୟ ସରକାରମାନଙ୍କ ହାତରେ ନ୍ୟସ୍ତ ରହିବ । 'ସ୍ୱାଧୀନତା ଜନସାଧାରଣଙ୍କ ମିଳିତ ସଂକଳ୍ପ ଓ ତା'ର ପଛର ଶକ୍ତି ଯୋଗେ ଫଳପ୍ରଦ ଭାବରେ ଆକ୍ରମଣର ପ୍ରତିରୋଧ କରିବା ପାଇଁ ଭାରତକୁ ସମର୍ଥ କରିବ ।'

ଭାରତର ସ୍ୱାଧୀନତା ହେବ ଅନ୍ୟାନ୍ୟ ଏସୀୟ ଜାତିମାନଙ୍କ ପକ୍ଷରେ ପ୍ରତୀକ ଓ ପ୍ରସ୍ତାବନା ସ୍ୱରୂପ । ପ୍ରସ୍ତାବରେ ବିଶ୍ୱର ମୁକ୍ତ ଜାତିମାନଙ୍କର ଏକ ସଂଘ ଗଠନ ନିମନ୍ତେ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ମିଳିତ ଜାତିସଂଘ ସେ ଦିଗରେ କାର୍ଯ୍ୟାରମ୍ଭ କରିବାପାଇଁ କୁହାଯାଇ-ଥିଲା ।

କମିଟି ଅନୁଭବ କହୁଥିଲେ ଯେ 'ଚୀନ ଓ ରୁଷିଆର ପ୍ରତିରକ୍ଷା ଦିଗରେ କୌଣସିମତେ ହେଲେ ବିଭ୍ରାଟ ସୃଷ୍ଟି ନ କରିବା ପାଇଁ କମିଟି ବିଶେଷ ଭାବରେ ଉଦ୍‌ବିଗ୍ନ; କାରଣ ଏ ଦୁଇ ଦେଶର ସ୍ୱାଧୀନତା ବଡ଼ ମୂଲ୍ୟବାନ ଓ ତାହା ସୁରକ୍ଷିତ ହେବା ଆବଶ୍ୟକ । ମିଳିତ ଜାତି-ସଙ୍ଘର ପ୍ରତିରକ୍ଷା ସାମର୍ଥ୍ୟ ବିପନ୍ନ ନୋହୁ ବୋଲି ମଧ୍ୟ କମିଟିର ଏକାନ୍ତ ଇଚ୍ଛା' (ସେହି ସମୟରେ ଚୀନ ଓ ରୁଷିଆ ଉପରେ ବିପଦ ମାଡ଼ି ପଡ଼ିବା ଭଳି ରହିଥିଲା) । 'କିନ୍ତୁ ଭାରତ ଓ ଏହି ଦୁଇଟି ଦେଶ ପ୍ରତି ବିପଦ ବେଳକୁ ବେଳ ବଢୁଚି ଏବଂ ଏପରି ଏକ ସମୟରେ ନିଷ୍କ୍ରିୟ ରହିବା ଓ ଗୋଟାଏ ବିଦେଶୀ ଶାସନର ବଶତା ସ୍ୱୀକାର କରିବା ଭାରତକୁ ଅଧଃପତିତ କରୁଚି ଓ ତାର ନିଜର ପ୍ରତିରକ୍ଷା ଓ ଆକ୍ରମଣର ପ୍ରତିରକ୍ଷା ସାମର୍ଥ୍ୟ ହ୍ରାସ କରୁଚି ବୋଲି କେବଳ ନୁହେଁ, ଅଧିକନ୍ତୁ ଏହା କୌଣସି ଭାବରେ ହେଲେ ସେହି ବର୍ତ୍ତମାନ ବିପଦର ଯଥୋଚିତ ଜବାବ ନୁହେଁ ଏବଂ ମିଳିତ ଜାତିସଂଘ ଅନ୍ତର୍ଭୁକ୍ତ ଜନସାଧାରଣଙ୍କର ସେବା କରିବା ବି ନୁହେଁ ।'

'ବିଶ୍ୱ ମୁକ୍ତିର ହିତ ନିମନ୍ତେ' କମିଟି ପୁନର୍ବାର ଇଂଲଣ୍ଡ ଓ ମିଳିତ ଜାତିସଙ୍ଘକୁ ନିବେଦନ କଲେ; କିନ୍ତୁ (ଏଇଠି ବସିଲା ପ୍ରସ୍ତାବର ଶ୍ଳେଷ) ଗୋଟାଏ ସାମ୍ରାଜ୍ୟବାଦ ତଥା ସ୍ୱେଚ୍ଛାଚାରୀ ସରକାର, ଯେଉଁ ସରକାର ଲୋକଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରି ବସିଛି ଏବଂ ଲୋକଙ୍କ ସ୍ୱାର୍ଥ ଓ ମାନବଜାତିର ସ୍ୱାର୍ଥ ନିମନ୍ତେ କାର୍ଯ୍ୟ କରିବାକୁ ଗଲାବେଳେ ଅନ୍ତରାୟ ସୃଷ୍ଟି କରୁଛି, ସେହି ସରକାର ବିରୁଦ୍ଧରେ ଲୋକେ ନିଜର ଦାବି ସାବ୍ୟସ୍ତ କରିବା ଉଦ୍ଦେଶ୍ୟରେ କିଛି କରିବାକୁ ଗଲାବେଳେ ସେମାନଙ୍କୁ ସେ ଦିଗରୁ ନିବର୍ତ୍ତାଇବା ଆଉ ନ୍ୟାୟସଙ୍ଗତ ହେବ ନାହିଁ ବୋଲି କମିଟି ବିବେଚନା କରନ୍ତି । ଅତଏବ, ଭାରତୀୟ ସ୍ୱାଧୀନତାର ନିର୍ବିବାଦ ଅଧିକାରର ପୁଷ୍ଟି ନିମନ୍ତେ କମିଟି ଏ କଥା ମଞ୍ଜୁର କରିବା ନିଷ୍ପତ୍ତି କରୁଛନ୍ତି ଯେ ଗାନ୍ଧିଜୀଙ୍କ ଅନିବାର୍ଯ୍ୟ ନେତୃତ୍ୱରେ ଅହିଂସ ମାର୍ଗରେ ଏକ ଗଣଆନ୍ଦୋଳନ ଆରମ୍ଭ କରାଯାଉ ।' ଗାନ୍ଧିଜୀ ଯେବେ ସ୍ଥିର କରିବେ, ସେତେବେଳେ କେବଳ ସେହି ମଞ୍ଜୁରୀ କାର୍ଯ୍ୟକାରୀ ହେବ । ଶେଷରେ ପ୍ରସ୍ତାବରେ ଏ କଥାର ବି ଉଲ୍ଲେଖ ଥିଲା ଯେ 'କଂଗ୍ରେସ ନିମନ୍ତେ କ୍ଷମତା ହାସଲ କରିବା କମିଟିର ଉଦ୍ଦେଶ୍ୟ ନୁହେଁ । ସେ କ୍ଷମତା ଯେବେ ଆସିବ, ତାହା ହେବ ଭାରତୀୟ ଜନସାଧାରଣଙ୍କର ।

ତାଙ୍କର ଅନ୍ତିମ ଭାଷଣରେ ଗାନ୍ଧିଜୀ ଓ କଂଗ୍ରେସ ସଭାପତି ମୌଲାନା ଅବୁଲ୍ କାଲାମ ଆଜାଦ୍ ଏ କଥା ସ୍ପଷ୍ଟ କରିଦେଇଥିଲେ ଯେ ସେମାନଙ୍କର ପରବର୍ତ୍ତୀ ପଦକ୍ଷେପ ହେବ ଭାଇସରାୟଙ୍କ ସଙ୍ଗେ (ବ୍ରିଟିଶ ସରକାରଙ୍କ ପ୍ରତିନିଧି ଭାବରେ) ସାକ୍ଷାତ କରିବା ଓ ଏକ ସମ୍ମାନଜନକ ରାଜିନାମା ନିମନ୍ତେ ମିଳିତ ଜାତିସଂଘ ଅନ୍ତର୍ଭୁକ୍ତ ପ୍ରଧାନ ପ୍ରଧାନ ଦେଶର ପ୍ରମୁଖମାନଙ୍କୁ ନିବେଦନ କରିବା । ସେହି ରାଜିନାମା ଯେପରି ଭିତ୍ତିରେ ହେବା ଆବଶ୍ୟକ ଯାହା ଭାରତର ସ୍ୱାଧୀନତା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଆକ୍ରମଣକାରୀ ଅକ୍ଷ-ଶକ୍ତି ବର୍ଗଙ୍କ ବିରୁଦ୍ଧରେ ମିଳିତ ଜାତିସଂଘର ସଂଗ୍ରାମର ଉଦ୍ଦେଶ୍ୟକୁ ଆଗେଇନେବ ।

ପରିଶେଷରେ ଅଗଷ୍ଟ ଆଠ ତାରିଖ ଦିନ ବମ୍ବେ ନଗରୀରେ ରାତି ଗଭୀର ହେଲାବେଳେ ପ୍ରସ୍ତାବ ଗୃହୀତ ହେଲା । ଏହାର କେତେ ଘଣ୍ଟା ପରେ ଅଗଷ୍ଟ ନଅ ତାରିଖ ପାହାନ୍ତି ପହରରେ ବମ୍ବେରେ ଓ ଦେଶର ଅନ୍ୟାନ୍ୟ ସ୍ଥାନରେ ବହୁ ଲୋକଙ୍କୁ ଗିରଫ କରାଗଲା । ଏପରିଭାବରେ ଆମେ ଆସିଲୁ ଅହମ୍ମଦନଗର ଦୁର୍ଗକୁ ।

□ □ □

# ଦଶମ ପରିଚ୍ଛେଦ

# ପୁନର୍ବାର ଅହ୍ମଦ୍ ନଗର୍ ଦୁର୍ଗ

## ୧. ଘଟଣାର କ୍ରମ

ଅହ୍ମଦ୍ ନଗର ଦୁର୍ଗ : ତେର, ଅଗଷ୍ଟ ଉଣେଇଶି ଶହ ଚଉରାଳିଶି । ଆମେ ଏଠାକୁ ଆସିବା ଦୁଇବର୍ଷ ଉପରେ ହେଲାଣି । ଦୁଇ ବର୍ଷର ଏକ ସ୍ୱପ୍ନମୟ ଜୀବନ ଗୋଟାଏ ସ୍ଥାନରେ ଆବଦ୍ଧ ରହିଚି । ଦୃଷ୍ଟିରେ ପଡ଼ୁଚନ୍ତି ସେହି ସ୍ୱଳ୍ପ କେତେକ ଲୋକ ଯେଉଁମାନେ ଏଠାର ଅଛନ୍ତି । ସେହି ସୀମିତ ପରିବେଷ୍ଟନୀ ଆଉ ସେହି ପରିବର୍ତ୍ତନହୀନ ନିତ୍ୟକର୍ମ । ଭବିଷ୍ୟତର କେଉଁ ଏକ ମଙ୍ଗଳ ପ୍ରଭାତରେ ଆମର ଏ ସ୍ୱପ୍ନ ଭାଙ୍ଗିବ ଏବଂ ଆମେ ଏକ ପରିବର୍ତ୍ତିତ ବିଶ୍ୱର ଜୀବନ ଓ କର୍ମ ଜଞ୍ଜାଳ ଭିତରକୁ ଫେରିଯିବୁ । ବାହାରେ ଯେଉଁସବୁ ବସ୍ତୁ ଓ ବ୍ୟକ୍ତି ଆମ ଦୃଷ୍ଟିରେ ପଡ଼ିବେ, ସେମାନଙ୍କ ପ୍ରତି ଏକ ପ୍ରକାର ଚିହ୍ନା-ଅଚିହ୍ନା ଭାବ ଆମ ମନରେ ଜାଗ୍ରତ ହେବ । ଆମେ ସେମାନଙ୍କୁ ସ୍ମରଣ କରିବୁ ଏବଂ ଅତୀତର ବହୁ ସ୍ମୃତି ଆମର ମନ ଭିତରେ କୋଳାହଳ କରି ଉଠିବ । ତଥାପି ସେଥିରେ ପୂର୍ବର ପରିଚିତି ବିଶେଷ ନଥିବ କିମ୍ବା ଆମେ ବି ଆଉ ଏଠାକୁ ଆସିବା ଆଗର ଲୋକ ହୋଇ ନଥିବୁ । ଅନ୍ୟମାନଙ୍କ ସଙ୍ଗେ ନିଜର ମେଳରଖି ଚଳିବା ହୁଏତ ସହଜ ହୋଇନପାରେ । ବେଳେ-ବେଳେ ଆମ ମନରେ ଏହି ବିଶ୍ୱାସ ହୁଏତ ଆସିବ ଯେ ଦୈନନ୍ଦିନ ଜୀବନର ଏହି ନୂତନ ଅଭିଜ୍ଞତା ଗୋଟାଏ ନିଦ୍ରା ଓ ସ୍ୱପ୍ନ; ମାତ୍ର କେଉଁଥିରୁ ଅଚାନକ ଆମେ ପୁଣି ଜାଗ୍ରତ ହୋଇ ଉଠିବୁ । ଏହି ଉଭୟ ଭିତରେ କେଉଁ ଅବସ୍ଥା ସ୍ୱପ୍ନ ଓ କେଉଁ ଅବସ୍ଥା ଜାଗରଣ ? ଉଭୟ ଅବସ୍ଥା କ'ଣ ବାସ୍ତବ ? କାରଣ ଉଭୟର ପ୍ରଭାବ ଆମ ଉପରେ ପଡ଼ୁଚି । ହୁଏତ ଉଭୟ ଭିତରୁ ଗୋଟାଏ ହେଲେ ବାସ୍ତବ ନୁହେଁ, ଉଭୟ ସ୍ୱପ୍ନମାତ୍ର । ଯେଉଁ ସ୍ୱପ୍ନ ଲୁଚକାଳି ଖେଳୁଚି ଆଉ ପଛରେ ରଖି ଯାଉଚି କେତେକ ଅସ୍ପଷ୍ଟ ସ୍ମୃତି ।

କାରାଗାର ଓ ତାର ସହଚର ନିର୍ଜନତା ଓ କର୍ମହୀନତା ଚିନ୍ତା ଉଦ୍ରେକ କରେ ଏବଂ ଜୀବନର ଶୂନ୍ୟତାକୁ ନିଜ ଜୀବନର ବହୁ ସ୍ମୃତି ଓ ମାନବିକ କାର୍ଯ୍ୟକଳାପର ଦୀର୍ଘ ଇତିହାସ ଦେଇ ପୂର୍ଣ୍ଣ କରିବାର ଉଦ୍ୟମ କରେ । ଅତଏବ, ଗତ ପାଞ୍ଚମାସ ଭିତରେ ଏହା ଲେଖିଲାବେଳେ ଭାରତର ବହୁ ପୁରାତନ ନଥିପତ୍ର ଓ ଇତିହାସରେ ମନୋନିବେଶ କରି ସେଥିରୁ ଯେଉଁସବୁ ଧାରଣା ମିଳିଲା, ସେଥିଭିତରୁ କେତେକକୁ ନେଇ ଏ ଗ୍ରନ୍ଥର ସୃଷ୍ଟି । ଏ ପର୍ଯ୍ୟନ୍ତ ଯାହା ମୁଁ ଲେଖି ଆସିଲି ତାହା ପର୍ଯ୍ୟାଲୋଚନା କଲେ ସବୁ କିଛି ଅସମ୍ପୂର୍ଣ୍ଣ, ଅସଲଗ୍ନ—ବିଷୟର କ୍ରମିକ ଗତି ଓ ଐକ୍ୟସାଧନ ଅଭାବିତ ହେବାଭଳି ବୋଧହେଉଚି ।

ଏହା ହେଉଛି ଉଚିତ ନାନା ବିଷୟର ଏକ ସମାହାର, ଯେଉଁଥିରେ ବ୍ୟକ୍ତିଗତ ଅଭିଜ୍ଞତା ଓ ଅନୁଭୂତି ପ୍ରାଧାନ୍ୟ ଲାଭକରିଛି । ଉଦ୍ଦେଶ୍ୟ ଥିଲା, ଏହା ଏକ ବିଶ୍ଳେଷଣାତ୍ମକ, ବାସ୍ତବ ଚିତ୍ର ହେବ; କିନ୍ତୁ ନିତାନ୍ତ ସେପରି ଆବଶ୍ୟକୀୟ ଅଂଶରେ ସୁଦ୍ଧା ବ୍ୟକ୍ତିଗତ ସ୍ପର୍ଶ ବାଦ ଯାଇନି । ସେହି ବ୍ୟକ୍ତିଗତ ସତ୍ତା, ମୋର ଇଚ୍ଛା ବିରୁଦ୍ଧରେ ସୁଦ୍ଧା, ସବୁ ସମୟରେ ଆପଣାଛାଏଁ ଆଗକୁ ଆସି ଯାଉଛି । କେବେ ସେଥି ଉପରେ ମୁଁ ନିୟନ୍ତ୍ରଣ ପ୍ରୟୋଗ କରିଛି, କେବେ ବା ତା'କୁ ପଛକୁ ଟାଣି ଧରିଛି । କେବେ କେବେ ତାର ନିଜସ୍ୱ ଧାରାରେ ମୋର ଲେଖନୀରୁ ବହି ଯିବାକୁ ଛାଡ଼ିଦେଇଛି । କେତେ ପର୍ଯ୍ୟନ୍ତ ହୁଏତ ମୋ ମନର ଚିତ୍ର ସେଥିରେ ପ୍ରତିଫଳିତ ହୋଇଛି ।

ଅତୀତ ବିଷୟରେ ଲେଖି ମୁଁ ସେହି ଅତୀତର ଭାରରୁ ମୁକ୍ତ ହେବାର ଚେଷ୍ଟା କରିଛି । କିନ୍ତୁ ତାର ସମସ୍ତ ଜଟିଳତା ଓ ଅଯୌକ୍ତିକତା ଯେମିତି ବର୍ତ୍ତମାନ କାଏମ୍ ଅଛି ଏବଂ ଦୂରରେ ପଡ଼ିରହିଛି ଏକ ଅନ୍ଧକାର ଭବିଷ୍ୟତ । ଏହି ବର୍ତ୍ତମାନ ଓ ଭବିଷ୍ୟତର ବୋଝ ଅତୀତର ବୋଝଠାରୁ କିଛି କମ୍ ନୁହେଁ । ଭବଘୁରି ମନ କୌଣସି ଆଶ୍ରୟ ନପାଇ ଏବେ ବି ଅଶାନ୍ତ ଭାବରେ ବୁଲୁଛି । ଫଳତଃ ମୋ ପକ୍ଷରେ କେବଳ ନୁହେଁ, ଅନ୍ୟମାନଙ୍କ ପକ୍ଷରେ ମଧ୍ୟ ତାହା ଅସ୍ୱସ୍ତିର କାରଣ ହେଉଛି । ସେହି ଅକ୍ଷତ, ଅସ୍ପୃଷ୍ଟ ଧନ ଯାହା ଉପରେ ଚିନ୍ତାର ଆଘାତ ଲାଗିନି, ସନ୍ଦେହର ଛାୟା ପଡ଼ିନି କିମ୍ବା କୌଣସି ଭାବରେ ହେଲେ କଳଙ୍କିତ ହୋଇନି, ସେଥିପ୍ରତି ଏକପ୍ରକାର ଦ୍ୱେଷ ଜନ୍ମିଥାଏ । ସାମୟିକ ଭାବରେ ଧକ୍କା ଓ ବେଦନା ଲାଗିଲେ ସୁଦ୍ଧା ଜୀବନ ସେମାନଙ୍କ ପାଇଁ କେତେ ସହଜ ଓ ସରଳ !

ଗୋଟାଏ ପରେ ଗୋଟାଏ ଘଟଣା ଘଟିଚାଲେ ଆଉ ନିରବଚ୍ଛିନ୍ନ ତଥା ଅନ୍ତହୀନ ଘଟଣାର ପ୍ରବାହ ସର୍ବଦା ବହି ଚାଲିଛି । କୌଣସି ଏକ ନିର୍ଦ୍ଦିଷ୍ଟ ଘଟଣାକୁ ଅନ୍ୟାନ୍ୟ ଘଟଣାରୁ ବିଚ୍ଛିନ୍ନ କରି, ଯେତେ ଯେପରି ତାହା ହିଁ ତାର ଆରମ୍ଭ ଓ ତାର ଶେଷ, କିମ୍ବା ତାର ପୂର୍ବବର୍ତ୍ତୀ କୌଣସି କାରଣରୁ ତାହା ଯେପରି ପରିଣତ, ସେହିପରି ଭାବରେ ଦେଖି, ଆମେ ତାର ଚରିତ୍ର ଅଧ୍ୟୟନ କରିବା ପ୍ରୟାସ କରୁଁଥାଉଁ । କିନ୍ତୁ ତାର କୌଣସି ଆରମ୍ଭ ନାହିଁ ଏବଂ ତାହା ଏକ ଅନନ୍ତ କ୍ରମର ସଂଯୋଜକ ଅଂଶ ବିଶେଷ ମାତ୍ର ଆଉ ତାହା ମଧ୍ୟ ପୂର୍ବବର୍ତ୍ତୀ ସବୁ କିଛିର—ଅଗଣିତ ମଣିଷଙ୍କ ସଂକଳ୍ପ, ଆବେଗ ଓ କାମନାର ପରିଣାମ । ସେ ସବୁ ସଂକଳ୍ପ, ଆବେଗ ଓ କାମନା ପରସ୍ପର ଭିତରେ ସଂଘର୍ଷ କରିଥାନ୍ତି, ମିଳିତ ହୋଇଥାନ୍ତି ଏବଂ ସେଥିରୁ ଏପରି ଏକ ସମ୍ପୂର୍ଣ୍ଣ ନୂତନ ଜିନିଷ ବାହାରିଆସେ ଯାହା ଯେକେଉଁ ମଣିଷର ବାଞ୍ଛିତ ବସ୍ତୁଠାରୁ ଏକାବେଳକେ ଭିନ୍ନ । ସେ ସବୁ ସଂକଳ୍ପ, ଆବେଗ ଓ କାମନା ପୂର୍ବବର୍ତ୍ତୀ ସମସ୍ତ ଘଟଣା ଓ ଅଭିଜ୍ଞତା ଦ୍ୱାରା ନିୟନ୍ତ୍ରିତ ହୋଇଥାଏ ଏବଂ ନୂତନ ଘଟଣା ପୁଣି ଭବିଷ୍ୟତ ନିମନ୍ତେ ନିୟନ୍ତ୍ରଣର କାରଣ ହୁଏ । ଭାଗ୍ୟବିଧାତା ଯେଉଁ ଜନନାୟକ ଲୋକଙ୍କୁ ପ୍ରଭାବିତ କରେ, ଏହି ପ୍ରକ୍ରିୟାରେ ନିଃସନ୍ଦେହରେ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ତଥାପି ସେ ମଧ୍ୟ ଅତୀତ ଘଟଣାମାନଙ୍କର ଓ ପ୍ରଭାବଶାଳୀ ଶକ୍ତିମାନଙ୍କର ସୃଷ୍ଟି ଏବଂ ସେ ସବୁଦ୍ୱାରା ତାର ପ୍ରଭାବ ମଧ୍ୟ ନିୟନ୍ତ୍ରିତ ।

# ୨. ଦୁଇଟି ପୃଷ୍ଠଭୂମି : ଭାରତୀୟ ଓ ବ୍ରିଟିଶ

ଅଗଷ୍ଟ, ୧୯୪୨ରେ ଭାରତରେ ଯାହା ସବୁ ଘଟିଗଲା ତାହା ଆକସ୍ମିକ ନୁହେଁ; ବରଂ ପୂର୍ବବର୍ତ୍ତୀ ବହୁତ କିଛିର ତାହା ଚରମ ପରିଣତି । ତାର ବିରୋଧରେ, ତାର ସପକ୍ଷରେ କିମ୍ବା ସମାଲୋଚନା ଆକାରରେ ବହୁତ କିଛି ଲେଖାଗଲାଣି ଓ ବହୁତ କିଛି କୈଫିୟତ ଦିଆଗଲାଣି; କିନ୍ତୁ ପ୍ରାୟ ଏ ସମସ୍ତ ଲେଖାରେ ପ୍ରକୃତ କାରଣଟି ପ୍ରକାଶ ପାଇନି । ଯାହା ରାଜନୀତି ଅପେକ୍ଷା ଗମ୍ଭୀରତର, ରାଜନୈତିକ ବିଗ୍ରହ ଯେନ ତାର ମୀମାଂସା କରାଯାଇ ନପାରେ । ଅଗଷ୍ଟ-ଅଶାନ୍ତି ପଛରେ ଥିଲା ଏକ ସୁତୀବ୍ର ମାନସିକତା; ଯାହା ଗୋଟାଏ ବିଦେଶୀ ସ୍ୱେଚ୍ଛାଚାରୀ ଶାସନ ବରଦାସ୍ତ କରିବା ପାଇଁ ପ୍ରସ୍ତୁତ ନ ନଥିଲା । ସେହି ଶାସନ ଛତ୍ର ତଳେ କେତେକ ଦିଗରେ ଉନ୍ନତି କିମ୍ବା ପ୍ରଗତି କରାଯାଇ ପାରେ କି ନା; ସଂଘର୍ଷ ଭିତରକୁ ଝାମ୍ପି ପଡ଼ିଲେ ତାର ପରିଣାମ ଅଧିକତର କ୍ଷତିକାରକ ହେବ କି ନା—ଏସବୁ ପ୍ରଶ୍ନ ବିବେଚନା କରିବାର ଧୈର୍ଯ୍ୟ ସେ ଅବସ୍ଥା ହରାଇ ସାରିଥିଲା । ଗୋଟିଏ କେବଳ ବଳବତୀ ଇଚ୍ଛା ଯାହା ଅନମନୀୟ ହୋଇ ଉଠିଥିଲା, ତାହା ହେଉଛି ଯେ କେଉଁ ଭାବରେ ଯାହା କିଛି କ୍ଷୟକ୍ଷତି ହେଉନା କାହିଁକି ଏ ବନ୍ଧନ ତୁଟାଇବାକୁ ପଡ଼ିବ । ଯାହା ହେବାର ଅଛି ହୋଇଯାଉ କିନ୍ତୁ ଏ ଶାସନ ଆଉ ବରଦାସ୍ତ କରାଯିବନି ।

ସେହି ଭାବନା ନଥିଲା ଗୋଟାଏ କିଛି ନୂତନ ସମ୍ବେଦନ । ଭାରତର ଅନ୍ତରାତ୍ମାରେ ତାହା ବହୁ ବର୍ଷ ତଳୁ ରହିଆସିଥିଲା; କିନ୍ତୁ ପୂର୍ବେ ତାକୁ ନାନା ଭାବରେ ସଂଯତ କରାଯାଇଥିଲା ଏବଂ ଘଟଣାର ଗତି ସଙ୍ଗେ ପାଦ ମିଳାଇ ଯିବାର ପ୍ରବୃତ୍ତି ଜାଗ୍ରତ ହୋଇନଥିଲା । ଯୁଦ୍ଧର ଦୁଇଟି ପ୍ରଭାବ ପଡ଼ିଲା : ସଂଯମନ ଓ ନୂତନ କେତେ ଦିଗନ୍ତର ଉନ୍ମୋଚନ । କେତେ ବୈପ୍ଳବିକ ପରିବର୍ତ୍ତନ ଓ ବିପୁଳ ଉନ୍ନୟନ ପ୍ରତି ଏବଂ ନିକଟ ଭବିଷ୍ୟତରେ ଆମର ବାଞ୍ଛା ପୂରଣର ସମ୍ଭାବନା ପ୍ରତି ଯୁଦ୍ଧ ଆମ ମନର ଦୁଆର ଖୋଲିଦେଲା । ଅନ୍ୟ ଦିଗରେ ଯେଉଁ ଅନ୍ତରାୟ ସୃଷ୍ଟି କଲା ତାହା କରିନଥିଲେ ଅକ୍ଷ-ଶକ୍ତିବର୍ଗ ବିରୁଦ୍ଧରେ ଚାଲିଥିବା ଏହି ସଂଗ୍ରାମରେ ଆମେ ବହୁତ କିଛି ସାହାଯ୍ୟ କରିପାରିଥାନ୍ତୁ । ସାହାଯ୍ୟ କରିବା ନିମନ୍ତେ ଆମେ ଆତୁର ଥିଲୁ; କୌଣସି ପ୍ରକାରେ ହେଲେ ପ୍ରତିବନ୍ଧକ ସୃଷ୍ଟି କରିବା ପାଇଁ ନୁହେଁ ।

କିନ୍ତୁ ଯୁଦ୍ଧ ବେଳକୁ ବେଳ ସଂପ୍ରସାରିତ ହୋଇ ଚାଲିବା ସଙ୍ଗେ ସଙ୍ଗେ ଏକଥା ମଧ୍ୟ ଆମକୁ ସ୍ପଷ୍ଟ ହୋଇ ଉଠିଲା ଯେ ପଶ୍ଚିମ ଜଗତର ଗଣତାନ୍ତ୍ରିକ ଶକ୍ତିମାନେ ଯେଉଁ ସଂଗ୍ରାମରେ ରତ ଅଛନ୍ତି, ତାହା କୌଣସି ପରିବର୍ତ୍ତନ ନିମନ୍ତେ ନୁହେଁ, ବରଂ ପୁରାତନ ବ୍ୟବସ୍ଥାର ସଂରକ୍ଷଣ ନିମନ୍ତେ । ଯୁଦ୍ଧ ପୂର୍ବରୁ ସେମାନେ ଫାସିଷ୍ଟବାଦକୁ ସର୍ବଦା ତୁଷ୍ଟ କରିବାରେ ଲାଗିଥିଲେ । ଫାସିଷ୍ଟବାଦ ରୁଷ୍ଟ ହେଲେ ଯେଉଁ ପରିଣାମ ଉପୁଜିବ ତାର ଭୟ ସେମାନଙ୍କୁ ଏ ପ୍ରକାର ତୁଷ୍ଟି ସାଧନାରେ ନିୟୋଜିତ କରିଥିଲା ବୋଲି କେବଳ ନୁହେଁ; ବରଂ ସେଥିପ୍ରତି ସେମାନଙ୍କର ଏକ ପ୍ରକାର ଆଦର୍ଶଗତ ସହାନୁଭୂତି ରହିଥିଲା ଏବଂ କେତେକ ସମ୍ଭାବ୍ୟ ବିକଳ୍ପ ଅବସ୍ଥା ପ୍ରତି ସେମାନଙ୍କ ପ୍ରାଣରେ ଘୃଣା ଭରପୂରିଥିଲା । ନାଜିବାଦ ଓ ଫାସିଷ୍ଟବାଦର ଅଭ୍ୟୁଦୟ,, ବହୁତ କିଛି ଆକସ୍ମିକ ନୁହେଁ କିମ୍ବା ଇତିହାସର ଦୁର୍ଘଟଣା ନୁହେଁ । ଅତୀତର କେତେ ଘଟଣାର କ୍ରମ ସାମ୍ରାଜ୍ୟ ଓ ଜାତି-ବୈଷମ୍ୟ, ଜାତିଗତ ସଂଘର୍ଷ, କ୍ଷମତା କେନ୍ଦ୍ରୀଭୂତ

କରିବାର ପ୍ରବଳ ପ୍ରବଣତା, ବର୍ତ୍ତମାନର ସାମାଜିକ ବ୍ୟବସ୍ଥାରେ ପୂର୍ଣ୍ଣତା ସମ୍ପାଦନ ନିମନ୍ତେ ପରିସରକାମୀ ଶିଳ୍ପ ବିଜ୍ଞାନର ଅଭିବୃଦ୍ଧି, ଗଣତାନ୍ତ୍ରିକ ଆଦର୍ଶ ଓ ତାର ପ୍ରତିକୂଳ ଏକ ସାମାଜିକ ବ୍ୟବସ୍ଥା ଭିତରେ ଚାଲିଥିବା ବିଚ୍ଛିନ୍ନ ବିବାଦ—ଏ ସମସ୍ତର ସ୍ୱାଭାବିକ ବିକାଶ ଥିଲା ଫାସିଷ୍ଟବାଦ ଓ ନାଜିବାଦ । ପଶ୍ଚିମ ୟୁରୋପ ଓ ଉତ୍ତର ଆମେରିକାରେ ରାଜନୈତିକ ଗଣତନ୍ତ୍ର ଜାତୀୟ ତଥା ବ୍ୟକ୍ତିଗତ ପ୍ରଗତି ନିମନ୍ତେ ଦ୍ୱାର ଉନ୍ମୁକ୍ତ କରିବା ସଙ୍ଗେ ସଙ୍ଗେ କେତେକ ନୂତନ ଶକ୍ତି ଓ ଭାବଧାରା ପ୍ରସାରିତ କରିଥିଲା, ଯାହାର ଅନିବାର୍ଯ୍ୟ ଲକ୍ଷ୍ୟ ଥିଲା ଅର୍ଥନୈତିକ ସମାନତା । ସେହି ଅବସ୍ଥା ଭିତରେ ସଂଘର୍ଷ ନିହିତ ଥିଲା । ହୁଏତ ରାଜନୈତିକ ଗଣତନ୍ତ୍ର ସଂପ୍ରସାରିତ ହେବ କିମ୍ବା ତାର ସମାପ୍ତି ନିମନ୍ତେ ଉଦ୍ୟମ ହେବ । ଅନବରତ ପ୍ରତିକୂଳତା ସତ୍ତ୍ୱେ ଆୟତନ ଓ ଅଧେୟରେ ଗଣତନ୍ତ୍ର ପୁଷ୍ଟି ଲାଭକଲା ଏବଂ ରାଜନୈତିକ ସଙ୍ଗଠନର ସର୍ବମାନ୍ୟ ଆଦର୍ଶ ହୋଇଉଠିଲା; କିନ୍ତୁ ସମୟ ଆସିଲା, ଯେବେ ତାର ଅଧିକତର ସମ୍ପ୍ରସାରଣ ସାମାଜିକ ଢାଞ୍ଚାର ଭିତ୍ତିକୁ ବିପନ୍ନ କଲା ଏବଂ ସେତେବେଳେ ସେହି ଢାଞ୍ଚାର ଧ୍ୱଜାଧାରୀମାନେ ଉଦ୍‌ବାଚ କଲେ, ଆକ୍ରମଣଶୀଳ ହୋଇ ଉଠିଲେ ଏବଂ ପରିବର୍ତ୍ତନର ଗତିରୋଧ କରିବାପାଇଁ ନିଜର ସଙ୍ଗଠନ ଗଢ଼ିତୋଳିଲେ । ଯେଉଁସବୁ ଦେଶରେ ଏ ପ୍ରକାର ଅବସ୍ଥା ଦେଖାଦେଇଥିଲା, ସେଠାରେ ସଙ୍କଟ ଦ୍ରୁତ ତେଜି ଉଠିଲା ଏବଂ ପ୍ରକାଶ୍ୟ ଭାବରେ ଓ ସୁଚିନ୍ତିତ ଭାବରେ ଗଣତନ୍ତ୍ରର ହତ୍ୟା କରାଗଲା । ଗଣତନ୍ତ୍ରର ବଧଭୂମିରୁ ମୁଣ୍ଡଟେକି ଉଠିଲା ଫାସିଷ୍ଟବାଦ । ପଶ୍ଚିମ ୟୁରୋପ ଓ ଉତ୍ତର ଆମେରିକାର ଗଣତାନ୍ତ୍ରିକ ଦେଶମାନଙ୍କରେ ଅନୁରୂପ ପ୍ରକ୍ରିୟା ଚାଲିଥିଲେ ସୁଦ୍ଧା ଅନ୍ୟାନ୍ୟ ବହୁ କାରଣ ସଙ୍କଟ ସୃଷ୍ଟି ବିଳମ୍ବିତ କଲା ଏବଂ ଖୁବ୍ ସମ୍ଭବ ଶାନ୍ତିପୂର୍ଣ୍ଣ ତଥା ଗଣତାନ୍ତ୍ରିକ ଶାସନର ସୁଦୀର୍ଘ ପରମ୍ପରା ମଧ୍ୟ ସହାୟକ ହୋଇଥିଲା । ଏହି ସବୁ ଗଣତନ୍ତ୍ର ଭିତରୁ କେତେକ ପକ୍ଷରେ ସାମ୍ରାଜ୍ୟ ରହିଥିଲା, ଯେଉଁଠି ଗଣତନ୍ତ୍ରର ଚିହ୍ନବର୍ଣ୍ଣ ନଥିଲା ଏବଂ ଫାସିଷ୍ଟବାଦ ସୁଲଭ ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ବିରୋଧୀ ପ୍ରଭୁତ୍ୱ ପ୍ରବଳ ହୋଇଉଠିଥିଲା । ଫାସିଷ୍ଟ ଦେଶମାନଙ୍କ ଭଳି ସେ ସବୁ ସାମ୍ରାଜ୍ୟମାନଙ୍କରେ ସ୍ୱାଧୀନତା ଦାବିକୁ ଦମନ କରିବା ଉଦ୍ଦେଶ୍ୟରେ ଶାସକଶ୍ରେଣୀ ପ୍ରତିକ୍ରିୟାଶୀଳ ତଥା ସୁବିଧାବାଦୀ ଗୋଷ୍ଠୀମାନଙ୍କ ସଙ୍ଗେ ଏବଂ ସାମନ୍ତବାଦୀ-ସ୍ମାରକମାନଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରିଥିଲେ । ନିଷ୍ପତ୍ତିମୂଳକ ଭାଷାରେ ସେମାନେ କହି ପାରୁଥିଲେ ଯେ ସେମାନଙ୍କର ଜନ୍ମଭୂମି ନିମନ୍ତେ ଆଦର୍ଶ ଭାବରେ ଗଣତନ୍ତ୍ର ଉତ୍କୃଷ୍ଟ ଓ ବାଞ୍ଛନୀୟ ହେଲେ ସୁଦ୍ଧା ସେମାନଙ୍କର ଉପନିବେଶମାନଙ୍କରେ ଗଣତନ୍ତ୍ରର ପ୍ରବର୍ତ୍ତନ ସ୍ଥାନୀୟ ଅବସ୍ଥା ଦୃଷ୍ଟିରୁ ହିତକର ନୁହେଁ । ଅତଏବ, ପାଶ୍ଚାତ୍ୟ ଗଣତନ୍ତ୍ରମାନଙ୍କ ପକ୍ଷରେ ଫାସିଷ୍ଟବାଦ ସଙ୍ଗେ ଏକ ପ୍ରକାର ଆଦର୍ଶଗତ ସଂଯୋଗ ଅନୁଭବ କରିବା ଏକ ସ୍ୱାଭାବିକ ପରିଣତି ମାତ୍ର । ଏ କଥା ଯଦିଓ ସତ୍ୟ ଯେ ଫାସିଷ୍ଟବାଦର ଅଧିକତର ପାଶବିକ, ମିଥ୍ୟା ତଥା ଅଶ୍ଳୀଳ ବହୁ ଅଭିବ୍ୟକ୍ତି ସେମାନେ ନାପସନ୍ଦ କରୁଥିଲେ ।

ଅସ୍ତିତ୍ୱରକ୍ଷା ନିମନ୍ତେ ସେମାନେ ଯେବେ ଲଢ଼ିବା ପାଇଁ ବାଧ୍ୟ ହେଲେ, ସେମାନେ ପୁଣି ସେହି ଢାଞ୍ଚାର ପୁନଃପ୍ରତିଷ୍ଠା ନିମନ୍ତେ ଆତୁର ଥିଲେ, ଯାହାକୁ ଶୋଚନୀୟ ଭାବରେ ବିଫଳ

ହୋଇସାରିଥିଲା । ଯୁଦ୍ଧକୁ ସେମାନେ ଦେଖୁଥିଲେ ଓ ଦେଖାଉଥିଲେ ପ୍ରତିରକ୍ଷାର ଯୁଦ୍ଧଭାବରେ ଏବଂ ଏକ ଦିଗରୁ ଦେଖିଲେ ସେଥିରେ ଯଥେଷ୍ଟ ସତ୍ୟତା ବି ଥିଲା; କିନ୍ତୁ ଯୁଦ୍ଧର ଆଉ ଏକ ବିଭାଗ ଥିଲା; ଏକ ନୈତିକ ବିଭାବ ଯାହା ସାମରିକ ଲକ୍ଷ୍ୟ ପାର ହୋଇ ଫାସିଷ୍ଟ ମତବାଦ ଓ ଦୃଷ୍ଟିଭଙ୍ଗୀ ଉପରେ ପ୍ରଚଣ୍ଡ ଆଘାତ ହାଣୁଥିଲା । କାରଣ ଯେପରି କୁହାଯାଉଥିଲା, ଏ ଯୁଦ୍ଧ ବିଶ୍ୱ ଜନତାର ଆତ୍ମାର ନିରାପତ୍ତା ନିମନ୍ତେ ଉଦ୍ଦିଷ୍ଟ ଥିଲା । ଏଥିରେ ନିହିତ ଥିଲା ପରିବର୍ତ୍ତନର ବୀଜ, ଫାସିଷ୍ଟ ଦେଶମାନଙ୍କ ପାଇଁ କେବଳ ନୁହେଁ, ମିଳିତ ଜାତିସଂଘ ପାଇଁ ମଧ୍ୟ । ଯୁଦ୍ଧର ଏହି ନୈତିକ ବିଭବକୁ ପ୍ରବଳ ପ୍ରଚାରଦ୍ୱାରା ଢାଙ୍କି ଦିଆଗଲା ଏବଂ ଜୋର୍ ଦିଆଗଲା ଗୋଟାଏ ନୂତନ ଭବିଷ୍ୟତ ସୃଷ୍ଟିକରିବା ଉପରେ ନୁହେଁ, ପ୍ରତିରକ୍ଷା ଓ ଅତୀତକୁ ଆନୁଷ୍ଠାନ କରିବା ଉପରେ । ପଶ୍ଚିମ ଜଗତରେ ସେପରି ବହୁ ଲୋକ ଥିଲେ, ଯେଉଁମାନେ ଏହି ନୈତିକ ବିଭବ ଉପରେ ଗଭୀର ବିଶ୍ୱାସ ସ୍ଥାପନ କରିଥିଲେ ଏବଂ ସେପରି ଏକ ନୂତନ ଦୁନିଆର ସର୍ଜନା ନିମନ୍ତେ ଉତ୍କଣ୍ଠିତ ଥିଲେ, ଯାହା ବିଶ୍ୱଯୁଦ୍ଧରେ ପ୍ରତିଫଳିତ ମାନବ ସମାଜର ବିଫଳତା ବିରୁଦ୍ଧରେ ନିଶ୍ଚିତ ଭାବରେ କିଛି ବାସ୍ତବ ବ୍ୟବସ୍ଥା ଗ୍ରହଣ କରିବ । ଯୁଦ୍ଧକ୍ଷେତ୍ରରେ ଯେଉଁମାନେ ଲଢ଼ୁଥିଲେ ଓ ଜୀବନ ଦେଉଥିଲେ, ବିଶେଷକରି ସେମାନଙ୍କୁ ମିଶାଇ ପୃଥିବୀର ସର୍ବତ୍ର ବିପୁଳ ସଂଖ୍ୟକ ଲୋକ ଥିଲେ ଯେଉଁମାନେ ଅସ୍ପଷ୍ଟ ଅଥଚ ଅବିଚଳ ଭାବରେ ଏହି ପରିବର୍ତ୍ତନ ପାଇଁ ଚାହିଁ ରହିଥିଲେ । ୟୁରୋପ ଓ ଆମେରିକାରେ ଏବଂ ତତୋଽଧିକ ଭାବରେ ଏସିଆ ଓ ଆଫ୍ରିକାରେ ହୃତସର୍ବସ୍ୱ, ଶୋଷିତ ଓ ବର୍ଣ୍ଣବୈଷମ୍ୟର ଶିକାର ସେପରି କୋଟି କୋଟି ଲୋକ ଥିଲେ, ଯେଉଁମାନେ ସେମାନଙ୍କର ଅତୀତର ସ୍ମୃତିରୁ ଓ ବର୍ତ୍ତମାନର ଦୁର୍ଦ୍ଦଶାରୁ ଯୁଦ୍ଧକୁ ବିଚ୍ଛିନ୍ନ କରିପାରୁନଥିଲେ ଏବଂ ଯେବେ ଆଶା କରିବା ହୋଇ ଉଠିଥିଲା ଅସଙ୍ଗତ, ସେତେବେଳେ ମଧ୍ୟ ଖୁବ୍ ଆବେଗଭରେ ଆଶା କରୁଥିଲେ ଯେ ଯୁଦ୍ଧ ସେ ସବୁ ବୋଝ ସେମାନଙ୍କ ଉପରୁ ନିଶ୍ଚିତ ଭାବରେ ଓହ୍ଲାଇବ ଯାହାର ଓଜନ ତଳେ ସେମାନେ ଜୀବନ୍ମୃତ ହେଲେଣି ।

କିନ୍ତୁ ମିଳିତ ଜାତିସଂଘ ନେତୃବର୍ଗଙ୍କ ଦୃଷ୍ଟି ଅନ୍ୟ କେଉଁଠି ଥିଲା । ସେମାନେ ଚାହୁଁଥିଲେ ଅତୀତକୁ; ସମ୍ମୁଖର ଭବିଷ୍ୟତକୁ ନୁହେଁ । ସେମାନଙ୍କ ଦେଶର ଜନସାଧାରଣଙ୍କ କ୍ଷୁଧା ତୃପ୍ତ କରିବା ଉଦ୍ଦେଶ୍ୟରେ ବେଳେବେଳେ ଅନର୍ଗଳ ଭାଷାରେ ସେମାନେ ଭବିଷ୍ୟତ କଥା କହୁଥିଲେ; କିନ୍ତୁ ସେମାନଙ୍କର ଏହିସବୁ ଚମତ୍କାର ଭାଷା ସଙ୍ଗେ ସେମାନଙ୍କ ନୀତିର କୌଣସି ସମ୍ପର୍କ ନଥିଲା । ଓ୍ୱିନ୍‌ଷ୍ଟନ୍ ଚର୍ଚ୍ଚିଲଙ୍କ ପକ୍ଷରେ ସେ ଯୁଦ୍ଧ ଥିଲା ପୁନରୁତ୍‌ଥାନର ଯୁଦ୍ଧ, ତା'ଠାରୁ ଅଧିକ କିଛି ନୁହେଁ; ସାମାନ୍ୟ କିଛି ପରିବର୍ତ୍ତନ କେଉଁଠି କିପରି କରିଦେଇ ଇଂଲଣ୍ଡ ଓ ତାର ସାମ୍ରାଜ୍ୟର ରାଜକୀୟ ଢାଞ୍ଚା ଅକ୍ଷୁଣ୍ଣ ରଖିବା । ପ୍ରେସିଡେଣ୍ଟ ରୁଜ୍‌ଭେଲ୍ଟ ଆହୁରି ବଡ଼ ବଡ଼ ପ୍ରତିଶ୍ରୁତି ବିଷୟରେ କହୁଥିଲେ ମୁଦ୍ଧା ତାଙ୍କର ନୀତି ମୌଳିକ ଭାବରେ କିଛି ଭିନ୍ନ ନଥିଲା । ତଥାପି ପୃଥିବୀର ସର୍ବତ୍ର ବହୁ ଲୋକ ତାଙ୍କୁ ଜଣେ ଦୂରଦୃଷ୍ଟିସମ୍ପନ୍ନ ଓ ଉଚ୍ଚକୋଟୀର ରାଷ୍ଟ୍ରନୀତିଜ୍ଞ ବୋଲି ଆଶାୟୀ ଆଖିରେ ଚାହୁଁଥିଲେ ।

ଅତଏବ, ବ୍ରିଟିଶ ଶାସକଗୋଷ୍ଠୀ ଯେତେଦୂର ସମ୍ଭାଳିବା ପାଇଁ ପ୍ରସ୍ତୁତଥିଲେ, ଭାରତର

ଭବିଷ୍ୟତ ଓ ପୃଥିବୀର ମଧ୍ୟ, ଅତୀତଠାରୁ ମୌଳିକ ଭାବରେ କିଛି ଭିନ୍ନ ହେବନି ଏବଂ ସେଥି ହେତୁରୁ ବର୍ତ୍ତମାନ କର୍ତ୍ତବ୍ୟ ହେଉଛି ସେଥି ସଙ୍ଗେ ସଙ୍ଗତ ରକ୍ଷାକରି ଚାଲିବା; କିନ୍ତୁ ସେହି ବର୍ତ୍ତମାନରେ ଏହି ଭବିଷ୍ୟତର ବୀଜ ବୁଣାହେଉଥିଲା । କ୍ରିପ୍ସ ପ୍ରସ୍ତାବ ବାହାରକୁ କେତେ ପ୍ରଗତିଶୀଳ ଦେଖାଯାଉଥିଲେ ସୁଦ୍ଧା ଯେଉଁ ସବୁ ନୂତନ ତଥା ବିପଜ୍ଜନକ ସମସ୍ୟା ଆମ୍ଭମାନଙ୍କ ପାଇଁ ସୃଷ୍ଟିକଲା ତାହା ସ୍ୱାଧୀନତା ପଥରେ ଅନତିକ୍ରମ୍ୟ ପ୍ରତିବନ୍ଧକ ହେବାର ଆଶଙ୍କା ପ୍ରବଳ ଥିଲା । କେତେ ପର୍ଯ୍ୟନ୍ତ ସେ ଉଦ୍ଦେଶ୍ୟ ସାଧିତ ହୋଇସାରିଥିଲା । ଭାରତରେ ବ୍ରିଟିଶ୍ ସରକାରଙ୍କ ସର୍ବବ୍ୟାପୀ ସ୍ୱୈରତନ୍ତ୍ର ଓ ବ୍ୟକ୍ତି-ସ୍ୱାଧୀନତା-ବିରୋଧୀ ପ୍ରଭୁତ୍ୱ ଏବଂ ଅତି ସାଧାରଣ ନାଗରିକ ଅଧିକାର ଅପହରଣ ଯୁଦ୍ଧ ସମୟରେ ଓ ଯୁଦ୍ଧର ଅନ୍ତରାଳରେ ଶେଷ ସୀମାରେ ପହଞ୍ଚିସାରିଥିଲା । ଏ ପୁରୁଷରେ କୌଣସି ଲୋକର ସେ ଅଭିଜ୍ଞତା ହୋଇ ନଥିବ । ଆମ ଲାଗି ଆମର ପରାଧୀନ ଅବସ୍ଥା ଓ ଛିନ୍ନଭିନ୍ନ ଲାଞ୍ଛନାର ଜୀବନ ସମ୍ପର୍କରେ ସେ ସବୁ ଥିଲା ନିରାନନ୍ଦ ସ୍ମାରକ । ସେ ସବୁ ଥିଲା ଭବିଷ୍ୟତର, ଯାହା ସବୁ ହେବାକୁ ଥିଲା, ତାର ପୂର୍ବ ଲକ୍ଷଣ । କାରଣ ଏହି ବର୍ତ୍ତମାନରୁ ହିଁ ସେହି ଭବିଷ୍ୟତ ଗଢ଼ିଉଠେନ୍ତା । ଏହି ଅଧୋଗତି ଅପେକ୍ଷା ଅନ୍ୟ ଯାହା କିଛି ଶ୍ରେୟସ୍କର ବୋଧ ହେଉଥିଲା ।

ଭାରତରେ କୋଟି କୋଟି ଲୋକଙ୍କ ଭିତରୁ କେତେ ଜଣ ଏପରି ଭାବରେ ଅନୁଭବ କରୁଚନ୍ତି, କହିବା ଅସମ୍ଭବ । ସେହି କୋଟି କୋଟି ଲୋକଙ୍କ ଭିତରୁ ଅଧିକାଂଶ ଲୋକଙ୍କର ସମସ୍ତ କିଛି ଚେତନାବୋଧ ଦରିଦ୍ରତା ଓ ଦାରୁଣ ଯନ୍ତ୍ରଣା ଫଳରେ ନିର୍ଜୀବ ହୋଇଯାଇଚି । ଅନ୍ୟମାନଙ୍କ ଭିତରୁ ଅନେକେ ପଦାଧିକାର, ସ୍ୱାଧିକାର କିମ୍ବା ନ୍ୟସ୍ତସ୍ୱାର୍ଥଦ୍ୱାରା ଦୁର୍ନୀତିଗ୍ରସ୍ତ ହୋଇସାରିଥିଲେ କିମ୍ବା ସେମାନଙ୍କ ମନ କୌଣସି ବିଶେଷାଧିକାର ଦିଗରେ ଆକର୍ଷିତ ହୋଇସାରିଥିଲା । ତଥାପି ସେହି ବୋଧଟ୍ରାସ୍ତ ସର୍ବଜ ରହିଥିଲା; ତାରତମ୍ୟ ଯାହା ଥିଲା, ତାର ନିବିଡ଼ତାରେ ଓ ତୀବ୍ରତାରେ । ବେଳେବେଳେ ତାହା ଅନ୍ୟ ସମସ୍ତ ବୋଧ ଓ ଅନୁଭୂତି ଦ୍ୱାରା ଆଚ୍ଛନ୍ନ ହୋଇପଡ଼ୁଥିଲା । ସେଥିରେ ନାନା ସ୍ତର ଥିଲା । କେହି କେହି ସୁତୀବ୍ର ଅଭିଳାଷ ଓ ଅତୃପ୍ତ ବିଶ୍ୱାସର ତାଡ଼ନାରେ ସବୁ କିଛିର ସମ୍ମୁଖୀନ ହୋଇ କର୍ମଭୂମିରେ ଦର୍ପଭରେ ଅବତୀର୍ଣ୍ଣ ହେବାକୁ ଯଦି ଚାହୁଁଥିଲେ, ଅନ୍ୟମାନେ ନିରାପଦ ଦୂରତାରେ ରହି କେବଳ ଅସ୍ପଷ୍ଟ ସହାନୁଭୂତି ପ୍ରକାଶ କରୁଥିଲେ । କେହି କେହି ସେମାନଙ୍କ ପରବୃତ୍ତିକାର ଉତ୍ପୀଡ଼କ ବାତାବରଣରେ ଶ୍ୱାସରୁଦ୍ଧ ଓ ବ୍ୟାମୋହଗ୍ରସ୍ତ ହୋଇଉଠିଥିଲେ; ଅନ୍ୟମାନେ, ସାଧାରଣ ଜୀବନର ଯାତ୍ରୀ, ସେମାନଙ୍କର ପସନ୍ଦ ନହେବା ଅବସ୍ଥା ସଙ୍ଗେ ନିଜର ମେଳ ରଖି ଚାଲିବା ପାଇଁ ସମର୍ଥ ଥିଲେ ।

ଭାରତରେ ବ୍ରିଟିଶ୍ ଶାସକଗୋଷ୍ଠୀର ପୃଷ୍ଠଭୂମି ଥିଲା ସମ୍ପୂର୍ଣ୍ଣ ଭିନ୍ନ । ପ୍ରକୃତପକ୍ଷେ, ବ୍ରିଟିଶ ମନ ଓ ଭାରତୀୟ ମନ ଭିତରେ ଥିବା ବ୍ୟବଧାନର ବିଶାଳତା ଭଳି ଅଧିକ ଆଶ୍ଚର୍ଯ୍ୟଜନକ କିଛି ନାହିଁ । ଉଭୟ ଭିତରୁ କିଏ ଠିକ୍, କିଏ ନୁହେଁ, ସେ କଥା ସ୍ୱତନ୍ତ୍ର; କିନ୍ତୁ ଏହି ବାସ୍ତବତା ପ୍ରଦର୍ଶିତ କରୁଚି ଯେ ଭାରତରେ ଶାସକଶ୍ରେଣୀ ଭାବରେ କାର୍ଯ୍ୟକାରୀ ହେବାପାଇଁ ଇଂରେଜମାନେ ସମ୍ପୂର୍ଣ୍ଣ ଅସମର୍ଥ ଓ ଅଯୋଗ୍ୟ । କାରଣ ଅଗ୍ରଗତି କରିବାକୁ

ଥିଲେ ଶାସକ ଓ ଶାସିତ ଉଭୟ ଭିତରେ କିଛି ସଙ୍ଗତି, କିଛି ସମାନ ଦୃଷ୍ଟିଭଙ୍ଗୀ ନିତାନ୍ତ ଆବଶ୍ୟକ । ଅନ୍ୟଥା ପ୍ରକାଶ୍ୟ ହେଉ କିମ୍ବା ପ୍ରଚ୍ଛନ୍ନ ହେଉ ସଙ୍ଘର୍ଷ ଅନିବାର୍ଯ୍ୟ । ଭାରତରେ ଇଂରେଜମାନେ ସର୍ବଦା ସେମାନଙ୍କ ଦେଶର ଅନମନୀୟ ରକ୍ଷଣଶୀଳତାର ପ୍ରତିନିଧିତ୍ୱ କରି ଆସିଚନ୍ତି । ଇଂଲଣ୍ଡର ଉଦାରପନ୍ଥୀ ପରମ୍ପରା ଓ ସେମାନଙ୍କ ଭିତରେ ସୌସାଦୃଶ୍ୟ କିଛି ନାହିଁ । ଯେତେ ଅଧିକ ବର୍ଷ ସେମାନେ ଭାରତରେ ଅତିବାହିତ କରନ୍ତି, ସେମାନଙ୍କର ଦୃଷ୍ଟିଭଙ୍ଗୀ ସେତେ ସଙ୍କୀର୍ଣ୍ଣ ଓ କଠୋର ହେଇଉଠେ ଏବଂ ଅବସର ନେଇ ସେମାନେ ଯେତେବେ ଇଂଲଣ୍ଡକୁ ଫେରିଯାଆନ୍ତି ଭାରତୀୟ ବିବିଧ ସମସ୍ୟା ଉପରେ ବ୍ରିଟିଶ ସରକାରଙ୍କୁ ପରାମର୍ଶ ଦେବାରେ ସେମାନେ ବିଶାରଦ ବୋଲାନ୍ତି । ନିଜର ନ୍ୟାୟପରାୟଣତା ସମ୍ପର୍କରେ, ଭାରତରେ ବ୍ରିଟିଶ ଶାସନର ଆବଶ୍ୟକତା ଓ ସୁଫଳ ସମ୍ପର୍କରେ, ରାଜକୀୟ ପରମ୍ପରାର ପ୍ରତିନିଧି ଭାବରେ ସେମାନଙ୍କର ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟ ସମ୍ପର୍କରେ ସେମାନଙ୍କ ମନରେ କୌଣସି ଦ୍ୱିଧା ନଥାଏ । ଭାରତୀୟ ଜାତୀୟ କଂଗ୍ରେସ ଏହି ଶାସନର ସମଗ୍ର ଭିତ୍ତି ବିରୁଦ୍ଧରେ ପ୍ରତିଦ୍ୱନ୍ଦ୍ୱୀ ଭାବରେ ଠିଆହେଲା ଓ ଭାରତକୁ ସେହି ଶାସନକବଳରୁ ମୁକ୍ତ କରିବାକୁ ଉଦ୍ୟତ ହେଲା । ସେମାନଙ୍କ ଆଖିରେ କଂଗ୍ରେସ ହେଲା ଜନସାଧାରଣଙ୍କର ପହିଲା ନମ୍ବର ଶତ୍ରୁ । ଖ୍ରୀ: ୧୯୪୧ରେ କେନ୍ଦ୍ରୀୟ ଆସେମ୍ବ୍ଲିରେ ଭାରତ ସରକାରଙ୍କ ସେସମୟର ସ୍ୱରାଷ୍ଟ୍ର ମନ୍ତ୍ରୀ ସାର୍ ରେଜିନାଲ୍ଡ ମ୍ୟାକ୍ସ ୱେଲ୍ ଭାଷଣ ଦେଲାବେଳେ ତାଙ୍କର ମନର ଏକ ପ୍ରକାଶମାନ ଝଲକ ପ୍ରକଟ କରିଥିଲେ । କଂଗ୍ରେସୀ, ସୋସାଲିଷ୍ଟ ଓ କମ୍ୟୁନିଷ୍ଟ ରାଜନୈତିକ ବନ୍ଦୀମାନଙ୍କୁ ବିଚାରଣାର ସୁଯୋଗ ନଦେଇ ସେମାନଙ୍କ ପ୍ରତି ଜେଲ୍‌ରେ ଯେଉଁ ଅମାନୁଷିକ ବ୍ୟବହାର କରାଯାଉଚି, ତାହା ଜର୍ମାନ୍ ଓ ଇଟାଲୀୟ ଯୁଦ୍ଧବନ୍ଦୀଙ୍କ ପ୍ରତି କରାଯାଉଥିବା ବ୍ୟବହାର ଅପେକ୍ଷା ଆହୁରି କଦର୍ଯ୍ୟ ବୋଲି ଅଭିଯୋଗ କରାଯାଇଥିଲା । ତାର ବିରୁଦ୍ଧରେ ଆତ୍ମପକ୍ଷ ସମର୍ଥନ କରି ସେ କହିଥିଲେ ଯେ ଯାହା ହେଉନା କାହିଁକି, ଜର୍ମାନ ଓ ଇଟାଲୀୟ-ମାନେ ନିଜ ନିଜ ଦେଶପାଇଁ ଲଢ଼ାଇ କରୁଥିଲେ; କିନ୍ତୁ ଏମାନେ ସମାଜର ଶତ୍ରୁ; କାରଣ ପ୍ରଚଳିତ ଶାସନ-ବ୍ୟବସ୍ଥା ଏମାନେ ଉଚ୍ଛେଦ କରିବା ଚାହାଁନ୍ତି । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ଜଣେ ଭାରତୀୟ ନିଜ ଦେଶର ସ୍ୱାଧୀନତା କାମନା କରିବା କିମ୍ବା ଭାରତର ଅର୍ଥନୈତିକ ଢାଞ୍ଚାର ପରିବର୍ତ୍ତନ ଚାହିଁବା ତାଙ୍କୁ ଭ୍ରାନ୍ତ ବୋଧହେଉଥିଲା । ଉଭୟ ଭିତରୁ ତାଙ୍କର ସହାନୁଭୂତି ସ୍ପଷ୍ଟତଃ ଜର୍ମାନ ଓ ଇଟାଲୀୟମାନଙ୍କ ପ୍ରତି ରହିଥିଲା । ଯଦିଓ ସେହି ସମୟରେ ତାଙ୍କର ନିଜ ଦେଶ ଜର୍ମାନୀ ଓ ଇଟାଲୀ ବିରୁଦ୍ଧରେ ପ୍ରାଣମୂର୍ଚ୍ଛା ସଂଗ୍ରାମରେ ନିୟୋଜିତ ଥିଲା । ଏହା ସୋଭିଏତ୍ ୟୁନିଅନ ଯୁଦ୍ଧରେ ପ୍ରବେଶ କରିବା ପୂର୍ବର କଥା ଏବଂ ସେତେ-ବେଳେ ସାମାଜିକ ବ୍ୟବସ୍ଥା ପରିବର୍ତ୍ତନର ଯେ କେଉଁ ଉଦ୍ୟମକୁ ନିନ୍ଦା କରିବା ଥିଲା ନିରାପଦ । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ଫାସିଷ୍ଟ ସରକାରମାନଙ୍କ ପ୍ରତି ବାରମ୍ବାର ପ୍ରଶଂସା ନିବେଦନ କରାଯାଉଥିଲା । ହିଟ୍‌ଲର୍ ତାଙ୍କର ଆତ୍ମଚରିତ 'ମେଇନ୍ କେମ୍ପ'ରେ ଓ ପରବର୍ତ୍ତୀ ସମୟରେ ମଧ୍ୟ କ'ଣ କହିନାହାନ୍ତି ଯେ ବ୍ରିଟିଶ ସାମ୍ରାଜ୍ୟ ରହୁ ବୋଲି ସେ ଚାହାଁନ୍ତି ?

ଅକ୍ଷ-ଶକ୍ତିବର୍ଗଙ୍କ ବିରୁଦ୍ଧରେ ଚାଲିଥିବା ଯୁଦ୍ଧରେ ସବୁମତେ ସହାୟକ ହେବାପାଇଁ ଅବଶ୍ୟ ଭାରତ ସରକାର ଆତୁର ଥିଲେ; କିନ୍ତୁ ସେ ଯୁଦ୍ଧରେ ବିଜୟ ଲାଭ କଲେ ସୁଦ୍ଧା ତାହା ଅସମ୍ପୂର୍ଣ୍ଣ ରହିଯିବ ଯଦି ସେଥି ସଙ୍ଗେ ଆଉ ଏକ ବିଜୟ ହାସଲ ନହୁଏ ଅର୍ଥାତ୍ ମୁଖ୍ୟତଃ କଂଗ୍ରେସ ନେତୃତ୍ୱରେ ଚାଲିଥିବା ଜାତୀୟତାବାଦୀ ଆନ୍ଦୋଳନକୁ ଯଦି ଧୂଳିରେ ମିଶାଇ ଦିଆନଯାଏ । ଏହା ଥିଲା ସେମାନଙ୍କ ମନର କଥା । ଏହିପରି ଆଲୋଚନା ସେମାନଙ୍କୁ ବିଚଳିତ କରିଥିଲା ଏବଂ ତାହା ବିଫଳହେବାରେ ସେମାନେ ଆନନ୍ଦିତ ଥିଲେ । ବର୍ତ୍ତମାନ ପଥ ନିର୍ମୁକ୍ତ ଥିଲା କଂଗ୍ରେସ ଉପରେ ଓ ତାର ସମର୍ଥକ ଅନ୍ୟ ସମସ୍ତଙ୍କ ଉପରେ ଚୂଡ଼ାନ୍ତ ଚଢ଼ାଉ କରିବା ପାଇଁ । ସେ ମୁହୂର୍ତ୍ତ ଥିଲା ଅତିଶୟ ଅନୁକୂଳ; କାରଣ ପୂର୍ବେ କେଉଁ ସମୟରେ ହେଲେ କେନ୍ଦ୍ରରେ ଭାଇସରାୟଙ୍କ ହାତରେ ଓ ପ୍ରଦେଶମାନଙ୍କରେ ତାଙ୍କର ମୁଖ୍ୟ ସହକାରୀମାନଙ୍କ ହାତରେ ଏଭଳି ଅସୀମ କ୍ଷମତା କେନ୍ଦ୍ରିତ ହୋଇନଥିଲା । ଯୁଦ୍ଧ ପରିସ୍ଥିତି ବିଷମ ହୋଇ ଉଠିଛି, ଏ ଅବସ୍ଥାରେ କୌଣସି ବିରୋଧ କିମ୍ବା ଗଣ୍ଡଗୋଳ ବରଦାସ୍ତ କରାଯିବ ନାହିଁ—ଏ ଯୁକ୍ତି ବି ଅବାନ୍ତର ମନେହୁଅନ୍ତା ନାହିଁ । ଭାରତ ସମ୍ପର୍କରେ ଆଗ୍ରହଶୀଳ ଇଂଲଣ୍ଡ ଓ ଆମେରିକାର ଉଦାରପନ୍ଥୀମାନଙ୍କୁ ଏହିପରି ବ୍ୟାପାର ଓ ତାର ପରବର୍ତ୍ତୀ ପରିପ୍ରଚାରଦ୍ୱାରା ନୀରବ କରି ଦିଆଯାଇଥିଲା । ଇଂଲଣ୍ଡରେ ଭାରତ ସମ୍ପର୍କରେ ସଦା ବିଦ୍ୟମାନ ଧାରଣା ଯେ ଇଂରେଜମାନେ ଭାରତର କଲ୍ୟାଣ ବାଞ୍ଛା କରନ୍ତି, ବହୁତ ପରିମାଣରେ ବଢ଼ି ଯାଇଥିଲା । ଇଂଲଣ୍ଡରେ ଏକଥା ଅନୁଭବ କରୁଥିଲେ ଯେ ଭାରତୀୟମାନେ କିମ୍ବା ସେମାନଙ୍କ ଭିତରୁ ଅନେକେ ସାଧାରଣତଃ ସାହସହୀନ, ଗଣ୍ଡଗୋଳପ୍ରିୟ, ଦୃଷ୍ଟିଭଙ୍ଗୀରେ ସଂକୀର୍ଣ୍ଣ, ପରିସ୍ଥିତିର ବିପଦ ଉପଲବ୍ଧି କରିବାପାଇଁ ଅସମର୍ଥ ଏବଂ ଖୁବ୍ ସମ୍ଭବ ଜାପାନୀମାନଙ୍କ ପ୍ରତି ସହାନୁଭୂତିଶୀଳ । ଗାନ୍ଧିଜୀଙ୍କ ନାନା ବିବୃତି ଓ ସନ୍ଦର୍ଭ ପ୍ରମାଣିତ କରୁଛି ଯେ ସେ କିଭଳି ବିବେଚନାହୀନ ଏବଂ ଏକମାତ୍ର ବାଟ ହେଉଛି ଗାନ୍ଧି ଓ କଂଗ୍ରେସକୁ ଭାରତରେ ଲୋପ କରିଦେଇ ଭାରତର ସମସ୍ତ ଅଡ଼ୁଆ ତୁଟାଇଦେବା । ଏହା ଥିଲା ଇଂଲଣ୍ଡର ବିଚାର ।

## ୩. ବୈପ୍ଳବିକ ଜନଜାଗରଣ ଓ ସରକାରୀ ଦମନଲୀଳା

ଅଗଷ୍ଟ ନଅ ତାରିଖ, ୧୯୪୨ । ସୂର୍ଯ୍ୟୋଦୟ ପୂର୍ବରୁ ଭାରତସାରା ବହୁ ଲୋକଙ୍କୁ ଗିରଫ କରାଗଲା । ତା'ର ପରେ ? ବହୁ ସପ୍ତାହ ପରେ ଅଳ୍ପ ଅଳ୍ପ କରି ଖବର ଆମ ପାଖରେ ପହଞ୍ଚିବାକୁ ଲାଗିଲା । ତଥାପି ଏବେ ସୁଦ୍ଧା ସେ ସମୟର ଏକ ପୂର୍ଣ୍ଣାଙ୍ଗ ଚିତ୍ର ଆମ ଆଗରେ ନାହିଁ । ବିଖ୍ୟାତ ନେତା ସମସ୍ତଙ୍କୁ ଅଚାନକ ଧରିନିଆଯାଇଥିଲା ଏବଂ ପରବର୍ତ୍ତୀ କର୍ମପନ୍ଥା କ'ଣ ହେବ କେହି ସ୍ପଷ୍ଟ ଭାବରେ କହିପାରି ନଥିଲେ । ଏ ଅନ୍ୟାୟର ପ୍ରତିବାଦ କରାନଯିବ କିପରି ? ଦେଶରେ ସର୍ବତ୍ର ସ୍ୱତଃସ୍ଫୂର୍ତ୍ତ ଭାବରେ ଗଣବିକ୍ଷୋଭ ସୃଷ୍ଟିହେଲା । ବିକ୍ଷୋଭକାରୀଙ୍କ ଉପରେ ଗୁଳି ଚାଲିଲା, ଲୁହାବୁହା ଗ୍ୟାସ୍ ପ୍ରୟୋଗ କରାଗଲା । ଯେଉଁସବୁ ମାଧ୍ୟମରେ ଜନମତ ପ୍ରକାଶିତ ହୁଅନ୍ତା, ସେ ସବୁ ରୁଦ୍ଧ କରି ଦିଆଗଲା । ଲୋକେ ବ୍ୟତିବ୍ୟସ୍ତ ହୋଇ

ଉଠିଲେ । ଲୋକଙ୍କ ମନରେ ଦବିରହିଥିବା କ୍ରୋଧ ଓ ଭାବାବେଗ ମୁକ୍ତି ଲାଭକଲା ଏବଂ କି ସହର କି ମଫସଲ ସବୁଠି ଲୋକେ ସମବେତ ଭାବରେ ପ୍ରତିବାଦ କରିବା ଅବସରରେ ପୁଲିସ୍ ଓ ମିଲିଟାରି ସଙ୍ଗେ ସଂଘର୍ଷରେ ଲିପ୍ତହେଲେ । ଲୋକେ ଥାନା, ଡାକଘର, ରେଲଷ୍ଟେସନ ଉପରେ ଚଢ଼ାଉ କଲେ । ଟେଲିଗ୍ରାଫ୍ ଓ ଟେଲିଫୋନ୍ ତାର କାଟିଲେ । ଏପରି ଭାବରେ, ସେମାନେ ପ୍ରଭୁତ୍ୱ ଓ କ୍ଷମତାର ପ୍ରତୀକ ବୋଲି ଯାହା ମନେକଲେ ସେଥି ଉପରେ, ସେମାନଙ୍କର ଆକ୍ରୋଶ ଅଭିବ୍ୟକ୍ତ ଲାଭିଲା । ସେହି ନିରସ୍ତ୍ର ନାୟକହୀନ ଜନତା, ସରକାରୀ କଳନା ଅନୁସାରେ, ପାଞ୍ଚଶହ ଅଠଚାଳିଶ ଥର ପୁଲିସ ଓ ମିଲିଟାରି ଗୁଳିର ସମ୍ମୁଖୀନ ହୋଇଥିଲେ । କେତେକ ସ୍ଥାନରେ ଉଡ଼ାଜାହାଜରୁ ସେମାନଙ୍କ ଉପରେ ମେସିନ୍ ଗନ୍‌ରୁ ଗୁଳି କରାଯାଇଥିଲା । ମାସେ ଦି'ମାସ ପର୍ଯ୍ୟନ୍ତ କି ଆହୁରି ବେଶି ଦିନଧରି ଦେଶର ବିଭିନ୍ନ ଅଞ୍ଚଳରେ ଏହି ଅଶାନ୍ତି ଅବ୍ୟାହତ ରହିଲା ଏବଂ ତା'ପରେ, କାଁ-ଭାଁ ଗଣ୍ଡଗୋଳ ବ୍ୟତୀତ, ସମ୍ପୂର୍ଣ୍ଣ ଭାବରେ ମଉଳିଗଲା । ଇଂଲଣ୍ଡର ପାର୍ଲାମେଣ୍ଟ, ହାଉସ୍ ଅଫ୍ କମନ୍ସରେ ଚର୍ଚ୍ଚିଲ କହିଲେ, 'ସରକାରଙ୍କ ସମସ୍ତ ପରାକ୍ରମ ପ୍ରୟୋଗ କରି ଉପଦ୍ରବ ମୂଳପୋଛ କରି ଦିଆଗଲା ।' ଭାରତୀୟ ପୋଲିସର ଆନୁଗତ୍ୟ, ସ୍ଥୈର୍ଯ୍ୟ ଓ ସାହସିକତା ଆଉ ଉଚ୍ଚ ପ୍ରଶଂସା-ଯୋଗ୍ୟ ଭାରତୀୟ କର୍ମଚାରୀବର୍ଗଙ୍କ ଆଚରଣର ଭୂୟସୀ ପ୍ରଶଂସା ସେ କରିଥିଲେ । ସେ ଆହୁରି କହିଲେ, 'ଭାରତରେ ଅଧିକ ସୈନ୍ୟ ପହୁଞ୍ଚିସାରିଲେଣି ଏବଂ ସେଠାରେ ବର୍ତ୍ତମାନ ଗୋରା ପଲଟନ ସଂଖ୍ୟା ବ୍ରିଟିଶ୍ ସମ୍ପର୍କ ଲାଗିବା ଦିନରୁ ଯେ କେଉଁ ସମୟର ସଂଖ୍ୟାଠାରୁ ଅନେକ ଗୁଣରେ ଅଧିକ ।' ଏହି ଗୋରା ପଲଟନ ଓ ଭାରତୀୟ ପୋଲିସ୍ ଭାରତର ନିରସ୍ତ୍ର ଚାଷୀ ବିରୁଦ୍ଧରେ ଲଢ଼ି ବହୁ କ୍ଷେତ୍ରରେ ଜୟଲାଭ କଲେ ଏବଂ ସେମାନଙ୍କର ବିଦ୍ରୋହ ଦଳିଦେଲେ । ଭାରତରେ ବ୍ରିଟିଶ ରାଜୁତିର ଅନ୍ୟତମ ପ୍ରଧାନ ଅବଲମ୍ବନ କର୍ମଚାରୀଶ୍ରେଣୀ ପ୍ରତ୍ୟକ୍ଷ ଭାବରେ କିମ୍ବା ପରୋକ୍ଷରେ ଏହି ଦମନ ପ୍ରକ୍ରିୟାରେ ସହାୟତା କରିଥିଲେ ।

କି ସହର କି ଗ୍ରାମ, ଦେଶରେ ଏହି ପ୍ରତିକ୍ରିୟା ଅସାଧାରଣ ଭାବରେ ପରିବ୍ୟାପ୍ତ ଥିଲା । ପ୍ରାୟ ପ୍ରତ୍ୟେକ ପ୍ରଦେଶରେ ଓ ବହୁ ଦେଶୀୟ ରାଜ୍ୟରେ ସରକାରୀ ନିଷେଧାଜ୍ଞା ସତ୍ତ୍ୱେ ବିକ୍ଷୋଭ ପ୍ରଦର୍ଶନ କରାଗଲା । ଦେଶର ସବୁଠି ହରତାଳ ଚାଲିଲା : କେଉଁଠି କେତେ ଦିନ, କେଉଁଠି କେତେ ସପ୍ତାହ ଏବଂ କେତେକ ସ୍ଥାନରେ ମାସାଧିକ କାଳ । ଦୋକାନ, ବଜାର ବ୍ୟବସାୟ କାରବାର ବନ୍ଦ ରହିଲା । ସେପରି ମଧ୍ୟ ସୁଶୃଙ୍ଖଳ ମିଳିତ କର୍ମରେ ଅଭ୍ୟସ୍ତ ଓ ଖୁବ୍ ଭଲ ଭାବରେ ସଙ୍ଗଠିତ, ଶିଳ୍ପ-ଶ୍ରମିକମାନେ ବହୁ ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ରମାନଙ୍କରେ ଜାତୀୟ ନେତାମାନଙ୍କୁ ଗିରଫ କରାଯାଇଥିବା ହେତୁରୁ ସରକାରୀ ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ କରି ଧର୍ମଘଟ ଘୋଷଣା କଲେ । ସେଥି ନିମନ୍ତେ କୌଣସି ଆୟୋଜନ କରିବାକୁ ପଡ଼ିନଥିଲା । ତାହା ଆପଣାଛାଏଁ କାର୍ଯ୍ୟକାରୀ ହେଲା । ଏକ ଉଲ୍ଲେଖଯୋଗ୍ୟ ଦୃଷ୍ଟାନ୍ତ ହେଉଛି, ଦେଶ ପକ୍ଷରେ ଅତ୍ୟାବଶ୍ୟକ ଇସ୍ପାତ ନଗରୀ ଜାମ୍‌ସେଦପୁରରେ, କାରଖାନାର କାରିଗରମାନେ, ଯେଉଁମାନେ ଭାରତର ସବୁ ପ୍ରାନ୍ତରୁ ଆସିଥାନ୍ତି, ପନ୍ଦର ଦିନ ପର୍ଯ୍ୟନ୍ତ କାର୍ଯ୍ୟରେ ଯୋଗଦେଇ ନଥିଲେ ଏବଂ ଯେଉଁ ପ୍ରତିଶ୍ରୁତି ଉପରେ କାମରେ ଯୋଗଦେବା

ପାଇଁ ସେମାନେ ରାଜି ହେଇଥିଲେ, ତାହା ହେଉଛି ଯେ କାରଖାନା କର୍ତ୍ତୃପକ୍ଷ କଂଗ୍ରେସ ନେତାମାନଙ୍କୁ ଜେଲ୍‌ରୁ ଖଲାସ କରାଇବେ ଏବଂ ଗୋଟାଏ ଜାତୀୟ ସରକାର ଗଠନ ଦିଗରେ ଯଥାସମ୍ଭବ ଉଦ୍ୟମ କରିବେ । ବୟନ ଶିଳ୍ପର ମହାନ୍ କେନ୍ଦ୍ର ଅହମଦାବାଦରେ ଟ୍ରେଡ୍ ୟୁନିଅନ୍ ପକ୍ଷରୁ ନିର୍ଦ୍ଦେଶ ଦିଆଯିବା ପୂର୍ବରୁ ସେଠାର ସମସ୍ତ କଲକାରଖାନାରେ ସ୍ୱତଃ ସମସ୍ତ କାମଦାମ ବନ୍ଦ ହେଇ ଯାଇଥିଲା । (୧) ଭାଙ୍ଗିବାର ସମସ୍ତ ଉଦ୍ୟମ ସତ୍ତ୍ୱେ ଅହମଦାବାଦର ଧର୍ମଘଟ ଶାନ୍ତିପୂର୍ଣ୍ଣ ଭାବରେ ତିନି ମାସରୁ ଅଧିକ କାଳ ଧରି ଚାଲିଥିଲା । ସେହି ଧର୍ମଘଟ ଥିଲା ଶ୍ରମିକମାନଙ୍କର ସମ୍ପୂର୍ଣ୍ଣ ରାଜନୈତିକ ତଥା ସ୍ୱତଃସ୍ଫୂର୍ତ୍ତ ପ୍ରତିକ୍ରିୟା ଏବଂ ସେଥିଲାଗି ସେମାନଙ୍କୁ ଅତ୍ୟଧିକ କ୍ଷତି ସହିବାକୁ ପଡ଼ିଲା; କାରଣ ସେ ସମୟରେ ମଜୁରି ହାର ଥିଲା ଅପେକ୍ଷାକୃତ ଅଧିକ । ଶ୍ରମିକମାନେ ଧର୍ମଘଟ କାଳରେ ବାହାରୁ କୌଣସି ଆର୍ଥିକ ସାହାଯ୍ୟ ପାଇ ନଥିଲେ । ଅନ୍ୟାନ୍ୟ କେନ୍ଦ୍ରରେ ଅଳ୍ପଦିନ ପାଇଁ କେବଳ ଧର୍ମଘଟ ଚାଲିଥିଲା । ଅଉ ଏକ ବଡ଼ ବୟନକେନ୍ଦ୍ର କାନପୁରରେ, ମୁଁ ଯେତେଦୂର ଜାଣେ, ସେପରି କିଛି ବଡ଼ ଧରଣର ଧର୍ମଘଟ ହେଇ ନଥିଲା । ତାର ପ୍ରଧାନ କାରଣ ହେଉଛି, ଶ୍ରମିକମାନଙ୍କର କମ୍ୟୁନିଷ୍ଟ ନେତୃତ୍ୱ ସଫଳ ଭାବରେ ତାହା ଅନ୍ୟଥା କରିଦେଇ ପାରିଲା । ସେହିସବୁ ରେଳପଥରେ ଯେଉଁଠି ସରକାରଙ୍କ ସ୍ୱତ୍ୱ ଥିଲା, ଲକ୍ଷଣୀୟ ଭାବରେ ଯେପରି କିଛି କାମ ବନ୍ଦ ହେଇନି । ସେହି କ୍ଷେତ୍ରରେ ସରକାରଙ୍କୁ ଯାହା କ୍ଷତି ସହିବାକୁ ପଡ଼ିଲା ତାହା କେବଳ ଲୋକଙ୍କ ଉପଦ୍ରବ ଯୋଗୁଁ ଏବଂ ତାର ପରିମାଣ ବି କିଛି କମ୍ ନଥିଲା ।

---

(୧) ଏଠି ସରକାରୀ କର୍ମଚାରୀମାନେ ଏକଥା କହିଛନ୍ତି ଏବଂ ଅନ୍ୟମାନେ ବହୁ ଅବସରରେ ତାର ପୁନରାବୃତ୍ତି ବି କରିଛନ୍ତି ଯେ ସେହି ସବୁ ଧର୍ମଘଟ ବିଶେଷତଃ ଜାମ୍‌ସେଦପୁର ଓ ଅହମଦାବାଦରେ ମିଲମାଲିକମାନେ ଉତ୍ସାହିତ କରିଥିଲେ । ଏଥିରେ ତିଳେମାତ୍ର ସତ୍ୟ ନାହିଁ, କାରଣ ଧର୍ମଘଟ ହେଲା ଅର୍ଥ ମିଲ୍‌ମାଲିକର ବହୁତ କିଛି କ୍ଷତି । ଏପରି ଭାବରେ ନିଜର ସ୍ୱାର୍ଥ ବିରୁଦ୍ଧରେ କାର୍ଯ୍ୟ କରିବା ଲାଗି ସମର୍ଥ କୌଣସି ଶିଳ୍ପପତିଙ୍କୁ ମୁଁ ଏ ପର୍ଯ୍ୟନ୍ତ ଜାଣିନି । ଏକଥା ଅବଶ୍ୟ ସତ୍ୟ ଯେ ବହୁ ଶିଳ୍ପପତି ଭାରତର ସ୍ୱାଧୀନତା ସଂଗ୍ରାମ ପ୍ରତି ସହାନୁଭୂତିଶୀଳ ଏବଂ ସ୍ୱାଧୀନତା ସେମାନଙ୍କର କାମ୍ୟ; କିନ୍ତୁ ଆବଶ୍ୟକତଃ ସେମାନେ ସେପରି ଏକ ସ୍ୱାଧୀନତାର ଧାରଣା ପୋଷଣ କରନ୍ତି ଯେଉଁଠି ସେମାନଙ୍କର ନିରାପତ୍ତା ଅକ୍ଷୁଣ୍ଣ ରହିବ । ସାମାଜିକ ବ୍ୟବସ୍ଥାରେ କୌଣସି ବୈପ୍ଳବିକ କିମ୍ବା ମୌଳିକ ପରିବର୍ତ୍ତନର ପକ୍ଷପାତୀ ସେମାନେ ନୁହନ୍ତି । ଏପରି ବି ହେଇପାରିଥାଏ ଯେ ଖ୍ରୀ: ୧୯୪୨ ଅଗଷ୍ଟ ଓ ସେପ୍‌ଟେମ୍ବର ମାସରେ, ଲୋକମତର ଗଭୀର ତଥା ପ୍ରସାରଣୀଳ ଚରିତ୍ରଦ୍ୱାରା ପ୍ରଭାବିତ ହେଇ, ପୂର୍ବଭଳି ପୁଲିସ୍ ସହଯୋଗରେ ଧର୍ମଘଟ ଭାଙ୍ଗିବା ପାଇଁ ଆକ୍ରମଣଶୀଳ ତଥା ଦଣ୍ଡବିଧାୟକ ମନୋଭାବ ଧରିବା ଲାଗି, ସେମାନେ ସାହସ କରି ନଥିବେ ।

ପ୍ରଦେଶମାନଙ୍କ ଭିତରେ ସମ୍ଭବତଃ ପଞ୍ଜାବ କେବଳ ଉପଦ୍ରବରୁ ଏକରକମ ରକ୍ଷା ପାଇଥିଲା କହିଲେ ଚଳେ । ତଥାପି, ସେଠାରେ ମଧ୍ୟ କିଛି ହରତାଳ ଓ ଧର୍ମଘଟ ହୋଇଥିଲା । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ, ଯେଉଁଠି ପ୍ରାୟ ସମସ୍ତେ ମୁସଲମାନ, ବଡ଼ ବିଚିତ୍ର କଥା ଘଟିଲା । ପ୍ରଥମେ ସେଠାରେ ଅନ୍ୟ ପ୍ରଦେଶମାନଙ୍କ ଭଳି ଏକା ସମୟରେ ।

---

ବ୍ରିଟିଶ ସମ୍ବାଦପତ୍ର ମହଲ ଓ ରାଜନୀତିରେ ଆଗ୍ରହ ରଖିବା ବ୍ରିଟିଶ ଲୋକେ ଏକପ୍ରକାର ଧରି ନେଇଥାନ୍ତି ଯେ ଭାରତର ବଡ଼ ବଡ଼ ଶିଳ୍ପପତିମାନେ କଂଗ୍ରେସକୁ ଖୁବ୍ ମୋଟା ପଇସା ଦେଉଛନ୍ତି । ଏଥିରେ ସତ୍ୟର ଲେଶ ନାହିଁ । ସେପରି ହେଲେ ମୁଁ ତ ଅନ୍ତତଃ ଜାଣନ୍ତି; କାରଣ ମୁଁ କଂଗ୍ରେସର ସାଧାରଣ ସଂପାଦକ ଓ ସଭାପତି ଭାବରେ ବହୁବର୍ଷ କାର୍ଯ୍ୟ କରିଛି । ଗାନ୍ଧିଜୀ ଓ କଂଗ୍ରେସ ସମାଜ ସଂସ୍କାର କାର୍ଯ୍ୟ; ଯଥା—ଗ୍ରାମ୍ୟ ଶିଳ୍ପ, ଅସ୍ପୃଶ୍ୟତା ଉଚ୍ଛେଦ, ଦଳିତ ଜାତି ଉନ୍ନୟନ ଓ ମୌଳିକ ଶିକ୍ଷାର ପ୍ରସାର ନିମନ୍ତେ କେବେ କେବେ କେହି କେହି ଶିଳ୍ପପତି କିଛି କିଛି ଆର୍ଥିକ ସାହାଯ୍ୟ ଅବଶ୍ୟ ଦେଇଛନ୍ତି; କିନ୍ତୁ ସେମାନେ ସବୁ ସମୟରେ କଂଗ୍ରେସର ରାଜନୈତିକ କାର୍ଯ୍ୟକଳାପରୁ ଦୂରେଇ ରହିଛନ୍ତି । କଂଗ୍ରେସ ଯେବେ ସରକାର ସଙ୍ଗେ ସଂଗ୍ରାମରତ ସେତେବେଳେ କେବଳ ନୁହେଁ, ସାଧାରଣ ସମୟରେ ମଧ୍ୟ କଂଗ୍ରେସ ରାଜନୀତିର ଛାଇ ରୁଠ ସେମାନେ ମାଡ଼ି ନାହାନ୍ତି । ସାମଗ୍ରିକ ଭାବରେ ସେମାନଙ୍କର ସହାନୁଭୂତି ଯାହା ହେଉନା କାହିଁକି, ଅଧିକାଂଶ ପ୍ରତିଷ୍ଠିତ ତଥା ଶାନ୍ତ ବ୍ୟକ୍ତିଙ୍କ ଭଳି ସେମାନେ ବିଶ୍ୱାସ କରନ୍ତି କେବଳ ନିଜର ନିରାପତ୍ତାରେ । କଂଗ୍ରେସର କାର୍ଯ୍ୟ ଚାଲେ ତାର ଅଗଣିତ ସଭ୍ୟଙ୍କ ଚାନ୍ଦା ଓ ଦାନ ସାହାଯ୍ୟରେ । କଂଗ୍ରେସର ବହୁତ କିଛି କାର୍ଯ୍ୟ ନିମନ୍ତେ କାହାକୁ କିଛି ପଇସା ଦେବାକୁ ପଡ଼େନି କିମ୍ବା କାର୍ଯ୍ୟ କରିବା ପାଇଁ କାହାକୁ ବାଧ୍ୟ କରାଯାଏନି । କେବେ କେବେ ନଗରମାନଙ୍କରେ ବ୍ୟବସାୟୀମାନେ କିଛି କିଛି ଅର୍ଥ ସାହାଯ୍ୟ କରିଥାନ୍ତି । ଏ ଦିଗରେ ଗୋଟିଏ ମାତ୍ର ବ୍ୟତିକ୍ରମ ସୂଚିତ କରାଯାଇ-ପାରେ ଯେ ଖ୍ରୀ: ୧୯୩୭ ସାଧାରଣ ନିର୍ବାଚନ ବେଳେ କେତେଜଣ ବଡ଼ ଶିଳ୍ପପତି କଂଗ୍ରେସର କେନ୍ଦ୍ର ନିର୍ବାଚନ ପାଣ୍ଠିକୁ କିଛି ଦାନ କରିଥିଲେ; କିନ୍ତୁ ଆମର କର୍ମ ପରିସର ବିସ୍ତୃତିକୁ ନେଲେ ସେ ପାଣ୍ଠି ମଧ୍ୟ କିଛି ନୁହେଁ କହିଲେ ଚଳେ । ଗତ ପଚିଶ ବର୍ଷକାଳ ଏତେ କମ ଖର୍ଚ୍ଚରେ ଆମେ କଂଗ୍ରେସର ସମସ୍ତ କାର୍ଯ୍ୟ କିପରି ଚଳାଇ ପାରିଲୁ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ପଶ୍ଚିମ ଜଗତର ଲୋକେ ଏ କଥାକୁ ବିଶ୍ୱାସ କରିବେନି । ଏ ପଚିଶ ବର୍ଷ ମଧ୍ୟ ସେପରି କିଛି ସ୍ୱାଭାବିକ ଭାବରେ ବିତି ଯାଇନି । ଏଥି ଭିତରେ ବହୁ ରାଜନୈତିକ ଆନ୍ଦୋଳନ ଫଳରେ ଦେଶ ବାରମ୍ବାର ପ୍ରକମ୍ପିତ ହୋଇଛି । ଆମର ଅନ୍ୟତମ ସୁସଙ୍ଗଠିତ ତଥା ସକ୍ରିୟ ପ୍ରଦେଶ ଯୁକ୍ତପ୍ରଦେଶ (ଉତ୍ତର ପ୍ରଦେଶ)ରେ, ଯାହା ସଙ୍ଗେ ମୁଁ ଭଲ ଭାବରେ ପରିଚିତ, ଆମର ସମସ୍ତ କାର୍ଯ୍ୟର ଆର୍ଥିକ ଭିତ୍ତି ଥିଲା ଚାରିଅଣିଆ ସଭ୍ୟ ଚାନ୍ଦା ।

ବହୁ ଲୋକଙ୍କୁ ଗିରଫ କରାଯାଇ ନଥିଲା କିମ୍ବା ଉତ୍ତେଜନା ସୃଷ୍ଟି କରିଭଳି ସରକାରଙ୍କ ପକ୍ଷରୁ କିଛି ହୋଇନଥିଲା । ଗୋଟାଏ ଦିଗରୁ, ଏହାର କାରଣ ହୋଇପାରେ ଯେ ସୀମାନ୍ତ ଲୋକେ ବିସ୍ଫୋରକ ଦ୍ରବ୍ୟ ଭଳି ବିବେଚିତ ହେଉଥିଲେ; ଅପର ଦିଗରେ, ଜାତୀୟତାବାଦୀ ଜାଗରଣରେ ମୁସଲମାନମାନେ ଯେ ଯୋଗଦେଇ ନାହାନ୍ତି, ଏକଥା ପ୍ରମାଣ କରିବା ଥିଲା ସରକାରଙ୍କ ନୀତି; କିନ୍ତୁ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଯାହା ସବୁ ଘଟୁଥିଲା ତାର ଖବର ଯେତେବେ ସୀମାନ୍ତ ପ୍ରଦେଶରେ ପହୁଞ୍ଚିଲା, ଲୋକେ ନାନା ସ୍ଥାନରେ ବିକ୍ଷୋଭ ପ୍ରଦର୍ଶନ କଲେ ଏବଂ ବ୍ରିଟିଶ ପ୍ରଭୁତ୍ୱକୁ ଆହ୍ୱାନ ଜଣାଇଲେ । ବିକ୍ଷୋଭକାରୀଙ୍କ ଉପରେ ଗୁଳି ଚାଳନା ଏବଂ ଗଣ-ତତ୍ପରତା ଦମନ କରିବାର ପ୍ରଚଳିତ ସମସ୍ତ ଉପାୟ ଅବଲମ୍ବନ କରାଗଲା । ହଜାର ହଜାର ସଂଖ୍ୟାରେ ଲୋକେ ଗିରଫ ହେଲେ ଏବଂ ପଠାଣମାନଙ୍କ ଅଦ୍ୱିତୀୟ ନେତା ବାଦଶାହ ଖାଁ (ଏହି ନାମରେ ଅବଦୁଲ ଗଫର ଖାଁ ପ୍ରଖ୍ୟାତ) ମଧ୍ୟ ପୋଲିସ୍ ମାଡ଼ରେ ଗୁରୁତର ଭାବରେ ଆହତ ହେଲେ । ଏଥିରେ ଲୋକେ ଉତ୍ତ୍ୟକ୍ତ ହେବାର ଯଥେଷ୍ଟ ଖୋରାକ ଥିଲା; କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା, ଲୋକେ ଶାନ୍ତ ରହିଲେ । କାରଣ ଅବଦୁଲ୍ ଗଫୁର ଖାଁ ତାଙ୍କର ବୀର ପଠାଣଙ୍କ ଭିତରେ ଯେଉଁ ଚମତ୍କାର ଶୃଙ୍ଖଳାଜ୍ଞାନ ପ୍ରତିଷ୍ଠା କରିଥିଲେ ତାହା ଉପଯୁକ୍ତ ଅବସରରେ ଆପଣା ମହତ୍ତ୍ୱ ପ୍ରକଟକଲା । ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଯେପରି ଘଟିଲା, ସେପରି କୌଣସି ହିଂସାକାଣ୍ଡ ସେଠାରେ ଘଟିନାହିଁ ।

ଲୋକଙ୍କ ପକ୍ଷରୁ ଏ ଯେଉଁ ଅଗ୍ରନେତା, ଅସଂଗଠିତ ବିକ୍ଷୋଭ ଅପ୍ରତ୍ୟାଶିତ ଭାବରେ ପ୍ରକାଶ ପାଇଲା ଏବଂ ଯାହା ଶେଷରେ ହିଂସାତ୍ମକ ସଙ୍ଘର୍ଷରେ ଓ ଧ୍ୱଂସଲୀଳାରେ ପର୍ଯ୍ୟବସିତ ହେଲା, ତାହା ଥିଲା ସେମାନଙ୍କ ମନୋଭାବର ତୀବ୍ରତାର ପରିମାପ । ସେମାନଙ୍କ ନେତୃବର୍ଗଙ୍କୁ ଗିରଫ କରାଯିବା ପୂର୍ବରୁ ବି ଏ ମନୋଭାବ ଥିଲା; କିନ୍ତୁ ନେତାମାନଙ୍କ ଗିରଫଦାରୀ ଓ ତାର ପଛେ ପଛେ ରୁହାକୁ ରୁହା ଗୁଳି ଚାଳନା ଲୋକଙ୍କୁ କ୍ଷୁବ୍ଧକଲା ଆଉ ସେମାନେ ସେ ପଥ ଅନୁସରଣ କଲେ ଯେଉଁ ପଥ ଗୋଟାଏ ହତାହତ ଜ୍ଞାନଶୂନ୍ୟ ଜନତା କେବଳ ଅନୁସରଣ କରିପାରେ । କଣ କରାଯିବ ବୋଲି କିଛି କାଳ ହୁଏତ ସେମାନେ ଅନିଶ୍ଚିତ ରହିଥିବେ । କିଛି ନିର୍ଦ୍ଦେଶ ନଥିଲା କି କାର୍ଯ୍ୟକ୍ରମ ନଥିଲା । ସେପରି କୌଣସି ସୁବିଦିତ ବ୍ୟକ୍ତି ବି ନଥିଲେ ଯିଏ ନେତୃତ୍ୱ ଦେଇ ସେମାନଙ୍କୁ କହି ଦିଅନ୍ତେ କଣ କରିବାକୁ ହେବ । ଅଥଚ ସେମାନେ ଏତେ ଭଲି କ୍ରୋଧାନ୍ୱିତ ଥିଲେ ଯେ କିଛି ନକରି ରହିପାରି ନଥାନ୍ତେ । ସେପରି ଅବସ୍ଥାରେ, ବହୁଧା ଯେପରି ଘଟିଥାଏ, ଘଟଣାସ୍ଥଳରୁ ନେତା ବାହାରିପଡ଼ିଲେ ଏବଂ ସେ ସମୟଟିକ ପାଇଁ ଲୋକେ ସେମାନଙ୍କ ପଛରେ ଚାଲିଲେ । ସେମାନେ ମଧ୍ୟ ଯେଉଁ ନିର୍ଦ୍ଦେଶ ଦେଲେ ତାହା କିଛି ନୁହେଁ । ସାରତଃ ତାହା ଥିଲା ଏକ ସ୍ୱତଃସ୍ଫୂର୍ତ୍ତି ଗଣବିଦ୍ରୋହ । ଦେଶସାରା ଯୁବକ-ଯୁବତୀ ବିଶେଷତଃ ବିଶ୍ୱବିଦ୍ୟାଳୟ ଛାତ୍ରଛାତ୍ରୀ '୪୨ର ହିଂସାତ୍ମକ ଓ ଶାନ୍ତିପୂର୍ଣ୍ଣ ଉଭୟ କାର୍ଯ୍ୟକଲାପରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ବହୁ ବିଶ୍ୱବିଦ୍ୟାଳୟ ବନ୍ଦ କରି ଦିଆଗଲା । ସେତେବେଳେ ମୁକ୍ତ କେହି କେହି ସ୍ଥାନୀୟ ନେତା ଶାନ୍ତିପୂର୍ଣ୍ଣ ଆଇନ ଅମାନ୍ୟ ଆନ୍ଦୋଳନ ଚଳାଇବାର ଉଦ୍ୟମ କରିଥିଲେ; କିନ୍ତୁ ସେତେବେଳର ବାତାବରଣରେ

ସେପରି କରିବା ସହଜ ନଥିଲା । ଅହିଂସା ସମ୍ବନ୍ଧରେ ଯେଉଁ ଶିକ୍ଷା ସେମାନଙ୍କୁ ବୁଝାଇ ବୁଝାଇ କୋଡ଼ିଏ ବର୍ଷରୁ ଅଧିକକାଳ ଦିଆଯାଇଥିଲା, ଲୋକେ ତାହା ଭୁଲିଗଲେ; ତଥାପି କୌଣସି ଫଳପ୍ରଦ ହିଂସାକାଣ୍ଡ ନିମନ୍ତେ, ମନରେ ହେଉ କି ଅନ୍ୟ ଭାବରେ ହେଉ, ସେମାନେ ଜମା ପ୍ରସ୍ତୁତ କରିନଥିଲେ; କିନ୍ତୁ ଅହିଂସ-ଉପାୟର ସେହି ଶିକ୍ଷା ହିଁ ସନ୍ଦେହ ଓ ଦ୍ୱିଧା ସୃଷ୍ଟି କଲା ଏବଂ ହିଂସା କର୍ମର ପ୍ରତିବନ୍ଧକ ହେଲା । କଂଗ୍ରେସ ଯଦି ତାର ଆଦର୍ଶ ଭୁଲି ପୂର୍ବରୁ ହିଂସା କର୍ମର କ୍ଷୀଣ ସୂଚନା ସୁଦ୍ଧା ଦେଇଥାନ୍ତା, ଏଥିରେ ସନ୍ଦେହ ନାହିଁ, ଯେତିକି ପରିମାଣରେ ହିଂସାକାଣ୍ଡ ପ୍ରକୃତରେ ଘଟିଲା, ତାହା ଶହେଗୁଣ ବଢ଼ି ଯାଇଥା'ନ୍ତା ।

କିନ୍ତୁ ସେପରି କିଛି ସୂଚନା ଦିଆଯାଇନଥିଲା ଏବଂ ପ୍ରକୃତପକ୍ଷେ କଂଗ୍ରେସର ଅନ୍ତିମ ବାର୍ତ୍ତାରେ ମଧ୍ୟ ଅହିଂସ-କର୍ମର ଗୁରୁତ୍ୱ ଉପରେ ଜୋର୍ ଦିଆଯାଇଥିଲା । ତଥାପି ଦୁଇଟି ଗୋଟାଏ ବିଷୟ ଅନ୍ତତଃ ଜନମାନସରେ କିଛି ପ୍ରଭାବ ପକାଇଥିବ । ଆମେ ଯାହା କହୁଥିଲୁ ଯେ ଗୋଟାଏ ଶତ୍ରୁର ଆକ୍ରମଣ ବିରୁଦ୍ଧରେ ସଶସ୍ତ୍ର ପ୍ରତିରକ୍ଷା ଯଦି ନ୍ୟାୟସଙ୍ଗତ ଓ ବାଞ୍ଛନୀୟ, ପ୍ରଚଳିତ ସମସ୍ତ ଆକ୍ରମଣ ପ୍ରତି ତାହା ପ୍ରଯୁଜ୍ୟ ନ ହେବ କାହିଁକି ? ଆକ୍ରମଣ ଓ ପ୍ରତିରକ୍ଷାରେ ହିଂସା ଉପାୟ ପ୍ରୟୋଗ ଉପରୁ ବାଧା ଥରେ ଅପସାରିତ ହେବାରେ ତାର ଅବାଞ୍ଛିତ ପରିଣାମ ଘଟିଲା ଏବଂ ଅଧିକାଂଶ ଲୋକଙ୍କ ପକ୍ଷରେ ଉଭୟ ମଧ୍ୟରେ ସୀମାରେଖା ଟାଣିବା ସହଜ ନଥିଲା । ବିଶ୍ୱସାରା ନାନାବିଧ ଜଘନ୍ୟ ହିଂସାକାଣ୍ଡ ଚାଲିଥିଲା ଏବଂ ବିରାମହୀନ ପ୍ରଚାର ସେଥି ନିମନ୍ତେ ଉତ୍ସାହ ଯୋଗାଉଥିଲା । ଫଳତଃ, ତାହା ଉପଯୋଗିତା ଓ ମନୋଭାବର ତୀବ୍ରତାର ଏକ ପ୍ରଶ୍ନ ହୋଇଉଠିଲା । କଂଗ୍ରେସ ଭିତରେ କିମ୍ବା ବାହାରେ ସେତେବେଳେ ବହୁଲୋକ ଥିଲେ, ଯେଉଁମାନଙ୍କର ଅହିଂସା ଉପରେ ତିଳେମାତ୍ର ବିଶ୍ୱାସ ନଥିଲା ଏବଂ ହିଂସା କର୍ମ ସମ୍ବନ୍ଧରେ କୌଣସି ସଙ୍କୋଚ ଅଥବା ବିବେକର ଦଂଶନ ସେମାନଙ୍କୁ ବିବ୍ରତ କରୁନଥିଲା ।

କିନ୍ତୁ ଉତ୍ତେଜନାର ମୁହୂର୍ତ୍ତରେ କମ୍ ଲୋକ ଚିନ୍ତା କରିଥାନ୍ତି । ସେମାନେ କାର୍ଯ୍ୟକରନ୍ତି ସେମାନଙ୍କ ମନରେ ଦବି ହୋଇ ରହିଥିବା ବହୁ ଆବେଗର ତାଡ଼ନାରେ ଏବଂ ସେହି ଆବେଗ ସେମାନଙ୍କୁ ଆଗକୁ ଅଡ଼ାଇନିଏ । ଅତଏବ, ଖ୍ରୀଃ ୧୮୫୭ର ମହାନ୍ ବିଦ୍ରୋହ ପରେ ଏହି ପ୍ରଥମଥର ପାଇଁ ଭାରତରୁ ବଳପୂର୍ବକ (ନିରସ୍ତ୍ର ବଳ ! ) ବ୍ରିଟିଶ ପ୍ରଭୁତ୍ୱର ଅବସାନ ଘଟାଇବା ଉଦ୍ଦେଶ୍ୟରେ ଅସଂଖ୍ୟ ଲୋକ ତେଜି ଉଠିଲେ । ଲୋକଙ୍କର ଏ ଅଭ୍ୟୁତ୍ଥାନ ଜ୍ଞାପନ ଏକପ୍ରକାର ନିର୍ବୋଧତା ଓ ଅକାଳଜାତ କେବଳ ଥିଲା; କାରଣ ସମସ୍ତ କିଛି ସଙ୍ଗଠିତ ଓ ସଶସ୍ତ୍ର ବଳ ଅଧିକ ପରିମାଣରେ, ପ୍ରକୃତପକ୍ଷେ ପୂର୍ବର ଯେକୌଣସି ସମୟ ଅପେକ୍ଷା ଅଧିକ ପରିମାଣରେ ଅନ୍ୟ ପକ୍ଷରେ ଥିଲା । ନିରସ୍ତ୍ର ଜନତାର ସଂଖ୍ୟା ଯେତେ ବଡ଼ ହେଉନା କାହିଁକି, ବଳ କଷାକଷିରେ ସଶସ୍ତ୍ର ଶକ୍ତିକୁ ପରାଭୂତ କରିବା ସମ୍ଭବ ନୁହେଁ । ଯଦି ସଶସ୍ତ୍ର ପକ୍ଷ ସେମାନଙ୍କର ଆନୁଗତ୍ୟ ପରିବର୍ତ୍ତନ ନ କରନ୍ତି, ତାହାହେଲେ ଜନତାର ଉଦ୍ୟମ ବିଫଳ ହେବାପାଇଁ ବାଧ୍ୟ; କିନ୍ତୁ ସେହି ସବୁ ଜନତା ଏ ପ୍ରକାର ମୁହାଁମୁହିଁ ହେବାପାଇଁ ପ୍ରସ୍ତୁତ ହୋଇନଥିଲେ କିମ୍ବା ସେଥି ନିମନ୍ତେ ଉପଯୁକ୍ତ ସମୟ ନିରୂପଣ କରିବାର ସୁଯୋଗ

ପାଇନଥିଲେ । ଅପ୍ରତ୍ୟାଶିତ ଭାବରେ ସଶସ୍ତ୍ରବଳ ସେମାନଙ୍କ ଉପରେ ଚଢ଼ାଉ କରିବସିଲା ଏବଂ ସେଥିପ୍ରତି ସେହି ମୁହୂର୍ତ୍ତର ପ୍ରତିକ୍ରିୟାରେ ସେମାନେ ଯାହା କରିବସିଲେ; ତାହା କେତେ ବିଶୃଙ୍ଖଳ ଓ ଭ୍ରାନ୍ତ ହେଉ ପଛେ, ତାହା ପ୍ରଦର୍ଶିତ କଲା ଭାରତର ସ୍ୱାଧୀନତା ପ୍ରତି ସେମାନଙ୍କର ଅଗାଧ ଅନୁରକ୍ତି ଓ ବିଦେଶୀ ଆଧିପତ୍ୟ ପ୍ରତି ସେମାନଙ୍କର ଆନ୍ତରିକ ଘୃଣା ।

ସାମୟିକ ଭାବରେ ଅନ୍ତତଃ ଅହିଂସ ନୀତି ଯଦିଓ ପରିତ୍ୟକ୍ତ ହେଲା, ସେ ସବାନ୍ତରେ ଲୋକେ ଦୀର୍ଘକାଳ ଅବଧି ଯେଉଁ ଶିକ୍ଷା ଲାଭ କରିଥିଲେ, ତା'ର ଏକ ମହତ୍ତ୍ୱପୂର୍ଣ୍ଣ ତଥା ବାଞ୍ଛନୀୟ ଫଳ ଫଳିଲା । ଏତେ ସବୁ ଉପଦ୍ରବପ୍ରବଣ ଭାବାବେଗ ସତ୍ତ୍ୱେ ଜାତି-ବିଦ୍ୱେଷ, ଯଦି କ୍ୱଚିତ୍ ପ୍ରକାଶ ପାଇଥାଏ, ତାହା ଅତି ନଗଣ୍ୟ ଏବଂ ମୋଟାମୋଟି ଭାବରେ, ପ୍ରତିପକ୍ଷ ଲୋକଙ୍କ ଶରୀରରେ ଆଘାତ ଯେପରି ନ ଲାଗିବ ସେଥିଲାଗି ଲୋକେ ବରାବର ସତର୍କ ଥିଲେ । ସରକାରୀ ସମ୍ପଦ ଓ ଯୋଗାଯୋଗ ବ୍ୟବସ୍ଥା ନାନା ସ୍ଥାନରେ ବିନଷ୍ଟ ହେଲା; କିନ୍ତୁ ସେହି ବିନାଶଲୀଳା ଭିତରେ ସୁଦ୍ଧା ପ୍ରାଣହାନି ଯେପରି ନ ଘଟେ ସେଥିଲାଗି ଯଥେଷ୍ଟ ସତର୍କତା ଅବଲମ୍ବନ କରାଯାଇଥିଲା । ତେବେ ସେପରି ସତର୍କ ରହିବା କିମ୍ବା ରହିବାର ଉଦ୍ୟମ କରିବା ସର୍ବଦା ସମ୍ଭବ ନଥିଲା, ବିଶେଷପକ୍ଷେ ସେପରି ଅବସରମାନଙ୍କରେ ଯେବେ ପୁଲିସ୍ କିମ୍ବା ଅନ୍ୟବିଧ ସଶସ୍ତ୍ର ବଳ ସଙ୍ଗେ ପ୍ରତ୍ୟକ୍ଷ ସଙ୍ଘର୍ଷରେ ଜଡ଼ିତ ହେବାକୁ ପଡ଼ୁଥିଲା । ସରକାରୀ ରିପୋର୍ଟ ଅନୁସାରେ, ଯେତିକି ଏ ପର୍ଯ୍ୟନ୍ତ ମୁଁ ଜାଣିବାର ସୁଯୋଗ ପାଇଛି, ଭାରତସାରା ସେହି ଉପଦ୍ରବ କାଳରେ ପ୍ରାୟ ଶହେ ଜଣ ଉତ୍କ୍ଷିପ୍ତ ଜନତାଦ୍ୱାରା ନିହତ ହୋଇଛନ୍ତି । ଉପଦ୍ରବର କ୍ଷେତ୍ର ଓ ବିସ୍ତୃତି ଏବଂ ପୁଲିସ୍ ସଙ୍ଗେ ଘଟିଥିବା ସଙ୍ଘର୍ଷ ତୁଳନାରେ ଏ ସଂଖ୍ୟା ଅତି ନଗଣ୍ୟ । କେବଳ ଗୋଟିଏ ପାଶବିକ ତଥା ଦୁଃଖଦାୟକ ଘଟଣା ହୋଇଛି ଯେ ବିହାର ପ୍ରଦେଶରେ କେଉଁଠି ଉତ୍କ୍ଷିପ୍ତ ଲୋକେ ଦୁଇଜଣ କାନାଡ଼ାବାସୀ ଉଡ଼ାଜାହାଜ ଚାଳକଙ୍କୁ ହତ୍ୟା କରିଥିଲେ; କିନ୍ତୁ ଅନ୍ୟ କେଉଁଠାରେ ଜାତି ବିଦ୍ୱେଷର ଏ ପ୍ରକାର ଅଭିବ୍ୟକ୍ତି ଘଟିଥିବା ଶୁଣାଯାଇନି । ଏହା ବାସ୍ତବିକ ବିସ୍ମୟକର । (୧)

(୧) ଏକ ପ୍ରକାଶମାନ ଘଟଣା ବିବୃତ କରାଯାଇଛି 'ବ୍ରିଟିଶ ସୋଲଜେର୍—ଲୁଇସ ଏଟ ଇଣ୍ଡିଆ' ବହିରେ । ସୈନିକ କ୍ଲାଇଭ୍ ବ୍ରାନସନ୍‌ଙ୍କ କେତେକ ଚିଠିର ସମାହାର ଉଲ୍ଲିଖିତ ବହି । ବ୍ରାନ୍‌ସନ୍ ଜଣେ ଶିଳ୍ପୀ ଓ କମ୍ୟୁନିଷ୍ଟ । ସେ ସ୍ପେନ୍‌ରେ ଅନ୍ତର୍ଜାତୀୟ ବାହିନୀରେ ଯୋଗଦେଇଥିଲେ । ଖ୍ରୀ: ୧୯୪୧ ରେ ରାଜକୀୟ ସଶସ୍ତ୍ର ବାହିନୀରେ ସାର୍ଜେଣ୍ଟ ଭାବରେ ଯୋଗଦେଲେ । ଖ୍ରୀ: ୧୯୪୨ରେ ନିଜ ରେଜିମେଣ୍ଟ ସଙ୍ଗେ ସେ ଭାରତକୁ ପ୍ରେରିତ ହେଲେ । ଖ୍ରୀ: ୧୯୪୪ ଫେବୃୟାରୀ ମାସରେ ବର୍ମାର ଆରାକାନରେ ସେ ଯୁଦ୍ଧରେ ନିହତ ହେଲେ । ଖ୍ରୀ: ୧୯୪୨ ଅଗଷ୍ଟ ମାସରେ ସେ ବମ୍ବେରେ ଥାଆନ୍ତି । କଂଗ୍ରେସ ନେତୃବର୍ଗ ଗିରଫ ହେବା ପରେ ଅଣ୍ଡ ସେପରି ଏକ ସମୟରେ ଯେବେ ବମ୍ବେବାସୀ କ୍ରୋଧ ଓ ଉତ୍ତେଜନାରେ ଫାଟିପଡ଼ୁଥାନ୍ତି, ଗୁଳି

ସରକାରୀ କଳନା ଅନୁସାରେ '୪୨ ବିଦ୍ରୋହ କାଳରେ ପୁଲିସ୍ ମିଲିଟାରୀ ଗୁଳିରେ ମୃତ ଓ ଆହତଙ୍କ ସଂଖ୍ୟା ହୋଇଛି ଯଥାକ୍ରମେ ୧୦୨୮ ଓ ୩୨୦୦ । ଏ କଳନା ଯଥାର୍ଥ ନୁହେଁ ଓ ଉଦ୍ଦେଶ୍ୟମୂଳକ ବୋଲି ମନେହୁଏ; କାରଣ ସେହି ସରକାର ପକ୍ଷରୁ ହିଁ ବିବୃତ କରାଯାଇଛି ଯେ ଅନ୍ତତଃପକ୍ଷେ ୫୩୮ ଗୋଟି ଅବସରରେ ଗୁଳି ଚାଳିଥିଲା । କେବଳ ସେତିକି ନୁହେଁ, ପୁଲିସ ଓ ମିଲିଟାରୀ ଚଳନ୍ତି ଗାଡ଼ିରୁ ମଧ୍ୟ ଲୋକଙ୍କ ଉପରକୁ ଗୁଳି କରାଯାଇଥିଲା । ନିର୍ଭୁଲର ନିକଟତମ ସଂଖ୍ୟାରେ ଉପନୀତ ହେବା ବାସ୍ତବିକ କଠିନ । ଲୋକଙ୍କ କଳନାରେ କେବଳ ମୃତସଂଖ୍ୟା ହୋଇଛି ପଚିଶି ହଜାର । ସମ୍ଭବତଃ ଏହା ଏକ ଅତିରଞ୍ଜିତ କଳନା । ଦଶ ହଜାର କହିଲେ ହୁଏତ ନିର୍ଭୁଲ ସଂଖ୍ୟାର ନିକଟତର ହୋଇପାରେ ।

ସହର ଓ ଗ୍ରାମ ବହୁ ଅଞ୍ଚଳରେ, କେତେକ ପ୍ରଦେଶରେ, ବ୍ରିଟିଶ କର୍ତ୍ତୃତ୍ୱ କପରି ଅକାମୀ ହୋଇଗଲା ବଡ଼ ଆଶ୍ଚର୍ଯ୍ୟର କଥା । ସେସବୁ ଅଞ୍ଚଳ 'ପୁନର୍ଦଖଲ' କରିବା ପାଇଁ କେଉଁଠି କେତେ ଦିନ ତ କେଉଁଠି କେତେ ସପ୍ତାହ ଲାଗିଗଲା । ଏପରି ଅବସ୍ଥା ଉପୁଜିଥିଲା ବିହାର, ବଙ୍ଗର ମେଦିନୀପୁର ଜିଲ୍ଲା ଓ ଯୁକ୍ତପ୍ରଦେଶର ଦକ୍ଷିଣ-ପୂର୍ବ ଜିଲ୍ଲାମାନଙ୍କରେ । ଏକଥା ଉଲ୍ଲେଖଯୋଗ୍ୟ ଯେ ଯୁକ୍ତପ୍ରଦେଶର ବାଲିଆ ଜିଲ୍ଲାରେ ( ଯେଉଁ ଜିଲ୍ଲାଟିକୁ ପୁନର୍ବାର ଜୟ କରିବାକୁ ପଡ଼ିଥିଲା ) ଉତ୍ତ୍ୟକ୍ତ ଲୋକେ ମଣିଷ ଦେହରେ ଆଘାତ ଲାଗିବା ଭଳି ସେପରି କିଛୁ କରିବାର ଅଭିଯୋଗ ହୋଇନଥିଲା । ପରବର୍ତ୍ତୀ ସମୟର ବିଶେଷ ଅଦାଲତ ବିବରଣୀରୁ ଏକଥା ଜଣାପଡ଼ିଲା । ସାଧାରଣ ପୁଲିସ ପରିସ୍ଥିତିର ସମ୍ମୁଖୀନ ହେବା ଦିଗରେ ଅସମର୍ଥ ବିବେଚିତ ହେବାରୁ ୧୯୦୨ ବର୍ଷ ଆରମ୍ଭରେ ସ୍ପେସାଲ ଆର୍ମଡ଼୍ କନ୍‌ଷ୍ଟାବୁଲେରି ନାମରେ ଅଭିହିତ ଏକ ନୂତନ ସଶସ୍ତ୍ର ପୁଲିସ୍ ବାହିନୀ ଗଠନ କରାଯାଇଥିଲା । ଗଣବିକ୍ଷୋଭ ଓ ଉପଦ୍ରବ ଦମନ କରିବା ପାଇଁ ଏହି ବାହିନୀ ସୃଷ୍ଟି କରାଯାଇଥିଲା ଓ ଉପଯୁକ୍ତ ତାଲିମ୍ ଦିଆଯାଇଥିଲା । ଲୋକଙ୍କୁ ଦମନ କରିବାରେ ଏହି ବାହିନୀ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ଏବଂ ବହୁଧା ଏହାର ଆଚରଣ ଥିଲା ଆଇରଲଣ୍ଡ୍‌ର 'ବ୍ଲାକ୍ ଏଣ୍ଡ ଟାନ୍‌ସ୍'ମାନଙ୍କ ଭଳି । ଏହି ବ୍ୟାପାରରେ କେତେକ ଗୋଷ୍ଠୀ ଓ ଶ୍ରେଣୀ ବ୍ୟତୀତ, ଭାରତୀୟ ସୈନ୍ୟଙ୍କୁ ନିୟୋଜିତ କରାଯାଇନଥିଲା । ଏ ସବୁ କାର୍ଯ୍ୟରେ ବହୁଧା ଗୋରା ପଲଟନ ଓ କେବେ କେବେ ଗୁର୍ଖା ସୈନ୍ୟ ବ୍ୟବହୃତ ହେଉଥିଲେ । କେବେ କେବେ ଭାରତୀୟ ସୈନ୍ୟ ଓ ସ୍ୱତନ୍ତ୍ର ସଶସ୍ତ୍ର ପୁଲିସ୍‌ଙ୍କୁ ଦେଶର ଦୂରଦୂରାନ୍ତ ଅଞ୍ଚଳକୁ ପଠାଯାଉଥିଲା, ଯେଉଁଠି ସ୍ଥାନୀୟ ଭାଷା

---

ଖାଇ ଧରାଶାୟୀ ହେଉଥାନ୍ତି, ବାର୍ନସନ କହିବା ଶୁଣାଯାଇଛି : 'ତୁମର ଜାତୀୟବାଦ କି ସୁନ୍ଦର ଓ ଶୁଦ୍ଧ ! କମ୍ୟୁନିଷ୍ଟ ପାର୍ଟି ଅଫିସ୍‌କୁ ଯିବା ଲାଗି ମୁଁ ବାଟ ପଚାରିଲି । ମୁଁ ମୋର ସୈନିକ ପୋଷାକ ପିନ୍ଧିଥାଏ । ମୋ ଭଳି ଲୋକେ ନିରସ୍ତ୍ର ଭାରତୀୟଙ୍କୁ ସେତେବେଳେ ଗୁଳି କରୁଥିଲେ । ମୁଁ ଚକିତ ହେବା ଥିଲା ସ୍ୱାଭାବିକ । ରାସ୍ତାର ଲୋକେ ମୋ ପ୍ରତି କି ପ୍ରକାର ଆଚରଣ କରିବେ ମୁଁ ନିଶ୍ଚିତ ନଥିଲି; କିନ୍ତୁ ମୁଁ ଯାହାକୁ ପଚାରିଛି, ମତେ ସାହାଯ୍ୟ କରିବାଲାଗି ସେ ଆତୁର ହୋଇଛି । ମତେ କିଏ ଅପମାନସୂଚକ କଥା କହିନି କିମ୍ବା ଭୁଲ୍ ବାଟ ବତାଇନି ।'

ଜାଣିନଥିବା ହେତୁରୁ ସେମାନେ ପ୍ରାୟଶଃ ଅପରିଚିତ ତଥା ବିଦେଶୀ ଭଳି କାର୍ଯ୍ୟକାରୀ ହେଉଥିଲେ ।

ଲୋକ-ଜମାଟର ପ୍ରତିକ୍ରିୟା ଯେପରି ଥିଲା, ସ୍ୱାଭାବିକ ଅବସ୍ଥାର ତାଡ଼ନାରେ ସରକାରଙ୍କର ମଧ୍ୟ ଅନୁରୂପ ପ୍ରତିକ୍ରିୟା ହୋଇଥିଲା । ଜନତାର ଅପ୍ରତ୍ୟାଶିତ ମତ୍ତତା ଓ ଅନ୍ୟାନ୍ୟ ଲୋକଙ୍କର ଶାନ୍ତିପୂର୍ଣ୍ଣ ବିକ୍ଷୋଭ ଦମନକରିବା ଦାୟିତ୍ୱ ଥିଲା ସରକାରଙ୍କର ଏବଂ ଆତ୍ମସଂରକ୍ଷଣ ଦୃଷ୍ଟିରୁ, ଯାହା ଉପରେ ଶୁଭଦୃଷ୍ଟି ନଥିଲା, ତାକୁ ନିପାତ କରିବାର ଉଦ୍ୟମ କରାଯାଇଥିଲା । ଲୋକେ କାହିଁକି ଏତେ ଭାବରେ ଉତ୍ତେଜିତ ହେଲେ ତାର ପ୍ରକୃତ ହେତୁ ବୁଝିବା ପାଇଁ ସରକାରଙ୍କର ଯଦି ଇଚ୍ଛା କିମ୍ବା ସାମର୍ଥ୍ୟ ଥାଆନ୍ତା, ତାହାହେଲେ ଏ ପ୍ରକାର ସଙ୍କଟ କିମ୍ବା ନିଜାଲେ ଉପୁଜି ନଥାନ୍ତା ଏବଂ ଭାରତୀୟ ସମସ୍ୟାର ସମାଧାନ ସହଜ ହୋଇଥାନ୍ତା । ସରକାର ମନେ ମନେ ସ୍ଥିରକରି ନେଇଥିଲେ ଓ ଭଲ ଭାବରେ ପ୍ରସ୍ତୁତ ବି ହୋଇଥିଲେ ଯେ ତାଙ୍କର ପ୍ରଭୁତ୍ୱ ବିରୁଦ୍ଧରେ ଯାହା କିଛି ମୁଣ୍ଡଟେକି ଉଠିବ ଚିରଦିନ ପାଇଁ ତାର ଅବସାନ ବିଧାନ କରିବେ । ସେଥି ନିମନ୍ତେ ପ୍ରଥମ ଆଘାତର ଲଗ୍ନ ସେମାନେ ନିର୍ଣ୍ଣୟ କରି ନେଇଥିଲେ ଏବଂ ତଦନୁସାରେ କାର୍ଯ୍ୟାରମ୍ଭ କଲେ । କୃଷି, ଶ୍ରମିକ ତଥା ଜାତୀୟତାବାଦୀ ଆନ୍ଦୋଳନମାନଙ୍କରେ ଯେଉଁ ନରନାରୀ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ, ହଜାର ହଜାର ସଂଖ୍ୟାରେ ସେମାନଙ୍କୁ ଜେଲକୁ ଅପସାରିତ କରାଯାଇଥିଲା । ତଥାପି ଦେଶରେ ହଠାତ୍ ଯେଉଁ ବିଦ୍ରୋହର ବହ୍ନି ଜଳିଉଠିଲା ସରକାର ସେଥିରେ ବିସ୍ମିତ ଓ ଆଚମ୍ବିତ ହୋଇପଡ଼ିଲେ ଏବଂ କିଛି ସମୟ ପାଇଁ ତାଙ୍କର ସୁପରିବ୍ୟାପ୍ତ ଦମନ-କଳ ଅକାମୀ ହୋଇପଡ଼ିଲା । ତଥାପି ତାଙ୍କ ପାଖରେ ଉପଯୁକ୍ତ ସମ୍ବଳର ଅଭାବ ନଥିଲା ଏବଂ ସରକାର ତାହା ବ୍ୟବହାର କଲେ ବିଦ୍ରୋହର ହିଂସାତ୍ମକ ଓ ଅହିଂସ ଉଭୟ ପ୍ରକାର ଅଭିବ୍ୟକ୍ତିର ପରିସମାପ୍ତି ଦିଗରେ । ଧନିକ ତଥା ଧନିକ ଶ୍ରେଣୀର ଅନେକେ ଯେଉଁମାନଙ୍କର ଜାତୀୟତାବାଦୀ ମନୋଭାବ ଥିଲେ ସୁଦ୍ଧା ସାହସ ନଥିଲା ଏବଂ ଯେଉଁମାନେ ବେଳେବେଳେ ସରକାରଙ୍କର ଛିଦ୍ରାନ୍ୱେଷଣ ବି କରିଥାନ୍ତି, ଦେଶସାରା ଏହି ଜନଜାଗରଣରେ ଆତଙ୍କିତ ହୋଇ ଉଠିଥିଲେ । ସେମାନେ ବୁଝିଥିଲେ ଯେ ଏହି ଜନତାର ମନରେ ନ୍ୟସ୍ତସ୍ୱାର୍ଥ ସଂରକ୍ଷଣର ବିଗ୍ରହ ନାହିଁ ଓ ଏହାର ଲକ୍ଷ୍ୟ ହୋଇପାରେ କେବଳ ରାଜନୈତିକ ବିପ୍ଳବ ନୁହେଁ, ସାମାଜିକ ପରିବର୍ତ୍ତନ ମଧ୍ୟ । ବିଦ୍ରୋହ ଦମନ କରିବା ଦିଗରେ ସରକାରଙ୍କର ସଫଳତା ଯେବେ ଜାଜଲ୍ୟ ଦେଖାଗଲା, ଦ୍ୱିଧାଗ୍ରସ୍ତ ତଥା ସୁବିଧାବାଦୀ ଲୋକେ ସରକାରଙ୍କ ପକ୍ଷକୁ ଖୋଲାଖୋଲି ଭାବରେ ଚାଲିପଡ଼ିଲେ ଏବଂ ସରକାରଙ୍କ ପ୍ରଭୁତ୍ୱ ନିକଟରେ ମୁଣ୍ଡ ନୁଆଇବା ପାଇଁ ଯେଉଁମାନେ ପ୍ରସ୍ତୁତ ନଥିଲେ, ସେମାନଙ୍କ ଉପରେ ଅଭିଶାପ ବର୍ଷଣ କରିବାକୁ ଲାଗିଲେ ।

ବିଦ୍ରୋହର ସମସ୍ତ କିଛି ବାହ୍ୟ ଅଭିବ୍ୟକ୍ତି ଦଳିଦେବା ପରେ ତାର ମୂଳ ଯେହେତୁ ଉପାଡ଼ିଦେବାକୁ ପଡ଼ିବ, ବ୍ରିଟିଶ ପ୍ରଭୁତ୍ୱ ପ୍ରତି ସମ୍ପୂର୍ଣ୍ଣ ବଶତା ବଳପୂର୍ବକ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ସମଗ୍ର ସରକାରୀ କଳ ସେ ଦିଗରେ ନିୟୋଜିତ କରାଗଲା ।

ଭାଇସ୍‌ରୟଙ୍କ ଆଜ୍ଞପ୍ତି ଓ ଅଧ୍ୟାଦେଶ ବଳରେ ଯଥାଯଥ ନାନା ଆଇନ୍ ସୃଷ୍ଟିହୋଇ ପାରୁଥିଲା; କିନ୍ତୁ ସେହିସବୁ ଆଇନର ବୈଧତା ଓ ଆନୁଷ୍ଠାନିକତା ପ୍ରତି ସୁଦ୍ଧା ଗୁରୁତ୍ୱ ଦିଆଯାଉନଥିଲା । ବ୍ରିଟିଶ ବିଚାରଭୂମିର ସୃଷ୍ଟି ଓ ତାର ପ୍ରତୀକ, ଫେଡେରାଲ କୋର୍ଟ ଓ ହାଇକୋର୍ଟମାନଙ୍କର ସିଦ୍ଧାନ୍ତଗୁଡ଼ିକୁ ନିର୍ବାହୀ ବର୍ଗର କର୍ମଚାରୀମାନେ ଅବଜ୍ଞା ତଥା ପ୍ରତ୍ୟାଖ୍ୟାନ କରୁଥିଲେ କିମ୍ବା ସେସବୁ ସିଦ୍ଧାନ୍ତ ବାତିଲ୍ କରିଦେବା ପାଇଁ ନୂତନ ଅଧ୍ୟାଦେଶ ଜାରି ହେଉଥିଲା । ପରବର୍ତ୍ତୀ ସମୟରେ, ବିଧିସମ୍ମତ ନୁହେଁ ବୋଲି ଯାହା ଉପରେ ରାୟ ମିଳିଥିଲା, ସେପରି ସ୍ୱତନ୍ତ୍ର ଅଦାଲତମାନ ସ୍ଥାପନକରି ହଜାର ହଜାର ଲୋକଙ୍କୁ ଦୀର୍ଘକାଳୀନ ଜେଲ୍ ଦଣ୍ଡ ଓ ଅନେକଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା । ସେହିସବୁ ସ୍ୱତନ୍ତ୍ର ଅଦାଲତ ବିଚାରାଳୟର ସାଧାରଣ ପ୍ରଣାଳୀ ଅନୁସରଣ କରିନଥିଲେ । କାହାକୁ ଦଣ୍ଡ ଦେବାକୁ ହେଲେ ସେମାନଙ୍କ ପକ୍ଷରେ ପ୍ରମାଣର ଆବଶ୍ୟକତା ରହୁନଥିଲା । ପୋଲିସ୍ (ବିଶେଷତଃ ସ୍ପେସାଲ ଆର୍ମଡ଼ କନ୍‌ଷ୍ଟାବୁଲେରି) ଓ ଗୋଇନ୍ଦାମାନେ ସର୍ବଶକ୍ତିମାନ୍ ଥିଲେ ଏବଂ ସରକାରଙ୍କ ଦକ୍ଷିଣହସ୍ତ ଭାବରେ ଯେ କେଉଁ ଧରଣର ଅବୈଧତା କିମ୍ବା ପାଶବିକତାର ସମାଲୋଚନା ପ୍ରତି କ୍ରୂକ୍ଷେପ ନ କରି, ଅବାଧରେ ଉଦ୍ଦେଶ୍ୟ ଚରିତାର୍ଥ କରୁଥିଲେ । ଦୁର୍ନୀତି ସର୍ବବ୍ୟାପକ ହୋଇଉଠିଥିଲା । ସ୍କୁଲ ଓ କଲେଜମାନଙ୍କରେ ବିପୁଳ ସଂଖ୍ୟକ ଛାତ୍ରଛାତ୍ରୀ ନାନା ଭାବରେ ଦଣ୍ଡିତ ହେଲେ ଏବଂ ହଜାର ହଜାର ଯୁବକଙ୍କୁ ଚାବୁକ ମାଡ଼ ଦିଆଗଲା । ସମସ୍ତ ପ୍ରକାର ସର୍ବସାଧାରଣ କର୍ମ ଉପରେ ନିଷେଧାଜ୍ଞା ଜାରି କରାଗଲା, ଅବଶ୍ୟ ସେସବୁ କର୍ମକୁ ଛାଡ଼ି ଯାହା ସରକାରଙ୍କ ସପକ୍ଷରେ ଯାଉଥିଲା ।

କିନ୍ତୁ ସମସ୍ତଙ୍କ ଅପେକ୍ଷା ଅଧିକ ଦୁଃଖ ଦୁର୍ଦ୍ଦଶା ଯେଉଁମାନେ ଭୋଗକଲେ, ସେମାନେ ହେଉଛନ୍ତି ସରଳ ହୃଦୟ, ଦାରିଦ୍ର୍ୟପୀଡ଼ିତ ଗ୍ରାମବାସୀ । ପୁରୁଷାନୁକ୍ରମିକ ଭାବରେ ଦୁଃଖ କଷ୍ଟ ଥିଲା ସେମାନଙ୍କର ଚିରସହଚର । ସୁଦିନ ଆଶାରେ ସେମାନେ ମୁଣ୍ଡଟେକି ଚାହିଁଥିଲେ ଏବଂ ସେଥି ନିମନ୍ତେ କାର୍ଯ୍ୟକରିବା ପାଇଁ ମଧ୍ୟ ଜାଗ୍ରତ ହୋଇଥିଲେ । ସେମାନେ ନିର୍ବୋଧତା କରିଥାନ୍ତୁ କି ଭୁଲ କରିଥାନ୍ତୁ କିମ୍ବା ଠିକ୍ କରିଥାନ୍ତୁ, ଏକଥା ନିଶ୍ଚିତ ଯେ ଭାରତୀୟ ସ୍ୱାଧୀନତାର ଲକ୍ଷ୍ୟ ପ୍ରତି ସେମାନଙ୍କର ଅନୁରକ୍ତିର ପ୍ରମାଣ ସେମାନେ ଦେଇ ପାରିଛନ୍ତି । ସେମାନଙ୍କର ଉଦ୍ୟମ ବିଫଳ ହେଲା ଆଉ ସେ ବିଫଳତାର ବୋଝ ପଡ଼ିଲା ସେମାନଙ୍କର କ୍ଳାନ୍ତ ପୃଷ୍ଠରେ ଓ ଦୁର୍ବଳ ଶରୀରରେ । ଗୋଟାଏ ଗୋଟାଏ ଗାଁର ସମସ୍ତଙ୍କୁ ଅପରାଧୀ କରି ଚାବୁକ ମାଡ଼ରୁ ମୃତ୍ୟୁଦଣ୍ଡ ପର୍ଯ୍ୟନ୍ତ ଦିଆଯିବାର ଘଟଣା ଅନେକ ସ୍ଥାନରେ ଘଟିଛି । ବଙ୍ଗ ସରକାରଙ୍କ ପକ୍ଷରୁ ବିବୃତ ହୋଇଥିଲା ଯେ, 'ସରକାରୀ ଫୌଜ, ତମଲୁକ ଓ କଣ୍ଟାଇ ସବ୍‌ଡିଭିଜନ ଦୁଇଟିରେ ଖ୍ରୀ. ୧୯୪୨ ତୋଫାନ ପୂର୍ବରୁ ଓ ପରେ ସର୍ବମୋଟ ୧୯୩ ଗୋଟି କଂଗ୍ରେସ ଘର ଓ ଶିବିର ପୋଡ଼ି ଭସ୍ମ କରିଦେଇଥିଲେ ।'. ଭୟଙ୍କର ଉତ୍ପାତ ସୃଷ୍ଟିକରି ତୋଫାନ ସେହି ଅଞ୍ଚଳକୁ ଏକ ବିଜନ ପ୍ରଦେଶରେ ପରିଣତ କରିଥିଲା; କିନ୍ତୁ ସରକାରୀ ନୀତି ପକ୍ଷରେ ତାହା କୌଣସି ପାର୍ଥକ୍ୟ ସୃଷ୍ଟି କରିନଥିଲା ।

ଗ୍ରାମମାନଙ୍କ ଉପରେ ପିଟଣି କର ବସିଲା । ଇଂଲଣ୍ଡର ହାଉସ୍ ଅଫ୍ କମନ୍‌ସରେ ମିଷ୍ଟର୍

ଆମେରି ଦେଇଥିବା ବିବୃତି ଅନୁସାରେ ଏହି ସମୁଦାୟ ଜରିମାନାର ପରିମାଣ ଥିଲା ନବେ ଲକ୍ଷ ଏବଂ ସେଥିରୁ ୫୬୮,୫୦,୦୦୦ ଗ୍ରାମବାସୀଙ୍କଠାରୁ ଆଦାୟ କରାଯାଇଥିଲା । ସେହି ଅନାହାରପୀଡ଼ିତ ନରକଙ୍କାଳମାନଙ୍କ ପାଖରୁ ଏତେ ଟଙ୍କା କିପରି ଆଦାୟ କରାଗଲା, ସେ ବିଷୟ ସ୍ୱତନ୍ତ୍ର । ତେବେ ଖ୍ରୀ: ୧୯୪୨ ରେ ଓ ତା'ପରେ ମଧ୍ୟ ଯାହା ସବୁ ଘଟିଥିଲା, ପୁଲିସ୍‌ର ଗୁଳିକାଣ୍ଡ, ଗ୍ରାମ ଦହନ ଓ ଆହୁରି ନାନା ପ୍ରକାର ଅତ୍ୟାଚାରର ଯେତେ ପୀଡ଼ା ଦେଇନଥିଲା, ତା'ଠାରୁ ବହୁ ଗୁଣରେ ବଳିଗଲା ବଳପୂର୍ବକ ଏହି ପିଟୁଣି ଜରିମାନା ଆଦାୟ । ଯେତିକି ଜରିମାନା ଯେଉଁ ଗ୍ରାମ ଉପରେ ପଡ଼ିଥିଲା ସେତିକି କେବଳ ସେଠାରୁ ଆଦାୟ କରି ସରକାରୀ କର୍ମଚାରୀମାନେ ସନ୍ତୁଷ୍ଟ ହେଉନାହାନ୍ତି । ଆହୁରି ଅଧିକ ଟଙ୍କା ଆଦାୟ ହେଉଛି; କିନ୍ତୁ ତାହା ସରକାରୀ ତହବିଲକୁ ଯାଉନି ।

ଯେଉଁସବୁ ପ୍ରଚାର ଓ ବ୍ୟପଦେଶ ସଚରାଚର ସରକାରମାନଙ୍କ କାର୍ଯ୍ୟକଳାପକୁ ଅବଗୁଣ୍ଠିତ କରିଥାଏ, ସେ ସବୁ ଉତାରି ଦିଆଗଲା ଏବଂ କ୍ଷମତା ଓ ପ୍ରଭୁତ୍ୱର ପ୍ରତୀକ ଭାବରେ ରହିଲା କେବଳ ନଗ୍ନ ପାଶବିକ ଶକ୍ତି । ଆଉ କୌଣସି ଛଳ କୌଶଳର ଆବଶ୍ୟକତା ନଥିଲା; କାରଣ ସାମୟିକ ଭାବରେ ପଛେ ହେଉ, ବ୍ରିଟିଶ ଶକ୍ତି ତାକୁ ଗୋଟାଏ ଜାତୀୟ ଭୂମିକମ୍ପଦ୍ୱାରା ଗାଦିଚ୍ୟୁତ କରିବା ଦିଗରେ ଅହିଂସ ଓ ହିଂସାତ୍ମକ ସମସ୍ତ ଉଦ୍ୟମକୁ ଦଳି ଚକଟି ସଫଳ ହୋଇପାରିଥିଲା ଏବଂ ଭାରତରେ ସର୍ବେସର୍ବା ହୋଇ ଉଠିଥିଲା । ସେହି ଅନ୍ତିମ ପରୀକ୍ଷାରେ ଯେବେ ଶକ୍ତି ଓ କ୍ଷମତା କେବଳ ସବୁ କିଛି ଏବଂ ଆଉ ଯେତେ ଯାହା କେବଳ ବାକ୍‌ଚାତୁରୀ ଓ ଅପ୍ରାସଙ୍ଗିକତା ମାତ୍ର, ଭାରତ ବିଫଳ ହେଲା । ବ୍ରିଟିଶ୍ ସଶସ୍ତ୍ର ବଳ ଓ ଯୁଦ୍ଧ ପରିସ୍ଥିତିଜନିତ ଜନମାନସର ବିଶୃଙ୍ଖଳା ଯୋଗୁଁ ଭାରତ ବିଫଳ ହେଲା କେବଳ ନୁହେଁ ବରଂ ସ୍ୱାଧୀନତା ନିମନ୍ତେ ଯେଉଁ ଚୂଡ଼ାନ୍ତ ତ୍ୟାଗ ଆବଶ୍ୟକ, ସେଥିପାଇଁ ତାର ବହୁ ଲୋକ ପ୍ରସ୍ତୁତ ହୋଇନଥିଲେ । ଅତଏବ, ଇଂରେଜମାନେ ମନେ କଲେ ଯେ ଭାରତରେ ସେମାନେ ସେମାନଙ୍କର ଶାସନ ପୁନର୍ବାର ସୁଦୃଢ଼ ଭାବରେ ପ୍ରତିଷ୍ଠା କରିଦେଇ ପାରିଛନ୍ତି ଏବଂ ସେହି କର୍ତ୍ତୃତ୍ୱ ପୁନର୍ବାର ଶିଥିଳ କରିବାର କୌଣସି କାରଣ ନାହିଁ ।

## ୪. ବାହାରେ ପ୍ରତିକ୍ରିୟା

ଏକ କଠୋର ବିବାଚନ ବ୍ୟବସ୍ଥା ଭାରତର ଘଟଣାବଳୀ ଉପରେ ମୋଟା ପରଦା ପକାଇ ରଖିଲା । ପ୍ରତିଦିନ ଯାହା ସବୁ ଘଟିଯାଉଥିଲା ତାହା ଭାରତୀୟ ସମ୍ବାଦପତ୍ର-ମାନଙ୍କରେ ବି ପ୍ରକାଶ କରିବାପାଇଁ ଅନୁମତି ମିଳୁନଥିଲା । ଯେଉଁ ସମ୍ବାଦ ଭାରତ ବାହାରକୁ ଯିବାର କଥା, ତାହା ମଧ୍ୟ ତନ୍ନତନ୍ନ କରି ପରୀକ୍ଷା କରାଯାଉଥିଲା । ସେଥି ସଙ୍ଗେ ସଙ୍ଗେ ବିଦେଶରେ ସରକାରୀ ପ୍ରଚାର ଅନର୍ଗଳ ହୋଇ ଉଠିଥିଲା ଏବଂ ଯେତେ ସବୁ ମିଥ୍ୟା, ଉଦ୍ଦେଶ୍ୟମୂଳକ ସମ୍ବାଦ ନିଃସଙ୍କୋଚରେ ପରିବେଷଣ କରାଗଲା । ବିଶେଷତଃ, ଯୁକ୍ତରାଷ୍ଟ୍ର

ଆମେରିକାରେ ପତ୍ରପ୍ରଚାରର ପ୍ଲାବନ ସୃଷ୍ଟି କରିଗଲା; କାରଣ ସେଠାର ମତାମତ ଉପରେ ଇଂଲଣ୍ଡରେ ଗୁରୁତ୍ୱ ଦିଆଯାଉଥିଲା । ଇଂରେଜ ତଥା ଭାରତୀୟ ବକ୍ତା ଓ ପ୍ରଚାରକମାନେ ସେ ଦେଶକୁ ପ୍ରେରିତ ହେଲେ ଭୁଲ ଭୁଲ ପ୍ରଚାର କରିବାପାଇଁ ।

ଏହି ପ୍ରଚାର ବ୍ୟତୀତ, ଇଂଲଣ୍ଡ ଉପରେ ଯୁଦ୍ଧର ଚାପ ଓ ଭାର ମନରେ ଗୁରୁ ଉତ୍ତେଜନା ରହିଥିଲା । ସେଥି ହେତୁରୁ ସେଠାରେ ଭାରତୀୟଙ୍କ ପ୍ରତି, ବିଶେଷତଃ ସେମାନଙ୍କ ପ୍ରତି ଯେଉଁମାନେ ସଙ୍କଟ ବେଳରେ ତାର ଜଞ୍ଜାଳ ଓ ଦୁଶ୍ଚିନ୍ତା ବୃଦ୍ଧି କରୁଥିଲେ, ବିରକ୍ତି ପ୍ରକାଶ ପାଇବା ସ୍ୱାଭାବିକ । ଏଥି ସଙ୍ଗେ ଏକତରଫା ପ୍ରଚାରର ପ୍ରଭାବ ବି ବ୍ୟର୍ଥ ଯାଉ ନଥିଲା । ସର୍ବାଧିକ ପ୍ରଭାବ ପଡ଼ୁଥିଲା ସେ ବିଶ୍ୱାସର ଯେ ଇଂରେଜ ମାନେ ନ୍ୟାୟପରାୟଣ । ଅନ୍ୟମାନଙ୍କ ମନୋଭାବ ସମ୍ପର୍କରେ ଅଜ୍ଞତା ହିଁ ଥିଲା ସେମାନଙ୍କର ବଳ ଏବଂ ତାହା ସେମାନଙ୍କର ପ୍ରତ୍ୟେକ କୁକର୍ମକୁ ନ୍ୟାୟସଙ୍ଗତ ମଣୁଥିଲା । ଯେ କେଉଁ ଦୁର୍ଘଟଣା ଜନ୍ମନେ ଦୋଷ ଲଭିବାକୁ ଥିଲେ, ସେହି ମନ୍ଦବୁଦ୍ଧି ଲୋକେ ଯେଉଁମାନେ ଇଂରେଜର ଏତେ ସ୍ପଷ୍ଟ ସଦ୍‌ଗୁଣ ବାରିପାରୁ ନଥିଲେ । ଭାରତରେ ସେହି ସଦ୍‌ଗୁଣ ପ୍ରତି ଯେଉଁମାନେ ସନ୍ଦିହାନ ଥିଲେ, ସେମାନଙ୍କୁ ଦମନ କରିବାରେ ବ୍ରିଟିଶ୍ ସୈନ୍ୟ ଓ ଭାରତୀୟ ପୋଲିସଙ୍କ ସଫଳତା ସେହି ସବୁ ସଦ୍‌ଗୁଣର ଯଥାର୍ଥତା ପୁନରପି ନୂତନ ଭାବରେ ପ୍ରତିପାଦନ କଲା । ସାମ୍ରାଜ୍ୟ (ଭାରତ ସରକାର) ଯାହା କରନ୍ତି ଠିକ୍ କରନ୍ତି । ମିଃ ଓ୍ୱିନ୍‌ଷ୍ଟନ୍ ଚର୍ଚ୍ଚିଲ୍ ଭାରତ ସମ୍ପର୍କରେ ବିଶେଷ ଭାବରେ ଉଲ୍ଲେଖ କରି ଘୋଷଣା କଲେ : 'ବ୍ରିଟିଶ ସାମ୍ରାଜ୍ୟର ବିସର୍ଜନରେ ପୌରୋହିତ୍ୟ କରିବ ବୋଲି ମୁଁ ରାଜାଙ୍କ ପ୍ରଧାନ ମନ୍ତ୍ରୀ ହୋଇନି ।' ଏପରି କହିଲାବେଳେ, ମିଃ ଚର୍ଚ୍ଚିଲ୍ ନିଃସନ୍ଦେହରେ ତାଙ୍କ ଦେଶର ବିପୁଳ ସଂଖ୍ୟକ ଲୋକଙ୍କ ଦୃଷ୍ଟିଭଙ୍ଗୀର, ଏପରି କି ସାମ୍ରାଜ୍ୟବାଦର ତତ୍ତ୍ୱ ଓ ଅଭ୍ୟାସ ଉପରେ ଏଥିପୂର୍ବେ ଯେଉଁମାନେ ସମାଲୋଚନା କରିଥାନ୍ତି, ସେମାନଙ୍କ ଭିତରୁ ମଧ୍ୟ ଅନେକଙ୍କ ଦୃଷ୍ଟିଭଙ୍ଗୀର ପ୍ରତିନିଧିତ୍ୱ କରିଥିଲେ । ରାଜକୀୟ ପରମ୍ପରା ପ୍ରତି ଅନୁରକ୍ତ କୌଣସି ଗୋଷ୍ଠୀ ପଛରେ ସେମାନେ ନାହାନ୍ତି ବୋଲି ନିଶ୍ଚିତ ଭାବରେ ପ୍ରମାଣ କରିବାପାଇଁ ଉତ୍ସୁକ ବ୍ରିଟିଶ୍ ଶ୍ରମିକଦଳ ନେତାମାନେ ମଧ୍ୟ ମିଃ ଚର୍ଚ୍ଚିଲଙ୍କ ବିବୃତିକୁ ସମର୍ଥନ କଲେ ଏବଂ 'ଯୁଦ୍ଧ ପରେ ସାମ୍ରାଜ୍ୟ ଅଖଣ୍ଡ ରଖିବାପାଇଁ ବ୍ରିଟିଶ ଲୋକଙ୍କ ସଙ୍କଳ୍ପ ଉପରେ ଜୋର୍ ଦେଇଥିଲେ ।"

ଆମେରିକାରେ, ସୁଦୂର ଭାରତର ସମସ୍ୟା ପ୍ରତି ଯେତିକି ଆଗ୍ରହ ରହିଥିଲା, ତାହା ନେଇ ଦୁଇ ପ୍ରକାର ମତ ପ୍ରକାଶ ପାଉଥିଲା । କାରଣ ସେଠାରେ ଲୋକେ ବ୍ରିଟିଶ ଶାସକବର୍ଗଙ୍କ ସଦ୍‌ଗୁଣ ବିଷୟରେ ସମ୍ପୂର୍ଣ୍ଣ ନିଃସନ୍ଦେହ ନଥିଲେ ଏବଂ ଯେଉଁମାନଙ୍କର ସାମ୍ରାଜ୍ୟ ଥିଲା, ସେମାନଙ୍କ ପ୍ରତି ସେ ଲୋକଙ୍କର ସେତେଭଳି ସମର୍ଥନ ନଥିଲା । ଆହୁରି ମଧ୍ୟ, ଭାରତର ସଦିଚ୍ଛା ଲାଭକରି ତାର ସମସ୍ତ ସମ୍ବଳ ପୂର୍ଣ୍ଣମାତ୍ରାରେ ଯୁଦ୍ଧରେ ଜାପାନ ବିରୁଦ୍ଧରେ ବିନିଯୋଗ କରିବା ପାଇଁ ମାର୍କିନ୍‌ମାନେ ଆତୁର ଥିଲେ । ତଥାପି, ଏକତରଫା ତଥା ଉଦ୍ଦେଶ୍ୟମୂଳକ ପ୍ରଚାର ଅନିବାର୍ଯ୍ୟ ଭାବରେ କାମ ଦେଲା ଏବଂ ସେଠାରେ ଏ ପ୍ରକାର ଭାବନା ଉପୁଜି ଥିଲା ଯେ ତାର ଜଟିଳତା ଦୃଷ୍ଟିରୁ ଭାରତୀୟ ସମସ୍ୟାରେ ସେମାନେ ଜଡ଼ିତ ହୋଇପଡ଼ିବା ଭଲ କଥା ନୁହେଁ

ଏବଂ ଆଉ ଯାହାହେଉ ପଛେ ସେମାନଙ୍କର ବ୍ରିଟିଶ ମିତ୍ରର ବ୍ୟାପାରରେ ହସ୍ତକ୍ଷେପ କରିବା ସେମାନଙ୍କ ପକ୍ଷରେ କଷ୍ଟକର ।

ରୁଷିଆରେ ଶାସନ ଚଳାଉଥିବା ଲୋକେ କିମ୍ବା ସେଠାର ଜନସାଧାରଣ ଭାରତ ବିଷୟରେ କ'ଣ ମନେ କରୁଥିଲେ, କହିବା କଠିନ ଥିଲା । ସେମାନଙ୍କର ବିପୁଳ ଯୁଦ୍ଧ ଉଦ୍ୟମରେ ଏବଂ ସେମାନଙ୍କ ଦେଶରୁ ଆକ୍ରମଣକାରୀଙ୍କୁ ବିତାଡ଼ିତ କରିବା ଦିଗରେ ସେମାନେ ଯେତେ ଭଳି ବ୍ୟସ୍ତଥିଲେ, କୌଣସି ବିଷୟ ଯାହା ସେମାନଙ୍କର ସେ ସମୟର ତତ୍ପରତା ପ୍ରତି ସମ୍ପର୍କିତ ନଥିଲା, ସେଥି ଉପରକୁ ଦୃଷ୍ଟି ଫେରାଇବା ପାଇଁ ସେମାନଙ୍କର ଅବସର ନଥିଲା । ତଥାପି, ଦୂର ଭବିଷ୍ୟତ ଭିତରକୁ ଗୃଦ୍ଧ ଦେଖିବାରେ ସେମାନେ ଅଭ୍ୟସ୍ତ ଥିଲେ ଏବଂ ଯେଉଁ ଭାରତ ସଙ୍ଗେ ଏସିଆରେ ସେମାନଙ୍କର ସୀମାନ୍ତ ଲାଗି ରହିଚ, ତାକୁ ସେମାନେ ପ୍ରତ୍ୟାଖ୍ୟାନ କରିବେ ବୋଲି ଜଣାଯାଉନଥିଲା । ଭବିଷ୍ୟତ ପାଇଁ ସେମାନଙ୍କର ନୀତି କ'ଣ ହେବ ନିର୍ଦ୍ଦିଷ୍ଟଭାବରେ କେହି କହିପାରି ନଥାନ୍ତେ; କିନ୍ତୁ ଏତିକ ଅବଶ୍ୟ ଅନୁମାନ କରି ହେଉଥିଲା ଯେ ସେମାନେ ଯାହା କରିବେ, ସେଥିରେ ଅବାସ୍ତବତାର ସ୍ଥାନ ନାହିଁ ଏବଂ ସୋଭିଏତ୍ ୟୁନିଅନ୍ ରାଜନୈତିକ ତଥା ଅର୍ଥନୈତିକ ଶକ୍ତି ବୃଦ୍ଧି ଦିଗରେ ହିଁ ମୁଖ୍ୟତଃ ପରିଚାଳିତ ହେବ । ଭାରତ ସମ୍ପର୍କରେ ସମସ୍ତ ପ୍ରକାର ଉଲ୍ଲେଖ ସେମାନେ ଖୁବ୍ ସାବଧାନ ଭାବରେ ଏଡ଼ାଇ ରହିଥିଲେ । କିନ୍ତୁ ଖ୍ରୀ: ୧୯୪୨ ନଭେମ୍ବର ମାସରେ ସୋଭିଏତ୍ ବିପ୍ଳବର ପଞ୍ଚବିଂଶତି ବାର୍ଷିକ ଉତ୍ସବ ଅବସରରେ ଷ୍ଟାଲିନ୍ ଘୋଷଣା କରିଥିଲେ ଯେ ସେମାନଙ୍କର ସାଧାରଣ ଅନୁସୃତ ନୀତି ହେଉଚି : ବର୍ଣ୍ଣବୈଶିଷ୍ଟ୍ୟର ଉଚ୍ଛେଦ ସାଧନ; ସବୁ ଜାତିଙ୍କୁ ସମାନ ଦୃଷ୍ଟିରେ ଦେଖିବା ଏବଂ ସେମାନଙ୍କର ଆଞ୍ଚଳିକ ଅଖଣ୍ଡତା ସ୍ୱୀକାର କରିବା; ପରାଭୂତ ଜାତିମାନଙ୍କର ମୁକ୍ତି ବିଧାନକରି ସେମାନଙ୍କର ସାର୍ବଭୌମତ୍ୱ ପୁନଃ ପ୍ରତିଷ୍ଠା କରିବା; ପ୍ରତ୍ୟେକ ଜାତି ତାର ନିଜସ୍ୱ ଶୈଳୀରେ ନିଜର ବ୍ୟାପାର ସଜାଡ଼ିବାରେ ହସ୍ତକ୍ଷେପ ନ କରିବା; ଯେଉଁ ଜାତିମାନେ ଦୁଃଖ କଷ୍ଟ ଭୋଗିଚନ୍ତି, ସେମାନଙ୍କୁ ଅର୍ଥନୈତିକ ସାହାଯ୍ୟ ଦେଇ ସେମାନେ ସେମାନଙ୍କର ଭୌତିକ ସୁଖସ୍ୱାଚ୍ଛନ୍ଦ୍ୟ ଲାଭକରିବା ଉଦ୍ୟମରେ ସହାୟତା କରିବା; ସବୁ ଗଣତାନ୍ତ୍ରିକ ଅଧିକାର ପୁନର୍ବାର ପ୍ରତିଷ୍ଠା କରିବା; ହିଟ୍‌ଲରୀ ଶାସନର ସର୍ବନାଶ ଘଟାଇବା ।"

ଚୀନରେ ସ୍ପଷ୍ଟ ଦୃଶ୍ୟତ ହେଉଥିଲା, ଆମର କୌଣସି ଏକ ନିର୍ଦ୍ଦିଷ୍ଟ କର୍ମପ୍ରତି ଚୀନାମାନଙ୍କର ପ୍ରତିକ୍ରିୟା ଯାହା ହେଉନା କାହିଁକି, ସେମାନଙ୍କର ସମସ୍ତ ସହାନୁଭୂତି ରହିଛି ଭାରତର ପୂର୍ଣ୍ଣ ସ୍ୱାଧୀନତା ପକ୍ଷରେ । ସେହି ସହାନୁଭୂତିର ଚେର ଥିଲା ଇତିହାସର ଗର୍ଭରେ ଏବଂ ତତୋଽଧିକ ଭାବରେ ସେହି ସହାନୁଭୂତି ଏହି ଉପଲବ୍ଧି ଉପରେ ଭିତ୍ତି କରିଥିଲା ଯେ ଭାରତ ଯଦି ମୁକ୍ତ ନହୁଏ, ଚୀନର ସ୍ୱାଧୀନତା ମଧ୍ୟ ବିପନ୍ନ ହୋଇ-ପାରେ । ଚୀନରେ କେବଳ ନୁହେଁ ସମଗ୍ର ଏସିଆରେ, ମିଶର ତଥା ମଧ୍ୟ-ଏସିଆରେ, ଭାରତୀୟ ସ୍ୱାଧୀନତା ଅନ୍ୟାନ୍ୟ ପରାଧୀନ ତଥା ଆଶ୍ରିତ ଦେଶମାନଙ୍କ ନିମନ୍ତେ ଏକ ବୃହତ୍ତର ସ୍ୱାଧୀନତାର, ପ୍ରତୀକ ବର୍ତ୍ତମାନର ଏକ କଠିଣ ପରୀକ୍ଷା ଓ ଭବିଷ୍ୟତ ନିମନ୍ତେ ଏକ

ପରିମାପ ହୋଇ ଉଠିଥିଲା । ମିଷ୍ଟର ୱେଣ୍ଡେଲ୍ ୱିଲ୍‌କି ତାଙ୍କର 'ୱାନ୍ ୱାର୍ଲ୍ଡ' ଗ୍ରନ୍ଥରେ ଲେଖିଛନ୍ତି : "ଆଫ୍ରିକାଠାରୁ ଆଲାସ୍କା ପର୍ଯ୍ୟନ୍ତ ସ୍ତ୍ରୀ ଓ ପୁରୁଷ ଯେଉଁମାନଙ୍କ ସଙ୍ଗେ ମୁଁ ଆଲାପ କରିଛି, ସେମାନେ ମତେ ଯେଉଁ ପ୍ରଶ୍ନ ପଚାରିଥିଲେ ତାହା ଏସିଆସାରା ପ୍ରାୟ ଏକ ପ୍ରତୀକ ହୋଇ ଉଠିଛି : ଭାରତ କଥା କ'ଣ ? .. କାଏରୋଠାରୁ ଆରମ୍ଭ କରି ପ୍ରତ୍ୟେକ ସ୍ଥାନରେ ମୁଁ ତାର ସମ୍ମୁଖୀନ ହୋଇଛି । ଚୀନର ଶ୍ରେଷ୍ଠ ପ୍ରଜ୍ଞାବାନ୍ ବ୍ୟକ୍ତି ମତେ କହିଲେ, 'ଭାରତର ମୁକ୍ତି ଆକାଙ୍କ୍ଷାକୁ ଭବିଷ୍ୟତର କେଉଁ ଏକ ତିଥିପାଇଁ ଯେତେବେ ଘୁଞ୍ଚାଇ ଦିଆଗଲା, ଦୂର-ପ୍ରାଚ୍ୟର ଲୋକଙ୍କ ଦୃଷ୍ଟିରେ ଇଂଲଣ୍ଡର ସମ୍ମାନ କ୍ଷୁଣ୍ଣ ହେଲାନି, ହେଲା ଯୁକ୍ତରାଷ୍ଟ୍ର ଆମେରିକାର ।"

ଭାରତରେ ଯାହାସବୁ ଘଟିଗଲା, ଯୁଦ୍ଧ ସଙ୍କଟ ଭିତରେ ମଧ୍ୟ ବନ୍ଧ ବାଧ୍ୟ ହେଲା ତାର ଉପରେ, ଅଳ୍ପକ୍ଷଣପାଇଁ ପଛେ ହେଉ, ଦୃଷ୍ଟି ବୁଲାଇବାକୁ ଏବଂ ପ୍ରାଚ୍ୟର ମୌଳିକ ସମସ୍ୟାମାନଙ୍କ ବିଷୟରେ ଚିନ୍ତା କରିବାକୁ । ଭାରତର ବିଦ୍ରୋହ ଏସିଆର ପ୍ରତ୍ୟେକ ଦେଶର ମନ ଓ ହୃଦୟରେ ସମ୍ବେଦନ ସୃଷ୍ଟି କରିଥିଲା । ବ୍ରିଟିଶ ସାମ୍ରାଜ୍ୟବାଦର ଶକ୍ତିଶାଳୀ କବଳରେ ଭାରତର ଲୋକେ ସାମୟିକ ଭାବରେ ଯଦିଓ ଅସହାୟ ଜଣାଯାଉଥିଲେ, ତଥାପି ସେମାନେ ପ୍ରମାଣିତ କରିଦେଇ ପାରିଥିଲେ ଯେ ଭାରତ ଯଦି ମୁକ୍ତି ଲାଭ ନକରେ ତାହାହେଲେ ଭାରତ କିମ୍ବା ଏସିଆରେ ଶାନ୍ତି ପ୍ରତିଷ୍ଠା ଅସମ୍ଭବ ।

## ୫. ଭାରତରେ ପ୍ରତିକ୍ରିୟା

ଗୋଟାଏ ସଭ୍ୟ ଜାତି ଉପରେ ବିଦେଶୀ ପ୍ରଭୁତ୍ୱ ବହୁ ଅସୁବିଧା ସୃଷ୍ଟି କରେ ଓ ସେଥିରୁ ବହୁ ଅକଲ୍ୟାଣ ସୃଷ୍ଟି ହୁଏ । ଏହି ଅସୁବିଧା ଭିତରୁ ଗୋଟିଏ ହେଉଛି ଯେ ସେହି ପ୍ରଭୁତ୍ୱକୁ ପରାଧୀନ ଜାତିର ବହୁ ଅବାଞ୍ଛିତ ଲୋକଙ୍କ ଉପରେ ନିର୍ଭର କରିବାକୁ ପଡ଼ିଥାଏ । ଯେଉଁମାନେ ଆଦର୍ଶବାଦୀ, ଗର୍ବିତ, ସୁବେଦୀ, ଆତ୍ମସମ୍ମାନ-ସଚେତନ ଏବଂ ଯେଉଁମାନେ ସ୍ୱାଧୀନତାପ୍ରିୟ ଆଉ ଗୋଟାଏ ବିଦେଶୀ ପ୍ରଭୁତ୍ୱର ବଳାତ୍କାର-ବଶ୍ୟତା ସ୍ୱୀକାର କରି ନିଜର ଅଧଃପତନ ବରଣ କରିବା ଲାଗି ପ୍ରସ୍ତୁତ ନୁହନ୍ତି, ସେମାନେ ସେ ପ୍ରଭୁତ୍ୱଠାରୁ ଅଲଗା ରହନ୍ତି କିମ୍ବା ସେଥି ସଙ୍ଗେ ସଂଘର୍ଷ କରିବସନ୍ତି । ସାଧାରଣତଃ ଗୋଟାଏ ସ୍ୱାଧୀନ ଦେଶ ଅପେକ୍ଷା ଅଧିକ ଅନୁପାତରେ ପଦାଧିକାରଲୋଭୀ ଓ ସୁବିଧାବାଦୀମାନେ ଏହି ପ୍ରଭୁତ୍ୱର ପରମାଶ୍ରୟରେ ପଡ଼ିରହିଥାନ୍ତି । ସ୍ୱୈରତନ୍ତ୍ର ଶାସନ ଗୋଟାଏ ସ୍ୱାଧୀନ ଦେଶରେ ମଧ୍ୟ ବହୁ ସୁବେଦୀ ବ୍ୟକ୍ତି ସରକାରୀ କର୍ମରେ ସହଯୋଗ କରିପାରି ନଥାନ୍ତି ଏବଂ ସେ କ୍ଷେତ୍ରରେ ନୂତନ ପ୍ରତିଭାର ପ୍ରକାଶ ନିମନ୍ତେ ବିଶେଷ ସୁବିଧା ନଥାଏ । ଗୋଟାଏ ବିଦେଶୀ ସରକାର, ଯାହା ଅନିବାର୍ଯ୍ୟ ଭାବରେ ପ୍ରଭୁତ୍ୱପରାୟଣ ହୋଇ ଉଠେ, ଏହିସବୁ ଅସୁବିଧା ସୃଷ୍ଟି କରେ ଓ ସେଥିରେ ଆହୁରି ନାନାବିଧ ଅସୁବିଧା ଆସି ମିଳିତ ହୁଏ; କାରଣ ସର୍ବଦା ବୈରିତା ଓ ଦମନପ୍ରବଣତାର ଗୋଟାଏ ବାତାବରଣରେ ତାକୁ କାର୍ଯ୍ୟକାରୀ ହେବାକୁ ପଡ଼ିଥାଏ । ଶାସକ ଓ ଶାସିତ ଉଭୟର ପ୍ରଧାନ ଅଭିପ୍ରାୟ ହୋଇଉଠେ ଭୟ ଏବଂ ସରକାରଙ୍କ ପକ୍ଷରେ

ଅତ୍ୟାବଶ୍ୟକ ହୋଇ ଉଠନ୍ତି ପୁଲିସ୍ ଓ ଗୋଇନ୍ଦା ।

ସରକାର ଓ ଜନସାଧାରଣଙ୍କ ଭିତରେ ଯେବେ ପ୍ରକୃତ ସମ୍ପର୍କ ଉଜୁଡେ, ସେହି କାରଣର ଅବାଞ୍ଛିତ ବ୍ୟକ୍ତି ତଥା ଅନୁଷ୍ଠାନମାନଙ୍କ ଉପରେ ନିର୍ଭର କରିବା ଏବଂ ସେମାନଙ୍କୁ ଉତ୍ସାହିତ କରିବାର ମନୋବୃତ୍ତି ସରକାରଠାରେ ଅଧିକତର ଲକ୍ଷଣୀୟ ହୋଇ ଉଠିଥାଏ । ସେମାନେ ପସନ୍ଦ କରନ୍ତୁ କି ନକରନ୍ତୁ, ବହୁ ବିବେକୀ ବ୍ୟକ୍ତିଙ୍କୁ କିନ୍ତୁ ଅବସ୍ଥାଚକ୍ରରେ ପଡ଼ି ସେହି ସରକାରୀ କଳରେ କାର୍ଯ୍ୟ କରିବାକୁ ପଡ଼ିଥାଏ; କିନ୍ତୁ ଯେଉଁମାନେ ପ୍ରକୃତ ମଞ୍ଚ ଉପରକୁ ଆସି ଗୁରୁତ୍ୱପୂର୍ଣ୍ଣ ଭୂମିକାମାନଙ୍କରେ ଅବତୀର୍ଣ୍ଣ ହୋଇଥାନ୍ତି, ସେମାନେ ସେହି ସେହି ଭୂମିକା ନିମନ୍ତେ ମନୋନୀତ ହେବାର ଯୋଗ୍ୟତା ହେଉଛି ସେମାନଙ୍କର ଜାତୀୟତାବାଦ ବିରୋଧିତା, ହୀନ-ବଶ୍ୟତା ଏବଂ ସେମାନଙ୍କର ନିଜ ଦେଶବାସୀଙ୍କୁ ଲାଞ୍ଛିତ ଓ ପଦଦଳିତ କରିବାର ସାମର୍ଥ୍ୟ । ଅଧିକାଂଶ ଲୋକଙ୍କ ଭାବ ଓ ଆବେଗର ବିରୋଧିତା, ଯାହା ବହୁଧା ବ୍ୟକ୍ତିଗତ ବିବାଦ ଓ ହତାଶାର ପରିଣାମ, ଏ କ୍ଷେତ୍ରରେ ଶ୍ରେଷ୍ଠତମ ପ୍ରତିଭା ବିବେଚିତ ହୋଇଥାଏ । ଏହି ବିକୃତ ତଥା ଅସ୍ୱାସ୍ଥ୍ୟକର ବାୟୁମଣ୍ଡଳରେ କୌଣସି ଆଦର୍ଶବାଦ କିମ୍ବା ଉଦାରଚେତନା ଅଥବା ଉନ୍ନତ ଭାବୁକତାର ସ୍ଥାନ ନାହିଁ ଏବଂ ଏଠାରେ ପୁରସ୍କାରର ପ୍ରଲୋଭନ ହେଉଚି ଉଚ୍ଚ ସରକାରୀ ପଦାଧିକାର ଓ ମୋଟା ବର୍ତ୍ତନ । ସରକାରୀ ସମର୍ଥକମାନଙ୍କର ନିଷ୍କର୍ମପଣ ଓ କୁତ୍ସିତ ଭାବନା ବରଦାସ୍ତ କରିବାକୁ ପଡ଼େ; କାରଣ ସବୁକିଛୁର ପରିମାପ ହେଉଚି, ତାର ପ୍ରତିପକ୍ଷଙ୍କୁ ପଦଦଳିତ କରିବାରେ, ସେହି ସରକାରକୁ ସକ୍ରିୟ ସମର୍ଥନ ଦେବା । ଏହା ଫଳରେ ସରକାର ବହୁ ବିଚିତ୍ର ଗୋଷ୍ଠୀ ଓ ଅଦ୍ଭୁତ ଲୋକଙ୍କ ସଙ୍ଗେ ସହବାସ କରିବା ଲାଗି ବାଧ୍ୟ ହୁଏ । ଦୁର୍ନୀତି, ହୃଦୟହୀନତା, ଅନୁଦାରତା ଏବଂ ଜନମଙ୍ଗଳ ପ୍ରତି ସମ୍ପୂର୍ଣ୍ଣ ଅବଜ୍ଞା ଓ ତାଚ୍ଛଲ୍ୟଭାବ ସମ୍ଭବ ହୁଏ ଓ ବାୟୁମଣ୍ଡଳକୁ ବ୍ୟାପ୍ତ କରେ । (୧)

---

(୧) ସାର୍ ଅର୍କିବାଲ୍ଡ଼ ରୋଲେଣ୍ଡ୍ସଙ୍କ ଅଧ୍ୟକ୍ଷତାରେ ଗଠିତ ବଙ୍ଗ ପ୍ରଶାସନ ଅନୁସନ୍ଧାନ କମିଟି ଖ୍ରୀ: ୧୯୪୫ ମଇ ମାସରେ ପ୍ରକାଶିତ ତାଙ୍କର ପ୍ରତିବେଦନରେ କହିଚନ୍ତି : ଦୁର୍ନୀତି ଏତେ ବ୍ୟାପକ ହୋଇଚି, ଆଉ ସେଥିପ୍ରତି ଏତେଭଳି ପରିଜନ-ମନୋଭାବ ରଖାଯାଇଛି ଯେ ଆମର ମନେହୁଏ ଆମୂଳଚୂଳ ପରିବର୍ତ୍ତନ କଲାଭଳି କିଛି କରାନଗଲେ ଶାସନ ଓ ସମାଜ ଉଭୟର ଦୂଷଣ ଏହି ବ୍ୟାଧି ନିରାକୃତ ହେବ ନାହିଁ । ଲୋକଙ୍କ ପ୍ରତି କେତେକ ବେସାମରିକ କର୍ମଚାରୀଙ୍କ ମନୋଭାବର ସାକ୍ଷ୍ୟ ନେଲାବେଳେ କମିଟି ବିସ୍ମିତ ଓ ଦୁଃଖିତ ହୋଇଚନ୍ତି ।' ରିପୋର୍ଟରେ କୁହାଯାଇଚି ଯେ କଥିତ କର୍ମଚାରୀମାନେ ଏକପ୍ରକାର ସ୍ୱତନ୍ତ୍ର ବୈଶିଷ୍ଟ୍ୟର ଅହମିକା ପୋଷଣ କରନ୍ତି ଏବଂ ଗୋଟିଏ ମହତ୍ତ୍ୱହୀନ ଯନ୍ତ୍ରର ଗତାନୁଗତିକ ପରିଚାଳନା ପ୍ରତି ଲୋକମଙ୍ଗଳ ବିଧାନ ତୁଳନାରେ ଅଧିକ ଦୃଷ୍ଟି ଦେଇଥାନ୍ତି । ସେମାନେ ମନେ କରନ୍ତି ଯେ ସେମାନେ ଜନସାଧାରଣଙ୍କ ସେବକ ନୁହନ୍ତି; ସେମାନେ ପ୍ରଭୁ ।

ସରକାର ଯାହା ସବୁ କରନ୍ତି, ସେଥିରେ ବହୁତ କିଛି ପ୍ରତି ଲୋକେ ତିକ୍ତ ହେବା ତ ସ୍ୱାଭାବିକ; କିନ୍ତୁ ତଦପେକ୍ଷା ଅଧିକତର ତିକ୍ତତା ସରକାରଙ୍କ ସେହି ଭାରତୀୟ ସମର୍ଥକମାନଙ୍କ-ଦ୍ୱାରା ସୃଷ୍ଟି ହୋଇଥାଏ; ଯେଉଁମାନେ ରାଜା ଅପେକ୍ଷା ଅଧିକ ରାଜତନ୍ତ୍ର-ଅନୁରକ୍ତ ହୋଇ ଉଠିଥାନ୍ତି । ଏ ପ୍ରକାର ଆଚରଣ ପ୍ରତି ଜଣେ ସାଧାରଣ ଭାରତୀୟର ମନୋଭାବ ହେଉଛି ବିରକ୍ତି ଓ ଘୃଣାର ମନୋଭାବ ଏବଂ ତାର ବିଚାରରେ ଏ ପ୍ରକାର ଲୋକେ କେବଳ 'ଭିଚି'ର ଲୋକଙ୍କ ସଙ୍ଗେ କିମ୍ବା ଜର୍ମାନ ଓ ଜାପାନୀମାନଙ୍କଦ୍ୱାରା ସ୍ଥାପିତ ସାକ୍ଷୀ-କଣ୍ଢେଇ ସରକାରମାନଙ୍କ ସଙ୍ଗେ ତୁଳନୀୟ । ଏହି ବିଚାର କଂଗ୍ରେସ ଲୋକଙ୍କ ଭିତରେ କେବଳ ଆବଦ୍ଧ ନୁହେଁ; ମୁସ୍‌ଲିମ୍ ଲିଗ୍ ଓ ଅନ୍ୟାନ୍ୟ ସଙ୍ଗଠନର ସଭ୍ୟମାନଙ୍କ ଭିତରେ ମଧ୍ୟ ଏହାର ପ୍ରସାର ଘଟିଛି ଏବଂ ଆମର ଅତିଶୟ ଉଦାରପନ୍ଥୀ ରାଜନୀତିଜ୍ଞମାନେ ମଧ୍ୟ ଏହା ବ୍ୟକ୍ତ କରିଥାନ୍ତି ।

ସରକାରଙ୍କ ତୀବ୍ର ଜାତୀୟତାବିରୋଧୀ କାର୍ଯ୍ୟକଳାପ ଓ ଅଭିନବ ପ୍ରଚାର କୌଶଳ କ୍ରମରେ ଯୁଦ୍ଧଥିଲା ବଡ଼ ଏକ ଛଳ ଓ ଆବରଣ । 'ଶ୍ରମିକ ମନୋବଳ' ଗଢ଼ି ତୋଳିବା କ୍ରମରେ ସରକାରୀ ଅର୍ଥରେ ବହୁ ଶ୍ରମିକ ଅନୁଷ୍ଠାନ ଛତୁଭଳି ଫୁଟି ଉଠିଲା ଏବଂ କାଗଜ ଅଭାବ ଯୋଗୁଁ ଦେଶର ପ୍ରତିଷ୍ଠିତ ସମ୍ବାଦପତ୍ରମାନେ ଯଥେଷ୍ଟ ଅସୁବିଧା ଭୋଗ କରୁଥିଲାବେଳେ ନୂତନରେ କେତେ ସମ୍ବାଦପତ୍ର ସ୍ଥାପନ କରାଗଲା ଏବଂ ସେଥିରେ ଯେତେ ଅଧିକ ଅଶ୍ଳୀଳ ଭାଷାରେ ଗାନ୍ଧି ଓ କଂଗ୍ରେସ ବିରୁଦ୍ଧରେ ଲେଖାମାନ ପ୍ରକାଶ ପାଇଲା ସରକାରଙ୍କଠାରୁ ସେତେ ଅଧିକ ଆର୍ଥିକ ସାହାଯ୍ୟ ମିଳିଲା । ଯୁଦ୍ଧ ଉଦ୍ୟମ ସଙ୍ଗେ ସମ୍ପର୍କିତ ବୋଲି କୁହାଯାଉଥିବା ସରକାରୀ ବିଜ୍ଞାପନଗୁଡ଼ିକୁ ମଧ୍ୟ ଏହି ଉଦ୍ଦେଶ୍ୟରେ ବ୍ୟବହୃତ କରାଗଲା । ଭାରତ ସରକାରଙ୍କ ପକ୍ଷରୁ ଜୋରସୋରରେ ପ୍ରଚାର ଚଳାଇବା ପାଇଁ ଭାରତ ବାହାରେ ପ୍ରଚାରକେନ୍ଦ୍ରମାନ ଖୋଲାଗଲା । ସେଣ୍ଟ୍ରାଲ୍ ଆସେମ୍ବ୍ଲିର ପ୍ରତିବାଦ ସତ୍ତ୍ୱେ ସରକାରୀ ପ୍ରତିନିଧି ଦଳମାନଙ୍କରେ, କୌଣସି ବିଶେଷ କୃତିତ୍ୱ ଅଥବା ପ୍ରତିଭାହୀନ, ବହୁଧା ଅଜ୍ଞାତ ବ୍ୟକ୍ତିମାନଙ୍କୁ ବ୍ରିଟିଶ ସରକାରଙ୍କ ଭାଟ ଓ ଏଜେଣ୍ଟ ଭାବରେ କାର୍ଯ୍ୟ କରିବାପାଇଁ ଭାରତ ବାହାରକୁ ବିଶେଷତଃ ଆମେରିକାକୁ ପଠାଗଲା । ଯେଉଁମାନେ ସ୍ୱାଧୀନ ମତ ବ୍ୟକ୍ତ କରିଥାନ୍ତି କିମ୍ବା ସରକାରଙ୍କ ଦୋଷଦୁର୍ବଳତା ପ୍ରକାଶ କରିଥାନ୍ତି ଦେଶ ବାହାରକୁ ଯିବାର ସୁଯୋଗ ସେମାନଙ୍କର ନଥିଲା । ପାସ୍‌ପୋର୍ଟ କିମ୍ବା ପରିବହନ ସୁବିଧା ସେମାନଙ୍କୁ ମିଳୁନଥିଲା ।

ଏହିସବୁ ଏବଂ ଅନ୍ୟବିଧ ଆହୁରି କେତେ ଉପାୟ ଗତ ଦୁଇ ବର୍ଷ ଭିତରେ ସରକାର ପ୍ରୟୋଗ କରିଚନ୍ତି ବାହାର ଦେଖାଣିଆ ଭାବରେ 'ଜନତାର ଶାନ୍ତି' ସୃଷ୍ଟି କରିବାପାଇଁ । ରାଜନୈତିକ ଓ ସର୍ବସାଧାରଣ ଜୀବନ ସୁପ୍ତି ଭଜିଚି । ପ୍ରକୃତପକ୍ଷେ, କମ୍ ବହୁତରେ, ସାମରିକ ଆଧିପତ୍ୟ ଓ ଶାସନର ଦେଶରେ ଏପରି ହେବା କିଛି ଅସ୍ୱାଭାବିକ ନୁହେଁ; କିନ୍ତୁ ବଳପୂର୍ବକ କୌଣସି ରୋଗର ଲକ୍ଷଣକୁ ଏପରି ଭାବରେ ଦୂର କରିବାର ଉଦ୍ୟମ ଯଦି ହୁଏ, ତାହା ଦିନେ ସେ ରୋଗକୁ ଉଗ୍ର ହିଁ କରିବ; ଏବଂ ଭାରତ ଆଜି ବଡ଼ ରୁଗ୍‌ଣ । ଭାରତର ପ୍ରଖ୍ୟାତ ରକ୍ଷଣଶୀଳ ବ୍ୟକ୍ତିମାନେ, ଯେଉଁମାନେ ସବୁ ସମୟରେ ସରକାରଙ୍କ ସଙ୍ଗେ ସହଯୋଗ କରିବାର ପ୍ରୟାସ କରିଚନ୍ତି, ଏହି ଜ୍ୱାଳାମୁଖୀର ମୁଖ ଏପରି ଅସ୍ଥାୟୀ ଭାବରେ

ବନ୍ଦ କରିଦଆଯିବାରେ ଗଭୀର ଉଦ୍‌ବେଗ ପ୍ରକାଶ କରି କହିଥିଲେ ଯେ ବ୍ରିଟିଶ ସରକାର ବିରୁଦ୍ଧରେ ଏତେଭଳି ତିକ୍ତତା ଏଥିପୂର୍ବେ କେବେ ପ୍ରକାଶ ପାଇବା ସେମାନେ ଜାଣି ନାହାନ୍ତି ।

ଏ ବିଷୟରେ ମୁଁ କିଛି ଜାଣିନି ଏବଂ କହି ମଧ୍ୟ ପାରିବିନି ଯେ ପର୍ଯ୍ୟନ୍ତ ମୁଁ ମୋ ଲୋକଙ୍କ ସଂସ୍ପର୍ଶରେ ପୁଣି ନଆସିଛି ଏବଂ ଏହି ଦୁଇ ବର୍ଷରେ ସେମାନେ କପରି ପରିବର୍ତ୍ତିତ ହୋଇଛନ୍ତି ନିଜେ ନ ଦେଖିଛି ଏବଂ ସେମାନଙ୍କ ହୃଦୟର କି ଭାବ ସେମାନଙ୍କୁ ବିଚଳିତ କରୁଛି, ମୁଁ ନିଜେ ନବୁଝିଛି; କିନ୍ତୁ ମୋର ସନ୍ଦେହ ନାହିଁ ଯେ ଡଳ ଦିନର ଏହିସବୁ ଅଭିଜ୍ଞତା ନାନା ଭାବରେ ସେମାନଙ୍କ ଜୀବନରେ ପରିବର୍ତ୍ତନ ଆଣିଛି । ମୁଁ ମୋର ନିଜ ମନ ଅଧ୍ୟୟନ କରିଛି ଏବଂ ଘଟଣା ପ୍ରତି ତାର କିପରି ସ୍ୱତଃ ପ୍ରତିକ୍ରିୟା ହୋଇଥାଏ, ତାହା ପରୀକ୍ଷା କରିଛି । ଅତୀତରେ ଇଂଲଣ୍ଡ ଯିବାପାଇଁ ମୁଁ ବରାବର ଆକାଂକ୍ଷିତ ଥାଏ, କାରଣ ସେଠାରେ ମୋର ବହୁତ ବନ୍ଧୁ ଅଛନ୍ତି ଏବଂ ବହୁ ପୁରାତନ ସ୍ମୃତି ମତେ ସେ ଆଡ଼କୁ ଟାଣିଥାଏ । ନିଜ ମନକୁ ପରୀକ୍ଷା କରୁଁଛି, ସେ ଅଭିଳାଷ ମୋର ଆଉ ନାହିଁ ଏବଂ ସେ ଭାବନା ମନକୁ ତିକ୍ତ କରୁଛି । ଇଂଲଣ୍ଡଠାରୁ, ମନେ ହେଉଛି, ଯେତେ ଦୂରରେ ରହିପାରିଲେ ସେତେ ଭଲ ଏବଂ ଏପରିକି ଇଂଲିଶ୍ ଲୋକଙ୍କ ସଙ୍ଗେ ଭାରତର ବିବିଧ ସମସ୍ୟା ସମ୍ପର୍କରେ ଆଲୋଚନା କରିବା ପାଇଁ ମଧ୍ୟ ମୋର ଆଉ ଆଗ୍ରହ ନାହିଁ; କିନ୍ତୁ ସେହି ବନ୍ଧୁମାନଙ୍କ କଥା ମନେପଡ଼ିଲେ ମନରେ ଉଗ୍ରଭାବ ଶାନ୍ତ ହୋଇଆସେ ଏବଂ ମତେ ମୁଁ ପୁଣି ବୁଝାଇ କହେ ଯେ ଏପରି ଭାବରେ ଗୋଟାଏ ଜାତି ଉପରେ ବିଚାର କରିବା ଠିକ୍ ନୁହେଁ । ଇଂଲଣ୍ଡର ଲୋକେ ଏହି ଯୁଦ୍ଧ ଭିତରେ କି ଭୟଙ୍କର ଅଭିଜ୍ଞତା ଲାଭ କରି ନଥିବେ, କି ଗଭୀର ଉଦ୍‌ବିଗ୍ନତା ଭିତରେ ଦିନ କଟାଇ ନଥିବେ ଏବଂ ଅଗଣିତ ପ୍ରିୟଜନଙ୍କ ବିଚ୍ଛେଦ ସେମାନଙ୍କ ମନରେ କି ଦାରୁଣ ଦୁଃଖ ପୁଞ୍ଜୀଭୂତ କରି ନଥିବ ! ଏସବୁ ଭାବନା ମୋର ମନର ଉଗ୍ରତାକୁ ଶାନ୍ତ କଲେ ସୁଦ୍ଧା ସେହି ମୌଳିକ ପ୍ରତିକ୍ରିୟା ଜାଗ୍ରତ ରହିଛି । ହୁଏତ ସମୟ ଓ ଭବିଷ୍ୟତ କ୍ରମଶଃ ତାହା ପୋଛିନେଇ ଗୋଟିଏ ନୂତନ ପରିପ୍ରେକ୍ଷୀ ଯୋଗାଇବ; କିନ୍ତୁ ଇଂଲଣ୍ଡ ଓ ଇଂରେଜମାନଙ୍କ ସଙ୍ଗେ ମୋର ଏତେ ସମ୍ପର୍କ ସତ୍ତ୍ୱେ ଯଦି ଏପରି ଭାବରେ ମୁଁ ଅନୁଭବ କରିପାରିଲି, ଅନ୍ୟମାନଙ୍କ ମନରେ କି ପ୍ରକାର ପ୍ରତିକ୍ରିୟା ହୋଇନଥିବ । ଯେଉଁମାନେ ଇଂଲଣ୍ଡ ଯାଇନାହାନ୍ତି କିମ୍ବା ସେଠାରେ ଇଂରେଜମାନଙ୍କ ସଙ୍ଗେ ବନ୍ଧୁତା କରି ନାହାନ୍ତି ।

## ୭. ଭାରତର ଅସୁସ୍ଥତା : ଦୁର୍ଭିକ୍ଷ

ଭାରତ ରୁଗ୍‌ଣ ହୋଇ ପଡ଼ିଥିଲା; ତା'ର ଦେହ ଓ ମନରେ । ଯୁଦ୍ଧକାଳରେ କେତେ ଲୋକ ବେଶ୍ ସମୃଦ୍ଧି ଲାଭ କରିଥିଲାବେଳେ ଅନ୍ୟମାନଙ୍କ ଉପରେ ଯେଉଁ ବୋଝ ପଡ଼ିଥିଲା, ତାହା ସେମାନଙ୍କର ମେରୁଦାଣ୍ଡ ଭାଙ୍ଗିବାର ଉପକ୍ରମ କରିଥିଲା ଏବଂ ତା'ର ଏକ ଭୟଙ୍କର ସ୍ମାରକ ଭାବରେ ଆସିଲା ଦୁର୍ଭିକ୍ଷ—ଏକ ସର୍ବଗ୍ରାସୀ, ସର୍ବବ୍ୟାପକ ଦୁର୍ଭିକ୍ଷ ଯାହାର କବଳରେ ପଡ଼ିଲା ବଙ୍ଗ ଏବଂ ପୂର୍ବ ଓ ଦକ୍ଷିଣ ଭାରତ । ଗତ ୧୭୦ ବର୍ଷର ବ୍ରିଟିଶ ରାଜତ୍ୱ ଭିତରେ

ଭାରତର ଏହି ଦୁର୍ଭିକ୍ଷ ଥିଲା ସବାପେକ୍ଷା ବୃହତ୍ତମ ଓ ଭୟଙ୍କର ଏବଂ ଏହାର ତୁଳନା କରାଯାଇପାରେ ସେହି ଘୋର ଦୁର୍ଭିକ୍ଷ ସଙ୍ଗେ କେବଳ ଯାହା ବ୍ରିଟିଶ ଶାସନ ପ୍ରତିଷ୍ଠାର ପ୍ରଥମ ପରିଣାମ ଭାବରେ ଖ୍ରୀ: ୧୭୬୬ରୁ ୧୭୭୦ ଯାଏଁ ପଡ଼ିଥିଲା ବଙ୍ଗ ଓ ବିହାରରେ ! ଅନାହାର ପଛେ ପଛେ ଦେଖାଦେଲା ନାନା ସଂକ୍ରାମକ ରୋଗ, ବିଶେଷତଃ ମହାମାରୀ ଓ ମେଲେରିଆ ଏବଂ ତାହା ପ୍ରସରି ଗଲା ଅନ୍ୟ ପ୍ରଦେଶମାନଙ୍କୁ । ଅଦ୍ୟାବଧି ହଜାର ହଜାର ଲୋକଙ୍କୁ ତାହା ଗ୍ରାସ କରିବାରେ ଲାଗିଛି । ଦୁର୍ଭିକ୍ଷ ଓ ରୋଗରେ ଲକ୍ଷ ଲକ୍ଷ ଲୋକ ମଲେଣି, ତଥାପି ତାର ଅଶରୀରୀ ସତ୍ତା ଏବେ ବି ଭାରତର ଆକାଶରେ ଅଶାନ୍ତ ଭାବରେ ଘୂରି ବୁଲୁଛି ଓ ତାର ନୈବେଦ୍ୟ ସଂଗ୍ରହ କରୁଛି । (୧)

ଉପର ସ୍ତରରେ ସ୍ୱଳ୍ପସଂଖ୍ୟକ ଲୋକଙ୍କ ସମୃଦ୍ଧିର କୃତ୍ରିମ ବାହ୍ୟ ହାବଭାବ ତଳେ ଯେଉଁ ଭାରତ ପଡ଼ି ରହିଥିଲା, ଏହି ଦୁର୍ଭିକ୍ଷ ତାର ସ୍ୱରୂପ ଉନ୍ମୋଚନ କଲା । ସେ ଭାରତ ଥିଲା ବ୍ରିଟିଶ ଶାସନଜନିତ ଦାରିଦ୍ର୍ୟ ଓ କଦର୍ଯ୍ୟତାର ଏକ ଚିତ୍ର । ଏହି ଦୁର୍ଭିକ୍ଷ ପଛରେ ପ୍ରକୃତିର କୋପ କି ପରିହାସ ନଥିଲା କିମ୍ବା ଯୁଦ୍ଧଯୋଗୁଁ ଅଥବା ଶତ୍ରୁ ଅବରୋଧ ଯୋଗୁଁ ଏହା ସୃଷ୍ଟିହୋଇ ନଥିଲା । ପ୍ରତ୍ୟେକ ବିଶେଷଜ୍ଞ ସ୍ୱୀକାର କରନ୍ତି ଯେ ଏହି ଦୁର୍ଭିକ୍ଷ କେବଳ ମଣିଷ ହାତର ଘଟନା, ଯାହା ନିବାରଣ କରିବା ଦିଗରେ ବିହିତ ବ୍ୟବସ୍ଥା ଯଥାସମୟରେ ଗ୍ରହଣ କରାଯାଇ ପାରିଥାନ୍ତା । ସମସ୍ତେ ମାନୁଛନ୍ତି ଯେ ସମ୍ପୃକ୍ତ ସମସ୍ତ କର୍ତ୍ତୃପକ୍ଷ ଏ ଦିଗରେ ଅତି ବିସ୍ମୟକର ଉଦାସୀନତା, ଅବହେଳା ଓ ଅଯୋଗ୍ୟତା ପ୍ରମାଣ କରିଛନ୍ତି । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ, ରାସ୍ତା କଡ଼ରେ, ଗଳିକନ୍ଦିରେ ସହସ୍ର ସଂଖ୍ୟାରେ ଲୋକେ କ୍ରନ୍ଦନ କରି ମାଛି ଭଳି ମରୁଥିଲାବେଳେ, ଦୁର୍ଭିକ୍ଷ ପଡ଼ିଛି ବୋଲି ସରକାର ସ୍ୱୀକାର କରୁ ନଥିଲେ

(୧) ଖ୍ରୀ: ୧୯୪୩-୪୪ ବଙ୍ଗଳା ଦୁର୍ଭିକ୍ଷରେ ମୃତ୍ୟୁସଂଖ୍ୟା ନେଇ ଅଲଗା ଅଲଗା ହିସାବ ମିଳୁଛି । ଦୁର୍ଭିକ୍ଷପୀଡ଼ିତ ଅଞ୍ଚଳମାନଙ୍କରେ, ନମୁନା ସ୍ୱରୂପ କେତେକ ଗ୍ରୁପ୍‌ନେଇ, କଲିକତା ବିଶ୍ୱବିଦ୍ୟାଳୟର ନୃତତ୍ତ୍ୱ ବିଭାଗ ବିସ୍ତୃତ ସର୍ଭେ କରିଛନ୍ତି । ସେମାନଙ୍କ ଗଣନା ଅନୁସାରେ ବଙ୍ଗଳା ଦୁର୍ଭିକ୍ଷର ସର୍ବମୋଟ ମୃତ୍ୟୁ ସଂଖ୍ୟା ପ୍ରାୟ ୩୪,୦୦,୦୦୦ । ଆହୁରି ମଧ୍ୟ ଜଣାଯାଇଛି ଯେ ୧୯୪୩ ଓ ୧୯୪୪ରେ ଶତକଡ଼ା ୪୬ ଭାଗ ଲୋକ ପ୍ରତିବର୍ଷ ବଡ଼ ଧରଣର ବେମାରି ଭୋଗିଛନ୍ତି । ଗ୍ରାମ ପଞ୍ଚାୟତ ଓ ଗ୍ରାମ ମୁଖିଆମାନଙ୍କ ରିପୋର୍ଟ ( ଯାହା ନିର୍ଭରଯୋଗ୍ୟ ନୁହେଁ ) ଉପରେ ଭିତ୍ତିକରି, ବଙ୍ଗ ସରକାର ଯେଉଁ ହିସାବ ଦେଉଛନ୍ତି, ତଦନୁସାରେ ଏହି ମୃତ୍ୟୁ ସଂଖ୍ୟା ଯଥେଷ୍ଟ ଊଣା । ସାର୍ ଜନ୍ ଉଡ୍‌ହେଡ୍‌ଙ୍କ ନେତୃତ୍ୱରେ ଗଠିତ ସରକାରୀ 'ଫେମିନ୍ ଇନ୍‌କ୍ୱାଇରି କମିଶନ' ଏହି ନିଷ୍ପତ୍ତିରେ ପହୁଞ୍ଚିଛନ୍ତି ଯେ 'ଦୁର୍ଭିକ୍ଷ ଓ ତାର ଆନୁଷଙ୍ଗିକ ନାନାବିଧ ସଂକ୍ରାମକ ରୋଗ ଫଳରେ ପ୍ରାୟ ୧୫,୦୦,୦୦୦ ଲୋକ ମରଣ କବଳରେ ପଡ଼ିଛନ୍ତି । ଏ ସମସ୍ତ ଗଣନା ବଙ୍ଗଳା ସମ୍ପର୍କରେ କେବଳ । ଦେଶର ଅନ୍ୟାନ୍ୟ ବହୁ ଅଞ୍ଚଳରେ ମଧ୍ୟ ବହୁ ଲୋକ ଦୁର୍ଭିକ୍ଷ ଓ ମହାମାରୀ ଲାଗି ମରିଛନ୍ତି ।

ଏବଂ ଦୁର୍ଭିକ୍ଷ ସମ୍ପର୍କରେ, କଡ଼ା ବିବେଚନ ଯୋଗୁଁ, ଧାଡ଼ିଏ ସୁଦ୍ଧା ଖବର କାଗଜମାନଙ୍କରେ ପ୍ରକାଶ ପାଇପାରି ନଥିଲା । କଲିକତାରେ 'ଷ୍ଟେଟ୍ସମେନ୍' ଦୈନିକରେ କଲିକତାର ଗଳିକନ୍ଦିର ଅନାହାରପୀଡ଼ିତ ଅଗଣିତ ନାରୀ ଓ ଶିଶୁ ମରଣର ପ୍ରତୀକ୍ଷା କରିଥିବା ବିକଟ-ଦର୍ଶନ ତଥା ଭୟାବହ ଚିତ୍ର ଯେତେବେଳେ ପ୍ରକାଶ ପାଇଲା, ଭାରତ ସରକାରଙ୍କର ଜଣେ ମୁଖପାତ୍ର କେନ୍ଦ୍ର ଆସେମ୍ବ୍ଲିରେ ଏକ ସାଧାରଣ ପରିସ୍ଥିତିକୁ ଏପରି 'ନାଟ୍ୟରୂପ' ଦେବା ବିରୁଦ୍ଧରେ ପ୍ରତିବାଦ କରିଥିଲେ । ଭାରତରେ ପ୍ରତିଦିନ ସହସ୍ର ସଂଖ୍ୟକ ଲୋକ ଏପରି ଅନାହାରରେ ମରିବା ତାଙ୍କୁ ବୋଧହୁଏ ଅସ୍ୱାଭାବିକ ମନେ ହେଉନଥିଲା । ଲଣ୍ଡନରେ ଇଣ୍ଡିଆ ଅଫିସର ମିଷ୍ଟର୍ ଆମେରୀ ଦୁର୍ଭିକ୍ଷ ସମ୍ପର୍କରେ ବହୁ ମିଥ୍ୟା ବିବୃତି ଦେଇ ନିଜର ବୈଶିଷ୍ଟ୍ୟ ପ୍ରମାଣ କରିଥିଲେ । ଶେଷରେ ସେହି ସୁପରିବ୍ୟାପ୍ତ ଦୁର୍ଭିକ୍ଷର ବାସ୍ତବିକତାକୁ ଅସ୍ୱୀକାର କରିବା କିମ୍ବା ଘୋଡ଼ାଇନେବା ଯେତେବେଳେ ଅସମ୍ଭବ ହୋଇପଡ଼ିଲା, କର୍ତ୍ତୃପକ୍ଷଙ୍କ ଭିତରେ ସେଥି ନିମନ୍ତେ ପରସ୍ପରକୁ ଦୋଷଦେବାର ପାଳି ଚାଲିଲା । ଭାରତ ସରକାର ଦୋଷ ଲଦିଲେ ପ୍ରାଦେଶିକ ସରକାରଙ୍କ ଉପରେ; କିନ୍ତୁ ସମସ୍ତେ ଜାଣିଥିଲେ ଯେ ପ୍ରାଦେଶିକ ସରକାର ଥିଲେ ଗଭର୍ଣ୍ଣରଙ୍କ ଅଧୀନରେ ସିଭିଲ୍ ସର୍ଭିସ୍‌ଦ୍ୱାରା ଚାଳିତ ଏକ କଣ୍ଢେଇ-ସରକାର ମାତ୍ର । ସେମାନେ କେନ୍ଦ୍ରହେଲେ ଦୋଷରୁ ମୁକ୍ତ ହୋଇ ନପାରନ୍ତି । ସ୍ୱୟଂ ଭାଇସ୍‌ରାୟ ଯେଉଁ ପ୍ରଭୁତ୍ୱପରାୟଣ ସରକାରର ଥିଲେ ସର୍ବୋସର୍ବା ଏବଂ ଯେଉଁ ସରକାର ଦେଶରେ ଯାହା ଇଚ୍ଛା ତାହା କରିପାରୁଥିଲା, କିପରି ନିଜକୁ ଏହି ଅପରାଧରୁ ମୁକ୍ତ ହୋଇପାରେ । ଯେ କେଉଁ ଗଣତାନ୍ତ୍ରିକ ଅଥବା ଅର୍ଦ୍ଧ-ଗଣତାନ୍ତ୍ରିକ ଦେଶରେ ଏ ପ୍ରକାର ଦୁର୍ବିପାକ ସମ୍ପୃକ୍ତ ସମସ୍ତ ସରକାରଙ୍କୁ ଉଡାଇ ଦେଇଥାନ୍ତା; କିନ୍ତୁ ଭାରତରେ ନୁହେଁ; ଏଠାରେ ସବୁ କିଛି ପୂର୍ବଭଳି ଚାଲିଚ ।

ଯୁଦ୍ଧ ଦୃଷ୍ଟିରୁ ବିଚାରକଲେ ମଧ୍ୟ ଏହି ଦୁର୍ଭିକ୍ଷ ଠିକ୍ ସେହି ଅଞ୍ଚଳରେ ପଡ଼ିଥିଲା, ଯାହା ରଣମଞ୍ଚ ଓ ସମ୍ଭାବିତ ଆକ୍ରମଣ ସୀମାନ୍ତର ଅତି ନିକଟରେ ଅବସ୍ଥିତ । ସୁଦୂରପ୍ରସାରୀ ଦୁର୍ଭିକ୍ଷ ଓ ଅର୍ଥନୈତିକ ଗଡ଼ଣର ବିପର୍ଯ୍ୟୟ ପ୍ରତିରକ୍ଷା ସାମର୍ଥ୍ୟକୁ ଅନିବାର୍ଯ୍ୟ ଭାବରେ ଦୁର୍ବଳ କରନ୍ତା କେବଳ ନୁହେଁ, ପ୍ରତିଆକ୍ରମଣର ଶକ୍ତି ମଧ୍ୟ ବିପନ୍ନ କରନ୍ତା । ଏପରି ଭାବରେ, ଭାରତ ସରକାର ଭାରତ ପ୍ରତିରକ୍ଷାର ଏବଂ ଆକ୍ରମଣକାରୀ ଜାପାନ ବିରୁଦ୍ଧରେ ଯୁଦ୍ଧ ଚଳାଇବାର ଦାୟିତ୍ୱ ଭୁଲିଇଥିଲେ । ଅତି ଗୁରୁତ୍ୱପୂର୍ଣ୍ଣ ଏହି ସମରାଞ୍ଚଳରେ ଦଗ୍ଧ-ମାଟିର ନୁହେଁ, ଲକ୍ଷ ଲକ୍ଷ ଅଣାଦଗ୍ଧ, କ୍ଷୁଧାର୍ତ୍ତ ଓ ମୃତ ମନୁଷ୍ୟ ଥିଲେ ସରକାରଙ୍କ ଅନୁସୃତ ନୀତିର ପ୍ରତୀକ ।

ରିଲିଫ୍ ପହଞ୍ଚାଇବାରେ ସାରା ଦେଶର ବେସରକାରୀ ଭାରତୀୟ ସଙ୍ଗଠନମାନେ ଏବଂ ଇଂଲଣ୍ଡର ସେହି ପାରଙ୍ଗମ ମାନବହିତୈଷୀ 'କ୍ୱାକର'ମାନେ ଯଥେଷ୍ଟ ସହାୟତା କଲେ । କେନ୍ଦ୍ର ଓ ପ୍ରଦେଶର ସରକାରମାନେ ମଧ୍ୟ ପରିଶେଷରେ ଚେଇଁ ଉଠି ସେହି ସଙ୍କଟର ଗୁରୁତ୍ୱ ଉପଲବ୍ଧି କଲେ ଏବଂ ରିଲିଫ୍ କାର୍ଯ୍ୟରେ ସୈନିକଙ୍କୁ ନିଯୁକ୍ତ କଲେ । ସେହି ପ୍ରମୟ ପାଇଁ ଅନ୍ତତଃ ଦୁର୍ଭିକ୍ଷର ବ୍ୟାପ୍ତି ରୋକିବା ଦିଗରେ ଓ ତାର ପରବର୍ତ୍ତୀ କୁପରିଣାମ

ଲଘୁ କରିବା ଉପରେ ସବୁଠି କିଛି କରାଗଲା, ତଥାପି ତାହା ଥିଲା କେବଳ ଅସ୍ଥାୟୀ ଏବଂ ତାର ପରବର୍ତ୍ତୀ କୁଫଳ ଏବେ ବି ଫଳିବାରେ ଲାଗିଛି । ଦୁର୍ଭିକ୍ଷ ପୁଣି ଯେ ଅଧିକ ବ୍ୟାପକ ଭାବରେ ନପଡ଼ିବ, କିଏ କହି ପାରିବ ? ବଙ୍ଗ ଭାଙ୍ଗି ପଡ଼ିଛି, ତାର ସାମାଜିକ ଓ ଅର୍ଥନୈତିକ ଜୀବନ ବିଧ୍ୱସ୍ତ ହୋଇଛି ଏବଂ ଦୁର୍ଭିକ୍ଷର ଉଚ୍ଛିଷ୍ଟ ଭାବରେ ରହିଯାଇଛି କେବଳ ଏକ କ୍ଷୀଣତେଜ ପୁରୁଷ ।

ଏସବୁ ଯେତେବେଳେ ଘଟୁଥିଲା ଏବଂ କଲିକତାର ଗଳିକନ୍ଧିରେ ଅଗଣିତ ମଣିଷ-ଶବ ବିଛିହୋଇ ପଡ଼ିଥିଲା, କଲିକତାର ଉପର ବର୍ଗର ଦଶ ହଜାରଙ୍କ ସାମାଜିକ ଜୀବନ କିନ୍ତୁ ଅପରିବର୍ତ୍ତିତ ଭାବରେ ଚାଲିଥିଲା । ନାଚଗୀତ, ଭୋଜିଭାତ, ବିଳାସବ୍ୟସନ କିଛି ଅଭାବ ନଥିଲା । ଜୀବନ ଥିଲା ତାଜା ଓ ପ୍ରଫୁଲ୍ଲ । ଅନେକ ଦିନ ପର୍ଯ୍ୟନ୍ତ ପଡ଼ିପ୍ରଥା ପ୍ରଚଳନ କରାଯାଇନଥିଲା । କଲିକତାର ବିଖ୍ୟାତ ଘୋଡ଼ାଦୌଡ଼ ଅବ୍ୟାହତ ଭାବରେ ଚାଲିଥିଲା ଓ ଫେସନ୍‌ବାଲା, ପଇସାବାଲା ଲୋକେ ସେଠାରେ ଋଣ୍ଡ ହେଉଥିଲେ । ଖାଦ୍ୟ ସରବରାହ ନିମନ୍ତେ ପରିବହନ ସୁବିଧା ନଥିଲା; କିନ୍ତୁ ଘୋଡ଼ାଦୌଡ଼ର ଘୋଡ଼ା ସ୍ୱତନ୍ତ୍ର ରେଲଡବାରେ ଭାରତର ଅନ୍ୟାନ୍ୟ ଅଂଶରୁ କଲିକତାରେ ଆସି ପହଞ୍ଚୁଥିଲେ । ଏହି ବିନୋଦପୂର୍ଣ୍ଣ ଜୀବନରେ ଇଂରେଜ ଓ ଭାରତୀୟ ଉଭୟ ଜାତିର ଲୋକେ ମଉଜିଆଲ ଥିଲେ; କାରଣ ଉଭୟ ଯୁଦ୍ଧ ବ୍ୟବସାୟରେ ସମୃଦ୍ଧି ଲାଭ କରିଥିଲେ ଏବଂ ସେମାନଙ୍କ ପାଖରେ ଅଜସ୍ର ପଇସା ଜମିଥିଲା । କେବେ କେବେ ସେହି ପଇସା ଆସୁଥିଲା ଖାଦ୍ୟଦ୍ରବ୍ୟର ଲାଭଖୋରି କାରବାରରୁ; ଅଥଚ ସେହି ଖାଦ୍ୟାଭାବ ଯୋଗୁଁ ଲୋକେ ପ୍ରତିଦିନ ହଜାର ହଜାର ସଂଖ୍ୟାରେ ରାସ୍ତା କଡ଼ରେ ମରି ଶୋଉଥିଲେ ।

କହୁଥା କୁହାଯାଇଥାଏ ଯେ ଭାରତ ଏକ ଆନ୍ତର୍ବିରୋଧର ଦେଶ । ଏଠାରେ ଥୋକେ ଅତିମାତ୍ରାରେ ଧନୀ, ଆଉ ଅଧିକାଂଶ ଅତି ଦରିଦ୍ର । ଏଠାରେ ଆଧୁନିକତା ଅଛି ଓ ମଧ୍ୟ-ଯୁଗୀୟତା ବି ଅଛି । ରାଜା ଅଛନ୍ତି, ପ୍ରଜା ଅଛନ୍ତି; ଇଂରେଜ ଅଛନ୍ତି ଓ ଭାରତୀୟ ବି ଅଛନ୍ତି । ଖ୍ରୀ: ୧୯୪୩ରେ ଦ୍ୱିତୀୟାର୍ଦ୍ଧରେ, ଘୋର ଦୁର୍ଭିକ୍ଷର ସେହି କେତୋଟି ମାସରେ, କଲିକତା ନଗରୀରେ ଏହି ପାର୍ଥକ୍ୟ ଯେପରି ଭାବରେ ପ୍ରକାଶ ପାଇଲା, ପୂର୍ବେ କେବେ-ହେଲେ ସେପରି ଦେଖାଯାଇନଥିଲା । ସାଧାରଣତଃ ପରସ୍ପରଠାରୁ ବିଚ୍ଛିନ୍ନ, ପରସ୍ପର ସମ୍ପର୍କରେ ପ୍ରାୟ ଅଜ୍ଞାତ, ଦୁଇଟି ଦୁନିଆ ଅକସ୍ମାତ ପରସ୍ପରର ସଂଲଗ୍ନ ଭାବରେ ଦୃଷ୍ଟି-ଗୋଚର ହେଲା । ବଡ଼ ଚମକପ୍ରଦ ସେହି ଦୁଇ ଦୁନିଆର ପାର୍ଥକ୍ୟ ଓ ବିରୋଧାଭାସ; କିନ୍ତୁ ଆଶ୍ଚର୍ଯ୍ୟର କଥା, ବହୁ ଲୋକେ ସେ ପରିସ୍ଥିତିର ଭୟାବହତା ଓ ବସ୍ତୁତଃ ଅସଙ୍ଗତି ଉପଲବ୍ଧି ନକରି ନିଜ ନିଜ ଗଣ୍ଡି ମଧ୍ୟରେ କାଳାତିପାତ କରୁଥିଲେ । କ'ଣ ସେମାନେ ଭାବୁଥିଲେ କହିବା କଠିନ । ସେମାନଙ୍କର ଆଚରିତ କର୍ମରୁ କେବଳ ଯାହା ବିଚାର କରିବାର କଥା । ଅଧିକାଂଶ ଇଂରେଜଙ୍କ ପକ୍ଷରେ ଏହା ହୁଏତ ସହଜ ଥିଲା, କାରଣ ସେମାନେ ସେମାନଙ୍କର ସ୍ୱତନ୍ତ୍ର ଜୀବନ ଭିତରେ ରହୁଥିଲେ ଏବଂ ବର୍ଣ୍ଣର ବେଷ୍ଟନୀ ଭିତରେ ରହିଥିଲା ବେଳେ ବ୍ୟକ୍ତିଗତ ଭାବରେ କେହି କେହି ଯଦିଓ ପରିବର୍ତ୍ତନ ନିମନ୍ତେ ଆବେଗ

ଅନୁଭବ କରିଥିବେ, ସାମୂହିକ ଭାବରେ କିନ୍ତୁ ସେମାନଙ୍କର ପ୍ରଚଳିତ ନିତ୍ୟନୈମିତ୍ତିକ ଜୀବନର ଧାରା ପରିବର୍ତ୍ତନ ନିମନ୍ତେ ଆବଶ୍ୟକତା ଅନୁଭୂତ ହୋଇ ନଥିବ । କିନ୍ତୁ ଯେଉଁସବୁ ଭାରତୀୟ ଏପରି ଭାବରେ ଜୀବନ ଅତିବାହିତ କରୁଥିଲେ, ସେମାନଙ୍କର ଦେଶବାସୀ ଓ ସେମାନଙ୍କ ଭିତରେ କେତେ ବଡ଼ ବ୍ୟବଧାନ ରହିଛି ପ୍ରକାଶ କରିଥିଲେ । ସେହି ବ୍ୟବଧାନ ଶୋଭନୀୟତା ଓ ମାନବିକତା କିମ୍ବା ଅନ୍ୟ କୌଣସି ବିବେଚନାରେ ଦୂର ହେବାର ନଥିଲା ।

ସବୁ ବଡ଼ ବଡ଼ ସଙ୍କଟ ଭଳି ଦୁର୍ଭିକ୍ଷ ଭାରତବାସୀଙ୍କ ସୁଗୁଣ ଓ ଦୁର୍ଗୁଣ ଉଭୟର ପ୍ରକଟନ ସମ୍ଭବ କଲା । ଅନେକ ଲୋକ, ବେଶ୍ ଗଣ୍ୟମାନ୍ୟ ନେତୃସ୍ଥାନୀୟ ଲୋକେ, ଜେଲରେ ରହି-ଥିବା ହେତୁରୁ କୌଣସି ଭାବରେ ହେଲେ ସାହାଯ୍ୟ କରିବା ଅବସ୍ଥାରେ ନଥିଲେ । ତଥାପି ବେସରକାରୀ ଭାବରେ ସଙ୍ଗଠିତ ରିଲିଫ୍ କାର୍ଯ୍ୟକ୍ରମ ପ୍ରତ୍ୟେକ ଶ୍ରେଣୀର ନରନାରୀଙ୍କୁ ଆକର୍ଷିତ କଲା, ଯେଉଁମାନେ ସେହି ଘୋର ନିରୁତ୍ସାହଜନକ ଅବସ୍ଥାରେ ଦକ୍ଷତା, ପରସ୍ପର ପ୍ରତି ସହାୟକ ହେବାର ଉତ୍କଣ୍ଠା, ସହଯୋଗ ଓ ଆତ୍ମବଳିଦାନର ପ୍ରେରଣା ପ୍ରଦର୍ଶିତ କରି କଠୋର ପରିଶ୍ରମ କରିଥିଲେ, ଯାହା ଦୁର୍ଗୁଣ ତାହା ବି ସେମାନଙ୍କଠାରେ ପ୍ରକାଶ ପାଇଥିଲା । ଯେଉଁମାନେ ପରସ୍ପର ଭିତରେ ବିବାଦ କରି, ପରସ୍ପର ପ୍ରତି ଈର୍ଷା ପୋଷଣକରି ପାରସ୍ପରିକ ସହଯୋଗ ନିମନ୍ତେ ଏକତ୍ର ହୋଇପାରି ନଥିଲେ, ଯେଉଁମାନେ ଅନ୍ୟମାନଙ୍କୁ ସାହାଯ୍ୟ କରିବା ଦିଗରେ କିଛି ନକରି ନିଶ୍ଚେଷ୍ଟ ରହିଲେ ଏବଂ ସେହି ସ୍ୱଳ୍ପ ସଂଖ୍ୟକ ଲୋକ ଯେଉଁମାନେ ଏତେଭଳି ବିଜାତୀୟ ଓ ଅମଣିଷ ହୋଇ ଉଠିଥିଲେ ଯେ ଯାହା ଘଟୁଥିଲା ସେଥିପ୍ରତି ସେମାନଙ୍କର ତିଳେହେଲେ ବିଚାର ନଥିଲା ।

ଏହି ଦୁର୍ଭିକ୍ଷ ଥିଲା ଯୁଦ୍ଧ ପରିସ୍ଥିତିର ଏବଂ ଶାସକବର୍ଗଙ୍କ ଦୂରଦୃଷ୍ଟିହୀନତା ଓ ଅମନୋଯୋଗିତାର ପ୍ରତ୍ୟକ୍ଷ ପରିଣାମ । ପ୍ରତ୍ୟେକ ବୁଦ୍ଧିମାନ ବ୍ୟକ୍ତି ଟିକିଏ ଚିନ୍ତା କଲାମାତ୍ରେ ଯେବେ ଜାଣିପାରୁଥିଲେ ଯେ ଗୋଟାଏ କିଛି ସଙ୍କଟ ଆସି ଯାଉଛି, ସେତେବେଳେ ଦେଶର ଖାଦ୍ୟ ସମସ୍ୟା ପ୍ରତି କର୍ତ୍ତୃପକ୍ଷ କିପରି ଉଦାସୀନ ରହିପାରିଲେ ଧାରଣା କରିବା କଠିନ । ଯୁଦ୍ଧର ପ୍ରଥମାବସ୍ଥାରେ ଖାଦ୍ୟ ପରିସ୍ଥିତି ପ୍ରତି ବିହିତ ଦୃଷ୍ଟି ଦେଇଥିଲେ ଏହି ଦୁର୍ଭିକ୍ଷ ପଡ଼ିନଥାନ୍ତା । ଅନ୍ୟ ସବୁ ଦେଶରେ ଯେଉଁଠି ଯୁଦ୍ଧର ଛାପ ପଡ଼ିଲା, ସେଠାରେ ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ସୁଦ୍ଧା, ଯୁଦ୍ଧ ଅର୍ଥନୀତିର ଏହି ଗୁରୁତ୍ୱପୂର୍ଣ୍ଣ ବିଭାଗ ପ୍ରତି ପୂର୍ଣ୍ଣ ଦୃଷ୍ଟି ଦିଆଯାଇଥିଲା । ଭାରତରେ ଭାରତ ସରକାର ୟୁରୋପରେ ଯୁଦ୍ଧ ଆରମ୍ଭ ହେବାର ତିନିବର୍ଷ ଚାରିମାସ ପରେ ଓ ଜାପାନରେ ଯୁଦ୍ଧ ଲାଗିବାର ବର୍ଷକ ପରେ ଏକ ଖାଦ୍ୟ ବିଭାଗ ଖୋଲିଥିଲେ । ତଥାପି ଏକଥା ସମସ୍ତେ ଜାଣିଥିଲେ ଯେ ଜାପାନ ବର୍ମା ଦଖଲ କରିନେଲା ପରେ ବର୍ମାରୁ ବଙ୍ଗ ପ୍ରଦେଶକୁ ଖାଦ୍ୟଯୋଗାଣ ବନ୍ଦ ହୋଇଗଲା । ଖ୍ରୀ: ୧୯୪୩ର ଅଧାଅଧି ବେଳକୁ ଦୁର୍ଭିକ୍ଷର ଉପସ୍ଥିତି ଯେବେ ଅନୁଭୂତ ହେବାକୁ ଲାଗିଲାଣି, ଖାଦ୍ୟ ସଂକ୍ରାନ୍ତରେ ଭାରତ ସରକାରଙ୍କ କୌଣସି ନୀତି ପ୍ରସ୍ତୁତ ନଥିଲା । ତାଙ୍କର ଶାସନକୁ ମାନିବାକୁ ପ୍ରସ୍ତୁତ ନଥିବା ଲୋକଙ୍କୁ ଦମନ କରିବା ବ୍ୟତୀତ ଅନ୍ୟସବୁ ବିଷୟରେ ସରକାର

ସର୍ବଦା କିଭଳି ଏତେ ଅପାରଗତା ପ୍ରକାଶ କରିଥାନ୍ତି, ଭାବିଲେ ଆଚମ୍ବିତ ଲାଗେ; କିନ୍ତୁ ଏପରି କହିଲେ ହୁଏତ ଆହୁରି ଠିକ୍ ହେବ ଯେ, ଯେପରି ଭାବରେ ଏ ସରକାର ଗଠିତ, ତାଙ୍କର ମନଧ୍ୟାନ ସମ୍ପୂର୍ଣ୍ଣ ଭାବରେ ଯେଉଁ ପ୍ରାଥମିକ କର୍ତ୍ତବ୍ୟରେ ନିବଦ୍ଧ ଥିଲା, ତାହା ହେଉଛି ନିଜର ଧାରାବାହିକତା ଅକ୍ଷୁଣ୍ଣ ରଖିବା । କୌଣସି ସଙ୍କଟ କେବଳ ଅନ୍ୟାନ୍ୟ ବିଷୟରେ ମନଦେବା ପାଇଁ ଏ ସରକାରଙ୍କୁ ବାଧ୍ୟ କରିଥାଏ । ସେହି ସଙ୍କଟ ପୁଣି ସରକାରଙ୍କ ଯୋଗ୍ୟତା ଓ ପାରଗତା ଉପରେ ବିଶ୍ୱାସର ଅଭାବ ହେତୁରୁ ଖୁବ୍ ବଡ଼ ଓ ସ୍ପଷ୍ଟ ହୋଇ ଉଠିଥାଏ । (୧)

---

(୧) ସାର୍ ଜନ୍ ଉଡ୍‌ହେଡ୍‌ଙ୍କ ଅଧ୍ୟକ୍ଷତାରେ ଗଠିତ 'ଫେମିନ୍ ଇନକ୍ୱାଇରି କମିସନ' ସଂଯତ ସରକାରୀ ଭାଷାରେ ବଙ୍ଗଳାର ଦୁର୍ଭିକ୍ଷ ସଂକ୍ରାନ୍ତରେ ସରକାରୀ ଅବହେଳା ଓ ବେସରକାରୀ ଲାଳସାର ଏକ ଚିତ୍ର ପ୍ରକାଶ କରିଛନ୍ତି । କମିଶନଙ୍କ ରିପୋର୍ଟ ମଇ, ୧୯୪୫ରେ ପ୍ରକାଶ ପାଇଲା । କମିଶନ କହିଛନ୍ତି, "ବଙ୍ଗଳା ଦୁର୍ଭିକ୍ଷର ନାନା କାରଣ ଓ ଫଳ ସମ୍ପର୍କରେ ଅନୁସନ୍ଧାନ କରିବା ଆମ ପକ୍ଷରେ ପ୍ରୀତିକର ହୋଇନି । ବଡ଼ ଦୁଃଖଦାୟକ ଏ କାର୍ଯ୍ୟ । ଏକ ଗଭୀର ବିପର୍ଯ୍ୟୟବୋଧ ଆମକୁ ସର୍ବଦା ଆଚ୍ଛନ୍ନ କରିଛି ଯେଉଁ ପରିସ୍ଥିତି ପାଇଁ ସେମାନେ ମୋଟେ ଦାୟୀ ନୁହନ୍ତି, ବଙ୍ଗଳାର ପନ୍ଦର ଲକ୍ଷ ଲୋକ ତାର ଶିକାର ହେଲେ । ସମାଜ, ତାର ସମସ୍ତ ସଙ୍ଗଠନ ସତ୍ତ୍ୱେ, ଅପେକ୍ଷାକୃତ ଦୁର୍ବଳ, ତାର ସଭ୍ୟମାନଙ୍କୁ ରକ୍ଷାକରିବା ପାଇଁ ସକ୍ଷମ ହେଲାନି । ପ୍ରକୃତ ପକ୍ଷେ, ଏ ଦୁର୍ଦ୍ଦୈବ ଫଳରେ ସାମାଜିକ ଓ ନୈତିକ କେବଳ ନୁହେଁ, ପ୍ରଶାସନିକ ବଳ ଭାଙ୍ଗିପଡ଼ିଲା ।' ପ୍ରଦେଶର ଦୟନୀୟ ଅର୍ଥନୈତିକ ସ୍ତର; କୌଣସି ଗୁରୁତର ଅର୍ଥନୈତିକ ଚାପ ସମ୍ଭାଳିବା ଲାଗି ଅସମର୍ଥ, ବହୁସଂଖ୍ୟକ ଲୋକଙ୍କ ଭରଣପୋଷଣର କ୍ଷୀଣ ଅବଲମ୍ବନ; ପୁଷ୍ଟିହୀନ ଖାଦ୍ୟ ଓ ଅସ୍ୱାସ୍ଥ୍ୟକର ଅବସ୍ଥା; ସ୍ୱାସ୍ଥ୍ୟ ଓ ସମ୍ପଦ ସଂକ୍ରାନ୍ତରେ 'ନିରାପତ୍ତା ସୀମା'ର ଅଭାବ ବିଷୟରେ କମିଶନ ଉଲ୍ଲେଖ କରିଚନ୍ତି । ସେମାନଙ୍କ ବିବେଚନାରେ ଏ ଦୁର୍ଭିକ୍ଷର ଆଶୁ କାରଣମାନ ହେଉଛି . ସେ ପର୍ଯ୍ୟାୟର ଫସଲ ହାନି; ବର୍ମାର ପତନ ସଙ୍ଗେ ବର୍ମା ଚାଉଳ ଆମଦାନି ବନ୍ଦ; ସରକାରଙ୍କ 'ନେତି' ନୀତି ଯାହା ଗରିବ ଶ୍ରେଣୀ ଲୋକଙ୍କ ସର୍ବନାଶ ବିଧାନ କଲା; ଖାଦ୍ୟଦ୍ରବ୍ୟ ଓ ପରିବହନ ଉପରେ ସାମରିକ ଯୁଦ୍ଧଦାର ଚାପ ଏବଂ ସର୍ବୋପରି ସରକାରଙ୍କ ଉପରେ ବିଶ୍ୱାସର ଅଭାବ । ଭାରତ ସରକାର ଓ ବଙ୍ଗ ସରକାର ଉଭୟଙ୍କର ନୀତି, ବହୁଧା ନୀତିର ଅଭାବ କିମ୍ବା ଘନଘନ ପରିବର୍ତ୍ତିତ ନୀତିପ୍ରତି ସେମାନଙ୍କ ସ୍ପଷ୍ଟ ଭାଷାରେ ନିନ୍ଦା କରିଛନ୍ତି । ଉଭୟ ସରକାର ଆଗରୁ ବୁଦ୍ଧି କାର୍ଯ୍ୟ କରିବାରେ କିପରି ଅସମର୍ଥ ହୋଇଛନ୍ତି, ଦୁର୍ଭିକ୍ଷ ପଡ଼ିଲା ପରେ ମଧ୍ୟ କିପରି ଦେଖି ନ ଦେଖିଲା ଭଳି ବ୍ୟବହାର କରିଛନ୍ତି ଏବଂ ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ବିହିତ ବ୍ୟବସ୍ଥା କରିବାରେ କିପରି ଅପାରଗ

ଯୁଦ୍ଧ ପରିସ୍ଥିତି ହେତୁରୁ ଯେହେତୁ ଏ ଦୁର୍ଭିକ୍ଷ ଦେଖାଦେଲା ଓ ତାହା ଉତ୍ପୃତ କରାଯାଇ ପାରିଥାନ୍ତା, ଏକଥା ନିଶ୍ଚିତ ଯେ ତାର ଗଭୀରରେ ଯେଉଁସବୁ କାରଣ ରହିଥିଲା ତାହା ହେଉଚି ଭାରତକୁ ନିଃସ୍ୱ କରିବାର ମୌଳିକ ନୀତି, ଯାହାର ଫଳରେ ଲକ୍ଷ ଲକ୍ଷ ଲୋକ ଅନାହାର ଓ ସାନ୍ତ୍ୱନା-ମାତ୍ର ଆହାରରେ କାଳାତିପାତ କରିଥାନ୍ତି । ଖ୍ରୀ: ୧୯୩୩ରେ ଇଣ୍ଡିଅନ୍ ମେଡ଼ିକାଲ୍ ସର୍ଭିସ୍‌ରେ ଡାଇରେକ୍ଟର୍ ଜେନେରାଲ୍, ମେଜର୍ ଜେନେରାଲ୍ ସାର୍ ଜନ୍ ମେଗା ଭାରତର ସର୍ବସାଧାରଣ ସ୍ୱାସ୍ଥ୍ୟ ପରିସ୍ଥିତି ଉପରେ ପ୍ରସ୍ତୁତ ଏକ ରିପୋର୍ଟରେ ଲେଖିଚନ୍ତି : "ସମଗ୍ର ଦେଶକୁ ନେଇ ଦେଖିଲେ, ସରକାରୀ ହାସ୍‌ପାତାଲ୍ ଡାକ୍ତରମାନଙ୍କ ହିସାବରୁ ଜଣାଯାଏ : ୩୯% ଲୋକ ପୁଷ୍ଟିକର ଖାଦ୍ୟ ଖାଆନ୍ତି; ୪୧% ଲୋକଙ୍କର ଖାଦ୍ୟର ପୁଷ୍ଟି ଅଂଶ ତା'ଠାରୁ କମ୍; ଅବଶିଷ୍ଟ ୨୦% ଲୋକଙ୍କ ଖାଦ୍ୟରେ ପୁଷ୍ଟି ପରିମାଣ ନଗଣ୍ୟ; କିନ୍ତୁ ସର୍ବାପେକ୍ଷା ହତାଶକର ଚିତ୍ର ଦିଅନ୍ତି ବଙ୍ଗଳାର ଡାକ୍ତରମାନେ । ସେମାନେ ମନେ କରନ୍ତି ଯେ ୨୨% ଲୋକ ବେଶ୍ ପୁଷ୍ଟିବାନ୍ ଆଉ ୩୧% ଲୋକଙ୍କ ଖାଦ୍ୟରେ ପୁଷ୍ଟି ଅଂଶ ନଗଣ୍ୟ ।"

---

ହୋଇଚନ୍ତି—ସେ ବିଷୟ ମଧ୍ୟ କମିଶନ ରିପୋର୍ଟରେ ସ୍ପଷ୍ଟ କରି ଦେଇଚନ୍ତି । ସେମାନେ ଆହୁରି କହିଚନ୍ତି : "କିନ୍ତୁ, ବହୁଧା ସବୁ ଅବସ୍ଥା ବିଚାରକୁ ନେଇ, ଆମେ ଏ ସିଦ୍ଧାନ୍ତରେ ଉପନୀତ ହେବାପାଇଁ ବାଧ୍ୟ ହେଉଚୁ ଯେ ସାହସିକ, ସଙ୍କଳ୍ପବଦ୍ଧ ତଥା ସୁପରିକଳ୍ପିତ ବ୍ୟବସ୍ଥା ଯଥା ସମୟରେ ଗ୍ରହଣ କରି ଏ କରାଳ ଦୁର୍ଭିକ୍ଷକୁ ବହୁ ପରିମାଣରେ ନିବାରଣ କରିବା ଶକ୍ତି ବଙ୍ଗ ସରକାରଙ୍କର ଥିଲା । ଭାରତ ସରକାର ମଧ୍ୟ ଯୋଜନା କରି ଖାଦ୍ୟଦ୍ରବ୍ୟ ସରବରାହ କରିବାର ଆବଶ୍ୟକତା ଉପଯୁକ୍ତ ସମୟରେ ଉପଲବ୍ଧି କରିପାରି ନାହାନ୍ତି ।...୧୯୪୩ ମାର୍ଚ୍ଚ ମାସରେ ବଙ୍ଗ ସରକାର ଖାଦ୍ୟଦ୍ରବ୍ୟ ଉପରୁ କଣ୍ଟ୍ରୋଲ ଉଠାଇ ଦେବାପାଇଁ ଯେଉଁ ସିଦ୍ଧାନ୍ତ ଗ୍ରହଣ କଲେ ସେ ଦାୟିତ୍ୱ ଆଂଶିକ ଭାବରେ ଗ୍ରହଣ କରିବା ଲାଗି ଭାରତ ସରକାର ବାଧ୍ୟ । ପରେ ପରେ, ଭାରତର ଏକ ବୃହତ୍ତର ଅଂଶରେ ଅବାଧ ଖାଦ୍ୟ ଚଳାଚଳ ବ୍ୟବସ୍ଥା ପ୍ରବର୍ତ୍ତନ କରିବା ଉଦ୍ଦେଶ୍ୟରେ ଭାରତ ସରକାର ଯେଉଁ ପ୍ରସ୍ତାବ ଦେଲେ, ସେଥିରେ କୌଣସି ଯଥାର୍ଥତା ନଥିଲା ଏବଂ ସେପରି କରିବା ବି ଉଚିତ ନଥିଲା । ବହୁ ପ୍ରଦେଶ ଓ ଦେଶୀୟ ରାଜ୍ୟ ସେ ପ୍ରସ୍ତାବର ପ୍ରୟୋଗ ପ୍ରତିରୋଧ କରିନଥିଲେ ଭାରତର ବିଭିନ୍ନ ଅଞ୍ଚଳର ଅବସ୍ଥା ଆହୁରି ଗୁରୁତର ହୋଇଉଠିଥାଆନ୍ତା ।" କେନ୍ଦ୍ରରେ ଓ ପ୍ରଦେଶରେ ସରକାରୀ କଳର ଉଦାସୀନତା ଓ ଅବ୍ୟବସ୍ଥା ବିଷୟରେ ଉଲ୍ଲେଖ କରି କମିଶନ କହିଛନ୍ତି ଯେ "ବଙ୍ଗଳାର ଜନ-ସାଧାରଣ କମ୍ପା ସେଥିର ଏକ ଅଂଶ ଅନ୍ତତଃପକ୍ଷେ ଦୋଷରୁ ମୁକ୍ତ ହୋଇ ନ ପାରନ୍ତି । କଣ୍ଟ୍ରୋଲ ଉଠିଯିବା ଫଳରେ ଭୟ ଓ ଅର୍ଥଲାଳସାର ଯେଉଁ ବାୟୁମଣ୍ଡଳ ସୃଷ୍ଟି ହେଲା ଆଜ ଯାହା ଦରଦାମ୍ ବୃଦ୍ଧିର ଅନ୍ୟତମ କାରଣ, ସେ ବିଷୟରେ ଆମେ

ବଙ୍ଗଳାର ଦୁର୍ଦ୍ଦଶା ଏବଂ ଓଡ଼ିଶା, ମାଲବାର ଓ ଅନ୍ୟାନ୍ୟ ସ୍ଥାନରେ ଦୁର୍ଭିକ୍ଷ ଭାରତରେ ବ୍ରିଟିଶ ଶାସନ ଉପରେ ଅନ୍ତିମ ବିଚାର ସ୍ୱରୂପ । ଇଂରେଜମାନେ ନିଶ୍ଚିତ ଭାବରେ ଭାରତ ଛାଡ଼ିବେ ଏବଂ ସେମାନଙ୍କର ଭାରତୀୟ ସାମ୍ରାଜ୍ୟ ଗୋଟାଏ ସ୍ମୃତି ହୋଇ କେବଳ ରହିଯିବ; କିନ୍ତୁ ଯିବାବେଳେ ମାନବିକ ଅଧଃପତନ ଓ ପୁଞ୍ଜିତ ଦୁଃଖ ଛଡ଼ା ସେମାନେ କ'ଣ ଆଉ ଛାଡ଼ିଯିବେ ? ତିନିବର୍ଷ ତଳେ ମୃତ୍ୟୁଶଯ୍ୟାରେ ରବୀନ୍ଦ୍ରନାଥ ଠାକୁର ଯେ ଚିତ୍ର ଦେଖି ପାରିଥିଲେ : "କିନ୍ତୁ କି ପ୍ରକାର ଭାରତ ସେମାନେ ପଛରେ ଛାଡ଼ିଯିବେ, କି ଦାରୁଣ ଦୁଃଖଭରା ? ପରିଶେଷରେ ଯେବେ ସେମାନଙ୍କର ଶତାଧିକ ବର୍ଷ ପୁରାତନ ପ୍ରଶାସନର ପ୍ରବାହ ଶୁଷ୍କ ହେବ, କର୍ଦ୍ଦମ ଓ ଆବର୍ଜନାର କି ବିଶାଳ ଏକ ବିସ୍ତୃତି ସେମାନେ ପଛରେ ଛାଡ଼ି ନ ଯିବେ !"

## ୭. ଭାରତର ଗତିଶୀଳ ସାମର୍ଥ୍ୟ

ଦୁର୍ଭିକ୍ଷ ଓ ଯୁଦ୍ଧ ସତ୍ତ୍ୱେ, ସହଜାତ ବସ୍ତୁ ବିରୋଧାଭାସରେ ପୂର୍ଣ୍ଣ ଏବଂ ଏପରିକି ସେହି ବିରୋଧାଭାସ ଓ ତାର ପରିଣତି ବସ୍ତୁ ଦୁର୍ଦ୍ଦୈବରେ ଉପଜୀବିକାର ସନ୍ଧାନ ଧରି, ଜୀବନର ପ୍ରବାହ ନିରବଚ୍ଛିନ୍ନ ଭାବରେ ବହି ଚାଲିଛି । ପ୍ରକୃତି ନିଜକୁ ନୂତନ କରିବାକୁ ଯାଇ ଗତ କାଳର ଯୁଦ୍ଧକ୍ଷେତ୍ରକୁ ସବୁଜ ଦୁବ ଓ ପୁଷ୍ପ ସମ୍ଭାରରେ ଆଚ୍ଛାଦିତ କରେ ଏବଂ ମଣିଷ ଦେହରୁ କ୍ଷରିତ ରକ୍ତ ମାଟିକୁ ଖାଦ୍ୟ ଦେଇ ନୂତନ ଏକ ଜୀବନକୁ ଶକ୍ତି ଓ ସୌନ୍ଦର୍ଯ୍ୟରେ ପୂର୍ଣ୍ଣ କରେ । ମଣିଷ, ତାର ସ୍ମୃତି ଧାରଣର ଅଦ୍ୱିତୀୟ ଗୁଣ ଯୋଗ, ଘଟଣାବହୁଳ କୋଳାହଳମୁଖର ଅତୀତରେ ରହି ନିତ୍ୟ ନୂତନ ଦୁନିଆଁ ସଙ୍ଗେ କଦାଚିତ୍ ଯୋଗ ଦେଇ ପାରିଥାଏ ଏବଂ ଆମେ ଜାଣିପାରିବା ପୂର୍ବରୁ ସେହି ଇହ ଅତୀତ ଭିତରକୁ ଖସିଯାଇଥାଏ । ଗତକାଲିର ସନ୍ତାନ ଆଜି ନିଜ ସନ୍ତାନ ଆସନ୍ତାକାଲିକୁ ତାର ଆସନ ଦେଇଥାଏ ପକ୍ଷଯୁକ୍ତ ବିଜୟର ପରିସମାପ୍ତି ଘଟେ ରକ୍ତ ଓ କ୍ଲେଦର ବିଶ୍ରାମଧାରେ; ଏବଂ ପ୍ରତୀୟମାନ ପରାଜୟର

ପୂର୍ବରୁ ଉଲ୍ଲେଖ କରିଛି । ଏ ଦୁର୍ଦ୍ଦୈବରୁ ପ୍ରଚୁର ଲାଭ ଉଠାଗଲା ଏବଂ ସେ ସମୟରେ କେତେ ଲୋକ ଲାଭବାନ୍ ହେବା ଅର୍ଥ ଅନ୍ୟମାନଙ୍କୁ ମରଣ ମୁହଁକୁ ଠେଲିଦେବା । ଦଳେ ଲୋକ ପ୍ରାଚୁର୍ଯ୍ୟ ଭିତରେ ଶ୍ୱାସରୁଦ୍ଧ ହେଉଥିଲାବେଳେ ବହୁ ସଂଖ୍ୟକ ଲୋକ ଅନାହାରରେ ମୃତ୍ୟୁର ପ୍ରତୀକ୍ଷା କରୁଥିଲେ । ସେମାନଙ୍କ ଉପରେ ଥରେ ସହାନୁଭୂତିର ଦୃଷ୍ଟି ବୁଲାଇବାର ଅବକାଶ କାହାର ନ ଥିଲା । ସମାଜର କେତେକ ଶ୍ରେଣୀରେ ତଥା ସମଗ୍ର ପ୍ରଦେଶରେ ଦୁର୍ନୀତି ବ୍ୟାପିଯାଇଥିଲା । ଅନାହାର ଓ ମୃତ୍ୟୁର ଏହି କାରବାରରୁ ଉଠିଥିବା ଲାଭର ପରିମାଣ ୧୫୦ କୋଟି ଟଙ୍କା ବୋଲି ଅନୁମାନ କରାଯାଉଛି । ଏପରି ଭାବରେ, ଦୁର୍ଭିକ୍ଷରେ ଯଦି ପନ୍ଦର ଲକ୍ଷ ଲୋକ ମରିଥାନ୍ତି, ତାହାହେଲେ ମୁଣ୍ଡପିଚ୍ଛା ହଜାରେ ଟଙ୍କା ଅଧିକ ଲାଭ ହେଲା !

ପ୍ରବଳ ପରୀକ୍ଷା ଭିତରୁ ନୂତନ ବଳ ଓ ପ୍ରଶସ୍ତ ଦର୍ଶନଶକ୍ତି ଘେନି ଏକ ନୂତନ ଚେତନା ଜନ୍ମଲାଭ କରେ । ହୀନତେଜ ବ୍ୟକ୍ତି ଆତ୍ମସମର୍ପଣ କରେ ଓ ତାକୁ ବର୍ଜନ କରାଯାଇଥାଏ; କିନ୍ତୁ ଅନ୍ୟମାନେ ସେହି ମଶାଲ ଆଗକୁ ନେଇ ଚାଲନ୍ତି ଏବଂ ଆଗାମୀ କାଲର ବୈଜନ୍ତିକ ହାତରେ ସମର୍ପଣ କରନ୍ତି ।

ଭାରତରେ ବିବିଧ ସମସ୍ୟା ଉପରେ, ଦେଶ ଉପରେ ଝୁଲି ରହିଥିବା ଅଭିଭୂତକର ଦୁର୍ଦ୍ଦୈବ ଉପରେ ଜରୁରୀ ଦୃଷ୍ଟି ଅର୍ପଣ କରିବାର ଉତ୍କଟ ଆବଶ୍ୟକତାବୋଧ ଦୁର୍ଭିକ୍ଷ କେତେକାଂଶରେ ସୃଷ୍ଟି କରିପାରିଲା । ଇଂଲଣ୍ଡରେ ଲୋକେ ଏ ବିଷୟରେ କ'ଣ ମନେ କରୁଥିଲେ, ମୁଁ ଜାଣେନି । କିନ୍ତୁ ସେମାନଙ୍କ ଭିତରୁ କେତେ ନିଜ ନିଜ ଢଙ୍ଗରେ ଭାରତ ଓ ତାର ଜନସାଧାରଣଙ୍କ ଉପରେ ଦୋଷ ଲଦୁଥିଲେ । ସମଗ୍ର ଦେଶ ଅଭାବର ଗୋଟାଏ ପ୍ରତୀକ ହୋଇ ଉଠିଥିଲା : ଖାଦ୍ୟାଭାବ, ଡାକ୍ତର ଅଭାବ, ପରିଚ୍ଛନ୍ନତା ଓ ଚିକିତ୍ସା ସରଞ୍ଜାମ ଅଭାବ, ପରିବହନ ଅଭାବ—ସବୁ କିଛିର ଅଭାବ କେବଳ ମଣିଷକୁ ଗ୍ରୁଡ଼ିଦେଲେ । କାରଣ ଜନସଂଖ୍ୟା ବୃଦ୍ଧି ପାଇଥିଲା ଓ ବୃଦ୍ଧି ପାଉଥିବା ଭଳି ଜଣାଯାଉଥିଲା । ଗୋଟାଏ ଅଦୂରଦର୍ଶୀ ଜାତିର ଏହି ଅପରିମିତ ଜନସଂଖ୍ୟା କୌଣସି ସୂଚନା ଅଥବା ସତର୍କତାସୂଚକ ବିଜ୍ଞପ୍ତି ନଦେଇ ଯେପରି ଭାରତରେ ବଢ଼ୁଥିଲା ଏବଂ ସମସ୍ତ ଯୋଜନାକୁ କିମ୍ବା ଗୋଟାଏ ହିତୈଷୀ ସରକାରଙ୍କ ପରିକଳ୍ପନାବିହୀନତାକୁ ଯେପରି ଭାବରେ ବିଭ୍ରାନ୍ତ କରୁଥିଲା, ଦୋଷ ତାର ଉପରେ ପଡ଼ିବାର କଥା । ଅତଏବ, ଅର୍ଥନୈତିକ ସମସ୍ୟାମାନ ଅଗ୍ରନକ ଏକ ନୂତନ ମହତ୍ତ୍ୱ ଲାଭକଲା ଏବଂ ଆମକୁ କୁହାଗଲା ଯେ ରାଜନୀତି ଓ ରାଜନୈତିକ ସମସ୍ୟାନଙ୍କୁ ଏଥିରୁ ଅଲଗା କରି ରଖିବାକୁ ପଡ଼ିବ—ସତେ ଯେପରି ସାମୟିକ ବଡ଼ ବଡ଼ ସମସ୍ୟାର ସମାଧାନ କରି ନ ପାରିଲେ ରାଜନୀତିର କିଛି ମୂଲ୍ୟ ରହିନ୍ତା । ବିଶ୍ୱରେ ଅବାଧନୀତି ପରମ୍ପରାର ଅନୁଗାମୀଙ୍କ ଭିତରେ ଅନ୍ୟତମ, ଭାରତ ସରକାର ଯୋଜନା ସମ୍ପର୍କରେ କହିବା ଆରମ୍ଭ କଲେ; କିନ୍ତୁ ସଙ୍ଗଠିତ ଯୋଜନା ସମ୍ପର୍କରେ ତାଙ୍କର ତିଳେହେଲେ ଧାରଣା ନଥିଲା । ପ୍ରଚଳିତ ବ୍ୟବସ୍ଥା ଏବଂ ତାଙ୍କର ନିଜର ଓ ସେଥି ସଙ୍ଗେ ସମ୍ବନ୍ଧିତ ନ୍ୟସ୍ତସ୍ୱାର୍ଥର ସଂରକ୍ଷଣ ଦିଗରେ କେବଳ ସରକାର ଚିନ୍ତା କରିପାରୁଥିଲେ ।

ଭାରତରକ୍ଷା ଆଇନ ଓ ତାର ବହୁ ନିୟମର ଅସଂଖ୍ୟ ବାହୁ ଚତୁର୍ଦ୍ଦିଗରେ ପ୍ରସାରିତ ହୋଇ ରହିଥିବାରୁ ଭାରତର ଜନସାଧାରଣଙ୍କ ପ୍ରତିକ୍ରିୟା ସର୍ବସାଧାରଣରେ ଅଭିବ୍ୟକ୍ତି ଲାଭ କରି ପାରୁନଥିଲେ ସୁଦ୍ଧା ତାହା ଥିଲା ଅତି ଗଭୀର ଓ ତୀବ୍ରତର । ବଙ୍ଗଳାର ଅର୍ଥନୈତିକ ଗଠନ ସମ୍ପୂର୍ଣ୍ଣ ଭାବରେ ଭାଙ୍ଗି ପଡ଼ିଥିଲା ଏବଂ ଲକ୍ଷ ଲକ୍ଷ ଲୋକଙ୍କର ସର୍ବନାଶ ଘଟିଥିଲା । ଭାରତର ବହୁ ଅଂଶରେ ଯାହା ସବୁ ଘଟୁଥିଲା ବଙ୍ଗ ଥିଲା ତାର ଏକ ଚରମ ଦୃଷ୍ଟାନ୍ତ ଏବଂ ଯେପରି ଜଣାଯାଉଥିଲା, ସେହି ପୁରାତନ ଅର୍ଥନୀତିକୁ ଫେରିଯିବାର ଉପାୟ ଆଉ ନାହିଁ । ଏପରି କି ସେହିସବୁ ଶିଳ୍ପପତି ଯୁଦ୍ଧ କାଳରେ ଯେଉଁମାନେ ଖୁବ୍ ଭଲ ଭାବରେ ସମୃଦ୍ଧି କରିଥିଲେ ପରିସ୍ଥିତି ସେମାନଙ୍କୁ ସେମାନଙ୍କର ସଂକୀର୍ଣ୍ଣ ତଥା ସୀମିତ କ୍ଷେତ୍ର ବାହାରକୁ ଚାହିଁବାକୁ ବାଧ୍ୟକଲା । ନିଜସ୍ୱ ରୀତିରେ ସେମାନେ ବାସ୍ତବବାଦୀ ଯଦିଓ ଥିଲେ, କେତେକ ରାଜନୀତିଜ୍ଞଙ୍କର

ଆଦର୍ଶବାଦ ପ୍ରତି ସେମାନଙ୍କର ଭକ୍ତି ଥିଲା; କିନ୍ତୁ ସେହି ବାସ୍ତବବାଦ ସେମାନଙ୍କୁ ବହୁ ଦୂରପ୍ରସାରୀ ସିଦ୍ଧାନ୍ତ ଭିତରକୁ ଭିଡ଼ିନେଲା । ଟାଟା ଶିଳ୍ପ-ବିନ୍ୟାସ ସଙ୍ଗେ ମୁଖ୍ୟତଃ ସମ୍ପୃକ୍ତ, ବମ୍ବେର କେତେକ ଶିଳ୍ପପତି ଭାରତର ଉନ୍ନୟନ ଉଦ୍ଦେଶ୍ୟରେ ଏକ ପନ୍ଦରବର୍ଷିଆ ଯୋଜନା ପ୍ରସ୍ତୁତ କଲେ । ସେ ଯୋଜନା ଅଦ୍ୟାବଧି ଅସମ୍ପୂର୍ଣ୍ଣ ରହିଛି ଓ ସେଥିରେ ନାନା ଅଭାବର ଅଭାବ ନାହିଁ । ସ୍ୱାଭାବିକ ଭାବରେ ବୃହତ୍-ଶିଳ୍ପର ବିସ୍ତାର ପ୍ରଣାଳୀଦ୍ୱାରା ତାହା ନିୟନ୍ତ୍ରିତ ଏବଂ ଯେତେଦୂର ସମ୍ଭବ ବୈପ୍ଳବିକ ପରିବର୍ତ୍ତନ ନିରୋଧ କରିବା ତାର ଉଦ୍ଦେଶ୍ୟ ଓ ସେ ଦିଗରେ ତାହା ଉଦ୍ୟମଶୀଳ । ତଥାପି ଭାରତରେ ବହୁ ଘଟଣାର ଚାପ ପ୍ରଭାବ ସେମାନଙ୍କୁ ସେମାନଙ୍କର ଅଭ୍ୟସ୍ତ ବହୁତ କିଛି ଚିନ୍ତାର ଗଣ୍ଡି ମଧ୍ୟରୁ ବାହାର କରି ଖୁବ୍ ବଡ଼ ଭାବରେ ଚିନ୍ତା କରିବାକୁ ବାଧ୍ୟ କଲା । ଯୋଜନାର ପ୍ରଣେତାମାନେ ପସନ୍ଦ କରନ୍ତୁ କି ନ କରନ୍ତୁ, ବହୁ ବୈପ୍ଳବିକ ପରିବର୍ତ୍ତନର ଦିଗନିର୍ଦ୍ଦେଶ ସେଥିରେ ରହିଛି । ଯୋଜନାର ଏହି ପ୍ରଣେତାମାନଙ୍କ ଭିତରୁ କେହି କେହି ଜାତୀୟ ଯୋଜନା କମିଟିର ସଭ୍ୟ ଥିଲେ ଏବଂ ସେମାନେ କମିଟିର ପ୍ରସ୍ତୁତ କାର୍ଯ୍ୟକ୍ରମର କିଛି କିଛି ଅଂଶ ଏଥିରେ ରଖି ପାରିଛନ୍ତି । ଏଥିରେ ସନ୍ଦେହ ନାହିଁ ଯେ ଏହି ଯୋଜନାକୁ ନାନା ଭାବରେ ପରିବର୍ତ୍ତନ କରିବାକୁ ପଡ଼ିବ, ଅନେକ ବିଷୟ ସେଥିରେ ଭର୍ତ୍ତି କରିବାକୁ ପଡ଼ିବ ଏବଂ ନାନା ଭାବରେ ତାହା କାର୍ଯ୍ୟରେ ପରିଣତ କରିବାକୁ ପଡ଼ିବ; କିନ୍ତୁ ଦେଶର ରକ୍ଷଣଶୀଳ ମହଲର ଏ ଯୋଜନା ଯେହେତୁ ବାହାରି ପାରିଲା, ଭାରତର ଭବିଷ୍ୟତର ଯାତ୍ରା ନିମନ୍ତେ ଏହା ଏକ ଶୁଭସୂଚକ ତଥା ଉତ୍ସାହପ୍ରଦ ଚିହ୍ନ । ଏହାର ଭିତ୍ତି ଏକ ସ୍ୱାଧୀନ ଭାରତ ଏବଂ ଭାରତର ରାଜନୈତିକ ଓ ଅର୍ଥନୈତିକ ଏକତାରେ ନିହିତ । ଏଥିରେ ରକ୍ଷଣଶୀଳ ସାହୁକାରର ଧନ ସମ୍ପର୍କୀୟ ଦୃଷ୍ଟିଭଙ୍ଗୀ ପ୍ରାଧାନ୍ୟ ଲାଭ କରିବାର ସୁଯୋଗ ପାଇନି ଏବଂ ଏଥିରେ ଜୋର୍ ଦେଇ କୁହାଯାଇଛି ଯେ ଦେଶର ପ୍ରକୃତ ମୂଳଧନ ହେଉଛି ତାର ମଣିଷ ବଳ ଓ ବସ୍ତୁ ବଳର ସମ୍ବଳ । ଏହି ଯୋଜନା ହେଉ କିମ୍ବା ଅନ୍ୟ କେଉଁ ଯୋଜନା ହେଉ ତାର ସଫଳତା ଅନିବାର୍ଯ୍ୟ ଭାବରେ ନିର୍ଭର କରିବ କେବଳ ଉତ୍ପାଦନ ଉପରେ ନୁହେଁ, ବରଂ ସୁଷ୍ଠୁ ଜାତୀୟ ସମ୍ପଦର ସମୁଚିତ, ପକ୍ଷପାତଶୂନ୍ୟ ବଣ୍ଟନ ଉପରେ । ଆହୁରି ମଧ୍ୟ ଭୂସଂସ୍କାର ଏକ ମୌଳିକ ଆବଶ୍ୟକତା ଯାହା ସର୍ବାଦୌ ପୂରଣୀୟ ।

ଯୋଜନା ଓ ଗୋଟାଏ ଯୋଜନାକୃତ ସମାଜର ଧାରଣା, କମ୍ ବହୁତରେ, ବର୍ତ୍ତମାନ ସବୁ ମହଲରେ ଗୃହୀତ ହେଲାଣି; କିନ୍ତୁ ଯୋଜନା କରିଦେବା ମାତ୍ରେ ସେ ସୁଫଳ ନିଶ୍ଚିତ କରି ଦିଆଗଲା, ତା'ର କିଛି ଅର୍ଥ ନାହିଁ । ସବୁ କିଛି ନିର୍ଭର କରେ ଯୋଜନାର ଲକ୍ଷ୍ୟ ଉପରେ ଏବଂ ଯେଉଁମାନେ ତା'ର ଦାୟିତ୍ୱରେ ରହିବେ, ଆଉ କହିବା ବାହୁଲ୍ୟ ସେମାନଙ୍କ ପଛର ସରକାର ଉପରେ । ମୋଟାମୋଟି ଭାବରେ, ଜନସାଧାରଣଙ୍କ ସୁଖ, ସ୍ୱାଚ୍ଛନ୍ଦ୍ୟ ଓ ଅଗ୍ରଗତି—ସମସ୍ତଙ୍କ ନିମନ୍ତେ ସୁଯୋଗ ଉନ୍ମୁକ୍ତ କରିବା; ସହଯୋଗମୂଳକ ସଙ୍ଗଠନ ଓ କର୍ମର ଅଭିବୃଦ୍ଧି ଏବଂ ସର୍ବୋପରି ସ୍ୱାଧୀନତାର ବିକାଶ ନିଶ୍ଚିତ ଲକ୍ଷ୍ୟ ଭାବରେ ଏ ଯୋଜନାରେ ନିହିତ ଅଛି କି ? ଉତ୍ପାଦନ ବୃଦ୍ଧି ନିତାନ୍ତ ଆବଶ୍ୟକ, ସନ୍ଦେହ ନାହିଁ ।

କିନ୍ତୁ ସେତିକି କେବଳ ଆମକୁ ବହୁତ ଦୂରକୁ ନେଇ ଯାଇ ନପାରେ; ବରଂ ସେଥିଲାଗି ଆମର ଉପସ୍ଥିତ ଜଞ୍ଜାଳ ନାନା ଭାବରେ ବଢ଼ିଯାଇପାରେ । ପୂର୍ବରୁ ପ୍ରଚଳିତ ବହୁ ସ୍ୱାଧିକାର ଓ ନ୍ୟସ୍ତସ୍ୱାର୍ଥ ସଂରକ୍ଷଣର ଉଦ୍ୟମ ଯୋଜନା ମୂଳରେ କୁଠାରାଘାତ କରେ । ପ୍ରକୃତ ଯୋଜନାରେ ଏକଥା ସ୍ୱୀକୃତ ହେବା ଦରକାର ଯେ ମୋଟାମୋଟି ଭାବରେ ଗୋଟାଏ ଜାତିର ସୁଖସ୍ୱାଚ୍ଛନ୍ଦ୍ୟ ବୃଦ୍ଧି କରିବା ପ୍ରତି ଦୃଷ୍ଟି ରଖି ପ୍ରସ୍ତୁତ କାର୍ଯ୍ୟକ୍ରମରେ କୌଣସି ବିଶେଷ ଗୋଷ୍ଠୀ ଅବା ସଂପ୍ରଦାୟ ନିମନ୍ତେ ସ୍ୱତନ୍ତ୍ର ସ୍ୱାର୍ଥର ବ୍ୟବସ୍ଥା କରାଯାଇ ନପାରେ । ସେପରି କରିବା ଅର୍ଥ ଯୋଜନାର ଉଦ୍ଦେଶ୍ୟ ଓ ମହତ୍ତ୍ୱ କ୍ଷୁର୍ଣ୍ଣ କରିବା । ପ୍ରଦେଶର କଂଗ୍ରେସ ସରକାରମାନେ ଉନ୍ନୟନମୂଳକ କାର୍ଯ୍ୟରେ ସବୁ ଦିଗରୁ ବାଧାପ୍ରାପ୍ତ ଓ ସୀମାବଦ୍ଧ ହେବାର ପ୍ରଧାନ କାରଣ ଥିଲା ସଂସଦୀୟ ସମ୍ବିଧି, ଯେଉଁଥିରେ ଗୋଟିଏ ମୌଳିକ ଅଙ୍ଗୀକାର ରଖିଦିଆଯାଇଥିଲା ଯେ ଅଧିକାଂଶ ନ୍ୟସ୍ତସ୍ୱାର୍ଥ ଉପରେ ସେମାନେ ହାତ ଦେଇ ପାରିବେ ନାହିଁ । ଭୂସଂସ୍କାର ଦିଗରେ ସେମାନଙ୍କର ପରିକଳ୍ପିତ ଉଦ୍ୟମ ଏବଂ କୃଷି ଆୟ ଉପରେ କର ଧାର୍ଯ୍ୟ କରିବା ବ୍ୟବସ୍ଥାର ବୈଧତା ସମ୍ପର୍କରେ ପ୍ରଶ୍ନ କରି ନ୍ୟସ୍ତସ୍ୱାର୍ଥ ଲୋକେ ଆଇନ ଅଦାଲତର ଆଶ୍ରୟ ନେଇଥିଲେ ।

ଯୋଜନା ଯଦି ବହୁ ପରିମାଣରେ ବଡ଼ ବଡ଼ ଶିଳ୍ପପତିଙ୍କ ନିୟନ୍ତ୍ରଣରେ ରହେ, ତାହାହେଲେ ସ୍ୱାଭାବିକ ଭାବରେ ସେହି ଯୋଜନା ସେମାନଙ୍କର ଅଭ୍ୟସ୍ତ ପ୍ରଣାଳୀର ସୀମା ଭିତରେ ଆବଦ୍ଧ ରହିଯିବ ଏବଂ ସାରତଃ ତାର ଭିତ୍ତି ହୋଇଯିବ ଗୋଟାଏ ଆହରଣଶୀଳ ସମାଜର ଲାଭ ଅଭିପ୍ରାୟ । ସେମାନଙ୍କର ଯେତେ ସଦୁଦ୍ଦେଶ୍ୟ ଥାଉନା କାହିଁକି, କେତେକଙ୍କର ନିଶ୍ଚିତ ଭାବରେ ଅଛି, ନୂତନ ଧାରାରେ ଚିନ୍ତା କରିବା ସେମାନଙ୍କ ପକ୍ଷରେ ସହଜ ନୁହେଁ । ରାଷ୍ଟ୍ରାୟତ୍ତ ଶିଳ୍ପ କଥା କହିଲାବେଳେ ମଧ୍ୟ ସେମାନଙ୍କ ମନରେ ଊଣା ଅଧିକରେ ଆଜିର ରାଷ୍ଟ୍ରର ଚିତ୍ର ହିଁ ରହିଥାଏ ।

ଆମକୁ ବେଳେବେଳେ କୁହାଯାଏ ଯେ ବର୍ତ୍ତମାନର ଭାରତ ସରକାର ରେଳବାଇ ଉପରେ ସ୍ୱତ୍ତ୍ୱ ଓ ନିୟନ୍ତ୍ରଣ ପ୍ରତିଷ୍ଠା କରି ଏବଂ ଶିଳ୍ପ ଓ ଅର୍ଥ, ପ୍ରକୃତରେ କହିବାକୁ ଗଲେ, ସାଧାରଣତଃ ଜୀବନ ଉପରେ ନିୟନ୍ତ୍ରଣ ଓ ହସ୍ତକ୍ଷେପ ବୃଦ୍ଧି କରି ସମାଜବାଦ ଦିଗରେ ଅଗ୍ରସର ହେଉଛନ୍ତି; କିନ୍ତୁ ଏହା ଯାହା ହେଉନା କାହିଁକି ଗଣତାନ୍ତ୍ରିକ ରାଷ୍ଟ୍ରର ନିୟନ୍ତ୍ରଣଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏହା ବ୍ୟତୀତ ଏହି ନିୟନ୍ତ୍ରଣ ସାରତଃ ବୈଦେଶିକ । ନିର୍ଦ୍ଦିଷ୍ଟ କେତେକ ପୁଞ୍ଜିବାଦୀ କାର୍ଯ୍ୟକ୍ରମ ଉପରେ ସୀମାବନ୍ଧନ ହୋଇଥିଲେ ସୁଦ୍ଧା ଏହି ବ୍ୟବସ୍ଥା ଭିତ୍ତି କରିଚି ସ୍ୱାଧିକାର ସଂରକ୍ଷଣ ଉପରେ । ପୂର୍ବରୁ ପ୍ରଭୁତ୍ୱପରାୟଣ ଔପନିବେଶିକ ବ୍ୟବସ୍ଥା, ଅର୍ଥନୈତିକ ସମସ୍ୟାମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ଉପେକ୍ଷା କରିଥିଲା । କେତେକ ଧରଣର ସ୍ୱତନ୍ତ୍ର ସ୍ୱାର୍ଥର ପ୍ରଶ୍ନ ବାଦ୍ ଦେଲେ ଅନ୍ୟାନ୍ୟ ଅର୍ଥନୈତିକ ବିଷୟରେ ତାର କିଛି କରିବାର ନଥିଲା । ବର୍ତ୍ତମାନ ସେହି ବ୍ୟବସ୍ଥା, ତାର ପୁରାତନ ଅବାଧ-ନୀତି ଉପାୟରେ ନୂତନ ପରିସ୍ଥିତିର ଆବଶ୍ୟକତା ପୂରଣ କରିବାପାଇଁ ଅସମର୍ଥ ହୋଇଥିବାରୁ ଏବଂ ତଥାପି ସୁଦ୍ଧା ତାର ପ୍ରଭୁତ୍ୱପରାୟଣ ଚରିତ୍ର ବଜାୟ ରଖିବା ପାଇଁ ବଦ୍ଧପରିକର ହୋଇଥିବାରୁ ଅନିବାର୍ଯ୍ୟ

ଭାବରେ ତାହା ଫାଶିଷ୍ଟ ବାଦର ଆଭିମୁଖ୍ୟ ଗ୍ରହଣ କରିଛି । ଫାଶିଷ୍ଟ ଉପାୟରେ ଏହା ଅର୍ଥନୈତିକ ଢାଞ୍ଚା ଉପରେ ନିୟନ୍ତ୍ରଣ ଜାରି କରିବାକୁ ଚାହେଁ, ଯତ୍ସାମାନ୍ୟ ନାଗରିକ ଅଧିକାର ଛଡ଼ାଇ ନେବାକୁ ଚାହେଁ ଏବଂ ନୂତନ ଅବସ୍ଥାକୁ ସୁହାଇବା ଭଳି ସାମାନ୍ୟ ପରିବର୍ତ୍ତନ କରି ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥା ଏବଂ ନିଜର ନିରଙ୍କୁଶ ଶାସନ-ପଦ୍ଧତି ବଜାୟ ରଖିବାକୁ ଚାହେଁ । ଏପରି ଭାବରେ, ଫାଶିଷ୍ଟ ଦେଶମାନଙ୍କ ଭଳି, ଶିଳ୍ପ ଓ ଜାତୀୟ ଜୀବନ ଉପରେ ଯଥେଷ୍ଟ ନିୟନ୍ତ୍ରଣ ଜାରି କରି, ପୁରାତନ ଭିତ୍ତି ଉପରେ ପ୍ରତିଷ୍ଠିତ ଅବାଧ ଉଦ୍ୟୋଗ ଉପରେ ସୀମାବନ୍ଧନ ପ୍ରୟୋଗ କରି ଗୋଟାଏ ଏକଛତ୍ରବାଦୀ ରାଷ୍ଟ୍ର ଗଢ଼ିବାର ପ୍ରୟାସ ଦେଖାଦେଇଛି । ଏଥିରେ ସମାଜବାଦର କିଛି ବୋଲିଲେ କିଛି ନାହିଁ । ପ୍ରକୃତ-ପକ୍ଷେ ଗୋଟାଏ ବିଦେଶୀ ଶକ୍ତିଦ୍ୱାରା ଶାସିତ ଏକ ଦେଶରେ ସମାଜବାଦ କଥା ଉଦ୍‌ଭଟ କଳ୍ପନା ମାତ୍ର । ତେବେ, ଅସ୍ଥାୟୀ ଭାବରେ ପଛେ ହେଉ, ଏପରି ଏକ ଉଦ୍ୟମ ସଫଳ ହେବ କି ନା ସନ୍ଦେହଜନକ; କାରଣ ଏହା ଚଳିତ ସମସ୍ୟାମାନଙ୍କୁ ଉଗ୍ର କରୁଛି କେବଳ; କିନ୍ତୁ ଯୁଦ୍ଧକାଳୀନ ଅବସ୍ଥା ନିଶ୍ଚିତ ଭାବରେ ତାକୁ ଏକ ଅନୁକୂଳ ପରିବେଷ୍ଟନୀ ଯୋଗାଇ ଦେଇଛି । ରାଜନୈତିକ ଗଣତନ୍ତ୍ର ବିନା ଶିଳ୍ପକ୍ଷେତ୍ରର ସମ୍ପୂର୍ଣ୍ଣ ଜାତୀୟକରଣ (ତଥାକଥିତ) ସୁଦ୍ଧା ଭିନ୍ନ ଏକପ୍ରକାର ଶୋଷଣ ନିମନ୍ତେ କେବଳ ପଥ ଉନ୍ମୁକ୍ତ କରିବ; କାରଣ ସେ ପରିସ୍ଥିତିରେ ଶିଳ୍ପକ୍ଷେତ୍ର ରାଷ୍ଟ୍ରୀୟ ସମ୍ପଦ ହେଲାବେଳେ ସରକାର ଲୋକଙ୍କର ହୋଇ ନଥିବ ।

ଆମର ଯେତେ ସବୁ ବଡ଼ ଅସୁବିଧା ଏଥିହେତୁରୁ ସୃଷ୍ଟି ହେଉଛି ଯେ ଅର୍ଥନୈତିକ, ସାମାଜିକ, ଔଦ୍ୟୋଗିକ, କାର୍ଷି, ସାମ୍ପ୍ରଦାୟିକ, ଦେଶୀୟ ରାଜ୍ୟ ଆଦି ଯେତେ ସବୁ ସମସ୍ୟା ଆମର ରହିଛି ସେ ସବୁର ବିବେଚନା ଆମେ କରିଥାଉଁ ପ୍ରଚଳିତ ଅବସ୍ଥାର ପରିସର ଭିତରେ । ସେହି ପରିସର ଭିତରେ ଯେତେ ସବୁ ସ୍ୱାଧିକାର ଓ ସ୍ୱତନ୍ତ୍ର ଆସନ, ଯାହା ସେହି ପରିସରର ଅଂଶବିଶେଷ, ରକ୍ଷାକରି ଆମ ସମସ୍ୟାଗୁଡ଼ିକର ସମାଧାନ କରିବା ଅସମ୍ଭବ ହୋଇ ଉଠୁଛି । ଅବସ୍ଥାର ଉପରେ ଯଦି କିଛି ସାମୟିକ ସମାଧାନ କରାଯାଇ ପାରୁଛି ତାହା ସ୍ଥାୟୀ ହେଉନାହିଁ ଏବଂ ହେବା ସମ୍ଭବ ବି ନୁହେଁ । ବହୁ ପୁରାତନ ସମସ୍ୟା ସଙ୍ଗେ ବହୁ ନୂତନ ସମସ୍ୟା କିମ୍ବା ପୁରାତନର ନୂତନ ବିଭବ ଆସି ମିଶୁଛି । ଆମର ଏହି ଆଭିମୁଖ୍ୟ ନିମନ୍ତେ ପରମ୍ପରା ଓ ପୁରାତନ ଅଭ୍ୟାସ ଆଂଶିକ ଭାବରେ ଦାୟୀ ହେଲେ ସୁଦ୍ଧା ସାରତଃ ଏହା ବ୍ରିଟିଶ ସରକାରଙ୍କ ଇସ୍ପାତ ଢାଞ୍ଚାର ପ୍ରତିଫଳ, ଯେଉଁ ଢାଞ୍ଚା ସେହି ଇମାରତକୁ କୌଣସି ପ୍ରକାରେ ସମ୍ଭାଳି ରଖିଛି ।

ଭାରତର ରାଜନୀତି, ଅର୍ଥନୀତି ଓ ସାମାଜିକ କ୍ଷେତ୍ରରେ ରହିଥିବା ବହୁ ବିରୋଧାଭାସ ଯୁଦ୍ଧ ଫଳରେ ସ୍ପଷ୍ଟ ହୋଇ ଉଠିଲା । ରାଜନୀତି ଦିଗରୁ ଦେଖିଲେ ଭାରତର ମୁକ୍ତି ଓ ସ୍ୱାଧୀନତା ନେଇ ବହୁତ କିଛି ଚର୍ଚ୍ଚା ଚାଲିଛି; କିନ୍ତୁ ଭାରତର ଲୋକେ ସେମାନଙ୍କର ଦୀର୍ଘ ଇତିହାସର କୌଣସି ପର୍ଯ୍ୟାୟରେ ହେଲେ ଆଜିର ଭଳି, ଯେଉଁ ଆଜିରୁ ଆସନ୍ତା କାଲି ଜନ୍ମ ନେବ ଓ ବଢ଼ିବ, ଏତେ ପ୍ରଭୁତ୍ୱପରାୟଣ ଶାସନ ଏବଂ ଏତେ ସୁଦୂରପ୍ରସାରୀ ତଥା ନିବିଡ଼

ନିର୍ଯାତନା ଭୋଗି ନଥିଲେ । ଅର୍ଥନୀତି ଦିଗରୁ ଦେଖିଲେ ମଧ୍ୟ ବ୍ରିଟିଶ ପ୍ରାଧିକାର ପ୍ରବଳ ରହିଛି । ତଥାପି ସୁଦ୍ଧା ଭାରତୀୟ ଅର୍ଥ-ବ୍ୟବସ୍ଥାର ପ୍ରସାରଣଶୀଳପ୍ରବଣତା ବନ୍ଧନରୁ ମୁକ୍ତ ହେବା ଲାଗି ବରାବର ପ୍ରୟାସ କରୁଛି । ଗୋଟାଏ ପକ୍ଷରେ ଦୁର୍ଭିକ୍ଷ ଓ ଦୁଃଖ-ଦୁର୍ଦ୍ଦଶାର ଗଭୀରତା ତଥା ବିସ୍ତୃତିର ଅନ୍ତ ନାହିଁ; ଅନ୍ୟ ଦିଗରେ ପୁଞ୍ଜି ପୁଞ୍ଜିତ ହେଉଛି । ଦରିଦ୍ରତା ଓ ସମ୍ପନ୍ନତା, କ୍ଷୟଶୀଳତା ଓ ବୃଦ୍ଧିପରାୟଣତା, ବିଭେଦପ୍ରବଣତା ଓ ଏକତା, ମୃତ ତଥା ନୂତନ ବିଚାରଧାରା ସବୁ କିଛି ପାର୍ଶ୍ୱବର୍ତ୍ତୀ ଭାବରେ ବିଦ୍ୟମାନ । ଏହିସବୁ ବିବ୍ରତକର ବାସ୍ତବତା ପଛରେ ରହିଛି ଗୋଟାଏ ଅନ୍ତର୍ନିହିତ ତଥା ଅଦମ୍ୟ ଜୀବନୀ ଶକ୍ତି ।

ବାହାରୁ ଦେଖିଲେ ଏହି ଯୁଦ୍ଧ ଭାରତର ଶୈଳ୍ପିକ ବିକାଶ ଓ ଉତ୍ପାଦନ ବୃଦ୍ଧିକୁ ଉତ୍ସାହିତ କରିଛି । ତଥାପି କେତେଦୂର ଏହା ନୂଆ ନୂଆ ଶିଳ୍ପ ସ୍ଥାପନ ନିମନ୍ତେ ବାଟ ଖୋଲିଛି କିମ୍ବା ପୁରାତନ ଶିଳ୍ପ-ସଂସ୍ଥାଗୁଡ଼ିକର ସଂପ୍ରସାରଣ ଏବଂ ଯୁଦ୍ଧର ଚାହିଦା ପୂରଣ ନିମନ୍ତେ ସେଗୁଡ଼ିକରେ ଅନ୍ୟ କିଛି ଉତ୍ପାଦନ କେବଳ ସମ୍ଭବ କରିଛି, ସନ୍ଦେହର କଥା । ଭାରତର ଯୁଦ୍ଧକାଳୀନ ଔଦ୍ୟୋଗିକ ତତ୍ପରତା, ସୂଚକର ଆପାତସ୍ଥିରତା ସୂଚିତ କରେ ଯେ କୌଣସି ମୌଳିକ ଅଗ୍ରଗତି ସାଧିତ ହୋଇନାହିଁ । ପ୍ରକୃତପକ୍ଷେ, ବିଶେଷଜ୍ଞମାନଙ୍କ ମତ ଯେ ଯୁଦ୍ଧ ଓ ଯୁଦ୍ଧକାଳୀନ ବ୍ରିଟିଶ ନୀତି ଭାରତର ଔଦ୍ୟୋଗିକ ଅଭିବୃଦ୍ଧିରେ ଅନ୍ତରାୟ ସୃଷ୍ଟି କଲା । ଟାଟା ପ୍ରତିଷ୍ଠାନର ଅନ୍ୟତମ ଡାଇରେକ୍ଟର ଏବଂ ଜଣେ ବିଖ୍ୟାତ ଅର୍ଥନୀତି-ବିଶାରଦ ଡକ୍ଟର ଜନ ମାଥାଇ ଅଳ୍ପ ଦିନ ତଳେ କହିଛନ୍ତି : "ସାଧାରଣତଃ ସମସ୍ତେ ମନେ କରିଥାନ୍ତି ଯେ ଯୁଦ୍ଧ ଭାରତର ଔଦ୍ୟୋଗିକ ଉନ୍ନୟନ ବିପୁଳ ଭାବରେ କ୍ଷିପ୍ରତର କଲା । ଏହା ସେପରି ଏକ ପ୍ରକଳ୍ପ ଯାହା ପ୍ରତିପାଦିତ କରିବା ପାଇଁ ବହୁତ କିଛି ଦରକାର କରିବ । ଏକଥା ଯଦିଓ ସତ୍ୟ ଯେ କେତେକ ପ୍ରତିଷ୍ଠିତ ଶିଳ୍ପ-ସଂସ୍ଥା ଯୁଦ୍ଧ ଚାହିଦା ପୂରଣ କରିବାକୁ ଯାଇ ସେମାନଙ୍କର ଉତ୍ପାଦନ ବୃଦ୍ଧି କରିଛନ୍ତି; କିନ୍ତୁ ଦେଶ ନିମନ୍ତେ ମୌଳିକ ଭାବରେ ଗୁରୁତ୍ୱପୂର୍ଣ୍ଣ ବହୁ ନୂତନ ଶିଳ୍ପ-ସଂସ୍ଥା, ଯେଉଁଗୁଡ଼ିକ ଯୁଦ୍ଧ ପୂର୍ବରୁ ଆରମ୍ଭ କରାଯାଇ ଥିଲା, ଯୁଦ୍ଧ ଅବସ୍ଥାର ଚାପରେ ଏକେ ପରିତ୍ୟକ୍ତ ହୋଇଛି କିମ୍ବା ସେଗୁଡ଼ିକର କାର୍ଯ୍ୟ ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ହୋଇନି । ମୋର ବ୍ୟକ୍ତିଗତ ମତ ହେଉଛି, ଏ ପରିସ୍ଥିତିରେ ବିବିଧ କାରଣ ପରୀକ୍ଷା କରି ଦେଖିଲେ ଜଣାଯିବ ଯେ କାନାଡ଼ା ଓ ଅଷ୍ଟ୍ରେଲିଆରେ ଔଦ୍ୟୋଗିକ ପ୍ରଗତି ନିମନ୍ତେ ଯୁଦ୍ଧ ଯେଉଳି ଭାବରେ ସହାୟକ ହେଲା, ଭାରତରେ ପ୍ରଗତି କ୍ଷିପ୍ରତର କରିବା ଦୂରେଥାଉ ବରଂ ପ୍ରଗତିର ଅନ୍ତରାୟ ହେଲା । ଏତିକି କିନ୍ତୁ ମୁଁ ମାନିପାରେ ଯେ ତାର ମୌଳିକ ଉତ୍ପାଦନ ଆବଶ୍ୟକତା ନିମନ୍ତେ ଯୋଗାଇବା ପାଇଁ ଭାରତର ପ୍ରଚୁର ପ୍ରଚ୍ଛନ୍ନ ଶକ୍ତି ସାମର୍ଥ୍ୟ ରହିଛି ।" ଔଦ୍ୟୋଗିକ ତତ୍ପରତା ସମ୍ପର୍କରେ ଯାହା ସବୁ ପରିସଂଖ୍ୟାନମୂଳକ ପ୍ରମାଣ ମିଳୁଛି ତାହା ଏହି ମତକୁ ସମର୍ଥନ କରେ ଏବଂ ସୂଚିତ କରେ ଯେ ଯୁଦ୍ଧ ପୂର୍ବେ ଯେଉଁ ହାରରେ ପ୍ରଗତି କରାଯାଇଥିଲା ତାହା ଯଦି ସେପରି ଭାବରେ ଚାଲୁ ରହିଥାନ୍ତା; ତାହାହେଲେ ନୂତନ ବହୁ ଶିଳ୍ପ ସ୍ଥାପନ ନିମନ୍ତେ ବାଟ ଖୋଲିଥାନ୍ତା କେବଳ ନୁହେଁ,

ମୋଟାମୋଟି ଭାବରେ ଉତ୍ପାଦନ ମଧ୍ୟ ବହୁତ ପରିମାଣରେ ବଢ଼ିଯାଇଥାନ୍ତା । (୧)

ନିଃସନ୍ଦେହରେ ଯୁଦ୍ଧ ଗୋଟିଏ ମାତ୍ର କଥା ପ୍ରଦର୍ଶିତ କରିପାରିଲା ଯେ ସୁଯୋଗ ପାଇଲେ ଏହି ପ୍ରଚ୍ଛନ୍ନ ଶକ୍ତିକୁ ଅତି ଶୀଘ୍ର ବାସ୍ତବ ଶକ୍ତିରେ ପରିଣତ କରିପାରିବାର ସାମର୍ଥ୍ୟ ଭାରତର ଅଛି । ଗୋଟାଏ ଅର୍ଥନୈତିକ ଏକକ ବା ୟୁନିଟ୍ ଭାବରେ କାର୍ଯ୍ୟ କରି ଯୁଦ୍ଧର ଏହି ପାଞ୍ଚବର୍ଷ ଭିତରେ ନାନାପ୍ରକାର ପ୍ରତିବନ୍ଧକ ସତ୍ତ୍ୱେ ଭାରତ ଅପର୍ଯ୍ୟାପ୍ତ ପୁଞ୍ଜି ପରିସମ୍ପଦ (କେପିଟାଲ ଏସେଟ୍ସ) ଜମାଇ ପାରିଲା । ଏହି ସବୁ ପରିସମ୍ପଦ 'ଷ୍ଟର୍ଲିଂ ସିକ୍ୟୁରିଟି' ବା ବ୍ରିଟିଶ ମୁଦ୍ରା ଆକାରରେ ଗଚ୍ଛିତ ଅଛି, ଯାହା ଭାରତକୁ ମିଳିପାରୁନି ଏବଂ ଯେପରି କୁହାଯାଉଛି, ଭବିଷ୍ୟତରେ ମିଳିବାର ବାଟ ମଧ୍ୟ ବନ୍ଦକରି ଦିଆଯିବ । ଏହିସବୁ ସିକ୍ୟୁରିଟି ବା ଋଣପତ୍ର ହେଉଛି ବ୍ରିଟିଶ ସରକାର ଓ ଆମେରିକା ପକ୍ଷରୁ ଭାରତ ସରକାର ବ୍ୟୟ କରିଥିବା ସଂପଦର ସଙ୍କେତ । ଆହୁରି ମଧ୍ୟ ଏହିସବୁ ଋଣପତ୍ର ଭାରତର କ୍ଷୁଧା, ଦୁର୍ଭିକ୍ଷ, ମହାମାରୀ, ପୌରୁଷହାନି, ଅକାଳବାର୍ଦ୍ଧକ୍ୟ, ଦୌର୍ବଲ୍ୟ ଏବଂ ଭାରତର କୋଟି କୋଟି ଲୋକଙ୍କ ଅନାହାର ଓ ରୋଗରେ ମୃତ୍ୟୁର ପ୍ରତୀକ ।

ପୁଞ୍ଜି ପରିସମ୍ପଦ ଜମିଉଠିବା ଫଳରେ ଭାରତ ଇଂଲଣ୍ଡକୁ ତାର ସମସ୍ତ ଋଣ ପରିଶୋଧ କରିବା ସଙ୍ଗେ ସଙ୍ଗେ ଏକ ପାଉଣାଦାର ଦେଶରେ ପରିଣତ ହୋଇଛି । ନିକୃଷ୍ଟ ଅବହେଳା ଓ ଚରମ ଅବ୍ୟବସ୍ଥା ଯୋଗୁଁ ଭାରତର ଲୋକେ ଅତିଶୟ ଦୁଃଖକଷ୍ଟ ଭୋଗ କରିଥିଲେ ସୁଦ୍ଧା, ଏକଥା ଆଉ ଅସ୍ୱୀକାର କରିହେବ ନାହିଁ ଯେ ଅଳ୍ପକାଳ ମଧ୍ୟରେ ଭାରତ ଏତେ ଧନ ଜମାଇପାରିଲା । ଯୁଦ୍ଧର ପାଞ୍ଚବର୍ଷ ଭିତରେ ଭାରତ ପ୍ରକୃତରେ ଯେତିକି ଖରଚ କରିଛି, ତାହା ଯୁଦ୍ଧ ପୂର୍ବବର୍ତ୍ତୀ ଶତାଧିକ ବର୍ଷ ଭିତରେ ଭାରତରେ ବ୍ରିଟିଶ ଖଟିଣି ମୂଳଧନର ସର୍ବମୋଟ ପରିମାଣ ଅପେକ୍ଷା ବହୁତ ବେଶି । ଏହି ତଥ୍ୟ ଆମର ଦୃଷ୍ଟି ସମ୍ମୁଖକୁ ଯେଉଁ

---

(୧) ଶ୍ରୀଯୁକ୍ତ ଜେ. ଆର୍. ଡି. ଟାଟା ୧୯୪୫ ମଇ ୩୦ ତାରିଖରେ ଲଣ୍ଡନରେ ତାଙ୍କର ଏକ ବକ୍ତୃତାରେ, ଯୁଦ୍ଧ ଭାରତକୁ ତାର ବିବିଧ ଶିଳ୍ପସଂସ୍ଥାର ସଂପ୍ରସାରଣରେ ଓ ତାର ଶିଳ୍ପ-ସାମର୍ଥ୍ୟ ବୃଦ୍ଧି କରିବାରେ ବସ୍ତୁତଃ କୌଣସି ଭାବରେ ହେଲେ ସାହାଯ୍ୟ କରି ନାହିଁ ବୋଲି କହିଛନ୍ତି : "ହଁ। ହଁ କେଉଁଠି, କେତେଟା ଶିଳ୍ପ-ସଂସ୍ଥାର ସଂପ୍ରସାରଣ ହୁଏତ ଘଟିଥିବ; କିନ୍ତୁ ମୋଟାମୋଟି ଭାବରେ ନେଲେ, ଅସ୍ତ୍ରଶସ୍ତ୍ର କାରଖାନା ଓ ଆଉ କେତେକ ବିଶେଷ ଧରଣର କାରଖାନା ବିଷୟ ବାଦ୍‌ଦେଲେ, କୌଣସି ପ୍ରଗତି ସାଧିତ ହୋଇନି । ଯୁଦ୍ଧ ହୋଇ ନଥିଲେ, ଗୁଡ଼ାଏ ନୂଆ କଳ-କାରଖାନା ସ୍ଥାପିତ ହୋଇଥାନ୍ତା । ବ୍ୟକ୍ତିଗତ ଅଭିଜ୍ଞତାରୁ ମୁଁ କହିପାରିବି ଯେ ଅନେକ ସେପରି ଯୋଜନା ଇଟା, ଲୁହା ଓ ଯନ୍ତ୍ରପାତି ସଂଗ୍ରହ କରିବା ସମ୍ଭବ ନ ହେବାରୁ ଛାଡ଼ିଦିଆଯାଇଛି । ଯେଉଁମାନେ ଯୁଦ୍ଧକାଳରେ ଭାରତର ଔଦ୍ୟୋଗିକ, ଅର୍ଥନୈତିକ ପ୍ରଗତି ବିଷୟରେ ଗପନ୍ତି ସେମାନେ ପ୍ରକୃତ ଖବର ରଖିନାହାନ୍ତି ।' ସେ ପୁଣି କହିଛନ୍ତି : "ମୁଁ ଏହି ଫୋଟକାଟି ଫୁଟାଇ ଦେବାକୁ ଚାହେଁ । ଯୁଦ୍ଧ

ପରପ୍ରେକ୍ଷୀ ଆଣିଦେଉଛି, ସେଥିରୁ ବୁଝିହେଉଛି ଯେ ଗତ ଶତ ବର୍ଷର ବ୍ରିଟିଶ ଶାସନ କାଳରେ ରେଲବାଇ, ଜଳସେଚନ ଇତ୍ୟାଦି କାର୍ଯ୍ୟ ଦିଗରେ ପ୍ରଗତି କରିବା ବିଷୟରେ ଆମେ ଯେଉଁ ସବୁ ବଡ଼ ବଡ଼ କଥା ଶୁଣିଥାଉଁ, ପ୍ରକୃତରେ ସେ ପ୍ରଗତି କେତେକ ନଗଣ୍ୟ ! ଏହା ଆହୁରି ପ୍ରତିପାଦନ କରେ ସବୁ ସାମ୍ମୁଖ୍ୟରେ ଦ୍ରୁତ ଅଗ୍ରଗତି କରିପାରିବା ନିମନ୍ତେ ଭାରତର ପ୍ରକାଣ୍ଡ ସାମର୍ଥ୍ୟ । ନିତାନ୍ତ ନୈରାଶ୍ୟଜନକ ପରିସ୍ଥିତିରେ ଏବଂ ଭାରତର ଔଦ୍ୟୋଗିକ ପ୍ରଗତି ପ୍ରତି ବିମୁଖ ଏକ ବିଦେଶୀ ସରକାର ତଳେ ଏଭଳି ଚମତ୍କାର ପ୍ରୟାସ ଯେ କରାଯାଇ ପାରିଲା, ଏଥିରୁ ସ୍ପଷ୍ଟ ବୁଝାଯାଉଛି ଗୋଟାଏ ସ୍ୱାଧୀନ ଜାତୀୟ ସରକାର ତଳେ ଯୋଜନାକୃତ ଉନ୍ନୟନ ମାତ୍ର କେତୋଟି ବର୍ଷରେ ଭାରତର ରୂପାନ୍ତର ଘଟାଇ ପାରିବ ।

ଏଠାରେ କିମ୍ବା ଅନ୍ୟତ୍ର ସୁଦୂର ଅତୀତର ସାମାଜିକ ସଫଳତାରୁ ବିଚାରର ମାନ ଆହରଣ କରି ଆଜିର ଭାରତରେ ସେମାନଙ୍କର ଅର୍ଥନୈତିକ ତଥା ସାମାଜିକ ସଫଳତାର ମୂଲ୍ୟ ନିର୍ଦ୍ଧାରଣ କରିବା ଇଂରେଜମାନଙ୍କର ଏକ ବିଚିତ୍ର ଅଭ୍ୟାସ । ପ୍ରକାଶ୍ୟ ସନ୍ତୋଷ ସହକାରେ ଭାରତରେ ସେମାନଙ୍କର ଶାସନକାଳରେ ସେମାନେ ଯାହାସବୁ କରିଚନ୍ତି ସେଥି ସଙ୍ଗେ ଶତ ଶତ ବର୍ଷ ତଳେ ଘଟିଥିବା ପରିବର୍ତ୍ତନର ତୁଳନା କରିଥାନ୍ତି । ସ୍ୱଳ୍ପ-ବିପ୍ଳବ ଏବଂ ବିଶେଷ କରି ଗତ ପଚିଶ ବର୍ଷରେ ପ୍ରଯୁକ୍ତି ବିଜ୍ଞାନର ପ୍ରଗତି, ଜୀବନର ଗତିଭଙ୍ଗୀ ଓ ଲକ୍ଷ୍ୟ ସମ୍ପୂର୍ଣ୍ଣ ଭାବରେ ଯେ ପରିବର୍ତ୍ତିତ କରିଦେଇ ପାରିଚି, ଭାରତ ବିଷୟରେ ଚିନ୍ତା କଲାବେଳେ ସେମାନେ କିପରି ଏକଥା ଭୁଲିଯାଇଥାନ୍ତି, ବଡ଼ ଆଶ୍ଚର୍ଯ୍ୟର କଥା । ସେମାନେ ଆହୁରି ମଧ୍ୟ ଭୁଲିଯାଉଚନ୍ତି ଯେ ଭାରତମାଟିରେ ସେମାନେ ପଦାର୍ପଣ କଲାବେଳକୁ ଭାରତ ଗୋଟାଏ ଅନୁର୍ବର, ଅନୁଦ୍‌ଭାବନଶୀଳ, ଅସଭ୍ୟ ଦେଶ ନଥିଲା; ଭାରତ ଥିଲା ଏକ ବିକଶିତ ସଂସ୍କୃତିସଂପନ୍ନ ଜାତିର ଦେଶ ଯେଉଁ ଜାତି ଅସ୍ଥାୟୀ ଭାବରେ ବୈଜ୍ଞାନିକ ପ୍ରଗତି କ୍ଷେତ୍ରରେ ନିଶ୍ଚଳ ଓ ଅନଗ୍ରସର ହୋଇ ପଡ଼ିଥିଲା ।

ଏ ପ୍ରକାର ତୁଳନାତ୍ମକ ଅଧ୍ୟୟନରେ ଆମେ କି ମୂଲ୍ୟବୋଧ ଓ ମାନ ପ୍ରୟୋଗ କରିବା ଉଚିତ ? ଜାପାନିମାନେ ସେମାନଙ୍କ ଉଦ୍ଦେଶ୍ୟ ସାଧନ ନିମନ୍ତେ ମାଞ୍ଚୁକୁଓକୁ ମାତ୍ର ଆଠବର୍ଷ ଭିତରେ ଏକ ଉଚ୍ଚକୋଟୀର ଶିଳ୍ପସମୃଦ୍ଧ ଦେଶରେ ପରିଣତ କଲେ । ସେଠାର କୋଇଲା

---

ଫଳରେ ଭାରତ ଭୌତିକ ଅଗ୍ରଗତି କରିଚି ଓ ଲାଭବାନ୍ ହୋଇଚି ବୋଲି କହିବା ସଂପୂର୍ଣ୍ଣ ଅର୍ଥହୀନ । ଯେ କେଉଁ କାରଣରୁ ହେଉ, ଭାରତରେ ସେପରି କିଛି ମହତ୍ତ୍ୱପୂର୍ଣ୍ଣ ପ୍ରଗତି କିମ୍ବା ଉନ୍ନୟନ ସାଧିତ ହୋଇନି; ବରଂ ସତ୍ୟ କହିଲେ, ପ୍ରଭୂତ ଭାବରେ ପଶ୍ଚାଦ୍‌ଗତି ଘଟିଚି । ଯୁଦ୍ଧ ଲାଗିବା ଫଳରେ ଆଉ ସେଥିରେ ଭାରତ ଯୋଗଦେବା ଫଳରେ, ବଙ୍ଗଳାରେ ଲକ୍ଷ ଲକ୍ଷ ଲୋକ ଦୁର୍ଭିକ୍ଷରେ ମଲେ । ସେତିକି କେବଳ ନୁହେଁ, ଆମକୁ ଲୁଗା ଦୁର୍ଭିକ୍ଷ ବି ଘୋଟିଥିଲା । ଏପରି ଭାବରେ, ଅତି ସରଳ କଥା, ଅର୍ଥନୈତିକ ପ୍ରଗତି ତାର ଅନୁପସ୍ଥିତି ଦ୍ୱାରା ହିଁ ଆପଣା ବୈଶିଷ୍ଟ୍ୟ ପ୍ରକାଶ କରିଥିଲା ।

ଉତ୍ପାଦନ ଭାରତରେ ବହୁ ପୁରୁଷଧରି ବ୍ରିଟିଶ ଉଦ୍ୟମର ଫଳଠାରୁ ଅଧିକ । ଭୌତିକ ସମୃଦ୍ଧି ଦିଗରୁ କୋରିଆରେ ଜାପାନୀମାନଙ୍କ କୃତିତ୍ୱ ଅନ୍ୟାନ୍ୟ ଔପନିବେଶିକ ସାମ୍ରାଜ୍ୟ ସଙ୍ଗେ ବାସ୍ତବିକ ତୁଳନାଯୋଗ୍ୟ । (୧) ତଥାପି ଏହିସବୁ କୃତିତ୍ୱ ପଛରେ ଥିଲା ଦାସତ୍ୱ, ହୃଦୟହୀନତା, ଲାଞ୍ଛନା, ଶୋଷଣ ଓ ଗୋଟାଏ ଜାତିର ଅନ୍ତରାତ୍ମାକୁ ନାଶ କରିବାର ଉଦ୍ୟମ । ପରାଭୂତ ଜାତି ଓ ଦେଶମାନଙ୍କ ପ୍ରତି ଅମାନୁଷିକ ଅତ୍ୟାଚାର କରିବା ଦିଗରେ ନାଜିମାନେ ଓ ଜାପାନୀମାନେ ନୂତନ ରେକର୍ଡ଼ ସୃଷ୍ଟି କରିପାରିଛନ୍ତି । ଏକଥା ବାରମ୍ବାର ଆମକୁ ସ୍ମରଣ କରାଇ କୁହାଯାଇଥାଏ ଯେ ଇଂରେଜମାନେ ଆମ ପ୍ରତି ସେତେଭଲ ଦୁର୍ବ୍ୟବହାର କରିନାହାନ୍ତି । ତୁଳନା ଓ ବିଚାର ନିମନ୍ତେ ତାହା କ'ଣ ନୂତନ ପରିମାପ ଓ ମାନ ହେବା ଉଚିତ ?

ଭାରତରେ ବର୍ତ୍ତମାନ ବହୁ ପରିମାଣରେ ନୈରାଶ୍ୟବୋଧ ଓ ଦୁଃଖବାଦ ପ୍ରକାଶ ପାଇଛି ।

---

(୧) ହାଲେଟ୍ ଆବେନ୍ଦ, ଯିଏ ବହୁବର୍ଷଧରି ଦୂରପ୍ରାଚ୍ୟରେ 'ନ୍ୟୁୟର୍କ ଟାଇମ୍‌ସ'ର ସମ୍ବାଦଦାତା ଥିଲେ, ୧୯୪୩ରେ ପ୍ରକାଶିତ ତାଙ୍କର 'ପେସିଫିକ୍ ଚାର୍ଟର' ବହିରେ ଲେଖିଛନ୍ତି : "ଜାପାନୀମାନଙ୍କ ପ୍ରତି ନ୍ୟାୟ ବିଚାର କରିବାକୁ ଗଲେ ଏକଥା ଅବଶ୍ୟ ମାନିବାକୁ ପଡ଼ିବ ଯେ ଭୌତିକ ଦୃଷ୍ଟିରୁ ସେମାନେ କୋରିଆରେ ବହୁତ କିଛି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରିଛନ୍ତି, ସେମାନେ ଦଖଲ କଲାବେଳକୁ ତାହା ଥିଲା ଅପରିଚ୍ଛନ୍ନ, ଅସ୍ୱାସ୍ଥ୍ୟକର ଓ ଶୋଚନୀୟ ଦରିଦ୍ରତାର ଏକ ଦେଶ । ପର୍ବତମାନଙ୍କରେ ଗଛ ବୋଲି ଗୋଟାଏ କିଛି ନଥିଲା, ଉପତ୍ୟକାଗୁଡ଼ିକ ବାରମ୍ବାର ବନ୍ୟାଜଳରେ ପ୍ଲାବିତ ହେଉଥିଲା, ଭଲ ସଡ଼କ ବୋଲି ଗୋଟାଏ ନଥିଲା, ନିରକ୍ଷରତାର ସୀମା ନଥିଲା ଏବଂ ବିଷମଜ୍ୱର, ବସନ୍ତ, ହଇଜା, ରକ୍ତ ଆମାଶୟ ଓ ପ୍ଲେଗ୍ ଥିଲା ପ୍ରତି ବର୍ଷର ମହାମାରୀ । ଯୋଜନାକୃତ ବୃକ୍ଷରୋପଣ ବ୍ୟବସ୍ଥା ପର୍ବତମାନଙ୍କର ଶୋଭା ଫେରାଇ ଆଣିଛି; ରେଳବାଇ, ଟେଲିଫୋନ୍ ଓ ଟେଲିଗ୍ରାଫ୍ ବ୍ୟବସ୍ଥା ଚମତ୍କାର ଭାବରେ କାର୍ଯ୍ୟ କରୁଛି; ବେଶ୍ ଅଭିଜ୍ଞ ଓ କର୍ମକ୍ଷମ ଲୋକେ ସର୍ବସାଧାରଣ ସ୍ୱାସ୍ଥ୍ୟ ଦାୟିତ୍ୱରେ ଅଛନ୍ତି; ସଂଖ୍ୟାବୃଦ୍ଧି ସଙ୍ଗେ ସଡ଼କଗୁଡ଼ିକର ରୂପ ବଦଳି ଯାଇଛି, ବନ୍ୟା ନିୟନ୍ତ୍ରଣ ଓ ଜଳସେଚନ କାର୍ଯ୍ୟକ୍ରମ ଫଳରେ ଖାଦ୍ୟ ଉତ୍ପାଦନ ବହୁ ଗୁଣରେ ବଢ଼ିଯାଇଛି; ଉନ୍ନତ ଧରଣର ବନ୍ଦରମାନ ନିର୍ମିତ ହୋଇଛି ଓ ଖୁବ୍ ଭଲ ଭାବରେ ପରିଚାଳିତ ହେଉଛି । ମୋଟାମୋଟି ଭାବରେ ଦେଶର ସ୍ୱାସ୍ଥ୍ୟ ଓ ସମ୍ପଦର ଆଶାତିରିକ୍ତ ବୃଦ୍ଧିଫଳରେ ୧୯୦୫ସାଲର ୧୧୦୦୦,୦୦୦ ଜନସଂଖ୍ୟା ୨୪୦୦୦,୦୦୦କୁ ବଢ଼ିଯାଇଛି ଏବଂ ଗତ ଶତାବ୍ଦୀରୁ ଉଠି ଆସିଲାବେଳକୁ ହାରାହାରି ଆୟୁଷ ଯାହା ଥିଲା ତାହା ଆଜି ଅସମ୍ଭବ ଭାବରେ ବଢ଼ିଯାଇଛି । ତଥାପି ମି: ଆବେନ୍ଦ କହିବାକୁ ଚାହାନ୍ତି ଯେ ଏସବୁ ଭୌତିକ ଉନ୍ନତି କିନ୍ତୁ କୋରିଆବାସୀଙ୍କ କଲ୍ୟାଣ ଦୃଷ୍ଟିରୁ କରାଯାଇନି; କରାଯାଇଛି ଜପାନୀମାନେ ଅଧିକ ଲାଭବାନ୍ ହେବେ ବୋଲି ।

କାରଣ ଆମ ଲୋକେ ବହୁ ଘଟଣାର ଯାତନା ଭୋଗ କରିଚନ୍ତି ଏବଂ ଭବିଷ୍ୟତ ଭିତରେ ମଧ୍ୟ ସେମାନେ ଏକ ମୁକ୍ତ ତଥା ଶାନ୍ତିପୂର୍ଣ୍ଣ ଜୀବନର ପ୍ରତିଶ୍ରୁତି ଦେଖିପାରୁନାହାନ୍ତି; କିନ୍ତୁ ଏହି ଆସ୍ତରଣ ତଳେ, ଗୋଟାଏ ନୂତନ ଜୀବନର ସୂଚନା ଓ ପ୍ରାଣମୂଳ ଅସ୍ଥିର ହୋଇ ଉଠିଚି ଏବଂ କେତେ ଅଜ୍ଞାତ ଶକ୍ତି ତାର ପଛରେ କାର୍ଯ୍ୟ କରୁଚନ୍ତି । ନେତାମାନେ ଉପରେ ରହିନ୍ତି; କିନ୍ତୁ ଅତୀତର ଅଶ୍ରାନ୍ତ ଭିଡ଼ ଉଠିଆସୁଥିବା ଏକ ଜାଗ୍ରତ ଜାତିର ଅଜ୍ଞାତ ତଥା ଅନ୍ୟମନସ୍କ ସଙ୍କଳ୍ପ ସେମାନଙ୍କୁ ନିର୍ଦ୍ଦିଷ୍ଟ କେତେକ ଦିଗରେ ଅଗ୍ରସର ହେବାପାଇଁ ବାଧ୍ୟ କରେ ।

## ୮. ଭାରତର ପ୍ରଗତି ବ୍ୟାହତହେଲା

ବ୍ୟକ୍ତିବିଶେଷ ଭଳି ଗୋଟାଏ ଜାତିର ମଧ୍ୟ ଏକାଧିକ ବ୍ୟକ୍ତିତ୍ୱ ଆଉ ଜୀବନ ପ୍ରତି ଏକାଧିକ ଆଭିମୁଖ୍ୟ ରହିଥାଏ । ଏହିସବୁ ବିଭିନ୍ନ ବ୍ୟକ୍ତିତ୍ୱ ଭିତରେ ଯଥେଷ୍ଟ ଭାବରେ ବଳିଷ୍ଠ ସୁସମ୍ପର୍କ ଯଦି ଥାଏ ତ ଭଲ, ଅନ୍ୟଥା ସେହି ସବୁ ବ୍ୟକ୍ତିତ୍ୱ ପରସ୍ପରଠାରୁ ଭିନ୍ନ ହୋଇ ବିଚ୍ଛିନ୍ନତା ଓ ଅବ୍ୟବସ୍ଥାର କାରଣ ହୁଅନ୍ତି । ସାଧାରଣତଃ ପରସ୍ପର ଭିତରେ ସମନ୍ୱୟ ସାଧନର ଏକ ପ୍ରକ୍ରିୟା ବରାବର ଚାଲିଥାଏ ଏବଂ ତାର ଫଳରେ ଗୋଟାଏ ପ୍ରକାର ଭାରସାମ୍ୟ ସ୍ଥାପିତ ହୁଏ । ସାଧାରଣ ବିକାଶ ଯଦି ବ୍ୟାହତ ହୁଏ କିମ୍ବା କେବେକେବେ ଯଦି ସେପରି କୌଣସି ଦ୍ରୁତ ପରିବର୍ତ୍ତନ ଯାହା ସହଜରେ ଆତ୍ମସ୍ଥ କରିହୁଏନି ଆସି ପହୁଞ୍ଚେ, ତାହାହେଲେ ସେହି ସବୁ ଭିନ୍ନ ଭିନ୍ନ ବ୍ୟକ୍ତିତ୍ୱ ଭିତରେ ସଂଘାତ ସୃଷ୍ଟି ହୁଏ । ଆମର ଏହିସବୁ ବାହ୍ୟ ସଂଘାତ ଓ ବିଭାଜନ ତଳେ ଭାରତର ମନ ଓ ଅନ୍ତରାତ୍ମାରେ ଦୀର୍ଘକାଳଧରି ପ୍ରଗତି ବ୍ୟାହତ ହେବା ଫଳରେ ଗୋଟାଏ ମୌଳିକ ସଂଘର୍ଷ ବରାବର ଚାଲିଚି । ଗୋଟାଏ ସମାଜକୁ ସ୍ଥିତିବାନ୍ ଓ ପ୍ରଗତିଶୀଳ ହେବାକୁ ହେଲେ କମ୍ ବହୁତରେ ନୀତି ଦୃଷ୍ଟିରୁ ତାର ଏକ ନିର୍ଦ୍ଦିଷ୍ଟ ଭିତ୍ତି ଆଉ ସେଥିସଙ୍ଗେ ଏକ ଗତିଶୀଳ ଦୃଷ୍ଟିଭଙ୍ଗୀ ଥିବା ଦରକାର । ଏ ଉଭୟର ଆବଶ୍ୟକତା ରହିଚି । ଗତିଶୀଳ ଦୃଷ୍ଟିଭଙ୍ଗୀ ବିନା ସମାଜରେ ବଦ୍ଧତା ଓ ଅବନତି ଦେଖାଦିଏ ଏବଂ ନୀତିର କୌଣସି ନିର୍ଦ୍ଦିଷ୍ଟ ଭିତ୍ତି ନଥିଲେ ବିଚ୍ଛିନ୍ନତା ଓ ବିନାଶର ପଥ ଉନ୍ମୁକ୍ତ ରହେ ।

ଭାରତରେ କେଉଁ ଦୂର ଅତୀତରୁ ସେହି ସବୁ ମୌଳିକ ନୀତି—ଯାହା ଅପରିବର୍ତ୍ତିତ, ସାର୍ବଜନୀନ ଓ ସ୍ୱତଃସିଦ୍ଧ—ନିମନ୍ତେ ସନ୍ଧାନ ଆରମ୍ଭ ହୋଇଥିଲା । ତେବେ ବି ଗତିଶୀଳ ଦୃଷ୍ଟିଭଙ୍ଗୀ ଥିଲା ଏବଂ ଗୋଟାଏ ପରିବର୍ତ୍ତନଶୀଳ ଦୁନିଆ ଓ ଜୀବନର ଯଥୋଚିତ ମୂଲ୍ୟ ନିରୂପଣ କରାଯାଇ ପାରୁଥିଲା । ଏହି ଦ୍ୱିବିଧ ଭିତ୍ତି ଉପରେ ଏକ ସ୍ଥିତିବାନ୍ ତଥା ପ୍ରଗତିଶୀଳ ସମାଜ ଗଢ଼ି ଉଠିଲା । ତେବେ, ସର୍ବଦା ବିଶେଷ ଧ୍ୟାନ ଥିଲା ସ୍ଥାୟିତ୍ୱ, ନିରାପତ୍ତା ଓ ଜାତୀୟ ଉଦ୍‌ବର୍ତ୍ତନ ଉପରେ । ପରବର୍ତ୍ତୀ କାଳରେ ସେହି ଗତିଶୀଳ ବିଭାବ କ୍ରମଶଃ ମଉଳିବାକୁ ଲାଗିଲା ଏବଂ ଚିରନ୍ତନ ନୀତି ନାମରେ ସାମାଜିକ ଗଢ଼ଣକୁ ଏପରି କରି ଦିଆଗଲା ଯେ ସେଥିରେ ନା ରହିଲା ନମନୀୟତା ନା ପରିବର୍ତ୍ତନଶୀଳତା । ବସ୍ତୁତଃ, ତାହା ସମ୍ପୂର୍ଣ୍ଣ ଭାବରେ କଠୋର ଶୃଙ୍ଖଳାରେ ଆବଦ୍ଧ ନଥିଲା ଏବଂ କ୍ରମାଗତ ତଥା ନିରବଚ୍ଛିନ୍ନ

ଭାବରେ ପରିବର୍ତ୍ତନ ଘଟିଚାଲିଥିଲା; କିନ୍ତୁ ତା' ପଛର ଆଦର୍ଶବାଦ ଓ ତା'ର ସାଧାରଣ ରୂପରେଖ ଅପରିବର୍ତ୍ତିତ ରହିଥିଲା । କମ୍ ବହୁତରେ, ସ୍ୱଶାସିତ ବର୍ଣ୍ଣମାନଙ୍କ ଭିତରେ ପ୍ରତିଫଳିତ କୁଳ-ଭାବନା, ଏକାନ୍ନବର୍ତ୍ତୀ ପରିବାର ଏବଂ ମୋଟାମୋଟି ଭାବରେ ସ୍ୱାଧୀନ ଗ୍ରାମ୍ୟ-ଜୀବନ ଥିଲା ଏହି ବ୍ୟବସ୍ଥାର ପ୍ରଧାନ ସ୍ତମ୍ଭ ସ୍ୱରୂପ । ଏହି ସବୁ ଦୋଷ-ତ୍ରୁଟି ସତ୍ତ୍ୱେ ଯୁଗଯୁଗ-ଧରି ତିଷ୍ଠିବାର କାରଣ ହେଉଚି ଯେ ସେଥିଦ୍ୱାରା ସମାଜର ଓ ମଣିଷ ପ୍ରକୃତିର କେତେକ ଅପରିହାର୍ଯ୍ୟ ଆବଶ୍ୟକତା ପୂରଣ ହେଉଥିଲା । ପ୍ରତ୍ୟେକ ଗୋଷ୍ଠୀପାଇଁ ତାହା ଯୋଗାଉଥିଲା ନିରାପତ୍ତା ଓ ସ୍ଥାୟିତ୍ୱ ଏବଂ ଏକପ୍ରକାର କୁଳ-ସ୍ୱାଧୀନତାବୋଧ । ବର୍ଣ୍ଣ-ବ୍ୟବସ୍ଥା ଯେ ତିଷ୍ଠି ପାରିଲା ତା'ର କାରଣ ତାହା ସମାଜର ସାଧାରଣ ଶକ୍ତି-ସମୃଦ୍ଧିର ପ୍ରତିନିଧିତ୍ୱ କରିଥିଲା ଏବଂ ବର୍ଣ୍ଣଗତ ସ୍ୱାଧିକାର ଯେ ଚାଲିପାରିଲା ତା'ର କାରଣ ପ୍ରଚଳିତ ଆଦର୍ଶବାଦ କେବଳ ନୁହେଁ, ଅଧିକନ୍ତୁ, ତାର ପଛରେ ଥିଲା ପ୍ରାଣ-ଶକ୍ତି, ବୁଦ୍ଧି, ଦକ୍ଷତା ଏବଂ ଆତ୍ମବଳିଦାନର ସାମର୍ଥ୍ୟ । ସେହି ଆଦର୍ଶବାଦ ଅଧିକାର ନିମନ୍ତେ ସଙ୍ଘର୍ଷ ଉପରେ ଭିତ୍ତି କରି ନଥିଲା; କରିଥିଲା ଅନ୍ୟମାନଙ୍କ ପ୍ରତି ବ୍ୟକ୍ତିର ଉପକୃତି ଏବଂ ସନ୍ତୋଷଜନକ ଭାବରେ ତା'ର କର୍ତ୍ତବ୍ୟ ସମ୍ପାଦନ ଉପରେ; ନିଜ ଗୋଷ୍ଠୀ ଭିତରେ ତଥା ବିଭିନ୍ନ ଗୋଷ୍ଠୀ ଭିତରେ ସହଯୋଗ ପ୍ରତିଷ୍ଠା ଉପରେ ଏବଂ ସାରତଃ ଯୁଦ୍ଧ ବଦଳରେ ଶାନ୍ତି ପ୍ରସାର ଭାବନା ଉପରେ । ସାମାଜିକ ବ୍ୟବସ୍ଥା ଏକେ କଠୋର ନିୟମରେ ଆବଦ୍ଧ ଥିବା-ବେଳେ ମନର ସ୍ୱାଧୀନତା ଉପରେ କିନ୍ତୁ କୌଣସି ସୀମାବନ୍ଧନ ନଥିଲା ।

ଭାରତୀୟ ସଭ୍ୟତାର ଯାହା ଲକ୍ଷ୍ୟ ଥିଲା ତାର ବହୁତ କିଛି ପ୍ରାପ୍ତ ହୋଇପାରିଥିଲେ ସୁଦ୍ଧା ସେହି ପ୍ରାପ୍ତି ଭିତରେ ହିଁ ଜୀବନ ମଉଳିଯିବାକୁ ଲାଗିଲା; କାରଣ ତା'ର ଗତିଶୀଳତା ପକ୍ଷରେ ଗୋଟାଏ ଅନମନୀୟ ପରିବର୍ତ୍ତନବିମୁଖ ପରିବେଷ୍ଟନୀ ଅନୁକୂଳ ନଥିଲା । ସେ ଜୀବନ ଦୀର୍ଘକାଳ ତିଷ୍ଠିପାରିଲା ନାହିଁ । ସେହିସବୁ ମୌଳିକ ନୀତି ସୁଦ୍ଧା, ଯାହା ପରିବର୍ତ୍ତନ ହେବାର ନୁହେଁ ବୋଲି କୁହାଯାଇଥାଏ, ସ୍ୱତଃସିଦ୍ଧ ବିବେଚିତ ହେବା ଫଳରେ ତାର ପ୍ରସନ୍ନତା ଓ ବାସ୍ତବତା ହରାଇଗଲା ଏବଂ ସେ ଦିଗରେ ଜିଜ୍ଞାସାର ବି ଇତିଶ୍ରୀ ଘଟିଲା । ସତ୍ୟ, ସୁନ୍ଦର ଓ ମୁକ୍ତିର କଳ୍ପନା ବି ମଉଳିବାକୁ ଲାଗିଲା ଏବଂ ଗୋଟାଏ ନିସ୍ତେଜକର, ନିତ୍ୟନୈମିତ୍ତିକ କର୍ମର ଧାରା ଅନୁସରଣ କରି ଆମେ ନିଜର ପରିବେଷ୍ଟନୀର ବନ୍ଦୀ ହୋଇ ପଡ଼ିଲୁ ।

ଯାହା ଭାରତରେ ନଥିଲା, ତାହା ଥିଲା ଆଧୁନିକ ପାଶ୍ଚାତ୍ୟ ଜଗତରେ ଖୁବ୍ ପ୍ରଚୁର ଭାବରେ । ତା'ର ଥିଲା ଗତିଶୀଳ ଦୃଷ୍ଟିଭଙ୍ଗୀ । ପରିବର୍ତ୍ତନଶୀଳ ବିଶ୍ୱରେ ପାଶ୍ଚାତ୍ୟ ଜଗତ ମଜ୍ଜିରହିଥିଲା । ଅପରିବର୍ତ୍ତନୀୟ, ସାର୍ବଜନୀନ, ପରମ ନୀତିମାନଙ୍କ ପ୍ରତି ତା'ର ଭ୍ରୂକ୍ଷେପ ନଥିଲା । ତାର ଦୃଷ୍ଟି ନଥିଲା କର୍ତ୍ତବ୍ୟ ଓ ଉପକୃତି ଉପରେ; ଥିଲା ଅଧିକାର ସାବ୍ୟସ୍ତ ଉପରେ । ତାହା ଥିଲା ସକ୍ରିୟ, ଉଦ୍ୟମଶୀଳ, ଆହରଣଶୀଳ ଏବଂ କ୍ଷମତା ଓ ଆଧିପତ୍ୟ-ଲାଳସୀ । ବର୍ତ୍ତମାନ ହିଁ ତା' ପକ୍ଷରେ ଥିଲା ସବୁ କିଛି । ତା'ର କର୍ମର ପରିଣାମ ଭବିଷ୍ୟତରେ କ'ଣ ହେବ ସେଥିପ୍ରତି ତାର ବିଚାର ନଥିଲା । ଗତିଶୀଳତା ହେତୁରୁ ତାହା ଥିଲା

ପ୍ରଗତିଶୀଳ ଓ ପ୍ରାଣପୂର୍ଣ୍ଣ; କିନ୍ତୁ ସେ ଜୀବନ ଥିଲା ଜ୍ୱରଗ୍ରସ୍ତ ଏବଂ ସେ ଜ୍ୱର କ୍ରମଶଃ ବଢ଼ୁଥିଲା ।

ଭାରତୀୟ ସଭ୍ୟତା ଯଦି ମ୍ଳାନିମା ଭଜିଲା, ତାର କାରଣ ହେଉଚି ଯେ ତାହା ଗତିହୀନ, ଆତ୍ମମୁଖୀ, ସ୍ୱକାମପ୍ରବଣ ହୋଇପଡ଼ିଥିଲା । କିନ୍ତୁ ଆଧୁନିକ ପାଶ୍ଚାତ୍ୟ ସଭ୍ୟତା ତାର ସମସ୍ତ କିଛି ମହାନ୍ ତଥା ବହୁବିଧ କୃତିତ୍ୱ ସତ୍ତ୍ୱେ ଗୋଟାଏ ବିଶିଷ୍ଟତାପୂର୍ଣ୍ଣ ସଫଳତା ଭଳି କିମ୍ବା ଏପର୍ଯ୍ୟନ୍ତ ଜୀବନର ମୌଳିକ ସମସ୍ୟାଗୁଡ଼ିକର ସମାଧାନ କରିପାରିଥିବା ଭଳି ଜଣାଯାଏ ନାହିଁ । ସଙ୍ଘର୍ଷ ତାର ସହଜାତ ଏବଂ ପର୍ଯ୍ୟାୟକ୍ରମେ ତାହା ଅତି ବିରାଟ ଆକାରରେ ଆତ୍ମହତ୍ୟାରେ ଲିପ୍ତ ହୁଏ । ଧୈର୍ଯ୍ୟ ନିମନ୍ତେ ତାର କିଛି ଏକ ବିଶେଷ ଅଭାବ ଥିଲା ଭଳି ଅନୁମିତ ହୁଏ । ହୁଏତ କିଛି ମୌଳିକ ନୀତି ଯାହା ଜୀବନକୁ ତାତ୍ପର୍ଯ୍ୟ ଦେବ, ସେପରି କିଛି ଗୋଟାଏ ଭାବ, ଆଉ ତାହା କ'ଣ କହିବା ଲାଗି ମୁଁ ଅକ୍ଷମ । ତଥାପି, ତାହା ଗତିଶୀଳ ଜୀବନରେ ପୂର୍ଣ୍ଣ ଓ ଜିଜ୍ଞାସୁ ହୋଇଥିବାରୁ ତାର ଲାଗି ଆଶା ରହିଚି ।

ଭାରତ ଓ ଚୀନ ଉଭୟ ପାଶ୍ଚାତ୍ୟ ପାଖରୁ ଶିକ୍ଷା କରିବାକୁ ପଡ଼ିବ । କାରଣ ଆଧୁନିକ ପାଶ୍ଚାତ୍ୟର ଶିକ୍ଷା ଦେବା ପାଇଁ ବହୁତ କିଛି ଅଛି । ପାଶ୍ଚାତ୍ୟ ଏ ଯୁଗର ଜୀବନ ଓ ଚେତନାର ପ୍ରତିନିଧିତ୍ୱ କରେ; କିନ୍ତୁ ତାର ମଧ୍ୟ ବହୁତ କିଛି ଶିକ୍ଷା କରିବାର ଅଛି ଏବଂ ସବୁ ଦେଶରେ ସବୁ ଯୁଗରେ ଯାହା ଭାବୁକମାନଙ୍କୁ ଧ୍ୟାନମଗ୍ନ କରିଚି, ଜୀବନର ସେ ସବୁ ମହତ୍ତ୍ୱର ବିଷୟ ପ୍ରତି ଯଦି ତାର ଧ୍ୟାନ ନରହେ ତାହାହେଲେ ଏ ସମସ୍ତ ବୈଜ୍ଞାନିକ ପ୍ରଗତି ତାକୁ ସାନ୍ତ୍ୱନା ଦେଇପାରିବ ନାହିଁ ।

ଭାରତ ଗତିଶୂନ୍ୟ ହୋଇପଡ଼ିଲା । ତଥାପି ତାକୁ ପରିବର୍ତ୍ତନବିମୁଖ ଥିଲା କହିବା ସମ୍ପୂର୍ଣ୍ଣ ଭୁଲ ହେବ । ପରିବର୍ତ୍ତନହୀନତା ମୃତ୍ୟୁ ସଙ୍ଗେ ସମାନ । ଗୋଟାଏ ଉନ୍ନତ ଜାତି ଭାବରେ ଭାରତ ଯେ ହଜାର ହଜାର ବର୍ଷ ତିଷ୍ଠି ପାରିଲା, ପ୍ରମାଣିତ କରୁଚି ଯେ ଅବିଚ୍ଛିନ୍ନ ଭାବରେ ଅବସ୍ଥାନୁରୂପ ଆବଶ୍ୟକୀୟ ପରିବର୍ତ୍ତନ ଘଟୁଥିଲା । ଇଂରେଜମାନେ ଆସିଲାବେଳକୁ ଭାରତ ଶିଳ୍ପବିଜ୍ଞାନରେ କିଛି ପଛରେ ପଡ଼ିଥିଲେ ସୁଦ୍ଧା, ତତ୍କାଳୀନ ବିଶ୍ୱର ଅଗ୍ରଗାମୀ ବାଣିଜ୍ୟ-ପ୍ରଧାନ ଦେଶମାନଙ୍କ ଭିତରେ ଅନ୍ୟତମ ଥିଲା । କେତେକ ପାଶ୍ଚାତ୍ୟ ଦେଶରେ ଯେପରି ଘଟିଲା, ବିଜ୍ଞାନର ପ୍ରଗତି ଭାରତର ଚେହେରା ବଦଳାଇ ଦେଇଥାନ୍ତା; କିନ୍ତୁ ବ୍ରିଟିଶ ଶକ୍ତି ତାର ସ୍ୱାଭାବିକ ବିକାଶ ବ୍ୟାହତ କଲା । ଶିଳ୍ପିକ ବିକାଶ ବାଧାପ୍ରାପ୍ତ ହେବା ଫଳରେ ସାମାଜିକ ପ୍ରଗତି ମଧ୍ୟ ବ୍ୟାହତ ହେଲା । ସମାଜର ସ୍ୱାଭାବିକ ଶକ୍ତି-ସମ୍ବନ୍ଧ ପରସ୍ପର ଭିତରେ ମେଳ ରଖି ନ ପାରି ଭାରସାମ୍ୟ ହରାଇବସିଲା; କାରଣ ସମସ୍ତ ଶକ୍ତି କେନ୍ଦ୍ରିତ ଥିଲା ଗୋଟାଏ ବିଦେଶୀ ପ୍ରଭୁତ୍ୱ ହାତରେ ଏବଂ ସେହି ପ୍ରଭୁତ୍ୱ ପଶୁବଳ ଉପରେ ଭିତ୍ତିକରି ସେହି ସବୁ ଶ୍ରେଣୀ ଓ ସମ୍ପ୍ରଦାୟମାନଙ୍କୁ ଉତ୍ସାହିତ କଲା ଯେଉଁମାନେ ଆପଣାର ପ୍ରକୃତ ତାତ୍ପର୍ଯ୍ୟ ହରାଇସାରିଥିଲେ । ଏପରି ଭାବରେ, ଭାରତୀୟ ଜୀବନ ଦିନକୁ ଦିନ କୃତ୍ରିମ ହୋଇପଡ଼ିଲା । କାରଣ ଏହି ନୂତନ ଜୀବନରେ ଯେଉଁସବୁ ବ୍ୟକ୍ତି ଓ ଗୋଷ୍ଠୀ ପ୍ରଧାନ ଭୂମିକା ଗ୍ରହଣ କଲେ ସେମାନଙ୍କ ଭିତରୁ ଅନେକଙ୍କର ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟ ବୋଲି କିଛି ନଥିଲା । ସେମାନେ

କେବଳ ମହତ୍ତ୍ୱପୂର୍ଣ୍ଣ ହୋଇଉଠିଥିଲେ ଗୋଟାଏ ବିଦେଶୀ ଶକ୍ତିର କୃପାରୁ । ଇତିହାସରେ ସେମାନଙ୍କର ଭୂମିକା ବହୁ ପୂର୍ବରୁ ସରିଥିଲା ଏବଂ ବିଦେଶୀ ଶକ୍ତି ଆଡ଼ୁଆଳ କରିନଥିଲେ ଦେଶରେ ଜାଗ୍ରତ ନୂତନ ଶକ୍ତିମାନେ ସେମାନଙ୍କୁ ଫୋପାଡ଼ିଦେଇଥାନ୍ତେ । ସେମାନେ ବିଦେଶୀ ପ୍ରଭୁତ୍ୱର ନିର୍ଜୀବ ପ୍ରତୀକ, 'ହୁରୁଡ଼ା' ହୋଇ ଉଠିଥିଲେ କିମ୍ବା ଗୋଟାଏ ଯନ୍ତ୍ର ଯାହାର ଯନ୍ତ୍ରୀ ଥିଲା ବିଦେଶୀ ପ୍ରଭୁତ୍ୱ । ଫଳତଃ, ଜାତିର ଗତିଶୀଳ ଜୀବନରୁ ସେମାନେ ଆହୁରି ବିଚ୍ଛିନ୍ନ ହୋଇପଡ଼ିଲେ । ସାଧାରଣତଃ, ବାଳୁଙ୍ଗା ଭଳି ସେମାନଙ୍କୁ ବାହାର କରିଦିଆ-ଯାଇଥାନ୍ତା କିମ୍ବା ବୈପ୍ଳବିକ ଅଥବା ଗଣତାନ୍ତ୍ରିକ ପ୍ରକ୍ରିୟାରେ ସେମାନଙ୍କର ଉପଯୁକ୍ତ ପ୍ରାପ୍ୟ ସେମାନେ ପାଇଥାନ୍ତେ । କିନ୍ତୁ ବିଦେଶୀ, ପ୍ରଭୁତ୍ୱପରିପୂର୍ଣ୍ଣ ଶାସନ ଚାଲିଥିଲା ପର୍ଯ୍ୟନ୍ତ ସେପରି କିଛି କରିବାର ସୁଯୋଗ ନଥିଲା । ଅତଏବ, ଅତୀତର ଏହିସବୁ ଚିହ୍ନମାନଙ୍କ କୋଳାହଳ ଭିତରେ ପ୍ରକୃତ ଭାରତର ସ୍ୱର ଲୁଚିଗଲା ଏବଂ ଯାହା କିଛି ପରିବର୍ତ୍ତନ ଘଟୁଥିଲା, ଗୋଟାଏ କୃତ୍ରିମ ଆବରଣ ତାକୁ ଘୋଡ଼ାଇ ରଖିଲା । ସମାଜ ଭିତରେ କୌଣସି ପ୍ରକୃତ ଶକ୍ତି-ସମ୍ବନ୍ଧର ବିକାଶ କିମ୍ବା ସାମାଜିକ ଭାରସାମ୍ୟ ବ୍ୟବସ୍ଥା ସମ୍ଭବ ହେଲାନି କିମ୍ବା ଯଦି କିଛି ହେଲା, ତାର ପ୍ରଭାବ ପଡ଼ିପାରିଲାନି ଏବଂ ଯେତେସବୁ ଅବାସ୍ତବ ସମସ୍ୟା ଅଯଥା ଗୁରୁତ୍ୱ ଲାଭ କଲା ।

ଆଜି ଆମର ଅଧିକାଂଶ ସମସ୍ୟାର ପ୍ରଧାନ କାରଣ ହେଉଚି ଏହି ବ୍ୟାହତ ପ୍ରଗତି ଏବଂ ବ୍ରିଟିଶ ପ୍ରଭୁତ୍ୱଦ୍ୱାରା ନିରୋଧିତ ସାମାଜିକ ସମନ୍ୱୟ । ବାହ୍ୟ ପ୍ରଭାବ ଦୂରୀଭୂତ ହେଲେ, ଦେଶୀୟ ରାଜ୍ୟ ସମସ୍ୟାର ସମାଧାନ ଅତି ସହଜ ହୋଇଥାନ୍ତା । ଆମର ସଂଖ୍ୟାଲଘୁ ସମସ୍ୟା ପୃଥିବୀର ଅନ୍ୟ ଯେକୌଣସି ସ୍ଥାନର ସଂଖ୍ୟାଲଘୁ ସମସ୍ୟାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ପ୍ରକୃତପକ୍ଷେ, ଏହା ସଂଖ୍ୟାଲଘୁ ସମସ୍ୟା ନୁହେଁ । ଏହାର ସେପରି ବହୁତ କିଛି ବିଭାବ ଅଛି, ଯେଉଁଥିପାଇଁ ଆମର ଅତୀତ ଅବଶ୍ୟ ଦାୟୀ ଏବଂ ଆମର ବର୍ତ୍ତମାନ ବି ସେଥିରୁ ସମ୍ପୂର୍ଣ୍ଣ ମୁକ୍ତ ନୁହେଁ । ତଥାପି, ଏପରି ନାନା ସମସ୍ୟା ପଛରେ ରହିଚି ଭାରତୀୟ ଜନସାଧାରଣଙ୍କ ପ୍ରଚଳିତ ଅର୍ଥନୈତିକ ବ୍ୟବସ୍ଥା ଓ ରାଜନୈତିକ ସଂଗଠନକୁ ବଜାୟ ରଖିବାର ବ୍ରିଟିଶ ଅଭିପ୍ରାୟ ଏବଂ ସେଥି ନିମନ୍ତେ ଅନଗ୍ରସର ସାମାଜିକ ଗୋଷ୍ଠୀମାନଙ୍କୁ ସେମାନଙ୍କର ସାମନ୍ତିକ ଅବସ୍ଥା ଅପରିବର୍ତ୍ତିତ ରଖିବା ପାଇଁ ସବୁମନ୍ତେ ଉତ୍ସାହିତ କରାଯାଉଚି । ରାଜନୈତିକ ଓ ଅର୍ଥନୈତିକ ପ୍ରଗତି ପ୍ରତ୍ୟକ୍ଷ ଭାବରେ କେବଳ ଯେ ନିବାରିତ ହୋଇଚି ନୁହେଁ, ପ୍ରତିକ୍ରିୟାଶୀଳ ଗୋଷ୍ଠୀ ଓ ନ୍ୟସ୍ତସ୍ୱାର୍ଥର ସମ୍ମତି ଉପରେ ତାକୁ ନିର୍ଭରଶୀଳ କରାଯାଇଚି । ସେମାନଙ୍କୁ ସେମାନଙ୍କର ବିଭିନ୍ନ ବିଶେଷାଧିକାର ମଞ୍ଜୁର କରି କିମ୍ବା ଭବିଷ୍ୟତର ଯେକୌଣସି ବ୍ୟବସ୍ଥା ନିମନ୍ତେ ସେମାନଙ୍କର ମତାମତକୁ ଗୁରୁତ୍ୱ ଦେଇ ଏବଂ ଏପରିଭାବରେ ପ୍ରକୃତ ପରିବର୍ତ୍ତନ ଓ ପ୍ରଗତିପଥରେ ପ୍ରବଳ ପ୍ରତିବନ୍ଧକ ସୃଷ୍ଟିକରି କେବଳ ସେହି ସମ୍ମତି ନିଶ୍ଚିତ କରାଯାଇପାରେ । ଗୋଟାଏ ନୂତନ ସମ୍ବିଧାନ ଯଦି ବଳିଷ୍ଠ ଓ ଫଳପ୍ରଦ ହେବା ଦରକାର, ତାହାହେଲେ ଅଧିକ ସଂଖ୍ୟକ ଲୋକଙ୍କ ଅଭିଳାଷର ପ୍ରତିନିଧିତ୍ୱ କରିବା ତା' ପକ୍ଷରେ ଅନିବାର୍ଯ୍ୟ କେବଳ ନୁହେଁ; ବରଂ ସେଥିରେ ଆହୁରି ମଧ୍ୟ ପ୍ରତିଫଳିତ ହେବା

ଆବଶ୍ୟକ ବିଭିନ୍ନ ସାମାଜିକ ଶକ୍ତିର ପାରସ୍ପରିକ ସମ୍ପର୍କ ଏବଂ ସେସବୁର ତାତ୍କାଳିକ ଶକ୍ତି-ସମ୍ବନ୍ଧ । ବ୍ରିଟିଶ ସରକାର ହୁଅନ୍ତୁ କି ଭାରତୀୟ କେହି କେହି ବି ହୁଅନ୍ତୁ, ଭବିଷ୍ୟତର ସାମ୍ବିଧାନିକ ବ୍ୟବସ୍ଥା ସନ୍ଧାନରେ ଯେଉଁସବୁ ପରାମର୍ଶ ଦେଇଥାନ୍ତି, ସେଥିରେ ଆଜିର ବିଭିନ୍ନ ସାମାଜିକ ଶକ୍ତି ପ୍ରତି କେବଳ ନୁହେଁ, ଅଧିକନ୍ତୁ ସେହିସବୁ ପ୍ରଚ୍ଛନ୍ନ ଶକ୍ତି ପ୍ରତି ଯାହା ଦୀର୍ଘକାଳ ଆବଦ୍ଧ ରହିବା ପରେ ବର୍ତ୍ତମାନ ମୁକୁଳି ଆସୁଚନ୍ତି ଏବଂ ବର୍ତ୍ତମାନ ସକାଶେ ଯାହା ସମ୍ପୂର୍ଣ୍ଣ ଅନାବଶ୍ୟକ ଓ ଅପ୍ରାସଙ୍ଗିକ ସେପରି ଏକ ବିଳୟମାନ ସମାଜ ଓ ଅତୀତର ଭିତ୍ତି ଉପରେ ପ୍ରତିଷ୍ଠିତ ଏକ ବ୍ୟବସ୍ଥାକୁ ଅଧିକତର ଅନମନୀୟ କରିବା ଉଦ୍ୟମ କରୁଛନ୍ତି, ଯଥୋଚିତ ଧ୍ୟାନ ଦିଆଯାଉନି । ଏହା ହେଉଚି ଭାରତର ପ୍ରଧାନ ସମସ୍ୟା ।

ଭାରତରେ ମୌଳିକ ବାସ୍ତବତା ହେଉଚି ବ୍ରିଟିଶ ସାମରିକ ଅଧିକାର ଏବଂ ସେହି ମତ ଯାହା ଏହାର ସମର୍ଥକ । ସେହି ମତ ନାନା ଭାବରେ ଅଭିବ୍ୟକ୍ତ ହୋଇଚି, ବହୁଧା ଅନିଶ୍ଚିତ ଶବ୍ଦଗୁଚ୍ଛରେ ଆବୃତ ହୋଇଚି; କିନ୍ତୁ ସମ୍ପ୍ରତି ଜଣେ ସୈନିକ-ଭାଇସ୍‌ରାୟଙ୍କ ଅମଳରେ ତାହା ସ୍ପଷ୍ଟଭାବରେ ପ୍ରକାଶ ପାଇଚି । ଇଂରେଜମାନେ ଯେତେ କାଳ ପର୍ଯ୍ୟନ୍ତ ପାରିବେ, ଏହି ସାମରିକ ଦଖଲ ବଜାୟ ରଖିବେ; କିନ୍ତୁ ବଳପ୍ରୟୋଗର ବି ଗୋଟାଏ ସୀମା ଅଛି । ତାହା ବିରୋଧି-ଶକ୍ତିମାନଙ୍କ ଅଭିବୃଦ୍ଧି ନିମନ୍ତେ କେବଳ ନୁହେଁ, ସେପରି ବହୁତ କିଛି ପରିଣାମ ପାଇଁ ମଧ୍ୟ, ଯାହା ବିଷୟରେ ବଳ ଉପରେ ଏକାନ୍ତ ନିର୍ଭରଶୀଳ ଲୋକେ ଭାବିପାରି ନଥାନ୍ତି, ପଥ ଉନ୍ମୁକ୍ତ କରେ ।

ବଳପୂର୍ବକ ଭାରତର ବଢ଼ତି ଦବାଇଦେବା ଓ ତାର ପ୍ରଗତି ବ୍ୟାହତ କରିବାର ପରିଣାମ ଆମେ ଆଜି ଦେଖୁଥାଉଁ । ତାର ଜ୍ୱଳନ୍ତ ଦୃଷ୍ଟାନ୍ତ ହେଉଚି, ଭାରତରେ ବ୍ରିଟିଶ ଶାସନର ନିଷ୍ଫଳତା ଏବଂ ତଜ୍ଜନିତ ଭାରତୀୟ ଜୀବନର ବ୍ୟର୍ଥତା । ବିଦେଶୀ ଶାସନ ତାର ଅଧୀନସ୍ଥ ଲୋକଙ୍କ ସୃଜନାତ୍ମକ ଶକ୍ତିଠାରୁ ବିଚ୍ଛିନ୍ନ ହୋଇପଡ଼ିବା ଅବଶ୍ୟମ୍ଭାବୀ । ଏହି ବିଦେଶୀ ଶାସନର ସ୍ୱକୀୟ ଅର୍ଥନୈତିକ ତଥା ସାଂସ୍କୃତିକ କେନ୍ଦ୍ର ଯେବେ ପରାଭୂତ ଦେଶଠାରୁ ବହୁ ଦୂରରେ ରହେ ଏବଂ ବର୍ଣ୍ଣ-ବିଦ୍ୱେଷ ତଥା ସଜାତି-ପ୍ରୀତିଦ୍ୱାରା ସମର୍ଥିତ ହୁଏ, ତାହାହେଲେ ସେ ବିଚ୍ଛିନ୍ନତା ସବୁ ଦିଗରୁ ସମ୍ପୂର୍ଣ୍ଣ ହୁଏ ଆଉ ପରାଧୀନ ଲୋକଙ୍କ ଆଧ୍ୟାତ୍ମିକ ତଥା ସାଂସ୍କୃତିକ ମୃତ୍ୟୁର କାରଣ ହୁଏ । ସେପରି ଅବସ୍ଥାରେ ସେହି ଜାତିର ସୃଜନାତ୍ମକ ଶକ୍ତି ଏକମାତ୍ର ଯେଉଁ ପରିସର ଖୋଜେ, ଆଉ ପାଏ ମଧ୍ୟ, ତାହା ହେଉଚି ସେହି ଶାସନ ବିରୁଦ୍ଧରେ, ଯେକୌଣସି ଭାବରେ ହେଲେ, ପ୍ରତିରୋଧ ସଙ୍ଗଠନ କରିବା । ତଥାପି ସେହି ପରିସର ମଧ୍ୟ ଯେହେତୁ ସୀମିତ, ଦୃଷ୍ଟିଭଙ୍ଗୀ ସଙ୍କୀର୍ଣ୍ଣ ଓ ଏକଦେଶଦର୍ଶୀ ହୋଇଉଠେ । ସେହି ପ୍ରତିରୋଧ ପ୍ରତିନିଧିତ୍ୱ କରେ ଜୀବନ୍ତ ତଥା ବର୍ଦ୍ଧମାନ କେତେ ଶକ୍ତିର ବନ୍ଧନ ଛିନ୍ନ କରିବା ଦିଗରେ ସଚେତନ ଅଥବା ଅଚେତନ ଉଦ୍ୟମର । ଏହା ଏକ ପ୍ରଗତିଶୀଳ ତଥା ଅନିବାର୍ଯ୍ୟ ମନୋବୃତ୍ତି; କିନ୍ତୁ ଏହା ଅତ୍ୟଧିକ ପରିମାଣରେ ଏକମୁହାଁ ଓ ନକାରାତ୍ମକ ହେବା ହେତୁରୁ ଆମ ଜୀବନର ଯାହା ବାସ୍ତବତା ତା'ର ବହୁତ କିଛି ଅଭାବ ସଙ୍ଗେ ବିହିତ ଯୋଗାଯୋଗ ରକ୍ଷାକରିପାରେନି । ନାନାବିଧ ଗୂଢ଼ଚେଷ୍ଟା, ବିଦ୍ୱେଷ ଓ ଆତଙ୍କ

ବହିର୍ଗତ ମନକୁ ଆଚ୍ଛନ୍ନ କରେ, ଗୋଷ୍ଠୀ ଓ ସମ୍ପ୍ରଦାୟର ମାନସପ୍ରତିମାମାନେ ରୂପ ପରିଗ୍ରହ କରନ୍ତି ଏବଂ ପ୍ରକୃତ ସମସ୍ୟା ଯାହା ତାହା ଜାଣିବାପାଇଁ ଆଗ୍ରହିତ ନ ହୋଇ କେତେକ ସ୍ଲୋଗାନ ଓ ନିର୍ଦ୍ଧାରିତ ଶବ୍ଦଗୁଚ୍ଛ ହୋଇଉଠେ ସମାଧାନର ମୂଳଦୁଆ । ଗୋଟାଏ ନିଷ୍ଫଳ ବିଦେଶୀ ଶାସନର ପରିସର ଭିତରେ କୌଣସି ଫଳପ୍ରଦ ସମାଧାନ ସମ୍ଭବ ନୁହେଁ ଏବଂ ବିଭିନ୍ନ ଜାତୀୟ ସମସ୍ୟା ସମାଧାନ ବିନା ବେଳକୁ ବେଳ ତୀବ୍ରତର ହୋଇଉଠେ । ଭାରତରେ ଆମେ ଏପରି ଏକ ଅବସ୍ଥାରେ ଆସି ଉପନୀତ ହେଲୁଣି ଯେବେ କୌଣସି ଆଂଶିକ ବ୍ୟବସ୍ଥା ଆମ ସମସ୍ୟାଗୁଡ଼ିକର ସମାଧାନ ଯୋଗାଇ ନପାରେ; ଗୋଟାଏ ଦିଗରେ କିଛି କରିଦିବା ଯଥେଷ୍ଟ ନୁହେଁ । ବହୁତ କିଛି ପ୍ରତିବନ୍ଧକ ଲଙ୍ଘନ କରି ସବୁ ଦିଗରେ ଅଗ୍ରଗତି କରିବା ଜରୁରି ହୋଇପଡ଼ିଛି । ଅନ୍ୟଥା, ଯେଉଁ ଅନର୍ଥ ସୃଷ୍ଟି ହେବ ତାହା ସବୁ କିଛି ବିପର୍ଯ୍ୟସ୍ତ କରିବ ।

ମୋଟାମୋଟି ଭାବରେ, ବିଶ୍ୱରେ ଯେପରି ଭାରତରେ ମଧ୍ୟ ସେପରି ଗୋଟାଏ ଦିଗରେ ଶାନ୍ତିପୂର୍ଣ୍ଣ ପ୍ରଗତି ଓ ରଚନାତ୍ମକ ଭାବନା ଏବଂ ଅନ୍ୟ ଦିଗରେ ବିଭେଦ ଓ ସମବର୍ଦ୍ଧମାନ ବିପର୍ଯ୍ୟୟ । ଦୁଇଟି ଦିଗ ଭିତରେ ଅଣନିଃଶ୍ୱାସୀ ପ୍ରତିଯୋଗିତା ଚାଲିଛି । ଆମର ପୂର୍ବାନୁରାଗ ବା ସ୍ୱଭାବ ଓ ଆମର ମାନସିକ ଗଢ଼ଣ ଅନୁସାରେ ଆମେ ଏଇ ଚିତ୍ରକୁ ଆଶାବାଦୀ କିମ୍ବା ନୈରାଶ୍ୟବାଦୀ ଦୃଷ୍ଟିରେ ଦେଖିପାରୁଁ । ଏ ବ୍ରହ୍ମାଣ୍ଡର ବିଧାତା ପରମେଶ୍ୱର ଏବଂ ଯେତେ ଯାହା ହେଲେ ବି ପରିଶେଷରେ ସତ୍ୟର ବିଜୟ ହିଁ ସୁନିଶ୍ଚିତ—ଏ ବିଶ୍ୱାସ ଯେଉଁମାନଙ୍କର ଅଛି, ସେମାନଙ୍କର ସୌଭାଗ୍ୟ ଯେ ସେମାନେ ଈଶ୍ୱରଙ୍କ ଉପରେ ନିର୍ଭର କରି ଦର୍ଶକ ଅଥବା ସହାୟକ ଭାବରେ ସନ୍ତୋଷ ଲାଭ କରିପାରନ୍ତି । କିନ୍ତୁ ଅନ୍ୟମାନଙ୍କୁ, ଭଲ ପାଇଁ ଆଶା ରଖି ଓ ମନ୍ଦ ପାଇଁ ପ୍ରସ୍ତୁତ ରହି, ନିଜ ନିଜ ଦୁର୍ବଳ କାନ୍ଧରେ ସେହି ବୋଝ ବହି ଚାଲିବାକୁ ପଡ଼ିବ ।

## ୯. ଧର୍ମ, ଦର୍ଶନ ଓ ବିଜ୍ଞାନ

ଭାରତକୁ ତା'ର ଅତୀତର ବହୁତ କିଛିରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହେବାକୁ ପଡ଼ିବ ଏବଂ ଦେଖିବାକୁ ହେବ ଅତୀତ ଯେପରି ତାର ବର୍ତ୍ତମାନକୁ ଅଭିଭୂତ ନ କରୁଛି । ଏହି ଅତୀତର ଶବଭାର ଆମ ଜୀବନର ଗତି ମନ୍ଥର କରୁଛି; କିନ୍ତୁ ଏହାର ଅର୍ଥ ନୁହେଁ ଯେ ଅତୀତର ଯାହା କିଛି ଶିବ, ଯାହା କିଛି ପ୍ରାଣବନ୍ତ ତାହା ପ୍ରତ୍ୟାଖ୍ୟାନ କରିବା । ଯେଉଁସବୁ ଆଦର୍ଶ ଆମ ଜାତିକୁ ଚଳମାନ କରିଛି, ଯୁଗେ ଯୁଗେ ଭାରତୀୟମାନେ ଯେଉଁସବୁ ସ୍ୱପ୍ନ ଦେଖିଚନ୍ତି, ଆମର ପ୍ରାଚୀନ ମନୀଷୀ ଓ ମହାତ୍ମାମାନଙ୍କ ପ୍ରଜ୍ଞା, ଆମ ପୂର୍ବପୁରୁଷଙ୍କ ପ୍ରସନ୍ନତା ତଥା ଜୀବନ ଓ ପ୍ରକୃତି-ପ୍ରେମ, ସେମାନଙ୍କର ଜିଜ୍ଞାସାର ତାତ୍ପର୍ଯ୍ୟ ଓ ମନଜଗତର କେତେ ଅପ୍ରତ୍ୟାଶିତ ଅଭିଜ୍ଞତା, ସେମାନଙ୍କ ଚିନ୍ତାର ସାହସିକତା; ସାହିତ୍ୟ, କଳା ଓ ସଂସ୍କୃତିରେ ସେମାନଙ୍କର ଗୌରବମୟ କୃତିତ୍ୱ ଓ ପ୍ରତିଭାର ଦୀପ୍ତି, ସତ୍ୟ, ସୁନ୍ଦର ଓ ମୁକ୍ତି ପ୍ରତି ସେମାନଙ୍କର ଅନୁରକ୍ତି, ସେମାନଙ୍କଦ୍ୱାରା ନିର୍ଣ୍ଣୀତ ଯେତେ ମୌଳିକ ମୂଲ୍ୟବୋଧ, ସେମାନଙ୍କର ଜୀବନ-

ରହସ୍ୟ ଜ୍ଞାନ, ଅନ୍ୟମତ — ଅନ୍ୟପଥ ସହିଷ୍ଣୁତା, ସେମାନଙ୍କର ସାଂସ୍କୃତିକ ବିକାଶ ଓ ଅନ୍ୟ ଜାତିମାନଙ୍କୁ ନିଜ ଭିତରେ ଲୀନ କରିନେବାର ସାମର୍ଥ୍ୟ ଏବଂ ସେସବୁର ସମନ୍ୱୟ ସାଧନ କରି ବିବିଧ ତଥା ମିଶ୍ରିତ ଏକ ସଂସ୍କୃତିର ବିକାଶସାଧନ ଆମେ କଦାପି କୌଣସିକାଳେ ଭୁଲି ଯାଇନପାରୁ । ଆମେ ଭୁଲି ନପାରୁ ସେହିସବୁ ଅକଳନ ଅଭିଜ୍ଞତା ଯାହା ଆମର ଜାତିକୁ ଗଢ଼ି ତୋଳିଛି ଆଉ ଆମର ମଗ୍ନଚେତନରେ ସଞ୍ଚିତ ଅଛି । ଆମେ ସେମାନଙ୍କୁ ଭୁଲିବୁନାହିଁ ଏବଂ ଆମର ମହାନ୍ ଐତିହ୍ୟ ନେଇ ଆମେ ଚିରକାଳ ଗର୍ବ ଅନୁଭବ କରିବୁ । ଭାରତ ଯଦି ସେମାନଙ୍କୁ ଭୁଲିଯାଏ ତାହା ଆଉ ଭାରତ ହୋଇ ରହିବନି ଏବଂ ଯାହାସବୁ ନେଇ ଭାରତ କହିଲେ ଆମେ ଗର୍ବ ଓ ଆନନ୍ଦ ଅନୁଭବ କରିଥାଉଁ, ଆମେ ସେଥିରୁ ବଞ୍ଚିତ ହୋଇପଡ଼ିବା ।

ଏଥିରୁ ଆମେ ନିଜକୁ ଅଲଗା କରିନେବାର ପ୍ରଶ୍ନ ନାହିଁ । କିନ୍ତୁ ଯୁଗ-ଯୁଗର ଧୂଳି ଓ ମଳିନତା ଯାହା ତାକୁ ଆବୃତ କରିଚି ଏବଂ ତାର ଅଭ୍ୟନ୍ତରୀଣ ସୌନ୍ଦର୍ଯ୍ୟ ଓ ତାତ୍ପର୍ଯ୍ୟ ଲୁକ୍କାୟିତ କରିଚି, ସେହିସବୁ ଅନାବଶ୍ୟକ ତଥା ବିକୃତ ଅଂଶ ଯାହା ତାର ଭାବନାକୁ ଜଡ଼ ଓ ଭ୍ରଷ୍ଟ କରିଚି, ତାକୁ ଶିକ୍ଳ-ବନ୍ଧନୀରେ ଆବଦ୍ଧ କରି ତାର ପ୍ରଗତି ବ୍ୟାହତ କରିଚି, ସେସବୁ ଆମକୁ ଅବଶ୍ୟ ପ୍ରତ୍ୟାଖ୍ୟାନ କରିବାକୁ ପଡ଼ିବ । ସେସବୁ ଅନାବଶ୍ୟକ ତଥା ବିକୃତ ଅଂଶ ବାଦ ଦେଇ ଆମକୁ ପୁନର୍ବାର ସେହି ପ୍ରାଚୀନ ପ୍ରଜ୍ଞାର ସାର ଗ୍ରହଣ କରିବାକୁ ହେବ ଏବଂ ଆମର ବର୍ତ୍ତମାନର ପରିସ୍ଥିତି ପକ୍ଷରେ ତାର ଉପଯୋଗିତା ସୃଷ୍ଟି କରିବାକୁ ପଡ଼ିବ । ଆମକୁ ମୁକ୍ତ ହେବାକୁ ପଡ଼ିବ ପାରମ୍ପରିକ ଚିନ୍ତାର ଓ ଆଚରଣର ବନ୍ଧନରୁ; କାରଣ ଅତୀତରେ ତାହା ଆମର ଯେତେ କଲ୍ୟାଣ କରିଥାଉ ନା କାହିଁକି ଏବଂ ତାହା ଯେତେ ଭଲ ହୋଇନା କାହିଁକି, ଆଜି ପାଇଁ ତାର କିଛି ତାତ୍ପର୍ଯ୍ୟ ନାହିଁ । ମାନବଜାତିର ସବୁ କିଛି କୃତିତ୍ୱ ଆମକୁ ଆପଣାର କରିନେବାକୁ ପଡ଼ିବ ଏବଂ ପୂର୍ବବର୍ତ୍ତୀ ଯୁଗମାନଙ୍କ ଅପେକ୍ଷା ଆଜି ଯାହା ଅଧିକତର ଉଦ୍ଦୀପକ ମନେହେଉଥାଏ, ମଣିଷର ସେହି ଉଦ୍ଦୀପକ ଦୁଃସାହସିକ କର୍ମରେ ଅନ୍ୟମାନଙ୍କ ସଙ୍ଗେ ମିଳିତ ହେଲାବେଳେ ଆମେ ଏ କଥା ହୃଦୟଙ୍ଗମ କରିଥିବା ଦରକାର ଯେ ଏ ଦିଗରେ କୌଣସି ଜାତୀୟ ସୀମାରେଖା ଅଥବା ପୁରାତନ ବିଭେଦର ପ୍ରାଚୀର ପ୍ରତିବନ୍ଧକ ହୋଇ ନପାରେ ଏବଂ ଯାହା କିଛି କୃତିତ୍ୱ ହାସଲ ହେବ, ତାହା ସାମୂହିକ ଭାବରେ ମଣିଷଜାତିର । ଯାହା ଜୀବନକୁ ତାତ୍ପର୍ଯ୍ୟ ଦେଇଥାଏ, ସେହି ସତ୍ୟ, ସୌନ୍ଦର୍ଯ୍ୟ ଓ ମୁକ୍ତି ପାଇଁ ଆମକୁ ପୁନର୍ବାର ଗଭୀର ଅନୁରାଗ ସୃଷ୍ଟି କରିବାକୁ ପଡ଼ିବ ଏବଂ ନୂତନ କରି ପୁଣି ସେହି ଗତିଶୀଳ ଦୃଷ୍ଟିଭଙ୍ଗୀ ଓ ଦୁଃସାହସର ଉଦ୍ଦୀପନା ବିକଶିତ କରିବାକୁ ପଡ଼ିବ; ଯାହା ଅତୀତ ଯୁଗମାନଙ୍କରେ ଆମର କେତେ ଜିଜ୍ଞାସୁ ପ୍ରାଣକୁ ଚରମ ସାର୍ଥକତା ଅର୍ପଣ କଲା ଏବଂ ଯେଉଁମାନେ ଏହି ସବୁ ଦୃଢ଼ ତଥା ସ୍ଥାୟୀ ଭିତ୍ତି ଉପରେ ଆମର ଇମାରତ ନିର୍ମାଣ କରିପାରିଲେ । ଆମେ ଏକ ପ୍ରାଚୀନ ଜାତି ଏବଂ ମାନବ ଇତିହାସ ଓ ଉଦ୍ୟମର ଅରୁଣ ପ୍ରଭାତ ପର୍ଯ୍ୟନ୍ତ ଆମର ସ୍ମୃତି ବିସ୍ତୃତ; କିନ୍ତୁ ଆଜି ଯୌବନର ସେହି ଅଦମ୍ୟ ଉଦ୍ଦୀପନା ଓ ଆନନ୍ଦ ଧରି ଏବଂ ଭବିଷ୍ୟତ ଉପରେ ତାର ଆସ୍ଥା

ଦୂରକରି, ବର୍ତ୍ତମାନ କାଳର ସ୍ୱର ସଙ୍ଗେ ସ୍ୱର ମିଳାଇ, ଆମକୁ ପୁନର୍ବାର ନବଯୌବନ ଲାଭକରିବାକୁ ହେବ । ସତ୍ୟ ହିଁ ଚରମ ବାସ୍ତବତା—ସେପରି ଯଦି କିଛି ଥାଏ, ତାହାହେଲେ ତାହା ଅକ୍ଷୟ, ଅବ୍ୟୟ ଓ ଅପରିବର୍ତ୍ତନୀୟ ହୋଇଥିବ; କିନ୍ତୁ ସେହି ଅନନ୍ତ, ସନାତନ ତଥା ଅପରିବର୍ତ୍ତନୀୟ ସତ୍ୟକୁ ମଣିଷର ସୀମିତ ମନ ସମ୍ପୂର୍ଣ୍ଣରୂପରେ ଉପଲବ୍ଧି କରିବା ସମ୍ଭବ ନୁହେଁ । ବେଶି ହେଲେ, ସେହି ମନର ବିକାଶର ସ୍ତର ଓ ସେହି ଯୁଗର ପ୍ରଚଳିତ ଆଦର୍ଶବାଦ ଅନୁସାରେ, ଦେଶ ଓ କାଳ ଦ୍ୱାରା ସୀମିତ, ସେହି ସତ୍ୟର କିଯଦଂଶ ଧାରଣା କରିପାରେ ମାତ୍ର । ମନ ଯେତେ ବିକଶିତ ହୁଏ ଓ ତାର ପରିସର ଯେତେ ବୃଦ୍ଧି କରେ, ଆଦର୍ଶବାଦ ଯେତେ ପରିବର୍ତ୍ତିତ ହୁଏ ଓ ସେହି ସତ୍ୟର ଅଭିବ୍ୟକ୍ତି ନିମନ୍ତେ ଯେତେ ନବ ନବ ପ୍ରତୀକ ବ୍ୟବହୃତ ହୁଏ, ତାର ତାତ୍ପର୍ଯ୍ୟରେ ପରିବର୍ତ୍ତନର ସ୍ପର୍ଶ ଲାଗି ନପାରିଲେ ସୁଦ୍ଧା ନୂତନ କେତେ ବିଭବ ଆଲୋକିତ ହୋଇଉଠେ । ଅତଏବ, ସତ୍ୟର ସନ୍ଧାନ ଅବ୍ୟାହତ ରଖିବା ସଙ୍ଗେ ସଙ୍ଗେ ତାକୁ ସେପରି ନୂତନ ରୂପରେ ନୂତନ ତେଜ ଦେଇ ବିକଶିତ କରିବାକୁ ପଡ଼ିବ, ଯାହା ମଣିଷର ବୋଧଗମ୍ୟ ଭାବରେ ତାର ଚିନ୍ତାର ବିସ୍ତୃତି ଓ ମାନବ-ଜୀବନର ବିକାଶ ସଙ୍ଗେ ସଙ୍ଗତି ରକ୍ଷା କରିପାରିବ । ସେତେବେଳେ ଯାଇ, ତାର ଅଶାନ୍ତ ଆକାଂକ୍ଷା ପୂରଣ କରି ଏବଂ ବର୍ତ୍ତମାନ ଓ ଭବିଷ୍ୟତ ଉଭୟ କାଳର ଦିଗ ନିର୍ଦ୍ଦେଶ କରି, ମାନବଜାତି ପକ୍ଷରେ ତାହା ଗୋଟାଏ ଜୀବନ୍ତ-ସତ୍ୟ ହୋଇ ଉଠିପାରେ ।

କିନ୍ତୁ ସେହି ସତ୍ୟର ଗୋଟିଏ ବିଭବ ସୁଦ୍ଧା ଅତୀତର କେଉଁ ଅଯୌକ୍ତିକ ବିଶ୍ୱାସ ଦ୍ୱାରା ଯଦି ଜଡ଼ତା ପ୍ରାପ୍ତ ହୁଏ, ତାହାହେଲେ ତା'ର ବୃଦ୍ଧି ଓ ବିକାଶର ଇତିଶ୍ରୀ ଘଟେ ଏବଂ ତାହା ମାନବଜାତିର ପରିବର୍ତ୍ତନଶୀଳ ଆବଶ୍ୟକତା ପୂରଣ ଦିଗରେ ଅନ୍ତରାୟ ହୋଇ ଉଠେ । ତା'ର ଅନ୍ୟାନ୍ୟ ବିଭବ ଗୁପ୍ତ ରହିଯାଏ ଏବଂ ପରବର୍ତ୍ତୀ ଯୁଗର ସବୁ କିଛି ଜରୁରି ସମସ୍ୟାର ସମାଧାନ ଯୋଗାଇବାରେ ବିଫଳ ହୁଏ । ତାହା ଆଉ ଗତିଶୀଳ ରହିପାରେ ନାହିଁ; ଗତିହୀନ ହୋଇପଡ଼େ । ତାର ଜୀବନପ୍ରଦ ପ୍ରେରଣା ଲୁପ୍ତ ହୁଏ ଏବଂ ଗୋଟାଏ ରୀତିସର୍ବସ୍ୱ, ଅପ୍ରଚଳିତ ଚିନ୍ତାଭାବରେ ମଣିଷ ମନର ଓ ମାନବ ସମାଜର ପ୍ରଗତି କ୍ଷୁଣ୍ଣ କରେ । ପ୍ରକୃତପକ୍ଷେ, ଅତୀତର ସେହି ଯୁଗରେ ଯେବେ ଏହା ବଢ଼ିଉଠିଲା ଓ ସେ ଯୁଗର ଭାଷା ଓ ପ୍ରତୀକରେ ଶୋଭା ପାଇଲା, ସେତେବେଳେ ଯେତେ ପରିମାଣରେ ଏହା ଉପଲବ୍ଧି କରି ହୋଇଥିଲା, ଆଜି ବୋଧହୁଏ ସେପରି କରିବା ସମ୍ଭବ ହୋଉନି; କାରଣ ଅନ୍ୟ ଏକ ଯୁଗରେ ତା'ର ପ୍ରକରଣ ଭିନ୍ନ ହୋଇଯାଇଛି, ମାନସିକ ବାତାବରଣ ପରିବର୍ତ୍ତିତ ହୋଇଛି, ନୂତନ କେତେ ସାମାଜିକ ଆଚାର ଓ ପ୍ରଥା ବଢ଼ିଉଠିଛି ଏବଂ ସେହି ପ୍ରାଚୀନ ଲେଖାର ତାତ୍ପର୍ଯ୍ୟ ତ ଦୂରର କଥା, ଭାବ ବୁଝିବା ବି ବହୁଧା କଷ୍ଟକର ହୋଇ ଉଠୁଛି । ଅଧିକନ୍ତୁ, ଶ୍ରୀଅରବିନ୍ଦଙ୍କ କହିବା ପ୍ରକାରେ ଯେକେଉଁ ସତ୍ୟକୁ, ତାହା ଯେତେ ଯଥାର୍ଥ ହୋଉନା କାହିଁକି, ଅନ୍ୟାନ୍ୟ ସତ୍ୟଠାରୁ ବିଚ୍ଛିନ୍ନ କରିନେଲେ ତାହା ସୀମିତ ଓ ସମାପ୍ତ ଭାବରେ ବୁଦ୍ଧିକୁ ବନ୍ଧନରେ ପକାଇବା ଫାନ୍ଦରେ ପରିଣତ ହୁଏ ଓ ଭୁଲ୍ ଧାରଣାର ବଶବର୍ତ୍ତୀ କରାଏ; କାରଣ ପ୍ରତ୍ୟେକ ସତ୍ୟ ବସ୍ତୁତଃ ବସ୍ତୁପ୍ରାନ୍ତ ନକ୍ସାର ଗୋଟିଏ ଗୋଟିଏ

ସ୍ୱପ୍ନ ଭଲ ଏବଂ କୌଣସି ଗୋଟିଏ ସ୍ୱପ୍ନକୁ ସେଥିରୁ ଅଲଗା କରିବା ଉଚିତ ନୁହେଁ ।

ମାନବଜାତିର ବିକାଶରେ ବିଭିନ୍ନ ଧର୍ମବିଶ୍ୱାସ ପ୍ରଭୂତ ଭାବରେ ସହାୟକ ହୋଇଛି; ମାନବ-ଜୀବନର ଯାହା ନିମନ୍ତେ ଧର୍ମ ନାନା ମୂଲ୍ୟବୋଧ ଓ ମାନଦଣ୍ଡ ସ୍ଥାପନ କରିବା ସଙ୍ଗେ ସଙ୍ଗେ କେତେକ ନୀତି ନିର୍ଦ୍ଧାରଣ କରିଛି । କିନ୍ତୁ ଯେତେ ଯାହା ଭଲ କଲେ ସୁଦ୍ଧା, ଧର୍ମ ସର୍ବଦା ଚେଷ୍ଟା କରିଛି କେତେକ ଧରାବନ୍ଧା ଧରଣରେ ଓ ରୂଢ଼ିରେ ସତ୍ୟକୁ ବନ୍ଦ କରିବା ପାଇଁ ଏବଂ ସେପରି କେତେ ଆଚାର ଓ ଅଭ୍ୟାସ ଉତ୍ସାହିତ କରିଛି ଯାହା ତାତ୍ପର୍ଯ୍ୟ ହରାଇ କେବଳ ନିରର୍ଥକ ନିତ୍ୟକର୍ମରେ ପରିଣତ ହେଲାଣି । ଯେଉଁ ଅଜ୍ଞାତ ଶକ୍ତି ଦ୍ୱାରା ମଣିଷ ପରିବେଷ୍ଟିତ, ତାର ରହସ୍ୟ ସମ୍ପର୍କରେ ତାକୁ ଆଚ୍ଛନ୍ନିତ ଓ ଅଭିଭୂତ କଲାବେଳେ, ଧର୍ମ ସେହି ଅଜ୍ଞାତର ଜ୍ଞାନଲାଭ ଦିଗରେ କେବଳ ନୁହେଁ, ବରଂ ସାମାଜିକ ଉଦ୍ୟମ ଦିଗରେ କି ପ୍ରତିବନ୍ଧକ ସୃଷ୍ଟି ହୋଇପାରେ ତାହା ଜାଣିବାର ଉଦ୍ୟମକୁ ମଧ୍ୟ ନିରୁତ୍ସାହିତ କରିଥାଏ । ଧର୍ମ ମଣିଷର ଜିଜ୍ଞାସା ଓ ଭାବୁକତା ଉତ୍ସାହିତ କରିବା ପରିବର୍ତ୍ତେ ପ୍ରକୃତି ନିକଟରେ, ପ୍ରତିଷ୍ଠିତ ଧର୍ମସଂସ୍ଥା ନିକଟରେ, ପ୍ରଚଳିତ ସାମାଜିକ ବ୍ୟବସ୍ଥା ତଥା ସ୍ଥିତାବସ୍ଥା ନିକଟରେ ଆତ୍ମସମର୍ପଣର ଏକ ଦର୍ଶନ ପ୍ରଚାର କରିଛି । ଗୋଟାଏ ଅପ୍ରାକୃତ ଶକ୍ତି ସବୁ କିଛିର ବିଧାତା—ଏ ବିଶ୍ୱାସ ସାମାଜିକ ସ୍ତରରେ କେତେ ଦାୟିତ୍ୱହୀନତା ପ୍ରସାରିତ କରିଛି ଏବଂ ଭାବୋଚ୍ଛ୍ୱାସ ଓ ଭାବାବେଗ ଯୁକ୍ତିଯୁକ୍ତ ବିଚାର ଓ ଜିଜ୍ଞାସାର ସ୍ଥାନ ଅଧିକାର କରିଛି । ଧର୍ମ ତାର ସୁସ୍ପଷ୍ଟ ମୂଲ୍ୟବୋଧଦ୍ୱାରା ଅଗଣିତ ମଣିଷର ସାନ୍ତ୍ୱନାର କାରଣ ହୋଇଥିଲେ ସୁଦ୍ଧା ଓ ସମାଜକୁ ଦାୟିତ୍ୱ ଅର୍ପଣ କରିଥିଲେ ସୁଦ୍ଧା ମାନବ-ସମାଜରେ ନିହିତ ପରିବର୍ତ୍ତନ ଓ ପ୍ରଗତିର ପ୍ରବଣତା କ୍ଷୁଣ୍ଣ କରିଛି । ପୃଥିବୀର ସବୁ ଧର୍ମ ପ୍ରତି ଏହା ପ୍ରଯୁଜ୍ୟ ।

ଏଥିଭିତରୁ ଅନେକ କିଛି ଲୁକ୍‌କାୟିତ ବିପଦ ଏଡ଼ାଇ ଦର୍ଶନ ଭାବୁକତା ଓ ଜିଜ୍ଞାସା ଉତ୍ସାହିତ କରିଛି । କିନ୍ତୁ ମଣିଷ ତାର ଦୈନନ୍ଦିନ ନାନା ସମସ୍ୟାରୁ ସମ୍ପୂର୍ଣ୍ଣଭାବରେ ବିଚ୍ଛିନ୍ନ, ଜୀବନର ଅନ୍ତିମ ଉଦ୍ଦେଶ୍ୟ ଉପରେ ଚିନ୍ତାମଗ୍ନ ଏବଂ ମଣିଷର ଜୀବନ ସଙ୍ଗେ ତାର ଯୋଗାଯୋଗ ସ୍ଥାପନ ପ୍ରତି ଉଦାସୀନ; ଦର୍ଶନ ସାଧାରଣତଃ ତାର ନିଜସ୍ୱ ଏକ ପରିସର ଭିତରେ ରହିଆସିଛି । ଯୁକ୍ତି ଓ ତର୍କ ତାର ପଥପ୍ରଦର୍ଶକ ଭାବରେ ନାନା ଦିଗରେ ତାକୁ ବହୁ ଦୂରକୁ ନେଇ ପାରିଛନ୍ତି, ସନ୍ଦେହ ନାହିଁ; କିନ୍ତୁ ସେହି ତର୍କ ଆବଶ୍ୟକତାଧିକ ଭାବରେ ମନର ବସ୍ତୁ ହୋଇପଡ଼ିବା ଫଳରେ ବାସ୍ତବତା ସଙ୍ଗେ ତାର କୌଣସି ସମ୍ପର୍କ ରହିପାରିଲା ନାହିଁ ।

ଅନ୍ତିମ ଉଦ୍ଦେଶ୍ୟକୁ ଉପେକ୍ଷା କରି ବିଜ୍ଞାନ ମନୋନିବେଶ କଲା କେବଳ ତଥ୍ୟ ଉପରେ । ଫଳତଃ, ଗତାନୁଗତିକତା ଭିତରୁ ଲମ୍ଫ ଦେଇ ଦୁନିଆ ବହୁତ ଦୂର ଆଗେଇଗଲା, ଗୋଟାଏ ଚକମକ ସଭ୍ୟତା ଗଢ଼ିଉଠିଲା, ଜ୍ଞାନର ବିକାଶ ନିମନ୍ତେ ବହୁ ମାର୍ଗ ଉନ୍ମୁକ୍ତ ହେଲା ଏବଂ ମଣିଷ ଏତେଭଳି ଶକ୍ତିଶାଳୀ ହୋଇ ଉଠିଲା ଯେ ଦିନେ ନା ଦିନେ ସେ ଅବଶ୍ୟ ପ୍ରକୃତିର ନିୟାମକ ହେବ—ଏ କଥା ପ୍ରଥମ ଥର ପାଇଁ ଧାରଣା କରିବା ସମ୍ଭବ ହେଲା । ରାସାୟନିକ, ଭୌତିକ ତଥା ଅନ୍ୟ ବହୁବିଧ ମାର୍ଗରେ ପୃଥିବୀର ଚେହେରା

ବଦଳାଇ ମଣିଷ ଗୋଟାଏ ଭୂତାତ୍ତ୍ୱିକ ଶକ୍ତି ହୋଇଉଠିଲା କହିଲେ ଚଳେ; କିନ୍ତୁ ଠିକ୍ ଯେଉଁ ସମୟରେ ଏ ପୃଥିବୀକୁ ତାର ରୁଚି ଅନୁସାରେ ଗଢ଼ିବାର ଶକ୍ତି ତାର ହାତମୁଠାରେ ରହିଲା ବୋଲି ସେ ମନେକଲା; ତାକୁ ବୋଧହେଲା ବଡ଼ କିଛି ଗୋଟାଏ ଅଭାବ ଯେପରି ରହିଯାଉଛି । ଏହି ମୁହୂର୍ତ୍ତିର ଉଦ୍ଦେଶ୍ୟ କିମ୍ବା ଅନ୍ତିମ ଉଦ୍ଦେଶ୍ୟ ତାର କ'ଣ, ସେ ଜ୍ଞାନ ତାର ନଥିଲା; କାରଣ ଜୀବନର କୌଣସି ଉଦ୍ଦେଶ୍ୟ ସମ୍ପର୍କରେ ହେଲେ ବିଜ୍ଞାନ ଆଲୋକପାତ କରିନି । ପ୍ରକୃତି ଉପରେ ନିୟନ୍ତ୍ରଣ ପ୍ରୟୋଗ କରିବା ଶକ୍ତି ହାସଲ କରିଥିଲେ ସୁଦ୍ଧା ନିଜକୁ ନିୟନ୍ତ୍ରଣ କରିବା ଶକ୍ତି ମଣିଷର ନାହିଁ । ଅତଏବ, ସେ ଯେଉଁ ଦାନବ ସୃଷ୍ଟି କଲା, ତାହା କ୍ଷିପ୍ରଭାବରେ ତାକୁ ଆସି ଘୋଟିଗଲା । ଜୀବବିଦ୍ୟା, ମନସ୍ତତ୍ତ୍ୱ ଓ ଏତାଦୃଶ ବିଜ୍ଞାନ କ୍ଷେତ୍ରରେ ନବ ନବ ପ୍ରକାଶ ଏବଂ ଜୀବବିଦ୍ୟା ତଥା ପଦାର୍ଥ-ବିଜ୍ଞାନର ବିଶଦ ବ୍ୟାଖ୍ୟା ହୁଏତ, ପୂର୍ବାପେକ୍ଷା ଅଧିକ ଭାବରେ, ନିଜକୁ ବୁଝିବା ଦିଗରେ ଓ ନିଜକୁ ନିଜ ଆୟତ୍ତରେ ରଖିବା ଦିଗରେ, ମଣିଷକୁ ସାହାଯ୍ୟ କରିପାରେ କିମ୍ବା ଏପରି ବି ହୋଇପାରେ, ଏହିବିଧ ଅଗ୍ରଗତି ମଣିଷ ଜୀବନକୁ ଯଥେଷ୍ଟ ଭାବରେ ପ୍ରଭାବିତ କରିବା ପୂର୍ବରୁ ମଣିଷ ହୁଏତ ତାର ଏଇ ହାତଗଢ଼ା ସଭ୍ୟତା ଧୂଳିସାତ୍ କରି ବସିବ ଏବଂ ପୁଣି ତାକୁ ମୂଳରୁ ଆରମ୍ଭ କରିବାକୁ ପଡ଼ିବ ।

ଅଗ୍ରଗତି ନିମନ୍ତେ ସୁଯୋଗ ପାଇଲେ ବିଜ୍ଞାନ ଯେଉଁଠି ଯାଇ ଅଟକିବ ତାର ସୀମା ଧାର୍ଯ୍ୟ କରିବା ସହଜ ନୁହେଁ । ତଥାପି, ନାନାବିଧ ମାନସିକ ଅଭିଜ୍ଞତା ପ୍ରତି ବୀକ୍ଷଣର ବିଜ୍ଞାନସମ୍ମତ ପ୍ରଣାଳୀ ଯେହେତୁ ପ୍ରଯୁଜ୍ୟ ନୁହେଁ, ଅଜ୍ଞାତର ଯେଉଁ ମହାସାଗର ଆମକୁ ବେଷ୍ଟନ କରି ରହିଛି ତାର ରହସ୍ୟ ଭେଦ କରିବା ବିଜ୍ଞାନ ପକ୍ଷରେ ସମ୍ଭବ ହୋଇ ନପାରେ । ଦର୍ଶନ ସାହାଯ୍ୟରେ ଆଉ କିଛି ବାଟ ଆଗେଇଯାଇ ସେଇ ମହାସାଗର ଲଙ୍ଘନର ଉଦ୍ୟମ ବିଜ୍ଞାନ ହୁଏତ କରିପାରେ । କିନ୍ତୁ ମାନସିକ ଜିଜ୍ଞାସାର ସନ୍ତୋଷବିଧାନ ନିମନ୍ତେ ବିଜ୍ଞାନ ଓ ଦର୍ଶନ ଯେବେ ଅସମର୍ଥ ହେବ, ମଣିଷର ନିର୍ଭର କରିବାକୁ ପଡ଼ିବ ତାର ଅନ୍ୟବିଧ ବୋଧଶକ୍ତି ଉପରେ । କାରଣ, ଯେପରି ଜଣାଯାଏ, ଗୋଟାଏ ଅନ୍ତିମ ସୀମା ଅବଶ୍ୟ ରହିଛି ଯାହାକୁ ଅତିକ୍ରମ କରି ଆଜିର ମଣିଷ ମନର ବୋଧଶକ୍ତି ଆଉ ଆଗେଇ ଯାଇନପାରେ । ପାସ୍କାଲ୍ କହନ୍ତି, 'ତାର ଜାଣିରଖିବା ଉଚିତ ଯେ ବସ୍ତୁରାଜିର ବହିର୍ଭୂତ, ଅଜ୍ଞାତ ବସ୍ତୁର ଅନ୍ତ ନାହିଁ । ସେ ଭିତରକୁ ଯଦି ପ୍ରବେଶ କରି ନପାରୁଛି, ତାର କିଛି ମହତ୍ତ୍ୱ ନାହିଁ ।'

ଯୁକ୍ତି ଓ ବୈଜ୍ଞାନିକ ପ୍ରଣାଳୀର ଏହିସବୁ ଅସାମର୍ଥ୍ୟ ଉପଲବ୍ଧି କରି ସୁଦ୍ଧା ଆମକୁ ଆମର ସମସ୍ତ ଶକ୍ତି ପ୍ରୟୋଗ କରି ସେଥି ଉପରେ ନିର୍ଭର କରିବାକୁ ପଡ଼ିବ; କାରଣ ସେହି ଦୃଢ଼ ଭିତ୍ତି ଓ ପୃଷ୍ଠଭୂମି ବିନା କୌଣସି ପ୍ରକାର ସତ୍ୟ କିମ୍ବା ବାସ୍ତବତା ଆମେ ଉପଲବ୍ଧି କରିନପାରୁଁ । କିଛି ନବୁଝି, ଅସ୍ତିତ୍ୱର ରହସ୍ୟ ଭେଦ କରିବା ଦିଗରେ ବିଫଳ ଉଦ୍ୟମ କରି, ଅସହାୟ ଭାବରେ 'ନ ମାରଂ ନ ପାରଂ' ହେବା ଅପେକ୍ଷା ସତ୍ୟର ଗୋଟାଏ ଅଂଶ ପଛେ ହେଉ ତାହା ବୋଧ କରି ଆମ ଜୀବନରେ ପ୍ରୟୋଗ କରିବା ଶ୍ରେୟସ୍କର । ଆଜିର ଯୁଗରେ ସବୁ ଦେଶ ଓ ଜାତି ନିମନ୍ତେ ବିଜ୍ଞାନର ବହୁମୁଖୀ ପ୍ରୟୋଗ ଅବଶ୍ୟମ୍ଭାବୀ ଓ

ଅନିବାର୍ଯ୍ୟ । କିନ୍ତୁ ବିଜ୍ଞାନର ପ୍ରୟୋଗ ଅପେକ୍ଷା ଆହୁରି ଅଧିକ କିଛି ଆମର ଆବଶ୍ୟକ । ବୈଜ୍ଞାନିକ ଅଭିମୁଖ୍ୟ, ବିଜ୍ଞାନସୁଲଭ ଦୁଃସାହସିକ ଅଥଚ ସମାଲୋଚନାତ୍ମକ ମନୋବୃତ୍ତି ଓ ମିଜାଜ ସତ୍ୟ ଓ ନୂତନ ଜ୍ଞାନର ସନ୍ଧାନ, ପ୍ରୟୋଗ-ପରୀକ୍ଷା ବିନା କୌଣସି କଥା ଗ୍ରହଣ କରିବା ପାଇଁ ପରାଂମୁଖ ହେବା, ନୂତନ ପ୍ରମାଣ ଲାଭ ହେଲେ ପୂର୍ବବର୍ତ୍ତୀ ଯାହା କିଛି ସିଦ୍ଧାନ୍ତ ପରିବର୍ତ୍ତନ କରି ପାରିବାର ସାମର୍ଥ୍ୟ, ପୂର୍ବକଳ୍ପିତ କୌଣସି ତତ୍ତ୍ୱ ଅପେକ୍ଷା ନିରୀକ୍ଷଣ ଦ୍ୱାରା ଆହରିତ ତଥ୍ୟ ଉପରେ ନିର୍ଭରତା, କଠୋର ମାନସିକ ଶୃଙ୍ଖଳା—ଏସବୁ ଆବଶ୍ୟକ ବିଜ୍ଞାନର ପ୍ରୟୋଗ ପାଇଁ କେବଳ ନୁହେଁ, ଆବଶ୍ୟକ ଜୀବନ ପାଇଁ ଏବଂ ତାର ବହୁତ କିଛି ସମସ୍ୟାର ସମାଧାନ ପାଇଁ । ଆଜି ଯେପରି ଦେଖାଯାଉଚି, ବହୁ ବୈଜ୍ଞାନିକ ଯେଉଁମାନେ ବିଜ୍ଞାନ ନାମରେ ଶପଥ ନେଇଥାନ୍ତି, ସେମାନଙ୍କର ନିର୍ଦ୍ଦିଷ୍ଟ କ୍ଷେତ୍ର ବାହାରେ ତାହା ଭୁଲି ବସୁଛନ୍ତି । ବୈଜ୍ଞାନିକ ଅଭିମୁଖ୍ୟ ଓ ମିଜାଜ ଜୀବନର ଏକ ମାର୍ଗ, ଚିନ୍ତାର ଏକ ପ୍ରକ୍ରିୟା ଏବଂ ମଣିଷଜାତି ସଙ୍ଗେ ମିଳାମିଶି କାର୍ଯ୍ୟ କରିବାର ଏକ ପ୍ରଣାଳୀ ହେବା ଉଚିତ । ଏହା ଏକ ବଡ଼ ଶୃଙ୍ଖଳା ଓ ଆଦର୍ଶ ଏବଂ ଏଥିରେ ସନ୍ଦେହ ନାହିଁ, ଆମ ଭିତରୁ ଅତି ଅଳ୍ପସଂଖ୍ୟକ ଲୋକ କେବଳ ଆଂଶିକ ସଫଳତା ସତ୍ତ୍ୱେ ଏପରି ଭାବରେ ନିଜର କ୍ରିୟାକର୍ମ ପରିଚାଳିତ କରି ପାରନ୍ତି । କିନ୍ତୁ ଦର୍ଶନ ଓ ଧର୍ମ ଆମକୁ ଯେଉଁସବୁ ନିର୍ଦ୍ଦେଶ ଦେଇଚି, ସେଥି ପ୍ରତି ଏହି ସମାଲୋଚନା ଅଧିକତର ଭାବରେ ପ୍ରଯୁଜ୍ୟ । ମଣିଷ କେଉଁ ପଥ ଦେଇ ଯାତ୍ରା କରିବ ବୈଜ୍ଞାନିକ ମିଜାଜ ସେହି ପଥ ସୂଚିତ କରେ । ବୈଜ୍ଞାନିକ ମିଜାଜ ହେଉଚି ସ୍ୱାଧୀନ ମଣିଷର ମିଜାଜ । ଆମକୁ କୁହାଯାଉଚି ଯେ ଆମେ ଜୀବନ ଯାପନ କରୁଚୁ ଗୋଟାଏ ବୈଜ୍ଞାନିକ ଯୁଗରେ; କିନ୍ତୁ ପୃଥିବୀର ଯେକେଉଁ ଜାତି ହୁଅନ୍ତୁ ନା କାହିଁକି, ଏପରିକି ସେମାନଙ୍କର ନେତୃବର୍ଗଙ୍କ ଭିତରେ ମଧ୍ୟ ଏହି ମିଜାଜର ପ୍ରମାଣ କ୍ୱଚିତ୍ ଦେଖିବାକୁ ମିଳେ ।

ବିଜ୍ଞାନ କାରବାର କରେ ଅନନ୍ୟସାପେକ୍ଷ ତଥା ଯଥାର୍ଥ ଜ୍ଞାନର ଇଲାକା ନେଇ; କିନ୍ତୁ ସେଥିରୁ ଯେଉଁ ମିଜାଜ ପ୍ରସୁତ ହୁଏ ତାହା ସେହି ଇଲାକାର ସୀମା ଅତିକ୍ରମ କରେ । ସତ୍ୟୋପଲବ୍ଧି ଏବଂ ଶିବ ଓ ସୁନ୍ଦରର ଚିନ୍ତନ ମଣିଷର ଚରମ ଉଦ୍ଦେଶ୍ୟ ବୋଲି କୁହାଯାଇପାରେ । ବିଷୟମୁଖୀ ଜିଜ୍ଞାସାର ବୈଜ୍ଞାନିକ ପ୍ରଣାଳୀ ଏ ସମସ୍ତ ପ୍ରତି ପ୍ରଯୁଜ୍ୟ ନୁହେଁ ଏବଂ ଜୀବନ ପକ୍ଷରେ ଅପରିହାର୍ଯ୍ୟ ବହୁତ କିଛି ଏହାର ପରିସର ବାହାରେ ଥିବା ଭଳି ପ୍ରତୀତ ହୁଏ । ତାହା ହେଉଚି କଳା ଓ କବିତା ପ୍ରତି ସମ୍ବେଦନଶୀଳତା, ସୌନ୍ଦର୍ଯ୍ୟଜନିତ ସୃଷ୍ଟି ପ୍ରକ୍ଷୋଭ, ସଦ୍‌ଗୁଣ ପ୍ରତି ଆଭ୍ୟନ୍ତରିକ ସ୍ୱୀକୃତି । ଉଦ୍‌ଭିଦବିଦ୍ୟାବିତ୍ ଓ ପ୍ରାଣୀବିଜ୍ଞାନବିତ୍ ପ୍ରକୃତିର ସୌନ୍ଦର୍ଯ୍ୟ ଓ ମୋହିନୀଶକ୍ତି କେବେହେଲେ ହୁଏତ ଅନୁଭବ ନକରିପାରେ; ସମାଜବିଜ୍ଞାନୀର ମାନବଜାତି ପ୍ରତି ଆଦୌ ସ୍ନେହ ଅନୁରକ୍ତି ହୁଏତ ନ ରହିପାରେ; ତଥାପି ଆମେ ଯେବେ ବୈଜ୍ଞାନିକ ପ୍ରଣାଳୀ ପକ୍ଷରେ ଅଲଭ୍ୟ ସେହିସବୁ ପ୍ରଦେଶରେ ଉପନୀତ ହେଉଁ ଏବଂ ଦର୍ଶନର ପୀଠ ସେହିସବୁ ପ୍ରଦେଶର ପର୍ବତ ଶୀର୍ଷମାନଙ୍କରେ ବିଚରଣ କରୁଁ ଏବଂ ପ୍ରବଳ ଭାବାବେଗରେ ପୂର୍ଣ୍ଣ ହେଉଁ କିମ୍ବା ଅସୀମତ୍ୱ ଭିତରକୁ ଦୃଷ୍ଟି ନିକ୍ଷେପ କରୁଁ, ସେହି ଅଭିମୁଖ୍ୟ ଓ ମିଜାଜ ନିତାନ୍ତ ଆବଶ୍ୟକ ।

ଧର୍ମର ପ୍ରଣାଳୀ ହେଉଛି ସମ୍ପୂର୍ଣ୍ଣ ଭିନ୍ନ । ବୈଷୟିକ ଜିଜ୍ଞାସାର ପରିସର ବହିର୍ଭୂତ ପ୍ରଦେଶମାନଙ୍କ ସଙ୍ଗେ ତାହା ଯେହେତୁ ମୁଖ୍ୟତଃ ସମ୍ପର୍କିତ, ଭାବାବେଗ ଓ ଅନ୍ତର୍ଜ୍ଞାନ ଉପରେ ତାହା ନିର୍ଭର କରିଥାଏ । ଅଧିକନ୍ତୁ ମଧ୍ୟ, ଜୀବନର ସବୁ କିଛି ପ୍ରତି ଧର୍ମ ଏହି ପ୍ରଣାଳୀ ପ୍ରୟୋଗ କରେ; ଏପରିକି ସେହିସବୁ ବିଷୟ ପ୍ରତି ମଧ୍ୟ ଏହା ପ୍ରଯୁଜ୍ୟ ହେଇଥାଏ ଯାହା ବୌଦ୍ଧିକ ଜିଜ୍ଞାସା ଓ ଅନ୍ୱୀକ୍ଷଣ ନିମନ୍ତେ ସମର୍ଥ । ବ୍ରହ୍ମବିଦ୍ୟା ବା ଧର୍ମତନ୍ତ୍ର ସଙ୍ଗେ ଏବଂ ବହୁଧା ଆଧ୍ୟାତ୍ମିକ ବିଷୟ ଅପେକ୍ଷା ବ୍ରହ୍ମବିଦ୍ୟାର ନ୍ୟସ୍ତସ୍ୱାର୍ଥ ସଙ୍ଗେ ମିଳିତ ହୋଇ ସଙ୍ଗଠିତ ଧର୍ମ ସେପରି ଏକ ମିଜାଜ ଉତ୍ପାଦିତ କରେ ଯାହା ବୈଜ୍ଞାନିକ ମିଜାଜର ସମ୍ପୂର୍ଣ୍ଣ ବିପରୀତ । ଫଳତଃ, ସୃଷ୍ଟି ହୁଏ ସଙ୍କୀର୍ଣ୍ଣତା ଓ ଅସହିଷ୍ଣୁତା, ଅନ୍ଧବିଶ୍ୱାସପ୍ରବଣତା ଓ କୁସଂସ୍କାର, ଭାବୋଚ୍ଛ୍ୱାସପ୍ରବଣତା ଓ ଅଯୌକ୍ତିକତା । ମଣିଷର ମନ ଅବରୁଦ୍ଧ କରି ଓ ସେଥି ଉପରେ ସୀମା ଅର୍ପଣ କରି ତାହା ଗୋଟାଏ ଆଶ୍ରିତ ତଥା ଅସ୍ୱାଧୀନ ଲୋକର ମିଜାଜ ସୃଷ୍ଟି କରିବା ପ୍ରୟାସ କରେ ।

ଭଲଟିଅର କହିଚନ୍ତି ଯେ ଈଶ୍ୱରଙ୍କ ଅସ୍ତିତ୍ୱ ଯଦି ବି ନଥାଏ ତାଙ୍କୁ ଆବିଷ୍କାର କରିବା ନିତାନ୍ତ ଆବଶ୍ୟକ । ହୁଏତ ଏହା ସତ୍ୟ ଏବଂ ପ୍ରକୃତପକ୍ଷେ, ମଣିଷର ମନ ସର୍ବଦା ସେପରି କିଛି ମାନସିକ ବିଗ୍ରହ କିମ୍ବା ଧାରଣା ରୂପାୟିତ କରିବା ନିମନ୍ତେ ବରାବର ଉଦ୍ୟମ କରି ଆସିଚି; ଯାହା ତାର ମନର ଅଭିବୃଦ୍ଧି ସଙ୍ଗେ ବିକାଶ ଲାଭ କରିଚି । କିନ୍ତୁ ଏହାର ବିପରୀତ ଉକ୍ତିରେ ମଧ୍ୟ କିଛି ତତ୍ତ୍ୱ ଅଛି । ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରିନେଲେ ସୁଦ୍ଧା ତାଙ୍କ ଉପରେ ନିର୍ଭର କରିବା କିମ୍ବା ସବୁ କଥାରେ ତାଙ୍କ ମୁହଁକୁ ଚାହିଁବା ହୁଏତ ବାଞ୍ଛନୀୟ ନହେଇପାରେ । ଅଲୌକିକ କାରଣମାନଙ୍କ ଉପରେ ଅତିଶୟ ନିର୍ଭରତା ଯେଉଁ ଆଡ଼କୁ ବାଟ କଢ଼ାଇନେଇଥାଏ ସେଥିରେ ମଣିଷର ଆତ୍ମପ୍ରତ୍ୟୟ ହ୍ରାସ ହୁଏ ଏବଂ ତାର ରଚନାତ୍ମକ କର୍ମନୈପୁଣ୍ୟ ଓ ଧାରଣା ଶକ୍ତି ତୀକ୍ଷ୍ଣତା ହରାଇ ବସେ । ତଥାପି, ଆମର ଭୌତିକ ବିଶ୍ୱର ପରିସର ବାହାରେ ଆତ୍ମା ସମ୍ବନ୍ଧୀୟ ଯେଉଁ ପ୍ରଦେଶ ରହିଚି ସେଥି ନିମନ୍ତେ ଗୋଟାଏ କିଛି ବିଶ୍ୱାସ—ତାହା ନୈତିକ, ଆଧ୍ୟାତ୍ମିକ ଓ ଆଦର୍ଶବାଦୀ ଅବଧାରଣା ହେଉନା କାହିଁକି— ନିତାନ୍ତ ଆବଶ୍ୟକ । ଅନ୍ୟଥା ଆମ ପାଇଁ ଆଉ କୂଳ ନାହିଁ; ଜୀବନ ହେଇ ପଡ଼ିବ ଲକ୍ଷ୍ୟହୀନ ଓ ଉଦ୍ଦେଶ୍ୟହୀନ । ଈଶ୍ୱର ବିଶ୍ୱାସ ଆମର ଥାଉ ବା ନଥାଉ ଗୋଟାଏ କିଛି ଉପରେ ବିଶ୍ୱାସ ସ୍ଥାପନ ନ କରିବା ଆମ ପକ୍ଷରେ ଅସମ୍ଭବ । ତାକୁ ଆମେ ସୃଜନଶୀଳ ଜୀବନ-ସଞ୍ଚାରି ଶକ୍ତି କିମ୍ବା ବସ୍ତୁରେ ନିହିତ ଅତ୍ୟାବଶ୍ୟକ ଜୀବନ-ରକ୍ଷକ ଶକ୍ତି ବୋଲି ଅଭିହିତ କରିପାରୁଁ; ଯାହା ବସ୍ତୁକୁ ତାର ସ୍ୱୟଂସଞ୍ଚାରଣଶୀଳତା ଏବଂ ପରିବର୍ତ୍ତନ ତଥା ଅଭିବୃଦ୍ଧିର ସାମର୍ଥ୍ୟ ଅର୍ପଣ କରେ କିମ୍ବା ସେପରି କୌଣସି ନାମ ଦେଇ ମଧ୍ୟ ଅଭିହିତ କରାଯାଇପାରେ ଯାହା ଦୁର୍ବୋଧ ହେଲେ ହେଁ ବାସ୍ତବ; ତୁଳନା କରି ପାର୍ଥକ୍ୟ ଲକ୍ଷ୍ୟ କଲେ ମୃତ୍ୟୁ ଅପେକ୍ଷା ଜୀବନ ଯେପରି ବାସ୍ତବ ଜଣାପଡ଼େ । ଅଜ୍ଞାନରେ ହେଉ କି ସଜ୍ଞାନରେ ହେଉ, ଆମ ଭିତରୁ ଅଧିକାଂଶ କୌଣସି ଅଜ୍ଞାତ ଦେବତାର ଅଦୃଶ୍ୟ ପୂଜାବେଦୀ ନିକଟରେ ପୂଜା ଓ ନୈବେଦ୍ୟ ଅର୍ପଣ କରିଥାନ୍ତି । ତାହା କୌଣସି ଆଦର୍ଶ ବି ହେଇପାରେ—ବ୍ୟକ୍ତିଗତ, ଜାତୀୟ କିମ୍ବା

ଆତ୍ମଜିଜ୍ଞାସୁ । ତାହା କୌଣସି ସୁଦୂର ଲକ୍ଷ୍ୟ ହୋଇପାରେ ଯାହା ଆମକୁ ତାହାର ଆଡ଼କୁ ଟାଣିନିଏ । ବୁଦ୍ଧି ଦ୍ୱାରା ତାର ଯଥାର୍ଥତା ପ୍ରମାଣିତ କରିବା ହୁଏତ ସମ୍ଭବ ନ ହୋଇପାରେ । ତାହା ହୁଏତ ଗୋଟାଏ ଆଦର୍ଶ ମଣିଷ ଓ ଏକ ସୁନ୍ଦର ସଂସାରର କୌଣସି ଅସ୍ପଷ୍ଟ ଅବଧାରଣା । ପୂର୍ଣ୍ଣତା ଲାଭ କରିବା ହୁଏତ ଅସମ୍ଭବ, କିନ୍ତୁ ଆମ ଭିତରେ ଯେଉଁ ଅନମନୀୟ ଜୀବନରକ୍ଷକ ଶକ୍ତି ରହିଛି ତାହା ବରାବର ଆମକୁ ପ୍ରେରଣା ଦେବାରେ ଲାଗିଛି ଏବଂ ପୁରୁଷାନୁକ୍ରମେ ଆମେ ସେହି ପଥରେ ଯାତ୍ରା କରି ଚାଲିଛୁ ।

ଜ୍ଞାନ ଯେତେ ଯେତେ ଅଗ୍ରଗତି କରେ, ଧର୍ମର ପରିସର ନିତାନ୍ତ ସଂକୀର୍ଣ୍ଣ ଅର୍ଥରେ ସଙ୍କୁଚିତ ହୋଇ ପଡ଼େ । ଜୀବନ ଓ ପ୍ରକୃତି ସମ୍ପର୍କରେ ଆମର ଯେତେ ଅଧିକରୁ ଅଧିକ ଜ୍ଞାନ ଲାଭ ହୁଏ ଅତିପ୍ରାକୃତ ବା ଅଲୌକିକ ବିଷୟ ଉପରୁ ଆମର ମନ କ୍ରମଶଃ ଓହ୍ଲାଇ ଆସେ । ଯାହା ଆମେ ବୁଝିପାରୁ ଓ ଆୟତ୍ତ କରିପାରୁ ତାହା ଆମ ପାଖରେ ଗୋଟାଏ କିଛି ରହସ୍ୟ ହୋଇ ଆଉ ରହେନାହିଁ । ଆମର କୃଷି, ଆମର ଖାଦ୍ୟ, ଆମେ ଯେଉଁ ବସ୍ତ୍ର ପରିଧାନ କରୁଁ, ଆମର ସାମାଜିକ ସମ୍ବନ୍ଧ, ସବୁ କିଛି ଗୋଟାଏ ସମୟରେ ଧର୍ମ ଓ ଧର୍ମଯାଜକମାନଙ୍କର କର୍ତ୍ତୃତ୍ୱାଧୀନ ଥିଲା । କ୍ରମଶଃ ସେସବୁ ଧର୍ମର ବନ୍ଧନରୁ ମୁକ୍ତ ହେଲା ଏବଂ ବୈଜ୍ଞାନିକ ଗବେଷଣାର ବସ୍ତୁ ହୋଇ ଉଠିଲା । ତଥାପି, ଏଥିର ବହୁତ କିଛି ଉପରେ ଏବେ ବି ଧର୍ମବିଶ୍ୱାସ ଓ ତା'ର ଆନୁଷଙ୍ଗିକ ବିବିଧ କୁସଂସ୍କାରର ଶକ୍ତିଶାଳୀ ପ୍ରଭାବ ରହିଛି । ଏବେ ବି ଯାହାସବୁ ଅନ୍ତିମ ରହସ୍ୟ, ମଣିଷର ମନ ତାହା ଭେଦ କରିବା ପାଇଁ ସକ୍ଷମ ହୋଇ ନାହିଁ ଏବଂ ତାହା ସେପରି ଅଭେଦ୍ୟ ରହିବାର ସମ୍ଭାବନା ହିଁ ବେଶି । ଜୀବନର ବହୁତ କିଛି ରହସ୍ୟ ଉଦଘାଟନ କରାଯାଇ ପାରେ ଏବଂ ତାହା କରିବା ପାଇଁ ମଣିଷ ଯେହେତୁ ସମର୍ଥ, ସେହି ଅନ୍ତିମ ରହସ୍ୟ ନେଇ ଆବିଷ୍ଟ ରହିବାରେ ନା ଅଛି ଯଥାର୍ଥତା, ନା ସେପରି କିଛି ଗୁରୁତର ଆବଶ୍ୟକତା । ବିଶ୍ୱର କମନୀୟତା ଓ କାନ୍ତି ଆମକୁ ଯେ ଜୀବନ ନିବେଦନ କରେ କେବଳ ନୁହେଁ, ନବ ନବ ତଥା ବିସ୍ମୟକର ନାନାବିଧ ଆବିଷ୍କାର ଓ ଉଦ୍‌ଭାବନାର ମାଦକତା ଓ ଦୁଃସାହସିକତା ଆମ ଆଗରେ ଟେକିଧରେ । କେତେ ନବ ନବ ପରିଦୃଶ୍ୟ ଜୀବନ କ୍ରମନ୍ୱେ ନବ ନବ ମାର୍ଗ ଉନ୍ମୋଚିତ କରେ; ଏକ ପୂର୍ଣ୍ଣତର ଓ ଅଧିକତର ସମୃଦ୍ଧ ତଥା ସର୍ବାଙ୍ଗସୁନ୍ଦର ଜୀବନର ଚିତ୍ର ଆଖି ଆଗରେ ଫୁଟିଉଠେ ।

ଅତଏବ, ଦର୍ଶନ ସଙ୍ଗେ ସମ୍ବନ୍ଧଯୁକ୍ତ ବିଜ୍ଞାନର ମିଜାଜ ଓ ଆଭିମୁଖ୍ୟ ଘେନି ଏବଂ ବିଜ୍ଞାନର ପରିସର ବହିର୍ଭୂତ ସବୁ କିଛି ପ୍ରତି ସଶ୍ରଦ୍ଧ ଭାବରେ ଆମକୁ ଜୀବନର ସମ୍ମୁଖୀନ ହେବାକୁ ପଡ଼ିବ । ତାହାହେଲେ ଜୀବନ ସମ୍ପର୍କରେ ଏକ ଅଖଣ୍ଡ ପରିଜ୍ଞାନ ତଥା ଦୂରଦୃଷ୍ଟି ଆମ ଭିତରେ ବିକଶିତ ହେବ, ଯାହା ତାର ସୁବିସ୍ତୃତ ପରିସର ଭିତରେ ଅତୀତ ଓ ବର୍ତ୍ତମାନର ସମସ୍ତ କିଛି ଉଚ୍ଚତା ଓ ଗଭୀରତାକୁ ଆଗ୍ରହ ସହକାରେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଭବିଷ୍ୟ ଉପରେ ପ୍ରଶାନ୍ତ ଦୃଷ୍ଟି ସଞ୍ଚାର କରିବ । ଅତୀତ ଓ ବର୍ତ୍ତମାନର ସେହିସବୁ ଗଭୀରତାକୁ ଅବଜ୍ଞା କରାଯାଇ ନପାରେ ଏବଂ ଆମେ କମନୀୟତା ଓ କୋମଳତାର ପରିବେଷ୍ଟନୀରେ ରହିଥିଲାବେଳେ ମନେ ରଖିବା ଉଚିତ ଯେ ତାର ପାର୍ଶ୍ୱରେ ହିଁ ରହିଛି

ବିଶ୍ୱର ଅଶୋଭନୀୟତା । ମଣିଷର ଜୀବନଯାତ୍ରା ହେଉଛି ଆନନ୍ଦ ଓ ବିଷାଦର ଏକ ବିଚିତ୍ର ତଥା ବିଷମ ମିଶ୍ର । ଏପରି ଭାବରେ କେବଳ ଜୀବନରୁ ଶିକ୍ଷା ଗ୍ରହଣ କରି ସେ ଅଗ୍ରଗତି କରିପାରେ । ଆତ୍ମୋନ୍ନତିର ସାଧନା ବଡ଼ ଦୁଃଖଦ ଓ ନିଃସଙ୍ଗ ବ୍ୟାପାର । ବାହାର ଦୁନିଆର ନାନା ଘଟଣା ଓ ସେସବୁର ପରିଣାମ ଆମକୁ ପ୍ରଭୂତ ଭାବରେ ପ୍ରଭାବିତ କରେ । ତଥାପି ଆମ ମନରେ ଯେଉଁସବୁ ଗୁରୁତର ଧକ୍କା ଲାଗେ ତାର ହେତୁ ହେଉଛି ଆମର ଆଭ୍ୟନ୍ତରୀକ ନାନା ଭୟ ଓ ଦ୍ୱନ୍ଦ୍ୱ । ବାହ୍ୟ ସ୍ତରରେ ଆମେ ଅଗ୍ରଗତି କଲାବେଳେ, ବଞ୍ଚି ରହିବା ପାଇଁ ଯାହା ଆମକୁ କରିବାକୁ ହିଁ ପଡ଼ିବ, ଏଥିପ୍ରତି ମଧ୍ୟ ଆମର ଧ୍ୟାନ ରହିବା ଉଚିତ ଯେ ଆମେ ନିଜ ନିଜ ଭିତରେ ଏବଂ ଆମର ପରିବେଷ୍ଟନୀରେ ଶାନ୍ତିରକ୍ଷା କରିପାରିବୁ । ସେହି ଶାନ୍ତି ଆମର ଭୌତିକ ତଥା ବୈଷୟିକ ଅଭାବ ଯେ ପୂରଣ କରେ କେବଳ ନୁହେଁ, ଭାବନା ଓ କର୍ମର ପ୍ରଦେଶରେ ତାର ସଙ୍କୁଳ ଯାତ୍ରା ଆରମ୍ଭ କଲାଦିନରୁ ମଣିଷକୁ ଯାହା ଅନ୍ୟ ପ୍ରାଣୀମାନଙ୍କଠାରୁ ପୃଥକ୍ ଭାବରେ ବୈଶିଷ୍ଟ୍ୟ ଅର୍ପଣ କରିଛି ସେହିସବୁ ଆଭ୍ୟନ୍ତରିକ କଳ୍ପନାପ୍ରବଣ ପ୍ରେରଣା ଓ ଦୁଃସାହସିକ ଭାବୁକତାର ମଧ୍ୟ ସନ୍ତୋଷ ବିଧାନ କରେ । ସେହି ଯାତ୍ରାର କୌଣସି ଚରମ ଉଦ୍ଦେଶ୍ୟ ଅଛି କି ନାହିଁ ଆମେ ଜାଣିନା; କିନ୍ତୁ କ୍ଷତିପୂରଣ ସ୍ୱରୂପ ତାହା ସେପରି କେତେକ ନିକଟତର ଲକ୍ଷ୍ୟ ସୂଚିତ କରେ ଯାହା ହାସଲଯୋଗ୍ୟ ପ୍ରତୀତ ହେଇଥାଏ ଏବଂ ଯେଉଁଠାରୁ ନୂତନ ଅଗ୍ରଗତି ନିମନ୍ତେ ଅବକାଶ ରହେ ।

ପାଶ୍ଚାତ୍ୟ ଜଗତରେ ବିଜ୍ଞାନର ପ୍ରାଧାନ୍ୟ ଅସୀମ ଏବଂ ସମସ୍ତେ ତାର ବନ୍ଦନା ଗାନ କରନ୍ତି । ତଥାପି ସୁଦ୍ଧା ସେହି ଜଗତରେ ବିଜ୍ଞାନର ପ୍ରକୃତ ମିଜାଜ ଆହୁରି ବିକାଶ ଲାଭ କରିନାହିଁ । ଦେହ ଓ ଆତ୍ମାର ସୃଜନଶୀଳ ଐକ୍ୟସାଧନ ସେଠାରେ ଅଦ୍ୟାପି ସମ୍ପୂର୍ଣ୍ଣ ହେଇ ନାହିଁ । ଭାରତରେ ନାନା ମାର୍ଗରେ ଆମକୁ ବହୁଦୂର ଯାତ୍ରା କରିବାକୁ ପଡ଼ିବ । ତଥାପି, ଆମ ମାର୍ଗରେ ବଡ଼ ବଡ଼ ପ୍ରତିବନ୍ଧକର ସଂଖ୍ୟା ହୁଏତ ସ୍ୱଳ୍ପ ହେଇପାରେ କାରଣ, ପରବର୍ତ୍ତୀ କାଳର ବିକୃତି ବ୍ୟତୀତ, ଯୁଗଯୁଗ ଧରି ଭାରତୀୟ ଭାବୁକତାର ମୂଳଭିତ୍ତି ବୈଜ୍ଞାନିକ ମିଜାଜ ଓ ଆଭିମୁଖ୍ୟ ଉପରେ ପ୍ରତିଷ୍ଠିତ ଏବଂ ତାହା ଆନ୍ତର୍ଜାତୀୟତାର ପରିପନ୍ଥୀ ନୁହେଁ । ନିର୍ଭୀକ ଭାବରେ ସତ୍ୟର ସନ୍ଧାନ, ମଣିଷର ସଂହତି, ଏପରିକି ଜୀବ ଦେହରେ ଦେବତ୍ୱର ଅବତରଣ ଏବଂ ବ୍ୟକ୍ତି ଓ ପ୍ରଜାତିର ମୁକ୍ତ ତଥା ସହଯୋଗମୂଳକ ବିକାଶ ଯାହା ମହତ୍ତର ମୁକ୍ତି ଓ ମାନବିକ ବିକାଶର ଉଚ୍ଚତର ସ୍ତର ଆଡ଼କୁ ବାଟ କଢ଼ାଇ-ନିଏ, ସେଥି ଉପରେ ପ୍ରତିଷ୍ଠିତ ।

## ୧୦. ଜାତୀୟ ଭାବର ମହତ୍ତ୍ୱ : ଭାରତରେ ପରିବର୍ତ୍ତନର ଆବଶ୍ୟକତା

ଅତୀତ ପ୍ରତି ଗୋଟାଏ ଅନ୍ଧ-ଭକ୍ତି ଯେପରି ଖରାପ ସେପରି ମଧ୍ୟ ସେଥିପ୍ରତି ଘୃଣାଭାବ ପୋଷଣ କରିବା । କାରଣ ଏହି ଉଭୟ ମନୋଭାବ ଉପରେ କୌଣସି ଭବିଷ୍ୟର ଭିତ୍ତି ସ୍ଥାପନ କରାଯାଇ ନପାରେ । ବର୍ତ୍ତମାନ ଓ ଭବିଷ୍ୟତ ଉଭୟ ଅବଶ୍ୟମ୍ଭାବୀ ଭାବରେ

ଅତୀତରୁ ବଢ଼ିଉଠନ୍ତି ଏବଂ ଅତୀତର ଗ୍ରାସରୁ ମୁକ୍ତହେବା ସମ୍ଭବ ନୁହେଁ । ଏକଥା ଭୁଲିଯିବା ଅର୍ଥ ବିନା ଭିତ୍ତିରେ କୌଣସି ଇମାରତ୍ ନିର୍ମାଣ କରିବା ଏବଂ ଜାତୀୟ ଅଭିବୃଦ୍ଧିର ଚେର କାଟିପକାଇବା; ଗୋଟାଏ ଜାତି ଉପରେ ଯାହାର ପ୍ରଭାବ ପ୍ରବଳ ସେପରି ଏକ ଶକ୍ତିକୁ ଅବଜ୍ଞା କରିବା । ଜାତୀୟତାବାଦ ସାରତଃ ଅତୀତର ବହୁ କୃତିତ୍ୱ, ପରମ୍ପରା ଓ ଅଭିଜ୍ଞତାର ଏକ ସମ୍ମିଳିତ ସ୍ମୃତି ଏବଂ ସେହି ଜାତୀୟତାବାଦ ଆଜି ଯେତେଭଳି ବଳିଷ୍ଠତା ଲାଭ କରିଚି ଏଥିପୂର୍ବେ କେବେହେଲେ ସେପରି ନଥିଲା । ଅନେକେ ମନେ କରୁଥିଲେ ଯେ ଜାତୀୟତାବାଦର ଅମଳ ସରିଯାଇଚି ଏବଂ ତାର ସ୍ଥାନ ଆଧୁନିକ ବିଶ୍ୱର ବର୍ଦ୍ଧନଶୀଳ ଆନ୍ତର୍ଜାତୀୟ ବିଚାରଧାରା ଅନିବାର୍ଯ୍ୟ ଭାବରେ ଗ୍ରହଣ କରିବ । ସର୍ବହରା ଶ୍ରେଣୀୟ ପୃଷ୍ଠଭୂମିସମ୍ବଳିତ ସମାଜବାଦ ଜାତୀୟ ସଂସ୍କୃତିକୁ ବିଦ୍ରୂପ କଲା; କାରଣ ତାର ବିଚାରରେ ଜାତୀୟ ସଂସ୍କୃତି ଗୋଟାଏ ପତମାନ ମଧ୍ୟବିତ୍ତ ଶ୍ରେଣୀ ସଙ୍ଗେ ଜଡ଼ିତ । ପୁଞ୍ଜିବାଦ ତାର ଉତ୍ପାଦନକାରୀ ସଂଘ ଓ ଅତିକାୟ ବ୍ୟବସାୟ ପ୍ରତିଷ୍ଠାନମାନଙ୍କୁ ନେଇ ଅଧିକରୁ ଅଧିକ ଆନ୍ତର୍ଜାତୀୟ ହେଇଉଠିଲା ଏବଂ ଜାତୀୟ ସୀମା ସରହଦ ଲଙ୍ଘନ କଲା । ବ୍ୟବସାୟ ଓ ବାଣିଜ୍ୟ, ସହଜ ଯୋଗାଯୋଗ ତଥା ଦ୍ରୁତ ପରିବହନ ବ୍ୟବସ୍ଥା, ରେଡ଼ିଓ ଓ ସିନେମା—ଏ ସମସ୍ତ ସାହାଯ୍ୟ କଲା ଗୋଟାଏ ଆନ୍ତର୍ଜାତୀୟ ବାତାବରଣ ସୃଷ୍ଟି କରିବାରେ ଏବଂ ଜାତୀୟତାବାଦର ଭାଗ୍ୟରବି ଯେ ଅସ୍ତପ୍ରାୟ, ସେ ପ୍ରକାର ଭ୍ରାନ୍ତି ସୃଷ୍ଟି କରିବାରେ ।

ତଥାପି, କୌଣସି ସଙ୍କଟ ଯେବେ ଦେଖା ଦେଇଚି, ସୁପ୍ତ ଜାତୀୟତାବାଦ ଜାଗ୍ରତ ହେଇ ସେ ଅବସ୍ଥା ଉପରେ ଆଧିପତ୍ୟ ପୁନଃ ପ୍ରତିଷ୍ଠା କରିଚି ଏବଂ ଲୋକେ ସେମାନଙ୍କର ପୁରାତନ ପରମ୍ପରାରୁ ଶକ୍ତି ଓ ସ୍ୱସ୍ତି କାମନା କରିଚନ୍ତି । ବର୍ତ୍ତମାନ ଯୁଗର ଅନ୍ୟତମ ଉଲ୍ଲେଖଯୋଗ୍ୟ ବିଶେଷତ୍ୱ ହେଉଚି ଅତୀତ ଓ ଜାତି-ଭାବର ପୁନରାବିଷ୍କାର । ଆନ୍ତର୍ଜାତୀୟ କର୍ମର ପ୍ରମୁଖ ସମର୍ଥକ ବୋଲି ଯେଉଁମାନଙ୍କୁ ଧରାଯାଉଥିଲା ସେହି ଶ୍ରମଜୀବୀ ଓ ସର୍ବହରା ଶ୍ରେଣୀ ଭିତରେ ଜାତୀୟ ପରମ୍ପରାମାନଙ୍କୁ ଫେରିଯିବା ଆଜିକାଲି ବିଶେଷ ଲକ୍ଷଣୀୟ ହେଇ ଉଠୁଚି । ଯୁଦ୍ଧ କିମ୍ବା ସେଭଳି କିଛି ସଙ୍କଟ ସେମାନଙ୍କର ଆନ୍ତର୍ଜାତୀୟତାକୁ ମନରୁ ପୋଛି ନେଉଚି ଏବଂ ସେମାନେ ସମାଜର ଅନ୍ୟାନ୍ୟ ବର୍ଗ ଅପେକ୍ଷା ଅଧିକତର ଭାବରେ ଜାତୀୟତାବାଦୀ ଘୃଣା ଓ ଭୟର ଶିକାର ହେଉଚନ୍ତି । ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ ହେଉଚି ସୋଭିଏତ୍ ୟୁନିଅନ୍‌ର ଅଧୁନାତନ କେତେକ ଘଟଣାବଳୀ । ନିଜର ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ନିମନ୍ତେ ଯାହା କିଛି ଅତ୍ୟାବଶ୍ୟକ ସେ ସମସ୍ତ ଯଥାରୀତି ବଜାୟ ରଖି ସୋଭିଏତ୍ ୟୁନିଅନ୍ ଅଧିକତଃ ଜାତୀୟତାବାଦୀ ମନୋଭାବାପନ୍ନ ହେଇ ଉଠିଚି ଏବଂ ତାହା ପକ୍ଷରେ ଆନ୍ତର୍ଜାତୀୟ ସର୍ବହରାର ଆବେଦନ ଅପେକ୍ଷା ଅଧିକ ପ୍ରଭାବଶାଳୀ ହେଇଚି ପିତୃଭୂମିର ଆହ୍ୱାନ । ଜାତୀୟ ଇତିହାସର କେତେ ପ୍ରସିଦ୍ଧ ବ୍ୟକ୍ତିଙ୍କୁ ପୁନର୍ବାର ଜାଗ୍ରତ କରାଯାଇଚି ଏବଂ ସୋଭିଏତ୍ ଜନସାଧାରଣଙ୍କର ସେମାନେ ହେଇ ଉଠିଚନ୍ତି ଜାତୀୟ ବୀର । ଏହି ଯୁଦ୍ଧରେ ସୋଭିଏତ୍ ଜନତାର ପ୍ରେରଣାପ୍ରଦାୟକ କାର୍ଯ୍ୟାବଳୀ, ସେମାନଙ୍କର ଏକତା ଓ ସଂହତି, ସନ୍ଦେହ ନାହିଁ, ସେ ଦେଶର ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥାର ଅବଦାନ । ଏହି ବ୍ୟବସ୍ଥା ଏକ

ସୁବିସ୍ତୃତ ସାମ୍ମୁଖ୍ୟରେ ସାମାଜିକ ଅଗ୍ରଗତି ସମ୍ଭବ କରିପାରିଚି । ଯୋଜନାକୃତ ଉତ୍ପାଦନ ଓ ଖାଦନ, ବିଜ୍ଞାନର ବିକାଶ ସାଧନ ଓ ତାର ବ୍ୟାପକ ପ୍ରୟୋଗ, ବହୁ ନୂତନ ପ୍ରତିଭାର ଆବିର୍ଭାବ ଓ ନେତୃତ୍ୱ ଦେବାର ସାମର୍ଥ୍ୟ, ଏପରିକି ଚମତ୍କାର ନେତୃତ୍ୱ ଦେବାର ଅପୂର୍ବ ଧାରଣା ଶକ୍ତି, ସବୁକିଛି ସେହି ସାମାଜିକ ତଥା ଅର୍ଥନୈତିକ ବ୍ୟବସ୍ଥାଜନିତ ସୁବିସ୍ତୃତ ସାମାଜିକ ଅଗ୍ରଗତିର ଫଳ; କିନ୍ତୁ ଏପରି ବି ହୋଇପାରେ ଯେ ସେଥିରେ ଜାତୀୟ ସ୍ମୃତି ଓ ପରମ୍ପରାର ପୁନର୍ଜାଗରଣ ଏବଂ ଅତୀତ ସମ୍ପର୍କରେ ଏକ ନୂତନ ସଚେତନତାର ଅଂଶ ମଧ୍ୟ ନଗଣ୍ୟ ନୁହେଁ । କାରଣ ସୋଭିଏତ୍ ଲୋକେ ଅନୁଭବ କରିଚନ୍ତି ଯେ ସେମାନଙ୍କର ବର୍ତ୍ତମାନ ସେହି ଅତୀତର ହିଁ ଏକ ଧାରାବାହିକତା । ତଥାପି, ରୁଷିଆର ଏହି ଜାତୀୟବାଦୀ ଦୃଷ୍ଟିଭଙ୍ଗୀ ତାର ପୁରାତନ ଶୈଳୀର ଜାତୀୟବାଦର ପ୍ରତ୍ୟାବର୍ତ୍ତନ ମାତ୍ର ମନେ କରିବା ଭୁଲ୍ ହେବ । ସେପରି କଦାପି ନୁହେଁ । ବିପ୍ଳବର ସେହିସବୁ ବିପ୍ଳବୀଙ୍କର ଅଭିଜ୍ଞତା ଏବଂ ତାର ପରବର୍ତ୍ତୀ ଘଟଣାବଳୀ ବିସ୍ମୃତ ହେବାର ନୁହେଁ । ସେଥିରୁ ଉଦ୍‌ଭୂତ ସାମାଜିକ ବ୍ୟବସ୍ଥାର ବିବିଧ ପରିବର୍ତ୍ତନ ଓ ମାନସିକ ସମନ୍ୱୟସାଧନ ତିଷ୍ଠିବା ପାଇଁ ବାଧ୍ୟ । ରୁଷିଆର ସେହି ସାମାଜିକ ସଙ୍ଗଠନ ସ୍ୱତଃ ଗୋଟାଏ କିଛି ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ଆଡ଼କୁ ବାଟ କଢ଼ାଇନେବା ଅବଶ୍ୟମ୍ଭାବୀ । ସେ ଯାହାହେଉ, ସେ ଦେଶର ଜାତୀୟବାଦ, ସେ ଦେଶର ନୂତନ ପରିବେଷ୍ଟନୀକୁ ସୁହାଇବା ଭଳି ଓ ସେ ଦେଶର ଲୋକଙ୍କ ଶକ୍ତି ବୃଦ୍ଧି କରିବା ଭଳି ପୁନର୍ବାର ଆବିର୍ଭୂତ ହୋଇଚି ।

ସୋଭିଏତ୍ ରାଷ୍ଟ୍ରର ବିକାଶ ସଙ୍ଗେ ଅନ୍ୟାନ୍ୟ ଦେଶରେ କମ୍ୟୁନିଷ୍ଟ ପାର୍ଟିମାନଙ୍କର ଅସ୍ଥିର ଦଶା ତୁଳନା କରି ଦେଖିବା ପ୍ରକୃତରେ ଶିକ୍ଷାପ୍ରଦ । ସବୁ ଦେଶରେ, ବହୁ ଲୋକଙ୍କ ଭିତରେ, ବିଶେଷତଃ ସର୍ବହରା ଶ୍ରେଣୀମାନଙ୍କରେ, ସୋଭିଏତ୍ ବିପ୍ଳବ ପରେ ପରେ ଏକ ନୂତନ ଉଦ୍ଦୀପନା ସଞ୍ଚାରିତ ହୋଇଥିଲା । ସେଥିଭିତରୁ ମୁଣ୍ଡଟେକି ଉଠିଲା ବିଭିନ୍ନ ଦେଶର କମ୍ୟୁନିଷ୍ଟ ଗୋଷ୍ଠୀ ଓ ଦଳ । ତାରପରେ ସେହିସବୁ ଗୋଷ୍ଠୀ ଓ ଜାତୀୟ ଶ୍ରମିକ ଦଳମାନଙ୍କ ମଧ୍ୟରେ ବିବାଦ ସୃଷ୍ଟି ହେଲା । ସୋଭିଏତ୍ ୟୁନିଅନ୍‌ର ପଞ୍ଚବାର୍ଷିକ ଯୋଜନା କାଳରେ ଆଗ୍ରହ ଓ ଉତ୍ସାହର ଆଉ ଏକ ତରଙ୍ଗ ଖେଳିଗଲା ଏବଂ ସମ୍ଭବତଃ ତା'ର ଅଧିକ ପ୍ରଭାବ ପଡ଼ିଲା ଶ୍ରମଜୀବୀ ଶ୍ରେଣୀ ଅପେକ୍ଷା ମଧ୍ୟବିତ୍ତ ଶ୍ରେଣୀର ବୁଦ୍ଧିଜୀବୀମାନଙ୍କ ଉପରେ । ପୁନର୍ବାର ଏକ ପ୍ରତିକ୍ରିୟା ସୃଷ୍ଟି ହେଲା ଯେବେ ସୋଭିଏତ୍ ୟୁନିୟନ୍‌ରେ କମ୍ୟୁନିଷ୍ଟ ତତ୍ତ୍ୱ ବିରୋଧୀମାନଙ୍କୁ ବହିଷ୍କାର କରାଗଲା । କେତେକ ଦେଶରେ କମ୍ୟୁନିଷ୍ଟ ପାର୍ଟି ଉପରେ ଦମନଲୀଳା ଚାଲିଲା ଏବଂ ଅନ୍ୟ କେତେକ ଦେଶରେ ପାର୍ଟିର ଅଭିବୃଦ୍ଧି ଘଟିଲା; କିନ୍ତୁ ପ୍ରାୟ ସର୍ବତ୍ର କମ୍ୟୁନିଷ୍ଟ ପାର୍ଟିର ବିବାଦ ଉପୁଜିଲା ଜାତୀୟ ଶ୍ରମିକ ସଙ୍ଗଠନ ସଙ୍ଗେ । ଆଂଶିକ ଭାବରେ ଏଥିପାଇଁ ଅବଶ୍ୟ ଦାୟୀ ଶ୍ରମିକ ସଙ୍ଗଠନର ରକ୍ଷଣଶୀଳ ମନୋଭାବ; କିନ୍ତୁ ଏହି ବିବାଦର ପ୍ରଧାନ କାରଣ ହେଉଚି ଯେ କମ୍ୟୁନିଷ୍ଟ ପାର୍ଟି ଏକ ବିଦେଶୀ ଗୋଷ୍ଠୀର ପ୍ରତିନିଧିତ୍ୱ କରେ ଏବଂ ତାର ଯାହା କିଛି ନୀତି ରୁଷିଆଦ୍ୱାରା ନିୟନ୍ତ୍ରିତ ବୋଲି ଶ୍ରମିକ ସଙ୍ଗଠନର ଲୋକେ ମନେ କରୁଥିଲେ । ଜାତୀୟବାଦୀ ଶ୍ରମିକମାନଙ୍କ ଭିତରୁ ଅନେକେ କମ୍ୟୁନିଷ୍ଟ ମତବାଦ ପ୍ରତି

ବିରୋଧଭାବାପନ୍ନ ନଥିଲେ ସୁଦ୍ଧା କମ୍ୟୁନିଷ୍ଟ ପାର୍ଟିର ସହଯୋଗ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ନଥିଲେ । ରୁଷିଆର ଐତିହାସିକ ପରିସ୍ଥିତି ସଙ୍ଗେ ମିଳାଇ ଦେଖିଲେ ସୋଭିଏଟ୍ ନୀତିର ବିବିଧ ପରିବର୍ତ୍ତନ ବୁଝି ହେଉଥିଲା; କିନ୍ତୁ ପୃଥିବୀର ଅନ୍ୟତ୍ର କମ୍ୟୁନିଷ୍ଟ ପାର୍ଟିମାନଙ୍କର ସୋଭିଏଟ୍ ନୀତି ପ୍ରତି ଆନୁଗତ୍ୟ ବୁଝିବାର ବାଟ ନଥିଲା । ଏପରି କେବଳ ବୁଝି ହୁଆଯାଇ ପାରେ ଯେ ରୁଷିଆ ପାଇଁ ଯାହା ଭଲ ଅବଶିଷ୍ଟ ବିଶ୍ୱ ନିମନ୍ତେ ତାହା ଭଲ ହେବାପାଇଁ ବାଧ୍ୟ । ଏହି ସବୁ କମ୍ୟୁନିଷ୍ଟ ପାର୍ଟି ଭିତରେ ବହୁ ସମର୍ଥ ତଥା ବିଶ୍ୱସ୍ତ ନରନାରୀ ରହିଥିଲେ ସୁଦ୍ଧା ଜନସାଧାରଣଙ୍କ ଜାତୀୟବାଦୀ ମନୋବୃତ୍ତି ପ୍ରତି ଅନୁକୂଳ ହୋଇ ନ ପାରିବା ଫଳରେ କମ୍ୟୁନିଷ୍ଟ ପାର୍ଟିଗୁଡ଼ିକ ଦୁର୍ବଳ ହୋଇପଡ଼ିଲା । ସୋଭିଏଟ୍ ୟୁନିଅନ୍ ତାର ଜାତୀୟ ପରମ୍ପରା ସଙ୍ଗେ ନୂତନ ଭାବରେ ସମ୍ବନ୍ଧ ସ୍ଥାପନ କରୁଥିବା ବେଳେ ଅନ୍ୟାନ୍ୟ ଦେଶର କମ୍ୟୁନିଷ୍ଟ ପାର୍ଟିମାନେ ନିଜ ନିଜ ଜାତୀୟ ପରମ୍ପରାର କୂଳ ହରାଇ ଯାଉଥିଲେ ।

ଅନ୍ୟ କେଉଁଠାରେ କ'ଣ ଘଟିଲା ମୁଁ କହି ପାରୁନି, କାରଣ ସେ ସମ୍ପର୍କରେ ମୁଁ ବିଶେଷ କିଛି ଜାଣେନି; କିନ୍ତୁ ମୁଁ ଜାଣେ ଯେ ଭାରତରେ କମ୍ୟୁନିଷ୍ଟ ପାର୍ଟି ସମ୍ପୂର୍ଣ୍ଣ ଭାବରେ ଜାତୀୟ ପରମ୍ପରାରୁ ବିଚ୍ଛିନ୍ନ ହୋଇପଡ଼ିଛି କେବଳ ନୁହେଁ, ଯେଉଁ ଜାତୀୟ ପରମ୍ପରାଜ୍ଞାନ ଜନମନକୁ ଆପ୍ଲୁତ କରିଥାଏ ସେ ବିଷୟରେ ମଧ୍ୟ କମ୍ୟୁନିଷ୍ଟ ପାର୍ଟି ବିଶ୍ୱାସ କରେ ଯେ ଅତୀତ ପ୍ରତି ଏକ ପ୍ରଚ୍ଛନ୍ନ ଘୃଣାଭାବ କମ୍ୟୁନିଷ୍ଟ ମତବାଦରେ ନିହିତ । ତାର ବିଚାରରେ ବିଶ୍ୱର ଇତିହାସ ଆରମ୍ଭ ହେଲା ଖ୍ରୀ: ୧୯୧୭ ନଭେମ୍ବର ମାସରେ ଏବଂ ତା' ପୂର୍ବରୁ କେଉଁ ଆବହମାନ କାଳରୁ ଯାହାସବୁ ଘଟି ଆସିଛି ସେସବୁ ଏଥି ନିମନ୍ତେ ଏକ ପ୍ରସ୍ତୁତିମାତ୍ର ଏବଂ ନଭେମ୍ବର ବିପ୍ଳବ ତାର ଅନିବାର୍ଯ୍ୟ ପରିଣତି । ସାଧାରଣ ଭାବରେ ଦେଖିଲେ, ଭାରତ ଭଳି ଏକ ଦେଶରେ ଯେଉଁଠି ବହୁ ସଂଖ୍ୟକ ଲୋକ ପ୍ରାୟ ଅନାହାରରେ ଦିନ କଟାଉଥାନ୍ତି ଏବଂ ଯେଉଁଠି ଅର୍ଥନୈତିକ ଢାଞ୍ଚା ଜୀର୍ଣ୍ଣ ହୋଇ ପଡ଼ୁଛି, କମ୍ୟୁନିଷ୍ଟ ମତବାଦର ଆବେଦନ ବ୍ୟାପକ ହେବାର କଥା । ଗୋଟାଏ ଦିଗରୁ ଦେଖିଲେ, ଅସ୍ପଷ୍ଟ ଭାବରେ ସେ ଆବେଦନ ରହିଛି; କିନ୍ତୁ କମ୍ୟୁନିଷ୍ଟ ପାର୍ଟି ତାର ସୁବିଧା ନେଇ ପାରିବ ନାହିଁ; କାରଣ ସମସ୍ତ ପ୍ରକାର ଜାତୀୟ ବିଚାରଧାରାରୁ କମ୍ୟୁନିଷ୍ଟ ପାର୍ଟି ନିଜକୁ ବିଚ୍ଛିନ୍ନ କରି ନେଇଛି ଏବଂ ତାର ଭାଷା ଲୋକଙ୍କ ପ୍ରାଣରେ ଧ୍ୱନିତ ହୋଇ ପାରୁନି । ଗୋଟାଏ ଉଦ୍ୟମଶୀଳ କ୍ଷୁଦ୍ର ଗୋଷ୍ଠୀ ଭାବରେ କମ୍ୟୁନିଷ୍ଟ ପାର୍ଟି ଯଦିଓ ରହିଛି ଏ ଦେଶ ମାଟିରେ ତାର ପ୍ରକୃତ ଚେର କିଛି ନାହିଁ ।

ଜାତୀୟ ଭାବନା ଦୃଷ୍ଟିରୁ, ଭାରତରେ କମ୍ୟୁନିଷ୍ଟ ପାର୍ଟି କେବଳ ବିଫଳ ହୋଇନି, ଅନ୍ୟ କେତେକଙ୍କର ଦଶା ବି ସେପରି ହୋଇଛି ଯେଉଁମାନେ ଅନର୍ଗଳ ଭାବରେ ଆଧୁନିକତା, ଆଧୁନିକ ମିଜାଜ ଓ ପାଶ୍ଚାତ୍ୟ ସଂସ୍କୃତିର ସାରବତ୍ତା ସମ୍ପର୍କରେ ଜୋର୍ ଦେଇ କହିଥାନ୍ତି; କିନ୍ତୁ ନିଜ ସଂସ୍କୃତି ବିଷୟ ଉଠିଲା ବେଳେ ସେମାନଙ୍କର ଅଜ୍ଞତା ବିସ୍ମୟକର ପ୍ରତୀତ ହୁଏ । କମ୍ୟୁନିଷ୍ଟମାନେ ଗୋଟାଏ ଆଦର୍ଶଦ୍ୱାରା ପରିଚାଳିତ ହୋଇଥାନ୍ତି ଏବଂ ଗୋଟାଏ କିଛି ଶକ୍ତି ସେମାନଙ୍କୁ ଅଗ୍ରଗାମୀ କରିଥାଏ; କିନ୍ତୁ ଏହି ଆଧୁନିକତା ପ୍ରେମୀମାନଙ୍କର ସେସବୁ କିଛି

ନାହିଁ । ପାଶ୍ଚାତ୍ୟ ଜଗତର କେତେକ ବାହ୍ୟ ଢଙ୍ଗଢାଙ୍ଗ ( ବହୁଧା ଅବାଞ୍ଛନୀୟ ) ଅନୁକରଣ କରି ଏମାନେ ମନେ କରନ୍ତି ଏମାନେ ଯେ ଗୋଟାଏ ଅଗ୍ରଗାମୀ ସଭ୍ୟତାର ସେନାମୁଖ । ଏମାନଙ୍କର ନା ଅଛି ଅକଲ ନା ଗଭୀର ବୁଦ୍ଧି; କିନ୍ତୁ ଦାମ୍ଭିକତା କିଛି କମ୍ ନୁହେଁ । ଏମାନେ ମୁଖ୍ୟତଃ କେତେକ ବିଶାଳ ନଗରୀରେ ଏକ ପ୍ରକାର କୃତ୍ରିମ ଜୀବନ ଯାପନ କରନ୍ତି । ପ୍ରାଚ୍ୟ ହେଉ କି ପାଶ୍ଚାତ୍ୟ ହେଉ, କୌଣସି ସଂସ୍କୃତି ସଙ୍ଗେ ଏମାନଙ୍କର ସଜୀବସମ୍ପର୍କ ନାହିଁ ।

ଅତଏବ, ଅତୀତର ପୁନରାବୃତ୍ତିରେ କିମ୍ବା ଅତୀତକୁ ଅସ୍ୱୀକାର କରିବାରେ ଜାତୀୟ ପ୍ରଗତିର ପଥ ଲମ୍ଭି ନପାରେ । ନୂଆ ନୂଆ ଧରଣ ଗ୍ରହଣ କରିବା ଅନିବାର୍ଯ୍ୟ, କିନ୍ତୁ ପୁରାତନ ସଙ୍ଗେ ତାର ସମନ୍ୱୟ ସାଧିବା ଅତ୍ୟାବଶ୍ୟକ । କେବେ କେବେ ଏହି ନୂତନ, ସମ୍ପୂର୍ଣ୍ଣ ଭିନ୍ନ ହେଲେ ମଧ୍ୟ, ପୂର୍ବରୁ ବର୍ତ୍ତମାନ କୌଣସି ଧାରା ଭଳି ପ୍ରତୀତ ହୋଇଥାଏ ଏବଂ ଏପରି ଭାବରେ ତାହା ଅତୀତରୁ ବିକଶିତ ତଥା ଜାତିର ଦୀର୍ଘ ଇତିହାସ ସଙ୍ଗେ ଯେପରି ସମ୍ପୃକ୍ତ, ଏକ ଧାରଣା ସୃଷ୍ଟି କରେ । ଏହି ରୀତିରେ, ଅବ୍ୟାହତ ଭାବରେ ଗୋଟାଏ ପରିବର୍ତ୍ତନଶୀଳ ପରିବେଷ୍ଟନୀ ସଙ୍ଗେ ସଙ୍ଗତି ରକ୍ଷି, ପୁରାତନ ବିଗ୍ରହଧାରାର ଏବଂ ନୂତନ ଭାବରେ, ପୁରାତନ ନାନା ଧରଣର ପରିବର୍ତ୍ତି ବିଧାନ ଦିଗରୁ ଦେଖିଲେ ଭାରତର ଇତିହାସ ଅତ୍ୟନ୍ତ ହୃଦୟଗ୍ରାହୀ ଏକ ଚରିତ । ଏଥି ହେତୁରୁ ସେଥିରେ କୌଣସି ସାଂସ୍କୃତିକ ବିଚ୍ଛେଦ ବିଷୟ ମନକୁ ଆସେନାହିଁ । ସୁଦୂର ଅତୀତର ମହେଞ୍ଜୋଦାରୋ କାଳରୁ ଆଜି ପର୍ଯ୍ୟନ୍ତ ବାରମ୍ବାର ପରିବର୍ତ୍ତନ ସତ୍ତ୍ୱେ ସେହି ଅବିଚ୍ଛିନ୍ନତା ଅବ୍ୟାହତ ରହିଛି । ଅତୀତ ପ୍ରତି ଓ ପାରମ୍ପରିକ ପ୍ରଥା ପ୍ରତି ଶ୍ରଦ୍ଧା ରହିବା ସତ୍ତ୍ୱେ ମନ ସର୍ବଦା ବନ୍ଧନମୁକ୍ତ ଥିଲା, ନମନୀୟ ଥିଲା ଓ ସହିଷ୍ଣୁ ଥିଲା । ଅତଏବ, ବାହ୍ୟ ଆକାରପ୍ରକାର ବହୁଧା ଯଥାଯଥ ଭାବରେ ରହିଥିଲେ ମଧ୍ୟ ଭିତରେ ପରିବର୍ତ୍ତନ ବରାବର ଘଟୁଥିଲା । ଅନ୍ୟ କୌଣସି ଭାବରେ ହେଲେ ସେହି ସମାଜ ହଜାର ବର୍ଷ ଧରି ତିଷ୍ଠି ପାରିନଥାନ୍ତା । ଗୋଟାଏ ଜୀବନ୍ତ ତଥା ବର୍ଦ୍ଧନଶୀଳ ମନ କେବଳ ପାରମ୍ପରିକ ପ୍ରଥାର କଠୋର ଶୃଙ୍ଖଳା ଲଙ୍ଘନ କରିପାରୁଥିଲା । ଅନ୍ୟଥା ସେହିସବୁ ପରମ୍ପରା ହିଁ ସେହି ସମାଜକୁ ଦେଇପାରିଥିଲା ଅବିଚ୍ଛିନ୍ନତା ଓ ସ୍ଥୈର୍ଯ୍ୟ ।

ତଥାପି, ଏହି ସମତୁଳନ ବିପଜ୍ଜନକ ହୋଇପାରେ ଏବଂ ଗୋଟାଏ ବିଭାବ ଅନ୍ୟ ବିଭାବକୁ ଘୋଡ଼ାଇ ଦେଇପାରେ ଏବଂ କେତେ ପର୍ଯ୍ୟନ୍ତ ଦାବି ଦେଇପାରେ ମଧ୍ୟ । କଠୋର ଶୃଙ୍ଖଳାରେ ଆବଦ୍ଧ କେତେକ ସାମାଜିକ ପ୍ରଥା ସଙ୍ଗେ ସଶ୍ଳିଷ୍ଟ, ଭାରତରେ ମନର ଅସାଧାରଣ ସ୍ୱାଧୀନତା ରହିଥିଲା । ଏହି ସବୁ ପ୍ରଥା ପରିଶେଷରେ ମନର ସ୍ୱାଧୀନତାକୁ ପ୍ରଭାବିତ କଲା ଏବଂ ତତ୍ତ୍ୱ ଦିଗରୁ ନୋହିଁ ପଛେ କାର୍ଯ୍ୟତଃ ମନର ପରିସର ସୀମିତ କଲା; ମନକୁ ଅନମନୀୟ କଲା । ପଶ୍ଚିମ ୟୁରୋପରେ ଏ ପ୍ରକାର ମନର ସ୍ୱାଧୀନତା ନଥିଲା ଏବଂ ସେଠାର ଯାହା କିଛି ସାମାଜିକ ପ୍ରଥା ଏତେ ଭଳି ଅନମନୀୟ ନଥିଲା । ମନର ସ୍ୱାଧୀନତା ନିମନ୍ତେ ୟୁରୋପ ଦୀର୍ଘକାଳ ସଂଗ୍ରାମ କଲା ଏବଂ ପରିଣାମ ସ୍ୱରୂପ ବିବିଧ ସାମାଜିକ ପ୍ରଥା ମଧ୍ୟ ପରିବର୍ତ୍ତିତ ହେଲା ।

ଚୀନରେ ଭାରତ ଅପେକ୍ଷା ମନର ନମନୀୟତା ଅଧିକ ଭାବରେ ଥିଲା ଏବଂ ପରମ୍ପରା ପ୍ରତି ପ୍ରଗାଢ଼ ପ୍ରୀତି ଓ ଆସକ୍ତି ସତ୍ତ୍ୱେ ଚୀନା ମନ ତାର ନମନୀୟତା ଓ ସହିଷ୍ଣୁତା କେବେହେଲେ ହରାଇନଥିଲା । ପରମ୍ପରା କେବେ କେବେ ପରିବର୍ତ୍ତନ ବିଳମ୍ବିତ କରିଛି; କିନ୍ତୁ ସେହି ମନ ପୁରାତନ ସବୁ କିଛି ଧରି ଯଥାଯଥ ରଖିବା ସତ୍ତ୍ୱେ ପରିବର୍ତ୍ତନ ପ୍ରତି ଭୀତ ନଥିଲା । ଚୀନା ସମାଜ ଯେଉଁ ଭାରସାମ୍ୟ ଗଢ଼ି ତୋଳିଥିଲା ବହୁ ପରିବର୍ତ୍ତନ ଭିତରେ ସୁଦ୍ଧା ହଜାର ହଜାର ବର୍ଷ ଧରି ତାହା ତିଷ୍ଠି ରହିପାରିଲା । ଅନ୍ୟାନ୍ୟ ଦେଶମାନଙ୍କ ତୁଳନାରେ ଚୀନର ଗୋଟାଏ ବଡ଼ ବିଶେଷତ୍ୱ ହେଉଛି ଯେ ଚୀନା ମନ ଧର୍ମାନ୍ଧତା, ସଙ୍କୀର୍ଣ୍ଣ ତଥା ସୀମିତ ଧର୍ମଗତ ଦୃଷ୍ଟିଭଙ୍ଗୀରୁ ସମ୍ପୂର୍ଣ୍ଣ ଭାବରେ ମୁକ୍ତ ଥିଲା ଏବଂ ଯୁକ୍ତି ଓ କାଣ୍ଡଜ୍ଞାନ ଉପରେ ତାହା ନିର୍ଭର କରିପାରୁଥିଲା । ଧର୍ମ ଅପେକ୍ଷା ନୈତିକତା ଓ ଆତ୍ମରଣଶୀଳତା ଏବଂ ମାନବ ଜୀବନର ବିବିଧତାର ଏକ ଗଭୀର ଉପଲବ୍ଧି ପ୍ରତି ଅଧିକତର ମହତ୍ତ୍ୱ ଦେଇ ପୃଥିବୀର ଅନ୍ୟ କୌଣସି ଦେଶ ତାର ସଂସ୍କୃତି ପ୍ରତିଷ୍ଠା କରିପାରି ନାହିଁ ।

ଅଭ୍ୟାସରେ ଯେତେ ସୀମିତ ହେଉ ପଛେ, ଭାରତରେ ମନର ସ୍ୱୀକୃତ ସ୍ୱତନ୍ତ୍ରତା ଯୋଗୁଁ ନୂତନ ଭାବଧାରା ପାଇଁ କେବେ ଦ୍ୱାର ରୁଦ୍ଧ ହୋଇନି । ଯେକୌଣସି ନୂତନ ବିଷୟର ବିବେଚିତ ହୁଏ ଏବଂ ଜୀବନ ସମ୍ପର୍କରେ ଧର୍ମାନ୍ଧତା ପ୍ରେରିତ ତଥା ପରିବର୍ତ୍ତନବିମୁଖ ଦୃଷ୍ଟିଭଙ୍ଗୀର ଦେଶମାନଙ୍କ ଅପେକ୍ଷା ଭାରତରେ ନୂତନ ଚିନ୍ତା ଅଧିକ ଭାବରେ ଗୃହୀତ ହୋଇଥାଏ । ଭାରତୀୟ ସଂସ୍କୃତିର ମୌଳିକ ଆଦର୍ଶଗୁଡ଼ିକ ଏତେ ଭଲ ପ୍ରଶସ୍ତ ଭିତ୍ତି ଉପରେ ପ୍ରତିଷ୍ଠିତ ଯେ ପ୍ରାୟ ଯେକୌଣସି ପରିବେଷ୍ଟନୀ ପ୍ରତି ସେଗୁଡ଼ିକୁ ଉପଯୋଗୀ କରାଯାଇ ପାରେ । ଊନବିଂଶ ଶତକରେ ବିଜ୍ଞାନ ଓ ଧର୍ମର ତିକ୍ତ ସଂଘର୍ଷ ୟୁରୋପକୁ ଯେଭଳି ଭାବରେ ଉଦ୍‌ବେଳିତ କଲା ସେପରି କିଛି ଭାରତରେ ଘଟିବାର ଅବକାଶ ନାହିଁ କିମ୍ବା ବିଜ୍ଞାନର ବିବିଧ ପ୍ରୟୋଗ ଉପରେ ପ୍ରତିଷ୍ଠିତ ପରିବର୍ତ୍ତନ ଏବଂ ଭାରତୀୟ ସଂସ୍କୃତିର ମୌଳିକ ଆଦର୍ଶସମୂହ ମଧ୍ୟରେ ସଂଘର୍ଷ ଉପୁଜିବାର ସମ୍ଭାବନା ନାହିଁ । ଏଥିରେ ଅବଶ୍ୟ ସନ୍ଦେହ ନାହିଁ, ଏ ପ୍ରକାର ଯେତେ ପରିବର୍ତ୍ତନ ମନକୁ ଆନ୍ଦୋଳିତ କରିବ । ଭାରତର ମନ ଆଜି ସେ ଆନ୍ଦୋଳନରୁ ମୁକ୍ତ ନୁହେଁ । ତେବେ ସେ ସବୁ ପରିବର୍ତ୍ତନ ସଙ୍ଗେ ସଂଘର୍ଷ କରିବା କିମ୍ବା ସେଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିବା ପରିବର୍ତ୍ତେ ଭାରତୀୟ ମନ ନିଜର ମତାଦର୍ଶ ଦୃଷ୍ଟିରୁ ସେଗୁଡ଼ିକୁ ଯୁକ୍ତିସଙ୍ଗତ ଭାବରେ ନିଜର ମାନସିକ ଗଠନଶୈଳୀ ସଙ୍ଗେ ମିଳାଇ ନେବ । ଏହି ପ୍ରକ୍ରିୟାରେ, ଏପରି ବି ହୋଇପାରେ, ପୁରାତନ ଦୃଷ୍ଟିଭଙ୍ଗୀରେ ନୂତନ ବହୁତ କିଛି ଅତି ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ପ୍ରବର୍ତ୍ତିତ ହେବ; କିନ୍ତୁ ସେସବୁ ବାହାରର ଲଦନ ଭଳି ମନେ ହେବା ପରିବର୍ତ୍ତେ ମନେ ହେବ ଜନସାଧାରଣଙ୍କ ସାଂସ୍କୃତିକ ପୃଷ୍ଠଭୂମିରୁ ଅତି ସ୍ୱାଭାବିକ ଭାବରେ ସେସବୁ ଯେପରି ବଢ଼ି ଉଠିଛି । ତେବେ ପୂର୍ବ ଅପେକ୍ଷା ଆଜିର ଅବସ୍ଥାରେ ସେ ପ୍ରକ୍ରିୟା ସେତେ ସହଜ ନହୋଇ ପାରେ; କାରଣ ଦୀର୍ଘକାଳ ଧରି ଅଭିବୃଦ୍ଧି ବାଧାପ୍ରାପ୍ତ ହେବା ପରେ ବଡ଼ ବଡ଼ ଗୁଣାତ୍ମକ ପରିବର୍ତ୍ତନର ଆବଶ୍ୟକତା ଜରୁରି ହୋଇ ଉଠିଛି ।

ସେହି ସବୁ ମୌଳିକ ଆଦର୍ଶକୁ ଯେଉଁ ଯେଉଁ ଗଢ଼ଣ ଗଢ଼ି ଉଠିଛି ଆଉ ଯାହା ଆଜି ବି ତିଷ୍ଠି ରହିଛି ଓ ଆମକୁ ଶ୍ୱାସରୁଦ୍ଧ କରୁଛି ସେଥି ସଙ୍ଗେ ବିବାଦ ଉପୁଜିବା ଅବଶ୍ୟମ୍ଭାବୀ । ସେହି ଗଢ଼ଣ ସମ୍ପୂର୍ଣ୍ଣ ଭାବରେ ଭାଙ୍ଗିଦେବାକୁ ପଡ଼ିବ, କାରଣ ସେଥିର ବହୁତ କିଛି କଲ୍ୟାଣକର ନୁହେଁ ଏବଂ ଏ ଯୁଗର ବିକାଶ ପ୍ରତି ଅନୁକୂଳ ନୁହେଁ । ଯେଉଁମାନେ ତାହା ବଜାୟ ରଖିବାକୁ ଚାହାନ୍ତି ସେମାନେ ଭଲ ସଙ୍ଗେ ମନ୍ଦକୁ ସମ୍ମିଳିତ କରିବା ଫଳରେ ଭଲକୁ ମଧ୍ୟ ମନ୍ଦାଭିମୁଖୀ କରିବାର ଅବକାଶ ରଖୁଛନ୍ତି । ଏ ଦୁଇଟିକୁ ଅଲଗା କରିବା କିମ୍ବା ଦୁଇଟି ମଧ୍ୟରେ ଯଥାମତ ସୀମାରେଖା ଟାଣିବା କିଛି ସହଜ କଥା ନୁହେଁ ଏବଂ ଏଥି ଉପରେ ବିସ୍ତୃତ ମତଭେଦ ଅବଶ୍ୟ ଦେଖାଦେବ; କିନ୍ତୁ ସେପରି କିଛି ତାତ୍ତ୍ୱିକ ତଥା ଯୁକ୍ତିସମ୍ମତ ସୀମାରେଖା ଟାଣିବାର ଆବଶ୍ୟକତା ନାହିଁ । ପରିବର୍ତ୍ତନଶୀଳ ଜୀବନର ବୋଧ ଏବଂ ଘଟଣାବଳୀର ଗତିଧାରା କ୍ରମଶଃ ଆମ ପାଇଁ ସେହି ରେଖା ଟାଣିଦେବ । ପ୍ରତ୍ୟେକ ଧରଣର ବିକାଶ ପକ୍ଷରେ, ତାହା ପ୍ରଯୁକ୍ତ ବିଜ୍ଞାନର ହେଉ କି ଦର୍ଶନର ହେଉ, ଜୀବନସଙ୍ଗେ, ସାମାଜିକ ଆବଶ୍ୟକତା ସଙ୍ଗେ ଏବଂ ବିଶ୍ୱର ଜୀବନ୍ତ ଆନ୍ଦୋଳନମାନଙ୍କ ସଙ୍ଗେ ଯୋଗାଯୋଗ ସ୍ଥାପନ ନିତାନ୍ତ ଆବଶ୍ୟକ । ଏହି ସମ୍ପର୍କ ନ ରହିଲେ ବିକାଶ ପର୍ଯ୍ୟବସିତ ହୁଏ ଗତିହୀନତାରେ ଏବଂ ସୃଜନ-ଶକ୍ତି ତଥା ପ୍ରାଣ-ଶକ୍ତି ହୁଏ କ୍ଷୟିଷ୍ଣୁ; କିନ୍ତୁ ଏହି ସମ୍ପର୍କ ଚାଲୁ ରଖିପାରିଲେ ଓ ସେଥିପ୍ରତି ଗ୍ରହଣଶୀଳ ମନୋବୃତ୍ତି ପୋଷଣ କଲେ ଆମେ ଜୀବନର ମୋଡ଼ ସଙ୍ଗେ, ଅସରଳ ଗତି ସଙ୍ଗେ ପାଦ ମିଳାଇ ଚାଲିପାରିବା ଏବଂ ଯେଉଁସବୁ ବିଶେଷତ୍ୱ ଆମେ ମୂଲ୍ୟବାନ୍ ମଣିଆସିଛୁ ତାହା ମଧ୍ୟ ହରାଇବା ନାହିଁ ।

ଅତୀତରେ ଜ୍ଞାନ ପ୍ରତି ଆମର ଆଭିମୁଖ୍ୟ ଥିଲା ସମନ୍ୱୟଧର୍ମୀ କିନ୍ତୁ ତାହା ଭାରତ ଭିତରେ ଆବଦ୍ଧ ଥିଲା । ସେ ସୀମା ବନ୍ଧନ ଅବ୍ୟାହତ ରହିଲା ଏବଂ କାଳକ୍ରମେ ସମନ୍ୱୟଧର୍ମୀ ଆଭିମୁଖ୍ୟ ବଦଳରେ ଅଧିକତର ବିଶ୍ଳେଷଣମୂଳକ ଏକ ଆଭିମୁଖ୍ୟ ଗଢ଼ି ଉଠିଲା । ବର୍ତ୍ତମାନ କିନ୍ତୁ ଆମକୁ ସେହି ସମନ୍ୱୟଧର୍ମୀ ବିଭାବ ଉପରେ ଅଧିକତର ଗୁରୁତ୍ୱ ଦେଇ ସମଗ୍ର ବିଶ୍ୱକୁ ଆମର ଅଧ୍ୟୟନ କ୍ଷେତ୍ର ଭାବରେ ଗ୍ରହଣ କରିବାକୁ ପଡ଼ିବ । ଜାତି ହେଉ କି ବ୍ୟକ୍ତି ହେଉ, ଚିନ୍ତା ଓ କର୍ମର ସଂକୀର୍ଣ୍ଣ ଗଣ୍ଡିମଧ୍ୟରୁ ବାହାରି ଆସିବାକୁ ହେଲେ, କାଲ କାଲ ଧରି ଯେଉଁ ଗଣ୍ଡି ମଧ୍ୟରେ ଅନେକେ ଆବଦ୍ଧ ହୋଇଥାନ୍ତି, ସମନ୍ୱୟ ଉପରେ ଜୋର୍ ଦେବା ପ୍ରତ୍ୟେକ ପକ୍ଷରେ ବାସ୍ତବିକ ଆବଶ୍ୟକ । ବିଜ୍ଞାନର ବିକାଶ ଓ ତାର ପ୍ରୟୋଗ ଏହା ଆମପାଇଁ ସମ୍ଭବ କରିଛି, ତଥାପି, ନୂତନ ଜ୍ଞାନର ଆଧିକ୍ୟ ଆମର ଅସୁବିଧା ବଢ଼ାଇ ଦେଇଛି । ବିଶେଷଜ୍ଞ ହେବାର ଉତ୍କଣ୍ଠା ଏକ ନିର୍ଦ୍ଦିଷ୍ଟ ଗଣ୍ଡି ଭିତରେ ବ୍ୟକ୍ତି ଜୀବନର ପରିସର ସଂକୀର୍ଣ୍ଣ କରିଛି ଏବଂ ଶିଳ୍ପକ୍ଷେତ୍ରରେ ଜଣେ ମଣିଷର ଶ୍ରମ ବହୁଧା ଉତ୍ପାଦିତ ଦ୍ରବ୍ୟର ଅତି ନଗଣ୍ୟ କେଉଁ କଣିକାରେ ଆବଦ୍ଧ ରହିଯାଏ । ଜ୍ଞାନରେ ଓ କର୍ମରେ ବିଶେଷଜ୍ଞ ହେବାର ପ୍ରୟାସ ଅବ୍ୟାହତ ରହିବା ଉଚିତ୍; କିନ୍ତୁ ସେଥି ସଙ୍ଗେ ସଙ୍ଗେ ମାନବ ଜୀବନ ପ୍ରତି ଏବଂ ଯୁଗେ ଯୁଗେ ମଣିଷ ଯେଉଁ ଦୁଃସାହସିକତା କରିଆସିଛି ସେଥିପ୍ରତି, ଅଧିକରୁ ଅଧିକ ଭାବରେ, ଗୋଟାଏ ସମନ୍ୱୟଧର୍ମୀ

ଦୃଷ୍ଟିକୋଣ ଉଦ୍‌ଘାଟିତ କରିବା ଅପରିହାର୍ଯ୍ୟ ମନେହୁଏ । ଏହି ଦୃଷ୍ଟିଭଙ୍ଗୀ ଅତୀତ ଓ ବର୍ତ୍ତମାନ ଭବିଷ୍ୟର ବିବେଚନା କରିବ ଏବଂ ସର୍ବ ଦେଶ ଓ ଜାତିକୁ ତାର ପରିସରଭୁକ୍ତ କରିବ । ଏହି ଭାବରେ ହୁଏତ, ଆମର ଜାତୀୟ ପୃଷ୍ଠଭୂମି ଓ ପରିସ୍ଥିତିକୁ ଘେନି, ଅନ୍ୟମାନଙ୍କର କାର୍ଯ୍ୟପ୍ରତି ଉଚିତ ମୂଲ୍ୟ ଦେଇ, ଅନ୍ୟାନ୍ୟ ଦେଶର ନାନା ଜାତିଙ୍କ ସଙ୍ଗେ ସହଯୋଗ କରି ସେମାନଙ୍କୁ ବୁଝି ପାରିବାର ସାମର୍ଥ୍ୟସହକାରେ ଆମେ ପ୍ରଗତି କରି ପାରିବା । ଏପରି ଭାବରେ ମଧ୍ୟ, ଆମେ କେତେ ପର୍ଯ୍ୟନ୍ତ, ଏକଦେଶଦର୍ଶୀ ବ୍ୟକ୍ତି ପରିବର୍ତ୍ତେ ସର୍ବତୋମୁଖୀ ଚରିତ୍ରଶାଳୀ ବ୍ୟକ୍ତିତ୍ୱ ଗଠନରେ ସଫଳତା ଅର୍ଜନ କରିପାରିବା । ପ୍ଲାଟୋଙ୍କ ଭାଷାରେ ଆମେ ହୁଏତ 'ସବୁ କାଳର ସବୁ ସତ୍ତାର ଦ୍ରଷ୍ଟା' ହୋଇପାରିବା ଏବଂ ଆମର ଭରଣପୋଷଣ ସେହି ଗନ୍ତାଘର ବୁଲାଇବ ଯେଉଁ ଗନ୍ତାଘର ଯୁଗ ଯୁଗ ଧରି ମାନବିକ ଚେଷ୍ଟାରେ ସୃଷ୍ଟି ହୋଇଚି । ଆମେ ସେହି ଭଣ୍ଡାର ବୃଦ୍ଧି କରିବା ଓ ଭବିଷ୍ୟ-ନିର୍ମାଣରେ ତାହା ବିନିଯୋଗ କରିବା ।

ଏ କଥା ବଡ଼ ବିଚିତ୍ର ଓ ତାତ୍ପର୍ଯ୍ୟପୂର୍ଣ୍ଣ ଯେ ସମସ୍ତ କିଛି ଆଧୁନିକ ବୈଜ୍ଞାନିକ ପ୍ରଗତି ଓ ଆନ୍ତର୍ଜାତୀୟତାର ବାଗାଡ଼ମ୍ବର ସତ୍ତ୍ୱେ ବର୍ଣ୍ଣ-ବିଦ୍ୱେଷ ଓ ଅନ୍ୟାନ୍ୟ ବିଚ୍ଛିନ୍ନକାରୀ ମନୋବୃତ୍ତି ଇତିହାସର ଯେକୌଣସି ସମୟ ଭଳି, ଅଧିକ ନହେଲେ ସୁଦ୍ଧା ଠିକ୍ ସେହି ପରିମାଣରେ, ଆଜି ପ୍ରକାଶ ପାଉଚି । ଏହିସବୁ ପ୍ରଗତିରେ କିଛି ଗୋଟାଏ ଅଭାବ ରହିଯାଉଚି ଯାହାଲାଗି ମଣିଷର ଅସ୍ତୋନ୍ନତି କିମ୍ବା ଜାତି ଜାତି ମଧ୍ୟରେ ସମତାବୋଧ ଓ ସାମଞ୍ଜସ୍ୟ ସୃଷ୍ଟି ହୋଇ ପାରୁନି । ହୁଏତ ଅଧିକତର ସମନ୍ୱୟ ଏବଂ ମାନବ ଜାତିର ସଞ୍ଚିତ ଅଭିଜ୍ଞତା ଅର୍ଥାତ୍ ଅତୀତର ପ୍ରଜ୍ଞା ପ୍ରତି ସତ୍‌କଳ୍ପିତ ଶ୍ରଦ୍ଧା ଓ ସମ୍ମାନ ଅର୍ପଣ କଲେ ଆମେ ଏକ ନୂତନ ପରିପ୍ରେକ୍ଷୀ ଓ ବୃହତ୍ତର ଐକ୍ୟ ଲାଭକରିପାରିବା । ଏହା ବିଶେଷତଃ ସେହିସବୁ ଜାତିମାନଙ୍କ ପାଇଁ ଆବଶ୍ୟକ ଯେଉଁମାନେ ବର୍ତ୍ତମାନରେ କେବଳ ଏକ ଉତ୍କଣ୍ଠିତ ଜୀବନଯାପନ କରନ୍ତି ଏବଂ ସେମାନଙ୍କର ଅତୀତକୁ ସେମାନେ ପ୍ରାୟ ଭୁଲିଗଲେଣି କହିଲେ ଚଳେ । କିନ୍ତୁ ଭାରତ ଭଳି ଦେଶମାନଙ୍କ ପକ୍ଷରେ ଅନ୍ୟ ବିଷୟ ଉପରେ ଜୋରଦେବା ଦରକାର କାରଣ ଆମେ ଅତୀତକୁ ଏତେଭଳି ପୋଟାଳି ରହିଚୁ ଯେ ବର୍ତ୍ତମାନର ମହତ୍ତ୍ୱ ଆମକୁ ଅନୁଭବ ପ୍ରଭାବିତ କରିପାରିନି । ସେହି ଧାର୍ମିକ ଦୃଷ୍ଟିଭଙ୍ଗୀ ଯାହା ମନର ପରିସର ସଙ୍କୀର୍ଣ୍ଣ କରେ, ଅଲୌକିକ ତଥା ଅଧିଭୌତିକ କଳ୍ପନାର ଆବେଶ, ଧାର୍ମିକ ଅନୁଷ୍ଠାନ ଓ ଅତୀନ୍ଦ୍ରିୟ ଭାବପ୍ରବଣତାରେ ମାନସିକ ଶୃଙ୍ଖଳାର ଶିଥିଳତା, ଯାହା ଆମେ ନିଜକୁ ଓ ବାହାର ଦୁନିଆକୁ ବୁଝିବାରେ ପ୍ରତିବନ୍ଧକ ସୃଷ୍ଟିକରେ, ଆମକୁ ପରିହାର କରିବାକୁ ପଡ଼ିବ । ଏହି ଜୀବନ, ଏହି ବିଶ୍ୱ, ଏହି ପ୍ରକୃତି ସଙ୍ଗେ ଯାହା ତାର ଅଫୁରନ୍ତ ବୈଚିତ୍ର୍ୟ ଘେନି ଆମକୁ ଘେରି ରହିଚି ଏବଂ ସଂକ୍ଷେପରେ ଗୋଟିଏ କଥାରେ କହିଲେ ଏହି ବର୍ତ୍ତମାନ ସଙ୍ଗେ ଆମକୁ ସମସ୍ତ ପ୍ରକାର ବୁଝାମଣା କରିବାକୁ ପଡ଼ିବ । କେହି କେହି ହିନ୍ଦୁ ବେଦକୁ ଫେରିଯିବା କଥା କହୁଥାନ୍ତି; କେହି କେହି ମୁସଲମାନ ଗୋଟାଏ ଇସ୍‌ଲାମୀୟ ଧର୍ମରାଜ୍ୟର ସ୍ୱପ୍ନ ଦେଖିଥାନ୍ତି । ଏସବୁ ଅସାର କଳ୍ପନା । କାରଣ ଅତୀତକୁ ଫେରିଯିବା କଥା ଆଉ ନାହିଁ;

ବାଞ୍ଛନୀୟ ବିବେଚିତ ହେଲେ ସୁଦ୍ଧା ପଛକୁ ମୁହଁ ଫେରାଇବାର ଅବକାଶ ନାହିଁ । କାଳର ପ୍ରଦେଶରେ ସବୁକିଛି କାରବାର ଏକ-ମୁହାଁ ରାସ୍ତାରେ ।

ଅତଏବ, ଭାରତକୁ ତାର ଧାର୍ମିକତା କମାଇ ବିଜ୍ଞାନ ଆଡ଼କୁ ମୁହଁ ଫେରାଇବାକୁ ପଡ଼ିବ । ତାର ଚିନ୍ତା ଓ ସାମାଜିକ ଆଚରଣ ଯାହା ତାକୁ ସମସ୍ତଙ୍କଠାରୁ ଅଲଗା କରି ରଖିଛି, ଏକ ପ୍ରକାର କାରାରୁଦ୍ଧ କରିଛି କହିଲେ ଚଳେ, ତାର ଆତ୍ମୋନ୍ନତି ଓ ଅଭିବୃଦ୍ଧିର ପଥରୋଧ କରୁଛି, ସେହି ଅନନ୍ୟତା ଭାବ ଭାରତକୁ ପରିହାର କରିବାକୁ ପଡ଼ିବ । ଆଚାର ଶୁଦ୍ଧତାର ଧାରଣା ସାମାଜିକ ସମ୍ପର୍କ ପ୍ରତିଷ୍ଠା ଦିଗରେ ପ୍ରତିବନ୍ଧକ ସୃଷ୍ଟି କରିଛି ଏବଂ ସାମାଜିକ କ୍ରିୟାନୁଷ୍ଠାନର କ୍ଷେତ୍ର ସଙ୍କୀର୍ଣ୍ଣ କରିଦେଇଛି । ଆଧ୍ୟାତ୍ମିକ ମୂଲ୍ୟବୋଧର ଯେତିକି ନୁହେଁ ତଦପେକ୍ଷା ଅଧିକ ପରିମାଣରେ ଜଣେ ନୈଷ୍ଠିକ ହିନ୍ଦୁର ଦୈନନ୍ଦିନ ଧର୍ମାଚରଣର ଜଞ୍ଜାଳ ହେଲା—କ'ଣ ସେ ଖାଇବ କ'ଣ ନୁହେଁ, କାହା ସାଙ୍ଗରେ ଖାଇବ ଓ କାହା ସଙ୍ଗେ ବସି ଖାଇବ ନାହିଁ । ତାର ସାମାଜିକ ଜୀବନ ଉପରେ ଆଧିପତ୍ୟ କରିଥାଏ ରନ୍ଧନଶାଳାର ବିବିଧ ନୀତିନିୟମ । ସୌଭାଗ୍ୟତଃ ମୁସଲମାନ ଏହିସବୁ ବାଧା ନିଷେଧରୁ ମୁକ୍ତ, କିନ୍ତୁ ତାର ବି ବହୁ ସଙ୍କୀର୍ଣ୍ଣ ରୀତିନୀତି ଓ ଆଚାରବିଚାର ରହିଛି ଏବଂ ତାର ଧର୍ମ ତାକୁ ଯେଉଁ ସୌଭ୍ରାତୃତ୍ୱ ଶିକ୍ଷା ଦେଇଥିଲା ତାହା ଭୁଲିଯାଇ ସେ ସେହି ଆଚାର ଅନୁଷ୍ଠାନ ପ୍ରଣାଳୀ ଖୁବ୍ ନିଷ୍ଠାପର ଭାବରେ ଅନୁସରଣ କରି ଚାଲିଛି । ଜୀବନ ପ୍ରତି ତାର ଦୃଷ୍ଟିଭଙ୍ଗୀ ହିନ୍ଦୁ ଦୃଷ୍ଟିଭଙ୍ଗୀ ଅପେକ୍ଷା ହୁଏତ ଆହୁରି ଅଧିକ ସୀମିତ ଓ ନିଶ୍ଚଳ । ତେବେ ଆଜିର ଜଣେ ସାଧାରଣ ହିନ୍ଦୁର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ମୁସଲିମ୍ ଅପେକ୍ଷା ଅଧିକତର ସଙ୍କୀର୍ଣ୍ଣ କାରଣ ସେ ହରାଇ ବସିଛି ତାର ପରମ୍ପରାଗତ ଚିନ୍ତା କରିବାର ସ୍ୱାଧୀନତା ଓ ସେହି ପୃଷ୍ଠଭୂମି ଯାହା ଜୀବନକୁ ନାନା ଭାବରେ ସମୃଦ୍ଧ କରିଥାଏ ।

ହିନ୍ଦୁମାନଙ୍କ ଭିତରେ ଏହି ଅନନ୍ୟତାର ପ୍ରତୀକ ଓ ପ୍ରତିରୂପ ହେଉଛି ବର୍ଣ୍ଣ-ବ୍ୟବସ୍ଥା । ବେଳେବେଳେ କୁହାଯାଇଥାଏ ଯେ ବର୍ଣ୍ଣ-ବ୍ୟବସ୍ଥାର ମୌଳିକ ଧାରଣାରେ କିଛି ଦୋଷ ନାହିଁ ଏବଂ ତାହା ଚଳିପାରେ । କିନ୍ତୁ ପରେ ପରେ ଯେଉଁସବୁ ଅନିଷ୍ଟକର ପ୍ରଥା ସେଥି ଉପରେ ଗଢ଼ି ଉଠିଛି ସେସବୁ ଯିବା ଦରକାର । କିଏ କେଉଁ ବର୍ଣ୍ଣରେ ଜନ୍ମ ଗ୍ରହଣ କରିଛି ତାହା ନ ଧରି ତାର ପ୍ରତିଭା ଧର୍ତ୍ତବ୍ୟ ହେବା ବିଧେୟ । ବର୍ଣ୍ଣ-ବ୍ୟବସ୍ଥା ପ୍ରତି ଏ ପ୍ରକାର ଆଭିମୁଖ୍ୟ ସମ୍ପୂର୍ଣ୍ଣ ଅସଙ୍ଗତ ଏବଂ ଏଥିଦ୍ୱାରା ପ୍ରକୃତ ଯାହା ପ୍ରଶ୍ନ ଅଯଥା ଜଟିଳ ହୋଇପଡ଼େ । ଏକ ଐତିହାସିକ ପ୍ରକରଣରେ ବର୍ଣ୍ଣ-ବ୍ୟବସ୍ଥାର ବିକାଶ ସମ୍ପର୍କରେ ଅଧ୍ୟୟନର କିଛି ମୂଲ୍ୟ ଅଛି; କିନ୍ତୁ ଏକଥା ସ୍ପଷ୍ଟ ଯେ ବର୍ଣ୍ଣ-ବ୍ୟବସ୍ଥା ଯେବେ ଆରମ୍ଭ ହେଲା, ସେ ଯୁଗକୁ ଆମେ ପୁଣି ଫେରିଯାଇ ନପାରୁଁ । ଆଜିର ସାମାଜିକ ସଙ୍ଗଠନରେ ସେଥି ନିମନ୍ତେ କୌଣସି ସ୍ଥାନ ନାହିଁ । ପ୍ରତିଭାକୁ ଯଦି ଏକମାତ୍ର ମାନଦଣ୍ଡ କରି ଧରାଯାଏ ଏବଂ ସମସ୍ତଙ୍କ ପାଇଁ ସମାନ ସୁଯୋଗ ମୁକ୍ତ କରାଯାଏ, ତାହାହେଲେ ଆଜି ବର୍ଣ୍ଣ-ବ୍ୟବସ୍ଥାର ଯାହା କିଛି ବାହ୍ୟ ବୈଶିଷ୍ଟ୍ୟ ରହିଛି, ତାହା ଉଭାଇଯିବ । ବସ୍ତୁତଃ ସେଇଠି ବର୍ଣ୍ଣ-ବ୍ୟବସ୍ଥାର ପରିସମାପ୍ତି ଘଟିବ । ଅତୀତରେ ବର୍ଣ୍ଣ-ବ୍ୟବସ୍ଥା କେତେକ ଗୋଷ୍ଠୀକୁ ଦମନ କରିବା ଦିଗରେ ସହାୟତା କରିଛି

କେବଳ ନୁହେଁ, ବରଂ ପ୍ରକୃତ କର୍ମକ୍ଷେତ୍ରର କୁଶଳତାରୁ ତତ୍ତ୍ୱବୋଧ ଓ ବିଦ୍ୱଦ୍‌ବର୍ଗଙ୍କୁ ବିଚ୍ଛିନ୍ନ କରିଚ; ବାସ୍ତବ ଜୀବନ ଓ ତାର ସମସ୍ୟାମାନଙ୍କରୁ ଦର୍ଶନକୁ ସ୍ୱତନ୍ତ୍ର କରିଚ । ପାରମ୍ପରିକତା ଉପରେ ପ୍ରତିଷ୍ଠିତ ଏହା ଥିଲା ଏକ ଅଭିଜାତ ଶ୍ରେଣୀର ଆଭିମୁଖ୍ୟ । ଏହି ଦୃଷ୍ଟିଭଙ୍ଗୀ ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତିତ ହେବା ଦରକାର, କାରଣ ଆଧୁନିକ ଅବସ୍ଥା ଓ ଗଣତାନ୍ତ୍ରିକ ଆଦର୍ଶର ଏହା ମୂଳତଃ ପରିପନ୍ଥୀ । ସାମାଜିକ ଗୋଷ୍ଠୀମାନଙ୍କର କର୍ମଗତ ସଂଗଠନ ଭାରତରେ ଚାଲିବାରେ ସେପରି କିଛି ଆପତ୍ତି ନାହିଁ; କିନ୍ତୁ ତାହା ମଧ୍ୟ ବିପୁଳ ପରିବର୍ତ୍ତନ ଭିତର ଦେଇ ଗତି କରିବ; କାରଣ ଆଧୁନିକ ଶିଳ୍ପର ପ୍ରକୃତି ହେଲା ନବନବ କର୍ମ ସୃଷ୍ଟି କରିବା ଓ ବହୁତ କିଛି ପୁରାତନ କର୍ମ ପରିହାର କରିବା । ସବଂଶ ଆଜିର ମନୋବୃତ୍ତି ହେଉଚି ସମାଜକୁ କର୍ମଗତ ଭିତ୍ତି ଉପରେ ସଙ୍ଗଠିତ କରିବା ଏବଂ ଯେତେସବୁ ବିମୂର୍ତ୍ତ ଅଧିକାରର ଧାରଣା ଆପଣାଛାଏଁ ନବ ନବ କର୍ମ ଓ କର୍ତ୍ତବ୍ୟ ପାଇଁ ପଥ ମୁକ୍ତ କରିଦେଉଚି । ପୁରାତନ ଭାରତୀୟ ଆଦର୍ଶ ସଙ୍ଗେ ଏହାର ସଙ୍ଗତି ରହିଚି ।

ପ୍ରତ୍ୟେକ କ୍ଷେତ୍ରରେ ଅଭ୍ୟାସ ଓ ଆଚରଣ ପ୍ରତିକୂଳତା କରୁଥିଲେ ହେଁ ଆଜିର ଯୁଗ ଖୋଜୁଁଚି ସମାନତା । ମଣିଷ ଅନ୍ୟ ଜଣେ ମଣିଷର ସମ୍ପତ୍ତି ହୋଇପାରେ—ସୀମିତ ଅର୍ଥରେ, ଆମେ ସେ ପ୍ରକାର ଦାସତ୍ୱରୁ ମୁକ୍ତହୋଇ ସାରିଲେଣି କହିଲେ ଚଳେ; କିନ୍ତୁ ପୁରାତନ ଅପେକ୍ଷା କେତେକ ଦିଗରୁ ଅଧିକ ଅନିଷ୍ଟକର ଏକ ନୂତନ ଦାସତ୍ୱ ଆଜି ବିଶ୍ୱସାରା ଆସ୍ଥାନ ଜମାଇ ବସିଚି । ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ନାମରେ ଏକାଧିକ ରାଜନୈତିକ ତଥା ଅର୍ଥନୈତିକ ବ୍ୟବସ୍ଥା ମଣିଷକୁ ଶୋଷଣ କରି ତାକୁ ନିର୍ଜୀବ ଦ୍ରବ୍ୟ ଭାବରେ ବ୍ୟବହାର କରୁଚି । ଆହୁରି ମଧ୍ୟ, ଜଣେ ମଣିଷ ଅନ୍ୟ ଏକ ମଣିଷର ସମ୍ପତ୍ତି ହେବାର ଅବକାଶ ନଥିଲେ ହେଁ ଗୋଟାଏ ଦେଶ ଓ ଗୋଟାଏ ଜାତି ଅନ୍ୟ ଏକ ଜାତିର ସମ୍ପତ୍ତି ବିବେଚିତ ହେବାରେ କୌଣସି ଦୋଷ ପରିଲକ୍ଷିତ ହେଉନାହିଁ । ଏପରି ଭାବରେ ସମ୍ପ୍ରଦାୟ ଦାସତ୍ୱ ସ୍ୱୀକୃତ ହୋଇଚି । ଆମ ସମୟର ଗୋଟାଏ ଲକ୍ଷଣୀୟ ବିଷୟ ହେଉଚି ସ୍ୱଜାତି ଅନୁରାଗ । ଆମ ବିଶ୍ୱରେ ପ୍ରଭୁ-ଜାତି କେବଳ ନୁହେଁ, ପ୍ରଭୁ-ଉପଜାତି ବି ଅଛନ୍ତି ।

ତଥାପି, ଯୁଗ-ଧର୍ମ ହିଁ ବିଜୟ ହାସଲ କରିବ । ଭାରତରେ ଯେତେ ଯାହାହେଲେ ବି, ଆମର ଲକ୍ଷ୍ୟ ହେବା ଉଚିତ ସମାନତା । ଏହାର ଅର୍ଥ ନୁହେଁ ଯେ ଶାରୀରିକ କିମ୍ବା ବୌଦ୍ଧିକ କିମ୍ବା ଆଧ୍ୟାତ୍ମିକ ଦିଗରୁ ସମସ୍ତେ ହେବେ ସମାନ । ଏପରି ଭାବରେ ସମସ୍ତଙ୍କୁ ସମାନ କରି ଗଢ଼ିବା କେବେହେଲେ ସମ୍ଭବ ନୁହେଁ; କିନ୍ତୁ ସମାନତା କହିଲେ ଏତିକି ଅନ୍ତତଃ ବୁଝିହେବ ଯେ ସମସ୍ତଙ୍କ ପାଇଁ ସମାନ ସୁଯୋଗ ନିବେଦିତ ରହିବ ଏବଂ ରାଜନୈତିକ, ଅର୍ଥନୈତିକ କିମ୍ବା ସାମାଜିକ ଅନ୍ତରାୟ କୌଣସି ବ୍ୟକ୍ତି ଅବା ଗୋଷ୍ଠୀର ପଥରୋଧକରି ବସିବ ନାହିଁ । ଏହାର ଅର୍ଥ ହେଉଚି ମାନବ ଜାତି ଉପରେ ଅଖଣ୍ଡ ବିଶ୍ୱାସ, ଅତୁଟ ଆସ୍ଥା ଏବଂ ଏ ବିଶ୍ୱାସ ବି ସେଥି ସଙ୍ଗେ ଜଡ଼ିତ ଯେ ସେପରି କୌଣସି ଜାତି କିମ୍ବା ଗୋଷ୍ଠୀ ନାହିଁ, ସୁଯୋଗ ପାଇଲେ, ଯାହା ନିଜର ଧାରାରେ ପ୍ରଗତି କରି ନପାରେ । ଏହାର ଅର୍ଥ ହେଉଚି ସେହି ବାସ୍ତବତାର ଉପଲବ୍ଧି

ଯେ କୌଣସି ଗୋଷ୍ଠୀର ଅନଗ୍ରସରତା କିମ୍ବା ଅବନତି ସେହି ଗୋଷ୍ଠୀ ଜୀବନରେ ନିହିତ କୌଣସି ତ୍ରୁଟି-ବିଚ୍ୟୁତି ଯୋଗୁ କେବଳ ନୁହେଁ ବରଂ ପ୍ରଧାନତଃ ସୁଯୋଗର ଅଭାବ ଓ ଅନ୍ୟାନ୍ୟ ଗୋଷ୍ଠୀର ନିର୍ଯାତନା ଯୋଗୁଁ । ଏହାର ଅର୍ଥ ଏପରି ଭାବରେ ଗ୍ରହଣ କରିବାକୁ ହେବ ଯେ ଆଧୁନିକ ବିଶ୍ୱରେ, ଜାତୀୟ ହେଉ କି ଆନ୍ତର୍ଜାତୀୟ ହେଉ, ପ୍ରକୃତ ପ୍ରଗତି ଓ ଅଗ୍ରଗତି ଅନେକାଂଶରେ ଏକ ମିଳିତ ବ୍ୟାପାର ଏବଂ ଗୋଟାଏ ଅନଗ୍ରସର ଗୋଷ୍ଠୀ ଅନ୍ୟମାନଙ୍କୁ ପଛକୁ ଟାଣିଧରେ । ଅତଏବ, ସମସ୍ତଙ୍କ ପାଇଁ ସମାନ ସୁଯୋଗ ଦେବା କେବଳ ଯଥେଷ୍ଟ ନୁହେଁ; ଶିକ୍ଷା, ଅର୍ଥନୀତି ଓ ସଂସ୍କୃତିର ବିକାଶ ନିମନ୍ତେ ଅନଗ୍ରସର ଗୋଷ୍ଠୀମାନଙ୍କୁ ସେପରି ବିଶେଷ ସୁଯୋଗମାନ ଦିଆଯିବା ଉଚିତ, ଯାହା ଫଳରେ ସେମାନଙ୍କ ଆଗରେ ରହିଥିବା ଗୋଷ୍ଠୀମାନଙ୍କ ସଙ୍ଗେ ମିଳିତ ହେବା ପାଇଁ ସେମାନେ ସମର୍ଥ ହୋଇପାରିବେ । ଭାରତରେ ସୁଯୋଗର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ କରିବା ଦିଗରେ ଯେ କୌଣସି ଉଦ୍ୟମ ପ୍ରଚୁର ଶକ୍ତି ଓ ସାମର୍ଥ୍ୟର ପ୍ରକାଶ ସମ୍ଭବ କରିବ ଏବଂ ବିସ୍ମୟକର ବେଗରେ ଦେଶର ରୂପାନ୍ତର ଘଟାଇବ ।

ଯୁଗର ଚେତନା ଯଦି ସମାନତା ଦାବି କରେ ତାହାହେଲେ ସେଥି ସଙ୍ଗେ ସଙ୍ଗତି ରଖିଲା ଭଳି ଓ ତାକୁ ଉତ୍ସାହିତ କରିବା ଭଳି ଗୋଟାଏ ଅର୍ଥନୈତିକ ବ୍ୟବସ୍ଥା ମଧ୍ୟ ଆବଶ୍ୟକ । ଭାରତରେ ପ୍ରଚଳିତ ବର୍ତ୍ତମାନ ଔପନିବେଶିକ ବ୍ୟବସ୍ଥା ତାର ସମ୍ପୂର୍ଣ୍ଣ ବିପରୀତ । ସ୍ୱୈରତନ୍ତ୍ର ଅସମାନତା ଉପରେ ପ୍ରତିଷ୍ଠିତ କେବଳ ନୁହେଁ, ବରଂ ଜୀବନର ପ୍ରତିକ୍ଷେତ୍ରରେ ତାହା ପ୍ରଭାବ ବିସ୍ତାରକରେ । ଗୋଟିଏ ଜାତିର ରଚନାତ୍ମକ, ନୈତିକ ଓ ଅଧ୍ୟାତ୍ମିକ ଶକ୍ତିକୁ ତାହା ଦମନ କରେ; ପ୍ରତିଭା ଓ ଦକ୍ଷତା ଅବରୁଦ୍ଧ କରେ; ଏବଂ ଦାୟିତ୍ୱବୋଧର ବିକାଶ ନିରୁତ୍ସାହିତ କରେ । ଯେଉଁମାନେ ଏହି ବ୍ୟବସ୍ଥାଦ୍ୱାରା ପୀଡ଼ିତ ହୋଇଥାନ୍ତି, ସେମାନେ ନିଜର ଆତ୍ମସମ୍ମାନ ଓ ଆତ୍ମବିଶ୍ୱାସ ହରାଇ ବସନ୍ତି । ଭାରତର ଯେତେ ସବୁ ସମସ୍ୟା, ବାହ୍ୟତଃ କେତେ ଜଟିଳ ଜଣାଗଲେ ସୁଦ୍ଧା, ସାରତଃ କମ୍ ବଢୁଛରେ, ତାର ରାଜନୈତିକ ତଥା ଅର୍ଥନୈତିକ ସଙ୍ଗଠନ ସ୍ଥିତିକୁ ବଜାୟ ରଖି ଅଗ୍ରଗତି କରିବା ଉଦ୍ୟମର ଫଳ । ଏହି ସଙ୍ଗଠନ ସ୍ଥିତିକୁ ଏବଂ ନାନାବିଧ ନ୍ୟସ୍ତସ୍ୱାର୍ଥକୁ ରକ୍ଷାକରି ଅଜି ରାଜନୈତିକ ଅଗ୍ରଗତିର ପରିକଳ୍ପନା କରାଯାଉଚି । ରାଜନୈତିକ ଅଗ୍ରଗତି ଏକ ବିରୋଧାତ୍ମକ ପରିପ୍ରେକ୍ଷୀରେ କରାଯାଇ ନପାରେ ।

ରାଜନୈତିକ ପରିବର୍ତ୍ତନ ଅବଶ୍ୟମ୍ଭାବୀ; କିନ୍ତୁ ଅର୍ଥନୈତିକ ପରିବର୍ତ୍ତନ ମଧ୍ୟ ଠିକ୍ ସେପରି ଭାବରେ ଆବଶ୍ୟକ । ଗଣତାନ୍ତ୍ରିକ ଧାରାରେ, ସୁପରିକଳ୍ପିତ ସମାଜବାଦ ଦିଗରେ, ସେହି ପରିବର୍ତ୍ତନ ସାଧିତ ହେବା ଦରକାର । ଆର. ଏଇଚ୍. ଟାନେ କହନ୍ତି, "ପ୍ରତିଯୋଗିତା ଓ ଏକଚାଟିଆ କାରବାର ଭିତରୁ ଗୋଟିକୁ ବାଛି ନେବାର ପ୍ରଶ୍ନ ନାହିଁ । ପ୍ରଶ୍ନ ହେଉଚି, କେଉଁ ପ୍ରକାର ଏକାଧିକାର ବା ଏକଚାଟିଆ କାରବାର ବାଛିନେବାକୁ ହେବ : ଯାହା ବ୍ୟକ୍ତିବିଶେଷ କର୍ତ୍ତୃତ୍ୱାଧୀନ ଓ ଦାୟିତ୍ୱହୀନ, ନା ଯାହା ରାଷ୍ଟ୍ରାୟତ୍ତ ଓ ଦାୟିତ୍ୱପୂର୍ଣ୍ଣ ।" ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କରେ ମଧ୍ୟ ଏ ପ୍ରକାର ରାଷ୍ଟ୍ରାୟତ୍ତ ଏକଚାଟିଆ

କରିବାର ବୃଦ୍ଧି ଲାଭ କରୁଛି ଓ ବରାବର ବୃଦ୍ଧି ଲାଭ କରିବ । ଏ ଉଭୟ ପଛରେ କାର୍ଯ୍ୟ କରୁଥିବା ବିଭିନ୍ନ ଦ୍ୱନ୍ଦ୍ୱ ବରାବର ରହିଥିବ, ଯେ ପର୍ଯ୍ୟନ୍ତ ବ୍ୟକ୍ତିଗତ ଏକଚାଟିଆ କାରବାର ସମ୍ପୂର୍ଣ୍ଣ ବିଲୋପ କରାନଯାଇଛି । ଗଣତାନ୍ତ୍ରିକ ସମାଜବାଦର ଅର୍ଥ ନୁହେଁ ବ୍ୟକ୍ତିଗତ ସମ୍ପତ୍ତିର ଉଚ୍ଛେଦ ସାଧନ । ଏହାର ଅର୍ଥ ହେଉଛି ମୌଳିକ ତଥା ବୃହତ୍ ଶିଳ୍ପସଂସ୍ଥା ଉପରେ ରାଷ୍ଟ୍ରୀୟ ମାଲିକାନା ପ୍ରତିଷ୍ଠା । ଏହାର ଅର୍ଥ ହେଉଛି ସମବାୟ ସୂତ୍ରରେ ଅଥବା କୋଠ-ବ୍ୟବସ୍ଥା ଜରିଆରେ କୃଷି ଜମି ଉପରେ ନିୟନ୍ତ୍ରଣ ପ୍ରତିଷ୍ଠା । ବଡ଼ ବଡ଼ ଶିଳ୍ପ ଅତିରିକ୍ତ, ସମବାୟ ସୂତ୍ରରେ ନିୟନ୍ତ୍ରିତ କ୍ଷୁଦ୍ର ତଥା କୁଟୀର ଶିଳ୍ପର ପ୍ରସାର ଭାରତ ନିମନ୍ତେ ବିଶେଷ ଭାବରେ ଆବଶ୍ୟକ ହୋଇପଡ଼ିବ । ଏପରି ଏକ ଗଣତାନ୍ତ୍ରିକ ସମାଜବାଦର ବ୍ୟବସ୍ଥା ନିମନ୍ତେ ଦରକାର ହେବ ସଯତ୍ନ ତଥା ଅବ୍ୟାହତ ପରିକଳ୍ପନା ଏବଂ ଜନସାଧାରଣଙ୍କ ପରିବର୍ତ୍ତିତ ଚାହିଦାକୁ ଧରି କାର୍ଯ୍ୟ କରିଯିବା । ଏହାର ଲକ୍ଷ୍ୟ ହେବ, ଯେତେ ଭାବରେ ସମ୍ଭବ, ଜାତିର ଉତ୍ପାଦିକା ଶକ୍ତିର ପ୍ରସାର ସାଧନ ଏବଂ ସଙ୍ଗେ ସଙ୍ଗେ, ପ୍ରତ୍ୟେକ ସମ୍ଭାବ୍ୟ କାର୍ଯ୍ୟକ୍ଷେତ୍ରରେ ଜାତିର ସମସ୍ତ ଶ୍ରମଶକ୍ତି ନିୟୋଜିତ କରି ବେକାରି ନିବାରଣ । ଯେତେଦୂର ସମ୍ଭବ ପ୍ରତ୍ୟେକ ବ୍ୟକ୍ତି ନିମନ୍ତେ ନିଜର ବୃତ୍ତି ବାଛିନେବାର ସ୍ୱାଧୀନତା ରହିବା ଉଚିତ । ଏ ସବୁ ଫଳରେ ଆୟର ସମୀକରଣ ଅବଶ୍ୟ ସମ୍ଭବ ନୁହେଁ; କିନ୍ତୁ ବଣ୍ଟନରେ ଅଧିକତର ସମାନତା ରକ୍ଷା କରିହେବ ଏବଂ ସେପରି ଭାବରେ କ୍ରମଶଃ ଆୟର ସମୀକରଣ ନିମନ୍ତେ ପଥ ସରଳ ହେବ । ଆଜିର ସମାଜରେ ଯେଉଁ ସବୁ ପାର୍ଥକ୍ୟ ରହିଛି, ତାହା ସମ୍ପୂର୍ଣ୍ଣ ଭାବରେ ଲୋପାଇଯିବ ଏବଂ ଆୟର ବୈଷମ୍ୟ ଉପରେ ସାରତଃ ଭିତ୍ତି କରି ଯେଉଁ ସବୁ ଶ୍ରେଣୀ-ବୈଶିଷ୍ଟ୍ୟ ଗଢ଼ି ଉଠିଛି, ସେ ସବୁ ମଧ୍ୟ ଲୋପାଇବାକୁ ଲାଗିବ ।

ଏ ପ୍ରକାର ପରିବର୍ତ୍ତନ ଫଳରେ ଲାଭ ମନୋବୃତ୍ତି ଉପରେ ମୁଖ୍ୟତଃ ଭିତ୍ତି କରି ଗଢ଼ି ଉଠିଥିବା ଆଜିର ଆହରଣଶୀଳ ସମାଜ ଅନ୍ତର୍ବ୍ୟସ୍ତ ହୋଇପଡ଼ିବ । ଲାଭ-ମନୋବୃତ୍ତି କେତେ ପର୍ଯ୍ୟନ୍ତ ରହିଏତ ରହିପାରେ; କିନ୍ତୁ ତାର ଆଧିକ୍ୟ ଏକେ ନିର୍ଜିତ ହୋଇପଡ଼ିବ କିମ୍ବା ଆଜି ସେଥି ନିମନ୍ତେ ଯେଉଁ ପରିସର ରହିଛି, ତାହା ଆଉ ରହିବ ନାହିଁ । ଲାଭ ମନୋବୃତ୍ତି ପ୍ରତି ଜଣେ ସାଧାରଣ ଭାରତୀୟ ଆକୃଷ୍ଟ ନୁହେଁ କହିବା ଅବଶ୍ୟ ହାସ୍ୟକର ହେବ; କିନ୍ତୁ ଏକଥା ସତ୍ୟ ଯେ ପଶ୍ଚିମ-ଜଗତ ଭଳି ଭାରତରେ ସେଥିପ୍ରତି ସେପରି କିଛି ଉଚ୍ଚଧାରଣା କିମ୍ବା ଐକାନ୍ତିକ ଶ୍ରଦ୍ଧା ନାହିଁ । ଜଣେ ବିତ୍ତବାନ୍ ବ୍ୟକ୍ତି ପ୍ରତି କେତେକ ପରିମାଣରେ ଦ୍ୱେଷ ହୁଏତ ଥାଇପାରେ; କିନ୍ତୁ ସେ ବିତ୍ତମାନ୍ ବୋଲି କେବଳ ଭାରତରେ ସମ୍ମାନିତ କିମ୍ବା ଶ୍ରଦ୍ଧେୟ ନୁହେଁ । ଆଜି ବି ଭାରତରେ ସେ କେବଳ ଶ୍ରଦ୍ଧା ଓ ସମ୍ମାନର ପାତ୍ର, ଯିଏ ନାନା ସଦ୍‌ଗୁଣର ଆଧାର ଓ ପ୍ରାଜ୍ଞ ଏବଂ ବିଶେଷ ପକ୍ଷରେ ଯେଉଁମାନେ ଜନକଲ୍ୟାଣ ଉଦ୍ଦେଶ୍ୟରେ ନିଜର ସବୁ କିଛି ଏପରିକି ନିଜକୁ ସୁଦ୍ଧା ଉତ୍ସର୍ଗ କରିଥାନ୍ତି । ଭାରତୀୟ ଦୃଷ୍ଟିଭଙ୍ଗୀ, ଏପରିକି ଜନତାର ଦୃଷ୍ଟିଭଙ୍ଗୀ ମଧ୍ୟ କେବେହେଲେ ସଞ୍ଚୟଶୀଳ ଭାବନା ପସନ୍ଦ କରିନାହିଁ ।

ସହଭବାଦ ବା ସମଷ୍ଟିବାଦ ସାମୂହିକ ଦାୟିତ୍ୱ ଓ ସହଯୋଗମୂଳକ ଉଦ୍ୟମ ଉପରେ ନିର୍ଭରକରେ । ଗୋଷ୍ଠୀଭାବ ଉପରେ ପ୍ରତିଷ୍ଠିତ ପ୍ରାଚୀନ ଭାରତର ନାନାବିଧ ସାମାଜିକ ଅବଧାରଣା ସଙ୍ଗେ ଏହାର ଅମେଳ ଦିଶେ ମାତ୍ର ନାହିଁ । ବ୍ରିଟିଶ ଶାସନତନ୍ତ୍ର ତଳେ ଏହି ଗୋଷ୍ଠୀ ବା ବର୍ଗ-ବ୍ୟବସ୍ଥାର ଅବନତି, ବିଶେଷତଃ ସ୍ୱଶାସିତ ଗ୍ରାମର ଅବନତି ଭାରତୀୟ ଜନସାଧାରଣଙ୍କର ଅଶେଷ ଅହିତ ସାଧନ କରିଛି ଏବଂ ତାର ଆଘାତ ଅର୍ଥନୈତିକ ଦୃଷ୍ଟିରୁ ନୁହେଁ ତା'ଠାରୁ ଅଧିକ ପରିମାଣରେ ମନସ୍ତାତ୍ତ୍ୱିକ । ନିର୍ଦ୍ଦିଷ୍ଟ କିଛି ତାର ସ୍ଥାନ ପୂରଣ ନକରି ପାରିବା ଫଳରେ ସେମାନେ ସେମାନଙ୍କର ସ୍ୱାଧୀନ ଚେତନା, ଦାୟିତ୍ୱବୋଧ ଏବଂ ସାମାଜିକ ଉଦ୍ଦେଶ୍ୟ ସାଧନ ନିମନ୍ତେ ପରସ୍ପର ସଙ୍ଗେ ମିଳିମିଶି କାର୍ଯ୍ୟ କରିବାର ସାମର୍ଥ୍ୟ ହରାଇ ବସିଲେ । ଯେଉଁ ଗ୍ରାମ ଦିନେ ଥିଲା ଗୋଟାଏ କ୍ରିୟାଶୀଳ ତଥା ମୌଳିକ ଏକକ, କ୍ରମଶଃ ଗୋଟାଏ ପରିତ୍ୟକ୍ତ ଅଞ୍ଚଳରେ ପର୍ଯ୍ୟବସିତ ହେଲା ଏବଂ ଯାହା ରହିଲା ତାହା କେବଳ କେତେଗୋଟି ଝାଟିମାଟି କୁଡ଼ିଆର ସମଷ୍ଟି ଓ କେତେକ ଖାପଛଡ଼ା ଲୋକଙ୍କ ସମାହାର । ତଥାପି ସୁଦ୍ଧା କୌଣସି ଅଦୃଶ୍ୟ ଯୋଗସୂତ୍ରଦ୍ୱାରା ଏହି ସବୁ ଝାଟିମାଟିର କୁଡ଼ିଆ ଓ ତାର ଅଧିବାସୀ ଗ୍ରନ୍ଥି ହୋଇ ରହିଚନ୍ତି ଏବଂ ବହୁ ପୁରାତନ ସ୍ମୃତି ଏବେ ବି ଜାଗ୍ରତ ରହିଛି । ସେହି ସବୁ ପୁରାତନ ପରମ୍ପରାର ସୁଯୋଗ ନେବା କଷ୍ଟକର ନୁହେଁ ଏବଂ ସେଥି ଉପରେ ଭିତ୍ତିକରି କୃଷି ଓ କ୍ଷୁଦ୍ର ଶିଳ୍ପ କ୍ଷେତ୍ରରେ ସାମୁଦାୟିକ ତଥା ସମବାୟ ସଂସ୍ଥାମାନ ଗଢ଼ି ତୋଳିବା ସହଜ ହେବ । କୋଠଗୃହ କିମ୍ବା ସମବାୟ ଗୃହ ସଙ୍ଗେ ବହୁଧା ଘନିଷ୍ଠ ଭାବରେ ସମ୍ପର୍କିତ ହୋଇପାରିଲେ ସୁଦ୍ଧା ଗ୍ରାମ ଗୋଟାଏ ସ୍ୱାବଲମ୍ବୀ ଅର୍ଥନୈତିକ ଏକକ ହେବାର ଅବକାଶ ଆଉ ନାହିଁ । ତଥାପି, ଏହା ଗୋଟାଏ ସରକାରୀ ତଥା ନିର୍ବାଚନ ବ୍ୟବସ୍ଥାର ଏକକ ଭାବରେ ରହିପାରେ । ଏପରି ପ୍ରତ୍ୟେକ ଏକକ ଗୋଟାଏ ବୃହତ୍ତର ରାଜନୈତିକ ପରିସର ଭିତରେ, ଗୋଟାଏ ସ୍ୱଶାସିତ ସମ୍ପ୍ରଦାୟ ଭାବରେ, କାର୍ଯ୍ୟ କରି ଗ୍ରାମର ଅପରିହାର୍ଯ୍ୟ ଆବଶ୍ୟକତା ପ୍ରତି ଦୃଷ୍ଟି ଦେଇପାରିବ । ଏପରି ଏକ ସ୍ୱଶାସିତ ଏକକକୁ ଯଦି କେତେ ପର୍ଯ୍ୟନ୍ତ ନିର୍ବାଚନ ମଣ୍ଡଳୀ ଭାବରେ ଧରି ନିଆଯାଏ, ତଦ୍ଦ୍ୱାରା ପ୍ରାଦେଶିକ ତଥା ସର୍ବଭାରତୀୟ ନିର୍ବାଚନ ଜଞ୍ଜାଳ ପ୍ରଭୂତ ପରିମାଣରେ ସରଳ ହୋଇପଡ଼ିବ, କାରଣ ଏ ପ୍ରକାର ବ୍ୟବସ୍ଥାଦ୍ୱାରା ପ୍ରତ୍ୟକ୍ଷ ଭୋଟରଙ୍କ ସଂଖ୍ୟା କମ୍ ହୋଇଯିବ । ଗ୍ରାମର ପ୍ରାପ୍ତବୟସ୍କ ନରନାରୀଙ୍କଦ୍ୱାରା ନିର୍ବାଚିତ ଗ୍ରାମସଭାର ସଭ୍ୟମାନେ ହେବେ ପରବର୍ତ୍ତୀ ସ୍ତରରେ ନିର୍ବାଚନର ଭୋଟର । ଅପ୍ରତ୍ୟକ୍ଷ ନିର୍ବାଚନ ବ୍ୟବସ୍ଥାରେ କେତେକ ଅସୁବିଧା ଅବଶ୍ୟ ଥାଇପାରେ; କିନ୍ତୁ ଭାରତର ପୃଷ୍ଠଭୂମିକୁ ନେଇ ବିଚାର କଲେ ମୁଁ ନିଶ୍ଚିତ ହୋଇପାରୁଛି ଯେ ଗ୍ରାମକୁ ସର୍ବନିମ୍ନ ଏକକ ଭାବରେ ଗ୍ରହଣ କରାଯାଇପାରେ । ଏପରି ହେଲେ ଅଧିକତର ଦାୟିତ୍ୱପୂର୍ଣ୍ଣ ତଥା ପ୍ରକୃତ ପ୍ରତିନିଧି ନିର୍ବାଚିତ ହୋଇପାରିବେ ।

ଏହି ଆଞ୍ଚଳିକ ପ୍ରତିନିଧି ନିର୍ବାଚନ ବ୍ୟତୀତ କୃଷି ଓ ଶିଳ୍ପକ୍ଷେତ୍ରର କୋଠ ଓ ସମବାୟ-ମାନଙ୍କରୁ ମଧ୍ୟ ସିଧାସଳଖ ପ୍ରତିନିଧି ନିର୍ବାଚିତ ହେବା ଆବଶ୍ୟକ । ଏପରି ଭାବରେ ଦେଶର ଗଣତାନ୍ତ୍ରିକ ସଙ୍ଗଠନରେ ଆଞ୍ଚଳିକ ପ୍ରତିନିଧି ଓ ସାମୁଦାୟିକ କାର୍ଯ୍ୟକ୍ଷେତ୍ରରେ ପ୍ରତିନିଧି

ରହିବେ ଏବଂ ସେମାନଙ୍କୁ ନେଇ ସ୍ଥାନୀୟ ସ୍ୱାୟତ୍ତଶାସନ କାର୍ଯ୍ୟକାରୀ ହେବ । ଏପରି କିଛି ବ୍ୟବସ୍ଥା ଭାରତର ଅତୀତ ସଙ୍ଗେ ସାମଞ୍ଜସ୍ୟ ରକ୍ଷାକରିବା ସଙ୍ଗେ ସଙ୍ଗେ ତାର ସାମ୍ପ୍ରତିକ ଆବଶ୍ୟକତା ପୂରଣ କରିପାରିବ । ବ୍ରିଟିଶ ଶାସନ କାଳର ସୃଷ୍ଟ ଅବସ୍ଥା ବ୍ୟତୀତ, ଭାରତ ଅତୀତରୁ ବିଚ୍ଛିନ୍ନ ହୋଇଯାଇଛି—ଏପରି ଧାରଣା ରହିବ ନାହିଁ ଏବଂ ଭାରତୀୟ ଜନମାନସ ଏହାକୁ ଅତୀତର ସମ୍ପ୍ରସାରଣ ବୋଲି ଗ୍ରହଣ କରିବ । କାରଣ ସେହି ଅତୀତର ସ୍ମୃତି ଏବେ ବି ଭାରତୀୟ ପକ୍ଷରେ ମଧୁର ।

ଭାରତରେ ଏହି ଢଙ୍ଗର ପରିବର୍ତ୍ତନ ରାଜନୈତିକ ତଥା ଅର୍ଥନୈତିକ ଆନ୍ତର୍ଜାତୀୟତାର ଅନୁରୂପ ହେବ । ଅନ୍ୟ ଜାତିମାନଙ୍କ ସଙ୍ଗେ ସଙ୍ଘର୍ଷର ଅବକାଶ ରହିବ ନାହିଁ ଏବଂ ଏସିଆ ତଥା ବିଶ୍ୱରେ ଶାନ୍ତି ନିମନ୍ତେ ଭାରତ ଏକ ଶକ୍ତିଶାଳୀ ପ୍ରଭାବ ହୋଇ ଉଠିବ । ଯେଉଁ ଏକବିଶ୍ୱ ଲକ୍ଷ ପ୍ରତି ଆମ୍ଭେମାନେ ଅବଶ୍ୟମ୍ଭାବୀ ଭାବରେ ତାଡ଼ିତ ହେଉଥାଉଁ, ଆମର ବିବିଧ ଆବେଗ ଆମକୁ ପଥଭ୍ରାନ୍ତ କରୁଥିଲେ ସୁଦ୍ଧା ଏବଂ ଆମର ମନ ତାର ମହତ୍ତ୍ୱ ବୁଝିପାରୁ ନଥିଲେ ସୁଦ୍ଧା, ଆମେ ସେହି ଲକ୍ଷ୍ୟସ୍ଥଳରେ ଉପନୀତ ହେବାପାଇଁ ଏପରି ଏକ ଭାରତ ସହାୟକ ହେବ । ଘୋର ନିର୍ଯାତନାବୋଧ ଓ ନୈରାଶ୍ୟବୋଧରୁ ମୁକ୍ତ, ଭାରତୀୟ ଜନସାଧାରଣଙ୍କ ମହତ୍ତ୍ୱବୋଧ ପୁନର୍ବାର ଉଦିତ ହେବ ଏବଂ ସେମାନଙ୍କର ସଂକୀର୍ଣ୍ଣ ଜାତୀୟବାଦ ଓ ଅନନ୍ୟତାଭାବ ଲୁପ୍ତ ହେବ । ସେମାନଙ୍କର ଭାରତୀୟ ଐତିହ୍ୟ ଲାଗି ଗର୍ବିତ, ସେମାନେ ଅନ୍ୟ ଜାତିମାନଙ୍କ ସମକ୍ଷରେ ନିଜର ମନ ଓ ହୃଦୟ ଖୋଲି ଧରିବେ ଏବଂ ଏହି ସୁପରିବ୍ୟାପ୍ତ ତଥା ମନୋହର ବିଶ୍ୱର ନାଗରିକ ଭାବରେ ଅନ୍ୟ ଜାତିମାନଙ୍କ ସଙ୍ଗେ ସେହି ପଥରେ ଆଗେଇଯିବେ, ଯେଉଁ ପଥରେ ସେମାନଙ୍କର ପୂର୍ବପୁରୁଷ କେଉଁ ପ୍ରାଚୀନ କାଳରୁ ସେହି ସନାତନ ସନ୍ଧାନରେ ପାଦ ବଢ଼ାଇ ଯାଇଚନ୍ତି ।

## ୧୧. ଭାରତ ବିଭାଜନ ନା ବଳିଷ୍ଠ ଜାତୀୟ ରାଷ୍ଟ୍ର ନା ଜାତ୍ୟୁତ୍ତର ରାଷ୍ଟ୍ର-କେନ୍ଦ୍ର

କାହାର ଆଶା ଓ ଆଶଙ୍କା ଉଭୟକୁ ସମାନ କରି ତୁଳି ଧରିବା କିମ୍ବା କାହାର ଆକାଙ୍‌କ୍ଷାର ପ୍ରଭାବରୁ ତାର ଚିନ୍ତାକୁ ମୁକ୍ତ ରଖିବା ବାସ୍ତବିକ କଷ୍ଟକର । ଆମର ଆକାଙ୍‌କ୍ଷା ସବୁବେଳେ ତାକୁ ସମର୍ଥନ କଲା ଭଳି ଯୁକ୍ତି ଖୋଜିବସେ ଏବଂ ଯେପରି ଯେତେ ତଥ୍ୟ ଓ ଯୁକ୍ତି ଯାହା ତାକୁ ସୁହାଇବା ଭଳି ଜଣାଯାଏନି, ଅବଜ୍ଞା କରିବାର ମନୋଭାବ ଧରେ । କୌଣସି ବିଷୟର ବିଚାର ନିର୍ଭୁଲ ଭାବରେ କରିବା ପାଇଁ ଏବଂ କର୍ମ ନିମନ୍ତେ ପ୍ରକୃତ ଭିତ୍ତି ବାଛିନେବା ପାଇଁ ମୁଁ ମୋର ଆଶା ଓ ଆଶଙ୍କାକୁ ସମତୁଲ କରି ରଖିବାଲାଗି ପ୍ରୟାସ କରେ । ତଥାପି, ମୁଁ ବୁଝୁଚି, ସେ ଦିଗରେ ମୁଁ କେପରି ସଫଳ ହୋଇପାରିନି ଏବଂ ଯେତେ ସବୁ ଚିନ୍ତା ଓ ଅନୁଭୂତି ମତେ ଗଢ଼ି ତୋଳିଚି ଓ ଗୋଟାଏ ଅଦୃଶ୍ୟ ବନ୍ଧନ ସୃଷ୍ଟି କରି ମତେ ସେହି ଚିନ୍ତା ଓ ଅନୁଭୂତିର ଜଞ୍ଜାଳ ଭିତରେ କେବଳ ଯେ ଅଟକାଇ ରଖିଚି,

ସେଥିରୁ ମୁଁ କିପରି ମୁକ୍ତ ହୋଇପାରୁନି । ମୋ ଭଳି ଅନ୍ୟମାନେ ମଧ୍ୟ ଅନ୍ୟାନ୍ୟ ଦିଗରେ ଭୁଲ କରିପାରନ୍ତି । ଭାରତ ଓ ବିଶ୍ୱରେ ଭାରତର ସ୍ଥାନ ସମ୍ପର୍କରେ ଜଣେ ଭାରତୀୟ ଓ ଜଣେ ଇଂରେଜଙ୍କ ଦୃଷ୍ଟିକୋଣ ଭିତରେ ପାର୍ଥକ୍ୟ ରହିବା ଅବଶ୍ୟମ୍ଭାବୀ; କାରଣ ଉଭୟର ବ୍ୟକ୍ତିଗତ ତଥା ଜାତୀୟ ଅତୀତ ପରସ୍ପରଠାରୁ ଭିନ୍ନ । ବ୍ୟକ୍ତି ଓ ଜାତୀୟ ଗୋଷ୍ଠୀ ସ୍ୱ ସ୍ୱ କର୍ମଦ୍ୱାରା ସେମାନଙ୍କର ଭାଗ୍ୟ ଗଢ଼ିଥାନ୍ତି । ସେହିସବୁ ଅତୀତର କର୍ମ ବର୍ତ୍ତମାନକୁ ବାଟ କଢ଼ାଇନିଏ ଏବଂ ଆଜି ସେମାନେ ଯାହା କରନ୍ତି, ତାହା ଆଗାମୀ କାଲି ନିମନ୍ତେ ଭିତ୍ତି ସୃଷ୍ଟିକରେ । ଭାରତରେ ଏହାକୁ କର୍ମ କହିଥାନ୍ତି । ଅର୍ଥାତ୍ କାର୍ଯ୍ୟ-କାରଣର ନିୟମ ଯେଉଁଥିରେ ଆମର କାର୍ଯ୍ୟ ଆମର ଭାଗ୍ୟ ରଚନା କରି ଚାଲେ । ଏହି ଭାଗ୍ୟ ସେପରି କିଛି ଅବଶ୍ୟମ୍ଭାବୀ ନୁହେଁ । ଅନେକ କିଛିର ପ୍ରଭାବ ତାର ଉପରେ ପଡ଼ିପାରେ ଏବଂ ବ୍ୟକ୍ତିଗତ ସ୍ୱେଚ୍ଛା-ଶକ୍ତିର ପ୍ରଭାବ ମଧ୍ୟ ସେଥି ଉପରେ ପଡ଼ିବା ମନେକରାଯାଏ । ଅତୀତ କର୍ମର ଫଳ ପରିବର୍ତ୍ତିନ କରିବାର ଏହି ସ୍ୱାଧୀନତା ଯଦି ମଣିଷର ନ ଥାନ୍ତା ତାହାହେଲେ ଆମେ ଗୋଟାଏ ଅପରିହାର୍ଯ୍ୟ ଭାଗ୍ୟର ଲୌହମୁଷ୍ଟି ଭିତରେ କାଠକଣ୍ଢେଇ ଭଳି କେବଳ ରହିଥାନ୍ତେ । ତଥାପି, ଅତୀତର ସେହି କର୍ମ ବ୍ୟକ୍ତି ଓ ଜାତିକୁ ଗଢ଼ିବାରେ ପ୍ରବଳ ପ୍ରଭାବ ପକାଇଥାଏ ଏବଂ ଜାତୀୟବାଦ ମଧ୍ୟ ତାହାର ଏକ ଗ୍ରାସ୍ଥ୍ୟ ମାତ୍ର, ଯେଉଁଥିରେ ଅତୀତର ସବୁ କିଛି ସୁଖ ଓ ଦୁଃଖ, ଭଲ ଓ ମନ୍ଦର ସ୍ମୃତି ଥାଏ ପ୍ରଚ୍ଛନ୍ନ ।

ବ୍ୟକ୍ତି ଅପେକ୍ଷା ଜାତୀୟ ଗୋଷ୍ଠୀ ଉପରେ ଅତୀତର ଏହି ଉତ୍ତରାଧିକାରର ପ୍ରଭାବ ହୁଏତ ଅଧିକ ଭାବରେ ପଡ଼ିଥାଏ; କାରଣ ଜଣେ ବ୍ୟକ୍ତି ଅପେକ୍ଷା ବିପୁଳ ସଂଖ୍ୟକ ନରନାରୀ ଅଚେତନ ତଥା ଅବୌକ୍ତିକ ବହୁ ଆବେଗଦ୍ୱାରା ତାଡ଼ିତ ହୋଇଥାନ୍ତି ଏବଂ ସେମାନଙ୍କୁ ସେମାନଙ୍କର ପଥରୁ ଫେରାଇ ଆଣିବା ଅଧିକତର କଷ୍ଟସାଧ୍ୟ । ନୈତିକ ବିଚାର ଜଣେ ବ୍ୟକ୍ତିକୁ ପ୍ରଭାବିତ କରିପାରେ; କିନ୍ତୁ ଗୋଟାଏ ଗୋଷ୍ଠୀ ଉପରେ ତାର ପ୍ରଭାବ ଅପେକ୍ଷାକୃତ କମ୍ ଏବଂ ଗୋଷ୍ଠୀର କଳେବର ବୃଦ୍ଧି ସଙ୍ଗେ ପ୍ରଭାବର ମାତ୍ରା ହ୍ରାସ ପାଇଥାଏ । ଆଧୁନିକ ବିଶ୍ୱରେ ବିଶେଷତଃ, ଛଳନାପୂର୍ଣ୍ଣ ପ୍ରଚାରଦ୍ୱାରା ଗୋଷ୍ଠୀକୁ ପ୍ରଭାବିତ କରିବା ସହଜ । ତଥାପି, କେବେ କେବେ, ବିରଳ ହେଲେ ମଧ୍ୟ, ଗୋଷ୍ଠୀ ନୈତିକ ଆଚରଣର ଉଚ୍ଚତର ସ୍ତରକୁ ଉଠିଯାଏ ଏବଂ ବ୍ୟକ୍ତିକୁ ତାର ସଂକୀର୍ଣ୍ଣତା ଓ ସ୍ୱାର୍ଥପରତା ଭୁଲିବା ପାଇଁ ବାଧ୍ୟ କରେ; କିନ୍ତୁ ବହୁଧା ଗୋଷ୍ଠୀ ବ୍ୟକ୍ତିଗତ ମାନର ବହୁ ନିମ୍ନକୁ ଖସି ଯାଇଥାଏ ।

ଯୁଦ୍ଧ ଏହି ଉଭୟ ପ୍ରତିକ୍ରିୟା ସୃଷ୍ଟି କରେ କିନ୍ତୁ ନୈତିକ ଦାୟିତ୍ୱରୁ ଓହରିଯିବା ଏବଂ ବହୁ ଶ୍ରମ ସ୍ୱୀକାର କରି ସଭ୍ୟତା ଜୀବନଯାତ୍ରାର ଯେଉଁ ସବୁ ମାନ ଗଢ଼ି ତୋଳିଛି, ସେ ସବୁ ଭାଙ୍ଗି ଚୂର୍ମାର୍ କରିଦେବା ମନୋଭାବ ହିଁ ଆଧିପତ୍ୟ କରେ । ସଫଳ ଯୁଦ୍ଧ ଓ ଆକ୍ରମଣ ଏହି ନୀତିର ଯଥାର୍ଥତା ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ତାହା ବଜାୟ ରଖିବାର ସାର୍ଥକତା ସୂଚିତ କରେ ସାମ୍ରାଜ୍ୟବାଦୀ ଆଧିପତ୍ୟ ଓ ପ୍ରଭୁ-ଜାତି ଧାରଣାରେ । ପରାଜୟ ଫଳରେ ନୈରାଶ୍ୟ ଦେଖାଦିଏ ଏବଂ ତାହା ଏକ ସମୟରେ ପ୍ରତିଶୋଧ ଭାବନାରେ ପରିଣତ ହୁଏ । ଉଭୟ ଦିଗରେ ଘୃଣା ଓ ହିଂସାଚରଣ ହିଁ ବୃଦ୍ଧି ଲାଭକରେ । ପାଶବିକତାରେ

ନିର୍ମମତା ନିହିତ ଥାଏ ଏବଂ ଅନ୍ୟର ଦୃଷ୍ଟିକୋଣ ବୁଝିବା ଲାଗି ବିନ୍ଦୁମାତ୍ର ପ୍ରୟାସ ପ୍ରକାଶ ପାଇ ନଥାଏ । ଏପରି ଭାବରେ ଭବିଷ୍ୟତ ନିୟନ୍ତ୍ରିତ ହୁଏ ଏବଂ ଯୁଦ୍ଧ ଓ ସଙ୍ଘର୍ଷ କ୍ରମାଗତ ଭାବରେ ତାର ସମସ୍ତ କିଛି ବିଷମୟ ପରିଣତି ଘେନି ପ୍ରଚଳିତ ରହେ ।

ଭାରତ ଓ ଇଂଲଣ୍ଡ ମଧ୍ୟରେ ବଳପୂର୍ବକ ସ୍ଥାପିତ ଗତ ଦୁଇ ଶହ ବର୍ଷର ଏହି ସମ୍ବନ୍ଧ ଉଭୟ ନିମନ୍ତେ ଏହି କର୍ମ ବା ଭାଗ୍ୟ ଗଢ଼ିତୋଳିଚି ଏବଂ ତାହା ହିଁ ଉଭୟର ପାରସ୍ପରିକ ସମ୍ପର୍କ ନିୟନ୍ତ୍ରଣ କରୁଚି । ଭାଗ୍ୟର ଏହି ଫାନ୍ଦରେ ଆମେ ଛନ୍ଦି ହୋଇଯାଇଚୁ । ଏହି ଅତୀତର ଉତ୍ତରାଧିକାରରୁ ମୁକ୍ତହୋଇ ଅନ୍ୟ ଏକ ଭିତ୍ତିରୁ ଜୀବନ ନୂତନରେ ଆରମ୍ଭ କରିବା ଲାଗି ଆମର ସବୁ କିଛି ସଂଗ୍ରାମ ଏଯାବତ୍ ବିଫଳତାରେ ପର୍ଯ୍ୟବସିତ ହୋଇଚି । ଯୁଦ୍ଧର ଗତ ପାଞ୍ଚ ବର୍ଷର ଏହି ମନ୍ଦ ଭାଗ୍ୟ ସଙ୍ଗେ ମିଳିତ ହେବା ଫଳରେ ଇଂଲଣ୍ଡ ସଙ୍ଗେ ବୁଝାମଣା ଓ ସ୍ୱାଭାବିକ ସମ୍ବନ୍ଧ ପୁନର୍ବାର ପ୍ରତିଷ୍ଠା କରିବା କଷ୍ଟକର ହୋଇପଡ଼ିଚି । ଗତ ଦୁଇ ଶହ ବର୍ଷର ସମ୍ପର୍କରେ, ଅନ୍ୟ ସବୁ କିଛି ଭଳି, ଭଲ ଓ ମନ୍ଦ ମିଶି ରହିଚି । ଇଂରେଜ ପକ୍ଷରେ ଏଥିର ମନ୍ଦ ତୁଳନାରେ ଭଲର ମାତ୍ରା ହିଁ ବେଶି; କିନ୍ତୁ ଭାରତୀୟ ପକ୍ଷରେ ମନ୍ଦର ମାତ୍ରା ଏତେ ବେଶି ଯେ ଏହି ଦୁଇ ଶହ ବର୍ଷକୁ ସେ ଏକ ଅନ୍ଧକାର ଯୁଗ ବୋଲି କେବଳ ମନେକରେ । ତେବେ ଭଲ ଓ ମନ୍ଦ—ଏଥିରୁ ଯାହା ପାଇଁ ଯେତେ ମାତ୍ରାରେ ଥାଉନା କାହିଁକି, ଏତିକି କିନ୍ତୁ ବୁଝିବାରେ ଜଟିଳତା ନାହିଁ ଯେ ବଳପୂର୍ବକ ସ୍ଥାପିତ ଯେ କୌଣସି ସମ୍ପର୍କ ପରସ୍ପର ପ୍ରତି ଘୃଣା ଓ ତିକ୍ତ ବିଦ୍ୱେଷ ହିଁ ସୃଷ୍ଟି କରି ବସେ ଏବଂ ସେ ପ୍ରକାର ଅବସ୍ଥାର ପରିଣତି କେବେହେଲେ ଭଲ ହୋଇନପାରେ ।

ରାଜନୈତିକ ଓ ଅର୍ଥନୈତିକ ଉଭୟ ଦିଗରୁ ଏକ ବୈପ୍ଳବିକ ପରିବର୍ତ୍ତନ ଭାରତ ନିମନ୍ତେ ଆବଶ୍ୟକ କେବଳ ନୁହେଁ, ବରଂ ଅବଶ୍ୟମ୍ଭାବୀ ମନେ ହୋଇପାରେ । ଖ୍ରୀ: ୧୯୩୯ ଶେଷରେ, ଯୁଦ୍ଧ ଆରମ୍ଭହେବା ପରେ ପରେ ପୁନର୍ବାର ଖ୍ରୀ: ୧୯୪୨ ଏପ୍ରିଲ୍ ମାସରେ ଭାରତ ଓ ଇଂଲଣ୍ଡ ଉଭୟର ସମ୍ମତିରେ ସେପରି ପରିବର୍ତ୍ତନ ଘଟିବାର କ୍ଷୀଣ ଏକ ସମ୍ଭାବନା ଥିବା ଭଳି ଅନୁମିତ ହେଉଥିଲା; କିନ୍ତୁ ସେହି ସବୁ ସମ୍ଭାବନା ଓ ସୁଯୋଗ ବିତିଗଲା; କାରଣ ମୌଳିକ ପରିବର୍ତ୍ତନ କଥାରେ ପ୍ରଥମେ ଭୟ ହିଁ ଗ୍ରାସ କରି ବସୁଥିଲା । ତଥାପି, ସେହି ପରିବର୍ତ୍ତନ ଅବଶ୍ୟ ଆସିବ । ଉଭୟ ଦେଶ ସମ୍ମତ ହେବାର ଅବସ୍ଥା କ'ଣ ଅତୀତ ହେଲାଣି ? ଉଭୟ ପକ୍ଷ ନିମନ୍ତେ ସମାନ, କୌଣସି ବିପଦ ସମ୍ମୁଖରେ ଅତୀତର ବନ୍ଧୁ ଆବେଶ ତୁଟିଯାଏ ଏବଂ ଭବିଷ୍ୟତ ଦୃଷ୍ଟିରୁ ବର୍ତ୍ତମାନକୁ ନେଇ ବିଚାର କରାଯାଇ ଥାଏ । ସମ୍ପ୍ରତି ସେ ଅତୀତ ଫେରିଆସିଚି ଏବଂ ଅଧିକତର ଜଟିଳ ହୋଇଯାଇଚି । ଗୋଟାଏ ସମୟର ଗ୍ରହଣଶୀଳ ମନୋଭାବ ଅଉ ନାହିଁ; ତିକ୍ତ ଓ ଅନମନୀୟ ହୋଇଯାଇଚି । ଅଳ୍ପ ଦିନରେ କିମ୍ବା ଆଉ କିଛି ବିଳମ୍ବରେ, ଅଧିକତର ସଙ୍ଘର୍ଷ ପରେ କିମ୍ବା ବିନା ସଙ୍ଘର୍ଷରେ, ଗୋଟାଏ କିଛି ମୀମାଂସା ହେବ ହିଁ ହେବ; କିନ୍ତୁ ତାହା ବାସ୍ତବ, ଆନ୍ତରିକ ଓ ସହଯୋଗ-ମୂଳକ ହେବାର ସେପରି କିଛି ସମ୍ଭାବନା ନାହିଁ । ଯେପରି ଦେଖାଯାଉଚି, ଉଭୟ ପକ୍ଷ ପରିସ୍ଥିତିର ପ୍ରବଳ ଚାପରେ ଅନିଚ୍ଛାସତ୍ତ୍ୱେ ହୁଏତ କେତେ କଥାକୁ ମାନିସିବେ; କିନ୍ତୁ

ପରସ୍ପର ପ୍ରତି ଅସଦ୍‌ଭାବ ଓ ଅବିଶ୍ୱାସ ଅବ୍ୟାହତ ରହିବ । କେବଳ ମିତ୍ର ଭାବରେ ହେଉ ପଛେ, ବ୍ରିଟିଶ ସାମ୍ରାଜ୍ୟର ଅଂଶ ଭାବରେ ଭାରତକୁ ଧରି ରଖିବାର ଭିତ୍ତି ଉପରୁ ଯେ କୌଣସି ମୀମାଂସା ଉଦ୍ୟମ ଭାରତଦ୍ୱାରା ଗୃହୀତ ହେବାର ଆଶା ତିଳେମାତ୍ର ନାହିଁ । ସାମନ୍ତବାଦୀ ପ୍ରଥା ପରମ୍ପରା ବଜାୟ ରଖି ଯଦି କିଛି ମୀମାଂସା କରାଯାଏ, ତାହା ଭାରତରେ ତିଷ୍ଠିବାର ସମ୍ଭାବନା ନାହିଁ ।

ଭାରତରେ ଜୀବନ ବଡ଼ ଶସ୍ତା । ଏପରି ଅବସ୍ଥାରେ, ଜୀବନ ଶୂନ୍ୟ, ଅସୁନ୍ଦର ଓ ନିକୃଷ୍ଟ ହୋଇ ଉଠିଚି ଏବଂ ତାକୁ ଆବୃତ୍ତ କରିଚି ଦରିଦ୍ରତାର ସମସ୍ତ କିଛି କଦର୍ଯ୍ୟତା । ବାହ୍ୟ ହେଉ କି ଆଭ୍ୟନ୍ତରୀଣ ହେଉ, ନାନା କାରଣରୁ ଭାରତରେ ଗୋଟାଏ ବାତାବରଣ ବ୍ୟାପ୍ତ ରହିଚି ଏବଂ ସାରତଃ ତାର ଫଳ ଦେଖାଦେଇଚି ଦରିଦ୍ରତା ଓ ଅନଟନ ରୂପରେ । ଆମର ଜୀବନ ଧାରଣର ମାନ ସାଙ୍ଘାତିକ ଭାବରେ ନ୍ୟୂନ ଏବଂ ଆମ ମୃତ୍ୟୁର ହାର ଅତ୍ୟଧିକ ଭାବରେ ଉଚ୍ଚ । ଦରିଦ୍ର ଓ ହତଭାଗାଙ୍କ ପ୍ରତି ଧନବାନ୍ ବ୍ୟକ୍ତି ଯେପରି ଦୃଷ୍ଟି ଢାଳିଥାଏ, ଠିକ୍ ସେହିପରି ଶିଳ୍ପସମୁନ୍ନତ ତଥା ବିତ୍ତଶାଳୀ ଦେଶମାନେ ଅନୁନ୍ନତ ତଥା ଦରିଦ୍ର ଦେଶମାନଙ୍କୁ ଦେଖିଥାନ୍ତି । ଧନବାନ୍ ବ୍ୟକ୍ତି ପ୍ରଚୁର ସମ୍ବଳ ଓ ନାନା ସୁବିଧା ସୁଯୋଗର ଅଧିକାରୀ ଭାବରେ ସମୁଚ୍ଚ ମାନ ସଙ୍ଗେ ନିତାନ୍ତ ରୁଚିବାଗୀଶ ହୋଇଉଠେ ଏବଂ ଦୀନମାନଙ୍କୁ ସେମାନଙ୍କର ଅଭ୍ୟାସ ଓ ଅମାର୍ଜିତ ରୁଚି ଲାଗି ନିନ୍ଦା କରିଥାଏ । ଯେଉଁସବୁ ସୁଯୋଗ ପାଇଥିଲେ ତାର ଦରିଦ୍ରତା ଦୂରେଇ ନଥାନ୍ତା, ସେଥିରୁ ତାକୁ ବଞ୍ଚିତ କରିସାରିଲା ପରେ ଧନୀ ତାକୁ ଭବିଷ୍ୟତରେ ମଧ୍ୟ ବଞ୍ଚିତ କରି ରଖିବା ପାଇଁ ତାର ସାମ୍ପ୍ରତିକ ଦାରିଦ୍ର୍ୟ ଓ ତଜ୍ଜନିତ ନାନା କୁସଂସ୍କାରକୁ ଆଳ କରି ଧରେ ।

ଭାରତ ଦରିଦ୍ର ଦେଶ ନୁହେଁ । ଯେଉଁସବୁ ସମ୍ବଳ ଗୋଟାଏ ଦେଶକୁ ସମୃଦ୍ଧିକରେ ଭାରତରେ ତାହା ପ୍ରଚୁର ପରିମାଣରେ ରହିଛି; କିନ୍ତୁ ତାର ଲୋକେ ବଡ଼ ଦରିଦ୍ର । ବିବିଧ ସଂସ୍କୃତି-ଆଙ୍ଗିକର ଏକ ସୁମହାନ୍ ଐତିହ୍ୟ ତାର ଅଛି ଏବଂ ସଂସ୍କୃତି ଦିଗରେ ତାର ସାମର୍ଥ୍ୟ କିଛି ସାମାନ୍ୟ ନୁହେଁ । ତଥାପି, ସଂସ୍କୃତିର କେତେକ ଉପକରଣ ଓ କେତେକ ନୂତନ ବିକାଶ, ଯାହା ତାର ଅଭାବ, ନାନା କାରଣରୁ ବିଶେଷତଃ ସୁଚିନ୍ତିତ ବଂଚନା ହେତୁରୁ, ଭାରତକୁ ଘୋଟିଚି । ଏପରି ଅବସ୍ଥାରେ ଜନସାଧାରଣଙ୍କ ଜୀବନୀଶକ୍ତି ସମସ୍ତ କିଛି ବାଧା ପ୍ରତିବନ୍ଧକ ଲଙ୍ଘନ କରି ଏହି ଅଭାବ ଦୂରକରିବା ଉଦ୍ଦେଶ୍ୟରେ ଧାବିତ ହେବା ସ୍ୱାଭାବିକ ଏବଂ ତାହା ହିଁ ଘଟୁଚି ଆଜିର ଭାରତରେ । ଏଥିରେ ସନ୍ଦେହ ନାହିଁ, ଦ୍ରୁତ ଅଗ୍ରଗତି ନିମନ୍ତେ ଭାରତର ସମ୍ବଳ, ବୁଦ୍ଧି, ଦକ୍ଷତା ଓ ସାମର୍ଥ୍ୟ ଅଛି । ଯୁଗ ଯୁଗର ସଂଚିତ ସାଂସ୍କୃତିକ ତଥା ଆଧ୍ୟାତ୍ମିକ ସମ୍ପଦର ସେ ଅଧିକାରିଣୀ । ବୈଜ୍ଞାନିକ ତତ୍ତ୍ୱ ଓ ବିଜ୍ଞାନର ପ୍ରୟୋଗ ଉଭୟ ଦିଗରେ ପ୍ରଗତିକରି ସେ ଗୋଟାଏ ମହାନ୍ ଶିଳ୍ପସମୃଦ୍ଧ ଜାତି ଭାବରେ ନିଜକୁ ଗଢ଼ିତୋଳି ପାରିବ । ବହୁ ସୀମାବନ୍ଧନ ସତ୍ତ୍ୱେ ଏବଂ ବୈଜ୍ଞାନିକ କର୍ମ ନିମନ୍ତେ ଭାରତୀୟ ତରୁଣତରୁଣୀଙ୍କ ସୁଯୋଗର ଅଭାବ ସତ୍ତ୍ୱେ ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ଭାରତର କାର୍ଯ୍ୟ ଉଲ୍ଲେଖଯୋଗ୍ୟ । ଏ ଦେଶର ବିଶାଳତା ଓ ସମ୍ଭାବନା ବିବେଚନା କଲେ

ବିଜ୍ଞାନକ୍ଷେତ୍ରର ସାଫଲ୍ୟ କିଛି ବଡ଼ ନୁହେଁ କିନ୍ତୁ ତାଠାର ନାନା ଶକ୍ତି ମୁକୁଳିତ ହେଲେ ଏବଂ ସୁଯୋଗ ଦିଆଗଲେ ଏ ଦେଶରେ କ'ଣ କରାଯାଇ ପାରେ ସେ ଦୃଷ୍ଟିରୁ ବର୍ତ୍ତମାନର ବିଜ୍ଞାନ-କର୍ମ ତାତ୍ପର୍ଯ୍ୟପୂର୍ଣ୍ଣ ।

ଦୁଇଟି ବିଷୟ ହୁଏତ ପ୍ରତିବନ୍ଧକ ସୃଷ୍ଟି କରିପାରନ୍ତି । ତାହା ହେଉଛି ଆନ୍ତର୍ଜାତୀୟ ପରିସ୍ଥିତି ଏବଂ ଭାରତ ଉପରେ ତା'ର ଚାପ ଓ ଦେଶ ଭିତରେ ଏକ ସାର୍ବଜନୀନ ଲକ୍ଷ୍ୟର ଅଭାବ । ପରିଶେଷରେ, ଏହି ସାର୍ବଜନୀନ ଲକ୍ଷ୍ୟ ଉପରେ ହିଁ ସବୁ କିଛି ନିର୍ଭର କରିବ । ଭାରତ ଯଦି ଦୁଇ ଅବା ତତୋଽଧିକ ଭାଗରେ ବିଭକ୍ତ ହୁଏ ଏବଂ ଗୋଟାଏ ରାଜନୈତିକ ତଥା ଅର୍ଥନୈତିକ ଏକକ ଭାବରେ କାର୍ଯ୍ୟକାରୀ ହୋଇନପାରେ, ତାର ପ୍ରଗତି ଗୁରୁତର ଭାବରେ ବ୍ୟାହତ ହେବ । ପ୍ରଥମତଃ ସାମରିକ ଭାବରେ ଭାରତ ଦୁର୍ବଳ ହୋଇପଡ଼ିବ; କିନ୍ତୁ ତଦପେକ୍ଷା ଆହୁରି ଗୁରୁତର ହେବ ସେମାନଙ୍କର ଅନ୍ତର ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ ଯେଉଁମାନେ ପୁନର୍ବାର ଏକ ଅଖଣ୍ଡ ଭାରତ ଦେଖିବାକୁ ଚାହିଁବେ ଏବଂ ଯେଉଁମାନେ ଏହାର ବିପରୀତ ମତ ପୋଷଣ କରିବେ । ନବ ନବ ନ୍ୟସ୍ତସ୍ୱାର୍ଥ ସୃଷ୍ଟିହେବ ଯାହା ପରିବର୍ତ୍ତନ ଓ ପ୍ରଗତିର ପ୍ରତିରୋଧ କରିବ । ଭବିଷ୍ୟତରେ ଏକ ନୂତନ ମନ୍ଦ କର୍ମ ଆମର ପିଚ୍ଛା ଧରିବ । ଗୋଟାଏ ଭୁଲ ପଦକ୍ଷେପ ଦ୍ୱିତୀୟ ଭୁଲ ପଦକ୍ଷେପ ଭିତରକୁ ବାଟ କଢ଼ାଇ ନେଇଥାଏ । ଅତୀତରେ ଏପରି ଘଟିଛି ଏବଂ ଭବିଷ୍ୟତରେ ମଧ୍ୟ ଘଟିପାରେ । ତଥାପି କିଛି ଗୁରୁତର ଦୁର୍ଦ୍ଦୈବ ଆଶଙ୍କାରେ ବେଳେବେଳେ ଭୁଲ ପଦକ୍ଷେପ ନେବାକୁ ପଡ଼ିଥାଏ । ତାହା ହେଉଛି ରାଜନୀତି କ୍ଷେତ୍ରର ସର୍ବାପେକ୍ଷା ବଡ଼ କୂଟାଭାଷ ଏବଂ କେହିହେଲେ ନିଶ୍ଚିତ ଭାବେ କହି ନପାରେ କି ବର୍ତ୍ତମାନର ଭୁଲ କାର୍ଯ୍ୟ ଏବଂ ସେହି କଳ୍ପିତ ବିପଦର ସମ୍ଭାବନା ଭିତରୁ ପରିଶେଷରେ କେଉଁଥିରେ ଅଧିକତର ନିରାପତ୍ତା ନିହିତ । ଐକ୍ୟ ଅନୈକ୍ୟ ଅପେକ୍ଷା ସର୍ବଦା ଶ୍ରେୟସ୍କର; କିନ୍ତୁ ବଳପୂର୍ବକ ସ୍ଥାପିତ ଏକତା ଗୋଟାଏ ଭଣ୍ଡାମି ଏବଂ ବିସ୍ଫୋରକ ସମ୍ଭାବନାପୂର୍ଣ୍ଣ ଏକ ବିପଜ୍ଜନକ ବ୍ୟାପାର । ମନ ଓ ହୃଦୟର ଐକ୍ୟ ସାଧିତ ହେବା ଦରକାର । ତାହାହେଲେ ପରସ୍ପର ଭିତରେ ଏକତାବୋଧ ସଚେତ ରହିବ ଏବଂ ଆକ୍ରମଣ ସମ୍ମୁଖରେ ସମ୍ମିଳିତ ମୁକାବିଲା କରିବା ସମ୍ଭବ ହେବ । ମୁଁ ହୃଦୟଙ୍ଗମ କରିପାରିଛି ଯେ ଭାରତରେ ସେହି ମୌଳିକ ଏକତା ଏବେ ବି ରହିଛି; କିନ୍ତୁ ଅନ୍ୟାନ୍ୟ ଶକ୍ତିମାନଙ୍କ କାରଣରୁ ସେଥି ଉପରେ ଆବରଣ ପଡ଼ିଯାଇଛି ଓ ତାହା ଗୁପ୍ତ ହୋଇଯାଇଛି । ଏହି ଆବରଣ ହୁଏତ ସାମୟିକ ଓ କୃତ୍ରିମ ଏବଂ ସମୟକ୍ରମେ ତାହା ହୁଏତ ଅପସାରିତ ହୋଇଯାଇ ପାରେ; କିନ୍ତୁ ଆଜି ତାହା ଏତେ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଛି ଯେ ଆଉ ଅଧିକ କାଳ ସେଥିପ୍ରତି ଅବହେଳା କରାଯାଇ ନପାରେ ।

ଅବଶ୍ୟ ଏହା ଆମେ କରିବା ଭୁଲ ଏବଂ ତାର ଯାହା କିଛି କୁପରିଣାମ ଭୋଗିବା ପାଇଁ ଆମେ ବାଧ୍ୟ; କିନ୍ତୁ ଭାରତରେ ବିଭେଦ ସୃଷ୍ଟି କରିବାରେ ବ୍ରିଟିଶ ଶାସକବର୍ଗ ଯେଉଁ ସୁଚିନ୍ତିତ ଭୂମିକା ଗ୍ରହଣକଲେ ସେଥିଲାଗି ମୁଁ ସେମାନଙ୍କୁ କ୍ଷମା କରିପାରୁନି । ଆଉ ଯେତେ ଯାହା ଆଘାତ ଆମଠାରେ ଲାଗିଛି ତାହା କାଳକ୍ରମେ ହୁଏତ ସୁଧାରି ହୋଇଯିବ କିନ୍ତୁ

ବହୁକାଳ ପର୍ଯ୍ୟନ୍ତ ଇଂରେଜମାନଙ୍କର ଏହି ଭୂମିକା ଆମ ମନରେ ଘରକରି ରହିବ । ଭାରତ ବିଷୟରେ ଭାବିଲାବେଳେ ବହୁଧା ଆୟାରଲେଣ୍ଡ୍ ଓ ଚୀନ୍ କଥା ମୋର ମନେପଡ଼ିଥାଏ । ସେମାନଙ୍କର ଅତୀତ ଏବଂ ବର୍ତ୍ତମାନର ସମସ୍ୟାମାନ ବିଚାରକଲେ ଦେଖାଯିବ ସେ ଉଭୟର ପରିସ୍ଥିତି ଭାରତଠାରୁ ତଥା ପରସ୍ପରଠାରୁ ଭିନ୍ନ । ତଥାପି ବହୁତ କିଛି ସାଦୃଶ୍ୟ ଦୃଷ୍ଟିରେ ପଡ଼େ । ସେମାନେ ଯେଉଁ ପନ୍ଥା ଅନୁସରଣ କରିଚନ୍ତି, ସେପରି କ'ଣ ତେବେ ଭବିଷ୍ୟତରେ ଆମକୁ ଏ ଦେଶରେ କରିବାକୁ ପଡ଼ିବ ?

ଜିମ୍ ଫେଲାନ୍ ତାଙ୍କର 'ଜେଲ୍ ଜର୍ଣ୍ଣି' ବହିରେ ଲେଖିଚନ୍ତି, ମଣିଷ ଚରିତ୍ର ଉପରେ କାରାଗାର କି ପ୍ରକାର ପ୍ରଭାବ ପକାଇଥାଏ । ଯେଉଁମାନେ ଜେଲ୍‌ରେ ଦୀର୍ଘକାଳ କଟାଇଚନ୍ତି, ସେମାନେ ଜାଣନ୍ତି ଫେଲାନ୍‌ଙ୍କ ବିବୃତିର ସତ୍ୟତା : "ବନ୍ଦୀନିବାସ ଭୂତ-କାଟଭଳି ମଣିଷ ଚରିତ୍ର ଉପରେ କାର୍ଯ୍ୟ କରେ । ଯେତେ କ୍ଷୁଦ୍ର ଦୁର୍ବଳତା ହେଉପଛେ ତାହା ଜୀବନ୍ତ ଓ ବଳିଷ୍ଠ ହୋଇଉଠେ । ପରିଶେଷରେ ଏପରି ହୋଇଥାଏ ଯେ କଏଦୀ ବୋଲି ଆଉ କିଛି ରହେନି । ଯାହା ରହେ ତାହା କଏଦୀ ପୋଷାକ ପରିହିତ ଗୋଟାଏ ବଡ଼ ଦୁର୍ବଳତା କେବଳ ।" ବୈଦେଶିକ ଶାସନ ଫଳରେ ସେପରି କିଛି ପ୍ରଭାବ ପଡ଼େ ଜାତୀୟ ଚରିତ୍ର ଉପରେ । ସେତିକି କେବଳ ନୁହେଁ କାରଣ ଯାହା କିଛି ଭଲ ଗୁଣ, ତାହା ମଧ୍ୟ ଉନ୍ନତ ହୁଏ ଏବଂ ପ୍ରତିରୋଧର ଅଗ୍ନିପରୀକ୍ଷା ଭିତର ଦେଇ କ୍ରମଶଃ ବଳିଷ୍ଠ ହୋଇଉଠେ; କିନ୍ତୁ ବିଦେଶୀ ପ୍ରଭୁତ୍ୱ ଦୁର୍ବଳତାର ପୂର୍ଣ୍ଣବିକାଶ ଉତ୍ସାହିତ କରେ ଏବଂ ସବଳତା ନଷ୍ଟ କରିବାର ଉଦ୍ୟମ କରେ । ସହବନ୍ଦୀମାନଙ୍କର କାର୍ଯ୍ୟକଳାପ ଗୋପନରେ ଲକ୍ଷ୍ୟକରି ଜେଲ୍ କର୍ତ୍ତୃପକ୍ଷଙ୍କୁ ଜଣାଇବା ପାଇଁ ଯେପରି କେତେକ କଏଦୀଙ୍କୁ ଚୌକିଦାର ନିଯୁକ୍ତ କରାଯାଇ ଥାଏ, ସେହିପରି ପରାଧୀନ ଦେଶରେ ପ୍ରଭୁତ୍ୱ ପକ୍ଷରେ କାର୍ଯ୍ୟ କରିବାପାଇଁ ପ୍ରଭୁଙ୍କ ଭେକଧାରୀ ଗୁପ୍ତଚର ଓ ନାଟୁଆ କର୍ମଚାରୀମାନଙ୍କର ଅଭାବ ନଥାଏ । ଅନ୍ୟର ଯୋକେ ଠିକ୍ ଏପରି ଭାବରେ ପ୍ରଭୁତ୍ୱ ସଙ୍ଗେ ସମ୍ପର୍କିତ ନହେଲେ ମଧ୍ୟ ତାର ନୀତି ଓ କୌଶଳଦ୍ୱାରା ପ୍ରଭାବିତ ହୋଇଥାନ୍ତି ।

ଭାରତର ବିଭକ୍ତୀକରଣ କିମ୍ବା ବଳପୂର୍ବକ ଏକତା ସ୍ଥାପନ କରି ନଯାଉ ବୋଲି ନୀତି ଭାବରେ ସ୍ୱୀକାର କଲେ ତାର ପରିଣାମ ସମ୍ପର୍କରେ ଧୀରସ୍ଥିର ଭାବରେ ବିଚାର କରାଯାଇ ପାରିବ ଏବଂ ଉପଲବ୍ଧି କରିହେବ ଯେ ଭାରତର ଏକତା ଓ ଅଖଣ୍ଡତା ସମସ୍ତଙ୍କ ପକ୍ଷରେ କଲ୍ୟାଣକର । ତଥାପି, ଗୋଟାଏ ବିପଦ ସ୍ପଷ୍ଟ ପ୍ରତୀତ ହୁଏ ଯେ ଥରେ ଭୁଲ୍ ପଦକ୍ଷେପ ନେଲେ କ୍ରମାଗତ ଭାବରେ ପାଦ ସେଭଳି ଭୁଲ୍ ବାଟରେ ହିଁ ପଡ଼ିପଡ଼ି ଯିବ । ଗୋଟାଏ ସମସ୍ୟାକୁ ଭୁଲ୍ ବାଟରେ ସମାଧାନ କରିବାର ଉଦ୍ୟମ ହୁଏତ ବହୁ ନୂତନ ସମସ୍ୟା ସୃଷ୍ଟି କରି ବସିବ । ଦୁଇ ବା ତତୋଽଧିକ ଭାଗରେ ଭାରତ ଯଦି ବିଭକ୍ତ ହେବାର ହୁଏ ତାହାହେଲେ ଦେଶୀୟ ରାଜ୍ୟଗୁଡ଼ିକର ଭାରତ ସଙ୍ଗେ ମିଶ୍ରଣ କଷ୍ଟକର ହୋଇପଡ଼ିବ; କାରଣ ଦେଶୀୟ ରାଜ୍ୟର ରାଜନ୍ୟବର୍ଗ ଅଲଗା ରହି ସେମାନଙ୍କର ନିରଙ୍କୁଶ ରାଜତ୍ୱ ବଜାୟ

ରଖିବା ପାଇଁ ଗୋଟାଏ ଅତିରିକ୍ତ କମିଶନ ପାଇଯିବେ ଯାହା ସେମାନେ ନପାଇବାର କଥା । (୧)

ଆଜି ମୁସ୍‌ଲିମ୍ ଲିଗ୍ ଯେପରି ବିଚାର କରୁଛି, ସେପରି ଭାବରେ ଭାରତକୁ ଧର୍ମ ଭିତ୍ତିରେ ହିନ୍ଦୁ ଓ ମୁସଲମାନ ଭିତରେ ବାଣ୍ଟି ଦିଆଗଲେ, ଭାରତର ଏହି ଦୁଇଟି ପ୍ରଧାନ ଧର୍ମର ଅନୁଗାମୀମାନଙ୍କୁ ବିଚ୍ଛିନ୍ନ କରିଦେଇ ହେବନି; କାରଣ ଦେଶସାରା ଏମାନେ ବ୍ୟାପ୍ତ ହୋଇ ରହିଥିବେ । ପ୍ରତ୍ୟେକ ସମ୍ପ୍ରଦାୟ ଯେଉଁଠି ସଂଖ୍ୟାଗରିଷ୍ଠ ସେ ସବୁ ଅଞ୍ଚଳ ସ୍ୱତନ୍ତ୍ର କରିଦେଲେ ସୁଦ୍ଧା ପ୍ରତ୍ୟେକ ସଂଖ୍ୟାଗରିଷ୍ଠ ଅଞ୍ଚଳରେ ବଡ଼ ଧରଣର ସଂଖ୍ୟାଲଘୁ ରହିଯିବେ । ଏପରି ଭାବରେ, ସଂଖ୍ୟାଲଘୁ ସମସ୍ୟା ସମାଧାନ କରିବା ପରିବର୍ତ୍ତେ ଆମେ ଗୋଟାଏ ସ୍ଥାନରେ ଅନେକ ସମସ୍ୟା ସୃଷ୍ଟି କରିବା ହିଁ ସାର ହେବ । ଶିଖ୍‌ମାନଙ୍କ ଭଳି

---

(୧) ଦେଶୀୟ ରାଜ୍ୟମାନେ ନିଜ ନିଜ ରାଜ୍ୟର ସ୍ୱାୟତ୍ତଶାସନ ବଜାୟ ରଖିବା ଲାଗି ଆତୁର ଥିଲେ ସୁଦ୍ଧା, ସମାନ ଅଧିକାର ସହକାରେ, ଗୋଟାଏ ଭାରତୀୟ ଯୁକ୍ତରାଷ୍ଟ୍ରର ସଭ୍ୟ ହେବା ନିମନ୍ତେ ସମାନ ଭାବରେ ଆକାଙ୍‌କ୍ଷିତ । ଦେଶୀୟ ରାଜ୍ୟମାନଙ୍କର କେତେକ ନେତୃସ୍ଥାନୀୟ ଅମାତ୍ୟ ଓ ରାଷ୍ଟ୍ରନେତାଙ୍କ ଭାରତ ବିଭାଜନ ପ୍ରସ୍ତାବକୁ ଦୃଢ଼-କଣ୍ଠରେ ପ୍ରତିବାଦ କରନ୍ତି । ସେମାନେ ଏ କଥା ବି ସ୍ପଷ୍ଟ କହି ସାରିଛନ୍ତି ଯେ ଭାରତ ଯଦି ବିଭକ୍ତ ହୁଏ, ସେମାନେ ବିଭାଜିତ କୌଣସି ଅଂଶ ସଙ୍ଗେ ନିଜର ଭାଗ୍ୟ ଗୁନ୍ଥି-ଦେବା ପରିବର୍ତ୍ତେ ଯେପରି ଅଛନ୍ତି ସେପରି ରହିବା ପସନ୍ଦ କରିବେ । ତ୍ରିବାଙ୍କୁଡ଼ ରାଜ୍ୟର ଦିବାନ୍ ସାର୍ ସି. ପି. ରାମସ୍ୱାମୀ ଆୟେର୍ ଜଣେ ସୁଦକ୍ଷ ତଥା ଅଭିଜ୍ଞ ଦେଶୀୟ ରାଜ୍ୟ ଅମାତ୍ୟ ଏବଂ ଦେଶୀୟ ରାଜ୍ୟମାନଙ୍କ ନିମନ୍ତେ ସ୍ୱାୟତ୍ତଶାସନର ପ୍ରବଳ ସମର୍ଥକ । ଯେଉଁମାନଙ୍କ କାର୍ଯ୍ୟ ପ୍ରତି ତାଙ୍କର ସମର୍ଥନ ନାହିଁ ସେମାନଙ୍କୁ କଠୋର ହସ୍ତରେ ଦମନ କରିବାର ଖ୍ୟାତି ତାଙ୍କର ଥିଲେ ସୁଦ୍ଧା, ସେ 'ପାକିସ୍ତାନ' କିମ୍ବା ଅନ୍ୟ କେଉଁ ଭାବରେ ହେଲେ ଭାରତର ବିଭାଜନ ପ୍ରତି ତାଙ୍କର ଉଗ୍ର ତଥା ଅନମନୀୟ ପ୍ରତିବାଦ ଅପ୍ରକାଶ୍ୟ ରଖି ନାହାନ୍ତି । ତା ୭-୧୦-୧୯୪୪ ରେ, 'ବିଶ୍ୱ ବ୍ୟାପାର ସମ୍ବନ୍ଧୀୟ ଭାରତୀୟ ପରିଷଦ' ବମ୍ବେ ଶାଖା ଆନୁକୂଲ୍ୟରେ ଅନୁଷ୍ଠିତ ଏକ ସଭାରେ ଭାଷଣ ଦେଇ ସେ କହିଚନ୍ତି, 'ଅନ୍ୟ ଭାବରେ କହିଲେ ଓ ମୋର ମତରେ ଦେଶୀୟ ରାଜ୍ୟମାନେ ସେପରି ଏକ ଯୋଜନାର ଅନ୍ତର୍ଭୁକ୍ତ ଅବଶ୍ୟ ହେବେ ଯଦ୍ଦ୍ୱାରା ଭାରତର ବିଭିନ୍ନ ରାଜନୈତିକ ତଥା ପ୍ରଶାସନିକ ଏକକଗୁଡ଼ିକ ସ୍ଥାନୀୟ ବ୍ୟାପାରରେ ପୂର୍ଣ୍ଣ ସ୍ୱାୟତ୍ତଶାସନ ଭୋଗ କଲାବେଳେ ସୁଦ୍ଧା କେନ୍ଦ୍ରୀୟ ବୈଧାନିକ ତଥା ନିର୍ବାହୀ ସଙ୍ଗଠନମାନଙ୍କ ରଚନା ଓ କର୍ମଯୋଜନାରେ ପରସ୍ପର ସଙ୍ଗେ ସହଯୋଗ କରିବେ । ସେପରି ସଙ୍ଗଠନମାନେ ଭାରତର ଘରେ ଓ ବାହାରେ ଜାତୀୟ, ସହଯୋଜକ ତଥା ପ୍ରତିନିଧିମୂଳକ ସଂସ୍ଥା ରୂପରେ ଫଳପ୍ରଦ ଭାବରେ କାର୍ଯ୍ୟକାରୀ ହୋଇପାରିବେ । ଭାରତର ସୀମା ମଧ୍ୟରେ ପ୍ରତ୍ୟେକ ଏକକର ପାରସ୍ପରିକ ସମ୍ପର୍କ ସମାନତା ଉପରେ

ଅନ୍ୟାନ୍ୟ ସମ୍ପ୍ରଦାୟଗୁଡ଼ିକୁ, ସେମାନଙ୍କର ଇଚ୍ଛା ବିରୁଦ୍ଧରେ, ଅନ୍ୟାୟ ଭାବରେ ଭାଗ ଭାଗ କରି ଦୁଇଗୋଟି ସ୍ୱତନ୍ତ୍ର ରାଜ୍ୟରେ ରଖିବାକୁ ପଡ଼ିବ । ଅଲଗା ହେବା ପାଇଁ ଗୋଟାଏ ସମ୍ପ୍ରଦାୟକୁ ସ୍ୱାଧୀନତା ଦିଆଗଲେ, ସଂଖ୍ୟାଲଘୁ ହେଲେ ସୁଦ୍ଧା, ଅନ୍ୟ ସମ୍ପ୍ରଦାୟମାନଙ୍କୁ ସେହି ସ୍ୱାଧୀନତାରୁ ବଞ୍ଚିତ କରିବାକୁ ପଡ଼ିବ ଏବଂ ସେମାନଙ୍କର ପ୍ରବଳ ଇଚ୍ଛା ସତ୍ତ୍ୱେ ଭାରତରୁ ବିଚ୍ଛିନ୍ନ ହେବା ପାଇଁ ସେମାନଙ୍କୁ ପ୍ରକାରାନ୍ତରେ ବାଧ୍ୟ କରାଯିବ । ଏପରି ଯଦି ହୁଏ ଯେ ଏହି ସାମ୍ପ୍ରଦାୟିକ ବିଭାଜନରେ ପ୍ରତ୍ୟେକ ଅଞ୍ଚଳରେ ସଂଖ୍ୟାଗରିଷ୍ଠ ମତ ହିଁ ମାନିନେବାକୁ ପଡ଼ିବ, ତାହାହେଲେ ଏହି ପ୍ରଶ୍ନ ଉପରେ ସାମଗ୍ରିକ ଭାବରେ ଭାରତର ସଂଖ୍ୟାଗରିଷ୍ଠ ଦୃଷ୍ଟିଭଙ୍ଗୀ କାହିଁକି ଗ୍ରହଣ କରା ନଯିବ ସେପରି କିଛି ନିର୍ଦ୍ଦିଷ୍ଟ କାରଣ ନାହିଁ । ପ୍ରତ୍ୟେକ କ୍ଷୁଦ୍ର ଅଞ୍ଚଳ ନିଜ ଅବସ୍ଥା ନିଜେ ସମ୍ଭାଳିବା ଲାଗି ନିଷ୍ପତ୍ତି କରନ୍ତୁ ଏବଂ ଏପରି ଭାବରେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ଏକ ବିରାଟ ସମାହାର ଗଢ଼ି ତୋଳନ୍ତୁ—ଏହା ଯେପରି ବିଚିତ୍ର ସେପରି ହାସ୍ୟକର । କୌଣସି ଯୁକ୍ତିସଙ୍ଗତ କାରଣ ଦର୍ଶାଇ ସେପରି କରିବା ବି ସମ୍ଭବ ହେବନି; କାରଣ ଭାରତର ବିଭିନ୍ନ ଧର୍ମାବଲମ୍ବୀମାନେ ଦେଶସାରା ମିଳିମିଶି ବ୍ୟାପ୍ତ ହୋଇ ରହିଛନ୍ତି ।

---

ପ୍ରତିଷ୍ଠିତ ହେବ । ଏ କ୍ଷେତ୍ରରେ ନିଜ ନିଜ ମଧ୍ୟରେ ସାର୍ବଭୌମତ୍ୱର ପ୍ରଶ୍ନ ଉଠି ନପାରେ । ତେବେ, କେନ୍ଦ୍ର ହାତରେ ଯେଉଁ ଅବଶିଷ୍ଟ ଅଥବା ଅନ୍ୟାନ୍ୟ କ୍ଷମତା ରହିବ ତାହା ଦୃଢ଼ ଭାବରେ ପ୍ରତିଷ୍ଠିତ ତଥା କାର୍ଯ୍ୟରେ ପରିଣତ ହେବା ଆବଶ୍ୟକ ।' ସେ ଆହୁରି କହିଛନ୍ତି, 'ମୋର କହିବାର କଥା ହେଲା, ଚୁକ୍ତିଗତ ଅଧିକାର ଥାଉ କି ନଥାଉ, କୌଣସି ଭାରତୀୟ ଦେଶୀୟ ରାଜ୍ୟ ତିଷ୍ଠି ରହିବାର ଅଧିକାର ସାବ୍ୟସ୍ତ କରି ନପାରେ ଯଦି ସେ ରାଜ୍ୟ ସେପରି ଏକ ଯୋଜନାର ଅନ୍ତର୍ଭୁକ୍ତ ନହୁଏ ଯାହା ଦେଶୀୟ ରାଜ୍ୟ ହେଉ କି ବ୍ରିଟିଶ ଭାରତ ହେଉ ଉଭୟ ପ୍ରତି ସମାନ ଭାବରେ ପ୍ରଯୁଜ୍ୟ ଏକ କେନ୍ଦ୍ରୀୟ ପରିଚାଳନା ଅଥବା କେନ୍ଦ୍ରୀୟ ନିୟନ୍ତ୍ରଣ ସୃଷ୍ଟି କରିବ; କିମ୍ବା ଯେଉଁ ରାଜ୍ୟ ଭାରତର ଶାସନ ନିମନ୍ତେ ସମସ୍ତ ପ୍ରକାର ରାଜନୈତିକ ବ୍ୟବସ୍ଥାକୁ ଏବଂ ଖୋଲାଖୋଲି ଆଲୋଚନା ଫଳରେ ଉପନୀତ ସମସ୍ତ ମତାଦର୍ଶ ଓ ତତ୍ସନିତ ରାଜିନାମାକୁ ଆନୁଗତ୍ୟ ସହକାରେ ସ୍ୱୀକାର ନକରେ ।' 'ଯଦ୍ୟପି ମୁଁ ଜାଣେ ଯେ ଏକଥା କହିବା ଫଳରେ ମୁଁ କେତେକ ମହଲରେ କେତେ ପରିମାଣରେ ବିବାଦ ସୃଷ୍ଟି କରି ବସିବି, ତଥାପି, ମୁଁ ଯଥେଷ୍ଟ ଜୋର୍ ଦେଇ କହିବାକୁ ଚାହେଁ ଯେ ଜନସାଧାରଣଙ୍କ କଲ୍ୟାଣ ସଙ୍ଗେ ଯାହା ସମ୍ପର୍କିତ ସେପରି ବିଷୟମାନଙ୍କରେ ବ୍ରିଟିଶ-ଭାରତଠାରୁ ଆଗୁଆ ଭାବରେ ନହେଲେ ସୁଦ୍ଧା ଅନ୍ତତଃ ସେଥି ସଙ୍ଗେ ସମାନ ଭାବରେ ଯେଉଁ ଦେଶୀୟ ରାଜ୍ୟ ଗତି କରି ନପାରେ, ତା'ର ତିଷ୍ଠି ରହିବାର ଅଧିକାର ନାହିଁ ।'

ଆଉ ଏକ ବାସ୍ତବ କଥା ଯାହା ଉପରେ ରାମସ୍ୱାମୀ ଆୟେର୍ ଜୋର୍ ଦେଇଥାନ୍ତି ତାହା ହେଉଛି ଯେ ଭାରତର ୬୦୧ ଗୋଟି ଦେଶୀୟ ରାଜ୍ୟର ବିଷୟ ପ୍ରତ୍ୟେକ ପ୍ରତି

ଯେଉଁଠି ଜାତି ପ୍ରଶ୍ନ ଉଠେ ପରସ୍ପରକୁ ଅଲଗା କରି ସେ ପ୍ରଶ୍ନର ମୀମାଂସା କରିବା ବଡ଼ କଷ୍ଟକର; କିନ୍ତୁ ଯେଉଁଠି ଧର୍ମ ପ୍ରଶ୍ନ ଉଠୁଚି କୌଣସି ଯୁକ୍ତିସଙ୍ଗତ ଭିତ୍ତି ଉପରେ ତାର ମୀମାଂସା ସମ୍ଭବ ହୋଇପାରେନି । ଧର୍ମର ପ୍ରଶ୍ନ ଏକ ମଧ୍ୟଯୁଗୀୟ ଧାରଣା ଯାହା ଆଧୁନିକ ବିଶ୍ୱରେ ଚଳି ନପାରେ ।

ବିଭାଜନର ବିଭିନ୍ନ ଅର୍ଥନୈତିକ ବିଭାବ ଯଦି ବିବେଚନା କରାଯାଏ, ଏକଥା ସ୍ପଷ୍ଟ ହୋଇ ଉଠେ ଯେ ଅଖଣ୍ଡ ଭାରତ ଗୋଟାଏ ବଳିଷ୍ଠ, କମ୍ ବହୁତରେ ସ୍ୱାବଲମ୍ବୀ ଅର୍ଥନୈତିକ ଏକକ । ବିଭକ୍ତ ହେବା ମାନେ ଏହି ଉପମହାଦେଶ ସ୍ୱାଭାବିକ ଭାବରେ ଦୁର୍ବଳ ହୋଇ ପଡ଼ିବ ଏବଂ ସେଥିକି କେବଳ ନୁହେଁ ଗୋଟାଏ ଅଂଶ ଅପର ଅଂଶ ଉପରେ ନିର୍ଭର କରିବା ଲାଗି ବାଧ୍ୟ ହେବ । ହିନ୍ଦୁ ଓ ମୁସଲମାନବହୁଳ ଅଞ୍ଚଳଗୁଡ଼ିକୁ ଅଲଗା କରିବା ଉଦ୍ଦେଶ୍ୟରେ ଯଦି ଭାରତକୁ ବିଭକ୍ତ କରାଯାଏ ତାହାହେଲେ ଦେଶର ଖଣିଜ ସମ୍ବଳ ତଥା ଶିଳ୍ପାଞ୍ଚଳବହୁଳ ଅଞ୍ଚଳଗୁଡ଼ିକରୁ ଅଧିକ ଭାଗ ହିନ୍ଦୁ-ପ୍ରଧାନ ଖଣ୍ଡରେ ରହିଯିବ । ଏ ଦିଗରୁ ଦେଖିଲେ ହିନ୍ଦୁ-ପ୍ରଧାନ ଅଞ୍ଚଳଗୁଡ଼ିକର ସେପରି କିଛି ବିଶେଷ କ୍ଷତି ହେବ ନାହିଁ । ଅପର ପକ୍ଷରେ, ମୁସ୍‌ଲିମ୍-ପ୍ରଧାନ ଅଞ୍ଚଳଗୁଡ଼ିକ ଆର୍ଥିକ ଦିଗରୁ ଅନଗ୍ରସର, ଅଭାବଗ୍ରସ୍ତ ଅଞ୍ଚଳ ହୋଇ ରହିବ ଏବଂ ବାହାରୁ ବହୁଳ ପରିମାଣରେ ସାହାଯ୍ୟ ନପାଇଲେ ତିଷ୍ଠି ପାରିବ ନାହିଁ । ଅତଏବ, ଆଜି ଯେଉଁମାନେ ଭାରତର ବିଭାଜନ ଦାବୀ କରୁଚନ୍ତି ବିଭାଜନ ପରେ ବହୁତ ପରିମାଣରେ ସେହିମାନେ ହିଁ କ୍ଷତିଗ୍ରସ୍ତ ହେବେ । ଏ କଥାର ସତ୍ୟତା ଆଂଶିକ ଭାବରେ ଉପଲବ୍ଧି କଲା ପରେ, ସେମାନଙ୍କ ପକ୍ଷରୁ ବର୍ତ୍ତମାନ ସ୍ୱର ଉଠୁଚି ଯେ ଦେଶକୁ ସେପରି ଭାବରେ ବିଭକ୍ତ କରାଯାଉ ଯା'ର ଫଳରେ ଅର୍ଥନୈତିକ ଦିଗରୁ ସମର୍ଥ ରହି ପାରିବା ଭଳି ଏକ ଭୂଭାଗ ସେମାନେ ପାଇପାରିବେ । କୌଣସି ଅବସ୍ଥାରେ ହେଲେ ଏହା ସମ୍ଭବ କି ନା ମୁଁ ଜାଣେନି; କିନ୍ତୁ ହୋଇପାରିବ ବୋଲି ମୁଁ ନିଃସନ୍ଦେହ ହୋଇ ନପାରେ । ସେ ଯାହାହେଉ, ଏପରି ଉଦ୍ୟମ କରିବା ଅର୍ଥ ହିନ୍ଦୁ ଓ ଶିଖ-ପ୍ରଧାନ ବିଶାଳ କେତେ

---

ସମାନ ଦୃଷ୍ଟି ଦେଇ କରାଯାଇ ନପାରେ । ସେ ମନେ କରନ୍ତି ଯେ ଭାରତର ନୂତନ ସମ୍ବିଧାନ ଯେବେ ପ୍ରଣୀତ ହେବ, ଏହି ୬୦୧ ଗୋଟି ଦେଶୀୟ ରାଜ୍ୟକୁ ୧୫ କିମ୍ବା ୨୦ଟି ରାଜ୍ୟରେ ପରିଣତ କରିବାକୁ ପଡ଼ିବ । ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟଗୁଡ଼ିକ ବଡ଼ ବଡ଼ ଏକକ-ପ୍ରଦେଶ ଅଥବା ରାଜ୍ୟ ସଙ୍ଗେ ମିଶିଯିବେ ।

ରାମସ୍ୱାମୀ ଆୟେର୍ ଦେଶୀୟ ରାଜ୍ୟର ଆଭ୍ୟନ୍ତରୀଣ ରାଜନୈତିକ ପ୍ରଗତି ଉପରେ, ଯେପରି ଅନୁମିତ ହୁଏ, ସେପରି କିଛି ଗୁରୁତ୍ୱ ଅର୍ପଣ କରୁ ନାହାନ୍ତି କିମ୍ବା ଯେ କେଉଁ ଭାବରେ ହେଲେ ତାକୁ ପ୍ରଥମ ସ୍ଥାନ ଦେବାକୁ ଚାହାନ୍ତିନି । ଅଥଚ, ଅନ୍ୟ ଭାବରେ ଅଗ୍ରଗାମୀ, ସେହି ସବୁ ଦେଶୀୟ ରାଜ୍ୟମାନଙ୍କରେ ଏହି ରାଜନୈତିକ ପ୍ରଗତିର ଅଭାବ ରାଜ୍ୟର ଶାସକବର୍ଗ ଓ ପ୍ରଜାଙ୍କ ଭିତରେ ନିରବଚ୍ଛିନ୍ନ ବିବାଦର କାରଣ ହୋଇ ଉଠିଚି ।

ଅଞ୍ଚଳ ବଳପୂର୍ବକ ବିଚ୍ଛିନ୍ନତାକାମୀ ମୁସଲିମ୍‌ପ୍ରଧାନ ଅଞ୍ଚଳ ସଙ୍ଗେ ଯୁକ୍ତ କରିଦେବାକୁ ବସିବା । ଆତ୍ମନିୟନ୍ତ୍ରଣ ନୀତିକୁ ଏପରି ଭାବରେ କାର୍ଯ୍ୟକାରୀ କରିବାକୁ ଯିବା ବିଚାର କେବଳ ନୁହେଁ, ବାସ୍ତବିକ ଉଦ୍‌ଭଟ । ମୋର ସେହି ଲୋକଟିର କଥା ମନେପଡ଼େ ଯିଏ ନିଜର ପିତାମାତାଙ୍କୁ ହତ୍ୟା କରିସାରି ଜଣେ ଅନାଥ ଭାବରେ ବିଚାରାଳୟର ଅନୁକମ୍ପା ଭିକ୍ଷା କରିଥିଲା ।

ଆଉ ଏକ ବିଚାର ବିରୋଧାଭାସ ବିଷୟରକୁ ଆସେ । ଆତ୍ମ-ନିୟନ୍ତ୍ରଣ ନୀତି କଥା ଯେବେ ଉଠିଲାଣି, ଗଣଭୋଟ ଦ୍ୱାରା ତାର ନିଷ୍ପତ୍ତି କରାଯାଉ ବୋଲି କହୁଁଲେ ସେ କଥା ଗ୍ରହଣ କରାଯାଉନି । ଗଣଭୋଟ ସମ୍ପର୍କରେ ଏମାନଙ୍କ କେବଳ ସେମାନେ କରିବାପାଇଁ ପ୍ରସ୍ତୁତ ଯେ ସେ ସବୁ ଅଞ୍ଚଳର ମୁସଲିମ୍‌ମାନେ କେବଳ ସେଥିରେ ଅଂଶ ଗ୍ରହଣ କରିପାରିବେ । ବଙ୍ଗ ଓ ପଞ୍ଜାବରେ ମୁସଲିମ ଜନସଂଖ୍ୟା ହେଉଚି ଶତକଡ଼ା ୫୪ ଭାଗ କିମ୍ବା ତା'ଠାରୁ କିଛି କମ୍ । ଲିଗ୍ ପକ୍ଷରୁ ପ୍ରସ୍ତାବ ହେଉଚି ଯେ ଯଦି ଭୋଟ ଗ୍ରହଣ କରାଯାଏ ତାହାହେଲେ ଏହି ଶତକଡ଼ା ଚଉବନ କେବଳ ଭୋଟ ଦେବେ ଆଉ ଅବଶିଷ୍ଟ ଶତକଡ଼ା ୪୬ର ଭାଗ୍ୟ ନିର୍ଣ୍ଣୟ କରିବେ । ଏ ବିଷୟରେ ସେ ୪୬ର କିଛି କହିବାର ନାହିଁ । ଏହାର ଫଳ ଏପରି ହୋଇପାରେ ଯେ ଶତକଡ଼ା ୨୮ ଭାଗ ଲୋକ କେବଳ ଅବଶିଷ୍ଟ ୭୨ ଭାଗ ଲୋକଙ୍କର ଭାଗ୍ୟ ନିର୍ଣ୍ଣୟ କରିବେ ।

କୌଣସି ବିବେକୀ ଲୋକ ଏ ପ୍ରକାର ପ୍ରସ୍ତାବ କିପରି କରିପାରିବ କିମ୍ବା ଏ ପ୍ରକାର ପ୍ରସ୍ତାବକୁ ଅନ୍ୟମାନେ ଗ୍ରହଣ କରନ୍ତୁ ବୋଲି କିପରି ବିଶ୍ୱାସ କରିପାରିବ, ବୁଝିବା ବଡ଼ କଷ୍ଟକର । ମୁଁ ଜାଣେନି ଏବଂ ଏହି ପ୍ରଶ୍ନ ଉପରେ ପ୍ରକୃତରେ ଭୋଟନେବା ପର୍ଯ୍ୟନ୍ତ ଅନ୍ୟ କେହି ବି ଜାଣି ପାରିବେନି ଯେ ମୁସଲିମ୍‌ବହୁଳ ଅଞ୍ଚଳମାନଙ୍କରୁ କେତେ ସଂଖ୍ୟକ ମୁସଲମାନ ଦେଶର ବିଭାଜନ ସପକ୍ଷରେ ଭୋଟ ଦେବେ । ମୋର ଯେପରି ଖିଆଲ ହେଉଚି ଅନେକେ, ଏପରିକି ଗରିଷ୍ଠ ସଂଖ୍ୟକ ଲୋକ ବିଭାଜନ ବିରୁଦ୍ଧରେ ଭୋଟ ଦେବେ । ବହୁ ମୁସଲିମ୍ ସଙ୍ଗଠନ ଏହାର ବିରୋଧ କରନ୍ତି । ହିନ୍ଦୁ, ଶିଖ, ଖ୍ରୀଷ୍ଟାନ ଅଥବା ପାର୍ସୀ—ଅଣ-ମୁସଲମାନ ମାନେ ଏହାର ବିରୋଧୀ । ବିଭାଜନ ସପକ୍ଷରେ ମତ ସେହି ସବୁ ଅଞ୍ଚଳମାନଙ୍କରେ ମୁଖ୍ୟତଃ ପ୍ରକାଶ ପାଉନି, ଯେଉଁଠି ମୁସଲିମ୍‌ମାନେ ସଂଖ୍ୟାଲଘୁ । ସେହି ସବୁ ଅଞ୍ଚଳ କେବେହେଲେ ଭାରତରୁ ଅଲଗା ହୋଇନପାରେ । ମୁସଲିମ୍ ସଂଖ୍ୟାଗରିଷ୍ଠ ପ୍ରଦେଶମାନଙ୍କରେ ଅଲଗା ହେବାର ଭାବନା ସେତେଭଳି ନାହିଁ; କାରଣ ନିଜ ଗୋଡ଼ରେ ଠିଆହେବା ଲାଗି ସେମାନେ ସମର୍ଥ ଏବଂ ଅନ୍ୟ ଗୋଷ୍ଠୀମାନଙ୍କୁ ସେମାନେ ଭୟ କରିବାର ହେତୁ କିଛି ନାହିଁ । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ ଯେଉଁଠି ଶତକଡ଼ା ୯୫ ଭାଗ ଜନସଂଖ୍ୟା ମୁସଲମାନ, ଏହାର ସୂଚନା ସୁଦ୍ଧା ସେଠାରେ ନାହିଁ । ସୀମାନ୍ତ ପ୍ରଦେଶର ପଠାଣମାନେ ସାହସୀ ଓ ଆତ୍ମନିର୍ଭରଶୀଳ ଏବଂ ସେମାନେ ଭୟପୀଡ଼ିତ ନୁହନ୍ତି । ଏପରି ଭାବରେ, ବାସ୍ତବିକ ବିଚାର, ଭାରତକୁ ଭାଗ ଭାଗ କରିବା ଲାଗି ମୁସଲିମ ଲିଗ୍‌ର ପ୍ରସ୍ତାବ ପ୍ରତି ଯେଉଁ ଅଞ୍ଚଳମାନଙ୍କରୁ

ସମର୍ଥନ ମିଳୁଛି, ସେସବୁ କେବେହେଲେ ଭାରତରୁ ଅଲଗା ହେବାର ନୁହେଁ ଏବଂ ଭାରତ ବିଭକ୍ତ ହେଲେ ଯେଉଁ ସବୁ ମୁସ୍‌ଲିମ୍‌ବହୁଳ ଅଞ୍ଚଳ ଭାରତରୁ ଅଲଗା ହେବା ଉଚିତ ବୋଲି ସେମାନେ ମନେକରନ୍ତି, ସେଠାରେ ସେମାନଙ୍କ ପ୍ରସ୍ତାବ ପ୍ରତି ସେତେ ସମର୍ଥନ ନାହିଁ । ତଥାପି, ଏକଥା ମାନିବାକୁ ପଡ଼ିବ ଯେ ପରିଣାମ ପ୍ରତି ବିଗ୍ଭର ନକରି ବହୁ ମୁସଲମାନ ଏହି ବିଭାଜନ ବିଗ୍ଭର ପ୍ରତି ଭାବପ୍ରବଣ ଭାବରେ ଆସକ୍ତ ହୋଇପଡ଼ିଛନ୍ତି । ପ୍ରକୃତପକ୍ଷେ, ଏହି ପ୍ରସ୍ତାବର ପ୍ରକୃତ ରୂପରେଖ ଏ ପର୍ଯ୍ୟନ୍ତ ଜଣାଯାଇନି ଏବଂ ବାରମ୍ବାର ଅନୁରୋଧ ସତ୍ତ୍ୱେ ପ୍ରସ୍ତାବକାରୀମାନେ ସେ ବିଷୟରେ ସ୍ପଷ୍ଟ ଭାବରେ କିଛି କହିବା ଲାଗି ପ୍ରସ୍ତୁତ ନୁହନ୍ତି ।

ମତେ ଯେପରି ଲାଗେ ଏହି ଭାବନା ଏକ କୃତ୍ରିମ ସୃଷ୍ଟି ଏବଂ ମୁସ୍‌ଲିମ୍ ମନରେ ତାର ମୂଳ ନାହିଁ; କିନ୍ତୁ ଗୋଟାଏ ଅସ୍ଥାୟୀ ଭାବନା ମଧ୍ୟ ପରିସ୍ଥିତିକୁ ପ୍ରଭାବିତ କରିପାରିବା ଭଳି ବଳବତ୍ତ ହୋଇପାରେ ଏବଂ ଗୋଟାଏ ନୂଆ ପରିସ୍ଥିତି ସୃଷ୍ଟି କରିଦେଇପାରେ । ସାଧାରଣତଃ ସମସ୍ୟାନୁକ୍ରମେ ବୁଝାମଣା ଓ ଆପୋଷ ମୀମାଂସା କରାଯାଇଥାଏ; କିନ୍ତୁ ଆଜି ଭାରତ ଯେପରି ଭାବରେ ଅବସ୍ଥିତ ଏବଂ ସବୁ କ୍ଷମତା ଯେତେବେଳେ ବିଦେଶୀଙ୍କ ହାତରେ, ଏଠାରେ ସବୁ କିଛି ଘଟିପାରେ । ଏକଥା ସ୍ପଷ୍ଟ ଯେ ପ୍ରକୃତ ମୀମାଂସା ସଂପୃକ୍ତ ସମସ୍ତଙ୍କର ଶୁଭେଚ୍ଛା ଉପରେ ଏବଂ ଗୋଟାଏ ସାର୍ବଜନୀନ ଲକ୍ଷ୍ୟ ହାସଲ କରିବା ଉଦ୍ଦେଶ୍ୟରେ ସଂପୃକ୍ତ ସବୁ ପକ୍ଷର ସହଯୋଗ କାମନା ଉପରେ ଭିତ୍ତିକରିବା ଦରକାର । ଏହା ସାଧନ କରିବା ପାଇଁ ସବୁ କିଛି ଯୁକ୍ତିସଙ୍ଗତ ତ୍ୟାଗ ସ୍ୱୀକାର କରାଯାଇ ପାରିବ । ପ୍ରତ୍ୟେକ ଗୋଷ୍ଠୀଙ୍କୁ ବିଦେଶୀ ଓ କାର୍ଯ୍ୟକାରିତା ଦିଗରୁ ସ୍ୱାଧୀନ ହେବା ଏବଂ ଉନ୍ନତି କ୍ରମରେ ସମାନ ସୁଯୋଗ ଲାଭକରିବା କେବଳ ଯଥେଷ୍ଟ ନୁହେଁ । ମୁକ୍ତି ଓ ସମାନତାର ଚେତନା ପ୍ରତ୍ୟେକ ଗୋଷ୍ଠୀ ପ୍ରାଣରେ ସଂଗୃହୀତ ହେବା ଆବଶ୍ୟକ । ଭାବାବେଗ ଓ ଯୁକ୍ତିବିମୁଖ ଉଚ୍ଛ୍ୱାସ ଯଦି ବାଦ୍ ଦିଆଯାଏ, ତାହାହେଲେ ଗୋଟାଏ ବଳିଷ୍ଠ କେନ୍ଦ୍ର ତଳେ ପ୍ରତ୍ୟେକ ପ୍ରଦେଶକୁ ବୃହତ୍ତର ସ୍ୱାୟତ୍ତଶାସନ ଅର୍ପଣ କରି ଏପରି ଏକ ସ୍ୱାଧୀନତାର ଢାଞ୍ଚା ଗଢ଼ିବା କଷ୍ଟକର ନୁହେଁ । ସୋଭିଏତ୍ ରୁଷିଆରେ ଯେପରି କରାଯାଇଛି, ବଡ଼ ବଡ଼ ପ୍ରଦେଶ ବା ରାଜ୍ୟରେ ସ୍ୱଶାସିତ ୟୁନିଟ୍ ମଧ୍ୟ ରଖାଯାଇ ପାରିବ । ଏହା ବ୍ୟତୀତ ସଂଖ୍ୟାଲଘୁ ଅଧିକାର ରକ୍ଷାକରିବା ପାଇଁ ସବୁ କିଛି ସଙ୍ଗତ ବ୍ୟବସ୍ଥା ସମ୍ବିଧାନରେ ଲିପିବଦ୍ଧ କରାଯାଇ ପାରିବ ।

ଏସବୁ କରାଯାଇ ପାରିବ ସତ, କିନ୍ତୁ ନାନା ମଧ୍ୟବର୍ତ୍ତୀ ଶକ୍ତିମାନଙ୍କ ପ୍ରଭାବ ଫଳରେ ମୁଖ୍ୟତଃ ବ୍ରିଟିଶ ନୀତିର ପ୍ରଭାବ ଫଳରେ, ଭବିଷ୍ୟତର ରୂପ କ'ଣ ହେବ, ମୁଁ ଜାଣେନି । ଏପରି ବି ହୋଇପାରେ ଯେ ବଳପୂର୍ବକ ଭାରତକୁ ବିଭକ୍ତ କରିଦିଆଯିବ ଏବଂ ବିଭକ୍ତ ଅଂଶଗୁଡ଼ିକୁ ଅତି ସୂକ୍ଷ୍ମ କିଛି ଏକ ସୂତ୍ରଦ୍ୱାରା ଗୁନ୍ଥି ଦିଆଯିବ ଯାହା ସାମାନ୍ୟ ଅସାବଧାନତା ଫଳରେ ଛିଣ୍ଡିପଡ଼ିବ । ଏପରି ଯଦିବା ଘଟେ, ମୁଁ ଭଲ ଭାବରେ ବୁଝିପାରିଛି ଯେ ଏକତାର ମୌଳିକ ଭାବନା ଏବଂ ବିଶ୍ୱର ଗତି ପରବର୍ତ୍ତୀ କାଳରେ ବିଭକ୍ତ ଅଂଶଗୁଡ଼ିକୁ ପରସ୍ପରର ନିକଟବର୍ତ୍ତୀ କରିବ ଏବଂ ପରିଶେଷରେ ପ୍ରକୃତ ଐକ୍ୟ ପ୍ରତିଷ୍ଠିତ ହେବ ।

ସେହି ଏକତା ଭୌଗୋଳିକ, ଐତିହାସିକ, ସାଂସ୍କୃତିକ ଓ ଆଉ ଯାହା କିଛି କିନ୍ତୁ, ତା ସପକ୍ଷରେ ସର୍ବାପେକ୍ଷା ବଡ଼ ଶକ୍ତି ହେଉଛି ବିଶ୍ୱ ଘଟଣାବଳୀର ଧାରା । ଆମ ଭିତରୁ ଅନେକଙ୍କର ମତ ଯେ ଭାରତ କହିଲେ ସାରତଃ ଗୋଟିଏ ଜାତିକୁ ବୁଝାଏ । ଜିନାବ ଜିନ୍ନା କିନ୍ତୁ ଗୋଟାଏ ଦୁଇ-ଜାତି ତତ୍ତ୍ୱ ଅଣି ଥୋଇଛନ୍ତି ଏବଂ କେତେକ ଧର୍ମ ସମ୍ପ୍ରଦାୟକୁ ଉପଜାତି ଭାବରେ ବର୍ଣ୍ଣନା କରି ତାଙ୍କର ତତ୍ତ୍ୱ ଓ ରାଜନୈତିକ ପରିଭାଷାର କଳେବର ବୃଦ୍ଧି କରୁଛନ୍ତି । ତାଙ୍କ ବିଚାରରେ ରାଷ୍ଟ୍ର ଓ ଧର୍ମ ଭିତରେ କିଛି ଭେଦ ନାହିଁ । ଆଜିର କାଳରେ ସେ ପ୍ରକାର ଭାବନାର ଚଳଣି ନାହିଁ; କିନ୍ତୁ ଭାରତକୁ ଏକ, ଦୁଇ ଅବା ତତୋଽଧିକ ଜାତିର ଦେଶ ବୋଲି କୁହାଯିବ କି ନାହିଁ, ସେ କଥା ବଡ଼ ନୁହେଁ । କାରଣ ଜାତୀୟତାର ଆଧୁନିକ ଧାରଣା ରାଷ୍ଟ୍ରୀୟତାରୁ ପ୍ରାୟ ବିଚ୍ଛିନ୍ନ ହୋଇଗଲାଣି । ଆଜିର ଯୁଗରେ ଜାତୀୟ ରାଷ୍ଟ୍ର ଏକ ଅତି କ୍ଷୁଦ୍ର ଏକକ ଏବଂ କ୍ଷୁଦ୍ର ରାଷ୍ଟ୍ରମାନଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ କୁଆପି ରହି ନପାରେ । ବଡ଼ ବଡ଼ ଜାତୀୟ ରାଷ୍ଟ୍ରଗୁଡ଼ିକରୁ ଅନେକର ପ୍ରକୃତ ସ୍ୱାଧୀନତା ରହି ପାରୁଛି କି ନାହିଁ ସନ୍ଦେହଜନକ । ଏପରି ଭାବରେ, ଜାତୀୟ ରାଷ୍ଟ୍ରର ସ୍ଥାନରେ ବହୁଜାତିକ ରାଷ୍ଟ୍ର କିମ୍ବା ମହାସଙ୍ଘମାନ ଗଢ଼ିଉଠୁଛି । ସୋଭିଏତ୍ ୟୁନିଅନ୍ ଏହାର ଏକ ଚମତ୍କାର ଦୃଷ୍ଟାନ୍ତ । ବଳିଷ୍ଠ ମାର୍କିନ୍ ଜାତୀୟତାରେ ଆବଦ୍ଧ ହୋଇଥିଲେ ସୁଦ୍ଧା ଯୁକ୍ତରାଷ୍ଟ୍ର ଆମେରିକା ସାରତଃ ଏକ ବହୁଜାତିକ ରାଷ୍ଟ୍ର । ୟୁରୋପର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ହିଟ୍‌ଲରଙ୍କ ସାମରିକ ଯାତ୍ରା ପଛରେ ନାଜୀ ଜୟତୃଷ୍ଣା କେବଳ ନୁହେଁ, ଆହୁରି କିଛି ମଧ୍ୟ ଥିଲା । ତାହା ହେଉଛି ଯେ ବହୁ ନୂତନ ଶକ୍ତି ୟୁରୋପରୁ କ୍ଷୁଦ୍ରରାଷ୍ଟ୍ର ବ୍ୟବସ୍ଥା ଲୋପ କରିବା ଦିଗରେ କାର୍ଯ୍ୟ କରୁଥିଲେ । ହିଟ୍‌ଲରଙ୍କ ସାମରିକ ବାହିନୀ ବର୍ତ୍ତମାନ ଏକେ ପଛକୁ ହଟି ଆସୁଛନ୍ତି କିମ୍ବା ବିନାଶ ଲଭୁଛନ୍ତି; କିନ୍ତୁ ମହାସଙ୍ଘର ଅବଧାରଣା ଅବ୍ୟାହତ ରହିଛି ।

ଜଣେ ପ୍ରାଚୀନ ଲୋକଗୁରୁର ଉଦ୍ଦୀପନା ଘେନି ଏଚ୍. ଜି. ଓ୍ୱେଲ୍‌ସ ସମଗ୍ର ଦୁନିଆକୁ ଲକ୍ଷ୍ୟ କରି କହିଛନ୍ତି ଯେ ମାନବଜାତି ଗୋଟାଏ ଯୁଗ ଶେଷରେ ଆସି ଉପନୀତ ହୋଇଛି; ସେପରି ଏକ ଯୁଗ ଯେଉଁଥିରେ ବିଶ୍ୱର ସବୁ କିଛି ବ୍ୟାପାର ବିଭାଜନ ପନ୍ଥାରେ ହିଁ ପ୍ରବନ୍ଧିତ ହୋଇଥାଏ । ରାଜନୈତିକ ଦିଗରୁ ସ୍ୱତନ୍ତ୍ର ସାର୍ବଭୌମ ରାଷ୍ଟ୍ରମାନଙ୍କ ଭିତରେ ଏବଂ ଅର୍ଥନୈତିକ ଦିଗରୁ ଲାଭ ନିମନ୍ତେ ପ୍ରତିଯୋଗିତାରତ ଅପ୍ରତିହତ ବ୍ୟବସାୟ ପ୍ରତିଷ୍ଠାନମାନଙ୍କ ଭିତରେ ଏହି ବିଭାଜନ ନୀତି ହିଁ କାର୍ଯ୍ୟ କରୁଛି । ସେ କହନ୍ତି ଯେ ଏହି ଜାତୀୟବାଦୀ ବ୍ୟକ୍ତିବାଦ ପଦ୍ଧତି ଓ ସମନ୍ୱୟବିହୀନ ସ୍ୱତନ୍ତ୍ର ଉଦ୍ୟୋଗ ବିଶ୍ୱର ପ୍ରଧାନ ବ୍ୟାଧି । ଜାତୀୟ ରାଷ୍ଟ୍ର ବ୍ୟବସ୍ଥା ଭାଙ୍ଗିଦେଇ ଆମକୁ ସେପରି ଏକ ସଂହତିବାଦର ପନ୍ଥା ଧରିବାକୁ ପଡ଼ିବ, ଯେଉଁଥିରେ ଅଧଃପତନ ଅଥବା ଦାସତ୍ୱର ଆଶଙ୍କା ନାହିଁ । ଲୋକଗୁରୁମାନେ ସାଧାରଣତଃ ଅବହେଳିତ ଏବଂ ବେଳେବେଳେ ସେମାନଙ୍କ ପୁରୁଷଦ୍ୱାରା ଅବମାନିତ ହୋଇଥାନ୍ତି । ଅତଏବ, ଓ୍ୱେଲ୍‌ସ୍‌ଙ୍କ ଚେତାବନୀ ଓ ଅନ୍ୟମାନଙ୍କର ସେ ପ୍ରକାର ମନ୍ତବ୍ୟ ଏକ ପ୍ରକାର ଅରଣ୍ୟରୋଦନରେ ପର୍ଯ୍ୟବସିତ ହୋଇଛି । ଅଧିକାରପ୍ରମତ୍ତ ଶାସକମାନେ ସେଥିପ୍ରତି କର୍ଣ୍ଣପାତ କରୁନାହାନ୍ତି । ସେ ଯାହାହେଉ, ଏହି ଭବିଷ୍ୟତ ବକ୍ତାଙ୍କ ଉକ୍ତିରେ

ଅନିବାର୍ଯ୍ୟ କେତେକ ଦିଗର ସୂଚନା ମିଳେ । ଏହି ସବୁ ଦିଗର କାର୍ଯ୍ୟ ତ୍ୱରାନ୍ୱିତ କିମ୍ବା ବିଳମ୍ବିତ କରାଯାଇ ପାରେ; କିମ୍ବା କ୍ଷମତାରେ ଥିବା ଲୋକେ ଯଦି ସେତେ ଭଲ ଅନ୍ଧ ହୋଇଥାନ୍ତି, ସେହି ସବୁ ସୂଚନା ରୂପ ପରିଗ୍ରହ କରିବା ପୂର୍ବରୁ, ସେମାନଙ୍କୁ ଆଉ ଏକ ବୃହତ୍ତର ବିପର୍ଯ୍ୟୟ ନିମନ୍ତେ ଅପେକ୍ଷା କରିବାକୁ ପଡ଼ିବ ।

ଅନ୍ୟତ୍ର ଯେପରି, ଭାରତରେ ମଧ୍ୟ ସେପରି, ଆମେ ଅନିଶ୍ଚିତ ଭାବରେ ଅତୀତ ଘଟଣା-ମାନଙ୍କର ଉଦ୍‌ଭୂତ କେତେ ସ୍ଲୋଗାନ୍ ଉଦ୍‌ଘୋଷ ଓ ଆଦର୍ଶର ବନ୍ଧନରେ ପଡ଼ିଥାଉଁ, ଆଜିର ପ୍ରକରଣରେ ଯାହାର କୌଣସି ପ୍ରାସଙ୍ଗିକତା ନାହିଁ ଏବଂ ସେ ସବୁର ପ୍ରଧାନ କାର୍ଯ୍ୟ ହେଲା ପ୍ରଚଳିତ ପରିସ୍ଥିତିର ନିରପେକ୍ଷ ବିବେଚନା ଏବଂ ଯୁକ୍ତିସଙ୍ଗତ ବିଚାରର ନିବାରଣ କରିବା । ନାନା ଅସ୍ପଷ୍ଟ ଆଦର୍ଶ ବିମୂର୍ତ୍ତ ଧାରଣା ପ୍ରତି ମଧ୍ୟ ସେଥିରେ ଏକ ପ୍ରକାର ପ୍ରବୃତ୍ତି ପ୍ରକାଶ ପାଏ, ଯାହା ଭାଗବତ ପ୍ରତିବେଦନ ଉଦ୍ରେକ କରେ ଏବଂ ନିଜସ୍ୱ ଧାରାରେ ବହୁଧା ସେଥିରୁ ସୁଫଳ ମିଳିଥାଏ; କିନ୍ତୁ ତାହା ମନକୁ ଏକପ୍ରକାର ଅନିଶ୍ଚିତ ଓ ଅସ୍ପଷ୍ଟ କରି ତୋଳେ ଏବଂ ଅବାସ୍ତବତା ଭିତରକୁ ବାଟ କଢ଼ାଇନିଏ । ଏଇ କେତେ ବର୍ଷରେ ଭାରତର ଭବିଷ୍ୟତ ସମ୍ପର୍କରେ, ବିଶେଷତଃ ଭାରତ ଅଖଣ୍ଡ ରହିବ କି ବିଭକ୍ତ ହେବ, ବହୁତ କିଛି ଲେଖାଗଲାଣି ଓ କୁହାଗଲାଣି । ତଥାପି ବିସ୍ମୟର କଥା ଯେ ଯେଉଁମାନେ ଦେଶର ବିଭାଜନ ବା 'ପାକିସ୍ତାନ' ବିଷୟରେ ବାଦବାଦ କରିଥାନ୍ତି ସେମାନେ ସେଥିଦ୍ୱାରା କ'ଣ ବୁଝନ୍ତି ତାର ସଂଜ୍ଞା ନିରୂପଣ କରିବା ପାଇଁ କିମ୍ବା ଏ ପ୍ରକାର ଏକ ବିଭାଜନ କି ଅବସ୍ଥା ସୃଷ୍ଟି କରିପାରେ ସେ ବିଷୟରେ ବିବେଚନା କରିବା ପାଇଁ ସବୁ ପ୍ରକାର ଅନୁରୋଧ ବରାବର ପ୍ରତ୍ୟାଖ୍ୟାନ କରୁଚନ୍ତି । ସେମାନେ ଓ ସେମାନଙ୍କ ବିଚାରକୁ ବିରୋଧ କରୁଥିବା ଲୋକଙ୍କ ଭିତରୁ ଅନେକେ ଭାବୁକତାର ଏକ ପ୍ରକାର କଳ୍ପଲୋକରେ ବିଚରଣ କରନ୍ତି, ଯେଉଁଠି ଆକାଙ୍‌କ୍ଷା ଯେପରି ଅସ୍ପଷ୍ଟ, ତା'ପଛର ସ୍ୱାର୍ଥ ମଧ୍ୟ ସେହିପରି କଳ୍ପିତ । ଏହି ଭାବୁକତା ଓ କଳ୍ପନାପ୍ରବଣତାର ଅଭିମୁଖ୍ୟ ମଧ୍ୟରେ ମିଳନ କ୍ଷେତ୍ର ନିରହିପାରିବା କିଛି ଅସାଧାରଣ ନୁହେଁ । ଅତଏବ 'ପାକିସ୍ତାନ' ଓ 'ଅଖଣ୍ଡ ହିନ୍ଦୁସ୍ତାନ' ଉଭୟ ଧରି ଉଭୟ ପକ୍ଷ ନିତ୍ୟ କଳହରେ ମନୋନିବେଶ କରିଚନ୍ତି । ଏକଥା ସ୍ପଷ୍ଟ ଯେ ଗୋଷ୍ଠୀର ଭାଗବତ ପ୍ରତିକ୍ରିୟା ଏବଂ ସଚେତନ କିମ୍ବା ଅବଚେତନ ନାନା ଆବେଗ ନିରର୍ଥକ ନୁହେଁ ଏବଂ ସେଥିପ୍ରତି ଧ୍ୟାନଦେବା ଆବଶ୍ୟକ । ଏକଥା ମଧ୍ୟ ସମାନ ଭାବରେ ସ୍ପଷ୍ଟ ଯେ ଯାହା ତଥ୍ୟସମ୍ବଳିତ ଓ ବାସ୍ତବ ଆମର ଅବଜ୍ଞାଦ୍ୱାରା କିମ୍ବା ଆମର ଭାବୁକତାର ଆବରଣଦ୍ୱାରା ତାହା ଉଭାଇଯାଏ ନାହିଁ । ବରଂ ଅଗ୍ରୀତିକର ଭାବରେ, ଆଉ ବଡ଼ ଅସୁବିଧା ସମୟରେ, ବିଚିତ୍ର ଏକ ନିଜସ୍ୱ ରୀତିରେ ତାହା ପ୍ରକାଶିତ ହୋଇପଡ଼େ । ଭାବାବେଗର ଭିତ୍ତି ଉପରେ ମୁଖ୍ୟତଃ ଗୃହୀତ ଯେକୌଣସି ନିଷ୍ପତ୍ତି କିମ୍ବା ଭାବାବେଗର ପ୍ରାବଲ୍ୟ କାଳରେ ଗୃହୀତ ନିଷ୍ପତ୍ତି ଭୁଲ ହେବାର ସମ୍ଭାବନା ବେଶି ଏବଂ ତାହା ଅନିବାର୍ଯ୍ୟ ଭାବରେ ବିପଦ ଭିତରକୁ ବାଟ କଢ଼ାଇ ନେଇଥାଏ ।

ଏଥିରେ ଅସ୍ପଷ୍ଟତା କିଛି ନାହିଁ ଯେ ଭାରତର ଭବିଷ୍ୟତ ଯାହା ହେଉନା କାହିଁକି, ଧରି

ଯଦି ଭାରତକୁ ଭାଗ ଭାଗ କରି ଦିଆଗଲା, ତେବେ ସୁଦ୍ଧା ବିଭିନ୍ନ ଭୂଖଣ୍ଡ ନାନା ଭାବରେ ପରସ୍ପର ସଙ୍ଗେ ସହଯୋଗ କରିବା ପାଇଁ ବାଧ୍ୟ । ସ୍ୱାଧୀନ ଦେଶମାନେ ପରସ୍ପର ସଙ୍ଗେ ସହଯୋଗ କରିବା ବିନା ଯେବେ ଅନ୍ୟ ଉପାୟ ନାହିଁ, ଭାରତୀୟ ରାଜ୍ୟମାନେ କିମ୍ବା ବିଭାଜନଦ୍ୱାରା ସୃଷ୍ଟ ଭୂଖଣ୍ଡମାନେ ପରସ୍ପର ଭିତରେ ସହଯୋଗ ରକ୍ଷା ନ କରିବେ କିପରି ? କାରଣ ଭାରତର ଏସବୁ ବିଭିନ୍ନ ଅଂଶ ପରସ୍ପର ସଙ୍ଗେ ଅତି ଘନିଷ୍ଠ ଭାବରେ ସମ୍ବନ୍ଧିତ ଏବଂ ସେଥି ହେତୁରୁ ମିଳିମିଶି ଏକାଠି ଚାଲିବା ଅନିବାର୍ଯ୍ୟ । ଅନ୍ୟଥା ବିଚ୍ଛିନ୍ନତା ଓ କ୍ରମାବନତି ଭିତର ଦେଇ ସମସ୍ତେ ସ୍ୱାଧୀନତା ହରାଇ ବସିବେ । ଅତଏବ, ସର୍ବପ୍ରଥମ ତଥା ବାସ୍ତବ ପ୍ରଶ୍ନ ହେଉଛି : ଭାରତର ବିଭିନ୍ନ ଅଂଶକୁ ପ୍ରୀତିସୂତ୍ରରେ ବାନ୍ଧି ରଖିବାପାଇଁ ଅତ୍ୟାବଶ୍ୟକ ତଥା ସର୍ବବ୍ୟାପକ ଉପାଦାନମାନ କ'ଣ ? କାରଣ ସେ ଦିଗରେ ହିଁ ସାମଗ୍ରିକ ଭାବରେ ତାର ପ୍ରଗତିର ପଥ ଓ ସ୍ୱାଧୀନତାର ନିରାପତ୍ତା ନିହିତ ଏବଂ ପ୍ରତ୍ୟେକ ଅଂଶର ସ୍ୱାୟତ୍ତଶାସନ ଓ ସାଂସ୍କୃତିକ ବିକାଶ ନିମନ୍ତେ ତାହା ସମାନ ଭାବରେ ଆବଶ୍ୟକ । ଦେଶ ପ୍ରତିରକ୍ଷା ବ୍ୟବସ୍ଥା ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ଏବଂ ତାର ପଛକୁ ଅନିବାର୍ଯ୍ୟ ଭାବରେ ଆବଶ୍ୟକ ପ୍ରତିରକ୍ଷା ସରଞ୍ଜାମ ପ୍ରସ୍ତୁତକାରୀ ବିବିଧ ଶିଳ୍ପ, ପରିବହନ ଓ ଯୋଗାଯୋଗ ବ୍ୟବସ୍ଥା ଆଉ ଅନ୍ତତଃପକ୍ଷେ କେତେକ ପରିମାଣରେ ଅର୍ଥନୈତିକ ଯୋଜନା । ତଦୁପରି ଆମଦାନୀ ଓ ରପ୍ତାନୀ ଶୁଳ୍କ, ମୁଦ୍ରା ଓ ମୁଦ୍ରାମୂଲ୍ୟ ବିନିମୟର ସମତା ଏବଂ ସମଗ୍ର ଭାରତକୁ ରାଷ୍ଟ୍ରୀୟ ସୀମା ଭିତରେ ଏକ ଅବାଧ ବାଣିଜ୍ୟ ଅଞ୍ଚଳ କରି ରଖିବା ପ୍ରତିରକ୍ଷା ବ୍ୟବସ୍ଥା ପାଇଁ କେବଳ ନୁହେଁ; କାରଣ ଆଭ୍ୟନ୍ତରୀଣ ଶୁଳ୍କ ପ୍ରତିବନ୍ଧକ ଆଂଶିକ ତଥା ସାମଗ୍ରିକ ବିକାଶ ପକ୍ଷରେ ମାରାତ୍ମକ ଅନ୍ତରାୟ ଭାବରେ ଉଭା ହେବ । ଅହୁରି ମଧ୍ୟ ସେପରି ବହୁତ କିଛି ବିଷୟ ଅଛି ଯାହା ଅଂଶବିଶେଷ ତଥା ସମଗ୍ର ଉପମହାଦେଶର ହିତ ଦୃଷ୍ଟିରୁ ମିଳିତ ଭାବରେ, ଏକ ବଳିଷ୍ଠ କେନ୍ଦ୍ର ତତ୍ତ୍ୱାବଧାନରେ ପରିଚାଳିତ ହେବା ଅନିବାର୍ଯ୍ୟ । ଆମେ ପାକିସ୍ତାନ ସପକ୍ଷରେ ରହୁ କି ବା ନରହୁ, ଏକ ସାମୟିକ ଭାବୋନ୍ମାଦନା ଅତିରିକ୍ତ, ସବୁ କିଛି ପ୍ରତି ଆମେ ଯଦି ଆଖି ବୁଜି ନଦେଉ, ତାହାହେଲେ ଉପର୍ଯ୍ୟୁକ୍ତ ସହଯୋଗମୂଳକ ବ୍ୟବସ୍ଥା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ଆକାଶପଥରେ ଚଳାଚଳ ଆଜି ଏତେ ଭଲ ବୃଦ୍ଧି ପାଇଲଣି ଯେ ତାର ଆନ୍ତର୍ଜାତୀୟକରଣ କିମ୍ବା କୌଣସି ଭାବରେ ହେଲେ ଆନ୍ତର୍ଜାତୀୟ ନିୟନ୍ତ୍ରଣ ନିମନ୍ତେ ଦାବୀ ଉଠିଲଣି । ବିଭିନ୍ନ ଦେଶ ବୁଦ୍ଧିମତ୍ତାର ପରିଚୟ ଦେଇ ଏ ପ୍ରକାର ନିୟନ୍ତ୍ରଣ ସ୍ୱୀକାର କରିବାପାଇଁ ପ୍ରସ୍ତୁତ କି ନା ସନ୍ଦେହଜନକ; କିନ୍ତୁ ଏକଥା ନିଶ୍ଚିତ ଯେ ଭାରତରେ ଆକାଶପଥରେ ଚଳାଚଳ ଏକ ସର୍ବଭାରତୀୟ ଭିତ୍ତି ଉପରେ ହିଁ ବ୍ୟବସ୍ଥିତ କରାଯାଇପାରେ । ବିଭକ୍ତ ଭାରତରେ, ପ୍ରତ୍ୟେକ ଅଂଶ ସ୍ୱତନ୍ତ୍ର ଭାବରେ, ଏ କ୍ଷେତ୍ରରେ ପ୍ରଗତି କରିବା ଧାରଣା କରାଯାଇ ନପାରେ । ସେପରି ବହୁତ କିଛି କର୍ମଜଞ୍ଜାଳ ଆହୁରି ଅଛି, ଯାହା ଜାତୀୟ ସୀମା ସରହଦ ଟପିଯିବାର ସୂଚନା ପ୍ରକାଶ ପାଇଲଣି, ସେଥି ପ୍ରତି ମଧ୍ୟ ଏହା ପ୍ରଯୁଜ୍ୟ । ଅଖଣ୍ଡ ଭାରତ ଏସବୁ ଦିଗରେ ବିକାଶ ନିମନ୍ତେ ପରିସର ଯୋଗାଇବା ପାଇଁ ସୁବିଶାଳ; କିନ୍ତୁ ବିଭାଜିତ ଭାରତରେ ତାହା ସମ୍ଭବ ନୁହେଁ ।

ଏପରି ଭାବରେ ଆମେ ଏକ ଅନିବାର୍ଯ୍ୟ ତଥା ଅବଶ୍ୟମ୍ଭାବୀ ନିଷ୍ପତ୍ତିରେ ଉପନୀତ ହେଉଁ ଯେ ପାକିସ୍ତାନ ସୃଷ୍ଟି ହେଉ କି ନହେଉ, ରାଷ୍ଟ୍ରର କେତେକ ଗୁରୁତ୍ୱପୂର୍ଣ୍ଣ ତଥା ମୌଳିକ କୃତ୍ୟ ଏକ ସର୍ବଭାରତୀୟ ଭିତ୍ତି ଉପରେ କରିବାକୁ ପଡ଼ିବ, ଯଦି ଭାରତ ଏକ ସ୍ୱାଧୀନ ରାଷ୍ଟ୍ର ଭାବରେ ତିଷ୍ଠି ରହି ପ୍ରଗତି କରିବାକୁ ଚାହେଁ । ଏହାର ବିକଳ୍ପ ବ୍ୟବସ୍ଥାର ପରିଣାମ ହେଉଚି ସମଗ୍ର ଭାରତ ଓ ତାର ବିଭିନ୍ନ ସ୍ୱତନ୍ତ୍ର ଅଂଶ ନିମନ୍ତେ ସ୍ଥାଣୁତ୍ୱ, ଅବନତି ଓ ବିଚ୍ଛିନ୍ନତା ଯାହା ରାଜନୈତିକ ଓ ଅର୍ଥନୈତିକ ସ୍ୱାଧୀନତା ନଷ୍ଟହେବା ଦିଗକୁ ବାଟ କଢ଼ାଇନେବ । ଜଣେ ପ୍ରଖ୍ୟାତ ପ୍ରାମାଣିକଙ୍କ ମତରେ : "ଯୁଗର ଅନମନୀୟ ଯୁକ୍ତି ଦେଶ ସମକ୍ଷରେ ମୌଳିକ ଭାବରେ ଭିନ୍ନ ଦୁଇଟି ବିକଳ୍ପ ବ୍ୟବସ୍ଥା ଉପସ୍ଥାପିତ କରେ । ତାହା ହେଉଚି ସଂଯୁକ୍ତ ଭାରତ ଓ ସ୍ୱାଧୀନତା ନା ବିଭକ୍ତ ଭାରତ ଓ ପରାଧୀନତା ।" ଯୁକ୍ତରାଷ୍ଟ୍ର କି ଭାବରେ ଗଠିତ ହେବ ଏବଂ ତାହା ଯୁକ୍ତରାଷ୍ଟ୍ର ନାମରେ କି ଅନ୍ୟ କୌଣସି ନାମରେ ଅଭିହିତ ହେବ ସେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ; ପ୍ରତ୍ୟେକ ନାମରେ ଯଦିଓ ତାର ତାତ୍ପର୍ଯ୍ୟ ଓ ମନସ୍ତାତ୍ତ୍ୱିକ ମୂଲ୍ୟ ନିହିତ ଥାଏ । ସାର କଥା ହେଉଚି ଯେ କେତେକ କୃତ୍ୟ ଗୋଟାଏ ମିଳିତ ସର୍ବଭାରତୀୟ ଭିତ୍ତି ଉପରେ କେବଳ ଫଳପ୍ରଦ ଭାବରେ କରାଯାଇ ପାରିବ । ଏହି ସବୁ କୃତ୍ୟ ଭିତରୁ ବହୁତ କିଛି ଅଳ୍ପ ଦିନରେ ହୁଏତ ଆନ୍ତର୍ଜାତିକ ସଂସ୍ଥାମାନଙ୍କଦ୍ୱାରା ପରିଚାଳିତ ହେବ । ବିଶ୍ୱ ସଙ୍କୁଚିତ ହୋଇ ଆସୁଚି ଏବଂ ତାର ନାନାବିଧ ସମସ୍ୟା କୌଣସି ଏକ ନିର୍ଦ୍ଦିଷ୍ଟ ରାଜନୈତିକ ସୀମା ସରହଦ ମଧ୍ୟରେ ଆବଦ୍ଧ ନୁହେଁ । ପୃଥିବୀର ଗୋଟାଏ ପ୍ରାନ୍ତରୁ ଅନ୍ୟ ଏକ ପ୍ରାନ୍ତରେ ପହଞ୍ଚିବା ପାଇଁ ଆକାଶପଥରେ ଆଜି ତିନି ଦିନରୁ କିଛି କମ ସମୟ ଲାଗୁଚି ଏବଂ କାଲି ହୁଏତ ବାୟୁମଣ୍ଡଳ ଊର୍ଦ୍ଧ୍ୱରେ ଯାତ୍ରାକରିବା ସମ୍ଭବ ହେଲେ ପୃଥିବୀ ପରିକ୍ରମା କରିବା ନିମନ୍ତେ ଆହୁରି କମ୍ ସମୟ ଲାଗିପାରେ । ଆକାଶପଥ ଯାତ୍ରା ଦିଗରେ ଭାରତ ବିଶ୍ୱର ଏକ ମହାନ୍ କେନ୍ଦ୍ର ହେବା ନିତାନ୍ତ ବାଞ୍ଛନୀୟ । ଗୋଟାଏ ଦିଗରେ ପଶ୍ଚିମ-ଏସିଆ ଓ ୟୁରୋପ ସଙ୍ଗେ ଏବଂ ଅନ୍ୟ ଦିଗରେ ବ୍ରହ୍ମଦେଶ ଓ ଚୀନ ସଙ୍ଗେ ରେଳପଥଦ୍ୱାରା ଭାରତ ସଂଯୁକ୍ତ ହେବ । ଭାରତଠାରୁ ଅନତିଦୂରରେ, ଉତ୍ତର ଦିଗରେ ହିମାଳୟ ସେପାରି, ଅନ୍ୟତମ ସମୁନ୍ନତ ଶିଳ୍ପାଞ୍ଚଳବିଶିଷ୍ଟ ସୋଭିଏଟ୍ ରୁଷିଆ ଅବସ୍ଥିତ; ଯାହାର ଶିଳ୍ପୋନ୍ନତିର ଭବିଷ୍ୟତ ଅତି ଉଜ୍ଜ୍ୱଳ । ଏହାର ପ୍ରଭାବ ଭାରତ ଉପରେ ଅବଶ୍ୟ ପଡ଼ିବ ଏବଂ ନାନା ଭାବରେ ଭାରତର ପ୍ରତିକ୍ରିୟା ପ୍ରକାଶ ପାଇବ ।

ଅତଏବ, ଅଖଣ୍ଡ ଭାରତ କିମ୍ବା ବିଭକ୍ତ ଭାରତ ପ୍ରତି ଆଭିମୁଖ୍ୟ କୌଣସି ବିମୂର୍ତ୍ତି ତଥା ଭାବାବେଗ-ପ୍ରଣୋଦିତ ବିଚାର ମଧ୍ୟରେ ନିହିତ ନୁହେଁ । ବସ୍ତୁତଃ, ତାହା ନିହିତ ଆଜିର ବିଶ୍ୱ ପ୍ରତି ଆମର ଦୃଷ୍ଟିରେ । ସେହି ଆଭିମୁଖ୍ୟ ଆମକୁ କେତେକ ନିର୍ଦ୍ଦିଷ୍ଟ ନିଷ୍ପତ୍ତିରେ ଉପନୀତ କରାଏ । ତାହା ହେଉଚି, ସମଗ୍ର ଭାରତ ନିମନ୍ତେ କେତେକ ଗୁରୁତ୍ୱପୂର୍ଣ୍ଣ କୃତ୍ୟ ଓ ବିଷୟର ସଂସକ୍ତ ନିତାନ୍ତ ଆବଶ୍ୟକ । ସେସବୁ ବ୍ୟତୀତ ଅନ୍ୟାନ୍ୟ ବିଷୟରେ ବିଭିନ୍ନ ଅଂଶ ବା ଏକକମାନଙ୍କ ନିମନ୍ତେ ସମ୍ପୂର୍ଣ୍ଣ ସ୍ୱାଧୀନତା ରହିବ ଏବଂ ଏପରି ଏକ ମଧ୍ୟବର୍ତ୍ତୀ କ୍ଷେତ୍ର ରହିବ, ଯେଉଁଠି ପ୍ରତ୍ୟେକେ ସ୍ୱତନ୍ତ୍ର ଭାବରେ ଓ ସମ୍ମିଳିତ ଭାବରେ କାର୍ଯ୍ୟ କରିବାର

ସୁଯୋଗ ପାଇବେ । ଗୋଟାଏ କ୍ଷେତ୍ରର ଶେଷ କେଉଁଠି ଓ ଅପରଟିର ଆରମ୍ଭ କେଉଁଠି—ଏ ବିଷୟରେ ମତପାର୍ଥକ୍ୟ ଘଟିପାରେ; କିନ୍ତୁ ଏ ପ୍ରକାର ଯେତେସବୁ ମତାନୈକ୍ୟ ଗୋଟାଏ ବାସ୍ତବ ଭିତ୍ତି ଉପରୁ ବିବେଚନା କଲେ ସାଧାରଣତଃ ସହଜରେ ଦୂର ହୋଇଥାଏ ।

ତେବେ ଏବଂବିଧ ସ୍ୱେଚ୍ଛାପ୍ରଣୋଦିତ ସହଯୋଗ ବାଧ୍ୟତାବୋଧହୀନତା ଓ 'ପ୍ରତ୍ୟେକ ଏକକ ଓ ବ୍ୟକ୍ତିବିଶେଷର ସ୍ୱାଧୀନତା-ସମ୍ବେଦନ ଉପରେ ଭିତ୍ତି କରିବା ଗୃହ । ପୁରାତନ ଯେତେସବୁ ନ୍ୟସ୍ତସ୍ୱାର୍ଥ ଲୋପକରିବା କେବଳ ନୁହେଁ, ବରଂ ନବ ନବ ନ୍ୟସ୍ତସ୍ୱାର୍ଥ ଯେଭଳି ସୃଷ୍ଟି ନହୁଏ, ସେଥିପ୍ରତି ସଜାଗ ରହିବା ମଧ୍ୟ ସମାନ ଗୁରୁତ୍ୱପୂର୍ଣ୍ଣ । ବିଭିନ୍ନ ଗୋଷ୍ଠୀର ନାନା ଆଧିବିଦ୍ୟକ ଅବଧାରଣା ଉପରେ ପ୍ରତିଷ୍ଠିତ କେତେକ ପ୍ରସ୍ତାବ, ଯେଉଁଥିରେ ଗୋଷ୍ଠୀର ବ୍ୟକ୍ତି ଏକ ବିସ୍ତୃତ ମଣିଷ କେବଳ, ରାଜନୀତି ଦୃଷ୍ଟିରୁ ଜଣେ ବ୍ୟକ୍ତିକୁ ଅପର ଦୁଇ ଅବା ତତୋଽଧିକ ବ୍ୟକ୍ତି ସଙ୍ଗେ ସମାନ କରିବା ଫଳରେ ନୂତନ ନ୍ୟସ୍ତସ୍ୱାର୍ଥ ସୃଷ୍ଟି ହୁଏ । ଏ ପ୍ରକାର ଯେ କେଉଁ ବ୍ୟବସ୍ଥା ଗୁରୁ ଅସନ୍ତୋଷ ଓ ଅନିଶ୍ଚୟତାରେ ହିଁ ପର୍ଯ୍ୟବସିତ ହେବ ।

ଭାରତୀୟ ମହାସଂଘ ବା ଭାରତୀୟ ଯୁକ୍ତରାଷ୍ଟ୍ରରୁ ବିଧିମତ ସଙ୍ଗଠିତ ଯେ ଯେଉଁ ଅଞ୍ଚଳ ନିମନ୍ତେ ଅଲଗା ହେବାର ଅଧିକାର ରହୁ ବୋଲି ବହୁଧା ପ୍ରସ୍ତାବ କରାଯାଉଚି ଏବଂ ତାର ସମର୍ଥନରେ ସୋଭିଏଟ୍ ୟୁନିଅନ୍‌ର ଦୃଷ୍ଟାନ୍ତ ଦିଆଯାଉଚି; କିନ୍ତୁ ତାହା ଏଠାରେ ପ୍ରଯୁଜ୍ୟ ନୁହେଁ; କାରଣ ସେଠାର ଅବସ୍ଥା ଆମଠାରୁ ସମ୍ପୂର୍ଣ୍ଣ ଭିନ୍ନ ଏବଂ ଯେଉଁ ଅଧିକାର କଥା କୁହାଯାଉଚି ବସ୍ତୁତଃ ତା'ର କିଛି ମୂଲ୍ୟ ନାହିଁ । ଭାରତରେ ଆଜି ଭାବୋଚ୍ଛ୍ୱାସର ଯେଉଁ ବାତାବରଣ ରହିଚି ଭବିଷ୍ୟତରେ କାର୍ଯ୍ୟକାରୀ କରିବା ନିମନ୍ତେ ଏପରି ପ୍ରସ୍ତାବକୁ ମାନିନେବା ହୁଏତ ବାଞ୍ଛନୀୟ; କାରଣ ଆମେ ଯେ କାହାକୁ କୌଣସି ବିଷୟରେ ବାଧ୍ୟ କରିବାକୁ ଯାଉନୁ, ଏକଥା ସମସ୍ତଙ୍କର ହୃଦ୍‌ବୋଧ ହେବା ଅତୀବ ଆବଶ୍ୟକ । ବସ୍ତୁତଃ, କଂଗ୍ରେସ ଏ ବିଷୟରେ ରାଜି ହେଇଯାଇଚି; କିନ୍ତୁ ସେହି ଅଧିକାର ଖଟାଇବାରେ ସେହି ସବୁ ସାଧାରଣ ସମସ୍ୟା-ଗୁଡ଼ିକର ବିବେଚନା ପୂର୍ବରୁ କରି ରଖିବା ଉଚିତ, ଯେଉଁ ବିଷୟରେ ମୁଁ ଆଗରୁ ଉଲ୍ଲେଖ କରିଚି । ଆରମ୍ଭରୁ ଦେଶର ବିଭାଜନ ସମ୍ଭାବନା ଘେନି ବିବେଚନା କରିବା ଗୁରୁତର ବିପଦ ମଧ୍ୟ ରହିଚି; କାରଣ ଏପରି ଉଦ୍ୟମ ସ୍ୱାଧୀନତା ଏବଂ ଗୋଟାଏ ସ୍ୱାଧୀନ ଜାତୀୟ ରାଷ୍ଟ୍ର ଗଠନ ବାଟରେ ଅଯଥା ନାନା ବାଧା-ପ୍ରତିବନ୍ଧକ ମୂଳରୁ ସୃଷ୍ଟି କରି ବସିବ । ବହୁତ କିଛି ଅନତିକ୍ରମ୍ୟ ସମସ୍ୟା ମୁଣ୍ଡ ଟେକି ଉଠିବ ଏବଂ ପ୍ରକୃତ ସମସ୍ୟାଗୁଡ଼ିକୁ ନାନା ଭାବରେ ଜଟିଳ କରି ତୋଳିବ । ବିଚ୍ଛିନ୍ନତାର ଅଶୁଭ କାମନା ଦେଶର ବାୟୁମଣ୍ଡଳରେ ଘୋଟିଯିବ ଏବଂ ସବୁ ପ୍ରକାର ଗୋଷ୍ଠୀ ଓ ସମ୍ପ୍ରଦାୟ ଯେଉଁମାନେ ଗୋଟାଏ ମିଳିତ ତଥା ଏକତାବଦ୍ଧ ଅସ୍ତିତ୍ୱ ନିମନ୍ତେ ସମ୍ମତ ଅଛନ୍ତି, ପ୍ରତ୍ୟେକେ ନିଜ ନିଜ ପାଇଁ ସ୍ୱତନ୍ତ୍ର ରାଜ୍ୟ ଦାବି କରି ବସିବେ କିମ୍ବା ସେପରି ବିଶେଷ ସ୍ୱାଧିକାରମାନ ଘେନି ଅଡ଼ି ବସିବେ, ଯାହା ଅନ୍ୟମାନଙ୍କର ନ୍ୟାଯ୍ୟ ଅଧିକାରକୁ ବଳପୂର୍ବକ ବାତିଲ୍ କରିବ । ଭାରତୀୟ ଦେଶୀୟ ରାଜ୍ୟ ସମସ୍ୟା ଏତେ ଭାବରେ ଜଟିଳ ହେଇଉଠିବ ଯେ ତାର ସମାଧାନ ପାଇବା କଷ୍ଟକର ହେଇପଡ଼ିବ ଏବଂ

ଆଜିର ବ୍ୟାଧିଗ୍ରସ୍ତ ଦେଶୀୟ ରାଜ୍ୟ ବ୍ୟବସ୍ଥା ଅଯଥା ନୂତନ ଭାବରେ ଆୟୁଷ୍ମାନ୍ ହୋଇ ଉଠିବ। ସାମାଜିକ ଓ ଅର୍ଥନୈତିକ ସମସ୍ୟାମାନ ସମାଧାନ କରିବା ଅପେକ୍ଷାକୃତ କଷ୍ଟକର ହେବ। ଏପରି ଏକ ବିଶୃଙ୍ଖଳା ଭିତରୁ ଗୋଟାଏ ସ୍ୱାଧୀନରାଷ୍ଟ୍ର ଗଢ଼ି ଉଠିବା ଧାରଣା କରିବା ପ୍ରକୃତପକ୍ଷେ କଷ୍ଟକର। ଯଦିବା କିଛି ଏଥିରୁ ଗଢ଼ିହୁଏ, ତାହା ହେବ ସ୍ୱାଧୀନତାର ଓ ସ୍ୱାଧୀନ ରାଷ୍ଟ୍ରର ଏକ ଦୟନୀୟ ବ୍ୟଙ୍ଗଚିତ୍ର କେବଳ; ଯେଉଁଥିରେ ଦେଖିବାକୁ ମିଳିବ କିଛି ବିରୋଧାଭାସ ଓ ମୀମାଂସାରହିତ ନାନା ସମସ୍ୟା।

ବିଚ୍ଛିନ୍ନ ହେବାର ଏପରି କିଛି ଅଧିକାର ଖଟିବା ପୂର୍ବରୁ ଆବଶ୍ୟକ ବିଧିମତ ଗଠିତ, କ୍ରିୟାଶୀଳ ତଥା ମୁକ୍ତ ଏକ ଭାରତର ଅସ୍ତିତ୍ୱ। ସେତେବେଳେ କେବଳ, ଯେବେ ବାହ୍ୟ ପ୍ରଭାବ ଅପସାରିତ ହୋଇସାରିଥିବ ଏବଂ ଦେଶର ଯାହା କିଛି ପ୍ରକୃତ ସମସ୍ୟା ସ୍ପଷ୍ଟ ଜଣାଯାଉଥିବ, ଏ ପ୍ରକାର ବିବିଧ ପ୍ରଶ୍ନର ବାସ୍ତବ ବିବେଚନା, ଅପେକ୍ଷାକୃତ ଅନାସକ୍ତ ଭାବରେ କରିବା ସମ୍ଭବପର। ଆଜି ଦେଶରେ ଭାବପ୍ରବଣତାର ଯେଉଁ ଉତ୍ତେଜକ ବାତାବରଣ ରହିଛି, ସେଥିରେ ବିଚ୍ଛିନ୍ନତାର ପ୍ରଶ୍ନ ଉତ୍ଥାପନ କଲେ ଯେଉଁ ଦୁର୍ଭାଗ୍ୟଜନକ ପରିସ୍ଥିତି ଉପୁଜିବ, ସେଥିଲାଗି ପରେ ଆମ ସମସ୍ତଙ୍କୁ ଅନୁଶୋଚନା ଭୋଗିବାକୁ ପଡ଼ିବ। ଅତଏବ ଗୋଟାଏ କିଛି ନିର୍ଦ୍ଦିଷ୍ଟ ସମୟ ସୀମା ଧାର୍ଯ୍ୟ କରିଦେବା ବାଞ୍ଛନୀୟ। ଉଦାହରଣ ସ୍ୱରୂପ, ସ୍ୱାଧୀନ ଭାରତୀୟ ରାଷ୍ଟ୍ର ପ୍ରତିଷ୍ଠିତ ହେବାର ଦଶବର୍ଷ ପରେ, ବିହିତ ସାମ୍ବିଧାନିକ ପ୍ରକ୍ରିୟାରେ ଏବଂ ସମ୍ପୃକ୍ତ ଅଞ୍ଚଳର ଅଧିବାସୀଙ୍କ ସ୍ପଷ୍ଟଭାବରେ ବ୍ୟକ୍ତ ଇଚ୍ଛା ଅନୁସାରେ ଅଲଗା ହେବାର ଅଧିକାର ଖଟାଯାଇପାରେ।

ଭାରତର ସାମ୍ପ୍ରତିକ ଅବସ୍ଥା ନେଇ ଆମମାନଙ୍କ ଭିତରୁ ଅନେକେ ବିବ୍ରତ ଓ ବିରକ୍ତ ହୋଇପଡ଼ିଲେଣି। ସେଥି ହେତୁରୁ କିଛି ଗୋଟାଏ ପନ୍ଥା ବାହାର କରିବାପାଇଁ ସମସ୍ତେ ଅଧୀର ଓ ଉତ୍କଣ୍ଠିତ। ଭାସିଯାଉଥିବା ଲୋକ କୁଟା ଖଣ୍ଡିକୁ ହାତ ବଢ଼ାଇଲା ଭଳି ଶ୍ୱାସରୁଦ୍ଧକର ତଥା ନିର୍ଯ୍ୟାତକ ଏହି ଶାସନତନ୍ତ୍ରର କବଳରୁ ମୁକ୍ତି ଲାଭକରି ଦୀର୍ଘକାଳ ପରେ, ସାମୟିକ ଭାବରେ ପଛେ ହେଉ, ସହଜରେ ନିଃଶ୍ୱାସ ନେଇ ଦେହ ଓ ମନର ଯନ୍ତ୍ରଣା କିଛିଟା ପରିମାଣରେ ଲାଘବ କରିବା ଉଦ୍ଦେଶ୍ୟରେ, ଆଶାର ସ୍ପଷ୍ଟ ଚିହ୍ନ ଆଖି ଆଗରେ ନଥିଲେ ମଧ୍ୟ, ଯାହା କିଛି ହାତ କତିରେ ପଡ଼ିଲେ, ଅବଲମ୍ବି ଧରିନେବା ପାଇଁ କେହି କେହି ପ୍ରସ୍ତୁତ ଅଛନ୍ତି। ଏପରି ହେବା ସ୍ୱାଭାବିକ। ତଥାପି କୋଟି କୋଟି ଲୋକଙ୍କ କଲ୍ୟାଣ ସଙ୍ଗେ ଏବଂ ବିଶ୍ୱର ଶାନ୍ତି ସଙ୍ଗେ ସମ୍ବନ୍ଧିତ ଅତି ଗୁରୁତ୍ୱପୂର୍ଣ୍ଣ ସମସ୍ୟାମାନଙ୍କ ପ୍ରତି ଏ ପ୍ରକାର ବିକାରଗ୍ରସ୍ତ ତଥା ଦୁଃସାହସିକ ଅଭିମୁଖ୍ୟରେ ନିଶ୍ଚିତ ବିପଦ ନିହିତ ଅଛି। ଭାରତରେ ଆମେ ସର୍ବଦା ଦୁର୍ଭାଗ୍ୟର ଖାର ଦେଶରେ ରହିଥାଉ ଏବଂ ପ୍ରକୃତପକ୍ଷେ ସେହି ଦୁର୍ଭାଗ୍ୟ ଆମକୁ କେବେ କେବେ ବିହ୍ୱଳ ବି କରିପକାଏ। ସେପରି ଏକ ଅବସ୍ଥା ଆମେ ପ୍ରତ୍ୟକ୍ଷ ଭାବରେ ଅନୁଭବ କଲେ ଗତ ବର୍ଷ ବଙ୍ଗ ପ୍ରଦେଶରେ ଓ ଭାରତର ଅନ୍ୟାନ୍ୟ ସ୍ଥାନରେ। ବଙ୍ଗରେ ଦୁର୍ଭିକ୍ଷ କାଳରେ ଏବଂ ପରେ ପରେ ଲୋକେ ଯେଉଁ ଦୁର୍ଦ୍ଦଶା ଭୋଗିଲେ, ତାହାକୁ ଗୋଟାଏ ଦୁଃଖଦାୟକ ବ୍ୟତିକ୍ରମ ବୋଲି ଉଡ଼ାଇ ଦିଆଯାଇ ନପାରେ;

କାରଣ ଦୁର୍ଭିକ୍ଷ ପଡ଼ିବା ପୂର୍ବରୁ ସେପରି କିଛି ଅସାଧାରଣ ତଥା ଦୀର୍ଘକାଳ ଅବଧି ଅଜ୍ଞାତ ଅବସ୍ଥା ନଥିଲା, ଯାହା ନିୟନ୍ତ୍ରଣ ମାନି ନଥାନ୍ତା କିମ୍ବା ଦୁର୍ଭିକ୍ଷ ଏଡ଼ିବାପାଇଁ କିଛି କରାଯାଇ ପାରିନଥାନ୍ତା । ପୁରୁଷାନୁକ୍ରମିକ ଭାବରେ ଜୀବନ କ୍ଷୟକାରୀ ଗୋଟାଏ ଦୁରାରୋଗ୍ୟ ବ୍ୟାଧିରେ ପୀଡ଼ିତ, ତାହା ଥିଲା ଭାରତର ଗୀତପ୍ରଦ ତଥା ଦୁଃସହ ଚିତ୍ର । ଆମର ସମସ୍ତ ମିଳିତଶକ୍ତି ପ୍ରୟୋଗ କରି ନିରାମୟ କରିବାର ପ୍ରଚେଷ୍ଟା ନ ହେଲେ ସେହି ବ୍ୟାଧି ଆହୁରି ଅଧିକ ବିପଜ୍ଜନକ ତଥା ଦୁର୍ଭାଗ୍ୟଜନକ ନାନା ଉପସର୍ଗ ପ୍ରକଟ କରିବ । ଗୋଟାଏ ବିଭକ୍ତ ଭାରତରେ ଯେଉଁଠି ପାରସ୍ପରିକ ସହଯୋଗ ପ୍ରତି ଭ୍ରୂକ୍ଷେପ ନକରି ପ୍ରତ୍ୟେକ ଅଂଶ ନିଜେ ନିଜକୁ ସାହାଯ୍ୟ କରିବା ଉଦ୍ୟମରେ ରହିବେ, ପୁରୁଷାନୁକ୍ରମିକ ଏହି ବ୍ୟାଧି ଉଗ୍ରତର ହୋଇ ଉଠିବ ଏବଂ ଭାରତ, ସାହାଯ୍ୟହୀନ ଓ ଆଶାହୀନ, ଦୁର୍ବିପାକର ବିଶୃଙ୍ଖଳା ଭିତରେ ହଜିଯିବ । ଯାହା ହେବାର ତ ହେଲିଣି, ଏଣିକି ମଧ୍ୟ ଆମେ ସଜାଗ ନହେଲେ ଚଳିବ କିମିତି ? ବଙ୍ଗଳାର ଦୁର୍ଭିକ୍ଷରୁ ଆମର ଶିକ୍ଷା କରିବାର କିଛି କ'ଣ ନାହିଁ ? ଆଜି ବି ସେପରି ବହୁତ ଲୋକ ଅଛନ୍ତି, ଯେଉଁମାନେ ରାଜନୈତିକ ଶକ୍ତିକରା, ଗୋଷ୍ଠୀ ଗୋଷ୍ଠୀ ଭିତରେ ଗୁରୁ-ଲଘୁ, ସମତୁଳନ ଓ ନିୟନ୍ତ୍ରଣ, ସ୍ୱାଧିକାରଭୋଗୀ ଗୋଷ୍ଠୀମାନଙ୍କ ସଂରକ୍ଷଣ, ନବ ନବ ଗୋଷ୍ଠୀମାନଙ୍କୁ ସ୍ୱାଧିକାର ପ୍ରଦାନ, ନିଜେ ଯେହେତୁ ଅଗ୍ରଗତି କରିବା ଲାଗି ଆଗ୍ରହହୀନ କିମ୍ବା ଅକ୍ଷମ ଅନ୍ୟମାନଙ୍କର ଅଗ୍ରଗତି ନିବାରଣ, ନ୍ୟସ୍ତସ୍ୱାର୍ଥ, ଗୁରୁତ୍ୱପୂର୍ଣ୍ଣ ସାମାଜିକ ତଥା ଅର୍ଥନୈତିକ ପରିବର୍ତ୍ତନର ପାର୍ଶ୍ୱ କଟିଯିବା, ତୁଚ୍ଛ କେତେକ ଅଦଳବଦଳ କରି ଆଜିର ଭାରତକୁ ଏପରି ଭାବରେ ହିଁ ବଜାୟ ରଖିବା ବିଷୟ ନେଇ କେବଳ ଚିନ୍ତା କରିପାରନ୍ତି । ଏ ବାଟ ଅଗ୍ରଗତିର ନୁହେଁ; କେବଳ ଦୁର୍ଗତିର ।

ଏ ମୁହୂର୍ତ୍ତର ବିବିଧ ସମସ୍ୟା ଯେହେତୁ ବଡ଼ ଜଣାଯାଉଛି, ଆମର ସମଗ୍ର ଦୃଷ୍ଟି ସେଥିପ୍ରତି କେବଳ ରହୁଛି । ତଥାପି, ଗୋଟାଏ ଦୀର୍ଘତର ପରିପ୍ରେକ୍ଷୀରୁ ଦେଖିଲେ, ତାର ହୁଏତ କୌଣସି ଗୁରୁତ୍ୱ ବା ମହତ୍ତ୍ୱ ନଥିବ ଏବଂ ତୁଚ୍ଛ ଘଟଣାପ୍ରବାହର ଆସ୍ତରଣ ତଳେ ଅଧିକତର ଗୁରୁତ୍ୱପୂର୍ଣ୍ଣ ନାନା ଶକ୍ତି ହୁଏତ କାର୍ଯ୍ୟ କରୁଥିବ । ସାମ୍ପ୍ରତିକ ସମସ୍ୟାମାନ କିଛି ସମୟ ପାଇଁ ଭୁଲିଯାଇ ଆମେ ଯଦି ଆଗକୁ ଦେଖିବା, ତାହାହେଲେ ଆମ ଦୃଷ୍ଟି ସମକ୍ଷରେ ଉଭା ହେଉଛି ପଡ଼ୋଶୀମାନଙ୍କ ସଙ୍ଗେ ଘନିଷ୍ଠ ଭାବରେ ସମ୍ବନ୍ଧିତ, ବିଶ୍ୱବ୍ୟାପାରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ, ଏକାଧିକ ସ୍ୱାଧୀନ ରାଜ୍ୟର ଏକ ମହାସଙ୍ଘ, ଏକ ବଳବନ୍ତ ଯୁକ୍ତରାଷ୍ଟ୍ର —ଭାରତ । ନିଜ ଗୋଡ଼ରେ ଠିଆହେବାପାଇଁ ବିଶ୍ୱରେ ଯେଉଁ କେତୋଟି ରାଷ୍ଟ୍ରର ସମ୍ବଳ ଓ ସାମର୍ଥ୍ୟ ଅଛି, ଭାରତ ସେମାନଙ୍କ ଭିତରେ ଅନ୍ୟତମ । ଆଜି ଦେଖିବାକୁ ଗଲେ ସେଭଳି ଦୁଇଟି ଦେଶ କେବଳ ଆମ ସଙ୍ଗେ ତୁଳନୀୟ ହୋଇପାରନ୍ତି । ଗୋଟିଏ ହେଉଛି ଯୁକ୍ତରାଷ୍ଟ୍ର ଆମେରିକା ଓ ଅନ୍ୟଟି ସୋଭିଏତ୍ ୟୁନିଅନ୍ । ନିଜର ସମ୍ବଳ ସଙ୍ଗେ ସାମ୍ରାଜ୍ୟର ସମ୍ବଳ ମିଳିତ ହେଲେ କେବଳ ଇଂଲଣ୍ଡ ଏ ହିସାବକୁ ଆସିପାରିବ । ତଥାପି ଏକ ସୁବିସ୍ତୃତ ତଥା ଅସନ୍ତୁଷ୍ଟ ସାମ୍ରାଜ୍ୟ ଦୁର୍ବଳତା ହିଁ ସୃଷ୍ଟି କରିଥାଏ । ଚୀନ ଓ ଭାରତ ଉଜ୍ଜ୍ୱଳ ସମ୍ଭାବନାରେ ପୂର୍ଣ୍ଣ ଏବଂ ଆମେରିକା ଓ ସୋଭିଏତ୍ ୟୁନିଅନ୍ ସଙ୍ଗେ ପାଦ ମିଳାଇବା

ପାଇଁ ସମର୍ଥ । ଭାରତ ଓ ଚୀନ ଉଭୟ ଦେଶ ଭୌଗୋଳିକ ଦୃଷ୍ଟିରୁ ସୁଗଠିତ ଓ ସମ-ପ୍ରାକୃତିକ ଏବଂ ପ୍ରାକୃତିକ ସମ୍ପଦ, ଜନବଳ, କାରିଗରି ଦକ୍ଷତା ଓ ସାମର୍ଥ୍ୟରେ ପରିପୂର୍ଣ୍ଣ । ପ୍ରକୃତପକ୍ଷେ, ଭାରତର ପ୍ରଚ୍ଛନ୍ନ ଶିଳ୍ପ-ସମ୍ବଳ ଚୀନ ଅପେକ୍ଷା ଆହୁରି ବିପୁଳ ଓ ବହୁବିଧ । ସେପରି ମଧ୍ୟ ତାର ରପ୍ତାନିଯୋଗ୍ୟ ପଣ୍ୟ ଯାହାର ବିନିମୟରେ ସେ ତାର ଆବଶ୍ୟକୀୟ ନାନାଦ୍ରବ୍ୟ ଆମଦାନି କରିପାରିବ । ଗୋଟିଏ ଗୋଟିଏ କରି ବିଚାରକୁ ନେଲେ, ଏହି ଦୁଇଟି ଦେଶ ବ୍ୟତୀତ ଅନ୍ୟ କୌଣସି ଦେଶ ପ୍ରକୃତରେ କିମ୍ବା ପ୍ରଚ୍ଛନ୍ନ ଶକ୍ତି ସହକାରେ ଏପରି ସ୍ଥିତିରେ ନାହିଁ । ଏପରି ବି ହୋଇପାରେ ଯେ ଭବିଷ୍ୟତରେ ୟୁରୋପରେ କିମ୍ବା ଅନ୍ୟତ୍ର ଏକାଧିକ ଜାତିଗୋଷ୍ଠୀ କିମ୍ବା ବିଶାଳ ମହାସଙ୍ଘମାନ ଗଢ଼ି ଉଠିବ ଏବଂ ଅଧିକାଂଶ ବହୁଜାତିକ ରାଷ୍ଟ୍ରମାନଙ୍କରେ ପରିଣତ ହେବ ।

ଭବିଷ୍ୟତରେ ବିଶ୍ୱର ସ୍ନାୟୁକେନ୍ଦ୍ର ଭାବରେ ପ୍ରଶାନ୍ତ ମହାସାଗର, ଆଟଲାଣ୍ଟିକ୍ ମହାସାଗର ସ୍ଥାନ ଗ୍ରହଣ କରିବାର ସମ୍ଭାବନା ବେଶି । ଭାରତ ପ୍ରଶାନ୍ତ ମହାସାଗର ତୀରବର୍ତ୍ତୀ ରାଜ୍ୟ ନହେଲେ ହେଁ ତା'ର ପ୍ରଭାବ ସେଥି ଉପରେ ପଡ଼ିବା ଅନିବାର୍ଯ୍ୟ । ଭାରତୀୟ ମହାସାଗର ଅଞ୍ଚଳ, ଦକ୍ଷିଣ-ପୂର୍ବ ଏସିଆ ଓ ମଧ୍ୟ-ପ୍ରାଚ୍ୟ ଯାବତ ଅର୍ଥନୈତିକ ଓ ରାଜନୈତିକ କ୍ରିୟାକଳାପର କେନ୍ଦ୍ର ଭାବରେ ମଧ୍ୟ ଭାରତ ଗଢ଼ି ଉଠିବ । ବିଶ୍ୱର ଏକ ଅଂଶ ଯାହା ଭବିଷ୍ୟତରେ ଦ୍ରୁତ ବିକାଶ କରିବ, ସେହି ଅଂଶରେ ଭାରତର ଭୌଗୋଳିକ ଅବସ୍ଥିତି ତାକୁ ଅର୍ଥନୈତିକ ତଥା ସାମରିକ ଗୁରୁତ୍ୱ ଅର୍ପଣ କରିଚି । ଭାରତର ଉଭୟ ପାର୍ଶ୍ୱରେ ଭାରତୀୟ ମହାସାଗର ତୀରବର୍ତ୍ତୀ ଦେଶମାନଙ୍କ ଭିତରେ ଆଞ୍ଚଳିକ ଗୋଷ୍ଠୀ ଗଠନ ଯଦି ସମ୍ଭବ ହୁଏ ଅର୍ଥାତ୍ ଇରାନ୍, ଇରାକ, ଆଫଗାନିସ୍ଥାନ, ଭାରତ, ସିଂହଳ, ବର୍ମା, ମାଳୟ, ଶ୍ୟାମ ଓ ଜାଭା ଇତ୍ୟାଦି ଦେଶମାନେ ଯଦି ଏକତ୍ର ହୁଅନ୍ତି, ଆଜିର ଏ ସଂଖ୍ୟାଲଘୁ ସମସ୍ୟା କାହିଁ ଉଭାଇଯିବ । ଅନ୍ତତଃ ଏତିକି ହେବ ଯେ ଏ ସମସ୍ୟା ସମ୍ପୂର୍ଣ୍ଣ ଭିନ୍ନ ଏକ ପ୍ରକରଣରେ ବିବେଚିତ ହେବ ।

ଶ୍ରୀ କି. ଡି. ଏଇଚ୍. କୋଲ୍ ଭାରତକୁ ଏକ ଜାତୀୟତର ଭୂଖଣ୍ଡ ମନେକରନ୍ତି ଏବଂ ପରିଶେଷରେ ଏହା ଏକ ପ୍ରବଳ ପରାକ୍ରାନ୍ତ ଜାତୀୟତର ରାଷ୍ଟ୍ରର କେନ୍ଦ୍ର ଭାବେ ଗଢ଼ି ଉଠିବା ବିଧିନିବନ୍ଧ ବୋଲି ଭାବନ୍ତି । ସମଗ୍ର ମଧ୍ୟ-ପ୍ରାଚ୍ୟ ଏହାର ଅନ୍ତର୍ଭୁକ୍ତ ହେବ ଏବଂ ଏହାର ଉତ୍ତର ପାର୍ଶ୍ୱରେ ରହିବ ସୋଭିଏତ୍ ୟୁନିଅନ୍ ଆଉ ଅପର ପାର୍ଶ୍ୱରେ ରହିବ ମିଶର, ଆରବ ଓ ତୁରସ୍କ ଉପରେ ପ୍ରତିଷ୍ଠିତ ଏକ ନୂତନ ରାଷ୍ଟ୍ର ଯାହା ସିନୋ-ଜାପାନି-ସୋଭିଏତ୍ ପ୍ରଜାତନ୍ତ୍ର ନାମରେ ଅଭିହିତ ହେବ । ଏ ସବୁ ନାଟକୀୟ କଳ୍ପନାମାତ୍ର ଏବଂ ଏପରି ଅବସ୍ଥା କେବେ ଉପୁଜିବ କି ନାହିଁ ସିଏ କାହା ପକ୍ଷରେ କହିବା କଠିନ । ମୋର ନିଜ କଥା କହିଲେ, କୌଣସି ବଳିଷ୍ଠ ବିଶ୍ୱ ସୌଭ୍ରାତ୍ରିକ ବନ୍ଧନ ରଚନା ବିଶ୍ୱକୁ କେତୋଟି ଅଧିକାଂଶ ଜାତୀୟତର ଭୂଭାଗରେ ବିଭକ୍ତ କରିବା ସମକ୍ଷରେ ମୁଁ ନାହିଁ; କିନ୍ତୁ ଲୋକେ ଯଦି ନିର୍ବୋଧ ଭାବରେ ବିଶ୍ୱ-ଏକତା ଓ ବିଶ୍ୱ-ସଙ୍ଗଠନ ଏଡ଼ାଇ ଯିବାକୁ ବସନ୍ତି, ତାହାହେଲେ ଏହି ସବୁ ବିଶାଳ ଜାତୀୟତର ଅଞ୍ଚଳ ପ୍ରତ୍ୟେକ ସ୍ଥାନୀୟ ସ୍ୱଶାସନ ଭିତ୍ତିରେ ଗୋଟିଏ ଗୋଟିଏ ଅଧିକାଂଶ ରାଷ୍ଟ୍ର

ଭାବରେ କାର୍ଯ୍ୟକାରୀ ହେବେ । କାରଣ କ୍ଷୁଦ୍ର ଜାତୀୟ ରାଷ୍ଟ୍ରର ଭବିଷ୍ୟତ ଆଉ ନାହିଁ । ସେ ଭଳି ଏକ ରାଷ୍ଟ୍ର ଗୋଟାଏ ସାଂସ୍କୃତିକ ତଥା ସ୍ୱଶାସିତ ଅଞ୍ଚଳ ଭାବରେ ବଞ୍ଚି ରହିପାରେ; କିନ୍ତୁ ଗୋଟାଏ ସ୍ୱାଧୀନ ରାଜନୈତିକ ଏକକ ଭାବରେ ତିଷ୍ଠି ରହିବା କଠିନ ।

ଯାହା କିଛି ଘଟୁନା କାହିଁକି, ତାହା ବିଶ୍ୱର କଲ୍ୟାଣ ହିଁ ସାଧନ କରିବ । ଯଦି ଭାରତ ତାର ପ୍ରଭାବ ବିସ୍ତାରକରେ ଅନ୍ୟମାନେ ଅନୁଭବ କରିପାରିଲି ଭଳି; କାରଣ ସେହି ପ୍ରଭାବ ସର୍ବଦା ଶାନ୍ତି ଓ ସହଯୋଗ ସପକ୍ଷରେ ଏବଂ ଆକ୍ରମଣ ବିରୁଦ୍ଧରେ କାର୍ଯ୍ୟ କରିବ ।

## ୧୨. ବାସ୍ତବବାଦୀ ଓ ଭୂ-ରାଜନୀତି
## ବିଶ୍ୱ ବିଜୟ୍ନ ନା ବିଶ୍ୱ-ସମାଜ
## ଯୁକ୍ତରାଷ୍ଟ୍ର ଆମେରିକା ଓ ସୋଭିଏତ୍ ୟୁନିଅନ୍

ୟୁରୋପରେ ଯୁଦ୍ଧ ତା'ର ଶେଷ ପର୍ଯ୍ୟାୟରେ ଉପନୀତ ହୋଇଛି ଏବଂ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଅଗ୍ରଗାମୀ ସୈନ୍ୟବାହିନୀମାନଙ୍କ ସମ୍ମୁଖରେ ନାଜି-ଶକ୍ତି ଭୂଲୁଣ୍ଠିତ ପଡ଼ିଛି । ମୁକ୍ତି ସଂଗ୍ରାମ ସଙ୍ଗେ ଅତି ଘନିଷ୍ଠ ଭାବରେ ଜଡ଼ିତ, ଲାବଣ୍ୟବତୀ, କରୁଣାମୟୀ, ମହାନ୍ ନଗରୀ ପ୍ୟାରିସ ପୁନର୍ବାର ମୁକ୍ତି ଲାଭକରିଛି । ଯୁଦ୍ଧର ବିବିଧ ସମସ୍ୟା ଅପେକ୍ଷା ଅଧିକତର ଜଟିଳ ଶାନ୍ତି ସମ୍ପର୍କୀୟ ନାନା ସମସ୍ୟା ମୁଣ୍ଡ ଟେକି ଉଠୁଛି, ମଣିଷର ମନକୁ ଭାରାକ୍ରାନ୍ତ କରୁଛି ଏବଂ ତା'ପଛରେ ରହିଛି ପ୍ରଥମ ମହାଯୁଦ୍ଧ ପରବର୍ତ୍ତୀ ବର୍ଷମାନଙ୍କର ଶୋଚନୀୟ ବିଫଳତାର ବିକ୍ଷୋଭକର ସ୍ମୃତି । ଯୁଦ୍ଧ ଆଉ ନୁହେଁ, କୁହାଯାଉଛି । ଖ୍ରୀ: ୧୯୧୮ରେ ମଧ୍ୟ ସେମାନେ ଠିକ୍ ଏହିପରି କହିଥିଲେ ଯୁଦ୍ଧ ଆଉ ନୁହେଁ ।

ପନ୍ଦର ବର୍ଷ ପୂର୍ବେ ଖ୍ରୀ: ୧୯୨୯ରେ ଓ୍ୱିନ୍‌ଷ୍ଟନ୍ ଚର୍ଚ୍ଚିଲ୍ କହିଥିଲେ—"ଏହା ଏକ ବହୁକଥିତ କାହାଣୀ, ଯେଉଁଥିରୁ ଭବିଷ୍ୟତର ଆବଶ୍ୟକତା ନିମନ୍ତେ ଆମେ ଜ୍ଞାନ ଓ ବୋଧଶକ୍ତି ଆହରଣ କରିପାରୁଁ । ଜାତି ଜାତି ମଧ୍ୟରେ ବିବାଦର ବୈଷମ୍ୟ ଏବଂ ସେହି ସବୁ ବିବାଦ ଯୁଦ୍ଧଦ୍ୱାରା ତୁଟାଇବାକୁ ଗଲେ ଯେଉଁ ଦୁଃଖଦୁର୍ଦ୍ଦଶା ଭୋଗ କରିବାକୁ ହୁଏ; ରଣାଙ୍ଗନର ଗରିମାମୟ ଉଦ୍ୟମ ଯେପରି ତୁଚ୍ଛ ତଥା ଉପର ପୁରସ୍କାରଦ୍ୱାରା ମଣ୍ଡିତ ହୋଇଥାଏ, ବିଜୟର କ୍ଷଣିକ ଉଲ୍ଲାସ; ଦୀର୍ଘ ତଥା ମନ୍ଥର ପୁନର୍ଗଠନ; ନାନା ସାଂଘାତିକ ବିପଦରୁ ଉତ୍ତୀର୍ଣ୍ଣ ହେବାର ଆପ୍ରାଣ ଉଦ୍ୟମ; ସୂତା ଖିଅକରେ ସଂଯୋଗବଶତଃ କୌଣସି ଦୁର୍ଘଟଣା ଜରିଆରେ ସର୍ବନାଶରୁ ରକ୍ଷାପାଇବା; ଚିତ୍ ପଡ଼ିବ କି ମାଠ ପଡ଼ିବ, ନଜାଣି ପଇସା କିମ୍ବା ଟଙ୍କା ଭଳି ଚକା ମୁଦ୍ରାଟିଏ ଘୁରାଇଦେବା—ଏସବୁ ବିଷୟକୁ ନେଇ ଆଉ ଏକ ମହାଯୁଦ୍ଧ ନିବାରଣ ମାନବ ଜାତିର ପ୍ରଧାନ ଧ୍ୟାନହେବା ଦରକାର ।"

ମିଷ୍ଟର୍ ଚର୍ଚ୍ଚିଲ୍ ଯୁଦ୍ଧ ଓ ଶାନ୍ତି ଉଭୟ କାଳରେ ପ୍ରଧାନ ଭୂମିକା ଗ୍ରହଣ କରିଚନ୍ତି । ଦୁଃଖ ଓ ବିପଦ ଭିତରେ ମ୍ରିୟମାଣ ନହୋଇ ଅସାଧାରଣ ସାହସଭରେ ତାଙ୍କର ଦେଶକୁ ନେତୃତ୍ୱ ଦେଇଚନ୍ତି ଏବଂ ବିଜୟ ଲାଭ କଲା ପରେ ତାଙ୍କର ଦେଶକୁ ନେଇ ନାନା ଉଚ୍ଚ

କଳ୍ପନା କରୁଛନ୍ତି । ଅତଏବ, ସେ ସବୁ କଥା ଜାଣିବା ଦରକାର । ପ୍ରଥମ ବିଶ୍ୱଯୁଦ୍ଧ ପରେ ବ୍ରିଟିଶ ସୈନ୍ୟବାହିନୀ ଭାରତ ସୀମାନ୍ତରୁ ଆରମ୍ଭ କରି ଇରାନ୍, ଇରାକ୍, ପାଲେଷ୍ଟାଇନ୍ ଓ ସିରିଆ ଦେଇ କନଷ୍ଟାଣ୍ଟିନୋପଲ୍ ପର୍ଯ୍ୟନ୍ତ ସମଗ୍ର ପଶ୍ଚିମ-ଏସିଆ ଉପରେ ଆଧିପତ୍ୟ ବିସ୍ତାର କଲେ । ସେତେବେଳେ ମିଷ୍ଟର ଚର୍ଚ୍ଚିଲ୍ ବ୍ରିଟେନ ନିମନ୍ତେ ଏକ ନୂତନ ମଧ୍ୟପ୍ରାଚ୍ୟ ସାମ୍ରାଜ୍ୟର ସ୍ୱପ୍ନ ଦେଖିଥିଲେ । ବିଧିର ବିଧାନ ହେଲା ଅନ୍ୟ ପ୍ରକାର । ଭବିଷ୍ୟତର କି ସ୍ୱପ୍ନ ସେ ବର୍ତ୍ତମାନ ଦେଖୁଛନ୍ତି ? ବର୍ତ୍ତମାନ କାରାଗାରରେ ଆବଦ୍ଧ ମୋର ଜଣେ ପ୍ରସିଦ୍ଧ ତଥା ବୀର ସହକର୍ମୀ ଲେଖିଥିଲେ, "ଯୁଦ୍ଧ ଏକ ବିଚିତ୍ର ଅପରସାୟନବିତ୍ ଯାହାର ଗୁପ୍ତ ଗମ୍ଭୀରମାନଙ୍କରେ ଏପରି ସବୁ ଶକ୍ତି ପ୍ରସ୍ତୁତ ହୁଏ, ଯାହା ବିଜୟୀ ଓ ବିଜିତ ଉଭୟର ପରିକଳ୍ପନା ଭାଙ୍ଗି ଚୁରମାର କରିଦିଏ ।" ଗତ ମହାଯୁଦ୍ଧ ପରେ କୌଣସି ଶାନ୍ତି ସମ୍ମେଳନ ନିଷ୍ପତ୍ତି କରିନଥିଲା ଯେ ୟୁରୋପ ଓ ଏସିଆର ଚାରିଗୋଟି ପ୍ରତାପଶାଳୀ ସାମ୍ରାଜ୍ୟ ରୁଷ୍, ଜର୍ମାନୀ, ଅଷ୍ଟ୍ରିଆ ଓ ଓଟୋମାନ୍ ସାମ୍ରାଜ୍ୟ ଧୂଳି ସଙ୍ଗେ ଧୂଳି ହୋଇଯିବ । ସେପରି ମଧ୍ୟ ରୁଷିଆ, ଜର୍ମାନୀ ଓ ତୁରସ୍କରେ ଯେଉଁ ବିପ୍ଳବ ଘଟିଲା, ତାହା ଲଏଡ୍ ଜର୍ଜ, କ୍ଲେମେନ୍ସିଉ କିମ୍ବା ଉଇଲସନ୍ ବିଧାନ କରିନଥିଲେ ।

ଯୁଦ୍ଧରେ ସଫଳତା ସେମାନଙ୍କର ସମସ୍ତ ଉଦ୍ୟମକୁ ଜୟମଣ୍ଡିତ କଲା ପରେ ବିଜୟୀ ଦେଶସମୂହର ଜନନାୟକମାନେ ଯେବେ ଏକାଠି ହେବେ, କ'ଣ କହିବେ ? ସେମାନଙ୍କ ମନରେ ଭବିଷ୍ୟତ କି ଭଳି ରୂପ ନେଉଛି ଏବଂ ନିଜ ନିଜ ମଧ୍ୟରେ ସେମାନେ କେତେ ପର୍ଯ୍ୟନ୍ତ ଏକମତ ହେଉଛନ୍ତି କିମ୍ବା ଭିନ୍ନ ମତ ପୋଷଣ କରୁଛନ୍ତି ? ଯୁଦ୍ଧର ଉତ୍କଟ ଭାବାବେଗ ଶାନ୍ତ ହେବା ପରେ ଲୋକ ଯେବେ ବହୁତପ୍ରାପ୍ୟ ଶାନ୍ତି ସ୍ଥାପନ ବିଷୟରେ ଚିନ୍ତା କରିବାକୁ ଯିବେ, ଅନ୍ୟାନ୍ୟ କି ପ୍ରତିକ୍ରିୟା ପ୍ରକାଶ ପାଇବ ? ୟୁରୋପରେ ଶତ୍ରୁର ଅଗ୍ରଗତି ବ୍ୟାହତ କରିବା ଉଦ୍ଦେଶ୍ୟରେ, ଲୁକ୍କାୟିତ ଭାବରେ ଯେଉଁ ସବୁ ପ୍ରତିରୋଧ ଆନ୍ଦୋଳନ ଗଢ଼ି ଉଠିଥିଲା ଏବଂ ସେଥିରୁ ଯେଉଁ ସବୁ ନୂତନ ଶକ୍ତି ମୁକ୍ତିଲାଭ କରିଛି; ସେସବୁ କ'ଣ ହେବ ? ରଣାଙ୍ଗନର ଅଭିଜ୍ଞତାରେ ସମ୍ବେଦନହୀନ, ଅବସନ୍ନ ମନ ନେଇ ଲକ୍ଷ ଲକ୍ଷ ସୈନିକ ଯେବେ ନିଜ ନିଜ ଘରକୁ ଫେରିଯିବେ, କ'ଣ କହିବେ ଓ କ'ଣ କରିବେ ? ଯୁଦ୍ଧକ୍ଷେତ୍ରରେ ସେମାନେ ନିୟୋଜିତ ଥିଲାବେଳେ ଏଣେ ଯେଉଁ ଜୀବନ ମୁହୁର୍ମୁହୁ ପରିବର୍ତ୍ତିତ ହେଉଥିଲା, ଫେରିଆସି ସେମାନେ ସେହି ଜୀବନ ସଙ୍ଗେ ସଙ୍ଗତି ରଖି ଚଳି ପାରିବେ କିପରି ? ଧ୍ୱସ୍ତବିଧ୍ୱସ୍ତ ତଥା ଶହୀଦତ୍ୱପ୍ରାପ୍ତ ୟୁରୋପ ଏବଂ ଏସିଆ ଓ ଆଫ୍ରିକାର ଗତି କ'ଣ ହେବ ? ମିଷ୍ଟର ୱେଣ୍ଡେଲ୍ ଉଇଲ୍‌କିଙ୍କ ଭାଷାରେ କହିଲେ, "ଏସିଆର କୋଟି କୋଟି ଲୋକଙ୍କର ସ୍ୱାଧୀନତା ନିମନ୍ତେ ଅଦମ୍ୟ ଆନ୍ଦୋଳନର ପରିଣତି କ'ଣ ହେବ ?" ଏ ସବୁର ଓ ଆହୁରି ବହୁତ କିଛିର ଗତି କ'ଣ ହେବ ? ସର୍ବୋପରି ଭାଗ୍ୟ ବହୁଧା ବିଚିତ୍ର କୌଶଳ ପ୍ରୟୋଗକରି ଆମ ନେତାମାନଙ୍କର ସୁପରିକଳ୍ପିତ ଯୋଜନାଗୁଡ଼ିକୁ ଯେପରି ଓଲଟପାଲଟ କରି ଦେଇଥାଏ, ସେ କଥା କ'ଣ ନାହିଁ ?

ଯୁଦ୍ଧକାଳ ଯେତିକି ବଢ଼ି ବଢ଼ି ଚାଲିଲା ଏବଂ ଫାସିଷ୍ଟ ଶକ୍ତିମାନଙ୍କ ସମ୍ଭାବ୍ୟ ବିଜୟର ବିପଦ

ଯେତିକି ଯେତିକି ଅପସାରିତ ହେଲା, ମିଳିତ ଜାତିସଂଘର ନେତୃବର୍ଗଙ୍କ ଭିତରେ ରକ୍ଷଣଶୀଳ ମନୋଭାବ ଏବଂ ଏକ ପ୍ରକାର ସମ୍ବେଦନହୀନତା କ୍ରମଶଃ ଗାଢ଼ତର ହେଲା । ଅସ୍ପଷ୍ଟ ତଥା ପରିସର ଦୃଷ୍ଟିରୁ ସୀମିତ, ଚତୁର୍ବିଧ ମୁକ୍ତି ଓ ଆଟ୍‌ଲାଣ୍ଟିକ ସନନ୍ଦ ପୃଷ୍ଠଭୂମିରେ ଲୁଚିଗଲାଣି ଏବଂ ବେଳକୁବେଳ ଭବିଷ୍ୟତର ଚିତ୍ର ଯେଉଁଭଳି କଳ୍ପନା କରାଯାଉଛି, ତାହା ଅତୀତକୁ ଧରିରଖିବା ଛଡ଼ା ଅଧିକ କିଛି ନୁହେଁ । ଏହି ସଂଗ୍ରାମରେ ସାମରିକତା ହିଁ ପ୍ରାଧାନ୍ୟ ବିସ୍ତାର କରିଛି, ଯେଉଁଠି ପାଶବିକ ଶକ୍ତି ଶକ୍ତି ଭିତରେ ଲଢ଼ାଇ ଚାଲିଛି ଏବଂ ନାଜି ଓ ଫାସିଷ୍ଟମାନଙ୍କ ଦର୍ଶନ ଉପରେ ଆଉ ଆକ୍ରମଣ ହେଉନି । ୟୁରୋପରେ ଜେନେରାଲ୍ ଫ୍ରେଙ୍କୋ ଏବଂ ନଗଣ୍ୟ ଅଥବା ଛୋଟ ନିରଙ୍କୁଶ ଶାସକମାନଙ୍କୁ ଉତ୍ସାହିତ କରାଯାଇଛି । ମିଷ୍ଟର୍ ଚର୍ଚ୍ଚିଲ୍ ଏବେ ବି ସାମ୍ରାଜ୍ୟର ଅବଧାରଣାରେ ନିଜକୁ ନିଜେ ଗୌରବାନ୍ୱିତ ମଣୁଛନ୍ତି । ଅଳ୍ପଦିନ ତଳେ ଜର୍ଜବେର୍ନର୍ଡ଼୍‌'ଶ ଘୋଷଣା କରିଥିଲେ, "ବିଶ୍ୱରେ ସେପରି କୌଣସି ଶକ୍ତି ନାହିଁ ଯାହା ବ୍ରିଟିଶ ସାମ୍ରାଜ୍ୟ ଭଳି ଏତେ ପରିପାଟୀ ରୂପେ ସ୍ୱ ପ୍ରଭୁତ୍ୱର ଖିଆଲରେ ଅନୁପ୍ରାଣିତ । ଏପରିକି 'ସାମ୍ରାଜ୍ୟ' ଶବ୍ଦଟି ଚର୍ଚ୍ଚିଲ ଯେତେଥର ଉଚ୍ଚାରଣ କରିବାର ଉଦ୍ୟମ କରିଛନ୍ତି ପ୍ରତ୍ୟେକ ଥର ତାହା ତାଙ୍କର କଣ୍ଠରେ ଅଟକି-ଯାଇଛି ।" (୧)

---

(୧) ଏକଥା ସ୍ପଷ୍ଟ ଯେ ବ୍ରିଟିଶ ଶାସକବର୍ଗ ସାମ୍ରାଜ୍ୟବାଦ ଯୁଗର ଅବସାନ ଘଟାଇବା ଚାହାନ୍ତି ନାହିଁ; ବରଂ ହେଲେ, ସେମାନଙ୍କର ଔପନିବେଶିକ ଶାସନ ପଦ୍ଧତିରେ ସାମାନ୍ୟ କିଛି ଯୁଗୋପଯୋଗୀ ପରିବର୍ତ୍ତନ ଆଣିବା କଥା କେବଳ ବିଚାରିଥାନ୍ତି । ସେମାନଙ୍କ ପକ୍ଷରେ ଉପନିବେଶ ରଖିବା 'ସମ୍ପଦ ଓ ମହାନତା' ନିମନ୍ତେ ଆବଶ୍ୟକ । ଇଂଲଣ୍ଡରେ ପ୍ରଭାବଶାଳୀ ମତର ପ୍ରତିନିଧି 'ଇକନମିଷ୍ଟ୍' ତାଙ୍କର ୧୯୪୪ ସେପ୍‌ଟେମ୍ବର, ୧୬ ତାରିଖ ସଂଖ୍ୟାରେ ଲେଖିଛନ୍ତି : 'ବ୍ରିଟିଶ, ଫରାସୀ ଓ ଡଚ 'ସାମ୍ରାଜ୍ୟବାଦ' ପ୍ରତି ମାର୍କିନ୍ ବିଦ୍ୱେଷ ଯୁଦ୍ଧ ପରବର୍ତ୍ତୀକାଳର ବହୁ ଯୋଜନାକାରୀ-ମାନଙ୍କୁ ଏଇ ଧାରଣା ଅର୍ପଣ କରିଛି ଯେ ଦକ୍ଷିଣ-ପୂର୍ବ ଏସିଆରେ ପୁରାତନ ରାଜତନ୍ତ୍ରର ପୁନଃପ୍ରତିଷ୍ଠା ଆଉ ସମ୍ଭବପର ନୁହେଁ ଏବଂ ପାଶ୍ଚାତ୍ୟ ଜାତିମାନଙ୍କ ପ୍ରଭୁତ୍ୱର ସ୍ଥାନ ହୁଏତ କୌଣସି ଆନ୍ତର୍ଜାତିକ ନିୟନ୍ତ୍ରଣ ସଂସ୍ଥା ଗ୍ରହଣ କରିବ କିମ୍ବା ସ୍ଥାନୀୟ ଲୋକଙ୍କ ହାତକୁ କ୍ଷମତା ହସ୍ତାନ୍ତରିତ ହେବ । ଏ ମନୋଭାବ ରହିଛି ବୋଲି କେବଳ ନୁହେଁ, ଆମେରିକାର ବହୁଜନ ଆଦୃତ ପ୍ରଭାବଶାଳୀ ସମ୍ବାଦପତ୍ର ଓ ସାମୟିକ ପତ୍ରମାନେ ଯେହେତୁ ଏଥିପ୍ରତି ସମର୍ଥନ ଜଣାଉଛନ୍ତି, ବ୍ରିଟିଶ, ଫରାସୀ ଓ ଡଚ୍ ଜାତିମାନେ ସେମାନଙ୍କର ଭବିଷ୍ୟତ ଉଦ୍ଦେଶ୍ୟ ଖୋଲାଖୋଲି ଭାବରେ ପ୍ରକାଶ କରିବାର ବେଳ ଆସିଯାଇଛି । ସେମାନେ କେହିହେଲେ ନିଜର ଔପନିବେଶିକ ସାମ୍ରାଜ୍ୟ ହରାଇବାକୁ ଯେହେତୁ ଚାହାନ୍ତିନି, ବରଂ ଚାହାନ୍ତି ଯେ ଜାପାନର ସହ-ସମୃଦ୍ଧି କ୍ଷେତ୍ର ଉଜାଡ଼ିବା ଉଦ୍ଦେଶ୍ୟରେ ମାଲୟ, ଇଷ୍ଟ୍‌ଇଣ୍ଡିଜ୍ ଓ ଇଣ୍ଡୋଚୀନ ଯଥାକ୍ରମେ ବ୍ରିଟିଶ, ଡଚ୍ ଓ

ଇଂଲଣ୍ଡ ଆମେରିକା ଓ ଅନ୍ୟତ୍ର ବହୁଲୋକ ଅଛନ୍ତି ଯେଉଁମାନେ ଭବିଷ୍ୟତ ଅତୀତଠାରୁ ଭିନ୍ନ ଧରଣର ହେବା ସ୍ୱୀକାର୍ଯ୍ୟ ଏବଂ ସେମାନେ ଆଶଙ୍କା କରନ୍ତି ଯେ ଏପରି ଯଦି ନହୁଏ ବର୍ତ୍ତମାନର ଯୁଦ୍ଧ ପରେ ପରେ ଅଧିକତର ବ୍ୟାପକ ତଥା ଭୟାନକ ରୂପରେ ନୂତନ ଯୁଦ୍ଧ ଓ ସର୍ବନାଶର ସୂତ୍ରପାତ ଘଟିବ; କିନ୍ତୁ ଯେଉଁମାନଙ୍କ ହାତରେ କ୍ଷମତା ରହିଛି ଏବଂ ଯେଉଁମାନେ ସବୁକିଛୁର ନିୟାମକ, ଏ ପ୍ରକାର ବିଚାରରେ ପ୍ରଭାବିତ ହେବାଭଳି ଜଣାଯାଉ ନାହାନ୍ତି; କିମ୍ବା ଏପରି ବି ହୋଇପାରେ ଯେ ସେମାନେ ଯେପରି କେତେ ଶକ୍ତିର କବଳରେ ପଡ଼ିଛନ୍ତି ଯାହା ସେମାନଙ୍କୁ ନିଜ ଆୟତ୍ତରୁ ଅବ୍ୟାହତ ଦେଇଛି । ଇଂଲଣ୍ଡ, ଆମେରିକା ଓ ରୁଷିଆରେ କ୍ଷମତା-ରାଜନୀତିର ପୁରାତନ ନ୍ୟାୟବଳ ଖେଳ ପୁଣି ଅତି ବିରାଟ ଆକାରରେ ଚାଲିବା ଜଣାଯାଉଛି । ଏ ପ୍ରକାର କ୍ଷମତା-ରାଜନୀତିକୁ ବାସ୍ତବ ତଥା ଅସଲ ରାଜନୀତି କୁହାଯାଉଛି । ଭୂ-ରାଜନୀତିର ଅନ୍ୟତମ ବିଶାରଦ ମାର୍କିନ୍ ଅଧ୍ୟାପକ ଏନ୍. ଜେ. ସ୍ପାଇକ୍‌ମେନ୍ ଅଧୁନା ପ୍ରକାଶିତ ଏକ ପୁସ୍ତକରେ ଲେଖିଛନ୍ତି : "ଯେଉଁ ରାଷ୍ଟ୍ରନୀତିଜ୍ଞ ବୈଦେଶିକ ନୀତି ପରିଚାଳନା କରନ୍ତି, ସେ ସେତେ ପର୍ଯ୍ୟନ୍ତ କେବଳ ନ୍ୟାୟ, ଔଚିତ୍ୟ ଓ ସହିଷ୍ଣୁତାର ମୂଲ୍ୟବୋଧ ସଙ୍ଗେ ଜଡ଼ିତ ହୋଇପାରନ୍ତି ଯେ ପର୍ଯ୍ୟନ୍ତ ଲକ୍ଷ୍ୟ ହାସଲ ଦିଗରେ ତାହା ଅନୁକୂଳତା କରୁଛି କିମ୍ବା ହସ୍ତକ୍ଷେପ କରୁନାହିଁ । କ୍ଷମତା ସନ୍ଧାନକୁ ନୈତିକ ଯାଥାର୍ଥ୍ୟ ଅର୍ପଣ କରିବା ନିମନ୍ତେ ଏହି ସବୁ ମୂଲ୍ୟବୋଧ ଉପାୟ ଭାବରେ ବ୍ୟବହୃତ ହୋଇପାରେ; କିନ୍ତୁ ଯେଉଁଭଳି ପ୍ରୟୋଗଦ୍ୱାରା ଦୁର୍ବଳତା ଦେଖାଦେଉଛି ବୋଲି ଜାଣିବା ମାତ୍ରେ ତାହା ପରିହାର କରିବା ବିଧେୟ । ନୈତିକ ମୂଲ୍ୟମାନ ହାସଲ କରିବା ନିମନ୍ତେ କ୍ଷମତା ଅନ୍ୱେଷଣ ଉଦ୍ଦିଷ୍ଟ ନୁହେଁ; କ୍ଷମତାଲାଭର ପଥ ସୁଗମ କରିବା ଉଦ୍ଦେଶ୍ୟରେ ନୈତିକ ମୂଲ୍ୟମାନ ବ୍ୟବହୃତ ହୋଇଥାଏ ।" (୧)

ଏହି ବିଶ୍ଳେଷଣ ମାର୍କିନ୍ ବିଚାରଧାରାର ପ୍ରତିନିଧିତ୍ୱ ନକଲେ ସୁଦ୍ଧା ମାର୍କିନ୍ ଭାବୁକମାନଙ୍କ ଭିତରୁ ଏକ ଶକ୍ତିଶାଳୀ ଅଂଶ ଏ ପ୍ରକାର ଭାବନାଦ୍ୱାରା ପରିଚାଳିତ । ଓ୍ୱାଲ୍‌ଟେର ଲିପ୍‌ମେନ୍ ପୃଥିବୀକୁ ତିନିଗୋଟି କିମ୍ବା ଚାରିଗୋଟି କକ୍ଷପଥ ବେଷ୍ଟନ କରିଛି ବୋଲି କହନ୍ତି । ତାହା ହେଉଛି ଆଟଲାଣ୍ଟିକ ଗୋଷ୍ଠୀ, ରୁଷ୍, ଚୀନ୍ ଏବଂ ପରବର୍ତ୍ତୀ କାଳର ଦକ୍ଷିଣ-ଏସିଆର ହିନ୍ଦୁ ମୁସ୍‌ଲିମ୍ କକ୍ଷପଥ, ଯାହା କ୍ଷମତା-ରାଜନୀତିର ଧାରାବାହିକତାକୁ ଏକ ବିପୁଳତର ପରିସର ଅର୍ପଣ କରିଛି । ସେ ଏଥିରେ ବିଶ୍ୱଶାନ୍ତି କିମ୍ବା ବିଶ୍ୱ ସହଯୋଗ କିପରି ସଙ୍ଗଠିତ କରିହେବ ବୋଲି ମନେ କରୁଛନ୍ତି, ବୁଝିବା କଠିନ । ଆମେରିକା ସୁଚତୁର ବାସ୍ତବବାଦ, ଅନ୍ତର୍ଦୃଷ୍ଟି

---

ଫରାସୀ ପ୍ରଭୁଙ୍କ ହାତକୁ ପୁନର୍ବାର ଫେରିବା ଅତ୍ୟାବଶ୍ୟକ । ସେମାନଙ୍କର ମାର୍କିନ ମିତ୍ର ମନରେ ଏ ସମ୍ପର୍କରେ କୌଣସି ସନ୍ଦେହ ଆଉ ଅଧିକ କାଳ ରହିବାକୁ ଦେବା ଅର୍ଥ ଗୁରୁତର ଭୁଲ୍ ବୁଝାମଣା ପାଇଁ ପଥ ପ୍ରଶସ୍ତ କରିବା; ବିଶ୍ୱାସଘାତକତାର ଅଭିଯୋଗ ଉପସ୍ଥାପିତ କରିବା ।

(୧) ଆମେରିକାସ୍ ଷ୍ଟ୍ରାଟେଜି ଇନ୍ ଓ୍ୱାର୍ଲଡ଼ ପଲିଟିକ୍ସ ।

ଆଦର୍ଶବାଦ ଓ ମାନବବାଦର ଏକ ବିଚିତ୍ର ସମ୍ମିଶ୍ରଣ । ଭବିଷ୍ୟତରେ ଏଥିରୁ କେଉଁଟି ଆଧିପତ୍ୟ କରିବ କିମ୍ବା ଏହି ସମ୍ମିଶ୍ରଣର ଫଳ କ'ଣ ହେବ ବୁଝିବା କଠିନ । ଲୋକେ ଯେପରି ଭାବନ୍ତୁ ନା କାହିଁକି ବୈଦେଶିକ ନୀତି ତାର ଦାୟିତ୍ୱରେ ଥିବା ବିଶେଷଜ୍ଞମାନଙ୍କ ବିଷୟ ଏବଂ ସେମାନେ ସାଧାରଣତଃ ପୁରାତନ ପରମ୍ପରାର ଧାରାବାହିକତା ରକ୍ଷାକରିବା ଦିଗରେ ସର୍ବଦା ଚେଷ୍ଟିତ । କୌଣସି ସଂସ୍କାର କିମ୍ବା ନୂତନ ପ୍ରଥା ପ୍ରବର୍ତ୍ତନ କରିବା କଥା କହିଲେ, ତାହା ହାଲେ ସେମାନଙ୍କ ଦେଶକୁ କୌଣସି ସମ୍ଭାବ୍ୟ ବିପଦରେ ନେଇ ଜଡ଼ିତ କରିଦେଇ ପାରେ ବୋଲି ସେମାନେ ଆଶଙ୍କା କରିଥାନ୍ତି । ବୈଦେଶିକ ନୀତିରେ ବାସ୍ତବ-ବାଦର ପ୍ରୟୋଗ ଅନିବାର୍ଯ୍ୟ; କାରଣ କୌଣସି ଦେଶ ତାର ଆଭ୍ୟନ୍ତରୀଣ କିମ୍ବା ବୈଦେଶିକ ନୀତି କେବଳ ଶୁଭେଚ୍ଛା ଓ ଉଦ୍ଭଟ କଳ୍ପନାର ଭିତ୍ତି ଉପରେ ସ୍ଥାପନ କରିନପାରେ; କିନ୍ତୁ ତାହା ଏକ ବିଚିତ୍ର ବାସ୍ତବବାଦ; ଯାହା ବର୍ତ୍ତମାନର ପ୍ରକାଶ୍ୟ ସବୁ କିଛି ତଥ୍ୟକୁ ଅବଜ୍ଞା କରି କିମ୍ବା ବୁଝିବାର ମନୋଭାବ ନରଖି ଅତୀତର ଶୂନ୍ୟ ଖୋଳମାନଙ୍କରେ ଲାଗି ରହେ । ଆଉ ସେ ସବୁ ଗୂଢ଼ ତଥ୍ୟ ରାଜନୈତିକ ତଥା ଅର୍ଥନୈତିକ କେବଳ ନୁହେଁ, ସେଥି ସଙ୍ଗେ ଜଡ଼ିତ ବିପୁଳ ସଂଖ୍ୟକ ଲୋକଙ୍କର ନାନାବିଧ ଅନୁଭୂତି ଓ ପ୍ରବୃତ୍ତି । ଏ ପ୍ରକାର ବାସ୍ତବବାଦ ଅନେକଙ୍କର ତଥାକଥିତ ଆଦର୍ଶବାଦ ଅପେକ୍ଷା ଅଧିକତର କଳ୍ପନାପ୍ରବଣ ଏବଂ ଏଥିରେ ଆଜିର ଓ କାଲିର ନାନା ସମସ୍ୟାର ସମାଧାନ ପାଇଁ ଅବକାଶ ନଥାଏ ।

ସମ୍ପ୍ରତି ଭୂ ରାଜନୀତି ବାସ୍ତବବାଦୀର ଉରସାସ୍ଥଳ ହୋଇଉଠିଛି ଏବଂ 'କେନ୍ଦ୍ର ଭୂମି' ଓ 'ପରିଧି ଭୂମି' ଇତ୍ୟାଦି ଅର୍ଥହୀନ ଭାଷା ଜାତିସ୍ୱ ଅଭିବୃଦ୍ଧି ଓ ଅବନତିର ରହସ୍ୟ ଉପରେ ଆଲୋକପାତ କରିବ ବୋଲି ଅନୁମାନ କରାଯାଉଛି । ଭୂ-ରାଜନୀତିର ଉଦ୍ଭବ ଇଂଲଣ୍ଡରେ (ନା ସ୍କଟ୍‌ଲେଣ୍ଡ୍‌ରେ ?) ଏବଂ ତାହା ନାଜିମାନଙ୍କର ପଥପ୍ରଦର୍ଶକ ଆଲୋକ ହୋଇ ଉଠିଲା, ସେମାନଙ୍କର ବିଶ୍ୱ-ବିଜୟ ସ୍ୱପ୍ନ ଓ ଉଚ୍ଚାଭିଳାଷକୁ ପୁଷ୍ଟ କଲା ଏବଂ ଶେଷରେ ସର୍ବନାଶ ଭିତରକୁ ବାଟ ବଢ଼ାଇନେଲା । ଆଂଶିକ ସତ୍ୟ ବେଳେବେଳେ ମିଥ୍ୟା ଅପେକ୍ଷା ଅଧିକ ବିପଜ୍ଜନକ ହୋଇଥାଏ; ଗୋଟାଏ ସତ୍ୟ ଯାହାର କାଳ ହୋଇଗଲାଣି, ତାହା ଅନୁସରଣ କଲେ ବର୍ତ୍ତମାନର ବାସ୍ତବତା ପ୍ରତି ମଣିଷର ଆଖି ବୁଜି ହୋଇଯାଏ । ଏଇଚ୍. ଜେ. ମେକିନ୍ଦରଙ୍କ ଭୂ-ରାଜନୀତି ତତ୍ତ୍ୱ, ପରବର୍ତ୍ତୀ କାଳରେ ଯାହା ଜର୍ମାନୀରେ ବିକାଶ ଲାଭ କଲା, ଏସିଆ ଓ ୟୁରୋପ ଉଭୟ ମହାଦେଶର ମହାସାଗର ତୀରବର୍ତ୍ତୀ ପ୍ରଦେଶମାନଙ୍କରେ ଗଢ଼ି ଉଠିଥିବା ସଭ୍ୟତା ଉପରେ ଭିତ୍ତି କରିଥିଲା । ତାଙ୍କ ମତରେ ସଭ୍ୟତାର ସେହିସବୁ ପ୍ରଦେଶକୁ 'କେନ୍ଦ୍ର ଭୂମିର' ସ୍ଥଳବାହୀ ଆକ୍ରମଣକାରୀଙ୍କ କବଳରୁ ରକ୍ଷା କରିବାକୁ ପଡ଼ୁଥିଲା । ଏହି କେନ୍ଦ୍ରଭୂମି ଥିଲା ୟୁରେସୀୟ ଜାତି-ଅଧ୍ୟୁଷିତ ଭୂଭାଗର କେନ୍ଦ୍ର । ଏହି 'କେନ୍ଦ୍ରଭୂମି' ଉପରେ ଆଧିପତ୍ୟ ପ୍ରତିଷ୍ଠା କରିବା ଅର୍ଥ ବିଶ୍ୱ ଉପରେ ଆଧିପତ୍ୟ ବିସ୍ତାର କରିବା; କିନ୍ତୁ ସଭ୍ୟତା ଆଉ ମହାସାଗର ତୀରବର୍ତ୍ତୀ ପ୍ରଦେଶମାନଙ୍କରେ ଆବଦ୍ଧ ନୁହେଁ ଏବଂ ପରସ୍ପର ଓ ଆଧେୟ ଉଭୟ ଦିଗରୁ ତାହା ବିଶ୍ୱବ୍ୟାପୀ ହୋଇଉଠୁଛି । ଉତ୍ତର ଓ ଦକ୍ଷିଣ ଉଭୟ ଆମେରିକାର ବିକାଶ ବିସ୍ତାରକୁ ନେଲେ ଗୋଟାଏ ୟୁରେସୀୟ କେନ୍ଦ୍ରଭୂମି ବିଶ୍ୱ ଉପରେ

ଆଧିପତ୍ୟ କରିବାର ତତ୍ତ୍ୱ ଖଣ୍ଡିତ ହୋଇଯାଉଛି । ଅଧିକନ୍ତୁ ଆକାଶ ଶକ୍ତିର ଆବିର୍ଭାବ ଜଳଶକ୍ତି ଓ ସ୍ଥଳଶକ୍ତି ମଧ୍ୟରେ ଭାରସାମ୍ୟ ନଷ୍ଟ କରିଦେଇଛି ।

ଜର୍ମାନୀ ବିଶ୍ୱବିଜୟର ସ୍ୱପ୍ନ ଦେଖିଲାବେଳେ ଶତ୍ରୁମାନେ ତାକୁ ଘେରିଯିବାର ଭୟ ମଧ୍ୟ ପୋଷଣ କରୁଥିଲା । ଏହି ଭୟ ତାର ଉପରେ ଆବେଶ ଭଳି କାର୍ଯ୍ୟ କରୁଥିଲା । ସୋଭିଏଟ୍ ୟୁନିଅନ୍ ଭୟ କରୁଥିଲା ତାର ଶତ୍ରୁମାନେ କାଳେ ଏକଜୁଟ୍ ହୋଇଯିବେ ବୋଲି । ଇଂଲଣ୍ଡର ଜାତୀୟ ନୀତି ୟୁରୋପରେ ବହୁ କାଳରୁ ଶକ୍ତିର ଭାରସାମ୍ୟ ଉପରେ ଭିତ୍ତି କରିଥିଲା ଏବଂ ଯେ କେଉଁ ଶକ୍ତି ୟୁରୋପରେ ଆଧିପତ୍ୟ ବିସ୍ତାର କରିବାକୁ ବସିଲେ, ତାର ବିରୋଧ କରୁଥିଲା । ଅନ୍ୟମାନଙ୍କର ଭୟ ମଧ୍ୟ ସର୍ବଦା ରହିଥିଲା ଏବଂ ସେହି ଭୟ ଆକ୍ରମଣ ଓ ନାନାବିଧ ଚକ୍ରାନ୍ତ ଆଡ଼କୁ ବାଟ କଢ଼ାଇନେଲା । ବର୍ତ୍ତମାନର ଯୁଦ୍ଧ ଶେଷ ହେଲେ ସମ୍ପୂର୍ଣ୍ଣ ନୂତନ ଏକ ପରିସ୍ଥିତି ଉପୁଜିବ, ଯେଉଁଠି ଦୁଇଟି ବଡ଼ ଶକ୍ତି ମାର୍କିନ୍ ଯୁକ୍ତରାଷ୍ଟ୍ର ଓ ସୋଭିଏଟ୍ ୟୁନିଅନ୍ ବିଶ୍ୱରେ ଆଧିପତ୍ୟ ବିସ୍ତାର ଲାଗି ପ୍ରସ୍ତୁତ ରହିବେ ଏବଂ ଅନ୍ୟମାନେ ସଙ୍ଘବଦ୍ଧ ନହେଲେ ଖୁବ୍ ଭଲ ଭାବରେ ପଛରେ ପଡ଼ିଯିବେ । ଏବେ ସୁଦ୍ଧା ଅଧ୍ୟାପକ ସ୍ପାଇକ୍‌ମେନ୍ ଯୁକ୍ତରାଷ୍ଟ୍ର ଆମେରିକାକୁ ସାବଧାନ କରିଦେବାକୁ ଚାହାନ୍ତି ଯେ ଆମେରିକା ଶତ୍ରୁଦ୍ୱାରା ପରିବେଷ୍ଟିତ ହେବାର ବିପଦ ବରାବର ରହିଛି ଏବଂ ସେଥି ହେତୁରୁ ତାକୁ ଗୋଟାଏ 'ପରିଧି ଭୂମି' ଜାତି ସଙ୍ଗେ ମିତ୍ରତା ସ୍ଥାପନ କରିବାକୁ ପଡ଼ିବ ଆଉ କୌଣସି ଅବସରରେ ହେଲେ 'ପରିଧି ଭୂମି' ସଙ୍ଗେ 'କେନ୍ଦ୍ର ଭୂମି' (ବର୍ତ୍ତମାନ ସୋଭିଏଟ୍ ୟୁନିଅନ୍)ର ମିଳନ ନିବାରଣ କରିବାର ଚେଷ୍ଟା କରିବା ଉଚିତ ।

ଏସବୁ ବଡ଼ ବାସ୍ତବ ଓ ନିଚ୍ଛକ ଚତୁରତା ଭଳି ପ୍ରତୀତ ହେଲେ ସୁଦ୍ଧା ବସ୍ତୁତଃ ଏହା ଚରମ ନିର୍ବୋଧତା; କାରଣ ସମ୍ପ୍ରସାରଣ, ସାମ୍ରାଜ୍ୟ ଓ ଶକ୍ତି ସମତୁଲନର ପୁରାତନ ନୀତିରେ ଏହାର ଭିତ୍ତି ନିହିତ ଯାହା ଅନିବାର୍ଯ୍ୟ ଭାବରେ ସଂଘର୍ଷ ଓ ଯୁଦ୍ଧ ଆଡ଼କୁ ବାଟ କଢ଼ାଇ ନେଇଥାଏ । ପୃଥିବୀ ଯେହେତୁ ଗୋଲାକାର, ପ୍ରତ୍ୟେକ ଦେଶ ଅନ୍ୟାନ୍ୟ ଦେଶଦ୍ୱାରା ପରିବେଷ୍ଟିତ । କ୍ଷମତାରାଜନୀତିର ବିଭିନ୍ନ ପ୍ରଣାଳୀଦ୍ୱାରା ଏ ପ୍ରକାର ପରିବେଷ୍ଟନ ଏଡ଼ାଇବାକୁ ହେଲେ ମିତ୍ରରାଷ୍ଟ୍ର ଗୋଷ୍ଠୀ-ଗଠନ, ସମ୍ପ୍ରସାରଣ ଓ ବିଜୟ ଅନିବାର୍ଯ୍ୟ । ତଥାପି, ଗୋଟାଏ ଦେଶର ଆୟତନ କିମ୍ବା ତାର ପ୍ରଭାବର ପରିସର ଯେତେ ବିଶାଳ ହେଉନା କାହିଁକି ପରିବେଷ୍ଟନର ବିପଦ ସର୍ବଦା ରହିବ, କାରଣ ଯେଉଁମାନେ ସେହି ପ୍ରଭାବର ପରିସର ବାହାରେ ରହିଥିବେ, ଗୋଟାଏ ପ୍ରତିଦ୍ୱନ୍ଦ୍ୱୀ ଶକ୍ତିର ଅସାଧାରଣ ବଳବୃଦ୍ଧି ସେମାନଙ୍କୁ ଭୟଭୀତ କରିବ । ଏହି ବିପଦରୁ ଉଦ୍ଧାର ହେବାର ଏକମାତ୍ର ପନ୍ଥା ହୋଇପଡ଼ିବ ବିଶ୍ୱ-ବିଜୟ କିମ୍ବା ପ୍ରତ୍ୟେକ ସମ୍ଭାବ୍ୟ ପ୍ରତିଦ୍ୱନ୍ଦ୍ୱୀର ବିନାଶ ସାଧନ କରିବା । ବିଶ୍ୱ-ବିଜୟର ଅଧୁନାତନ ଉଦ୍ୟମ କିଭଳି ବ୍ୟର୍ଥ ହେଉଛି, ଆଜି ଆମେ ତାହା ଦେଖୁଥାଉଁ । ଏଥିରୁ କେହି ଶିକ୍ଷା ନେବେ ନା କେହି କେହି କ୍ଷମତା-ମଦ, ଜାତିଗର୍ବ ଓ ଉଚ୍ଚାଭିଳାଷଦ୍ୱାରା ତାଡ଼ିତ ହୋଇ ଭାଗ୍ୟପରୀକ୍ଷା ନିମନ୍ତେ ପୁନର୍ବାର ଯୁଦ୍ଧକ୍ଷେତ୍ରରେ ପଦାର୍ପଣ କରିବେ ?

ଏବେ ବିଶ୍ୱ-ବିଜୟ କିମ୍ବା ସହଯୋଗମୂଳକ ବିଶ୍ୱ-ସମାଜ । ଏହା ବ୍ୟତୀତ କୌଣସି

ମଧ୍ୟମ କିମ୍ବା ବିକଳ୍ପ ପନ୍ଥା ଆଉ ନାହିଁ । ପୁରାତନ ବିଭାଜନ ଓ କ୍ଷମତା-ରାଜନୀତିର ସନ୍ଧାନ ଆଜିର ପ୍ରକରଣରେ ସମ୍ପୂର୍ଣ୍ଣ ଅର୍ଥହୀନ ଏବଂ ଆମର ପରିବେଷ୍ଟନୀ ସଙ୍ଗେ ତାହା ଆଉ ଖାପ ଖାଇପାରୁନି । ତଥାପି, ସେ ସବୁ ପୂର୍ବଭଳି ଚାଲିଚି । ଗୋଟାଏ ରାଷ୍ଟ୍ରର ସ୍ୱାର୍ଥ ଓ କାର୍ଯ୍ୟକଳାପ ସେହି ରାଷ୍ଟ୍ର ଭିତରେ ସୀମିତ ରହୁନି । ଅନ୍ୟ ରାଷ୍ଟ୍ରମାନଙ୍କୁ ତାହା ପ୍ରସାରିତ ହେଉଚି ଏବଂ କ୍ରମଶଃ ବିଶ୍ୱବ୍ୟାପକ ହୋଇ ଉଠୁଚି । କୌଣସି ରାଷ୍ଟ୍ର ଅନ୍ୟ ରାଷ୍ଟ୍ରମାନଙ୍କର ରାଜନୈତିକ କିମ୍ବା ଅର୍ଥନୈତିକ ଭାଗ୍ୟ ପ୍ରତି ଉଦାସୀନ ହୋଇ ନପାରେ କିମ୍ବା ସେମାନଙ୍କଠାରୁ ବିଚ୍ଛିନ୍ନ ରହି ନପାରେ । ଦେଶ ଦେଶ ମଧ୍ୟରେ ଯଦି ସହଯୋଗ ସ୍ଥାପିତ ନ ହେଉଚି, ବିବାଦ ଲାଗିବା ନିଶ୍ଚିତ ଏବଂ ତାର ଫଳ ମଧ୍ୟ ଅନିବାର୍ଯ୍ୟ । ସମାନତା ଓ ପାରସ୍ପରିକ ଉନ୍ନତିର ଭିତ୍ତି ଉପରେ କେବଳ ସହଯୋଗ ପ୍ରତିଷ୍ଠିତ ହୋଇପାରେ । ସେଥିଲାଗି ଅନଗ୍ରସର ଜାତିମାନଙ୍କୁ ଅନ୍ୟାନ୍ୟ ଜାତିମାନଙ୍କର ସାଂସ୍କୃତିକ ତଥା ଅନ୍ୟବିଧ ଅଗ୍ରଗତିର ସ୍ତରକୁ ଉଠାଇ ଆଣିବାକୁ ପଡ଼ିବ ଏବଂ ସବୁପ୍ରକାର ଜାତି-ବୈଶିଷ୍ଟ୍ୟ ଓ ଆଧିପତ୍ୟ ଦୂରକରିବାକୁ ପଡ଼ିବ । କୌଣସି ଜାତି ଅନ୍ୟ ଜାତିର ଆଧିପତ୍ୟ ଓ ଶୋଷଣ ବରଦାସ୍ତ କରିବା ଲାଗି ପ୍ରସ୍ତୁତ ନୁହନ୍ତି । ଏ ପ୍ରକାର ଆଧିପତ୍ୟ ଓ ଶୋଷଣକୁ କେତେ ପ୍ରୀତିକର ନାମରେ ନାମିତ କଲେ ସୁଦ୍ଧା ତାର ଗୁଣ ଓ ଚରିତ୍ର ବଦଳି ଯାଇନପାରେ । ଆହୁରି ମଧ୍ୟ ପୃଥିବୀର ଅନ୍ୟାନ୍ୟ ଅଂଶରେ ସମୃଦ୍ଧି ବିରାଜିତ ଥିଲାବେଳେ କୌଣସି ଜାତି ତାର ନିଜ ଦେଶର ଦାରିଦ୍ରତା ପ୍ରତି ଉଦାସୀନ ରହି ନପାରେ । ନିଜ ଦେଶ ବାହାରେ ପୃଥିବୀର ଅନ୍ୟାନ୍ୟ ସ୍ଥାନରେ କ'ଣ ଘଟୁଚି ଜାଣିବାର ସୁବିଧା ଯେବେ ନଥିଲା ତାହା ସମ୍ଭବ ହୋଇ ପାରୁଥିଲା; କିନ୍ତୁ ଆଜି ଆଉ ନୁହେଁ ।

ଏସବୁ ସ୍ପଷ୍ଟ ଜଣାଗଲେ ସୁଦ୍ଧା ଅତୀତର ଘଟଣାବଳୀ ପ୍ରମାଣ କରୁଚି ଯେ ମଣିଷର ମନ ଘଟଣାପ୍ରବାହର ବହୁ ଦୂରରେ ରହିଯାଉଚି ଏବଂ ବଡ଼ ମନ୍ଥର ଗତିରେ ସେଥି ସଙ୍ଗେ ମିଳିତ ହୋଇପାରୁଚି । ଭବିଷ୍ୟତରେ ସର୍ବନାଶର ବିପଦ ଦୂରକରିବା ଉଦ୍ଦେଶ୍ୟରେ ଏବଂ ଅନ୍ୟମାନଙ୍କ ସ୍ୱାଧୀନତାର ଭିତ୍ତି ଉପରେ ନିଜର ସ୍ୱାଧୀନ ଜୀବନ ଗଢ଼ିବା ନିମନ୍ତେ ପ୍ରତ୍ୟେକ ଜାତି ନିଜର ସ୍ୱାର୍ଥ ଦୃଷ୍ଟିରୁ ଏହି ବ୍ୟାପକ ସହଯୋଗର ପରିସର ଭିତରକୁ ତାଡ଼ିତ ହୋଇଯିବେ; କିନ୍ତୁ 'ବାସ୍ତବବାଦୀ'ର ସ୍ୱାର୍ଥ ଅତୀତର ନାନା ବିଶ୍ୱାସ ଓ କଳ୍ପନାଦ୍ୱାରା ଅତିମାତ୍ରାରେ ସୀମିତ ଏବଂ ସେ ଗୋଟାଏ ଯୁଗପାଇଁ ଉପଯୋଗୀ ନାନା ଭାବ ଓ ସାମାଜିକ ଢଙ୍ଗ ଅପରିବର୍ତ୍ତନୀୟ ଏବଂ ମାନବ ପ୍ରକୃତି ଓ ମାନବ ସମାଜ ନିମନ୍ତେ ଚିରନ୍ତନ ଭାବରେ ପ୍ରଯୁଜ୍ୟ ମନେକରେ । ସେ ଭୁଲିବସେ ଯେ ମାନବ ପ୍ରକୃତି ଓ ମାନବ ସମାଜ ଭଳି ଏତେ ପରିବର୍ତ୍ତନଶୀଳ ଆଉ କିଛି ନାହିଁ । ଯେତେ କିଛି ଧାର୍ମିକ ଆଙ୍ଗିକ ଓ ଧାରଣା ସ୍ଥାୟିତ୍ୱ ଲାଭକରେ; ଯେତେ କିଛି ସାମାଜିକ ସଂସ୍ଥା ଜଡ଼ତା ପ୍ରାପ୍ତ ହୁଏ; ମାନବ ପ୍ରଜାପତିର ବିକାଶ ନିମନ୍ତେ ଯୁଦ୍ଧ ଏକ ଅନିବାର୍ଯ୍ୟ ଆବଶ୍ୟକତା ବିବେଚିତ ହୁଏ; ସାମ୍ରାଜ୍ୟ ଓ ସମ୍ପ୍ରସାରଣ ପ୍ରଗତିଶୀଳ ତଥା ସଜୀବ ରାଷ୍ଟ୍ରର ବୈଶିଷ୍ଟ୍ୟ ବିବେଚିତ ହୁଏ; ସବୁ କିଛି ମାନବିକ ସମ୍ପର୍କ ଲାଭ-ମନୋବୃତ୍ତିଦ୍ୱାରା ପରିଚାଳିତ ବୋଲି ମାନି ନିଆଯାଏ; ରାଷ୍ଟ୍ରୀୟ ଅହଂମନ୍ୟତା, ଜାତୀୟ ବୈଶିଷ୍ଟ୍ୟ ଉପରେ ବିଶ୍ୱାସ ମନକୁ ଆଚ୍ଛନ୍ନ କରେ ଏବଂ ବିଘୋଷିତ ନହେଲେ ସୁଦ୍ଧା ତାହା

ସୃଷ୍ଟି ମନେ କରାଯାଏ । ଏଥି ଭିତରୁ କେତେକ ଭାବ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ସଭ୍ୟତାରେ ରହିଥିଲା; ଏଥିର ବହୁ କିଛି ଆଧୁନିକ ପାଶ୍ଚାତ୍ୟ ସଭ୍ୟତାର ପୃଷ୍ଠଭୂମିରେ ନିହିତ, ଯେଉଁଥିରୁ ଫାଶିଷ୍ଟବାଦ ଓ ନାଜିବାଦ ଜନ୍ମନେଲା । ନୈତିକ ତଥା ଅଗ୍ରଗଣ୍ୟତା ଦୃଷ୍ଟିରୁ ଏହିସବୁ ଭାବ ଓ ଫାଶିଷ୍ଟ ମତବାଦ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ଅବଶ୍ୟ ଫାଶିଷ୍ଟ ବାଦ ମାନବ ଜୀବନ ପ୍ରତି ଓ ମାନବିକତା କହିଲେ ଯାହା ବୁଝାଏ, ସେଥିପ୍ରତି ତାର ବିଦ୍ୱେଷରେ ବହୁତ ଦୂର ଆଗେଇଗଲା । ପ୍ରକୃତପକ୍ଷେ, ୟୁରୋପର ଦୃଷ୍ଟିଭଙ୍ଗୀକୁ ଏତେକାଳ ଧରି ଯାହା ରଙ୍ଗୀନ୍ କରିଥିଲା, ସେହି ମାନବବାଦ ଆଜି ସେଠାରେ ଏକ କ୍ଷୀୟମାନ ପରମ୍ପରା ମାତ୍ର । ପଶ୍ଚିମ ଜଗତର ରାଜନୈତିକ ତଥା ଅର୍ଥନୈତିକ ସଂଗଠନ ଭିତରେ ଫାଶିଷ୍ଟବାଦର ବୀଜ ରହିଥିଲା । ଅନ୍ତତଃ ଏହି ମତବାଦ ପରିହାର ନକଲେ ଯୁଦ୍ଧରେ ଜୟଲାଭର କିଛି ଅର୍ଥ ନାହିଁ; କାରଣ ତଦ୍ଦ୍ୱାରା କୌଣସି ମହାନ୍ ପରିବର୍ତ୍ତନ ଘଟିବା ସମ୍ଭବ ନୁହେଁ ଏବଂ ପୁରାତନ ଆଦର୍ଶ ଓ ମତବାଦ ଯଥାଯଥ ଭାବରେ ଯଦି ଚାଲୁ ରହେ, ତେବେ ଆମକୁ ପୁଣି ସେ ଭଉଁରୀରେ ହିଁ ପଡ଼ିବାକୁ ହେବ ।

ଏହି ଯୁଦ୍ଧରୁ ଆମେରିକା ଓ ସୋଭିଏତ୍ ୟୁନିୟନ ଉଭୟେ ଶକ୍ତିରେ, ପ୍ରକୃତ ତଥା ପ୍ରଚ୍ଛନ୍ନ ସମ୍ପଦରେ ବଳୀୟାନ୍ ହୋଇ ଯେ ବାହାରୁଛନ୍ତି, ଏକଥା ସୁବିଦିତ । ଯୁଦ୍ଧ ପୂର୍ବରୁ ସୋଭିଏତ ୟୁନିୟନ ଯେଉଁଳି ବଳଶାଳୀ ଥିଲା, ବର୍ତ୍ତମାନ ସେ ଅବସ୍ଥା ନାହିଁ, କାରଣ ଯୁଦ୍ଧରେ ତାର ବିପୁଳ କ୍ଷୟକ୍ଷତି ଘଟିଛି; କିନ୍ତୁ ତାର ସାଧନ-ସାମର୍ଥ୍ୟ ଅସାଧାରଣ ଏବଂ ଖୁବ୍ ଦ୍ରୁତ ଗତିରେ ସେ ତାର ଅବସ୍ଥା ସୁଧାରିନେବ ଓ ଅଗ୍ରଗତି କରିବ । ଭୌତିକ ତଥା ଅର୍ଥନୈତିକ ଶକ୍ତିରେ ୟୁରେସିଆ ମହାଦେଶର କୌଣସି ଦେଶ ତାର ସମକକ୍ଷ ହେବ ନାହିଁ । ବର୍ତ୍ତମାନ ଯେପରି ଜଣାଗଲାଣି, ଜାର୍ ସାମ୍ରାଜ୍ୟ ଭିତ୍ତିରେ ସେ ତାର ସୀମାନ୍ତ ପ୍ରସାରିତ କରୁଛି । ଏହି ସମ୍ପ୍ରସାରଣଶୀଳ ମନୋଭାବ କେତେ ପର୍ଯ୍ୟନ୍ତ ଜାରି ରହିବ, କହିବା କଠିନ । ତାର ସମାଜବାଦୀ ଅର୍ଥନୀତି ତାକୁ ସ୍ୱାବଲମ୍ବୀ ଯେହେତୁ କରିପାରିବ, ସମ୍ପ୍ରସାରଣ ଆବଶ୍ୟକତା ନ ରହିବାର କଥା । କିନ୍ତୁ ପୁରାତନ ସନ୍ଦେହ ଓ ଅବିଶ୍ୱାସ ତଥା ଅନ୍ୟାନ୍ୟ ଶକ୍ତିମାନେ କାର୍ଯ୍ୟ କରୁଛନ୍ତି ଏବଂ ତଥାକଥିତ ପରିବେଷ୍ଟନର ଭୟ ଆମେ ପୁନର୍ବାର ଦେଖିବାକୁ ପାଉଁ । ସେ ଯାହାହେଉ, ଆଗାମୀ ବହୁ ବର୍ଷ ପର୍ଯ୍ୟନ୍ତ ସୋଭିଏତ୍ ୟୁନିୟନ୍ ତାର ଯୁଦ୍ଧଜନିତ କ୍ଷୟକ୍ଷତି ସୁଧାରିବାରେ ବ୍ୟସ୍ତ ରହିବ । ତଥାପି ସୀମାନ୍ତ ଦିଗରୁ ନହେଲେ ସୁଦ୍ଧା, ଅନ୍ୟାନ୍ୟ ଭାବରେ ତାର ପ୍ରସାରଣଶୀଳ ମନୋଭାବ ସୁସ୍ପଷ୍ଟ । ଏହି କେତେ ବର୍ଷରେ ସୋଭିଏତ୍ ୟୁନିୟନ୍‌ର କେତେକ କାର୍ଯ୍ୟକଳାପ ତାର ବହୁ ଗୁଣମୁଗ୍ଧ ବ୍ୟକ୍ତିଙ୍କୁ କ୍ଷୁବ୍ଧ କରିଥିଲେ ସୁଦ୍ଧା ଆଜି ତାର ଭଳି, ରାଜନୈତିକ ଦୃଷ୍ଟିରୁ ସହତ ଓ ଅର୍ଥନୈତିକ ଦିଗରୁ ସୁବ୍ୟବସ୍ଥିତ ଦେଶ ଆଉ ନାହିଁ । ଯେଉଁମାନେ ବର୍ତ୍ତମାନ ତାକୁ ନେତୃତ୍ୱ ଦେଉଛନ୍ତି, ସେମାନେ ଅପ୍ରତିଦ୍ୱନ୍ଦ୍ୱୀ ଏବଂ ଭବିଷ୍ୟତ ପ୍ରତି ସେମାନଙ୍କ ଦୃଷ୍ଟିଭଙ୍ଗୀ ଉପରେ ସବୁ କିଛି ନିର୍ଭର କରେ ।

ଯୁକ୍ତରାଷ୍ଟ୍ର ଆମେରିକା ତା'ର ବିରାଟ ଉତ୍ପାଦନ ତଥା ସଂଗଠନ ସାମର୍ଥ୍ୟଦ୍ୱାରା ପୃଥିବୀକୁ

ଆମନ୍ତ୍ରିତ କରିଛି । ଯୁଦ୍ଧରେ ଆମେରିକା ଏକ ପ୍ରମୁଖ ଭୂମିକା ଯେ ଗ୍ରହଣ କଲା କେବଳ ନୁହେଁ, ତା'ର ଅର୍ଥନୀତିରେ ନିହିତ ଏକ ସ୍ୱାଭାବିକ ପ୍ରକ୍ରିୟାକୁ ଏପରି ଭାବରେ ତୀବ୍ରତର କରି ଦେଇଛି ଏବଂ ଯେଉଁ ସମସ୍ୟା ସୃଷ୍ଟିକରି ବସିଛି, ତାର ସମାଧାନ ପାଇଁ ଭବିଷ୍ୟତରେ ତା'ର ସବୁ କିଛି ବଳ ଓ ବୁଦ୍ଧି ନିୟୋଜିତ କରିବାକୁ ପଡ଼ିବ । ଘରେ କିମ୍ବା ବାହାରେ ଗୁରୁତର ଅସୁବିଧା ସୃଷ୍ଟି ନକରି, ପ୍ରଚଳିତ ଅର୍ଥନୈତିକ ବ୍ୟବସ୍ଥାର ସୀମା ଭିତରେ ରହି ପ୍ରକୃତ ପକ୍ଷେ ସେ କିପରି ଏ ସମସ୍ୟାର ସମାଧାନ କରିବ ଗଣନା କରିବା ସହଜ ନୁହେଁ । ଅନେକେ କହନ୍ତି, ଆମେରିକା ଆଉ ନିରପେକ୍ଷ କିମ୍ବା ବିଶ୍ୱ ଘଟଣା-ପ୍ରବାହରୁ ବିଚ୍ଛିନ୍ନ ନୁହେଁ । ଏକଥା ସତ୍ୟ, କାରଣ ତାର ବହିର୍ବାଣିଜ୍ୟ ଉପରେ, କେତେ ପର୍ଯ୍ୟନ୍ତ, ସେ ବର୍ତ୍ତମାନ ନିର୍ଭର ନକଲେ ନଚଳେ । ଯୁଦ୍ଧପୂର୍ବ ଅର୍ଥନୀତିରେ ଯାହାର ସେପରି କୌଣସି ଗୁରୁତ୍ୱ ନଥିଲା କିମ୍ବା ଅବଜ୍ଞା କଲେ ଚଳୁଥିଲା, ବର୍ତ୍ତମାନ ତାହା ହିଁ ଗୁରୁତ୍ୱପୂର୍ଣ୍ଣ ବିବେଚନାର ବିଷୟ ହୋଇଉଠିବ । ଯୁଦ୍ଧ-ଉତ୍ପାଦନର ସ୍ଥାନ ଯେବେ ଶାନ୍ତି ନିମନ୍ତେ ଉତ୍ପାଦନ ଗ୍ରହଣ କରିବ, ତେବେ ଝଗଡ଼ା କିମ୍ବା ସଂଘର୍ଷ ସୃଷ୍ଟି ନକରି ତାର ଏସବୁ ରପ୍ତାନିଯୋଗ୍ୟ ଦ୍ରବ୍ୟ କେଉଁ ବଜାରକୁ ଯିବ ? ଯୁଦ୍ଧ ପରେ ଲକ୍ଷ ଲକ୍ଷ ଲୋକ ସୈନିକ ପୋଷାକ ଛାଡ଼ି ଯେବେ ଘରକୁ ଫେରିବେ ସେମାନଙ୍କ ପାଇଁ କିଭଳି କର୍ମସଂସ୍ଥାନ ସେ କରିବ ? ପ୍ରତ୍ୟେକ ଯୁଦ୍ଧସ୍ପୃଷ୍ଟ ଦେଶ ଏହି ସମସ୍ୟାର ସମ୍ମୁଖୀନ ହେବାପାଇଁ ବାଧ୍ୟ; କିନ୍ତୁ ଆମେରିକା ପକ୍ଷରେ ଏହା ଅତିଶୟ ଗୁରୁତ୍ୱପୂର୍ଣ୍ଣ । ଯୁଦ୍ଧକାଳରେ ପ୍ରଯୁକ୍ତି ବିଜ୍ଞାନର ଯେଉଁ ବିକାଶ ଘଟିଛି ଏବଂ ଉତ୍ପାଦନ ଶୈଳୀରେ ଯେ ପ୍ରକାର ପରିବର୍ତ୍ତନ ହୋଇଛି, ତାହା ଏକେ ଅସମ୍ଭବ ଅତି-ଉତ୍ପାଦନ ଦିଗକୁ କିମ୍ବା ବ୍ୟାପକ ବେକାରି ଦିଗକୁ ବାଟ କଢ଼ାଇନେବ । ହୁଏତ ଉଭୟ ଘଟିବା ବି ସମ୍ଭବ । ବେକାର ସଂଖ୍ୟା ଅସମ୍ଭାଳ ଅବସ୍ଥାରେ ପହଞ୍ଚିଲେ ଦେଶରେ ତିକ୍ତତା ସୃଷ୍ଟି ହେବା ଅନିବାର୍ଯ୍ୟ । ଅଧିକନ୍ତୁ ଯୁକ୍ତରାଷ୍ଟ୍ର ସରକାରଙ୍କ ବିଘୋଷିତ ନୀତି ହେଉଛି ଦେଶରୁ ବେକାରି ଦୂରକରିବା । ଘରବାହୁଡ଼ା ଶ୍ରମିକମାନଙ୍କୁ ଲାଭକର ନିଯୁକ୍ତି ଦେଇ ବ୍ୟାପକ ବେକାରି ନିବାରଣ କରିବା ନିମନ୍ତେ ଆମେରିକାର ନେତୃବର୍ଗ ଏବେଠୁଁ ମନୋନିବେଶ କଲେଣି । ଏ ସବୁର ଆଭ୍ୟନ୍ତରୀଣ ବିଭାବ ଯାହା ହେଉନା କାହିଁକି, ତା'ର ଆନ୍ତର୍ଜାତିକ ବିଭାବ କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଆଭ୍ୟନ୍ତରୀଣ ବ୍ୟାପାରରେ ମଧ୍ୟ ମୌଳିକ ପରିବର୍ତ୍ତନ ନିମନ୍ତେ ଉଦ୍ୟମ ନ ହେଲେ ଅବସ୍ଥା ଗୁରୁତର ହେବ ହିଁ ହେବ ।

ବିପୁଳ ଉତ୍ପାଦନର ଏହି କାଳରେ ଅର୍ଥନୈତିକ ବ୍ୟବସ୍ଥାର ପ୍ରକୃତି ଏପରି ବିଚିତ୍ର ଯେ ବିଶ୍ୱର ସର୍ବଶ୍ରେଷ୍ଠ ବିତ୍ତଶାଳୀ ତଥା ଶକ୍ତିଶାଳୀ ଦେଶ ଯୁକ୍ତରାଷ୍ଟ୍ର ଆମେରିକା ତାର ଉଦ୍‌ବୃତ୍ତ ଉତ୍ପାଦନ ପାଇଁ ବଜାର ଦେଉଥିବା ଦେଶମାନଙ୍କ ଉପରେ ନିର୍ଭରଶୀଳ ହୋଇପଡ଼ିଛି । ଯୁଦ୍ଧ ପରେ କେତେ ବର୍ଷ ପର୍ଯ୍ୟନ୍ତ ୟୁରୋପ, ଚୀନ ଓ ଭାରତରେ ଯନ୍ତ୍ରପାତି ତଥା ତିଆରି ମାଲ ପାଇଁ ବଡ଼ ଧରଣର ଚାହିଦା ରହିବ । ତାହାର ଉଦ୍‌ବୃତ୍ତ ଉତ୍ପାଦନ ଖଲାସ କରିବା ଦିଗରେ ଏହା ବିଶେଷ ଭାବରେ ସହାୟକ ହେବ; କିନ୍ତୁ ପ୍ରତ୍ୟେକ ଦେଶ ନିଜ ସାମର୍ଥ୍ୟ ଦ୍ରୁତ ବୃଦ୍ଧିକରି ଆବଶ୍ୟକୀୟ ଦ୍ରବ୍ୟର ଅଧିକାଂଶ ନିଜ ଦେଶରେ ହିଁ ପ୍ରସ୍ତୁତ କରିବେ ଏବଂ

ସେଭଳି କେତେକ ବିଶେଷ ତିଆରି ମାଲ କିମ୍ବା ଉତ୍ପାଦ ଯାହା ସେ ଦେଶରେ ତିଆରି ନହୋଇ ପାରୁଚି ତାହାକୁ ଆମଦାନୀ କରିବେ । ଦେଶର ଖାଦନ-ସାମର୍ଥ୍ୟ ଜନସାଧାରଣଙ୍କ ବସ୍ତ୍ର-ଶକ୍ତି ଉପରେ ଯେହେତୁ ନିର୍ଭରଶୀଳ, ତାହା ବୃଦ୍ଧି କରିବାକୁ ହେଲେ କେତେକ ମୌଳିକ ଅର୍ଥନୈତିକ ପରିବର୍ତ୍ତନ ଆବଶ୍ୟକ ହୋଇପଡ଼ିବ । ଏକଥା ଧାରଣା କରାଯାଇ ପାରେ ଯେ ବିଶ୍ୱସାରା ଜୀବନଧାରଣର ମାନ ଭଲ ଭାବରେ ବଢ଼ାଇ ଦେଇ ପାରିଲେ ଆନ୍ତର୍ଜାତିକ ବାଣିଜ୍ୟ ଓ ପଣ୍ୟ ବିନିମୟ ବୃଦ୍ଧିଲାଭ କରିବ ଓ ସଫଳ ହେବ; କିନ୍ତୁ ଜୀବନଧାରଣର ମାନ ବୃଦ୍ଧି କରିବାକୁ ହେଲେ ଔପନିବେଶିକ ତଥା ଅନଗ୍ରସର ଦେଶମାନଙ୍କରେ ଉତ୍ପାଦନ ଓ ବଣ୍ଟନ ବ୍ୟବସ୍ଥାର ରାଜନୈତିକ ତଥା ଅର୍ଥନୈତିକ ବେଡ଼ି ଖୋଲିବା ଆବଶ୍ୟକ ହୋଇପଡ଼ିବ । ଏହି ଅଭିମୁଖ୍ୟ ଯେବେ ଅଗ୍ରସର ହେଲେ ବଡ଼ ବଡ଼ ପରିବର୍ତ୍ତନର ସମ୍ମୁଖୀନ ହେବା ଅନିବାର୍ଯ୍ୟ । ସେହି ପରିବର୍ତ୍ତନ ଫଳରେ କେତେକ ବ୍ୟବସ୍ଥା ଭାଙ୍ଗିପଡ଼ିବ ଏବଂ ନୂତନ କେତେକ ବ୍ୟବସ୍ଥା ଗ୍ରହଣ କରିବାକୁ ହେବ ।

ଅତୀତରୁ ଇଂଲଣ୍ଡର ଅର୍ଥନୀତି ଭିତ୍ତି କରିଚି ମୋଟା ରକମର ରପ୍ତାନୀ ବାଣିଜ୍ୟ ଉପରେ, ବିଦେଶରେ ମୂଳଧନ ଖଟାଇବାରେ; ଲଣ୍ଡନ ନଗରୀର ଆର୍ଥିକ ନେତୃତ୍ୱ ଉପରେ ଏବଂ ବିଶାଳ ସାମୁଦ୍ରିକ ପଣ୍ୟ ପରିବହନ ବ୍ୟବସାୟ ଉପରେ । ଯୁଦ୍ଧ ପୂର୍ବରୁ ଇଂଲଣ୍ଡ ତାର ଆବଶ୍ୟକୀୟ ଖାଦ୍ୟଦ୍ରବ୍ୟର ପ୍ରାୟ ଅର୍ଦ୍ଧେକ ଭାଗ ଆମଦାନୀ କରୁଥିଲା । ଏହି ପରିମାଣ ବର୍ତ୍ତମାନ ହୁଏତ କିଛି କମିଚି; କାରଣ ଇଂଲଣ୍ଡ ଖୁବ୍ ନିବିଷ୍ଟ ଭାବରେ ଶସ୍ୟ ଉତ୍ପାଦନ ଉପରେ ଦୃଷ୍ଟି ଦେଇଚି । ତାହାକୁ ଯେଉଁ ଖାଦ୍ୟଦ୍ରବ୍ୟ ଓ କଞ୍ଚାମାଲ ଇଂଲଣ୍ଡ ଆମଦାନୀ କରେ, ତାହା ପରିଶୋଧ କରିଥାଏ ତିଆରିମାଲ ରପ୍ତାନୀ କରି, ବିଦେଶରେ ପୁଞ୍ଜି ଖଟାଇ, ସମୁଦ୍ର ପଥରେ ମାଲ ପରିବହନ କରି, ବ୍ୟାଙ୍କ କାରବାର ଚଳାଇ ଏବଂ ଯାହାକୁ କୁହାଯାଏ 'ଅଦୃଶ୍ୟ' ରପ୍ତାନୀ କରି । ବହିର୍ବାଣିଜ୍ୟ ବିଶେଷତଃ ପ୍ରଭୂତ ପରିମାଣ ରପ୍ତାନୀ ବାଣିଜ୍ୟ ଥିଲା ବ୍ରିଟିଶ୍ ଅର୍ଥନୀତିର ମୂଳ ଆଧାର । ସେହି ଅର୍ଥନୀତି ଚାଲୁ ରଖାଯାଇଥିଲା ଔପନିବେଶିକ ଅଞ୍ଚଳମାନଙ୍କରେ ଏକଚାଟିଆ ନିୟନ୍ତ୍ରଣ ଖଟାଇ ଏବଂ ଭାରସାମ୍ୟ ରକ୍ଷା ନିମନ୍ତେ ସାମ୍ରାଜ୍ୟ ଭିତରେ କେତେକ ବିଶେଷ ବିଧିବ୍ୟବସ୍ଥା ପ୍ରୟୋଗ କରି । ଏହି ସବୁ ଏକଚାଟିଆ ନିୟନ୍ତ୍ରଣ ଓ ବିଶେଷ ବ୍ୟବସ୍ଥା ଉପନିବେଶ ତଥା ଅଧୀନ ରାଜ୍ୟମାନଙ୍କ ପକ୍ଷରେ ବିଶେଷ ପରିମାଣରେ ଅସୁବିଧାଜନକ ଥିଲା ଏବଂ ଏଣିକି ଏ ପ୍ରକାର ଚଳାଇଯିବା ଆଉ ସମ୍ଭବପର ନୁହେଁ । ବ୍ରିଟେନର ଯାହା ପୁଞ୍ଜି ବିଦେଶରେ ଖଟୁଥିଲା ତାହା ଉଭାଇ ଗଲାଣି ଏବଂ ତାର ଋଣ ପରିମାଣ ଅସମ୍ଭବ ଭାବରେ ବଢ଼ି ଯାଇଚି । ଲଣ୍ଡନ ନଗରୀର ଆର୍ଥିକ ଆଧିପତ୍ୟ ମଧ୍ୟ ଶେଷ ପାଇଚି । ଏହାର ଅର୍ଥ, ଯୁଦ୍ଧ ପରବର୍ତ୍ତୀ ବର୍ଷମାନଙ୍କରେ ବ୍ରିଟେନ୍ ଅଧିକରୁ ଅଧିକ ଭାବରେ ନିର୍ଭର କରିବ ତାର ରପ୍ତାନୀ ବାଣିଜ୍ୟ ଓ ନୌବାହୀ ମାଲ ପରିବହନ ବ୍ୟବସାୟ ଉପରେ । ତଥାପି, ରପ୍ତାନୀ ବାଣିଜ୍ୟ ବୃଦ୍ଧି କରିବା କିମ୍ବା ପୂର୍ବର ଅବସ୍ଥା ଯଥାଯଥ ରଖିବାର ସମ୍ଭାବନା ମଧ୍ୟ ସେତେ ପ୍ରଶସ୍ତ ନୁହେଁ ।

ଯୁଦ୍ଧ ପୂର୍ବବର୍ତ୍ତୀ ବର୍ଷମାନଙ୍କରେ, ଖ୍ରୀ: ୧୯୩୬-୩୮ ଭିତରେ, ବ୍ରିଟେନର ଆମଦାନୀ

( ପୁନଃରପ୍ତାନୀ ବାଦ ଦେଇ ) ଥିଲା ହାରାହାରି £ ୮୭୭,୦୦୦୦୦୦ । ନିମ୍ନମତେ ତାହା ପରିଶୋଧ କରାଯାଇଥିଲା ।

| | |
|---|---|
| ରପ୍ତାନୀ······ | £ ୪୭.୮୦ କୋଟି |
| ବିଦେଶରେ ଖଟିଥିବା ମୂଳଧନରୁ ଆୟ······ | £ ୨୦.୩୦ ,, |
| ସାମୁଦ୍ରିକ ପରିବହନ······ | £ ୧୦.୫୦ ,, |
| ବ୍ୟାଙ୍କ କାରବାର······ | £ ୪ ,, |
| ନିଅଣ୍ଟ ····· | £ ୪ ,, |
| ମୋଟ | £ ୮୭.୭୦ କୋଟି |

ବିଦେଶରେ ଖଟିଥିବା ମୂଳଧନରୁ ପର୍ଯ୍ୟାପ୍ତ ଆୟ ମିଳିବା ପରିବର୍ତ୍ତେ ଇଂଲଣ୍ଡର ବୈଦେଶିକ ଋଣ ଅତ୍ୟଧିକ ହାରରେ ବଢ଼ିଯିବ । କାରଣ ଦ୍ରବ୍ୟ ଓ ସେବା ଆକାରରେ (ମାର୍କିନ୍ ଧାର-ଇଜାରା ବ୍ୟତୀତ) ଭାରତ, ମିଶର, ଆର୍ଜେଣ୍ଟିନା ଓ ଅନ୍ୟାନ୍ୟ ଦେଶମାନଙ୍କଠାରୁ ସେ ଋଣ କରିଛି । ଲର୍ଡ଼ କେଇନ୍‌ସ୍ ଅନୁମାନ କରନ୍ତି ଯେ ଯୁଦ୍ଧ ଶେଷ ହେଲାବେଳକୁ ଇଂଲଣ୍ଡର ଏହି ଋଣ £ ୩୦୦ କୋଟି ପର୍ଯ୍ୟନ୍ତ ହେବ । ଶତକଡ଼ା ୫ ହିସାବରେ ଏହାର କାଳାନ୍ତର ବର୍ଷକୁ ପଡ଼ିବ ଏକ କୋଟି ପଚିଶ ଲକ୍ଷ ପାଉଣ୍ଡ । ଏପରି ଭାବରେ, ଯୁଦ୍ଧ ପୂର୍ବବର୍ତ୍ତୀ ହାରାହାରି ଭିତ୍ତିରେ ଇଂଲଣ୍ଡକୁ ବର୍ଷପ୍ରତି ୩୦ କୋଟି ପାଉଣ୍ଡ ନିଅଣ୍ଟ ସମ୍ଭାଳିବାକୁ ପଡ଼ିବ । ରପ୍ତାନି ବାଣିଜ୍ୟ ଓ ବିବିଧ ଚଳାଚଳ ବ୍ୟବସ୍ଥାରୁ ଅଧିକ ପରିମାଣ ଆୟ ନକଲେ ଇଂଲଣ୍ଡରେ ଜୀବନଧାରଣର ମାନ ଲକ୍ଷ୍ୟଣୀୟ ଭାବରେ ହ୍ରାସ ପାଇବ ।

ଯେପରି ଜଣାଯାଉଛି ଇଂଲଣ୍ଡର ଯୁଦ୍ଧ ପରବର୍ତ୍ତୀ କାଳର ନୀତି ଏଥିଦ୍ୱାରା ପରିଚାଳିତ ହେବ ଏବଂ ତା'ର ବର୍ତ୍ତମାନର ଅର୍ଥନୀତି ବଜାୟ ରଖିବାକୁ ଚାହିଁଲେ, ନକଲେ ଯେଉଁଠି ନଚଳେ, ସେପରି କେତେକ ନାମମାତ୍ର ପରିବର୍ତ୍ତନ କରି ସେ ତାର ଔପନିବେଶିକ ସାମ୍ରାଜ୍ୟ ଧରି ରଖିବାକୁ ଅବଶ୍ୟ ଚାହିଁବ । ଔପନିବେଶିକ ତଥା ଅଣ-ଔପନିବେଶିକ ଗୋଷ୍ଠୀବଦ୍ଧ କେତେକ ଦେଶର, ଜଣେ ପ୍ରଭାବଶାଳୀ ଅଂଶୀଦାର ଭାବରେ କେବଳ ନେତୃତ୍ୱର ଭୂମିକା ଗ୍ରହଣ କରିବାର ଆଶା ସେ କରିପାରେ ଏବଂ ଏପରି ଭାବରେ କେବଳ ରାଜନୀତି ଓ ଅର୍ଥନୀତି ଉଭୟ ଦୃଷ୍ଟିରୁ ଦୁଇଟି ମହାନ ଶକ୍ତି ଯୁକ୍ତରାଷ୍ଟ୍ର ଆମେରିକା ଓ ସୋଭିଏତ୍ ୟୁନିଅନର ବିପୁଳ ସମ୍ବଳର ସମତୁଲନ କରିପାରେ । ଅତଏବ, ସାମ୍ରାଜ୍ୟ ଧରି ରଖିବାର ଇଚ୍ଛା, ଯାହା ଅଛି ତାକୁ ଯାବୁଡ଼ି ରହିବାର ଇଚ୍ଛା ଏବଂ ନୂତନ ଅଞ୍ଚଳମାନଙ୍କରେ, ଉଦାହରଣ ସ୍ୱରୂପ ଶ୍ୟାମଦେଶ, ତାର ପ୍ରଭାବରେ କ୍ଷେତ୍ର ପ୍ରସାରିତ କରିବାର ଇଚ୍ଛା । ସେପରି ମଧ୍ୟ ବ୍ରିଟିଶ୍ ନୀତିର ଲକ୍ଷ୍ୟ ହେଉଛି ଡୋମିନିଅନମାନଙ୍କ ସଙ୍ଗେ ଏବଂ ପଶ୍ଚିମ ୟୁରୋପର କ୍ଷୁଦ୍ର ରାଷ୍ଟ୍ରମାନଙ୍କ ସଙ୍ଗେ ଘନିଷ୍ଠ ସମ୍ପର୍କ ରକ୍ଷାକରିବା । ଉପନିବେଶ ତଥା ଅଧୀନ ରାଜ୍ୟମାନଙ୍କ ସମ୍ପର୍କରେ ବ୍ରିଟିଶ ଦୃଷ୍ଟିଭଙ୍ଗୀ ଯାହା ଫରାସୀ ଓ ଡଚ୍ ଔପନିବେଶିକ ନୀତି ଠିକ୍ ତାର ଅନୁରୂପ ଓ ତାର ସମର୍ଥକ । ଡଚ୍

ସାମ୍ରାଜ୍ୟ ପ୍ରକୃତପକ୍ଷେ ଗୋଟାଏ 'ଅନୁଚର ସାମ୍ରାଜ୍ୟ' ଏବଂ ବ୍ରିଟିଶ ସାମ୍ରାଜ୍ୟ ବିନା ତାହା ତିଷ୍ଠିବା ଅସମ୍ଭବ ।

ଅତୀତର ଦୃଷ୍ଟିଭଙ୍ଗୀ ଓ ମାନ ଉପରେ ପ୍ରତିଷ୍ଠିତ ଏବଂ ଅତୀତ ସଙ୍ଗେ ଆବଦ୍ଧ ବ୍ୟକ୍ତିମାନଙ୍କଦ୍ୱାରା ବିଧିବଦ୍ଧ ଭାବେ ପ୍ରକାଶିତ ବ୍ରିଟିଶ୍ ନୀତିର ଏହିସବୁ ଧାରା ବୁଝିବା ସହଜ । ତଥାପି, ଊନବିଂଶ ଶତକ ଅର୍ଥନୀତିର ସେହି ପ୍ରକରଣରେ ଇଂଲଣ୍ଡ ଆଜି ଯେଉଁସବୁ ଅସୁବିଧାର ସମ୍ମୁଖୀନ ହେଉଛି, କିଛି ସାମାନ୍ୟ ନୁହେଁ । ତାର ସ୍ଥିତି ଦୁର୍ବଳ ହୋଇପଡ଼ିଛି, ତାର ଅର୍ଥନୀତି ଆଜିର ଅବସ୍ଥା ପ୍ରତି ଉପଯୋଗୀ ନୁହେଁ, ତାର ଆର୍ଥିକ ସମ୍ବଳ ସୀମାବଦ୍ଧ ଏବଂ ପୂର୍ବ ଭଳି ସେ ତାର ଶିଳ୍ପ ତଥା ସାମରିକ ଶକ୍ତି ବଜାୟ ରଖିପାରିବ ନାହିଁ । ସେହି ପୁରାତନ ଅର୍ଥବ୍ୟବସ୍ଥା ଚଳାଇନେବା ପାଇଁ ଯେଉଁସବୁ ଉପାୟ ସୂଚିତ କରାଯାଉଛି ସେଥିରେ ଏକ ମୌଳିକ ସ୍ଥାୟିତ୍ୱହୀନତା ନିହିତ ଅଛି । କାରଣ ତାର ଫଳରେ ବିବାଦ ବରାବର ଲାଗି ରହିବ, ଅବଶ୍ୟକୀୟ ନିରାପତ୍ତାର ଅଭାବ ଘଟିବ, ଅଧୀନ ରାଜ୍ୟମାନଙ୍କରେ ଦୁର୍ଭାବନା ବୃଦ୍ଧି ପାଇବ; ପରିଣାମରେ ଭବିଷ୍ୟତ ଆହୁରି ବିପଦସଙ୍କୁଳ ହୋଇଉଠିବ । ନିଜ ଦେଶରେ ଜୀବନଧାରଣର ମାନ ଯୁଦ୍ଧ ପୂର୍ବବର୍ତ୍ତୀ ଅବସ୍ଥାରେ ବଜାୟ ରଖିବା, ଏପରିକି ବୃଦ୍ଧି କରିବା ମଧ୍ୟ ହେଉଛି ବ୍ରିଟିଶ ଅଭିଳାଷ । ଏକଥା ବୁଝିବାରେ କିଛି ଅସୁବିଧା ନାହିଁ । ଏଥି ହେତୁରୁ ବ୍ରିଟିଶ୍ ରପ୍ତାନି ଦ୍ରବ୍ୟର ସୁରକ୍ଷିତ ବଜାରମାନଙ୍କ ଉପରେ ତାକୁ ନିର୍ଭର କରିବାକୁ ପଡ଼ୁଛି ଏବଂ କଞ୍ଚାମାଲ ଓ ଶସ୍ତା ଖାଦ୍ୟ ଦ୍ରବ୍ୟନିମନ୍ତେ ଉପନିବେଶ ତଥା ଅନ୍ୟାନ୍ୟ ଅଞ୍ଚଳମାନଙ୍କୁ ଅଧୀନରେ ରଖିବାକୁ ପଡ଼ୁଛି । ଏହାର ଅର୍ଥ ହେଉଛି ଯେ ଏସିଆ ଓ ଆଫ୍ରିକା ମହାଦେଶମାନଙ୍କର କୋଟି କୋଟି ଲୋକ ପେଟପୂରା ଖାଇବାକୁ ପାଆନ୍ତୁ ବା ନ ପାଆନ୍ତୁ, ଇଂରେଜମାନଙ୍କର ଜୀବନଧାରଣର ମାନ କିନ୍ତୁ ବରାବର ଉନ୍ନତ ରହିବାକୁ ହେବ । ଇଂରେଜମାନଙ୍କ ଜୀବନଧାରଣର ମାନ ଖସିଯାଉ ବୋଲି କେହି ଚାହିଁନ୍ତି; କିନ୍ତୁ ଏକଥା ସ୍ପଷ୍ଟ ଯେ ଏସିଆ ଓ ଆଫ୍ରିକାର ଲୋକେ ଏହି ଔପନିବେଶିକ ଅର୍ଥ ବ୍ୟବସ୍ଥା ବଜାୟ ରହୁ ବୋଲି ଜମା ଚାହିଁବେ ନାହିଁ; କାରଣ ତାହା ସେମାନଙ୍କୁ ହୀନ-ମାନବ ସ୍ତରକୁ ଓହ୍ଲାଇ ଆଣିଛି । ଯୁଦ୍ଧ ଲାଗିବା ପୂର୍ବରୁ ଇଂଲଣ୍ଡରେ ମୁଣ୍ଡପିଛା ବାର୍ଷିକ କ୍ରୟ-ଶକ୍ତି ଥିଲା ଶତାନବେ ପାଉଣ୍ଡ । ଆମେରିକାରେ ମୁଣ୍ଡପିଛା ବାର୍ଷିକ କ୍ରୟଶକ୍ତି ଏହା ଅପେକ୍ଷା ଆହୁରି ବେଶି ଥିଲା । ଭାରତରେ ଏହା ଥିଲା ବାର୍ଷିକ ଛ'ଅ ପାଉଣ୍ଡରୁ କମ୍ । ଏ ପ୍ରକାର ଅମାନୁଷିକ ବ୍ୟବଧାନ ଆଉ ସହ୍ୟ କରାଯାଇ ନପାରେ । ଆହୁରି ମଧ୍ୟ ଗୋଟାଏ ଔପନିବେଶିକ ଅର୍ଥବ୍ୟବସ୍ଥାର କ୍ରମାଗତ ଭାବରେ ହ୍ରାସ ପାଉଥିବା ଆଗମ ପରିଶେଷରେ ଆଧିପତ୍ୟ କରୁଥିବା ଶକ୍ତି ପକ୍ଷରେ ପ୍ରତିକୂଳ କେବଳ ହୋଇଥାଏ । ଯୁକ୍ତରାଷ୍ଟ୍ର ଆମେରିକାର ନୀତିନିୟନ୍ତାମାନେ ଏକଥା ଯେହେତୁ ଭଲ ଭାବରେ ଉପଲବ୍ଧି କରିଚନ୍ତି ଶିଳ୍ପୀକରଣ ତଥା ସ୍ୱାୟତ୍ତଶାସନ ଜରିଆରେ ଔପନିବେଶିକ ଜାତିମାନଙ୍କର କ୍ରୟଶକ୍ତି ସେମାନେ ବୃଦ୍ଧି କରିବାକୁ ଚାହାନ୍ତି । ଇଂଲଣ୍ଡରେ ମଧ୍ୟ କେତେକ ମହଲରେ ଉପଲବ୍ଧି କଲେଣି ଯେ ଭାରତରେ ଶିଳ୍ପର ପ୍ରସାର ଆବଶ୍ୟକ । ବଙ୍ଗଳାର ଦୁର୍ଭିକ୍ଷ ପରେ ଅନେକେ ଏ ଦିଗରେ ଗଭୀର ଭାବରେ ଚିନ୍ତା

କଲେଣି; କିନ୍ତୁ ଭାରତରେ ଶିଳ୍ପର ବିକାଶ ବ୍ରିଟିଶ୍ ନିୟନ୍ତ୍ରଣାଧୀନ ରହିବା ହେଉଛି ବ୍ରିଟିଶ ନୀତିର ଲକ୍ଷ୍ୟ । ତାହାହେଲେ କେବଳ ଭାରତରେ ବ୍ରିଟିଶ୍ ଶିଳ୍ପଗୁଡ଼ିକୁ ନାନାବିଧ ସ୍ୱାଧିକାର ଦିଆଯାଇ ପାରିବ । ଏସିଆର ଅନ୍ୟାନ୍ୟ ଦେଶମାନଙ୍କ ଭଳି ଭାରତରେ ମଧ୍ୟ ଶିଳ୍ପୀକରଣ ଅନିବାର୍ଯ୍ୟ । ପ୍ରଶ୍ନ ହେଉଛି କେବଳ ଗତି ବେଗର । ତେବେ, ଯେଉଁ ଧରଣର ହେଉନା କାହିଁକି, ଔପନିବେଶିକ ଅର୍ଥବ୍ୟବସ୍ଥା ଭିତରେ କିମ୍ବା ବୈଦେଶିକ ନିୟନ୍ତ୍ରଣ ତଳେ ତାହା କିପରି ବିକାଶ ଲାଭକରିବ ତାହା ବିଶେଷ ସନ୍ଦେହଜନକ ।

ବିଶ୍ୱର ମାନଚିତ୍ରରେ ଆଜିର ବ୍ରିଟିଶ୍ ସାମ୍ରାଜ୍ୟ ଗୋଟାଏ ଭୌଗୋଳିକ ଏକକ ନୁହେଁ କିମ୍ବା ଗୋଟାଏ ଫଳପ୍ରଦ ଅର୍ଥନୈତିକ ଅଥବା ସାମରିକ ଏକକ ବି ନୁହେଁ । ଏହା ଏକ ଐତିହାସିକ ତଥା ଭାବପ୍ରବଣତାର ଏକକ । ଭାବପ୍ରବଣତା ଓ ପୁରାତନ ନାନା ସମ୍ବନ୍ଧର ମହତ୍ତ୍ୱ ଆଜି ବି ରହିଛି; କିନ୍ତୁ ପରିଶେଷରେ ଅନ୍ୟାନ୍ୟ ଅତି ଗୁରୁତ୍ୱପୂର୍ଣ୍ଣ ବିଷୟମାନଙ୍କୁ ତାହା ଅବଜ୍ଞା କରିବାର ସମ୍ଭାବନା ନାହିଁ । ଏହି ଭାବପ୍ରବଣତା ମଧ୍ୟ ନିର୍ଦ୍ଦିଷ୍ଟ କେତେକ ଅଞ୍ଚଳ ପ୍ରତି କେବଳ ପ୍ରଯୁଜ୍ୟ, ଯେଉଁଠାର ଅଧିବାସୀ ଇଂରେଜମାନଙ୍କର ସମଜାତୀୟ । ଭାରତ ପ୍ରତି କିମ୍ବା ପରାଧୀନ ଔପନିବେଶିକ ସାମ୍ରାଜ୍ୟର ଅବଶିଷ୍ଟ ଅଂଶ ପ୍ରତି ଏହା ମୋଟେ ପ୍ରଯୁଜ୍ୟ ନୁହେଁ । ବରଂ ଏହାର ବିପରୀତ ହିଁ ଦେଖିବାକୁ ମିଳେ । ଏପରିକି ବୋଏର୍‌ମାନଙ୍କ ବିଷୟ ବିଚାରକୁ ନେଲେ ଏହା ଦକ୍ଷିଣ ଆଫ୍ରିକା ପ୍ରତି ମଧ୍ୟ ପ୍ରଯୁଜ୍ୟ ନୁହେଁ । ବଡ଼ ବଡ଼ ଡୋମିନିଅନ୍‌ଗୁଡ଼ିକରେ ଯେପରି ସବୁ ସୂକ୍ଷ୍ମ ପରିବର୍ତ୍ତନ ଘଟୁଛି, ସେଥିରୁ ଇଂଲଣ୍ଡ ସଙ୍ଗେ ସେମାନଙ୍କର ପାରମ୍ପରିକ ସମ୍ବନ୍ଧ ଶିଥିଳ କରିବାର ସୂଚନା ପ୍ରକାଶ ପାଉଛି । ଯୁଦ୍ଧ କାଳରେ କାନାଡ଼ାର ଶିଳ୍ପ-ଶକ୍ତି ପର୍ଯ୍ୟାପ୍ତ ଭାବରେ ବୃଦ୍ଧି ପାଇଛି । ବଡ଼ ବଡ଼ ଶକ୍ତିମାନଙ୍କ ଭିତରେ ଆଜି ତାକୁ ଗଣାଯାଇପାରେ; କିନ୍ତୁ ତାର ଘନିଷ୍ଠ ସମ୍ପର୍କ ହେଲା ଯୁକ୍ତରାଷ୍ଟ୍ର ଆମେରିକା ସଙ୍ଗେ । ତାର ଅର୍ଥନୈତିକ ବ୍ୟବସ୍ଥା ଯେପରି ଭାବରେ ସମ୍ପ୍ରସାରିତ ହେଉଛି, ଅଦୂର ଭବିଷ୍ୟତରେ, କେତେକ ପରିମାଣରେ ତାହା ବ୍ରିଟିଶ୍ ଶିଳ୍ପର ନିଜସ୍ୱ ପଥ ଓଗାଳି ବସିବ । ଅଷ୍ଟ୍ରେଲିଆ ଓ ନିଉଜିଲଣ୍ଡର ଅର୍ଥନୈତିକ ବ୍ୟବସ୍ଥା ମଧ୍ୟ ସମ୍ପ୍ରସାରିତ ହେଉଛି ଏବଂ ସେମାନେ ଉପଲବ୍ଧି କଲେଣି ଯେ ସେମାନେ ଇଂଲଣ୍ଡର ୟୁରୋପୀୟ କକ୍ଷ ପଥରେ ନାହାନ୍ତି; ଅଛନ୍ତି ପ୍ରଶାନ୍ତ ମହାସାଗରୀୟ ଏସିଏଟିକ୍-ମାର୍କିନ୍ କକ୍ଷପଥରେ ଯେଉଁଠି ଯୁକ୍ତରାଷ୍ଟ୍ର ଆମେରିକା ଏକ ପ୍ରମୁଖ ଭୂମିକା ଗ୍ରହଣ କରିବାର ଗୁରୁ ସମ୍ଭାବନା ରହିଛି । ସଂସ୍କୃତି ଦିଗରୁ ମଧ୍ୟ କାନାଡ଼ା ଓ ଅଷ୍ଟ୍ରେଲିଆ କ୍ରମଶଃ ଯୁକ୍ତରାଷ୍ଟ୍ର ଆମେରିକାର ନିକଟବର୍ତ୍ତୀ ହେଉଛନ୍ତି ।

ମାର୍କିନ ନୀତି ଓ ତାର ସମ୍ପ୍ରସାରଣଶୀଳ ମନୋବୃତ୍ତି ସଙ୍ଗେ ଆଜିର ଔପନିବେଶିକ ବ୍ରିଟିଶ୍ ଦୃଷ୍ଟିଭଙ୍ଗୀ ମେଳ ଖାଇ ପାରୁନି । ଆମେରିକା ତାର ରପ୍ତାନି ଦ୍ରବ୍ୟ ନିମନ୍ତେ ଖୋଲା ବଜାର ଚାହୁଁଛି ଏବଂ ଅନ୍ୟ ଶକ୍ତିମାନେ ତାର ବଜାରକୁ ନିୟନ୍ତ୍ରିତ କିମ୍ବା ସୀମିତ କରିବା ଉଦ୍ୟମକୁ ସେ ପସନ୍ଦ କରେନି । ଆମେରିକାର ଇଚ୍ଛା ଯେ ଏସିଆର ଶିଳ୍ପର ପ୍ରସାର କ୍ଷିପ୍ରତର ହେଉ ଏବଂ ସର୍ବତ୍ର ଜୀବନଧାରଣରେ ମାନ ବୃଦ୍ଧି ପାଉ । ଏ ପ୍ରକାର ବିସ୍ତୃତ

ପଛରେ କୌଣସି ଭାବପ୍ରବଣତା ନାହିଁ; ଅଛି ତାର ଉଦ୍‌ବୃତ୍ତ ମାଲ ଖଲାସ କରିବାର ଆକାଙ୍‌କ୍ଷା । ଆମେରିକା ଓ ଇଂଲଣ୍ଡ ଭିତରେ ରପ୍ତାନି ବାଣିଜ୍ୟ ଓ ନୌବାହୀ ବ୍ୟବସାୟ ନେଇ ବିବାଦ ଉପୁଜିବା ଅନିବାର୍ଯ୍ୟ । ଆବଶ୍ୟକୀୟ ସମ୍ବଳରେ ଭରପୂର, ଆକାଶମାର୍ଗରେ ଆମେରିକା ବିଶ୍ୱରେ ଅଦ୍ୱିତୀୟ ହେବାକୁ ଚାହୁଁଛି । ଇଂଲଣ୍ଡ ତାହା ଚାହୁଁନି । ଆମେରିକା ବୋଧହୁଏ ଚାହେଁ ଯେ ଶ୍ୟାମ ଦେଶ ସ୍ୱାଧୀନ ହେଉ; କିନ୍ତୁ ଇଂଲଣ୍ଡ ଚାହେଁ ଯେ ତାହା ଗୋଟାଏ ଅର୍ଦ୍ଧ-ଉପନିବେଶ ଭାବରେ ରହୁ । ଏହି ପରସ୍ପର-ବିରୋଧୀ ଆଭିମୁଖ୍ୟ ସମସ୍ତ ଔପନିବେଶିକ କ୍ଷେତ୍ରରେ ଦେଖାଦେଇଛି । ଏହା ପଛରେ ଅଛି ଉଭୟ ଅର୍ଥ ବ୍ୟବସ୍ଥାର ବାଞ୍ଛିତ ଲକ୍ଷ୍ୟ ।

ବ୍ରିଟିଶ୍ ନୀତିର ଲକ୍ଷ୍ୟ ହେଉଛି ରାଜ୍ୟଗୋଷ୍ଠୀ ଓ ସାମ୍ରାଜ୍ୟକୁ ଆହୁରି ଭଲ ଭାବରେ ଏକୀଭୂତ କରିବା । ଏହା ବୁଝିବାରେ କୌଣସି ଜଟିଳତା ନାହିଁ; କାରଣ ଏଥିଲାଗି ତାର ବର୍ତ୍ତମାନର ବିଚାର ପରିସ୍ଥିତି ହିଁ ମୁଖ୍ୟତଃ ଦାୟୀ; କିନ୍ତୁ ଏହାର ବିରୋଧରେ ରହିଛି ଆଜିର ବିଶ୍ୱର ଘଟଣାବଳୀ, ବିଶ୍ୱର ଭାବଧାରା, ଡୋମିନିଅନ୍‌ମାନଙ୍କରେ ଜାତୀୟତାବାଦର ଅଭିବୃଦ୍ଧି ଏବଂ ଔପନିବେଶିକ ସାମ୍ରାଜ୍ୟର ବିଚ୍ଛେଦକାରକ ମନୋବୃତ୍ତି । ପୁରାତନ ଭିତ୍ତି ଉପରେ ନିର୍ମାଣ ଉଦ୍ୟମ କରିବା, ଗୋଟାଏ ତିରୋହିତ ଯୁଗର ପ୍ରଭାବ ପୁନ ବିସ୍ତାର କରିବା, ସାମ୍ରାଜ୍ୟ ଓ ବିଶ୍ୱସାରା ବିଶେଷାଧିକାର ଲାଭର ସ୍ୱପ୍ନ ଦେଖିବା ଓ ସେଭଳି ଭାଷାରେ କଥା କହିବା, ଅନ୍ୟାନ୍ୟ ଦେଶମାନଙ୍କ ତୁଳନାରେ ଇଂଲଣ୍ଡ ପକ୍ଷରେ ଅଧିକତର ନିର୍ବୋଧତା ଓ ଅଦୂରଦର୍ଶିତାର ନୀତି ଭାବରେ ପ୍ରମାଣିତ ହେବ । କାହିଁକିନା ରାଜନୈତିକ, ଔଦ୍ୟୋଗିକ ଓ ଆର୍ଥିକ ଦୃଷ୍ଟିରୁ ବିଶ୍ୱରେ ତାକୁ ଏକ ପ୍ରବଳ ଶକ୍ତି ଭାବରେ ଗଢ଼ିବା ପଛରେ ଯେଉଁସବୁ କାରଣ ରହିଥିଲା, ସେଥିରୁ ଅଧିକାଂଶ ଲୋପପାଇ ଗଲାଣି । ତଥାପି ସୁଦ୍ଧା, ଅତୀତରେ ଯେପରି ଥିଲା ଆଜି ବି ସେପରି ଇଂଲଣ୍ଡର ଚମତ୍କାର କେତେକ ସଦ୍‌ଗୁଣ ଅଛି : ମିଳିମିଶି ଚଳିବା ପାଇଁ ସାହସ ଓ ସଙ୍କଳ୍ପ, ବୈଜ୍ଞାନିକ ଓ ରଚନାତ୍ମକ ଦକ୍ଷତା ଏବଂ ଗୋଟାଏ ପରିସ୍ଥିତି ପ୍ରତି ଅନୁକୂଳ ହେବାର ସାମର୍ଥ୍ୟ । ଏହିପରି କେତେ ଗୁଣ ଗୋଟାଏ ଜାତିକୁ ବଡ଼ କରେ ଏବଂ ନାନା ଆପଦବିପଦ ଅତିକ୍ରମ କରିଯିବାଲାଗି ସାମର୍ଥ୍ୟ ଦିଏ । ଅତଏବ, ଅଧିକତର ସୁସମ ତଥା ଭିନ୍ନ ଏକ ଅର୍ଥନୈତିକ ବ୍ୟବସ୍ଥା ଗ୍ରହଣକରି ତାର ଯାହା କିଛି ଅତୀବ ଗୁରୁତ୍ୱପୂର୍ଣ୍ଣ ତଥା ଜଟିଳ ସମସ୍ୟାର ସାମନା କରିବା ଲାଗି ସମର୍ଥ ହୋଇପାରେ । କିନ୍ତୁ ପୂର୍ବଭଳି ସେ ଯଦି ସାହାଯ୍ୟ ପାଇଁ ସାମ୍ରାଜ୍ୟ ଉପରେ ନିର୍ଭର କରି ରହେ, ସଫଳ ହେବାର ଆଶା ଅତି କ୍ଷୀଣ ।

ତେବେ ମାର୍କିନ ଓ ସୋଭିଏତ୍ ନୀତି ଉପରେ ଏବଂ ସେମାନଙ୍କ ସଙ୍ଗେ ଇଂଲଣ୍ଡର ସହଯୋଗ କିମ୍ବା ବିବାଦ ଉପରେ ବହୁତ କିଛି ନିର୍ଭର କରିବା ଅବଶ୍ୟମ୍ଭାବୀ । ବିଶ୍ୱଶାନ୍ତି ଓ ବିଶ୍ୱ ସହଯୋଗ ନିମନ୍ତେ ଏହି ତିନି ବଡ଼ଶକ୍ତି ମିଳିମିଶି ଚଳିବାର ଆବଶ୍ୟକତା ସମ୍ପର୍କରେ ସମସ୍ତେ ଉଚ୍ଚକଣ୍ଠରେ କହୁଛନ୍ତି; କିନ୍ତୁ ପ୍ରତ୍ୟେକ ଅବସରରେ, ଏପରିକି ଯୁଦ୍ଧ ବିପଦ କାଳରେ ସୁଦ୍ଧା ଏମାନଙ୍କ ଭିତରେ ମତଭେଦ ପ୍ରକାଶ ପାଇଛି । ଭବିଷ୍ୟତ ପାଇଁ ଯାହା କିଛି ଆଲୋଚନା

ନାହିଁକି, ଏକଥା କିନ୍ତୁ ସ୍ପଷ୍ଟ ଯେ ଯୁଦ୍ଧ ପରେ ଯୁକ୍ତରାଷ୍ଟ୍ର ଆମେରିକାର ଅର୍ଥବ୍ୟବସ୍ଥା ପ୍ରବଳ ଭାବରେ ପ୍ରସାରଣଶୀଳ ହେବ ଏବଂ ତାର ପରିଣାମ ବିସ୍ଫୋରକ ହେବାର ସମ୍ଭାବନା ସମଧିକ। ଏହା କ'ଣ ଗୋଟାଏ ନୂତନ ଧରଣର ସାମ୍ରାଜ୍ୟବାଦ ଆଡ଼କୁ ବାଟ କଢ଼ାଇନେବ ? ସେପରି ହେଲେ ଦୁର୍ଭାଗ୍ୟର ଅନ୍ତ ରହିବ ନାହିଁ; କାରଣ ଭବିଷ୍ୟତର ଗତି ନିରୂପଣ କରିବା ପାଇଁ ଆମେରିକାର ଶକ୍ତି ଓ ସୁଯୋଗର ଅଭାବ ନାହିଁ।

ଭବିଷ୍ୟତ ଲାଗି ସୋଭିଏତ୍ ୟୁନିଅନ୍‌ର ନୀତି କ'ଣ ହେବ ଏ ପର୍ଯ୍ୟନ୍ତ ରହସ୍ୟରେ ଆବୃତ ରହିଛି। ତଥାପି ତାର କେତେକ ପ୍ରକାଶମାନ ସୂଚନା ଦିଶିଲାଣି। ତାର ସୀମାନ୍ତ ନିକଟରେ ବନ୍ଧୁଭାବାପନ୍ନ ତଥା ନିର୍ଭରଶୀଳ କିମ୍ବା ନାନା ଗୁରୁତ୍ୱପୂର୍ଣ୍ଣ ବିଷୟରେ ନିର୍ଭରଶୀଳ ଯେତେ ଅଧିକ ଦେଶ ରହିପାରିବେ, ତାହା ହେଉଛି ତାର ଲକ୍ଷ୍ୟ। କୌଣସି ଧରଣର ଏକ ବିଶ୍ୱ ସଂଗଠନ ପ୍ରତିଷ୍ଠା ନିମନ୍ତେ ସେ ଯଦିଓ ଅନ୍ୟ ଶକ୍ତିମାନଙ୍କ ସଙ୍ଗେ ମିଶି କାର୍ଯ୍ୟକରୁଛି, ତଥାପି ଅନାକ୍ରମ୍ୟ ଏକ ଭିତ୍ତି ଉପରେ ଗଠିତ ନିଜର ଶକ୍ତି ଉପରେ ସେ ଅଧିକତର ଆସ୍ଥା ସ୍ଥାପନକରେ। ଅନ୍ୟ ଶକ୍ତିମାନେ ମଧ୍ୟ ନିଜ ନିଜ ସାମର୍ଥ୍ୟ ଅନୁସାରେ ଏପରି କରୁଥିବା ଅନୁମିତ ହୁଏ। ବିଶ୍ୱ ସହଯୋଗ ପକ୍ଷରେ ଗୁରୁତ୍ୱପୂର୍ଣ୍ଣ ଶକ୍ତିମାନଙ୍କର ଏ ପ୍ରକାର ଆଚରଣ ଆଶାଜନକ ନୁହେଁ। ଇଂଲଣ୍ଡ ଓ ଯୁକ୍ତରାଷ୍ଟ୍ର ଆମେରିକା ଭିତରେ ରପ୍ତାନି ବଜାର ନେଇ ଯେଉଁ ବିବାଦ ରହିଛି, ସୋଭିଏତ୍ ୟୁନିଅନ୍ ଓ ଅନ୍ୟାନ୍ୟ ଦେଶମାନଙ୍କ ମଧ୍ୟରେ ସେପରି କିଛି ନାହିଁ; କିନ୍ତୁ ଯାହାସବୁ ପାର୍ଥକ୍ୟ ରହିଛି, ତାହା ଗଭୀରତର, ପରସ୍ପରର ଦୃଷ୍ଟିକୋଣ ବହୁଧା ଭିନ୍ନମୁଖୀ ଏବଂ ଯୁଦ୍ଧକାଳୀନ ମିଳିତ ଉଦ୍ୟମ କାହାର ହେଲେ ପାରସ୍ପରିକ ସନ୍ଦେହ ଦୂର କରିପାରି ନାହିଁ। ଏହିସବୁ ପାର୍ଥକ୍ୟ ଯଦି ବଢ଼ିଚାଲେ ତାହା-ହେଲେ ସୋଭିଏତ୍ ୟୁନିଅନ୍ ଓ ତାର ଗୋଷ୍ଠୀଭୁକ୍ତ ଦେଶମାନଙ୍କ ବିରୁଦ୍ଧରେ ଠିଆହେବା ପାଇଁ ଯୁକ୍ତରାଷ୍ଟ୍ର ଆମେରିକା ଓ ଇଂଲଣ୍ଡ ପରସ୍ପରର ସହଯୋଗ ଓ ସମର୍ଥନ କାମନା କରିବେ।

ଏ ଚିତ୍ରରେ ଏସିଆ ଓ ଆଫ୍ରିକାର କୋଟି କୋଟି ଲୋକଙ୍କର ସ୍ଥାନ କାହିଁ ? ସେମାନେ ନିଜର ଦେଶ ଓ ତା'ର ଭାଗ୍ୟ ସମ୍ପର୍କରେ କେବଳ ନୁହେଁ, ସଙ୍ଗେ ସଙ୍ଗେ ବିଶ୍ୱ ସମ୍ପର୍କରେ ମଧ୍ୟ ଅଧିକତର ସଚେତନ ହୋଇ ପାରିଛନ୍ତି। ଏ ଦୁଇ ମହାଦେଶର ବହୁସଂଖ୍ୟକ ଲୋକ ଆଗ୍ରହସହକାରେ ବିଶ୍ୱ ଘଟଣାବଳୀ ପ୍ରତି ଦୃଷ୍ଟି ରଖନ୍ତି। ପ୍ରତ୍ୟେକ ପଦକ୍ଷେପ କିମ୍ବା ଘଟଣାରୁ ସେମାନେ ପାଞ୍ଚଟି ବିଷୟ କେବଳ ଜାଣିବାକୁ ଚାହାନ୍ତି। ତାହା ହେଉଛି : ଆମର ମୁକ୍ତି ପକ୍ଷରେ ଏହା ସହାୟକ ହେଉଛି କି ? ଗୋଟାଏ ଦେଶ ଉପରେ ଆଉ ଏକ ଦେଶ ଆଧିପତ୍ୟ କରିବା ଏହା ଫଳରେ ଶେଷହେବ କି ? ଅନ୍ୟମାନଙ୍କ ସଙ୍ଗେ ସହଯୋଗ କରି ଆମର ପସନ୍ଦ ଅନୁସାରେ ଜୀବନଧରିବା ପାଇଁ ଏହା ଆମକୁ ସୁଯୋଗ ଦେବ କି ? ଏହା ଫଳରେ ଜାତି ଜାତି ମଧ୍ୟରେ ସମାନତା ଏବଂ ପ୍ରତ୍ୟେକ ଜାତି ଭିତରେ ଥିବା ବିଭିନ୍ନ ସମ୍ପ୍ରଦାୟ ପାଇଁ ସମାନ ସୁଯୋଗ ଲାଭ ହେବ କି ? ଅଚିରେ ଦରିଦ୍ରତା ଓ ନିରକ୍ଷରତା ଲୋପକରି ସମସ୍ତଙ୍କର ଜୀବନଧାରଣର ମାନ ବୃଦ୍ଧିକରିବାର ପ୍ରତିଶ୍ରୁତି ଏଥିରେ ଅଛି କି ? ସେମାନେ ଜାତୀୟ ମନୋଭାବାପନ୍ନ ସତ୍ୟ; କିନ୍ତୁ ଏହି ଜାତୀୟତାବାଦ ଅନ୍ୟ ଉପରେ ଆଧିପତ୍ୟ କରିବା

କିମ୍ବା ଅନ୍ୟର କାର୍ଯ୍ୟରେ ହସ୍ତକ୍ଷେପ କରିବା ଚାହେଁନାହିଁ । ବିଶ୍ୱ ସହଯୋଗ ଓ ଏକ ଆନ୍ତର୍ଜାତିକ ବ୍ୟବସ୍ଥାର ପ୍ରତିଷ୍ଠା ଦିଗରେ ସମସ୍ତ ଉଦ୍ୟମକୁ ସେମାନେ ସ୍ୱାଗତ କରନ୍ତି; କିନ୍ତୁ ସଙ୍ଗେ ସଙ୍ଗେ ସେମାନଙ୍କର ମନରେ ସନ୍ଦେହ ଓ ଆଶଙ୍କା ବି ଉପୁଜିଥାଏ ଯେ ପୂର୍ବର ଆଧିପତ୍ୟ ବଜାୟରଖିବା ନିମନ୍ତେ ଏହା ହୁଏତ ଆଉ ଏକ କୌଶଳ ହୋଇପାରେ । ଏସିଆ ଓ ଆଫ୍ରିକାର ବିଶାଳ ଅଞ୍ଚଳମାନଙ୍କରେ ଆଜି ଯେଉଁମାନେ ବାସକରନ୍ତି, ସେମାନେ ଜାଗ୍ରତ, ଅତୃପ୍ତ ଓ ଉତ୍ତେଜିତ ଏବଂ ପ୍ରଚଳିତ ଅବସ୍ଥା ବରଦାସ୍ତକରିବା ପାଇଁ ଆଉ ପ୍ରସ୍ତୁତ ନୁହନ୍ତି । ଏସିଆରେ ବିଭିନ୍ନ ଦେଶର ପରିସ୍ଥିତି ଓ ସମସ୍ୟା ବିଭିନ୍ନ; କିନ୍ତୁ ଏହି ବିଶାଳ ଭୂଖଣ୍ଡରେ—ଚୀନ ଓ ଭାରତରେ, ଦକ୍ଷିଣ-ପୂର୍ବ ଏସିଆରେ, ପଶ୍ଚିମ-ଏସିଆରେ ଓ ଆରବ ଦୁନିଆଁରେ ଭାବାବେଗର ଏକ ଅଦୃଶ୍ୟ ସୂତ୍ର ସମସ୍ତଙ୍କୁ ବାନ୍ଧିରଖିଛି ।

ୟୁରୋପ ଯେବେ ଅନଗ୍ରସର ଥିଲା ଓ ବହୁ ପର୍ଯ୍ୟାୟରେ ଅନ୍ଧକାରାବୃତ ରହିଥିଲା, ତାର ହଜାରେ ବର୍ଷ ପୂର୍ବରୁ କିମ୍ବା ଆହୁରି ଆଗରୁ ମଣିଷର ପ୍ରଗତିଶୀଳ ଚେତନାର ପ୍ରତିନିଧିତ୍ୱ କରୁଥିଲା ଏସିଆ । ଯୁଗ ପରେ ଯୁଗଧରି ଏକ ଭାସ୍ୱର ସଂସ୍କୃତି ଅମ୍ଳାନ୍ ରହିଥିଲା ଏବଂ ସଭ୍ୟତା ଓ ଶକ୍ତିର ମହାନ୍ କେନ୍ଦ୍ରମାନ ଗଢ଼ିଉଠିଥିଲା । ପ୍ରାୟ ପାଞ୍ଚଶହ ବର୍ଷ ପୂର୍ବେ ୟୁରୋପ ଅନ୍ଧକାର ଭିତରୁ ଉଠିଆସିଲା ଏବଂ ଧୀରେ ଧୀରେ ପୂର୍ବ ଓ ପଶ୍ଚିମ ଦିଗକୁ ବିସ୍ତୃତ ହେବାକୁ ଲାଗିଲା; ମାତ୍ର କେତୋଟି ଶତାବ୍ଦୀ ଭିତରେ ଶକ୍ତି, ସମ୍ପଦ ଓ ସଂସ୍କୃତି ଦୃଷ୍ଟିରୁ ୟୁରୋପ ବିଶ୍ୱରେ ପ୍ରମୁଖ ମହାଦେଶ ହୋଇଉଠିଲା । ଏହି ପରିବର୍ତ୍ତନ କୌଣସି ‘ଚକ୍ରବତ୍ ପରିବର୍ତ୍ତନ୍ତେ’ ଧାରା ଅନୁସରଣ କରିଥିଲା କି ? ବର୍ତ୍ତମାନ ସେହି ପ୍ରକ୍ରିୟା ଏସିଆ ପକ୍ଷରେ ଅନୁକୂଳ ଅବସ୍ଥା ସୃଷ୍ଟିକରିବ କି ? ଏକଥା ନିଶ୍ଚୟ ଯେ ଦୂରପଶ୍ଚିମ ଓ ପୂର୍ବୟୁରୋପରେ ଶକ୍ତି ଓ ପ୍ରଭୁତ୍ୱ ଅଧିକତଃ ଆମେରିକା ଦିଗକୁ ଗଲିଛି । ପୂର୍ବୟୁରୋପ କେବେହେଲେ ୟୁରୋପୀୟ ଐତିହ୍ୟର ଅଂଶବିଶେଷ ନଥିଲା । ପୂର୍ବ ଦିଗରେ ମଧ୍ୟ ମାଇବେରିଆରେ ବିପୁଳ ଉନ୍ନତି ସାଧିତ ହେଲାଣି ଏବଂ ସେ ଦିଗରେ ଅନ୍ୟାନ୍ୟ ଦେଶମାନେ ମଧ୍ୟ ପରିବର୍ତ୍ତନ ତଥା ଦ୍ରୁତ ଅଗ୍ରଗତି ନିମନ୍ତେ ପ୍ରସ୍ତୁତ ହେଲେଣି । ଭବିଷ୍ୟତରେ ସଙ୍ଘର୍ଷ ଉପୁଜିବ ନା ପୂର୍ବ ଓ ପଶ୍ଚିମ ଭିତରେ ଏକ ନୂତନ ଭାରସାମ୍ୟ ସ୍ଥାପିତ ହେବ ?

କେଉଁ ଦୂର ଭବିଷ୍ୟତରେ କେବଳ ଏହାର ମୀମାଂସା ହୋଇପାରିବ ଏବଂ ସେତେ ଦୂରକୁ ଦେଖିବାର କୌଣସି ଆବଶ୍ୟକତା ନାହିଁ; କାରଣ ସେଥିଦ୍ୱାରା ଆମର ସାମ୍ପ୍ରତିକ କୌଣସି ଉଦ୍ଦେଶ୍ୟ ସିଦ୍ଧ ହେବାକୁ ଯାଉନି । ବର୍ତ୍ତମାନ ନିମନ୍ତେ ଆମକୁ ଏ ସମୟର ବୋଝ ବହନ କରିବାକୁ ପଡ଼ିବ ଏବଂ ଯେଉଁସବୁ ସମସ୍ୟା ଆମକୁ ପୀଡ଼ିତ କରୁଛି ଧୈର୍ଯ୍ୟ ସହକାରେ ସେଥିରୁ ମୁକ୍ତହେବାର ପନ୍ଥା ଉଦ୍ଭାବନ କରିବାକୁ ପଡ଼ିବ । ଅନ୍ୟାନ୍ୟ ବହୁ ଦେଶରେ ଯେପରି ଭାରତରେ ମଧ୍ୟ ସେପରି ଏହି ସବୁ ସମସ୍ୟା ପଛରେ ପ୍ରକୃତ ଗୁରୁତ୍ୱପୂର୍ଣ୍ଣ ବିଷୟ ଯାହା ତାହା ଊନବିଂଶ ଶତକର ୟୁରୋପୀୟ ଶୈଳୀ ଗଣତନ୍ତ୍ର ପ୍ରତିଷ୍ଠା କେବଳ ନୁହେଁ, ବରଂ ଦୂରପ୍ରସାରୀ ସାମାଜିକ ବିପ୍ଳବ ମଧ୍ୟ । ଅପାତଦୃଷ୍ଟିରେ ଅନିବାର୍ଯ୍ୟ, ସେହି ପରିବର୍ତ୍ତନରେ ଗଣତନ୍ତ୍ର ନିଜେ ଜଡ଼ିତ ହୋଇଯାଇଛି ଏବଂ ସେଥିହେତୁରୁ ଯେଉଁମାନେ ଦୂରପ୍ରସାରୀ

ସାମାଜିକ ବିପ୍ଲବ ପସନ୍ଦ କରନ୍ତି ନାହିଁ ଗଣତନ୍ତ୍ରର ସମ୍ଭାବ୍ୟତା ସମ୍ପର୍କରେ ସେମାନଙ୍କ ମନରେ ସନ୍ଦେହ ତଥା ଅବିଶ୍ୱାସ ଜାତହେଉଛି ଏବଂ ଏହା ଫାଶିଷ୍ଟବାଦୀ ମନୋବୃତ୍ତି ଏବଂ ଗୋଟାଏ ସାମ୍ରାଜ୍ୟବାଦୀ ଦୃଷ୍ଟିଭଙ୍ଗୀ ବଜାୟରଖିବା ଦିଗରେ ଉତ୍ସାହ ଯୋଗାଉଛି । ଭାରତରେ ଆମର ଆଜିର ସବୁ କିଛି ସମସ୍ୟା—ସାମ୍ପ୍ରଦାୟିକ ଅଥବା ସଂଖ୍ୟାଲଘୁ ସମସ୍ୟା, ଭାରତୀୟ ରାଜନ୍ୟବର୍ଗ, ଧର୍ମଗତ ଗୋଷ୍ଠୀ ଓ ଜମିଦାରୀ ନ୍ୟସ୍ତସ୍ୱାର୍ଥ ଏବଂ ସର୍ବୋପରି ଭାରତରେ ବ୍ରିଟିଶ ପ୍ରଭୁତ୍ୱ ଓ ଶିଳ୍ପର ସୁପରିକଳ୍ପିତ ଭାବରେ ସୁରକ୍ଷିତ ସ୍ୱାର୍ଥ—ସବୁ କିଛି ପରିଶେଷରେ ସାମାଜିକ ପରିବର୍ତ୍ତନର ବିରୋଧରେ ମିଳିତ ହେଉଛି । ଆହୁରି ମଧ୍ୟ, ପ୍ରକୃତ ଗଣତନ୍ତ୍ରରେ ଏପରି ଏକ ପରିବର୍ତ୍ତନ ଆଡ଼କୁ ବାଟକଢ଼ାଇନେବାର ଅବକାଶ ଯେହେତୁ ରହୁଛି, ସେଥି ହେତୁରୁ ଗଣତନ୍ତ୍ର ପ୍ରତି ଆପତ୍ତି ଉଠୁଛି ଏବଂ ଭାରତର ଅବସ୍ଥା ପ୍ରତି ତାହା ଅନୁପଯୋଗୀ ବିବେଚିତ ହେଉଛି । ଅତଏବ, ଭାରତର ସବୁକିଛି ସମସ୍ୟା, ଅନ୍ୟ ଦେଶମାନଙ୍କଠାରୁ ବାହ୍ୟତଃ କେତେ ଭିନ୍ନ ପ୍ରତୀତ ହେଲେ ସୁଦ୍ଧା, ଚୀନ କିମ୍ବା ସ୍ପେନ୍ କିମ୍ବା ୟୁରୋପର ସେସବୁ ଦେଶ ତଥା ଅନ୍ୟାନ୍ୟ ଅଞ୍ଚଳର ବିବିଧ ସମସ୍ୟା ଭଳି ସାରତଃ ସମପ୍ରକୃତିକ ଯାହା ଯୁଦ୍ଧ ଆଲୋକକୁ ନେଇଆସିଛି । ୟୁରୋପର ବହୁ ପ୍ରତିରୋଧମୂଳକ ଆନ୍ଦୋଳନମାନଙ୍କରେ ଏହି ଦ୍ୱନ୍ଦ୍ୱ ପ୍ରକାଶ ପାଉଛି । ସର୍ବତ୍ର ସାମାଜିକ ଶକ୍ତିମାନଙ୍କର ପୁରାତନ ଭାରସାମ୍ୟ ଓଲଟପାଲଟ ହୋଇଯାଇଛି ଏବଂ ନୂତନ ଏକ ଭାରସାମ୍ୟ ସ୍ଥାପିତ ହେବାପର୍ଯ୍ୟନ୍ତ ଉତ୍ତେଜନା, ବିସମ୍ବାଦ ଓ ସଂଘର୍ଷ ବରାବର ରହିଥିବ । ଏ ମୁହୂର୍ତ୍ତର ଏସବୁ ସମସ୍ୟା ଦେଇ ଆମେ ଆମ କାଳରେ ପ୍ରଧାନ ସମସ୍ୟାମାନଙ୍କରେ ଉପନୀତ ହେଉଁ : ତାହା ହେଉଛି, ଗଣତନ୍ତ୍ରକୁ ସମାଜବାଦ ସଙ୍ଗେ ସମ୍ମିଳିତ କରାଯିବ କିପରି ? ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରରେ ଜନସାଧାରଣଙ୍କ ଯୋଜନାବଦ୍ଧ ଆର୍ଥିକ ଜୀବନ ଏବଂ କେନ୍ଦ୍ରିତ ସାମାଜିକ ନିୟନ୍ତ୍ରଣ ରକ୍ଷାକରିବା ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ସ୍ୱାଧୀନତା ଓ ବ୍ୟକ୍ତିଗତ ପ୍ରଚେଷ୍ଟା ବଜାୟ ରଖାଯିବ କିପରି ?

## ୧୩. ସ୍ୱାଧୀନତା ଓ ସାମ୍ରାଜ୍ୟ

ଆମେରିକା ଓ ସୋଭିଏତ୍ ୟୁନିଅନ୍ ଭବିଷ୍ୟତରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହେବା ଅବଶ୍ୟମ୍ଭାବୀ । ଦୁଇଟି ଅଗ୍ରଗାମୀ ଦେଶ ପରସ୍ପରଠାରୁ ଯେତେ ଭାବରେ ଭିନ୍ନ ହୋଇପାରନ୍ତି, ତାହା ଏ ଉଭୟ ମଧ୍ୟରେ ରହିଛି ଏବଂ ପ୍ରତ୍ୟେକର ତ୍ରୁଟି ବିଚ୍ୟୁତି ମଧ୍ୟ ବିପରୀତ ଧାରର । ଗୋଟାଏ ଶୁଦ୍ଧ ରାଜନୈତିକ ଗଣତନ୍ତ୍ରର ଯାହା କିଛି ସଦଗୁଣ ଆମେରିକାରେ ପ୍ରତୀୟମାନ; ରାଜନୈତିକ ଗଣତନ୍ତ୍ର ଅଭାବର ଯେତେ କିଛି ବଦ୍‌ଗୁଣ ସୋଭିଏତ୍ ୟୁନିଅନ୍‌ରେ ବର୍ତ୍ତମାନ । ତଥାପି, ନାନା ଭାବରେ, ଉଭୟ ମଧ୍ୟରେ ସାଦୃଶ୍ୟ ରହିଛି । ତାହା ହେଉଛି ଏକ ଗତିଶୀଳ ଦୃଷ୍ଟିଭଙ୍ଗୀ ଓ ବିପୁଳ ସମ୍ବଳ, ଶ୍ରେଣୀ କର୍କଶତାହୀନ ଏକ ସମାଜ, ମଧ୍ୟଯୁଗୀୟ ପୃଷ୍ଠଭୂମିର ଅବିଦ୍ୟମାନତା, ବିଜ୍ଞାନ ଓ ତାର ବିବିଧ ପ୍ରକାର ପ୍ରୟୋଗରେ ଆସ୍ଥା ଏବଂ ଜନସାଧାରଣଙ୍କ ନିମନ୍ତେ ଶିକ୍ଷା ଓ ସୁଯୋଗର ପରିବ୍ୟାପ୍ତି ।

ଆମେରିକାରେ, ଆସ୍ତ ଦିଗରେ ପ୍ରବଳ ଅସାମ୍ୟ ରହିଥିଲେ ସୁଦ୍ଧା ସେଠାରେ ଅନ୍ୟାନ୍ୟ ବହୁଦେଶ ଭଳି, ବର୍ଗ-ଭେଦ ନାହିଁ ଏବଂ ଗୋଟିଏ ପ୍ରକାର ସମାନତାବୋଧ ଦେଖିବାକୁ ମିଳେ । ରୁଷିଆରେ ଗତ କୋଡ଼ିଏ ବର୍ଷକୁ ନେଇ ପର୍ଯ୍ୟାଲୋଚନା କଲେ, ଜନସାଧାରଣଙ୍କର ଶିକ୍ଷା ତଥା ସଂସ୍କୃତି ଦିଗରେ ଅସାମାନ୍ୟ ସାଫଲ୍ୟ ସ୍ୱତଃ ଦୃଷ୍ଟିରେ ପଡ଼େ । ଏପରି ଭାବରେ, ଉଭୟ ଦେଶରେ ଗୋଟାଏ ପ୍ରଗତିଶୀଳ, ଗଣତାନ୍ତ୍ରିକ ସମାଜ ନିମନ୍ତେ ମୌଳିକ ଭିତ୍ତି ରହିଚି; କାରଣ ଆମେରିକା ଓ ରୁଷିଆ ଦେଶର ସମାଜ ଭଳି କୌଣସି ସମାଜ ସେପରି କୌଣସି ବ୍ୟବସ୍ଥା ଉପରେ ଭିତ୍ତି କରିନପାରେ, ଯେଉଁଠି ଗୋଟାଏ ଅଜ୍ଞ ତଥା ଉଦାସୀନ ଜାତି ଉପରେ ମୁଷ୍ଟିମେୟ ବୁଦ୍ଧିଜୀବୀ ଶାସନ କରିଥାନ୍ତି । ଅଧିକନ୍ତୁ ମଧ ଶିକ୍ଷା ଓ ସଂସ୍କୃତି ଦିଗରୁ ଉନ୍ନତ କୌଣସି ଜାତି ଉପରେ ମାତ୍ର କେତେଜଣ ବୁଦ୍ଧିଜୀବୀ ଦୀର୍ଘକାଳ ଧରି ଆଧିପତ୍ୟ ଚଳାଇ ନପାରନ୍ତି ।

ଶହେବର୍ଷ ତଳେ, ତାତ୍କାଳିକ ମାର୍କିନ୍‌ମାନଙ୍କ ସମ୍ବନ୍ଧେ ଚର୍ଚ୍ଚା କରିବାକୁ ଯାଇ ଡି. ତୋକ୍‌ଭିଲେ କହିଚନ୍ତି : "ଗୋଟାଏ ଦିଗରେ, ଗଣତାନ୍ତ୍ରିକ ନୀତି ଯଦି 'ବିଜ୍ଞାନ ପାଇଁ ବିଜ୍ଞାନର ଗବେଷଣା' ନିମନ୍ତେ ଲୋକଙ୍କୁ ପ୍ରବୃତ୍ତ ନକରେ, ଅନ୍ୟଦିଗରେ ଯେଉଁମାନେ ବିଜ୍ଞାନ ଗବେଷଣା କରନ୍ତି ସେମାନଙ୍କର ସଂଖ୍ୟା ପ୍ରଭୂତ ଭାବରେ ବଢ଼ାଇଦିଏ । ଗଣତନ୍ତ୍ରର ସାମାଜିକ ଅବସ୍ଥା ତଥା ବିଭିନ୍ନ ସଂସ୍ଥା ବିବିଧ ବିଜ୍ଞାନର ଜରୁରି ତଥା ଉପଯୋଗୀ ବାସ୍ତବ ଫଳ ନିମନ୍ତେ ପ୍ରସ୍ତୁତ କଲାବେଳେ, ଜନସାଧାରଣଙ୍କ ଚଳଣିର ସ୍ଥାୟୀ ଅସମାନତା ବିଜ୍ଞାନୀଙ୍କୁ ବିମୂର୍ତ୍ତି ସତ୍ୟର ନିଷ୍ଫଳ ତଥା ନିରର୍ଥକ ଅନୁସନ୍ଧାନରେ ବ୍ୟାପୃତ ରଖେ । ଏହି ମନୋବୃତ୍ତି ସ୍ୱାଭାବିକ ଓ ଅବଶ୍ୟମ୍ଭାବୀ ।" ସେହିଦିନରୁ ଆମେରିକା ଉନ୍ନତି କରିଚି, ପରିବର୍ତ୍ତିତ ହୋଇଚି ଓ ନାନା ଜାତିର ଏକ ସମ୍ମିଶ୍ରଣ ଭାବରେ ଦେଖାଦେଇଚି । ତଥାପି ତାର ଯାହା କିଛି ମୌଳିକ ବୈଶିଷ୍ଟ୍ୟ ବଜାୟ ରହିଚି ।

ଆମେରିକା ଓ ରୁଷିଆ ଉଭୟ ପକ୍ଷରେ ସମାନ ଆଉ ଏକ ବୈଶିଷ୍ଟ୍ୟ ହେଉଚି ଯେ ଅତୀତର ଯେଉଁ ବୋଝ ଏସିଆ ୟୁରୋପର ବିବିଧ କାର୍ଯ୍ୟକଳାପ ଓ ବୃଦ୍ଧିକୁ ବହୁ ପରିମାଣରେ ନିୟନ୍ତ୍ରଣ କରେ, ତାହା ସେମାନଙ୍କୁ ବହନ କରିବାକୁ ପଡ଼ିନାହିଁ । ତେବେ, ଆମେ ସମସ୍ତେ ଯେପରି, ସେମାନେ ମଧ ଏହି ପୂରୁଷର ଘୋର ଦାୟିତ୍ୱରୁ ମୁକ୍ତ ହୋଇ ନପାରନ୍ତି । ତଥାପି ଅନ୍ୟ ଜାତିମାନଙ୍କ ସଙ୍ଗେ ତୁଳନା କରି ଦେଖିଲେ, ସେମାନଙ୍କର ଅତୀତ ଅଧିକତର ସ୍ପଷ୍ଟ ଏବଂ ଭବିଷ୍ୟତ ଭିତରକୁ ଯାତ୍ରାକରିବା ପଥରେ ଆମ୍ଭମାନଙ୍କ ଭଳି ସେମାନଙ୍କର ସେତେ କିଛି ବନ୍ଧନ ନାହିଁ ।

ଏହା ଫଳରେ ସେମାନେ ଅନ୍ୟାନ୍ୟ ଦେଶ ସଙ୍ଗେ ସମ୍ପର୍କ ସ୍ଥାପନ ଏକ ସହଜ ଭାବରେ କରିପାରିବେ କାରଣ ସୁପ୍ରତିଷ୍ଠିତ ସାମ୍ରାଜ୍ୟବାଦୀ ଜାତିମାନେ ଅନ୍ୟ ଦେଶମାନଙ୍କ ସଙ୍ଗେ ସମ୍ପର୍କ ସ୍ଥାପନ କରିବାକୁ ଗଲାବେଳେ ପରସ୍ପର ପ୍ରତି ଅବିଶ୍ୱାସର ଯେଉଁ ପୃଷ୍ଠଭୂମି ଅଖଣ୍ଡ ଭାବରେ ରହିଥାଏ ତାହା ଆମେରିକା କିମ୍ବା ରୁଷିଆର ନାହିଁ । ସେମାନଙ୍କର ଅତୀତ ନାନାବିଧ ସନ୍ଦେହ ଓ କଳଙ୍କରୁ ମୁକ୍ତ ବୋଲି ମୁଁ କହୁନି । ଆମେରିକାରେ ନିଗ୍ରୋ ସମସ୍ୟା

ରହିଛି ଯାହା ସେମାନଙ୍କର ବିଘୋଷିତ ଓ ଆଚରିତ ଗଣତନ୍ତ୍ର ଓ ସମାନତା ନୀତିକୁ କ୍ଷୁଣ୍ଣ କରୁଛି । ପୂର୍ବ ୟୁରୋପରେ ଅତୀତରୁ ସେମାନଙ୍କ ପ୍ରତି ଯେଉଁ ଘୃଣାଭାବ ରହି ଆସିଛି ଏବଂ ବର୍ତ୍ତମାନର ଯୁଦ୍ଧ ଯାହା ବୃଦ୍ଧି କରୁଛି ତାହା ଦୃଗକଠାବା-ରସିଆନ୍‌ମାନଙ୍କ ପକ୍ଷରେ ବଡ଼ ଗୁରୁତ୍ୱପୂର୍ଣ୍ଣ । ତଥାପି ଅନ୍ୟାନ୍ୟ ଦେଶରେ ମାର୍କିନ୍‌ମାନେ ସହଜରେ ମିତ୍ରତା କରିପାରିଥାନ୍ତି । ଆଉ ରସିଆନ୍‌ମାନଙ୍କର ଜାତିଭେଦ ବିଚାର ନାହିଁ କହିଲେ ଚଳେ ।

ୟୁରୋପର ଅଧିକାଂଶ ଜାତି, ଅତୀତରେ ବହୁ ବିବାଦ ଓ ଅବିଚାର ଯୋଗୁଁ ପରସ୍ପର ପ୍ରତି ଘୃଣାଭାବ ପୋଷଣ କରନ୍ତି । ଏହା ବ୍ୟତୀତ ପରାଧୀନ ଜାତିମାନେ ସେମାନଙ୍କର ଶାସକ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କୁ ଯେପରି ଘୃଣା କରନ୍ତି ତାହା ଅତି ତୀବ୍ର । ୟୁରୋପୀୟ ଜାତିମାନଙ୍କ ମଧ୍ୟରେ ସାମ୍ରାଜ୍ୟବାଦୀ ଶାସକ ଭାବରେ ଇଂଲଣ୍ଡ ଯେହେତୁ ଅପେକ୍ଷାକୃତ ପୁରାତନ, ଏହି ଦିଗରେ ତାର ବୋଝ ଅନ୍ୟମାନଙ୍କ ଅପେକ୍ଷା ଅଧିକ ଓଜନଦାର । ଏହି କାରଣରୁ ହେଉ, କିମ୍ବା ଜାତିଗତ ସ୍ୱଭାବିକତା ଯୋଗୁଁ ହେଉ, ଇଂରେଜ ସ୍ୱଭାବତଃ ଗମ୍ଭୀର ଓ ସ୍ପର୍ଶବିମୁଖ ଏବଂ ସହଜରେ ଅନ୍ୟମାନଙ୍କ ସଙ୍ଗେ ବନ୍ଧୁତା କରିପାରେ ନାହିଁ । ଦୁର୍ଭାଗ୍ୟର କଥା ଯେ ସେମାନଙ୍କ ଦେଶ ବାହାରେ ସେମାନେ ଉପନିବେଶମାନଙ୍କରେ ନିଯୁକ୍ତ ଥିବା ଇଂରେଜ ଆଚାରବିଚାରଦ୍ୱାରା ବିବେଚିତ ହୋଇଥାନ୍ତି । ଏହି କର୍ମଚାରୀମାନେ ସେମାନଙ୍କର ସଂସ୍କୃତି କିମ୍ବା ଉଦାରପନ୍ଥୀ ରାଜନୀତିର ଧ୍ୱଜାଧାରୀ ନୁହନ୍ତି । ବହୁଧା ଏମାନଙ୍କଠାରେ ଏକ ବାହ୍ୟ କର୍ତ୍ତବ୍ୟବୋଧ ଓ ଚତୁରତା ମିଶି ରହିଥାଏ । ଏହି କର୍ମଚାରୀମାନେ ଅନ୍ୟମାନଙ୍କୁ ପରିପନ୍ଥୀ କରିବାର କୌଶଳ ଭଲ ଭାବରେ ଜାଣନ୍ତି । କେତେ ମାସ ତଳେ ଭାରତ-ସରକାରଙ୍କ ଜଣେ ସେକ୍ରେଟାରୀ ଗାନ୍ଧିଜୀଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଥିଲେ । ଗାନ୍ଧିଜୀ ସେତେବେଳେ ନଜରବନ୍ଦୀ ଭାବରେ ଥାଆନ୍ତି । ସେହି ପତ୍ରଟି ସୁଚିନ୍ତିତ ଔଦ୍ଧତ୍ୟର ଏକ ସୁନ୍ଦର ନମୁନା ଏବଂ ଭାରତୀୟମାନେ ତାକୁ ଜାତି ପ୍ରତି ଏକ ପ୍ରକାଶ୍ୟ ଅପମାନ ମନେକଲେ । କାରଣ ଗାନ୍ଧିଜୀ ଭାରତର ପ୍ରତୀକ ।

ସାମ୍ରାଜ୍ୟବାଦର ଆଉ ଏକ ଯୁଗ ନା ଅନ୍ତର୍ଜାତିକ ସହଯୋଗର ଏକ ଯୁଗ ନା ବିଶ୍ୱ କମନ୍‌ୱେଲ୍‌ଥ ବା ରାଷ୍ଟ୍ରସଙ୍ଘ—ଏଥିରୁ କେଉଁଟି ଭବିଷ୍ୟତରେ ସମ୍ଭବ ହେବ ? ଯେପରି ଜଣାଯାଉଛି, ସାମ୍ରାଜ୍ୟବାଦୀ ଯୁଗର ସୂଚନା ମିଳୁଛି ଏବଂ ବହୁ ପୁରାତନ ଯୁକ୍ତିର ପୁନରାବୃତ୍ତି କରାଯାଉଛି । ତେବେ, ସେ ଯୁକ୍ତିରେ ପୂର୍ବର ସରଳତା ଆଉ ନାହିଁ । ମାନବ ଜାତିର ଯାହାସବୁ ନୈତିକ ଆବେଗ ଓ ତାର ତ୍ୟାଗ ଅତି ହୀନଧରଣର ଲକ୍ଷ୍ୟ ସାଧନ ଦିଗରେ ବ୍ୟବହୃତ ହେଉଛି । ଶାସକମାନେ ମନ୍ଦ ଉଦ୍ଦେଶ୍ୟରେ ମଣିଷର ସାଧୁତା ଓ ମହତପଣିଆରୁ ଲାଭ ଉଠାଉଛନ୍ତି ଏବଂ ଜନସାଧାରଣଙ୍କର ଭୟ, ଘୃଣା ଓ ମିଥ୍ୟା ଉଚ୍ଚାଭିଳାଷର ସୁଯୋଗ ନେଉଛନ୍ତି । ପୂର୍ବ କାଳରେ ସାମ୍ରାଜ୍ୟ ବିଷୟରେ ସେମାନେ ଖୁବ୍ ଖୋଲାଖୋଲି ଭାବରେ କହି ପାରୁଥିଲେ । ଏଥେନୀୟ ସାମ୍ରାଜ୍ୟ ସମ୍ପର୍କରେ କହିବାକୁ ଯାଇ ଥୁସିଡାଇଡ଼ସ୍ ଲେଖିଥିଲେ—"ଆମେ ବର୍ବରମାନଙ୍କୁ ଏକା ଏକା ପରାଜିତ କଲୁ କିମ୍ବା ଆମର ସଭ୍ୟତା ଓ ଆମର ପ୍ରଜାଙ୍କ ନିମନ୍ତେ ଆମେ ଆମର ଅସ୍ତିତ୍ୱ ପର୍ଯ୍ୟନ୍ତ ବିପନ୍ନ କରିଥିଲୁ ବୋଲି ସାମ୍ରାଜ୍ୟ

ଉପରେ ଆମର ଅଧିକାର ସମ୍ପର୍କରେ ଆମେ କୌଣସି କୈଫିୟତ ଦେବାକୁ ଯାଉନୁ । ବ୍ୟକ୍ତି ହେଉ କି ରାଷ୍ଟ୍ର ହେଉ ଉଚିତ ଭାବରେ ନିଜର ନିରାପତ୍ତା ବ୍ୟବସ୍ଥା ଯଦି ସେ କରେ, ନିନ୍ଦାର ପାତ୍ର ସେ ନୁହେଁ । ଆମେ ଯଦି ଆଜି ସିସିଲିରେ ଅଧିଷ୍ଠିତ ହେଉଥାଉଁ ତାହା କେବଳ ଆମର ନିରାପତ୍ତା ଦୃଷ୍ଟିରୁ । ଗ୍ରୀସ୍‌ରେ ଆମ ସାମ୍ରାଜ୍ୟକୁ ଜାବୁଡ଼ି ରଖିବା ପାଇଁ ଭୟ ଆମକୁ ବାଧ୍ୟ କରୁଛି ଏବଂ ଭୟ ହିଁ ଆମକୁ ଏଠାକୁ ତଡ଼ିଆଣିଛି, ଆମ ମିତ୍ରମାନଙ୍କ ସାହାଯ୍ୟରେ, ସିସିଲିରେ ଶାନ୍ତିଶୃଙ୍ଖଳା ରକ୍ଷାକରିବା ପାଇଁ ।'' ପୁନରପି ଏଥେନୀୟ ଉପନିବେଶଗୁଡ଼ିକର ଉପଢୌକନ ପ୍ରସଙ୍ଗରେ ସେ ଲେଖିଲେ : ''ଏଥି ଉପରେ ବିଜୟ ହାସଲକରିବା ହୁଏତ ପାପାତ୍ମର ପ୍ରତୀତ ହୋଇପାରେ; କିନ୍ତୁ ବର୍ତ୍ତମାନ ହାତରୁ ଛାଡ଼ିଦେବା ମସ୍ତବଡ଼ ଭୁଲ ହେବ ।''

ଗଣତନ୍ତ୍ର ସଙ୍ଗେ ସାମ୍ରାଜ୍ୟର ଅସଙ୍ଗତି, ତାର ଉପନିବେଶ ଉପରେ ଗୋଟାଏ ଗଣତାନ୍ତ୍ରିକ ରାଷ୍ଟ୍ରର ଉତ୍ପୀଡ଼ନ ଏବଂ ସାମ୍ରାଜ୍ୟର ଦ୍ରୁତ ଅବନତି ଓ ପତନ ଆଦି ନାନା ଶିକ୍ଷଣୀୟ ବିଷୟରେ ଏଥେନ୍‌ସର ଇତିହାସ ପୂର୍ଣ୍ଣ । ଥୁସିଡାଇଡସ୍ ଭଳି ଆଜି ସ୍ୱାଧୀନତା ତଥା ସାମ୍ରାଜ୍ୟର କୌଣସି ରକ୍ଷକ ଏତେ ପ୍ରାଞ୍ଜଳ ତଥା ଅନର୍ଗଳ ଭାବରେ ତାର ବକ୍ତବ୍ୟ ବ୍ୟକ୍ତ କରି ନପାରେ : ''ଆମେ ସଭ୍ୟତାର ନେତୃତ୍ୱ କରୁଁ ଏବଂ ଆମେ ମାନବ ଜାତିର ପଥ-ପ୍ରଦର୍ଶକ । ଆମର ସମାଜ ଓ ଆମର ସମ୍ପର୍କ ଅପେକ୍ଷା ଅଧିକ କିଛି ବଡ଼ ଆଶୀର୍ବାଦ ମଣିଷର ଦେବାପାଇଁ ନାହିଁ । ଆମ ପ୍ରଭାବର ପରିସର ଭିତରେ ରହିବା ଅର୍ଥ ପରାଧୀନତା ନୁହେଁ; ତାହା ଏକ ଗୌରବ । ଆମେ ଲୋକଙ୍କୁ ଯେଉଁ ସମୃଦ୍ଧିର ଅଧିକାରୀ କରିଛି ତାହା ପରିଶୋଧ କରିବାକୁ ହେଲେ ପ୍ରାଚ୍ୟ ଭୂଖଣ୍ଡର ସମସ୍ତ ସମ୍ପଦ ନିଅଣ୍ଟ ହେବ । ଅତଏବ, ଆମେ ଆନନ୍ଦ ମନରେ କାର୍ଯ୍ୟ କରିପାରୁ । ସମସ୍ତ ଧନ ଓ ସମସ୍ତ ସାଧନ ଯାହା ଆମ ପାଖରେ ଅଛି, ସେମାନଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ, ଆମର ହିଁ ଜୟ ହେବ । କାରଣ ବହୁ ଉଦ୍ୟମ ଓ ଦୁଃଖଭୋଗ ଭିତର ଦେଇ ଆମେ ମଣିଷ-ଶକ୍ତିର ରହସ୍ୟ ଉଦ୍‌ଘାଟନ କରିପାରିଚୁ । ଆଉ ତାହା ହିଁ ସୁଖଲାଭର ସୂତ୍ର । ଲୋକେ ଭିନ୍ନ ଭିନ୍ନ ନାମରେ ସେ ବିଷୟରେ ଅନୁମାନ କରିଚନ୍ତି କିନ୍ତୁ ଆମେ କେବଳ ତାହା ଉପଲବ୍ଧି କରିବାର ଶିକ୍ଷାକଲୁ ଏବଂ ଆମର ନଗରୀରେ ତାହା ସହଜରେ ବ୍ୟବହାର କଲୁ । ଯେଉଁ ନାମଦ୍ୱାରା ଆମେ ତାହାକୁ ଜାଣୁ ତାହା ହେଉଛି ସ୍ୱାଧୀନହେବା । ସ୍ୱାର୍ଥ ସାଧନର ସର୍ତ୍ତ ନରଖି, ସ୍ୱାଧୀନତାର ନିର୍ଭୀକ ବିଶ୍ୱାସ ଉପରେ, ଆମେ ମଣିଷ ଜାତି ମଧ୍ୟରେ ଆମର ଉପହାରମାନ ବାଣ୍ଟିକି ବଣ୍ଟନ କରୁଁ ବୋଲି ତୁମେ କ'ଣ ବିସ୍ମିତ ?''

ଆଜିର କାଳରେ ସ୍ୱାଧୀନତା ଓ ଗଣତନ୍ତ୍ର ବିଷୟରେ ଯେତେ ଉଚ୍ଚକଣ୍ଠରେ ଘୋଷଣା କରାଯାଉଚି ଅଥଚ ମାତ୍ର କେତେକଙ୍କ ନିମନ୍ତେ କେବଳ ତାହା ପ୍ରଯୁଜ୍ୟ ହେଉଚି, ଥୁସିଡାଇଡିସ୍‌ଙ୍କ ସ୍ୱରରେ ପ୍ରତିସ୍ୱର ଅଭାବ ମିଳୁଚି । ଥୁସିଡାଇଡିସ୍‌ଙ୍କ ଦୃଷ୍ଟି ମଧ୍ୟୋପସାଗରୀୟ ଦେଶମାନଙ୍କ ଉପରେ ଆବଦ୍ଧ ଥିଲା ଏବଂ ବିଶ୍ୱର ଅନ୍ୟାନ୍ୟ ମାନବତା ସମ୍ପର୍କରେ ସେ ଜ୍ଞାତ ନଥିଲେ । ତାଙ୍କର ବିଖ୍ୟାତ ନଗରୀର ସ୍ୱାଧୀନତା ନେଇ ଗର୍ବିତ, ସେ ଏହି ସ୍ୱାଧୀନତାକୁ

ମାନବର ଶକ୍ତି ଓ ସ୍ୱାଧୀନଚ୍ଛନ୍ଦ୍ୟର ସ୍ୱର୍ଗ ବୋଲି ପ୍ରଶଂସା କରିଥିଲେ । କିନ୍ତୁ ଏ ପ୍ରକାର ସ୍ୱାଧୀନତା ଯେ ଅନ୍ୟମାନେ ବି କାମନା କରିପାରନ୍ତି, ସେ କଥା ସେ ବୁଝି ପାରି ନାହାନ୍ତି । ସ୍ୱାଧୀନତା ଅନୁରାଗୀ ଏଥେନ୍ସ ମେଲୋସ୍‌କୁ ଧ୍ୱସ୍ତବିଧ୍ୱସ୍ତ କଲା, ସମସ୍ତ ପ୍ରାପ୍ତବୟସ୍କ ପୁରୁଷଙ୍କୁ ମରଣ-ରାଜ୍ୟକୁ ପ୍ରେରଣ କଲା ଏବଂ ସ୍ତ୍ରୀ ଓ ଶିଶୁମାନଙ୍କୁ ଦାସଭାବରେ ବିକି କଲା । ଏଥେନ୍ସର ସ୍ୱାଧୀନତା ଓ ସାମ୍ରାଜ୍ୟ ସମ୍ପର୍କରେ ଥୁସିଡ଼ାଇଡ଼ସ୍ ଲେଖିଲାବେଳେ ମଧ୍ୟ ସେହି ସାମ୍ରାଜ୍ୟ ଭୁଶୁଡ଼ି ପଡ଼ିଥିଲା ଏବଂ ସେହି ସ୍ୱାଧୀନତା ଅର୍ଥହୀନ ହୋଇ ଉଠିଥିଲା ।

ଏଥିର କାରଣ ହେଉଛି, ସ୍ୱାଧୀନତା ସଙ୍ଗେ ଆଧିପତ୍ୟ ଓ ଦାସତ୍ୱ ଦୀର୍ଘକାଳ ଧରି ମିଳିତ ରଖିବା ସମ୍ଭବ ନୁହେଁ । ଗୋଟିଏ ଅନ୍ୟଟିକୁ ଅଭିଭୂତ କରିବସେ ଏବଂ ସାମ୍ରାଜ୍ୟର ଗୌରବ ଗରିମା ଓ ତାର ପତନ ମଧ୍ୟରେ ଖୁବ୍ ଅଳ୍ପ ସମୟର ବ୍ୟବଧାନ ରହିଥାଏ । ପୂର୍ବେ ଯେପରି ଥିଲା ତା'ଠାରୁ ଅଧିକ ଭାବରେ ଆଜି ସମସ୍ତେ ବୁଝୁଛନ୍ତି ଯେ ସ୍ୱାଧୀନତା ଓ ମୁକ୍ତ ଅବିଭାଜ୍ୟ । ପେରିକ୍ଲିସ୍ ନିଜର ପ୍ରିୟତମ ନଗରୀର ଗୌରବମୟ ବନ୍ଦନା ଗାନକରିବା ପରେ ପରେ ହିଁ ତାର ପତନ ଘଟିଲା ଓ ସ୍ପାର୍ଟା ବାହିନୀ ଏକ୍ରୋପୋଲିସ୍ ଦଖଲ କରିଥିଲେ । ତଥାପି, ଗ୍ରୀକ୍‌ମାନଙ୍କର ସୌନ୍ଦର୍ଯ୍ୟବୋଧ, ଜ୍ଞାନାନୁରାଗ, ସ୍ୱାଧୀନତାପ୍ରୀତି ଓ ସାହସିକତା, ପେରିକ୍ଲିସ୍‌ଙ୍କ ଭାଷାରେ ଯାହା ରୂପାୟିତ ହୋଇଛି, ଆଜି ବି ଆମ ହୃଦୟକୁ ସ୍ପର୍ଶ କରେ । ଏକଥା ତାଙ୍କ ସମୟର ଏଥେନ୍ସ ପ୍ରତି କେବଳ ନୁହେଁ, ବରଂ ଏକ ବୃହତ୍ତର ପ୍ରକରଣରେ ମଧ୍ୟ ତାହା ପ୍ରଯୁଜ୍ୟ : "ଆମେ ସୌନ୍ଦର୍ଯ୍ୟର ପ୍ରେମିକ କିନ୍ତୁ ଏଥିରେ କୌଣସି ଅମିତାଚାର ବା ବାହୁଲ୍ୟ ନାହିଁ, ଆମେ ଜ୍ଞାନର ପିପାସୀ କିନ୍ତୁ ଆମେ ପୌରୁଷହୀନ ନୋହୁଁ । ସମ୍ପଦ ଆମ ପକ୍ଷରେ ଦାମ୍ଭିକତାର ଉପାଦାନ କେବଳ ନୁହେଁ ବରଂ କୌଣସି ଉଦ୍ୟମରେ କୃତକାର୍ଯ୍ୟ ହେବା ନିମନ୍ତେ ଏକ ସୁଯୋଗ । ଦରିଦ୍ରତା ସ୍ୱୀକାରକରିବା ଲଜ୍ଜାର କାରଣ ବୋଲି ଆମେ ବିବେଚନା କରୁନା; କିନ୍ତୁ ଆମେ ଜାଣୁ ଯେ ସେଥିରୁ ମୁକ୍ତିନିମନ୍ତେ କୌଣସି ଉଦ୍ୟମ ନ କରିବା ପ୍ରକୃତ ଅଧୋଗତିର ହେତୁ···ରଣକ୍ଷେତ୍ରରେ ସାହସିକତା ପ୍ରଦର୍ଶନ କରିବା କେତେ ନ୍ୟାଯ୍ୟ ଓ ଉନ୍ନତ ଚରିତ୍ରର ପରିଚାୟକ—ଏପରି ବହୁ କଥିତ ଉକ୍ତିରୁ କେବଳ ନୁହେଁ, ବରଂ ଆମ ଆଗରେ ବିସ୍ତୃତ, ଆମର ଏହି ମହାନ୍ ନଗରୀର କର୍ମମୁଖର ଜୀବନରେ, ଦର୍ଶନମାନେ ତାର ପ୍ରତି ଅନୁରାଗୀ ହେବାରେ ଏବଂ ତାର ଏ ସମସ୍ତ ମହାନତା ନିମନ୍ତେ କେତେ ଯୋଦ୍ଧାର ଅପୂର୍ବ ସାହସ, କେତେ ଜ୍ଞାନୀର କର୍ତ୍ତବ୍ୟବୋଧ ଓ କେତେ ସଦାଚାରୀର ଆତ୍ମସଂଯମ ଯେ ଦାୟୀ ସେ କଥା ସ୍ମରଣ କରିବାରେ ଅର୍ଥାତ୍ ସେହିମାନଙ୍କ କଥା ସ୍ମରଣ କରିବାରେ ଯେଉଁମାନେ, କୌଣସି ପରୀକ୍ଷାରେ ବିଫଳହେଲେ ସୁଦ୍ଧା, ସେମାନଙ୍କ ସେବାରୁ ଏହି ନଗରୀକୁ ବଞ୍ଚିତକରିବା ପସନ୍ଦ କରିନାହାନ୍ତି ଏବଂ ତାର ଉଦ୍ଦେଶ୍ୟରେ ଶ୍ରେଷ୍ଠ ନୈବେଦ୍ୟ ଭାବରେ ନିଜ ନିଜ ଜୀବନ ଅର୍ପଣ କରିଛନ୍ତି, ପ୍ରେରଣା ନିହିତ ଅଛି । ଅତଏବ, ସେମାନେ ସେମାନଙ୍କର କମନଓ୍ୱେଲ୍‌ଥ ନିମନ୍ତେ ନିଜର ଶରୀର ଉତ୍ସର୍ଗ କଲେ ଓ ବିନିମୟରେ ଯେଉଁ ପ୍ରଶଂସା ଓ ସ୍ମାରକ ଲାଭକଲେ ତାହା ଅମର ରହିଲା । ସଙ୍ଗେ ସଙ୍ଗେ ଯେ ସେମାନଙ୍କୁ ସେହି ମର୍ଯ୍ୟାଦାପୂର୍ଣ୍ଣ ସ୍ମାରକ ଲାଭ ହେଲା ଯେଉଁଥିରେ ସେମାନଙ୍କର

ଦେହାବଶେଷ ସଂରକ୍ଷିତ ହୋଇଛି, ସେପରି ଅବଶ୍ୟ ନୁହେଁ, କିନ୍ତୁ ସେହି ସ୍ମାରକ ଯାହା ଲୋକଙ୍କ ମନରେ ରହିଛି ଆଉ ସେଉଁଠି ତାର ଗୌରବ ସଦା ସର୍ବଦା ଓ ସମୁଜ୍ଜ୍ୱଳ ଏବଂ ଅବସର ଅନୁସାରେ ବଡ଼ କିଛି କାର୍ଯ୍ୟ ନିମନ୍ତେ ଯାହା ପ୍ରେରଣା ଦାନକରୁଛି । କାରଣ ସମଗ୍ର ବିଶ୍ୱ ମହାପୁରୁଷମାନଙ୍କର ଗୋଟାଏ ସ୍ମାରକ ଏବଂ ସେମାନଙ୍କର ଚରିତ୍ର ଜନ୍ମଭୂମିରେ ଶିଳା ଦେହରେ ଖୋଦିତ ହୋଇ କେବଳ ନାହିଁ, ବରଂ ଦୂରଦୂରାନ୍ତରେ, ବାହ୍ୟତଃ ଦୃଷ୍ଟିଗୋଚର ନହେଲେ ସୁଦ୍ଧା, ଅନ୍ୟମାନଙ୍କ ଜୀବନରେ ଜୀବିତ ରହିଛି । ବର୍ତ୍ତମାନ ତୁମମାନଙ୍କ ପାଇଁ ଏତିକି ବାକି ଅଛି—ତୁମେ ସେମାନଙ୍କ ଭଳି ହୋଇଉଠ । ଏକଥା ଜାଣିରଖ ଯେ ସୁଖର ଗୋପନ କଥା ହେଉଛି ସ୍ୱାଧୀନତା ଓ ସ୍ୱାଧୀନତାର ରହସ୍ୟ ହେଉଛି ଭୟହୀନ ହୃଦୟ ଆଉ ସେହି ହୃଦୟ ଶତ୍ରୁ ଆଗମନ ଦେଖି ନୀରବରେ ଓ ନିଷ୍କ୍ରିୟ ଭାବରେ ପାର୍ଶ୍ୱକାଟି ଠିଆହୁଏ ନାହିଁ ।" (୧)

## ୧୪. ଜନସଂଖ୍ୟାର ପ୍ରଶ୍ନ
## ପତନଶୀଳ ଜନ୍ମହାର ଓ ଜାତୀୟ ଅବନତି

ଯୁଦ୍ଧକାଳର ଏହି ପାଞ୍ଚ ବର୍ଷରେ ଯେଉଁସବୁ ବିପୁଳ ପରିବର୍ତ୍ତନ ଘଟିଲା ଏବଂ ଯେପରି ଆକାରରେ ଲୋକେ ସ୍ଥାନଚ୍ୟୁତ ହେଲେ ଇତିହାସରେ ପୂର୍ବବର୍ତ୍ତୀ କୌଣସି ଯୁଗରେ ସମ୍ଭବତଃ ଘଟିନାହିଁ । ଚୀନ, ରୁଷିଆ, ପୋଲାଣ୍ଡ ଆଉ ଜର୍ମାନୀପ୍ରମୁଖ ଦେଶମାନଙ୍କରେ ଲକ୍ଷ ଲକ୍ଷ ଲୋକ ମୃତାହତ ହେବା ବ୍ୟତୀତ ଅଗଣିତ ସଂଖ୍ୟକ ଲୋକ ନିଜ ଦେଶ ଓ ଭିଟାମାଟିରୁ ଉତ୍ପାଟିତ ହେଲେ । ସାମରିକ ଆବଶ୍ୟକତା ଓ ଶ୍ରମିକସ୍ୱଳ୍ପତା ତୁଲାଇବା ପାଇଁ ବହୁଲୋକଙ୍କୁ ଯୋଗଦେବାକୁ ପଡ଼ିଲା । ଏହା ବ୍ୟତୀତ ବାଧ୍ୟତାମୂଳକ ଭାବରେ ଲୋକେ ଭିଟାମାଟି ଛାଡ଼ିଲେ ଏବଂ ମାଡ଼ିଆସୁଥିବା ଶତ୍ରୁମୁହଁରୁ ରକ୍ଷା ପାଇବାପାଇଁ ଲକ୍ଷ ଲକ୍ଷ ସଂଖ୍ୟାରେ ପଳାୟନ କଲେ । ଯୁଦ୍ଧ ପୂର୍ବରୁ ମଧ୍ୟ ନାଜି ନୀତି ହେତୁରୁ ୟୁରୋପରେ ପଳାତକ ସମସ୍ୟା ଉତ୍କଟ ହୋଇ ଉଠିଥିଲା । କିନ୍ତୁ ଯୁଦ୍ଧକାଳର ଅବସ୍ଥା ସଙ୍ଗେ ତୁଳନା କରି ଦେଖିଲେ ତାହା ଅତି ତୁଚ୍ଛ ଅନୁମିତ ହୁଏ । ଯୁଦ୍ଧର ପ୍ରତ୍ୟକ୍ଷ ପରିଣାମ ବ୍ୟତୀତ ୟୁରୋପରେ ଯେଉଁସବୁ ଘଟଣା ଘଟିଲା ସେଥିପାଇଁ ନାଜିମାନଙ୍କ ଦ୍ୱାରା ଅନୁସୃତ ସୁଚିନ୍ତିତ ଜାତିସ୍ୱ ନୀତି ଅନେକାଂଶରେ ଦାୟୀ । ସେମାନଙ୍କ ଦ୍ୱାରା ଅଧିକୃତ ବହୁ ଦେଶରେ ଲକ୍ଷ ଲକ୍ଷ ଇହୁଦୀଙ୍କୁ ହତ୍ୟାକରି ସେମାନେ ପୁଞ୍ଜିତ ଜନସଂଖ୍ୟାର ଅଖଣ୍ଡ ଅଞ୍ଚଳଗୁଡ଼ିକୁ ବିଧ୍ୱସ୍ତ କଲେ । ସୋଭିଏଟ୍ ୟୁନିଅନ୍‌ରେ ଲକ୍ଷ ଲକ୍ଷ ଲୋକ ପୂର୍ବ ଦିଗକୁ ଘୁଞ୍ଚିଗଲେ ଏବଂ ୟୁରାଲ୍ ପର୍ବତମାଳାର ଅପର ପାର୍ଶ୍ୱରେ କୃଷି ବସତି ସ୍ଥାପନ କଲେ । ସେମାନେ ଖୁବ୍ ସମ୍ଭବ ସେ ଅଞ୍ଚଳରେ ରହିଥାନ୍ତି

(୧) ଥୁସିଡାଇଡିସ୍‌ର ଏହି ଉକ୍ତି ଆଲଫ୍ରେଡ୍ ଜିମେର୍ଣ୍ଣଙ୍କ 'ଦି ଗ୍ରୀକ୍ କମନ୍‌ୱେଲ୍ଥ' ବହିରୁ ନିଆଯାଇଛି ।

ହେଲେ । ହିସାବ କରି ଦେଖାଯାଇଚ ଯେ ଚୀନ ଦେଶରେ ପାଞ୍ଚକୋଟି ଲୋକ ଉଦ୍‌ବାସ୍ତୁ ହୋଇଚନ୍ତି ।

ଯେତେ ବିପୁଳ ଭାବରେ ଜଟିଳ ହୋଇପଡୁଛେ ଯୁଦ୍ଧଫେରନ୍ତାମାନଙ୍କୁ ଓ ଯୁଦ୍ଧକାଳର ପଳାତକ ଓ ବାସ୍ତୁହରାମାନଙ୍କୁ ପୁନର୍ବାର ଥଇଥାନ କରିବାର ଉଦ୍ୟମ ଅବଶ୍ୟ ହେବ, ସନ୍ଦେହ ନାହିଁ । ଅନେକେ ନିଜର ପୁରାତନ ଭିଟାମାଟିକୁ ଫେରିଆସିବେ, ଅନେକେ ହୁଏତ ନିଜର ନୂତନ ପରିବେଷ୍ଟନୀରେ ରହିଯିବା ପସନ୍ଦ କରିବେ । ଏପରି ଘଟିବା ବି ଅସମ୍ଭବ ନୁହେଁ ଯେ ୟୁରୋପରେ ରାଜନୈତିକ ପରିବର୍ତ୍ତନ ଫଳରେ ପୁନର୍ବାର ଲୋକେ ସ୍ଥାନଚ୍ୟୁତ ହେବେ ଓ ଲୋକବିନିମୟ ଘଟିବ ।

ଆଂଶିକ ଭାବରେ ମନସ୍ତାତ୍ତ୍ୱିକ ଓ ପ୍ରାଣୀ ବିଜ୍ଞାନସମ୍ମତ ଯେଉଁସବୁ ପରିବର୍ତ୍ତନ ଦେଖାଦେଉଚି ସେଥିଭିତରୁ ଗମ୍ଭୀରତର ଓ ଦୂରପ୍ରସାରୀ ଭାବରେ ତାତ୍ପର୍ଯ୍ୟପୂର୍ଣ୍ଣ ହେଉଚି ବିଶ୍ୱରେ ଜନସଂଖ୍ୟାର ଦ୍ରୁତ ପରିବର୍ତ୍ତନ । ଶିଳ୍ପବିପ୍ଳବ ଓ ଆଧୁନିକ ପ୍ରଯୁକ୍ତିବିଦ୍ୟାର ବିସ୍ତୃତି ୟୁରୋପରେ ବିଶେଷତଃ ଉତ୍ତର-ପଶ୍ଚିମ ଓ ମଧ୍ୟ-ୟୁରୋପରେ ଦ୍ରୁତ ଜନସଂଖ୍ୟା ବୃଦ୍ଧିର କାରଣ ହେଲା । ଗୋଟାଏ ନୂତନ ଅର୍ଥନୈତିକ ଢାଞ୍ଚା ଓ ଅନ୍ୟାନ୍ୟ କାରଣଦ୍ୱାରା ପୁଷ୍ଟ ଏହି ପ୍ରଯୁକ୍ତିବିଦ୍ୟା ପୂର୍ବାଭିମୁଖୀ ହୋଇ ଯେବେ ସୋଭିଏତ୍ ୟୁନିଅନ ଆଡ଼କୁ ପ୍ରସାରିତ ହେଲା, ସେହିସବୁ ଅଞ୍ଚଳରେ ଜନସଂଖ୍ୟା ଅତି ବିସ୍ମୟକର ଭାବରେ ବୃଦ୍ଧିଲାଭ କଲା । ଶିକ୍ଷା, ପରିଚ୍ଛନ୍ନତା ଓ ଉନ୍ନତ ଧରଣର ଜନସ୍ୱାସ୍ଥ୍ୟ ବ୍ୟବସ୍ଥାସହକାରେ ପ୍ରଯୁକ୍ତିବିଦ୍ୟାର ଏହି ପୂର୍ବାଗତି ଅବ୍ୟାହତ ରହିଚି ଏବଂ ଏସିଆର ବହୁଦେଶ ତାର ପ୍ରଭାବର ପରିସରଭୁକ୍ତ ହେବେ । ଏଥିଭିତରୁ ଭାରତ ଭଳି କେତେକ ଦେଶରେ ଜନସଂଖ୍ୟା ବୃଦ୍ଧିର ଆବଶ୍ୟକତା ନାହିଁ; କାରଣ ଅଳ୍ପ ଜନସଂଖ୍ୟାରେ ଏହିସବୁ ଦେଶ ସମୃଦ୍ଧି କରିପାରିବେ ।

ଇତ୍ୟବସରରେ, ପଶ୍ଚିମ-ୟୁରୋପରେ ଜନସଂଖ୍ୟା ସନ୍ଦର୍ଭରେ ଏକ ବିପରୀତ ପ୍ରକ୍ରିୟା ଦେଖାଦେଇଚି ଏବଂ ପଡ଼ନ୍ତି ଜନ୍ମ-ହାର ସମସ୍ୟାର ଗୁରୁତ୍ୱ ବୃଦ୍ଧି ପାଉଚି ।

ଯେଭଳି ସୂଚିତ ହେଉଚି ଏହି ପ୍ରକ୍ରିୟା ସୁପରିବ୍ୟାପ୍ତ ହୋଇଉଠିଚି ଏବଂ ଚୀନ, ଭାରତ, ଜାଭା ଓ ସୋଭିଏତ୍ ୟୁନିଅନ୍ ଭଳି କେତେକ ଉଲ୍ଲେଖଯୋଗ୍ୟ ବ୍ୟତିକ୍ରମ ବ୍ୟତୀତ ପୃଥିବୀର ଅଧିକାଂଶ ଦେଶ ଉପରେ ତାର ପ୍ରଭାବ ବିସ୍ତାର ଲାଭ କରୁଚି । ଶିଳ୍ପ କ୍ଷେତ୍ରରେ ଅଗ୍ରଗାମୀ ଦେଶମାନଙ୍କରେ ଏହା ଅଧିକତର ସ୍ପଷ୍ଟ ହୋଇ ଉଠିଲାଣି । ବହୁ ବର୍ଷ ପୂର୍ବରୁ ଫ୍ରାନ୍ସର ଜନସଂଖ୍ୟା ବୃଦ୍ଧି ବନ୍ଦ ହୋଇଥିଲା ଏବଂ ବର୍ତ୍ତମାନ ଧୀରେ ଧୀରେ ତାହା ହ୍ରାସ ପାଉଚି । ଗତ ଶତକର ଶେଷ ଦୁଇ ଦଶକରୁ ଇଂଲଣ୍ଡର ଜନ୍ମହାର ଧାରାବାହିକ ଭାବରେ ପଡ଼ିଆସୁଚି ଏବଂ ଫ୍ରାନ୍ସକୁ କେବଳ ବାଦ୍‌ଦେଲେ ୟୁରୋପରେ ଏହି ହାର ବର୍ତ୍ତମାନ ସର୍ବନିମ୍ନ । ଜର୍ମାନୀ ଓ ଇଟାଲୀରେ ଜନ୍ମହାର ବୃଦ୍ଧି କରିବା ଦିଗରେ ହିଟଲର ଓ ମୁସୋଲିନିଙ୍କ ଉଦ୍ୟମ ସାମୟିକ ଭାବରେ କେବଳ କେତେକାଂଶରେ ଫଳପ୍ରଦ ହୋଇଥିଲା । ଦକ୍ଷିଣ ଓ ପୂର୍ବ-ୟୁରୋପ (ସୋଭିଏତ୍ ୟୁନିଅନ ବ୍ୟତୀତ) ଅପେକ୍ଷା ଉତ୍ତର-ପଶ୍ଚିମ ଓ ମଧ୍ୟ-ୟୁରୋପରେ ଏହି ଅଧୋଗତି ଅଧିକତର ଲକ୍ଷ୍ୟଣୀୟ; କିନ୍ତୁ ଏ ପ୍ରକାର ଗତି ସମସ୍ତ ଅଞ୍ଚଳରେ ପରିଲକ୍ଷିତ ହୁଏ ।

ବର୍ତ୍ତମାନର ଗତିକୁ ଧରି କଳନା କଲେ ସୋଭିଏତ୍ ୟୁନିଅନ ବ୍ୟତୀତ ସମଗ୍ର ୟୁରୋପରେ ଖ୍ରୀ:୧୯୫୦ ବେଳକୁ ଜନସଂଖ୍ୟା ସର୍ବୋଚ୍ଚ ସୀମା ସ୍ପର୍ଶ କରିବ ଏବଂ ତାର ପରେ ନିମ୍ନଗାମୀ ହେବା ଆରମ୍ଭ କରିବ । ଏଥି ସଙ୍ଗେ ଯୁଦ୍ଧଜନିତ କ୍ଷୟର ସମ୍ବନ୍ଧ ନାହିଁ; କାରଣ ସେପରି ହେଲେ ଏହି ଅଧୋଗତି ଆହୁରି କ୍ଷିପ୍ର ହୋଇଯିବ ।

ଅନ୍ୟପକ୍ଷରେ ସୋଭିଏତ୍ ୟୁନିଅନ୍ ତା'ର ଜନସଂଖ୍ୟା ଦ୍ରୁତ ବୃଦ୍ଧି କରିଚାଲିଚି ଏବଂ ଖ୍ରୀ: ୧୯୭୦ ସୁଦ୍ଧା ତାହା ୨୫ କୋଟି ଅତିକ୍ରମ କରିଯିବ । ଯୁଦ୍ଧଜନିତ ସୀମା ସରହଦ ପରିବର୍ତ୍ତନ ଏହାର ଅନ୍ତର୍ଭୁକ୍ତ ନୁହେଁ । ବୈଜ୍ଞାନିକ ତଥା ଅନ୍ୟବିଧ ପ୍ରଗତି ସଙ୍ଗେ ସମ୍ମିଳିତ କରିନେଲେ ଏହି ଜନସଂଖ୍ୟା ବୃଦ୍ଧି ଅନିବାର୍ଯ୍ୟ ଭାବରେ ୟୁରୋପ ଓ ଏସିଆରେ ସୋଭିଏତ୍ ୟୁନିଅନକୁ ପ୍ରବଳ ଏକ ଶକ୍ତି କରି ରଖିବ । ଏସିଆରେ ବହୁତ କିଛି ନିର୍ଭର କରୁଚି ଚୀନ ଓ ଭାରତର ଶିଳ୍ପିକ ବିକାଶ ଉପରେ । ଯଦି ଉଚିତ ଭାବରେ ଓ ଉତ୍ପାଦନକ୍ଷମ ଭାବରେ ସଙ୍ଗଠିତ କରାନଯାଏ ଏହି ଦୁଇ ଦେଶର ବିପୁଳ ଜନସଂଖ୍ୟା ଗୋଟାଏ ବୋଝ ଓ ଦୁର୍ବଳତା ହିସାବରେ ହିଁ ଗଣ୍ୟ ହେବ । ୟୁରୋପର ଅତୀତର ମହାନ୍ ଔପନିବେଶିକ ଶକ୍ତିମାନେ ସମ୍ପ୍ରସାରଣ ଓ ଆକ୍ରମଣର ଅବସ୍ଥା ନିଶ୍ଚିତ ଭାବରେ ଅତିକ୍ରମ କରିଯାଇଥିବା ପ୍ରତୀତ ହୁଏ । ସେମାନଙ୍କର ଅର୍ଥନୈତିକ ଓ ରାଜନୈତିକ ସଙ୍ଗଠନ ଏବଂ ସେସବୁ ଦେଶର ଲୋକଙ୍କ ଦକ୍ଷତା ଓ ସାମର୍ଥ୍ୟ ବିଶ୍ୱ ବ୍ୟାପାରରେ ଏବେ ବି ସେମାନଙ୍କୁ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ହୁଏତ ଅର୍ପଣ କରିପାରେ; କିନ୍ତୁ ଗୋଟାଏ ଗୋଷ୍ଠୀ ଭାବରେ ସେମାନେ କାର୍ଯ୍ୟକାରୀ ନହେଲେ ସେମାନଙ୍କର 'ବୃହତ୍ ଶକ୍ତି' ପଦ କ୍ରମଶଃ ଲୋପପାଇବାର ଆଶଙ୍କା ରହିଚି । "ଉତ୍ତର-ପଶ୍ଚିମ ଓ ମଧ୍ୟ- ୟୁରୋପର କୌଣସି ଜାତି ବିଶ୍ୱକୁ ପୁନର୍ବାର ଯୁଦ୍ଧଡାକରା ଦେବାର ସମ୍ଭାବନା ଦେଖାଯାଉନି । ଦ୍ରୁତ ଅଗ୍ରଗତି କରୁଥିବା ଜାତିମାନଙ୍କ ମଧ୍ୟରେ ବୈଜ୍ଞାନିକ ସଭ୍ୟତାର ବ୍ୟାପ୍ତି ଦୃଷ୍ଟିରୁ ଜର୍ମାନୀ ତାର ପଶ୍ଚିମା ପଡ଼ୋଶୀମାନଙ୍କ ଭଳି ସେହି ପର୍ଯ୍ୟାୟ ଡେଇଁଯାଇଚି; ଯାହା ଭିତରେ ସେ ଏକ ପ୍ରବଳ ବିଶ୍ୱ-ଶକ୍ତି ହୋଇପାରନ୍ତା ।"

ବୈଜ୍ଞାନିକ ତଥା ଶିଳ୍ପିକ ଅଭିବୃଦ୍ଧି ପଶ୍ଚିମ ଜଗତର ବହୁ ଦେଶ ଓ ଜାତିଙ୍କୁ ବଳବନ୍ତ କରିଚି । ଶକ୍ତିର ଏହି ଉତ୍ସ ମୁଷ୍ଟିମେୟ କେତେକ ଜାତିର ଏକାଧିକାରରେ ରହିବାର ସମ୍ଭାବନା ଖୁବ୍ କମ୍ । ଅତଏବ, ପୃଥିବୀର ବିଶାଳ କେତେ ଅଞ୍ଚଳ ଉପରୁ ୟୁରୋପର ରାଜନୈତିକ ତଥା ଅର୍ଥନୈତିକ ଆଧିପତ୍ୟ ଦ୍ରୁତ ଅପସାରିତ ହେବା ଅବଶ୍ୟମ୍ଭାବୀ ଏବଂ ୟୁରେସିଆ ମହାଦେଶ ତଥା ଆଫ୍ରିକାର ସ୍ନାୟୁକେନ୍ଦ୍ର ଭାବରେ ୟୁରୋପ ଆଉ ରହି-ନପାରେ । ଏହି ମୌଳିକ କାରଣ ଯୋଗୁ ପୁରାତନ ୟୁରୋପୀୟ ଶକ୍ତିମାନେ ଶାନ୍ତି ଓ ଆନ୍ତର୍ଜାତିକ ସହଯୋଗ ନେଇ ଅଧିକତର ଭାବରେ ବିଚାର କରିବେ ଓ କାର୍ଯ୍ୟ କରିବେ ଏବଂ ଯେତେଦୂର ପାରିବେ ଯୁଦ୍ଧ ଏଡ଼ାଇବା ପାଇଁ ଚେଷ୍ଟାକରିବେ । ଆକ୍ରମଣ ଦୁର୍ଭାଗ୍ୟ ଭିତରକୁ ବାଟ କଢ଼ାଇନେବା ସୁନିଶ୍ଚିତ ବୋଲି ଯେବେ ଜଣାପଡ଼େ ତାର ଆକର୍ଷଣ ଆଉ ରହେନାହିଁ; କିନ୍ତୁ ସେହିସବୁ ବିଶ୍ୱ-ଶକ୍ତିମାନଙ୍କର ଯେଉଁମାନେ ଏବେ ବି ପ୍ରବଳ ରହିଚନ୍ତି, ଅନ୍ୟମାନଙ୍କ ସଙ୍ଗେ ସହଯୋଗ କରିବାର ସେଭଳି ପ୍ରବୃତ୍ତି ନାହିଁ । ଏହି ପ୍ରବୃତ୍ତି ନୈତିକ

ହେବା ସ୍ୱଦ୍ଧ; କିନ୍ତୁ ଶକ୍ତି ଓ ନୈତିକତା ଗୋଟାଏ ଆଧାରରେ ପ୍ରାପ୍ତ ମିଳେନାହିଁ ।

ଏହି ବ୍ୟାପକ ଜନ୍ମହାର ପତନର କାରଣ କ'ଣ ? ଜନ୍ମନିରୋଧକ ଉପାୟ ପ୍ରୟୋଗ ବୃଦ୍ଧି ଏବଂ କ୍ଷୁଦ୍ର ତଥା ନିୟନ୍ତ୍ରିତ ପରିବାର ଗଠନର ଆକାଙ୍କ୍ଷା କିଛି କାର୍ଯ୍ୟ କରିଥାଇ ପାରେ; କିନ୍ତୁ ଜନ୍ମହାର ପତନ ନିମନ୍ତେ ଏହା ଗୋଟାଏ ବଡ଼ କାରଣ ବୋଲି ସାଧାରଣତଃ ସ୍ୱୀକାର କରିଯାଏ ନାହିଁ । ଉଦାହରଣ ସ୍ୱରୂପ ଆୟାରଲେଣ୍ଡ୍ ନିଆଯାଇ ପାରେ । ଏହା ଏକ କ୍ୟାଥେଲିକ୍ ଦେଶ ଯେଉଁଠି ଜନ୍ମନିରୋଧକ ଉପାୟ ପ୍ରୟୋଗକରିବା ଧର୍ମଦୃଷ୍ଟିରୁ ଦୋଷାବହ । ତଥାପି, ଅନ୍ୟ ଦେଶମାନଙ୍କ ଅପେକ୍ଷା ସହଳ ସେଠାରେ ଜନ୍ମହାର ପଡ଼ିବା ଆରମ୍ଭ କଲା । ପଶ୍ଚିମ ଜଗତରେ ବିଳମ୍ବ-ବିବାହ ମନୋଭାବର ପ୍ରସାର ଏହାର ଅନ୍ୟ ଏକ କାରଣ ହେଇପାରେ । ଅର୍ଥନୈତିକ କାରଣମାନଙ୍କର କିଛି ପ୍ରଭାବ ମଧ୍ୟ ପଡ଼ିଥାଇପାରେ; କିନ୍ତୁ ତାହା ଗୁରୁତ୍ୱପୂର୍ଣ୍ଣ ବିବେଚିତ ହୁଏ ନାହିଁ । ଏକଥା ସମସ୍ତେ ଭଲଭାବରେ ଜାଣନ୍ତି ଯେ ସଚରାଚର ବିତ୍ତବାନଙ୍କ ଅପେକ୍ଷା ବିତ୍ତହୀନଙ୍କ ସନ୍ତାନୋତ୍ପତ୍ତି ସାମର୍ଥ୍ୟ ଅଧିକ ଏବଂ ଏହି ଅନୁପାତ ସହର ଅପେକ୍ଷା ଗ୍ରାମାଞ୍ଚଳରେ ବେଶି । ଗୋଟାଏ କ୍ଷୁଦ୍ର ଗୋଷ୍ଠୀ ପକ୍ଷରେ ଜୀବନ-ଧାରଣର ଉଚ୍ଚତର ମାନ ରକ୍ଷାକରିବା ସହଜ ଏବଂ ବ୍ୟକ୍ତିବାଦର ଅଭିବୃଦ୍ଧି ବର୍ଗ ତଥା ଜାତିର ଗୁରୁତ୍ୱ ନ୍ୟୁନ କରେ । ଅଧ୍ୟାପକ ଜେ. ବି. ଏସ୍. ହାଲଡେନ୍ କହନ୍ତି ଯେ ବହୁ ସଭ୍ୟସମାଜରେ ଯେଉଁମାନଙ୍କୁ ପ୍ରତିଷ୍ଠାବାନ୍ ଅଥବା ସମ୍ମାନାର୍ହ ବିବେଚନା କରିଯାଇଥାଏ ସେମାନଙ୍କର ସନ୍ତାନୋତ୍ପତ୍ତି ସାମର୍ଥ୍ୟ ଜନସାଧାରଣଙ୍କ ଅପେକ୍ଷା କମ୍ । ଏହା ସଚରାଚର ଦ୍ରଷ୍ଟବ୍ୟ । ଏପରି ଭାବରେ, ଜୀବବିଜ୍ଞାନ ଦୃଷ୍ଟିରୁ ସେହିସବୁ ସମାଜର ସ୍ଥିତି ବଡ଼ ଅନିଶ୍ଚିତ । ବଡ଼ ପରିବାରମାନଙ୍କରେ ବହୁଧା ଅପେକ୍ଷାକୃତ ନିକୃଷ୍ଟ ବୁଦ୍ଧି ପର୍ଯ୍ୟାୟର ବ୍ୟକ୍ତି ଦେଖିବାକୁ ମିଳିଥାନ୍ତି । ଅର୍ଥନୈତିକ ସଫଳତା ମଧ୍ୟ ଜୀବବିଦ୍ୟାକ ସଫଳତାର ପରିପନ୍ଥୀ ବୋଲି ମନେ କରିଯାଏ ।

ଜନ୍ମହାର ପତନ ପଛର ମୌଳିକ ତଥା ପ୍ରଧାନ କାରଣ କ'ଣ ସେ ବିଷୟରେ ବିଶେଷ କେହି ଜ୍ଞାତ ନୁହନ୍ତି । ଆନୁଷଙ୍ଗିକ ନାନା କାରଣ ଅବଶ୍ୟ ସୂଚିତ କରିଯାଇଚି । ଏପରି ବି ହେଇପାରେ ଯେ କେତେକ ଶାରୀରିକ ତଥା ଜୀବବିଦ୍ୟାକ କାରଣ ତା' ପଛରେ ରହିଚି । ଯଥା ଶିଳ୍ପସମ୍ପୃକ୍ତ ଜାତିମାନେ ଯେଉଁଭଳି ଜୀବନଯାପନ କରନ୍ତି ଏବଂ ଯେ ପ୍ରକାର ପରିବେଷ୍ଟନୀରେ ବାସକରନ୍ତି । ସାଧାରଣତଃ ପୁଷ୍ଟିହୀନ ଖାଦ୍ୟ, ମଦ୍ୟପାନ, ସ୍ନାୟୁବିକୃତି ଅଥବା ମାନସିକ କିମ୍ବା ଶାରୀରିକ ଦୁର୍ବଳତା ଜନ୍ମହାର ପତନ ତ୍ୱରାନ୍ୱିତ କରେ । ତଥାପି, ରୋଗବହୁଳ ତଥା ଆବଶ୍ୟକ ପରିମାଣ ଖାଦ୍ୟହୀନ ଦେଶମାନଙ୍କରେ, ଭାରତରେ ଯେପରି, ଜନ୍ମହାର ଉପଦ୍ରବ ଭାବରେ ବୃଦ୍ଧି ପାଉଚି । ଆଧୁନିକ ଜୀବନର ଉତ୍କଟ ଗ୍ଭପ, ବିଶ୍ରାମହୀନ ପ୍ରତିଯୋଗିତା ଓ ଦୁଶ୍ଚିନ୍ତା ସମ୍ଭବତଃ ଜନନ ଶକ୍ତି ହ୍ରାସ କରେ । ଜୀବନଦାୟିନୀ ମାଟିଠାରୁ ବିଚ୍ଛିନ୍ନ ହେଇପଡ଼ିବା ହୁଏତ ଏକ ପ୍ରଧାନ କାରଣ । ଆମେରିକାରେ କୃଷିକ୍ଷେତ୍ରର ଶ୍ରମିକମାନଙ୍କ ମଧ୍ୟରେ ଜନ୍ମହାର ସଂଖ୍ୟା ଅନ୍ୟାନ୍ୟ ପେଷାଦାର ଶ୍ରେଣୀମାନଙ୍କ ଠାରୁ ଦୁଇ ଗୁଣରୁ ଅଧିକ ।

ଯେଉଁ ପ୍ରକାର ଆଧୁନିକ ସଭ୍ୟତା ପ୍ରଥମେ ପଶ୍ଚିମଜଗତରେ ବିକାଶ ଲାଭକଲା ଓ ପରେ ଅନ୍ୟତ୍ର ବ୍ୟାପ୍ତହେଲା, ବିଶେଷତଃ ସେହି ସଭ୍ୟତାର ମୁଖ୍ୟ ବିଭୂତି ପୌର-ଜୀବନ ସେପରି ଏକ ଅନିର୍ଦ୍ଦିଷ୍ଟ ସମାଜ ସୃଷ୍ଟିକରେ ଯାହା କ୍ରମେ କ୍ରମେ ଶକ୍ତିହୀନ ହୋଇପଡ଼େ । ଏପରି ମନେହେବା ହୁଏତ ଅସ୍ୱାଭାବିକ ହୋଇନପାରେ । ନାନା ଦିଗରେ ଜୀବନ ଅଗ୍ରଗତି କଲେ କି ହେବ, ସେଥି ଉପରେ ତାର କର୍ତ୍ତୃତ୍ୱ କିନ୍ତୁ ରହିପାରିନି । ବେଳକୁ ବେଳ ଅଧିକ କୃତ୍ରିମତା ପ୍ରବେଶ କରିବା ଫଳରେ ଜୀବନ କ୍ରମଶଃ ନିସ୍ତେଜ ହୋଇ ଆସିଥାଏ । ବେଳକୁ ବେଳ ଅଧିକ ଉତ୍ତେଜକ ଦ୍ରବ୍ୟ ଆବଶ୍ୟକ ହୋଇପଡ଼ୁଚି । ନିଦ୍ରା ପାଇଁ କିମ୍ବା ଅନ୍ୟାନ୍ୟ ସ୍ୱାଭାବିକ କ୍ରିୟା ପାଇଁ ଆଜି ଉତ୍ତେଜକ ଔଷଧ କିମ୍ବା ମାଦକ ଦ୍ରବ୍ୟ ଆବଶ୍ୟକ । ଜିହ୍ୱାର ରୁଚି ପାଇଁ ଆମେ ସେପରି ଖାଦ୍ୟ ଓ ପାନୀୟ ଲୋଡ଼ାକରୁଁ ଯାହା ଗୋଟାଏ ଦିଗରେ ମୁହୂର୍ତ୍ତିକ ପାଇଁ ସ୍ୱାଦୁ ଓ ଉଲ୍ଲାସ ଦେଉଥିବେଳେ ଅନ୍ୟ ଦିଗରେ ଜୀବନୀଶକ୍ତି କ୍ଷୟ କରେ । କ୍ଷଣସ୍ଥାୟୀ ଇନ୍ଦ୍ରିୟସୁଖ ନିମନ୍ତେ ଆମେ ସେପରି କେତେକ ବିଶେଷ ଉପାୟ ଅବଲମ୍ବନ କରୁ ଯାହାର ପ୍ରତିକ୍ରିୟା ସ୍ୱରୂପ ଗୋଟାଏ ପ୍ରକାର ଶୂନ୍ୟତାବୋଧ ମନକୁ ଆଚ୍ଛନ୍ନ କରେ । ଆମେ ଯେଉଁ ସଭ୍ୟତା ସୃଷ୍ଟି କରିଥାଉଁ ତାହା କେତେ ଉଜ୍ଜ୍ୱଳ ଓ କେତେ ମହାନ୍ କୃତିର ଅଧିକାରୀ ହେଉନା କାହିଁକି ସେଥିରେ କିଛି କ୍ରୁଟି ଅବଶ୍ୟ ରହିଯାଇଚି । ଉତ୍ତେଜକ ଯାର ସାହାଯ୍ୟରେ ଉତ୍ପାଦିତ ଉତ୍ତେଜକ ଖାଦ୍ୟ ଆମେ ଖାଉଁ; ଉତ୍ତେଜକ ପ୍ରବଣତାରେ ଆମେ ମଗ୍ନ ରହୁଁ ଏବଂ ଆମର ମାନସିକ କ୍ରିୟା ସମ୍ପର୍କରେ ସେପରି କିଛି ଗମ୍ଭୀରତା ବା ଆନ୍ତରିକତା ନାହିଁ । ଆମ ଯୁଗର ଅନ୍ୟତମ ପ୍ରତୀକ ହେଉଚି ବିଜ୍ଞାପନ ଯାହା ଅନବରତ ପ୍ରବଳ ଉଦ୍ୟମ କରିଥାଏ ଆମକୁ ଭୁଲାଇବା ପାଇଁ, ଆମର ବୋଧଶକ୍ତି ନିସ୍ତେଜ କରିବାପାଇଁ ଏବଂ ଅନାବଶ୍ୟକ ଏପରିକି ଛତର ଛକ ବସ୍ତୁ କିଣିବାପାଇଁ । ଏ ଅବସ୍ଥା ଲାଗି ମୁଁ ଅନ୍ୟମାନଙ୍କ ଉପରେ ଦୋଷ ଲଦିଦେବାକୁ ଯାଉନି । ଆମେ ସମସ୍ତେ ଏ ଯୁଗର ସୃଷ୍ଟି ଏବଂ ଆମ ଯୁଗଧର୍ମର ସମସ୍ତ ଗୁଣଗ୍ରାହିକ ବୈଶିଷ୍ଟ୍ୟ ଆମଠାରେ ବିଦ୍ୟମାନ । ଅତଏବ, ନିନ୍ଦା ହେଉ କି ପ୍ରଶଂସା ହେଉ, ଆମେ ସମସ୍ତେ ସମାନ ଭାବରେ ହକ୍‌ଦାର । ଆଜିର ଏ ଯେଉଁ ସଭ୍ୟତାକୁ ମୁଁ ପ୍ରଶଂସା କରୁଚି ଓ ସମାଲୋଚନା କରୁଚି, ଅନ୍ୟ ସିଏକେହିଭଳି ମୁଁ ବି ତାର ଏକ ଅଂଶ ଏବଂ ମୋର ବିଚାର ଓ ଆଚରଣ ସେହି ସଭ୍ୟତାଦ୍ୱାରା ନିୟନ୍ତ୍ରିତ ।

ଆଧୁନିକ ସଭ୍ୟତାରେ ଦୋଷ କେଉଁଠି ରହିଚି ଯେ ତାର ପ୍ରାଣମୂଳରେ ବନ୍ଧ୍ୟାତ୍ୱ ଓ ଜାତୀୟ ଅବକ୍ଷୟର ଏହିସବୁ ଲକ୍ଷଣ ପ୍ରକାଶ ପାଉଚି ? ଅବଶ୍ୟ ଏହା କିଛି ନୂଆ ନୁହେଁ । ପୂର୍ବେ ବି ଏପରି ଘଟିଚି ଏବଂ ଇତିହାସରେ ଏଭଳି ଦୃଷ୍ଟାନ୍ତ ବିରଳ ନୁହେଁ । ପତନ କାଳରେ ଗ୍ରୀସ ରୋମ୍‌ର ଅବସ୍ଥା ଆହୁରି ଶୋଚନୀୟ ଥିଲା । ସେପରି କିଛି 'ଚକ୍ରବତ୍ ପରିବର୍ତ୍ତନ୍ତେ' ବ୍ୟବସ୍ଥା ଅଛି କି ଯାହା ଏହି ଆଭ୍ୟନ୍ତରିକ ଅବନତିର ହେତୁ ଏବଂ ଯାହା ଅନୁଶୀଳନ କରି ଆମେ ତା'ର ନିରାକରଣ ଦିଗରେ ଚେଷ୍ଟିତ ହେବା ? ଆଧୁନିକ ଶିଳ୍ପବାଦ ଓ ସମାଜର ପୁଞ୍ଜିବାଦୀ ସଙ୍ଗଠନ ଖାଲି ଏହାର ଏକମାତ୍ର ହେତୁ ହୋଇନପାରେ; କାରଣ ଅନ୍ୟ ପ୍ରକାର ପରିସ୍ଥିତିରେ ବି ଜାତୀୟ ଅବକ୍ଷୟ ଘଟିଚି । ସେ ଯାହାହେଉ, ଏତିକି ଅନ୍ତତଃ

କୁହାଯାଇ ପାରେ ଯେ ଆଧୁନିକ ଶିଳ୍ପବାଦ ପୁଞ୍ଜିବାଦୀ ଢାଞ୍ଚା, ଅଙ୍କର ଆକାରରେ, ସେପରି ଏକ ପରିବେଷ୍ଟନୀ, ସେପରି ଏକ ଶାରୀରିକ ତଥା ମାନସିକ ଅବସ୍ଥା ସୃଷ୍ଟି କରେ; ଯାହା ଜାତିସ୍ଥ ଅଧୋଗତିର ପ୍ରକ୍ରିୟା ପକ୍ଷରେ ଅନୁକୂଳ ହୁଏ । ଏହାର ମୌଳିକ ହେତୁ ଯଦି କୌଣସି ଭାବରେ ହେଲେ ଆଧ୍ୟାତ୍ମିକତା ସଙ୍ଗେ ସମ୍ବନ୍ଧିତ କିମ୍ବା ସେପରି କିଛି ଯାହା ମଣିଷର ମନ ଓ ଚେତନାକୁ ପ୍ରଭାବିତ କରେ, ତାହା ବୁଝିବା ପାଇଁ ଚେଷ୍ଟାକଲେ ସୁଦ୍ଧା ଧରିପାରିବା ସହଜ ନୁହେଁ । ଗୋଟାଏ କଥା କିନ୍ତୁ ନିଶ୍ଚିତ ଜଣାଯାଉଚି ଯେ ମାଟିରୁ ବିଚ୍ଛିନ୍ନ ହୋଇପଡ଼ିବା ବ୍ୟକ୍ତି ଅବା ଜାତି କାହା ପକ୍ଷରେ ହେଲେ କଲ୍ୟାଣକର ନୁହେଁ । ମାଟି ଓ ସୂର୍ଯ୍ୟ ଜୀବନର ଆଦି କାରଣ ଏବଂ ସେଥିରୁ ଦୂରରେ ରହିବା ଅର୍ଥ ମୃତ୍ୟୁବରଣକରିବା । ଆଧୁନିକ ଶିଳ୍ପସମୃଦ୍ଧ ଜାତିମାନେ ମାଟି ସଙ୍ଗେ ସମ୍ବନ୍ଧ ତୁଟାଇ ବସିଛନ୍ତି ଏବଂ ସେମାନଙ୍କ ଦେହରେ ସେ ଜ୍ୟୋତି ଆଉ ନାହିଁ ଯାହା ବସୁମାତାର ସ୍ପର୍ଶରୁ ମିଳିଥାଏ; ସେ ଆନନ୍ଦ ବି ସେମାନେ ଅନୁଭବ କରିପାରୁ ନାହାନ୍ତି ଯାହା ପ୍ରକୃତିରୁ ମିଳିଥାଏ । ପ୍ରକୃତିର ସୌନ୍ଦର୍ଯ୍ୟ ସମ୍ପର୍କରେ ସେମାନେ ବହୁତ ଗପନ୍ତି ଏବଂ କେବେ କେବେ ଫୁରସତ୍ ଦେଖି ସାପ୍ତାହିକ ଛୁଟି ରବିବାର ଦିନ ତାର ସନ୍ଧାନରେ ବାହାରନ୍ତି; ଗ୍ରାମାଞ୍ଚଳରେ ସେମାନଙ୍କର କୃତ୍ରିମ ଜୀବନର ଶସ୍ତା ସାମଗ୍ରୀ ବାଣ୍ଟିଦେଇ ଆସନ୍ତି । ପ୍ରକୃତି ସଙ୍ଗେ ଅନ୍ତରଙ୍ଗ ହେବା କିମ୍ବା ପ୍ରକୃତିର ଏକ ଅଂଶ ବୋଲି ନିଜକୁ ମଣିବା ସେମାନଙ୍କଦେଇ ହୁଏନା । ସବିସ୍ମୟ ତଥା ସାନନ୍ଦ ଦୃଷ୍ଟିରେ ପ୍ରକୃତିର ସୌନ୍ଦର୍ଯ୍ୟନିହାର—ଏତିକି କେବଳ ସେମାନେ ଶୁଣିଥାନ୍ତି ଏବଂ ସେପରି କରିଦେଲା ପରେ ସ୍ୱସ୍ତିର ନିଃଶ୍ୱାସ ଛାଡ଼ି ନିଜ ନିଜ ସଂସାରକୁ ଫେରିଆସନ୍ତି । ଧର, ଯଦି କୌଣସି କାଳାତୀତ ସାହିତ୍ୟକୃତୀ ସେମାନଙ୍କ ହାତରେ ପଡ଼ିଗଲା, ପ୍ରକୃତିର ସୌନ୍ଦର୍ଯ୍ୟ ନିହାରିବା ଭଳି, ସେମାନେ ଚେଷ୍ଟା କରନ୍ତି ତାର ରସ ଗ୍ରହଣକରିବା ପାଇଁ; କିନ୍ତୁ ଅଳ୍ପ ସମୟ ଭିତରେ ମନ କ୍ଳାନ୍ତହୋଇପଡ଼େ ଏବଂ ବାଞ୍ଛିତ କୌଣସି ଉପନ୍ୟାସ ବା ରହସ୍ୟ-ରୋମାଞ୍ଚକର କାହାଣୀ ପ୍ରତି ସେମାନେ ଆକର୍ଷିତ ହୁଅନ୍ତି, କାରଣ ସେଥିରେ ମନ ପ୍ରୟାସୀ ହେବାର ଆବଶ୍ୟକତା ନଥାଏ । ପ୍ରାଚୀନ କାଳର ଗ୍ରୀକ୍ କିମ୍ବା ଭାରତୀୟଙ୍କ ଭଳି ସେମାନେ ପ୍ରକୃତିର ସନ୍ତାନ ନୁହନ୍ତି; ପ୍ରକୃତି ଯେପରି ସେମାନଙ୍କର କୌଣସି ଦୂରସମ୍ପର୍କୀୟ, ଶୁଣ ବନ୍ଧୁ ଏବଂ ତାକୁ ଦେଖିବାକୁ ଯାଇ ଉଭୟ ଭିତରେ ପରିଚୟର ସୂତ୍ରପାତ ହେବା ପରିବର୍ତ୍ତେ ବିବ୍ରତ ହେବା ହିଁ ସାର ହୋଇଚି । ଅତଏବ, ପ୍ରକୃତିର ସମୃଦ୍ଧ ଜୀବନ ତଥା ଅନନ୍ତ ରୂପସମ୍ଭାରରେ ନିହିତ ଆନନ୍ଦ ଉପଲବ୍ଧି କରିବା ଏବଂ ସେହି ସଜୀବ ଜୀବନର ଅନୁଭୂତି ଲାଭକରିବା, ଯାହା ଆମ ପୂର୍ବପୁରୁଷଙ୍କ ପକ୍ଷରେ ଅତି ସ୍ୱାଭାବିକ ଥିଲା, ସେମାନଙ୍କ ପକ୍ଷରେ ଅସମ୍ଭବ ହୋଇଉଠିଚି । ପ୍ରକୃତି ଯଦି ସେମାନଙ୍କୁ ଅବାଞ୍ଛିତ ସପତ୍ନୀ-ସନ୍ତାନ ବୋଲି ମନେ କରେ, ବିସ୍ମିତ ହେବାର କିଛି ନାହିଁ ।

ଆମେ ସେହି ପୁରାତନ ସର୍ବେଶ୍ୱରବାଦୀ ଦୃଷ୍ଟିଭଙ୍ଗୀକୁ ଫେରିଯାଇ ନପାରୁ । ତଥାପି ସୁଦ୍ଧା ଆମେ ପ୍ରକୃତିର ରହସ୍ୟବୋଧ କରିପାରିବା, ଜୀବନ ଓ ସୌନ୍ଦର୍ଯ୍ୟର ସଙ୍ଗୀତ ତାର ପାଖରୁ ଶୁଣିପାରିବା ଆଉ ଶକ୍ତି ଆହରଣ କରିପାରିବା । ସେହି ସଙ୍ଗୀତ କେତେକ

ସୁନ୍ଦର୍ଭାଚିତ ସ୍ଥାନରେ କେବଳ ଗୀତ ହୁଏ ନାହିଁ; କିନ୍ତୁ ଆମର ଯଦି ସେହି ରସବୋଧ ଥାଏ ଆମେ ତାହା ସବୁଠି ଶୁଣିପାରିବା । ତଥାପି, ସେପରି କେତେକ ସ୍ଥାନ ଅଛି ଯାହା ନିତାନ୍ତ ରସହୀନ ଲୋକଙ୍କୁ ମୁଗ୍ଧ କରିଥାଏ ଦୂରାଗତ କେଉଁ ମଧୁର ସଙ୍ଗୀତ ଭଳି । ସେପରି କେତେକ ସ୍ଥାନ ଭିତରୁ କାଶ୍ମୀର ଅନ୍ୟତମ ଯାହା ସୁନ୍ଦରତା ଓ ମୋହନତାର ଲୀଳାଭୂମି ଏବଂ ଯାହା ମଣିଷର ଇନ୍ଦ୍ରିୟଜ୍ଞାନକୁ ମୋହିତ କରେ । କାଶ୍ମୀର ସମ୍ପର୍କରେ ଲେଖିବାକୁ ଯାଇ ଫରାସୀ ବିଦ୍ୱାନ୍ ଏମ୍. ଫୁସେର୍ କହନ୍ତି : "କାଶ୍ମୀରର ଏହି ବିଶେଷ ମୋହିନୀଶକ୍ତି ଯାହା ପ୍ରତ୍ୟେକ ଲୋକ ଆକାଙ୍କ୍ଷା କରିଥାଏ, ଏପରିକି ସେମାନେ ମଧ୍ୟ ଯେଉଁମାନେ ତା'ର ରହସ୍ୟ ବୁଝିବା ଚେଷ୍ଟା କରିନଥାନ୍ତି, ତାର ପଛର ପ୍ରକୃତ କାରଣ କ'ଣ ସେ ବିଷୟରେ ମୋର ବିଶ୍ୱାସ ଯଦି ପଚରାଯାଏ, ମୁଁ କହିପାରେ ଯେ ତାହା ତା'ର ମନୋହର ବନଭୂମି, ତା'ର ହ୍ରଦମାନଙ୍କର ସ୍ୱଚ୍ଛ ଶାନ୍ତ ଜଳରାଶି; ତା'ର ହିମାଚ୍ଛାଦିତ ପର୍ବତମାଳାର ଅପୂର୍ବ ଦୀପ୍ତି କିମ୍ବା ଶାନ୍ତ ଶୀତଳ ସମୀରଣରେ ଗୁଞ୍ଜରିତ ତା'ର ଅଗଣିତ ନିର୍ଝରର ପ୍ରୀତିକର କଳନାଦ ଯୋଗୁଁ ହୋଇନପାରେ । ଏହାର କାରଣ ତା'ର ପ୍ରାଚୀନ ଇମାରତ୍‌ମାନଙ୍କର ବୈଭବ ଓ ବୈଶିଷ୍ଟ୍ୟ ବୋଲି ମଧ୍ୟ କୁହାଯାଇ ନପାରେ, ଯଦ୍ୟପି କରେବାର ଅଗ୍ରଭୂମିରେ ମାର୍ତ୍ତଣ୍ଡ ମନ୍ଦିରର ଧ୍ୱଂସାବଶେଷ ପର୍ବତର ଅଗ୍ରଭାଗରେ ସ୍ଥାପିତ କୌଣସି ଗ୍ରୀକ୍ ମନ୍ଦିର ଭଳି ଆଜି ବି ସଗର୍ବରେ ଦଣ୍ଡାୟମାନ କିମ୍ବା ମାତ୍ର ଦଶଖଣ୍ଡ ଶିଳାଦେହରେ ଖୋଦିତ କ୍ଷୁଦ୍ର 'ପସ୍ଥାର' ମଣ୍ଡପ ଭଳି ଯେଉଁଥିରେ ଲାଇସିକ୍ରେଟିସ୍‌ର ତ୍ରିମୁଖ ମୂର୍ତ୍ତିମାନଙ୍କର ସୌଷ୍ଠବ ବିଦ୍ୟମାନ । ଉନ୍ନତ କଳା ଓ ଦୃଶ୍ୟଚିତ୍ରର ଏକତ୍ର ସମାବେଶ ଏହି ମୋହନତାର କାରଣ ବୋଲି ମଧ୍ୟ କୁହାଯାଇ ନପାରେ; କାରଣ ଅନ୍ୟାନ୍ୟ ବହୁଦେଶରେ ମନୋରମ ପରିବେଶରେ ସୁରମ୍ୟ ପ୍ରାସାଦମାନ ଅବସ୍ଥିତ ଥିବା ଦୃଷ୍ଟିଗୋଚର ହୁଏ; କିନ୍ତୁ କାଶ୍ମୀର ଏଥି ହେତୁରୁ ଅଦ୍ୱିତୀୟ ଯେ ଏଠାରେ ଏକ ରହସ୍ୟମୟ ଜୀବନରେ ଜୀବନ୍ତ ପ୍ରକୃତି ମଧ୍ୟରେ ଏହି ଉଭୟ ପ୍ରକାର ସୌନ୍ଦର୍ଯ୍ୟ ସମାବିଷ୍ଟ ଯାହା ଆମ କର୍ଣ୍ଣକୁହରରେ ସେପରି କିଛି ଭାଷା କହିବାଲାଗି ସମର୍ଥ, ଯାହା ଆମ ଅନ୍ତରର କେଉଁ ସୁପ୍ତ ନାସ୍ତିକତାକୁ ବିଚଳିତ କରେ ଆଉ ଯାହା ସଚେତନ ଅବା ଅଚେତନ ଭାବରେ ଆମକୁ ସେହି ଅତୀତ ଭିତରକୁ ବାଟ କଢ଼ାଇନିଏ ଯେଉଁ ବିଷୟରେ କବି ଖେଦୋକ୍ତି କରିଚନ୍ତି, ବିଶ୍ୱର ସେହି ଶୈଶବକୁ, "ଯେବେ ଦେବଭୂମିରେ ସ୍ୱର୍ଗ ଓ ଧରଣୀ ହାତରେ ହାତ ରଖି ବିଚରଣ କରୁଥିଲେ ଓ ନିଃଶ୍ୱାସ ନେଉଥିଲେ ।"

ମୋର ପକ୍ଷପାତିତା ମତେ କେବେ କେବେ ଭ୍ରାନ୍ତ କରୁଥିଲେ ସୁଦ୍ଧା ଏଠାରେ କାଶ୍ମୀରକୁ ଶତମୁଖରେ ପ୍ରଶଂସା କରିବା ମୋର ଉଦ୍ଦେଶ୍ୟ ନୁହେଁ; ଉଦ୍ଦେଶ୍ୟ ନୁହେଁ ସର୍ବେଶ୍ୱରବାଦ ପକ୍ଷରେ ଅର୍ଥାତ୍ ଜଗତ ବ୍ରହ୍ମମୟ ବୋଲି କୌଣସି ଯୁକ୍ତି ଉପସ୍ଥାପିତ କରିବା । ମୋର ନାସ୍ତିକତା କେବଳ ସେ ପର୍ଯ୍ୟନ୍ତ, ଯେଉଁଠି ମୁଁ ବିଶ୍ୱାସ କରେ ଯେ ନାସ୍ତିକତାର ସମ୍ପୂର୍ଣ୍ଣ ଦେହ ଓ ମନ ଉଭୟ ପକ୍ଷରେ କ୍ଷତିକାରକ ନୁହେଁ । ମୁଁ ମନେକରେ ନାହିଁ ଯେ ମାଟିରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇପଡ଼ିବା ମୂଳରେ ଜୀବନ ପରିଶେଷରେ ଝରିଯିବ । ଏ କଥା ସତ୍ୟ ଯେ ଜୀବନ ସମ୍ପୂର୍ଣ୍ଣ ଭାବରେ ମାଟିରୁ ବିଚ୍ଛିନ୍ନ ହୋଇନପାରେ ଏବଂ ପ୍ରକୃତିର ସମସ୍ତ କିଛି ପ୍ରକ୍ରିୟା

ତାର ନିଜସ୍ୱ ଶୈଳୀରେ ଚାଲିଥାଏ । ତଥାପି, ଆଧୁନିକ ସଭ୍ୟତାର ଏହା ଏକ ଦୁର୍ବଳତା ଯେ ତାହା କ୍ରମଶଃ ଜୀବନର ଉପାଦାନମାନଙ୍କ ପାଖରୁ ଦୂରେଇ ଯାଉଛି । ଆଧୁନିକ ପୁଞ୍ଜିବାଦୀ ସମାଜର ପ୍ରତିଯୋଗିତା ତଥା ଆହରଣ ପ୍ରବୃତ୍ତି, ସବୁ କିଛି ଉପରେ ଧନର ଆଧିପତ୍ୟ, ନିରବଚ୍ଛିନ୍ନ ମାନସିକ ଉତ୍ତେଜନା ଓ ଅନେକଙ୍କ ନିମନ୍ତେ ନିରାପତ୍ତାର ଅଭାବ ଆଧୁନିକ ସମାଜରେ ମଣିଷର ମନ ଓ ସ୍ୱାସ୍ଥ୍ୟ ଉପରେ କ୍ଷତିକର ପ୍ରଭାବ ପକାଏ । ଅର୍ଥନୈତିକ ଢାଞ୍ଚାରେ ଭାରସାମ୍ୟ ରହିପାରିଲେ ଏ ସବୁ ଅବସ୍ଥାରେ ଉନ୍ନତି ଦେଖାଦେବ । ତଥାପି ସୁଦ୍ଧା ମାଟି ଓ ପ୍ରକୃତି ସଙ୍ଗେ ଅଧିକତର ଘନିଷ୍ଠ ସମ୍ପର୍କ ସ୍ଥାପନ କରିବା ଆବଶ୍ୟକ ହେଇପଡ଼ିବ । ଏହାର ଅର୍ଥ ନୁହେଁ ଯେ ସେହି ସୀମିତବୋଧ ଯୋଗୁ ଜମିକୁ ଫେରିଯିବା କିମ୍ବା ଜୀବନଯାପନ କରିବାର ସେହିସବୁ ଆଦିମ ପନ୍ଥା ଅନୁସରଣ କରିବା । ଆଜିର ଏ ବ୍ୟାଧି ଅପେକ୍ଷା ସେ ପ୍ରକାର ନିରାମୟ ବ୍ୟବସ୍ଥା ଅଧିକତର କ୍ଷତିକାରକ ହେଇ ଉଠିବ । ଆଧୁନିକ ଶିଳ୍ପ ସଭ୍ୟତାକୁ ଯେପରି ସଙ୍ଗଠିତ କରିବା ସମ୍ଭବପର ଯଦ୍ୱାରା ନରନାରୀଙ୍କୁ, ଯେତେଦୂର କରାଯାଇ ପାରେ, ଜମି ସଙ୍ଗେ ସମ୍ପର୍କିତ କରି ରଖିହେବ ଓ ଗ୍ରାମାଞ୍ଚଳର ସାଂସ୍କୃତିକ ସ୍ତର ଆହୁରି ଉନ୍ନତ କରିହେବ । ଜୀବନର ବିବିଧ ସୁଖସ୍ୱାଚ୍ଛନ୍ଦ୍ୟ ନିମନ୍ତେ ଗ୍ରାମ ଓ ନଗର ପରସ୍ପର ଉପରେ ଆହୁରି ନିର୍ଭରଶୀଳ ହେବା ଆବଶ୍ୟକ । ତାହାହେଲେ କେବଳ ଦେହ ଓ ମନର ବିକାଶ ଏବଂ ଏକ ପୂର୍ଣ୍ଣତର ଜୀବନଯାପନ ନିମନ୍ତେ ଉଭୟ ପାଇଁ ପୂର୍ଣ୍ଣ ସୁଯୋଗ ଲଭିହେବ ।

ମୋର ତିଳେମାତ୍ର ସନ୍ଦେହ ନାହିଁ ଯେ ଲୋକେ କରିବାକୁ ଚାହିଁଲେ ଏପରି କରାଯାଇ ପାରିବ । ବର୍ତ୍ତମାନ ସେପରି କିଛି ବିସ୍ତୃତ ଅଭିଳାଷ ସେ ଦିଗରେ ନାହିଁ ଏବଂ ଆମର ସମସ୍ତ ଶକ୍ତି ନିୟୋଜିତ ହେଉଛି ( ପରସ୍ପରକୁ ହତ୍ୟାକରିବା ଅତିରିକ୍ତ ) ଉତ୍ତେଜକ ଦ୍ରବ୍ୟ ପ୍ରସ୍ତୁତ କରିବାରେ ଓ ଉତ୍ତେଜକ ମନୋରଞ୍ଜନରେ । ଏଥିର ବହୁତ କିଛି ପ୍ରତି ମୋର ସେପରି କିଛି ମୌଳିକ ବିରୋଧିତା ନାହିଁ । ମୋର ବିଚାରରେ ସେଥିରୁ କିଛି ଅବଶ୍ୟ ବାଞ୍ଛନୀୟ । ମୋର କେବଳ କହିବାର କଥା ଯେ ସେଥିରେ ଯେଉଁ ପରିମାଣ ସମୟ ବ୍ୟୟିତ ହେଇଥାଏ ତାହା ଅନ୍ୟ ଦିଗରେ ସମାଜର ହିତ ନିମନ୍ତେ ବିନିଯୋଗ କରିହୁଅନ୍ତା । ଅଧିକନ୍ତୁ ସେସବୁ ଉତ୍ତେଜକ ଆମୋଦପ୍ରମୋଦରୁ ଜୀବନର ଯେଉଁ ପରିପ୍ରେକ୍ଷୀ ଲଭିହୁଏ ତାହା ମଣିଷ ପକ୍ଷରେ କଲ୍ୟାଣକର ନୁହେଁ । ଆଜି କୃତ୍ରିମ ସାରର ଚାହିଦା ପ୍ରଭୂତ ଭାବରେ ବଢ଼ିଯାଇଛି ଏବଂ ମୁଁ ମନେକରେ, ସେଥିରୁ ଆମେ ଲାଭବାନ ହେଇଥାଇ; କିନ୍ତୁ ଏହି କୃତ୍ରିମ ସାର ନିମନ୍ତେ ଲୋକେ ଧାଇଁଲାବେଳେ ପ୍ରାକୃତିକ ସାର କଥା ଭୁଲିଯିବା କିମ୍ବା ଅବହେଳାରେ ତାହା ନଷ୍ଟ କରିଦେବା ମତେ ସଙ୍ଗତ ମନେହୁଏନି । ଚୀନ କେବଳ ବୁଦ୍ଧିମାନର କାର୍ଯ୍ୟକରି ଏହି ପ୍ରାକୃତିକ ସାରକୁ ଭଲ ଭାବରେ ବିନିଯୋଗ କରିପାରିଛି । କେହି କେହି ବିଶେଷଜ୍ଞ କହନ୍ତି ଯେ କୃତ୍ରିମ ସାର ହଠାତ୍ ଫଳପ୍ରଦ ହେଲେ ସୁଦ୍ଧା ତାହା ମାଟିକୁ ଦୁର୍ବଳ କରିଦିଏ; କାରଣ ଏହି ସାର ପଡ଼ିବା ଫଳରେ ମାଟିର ସ୍ୱାଭାବିକ ଉର୍ବରତା ପକ୍ଷରେ ଅତ୍ୟାବଶ୍ୟକ କେତେକ ଉପାଦାନ ନଷ୍ଟ ହେଇଯାଏ । ଏପରି ଭାବରେ କାଳକ୍ରମେ ଜମିର

ଉତ୍ପାଦିକା ଶକ୍ତି ନଷ୍ଟ ହୋଇଥାଏ । ଆମ୍ଭମାନଙ୍କର ବ୍ୟକ୍ତିଗତ ଜୀବନ ପକ୍ଷରେ ଯେପରି ମାଟି ପକ୍ଷରେ ମଧ୍ୟ ସେପରି ସଳିତାଟିକୁ ଦୁଇମୁହଁରୁ ଜାଳିବା କେବେହେଲେ ସ୍ପୃହଣୀୟ ନୁହେଁ । ମାଟି ପ୍ରତି ଆଜି ଆମର ଆଚରଣରେ, ଆମେ ଏକ ପ୍ରକାର ଅଯଥାସ୍ଥ ଭାବରେ ତା'ର ସମ୍ପଦ ହରଣ କରିବାରେ ଲାଗିଥାଉଁ ଯିନା ବିନିମୟରେ ଆମେ ତାକୁ କ'ଣ ଦେଉଚୁ ?

ରସାୟନିକ ଗବେଷଣାଗାରରେ ପ୍ରାୟ ସବୁ କିଛୁ ପ୍ରସ୍ତୁତ କରିବାର ସାମର୍ଥ୍ୟ ଆମର ବଢ଼ିବାରେ ଲାଗିଚି ବୋଲି ଆମେ ଗର୍ବ କରୁଥାଉଁ । ବାଷ୍ପଯୁଗରୁ ଆମେ ଆସିଲେ ବିଦ୍ୟୁତ୍-ଯୁଗକୁ; ଅ.ଉ ବର୍ତ୍ତମାନ ଆମେ ଆସିଯାଇଚୁ ବାଇଓଟେକ୍ନିକ୍ (ଜୀବକୋଷ ପ୍ରକ୍ରିୟା) ଓ ଇଲେକ୍ଟ୍ରନିକ୍ ବା ମୌଳିକ ଅଣୁର (ପ୍ରୋଟନ୍, ନିଉଟ୍ରନ୍ ଇତ୍ୟାଦି) ସମବାୟରେ ପଦାର୍ଥ ଗଠନ ସମ୍ବନ୍ଧୀୟ ପଦାର୍ଥବିଦ୍ୟାର ଯୁଗକୁ । ସମାଜ-ବିଜ୍ଞାନର ସେହି ଯୁଗ, ଯାହା ଆମେ ଆଶା କରୁଁ ଆମର ବିବ୍ରତକର ବହୁତ କିଛୁ ଜଟିଳ ସମସ୍ୟାର ସମାଧାନ ଯୋଗାଇ ପାରିବା, ଆସିବାର ସୂଚନା ଦେଖାଗଲାଣି । ଆମକୁ ଅନ୍ତତଃ କୁହାଯାଉଚି ଯେ ଆମେ ମେଗ୍ନେସିୟମ୍-ଆଲୁମିନିୟମ ଯୁଗର ଦ୍ୱାରଦେଶରେ ଉପନୀତ ହୋଇସାରିଚୁ ଏବଂ ଏହି ଉଭୟ ଧାତୁ ଯେହେତୁ ପ୍ରଚୁର ପରିମାଣରେ ପୃଥିବୀର ସର୍ବତ୍ର ମିଳିପାରୁଛି ଆମର ସେପରି କିଛି ଅସୁବିଧା ହେବାର ନାହିଁ । ନୂତନ ରସାୟନ-ବିଦ୍ୟା ମାନବ ଜାତି ପାଇଁ ଏକ ନୂତନ ଜୀବନ ନିର୍ମାଣ କରୁଚି । ମାନବଜାତିର ଶକ୍ତି-ସମ୍ବଳ ଅପର୍ଯ୍ୟାପ୍ତ ଭାବରେ ବୃଦ୍ଧି କରିବା ଦିଗରେ ଆମେ ବହୁତ ବାଟ ଆଗେଇଗଲୁଣି ଏବଂ ନିକଟଭବିଷ୍ୟତରେ ଯୁଗପ୍ରବର୍ତ୍ତକ ବହୁ ଆବିଷ୍କାର ଯେ ହୋଇପାରିବ ସେ ଆଶା କ୍ରମଶଃ ସ୍ପଷ୍ଟତର ହୋଇଉଠିଚି ।

ଏ ସବୁ ବାସ୍ତବିକ ଆଶ୍ୱାସନାପ୍ରଦ । ତଥାପି, ମନରୁ ସନ୍ଦେହ ଦୂରହେଉନି । ଆଜି ଆମର ସମସ୍ତ ଦୁଃଖଦୁର୍ଦ୍ଦଶାର କାରଣ ଆମ ପାଖରେ ଶକ୍ତି ଓ କ୍ଷମତାର ଅଭାବ ବୋଲି ନୁହେଁ; ବରଂ ଆମ ହାତରେ ଥିବା କ୍ଷମତାର ଅପବ୍ୟବହାର ଅଥବା ଅପପ୍ରୟୋଗ ଯୋଗୁଁ । ବିଜ୍ଞାନ ଆମକୁ ଶକ୍ତିମାନ କଲେ କି ହେବ ତାହା ଅବ୍ୟକ୍ତିକ ଓ ଉଦ୍ଦେଶ୍ୟହୀନ ଏବଂ ଆମ ହାତରେ ଦେଇଥିବା ଜ୍ଞାନର ପ୍ରୟୋଗ ସମ୍ବନ୍ଧରେ ଉଦାସୀନ ରହୁଯାଉଚି । ବିଜ୍ଞାନର ବିଜୟଯାତ୍ରା ଯେ ଅବ୍ୟାହତ ରହିବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ବିଜ୍ଞାନ ଯଦି ପ୍ରକୃତିକୁ ଅତିଶୟ ଭାବରେ ଅବଜ୍ଞା କରିବସେ, ପ୍ରକୃତି ମଧ୍ୟ ତା'ର ଉପରେ ସୂକ୍ଷ୍ମ ଭାବରେ ପ୍ରତିଶୋଧ ନେବାର ସମ୍ଭାବନା ରହିଚି । ବାହ୍ୟତଃ ଜୀବନର ଅଭିବୃଦ୍ଧି ସାଧିତ ହେଲାବେଳେ, ବିଜ୍ଞାନ ଏ ଯାବତ୍ ଆବିଷ୍କାର କରିପାରି ନଥିବା ଯେପରି କୌଣସି କାରଣ ଯୋଗୁଁ ଅନ୍ତର ଭିତରେ ଜୀବନ କ୍ରମଶଃ ମଉଳି ଯାଇପାରେ ।

## ୧୫. ଏକ ପୁରାତନ ସମସ୍ୟା ପ୍ରତି ଆଧୁନିକ ଆଭିମୁଖ୍ୟ

ଆଧୁନିକ ମନ, ବିଶେଷତଃ ଉନ୍ନତ ଧରଣର ଆଧୁନିକ ମନ, ବ୍ୟାବହାରିକ, ପ୍ରାୟୋଗିକ, ନୀତିଶାସ୍ତ୍ରପର, ସାମାଜିକ ପରାର୍ଥପର ଓ ମାନବ-ହିତୈଷୀ । ଏହା ଏକ ସାମାଜିକ ଉନ୍ନତିକଳ୍ପେ ଏକ ବ୍ୟାବହାରିକ ଆଦର୍ଶବାଦଦ୍ୱାରା ପରିଚାଳିତ । ଯେଉଁସବୁ ଆଦର୍ଶଦ୍ୱାରା

ଏହି ମନ ଉଦ୍‌ବୁଦ୍ଧ ହେଉଥାଏ ତାହା ଯୁଗଧର୍ମସମ୍ମତ । ପ୍ରାଚୀନ କାଳର ଦାର୍ଶନିକ ଆଭିମୁଖ୍ୟ, ଅନ୍ତିମ ସତ୍ୟର ଜିଜ୍ଞାସା ଏବଂ ସେଥି ସଙ୍ଗେ ସଙ୍ଗେ ମଧ୍ୟଯୁଗର ଭକ୍ତିବାଦ ଓ ଅତୀନ୍ଦ୍ରିୟବାଦ ଆଜିର ମନରୁ ବହୁତ ପରିମାଣରେ ଅପସାରିତ ହୋଇଯାଇଛି । ଆଜିର ମନୀଷି ପକ୍ଷରେ ବିଶ୍ୱ-ମାନବତା ହିଁ ଈଶ୍ୱର ଆଉ ତା'ର ଧର୍ମ ହେଉଛି ସମାଜସେବା । ପ୍ରତ୍ୟେକ ଯୁଗର ମନ ସେ ଯୁଗର ପରିବେଷ୍ଟନୀଦ୍ୱାରା ଯେହେତୁ ସୀମାବଦ୍ଧ ହୋଇଥାଏ ଏବଂ ପ୍ରତ୍ୟେକ ଯୁଗ କୌଣସି ଆଂଶିକ ସତ୍ୟକୁ ସବୁକିଛି ସତ୍ୟର ଚାବିକାଠି ବୋଲି ଯେହେତୁ ବିବେଚନା କରିଥାଏ, ସେ ଦିଗରୁ ଦେଖିଲେ ଏହି ଅବଧାରଣା ଅସମ୍ପୂର୍ଣ୍ଣ ହୋଇପାରେ । ପ୍ରତ୍ୟେକ ପୁରୁଷ ଓ ପ୍ରତ୍ୟେକ ଜାତି ଯେଉଁ ଭ୍ରମରେ ପଡ଼ିଥାନ୍ତି ତାହା ହେଉଛି ଯେ ସେମାନଙ୍କ ଦୃଷ୍ଟିଭଙ୍ଗୀ ହିଁ ନିର୍ଭୁଲ କିମ୍ବା ନିର୍ଭୁଲ ନହେଲେ ସୁଦ୍ଧା ତା'ର ନିକଟତମ । ପ୍ରତ୍ୟେକ ସଂସ୍କୃତି ସଙ୍ଗେ, ସେହି ସଂସ୍କୃତିଦ୍ୱାରା ନିୟନ୍ତ୍ରିତ ଓ ସୀମିତ, କେତେକ ମୂଲ୍ୟବୋଧ ଜଡ଼ିତ ଥାଏ । ସେହି ସଂସ୍କୃତିଦ୍ୱାରା ପରିଚାଳିତ ଲୋକେ ସେହିସବୁ ମୂଲ୍ୟବୋଧ ଅପରିବର୍ତ୍ତନୀୟ ଓ ଶାଶ୍ୱତ ମଣିଥାନ୍ତି । ଅତଏବ, ଆମର ଆଜିର ସଂସ୍କୃତିର ଯେତେ ସବୁ ମୂଲ୍ୟବୋଧ ଚିରସ୍ଥାୟୀ ଓ ଚୂଡ଼ାନ୍ତ ନହୋଇ ପାରେ । ତଥାପି, ସେଥିରେ ଆମ ନିମନ୍ତେ ଯେଉଁ ଅପରିହାର୍ଯ୍ୟ ମହତ୍ତ୍ୱ ନିହିତ ଅଛି; ତାହା ଆମର ଚଳନ୍ତି ଯୁଗର ଭାବନା ଓ ଚେତନାର ପ୍ରତିନିଧିତ୍ୱ କରେ । ସ୍ୱଳ୍ପ କେତେକ ଦ୍ରଷ୍ଟା ଓ ଅସାଧାରଣ ପ୍ରତିଭା ଭବିଷ୍ୟ ଭିତରକୁ ଦୃଷ୍ଟି ସଞ୍ଚାରଣ କରି ମାନବତା ଓ ବ୍ରହ୍ମାଣ୍ଡର ଏକ ପୂର୍ଣ୍ଣତର ପରିଜ୍ଞାନ ଲାଭ କରିପାରନ୍ତି । ସେମାନେ ସେହି ତତ୍ତ୍ୱର ଅନ୍ତର୍ଗତ ଯାହା ସମସ୍ତକିଛି ଅଗ୍ରଗତିର ମୂଳ ଉତ୍ସ; କିନ୍ତୁ ଅଧିକାଂଶ ଲୋକଙ୍କ ପକ୍ଷରେ ଆଜିର ସବୁକିଛି ମୂଲ୍ୟବୋଧ ଅପରିଚିତ ରହିଯାଏ । ତଥାପି, ସେମାନେ ସେ ସବୁ ମୂଲ୍ୟବୋଧ ବିଷୟରେ ଦୁର୍ବୋଧ ଭାଷାରେ ଆଲୋଚନା କରିଥାନ୍ତି ଏବଂ ଅତୀତର ବନ୍ଦିଶାଳାରେ ସେମାନଙ୍କର ଜୀବନ ଅତିବାହିତ ହୋଇଥାଏ ।

ଅତଏବ, ଆମେ ଯେଉଁ ଯୁଗରେ ରହିଆଉଁ ସେହି ଯୁଗର ଉଚ୍ଚତମ ଆଦର୍ଶମାନଙ୍କ ସଙ୍ଗେ ସଙ୍ଗତିରଖି ଆମକୁ କାର୍ଯ୍ୟକାରୀ ହେବାକୁ ପଡ଼ିବ । ଆମର ଜାତୀୟ ପ୍ରତିଭା ଓ ସଂସ୍କାର ଅନୁସାରେ ଆମେ ସେସବୁ ଆଦର୍ଶକୁ ବ୍ୟାଖ୍ୟା କରିପାରୁଁ ଏବଂ ସେଥିରେ ଆଉ କିଛି ଯୋଗ ବି କରିପାରୁଁ । ସେହିସବୁ ଆଦର୍ଶକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ; ଯଥା—ମାନବବାଦ ଓ ବୈଜ୍ଞାନିକ ସ୍ୱଭାବ । ଏହି ଉଭୟ ମଧ୍ୟରେ ବିବାଦ ରହି ଆସିଛି; କିନ୍ତୁ ଆଜି ଚିନ୍ତାରେ ଯେଉଁ ବିପୁଳ ଉଦ୍‌ବେଳନ ସୃଷ୍ଟି ହୋଇଛି, ତାହା ସବୁ କିଛି ମୂଲ୍ୟବୋଧର ନୂତନ ମୂଲ୍ୟାଙ୍କନ ଦାବିକରୁଛି ଏବଂ ଏହି ଉଭୟ ଆଭିମୁଖ୍ୟର ପୁରାତନ ସରହଦ ଦୂରୀଭୂତ ହୋଇଯାଉଛି । ଠିକ୍ ସେହିପରି ବିଜ୍ଞାନର ଦୃଶ୍ୟମାନ ବିଶ୍ୱ ଓ ଆତ୍ମନିରୀକ୍ଷଣରେ ଅନ୍ତଃସ୍ଥ ବିଶ୍ୱ ମଧ୍ୟରେ ସୀମା ସରହଦ ବି ଅପସରି ଯାଉଛି । ମାନବବାଦ ଓ ବୈଜ୍ଞାନିକ ସ୍ୱଭାବ ମଧ୍ୟରେ ସମନ୍ୱୟ ବୃଦ୍ଧିପାଉଛି ଏବଂ ପରିଣାମରେ ଏକ ପ୍ରକାର ବୈଜ୍ଞାନିକ ମାନବବାଦ ଗଢ଼ି ଉଠୁଛି । ପ୍ରକାଶ୍ୟ ତଥ୍ୟ ଉପରେ ନିର୍ଭର କଲେ ସୁଦ୍ଧା ବିଜ୍ଞାନ ଅନ୍ୟାନ୍ୟ ପ୍ରଦେଶର

ସମୀପବର୍ତ୍ତୀ ହେଲଣି । ଅନ୍ତତଃ ସେସବୁ ପ୍ରଦେଶକୁ ଅସ୍ପୃଶ୍ୟଭାବରେ ଆଉ ଅସ୍ୱୀକାର କରୁନାହିଁ । ଆମର ପଞ୍ଚେନ୍ଦ୍ରିୟ ଓ ତା'ର ଜ୍ଞାନକ୍ଷେତ୍ରରେ ପରିସର ଭିତରେ ଏ ବ୍ରହ୍ମାଣ୍ଡ ସୀମିତ ନୁହେଁ । ଭୌତିକ ବିଶ୍ୱସମ୍ବନ୍ଧୀୟ ବୈଜ୍ଞାନିକ ଚିନ୍ତାରେ ଗତ ପଚାଶ ବର୍ଷ ଭିତରେ ବହୁତ କିଛି ପରିବର୍ତ୍ତନ ଘଟିଗଲାଣି । ମନୀଷୀଠାରୁ ପ୍ରାୟ ସ୍ୱତନ୍ତ୍ର ଭାବରେ ବିଜ୍ଞାନ ଦେଖୁଥିଲା ପ୍ରକୃତିକୁ; କିନ୍ତୁ ବର୍ତ୍ତମାନ ସାର୍ ଜେମସ୍ ଜାନ୍ସ ଆମକୁ କହନ୍ତି ଯେ ବିଜ୍ଞାନର ସାର-କଥା ହେଉଛି "ମନୀଷୀ ପ୍ରକୃତିକୁ ତା'ଠାରୁ ସ୍ୱତନ୍ତ୍ର ବୋଲି ବିବେଚନା କରୁନାହିଁ ।" ଏଠାରେ ସେହି ପୁରାତନ ପ୍ରଶ୍ନ ପୁଣି ଉଠୁଛି, ଯାହା ଉପନିଷଦର ଋଷିମାନଙ୍କୁ ଆଲୋଡ଼ିତ କରିଥିଲା । ତାହା ହେଉଛି : ଜ୍ଞାତା ଜ୍ଞାତ ହେବ କିପରି ? ଯେଉଁ ଚକ୍ଷୁ ବାହ୍ୟ ବସ୍ତୁ ଦେଖି-ପାରୁଛି, ତାହା ନିଜକୁ ଦେଖିପାରିବ କିପରି ? ବହିରଙ୍ଗ ଯଦି ଅନ୍ତରଙ୍ଗର ଅଂଶବିଶେଷ, ତାହାହେଲେ ଆମେ ଯାହା ଦେଖୁଥାଉଁ କିମ୍ବା ଧାରଣା କରୁଥାଉଁ ତାହା ଆମ ମନର ଏକ ପ୍ରତିଫଳନ ମାତ୍ର ଏବଂ ବ୍ରହ୍ମାଣ୍ଡ ଓ ପ୍ରକୃତି, ଦେହ, ମନ ଓ ଆତ୍ମା, ବହିରଙ୍ଗ ଓ ଅନ୍ତରଙ୍ଗ ସବୁକିଛି ଯଦି ସାରତଃ ଏକ ହିଁ ବସ୍ତୁ, ଆମେ ତାହାହେଲେ ଆମର ସୀମିତ ମନ ଘେନି ଏହି ବିରାଟ ଯୋଜନାକୁ ବୁଝି ପାରିବା କିପରି ? ବିଜ୍ଞାନ ଏହି ସବୁ ସମସ୍ୟା ପ୍ରତି ଦୃଷ୍ଟି ଦେଲାଣି ଏବଂ ସେସବୁ ତା'ର ହାତରେ ସହଜରେ ଧରା ଦେଉନଥିଲେ ସୁଦ୍ଧା ଆଜିର ଜିଜ୍ଞାସୁ ବୈଜ୍ଞାନିକ ପୂର୍ବବର୍ତ୍ତୀ ଯୁଗମାନଙ୍କର ଈଶ୍ୱରସାଧକ ଓ ଦାର୍ଶନିକ ପ୍ରତିମୂର୍ତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଧ୍ୟାପକ ଅଲ୍‌ବର୍ଟ ଆଇନ୍‌ଷ୍ଟାଇନ୍ କହନ୍ତି, "ଆମର ଏହି ବସ୍ତୁବାଦୀ ଯୁଗରେ ଜିଜ୍ଞାସୁ ବୈଜ୍ଞାନିକ ହିଁ ପ୍ରଗାଢ଼ ଭାବରେ ଧର୍ମପ୍ରାଣ ।" (୧)

ଏ ସବୁଥିରୁ ଅନୁମିତ ହୁଏ ଯେ ବିଜ୍ଞାନ ଉପରେ ଦୃଢ଼ ବିଶ୍ୱାସ ରହିଛି । ତଥାପି, ମନରେ ଶଙ୍କା ବି ରହିଛି ଯେ କେବଳ ତଥ୍ୟ ଉପରେ ନିବେଶିତ ତଥା ଉଦ୍ଦେଶ୍ୟହୀନ ବିଜ୍ଞାନ ଯଥେଷ୍ଟ ନୁହେଁ । ଜୀବନ ନିମନ୍ତେ ଆବଶ୍ୟକ ବହୁତ କିଛି ଉପକରଣ ଯୋଗାଇବାକୁ ଯାଇ ଜୀବନର ତାତ୍ପର୍ଯ୍ୟ ପ୍ରତି ବିଜ୍ଞାନ ଅବଜ୍ଞା ପ୍ରଦର୍ଶନ କରୁଛି କି ? ଦୃଶ୍ୟମାନ ଜଗତ ଓ ଆଧ୍ୟାତ୍ମ୍ୟ ଜଗତ ମଧ୍ୟରେ ସଙ୍ଗତି ଆଣିବା ପାଇଁ ଉଦ୍ୟମ ଚାଲିଛି; କାରଣ ଏହା ସ୍ପଷ୍ଟତର ହେଲାଣି ଯେ ବିଜ୍ଞାନ ଉପରେ ଅଧିକ ଧ୍ୟାନ ଦେବାଦ୍ୱାରା ମଣିଷର ଆତ୍ମିକ ଜୀବନ ଭାଙ୍ଗି ପଡ଼ୁଛି । ଅତୀତରେ ଦାର୍ଶନିକମାନଙ୍କୁ ଯେଉଁ ପ୍ରଶ୍ନ ଆନ୍ଦୋଳିତ କରିଥିଲା, ପୁନର୍ବାର ଭିନ୍ନ ଆକାରରେ ଓ ଭିନ୍ନ ପ୍ରକରଣରେ ତାହା ଦେଖାଦେଇଛି । ବ୍ୟକ୍ତିର ଆଧ୍ୟାତ୍ମ୍ୟଜୀବନ ସଙ୍ଗେ ଇନ୍ଦ୍ରିୟଗ୍ରାହ୍ୟ ଜୀବନର ମେଳ କିପରି ସମାହିତ ହୋଇପାରିବ, ହେଉଛି ପ୍ରଶ୍ନ । ଚିକିତ୍ସକମାନେ ଜଣେ ବ୍ୟକ୍ତିର କିମ୍ବା ସାମଗ୍ରିକ ଭାବରେ ସମାଜର ଶରୀର ଚିକିତ୍ସା କେବଳ ଯଥେଷ୍ଟ ନୁହେଁ ବୋଲି ଉପଲବ୍‌ଧି କରିପାରିଲେଣି । ଏଇ କେତେ ବର୍ଷରେ, ଆଧୁନିକ ମାନସିକ ରୋଗ ନିଦାନ-

---

(୧) ପଚାଶ ବର୍ଷ ତଳେ ସ୍ୱାମୀ ବିବେକାନନ୍ଦ ଆଧୁନିକ ବିଜ୍ଞାନକୁ ପ୍ରକୃତ ଧାର୍ମିକତାର ଅଭିବ୍ୟକ୍ତି ବୋଲି ବିବେଚନା କରିଥିଲେ; କାରଣ ସତ୍ୟୋପଲବ୍‌ଧି ନିମନ୍ତେ ଆନ୍ତରିକ ଭାବରେ ପ୍ରୟାସଶୀଳ ।

ବିଦ୍ୟାର ବିବିଧ ତଥ୍ୟ ସଙ୍ଗେ ପରିଚିତ ଚିକିତ୍ସାଶାସ୍ତ୍ରବିତ୍‌ମାନେ 'ଜୈବ' ବ୍ୟାଧି ଓ ଅନ୍ୟବିଧ ବ୍ୟାଧି ମଧ୍ୟର ବିଷମତା ଭ୍ରାନ୍ତ ବିବେଚନା କରି ମନସ୍ତାତ୍ତ୍ୱିକ କାରଣ ଉପରେ ବିଶେଷ ଧ୍ୟାନ ଦେଉଚନ୍ତି । "ରୋଗର ଚିକିତ୍ସାରେ ଯେଉଁ ମାରାତ୍ମକ ଭ୍ରମ ପରିଲକ୍ଷିତ ହୋଇଥାଏ, ତାହା ହେଉଛି ଯେ ମଣିଷର ଦେହ ତଥା ଆତ୍ମା ପାଇଁ ଭିନ୍ନ ଭିନ୍ନ ଚିକିତ୍ସାବ୍ୟବସ୍ଥା ଦିଆଯାଉଛି । ଅଥଚ ମଣିଷ ଦେହ ଓ ଆତ୍ମା ସାରତଃ ଏକ ଓ ଅଖଣ୍ଡ," ଲେଖିଚନ୍ତି ପ୍ଲାଟୋ ।

ବିଜ୍ଞାନ-ଜଗତରେ ବହୁବିଶ୍ରୁତ ଆଇନ୍‌ଷ୍ଟାଇନ୍ କହନ୍ତି ଯେ "ଆଜି ମଣିଷ ଜାତିର ଭାଗ୍ୟ ପୂର୍ବାପେକ୍ଷା ଅଧିକ ଭାବରେ ନିର୍ଭରଶୀଳ ତା'ର ନୈତିକ ବଳ ଉପରେ । ମଣିଷର ସୁଖ ଓ ଆନନ୍ଦ ଆତ୍ମସଂଯମ ଓ ତ୍ୟାଗରେ ହିଁ ନିହିତ ।" ବିଜ୍ଞାନର ଏହି ଗର୍ବିତ ଯୁଗରୁ ସେ ଅଗ୍ରନାୟକ ଆମକୁ ସେ କାଳର ଦାର୍ଶନିକମାନଙ୍କ ନିକଟରେ ନେଇ ପହଞ୍ଚାଇ ଦେଇଚନ୍ତି । ଲୋଭ ମନୋବୃତ୍ତି ଓ କ୍ଷମତା ନିମନ୍ତେ ଉତ୍‌କଣ୍ଠାର ସଂସାର ଭିତରୁ ଆମେ ତ୍ୟାଗ ଓ ତିତିକ୍ଷାର ମହତ୍ତ୍ୱ ଉପରେ ଦୃଷ୍ଟିପାତ କରି ଶିଖିଚୁ ଯାହା ସଙ୍ଗେ ଭାରତ ଯୁଗେ ଯୁଗେ ପରିଚିତ ହୋଇ ଆସିଚି । "ମାନବ ଜାତିର ଅଗ୍ରଗତି ପ୍ରତି ଏକାନ୍ତ ଅନୁରକ୍ତ ଯଦି କୌଣସି ଲୋକ ହାତରେ ଧନସମ୍ପଦ ଠୁଳ କରି ଦିଆଯାଏ, ତଦ୍ଦ୍ୱାରା ଉଦ୍ଦେଶ୍ୟ ସାଧିତ ହେବନାହିଁ; କାରଣ ସମ୍ପୂର୍ଣ୍ଣ ହୃଦ୍‌ବୋଧ ହୋଇଚି ଯେ କେତେ ଶକ୍ତିଶାଳୀ ହେଲେ ସୁଦ୍ଧା କେବଳ ଧନ ମାନବ ଜାତିର ଅଗ୍ରଗତି ସାଧନ କରିନପାରେ । ମହାନ୍ ତଥା ବିଶୁଦ୍ଧ ବ୍ୟକ୍ତିତ୍ୱର ଆଦର୍ଶ କେବଳ ଉଚ୍ଚ ଚିନ୍ତା ଓ ମହତ୍ତ୍ୱ କାର୍ଯ୍ୟ ନିମନ୍ତେ ପ୍ରେରଣା ଦେବାଲାଗି ସମର୍ଥ । ଧନ କେବଳ ସ୍ୱାର୍ଥାନ୍ୱେଷଣକୁ ଉଗ୍ର କରେ ଏବଂ ସର୍ବଦା ତା'ର ଅଧିକାରୀକୁ ଅନିବାର୍ଯ୍ୟ ଭାବରେ ଅସତ୍ ପଥକୁ ଆକର୍ଷିତ କରିଥାଏ ।" ଆଇନଷ୍ଟାଇନ୍‌ଙ୍କ ଏହି ଉକ୍ତି ସଙ୍ଗେ ଆଜିର ଅଧିକାଂଶ ବୈଜ୍ଞାନିକ ହୁଏତ ଏକମତ ହେବେନାହିଁ ।

ସଭ୍ୟତା ଭଳି ପ୍ରାଚୀନ ଏହି ପ୍ରଶ୍ନର ସମ୍ମୁଖୀନ ହେବାରେ ଆଧୁନିକ ବିଜ୍ଞାନ ବହୁତ କିଛି ସୁବିଧାର ଅଧିକାରୀ ଯାହା ସେ ଯୁଗର ଦାର୍ଶନିକମାନଙ୍କର ନଥିଲା । ଆଜି ତା'ର ଜ୍ଞାନର ଭଣ୍ଡାର କିଛି ସାମାନ୍ୟ ନୁହେଁ ଏବଂ ତା'ର ପ୍ରଣାଳୀର ଯଥାର୍ଥତା ବହୁଳ ଭାବରେ ସମ୍ପାଦିତ ହୋଇପାରିଚି । ସେପରି ବହୁତ କିଛି ପ୍ରଦେଶର ମାନଚିତ୍ର ଓ ଅନ୍ୟାନ୍ୟ ତଥ୍ୟ ସଂଗ୍ରହ ଆଜି ବିଜ୍ଞାନ ଯାହା କରିପାରିଚି, ପୂର୍ବକାଳର ଲୋକେ ସେ ବିଷୟରେ ପରିଚିତ ନଥିଲେ । ମଣିଷର ବୋଧଶକ୍ତି ଆଜି ସମ୍ପ୍ରସାରିତ ହୋଇଚି ଓ ବହୁତ ବିଷୟ ଉପରେ ତା'ର ନିୟନ୍ତ୍ରଣ ପ୍ରତିଷ୍ଠିତ ହୋଇଚି । ଆଜି ସେସବୁ ଆଉ ରହସ୍ୟପୂର୍ଣ୍ଣ ହୋଇ ନାହିଁ, ଯାହା ଭେଦ-କରିବା ପାଇଁ ମଣିଷ ଧର୍ମଯାଜକମାନଙ୍କର ଆଶ୍ରୟ ଲୋଡ଼ନ୍ତା । ତଥାପି, ବିଜ୍ଞାନର ଅସୁବିଧା ମଧ୍ୟ କେତେକ ପରିମାଣରେ ରହିଚି । ତା'ର ସଂଗୃହୀତ ଜ୍ଞାନର ଏହି ପ୍ରାଚୁର୍ଯ୍ୟ ଯୋଗୁ ସାମଗ୍ରିକ ଭାବରେ ଏକ ସମନ୍ୱୟକାରୀ ଦୃଷ୍ଟିଭଙ୍ଗୀ ଗ୍ରହଣ କରିବା ମଣିଷ ପକ୍ଷରେ ଦୁରୂହ ହୋଇ ଉଠିଚି । ଫଳତଃ କୌଣସି ଏକ ଅଂଶରେ ସେ ନିଜକୁ ହଜାଇ ବସୁଚି, ଅନୁଶୀଳନ ଓ ଅଧ୍ୟୟନ କରୁଚି, ଆଂଶିକ ଭାବରେ ଉପଲବ୍ଧି କରୁଚି; କିନ୍ତୁ 'ପୂର୍ଣ୍ଣ' ସଙ୍ଗେ ତାର ସମ୍ବନ୍ଧ ଦେଖିବାଲାଗି ଅକ୍ଷମ ହେଉଚି । ବିଜ୍ଞାନ ଯେଉଁ ସବୁ ବିପୁଳ ଶକ୍ତି ଉନ୍ମୋଚିତ କରିଚି,

ସେଥିରେ ମଣିଷ ଅଭିଭୂତ ହୋଇପଡ଼ୁଛି ଏବଂ ସେ ସବୁ ଶକ୍ତି ନିରବଚ୍ଛିନ୍ନ ଭାବରେ ତାକୁ ଆଗକୁ ବଢ଼ାଇ ନେଇଛି ଏବଂ ବହୁଧା ନିଜର ଅନିଚ୍ଛାସତ୍ତ୍ୱେ ଅନାୟତ୍ତ ଭାବରେ ସେ କେଉଁ ଅଜ୍ଞାତ ଉପକୂଳରେ ଉପନୀତ ହେଉଛି । ଆଧୁନିକ ଜୀବନର ଗତି, ସଙ୍କଟ ପରେ ସଙ୍କଟ ଅନାସକ୍ତ ସତ୍ୟ ସନ୍ଧାନର ପଥ ବାଧାଗ୍ରସ୍ତ କରୁଛି । ମଣିଷର ଜ୍ଞାନରେ ସ୍ଥୈର୍ଯ୍ୟ ଅଭାବିତ ହେବା ଫଳରେ ପ୍ରକୃତ ଉପଲବ୍ଧି ନିମନ୍ତେ ଏକାନ୍ତ ଆବଶ୍ୟକ ସେହି ନିଶ୍ଚଳତା ଓ ଅନାସକ୍ତ ଦୃଷ୍ଟିଭଙ୍ଗୀ ଲାଭକରିବା ତା' ପକ୍ଷରେ ସହଜ ହେଉନାହିଁ । "କାରଣ ଜ୍ଞାନର ଧାରା ବଡ଼ ଶାନ୍ତ ଓ ତା'ର ଆଚରଣ ଓ ମିଜାଜରେ ଉଦ୍‌ବେଗର ଲେଶ ନଥାଏ ।"

ମାନବ ଜାତିର ଏକ ମହାନ୍ ଯୁଗରେ ଆମେ ହୁଏତ ଜୀବନଯାପନ କରୁଥାଇଁ ଏବଂ ସେହି ଯୁବିଧା ଭୋଗ ନିମନ୍ତେ ଆମକୁ ତା'ର ମୂଲ୍ୟ ଦେବାକୁ ପଡ଼ୁଛି । ପ୍ରତ୍ୟେକ ମହାନ୍ ଯୁଗରେ ସଙ୍ଘର୍ଷ ଓ ଅସ୍ଥିରତା ଦେଖାଦେଇଛି ଏବଂ ପୁରାତନରୁ ନୂତନ କିଛିକୁ ପରିବର୍ତ୍ତିତ ହେବାର ଉଦ୍ୟମ କରାଯାଇଛି । ସ୍ଥାୟିତ୍ୱ କିମ୍ବା ନିରାପତ୍ତା କିମ୍ବା ପରିବର୍ତ୍ତନହୀନତା ବୋଲି ସେପରି କିଛି ନାହିଁ । ସବୁ କିଛିର ଅବସ୍ଥାନ୍ତରଣ ଅବଶ୍ୟମ୍ଭାବୀ । ଅନ୍ୟଥା, ଜୀବନ ଅସ୍ତିତ୍ୱ ହରାଇ ବସିବ । ବହୁତ ହେଲେ ଆମେ ଗୋଟାଏ ଆପେକ୍ଷିକ ସ୍ଥାୟିତ୍ୱ ଓ ଚଳଶୀଳ ଭାରସାମ୍ୟ ନିମନ୍ତେ ଉଦ୍ୟମ କରିପାରୁଁ । ମଣିଷ ବିରୁଦ୍ଧରେ, ତାର ପରିବେଷ୍ଟନୀ ବିରୁଦ୍ଧରେ ମଣିଷର ନିରବଚ୍ଛିନ୍ନ ସଂଗ୍ରାମ ହେଉଛି ଜୀବନ । ଭୌତିକ, ବୌଦ୍ଧିକ ଓ ନୈତିକ ସ୍ତରରେ ଏହି ସଙ୍ଘର୍ଷରୁ ହେତୁ କିଛି ନୂତନ ଭାବ ଓ ନୂତନ ରୂପ ଉଦ୍‌ଭୂତ ହୁଏ । ବିନାଶ ଓ ବିକାଶ ଏକା ସଙ୍ଗେ ଚାଲିଥାଏ ଏବଂ ମଣିଷ ଓ ପ୍ରକୃତିର ଏହି ଉଭୟ ବିଭାବ ସର୍ବଦା ବିଦ୍ୟମାନ ରହେ । ଜୀବନ ଚଳନପରାଙ୍ମୁଖ ନୁହେଁ; ଏହା ବର୍ଦ୍ଧନଶୀଳ । ଗତିଶୀଳତା ତା'ର ଅନ୍ତର୍ନିହିତ । ଅତଏବ, ଗତିହୀନ ଅବସ୍ଥା ପ୍ରାପ୍ତହେବାର ଅବକାଶ ତା'ର ନଥାଏ ।

ଆଜି ରାଜନୀତି ଓ ଅର୍ଥନୀତି ଦୁନିଆରେ କ୍ଷମତାର ସନ୍ଧାନ ଚାଲିଛି; କିନ୍ତୁ କ୍ଷମତା ପ୍ରାପ୍ତି ସଙ୍ଗେ ସଙ୍ଗେ ମୂଲ୍ୟବାନ ବହୁତ କିଛି କ୍ଷେତ୍ରରୁ ହଜିଭାଇ ଯାଉଛି । ଆଦର୍ଶବାଦର ସ୍ଥାନ ଅଧିକାର କରୁଛି ରାଜନୈତିକ ଷଡ଼ଯନ୍ତ୍ର ଓ ଚାଲବାଜି ଏବଂ ନିରପେକ୍ଷ ସାହସର ଆସନରେ ଅଧିଷ୍ଠିତ ହେଉଛି ସ୍ୱାର୍ଥପରାୟଣତା ଓ କାପୁରୁଷତା । ତତ୍ତ୍ୱକୁ ଅଭିଭୂତ କରୁଛି ଆଙ୍ଗିକ ଏବଂ ଉତ୍‌କଣ୍ଠିତ ଭାବରେ ଯେଉଁ କ୍ଷମତା ନିମନ୍ତେ ପ୍ରୟାସ ଚାଲିଥାଏ, ତାହା ପ୍ରାପ୍ତ ହେବା ପରେ ଲକ୍ଷ୍ୟ ହାସଲ କରିବାରେ ବିଫଳ ହୁଏ । କାରଣ କ୍ଷମତାର ସୀମାବନ୍ଧନ ରହିଛି ଏବଂ ଶକ୍ତି ନିଜ ଭିତରେ ନିଜେ ସଙ୍କୁଚିତ ହୋଇପଡ଼େ । ମଣିଷର ଆତ୍ମାକୁ ଆୟତ୍ତ କରିବା ଉଭୟ ପକ୍ଷରେ ଅସମ୍ଭବ । କ୍ଷମତା ଓ ବଳ ମଣିଷର ଆତ୍ମାକୁ ସାମୟିକ ଭାବରେ କ୍ଷୁଣ୍ଣ କରିପାରେ କେବଳ । କନ୍‌ଫୁସିୟସ୍ କହନ୍ତି, "ଗୋଟାଏ ସେନାବାହିନୀର ସେନାପତିଙ୍କୁ ତୁମେ ଅପସାରିତ କରିପାର କିନ୍ତୁ କେତେ ଅକିଞ୍ଚନ ପଛେ ହେଉ ଜଣେ ଲୋକର ସଙ୍କଳ୍ପରୁ ତାକୁ ବଚ୍ୟୁତ କରିବା ସମ୍ଭବ ନୁହେଁ ।"

ଜନ୍ ଷ୍ଟୁଆର୍ଟ ମିଲ୍ ତାଙ୍କର ଆତ୍ମଚରିତରେ ଲେଖିଚନ୍ତି : "ମୋର ବର୍ତ୍ତମାନ ସମ୍ପୂର୍ଣ୍ଣ ହୃଦ୍‌ବୋଧ ହୋଇଛି ଯେ ସେ ପର୍ଯ୍ୟନ୍ତ ମାନବ ଜାତିର ଭାଗ୍ୟରେ କୌଣସି ମହତ୍ତ୍ୱପୂର୍ଣ୍ଣ

ଉନ୍ନତି ସମ୍ପାଦନ କରିବା ସମ୍ଭବ ନୁହେଁ ଯେ ପର୍ଯ୍ୟନ୍ତ ସେମାନଙ୍କର ଚିନ୍ତାର ଜଞ୍ଜାଳରେ ମୌଳିକ ପରିବର୍ତ୍ତନ ଦେଖା ନଦେଇଛି ।" ତଥାପି, ଚିନ୍ତା-ଜଞ୍ଜାଳରେ ସେହି ମୌଳିକ ପରିବର୍ତ୍ତନ ମଧ୍ୟ ଗୋଟାଏ ପରିବର୍ତ୍ତନଶୀଳ ପରିବେଷ୍ଟନୀରୁ ଏବଂ ନିରବଚ୍ଛିନ୍ନ ଜୀବନ-ସଂଗ୍ରାମର ଚିର ସହଚର ଦୁଃଖ ଓ ଯନ୍ତ୍ରଣା ଭିତରୁ ରୂପ ନେଇଥାଏ । ଅତଏବ, ଚିନ୍ତା-ଜଞ୍ଜାଳର ପ୍ରତ୍ୟେକ ପରିବର୍ତ୍ତନ ନିମନ୍ତେ ପ୍ରୟାସ କଲାବେଳେ ଆମକୁ ମନେ ରଖିବାକୁ ହେବ ଯେ ଯେଉଁ ପରିବେଷ୍ଟନୀ ସେହି ଜଞ୍ଜାଳର ଭରଣପୋଷଣ ବ୍ୟବସ୍ଥା କରିଛି, ତା'ର ପରିବର୍ତ୍ତନ ଅଧିକ ଭାବେ ଆବଶ୍ୟକ । ଉଭୟେ ପରସ୍ପର ନିର୍ଭରଶୀଳ ଓ ପରସ୍ପର ପ୍ରତି ପ୍ରଭାବକାରୀ । ମଣିଷର ମନ ପ୍ରତ୍ୟେକ ଆଧାରରେ ବିଭିନ୍ନ । ପ୍ରତ୍ୟେକ ମଣିଷ ତା'ର ନିଜସ୍ୱ ଶୈଳୀରେ ସତ୍ୟକୁ ପ୍ରତ୍ୟକ୍ଷ କରେ ଏବଂ ବହୁଧା ଅନ୍ୟର ଦୃଷ୍ଟିକୋଣ ପ୍ରତି ଯଥୋଚିତ ମୂଲ୍ୟ ଦେଇପାରି ନଥାଏ । ଏଥିରୁ ସୃଷ୍ଟି ହୁଏ ସଂଘର୍ଷ । ଆହୁରି ମଧ୍ୟ ଏହି ପାରସ୍ପରିକ କ୍ରିୟାରୁ ଏକ ପୂର୍ଣ୍ଣତର ତଥା ଅଧିକତର ସଂହତ ସତ୍ୟ ଆତ୍ମପ୍ରକାଶ କରେ । କାରଣ ଆମେ ବୁଝିବାକୁ ହେବ ଯେ ସତ୍ୟ ବହୁପାର୍ଶ୍ୱିକ ଏବଂ ତାହା କୌଣସି ନିର୍ଦ୍ଦିଷ୍ଟ ଏକ ସମ୍ପ୍ରଦାୟ କିମ୍ବା ଜାତିର ଏକାଧିକାରଭୁକ୍ତ ନୁହେଁ । ସେପରି ମଧ୍ୟ କାର୍ଯ୍ୟ କରିବାର ପ୍ରଣାଳୀ ଭିନ୍ନ ପରିସ୍ଥିତିରେ ଭିନ୍ନ ମାର୍ଗ ଦର୍ଶାଇପାରେ । ଭାରତ ଓ ଚୀନ ଏବଂ ଅନ୍ୟାନ୍ୟ ଜାତି ମଧ୍ୟ ନିଜ ନିଜ ଜୀବନର ମାର୍ଗ ଉଦ୍ଭାବନ କରିଚନ୍ତି ଏବଂ ତାକୁ ସ୍ଥାୟିତ୍ୱ ଦେଇଚନ୍ତି । ସେମାନେ ଯାହା ଖିଆଲ କରିଥିଲେ, ଆଜି ବି ସେମାନଙ୍କ ଭିତରୁ ଅନେକେ ଫୁଲ୍‌ଣିଆ ଭାବରେ ଯେପରି ଖିଆଲ କରନ୍ତି, ତାହା ହେଉଛି ଯେ ସେମାନଙ୍କର ଅନୁସୃତ ମାର୍ଗ ହିଁ ପ୍ରକୃତ ମାର୍ଗ । ଆଜି ୟୁରୋପ ଓ ଆମେରିକା ନିଜସ୍ୱ ଶୈଳୀରେ ଜୀବନର ଯେଉଁ ମାର୍ଗ ଧରିଚନ୍ତି, ଆଉ ପୃଥିବୀରେ ଯାହାର ପ୍ରଭାବ ଅତି ପ୍ରବଳ, ସେମାନେ ମନେକରନ୍ତି ଯେ ସେମାନଙ୍କ ପନ୍ଥା ହିଁ ଅଦ୍ୱିତୀୟ; କିନ୍ତୁ କାହାର ଅନୁସୃତ ପନ୍ଥା ଅଦ୍ୱିତୀୟ ଓ ଏକମାତ୍ର ବାଞ୍ଛନୀୟ ପନ୍ଥା ନୁହେଁ ଏବଂ ପ୍ରତ୍ୟେକେ ପରସ୍ପରଠାରୁ ଶିକ୍ଷାକରିବାର ବହୁତ କିଛି ଅଛି । ଭାରତ ଓ ଚୀନ ଉଭୟ ଦେଶକୁ ବହୁତ କିଛି ଶିକ୍ଷା କରିବାକୁ ପଡ଼ିବ; କାରଣ ଏମାନେ ଗତିଶୂନ୍ୟ ହୋଇପଡ଼ିଚନ୍ତି । ପଶ୍ଚିମ ଜଗତ ଏ ଯୁଗ ଆତ୍ମାର ପ୍ରତିନିଧିତ୍ୱ କରେ ବୋଲି କେବଳ ନୁହେଁ ବରଂ ତାହା ଗତିଶୀଳ ଓ ପରିବର୍ତ୍ତନଶୀଳ ଏବଂ ବିକାଶର ସାମର୍ଥ୍ୟ ସେଥିରେ ନିହିତ; ହେଉପଛେ ତାହା ଆତ୍ମବିନାଶ ଓ ପର୍ଯ୍ୟାୟକ୍ରମେ ସଙ୍ଗଠିତ ନରମେଧ ଯଜ୍ଞର ପନ୍ଥା ।

ଭାରତରେ, ହୁଏତ ଅନ୍ୟାନ୍ୟ ଦେଶରେ ମଧ୍ୟ, ଆତ୍ମଗୌରବ ଆତ୍ମଦୈନ୍ୟର ମନୋବୃତ୍ତି କ୍ରମିକ ଭାବରେ ଦେଖା ଦେଇଥାଏ । ଏ ଉଭୟ ଅବାଞ୍ଛନୀୟ ଓ ହେୟ । ଭାବପ୍ରବଣତା ଓ ଆବେଗ-ମୂଳକ ଆଭିମୁଖ୍ୟ ଯେନ ଆମେ ଜୀବନକୁ ଉପଲବ୍ଧି କରି ନ ପାରୁଁ । ତାହା ସମ୍ଭବ ସାହସ ସହକାରେ ଓ ନିଷ୍କପଟ ଭାବରେ ବାସ୍ତବତାର ସମ୍ମୁଖୀନ ହେବାରେ । ଜୀବନର ବିବିଧ ସମସ୍ୟା ସଙ୍ଗେ ସମ୍ପର୍କହୀନ କୌଣସି ଉଦ୍ଦେଶ୍ୟହୀନ ଓ ଅବାସ୍ତବ ଅନୁସନ୍ଧିତ୍ସା ଭିତରେ ଆମେ ନିଜକୁ ହଜାଇ ଦେଇ ନପାରୁଁ । କାରଣ ଭାଗ୍ୟ ବରାବର ଆଗକୁ ପାଦ ବଢ଼ାଇ ଚାଲିଛି ଏବଂ ଆମର ଫୁରୁସତ୍ ପାଇଁ ତାହା ଅପେକ୍ଷା କରି ନପାରେ । ଆହୁରି ମଧ୍ୟ, ମଣିଷର ଆନ୍ତରିକ

ଜୀବନର ତାତ୍ପର୍ଯ୍ୟ ଭୁଲିଯାଇ କେବଳ ବାହ୍ୟ ବିଷୟରେ ଓତପ୍ରୋତ ହେବା ଆମର ଧ୍ୟେୟ ହୋଇ ନପାରେ । ଉଭୟ ମଧ୍ୟରେ ଭାରସାମ୍ୟ ଓ ସଙ୍ଗତି ନିତାନ୍ତ ଆବଶ୍ୟକ । ସପ୍ତଦଶ ଶତକରେ ସ୍ପିନୋଜା ଲେଖିଥିଲେ, "ସମଗ୍ର ପ୍ରକୃତି ସଙ୍ଗେ-ମନର ରମଣଜନିତ ଜ୍ଞାନ ସର୍ବୋତ୍କୃଷ୍ଟ···ମନ ଯେତେ ଅଧିକରୁ ଅଧିକ ଜ୍ଞାନ ପ୍ରାପ୍ତହୁଏ, ସେ ତା'ର ବଳ ଓ ପ୍ରକୃତିର ବିନ୍ୟାସ ଓ ନିୟମ ସେତେ ଭଲ ଭାବରେ ବୁଝିପାରେ; ନିଜର ବଳ ବିଷୟରେ ସେ ଯେତେ ଅଧିକରୁ ଅଧିକ ସଚେତନ ହୁଏ, ନିଜକୁ ପରିଚାଳିତ କରିବାରେ ଓ ନିଜପାଇଁ ନିୟମ ଶୃଙ୍ଖଳା ଗଢ଼ିବାରେ ସେତେ ଭଲ ଭାବରେ ସମର୍ଥ ହୁଏ; ପ୍ରକୃତିର ନିୟମ ସେ ଯେତେ ଅଧିକ ଭାବରେ ଉପଲବ୍‌ଧି କରେ, ସେତେ ସହଜରେ ସେ ନାନା ତୁଚ୍ଛ ବିଷୟରୁ ନିଜକୁ ମୁକ୍ତ କରିପାରେ; ଏହା ହେଲ ସମଗ୍ର ପ୍ରକ୍ରିୟା ।"

ଆମ ବ୍ୟକ୍ତିଗତ ଜୀବନରେ ମଧ୍ୟ ଆମେ ଦେହ ଓ ଆତ୍ମା ଭିତରେ, ପ୍ରକୃତିର ଅଂଶବିଶେଷ ମଣିଷ ଓ ସମାଜର ଅଂଶବିଶେଷ ମଣିଷ ଭିତରେ ଭାରସାମ୍ୟ ଖୋଜ ବାହାର କରିବାକୁ ପଡ଼ିବ । ରବୀନ୍ଦ୍ରନାଥ ଠାକୁର କହନ୍ତି, "ଆମର ପୂର୍ଣ୍ଣତାପାଇଁ ଆମକୁ ସାରତଃ ବନ୍ୟ ହେବାକୁ ପଡ଼ିବ ଓ ମନକୁ ପରିଷ୍କୃତ ରଖିବାକୁ ହେବ; ପ୍ରକୃତି ସଙ୍ଗେ ସ୍ୱାଭାବିକ ଓ ମଣିଷ-ସମାଜ ସଙ୍ଗେ ମାନବିକ ହେବାର ସ୍ୱଭାବ ଆମର ରହିବା ଦରକାର ।" ପୂର୍ଣ୍ଣତା ଲାଭକରିବା ଆମ ସାମର୍ଥ୍ୟର ବାହାରେ; କାରଣ ପୂର୍ଣ୍ଣତା ଅର୍ଥ ପରିସମାପ୍ତି । ଆମେ କେବଳ ଯାତ୍ରୀ । ଆମେ ଚିରବିର ସେହି ବସ୍ତୁ ପର୍ଯ୍ୟନ୍ତ ପହୁଞ୍ଚିବାର ପ୍ରୟାସ କରିଥାଉଁ, ଯାହା ସର୍ବଦା ଆମ ଧରାଛୁଆଁର ବାହାରକୁ ହଟିଯିବାରେ ଲାଗିଛି । ଆମ ପ୍ରତ୍ୟେକଙ୍କ ଭିତରେ ମଧ୍ୟ ଏକାଧିକ ମାନବସତ୍ତ୍ୱା ରହିଛି ଏବଂ ସେମାନଙ୍କ ଭିତର ଅସଙ୍ଗତି ଓ ପରସ୍ପର ବିରୋଧିତା ପ୍ରତ୍ୟେକଙ୍କୁ ତା'ର ବିପରୀତ ଦିଗରେ ଟାଣିବାରେ ଲାଗିଛି । ମଣିଷ ଭିତରେ ଜୀବନ ପ୍ରତି ତୃଷ୍ଣା ଓ ବିତୃଷ୍ଣା ଉଭୟ ରହିଛି । ଜୀବନର ସବୁ କିଛି ପ୍ରତି ସ୍ୱୀକୃତି ରହିଛି ଓ ସେଥିର ବହୁତ କିଛି ପ୍ରତ୍ୟାଖ୍ୟାନ କରିବାର ପ୍ରବୃତ୍ତି ବି ରହିଛି । ଏହି ବିରୋଧାଭାସ ଦୂରକରି ବିଭିନ୍ନ ପ୍ରବୃତ୍ତି ଭିତରେ ସାମଞ୍ଜସ୍ୟ ସ୍ଥାପନକରିବା ବାସ୍ତବିକ କଷ୍ଟସାଧ୍ୟ । କେବେ ଗୋଟାଏ ମଣିଷ ଉପରେ ଆଧିପତ୍ୟ କରେ ତ କେବେ ଆଉ ଗୋଟାଏ । ଲାଓ ଜୁ କହିଚନ୍ତି—"ଜୀବନର ରହସ୍ୟ ପ୍ରତ୍ୟକ୍ଷ କରିବା ନିମନ୍ତେ ମଣିଷ ବହୁଧା ନିଜକୁ କାମନାରୁ ମୁକ୍ତକରେ ଏବଂ କାମନାର ବହୁବିଧ ପରିଣାମ ପ୍ରତ୍ୟକ୍ଷ କରିବାପାଇଁ ସେ ଜୀବନକୁ କାମନାପ୍ରଧାନ କରି ତୋଳେ ।"

ଆମର ମୁକ୍ତ କରିବାର ସମସ୍ତ ଶକ୍ତି, ଆମର ଉପଲବ୍‌ଧି ଏବଂ ଆମର କିଛି ସଂଗୃହୀତ ଜ୍ଞାନ ଓ ଅଭିଜ୍ଞତା ସତ୍ତ୍ୱେ ଆମେ ଜୀବନର ରହସ୍ୟ ଭେଦକରିପାରି ନଥାଉଁ । ତା'ର ରହସ୍ୟମୟ ପ୍ରକ୍ରିୟା ସମ୍ପର୍କରେ ଅନ୍ଦାଜ କରିବା କେବଳ ଆମ ସାମର୍ଥ୍ୟର ଭିତରେ; କିନ୍ତୁ ଆମେ ଏହିଦ୍ୱାରା ତା'ର ସୌନ୍ଦର୍ଯ୍ୟ ଉପଭୋଗ କରିପାରିବା ଏବଂ କଳା ଜରିଆରେ ଆମେ ସୃଷ୍ଟିକର୍ତ୍ତାଙ୍କ ଭଳି ସୃଜନାତ୍ମକ କର୍ମରେ ସୃଷ୍ଟିର ବୈଚିତ୍ର୍ୟ ପ୍ରକାଶ କରିପାରିବା । ଆମେ ଦୁର୍ବଳ, ଆମେ ଭ୍ରାନ୍ତ ଏବଂ ପୃଥିବୀପୃଷ୍ଠରେ ଆମର ପରମାୟୁ କ୍ଷଣିକ ଓ ଅନିଶ୍ଚିତ । ଏହା ସତ୍ତ୍ୱେ ଆମ

ଭିତରେ ଅମରତ୍ୱର କିଛି ଅଂଶ ବି ରହିଚି । ଆରିଷ୍ଟୋଟଲ କହନ୍ତି, "ଆମେ ମଣିଷ ଓ ମରି ବୋଲି ତାହା ମାନବସୁଲଭ ଓ ନଶ୍ୱର, ସେ ପ୍ରକାର ବିଷୟରେ ବୁଡ଼ିରହିବା ପାଇଁ ଯେଉଁମାନେ ଆମକୁ ପ୍ରେରଣା ଦିଅନ୍ତି, ଆମେ ସେମାନଙ୍କର କଥା ମାନିବା ଉଚିତ ନୁହେଁ । ଯେତେଦୂର ପାରିବା, ଆମକୁ ଅମରତ୍ୱ ଓ ଅମୃତତ୍ୱର ସନ୍ଧାନରେ ନିୟୋଜିତ ରହିବାକୁ ହେବ ଏବଂ ଆମ ଭିତରେ ଯାହା କିଛି ମହତ୍ତ୍ୱପୂର୍ଣ୍ଣ ସେ ଅନୁସାରେ ଜୀବନ କରିବାପାଇଁ କୌଣସି ଉଦ୍ୟମରୁ ଓହରିଯିବା ଠିକ୍ ହେବନାହିଁ ।"

## ୧୭. ପ୍ରାନ୍ତଭାଷ

ମୁଁ ଏ ବହିଲେଖା ଆରମ୍ଭ କରିବା ପ୍ରାୟ ପାଞ୍ଚ ମାସ ହେଲାଣି ଏବଂ ମୋର ମନର ନାନା ଭାବ ବ୍ୟକ୍ତକରିବାକୁ ଯାଇ ମୁଁ ଏକହଜାର ପୃଷ୍ଠା ଲେଖି ସାରିଲିଣି । ଏହି ପାଞ୍ଚ ମାସ ଭିତରେ ମୁଁ ଅତୀତରେ ପର୍ଯ୍ୟଟନ କରିଚି, ଭବିଷ୍ୟତ ଭିତରକୁ ଉଙ୍କିମାରି ଦେଖିଚି ଏବଂ ବେଳେବେଳେ ସେହି ବିନ୍ଦୁ ଉପରେ ଭାରସାମ୍ୟ ବଜାୟ ରଖିବାର ଚେଷ୍ଟା କରିଚି ଯେଉଁଠି ଅନନ୍ତ ସଙ୍ଗେ ସମୟର ମିଳନ ଘଟିଥାଏ । ଏହି କେତେ ମାସରେ ବିଶ୍ୱରେ ବହୁତ ବଡ଼ ବଡ଼ ଘଟଣା ଘଟିଯାଇଚି ଏବଂ ସାମରିକ ବିଜୟ ଦୃଷ୍ଟିରୁ ବିଚାର କଲେ ଏକ ବିଜୟମଣ୍ଡିତ ପରିସମାପ୍ତି ଦିଗକୁ ମହାଯୁଦ୍ଧ କ୍ଷିପ୍ର ଗତିରେ ବଢ଼ିଯାଇଚି । ମୋ ନିଜ ଦେଶରେ ମଧ୍ୟ ବହୁତ କିଛି ଘଟଣା ଘଟିଯାଇଚି, ଯାହା ଦୂରରୁ ଜଣେ ଦର୍ଶକ ଭାବରେ କେବଳ ମୁଁ ଦେଖିଚି ଏବଂ ତାହା ବେଳେବେଳେ ଦୁଃଖ ଓ ଅଶାନ୍ତି-ସମୁଦ୍ରର ଲହରୀ ଭଳି ମୋ ଉପରେ ଭାଙ୍ଗିଚି । ଚିନ୍ତାକରିବା ଓ ନିଜର ଯାହା କିଛି ବିଚାର ବ୍ୟକ୍ତକରିବା ଦିଗରେ ମୁଁ ଯେତେବେଳେ ନିଜକୁ ନିୟୋଜିତ କଲି ମତେ ଚଳିତ ସମୟର ବିଦାରକ ଧାର ନିକଟରୁ ଦୂରେଇ ସୁପରିବ୍ୟାପ୍ତ ରହିବାକୁ ହେଲା ଏବଂ ଅତୀତ ଓ ଭବିଷ୍ୟତର ଆସ୍ତରଣ ତଳେ ତଳେ ଯାତାୟାତକରିବା ମୁଁ ପସନ୍ଦ କଲି ।

କିନ୍ତୁ ଏ ପ୍ରକାର ବିଚରଣ ଠାଏକେଉଁଠି ଶେଷ ହେବାପାଇଁ ବାଧ୍ୟ । ସେଥିଲାଗି ଯଥେଷ୍ଟ କିଛି କାରଣ ରହି ନଥିଲେ ସୁଦ୍ଧା ଯେଉଁ ବାସ୍ତବ ବିବେଚନାର ଦାବୀ ଆସି ପହଞ୍ଚିଚି, ତାହା ଅବଜ୍ଞା କରାଯାଇ ନପାରେ । ବହୁ ଚେଷ୍ଟାକରି ମୁଁ ଏ ବହି ନିମନ୍ତେ ବୋଲି ଲେଖାକାଗଜ ଯାହା ସଂଗ୍ରହ କରିଥିଲି, ତାହା ପ୍ରାୟ ଶେଷ ହେବା ଉପରେ ଏବଂ ଆଉ କାଗଜ ପାଇବା ସହଜ ନୁହେଁ ।

ଭାରତ ଆବିଷ୍କାର । କ'ଣ ମୁଁ ଆବିଷ୍କାର କଲି ? ବଡ଼ ଦାମ୍ଭିକ ଭାବରେ ମୁଁ କଳ୍ପନା କରିଥିଲି ଯେ ତା'ର ଓଢ଼ଣା ଉତାରି ଦେଇ ମୁଁ ତାର ଆଜିର ଓ ଦୂର ଅତୀତର ସ୍ୱରୂପ ପ୍ରତ୍ୟକ୍ଷ କରିବି । ଆଜିର ଭାରତ ଚାଳିଶି କୋଟି ଏକକ ତଥା ସ୍ୱତନ୍ତ୍ର ନରନାରୀଙ୍କର ଏକ ସମାହାର—ପ୍ରତ୍ୟେକେ ପରସ୍ପରଠାରୁ ଭିନ୍ନ, ପ୍ରତ୍ୟେକେ ନିଜ ନିଜ ବିଚାର ଓ ଅନୁଭୂତି ଘେନି ଏକ ନିଜସ୍ୱ ଦୁନିଆରେ ଜୀବନ ଯାପନ କରନ୍ତି । ଏହା ଯଦି ଆଜିର ଅବସ୍ଥା, କେତେ ଅଗଣିତ ଅନୁକ୍ରମସମ୍ବଳିତ ସେହି ଅତୀତକାଳ ତଥା ନିର୍ବେଦକର ଅତୀତର ଧାରଣା କରିବା

କେତେ ଦୂରତ୍ୱ, ଅନୁମାନ କରାଯାଇ ପାରେ । ତଥାପି, ଗୋଟାଏ କିଛି ବନ୍ଧନ ସେମାନଙ୍କୁ ସମଗ୍ର ଅତୀତରେ ବାନ୍ଧି ରଖିଥିଲା ଏବଂ ଆଜି ବି ସେ ବନ୍ଧନ ତୁଟିଯାଇନି । ଭାରତ ଗୋଟାଏ ଭୌଗୋଳିକ ତଥା ଅର୍ଥନୈତିକ ଅସ୍ତିତ୍ୱ; ବିବିଧତା ମଧ୍ୟରେ ଏକ ସାଂସ୍କୃତିକ ଏକତ୍ୱ; ନାନା ଖଣ୍ଡନଶୀଳତା ସତ୍ତ୍ୱେ ଏକ ଶକ୍ତ ତଥା ଅଦୃଶ୍ୟ ସୂତ୍ରଦ୍ୱାରା ଆବଦ୍ଧ । ବାରମ୍ବାର ପରାଭୂତ ହୋଇଥିଲେ ସୁଦ୍ଧା ତା'ର ଆତ୍ମା କେବେହେଲେ ପରାଜୟ ସ୍ୱୀକାର କରିନି ଏବଂ ଆଜି ବି ଜଣେ ଗର୍ବିତ ବିଜୟୀର କ୍ରୀଡ଼ନକ ଭଳି ପ୍ରତୀତ ହେଉଥିଲେ ସୁଦ୍ଧା ସେହିଭଳି ଅପରାଜିତ ଓ ଅନମନୀୟ ରହିଛି । କେଉଁ ଦୂର ଅତୀତର କୌଣସି କିଂବଦନ୍ତୀ ଭଳି ଭାରତ ଏକ ଅବୋଧ ପରିଚ୍ଛଦରେ ପରିବୃତ; ତା'ର ମନକୁ ଆସୃଷ୍ଟ କରିନେଇଛି ଏକ ସମ୍ମୋହନ । ସେ ଏକ ଅତିକଥା ଓ ଗୋଟାଏ ଭାବ, ଗୋଟାଏ ସ୍ୱପ୍ନ ଓ ଗୋଟାଏ ଅତୀନ୍ଦ୍ରିୟ ଦର୍ଶନ ଅଥବା ଏକ ଧ୍ୟାନଗମ୍ୟ ମୂର୍ତ୍ତି । ତଥାପି ଅତି ବାସ୍ତବ, ବର୍ତ୍ତମାନ ଓ ସ୍ପର୍ଶାତୀତ । କେବେ କେବେ ତା'ର ଭିତରେ ଯେଉଁ ଅନ୍ଧକାର ନିମିଷକ ପାଇଁ ଦୃଷ୍ଟିରେ ପଡ଼ି ପୁଣି ଅନ୍ତର୍ହିତ ହୁଏ, ମନରେ ଏପରି ଭାବ ଆସେ ଯେ ତା'ର ଅନ୍ତରର କେଉଁ ଅତଳରେ ସେହି ସନାତନ କାଳରାତ୍ରି ବିଦ୍ୟମାନ ରହିଛି । ତଥାପି ଦିବାଲୋକରେ ଭାସ୍ୱର ତା'ଠାରେ ଉଜ୍ଜ୍ୱଳତା ଓ ପୂର୍ଣ୍ଣତାର ଅଭାବ ନାହିଁ । ଲଜ୍ଜାକର ଓ ବିକର୍ଷକ ବେଳେ ବେଳେ ସେ ବିକୃତ, ଅନମନୀୟ ଏପରିକି କେତେ ପରିମାଣରେ ଉନ୍ମାଦିନୀ ପ୍ରତୀତ ହୋଇଥାଏ । ତଥାପି, ଆମର ଜନନୀ ଏହି ଜନ୍ମଭୂମି ରୂପମୟୀ ଓ ପ୍ରେମମୟୀ ଏବଂ ଯେଉଁଠାକୁ ଯାଆନ୍ତୁ କିମ୍ବା ଯେଉଁଭଳି ଭାଗ୍ୟର କବଳରେ ପଡ଼ନ୍ତୁ ପଛେ ତା'ର ପ୍ରତ୍ୟେକ ସନ୍ତାନ ନିକଟରେ ସେ ଅବିସ୍ମରଣୀୟା; କାରଣ ତା'ର ପ୍ରତ୍ୟେକ ସନ୍ତାନ ପ୍ରାଣରେ ସେ ତା'ର ମହାନତା ଓ ତା'ର ନିନ୍ଦନୀୟତା ଯେପରି ବିରାଜିତ ଏବଂ ତାହା ତା'ର ନେତ୍ରରେ ସର୍ବଦା ପ୍ରତିବିମ୍ବିତ; ଯେଉଁ ନେତ୍ର ଜୀବନର ବହୁତ କିଛି ବାସନା, ଆନନ୍ଦ ଓ ଭ୍ରମ ଲକ୍ଷ୍ୟକରିଛି ଏବଂ ପ୍ରକୃତ ଜ୍ଞାନ ମଧ୍ୟ ପ୍ରତ୍ୟକ୍ଷ କରିଛି, ତା'ର ପ୍ରତ୍ୟେକ ସନ୍ତାନ ତାହାପ୍ରତି ଯେ ଆକୃଷ୍ଟ ହୋଇଥାନ୍ତି, ସେଥିପାଇଁ ପ୍ରତ୍ୟେକର ହେତୁ ହୁଏତ ଭିନ୍ନ ଏବଂ ଏପରି ବି କୁହାଯାଇ ପାରେ ଯେ ସେ ଆକର୍ଷଣର କୌଣସି କାରଣ ନାହିଁ । ତାହା ଅହେତୁକ ଓ ସ୍ୱତଃସ୍ଫୂର୍ତ୍ତ । ରୂପମୟୀର କୌଣସି ନା କୌଣସି ରୂପ ତା'ର ପ୍ରତ୍ୟେକ ସନ୍ତାନର ଦୃଷ୍ଟିରେ ରୂପାୟିତ ହୋଇଥାଏ । ବହୁ ବିଖ୍ୟାତ ନରନାରୀ ଯୁଗେ ଯୁଗେ ତା'ଠାରୁ ଜନ୍ମଗ୍ରହଣ କରିଛନ୍ତି । ପ୍ରାଚୀନ ପରମ୍ପରା ପ୍ରତି ତା'ର ମମତା ଅତି ପ୍ରବଳ । ତଥାପି, କୌଣସି ଯୁଗରେ ହେଲେ ପରିବର୍ତ୍ତନ ପ୍ରତି ତା'ର ଉଦାସୀନତା ପ୍ରକାଶ ପାଇନି । ଏହି ମହାନ୍ ଅନୁକ୍ରମର ଧାରକ ଓ ବାହକ ରବୀନ୍ଦ୍ରନାଥ ଠାକୁରଙ୍କଠାରେ ଆଧୁନିକ ଯୁଗର ସବୁ କିଛି ପ୍ରେରଣା ଓ ମନୋବୃତ୍ତି ପୂର୍ଣ୍ଣ ଭାବରେ ବିକାଶ ଲାଭ କରିଥିଲେ ସୁଦ୍ଧା ତାଙ୍କର ମୂଳ ରହିଥିଲା ଭାରତର ଅତୀତରେ ଏବଂ ନିଜ ବ୍ୟକ୍ତିତ୍ୱରେ ପୁରାତନ ଓ ନୂତନର ଏକ ସମନ୍ୱୟ ସେ ଗଢ଼ିପାରିଥିଲେ । ସେ କହିଛନ୍ତି, "ଭୂଗୋଳର ମୂର୍ତ୍ତି ପୂଜାକରେ ବୋଲି ମୁଁ ଭାରତକୁ ପ୍ରେମ କରେନି; ପ୍ରେମ କରେନି ତା'ର ମାଟିରେ ଜନ୍ମ ହେବାର ସୁଯୋଗ ମୁଁ ପାଇଛି ବୋଲି । ମୁଁ ଭାରତକୁ ପ୍ରେମକରେ

ଏଇଥିପାଇଁ ଯେ ଅଗଣିତ ଯୁଗ ଅତିକ୍ରମ କରି ତା'ର ମହାପୁରୁଷମାନଙ୍କର ଦିବ୍ୟଚେତନା-ନିଃସୃତ ଚୈତନ୍ୟମୟ କେତେ ଉକ୍ତି ସେ ନିରାପଦରେ ବହନ କରି ଆଣି ପାରିଛି ।''
ଅନେକେ ରବୀନ୍ଦ୍ରନାଥଙ୍କ ସ୍ୱର ସଙ୍ଗେ ନିଜ ସ୍ୱର ଯୋଗ କରିବେ, ସନ୍ଦେହ ନାହିଁ । ଅନ୍ୟମାନେ ଭାରତ ପ୍ରତି ତାଙ୍କର ଅନୁରକ୍ତିର କାରଣ ଅନ୍ୟାନ୍ୟ ଭାବରେ ବ୍ୟକ୍ତ କରିବେ ।

ସେହି ପୁରାତନ ମୋହ ଆଜି ତୁଟିବା ଭଳି ମନେହେଉଛି ଏବଂ ସେ ତା'ର ଚାରିପାଖକୁ ଚାହୁଁଛି ଆଉ ବର୍ତ୍ତମାନ ସଙ୍ଗେ ମିଳିତ ହେବାର ପ୍ରୟାସ କରୁଛି । କିନ୍ତୁ ପରିବର୍ତ୍ତନ ତାକୁ ସ୍ୱୀକାର କରିବାକୁ ହିଁ ପଡ଼ିବ ଆଉ ଯେଉଁଭଳି ଭାବରେ ସେ ପରିବର୍ତ୍ତିତ ହେଉ ନା କାହିଁକି ତା'ର ସେ ପୁରାତନ ସମ୍ମୋହନ ଅବ୍ୟାହତ ରହିବ ଆଉ ତାର ଜନସାଧାରଣଙ୍କ ହୃଦୟରେ ତା'ର ସ୍ଥାନ ପୂର୍ବଭଳି ଅକ୍ଷୁଣ୍ଣ ରହିବ । ତା'ର ପରିଚ୍ଛଦ ହୁଏତ ବଦଳି ଯାଇପାରେ; କିନ୍ତୁ ପୂର୍ବଭଳି ସେ ବରାବର ରହିବ ଏବଂ ଏହି ରୁକ୍ଷ ପ୍ରତିହିଂସାପରାୟଣ ତଥା ଲୋଲୁପ ବିଶ୍ୱରେ ସତ୍ୟ, ଶିବ ଓ ସୁନ୍ଦର ପ୍ରତି ଅନୁରକ୍ତ ରହିବା ପାଇଁ ତା'ର ଜ୍ଞାନ-ଭଣ୍ଡାର ତା'ପକ୍ଷରେ ସହାୟକ ହେବ ।

ଆଜିର ବିଶ୍ୱ ବହୁତ କିଛି ହାସଲ କରିପାରିଛି; କିନ୍ତୁ ମାନବ ଜାତି ପ୍ରତି ତା'ର ସମସ୍ତ ବହୁଘୋଷିତ ପ୍ରେମ ସତ୍ତ୍ୱେ ଯେଉଁସବୁ ସଦ୍‌ଗୁଣ ମଣିଷ ଭିତରେ ମାନବିକତା ସଞ୍ଚାର କରେ ସେଥି ଉପରେ ନିର୍ଭର କରିବା ପରିବର୍ତ୍ତେ ସେ ଭିତ୍ତି କରିଛି ମୁଖ୍ୟତଃ ଘୃଣା ଓ ହିଂସା ଉପରେ । ଯୁଦ୍ଧ ସତ୍ୟ ଓ ମାନବତାର ପରିପନ୍ଥୀ । ଯୁଦ୍ଧ କେବେକେବେ ହୁଏତ ଅନିବାର୍ଯ୍ୟ ହୋଇପାରେ; କିନ୍ତୁ ତା'ର ପରିଣାମ ବଡ଼ ଘୋର ଓ କଳ୍ପନାତୀତ । ଜନ୍ମ ଯେବେ ହୋଇଛି ମଣିଷ ଅବଶ୍ୟ ମରିବ । ଅତଏବ, ଯୁଦ୍ଧରେ ହତ୍ୟା ସେତେ କିଛି ଗୁରୁତର ବିଷୟ ନୁହେଁ । ଗୁରୁତର ହେଉଛି ମିଥ୍ୟା ଓ ଘୃଣାର ସୁଚିନ୍ତିତ ତଥା ଅବିରତ ପରିପ୍ରଚାର ଯାହା କ୍ରମଶଃ ଜନସାଧାରଣଙ୍କର ସାଧାରଣ ପ୍ରକୃତିରେ ପରିଣତ ହୋଇଯାଏ । ଆମ ଜୀବନର ପରିଚାଳନା ଘୃଣା ଓ ଅସୂୟା ହାତରେ ସମର୍ପିଦେବା ବିପଜ୍ଜନକ ଓ ଅନିଷ୍ଟକର । କାରଣ ସେଥିରେ ଶକ୍ତି କ୍ଷୟ ହୁଏ ଏବଂ ମନ ସୀମିତ ତଥା ବିକୃତ ହେବା ଫଳରେ ସତ୍ୟୋପଲବ୍ଧି ନିବାରିତ ହୁଏ । ଦୁଃଖର କଥା, ଆଜି ଭାରତରେ ଘୃଣା ରହିଛି ଓ ପ୍ରବଳ ଅସୂୟା ବି ରହିଛି । କାରଣ ଅତୀତ ଆମର ଅନୁଧାବନ କରୁଛି ଏବଂ ଯାହା ବର୍ତ୍ତମାନ ଅତୀତଠାରୁ କିଛି ଭିନ୍ନ ନୁହେଁ । ଗୋଟାଏ ସ୍ୱାଭିମାନୀ ଜାତିର ମର୍ଯ୍ୟାଦା ବାରମ୍ବାର କ୍ଷୁଣ୍ଣ କରାଗଲେ ତାହା ସହଜରେ ବିସ୍ମୃତ ହେବାର ନୁହେଁ; କିନ୍ତୁ ସୌଭାଗ୍ୟର କଥା, ଭାରତବାସୀ ବହୁକାଳ ପର୍ଯ୍ୟନ୍ତ ମନରେ ଘୃଣାଭାବର ପୋଷକତା କରନ୍ତିନାହିଁ । ଖୁବ୍ ସହଜରେ ସେମାନେ ସେମାନଙ୍କର ସମସ୍ତ ସଦ୍‌ବୃତ୍ତି ଓ ଉପଚିକୀର୍ଷା ପୁନଃ ପ୍ରାପ୍ତ ହୁଅନ୍ତି ।

ସ୍ୱାଧୀନତା ଯେବେ ନୂତନ କେତେ ଦିଗନ୍ତ ଉନ୍ମୁକ୍ତ କରିବ ଭାରତ ସେତେବେଳେ ନିଜକୁ ଉପଲବ୍ଧି କରିବ ଏବଂ ସଦ୍ୟ ଅତୀତର ଯେତେକିଛି ନୈରାଶ୍ୟ ଓ ଲାଞ୍ଛନା ଅପେକ୍ଷା ଭବିଷ୍ୟତର ସ୍ୱପ୍ନ ତାକୁ ଆକୃଷ୍ଟ କରିବ । ନିଜ ପ୍ରତି ସଚେତନ ଓ ଅନ୍ୟମାନଙ୍କଠାରୁ ଶିକ୍ଷା

କରିବାପାଇଁ ଓ ଅନ୍ୟମାନଙ୍କ ସଙ୍ଗେ ସହଯୋଗ କରିବା ପାଇଁ ଆତୁର, ମନରେ ବିଶ୍ୱାସ ଧରି ସେ ଆଗେଇଯିବ । ଆଜି ତାର ଅବସ୍ଥା ବଡ଼ ଶୋଚନୀୟ । ଏକେ ପୁରାତନ ନାନା ପ୍ରଥାକୁ ସେ ହୁଏତ ଅନ୍ଧ ଭାବରେ ଯାବୁଡ଼ି ରହିଚି କିମ୍ବା ବିଦେଶୀ ଚାଲିଚଳନ ଦାସ ଭାବରେ ଅନୁକରଣ କରି ଲାଗିଚି । ଏ ଉଭୟରେ ତା'ର ସ୍ୱସ୍ତି ନାହିଁ, ଜୀବନ ନାହିଁ, ଅଭିବୃଦ୍ଧି ନାହିଁ । ଏ କଥା ସ୍ପଷ୍ଟ ଯେ ତାକୁ ନିଜ ଗଣ୍ଡି ଭିତରୁ ବାହାରି ଆସିବାକୁ ପଡ଼ିବ ଏବଂ ଆଧୁନିକ ଯୁଗର ଜୀବନ ତଥା ବିଭିନ୍ନ କାର୍ଯ୍ୟକଳାପରେ ପୂର୍ଣ୍ଣପ୍ରାଣରେ ଅଂଶ ଗ୍ରହଣ କରିବାକୁ ପଡ଼ିବ । ଏଥିରେ କିଛି ଅସ୍ପଷ୍ଟତା ନାହିଁ କିମ୍ବା ଦ୍ୱିମତ ହେବାର ନାହିଁ ଯେ ଅନୁକରଣ ଉପରେ ଭିତ୍ତିକରି କେହି କେବେ ସାଂସ୍କୃତିକ ଅଥବା ଆଧ୍ୟାତ୍ମିକ ଉନ୍ନତି ପ୍ରକୃତରେ କରିନପାରେ । ସେ ପ୍ରକାର ଅନୁକରଣବୃତ୍ତି ସ୍ୱଳ୍ପସଂଖ୍ୟକ ଲୋକଙ୍କ ଭିତରେ ସୀମିତ ରହିଯାଏ; ଯେଉଁମାନେ ଜାତୀୟ ଜୀବନର ସ୍ରୋତରୁ ତଥା ଜନସାଧାରଣଙ୍କଠାରୁ ନିଜକୁ ବିଚ୍ଛିନ୍ନ କରି ନେଇଥାନ୍ତି । ପ୍ରତ୍ୟେକ ଜାତିର ସଂସ୍କୃତି ବିଶ୍ୱର ପ୍ରତ୍ୟେକ କୋଣରୁ ତା'ର ପ୍ରେରଣା ଲାଭ କରିଥାଏ; କିନ୍ତୁ ମୂଳତଃ ତାହା ସ୍ୱଦେଶୀ ଏବଂ ତା'ର ଭିତ୍ତି ଜନଜୀବନରେ ନିହିତ ହେବା ଆବଶ୍ୟକ । ବିଦେଶୀ ଆଦର୍ଶ ଉପରେ ସର୍ବଦା ନିର୍ଭରଶୀଳ ରହିଲେ କଳା ଓ ସାହିତ୍ୟ ପ୍ରାଣହୀନ ହୋଇପଡ଼େ । ଗୋଟାଏ କ୍ଷୁଦ୍ର ରୁଚିବାଗୀଶ ଗୋଷ୍ଠୀ ହାତରେ ଆବଦ୍ଧ, ସଙ୍କୀର୍ଣ୍ଣ ସଂସ୍କୃତିର ଦିନ ଅତୀତ ହୋଇଯାଇଚି । ଜନସାଧାରଣଙ୍କୁ ଆଖି ଆଗରେ ରଖି ଆମକୁ ଚିନ୍ତା କରିବାକୁ ପଡ଼ିବ ଏବଂ ସେମାନଙ୍କର ସଂସ୍କୃତି ନୂତନ କେତେ ଆବେଗ ଓ ରଚନାତ୍ମକ ମନୋବୃତ୍ତିର ପ୍ରତିନିଧିତ୍ୱ କରିବା ସଙ୍ଗେ ସଙ୍ଗେ ଅତୀତର ଧାରା ଅବ୍ୟାହତ ରଖିବ ଓ ତା'ର ଉନ୍ନତି ସାଧନ କରିବ ।

ଶହେ ବର୍ଷରୁ କିଛି ଅଧିକ କାଳ ପୂର୍ବେ, ଇମେରସନ୍ ଆମେରିକାରେ ତାଙ୍କର ଦେଶବାସୀଙ୍କୁ ସଂସ୍କୃତି ଦିଗରୁ ୟୁରୋପ ଉପରେ ବିଶେଷ ନିର୍ଭର ନ କରିବା ପାଇଁ କିମ୍ବା ତା'ର ଅନୁକରଣ ନ କରିବା ପାଇଁ ସତର୍କ କରିଥିଲେ । ମାର୍କିନ୍‌ମାନେ ଗୋଟିଏ ନୂଆ ଜାତି ଭାବରେ ଗଢ଼ି ଉଠୁଥିଲେ । ଇମେରସନ୍ ଚାହୁଁଥିଲେ ଯେ ସେମାନେ ସେମାନଙ୍କର ୟୁରୋପୀୟ ଅତୀତକୁ ନ ଚାହିଁ ନୂତନ ଦେଶ ଆମେରିକାର ପ୍ରାଚୁର୍ଯ୍ୟପୂର୍ଣ୍ଣ ଜୀବନରୁ ପ୍ରେରଣା ଗ୍ରହଣ କରନ୍ତୁ । "ଅନ୍ୟ ଉପରେ ଆମର ନିର୍ଭର କରିବାର ଦିନ, ଅନ୍ୟାନ୍ୟ ଦେଶର ଶିକ୍ଷାପ୍ରତି ଆମର ଦୀର୍ଘକାଳ ଶିଷ୍ୟତ୍ୱ ଏତିକିରେ ଶେଷ ହେଲା । ଆମ ଚଉପାଶରେ ଲକ୍ଷ ଲକ୍ଷ ଲୋକ ଜୀବନ ଭିତରକୁ ଯେପରି କ୍ଷିପ୍ର ପାଦ ପକାଇ ଚାଲିଚନ୍ତି ସେମାନଙ୍କୁ ସର୍ବଦା ବିଦେଶୀ ଫସଲର କିଛି ଶୁଖାଶୁଖା ଅଂଶଦେଇ ପୋଷଣ କରାଯାଇନପାରେ । ନାନା ଘଟଣା ଘଟି-ଯାଉଚି, ନାନା କାର୍ଯ୍ୟ ସାଧିତ ହେଉଚି ଯାହା ଲିପିବଦ୍ଧ କରିବା ଆବଶ୍ୟକ ଆଉ ଯାହା କି ସ୍ୱୟଂ ଲିପିବଦ୍ଧ ହେବ···ବହୁତ କିଛି ରଚନାତ୍ମକ କର୍ମ, ବହୁତ କିଛି ରଚନାତ୍ମକ ବଚନ ଯାହା କୌଣସି ପ୍ରଥା ଅଥବା ପ୍ରାମାଣିକତାସୂଚକ ନୁହେ ଆଉ ଯାହା ମନର ସତ୍‌ବୋଧ ତଥା ନ୍ୟାୟବୋଧରୁ ସ୍ୱତଃସ୍ଫୂର୍ତ୍ତି ଭାବରେ ପ୍ରସାରିତ ହେଉଚି ତାକୁ ସ୍ୱାଗତ କରାଯାଉ ।" ପୁନରପି ତାଙ୍କର 'ଆତ୍ମନିର୍ଭରତା' ଶୀର୍ଷକ ପ୍ରବନ୍ଧରେ ସେ ଲେଖିଛନ୍ତି : "ଆତ୍ମୋନ୍ନତି

ଅଭାବରୁ ଶିକ୍ଷିତ ମାର୍କିନ୍‌ମାନେ ତୀର୍ଥ ଦର୍ଶନର ଆକର୍ଷଣ ଭଳି ଏକ ଅନ୍ଧବିଶ୍ୱାସର ତାଡ଼ନାରେ ଇଟାଲି, ଇଂଲଣ୍ଡ ଓ ମିଶର ପରିଦର୍ଶନ କରିବାର ଆଗ୍ରହ ଘୋଷଣା କରନ୍ତି । ଯେଉଁମାନେ ଇଂଲଣ୍ଡ, ଇଟାଲି କିମ୍ବା ଗ୍ରୀସକୁ ଶ୍ରଦ୍ଧା ଓ ସମ୍ମାନର ବସ୍ତୁ କରି ତୋଳିଲେ ସେମାନେ ଭବଘୁରେ ନୁହନ୍ତି । ନିଜ ଦେଶରେ, ଧରଣୀର ଏକ ଅକ୍ଷ ଭାବରେ ରହି; ସେମାନେ ତାହା କରିପାରିଲେ । ଆମ ଭିତରେ ଯେବେ ପୌରୁଷ ଜାଗ୍ରତ ଥାଏ ଆମେ ଅନୁଭବ କରୁଥାଉଁ ଯେ ଆମର ସ୍ଥାନ କର୍ତ୍ତବ୍ୟ ଭିତରେ; ଯାଯାବର ସ୍ୱଭାବରେ ନୁହେଁ । ଆତ୍ମା ପରିବ୍ରାଜକ ନୁହେଁ; ପ୍ରାଜ୍ଞ ବ୍ୟକ୍ତି ନିଜଘର ଛାଡ଼ି କେଉଁଆଡ଼େ ଯିବା ପସନ୍ଦ କରେନି । ଯେବେ କୌଣସି ଆବଶ୍ୟକତା, କୌଣସି କର୍ତ୍ତବ୍ୟର ଆହ୍ୱାନ ତାଙ୍କୁ ଘରୁ ବାହାରକୁ ଯିବା ପାଇଁ କିମ୍ବା ଭିନ୍ନ କୌଣସି କ୍ଷେତ୍ରରେ ପ୍ରବେଶ କରିବାପାଇଁ ଲୋଡ଼ାକରେ, ସେତେବେଳେ ସୁଦ୍ଧା ସେ ତାଙ୍କର ନିଜସ୍ୱବୋଧ ବଜାୟ ରଖନ୍ତି ଏବଂ ତାଙ୍କର ବକ୍ତବ୍ୟ ଓ ଆଚରଣଦ୍ୱାରା ଏ କଥା ସହଜରେ ପ୍ରକାଶ କରନ୍ତି ଯେ ସେ ବାହାରିଚନ୍ତି ଜ୍ଞାନ ଓ ସଦ୍‌ଗୁଣ ବିତରଣ ଉଦ୍ଦେଶ୍ୟରେ ଜଣେ ଯାଜକ ଭାବରେ ଏବଂ ସେ ଯେ ନାନା ନଗରୀ ପରିଦର୍ଶନ କରୁଚନ୍ତି ଓ ନାନା ଲୋକଙ୍କୁ ସାକ୍ଷାତ କରୁଚନ୍ତି ନିଜର ଲାଭ ନିମନ୍ତେ, କାହାର ବିଷୟରେ ହସ୍ତକ୍ଷେପ କରିବା ଉଦ୍ଦେଶ୍ୟରେ ନୁହେଁ, କାହାର ଭୃତ୍ୟ ଭାବରେ ନୁହେଁ, ବରଂ ଜଣେ ସାର୍ବଭୌମ ବ୍ୟକ୍ତି ଭାବରେ, ଜଣେ ବିଦେଶାଗତ ରାଜେନ୍ଦ୍ର ଭାବରେ ।"

କଥିତ ପ୍ରବନ୍ଧରେ ଇମେରସନ୍ ଆହୁରି କହିଚନ୍ତି : "କଳା ନିମନ୍ତେ ଅଧ୍ୟୟନ ଉଦ୍ଦେଶ୍ୟରେ ଅଥବା କୌଣସି ବଦାନ୍ୟ କର୍ମ ନିମନ୍ତେ ପୃଥିବୀ ପରିକ୍ରମା କରିବାରେ ମୋର ସେପରି କିଛି ଅଶିଷ୍ଟ ପ୍ରତିବାଦ ନାହିଁ । ତେବେ କଥା ହେଉଚି ମଣିଷ ପ୍ରଥମେ ସ୍ୱଦେଶୀ ହେଉ ଏବଂ ତାକୁ ଏକଥା କହି ଦିଆଯାଉ ଯେ ସେ ଯାହା ଜାଣିଚି ତା'ଠାରୁ ଅଧିକ କିଛି ମହତ୍ତର ପାଇବା ଆଶାରେ ସେ ବିଦେଶ ଯାତ୍ରା ନକରୁ । ଆମୋଦ ପାଇଁ ଯାହା ତା'ର ନାହିଁ, ବା ସେପରି କିଛି ପାଇବା ପାଇଁ ଯିଏ ଭ୍ରମଣ କରେ ସେ ନିଜ ପାଖରୁ ଦୂରେଇ-ଯାଏ ଏବଂ ଏପରିକି ତା'ର ଯୌବନ ଥିଲେ ସୁଦ୍ଧା ପୁରାତନ ବସ୍ତୁ ଗହଣରେ ସେ ନିଜେ ଜରାଗ୍ରସ୍ତ ହେଇପଡ଼େ । ଥୀବ୍‌ସରେ, ପାଲ୍‌ମିରାରେ, ତା'ର ସଂକଳ୍ପ ଓ ମନ ସେହି ସହର ଦୁଇଟି ଭଳି ଜରାଗ୍ରସ୍ତ ତଥା ଜର୍ଜର ହେଇପଡ଼େ । ଗୋଟାଏ ଧ୍ୱଂସସ୍ତୂପ ନିକଟକୁ ସେ ଆଉ କିଛି ଧ୍ୱଂସାବଶେଷ କେବଳ ବହନ କରିନିଏ ।

"କିନ୍ତୁ ପର୍ଯ୍ୟଟନ ନିମନ୍ତେ ସୁତୀବ୍ର ଲାଳସା ଏକ ଗଭୀରତର ବିକୃତିର ଲକ୍ଷଣ ଯାହା ମଣିଷର ସମଗ୍ର ବୌଦ୍ଧିକ କର୍ମ ଉପରେ ପ୍ରଭାବ ବିସ୍ତାର କରେ । ···ଆମେ ଅନୁକରଣ କରୁଥାଉଁ ।···ବୈଦେଶିକ ରୁଚି ଘେନି ଆମର ବାସଗୃହ ନିର୍ମିତ ହୁଏ; ଆମ ଆଲମାରିରେ ବିଦେଶୀ ଆଭୂଷଣ ଶୋଭାପାଏ; ଆମର ମତାମତ, ଆମର ରୁଚି, ଆମର ମନୋବୃତ୍ତି ଅତୀତରୁ ଆହରିତ ଏବଂ ସେହି ଅତୀତ ତଥା ଆହୁରି ଦୂରବର୍ତ୍ତୀ କୌଣସି ଅସ୍ପଷ୍ଟତାର ଅନୁସରଣ କରିଥାଏ । ପୃଥିବୀର ଯେ କେଉଁ ଅଂଶରେ ଯେଉଁଠି କଳାର ଉନ୍ନତି ସାଧିତ ହେଇଚି, କଳା ଐଶ୍ୱର୍ଯ୍ୟ ଲାଭ କରିଚି ତାହା ଆତ୍ମାର ସୃଷ୍ଟି । କଳାକାର ତା'ର ନିଜ ମାନସରୁ ହିଁ ତା'ର

ମଡ଼େଲ୍ ବା ଆଦର୍ଶ ସନ୍ଧାନ କରିଚ । କଳାକର୍ମ ନିମନ୍ତେ, ଆବଶ୍ୟକୀୟ ମାନଦଣ୍ଡ ନିମନ୍ତେ, ସେ ତା'ର ନିଜର ବିଶ୍ବର ହିଁ ପ୍ରୟୋଗ କରିଥାଏ ।···ନିଜ ଉପରେ ନିର୍ଭର କର ଓ ବିଶ୍ୱାସ ରଖ; କେବେହେଲେ ଅନୁକରଣ କର ନାହିଁ । ସମଗ୍ର ଜୀବନର କୃଷି ଓ ସାଧନାଲବ୍ଧ ସମବର୍ଦ୍ଧିଷ୍ଣୁ ଶକ୍ତି ଘେନି ତୁମେ ପ୍ରତି ମୁହୂର୍ତ୍ତରେ ତୁମ ପ୍ରତିଭାର ସୌକର୍ଯ୍ୟ ଦାନ କରି ପାରିବ । କିନ୍ତୁ ତୁମେ ଯଦି ଅନ୍ୟର ପ୍ରତିଭା ଅନୁକରଣ କରିଥାଅ ତାହାହେଲେ ସେଥି ଉପରେ ତୁମର ସେପରି କିଛି ଅଧିକାର ରହିନପାରେ ଯାହାଲାଗି ତୁମେ ଗର୍ବ ଅନୁଭବ କରିବ ।"

'ପ୍ରାଚୀନ' ଓ 'ସୁଦୂର' ସନ୍ଧାନରେ ଆମେ ଭାରତୀୟଙ୍କ ପାଇଁ ବିଦେଶ ଯିବାର ଆବଶ୍ୟକତା ନାହିଁ । ସେସବୁ ଏଠାରେ ପ୍ରଚୁର ପରିମାଣରେ ରହିଚି । ଆମେ ଯଦି ବିଦେଶ ଯାଉଁ, କେବଳ ବର୍ତ୍ତମାନ ସନ୍ଧାନରେ । ସେହି ସନ୍ଧାନ ଆବଶ୍ୟକ କାରଣ ସେଥିରୁ ବିଚ୍ଛିନ୍ନ ହେବା ଅର୍ଥ ଅନଗ୍ରସରତା ଓ ଅବନତି । ଇମେରସନ୍‌ଙ୍କ ସମୟର ବିଶ୍ୱ ବଦଳିଗଲାଣି ଏବଂ ପୁରାତନ ବହୁ ପ୍ରତିବନ୍ଧକ ଭାଙ୍ଗି ଭାଙ୍ଗି ଯାଉଚି; ଜୀବନ ଅଧିକରୁ ଅଧିକ ଆନ୍ତର୍ଜାତିକ ହୋଇ ଉଠୁଚି । ଏହି ଆଗାମୀ ଆନ୍ତର୍ଜାତୀୟତାରେ ଆମକୁ ଆମର ଭୂମିକା ଗ୍ରହଣ କରିବାକୁ ପଡ଼ିବ ଏବଂ ଉଦ୍ଦେଶ୍ୟରେ କେବଳ ବିଦେଶଯାତ୍ରା କରିବା, ଅନ୍ୟମାନଙ୍କୁ ଭେଟିବା, ଅନ୍ୟମାନଙ୍କଠାରୁ ଶିଖିବା ଓ ସେମାନଙ୍କୁ ବୁଝିବା; କିନ୍ତୁ ଆନ୍ତର୍ଜାତୀୟତା କହିଲେ ପ୍ରକୃତରେ ଯାହା ବୁଝାଏ ତାହା କିଛି ଆକାଶରୁ ଖସିବା ବସ୍ତୁ ନୁହେଁ; ଯାହାର ଭିତ୍ତି କିମ୍ବା ଲଙ୍ଗର ନାହିଁ । ଜାତୀୟ ସଂସ୍କୃତିମାନଙ୍କରୁ ହିଁ ତାକୁ ଗଢ଼ିବାକୁ ହୁଏ ଏବଂ ଆଜି ତାହା ସମାଦର ଲାଭ କରିପାରେ କେବଳ ସ୍ୱତନ୍ତ୍ରତା ଓ ସମାନତା ତଥା ପ୍ରକୃତ ଆନ୍ତର୍ଜାତୀୟତାର ଭିତ୍ତି ଉପରେ । ତଥାପି ପୁଣ୍ଡା, ଅତୀତରେ ଯେପରି ଆଜି ବି ସେପରି, ଇମେରସନ୍‌ଙ୍କ ଚେତାବନୀ ନିରର୍ଥକ ନୁହେଁ । ସେ ସୂଚାଇଥିବା ନିୟମ ଅନୁସାରେ ଚାଲିଲେ କେବଳ ଆମର ସନ୍ଧାନ ଫଳପ୍ରଦ ହୋଇପାରେ । ଆମେ କେଉଁଠାକୁ ହେଲେ କାହାର ବ୍ୟାପାରରେ ହସ୍ତକ୍ଷେପ କରିବା ଲାଗି ଯାଇ ନପାରୁଁ । ଆମେ କେବଳ ସେଭଳି ସ୍ଥାନକୁ ଯାଇପାରୁ; ଯେଉଁଠି କୌଣସି ମିଳିତ ଉଦ୍ୟମରେ ଆମେ ସହକର୍ମୀ, ଆମେ ପରସ୍ପର ସମାନସ୍କନ୍ଧ ଆଉ ଯେଉଁଠି ଆମକୁ ସ୍ୱାଗତ କରିବା ପଛରେ କୌଣସି କୁଣ୍ଠା ନଥାଏ । କେତେକ ଦେଶ ଅଛି, ବିଶେଷ ବ୍ରିଟିଶ ଡୋମିନିୟନ୍‌ରେ ଯେଉଁଠି ଆମ ଦେଶବାସୀଙ୍କୁ ନ୍ୟୂନ କରି ଦେଖିବାର ଉଦ୍ୟମ କରାଯାଇଥାଏ । ସେମାନଙ୍କ ସଙ୍ଗେ ଆମର ମେଳ ସମ୍ଭବ ନୁହେଁ । ସାମ୍ପ୍ରତିକ ଭାବରେ ଆମେ ହୁଏତ ଗୋଟାଏ ବିଦେଶୀ ପ୍ରଭୁତ୍ୱ ନିକଟରେ ବାଧ୍ୟତଃ ମୁଣ୍ଡ ନୁଆଁଇ ତାର ସମସ୍ତ କିଛି ନିଦାରୁଣ ପୀଡ଼ା ଭୋଗ କରୁଥାଇଁ;କିନ୍ତୁ ଆମର ମୁକ୍ତିର ଦିନ ଆଉ ସୁଦୂର ହୋଇ ନପାରେ । ଆମେ କୌଣସି ତୁଚ୍ଛ ଦେଶର ନାଗରିକ ନୋହୁଁ ଏବଂ ଆମେ ଆମର ଜନ୍ମଭୂମି, ଆମର ଜନତା, ଆମର ସଂସ୍କୃତି ଓ ପରମ୍ପରା ନେଇ ଗର୍ବିତ । ଆମର ସେହି ଗର୍ବ ସେପରି କିଛି ରୋମାଞ୍ଚକାରୀ ଭୂତକାଳ ନିମନ୍ତେ ନହେବା ଉଚିତ ଯାହାକୁ ଜାବୁଡ଼ି ରହିବା ପାଇଁ ଆମେ ଚାହୁଁ; କିମ୍ବା ସେହି ଗର୍ବ ଏପରି ହେବା ବି ଉଚିତ ନୁହେଁ; ଯାହା ଆମକୁ

ସମସ୍ତଙ୍କଠାରୁ ବିଚ୍ଛିନ୍ନ ରହିବା ଲାଗି ଉତ୍ସାହିତ କରିବ ଅଥବା ଆମ ଜୀବନଧାରାଠାରୁ ଭିନ୍ନ ଅନ୍ୟମାନଙ୍କ ଜୀବନଧାରାର ମହତ୍ତ୍ୱ ଗ୍ରହଣ କରିବାରେ କୁଣ୍ଠାବୋଧ ଆଣିଦେବ । ଆମର ଯେ ବହୁତ କିଛି ଦୋଷଦୁର୍ବଳତା ରହିଛି ଏବଂ ସେଥିରୁ ମୁକ୍ତ ହେବାପାଇଁ ଆମେ ଯେ ଆକାଂକ୍ଷିତ, ଏକଥା ସ୍ମରଣ ରଖିବାରେ ଓ ବହୁତ ପ୍ରୟାସ କରିବାରେ ସେହି ଜାତୀୟ ଅଭିମାନ ଯେପରି ପ୍ରତିକୂଳତା କରି ନ ବସେ । ଆଗରେ ଆମର ଦୀର୍ଘ ପଥ ଏବଂ ମାନବିକ ସଭ୍ୟତା ଓ ପ୍ରଗତିର ଜୟଯାତ୍ରାରେ ଆମର ବହୁତ ସ୍ଥାନ ଗ୍ରହଣ କଲା ପୂର୍ବରୁ ଆମକୁ ବହୁତ କିଛି ଅବସ୍ଥାନୁକୂଳ ବ୍ୟବସ୍ଥା କରିବାକୁ ପଡ଼ିବ । ହାତରେ ଆମର ସୀମିତ ସମୟ ଆଉ ପୃଥିବୀର ଗତି କ୍ରମାଗତ ଭାବରେ ଯେହେତୁ ବଢ଼ି ଚାଲିଛି ଆମର ଆରାମ କରିବାର ସମୟ ନାହିଁ । ଅତୀତରେ ଭାରତ ବହୁ ସଂସ୍କୃତିକୁ ସ୍ୱାଗତ କରିଛି ଏବଂ ବହୁ ସଂସ୍କୃତିକୁ ନିଜ ଦେହରେ ଲୀନ କରିଛି । ଆଜି ତା'ର ଆବଶ୍ୟକତା ବହୁତ ବେଶି; କାରଣ ଆମେ କାଳର ଏକ-ବିଶ୍ୱ ଆଡ଼କୁ ଆଗେଇ ଯାଉଛୁ ଯେଉଁଠି ମାନବ ଜାତିର ଆନ୍ତର୍ଜାତୀୟ ସଂସ୍କୃତି ସଙ୍ଗେ ସମସ୍ତ ଜାତୀୟ ସଂସ୍କୃତି ସଙ୍ଗମ ଲାଭ କରିବ । ଅତଏବ, ଯେଉଁଠି ପ୍ରାପ୍ତବ୍ୟ, ଆମକୁ ଜ୍ଞାନ, ବିଜ୍ଞାନ, ମିତ୍ରତା ଓ ସହଯୋଗ ଲାଭ କରିବାକୁ ପଡ଼ିବ ଏବଂ ମାନବ ଜାତି ନିମନ୍ତେ କଲ୍ୟାଣକର ସାର୍ବଜନୀନ ବହୁ କାର୍ଯ୍ୟରେ ଆମକୁ ସମ୍ମିଳିତ ହେବାକୁ ପଡ଼ିବ; କିନ୍ତୁ ଅନ୍ୟର କୃପା ଓ ପୃଷ୍ଠପୋଷକତା ଭିକ୍ଷାକରିବା ଆମର କାର୍ଯ୍ୟ ନୁହେଁ । ଏପରି ଭାବରେ ଆମେ ଭାରତୀୟ ତଥା ଏସୀୟ ଉଭୟ ନାମକୁ ସାର୍ଥକ କରିପାରିବା ଏବଂ ସଙ୍ଗେ ସଙ୍ଗେ ବିଶ୍ୱ ନାଗରିକ ତଥା ଉତ୍ତମ ଆନ୍ତର୍ଜାତୀୟବାଦୀ ହୋଇପାରିବା ।

ଭାରତରେ ତଥା ବିଶ୍ୱରେ ମୋ ପୁରୁଷର ଲୋକେ ଶାନ୍ତିରେ ରହିପାରି ନାହାନ୍ତି । ଆମେ ହୁଏତ ଆଉ କିଛି କାଳ ପାଇଁ ଆମର କର୍ତ୍ତବ୍ୟ ନିର୍ବାହ କରିଯିବୁ । କିନ୍ତୁ ଦିନେ ଆମର କାଳ ବି ଶେଷ ହେବ ଏବଂ ଆମର ସ୍ଥାନ ଅନ୍ୟମାନେ ଗ୍ରହଣ କରିବେ ଆଉ ସେମାନେ ମଧ୍ୟ ନିଜ ଜୀବନ-ଯାତ୍ରାରେ ସେମାନଙ୍କର ନାନା ଭାର ବହନ କରି ଯଥାସମୟରେ ଅନ୍ୟମାନଙ୍କ ହାତରେ ତାହା ସମର୍ପଣ କରିବେ । ଆମର ଅସ୍ତୋନ୍ମୁଖୀ ଏହି ସ୍ୱଳ୍ପ ଜୀବନକାଳ ମଧ୍ୟରେ ଆମେ ଆମର ଦାୟିତ୍ୱ ଓ କର୍ତ୍ତବ୍ୟ କିଭଳି ପାଳନ କରୁଛୁ ? ମୁଁ ଜାଣେ ନାହିଁ । ପରବର୍ତ୍ତୀ ସମୟରେ ଅନ୍ୟମାନେ ତାହା ବିଚାର କରିବେ । କି ମାନଦଣ୍ଡଦ୍ୱାରା ଆମେ ସଫଳତା ଅବା ବିଫଳତାର ପରିମାପ କରୁଁ ? ତାହା ମଧ୍ୟ ମୁଁ ଜାଣେନାହିଁ । ଜୀବନ ଆମ ପ୍ରତି ସଦୟ ହୋଇନାହିଁ ବୋଲି ଆମେ କୌଣସି ଅଭିଯୋଗ କରି ନପାରୁଁ; କାରଣ ଏ ପ୍ରକାର ଜୀବନ ଆମେ ନିଜେ ବରଣ କଲୁ ଏବଂ ସବୁକିଛି ମିଳାଇ ଦେଖିଲେ ଜୀବନ ଆମ ପ୍ରତି ସେପରି କିଛି ନିଷ୍ଠୁରତା କରିଛି ବୋଲି କହିବା ଠିକ୍ ହେବନାହିଁ । ନାନା ଆପଦବିପଦ ଭିତର ଦେଇ ଯେଉଁମାନେ ବହୁଧା ଗତି କରିଥାନ୍ତି ଏବଂ ଯେଉଁମାନଙ୍କର ଜୀବନ ମୃତ୍ୟୁ ଭୟଦ୍ୱାରା ଆକ୍ରାନ୍ତ ହୋଇ ନଥାଏ, ପ୍ରକୃତ ଜୀବନର ବୋଧ ଓ ଜୀବନର ଅନୁଭୂତି ସେମାନଙ୍କ ପକ୍ଷରେ କେବଳ ସମ୍ଭବ । ଆମର ସମସ୍ତ ଭ୍ରାନ୍ତି ସତ୍ତ୍ୱେ ଆମେ

ତୁଚ୍ଛତା, କାପୁରୁଷତାର ବଶବର୍ତ୍ତୀ ହେଇ ନାହୁଁ ଏବଂ ଆମେ ସେଭଳି କୌଣସି କାର୍ଯ୍ୟ କରିନାହୁଁ; ଯାହା ଲାଗି ଲଜ୍ଜାର ଅନୁଶୋଚନା ଆମ ଅନ୍ତରକୁ ଦଗ୍ଧ କରିବ । ବ୍ୟକ୍ତିଗତ ଦୃଷ୍ଟିରୁ ଦେଖିଲେ ଏହା ଜୀବନର ଏକ ପ୍ରକାର ସଫଳତା ମଧ୍ୟ । "ମଣିଷର ଅତି ପ୍ରିୟତମ ସମ୍ପଦ ତା'ର ଜୀବନ ଏବଂ ସେହି ଜୀବନ ବଞ୍ଚିବା ପାଇଁ ଥରେମାତ୍ର ଯେବେ ତାକୁ ମିଳିଥାଏ, ତାହା ସେଭଳି ବଞ୍ଚିବାକୁ ହେବ ଯେପରି ଗୋଟାଏ ତୁଚ୍ଛ ତଥା ଭୀରୁ ଅତୀତର ଲଜ୍ଜାରେ ସେ ଦଗ୍ଧ ନହୁଏ; ସେପରି ବଞ୍ଚିବାକୁ ହେବ ବର୍ଷ ବର୍ଷ ଧରି ଉଦ୍ଦେଶ୍ୟହୀନତାର ପୀଡ଼ାରେ ସେ ଯେପରି ପୀଡ଼ିତ ନହୁଏ; ସେପରି ବଞ୍ଚିବାକୁ ହେବ ମୃତ୍ୟୁ କାଳରେ ସେ ଯେପରି କହିପାରିବ : 'ମୋର ସମସ୍ତ ଜୀବନ ଓ ମୋର ସମସ୍ତ ଶକ୍ତି ବିଶ୍ୱର ସର୍ବପ୍ରଥମ ତଥା ସର୍ବଶ୍ରେଷ୍ଠ ଆଦର୍ଶ ନିମନ୍ତେ ଉତ୍ସର୍ଗ କରିପାରିଲି ।' ସେହି ଆଦର୍ଶ ହେଉଚି ମାନବ-ଜାତିର ମୁକ୍ତି ।" (୧) □□□

---

(୧) ଲେନିନ୍ ।

# ପୁନଶ୍ଚ

ଆଲ୍ହାବାଦ : ୨୯ ଡିସେମ୍ବର, ୧୯୪୫

୧୯୪୫, ମାର୍ଚ୍ଚ ଓ ଅପ୍ରେଲ ମାସରେ ଅହ୍ମଦନଗର ଦୁର୍ଗ ଅସ୍ଥାୟୀ ବନ୍ଦୀନିବାସରେ ଆବଦ୍ଧ କଂଗ୍ରେସ କାର୍ଯ୍ୟକାରୀ କମିଟି ସଭ୍ୟମାନଙ୍କୁ ନିଜ ନିଜ ପ୍ରଦେଶକୁ ପଠାଇ ଦିଆଗଲା । ଅସ୍ଥାୟୀ ବନ୍ଦୀ ନିବାସ ଉଠାଇ ଦିଆଗଲା ଏବଂ ଖୁବ୍ ସମ୍ଭବ ଅହ୍ମଦନଗର ଦୁର୍ଗ ସାମରିକ କାର୍ଯ୍ୟରେ ବ୍ୟବହୃତ ହେବା ନିମନ୍ତେ ସାମରିକ କର୍ତ୍ତୃପକ୍ଷଙ୍କ ହାତକୁ ଗଲା । ସର୍ବଶ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥ, ନରେନ୍ଦ୍ର ଦେବ ଓ ମୁଁ ମାର୍ଚ୍ଚ ୨୮ ତାରିଖରେ ଅହ୍ମଦନଗର ଦୁର୍ଗ ଛାଡ଼ିଲୁ । ଆମକୁ ନୈନି କେନ୍ଦ୍ର-ବନ୍ଦୀନିବାସକୁ ନିଆଗଲା; ଯେଉଁଠି ଆମେ ଆମର ବହୁ ପୁରାତନ ସହକର୍ମୀଙ୍କୁ ଭେଟିଲୁ । ସେମାନଙ୍କ ମଧ୍ୟରେ ଥିଲେ ରଫି ଅହ୍ମଦ କିଦ୍ୱାଇ । ଅଗଷ୍ଟ ୧୯୪୨ ରେ ଗିରଫ ହେବା ଦିନରୁ ପ୍ରଥମ ଥର ପାଇଁ ୪୨ ବିଦ୍ରୋହ ସମ୍ପର୍କରେ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଲାଭ କରିବାର ସୁଯୋଗ ଆମେ ପାଇଲୁ । କାରଣ ନୈନି ବନ୍ଦୀ ନିବାସର ଅଧିକାଂଶ ବନ୍ଦୀ ଆମେ ଗିରଫ ହେବାର କେତେ ଦିନ ପରେ ଗିରଫ ହୋଇଥିଲେ । ନୈନିରୁ ଆମ ତିନିଜଣଙ୍କୁ ବରେଲି ନିକଟସ୍ଥ ଇଜ୍ଜତନଗର କେନ୍ଦ୍ର-ବନ୍ଦୀ ନିବାସକୁ ନିଆଗଲା । ଅସୁସ୍ଥତା ଯୋଗୁଁ ଗୋବିନ୍ଦ ବଲ୍ଲଭ ପନ୍ଥ ଖଲାସ ହେଲେ । ନରେନ୍ଦ୍ର ଦେବ ଓ ମୁଁ ଏହି ବନ୍ଦୀ ନିବାସର ଗୋଟାଏ ବେରେକ୍‌ରେ ଅର୍ଥାତ୍ ସୈନିକ ନିବାସରେ ଦୁଇ ମାସରୁ କିଛି ଅଧିକ କାଳ ଏକତ୍ର ରହିଲୁ । ଜୁନ୍ ମାସ ଆରମ୍ଭରେ ଆମକୁ ଆଲ୍‌ମୋଡ଼ା ପାର୍ବତ୍ୟ ବନ୍ଦୀନିବାସକୁ ସ୍ଥାନାନ୍ତରିତ କରାଗଲା । ଦଶ ବର୍ଷ ପୂର୍ବେ ମତେ ଏଠାରେ ଅଟକ କରାଯାଇଥିଲା ଓ ତା'ର ବହୁ ସ୍ମୃତି ମୋର ମନରେ ଜାଗରୂକ ଥିଲା । ଜୁନ୍, ୧୫ ତାରିଖରେ, ୧୯୪୨ ଅଗଷ୍ଟ ମାସରେ ଗିରଫ ହେବାର ଏକ ହଜାର ଏକଚାଳିଶ ଦିନ ପରେ, ଆମକୁ ଖଲାସ କରାଗଲା । ଏପରି ଭାବରେ ମୋର ନବମ ତଥା ଦୀର୍ଘତମ ବନ୍ଦୀ ପର୍ଯ୍ୟାୟର ଅବସାନ ଘଟିଲା ।

ଅଦ୍ୟାବଧି ସାଢ଼େ ଛ'ମାସ ହେଲା ମୁଁ ଖଲାସ ହେଲିଣି । ବନ୍ଦୀ ଜୀବନର ଦୀର୍ଘ ନିଃସଙ୍ଗତା ଭିତରୁ ଆସି ମୁଁ ବହୁଜନ ସମାବେଶର ସମ୍ମୁଖୀନ ହେଲି ଏବଂ ପ୍ରବଳ କର୍ମତତ୍ପରତା ତଥା ନିରବଚ୍ଛିନ୍ନ ପର୍ଯ୍ୟଟନ ମତେ ଅଧିକାର କରିନେଲା । ଘରେ ଗୋଟିଏ ମାତ୍ର ରାତି ଅତିବାହିତ କରି ପରଦିନ କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକରେ ଯୋଗଦେବା ପାଇଁ ବମ୍ବେ ଚାଲିଲି । ସେଠାରୁ ବଡ଼ଲାଟଙ୍କ ଦ୍ୱାରା ଆହୂତ ସମ୍ମିଳନୀରେ ଯୋଗଦେବା ନିମନ୍ତେ ସିମଳା ଗଲି ଏହି ନୂତନ ତଥା ପରିବର୍ତ୍ତନଶୀଳ ପରିବେଷ୍ଟନୀ ସଙ୍ଗେ ନିଜକୁ ସହଜ କରିବା ମୋ ପକ୍ଷରେ

କଷ୍ଟକର ହୋଇଥିଲା ଏବଂ ଅନାୟାସରେ ମୁଁ ସେଥିସଙ୍ଗେ ନିଜକୁ ଖାପ ଖୁଆଇ ପାରୁନଥିଲି । ମୋର ଚାରିପାଖର ସବୁ କିଛି ସଙ୍ଗେ ମୁଁ ଘନିଷ୍ଠ ଭାବରେ ପରିଚିତ ଥିବା ସତ୍ତ୍ୱେ ଏବଂ ବହୁ ପୁରାତନ ବନ୍ଧୁ ଓ ସହକର୍ମୀଙ୍କ ସଙ୍ଗେ ସାକ୍ଷାତରେ ସୁଯୋଗ ପାଇଥିବା ସତ୍ତ୍ୱେ ମୁଁ ଅନୁଭବ କରୁଥିଲି, ମୁଁ ଯେପରି ଜଣେ ଅପରିଚିତ ତଥା ବହିର୍ଭାଗତ ବ୍ୟକ୍ତି ଏବଂ ମୋର ମନ ପର୍ବତମାଳା ଓ ହିମମଣ୍ଡିତ ଗିରିଶୀର୍ଷମାନଙ୍କରେ ବିଚରଣ କରୁଥିଲା । ଶିମଲାର ଜଞ୍ଜାଳ ଶେଷ ହେବା ସଙ୍ଗେ ସଙ୍ଗେ ମୁଁ କାଶ୍ମୀର ଅଭିମୁଖେ ଯାତ୍ରା କଲି । ଉପତ୍ୟକା ଅଞ୍ଚଳରେ ରହିବାର ଆଗ୍ରହ ମୋର ନଥିଲା । ଅନତିବିଳମ୍ବେ ପ୍ରସ୍ତୁତ କରି ମୁଁ ଉଚ୍ଚତର ପ୍ରଦେଶ ଓ ଗିରିସଙ୍କଟ ପରିଦର୍ଶନ ଉଦ୍ଦେଶ୍ୟରେ ବାହାରିଲି । ଗୋଟାଏ ମାସ କାଶ୍ମୀରରେ ଅତିବାହିତ କରି ମୁଁ ପୁଣି ଫେରି ଆସିଲି ଜନବହୁଳ ଭିତରକୁ ଆଉ ଦୈନନ୍ଦିନ ଜୀବନର ବହୁ ଉତ୍ତେଜନା ଓ କ୍ଲାନ୍ତିକର ପରିବେଶକୁ ।

କ୍ରମଶଃ ଗତ ତିନି ବର୍ଷର ଏକ ଚିତ୍ର ମୋ ମନରେ ରୂପାୟିତ ହୋଇ ଉଠିଲା । ଅନ୍ୟମାନଙ୍କ ଭଳି ମୁଁ ବି ଦେଖିବାକୁ ପାଇଲି ଯେ ଯାହାସବୁ ଏ ଦେଶରେ ଘଟିଗଲା ଆମେ ସେତେ ଭଲ କଳ୍ପନା କରିପାରିନଥିଲୁ । ଏହି ତିନି ବର୍ଷରେ ଆମ ଦେଶବାସୀଙ୍କୁ ବହୁତ କିଛି ଦୁଃଖଦୁର୍ଦ୍ଦଶା ଭୋଗିବାକୁ ପଡ଼ିଛି ଏବଂ ଯାହା ସଙ୍ଗେ ଆମର ଦେଖା ହୋଇଛି ତା'ର ମୁହଁରେ ସେହି ଦୁର୍ବିପାକର ଛାପ ଲକ୍ଷ୍ୟ କରି ହେଉଛି । ଭାରତର ବହୁତ କିଛି ପରିବର୍ତ୍ତନ ଘଟିଛି ଏବଂ ବାହ୍ୟତଃ ସବୁ କିଛି ଶାନ୍ତ ଜଣାଯାଉଥିଲେ ସୁଦ୍ଧା ଭିତରେ ସନ୍ଦେହ ଥିଲା, ପ୍ରଶ୍ନ ଥିଲା, ନୈରାଶ୍ୟ ଓ କ୍ରୋଧ ଥିଲା ଆଉ ଦବି ହୋଇ ରହିଥିଲା ପ୍ରବଳ ଏକ ଉତ୍କଣ୍ଠା । ଆମେ ଜେଲ୍‌ରୁ ମୁକୁଳିଲୁ ଏବଂ ଘଟଣାପ୍ରବାହ ଏପରି ଏକ ମୋଡ଼ ଧରିଲା ଯା' ଫଳରେ ସେ ଦୃଶ୍ୟର ପରିବର୍ତ୍ତନ ଘଟିଲା । ସେହି ପ୍ରଶାନ୍ତମାନ ଶାନ୍ତ ଅବସ୍ଥା ବିଚଳିତ ହେଲା । ଦେଶସାରା ତରଙ୍ଗ ପରେ ତରଙ୍ଗ, ଉତ୍ତେଜନା ଖେଳିଗଲା । ଦୀର୍ଘ ତିନି ବର୍ଷ ଦବି ରହିବା ପରେ ଲୋକେ ସେହି ଆବରଣ ବିଦୀର୍ଣ୍ଣ କରି ବାହାରକୁ ଆସିଗଲେ । ଏଭଳି ତୀବ୍ର ଉତ୍ତେଜନା, ମୁକ୍ତି ନିମନ୍ତେ କୋଟିସଂଖ୍ୟକ ଲୋକଙ୍କର ଏ ପ୍ରକାର ପ୍ରଗାଢ଼ ଆକାଙ୍‌କ୍ଷା ମୁଁ ପୂର୍ବେ ଦେଖିନଥିଲି । ଅଗଣିତ ତରୁଣତରୁଣୀ, ବାଳକ ଓ ବାଳିକା ଦେଶର ମୁକ୍ତିନିମନ୍ତେ, କିଛି କରିବାର ଏକ ଆବେଗରେ, ଦୀପ୍ତ ହୋଇ ଉଠିଥିଲେ । ତେବେ, କ'ଣ ସେମାନେ କରିବେ ସେ ବିଷୟରେ ସେମାନଙ୍କର ସ୍ପଷ୍ଟ ଧାରଣା ନଥିଲା ।

ଯୁଦ୍ଧ ଶେଷ ହେଲା ଏବଂ ନୂତନ ଯୁଗର ପ୍ରତୀକ ଭାବରେ ଦେଖାଦେଲା ପରମାଣୁ ବୋମା । ନାଗାସାକି ଓ ହିରୋସିମାରେ ଏହି ମାରଣାସ୍ତ୍ରର ପ୍ରୟୋଗ ଏବଂ କ୍ଷମତା ରାଜନୀତିର କୁଟିଳ ଗତି ଲୋକଙ୍କ ଆଖି ଭଲ ଭାବରେ ଖୋଲିଦେଲା । ପୁରାତନ ଯେତେସବୁ ସାମ୍ରାଜ୍ୟବାଦ ତେବେ ବି କାର୍ଯ୍ୟକାରୀ ହେଉଥିଲା ଏବଂ ଇଣ୍ଡୋନେସିଆ ଓ ଇଣ୍ଡୋଚୀନରେ ଯାହାସବୁ ଘଟୁଥିଲା ସେଥିରେ ପରିସ୍ଥିତିର ଅସ୍ୱାଭାବିକତା ବୃଦ୍ଧି ପାଇଥିଲା । ସେ ଦୁଇ ଦେଶର ଲୋକେ ମୁକ୍ତି ନିମନ୍ତେ ସଂଗ୍ରାମ କରୁଥିଲେ । ସେମାନଙ୍କର ମୁକ୍ତିସଂଗ୍ରାମ ବିରୁଦ୍ଧରେ ଭାରତୀୟ ସୈନ୍ୟଙ୍କୁ ନିୟୋଜିତ କରିବାରେ, ଆମର ଅସହାୟତା ଲାଗି, ଲଜ୍ଜାରେ ଆମର ମୁଣ୍ଡ ନଇଁ ଯାଇଥିଲା

ଆଉ ଅନ୍ତର ଭିତରେ କ୍ରୋଧ ଓ ଉଦ୍ଧତା ବୃଦ୍ଧି ପାଉଥିଲା । ଦେଶର ଏହି ମିଜାଜ କ୍ରମଶଃ ବଢ଼ିବାକୁ ଲାଗିଲା ।

ଯୁଦ୍ଧକାଳ ଭିତରେ, ବର୍ମା ଓ ମାଲୟରେ ଗଠିତ ଭାରତୀୟ ଜାତୀୟ ସେନାବାହିନୀର କଥା ସମଗ୍ର ଦେଶରେ ବିଜୁଳି ଭଳି ଖେଳିଗଲା ଏବଂ ଲୋକଙ୍କ ଭିତରେ ଏକ ବିସ୍ମୟକର ଉଦ୍ଦୀପନା ଜାଗ୍ରତ ହେଲା । ସାମରିକ ଅଦାଲତରେ ଏହି ସେନାବାହିନୀର କେତେକ ଅଫିସରଙ୍କ ବିଚାର ଦେଶକୁ ଯେଉଁଭଳି ଭାବରେ ଜାଗ୍ରତ କରି ତୋଳିଲା, ପୂର୍ବେ କୌଣସି ଘଟଣା ସେପରି କରିପାରିନଥିଲା । ଏହି ଅଫିସରମାନେ ଭାରତୀୟ ମୁକ୍ତି-ସଂଗ୍ରାମର ପ୍ରତୀକ ହୋଇ ଉଠିଲେ । କେବଳ ସେତିକି ନୁହେଁ, ଭାରତର ବିଭିନ୍ନ ଧର୍ମ-ସମ୍ପ୍ରଦାୟ ଭିତରେ ମଧ୍ୟ ସେମାନେ ଏକତାର ପ୍ରତୀକ ହୋଇ ଉଠିଲେ; କାରଣ ଭାରତୀୟ ଜାତୀୟ ସେନାବାହିନୀରେ ହିନ୍ଦୁ, ମୁସଲିମ୍, ଶିଖ ଓ ଖ୍ରୀଷ୍ଟାନ୍—ସବୁ ଧର୍ମର ଲୋକେ ଥିଲେ । ସେମାନଙ୍କ ଭିତରେ ସେମାନେ ସାମ୍ପ୍ରଦାୟିକ ସମସ୍ୟାର ସମାଧାନ କରିପାରିଥିଲେ । ଆମେ ତେବେ ସେପରି ନ ପାରିବା କାହିଁକି ?

ଆଉ ଅଳ୍ପ ଦିନରେ ଭାରତର ସାଧାରଣ ନିର୍ବାଚନ । ବର୍ତ୍ତମାନ ସମସ୍ତଙ୍କର ଦୃଷ୍ଟି ସେଇଆଡ଼କୁ । ଖୁବ୍ ଶୀଘ୍ର ନିର୍ବାଚନ ଶେଷ ହୋଇଯିବ । ତା'ପରେ ? ଯେପରି ଜଣାଯାଉଛି ଆଗାମୀ ବର୍ଷରେ ନାନା ଆନ୍ଦୋଳନ, ସଙ୍ଘର୍ଷ ଓ ଅଶାନ୍ତିରେ ଦେଶ ହୁଲସ୍ଥୁଲ ହେବ । ମୁକ୍ତିର ଭିତ୍ତି ବିନା, ଭାରତରେ ହେଉ କିମ୍ବା ଅନ୍ୟ ଯେକୌଣସି ସ୍ଥାନରେ ହେଉ, ଶାନ୍ତି ପ୍ରତିଷ୍ଠାର ଅବକାଶ ନାହିଁ ।

□□□